# ମାନସିଂହ ଗ୍ରନ୍ଥାବଳୀ

[ ଅଷ୍ଟମ ଖଣ୍ଡ ]

ଡକ୍ଟର ମାୟାଧର ମାନସିଂହ

ସଂଗ୍ରହ ଓ ସଂପାଦନା : ଡକ୍ଟର ଶ୍ରୀଚରଣ ମହାନ୍ତି



ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୭୫୩୦୦୨

ପ୍ରକାଶକ :
ଅଭିରାମ ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨

ଡି.ଟି.ପି. ଓ ମୁଦ୍ରଣ :
ତପନ କୁମାର ମହାପାତ୍ର
**ଅପ୍‌ଟିମା ଅଫ୍‌ସେଟ୍ ପ୍ରିଣ୍ଟସ୍**
ସୂତାହାଟ, କଟକ-୭୫୩୦୦୧

ପ୍ରଥମ ସଂସ୍କରଣ : ଜାନୁଆରି, ୨୦୧୪
(୭୦୦)

ମୂଲ୍ୟ : ଟ. ୫୦୦.୦୦
ସାଦାବନ୍ଧେଇ ଟ. ୪୫୦/-

# ମୁଖବନ୍ଧ

'ମାନସିଂହ ଗ୍ରନ୍ଥାବଳୀ'ର ଅଷ୍ଟମ ଖଣ୍ଡ ଏବେ ଆତ୍ମପ୍ରକାଶ କରିବାକୁ ଯାଉଛି । ଏଇ ବର୍ଷ ମାନସିଂହଙ୍କ ଆଦ୍ୟ ରଚନାର ୯୦ ବର୍ଷ ଓ ତାହାଙ୍କ ସ୍ୱର୍ଗାରୋହଣର ୪୦ ବର୍ଷ ପୂରଣ ହୋଇଛି । ତାହାଙ୍କ ବିପୁଳ ସମଗ୍ର ରଚନା ପ୍ରକାଶ କରାଯିବାର ଯେଉଁ ପରିକଳ୍ପନା କରାଯାଉଥିଲା, ଲେଖା ସଂଗୃହିତ ହୋଇଥିଲେ ବି କେତେକ କାରଣରୁ ତାହାର ପ୍ରକାଶନ ସମ୍ଭବ ହୋଇପାରିନାହିଁ, ସେଥିପାଇଁ ଦୁଃଖିତ । କିନ୍ତୁ ଖୁସିର କଥା ଯେ, ଚିନ୍ତାନାୟକ ମାନସିଂହଙ୍କର ଗଦ୍ୟରଚନା ପ୍ରକାଶ ହେବାଦ୍ୱାରା ମାନସିଂହଙ୍କ ସୃଷ୍ଟି ସମଗ୍ରର କିଛି ଅଂଶ ଲୋକଲୋଚନକୁ ଆସିପାରିବ, କବି ମାନସିଂହଙ୍କ ଚେତନା ଜଗତର ବ୍ୟାପ୍ତି ସ୍ଥାୟୀ ଭାବରେ ପାଠକ ପାଠିକାଙ୍କ ପାଖରେ ପହଞ୍ଚିପାରିବ । ସଙ୍କଳିତ ପ୍ରବନ୍ଧ ମଧ୍ୟରୁ ଅନେକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ମାତ୍ର ପତ୍ରପତ୍ରିକାରେ ପ୍ରକାଶିତ ପ୍ରବନ୍ଧ ପୁସ୍ତକ ଆକାରରେ ଆତ୍ମପ୍ରକାଶ ନ କଲେ ତାହା ବହୁ ଲୋକଙ୍କ ପାଇଁ ଅପ୍ରାପ୍ୟ ହୁଏ । ପର ପୀଢ଼ିର ଶ୍ରଦ୍ଧାଳୁ ପାଠକ/ପାଠିକାଙ୍କର ଦୃଷ୍ଟି ଅନ୍ତରାଳରେ ତାହା ରହିଯାଏ । କ୍ରମେ କ୍ରମେ ସେ ସବୁ ଚର୍ଚ୍ଚା ମଧ୍ୟକୁ ଆସିପାରେ ନାହିଁ, ସଙ୍କଳିତ ନ ହୋଇ ପାରିଥିବାରୁ ବହୁ ଆଗ୍ରହୀ ପାଠକଙ୍କର ବିଚାରକୁ ଆସିପାରେ ନାହିଁ । ଏହି ସମସ୍ୟାକୁ ଚକ୍ଷୁ ସମ୍ମୁଖରେ ରଖି ମାନସିଂହଙ୍କ ଉଲ୍ଲେଖଯୋଗ୍ୟ ପୁସ୍ତକ ଚାରିଖଣ୍ଡ **'ପଶ୍ଚିମ ପଥିକ', 'ମାଟିର ମହାକବି ସାରଳା ଦାସ', 'ଜୀବନୀ ଓ ପ୍ରବନ୍ଧ'** ତଥା **'ଜୀବନପଥ'** ସଙ୍କଳନରେ ସାମିଲ ହେଲା । ଏସବୁ ଆଗରୁ ପ୍ରକାଶିତ ହୋଇଥିଲେ ବି ପଚାଶ ବର୍ଷରୁ ଅଧିକ କାଳ ଧରି ଏହା ପୁନର୍ମୁଦ୍ରଣ ହୋଇପାରିନଥିଲା । ମାନସିଂହଙ୍କ ସମ୍ପର୍କରେ ଚର୍ଚ୍ଚା କରୁଥିବା ଗବେଷକମାନେ ଏ ସବୁର ପରିସୀମାକୁ ଆସିପାରୁନଥିଲେ । ପୁନଶ୍ଚ ଏହା ସହିତ ମାନସିଂହଙ୍କ ବିକ୍ଷିପ୍ତ ପ୍ରବନ୍ଧାବଳୀର ଏକ ନିର୍ବାଚିତ ସଙ୍କଳନ ଏହି ଭାଗରେ ଉପସ୍ଥାପନ କରାଯାଇଛି । **ପଶ୍ଚିମପଥିକ** ଏକ ଭ୍ରମଣକାହାଣୀ ହୋଇଥିବା ବେଳେ ଏହି ଖଣ୍ଡରେ ସଙ୍କଳିତ ଅନ୍ୟ ସମସ୍ତ ରଚନା ପ୍ରବନ୍ଧ ତଥା ସମାଲୋଚନା ବର୍ଗର । ତେଣୁ ପ୍ରାବନ୍ଧିକ/ସମାଲୋଚକ, ଭ୍ରମଣକାହାଣୀ ଲେଖକ ମାନସିଂହଙ୍କୁ ଚିହ୍ନିବା ପାଇଁ ଗ୍ରନ୍ଥାବଳୀର ଅଷ୍ଟମ ଖଣ୍ଡ ଦ୍ୱାର ସ୍ୱରୂପ ।

ଓଡ଼ିଆ ସାହିତ୍ୟରେ ପାଶ୍ଚାତ୍ୟ ଜଗତର ଭ୍ରମଣ ଅନୁଭୂତି ଉପରେ ଆଧାରିତ ଭ୍ରମଣ କାହାଣୀ ସେ ସମୟରେ ସ୍ୱଳ୍ପ । ଗତ ଶତକର ଦ୍ୱିତୀୟ ଓ ତୃତୀୟ ଦଶକ ବେଳକୁ ଶ୍ରୀ ପ୍ରାଣକୃଷ୍ଣ ପରିଜା, ଶ୍ରୀ ନୃସିଂହ ଚରଣ ମହାନ୍ତି ପ୍ରମୁଖ ଯେଉଁ ଅଳ୍ପ

# ମୁଖବନ୍ଧ

କେତେଜଣ ଓଡ଼ିଆ ସେମାନଙ୍କର ପଶ୍ଚିମ ଅନୁଭୂତିକୁ ନେଇ ପ୍ରବନ୍ଧ ରଚନା କରିଥିଲେ ତାହା ଅଧିକ ଥିଲା ବର୍ଣ୍ଣନାତ୍ମକ । ଏହି ଦୃଷ୍ଟିରୁ ମାନସିଂହଙ୍କ **ପଶ୍ଚିମ ପଥିକ** ପଶ୍ଚିମର ଭାବଗତ ଜଗତକୁ ଓଡ଼ିଆ ପାଠକମାନଙ୍କ ପାଖରେ ଉନ୍ମୋଚିତ କରିଥିଲା । କିନ୍ତୁ ପଶ୍ଚିମପଥିକ ବହୁଦିନ ହେଲା ପୁନର୍ମୁଦ୍ରିତ ହୋଇ ନଥିବାରୁ ଓଡ଼ିଆ ପାଠକମାନେ ମାନସିଂହଙ୍କର ଏହି ଗୁରୁତ୍ୱପୂର୍ଣ୍ଣ ରଚନାକୁ ପଢ଼ିବାରୁ ବଞ୍ଚିତ ଥିଲେ । ବହୁଦିନ ପରେ ମାନସିଂହଙ୍କର ଏହି ପ୍ରସିଦ୍ଧ ଭ୍ରମଣ କାହାଣୀ ଆଲୋଚ୍ୟ ଖଣ୍ଡରେ ସଙ୍କଳିତ ହେଉଛି ।

ମାନସିଂହଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ', 'କବି ଓ କବିତା', 'ଓଡ଼ିଆ ସାହିତ୍ୟ ଓ ସମାଜ' ଗ୍ରନ୍ଥାବଳୀରେ ସ୍ଥାନିତ ହୋଇଥିଲେ ବି *'ମାଟିର ମହାକବି ସାରଳା ଦାସ'* ସେହି ଖଣ୍ଡରେ ଅନ୍ତର୍ଭୁକ୍ତ ହୋଇପାରିନଥିଲା । ସ୍ୱାଧୀନତା ପରବର୍ତ୍ତୀ କାଳରେ ସାରଳା ଦାସଙ୍କୁ ଚିହ୍ନିବା ଏବଂ ଚିହ୍ନେଇବା ପାଇଁ ନୀଳକଂଠ ଦାସ, ହରେକୃଷ୍ଣ ମହତାବ, ଗୋପୀନାଥ ମହାନ୍ତି, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓ ସୁରେନ୍ଦ୍ର ମହାନ୍ତି ପ୍ରମୁଖ ଯେଉଁ ଉଦ୍ୟମ କରିଥିଲେ ତାର ଅଗ୍ରଭାଗରେ ଥିଲା ମାୟାଧର ମାନସିଂହଙ୍କର 'ମାଟିର ମହାକବି ସାରଳାଦାସ'ପୁସ୍ତକ । ଓଡ଼ିଆ ସାହିତ୍ୟକୁ ତଥା ଓଡ଼ିଆ ଜାତିକୁ ସ୍ରଷ୍ଟାର ଦୃଷ୍ଟି ନେଇ ଭଲପାଇବା ଓ ସେ ଭଲପାଇବାକୁ ଅନୁପମ ଭାଷାରେ ଅଭିବ୍ୟକ୍ତ କରିବା କ୍ଷେତ୍ରରେ 'ମାଟିର ମହାକବି ସାରଳାଦାସ' ଏକ ମାଇଲଖୁଣ୍ଟ । ମାନସିଂହଙ୍କ ପୂର୍ବରୁ ମୃତ୍ୟୁଞ୍ଜୟ ରଥ, ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ପ୍ରମୁଖ ସାରଳାଙ୍କ ମହାଭାରତର ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା କରିଛନ୍ତି, କିନ୍ତୁ ମାନସିଂହଙ୍କ ପରି କେହି ବି ସାରଳା ଦାସଙ୍କୁ ଓଡ଼ିଆ ପାଠକଙ୍କ ପାଖରେ ଏତେ ମନୋଜ୍ଞ ଭାବରେ ଉପସ୍ଥାପନ କରିପାରି ନାହାନ୍ତି । ଆଲୋଚ୍ୟ ଖଣ୍ଡରେ ମାଟିର ମହାକବି ସାରଳା ଦାସ ପୁନର୍ମୁଦ୍ରିତ ହୋଇ ସ୍ରଷ୍ଟା-ସମାଲୋଚକ ମାନସିଂହଙ୍କୁ ପୁଣି ଥରେ ଓଡ଼ିଆ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପନ କରୁଛି ।

ମାନସିଂହଙ୍କ ଶିକ୍ଷା ସମ୍ପର୍କରେ ପୁସ୍ତକାବଳୀ ଗ୍ରନ୍ଥାବଳୀର ସପ୍ତମ ଖଣ୍ଡରେ ମୁଦ୍ରିତ ହୋଇଥିଲା । ପରବର୍ତ୍ତୀ ସମୟରେ ବିଭିନ୍ନ ପତ୍ରପତ୍ରିକାରେ ଡ.ମାନସିଂହ ଶିକ୍ଷା ସମ୍ପର୍କରେ ଆଲୋଚନା କରିଆସିଥିଲେ । ଜୀବନର ଗୋଧୂଳି ସମୟରେ ସେ ଅନେକ ଦୀର୍ଘ ଆଲୋଚନା ପତ୍ରପତ୍ରିକାରେ ପ୍ରକାଶ କରିଛନ୍ତି । 'ପ୍ରଚଳିତ ଶିକ୍ଷା ବ୍ୟବସ୍ଥା କି ସତ୍ୟରେ ତ୍ରୁଟିପୂର୍ଣ୍ଣ' ନାମରେ ୨୫ ପୃଷ୍ଠାର ଏକ ଦୀର୍ଘ ଆଲୋଚନା ଲେଖିଛନ୍ତି । ସେ ଏଥିରେ ଦୋଷ ଅପେକ୍ଷା ଶିକ୍ଷା ବ୍ୟବସ୍ଥାର ଗୁଣ ଅଧିକ ଦେଖାଇଛନ୍ତି ।

କେବଳ ଶିକ୍ଷା ନୁହେଁ, ଓଡ଼ିଆମାନଙ୍କର ଜୀବନଚର୍ଯ୍ୟା, ରାଜନୀତିକ ଚେତନା ଓ ଅନ୍ୟାନ୍ୟ ସାମାଜିକ ସମସ୍ୟା ନେଇ ମାନସିଂହ ଲେଖିଥିବା ବହୁ ପ୍ରବନ୍ଧ ଏ ପର୍ଯ୍ୟନ୍ତ ସଙ୍କଳନଭୁକ୍ତ ହୋଇପାରିନଥିଲା । ତିନୋଟି ବିଭାଗରେ ମାନସିଂହଙ୍କର ୪୨ଟି ପ୍ରବନ୍ଧ ଗ୍ରନ୍ଥାବଳୀର ଅଷ୍ଟମ ଖଣ୍ଡରେ ସ୍ଥାନିତ ହୋଇଛି । ପାଠକମାନଙ୍କର ସୂଚନା ପାଇଁ ଏହ

# ମୁଖବନ୍ଧ

ମୁଖବନ୍ଧ ସହିତ ରଚନା ଗୁଡ଼ିକର ପ୍ରକାଶନ ସମ୍ପର୍କିତ ବିବରଣୀ ଏଥି ସହିତ ସ୍ଥାନିତ କରାଯାଉଛି । ଏ ଖଣ୍ଡରେ ନମୁନା ଭାବରେ ପତ୍ରିକାରେ ପ୍ରକାଶ ପାଇଥିବା 'ପୁଷ୍ପିତା ଲେଖକର କୈଫିୟତ' ଲେଖା ପ୍ରକାଶ କରାଯାଇଛି – ଯେପରିକି ଲେଖା ପ୍ରକାଶ ପାଇବା ସଙ୍ଗେ ସଙ୍ଗେ କିପରି ପାଠକୀୟ ପ୍ରତିକ୍ରିୟା ପ୍ରକାଶପାଇଛି ଓ ଲେଖକ ପର ମାସରେ ଯୁକ୍ତିଯୁକ୍ତ ଉତ୍ତର କରିଛନ୍ତି ।

ଏହା ମାନସିଂହଙ୍କ ଗଦ୍ୟରଚନାର କିଛି ଅଂଶ ମାତ୍ର । ତାଙ୍କ ରଚିତ ସମଗ୍ର ସୃଷ୍ଟି ସଙ୍କଳିତ ହୋଇ ନ ପାରିବାରୁ ଏବେବି ସେ ମୁଖ୍ୟତଃ ପ୍ରେମ-ପ୍ରଣୟର କବି ଭାବରେ ଚିହ୍ନିତ ହୋଇ ଚାଲିଛନ୍ତି । 'ଗୀତା ମାହାତ୍ମ୍ୟ', ଗୀତାର ଭାଷ୍ୟ, ଅନୂଦିତ 'ଅଥଲୋ'ନାଟକ, 'ଅନ୍ୱେଷଣ' ଉପନ୍ୟାସ ଓ କେତେକ ଦୁର୍ଲ୍ଲଭ ଗଳ୍ପ, ଅନେକ ପ୍ରବନ୍ଧ ସମାଲୋଚନା, ମୂଲ୍ୟବାନ ସଂପାଦକୀୟ, କ୍ଷୁଦ୍ର ଆକାରରେ ବିଭିନ୍ନ ପତ୍ରିକାରେ ପ୍ରକାଶ ପାଇଥିବା ଜୀବନୀ ତଥା ପୁସ୍ତକ ସମୀକ୍ଷା ଏବେବି ଅନ୍ଧାରରେ ରହିଛି । ଯଦି ଭବିଷ୍ୟତରେ ସୁଯୋଗ ଆସେ ମାନସିଂହଙ୍କର ଅନ୍ୟ ରଚନା ଗୁଡ଼ିକ ପରବର୍ତ୍ତି ଖଣ୍ଡରେ ପ୍ରକାଶିତ ହେବ ।

ଡକ୍ଟର ମାନସିଂହଙ୍କ ପତ୍ନୀ ସ୍ୱର୍ଗୀୟା ହେମଲତା ମାନସିଂହ ସେତେବେଳେ ମାନସିଂହଙ୍କର କେତେକ ଅପ୍ରକାଶିତ ଲେଖାର ଜେରକ୍ସ କପି ମୋତେ ଦେଇଥିଲେ । ସେଥିରୁ ଦୁଇଟି ପ୍ରବନ୍ଧ ଡକ୍ଟର ନିତ୍ୟାନନ୍ଦ ଶତପଥୀଙ୍କ ସମ୍ପାଦିତ 'ମାନସିଂହ ପରିକ୍ରମା'ରେ ପ୍ରକାଶ କରାଯାଇଥିଲା, ଅନ୍ୟ କେତେଟି ଏଇ ଅଷ୍ଟମ ଖଣ୍ଡରେ ପ୍ରକାଶିତ ହେଉଛି । ଏ ଅବସରରେ ସ୍ୱର୍ଗୀୟା ହେମଲତା ମାନସିଂହଙ୍କୁ ସଶ୍ରଦ୍ଧ ସ୍ମରଣ କରୁଅଛି ।

ମାନସିଂହ ଗ୍ରନ୍ଥାବଳୀ ଅଷ୍ଟମଖଣ୍ଡ ପ୍ରକାଶନ ଅବସରରେ ମୋର ଅନ୍ତରଙ୍ଗ ବନ୍ଧୁ ଶ୍ରୀ ଦେବେନ୍ଦ୍ର କୁମାର ଦାଶଙ୍କ ପ୍ରେରଣା ଓ ପରାମର୍ଶ ପାଇଁ କୃତଜ୍ଞତା ଜଣାଉଛି । ପ୍ରକାଶକ ଶ୍ରୀ ଅଭିରାମ ମହାପାତ୍ର, ଶ୍ରୀ ମନୋଜ କୁମାର ମହାପାତ୍ର ଓ ଶ୍ରୀ ତପନ କୁମାର ମହାପାତ୍ରଙ୍କୁ କୃତଜ୍ଞତା ଜଣାଉଛି ।

ମକର ସଂକ୍ରାନ୍ତି, ୨୦୧୪

**ଡକ୍ଟର ଶ୍ରୀଚରଣ ମହାନ୍ତି**
ପ୍ଲଟ ନଂ ୮୮୬, ଚଣ୍ଡିମାତା କଲୋନୀ
ପୋ:ଅ: ରସୁଲଗଡ଼, ଭୁବନେଶ୍ୱର-୭୫୧ ୦୧୦

# ସୂଚୀପତ୍ର



## ପ୍ରବନ୍ଧାବଳୀ

## ପ୍ରବନ୍ଧ ବିଭାଗ–୧



## ପ୍ରବନ୍ଧ ବିଭାଗ–୧

## ସମାଜ ଓ ସଂସ୍କୃତି



—

**ରଚନା ଗୁଡ଼ିକର ପ୍ରକାଶନ କାଳ-**

| | |
|---|---|
| ୧-ପଶ୍ଚିମ ପଥିକ-(ଭ୍ରମଣ କାହାଣୀ) | (୧) ଜାନୁୟାରୀ ୧୯୩୮, 'ନବଭାରତ'୪/୮ରୁ କ୍ରମଶଃ ପ୍ରକାଶିତ । |
| ୨-ମାଟିର ମହାକବି ସାରଳା ଦାସ- | (୧) ପ୍ରଥମସଂସ୍କରଣ ୧୯୫୮, ଦାସ ବ୍ରଦର୍ସ, ବ୍ରହ୍ମପୁର/କଟକ |
| | (୨) ଦ୍ୱିତୀୟ ସଂସ୍କରଣ ୧୯୭୧, ଦାସ ବ୍ରଦର୍ସ, ବ୍ରହ୍ମପୁର/କଟକ |
| ୩-ଜୀବନ ପଥ (ପ୍ରବନ୍ଧ ସଙ୍କଳନ) | (୧) ପ୍ରଥମ ସଂସ୍କରଣ ୧୭.୧୦.୧୯୪୮ |
| | (୨) ପରିମାର୍ଜିତ ସଂସ୍କରଣ-୧୯୫୭-ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, ବ୍ରହ୍ମପୁର/କଟକ |
| ୪-ଜୀବନୀ ଓ ପ୍ରବନ୍ଧ | ୧୯୫୬ ଦ୍ୱିତୀୟ ସଂସ୍କରଣ ଓ ପଞ୍ଚମ ମୁଦ୍ରଣ, ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର୍, କଟକ |
| ୫-ମୁଁ କାହିଁକି ଲେଖେ ? | ୧-୭-୧୯୫୦ 'ଡଗର', ୧୪ଶ ବର୍ଷ ପ୍ରଥମ ସଂଖ୍ୟା ପୃ.୧୨-୧୪ ଓ ୧୭ |
| ୬-ମେହେରଙ୍କ ମହତ୍ତ୍ୱ | (୧) ଏହା ପ୍ରଥମେ 'ଶଙ୍ଖ' ୨ୟ ବର୍ଷ ପ୍ରଥମ ସଂଖ୍ୟା, ଆଷାଢ଼, ୧୯୪୬ |
| | (୨) 'କବି ଓ କବିତା' (ନୂତନ ସଂସ୍କରଣ) ୧୯୪୮ ପ୍ରକାଶକ-ଭାରତୀ ବିହାର, ଚାଉଳିଆଗଞ୍ଜ, କଟକ |
| | (୩) କିଛି ପରିବର୍ତ୍ତିତ ରୂପ ନେଇ ଗଙ୍ଗାଧର ଗ୍ରନ୍ଥାବଳୀର ମୁଖବନ୍ଧ ରୂପରେ ଦାସ ବ୍ରଦର୍ସ ଦ୍ୱାରା ପ୍ରକାଶିତ |
| ୭-ସହବିତରକ ସାହୁଜୀ | ଲକ୍ଷ୍ମୀନାରୟଣ(ସାହୁ) ସ୍ମରଣିକା-୧୯୬୩, ପୃ ୧୮-୨୧ ସଂପାଦନା-ସୁରେନ୍ଦ୍ର ମହାନ୍ତି, ଗୋପୀନାଥ ଦାଶ । |
| ୮-ନମସ୍କରଣୀୟ ବିଶ୍ୱନାଥ- | 'ଉତ୍କଳ ସାହିତ୍ୟ' (ନୂଆ ପ୍ରସ୍ଥ) ତୃତୀୟ ଭାଗ, ୧ମ ସଂଖ୍ୟା, ବୈଶାଖ-୧୩୬୩ ସାଲ |
| ୯-ତରୁଣ ଗବେଷକ ଚିତ୍ତରଞ୍ଜନ | 'ଝଙ୍କାର', ୭ମ ବର୍ଷ ୩ୟ ସଂଖ୍ୟା, ପୃ-୨୬୩-୨୬୭ |
| ୧୦-ଉତ୍କଳର ଜଣେ ଅଜ୍ଞାତ କବି | 'ଝଙ୍କାର' ୮ମ ବର୍ଷ ୬ଷ୍ଠ ସଂଖ୍ୟା, ସେପ୍ଟେମ୍ବର, ୧୯୫୬ |

ମୁଖବନ୍ଧ

ପରେ କବି ସତ୍ୟବାଦୀ ନାୟକଙ୍କ 'ବ୍ରଜ ମାଧୁରୀ'
କାବ୍ୟର ମୁଖବନ୍ଧ
ପ୍ରଥମସଂସ୍କରଣ-୧୯୬୨, ପ୍ରକାଶକ
ଶ୍ରୀଅଭିରାମ ମହାପାତ୍ର
ଗ୍ରନ୍ଥମନ୍ଦିର, କଟକ-୨

୧୧-ହୀରାଖଣ୍ଡମୋହନ ବ୍ରଜମୋହନ ଉତ୍କଳ ସାହିତ୍ୟ ସମାଜରେ ୨୦.୧୨.୧୯୭୨ରେ ପ୍ରଦତ୍ତ ଅଭିଭାଷଣ

୧୨-ସାହିତ୍ୟ ସାଧକ ଆର୍ତ୍ତବଲ୍ଲଭ ଆର୍ତ୍ତବଲ୍ଲଭ ସ୍ମରଣିକା-୧୯୬୩

୧୩-ପାଣ୍ଡେ ଓ ମେହେର- 'ଝଙ୍କାର' ୧୪ଶ ୭ମ ସଂଖ୍ୟା, ଅକ୍ଟୋବର-୧୯୬୨

୧୪-ଦରଦୀ କବି ଲକ୍ଷ୍ମୀକାନ୍ତ

୧୫-ଗଡ଼ନାୟକଙ୍କ ଷଷ୍ଠୀ ପୂର୍ତ୍ତି ଗଡ଼ନାୟକ ଅଭିନନ୍ଦନ ଗ୍ରନ୍ଥ, ୧୯୭୧, ପୃ ୧୦-୧୨, ସଂ ଲକ୍ଷ୍ମୀଧର ନାୟକ ।

୧୬-ବିଦ୍ୟୁତ୍‌ପ୍ରଭା 'ନବରବି', ୩ୟ ବର୍ଷ ୫ମ ସଂଖ୍ୟା, ୧୯୭୩, ନଭେମ୍ବର

୧୭-ଐତିହ୍ୟ ଓ ସମସାମୟିକତା ପାଣ୍ଡୁଲିପିରୁ ସଂଗୃହୀତ

୧୮-ଆମର ଇତିହାସ ଓ ଅଗ୍ରଗତି-'ଝଙ୍କାର' ୨୩ଶ ବର୍ଷ ୧୧ଶ ସଂଖ୍ୟା, ଫେବୃୟାରୀ, ୧୯୭୨

୧୯-ଶ୍ରୀ ଅରବିନ୍ଦ ଓ ମୁଁ 'ନବରବି' ୪ର୍ଥ ବର୍ଷ ୨ୟ ସଂଖ୍ୟା, ଅଗଷ୍ଟ ୧୯୭୩

୨୦-ମଲ୍ଲ ଓ ମୋଜେସ୍ ମଧୁସୂଦନ 'ନବରବି' ୫ମ ବର୍ଷ ୨ୟ ସଂଖ୍ୟା, ଅଗଷ୍ଟ ୧୯୭୪

୨୧-ପାଇକଖେଦା ଏକ ଚ୍ୟାଲେଞ୍ଜ 'ନବରବି' ୩ୟ ବର୍ଷ ୧୦ମ ସଂଖ୍ୟା, ଏପ୍ରିଲ, ୧୯୭୩

୨୨-ଗର୍କିଙ୍କ ଗହଣରେ 'ଝଙ୍କାର' ୨୦ଶ ବର୍ଷ ୪ର୍ଥ ସଂଖ୍ୟା, ଜୁଲାଇ ୧୯୬୮

୨୩-ଇଙ୍ଗ ଭାରତୀୟ ସାହିତ୍ୟ 'ନବରବି' ୩ୟ ବର୍ଷ ୪ର୍ଥ ସଂଖ୍ୟା, ଅକ୍ଟୋବର ୧୯୭୨

୨୪-ସାହିତ୍ୟର ସାଧନା ମେ' ୧୯୫୦, ପ୍ରଥମ ବିଷୁବ ମିଳନର ପ୍ରଥମ ଅଧିବେଶନରେ ପ୍ରଦତ୍ତ ସଭାପତି ଅଭିଭାଷଣ

'ଝଙ୍କାର' ୨ୟ ବର୍ଷ ୨ୟ ସଂଖ୍ୟାରେ ପ୍ରକାଶିତ/
'ଝଙ୍କାର' ନଭେମ୍ବର, ୧୯୭୩, ୨୫ଶ ବର୍ଷ ୮ମ ସଂଖ୍ୟାରେ
ମାନସିଂହଙ୍କ ପରଲୋକ ଗମନ ପରେ ପୁନଃପ୍ରକାଶିତ ।

୨୫-ଓଡ଼ିଆ ଭାଷାର ସାଂସ୍କୃତିକ ସଙ୍କଟ ଅପ୍ରକାଶିତ ପାଣ୍ଡୁଲିପି

୨୬-ଓଡ଼ିଆ ଭାଷାର ନବଯୁଗ — ଜୁଲାଇ ୧୯୫୬, ଆକାଶବାଣୀ କଟକରୁ ପ୍ରସାରିତ, 'ଆକାଶବାଣୀ ପ୍ରସାରିକା'ପତ୍ରିକାରେ ମୁଦ୍ରିତ

୨୭-ଓଡ଼ିଆ ସାହିତ୍ୟ ପରିଚୟ — 'ଝଙ୍କାର' ୯ମ ବର୍ଷ ୧୧ଶ ସଂଖ୍ୟା, ପୃ ୯୯୮-୧୦୦୧

୨୮-କବି ଓ ଅଭିଜାତ — 'ରସଚକ୍ର' ପ୍ରଥମ ବର୍ଷ ତୃତୀୟ ସଂଖ୍ୟା, ବୈଶାଖ-୧୩୪୦ସାଲ

୨୯-ସମାଲୋଚନାର ଧାରା — (ଡ. ନିତ୍ୟାନନ୍ଦ ଶତପଥୀଙ୍କୁ ପତ୍ର) 'ମାନସିଂହଙ୍କ ଗୀତିନାଟ୍ୟର କେତୋଟି ଚରିତ୍ର'

ଲେଖକ ନିତ୍ୟାନନ୍ଦ ଶତପଥୀଙ୍କୁ ଏକ ଦୀର୍ଘପତ୍ର, 'ବନଫୁଲ' ୨ୟ ବର୍ଷ ୫ମ ସଂଖ୍ୟା-୧୯୬୮

୩୦-'ପୁଷ୍ପିତା ଲେଖକର କୈଫିୟତ'- 'ସହକାର' ୧୧ଶ ବର୍ଷ ୬ଷ୍ଠ ସଂଖ୍ୟା, ସେପ୍ଟେମ୍ବର ୧୯୩୦

ଅଗଷ୍ଟ ୧୯୩୦ରେ 'ସହକାର' ୧୧ଶ ବର୍ଷ ଚତୁର୍ଥ ସଂଖ୍ୟାରେ ମାନସିଂହଙ୍କର 'ପୁଷ୍ପିତା' ନାଟିକା ପ୍ରକାଶିତ ହେବା ପରେ ସହକାର ୧୧ଶ ବର୍ଷ ୫ମ ସଂଖ୍ୟାରେ ଶ୍ରୀ ହରିଶ୍ଚନ୍ଦ୍ର ବଡ଼ାଲ 'ପୁଷ୍ପିତା ନାଟିକାର ସାର୍ଥକତା' ନାମରେ ୧୦ ପୃଷ୍ଠାର ଏକ ଦୀର୍ଘ ସମାଲୋଚନା ଲେଖିଥିଲେ । ମାନସିଂହ ଏହାର ଉତ୍ତରରେ ପରସଂଖ୍ୟାରେ ଏହି ଉତ୍ତର ପ୍ରଦାନ କରିଥିଲେ ।

୩୧-ସାହିତ୍ୟରେ ନୂତନ ଭାବଧାରା — 'ଝଙ୍କାର' ୯ମ ବର୍ଷ ୧୦ମ ସଂଖ୍ୟା, ଜାନୁୟାରୀ ୧୯୫୮

୩୨-ଓଡ଼ିଶା ଓ ଜଗନ୍ନାଥ — 'ଉତ୍କଳ ପ୍ରସଙ୍ଗ', ଜୁଲାଇ ୧୯୬୯

୩୩-ରଥଯାତ୍ରା — **ଅପ୍ରକାଶିତ ପାଣ୍ଡୁଲିପି**

୩୪-ଆଦିବାସୀ ଓ ଓଡ଼ିଆ ସଂସ୍କୃତି — 'ବନଫୁଲ'-୧୯୭୦ ପୃ ୧୦୧ ରୁ ୧୦୫/ ସଂପାଦନା- ଉପେନ୍ଦ୍ର ମିଶ୍ର

୩୫-କୋଣାର୍କ — 'ସହକାର', ୧୬ଶ ବର୍ଷ ୪ର୍ଥ ସଂଖ୍ୟା, ଜୁଲାଇ ୧୯୫୩

୩୬-ସନ୍ୟାସ ଓ ସଂସାର — 'ସମାଜ', ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟା, ଜୁଲାଇ, ୧୯୬୪

୩୭-ଯୌନ ଓ ଯବନିକା — 'ଝଙ୍କାର', ୨ୟ ବର୍ଷ ୮ମ ସଂଖ୍ୟା, ନଭେମ୍ବର ୧୯୫୦

୩୮-କାଷ୍ଟ ଓ କୃଷ୍ଟି — 'ଝଙ୍କାର' ୧୦ମ ବର୍ଷ ୬ଷ୍ଠ ସଂଖ୍ୟା

| | |
|---|---|
| ୩୯-ସହଯୋଗ ଅଭ୍ୟାସ | 'ଆଗାମୀ' ୩ୟ ବର୍ଷ ୨ୟ ସଂଖ୍ୟା ପୃ-୧୬-୧୮ |
| ୪୦-ଭାରତରେ କର୍ତ୍ତବ୍ୟବୋଧ | 'ନବରବି', ୨ୟ ବର୍ଷ ୧୧ଶ ସଂଖ୍ୟା, ମେ' ୧୯୭୨ |
| ୪୧-ପ୍ରଚଳିତ ଶିକ୍ଷାବ୍ୟବସ୍ଥା କି'ସତରେ ତ୍ରୁଟିପୂର୍ଣ୍ଣ ? | 'ନବରବି', ୩ୟ ବର୍ଷ ୧ମ ସଂଖ୍ୟା ଜୁଲାଇ ୧୯୭୨ |
| ୪୨-ଜୀବନର ଚରମ ପ୍ରଶଂସନୀୟତା କେଉଁଠି ? | 'ନବରବି' ୩ୟ ବର୍ଷ ୫ମ ସଂଖ୍ୟା, ନଭେମ୍ବର, ୧୯୭୨ |
| ୪୩-ଓଡ଼ିଆମାନେ ପଛୁଆ ଓ ଦରିଦ୍ର କାହିଁକି ? | 'ନବରବି' ୩ୟ ବର୍ଷ ୬ଷ୍ଠ ସଂଖ୍ୟା, ଡିସେମ୍ବର, ୧୯୭୨ |
| ୪୪-ଆମ ଗଣତନ୍ତ୍ରର ଭବିଷ୍ୟତ (୧) | 'ନବରବି' ୩ୟ ବର୍ଷ ୭ମ ସଂଖ୍ୟା, ଜାନୁୟାରୀ, ୧୯୭୩ |
| ୪୫-ଆମ ଗଣତନ୍ତ୍ରର ଭବିଷ୍ୟତ (୨) | 'ନବରବି' ୩ୟ ବର୍ଷ ୯ମ ସଂଖ୍ୟା, ମାର୍ଚ୍ଚ ୧୯୭୩ |
| ୪୬-ସେ ଦେଶର ନାରୀ ଏ ଦେଶର ପୁରୁଷ । | 'ନବରବି' ୩ୟ ବର୍ଷ ୧୨ଶ ସଂଖ୍ୟା, ଜୁନ୍ ୧୯୭୩ |

—

# କୃତଜ୍ଞତା ଜ୍ଞାପନ

କହିରଖେ ଯେ ଡକ୍ଟର୍ ବସନ୍ତକୁମାର ବେହୁରାଙ୍କ ସହାୟତା ବିନା ଏ ପୁସ୍ତକ ଆଦୌ ପ୍ରକାଶିତ ହୋଇପାରିନଥାନ୍ତା । ଏଥିରେ ଥିବା ପତ୍ରଗୁଡ଼ିକ ତାଙ୍କର ଅପାଙ୍କ ନିକଟକୁ ଲେଖାଯାଇଥିଲା । ସେ ପତ୍ରଗୁଡ଼ିକରେ ଏତେ ବ୍ୟକ୍ତିଗତ କଥା ଥିଲା ଯେ ତାକୁ ପ୍ରକାଶ କରିବାର କଳ୍ପନା ପତ୍ରଲେଖକର ମନରେ କେବେ ଉଠିନଥିଲା । ଚପଳଚିତ୍ତ ସେତେବେଳର କିଶୋର ବସନ୍ତକୁମାର କିନ୍ତୁ ଅପାଙ୍କ ବାକ୍‌ସରୁ ଏ ଚିଠି ସବୁ ଚୋରିକରି ସାଇତି ରଖିଲେ ଏବଂ ବାରମ୍ବାର ସେଗୁଡ଼ିକ ଏକାଠି ପ୍ରକାଶ କରିବାକୁ କହିଲେ । ବହୁବର୍ଷ ପରେ ଷ୍ଟୁଡ଼େଣ୍ଟସ୍ ଷ୍ଟୋରର ଅନୁରୋଧରେ ଯେତେବେଳେ ବହିଟି ପ୍ରକୃତରେ ପୂର୍ଣ୍ଣାଙ୍ଗ କରିବାକୁ ବସିଲି, ବସନ୍ତକୁମାରଙ୍କ ଚୌର୍ଯ୍ୟ ଓ ଧୈର୍ଯ୍ୟ ପ୍ରତି ବାରମ୍ବାର କୃତଜ୍ଞ ନ ହୋଇ ରହିପାରିଲି ନାହିଁ । ପ୍ରକାଶିତ ଅନେକ ପତ୍ର ସେ ସ୍ୱୟଂ ନକଲ କରିଦେଇଥିଲେ ।

ବସନ୍ତ ଓ ତାଙ୍କ ଅପାଙ୍କ ପ୍ରତି ଏଥିପାଇଁ କୃତଜ୍ଞ । ଏମାନଙ୍କଠାରେ ଲେଖକ କିନ୍ତୁ ଏତେ ଭାବରେ କୃତଜ୍ଞ ଯେ, ଏହି କଥାଟି କେବଳ କହି ଚାଲ ବଜାୟ ରଖୁଛି ବୋଲି ଅଭିଯୋଗ ଶୁଣିବାର ଭୟ ମୋର ଥିଲା; ତେଣୁ ନୀରବ ଥିଲି । କିନ୍ତୁ ଦେଖୁଛି, ସେହି ନୀରବତା ଦ୍ୱାରା ମୁଁ ଘୋରତର ଅପରାଧ, ଅକୃତଜ୍ଞତା ଓ ଅସୌଜନ୍ୟରେ ଭାଗୀ ହେବାକୁ ଯାଉଛି । ଇତି ।

ମାନସିଂହ

# ପ୍ରଥମ ସଂସ୍କରଣର ଭୂମିକା

ସେକ୍‌ସପିଅରଙ୍କ ଜନ୍ମସ୍ଥାନ ଓ ଗୋଟିଏ ଇଂରେଜ କୃଷକର ଖମାରରେ ମୁଁ ଯାହା ଯାହା ଦେଖିଥିଲି, ତାହା ପ୍ରସିଦ୍ଧ ଇଂରେଜୀ ମାସିକପତ୍ର 'ମଡ଼ର୍ଣ୍ଣରିଭ୍ୟୁ'ରେ ପ୍ରକାଶିତ ହୋଇଥିଲା । ମୋର ଇଚ୍ଛା ଥିଲା, ସେ ଦୁଇଟିର ଓଡ଼ିଆ ଅନୁବାଦ ଏଇ ପୁସ୍ତକରେ ସନ୍ନିବେଶିତ କରିଥାନ୍ତି; କିନ୍ତୁ ମୋ' ନିକଟରେ ସେ ଲେଖାଗୁଡ଼ିକର ନକଲ ନଥିବାରୁ ତାହା କରିପାରିଲି ନାହିଁ । ପରେ ସୁବିଧାହେଲେ ଯୋଡ଼ି ଦିଆହୋଇପାରେ ।

ଏ ବହିର ପ୍ରଥମ ପାଞ୍ଚଟି ଅଧ୍ୟାୟ 'ନବଭାରତ' ପତ୍ରିକାରେ ପ୍ରକାଶିତ ହୋଇଥିଲା । ଷଷ୍ଠ ଅଧ୍ୟାୟଟିର (ନେପ୍‌ଲ୍‌ସ ହାତଲେଖାଟି) 'ନବଭାରତ'ର କର୍ତ୍ତୃପକ୍ଷଙ୍କ ଦାୟିତ୍ୱ ଶୂନ୍ୟତା ଯୋଗୁଁ ହଜିଗଲା; ସେଥି ସଙ୍ଗେ କେତେକ ସୁନ୍ଦର ଛବି ମଧ୍ୟ । ତା'ପରେ ଲେଖା ବନ୍ଦଥିଲା, ଏହି ଦୀର୍ଘ ପାଞ୍ଚବର୍ଷ । ପ୍ରକାଶକଙ୍କ ଅନୁରୋଧରେ ଇତସ୍ତତଃ ବିକ୍ଷିପ୍ତ ସାମଗ୍ରୀମାନଙ୍କୁ ଯୋଡ଼ାଯୋଡ଼ିକରି ଏ ଆକାରରେ ବହି ବାହାର କରିବାକୁ ହୋଇଛି ।

ଅନେକେ ପ୍ରଶ୍ନ କରିଥାନ୍ତି, ଆପଣ ବର୍ଣ୍ଣାଡ୍‌ଶ'ଙ୍କୁ ଭେଟିଛନ୍ତି ? ଆପଣ ତ ସିଗାରେଟ୍ ବା ମଦ୍ୟପାନ କରନ୍ତିନାହିଁ, ବିଲାତ କାହିଁକି ଯାଇଥିଲେ ? ଅମୁକ ଲୋକ ଏ ପ୍ରକାର ଡିଗ୍ରୀ ଆଣିଲା, ଆପଣ ଆଣିଲେନି ? ମୁଁ କି ଉଦ୍ଦେଶ୍ୟରେ ଓ କି ଅବସ୍ଥାରେ ବିଦେଶ ଯାଇଥିଲି, ତାହା ଏହି ପୁସ୍ତକରେ ବର୍ଣ୍ଣିତ ଅଛି । ଉପରି-ଲିଖିତ ସିଦ୍ଧିଗୁଡ଼ିକ ମଧ୍ୟ ମୋ' ପକ୍ଷରେ ଲୋଭନୀୟ ବା କ୍ଳେଶସାଧ୍ୟ ନଥିଲା । 'ସାହେବ' ହେବାକୁ ବସିଲେ ବିଲାତ ଯିବାର କୌଣସି ଦରକାର ନାହିଁ । ଜଣେ ଓଡ଼ିଆ ଜମିଦାର ଓଡ଼ିଶାର ଘୋର ମଫସଲ ଅଞ୍ଚଳରେ ରହି ମଧ୍ୟ ପ୍ରତିଦିନ ଯେଉଁ ପାଣି ପିଅନ୍ତି, ତାହା ଫ୍ରାନ୍‌ସ ବା ସେଇପରି କୌଣସି ୟୁରୋପୀୟ ଦେଶରୁ ଅଣାନ୍ତି; କିନ୍ତୁ ସେ ବମ୍ବେ ଆରପଟ ମାଡ଼ିନାହାନ୍ତି ।

ଯେଉଁ ଇଂଲାଣ୍ଡର ବର୍ଣ୍ଣନା ଏଥିରେ ଅଛି, ଗତ ପାଞ୍ଚବର୍ଷ ଭିତରେ ତା' ଉପରେ ଏକ ଅଶ୍ରୁତପୂର୍ବ ଧ୍ୱଂସଲୀଳାର ଅଭିନୟ ଚାଲିଯାଇଛି । ଖବରକାଗଜରୁ ପଢ଼େଁ ଯେ, ଇଂରେଜ ଜାତିର ଏଥିଯୋଗୁଁ ଏକ ଆଧ୍ୟାତ୍ମିକ ପରିବର୍ତ୍ତନ ଘଟିଯାଇଛି । ଧନୀ-ଦରିଦ୍ରର ଭେଦ ଆଉରି ଅନେକ କମିଯାଇଛି । ତା'ହେଲେ ଜାତି ଭାବରେ ଇଂରେଜର ଚରିତ୍ର ଆହୁରି ମଧୁରତର ଓ ବିସ୍ମୟକର ହୋଇଉଠିବ ବୋଲି ମୋର ବିଶ୍ୱାସ । ଇଂଲାଣ୍ଡ ଓ ଭାରତର ମିଳନ ବିଧାତୃ-ପ୍ରେରିତ ବୋଲି ମୁଁ ବିଶ୍ୱାସକରେ । ଇଂରେଜର ନାଗରିକ ସ୍ୱାଧୀନତା ସଙ୍ଗେ ଭାରତର ଆଧ୍ୟାତ୍ମିକ ପିପାସାର ମିଳନ ହେଲେହିଁ ଜଗତରେ ଶାନ୍ତି ଆସିବ । ଏଇ ମିଳନର ଶୁଭ ଶଙ୍ଖଧ୍ୱନି ମହାମାନବର ମିଳନ ପ୍ରାଙ୍ଗଣରେ ବାଜିଉଠୁ ।

। ଇତି ।

ମାୟାଧର ମାନସିଂହ

# ଦ୍ୱିତୀୟ ସଂସ୍କରଣର ଭୂମିକା

ଏହା ଭିତରେ ଭାରତ ସ୍ୱାଧୀନ ହୋଇଛି ଓ ଦୁଇଭାଗରେ ବିଭକ୍ତ ହୋଇଯାଇଛି । କଂଗ୍ରେସ ଭାରତର ଶାସନ ଚାରିବର୍ଷ ଚଳେଇଲା ପରେ, ଅନେକେ ସ୍ୱାଧୀନତା ପାଇଲା ପରେ ଯେଉଁ ସ୍ୱର୍ଗରାଜ୍ୟ ଆଶା କରିଥିଲେ, ତାହା ନପାଇ ଅତ୍ୟନ୍ତ ନିରାଶ ଓ ତିକ୍ତ ହୋଇ ଉଠିଛନ୍ତି । କିନ୍ତୁ ଇଂରେଜୀରେ ଗୋଟିଏ କଥା ଅଛି– 'ଗୋଟିଏ ଜାତି ସେଇ ପ୍ରକାର ଶାସନହିଁ ପାଏ, ଯାହା ପାଇବା ପାଇଁ ସେ ସେହି ପରିମାଣରେ ଯୋଗ୍ୟ ।' ମାଟିଗୁଣରେ ଶସ୍ୟ । କେବଳ କଂଗ୍ରେସ ନେତାଙ୍କୁ ଗାଳିଦେଲେ ଫଳ କିଛି ନାହିଁ । ଆମେ ଇଂରେଜଙ୍କୁ ଏଇପରି ଗାଳିଦେଉଥିଲୁ । ଅସଲ କଥା ହେଉଛି ଜାତୀୟ ଚରିତ୍ର– ତାହା ଯେ ପର୍ଯ୍ୟନ୍ତ ଠିକ୍ ବାଟରେ ଗଢ଼ା ନହୋଇଛି, ଯେଉଁ ଦଳ ଶାସନାସନରେ ବସନ୍ତୁ, ବିଶେଷ ପରିବର୍ତ୍ତନର ଆଶା ବିଡ଼ମ୍ବନା ମାତ୍ର । ସମଗ୍ର ଜାତିଟା ତ ପଙ୍ଗୁ ଓ କଳୁଷିତ,– ଆଉ ମନ୍ତ୍ରୀ, ନେତା, ଏମ୍.ଏଲ୍.ଏ. ଓ ହାକିମମାନେ ହଠାତ୍ କିମିତି ଉତ୍ତମ ପୁରୁଷ ହୋଇଉଠିବେ ? ମୋର ପାଠକମାନଙ୍କୁ ଅନୁରୋଧ, ଏଇ ପୁସ୍ତକ ପଢ଼ିଲାବେଳେ ସେମାନେ ଆମ ଜାତୀୟ ଚରିତ୍ରର ଅଭାବ ନେଇ ମୁଁ ଯାହା ଯେଉଁଠି ଲେଖିଛି ଏ ବହିରେ ତାହା ପ୍ରତି ବିଶେଷ ନଜର ଦେବେ । ସେତକ ନ କଲେ ଉପନ୍ୟାସ ପରି ଏ ବହିକି ପଢ଼ିଯିବାରେ କିଛି ଲାଭନାହିଁ ବୋଲି ମୁଁ ମନେକରିବି । ଇତି ।

ସମ୍ବଲପୁର : ୯-୧୧-୫୧ — ମାୟାଧର ମାନସିଂହ

# ଯାତ୍ରାରମ୍ଭ

ପୁରୁଷର ଆଶ୍ରୟ ପାଇଁ ନାରୀ ଯେଉଁ ନୀଡ଼ ରଚନା କରେ, ତାରି ନାମ ଘର । ସେହି ଆଶ୍ରୟର ଏରୁଣ୍ଡି ଡେଇଁଲେଇ ପ୍ରବାସ ଆରମ୍ଭ ଏବଂ ତା'ପରେ ପୁରୁଷ ନିଃସଙ୍ଗ ନିରାଶ୍ରିତ ହୋଇ ବିରାଟ ପୃଥିବୀର ସାଧାରଣ ରାଜପଥରେ ଠିଆହୁଏ । ମହାକବି କାଳିଦାସଙ୍କ କବିତା ଏହିପରି ଗୃହ-ନିର୍ଗତ ପ୍ରବାସୀ ପଥିକମାନଙ୍କର ଓ ଗୃହସ୍ଥା ବିରହିଣୀ ପଥିକ-ବଧୂମାନଙ୍କର ଅନ୍ତର୍ବ୍ୟଥାରେ ସ୍ଥାନେ ସ୍ଥାନେ କରୁଣ ହୋଇଉଠିଛି । ଦେଶ ଓ କାଳ, ପଥିକ ଓ ତା'ର ପ୍ରିୟଜନମାନଙ୍କ ଭିତରେ ଯେଉଁ ବିଚ୍ଛେଦ ଘଟାଏ, ତାହା ମହାକବି ନିଜ ପ୍ରାଣରେ ଅନୁଭବ କରିଥିବେ; ନଚେତ୍ ତାଙ୍କ ବୀଣାତାରକୁ ପଥିକ-ବଧୂର ବିଳାପ ବାରମ୍ବାର ଆଘାତ କରନ୍ତା କାହିଁକି ?

୧୯୩୭ ଅଗଷ୍ଟ ମାସ ୨୦ ତାରିଖର ଉଜ୍ଜ୍ୱଳ ପ୍ରଭାତରେ ମୋତେ ପ୍ରବାସ କରିବାକୁ ହେବାରୁ ମୋର ପରିଚିତ-ପଥିକବେଦନା ନୂତନ କରି ମତେ ଅନୁଭବ କରିବାକୁ ହେଲା । ସେଦିନ ସକାଳେ ବିଜୟନଗର ଷ୍ଟେସନରେ ରେଳଗାଡ଼ି ମୋର ପ୍ରିୟଜନମାନଙ୍କୁ ମୋର ଦୃଷ୍ଟିର ଅନ୍ତରାଳକୁ ଧୀରେ ଧୀରେ ବୋହିନେବାର ମୁଁ ଦେଖି ଦେଖି ପ୍ଲାଟଫର୍ମ୍‌ର କୌଣସି ଅଂଶରେ ଠିଆହୋଇଥାଏ । ସେମାନେ କ୍ରମେ ଅଦୃଶ୍ୟ ହେଲେ; ମୁଁ ମୋର ରୁଦ୍ଧ ବେଦନା ଧରି କୁଣ୍ଠିତ ଚିତ୍ତରେ ପ୍ରବାସ-ଯାତ୍ରା ଆରମ୍ଭ କଲି ।

ମାନ୍ଦ୍ରାସ ଡାକଗାଡ଼ି ଦିନ ଗୋଟାକବେଳେ ବିଜୟନଗରରେ ପହଞ୍ଚିବାର କଥା । ଆହୁରି ତିନି ଘଣ୍ଟା ଖଣ୍ଡେ ଅପେକ୍ଷା କରିବାକୁ ପଡ଼ିବ । ସେଠାର ଆସିଷ୍ଟାଣ୍ଟ ଷ୍ଟେସନ ମାଷ୍ଟରଙ୍କ ସଙ୍ଗେ ପରିଚିତ ହୋଇ ସ୍ନାନର ବନ୍ଦୋବସ୍ତ କଲି ଓ ତା'ପରେ ଭୀଷଣ କ୍ଷୁଧାରେ ଷ୍ଟେସନର ହୋଟେଲରେ ଖାଦ୍ୟ ପାଇଁ ଅନାଇଁ ରହିଲି । ପ୍ରାୟ ବାରଟା ବେଳେ ଭୋଜନ-ପତ୍ରରେ ଯାହା ଖାଦ୍ୟରୂପେ ପାଇଲି, ତାହା ଲୁଣ-ଲଙ୍କାର ସମାହାର । କୌଣସି ରୂପେ ଗଳାଧଃକରଣ କରି ବାହାରକୁ ଆସି ଗାଡ଼ିକି ଅପେକ୍ଷା କରି ରହିଲି ।

ବାଟରେ କଲମ୍ବୋ ପର୍ଯ୍ୟନ୍ତ ମତେ ଆହୁରି ଦୁଇ ଥର ଖଣ୍ଡେ ଏହି ମାନ୍ଦ୍ରାସୀ ଖାଦ୍ୟ ଖାଇବାକୁ ପଡ଼ିଲା । ବିଜୟନଗରଠାରୁ ରମ୍ଭା ଯାଏ ଯିବାଆସିବା କରିବାରେ ବରହମ୍‌ପୁରଠାରେ ମତେ ଦୁଇ ଥର ଏହି ଖାଦ୍ୟ ସଙ୍ଗେ ପରିଚିତ ହେବାକୁ ପଡ଼ିଛି । ମୁଁ ଆଗରୁ ଶୁଣିଥିଲି ଯେ, ତେଲଙ୍ଗାମାନେ ଖାଦ୍ୟ-ପେୟ ବଡ଼ ଶସ୍ତାରେ କରିନିଅନ୍ତି ।

ଦରିଦ୍ର ଓଡ଼ିଆ ପକ୍ଷରେ ଶସ୍ତାରେ ଭଲ ଖାଦ୍ୟ କିପରି ଜୁଟା ଯାଇପାରେ, ତାହା ଜାଣିବା ସ୍ୱାଭାବିକ । ତେଣୁ ମୁଁ ଏହି ମାଡ୍ରାସୀ ଖାଦ୍ୟ ଖାଇବା ସଙ୍ଗେ ସଙ୍ଗେ ମୋର କ୍ଷୁଧା ଓ କୌତୂହଳ ଉଭୟକୁ ଶାନ୍ତ କରୁଥିଲି । ମାଡ୍ରାସୀ ଖାଦ୍ୟ ସମ୍ବନ୍ଧରେ ଓଡ଼ିଆମାନଙ୍କର କେତେଟା କଥା ଜାଣି ରଖିବା ଉଚିତ । ଆମ ଦେଶର ଗୃହସ୍ଥ ଓ ଗୃହିଣୀମାନଙ୍କର ଧାରଣା ନାହିଁ ଯେ, ଖାଦ୍ୟ ଜାତିର ଚରିତ୍ର ଉପରେ କ୍ରିୟା କରେ । ଆମ୍ଭମାନଙ୍କ ଘରେ ବଳଦ ପାଇଁ କୁଳୁଚି ରନ୍ଧାହେଲା ପରି ଗୁଡ଼ାଏ ରନ୍ଧାହୁଏ ଓ ଭୋଜନ ମଧ୍ୟ ସେହି ଶ୍ରେଣୀର ହୁଏ । ଅନ୍ୟ ପକ୍ଷରେ ବଡ଼ଲୋକଙ୍କ ଘରେ ରନ୍ଧନ ଏପରି ଏକ ଜଟିଳ ପ୍ରଣାଳୀରେ ପରିଣତ ହୁଏ, ଯେଉଁଥିରେ ଶ୍ରମ ଓ ଅର୍ଥର ପ୍ରଚୁର ବ୍ୟୟ ହୁଏ; କିନ୍ତୁ ଖାଦ୍ୟରୁ ତା'ର ପ୍ରାଣ ଲୟପ୍ରାପ୍ତ ହୁଏ । ପ୍ରାଚୀନ ଚୀନା-ନାରୀମାନଙ୍କର ପଦ-ଯୁଗଳ ଲୁହାର ଜୋତାରେ ଖର୍ବ ହୋଇ ଚୀନା-କବିମାନଙ୍କ ଚକ୍ଷୁରେ ପଙ୍କଜ ପରି ଦେଖାଗଲେ କ'ଣ ହେବ, ସେ ପାଦରେ ତ ଚାଲିବାର ଶକ୍ତିନଥାଏ । ଖାଦ୍ୟ ସଙ୍ଗେ ଜାତୀୟ ଚରିତ୍ରର ସମ୍ପର୍କ ଏଠାକୁ ଆସି ଆହୁରି ଅଧିକ ଭାବରେ ମୁଁ ବୁଝୁଛି; କିନ୍ତୁ ଏଠାର କଥା ପରେ କହିବି ।

ତେଲଙ୍ଗା ଖାଦ୍ୟରେ ପାଚେଡ଼ି, ଚାରୁ ଓ ଚହ୍ଲା ବିଶିଷ୍ଟ ଜିନିଷ । ପାଚେଡ଼ି ଚଟଣୀ ମାତ୍ର । ଆମ୍ଭେମାନେ କ୍ୱଚିତ୍ ଚଟଣୀ ବ୍ୟବହାର କରୁ । କିନ୍ତୁ ଚଟଣୀ ତେଲଙ୍ଗା ଖାଦ୍ୟର ଚିରସହଚର । ଏହା ରୁଚିକର ଓ ବ୍ୟୟସଂକୋଚକ । କାରଣ ଶାକ୍‌ସବ୍‌ଜି, ମାଛ ମାଂସ ଅଭାବରେ କେବଳ ପାଚେଡ଼ି ଘେନି ଭାତ ଖାଇ ହୋଇଯିବ । ତୈଲଙ୍ଗ ଗୃହିଣୀ ପାଚେଡ଼ିନିପୁଣା ଓ ଏହାର ଉପାଦାନ ସବୁ ତୈଲଙ୍ଗ ଗୃହର ସାଇତା ଜିନିଷ ବୋଲି ମୁଁ ଶୁଣେ । ଓଡ଼ିଆ ଗୃହିଣୀମାନେ ବଡ଼ି ସଙ୍ଗେ ପାଚେଡ଼ିରେ ମଧ୍ୟ ନିପୁଣତା ଲାଭ କରିବା ଉଚିତ ।

ଚହ୍ଲା ବା ଘୋଳ ଦହିର ଆଦର ଜଗତର ସର୍ବତ୍ର ଓ ପୃଥିବୀର ସବୁପ୍ରକାର ଚିକିତ୍ସାଶାସ୍ତ୍ର ଏହାର ବ୍ୟବହାର ପାଇଁ ମୁକ୍ତ-କଣ୍ଠ । ଗଞ୍ଜାମ ଅଞ୍ଚଳର ଓଡ଼ିଆ ଗ୍ରାମମାନଙ୍କରେ ଏହାର ବେଶ୍ ପ୍ରଚାର । ମୁଁ ଉତ୍ତରଓଡ଼ିଶା କଥା ଜାଣେନାହିଁ; କିନ୍ତୁ ତେଲଙ୍ଗାମାନଙ୍କ ପରି ଆମ୍ଭର ମଧ୍ୟ ଏହା ଜାତୀୟ ଖାଦ୍ୟ ହେବା ଉଚିତ । ଏହା ଶସ୍ତା ଓ ସ୍ୱାସ୍ଥ୍ୟକର । ଦୁଧର କିଛି ଅପକାରିତା ଅଛି; ମାତ୍ର ଏହାର କୌଣସି ଅପକାରିତା ନାହିଁ ବୋଲି ଆୟୁର୍ବେଦ କହେ ।

ପ୍ରାୟ ଦୁଇ ବର୍ଷ ତଳେ ମୁଁ ଇଂରାଜୀ 'ହରିଜନ' ପତ୍ରିକା ନିୟମିତ ଭାବରେ ପଢ଼ିବାକୁ ପାଉଥିଲି । ମୁଁ ଯେଉଁ ସମୟରେ ପଢୁଥିଲି, ସେ ସମୟରେ ମହାତ୍ମା ଗାନ୍ଧି ତେନ୍ତୁଳି ଉପରେ ପରୀକ୍ଷା ଚଳାଇଥାନ୍ତି । ତେନ୍ତୁଳି ପାଣି ଯେ ମ୍ୟାଲେରିଆ ରୋଗର ଏକ ପ୍ରତିଷେଧକ, ଏ ସତ୍ୟ ଗାନ୍ଧିଜୀ ତାଙ୍କ ପରୀକ୍ଷାର ଫଳ ସ୍ୱରୂପ ସେହି ପତ୍ରିକାରେ

ପ୍ରକାଶ କରିଥିଲେ । ତେନ୍ତୁଳି ମଧ୍ୟ ଏକ ଶସ୍ତା ଜିନିଷ । ଓଡ଼ିଶା ପରି ମ୍ୟାଲେରିଆପୀଡ଼ିତ ଦେଶରେ ତେଣୁ ଚାରୁପାଣିର ବନ୍ୟା ହେବା ଉଚିତ; ହୁଏତ ଏ ବନ୍ୟା ବୈତରଣୀ ବା ମହାନଦୀ ବନ୍ୟାଠାରୁ ଶୁଭତର ଫଳ ଦେଇପାରେ । ତୈଲଙ୍ଗ ଦେଶରେ ମ୍ୟାଲେରିଆର ପ୍ରକୋପ ନାହିଁ । ଏହା ଚହ୍ଲ ଓ ଚାରୁର ଫଳ ବୋଲି ମୁଁ ଶୁଣେ । ବାଟରେ ଯେତେ ତେଲଙ୍ଗା ଯାତ୍ରୀ ଦେଖିଲି, ସେମାନେ ବେଶ୍ ହୃଷ୍ଟପୁଷ୍ଟ । ବିଶେଷତଃ ତୈଲଙ୍ଗୀ ରମଣୀ-ମାନଙ୍କର ରମଣୀୟ ସ୍ୱାସ୍ଥ୍ୟ ଓଡ଼ିଶାର ସୀମନ୍ତିନୀମାନଙ୍କ ବିଚାର କରିବାର କଥା । ବିଜୟ ନଗର ଡେଇଁଲେ କି ପୁରୁଷ, କି ସ୍ତ୍ରୀ ସମସ୍ତଙ୍କର ପ୍ରଚୁର ଚିକ୍କଣ କୃଷ୍ଣକେଶରାଜି ଆଖିରେ ଧରାପଡ଼େ । ମାଡ୍ରାସୀମାନେ ଓଡ଼ିଆମାନଙ୍କ ଅପେକ୍ଷା ବେଶ୍ ଚଟ୍‌ପଟ୍ ଓ ଫୂର୍ତ୍ତି ଜାତି ।

ଏସବୁର ମୂଳରେ ଖାଦ୍ୟର ସମ୍ବନ୍ଧ ନିଶ୍ଚୟ ଥିବ । କାରଣ ଓଡ଼ିଶା ମାନ୍ଦ୍ରାଜ ଭିତରେ ଭୌଗୋଳିକ ପ୍ରଭେଦ ବିଶେଷ କିଛି ନୁହେଁ; କିନ୍ତୁ ଐତିହାସିକ ଓ ଜାତୀୟ ପ୍ରଭେଦ ବିଶେଷ । କୋଣାର୍କକୁ ବାଦ୍‌ଦେଲେ ଆନ୍ଧ୍ରମାନଙ୍କର ଐତିହାସିକ ଗୌରବ ସଙ୍ଗେ ଆମର ତୁଳନୀୟ ଗୌରବ ଅଛି ବୋଲି ମୋର ମନେ ହେଉ ନାହିଁ । ଆନ୍ଧ୍ର ସୀମନ୍ତିନୀମାନଙ୍କର ବସନ ଓ ଭୂଷଣର ପରିପାଟୀ ଓ ପ୍ରସାଧନର ଉତ୍କର୍ଷତା ମାନିବାକୁ ହେବ । ବଞ୍ଚିବାଟାକୁ ସୁନ୍ଦର ଓ ସୁଖମୟ କରିବା ସଭ୍ୟତାର ବିଶିଷ୍ଟ ଚିହ୍ନ । ବସନଭୂଷଣ, ଭୋଜନ ପ୍ରଭୃତି ବଞ୍ଚିବାର ଏକ ଏକ ଅଂଶ । ଏସବୁ ଦିଗରେ ଆମମାନଙ୍କର ପରିବର୍ତ୍ତନ ଦରକାର । ଯଦି ଆମ ପ୍ରତିବେଶୀ ଏ ଦିଗରେ କିଛି ଶିକ୍ଷା ଦେଇପାରନ୍ତି, ତେବେ ତାହା ଆନନ୍ଦରେ ଗ୍ରହଣ କରିବାର କଥା ।

ଭାରତବର୍ଷରେ ତୃତୀୟ ଶ୍ରେଣୀ ରେଳଯାତ୍ରୀର ଅନୁଭୂତି, ମନୁଷ୍ୟର କଠୋର ଜୀବନ-ସଂଗ୍ରାମର ଏକ କ୍ଷୀଣ ପ୍ରତିବିମ୍ବ । ଯେଉଁ କକ୍ଷରେ ୯ ଜଣ ବସିବାର କଥା, ସେଠି ୧୯ ଜଣ ଭର୍ତ୍ତିହେବେ । ସାଙ୍ଗରେ ଗାଡ଼ିଏ ଗାଡ଼ିଏ ଜିନିଷ । ଫଳରେ ମନୁଷ୍ୟ ଓ ଜିନିଷର ପ୍ରଭେଦ ରହେନାହିଁ– ମଣିଷ ଓ ଜିନିଷ–ଜିନିଷ ଓ ମଣିଷ । ମଣିଷ ସ୍ଥାଣୁରେ ପରିଣତ ହୁଏ, ଗାଡ଼ି ତାକୁ ବିଦ୍ୟୁତ୍ ଗତିରେ ବୋହୁଥାଉ ପଛେ । ବିଜୟନଗରଠାରୁ ମାଡ୍ରାସ ଓ ମାଡ୍ରାସଠାରୁ ତ୍ରିଚିନାପଲ୍ଲୀ ଷ୍ଟେସନ ପର୍ଯ୍ୟନ୍ତ– ମତେ ଏହି ପ୍ରକାର ଅନୁଭୂତି ନେଇ କାଳ କାଟିବାକୁ ପଡ଼ିଥିଲା ।

ସେଇ ଭିତରେ ଅବଶ୍ୟ ପରିଚୟ ପୁଣି ହୁଏ– ଠିଆହେବାରୁ ବସିବା ଓ ବସିବାରୁ ଶୋଇବାର ବନ୍ଦୋବସ୍ତ ପୁଣି ସେଇ ଭିତରେ କରିବାକୁ ହୁଏ । ମନୁଷ୍ୟ ନାମକ ଜୀବ ନିଜକୁ ପାରିପାର୍ଶ୍ୱିକ ଅବସ୍ଥା ସଙ୍ଗେ ମିଶାଇ ନେଇପାରେ ବୋଲି ଏ ଯାଏ ଏ ଜଗତରେ ତିଷ୍ଠି ପାରିଛି– ଏହାହିଁ ବୈଜ୍ଞାନିକମାନଙ୍କ ମତ । ମନୁଷ୍ୟର ସେହି ଗୁଣ ଭାରତର ତୃତୀୟ ଶ୍ରେଣୀ ଗାଡ଼ିରେ ବେଶ୍ କାମଦିଏ ।

ମାଡ୍ରାସର ଜଣେ ଯୁବକ ମୋ' ଆଗରେ ବସିଥିଲେ । ଆଇ.ଏ.ପାସ୍ କରିଛନ୍ତି; କିନ୍ତୁ ସୁନା ରୁପାର ବ୍ୟବସାୟ କରନ୍ତି । ମାଡ୍ରାସ ଓ କଲିକତା ପ୍ରଭୃତି ସହରରେ ଦୋକାନ । ଅତି ଭଦ୍ର, ସୁନ୍ଦର ଦ୍ରାବିଡ଼ୀୟ ଚେହେରା, ଭାଲଦେଶରେ ଗୋରଚନା ଚିତା । ତାଙ୍କର ବାମରେ, ଗାଡ଼ିର ଗୋଟିଏ କଣରେ ଜଣେ ବୃଦ୍ଧ । ସେ ହାଇଦ୍ରାବାଦ ରେଲଓୟେର ଇଞ୍ଜିନ୍ ଡ୍ରାଇଭର୍ ଥିଲେ– ଛଅ ହଜାର ଟଙ୍କାର ବିଦାକି ସହିତ ପେନସନ୍ ପାଉଛନ୍ତି । ବାଟଯାକ ସେ ଇଞ୍ଜିନ୍ ଡ୍ରାଇଭର୍‌ମାନଙ୍କ କଥା କହୁଥାନ୍ତି । ଭାରତବର୍ଷର ଘୋର ଗ୍ରୀଷ୍ମକାଳରେ ଏହି ଶ୍ରେଣୀର ଲୋକେ ଜଳନ୍ତା ନିଆଁ ପାଖେ କିମିତି କାମ କରନ୍ତି, ତା'ର ବର୍ଣ୍ଣନା କରି ନିଜ ଅର୍ଜନର ଯଥାର୍ଥତା ସେ ବର୍ଣ୍ଣନା କରୁଥାନ୍ତି । ମୋର ପଛପଟେ ଦିଲ୍ଲୀର ଏକ ଶିକ୍ଷିତ ମାରବାରୀ ବଣିକ ସପରିବାର ତୀର୍ଥଯାତ୍ରାରେ ବାହାରିଛନ୍ତି । ସେ ମାଡ୍ରାସ ବାଟେ ରାମେଶ୍ୱର ଯିବେ । ସାଙ୍ଗରେ ଗୋଟିଏ ଶିଶୁ; କିନ୍ତୁ ସାଥି ସାଥି ବର୍ଣ୍ଣମାଳା ଅଛି; ଅବସର ପାଇଲେ ସେଇ ଗାଡ଼ି ଭିତରେ ଶିଶୁର ବର୍ଣ୍ଣ ପରିଚୟ ହୋଇଯିବା ଲାଗି ଚେଷ୍ଟା । ବି.ଏ. ଯାଏ ପାଠ– ଅଥଚ ଦିଲ୍ଲୀରେ ଦୋକାନ କରିଛନ୍ତି । କେତେ ଟଙ୍କା ଜମା କରିଛ ପଚାରିଲେ– ''ଈଶ୍ୱର ଯାହା ଦେଇଛନ୍ତି, ମୁଁ ତା'ର ରକ୍ଷକ ମାତ୍ର'' ବୋଲି ଉତ୍ତର ଦେଲେ । ମୁଁ ବିଲାତ ଯାତ୍ରା କରୁଥିବାର ଶୁଣି ସମୁଦ୍ରପୀଡ଼ାରୁ ରକ୍ଷା ପାଇବା ଲାଗି ଗୋଟେ ଔଷଧ ବଢ଼େଇ ଦେଲେ । ଯଦିବା ସମୁଦ୍ରପୀଡ଼ାର କୌଣସି ଔଷଧ ନାହିଁ ଏବଂ ସେ ଭଦ୍ରଲୋକଙ୍କର ଔଷଧ ବି କିଛି କାର୍ଯ୍ୟରେ ଆସିଲା ନାହିଁ, ତଥାପି ତାଙ୍କର ସଦିଚ୍ଛା ପାଇଁ ମୁଁ କୃତଜ୍ଞ । ଧନୀ ଓ ଶିକ୍ଷିତ ହୋଇ ମଧ୍ୟ ତାଙ୍କର ସାଧାରଣ ବ୍ୟବହାର ମୋର ମନକୁ ଭାରି ଘେନିଲା । ଶିକ୍ଷିତ ହୋଇ ମଧ୍ୟ ଭାରତବର୍ଷର ଅନ୍ୟ ଅଞ୍ଚଳର ଲୋକେ ବ୍ୟବସାୟକୁ ଧରିଲେଣି । ଓଡ଼ିଶାରେ କିନ୍ତୁ ଚାକିରିର ମୋହ ଆହୁରି ଦିନାକେତେ ଚାଲିବ ।

ତୃତୀୟ ଶ୍ରେଣୀର ଏହି ସଙ୍ଗମେଳ ମଧ୍ୟରେ ରାତି କଟେଇ ସକାଳ ୮ଟା ବେଳେ ମାଡ୍ରାସ ସେଣ୍ଟ୍ରାଲ୍ ଷ୍ଟେସନରେ ପହଞ୍ଚିଲି । ଭବାନୀପାଟଣାଠାରୁ ମାଡ୍ରାସରେ ଥିବା କୌଣସି ଓଡ଼ିଆ ଭଦ୍ରଲୋକଙ୍କର ଠିକଣା ଓ ପରିଚୟପତ୍ର ମୁଁ ଆଣିଥାଏ । କିନ୍ତୁ କାଳେ ତାଙ୍କୁ ପାଇ ନ ପାରେ, ମାଡ୍ରାସୀ ଯୁବକବଣିକ ମୋତେ ତାଙ୍କର ଠିକଣା ଦେଇ ଓଡ଼ିଆ ଭଦ୍ରଲୋକଙ୍କୁ ନ ପାଇଲେ ତାଙ୍କ ଘରକୁ ଯିବାକୁ କହିରଖିଥିଲେ । ଷ୍ଟେସନରେ ଓହ୍ଲାଇ ମୋର ଜିନିଷ ଓଜନ ହେବା ଭିତରେ ସେ ଯେ କୁଆଡ଼େ ଗଲେ ମୁଁ ଆଉ ତାଙ୍କୁ ପାଇଲି ନାହିଁ । ବାଧ୍ୟହୋଇ ଏକାକୀ ଝଟ୍‌କାକରି ଓଡ଼ିଆ ଭଦ୍ରଲୋକଙ୍କ ଘର ବହୁତ କଷ୍ଟରେ ଖୋଜି ଆଶ୍ରୟ ନେବାକୁ ହେଲା । ବାଟରେ ଝଟ୍‌କାବାଲା ମୋ' ସଙ୍ଗେ ଇଂରାଜୀରେ କଥା ହେଉଥାଏ; ଅବଶ୍ୟ ସେ ଇଂରାଜୀରେ ସାମାନ୍ୟ କେତେଟା ବାକ୍ୟ

ଜାଣିଛି ମାତ୍ର; କିନ୍ତୁ ମାଡ୍ରାସରେ ଇଂରାଜୀ ଭାଷାର ପ୍ରଚଳନ ବହୁତ ବେଶି । କଲମ୍ବୋର ଯେଉଁ ହୋଟେଲରେ ଥିଲି, ସେଠି ତାମିଲ ଦରବାନ୍ ସବୁ ଅଛନ୍ତି । ମୋ' ସା'ଲାରେ ଯେଉଁ ଟୋକାଟି ଥାଏ, ସେ ବେଶ୍ ଇଂରାଜୀ କହୁଥାଏ ।

ମାଡ୍ରାସରେ ମୁଁ ଦିନେ ମାତ୍ର ଥିଲି । Thomas Cook ଅଫିସରୁ ଟିକିଟ ସଂଗ୍ରହ ଓ ଅନ୍ୟାନ୍ୟ କେତେକ ଜିନିଷ କିଣାକିଣି କରିବା ପାଇଁ ଏଠାରେ ଓହ୍ଲାଇଥିଲି । ମାଡ୍ରାସ ଜନଗହଳ ସହର ନୁହେଁ । ମଧୁର ଜ୍ୟୋତ୍ସ୍ନାଚକିତ ମାଡ୍ରାସର ସେହି ସୁପ୍ରସିଦ୍ଧ ବେଳାଭୂମିରେ ସେ ଦିନ କେତେ ଘଣ୍ଟା ବସି ବସି କଟେଇଥିଲି । ସମୁଦ୍ରର ବେଳାଭୂମି ତ ମୋର ପିଲାଦିନର ଧୂଳିଶେଯ । କାରଣ ଆମ ଘରଠାରୁ ମାତ୍ର ଅର୍ଦ୍ଧକ୍ରୋଶ ଦୂରରେ ମହୋଦଧିର ଫେନଚୂଡ଼ ସହସ୍ର ଲହରୀ ଅହୋରାତ୍ର ଦିଗନ୍ତ-ଲମ୍ବୀ ବେଳାଭୂମିରେ ଫଣା ପିଟନ୍ତି । ଦିବସର କୋଳାହଳ ସଂଧ୍ୟାଗମ ସଙ୍ଗେ ସଙ୍ଗେ ଶାନ୍ତ ହୁଅନ୍ତେ ଆମ ଗ୍ରାମ ଦାଣ୍ଡକୁ ମହୋଦଧି ଓ ବେଳାଭୂମିର ସଶବ୍ଦ ବିଶ୍ରମ୍ଭାଳାପ ସାରା ରାତ୍ର ଶୁଭେ । ବେଳାଭୂମିର ସ୍ୱର୍ଣ୍ଣଶଯ୍ୟା ଉପରେ, ଆମ୍ବ ପୋଲାଙ୍ଗ ଝାମୁ ପ୍ରଭୃତି ବନସ୍ପତିର ସଚ୍ଛାୟ ଉପବନମାଳାରେ, ଗ୍ରୀଷ୍ମକାଳର ସ୍ୱିନ୍ନ ଦେହରେ ସୈନ୍ଧବ ବାୟୁର ମଧୁର ସ୍ପର୍ଶ ମୋର ଅତି ପରିଚିତ ଅନୁଭୂତି । ତେଣୁ ମାଡ୍ରାସର ବେଳାଭୂମିରେ ମୁଁ ଚମତ୍କୃତ ହେବାର କଥା ନୁହେଁ । କିନ୍ତୁ ମହାକବିଙ୍କ ଶ୍ଳୋକର ଅଂଶ ପରିବର୍ତ୍ତନ କରି ''ଜ୍ୟୋତ୍ସ୍ନାଲୋକେ ଭବତି ସୁଖୀନୋଽପ୍ୟନ୍ୟଥାବୃତ୍ତି ଚେତଃ, କଣ୍ଠାଶ୍ଳେଷପ୍ରଣୟିନୀ ଜନେ କିଂ ପୁନଃ ଦୂରସଂସ୍ଥେ'' ଗାଇଲେ ମୋର ସେହି ମାଡ୍ରାସ ବେଳାର ଜ୍ୟୋତ୍ସ୍ନା ଭୋଗର ଅନୁଭୂତି ବର୍ଣ୍ଣିତ ହେବ ।

ମୁଁ ଯେଉଁଦିନ ମାଡ୍ରାସରେ ଥିଲି, ସେଦିନ ମାଡ୍ରାସକୁ ସେଠାର କ୍ୟାଥଲିକ୍ ସଂପ୍ରଦାୟର ନୂତନ ବିଶପ୍ ଆସୁଥାନ୍ତି । ତାଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ଯେଉଁ ବିରାଟ ଶୋଭାଯାତ୍ରା ହୋଇଥିଲା, ତାହା ଦେଖିବାର ମୁଁ ସୁଯୋଗ ପାଇଥିଲି । ବ୍ୟାଣ୍ଡ ବାଜୁଥାଏ, ପଙ୍‌କ୍ତିବଦ୍ଧ ହୋଇ ଖ୍ରୀଷ୍ଟିୟାନ ବାଳକ ବାଳିକା, ତରୁଣ ତରୁଣୀ, ଭଗିନୀବୃନ୍ଦ ଓ ପୁରୋହିତବୃନ୍ଦ ପଛକୁ ପଛ ଚାଲିଥାନ୍ତି । ସଭା ଶେଷରେ ବିଶପ୍– ତାଙ୍କ ମସ୍ତକରେ ସ୍ୱର୍ଣ୍ଣ ମୁକୁଟ, ଉପରେ ଚନ୍ଦ୍ରାତପ ପୁରୋହିତ ଚାରିଜଣ ଚାରିପଟେ ଟେକି ଧରିଛନ୍ତି, ଆଗରେ ଜଣେ ସ୍ୱର୍ଣ୍ଣଗଦା ଧରି ଚାଲିଥାଆନ୍ତି । ଏ'ତ ରାଜାଡ଼ମ୍ବର । ଯୀଶୁଖ୍ରୀଷ୍ଟ ଦରିଦ୍ର ବଢ଼େଇ ଘରେ ଜନ୍ମ ହୋଇଥିଲେ ଓ ଦରିଦ୍ରଜୀବନ ଯାପନ କରିଥିଲେ । ତାଙ୍କ ଧର୍ମର ପ୍ରତିଭୂ ସୁନାର ମୁକୁଟ ପିନ୍ଧି ରାଜାଡ଼ମ୍ବରରେ ଉଠିବା ବସିବା, ଧର୍ମର ବ୍ୟଭିଚାର । ଅବଶ୍ୟ ଏ ପ୍ରକାର ଅଭିନୟ ଜନସାଧାରଣଙ୍କ ମାନସିକତା ଉପରେ ଭାରି କାର୍ଯ୍ୟ କରେ । ହିନ୍ଦୁଧର୍ମର ଯାନିଯାତ୍ରା ଓ ପ୍ରତିମାକୁ ଘେନି ଶୋଭାଯାତ୍ରା କରିବାର ମୂଳରେ

ଏହି ମନଃସ୍ତତ୍ତ୍ୱ ରହିଚି; କିନ୍ତୁ କ୍ୟାଥଲିକ୍ ଖ୍ରୀଷ୍ଟିଆନ୍ ହିନ୍ଦୁକୁ ବର୍ବର ଭାବେ– କାରଣ ସେ ଧର୍ମର ଲୋକଙ୍କର ସାମ୍ରାଜ୍ୟ ଅଛି, ବୋମା ବନ୍ଧୁକ ଅଛି, ହିନ୍ଦୁର ସେସବୁ ନାହିଁ । ଏ ଯୁଗର ଏଇଟା ସବୁଠୁ ବଡ଼ ଅପରାଧ ।

ଓଡ଼ିଆ ଭଦ୍ରଲୋକ ଅଗଷ୍ଟ ୨୨ ତାରିଖ ରାତିରେ ମତେ ଏଗ୍‌ମୋର ଷ୍ଟେସନ୍‌ଠାରେ ଛାଡ଼ି ଦେଇ ଗଲେ । ତାଙ୍କର ଅତିଥି ସତ୍କାର ଲାଗି ମୁଁ ଅତ୍ୟନ୍ତ କୃତଜ୍ଞ ।

ମାଡ୍ରାସରେ ଟମାସ୍ କୁକ୍ ଅଫିସରେ ଶୁଣିଲି ଯେ, ମଣ୍ଡପମ୍ ନାମକ ଷ୍ଟେସନ୍‌ଠାରେ ସମସ୍ତ ସିଂହଳଗାମୀ ଯାତ୍ରୀଙ୍କର ପରୀକ୍ଷା ହୁଏ । ଏହା ସିଂହଳ ସରକାରଙ୍କ ପକ୍ଷରୁ ହୁଏ । ଅନେକ ସମୟରେ ଅନେକ ଯାତ୍ରୀଙ୍କୁ ଅଟକାଇ ରଖାଯାଏ । ଦ୍ୱିତୀୟ ଶ୍ରେଣୀ ଓ ପ୍ରଥମ ଶ୍ରେଣୀ ଯାତ୍ରୀମାନଙ୍କ ପ୍ରତି ଅବଶ୍ୟ ଟିକିଏ ଭିନ୍ନ ବ୍ୟବହାର ହୁଏ । ତେଣୁ ମୋର ଅନ୍ତତଃ ଦ୍ୱିତୀୟ ଶ୍ରେଣୀରେ ଯିବା ଉଚିତ । ସେମାନଙ୍କର ଉପଦେଶ ଅନୁଯାୟୀ ତହିଁ ଆରଦିନ ସକାଳେ ତ୍ରିଚନାପଲ୍ଲୀ ଷ୍ଟେସନରେ ମୁଁ ତୃତୀୟ ଶ୍ରେଣୀର ଟିକଟକୁ ବଦଳେଇ ଦ୍ୱିତୀୟ ଶ୍ରେଣୀର କଲି । 'ମାଡ୍ରାସ ସାଉଥ୍ ମରହଟ୍ଟା ରେଲବାଇ'ର ମଧ୍ୟମ ଶ୍ରେଣୀ ନାହିଁ । ଦ୍ୱିତୀୟ ଶ୍ରେଣୀ, B.N.R.ର ଦ୍ୱିତୀୟ ଶ୍ରେଣୀଠାରୁ ଶସ୍ତା ଓ ଅଧିକତର ସ୍ୱାଚ୍ଛନ୍ଦ୍ୟଦାୟକ ।

ମାନମଦୁରାଇ ନାମକ ଷ୍ଟେସନରେ କଲମ୍ବୋରେ ଟମାସ୍ କୁକ୍ ଅଫିସ୍‌ରେ କାମ କରୁଥିବା ଜଣେ ମାଡ୍ରାସୀ ଭଦ୍ରଲୋକ ବି ମୋ' କାମରାକୁ ଆସିଲେ । ସେ ତାମିଲ୍ । ପରେ ବୁଝିଲି, କଲମ୍ବୋ ଟମାସ୍ କୁକ୍ ଅଫିସର ସେ ହେଡ ଆକାଉଣ୍ଟାଣ୍ଟ । ବେଶ୍ ବଡ଼ ଚାକିରି; କିନ୍ତୁ ମସ୍ତକରେ ଚୁଟି । ଚାରିପାଖେ ମସ୍ତକର ଯେଉଁ କେଶାଂଶ, ସେଥିରେ ମାସେ ହେଲା ଖିଅର ହୋଇନଥିବା ଟାଆଁସା ରୁଢ଼ । ଏଣେ କୋଟ୍-ପ୍ୟାଣ୍ଟ ପୋଷାକ । ବ୍ୟକ୍ତିଗତ ବେଶଭୂଷାରେ, ଅନେକ ତେଲେଙ୍ଗା ଓ ତାମିଲ ଶିକ୍ଷିତ ହେଲେ ମଧ୍ୟ, ପ୍ରାଚୀନତାକୁ ଜଳାଞ୍ଜଳି ନ ଦେଇ ଏ ପ୍ରକାର ଅସାମଞ୍ଜସ୍ୟକୁ ନେଇ କିପରି ଚଳନ୍ତି, ମୁଁ ଆଶ୍ଚର୍ଯ୍ୟ ହୁଏ । କାରଣ ଏକେତ ଚଳନ୍ତି ପ୍ରଥାରୁ ଅଲଗା ହୋଇ ରହି ପାରିବା ଖୁବ୍ ସାହସ ଦରକାର କରେ; ପୁଣି ନିଜର ସ୍ୱାତନ୍ତ୍ର୍ୟ ପାଇଁ ଯେଉଁମାନେ ବ୍ୟକ୍ତିଗତ ଚେହେରାକୁ ବି ଖୁଣ୍ କରିବାକୁ କୁଣ୍ଠିତ ନୁହନ୍ତି, ସେମାନଙ୍କର ସାହସ ଆହୁରି ବେଶି । ଦ୍ରାବିଡ଼ମାନଙ୍କର ଆତ୍ମପ୍ରତ୍ୟୟ ଆମ୍ଭମାନଙ୍କଠାରୁ ଅଧିକ ନିଶ୍ଚୟ । ଆତ୍ମପ୍ରତ୍ୟୟ ଆତ୍ମପ୍ରତିଷ୍ଠାର ମୂଳପତ୍ତନ । ଆମେମାନେ ତିନିଶ ବର୍ଷର ଦୁଃଖ ଦାରିଦ୍ର୍ୟରେ ଏ ଆତ୍ମ-ପ୍ରତ୍ୟୟକୁ ଏକାବେଳକେ ହରେଇଛୁ । ଆମେ ନିଜର ଗୌରବ ନିଜେ ଜାଣୁନା । ନିଜର ଯାହା ଭଲ, ତାକୁ ଥଟ୍ଟା କରୁ ଓ ପରର ଥଟ୍ଟାକୁ ଡରି ଡରି ଖାଉ, ବସୁ, ଉଠୁ, କଥା କହୁ । ଏଥିରେ ଆମର ଜାତୀୟ ସ୍ୱାତନ୍ତ୍ର୍ୟ କିପରି ବିକଶିତ ହେବ ?

ସମଗ୍ର କରମଣ୍ଡଳ ବେଳାର ପ୍ରାକୃତିକ ଚେହେରା ଉତ୍କଳୀୟ ନିମ୍ନଭୂମିର ଏକ କ୍ରମମାତ୍ର । ଦିଗନ୍ତବ୍ୟାପୀ ଶସ୍ୟ-ଶ୍ୟାମଳ ସମତଳ ଭୂମି । ଦରିଦ୍ର କୃଷକର ବ୍ୟକ୍ତିଗତ କ୍ଷୁଦ୍ର ଅଧିକାର, ସେହି ଅସୀମ ଉପରେ ହିଡ଼ର ଛୋଟ ସୀମା ଟାଣି ତାକୁ ରେଖାୟିତ କରିଛି । ନିକଟରେ ଓ ଦୂରରେ, ଏ ପାଖେ ଓ ସେ ପାଖେ ଛୋଟ ଛୋଟ ଗ୍ରାମ, ଯେଉଁଠି ବସତି ଓ ପ୍ରକୃତି ଏପରି ଘନାଲିଙ୍ଗନରେ ଆବଦ୍ଧ ଯେ, କିଏ କାର ସୀମାକୁ ମାଡ଼ି ଆସିଛି ବାରି ହେଉ ନାହିଁ । ଗ୍ରାମର ସୀମାରେ ପ୍ରାକୃତିକ ଜଳାଧାର । କଇଁ, ପଦ୍ମରେ ତା'ର ଆକାଶ ତାରକିତ ଓ ଜଳାସ୍ତରଣରେ ତା'ର ବକ୍ଷ ଆବୃତ । ଜଳତୋଠରେ ଚକିତନୟନା ସୀମନ୍ତିନୀଗଣ । ବିଲରେ କର୍ଷଣରତ କୃଷିଜୀବୀ–ମାଟି ଉପରେ ତା'ର ଆଖି; ସେ ଆଖି କେବଳ ସେଇ ମାଟି, ସେଇ ବଳଦ ଓ ସେଇ ମାଟିର ଶସ୍ୟ ସଙ୍ଗେ ପରିଚିତ । ଓଡ଼ିଶାର ସମତଳ ଦେଶର ଏହି ପରିଚିତ ଦୃଶ୍ୟ, ସମସ୍ତ କରମଣ୍ଡଳ ପଥରେ ପୁନରାବୃତ୍ତି ହେଲା ମାତ୍ର । ମୋର ଦକ୍ଷିଣପାର୍ଶ୍ୱରେ ପୂର୍ବଘାଟ ପର୍ବତମାଳାର ନୀଳ ପ୍ରାଚୀର । ତା'ର ଚୂଡ଼ା, କଣ୍ଠ ଓ କଟୀଦେଶରେ ଶରତ୍ ମେଘର ଶୁଭ୍ର ବପ୍ରକ୍ରୀଡ଼ା; ବାମଭାଗରେ କେବେ କେବେ ଦେଖାଯିବା ସ୍ୱର୍ଣ୍ଣ ବେଳାଭୂମିରେ ଝାଉଁବନର ଧୂମ-ଶ୍ରୀ; ଉଭୟ ପାର୍ଶ୍ୱରେ ନାରିକେଳ ଓ ତାଳର ଘଞ୍ଚ ସମାବେଶ– ଏହି ଦୃଶ୍ୟମାନଙ୍କ ମଧ୍ୟରେ ମୁଁ ସମଗ୍ର ମାଡ୍ରାସ୍ ଅତିକ୍ରମ କଲି । ଉତ୍କଳ ଓ ବଙ୍ଗଳାର ତରଙ୍ଗାୟିତ ଧାନ୍ୟଶସ୍ୟ ପରିବର୍ତ୍ତରେ ଏ ଅଞ୍ଚଳରେ ଅବଶ୍ୟ ମାଣ୍ଡିଆର ଦଣ୍ଡାୟମାନ ଚେହେରା ଆଖିରେ ପଡ଼େ । ଚାଉଳ ଖାଦ୍ୟ ତ ଓଡ଼ିଆକୁ ଧାନଗଛ ପରି ନରମ ଓ ନମ୍ର କରିପକାଏ । ମାଣ୍ଡିଆ ମନୁଷ୍ୟକୁ ଭେଣ୍ଡିଆ ରଖିବାର କଥା । ଏହା ମାଡ୍ରାସର ଡାକ୍ତର ଅକ୍‌ରୟଡ୍ ଜୋର୍ ଦେଇ କହିଛନ୍ତି; ଓଡ଼ିଆମାନେ ସେ କଥାଟାକୁ ନିଜର ଅବଧାନକୁ ଆଣିବା ଉଚିତ ।

ରାମନାଦ ଜିଲାର ରୁକ୍ଷ ମରୁଭୂମି ଦେଇ ଦୀର୍ଘ ଅପରାହ୍ଣ କଟେଇଲା ପରେ ମଣ୍ଡପମ୍ ଷ୍ଟେସନରେ ଗାଡ଼ି ପହଞ୍ଚିଲା । ଏହିଠାରେ ସିଲୋନ ସରକାରଙ୍କ ଡାକ୍ତର ଆସି ଆମମାନଙ୍କୁ ତଦାରଖ୍ କଲେ । ଡାକ୍ତର ପ୍ରଥମ ଓ ଦ୍ୱିତୀୟ ଶ୍ରେଣୀ କାମରାକୁ ନିଜେ ଆସନ୍ତି; କିନ୍ତୁ ତୃତୀୟ ଶ୍ରେଣୀ ଯାତ୍ରୀମାନଙ୍କୁ ଗାଡ଼ିରୁ ଓହ୍ଲେଇ ସିଲୋନ ସରକାରୀ ଅଫିସକୁ ଯିବାକୁ ହୁଏ । ତଦାରଖି ବେଶ୍ କଡ଼ା ଧରଣର, କାରଣ ଆମ କାମରାରେ ଦୁଇ ଜଣ ଉଠିଥିବା ଦ୍ୱିତୀୟ ଶ୍ରେଣୀ ଯାତ୍ରୀ ମଧ ସେଦିନ ଅଟକି ରହିଲେ । ସେମାନେ ଦ୍ୱିତୀୟ ଶ୍ରେଣୀରେ ଉଠିଥିଲେ କେବଳ ତଦାରଖିରୁ ରକ୍ଷା ପାଇବାକୁ । ତେବେ ଭାଗ୍ୟ ଖରାପ ! ଆମକୁ ମଧ୍ୟ ଗାଡ଼ି ଛାଡ଼ି ସିଲୋନୀ ଅଫିସରେ ନିଜର ପରିଚୟଦେଇ ଆସିବାକୁ ହୋଇଥିଲା; କିନ୍ତୁ ପାଖରେ ସାଧାରଣ ଡାକ୍ତରୀ ସାର୍ଟିଫିକେଟ୍

ଦେଖି ଓ ବିଲାତ ଯିବାର ସମ୍ବାଦ ଶୁଣି ସେମାନେ କିଛି କହିଲେ ନାହିଁ ।

ମଣ୍ଡପମ୍ ଷ୍ଟେସନର ପ୍ଲାଟଫର୍ମ ପାର ହେଉ ନହେଉଣୁ ନୟନାଭିରାମ ରୂପ ଦୃଷ୍ଟିର ଅତିଥି ହେଲା । ଆମେମାନେ ଯେ ଦକ୍ଷିଣସମୁଦ୍ରର ଏତେ ନିକଟ ହେଲୁଣି, ତା'ର କୌଣସି ସୂଚନା ନ ଥିଲା । ଗାଡ଼ି ହଠାତ୍ ଗୋଟିଏ କ୍ଷୁଦ୍ର ସିକତାମୟ ଅନ୍ତରୀପ ମଧ୍ୟ ଦେଇ ଚାଲିବାକୁ ଲାଗିଲା ଏବଂ ଆମମାନଙ୍କ ଉଭୟ ପାର୍ଶ୍ୱରେ ନୀଳ ଜଳଧିର ପ୍ରଶାନ୍ତ ବିସ୍ତାର ଉଦ୍ଭାସିତ ହୋଇଉଠିଲା । ବେଳାଭୂମିରେ ଠିଆହୋଇ ସମୁଦ୍ର ଆଡ଼କୁ ଅନେଇଲେ ତା'ର ଅସୀମତ୍ୱ ହିଁ ଆମମାନଙ୍କର ଅନୁଭୂତି ଉପରେ ବାରମ୍ବାର ଆଘାତ କରେ । ସେ ଅନୁଭୂତି ଆମମାନଙ୍କର ପରିଚିତ; କିନ୍ତୁ ବାଲୁକାର ନୈସର୍ଗିକ ସେତୁ ଉପରେ ଗତିକରି, ଯେତେବେଳେ ବାରାନିଧିକୁ ମୋର ଏ ପଟେ ସେ ପଟେ ଶାନ୍ତଭାବରେ ପଡ଼ି ରହିବାର ଦେଖିଲି, ପଶୁରାଜକୁ ସର୍କସରେ ଦେଖିବାର ଆନନ୍ଦ ପାଇଲି । ଦୁର୍ବାର ଅନନ୍ତ ଜଳନିଧି– ତା' ଉପରେ ପ୍ରକୃତି ଏପରି ଭାଗ-ରେଖା ବସେଇ ଦେଇଛି ଯେ, ମୋ' ପରି ଦୁର୍ବଳ ମଧ୍ୟ ତା'ଉପରେ ଗତିକରି ତା'ର ଶାନ୍ତ ରୂପ ଦେଖିପାରିଲା । ଜଳ ଘୋର ନୀଳବର୍ଣ୍ଣ । ସାମାନ୍ୟତମ ଲହରି ସୁଦ୍ଧା ନାହିଁ; ସ୍ୱର୍ଣ୍ଣକାନ୍ତ ସିକତା ସୀମାରେ ଶାନ୍ତ ଜଳରାଶିର ଆଲିଙ୍ଗନ ଅପୂର୍ବ ସୁନ୍ଦର ଦେଖାଯାଉଥାଏ । ବେଳାଭୂମିର ସ୍ଥାନେ ସ୍ଥାନେ ପ୍ରସ୍ତରମାଳା, ଯେଉଁଠାରେ ଶାନ୍ତ ବାରି କଠୋର ଆଲିଙ୍ଗନ ପାଇ ଟିକିଏ କ୍ଷୁବ୍ଧ ହୋଇଉଠୁଛି ।

ଏହି ଅନ୍ତରୀପ ପ୍ରାୟ ୧୦।୧୫ ମାଇଲ ଲମ୍ବ । ମଝିରେ ମଝିରେ ଜନବସତି ଅଛି । ଶୁଷ୍କ ମରୁଭୂମି ପରେ ପରେ ବଟ ନାରିକେଳର ଘନାଶ୍ଳେଷ ଭିତରେ ମନୁଷ୍ୟର କୁଟୀରମାଳା– ମନୁଷ୍ୟ କିପରି ପ୍ରକୃତିକୁ ସବୁ ଅବସ୍ଥାରେ କାର୍ଯ୍ୟରେ ଲଗେଇବାକୁ ପ୍ରସ୍ତୁତ ତାହା ଘୋଷଣା କରେ । ମଣ୍ଡପମ୍ ପରେ ଏହି ଅନ୍ତରୀପରେ ଦୁଇଟା ଷ୍ଟେସନ୍ । ଗୋଟିଏ ରାମେଶ୍ୱର ଓ ଶେଷ ଷ୍ଟେସନ୍ ଧନୁଷ୍କୋଟୀ । କିଛିଦୂର ଗଲା ପରେ ରାମେଶ୍ୱର ଷ୍ଟେସନ୍ ପଡ଼ିଲା । କେତେ ଜଣ ଯାତ୍ରୀ ସେଠି ଓହ୍ଲେଇଲେ ।

ଟିକିଏ ଦୂରରେ, ପ୍ରାୟ ସମୁଦ୍ରର ଠିକ୍ କୂଳରେ, ଚାରିଆଡ଼ର ବୃକ୍ଷହୀନ ବାଲୁକାବିସ୍ତାର ମଧ୍ୟରେ ରାମେଶ୍ୱର ମନ୍ଦିର ଦଣ୍ଡାୟମାନ । ମୁଁ ନୀରବରେ ହାତ ଯୋଡ଼ି ସେହି ମନ୍ଦିର ଆଡ଼କୁ ଉଦ୍ଦେଶ୍ୟ କରି ପ୍ରଣାମ କଲି । କଥିତ ଅଛି, ରାମଚନ୍ଦ୍ର, ଆଜି ଯେଉଁଠାରେ ମନ୍ଦିର ଠିଆହୋଇଛି, ସେଠାରେ ଦେବାରାଧନା କରିଥିଲେ ଏବଂ ଆଉ ଟିକିଏ ଦୂରରେ ଧନୁ ପୂଜାକରି ସ୍ଥାନଟିକୁ ଧନୁଷ୍କୋଟୀ ନାମରେ ଅମର କରିଯାଇଅଛନ୍ତି । ରାମେଶ୍ୱର ମନ୍ଦିରଆଡ଼କୁ ଅନାଇଁ ଅନାଇଁ ମୋର ସ୍ମୃତି ମହାକବି ବାଲ୍ମୀକିଙ୍କର କଳ୍ପନା-ନ୍ତରରେ ପ୍ରବେଶ କଲା । ପୁରୁଷୋତ୍ତମ ରାମଚନ୍ଦ୍ର ପିତାଙ୍କର ସତ୍ୟ ରକ୍ଷା କରିବାକୁ

ଆସି, ପରମାସୁନ୍ଦରୀ ଓ ପରମା ସାଧ୍ୱୀ ପତ୍ନୀଙ୍କୁ ହରାଇ, ଏହି ବେଳାଭୂମିରେ ବିରହ-ବିଦଗ୍ଧ ହୋଇ, ଜଳଧିର ଅପର ପାର୍ଶ୍ୱରେ ଥିବା ଦ୍ୱୀପ-ରାଜ୍ୟ ଆଡ଼କୁ ସତୃଷ୍ଣ ନେତ୍ରରେ ଅନାଇଁ ଅନାଇଁ ବିଚ୍ଛେଦର ପଞ୍ଜରଭେଦୀ ନିଃଶ୍ୱାସ ଓ ଗଭୀର ଅଶ୍ରୁ ତ୍ୟାଗ କରିଥିବେ । ଏହି ବାୟୁରେ ତାଙ୍କର ନିଃଶ୍ୱାସ ମିଶିଥିବ; ଏହି ସିନ୍ଧୁ ଜଳରେ ତାଙ୍କର ତପ୍ତ ଅଶ୍ରୁ ମିଳିଯାଇଥିବ; ଏହି ବାଲୁକାରେ ସେହି ପରମ ପ୍ରେମିକ– ପରମ ପୁରୁଷଙ୍କର ପବିତ୍ର ପଦଚିହ୍ନରାଜି ଅଙ୍କିତ ହୋଇଥିବ ! ସହସ୍ର ସହସ୍ର ବର୍ଷବ୍ୟାପୀ କାଳ ସେ ପଦଚିହ୍ନ ଏ ବାଲୁକାରୁ ପୋଛି ପାରିନାହିଁ । ବିରାଟ ଭାରତବର୍ଷର ଚାରି କୋଣରୁ କୋଟି କୋଟି ନରନାରୀ ସହସ୍ର ସହସ୍ର ବର୍ଷ ଧରି ଏହି ବାଲୁକାରେ ସେହି ମହାମାନବର ପଦଚିହ୍ନକୁ ଖୋଜି ତା'ର ସ୍ପର୍ଶକୁ ମୁଣ୍ଡରେ ନେବାକୁ ଧାଇଁଛନ୍ତି ।

ମନୁଷ୍ୟ ହୃଦୟର ଗଭୀର ଅନୁଭୂତିକୁ ମହାକାଳ ବରାବର ନମସ୍କାର କରି ଆସିଛି । ଶତ ଶତ ସାମ୍ରାଜ୍ୟ ଲୁପ୍ତ ହୋଇଛି । ସେସବୁର ନାମଗନ୍ଧ ଆଜି ନାହିଁ; କିନ୍ତୁ ଯମୁନା କୂଳରେ ଗୋଟିଏ କ୍ଷୁଦ୍ର କୁଟୀରର ଅଶିକ୍ଷିତା-ଗ୍ରାମ୍ୟ-ବଧୂ ରାଧାର ବିରହ ଲୋତକ ମହାକାଳ ସାଇତି ରଖିଛି । ଘୋର ଅରଣ୍ୟରେ ରାଜପୁତ୍ର ଗୌତମ ସମଗ୍ର ମାନବଜାତିର ଦୁଃଖ ପାଇଁ ଯାହା ଆବିଷ୍କାର କଲେ କାଳ ଆଜି ତାକୁ ବିଶ୍ୱବ୍ୟାପୀ କରିଛି । ଖ୍ରୀଷ୍ଟ ମନୁଷ୍ୟ ପାଇଁ ଯେଉଁ ବେଦନା ଅନୁଭବ କରିଥିଲେ, ସେ ବେଦନା ଏ ଯାଏଁ କୋଟି କୋଟି ପ୍ରାଣରେ ଜୀବନ୍ତ ରହିଛି । ପୁରୁଷୋତ୍ତମ ସତ୍ୟସନ୍ଧ ରାମଚନ୍ଦ୍ର ବିରହଦଗ୍ଧ ହୋଇ ଯେଉଁ ବାଲୁକାରେ ବିଚରଣ କରିଥିଲେ, ମହାକାଳ ସେ ସ୍ଥାନକୁ ସ୍ମୃତିପୂତ କରି ରଖିଛି ।

ଧନୁଷ୍କୋଟୀ ଷ୍ଟେସନ ଠିକ୍ ସମୁଦ୍ରକୂଳେ– ଅନ୍ତରୀପର ଶେଷ ବିନ୍ଦୁରେ । ଏହି ଶେଷ ଭୂମି ସିଂହଳ ଆଡ଼କୁ ଭାରତର ନିକଟତମ ଭୂମି । ଏହି ଅନ୍ତରୀପ ଦକ୍ଷିଣ-ସମୁଦ୍ର ଭିତରକୁ ପଶିଯାଇ ସିଂହଳ ଓ ଭାରତବର୍ଷ ଭିତରେ ମାନ୍ନାର ଉପସାଗର ଓ ପକ୍ ପ୍ରଣାଳୀ ସୃଷ୍ଟି କରିଛି । ରେଳପାଇଁ ପାଣି ଭିତର ଯାଏଁ ଲୁହାର ମଞ୍ଚା ହୋଇଛି । ଆମେମାନେ ଗାଡ଼ିରୁ ଓହ୍ଲାଇ ଜାହାଜ ସମ୍ମୁଖରେ ଦଣ୍ଡାୟମାନ ହେଲୁଁ ।

ସାମାନ୍ୟ ବୋଟ୍ ମାତ୍ର ଏ ଜାହାଜ । ପ୍ରତିଦିନ ସିଂହଳ ଓ ଭାରତବର୍ଷ ଭିତରେ ଯିବାଆସିବା କରେ । ଜଳଯାତ୍ରା ମାତ୍ର ଦୁଇ ଘଣ୍ଟା ଲାଗେ । ମୁଁ ବୋଟରେ ଉଠିଲା ମାତ୍ରେ ଲାବଣ୍ୟବତୀର ଗୋଟେ ପଂକ୍ତି ମୋର ବାରମ୍ବାର ମନକୁ ଆସିଲା– "ବହିତ୍ର ଲାଗିଲା ଯାଇଁ ସିଂହଳ ଦ୍ୱୀପରେ ।" ଭଞ୍ଜଙ୍କ ମାନସୀ ପ୍ରତିମା ଲାବଣ୍ୟବତୀ ସିଂହଳ ରାଜକୁମାରୀ ଓ ନାୟକ ଚନ୍ଦ୍ରଭାନୁ ଲାବଣ୍ୟବତୀକୁ ପାଇବା ଲାଗି ଏହି ସିଂହଳ ଦ୍ୱୀପକୁ ବୋଇତରେ ବସି ଆସିଥିଲେ । ଚନ୍ଦ୍ରଭାନୁର ବୋଇତ ସିଂହଳ ଦ୍ୱୀପରେ

ଲାଗିବା କଥା ପଢ଼ିଥିଲି କେବେ– ଆଜି ମୁଁ ସେହି ସିଂହଳ ଦ୍ୱୀପ ଆଡ଼କୁ ଯାଉଛି । ମନ ମୋର ଆନନ୍ଦ ଉଦ୍‌ବେଗରେ କ୍ଷୁବ୍‌ଧ ହେବା ସ୍ୱାଭାବିକ । ସିଂହଳ ଦ୍ୱୀପ ସଙ୍ଗେ ପ୍ରାଚୀନ କଳିଙ୍ଗର ସାହିତ୍ୟିକ ସମ୍ବନ୍ଧ ଛଡ଼ା ଐତିହାସିକ ସମ୍ବନ୍ଧ ମଧ୍ୟ ଅଛି । ଯେଉଁ ବିଜୟ ସିଂହ ଏହି ଦ୍ୱୀପ ଅଧିକାର କରି ଦ୍ୱୀପଟିକୁ ନିଜର ନାମ ଦେଇ ଯାଇଅଛନ୍ତି, ସେ କଳିଙ୍ଗ ରାଜକୁମାରୀକୁ ବିବାହ କରିଥିଲେ । ଜଣେ କଳିଙ୍ଗ ରାଜକନ୍ୟା ବ୍ରାହ୍ମଣ୍ୟ ଧର୍ମର ଅତ୍ୟାଚାରରୁ ବୁଦ୍ଧଙ୍କର ପବିତ୍ର ଦନ୍ତକୁ ରକ୍ଷାକରିବା ପାଇଁ, ଦନ୍ତପୁରରୁ ସେହି ପବିତ୍ର ବସ୍ତୁଟିକୁ କବରୀରେ ଲୁଚାଇ, ନାନା ଦେଶ, ନାନା ଅରଣ୍ୟ, ନାନା ନଦୀ ପାରହୋଇ ସିଂହଳରେ ରଖି ଆସିଥିଲେ । ଅବଶ୍ୟ ଏ ସବୁକଥା ସାଧାରଣ ସିଂହଳୀ ବା ସାଧାରଣ ଓଡ଼ିଆ ମନରେ ରଖିନାହାନ୍ତି । ଏସବୁ ପୋଥିର କଥା; ସାଧାରଣ ଓଡ଼ିଆ ସିଂହଳ ଦେଶ କେଉଁଠି କହି ପାରିବେ ନାହିଁ, ସାଧାରଣ ସିଂହଳୀ ଓଡ଼ିଶାର ନାମ ଜାଣେ ନାହିଁ ।

ଡାହାଣ ପାର୍ଶ୍ୱରେ ରାମ-ନିର୍ମିତ ସେତୁବନ୍ଧ ଦୂର ଚକ୍ରବାଳ ଉପରେ ଅସ୍ପଷ୍ଟ ଭାବରେ ଦେଖାଯାଉଥାଏ । କ୍ରମେ ବୋଇତ ଗତି କରିବାକୁ ଲାଗିଲା । ଲହରୀହୀନ ନୀଳ ଜଳରାଶି ଉପରେ ଏହି ନୌ-ଯାତ୍ରା ମୋତେ ଚିଲିକାର ନୌକାଯାତ୍ରା ସ୍ମରଣ କରାଇ ଦେଉଥାଏ । ଯାତ୍ରୀମାନଙ୍କ ଭିତରେ ଦୁଇଟି ଶ୍ୱେତାଙ୍ଗ ଶ୍ୱେତାଙ୍ଗୀ ଦେଖିଲି । ସେମାନେ ବିଲାତ ଫେରୁଛନ୍ତି । ମୁଁ ବିଲାତ ଯାଉଥିବାର କିମିତି ଶୁଣି, ସେମାନେ ମୋତେ ପଚାରିବାକୁ ଲାଗିଲେ । ସାହେବଟି ମୋଟା ଓ ଠୁରା । ସାହେବବାଣୀ ତା'ଠୁ ଆହୁରି ମୋଟା ଓ ଆହୁରି ଲମ୍ବା । ମୁଁ ଜାପାନୀ ଜାହାଜରେ ତୃତୀୟଶ୍ରେଣୀରେ ଯିବାର ଶୁଣି ସାହେବ ଥଟ୍ଟା କରିବାକୁ ଲାଗିଲା । ସେ ଦୁହେଁ ଛ'ଶ ଲେଖାଏଁ ବାରଶହ ଟଙ୍କା ଭଡ଼ା ଦେଇଛନ୍ତି– ସେହି ଅନୁପାତରେ କିମିତି ସ୍ୱାଚ୍ଛନ୍ଦ୍ୟ ପାଇବେ, ସାହେବ ଚା'ପାନ କରୁଥାଏ ଓ କହୁଥାଏ । ମୋତେ ଶେଷରେ କହିଲା– ''ଜାପାନୀ ଜାହାଜ ! ଓ ଡୁବ୍ ଯାଏଗା, ଓ ନୀଚେ ଯାଏଗା ! You will never reach Edinburgh." ଅର୍ଥାତ୍ ତୁମେ କେବେ ଏଡ଼ିନବରାରେ ପହଞ୍ଚିପାରିବ ନାହିଁ, ବାଟରେ ବୁଡ଼ି ମରିବ । ସାହେବ ସାହେବାଣୀ କଲିକତାରୁ ଫେରୁଥାନ୍ତି । ହିନ୍ଦୀ ଜାଣିଛନ୍ତି । ମୁଁ ସେମାନଙ୍କ ସଙ୍ଗେ ବିଲାତ ସମ୍ବନ୍ଧରେ କିଛି କଥା ହୋଇଥାନ୍ତି; କିନ୍ତୁ ଏ ପ୍ରକାର ଗୁଣ୍ଡା ରକମର ଦେଖି, ସେମାନଙ୍କଠୁଁ ଦୂରରେ ରହିବାକୁ ଚେଷ୍ଟାକଲି ।

ଜାହାଜ ଯେତେବେଳେ ସିଂହଳର ବେଳାଭୂମି ଚୁମ୍ବନ କଲା, ସେତେବେଳେ ରାତ୍ରି । ଅପୂର୍ଣ୍ଣଚନ୍ଦ୍ର ନାରିକେଳକୁଞ୍ଜର ଅନ୍ତରାଳରେ ରହି ବେଳାଭୂମିକୁ ରହସ୍ୟମୟ ଆଲୋକ-ଅନ୍ଧକାରରେ ଆବୃତ କରି ରଖିଥିଲେ । ବ୍ୟସ୍ତରେ ଜାହାଜରୁ ଅବତରଣ

କରି ଅପେକ୍ଷା କରିଥିବା କଲମ୍ବୋଗାମୀ ଟ୍ରେନ୍ ଧରିବାକୁ ହେଲା । ଗାଡ଼ି ଛାଡ଼ିବା ପୂର୍ବରୁ କିଞ୍ଚିତ୍ ଆହାର କରି ମୁଁ ଶଯ୍ୟା ଗ୍ରହଣ କଲି ।

ଖୁବ୍ ପ୍ରତ୍ୟୁଷରୁ ଉଠି ବାତାୟନ ଦେଇ ସିଂହଳ ପ୍ରକୃତିକୁ ଦେଖିବାକୁ ଲାଗିଲି । ସିଂହଳରେ ନାରିକେଳର ବଣ । ଭାରତବର୍ଷରେ ନାରିକେଳ ରୋପିତ ବୃକ୍ଷ, କିନ୍ତୁ ସିଂହଳରେ ନାରିକେଳର ସ୍ୱଚ୍ଛନ୍ଦ ଜାତ ବନ ଥିଲା ପରି ଦେଖାଗଲା । ଯେଉଁ ଆଡ଼କୁ ଅନାଅ ଓ ଯହିଁ ଯାଅ, ନାରିକେଳର ଘଞ୍ଚ ସମାବେଶ । ମଝିରେ ମଝିରେ ସାମାନ୍ୟ କ୍ଷେତ– ନାରିକେଳର ବୃକ୍ଷଶ୍ରେଣୀ ସେହି କ୍ଷେତକୁ ଚାରିଆଡ଼ୁ ଘେରି ରହିଛନ୍ତି । ଜନବସତି ମଧ୍ୟ ସିଂହଳରେ ବିରଳ । ଭାରତବର୍ଷର ଶ୍ରେଣୀବଦ୍ଧ କୁଟୀରମାଳା ଏଠାରେ ଦେଖିଲି ନାହିଁ । ନାରିକେଳକୁଞ୍ଜ ମଧ୍ୟରେ ଏଠି ଗୋଟେ ଘର, ତା'ର ପ୍ରତିବେଶୀ ଆଉ କେତେ ଦୂରରେ– ଆଉ ଗୋଟିଏ କୁଞ୍ଜ ମଧ୍ୟରେ । ପରେ ସିଂହଳୀ ଛାତ୍ରମାନଙ୍କଠାରୁ ଶୁଣିଲି ଯେ, ସିଂହଳର ଜନବସତି ପ୍ରାୟ ସେହିପରି । କିନ୍ତୁ ଘରଗୁଡ଼ିକ ସୁଦୃଶ୍ୟ ଓ ତା'ର ଚାରିପାଖ ବେଶ୍ ପରିଷ୍କୃତ ଓ ପରିପାଟିଯୁକ୍ତ ।

ସକାଳ ପ୍ରାୟ ଆଠଟା ବେଳେ କଲମ୍ବୋରେ ପହଞ୍ଚିଲି । କଲମ୍ବୋ ସାର୍ବଜନୀନ ସହର । ପୃଥିବୀର ସବୁ ଜାତିର ଲୋକେ ଏଠାରେ ରହନ୍ତି । ପୂର୍ବ ଓ ପଶ୍ଚିମ ମହାଦେଶଗାମୀ ଜାହାଜମାନଙ୍କର ଏହା ବିଶ୍ରାମ ସ୍ଥଳ । ସାଜସଜ୍ଜାରେ ଏହା ଏକ ଇଉରୋପୀୟ ସହର ପରି, ତେଣୁ ଏଠାରେ ରହିବାର ଖର୍ଚ୍ଚ ଖୁବ୍ ବେଶି । ମୁଁ ଯେଉଁ ହୋଟେଲରେ ଥିଲି, ସେଠି ଦିନକୁ ଆଠଟଙ୍କା କରି ଦେବାକୁ ପଡ଼େ– ସେ ପୁଣି ଭାରତୀୟ ହୋଟେଲ । କଲମ୍ବୋରେ ମୁଁ ଦୁଇଦିନ ଥିଲି । କଲମ୍ବୋ ସିଲୋନୀ ସହର ନୁହେଁ– ଏହା ସାର୍ବଜନୀନ ନଗରୀ । ତଥାପି ରାସ୍ତାରେ ବୁଲି ବୁଲି ସିଲୋନୀ ନାରୀ ଓ ପୁରୁଷଙ୍କୁ ଦେଖିବାର ଓ ସେମାନଙ୍କର ଢାଞ୍ଚା ସମ୍ବନ୍ଧେ କିଛି ଜାଣିବାର ସୁବିଧା ପାଇଲି । ସିଲୋନୀ ରମଣୀର ସ୍ୱାସ୍ଥ୍ୟ ଅତ୍ୟନ୍ତ ଲୋଭନୀୟ । ତା'ର ସମୃଦ୍ଧ ଚିକୁରର କବରୀ ପରମ ମଞ୍ଜୁଳ । ସିଲୋନ୍‌ରେ ନାରୀ ଗୃହମୁକ୍ତା । ବାହାରର ମୁକ୍ତ ଜୀବନ, ମୁକ୍ତ ଆକାଶ ଓ ସ୍ୱଚ୍ଛନ୍ଦ ଶ୍ରମ ଓ ବିହାର ବୋଧହୁଏ ସିଲୋନୀ ନାରୀକୁ ନିଖୁଣ ସ୍ୱାସ୍ଥ୍ୟ ଦିଏ । ଆଉ ତା'ର ପ୍ରଚୁର କେଶ-ପାଶ ବୋଧହୁଏ ସୁଲଭ ନାରୀକେଳ ତୈଳର ଗୁଣ । ବର୍ମାସ୍ତ୍ରୀମାନଙ୍କ ପରି ସିଲୋନୀ-ସୁନ୍ଦରୀ, ତଳେ ଲୁଙ୍ଗି (ସାରଂ) ଓ ଉପରେ ଯାକେଟ୍ ବ୍ୟବହାର କରେ । ମସ୍ତକ ମୁକ୍ତ– ତା'ର ମଞ୍ଜୁଳ କେଶଜାଲ ମସ୍ତକର ଶ୍ରେଷ୍ଠ ଆବରଣ ଓ ଆଭରଣ । ଶିକ୍ଷିତା ସିଲୋନୀ ନାରୀମାନେ ବର୍ତ୍ତମାନ ଶାଢ଼ି ପିନ୍ଧିବା ଆରମ୍ଭ କରିଛନ୍ତି । ଭାରତୀୟ ଶାଢ଼ି, ସିଲୋନୀ ସୁଲୋଚନାମାନଙ୍କର ପୁଞ୍ଜୀଭୂତ ରୂପ-ସମ୍ପଦକୁ କିପରି ତରଙ୍ଗାୟିତ ଓ ଲୀଳାୟିତ କରୁଛି, ତା' ମୁଁ ଠାଏ ଠାଏ ଦେଖିଛି ।

ସିଲୋନୀ ପୁରୁଷ କୌଣସି ପ୍ରଶଂସାର ଯୋଗ୍ୟ ନୁହେଁ । ଯେଉଁମାନେ ଶିକ୍ଷିତ, ସେମାନେ ଏକାବେଳକେ ନିଜସ୍ୱ ହରେଇ ସାହେବୀ ଅନୁକରଣରେ ପରିଣତ ହୋଇଛନ୍ତି । ସିଲୋନୀମାନଙ୍କର ନିଜର ସ୍ୱତନ୍ତ୍ର ସଂସ୍କୃତି ବିଶେଷ ନାହିଁ– ଯାହା ବା ଭାରତବର୍ଷରୁ ସେମାନେ ନେଇଥିଲେ, ସେତକ ସମ୍ବନ୍ଧରେ ସେମାନେ ଅତ୍ୟନ୍ତ ଉଦାସୀନ । ସିଲୋନ୍ ଯେ ତା'ର ସ୍ୱତନ୍ତ୍ର ବିକାଶଦ୍ୱାରା ବିଶ୍ୱସଭ୍ୟତାକୁ କିଛି ଦାନ କରିବ, ଏ କଳ୍ପନା ମଧ୍ୟ କୌଣସି ସିଲୋନୀ ମୁଣ୍ଡରେ ପଶିନି । ବ୍ରିଟିଶ୍ ଶାସନରେ ସିଲୋନୀମାନେ ବେଶ୍ ସନ୍ତୁଷ୍ଟ । ଶାସନ ବିଦେଶୀ ହୋଇପାରେ; କିନ୍ତୁ ଜାତୀୟ ସଭ୍ୟତାଟା ବିଦେଶୀ ହେବାର କୌଣସି କାରଣନାହିଁ । ଭାରତବର୍ଷର ବଡ଼ ଗୌରବ ଏହି ଯେ, ସାତଶ ବର୍ଷର ପରାଧୀନତା ସତ୍ତ୍ୱେ ସେ ତା'ର ସ୍ୱତନ୍ତ୍ର ସଂସ୍କୃତି ହରେଇ ନାହିଁ; ସମସ୍ତ ନିଷ୍ପେଷଣ ଓ ଅତ୍ୟାଚାର ସତ୍ତ୍ୱେ ରବୀନ୍ଦ୍ରନାଥଙ୍କ କବିତାରେ, ଗାନ୍ଧିଙ୍କ ସତ୍ୟସାଧନାରେ ଓ ରାମକୃଷ୍ଣଙ୍କ ଯୋଗାନୁଭୂତିରେ ତାହା ଜଗତକୁ ବାରମ୍ବାର ନୂତନ ସନ୍ଦେଶ, ନୂତନ ଜୀବନଧାରା ଦେଖେଇଦେଉଛି । ସିଲୋନ ଅବଶ୍ୟ ଭାରତବର୍ଷ ତୁଳନାରେ କ୍ଷୁଦ୍ର; କିନ୍ତୁ ଆୟାର୍ଲାଣ୍ଡ ତା'ର ସ୍ୱତନ୍ତ୍ର ସଭ୍ୟତା ଓ ସଂସ୍କୃତିକୁ ରକ୍ଷା କଲାବେଳେ ସିଲୋନ୍ ସେଥିପ୍ରତି ଉଦାସୀନ ହେବାର କୌଣସି କାରଣ ନାହିଁ । ଜାହାଜରେ ପରେ ସିଲୋନୀ ଛାତ୍ରମାନଙ୍କୁ ଭେଟିଥିଲି । ସେମାନଙ୍କର ଦେଶାତ୍ମବୋଧ ଆଦୌ ନାହିଁ– ସେମାନେ ସେ କଥାଟା ଆଦୌ ଦରକାର କରନ୍ତିନାହିଁ ।

ବ୍ରିଟିଶ୍ ଶାସନରେ ସିଲୋନ୍‌ର ଯେଉଁ ଉନ୍ନତି ହୋଇଛି, ସେଥିପାଇଁ ସିଲୋନୀମାନେ ଇଂରେଜଙ୍କ ପ୍ରତି କୃତଜ୍ଞ ହେବାର କଥା । ରବର, ନାରିକେଳ, ଚା'ଦେଇ ସିଲୋନୀମାନେ ବେଶ୍ ରୋଜଗାର କରନ୍ତି । ସିଲୋନ୍‌ରେ ଭୂମିକର ନାହିଁ; ଆୟକର, ବାଣିଜ୍ୟ-ଶୁଳ୍କ, ସିଟାମ୍ ପ୍ରଭୃତି ଦେଇ ଏହି ଛୋଟ ଦ୍ୱୀପର ଆୟ ପ୍ରାୟ ସାଢ଼େ ଆଠକୋଟି ଟଙ୍କାର ଉପର; ଲୋକସଂଖ୍ୟା ମୋଟ ପଞ୍ଚତିରିଶ ଲକ୍ଷ । ଦେଶରେ ଦାରିଦ୍ର୍ୟ ନାହିଁ କହିଲେ ଚଳେ । ପେଟ ଓ ପିଠିର ଅଭାବ ଜଗତର ସବୁ ବିପଦର ମୂଳରେ । ସିଲୋନୀମାନଙ୍କର ସେ ଅଭାବ ନାହିଁ, ତେଣୁ ସେମାନେ କୌଣସି ପରିବର୍ତ୍ତନ ଦରକାର ନ କରିବା ସ୍ୱାଭାବିକ ।

ସିଲୋନ୍‌ରେ ବହୁତ ଭାରତୀୟ । ବିଶେଷତଃ ତାମିଲନାଦ୍ ଓ ସିଂହଳ ଭିତରେ ବହୁ ଶତାବ୍ଦୀ ଧରି ଯୁଦ୍ଧ ବିଗ୍ରହ ଚାଲିଥିଲା । ସିଂହଳ କେତେକାଳ ତାମିଲ ରାଜାମାନଙ୍କର ଅଧୀନରେ ମଧ୍ୟ ଥିଲା । ତାମିଲମାନେ ବୁଦ୍ଧିମାନ୍ ଓ କଠୋର ପରିଶ୍ରମ କରିପାରନ୍ତି । ସିଲୋନୀମାନେ ଏମାନଙ୍କ ସଙ୍ଗେ ପାରି ଉଠୁନାହାନ୍ତି । ତେଣୁ ସିଲୋନୀମାନେ ଭାରତୀୟମାନଙ୍କୁ ସିଂହଳରୁ ବାହାରକରିବାର, ଆଉ ପୂରାଇ

ନ ଦେବାର ବା ରାଜନୈତିକ ଅଧିକାର ନ ଦେବାର ଚେଷ୍ଟାରେ ଅଛନ୍ତି । ତା'ଛଡ଼ା ସିଲୋନ୍‌ରେ ଖ୍ରୀଷ୍ଟିୟାନ ସମ୍ପ୍ରଦାୟ ଏକ ସ୍ୱତନ୍ତ୍ର ଦଳ । ଏହିପରି ତ୍ରିକୋଣ-ଯୁଦ୍ଧରେ ସିଂହଳର ରାଜନୈତିକ ବାୟୁମଣ୍ଡଳ ସବୁବେଳେ ସରଗରମ ।

ସିଂହଳୀମାନେ ସିଂହଳକୁ ଲଙ୍କା କହନ୍ତି– ଆମ ଓଡ଼ିଶାକୁ ସ୍ନେହରେ ଉତ୍କଳ କହିଲା ପରି । ଏଠି ଯେ ସୀତା-ହରଣ ଓ ରାମ-ରାବଣ ଯୁଦ୍ଧ ହୋଇଥିଲା, ତାହା ସିଲୋନୀମାନେ ଜାଣନ୍ତି । କିନ୍ତୁ ରାବଣର ରାଜଧାନୀ କେଉଁଠି ଥିଲା ପଚାରିବାରେ କେହି କହିପାରିଲେ ନାହିଁ ।

ମହାରାଜ ଅଶୋକଙ୍କର ପ୍ରିୟପୁତ୍ର ମହେନ୍ଦ୍ର ଓ ପ୍ରିୟକନ୍ୟା ସଂଘମିତ୍ରା ଏହି ଲଙ୍କା ଦ୍ୱୀପରେ ବୌଦ୍ଧଧର୍ମର ପ୍ରଚାର ପାଇଁ ରାଜପ୍ରାସାଦର ସମସ୍ତ ସୁଖ ଓ ରାଜା-ରାଣୀ ହେବାର ସମସ୍ତ ସ୍ୱପ୍ନ ପରିତ୍ୟାଗ କରି, ଏହି ଦ୍ୱୀପର ଗିରିଗୁହାମାନଙ୍କରେ ରୁକ୍ଷ, ହରିଦ୍ରା ବସ୍ତ୍ର ଓ ଭିକ୍ଷାଲବ୍ଧ ଅନ୍ନରେ ଶେଷ ଜୀବନ କଟେଇଥିଲେ । ସେମାନଙ୍କର ସ୍ମୃତି ସିଲୋନ୍‌ରେ ଏ ଯାଏ ଜୀବନ୍ତ ରହିଛି । କଲମ୍ବୋର ରାସ୍ତାରେ ଭ୍ରାମ୍ୟମାଣ ହରିଦ୍ର ବସନ, ମୁଣ୍ଡିତ-ମସ୍ତକ ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ମୁଁ ପ୍ରଥମେ ଏହିଠାରେ ଦେଖିଲି ।

ରାଜପୁତ୍ର ଗୌତମ, ମନୁଷ୍ୟକୁ ଦୁଃଖରୁ ଉଦ୍ଧାର କରିବା ଲାଗି କଠୋର ତପଶ୍ଚରଣ ପରେ, ଏହିପରି ଦୀନବେଶରେ ନଗ୍ନ ପଦରେ ଉତ୍ତରଭାରତର ନଗରୁ ନଗରେ, ଗ୍ରାମୁ ଗ୍ରାମେ ବୁଲି ବୁଲି ପ୍ରେମ ଓ ଅହିଂସାର ଆତ୍ମ-ପ୍ରତ୍ୟୟ ଓ ଆତ୍ମ-ସାଧନାର ମହାସତ୍ୟ ପ୍ରଚାର କରିଥିଲେ । ହତଭାଗ୍ୟ ଭାରତବର୍ଷ ସେ ସତ୍ୟକୁ ପଶୁବଳି, ଜାତିଭେଦ, କୁସଂସ୍କାର ଓ କାଞ୍ଚନିକ ଦେବତାମାନଙ୍କ ସାଡ଼ମ୍ବର ଆରାଧନାରେ ଦେଶରୁ ଚିରକାଳ ପାଇଁ ବାହାର କରିଦେଇଛି । ହରିଦ୍ରବସନ, ମୁଣ୍ଡିତ ମସ୍ତକ ଏହି ସନ୍ନ୍ୟାସୀମାନେ ଶାକ୍ୟସିଂହଙ୍କର ସେହି ସତ୍ୟାଲୋକକୁ ଦେଶ-ଦେଶରେ ଏ ପର୍ଯ୍ୟନ୍ତ ପ୍ରଜ୍ୱଳିତ କରି ରଖିଛନ୍ତି । ସେଥିଲାଗି କଲମ୍ବୋର ରାସ୍ତାରେ ଠିଆହୋଇ ଏହି ସନ୍ନ୍ୟାସୀମାନଙ୍କର ଯିବା ଆସିବା ପରମ କୌତୂହଳରେ ମୁଁ ବାରମ୍ବାର ନିରୀକ୍ଷଣ କରିଥିଲି ।

## ଜାପାନୀ ଜାତି

ଜାହାଜ ଅଗଷ୍ଟ ୨୫ ତାରିଖ ଦିନବେଳେ ଛାଡ଼ିବା କଥା । କିନ୍ତୁ ଜାହାଜ ଡେରିରେ ପହଞ୍ଚିଲା ପ୍ରାୟ ସନ୍ଧ୍ୟାବେଳେ ଏବଂ ଟମାସ୍ କୁକ୍ ଅଫିସରୁ ଜାଣିଲି ଯେ, ଜାହାଜ ୨୬ ତାରିଖ ଦିନ ବାରଟା ବେଳେ ବନ୍ଦର ଛାଡ଼ିବ । ମୁଁ ଅକାରଣ ବ୍ୟସ୍ତ ହୋଇ ୨୫

ତାରିଖ ରାତିରେଇ ହୋଟେଲ ଛାଡ଼ି ଜାହାଜ ଧରିବାକୁ ବାହାରିପଡ଼ିଲି ।

ସେହି ରାତିରେ କଲମ୍ବୋ ବନ୍ଦରର ଜେଟୀରେ ମୁଁ ଜୀବନରେ ପ୍ରଥମେ ଜାପାନୀ ଲୋକ ଦେଖିଲି । ଦଳେ ଜାପାନୀ ଜାହାଜରୁ ବୋଟ୍‌ରେ ଚଢ଼ି ସହରକୁ ଆସୁଥିଲେ । ସେମାନେ ଆମ୍ଭମାନଙ୍କର ପାଖ ଦେଇ ଚାଲିଗଲେ । ମୁଁ ସେମାନଙ୍କୁ ଅନେଇଁ ରହିଲି ସେମାନେ ଅଦୃଶ୍ୟ ହେଲାଯାଏଁ । ଭିନ୍ନ ଭିନ୍ନ ଢଙ୍ଗର ମନୁଷ୍ୟ ତ ଭାରତବର୍ଷରେ ହିଁ ଦେଖିବାକୁ ମିଳେ; କିନ୍ତୁ ଭିନ୍ନ ଆକୃତିର ମନୁଷ୍ୟ ଏହି ପ୍ରଥମ ଦେଖା– ତେଣୁ କୌତୂହଳ ହେବା ସ୍ୱାଭାବିକ । ତା'ଛଡ଼ା ଜାପାନୀ ବୋଲି କୌତୂହଳ ବେଶି ହେବା ସ୍ୱାଭାବିକ । ଗାଈଗୋଠରେ ଆଗେ ମାରଣା ଗାଈକି ଚିହ୍ନି ରଖିବା କଥା ନା !

ମୁଁ ଜାପାନୀ ଜାହାଜରେ ଟିକଟ କାଟିଲା ବେଳୁ ଭାବିଥାଏ ଯେ ଜାପାନୀ ସ୍ତ୍ରୀପୁରୁଷଙ୍କୁ ଦେଖିବି, ତାଙ୍କ ଦେଶର କଥା ପଚାରିବି, ତାଙ୍କର ଚାଲିଚଳଣ ବୁଝିରଖିବି । ଗତ ଶତାବ୍ଦୀର ଶେଷ ଦଶକଠାରୁ ଏ ଯାଏଁ ଜାପାନ, ଏସିଆର ଏକମାତ୍ର ଜାତି ଯାହାକୁ ୟୁରୋପର ବଳଦୃପ୍ତ ଦୁର୍ଦ୍ଧର୍ଷ ଗୋରା ହାତ ଟେକେ । ଭାରତବର୍ଷରେ ଇଂରେଜ ଗାନ୍ଧିଜୀଙ୍କ ପରି ମହାମାନବଙ୍କୁ ମଧ୍ୟ ଅକୁଣ୍ଠିତ ଚିତ୍ତରେ ଜେଲରେ ଭର୍ତ୍ତିକରିପାରେ; କିନ୍ତୁ ସେହି ଇଂରେଜ ସାମାନ୍ୟତମ ଜାପାନୀକୁ ଟିପ ଛୁଇଁବାକୁ ଭୟ କରିବ । ଏ ପ୍ରଭେଦର କାରଣ ଏହା ନୁହେଁ ଯେ ଭାରତବର୍ଷୀୟ ଜାପାନୀ ଅପେକ୍ଷା ନିମ୍ନତର ଜୀବ । ପ୍ରଭେଦ ଏହି ଯେ ଜାପାନ ସ୍ୱାଧୀନ; ଜାପାନର ସାମାନ୍ୟତମ ପ୍ରଜା ଅପମାନିତ ହେଲେ ଜାପାନ ବୋମା-ଟର୍ପେଡ଼ୋର ପ୍ରଳୟଙ୍କର ଗର୍ଜନରେ ତା'ର ଉତ୍ତର ଦେବ । ନିରସ୍ତ୍ର ପରଶାସିତ ଭାରତବର୍ଷର ସେ ସୌଭାଗ୍ୟ ନାହିଁ; ତେଣୁ ପରାଧୀନ ଦେଶର ମୋ' ପରି ଲୋକ ପକ୍ଷରେ ଏକ ଏସିଆର ଏହି ଗୌରବଦୀପ୍ତ ଜାପାନୀ ଜାତି ଲୋକେ ମୋର କୌତୂହଳ ଉଦ୍ଦୀପ୍ତ କରିବା ଆଶ୍ଚର୍ଯ୍ୟ କ'ଣ ?

ମୁଁ ଜାହାଜ ଧରିବାର ମାସକ ପୂର୍ବରୁ ଚୀନ-ଜାପାନ ଯୁଦ୍ଧ ଆରମ୍ଭ ହୋଇ ଯାଇଥାଏ । ଭାରତବର୍ଷରେ ଥିଲାବେଳେ ତ ଜଗତର ଅନ୍ୟ କୋଟି କୋଟି ଲୋକଙ୍କ ପରି ମୋର ସହାନୁଭୂତି ଚୀନ ପକ୍ଷରେ । ଜାପାନୀ ଜାହାଜରେ ବସିବା ପରେ ସେହି ସହାନୁଭୂତି ଗାଢ଼ତର ହୋଇଥିଲା ଏବଂ ଆମେ ଯେତେ ଭାରତୀୟ ଛାତ୍ର ଥାଉଁ, ସମସ୍ତେ ଜାପାନର ପରାଜୟ କଥା କିମିତି ଶୁଣିବୁ, ସେଥିପାଇଁ ସବୁବେଳେ ଉଦ୍‌ବିଗ୍ନ ହୋଇଥାଉଁ । କିନ୍ତୁ ଆମ ଇଚ୍ଛାର ଠିକ୍ ବିପରୀତ ଘଟୁଥାଏ; ଜାହାଜରେ ଥାଇ ଆମେ ଜାଣିବାକୁ ପାଇଲୁ ଯେ, ଜାପାନ ଚୀନର ଚାହାର ପ୍ରଦେଶ ଦଖଲ କରିନେଲା । ସେ ଦିନ ସେ ଖବରରେ ବଡ଼ ହତାଶ ହେଲୁ ଆମେ ।

ଜଗତର ସଭ୍ୟତାକୁ ଜାପାନୀମାନଙ୍କର କୌଣସି ବିଶିଷ୍ଟ ଦାନ ନାହିଁ । କାବ୍ୟ-

କବିତାରେ ବା ଧର୍ମ-ବିଜ୍ଞାନରେ ଜାପାନ କୌଣସି ନୂତନ ସତ୍ୟ ପୃଥିବୀକୁ ଦେଇ ନାହିଁ । ତା'ର ସାହିତ୍ୟ ଓ ସଂସ୍କୃତି ଚୀନ୍‌ଠାରୁ ଧାର୍ ଓ ଧର୍ମ ଭାରତବର୍ଷଠାରୁ, ଆଉ ବର୍ତ୍ତମାନର ବୋମା-ଟର୍ପେଡ଼ୋ ୟୁରୋପର ଗୋରାମାନଙ୍କଠୁଁ ଶିକ୍ଷା । ଅନାବାଦି ଜମିରେ ଫସଲ ଭଲ ହୁଏ । ଯେଉଁ ଜାତି ବା ବ୍ୟକ୍ତିର ମୌଳିକତା ନାହିଁ, ସେମାନେ ହୁଏତ ପରର ଶିକ୍ଷା, ସଭ୍ୟତା ଚଟ୍ କରି ଧରିପାରନ୍ତି – ଅନ୍ତତଃ ଜାପାନ ପକ୍ଷରେ ଏହା ହିଁ ଘଟିଛି । ଜାପାନର ଶିକ୍ଷା, ଶାସନ, ଯୁଦ୍ଧ, ବିଚାର, ସନ୍ଧି, ବିଗ୍ରହ ପ୍ରଭୃତି ସମସ୍ତ ଜାତୀୟ ଅନୁଷ୍ଠାନ ପାଶ୍ଚାତ୍ୟ ଆଦର୍ଶରେ ପ୍ରତିଷ୍ଠିତ । ଜାପାନୀ ମସ୍ତିଷ୍କ ଛଡ଼ା ଏ ସବୁରେ ଜାପାନୀ ଜିନିଷ ଆଉ କିଛି ନାହିଁ । କିନ୍ତୁ ପଶ୍ଚିମରୁ ଧାର ଆଣିଲେ କ'ଣ ହେବ, ଏ ସବୁରେ ଜାପାନ ଯେ ଗୁରୁକୁ ଦକ୍ଷିଣା ଦେବା ଉପରେ; ଏଥିରେ ଜାପାନୀ ବୁଦ୍ଧି ଓ ଜାତୀୟ ଶକ୍ତିର ପ୍ରଖରତା ମାନିବାକୁ ହେବ । ଧୂର୍ତ୍ତତାରେ ଜାପାନୀମାନଙ୍କୁ କୌଣସି ଶ୍ୱେତ ଜାତି ବି ପାରିବ ନାହିଁ । ବସ୍ତୁତଃ ଧୂର୍ତ୍ତତା; ଅସାଧୁତା ପ୍ରଭୃତି ଜାପାନୀ ନୀତିଶାସ୍ତ୍ରରେ ଦୋଷ ରୂପେ ଗଣା ହୁଏ ନାହିଁ । * ଜାତି ପ୍ରତି ଅନୁରକ୍ତି ଏସବୁର ଉପରେ । ଜାତି ବା ଷ୍ଟେଟ୍‌ର ମହିମା ବଜାୟ ରଖିବା ପାଇଁ ଜାପାନୀ ଯେକୌଣସି ପାପ କରିପାରେ । ଜାପାନର ବାଣିଜ୍ୟ ରାଜନୀତିରେ ଏହି କୁତ୍ସିତ ଆଦର୍ଶ ଜାଜ୍ୱଲ୍ୟମାନ । ଜାପାନର ଠକେଇ ମାଲ କେଉଁ ଭାରତବାସୀକି ଅଜଣା ? ବର୍ତ୍ତମାନର ଚୀନ ଯୁଦ୍ଧରେ ଜାପାନର ଅମାନୁଷିକ ରାଷ୍ଟ୍ର-ନୀତି ସମଗ୍ର ସଭ୍ୟଜଗତକୁ ଆତଙ୍କିତ କରିଛି । ଯେହେତୁ ଚୀନ୍‌ର ବିଶ୍ୱବିଦ୍ୟାଳୟମାନଙ୍କରେ ନୂତନ ଚୀନ୍‌ର ନବଜୀବନ ବିକଶିତ ହୋଇଉଠୁଛି ଏବଂ ସେହି ନୂତନ ଜୀବନ ଜାପାନୀ ଲାଳସାର ଅନ୍ତରାୟ; ତେଣୁ ଜାପାନର ବୋମା ପ୍ରଥମେ ଉତ୍ତର-ଚୀନର ସମସ୍ତ ବିଶ୍ୱବିଦ୍ୟାଳୟ ନଷ୍ଟ କରିଛି । ଯେଉଁଠି ବୋମା ନଷ୍ଟ କରିପାରିନାହିଁ, ସେଠି ପେଟ୍ରୋଲ ଦେଇ ପୋଡ଼ିଦିଆଯାଇଛି । ମନୁଷ୍ୟର ତା'ର ପ୍ରତିବେଶୀ ପ୍ରତି ବ୍ୟବହାର ଏହାଠାରୁ ଅଧିକ ଜଘନ୍ୟ ହୋଇନପାରେ । ରୁଷ୍-ଜାପାନ ଯୁଦ୍ଧରେ, ଯୁଦ୍ଧଘୋଷଣା କରିବା ପୂର୍ବରୁ ରୁଷ୍ ରଣତରୀକୁ ଅତର୍କିତ ଭାବରେ ଜାପାନ ଆକ୍ରମଣ କରି ଧ୍ୱଂସ କରିଥିଲା ।

* The value of human conduct being gauged by its utility and subserviency to the well- being of the State, man is viewed as the instrument of an organised body and hence patriotism and loyalty head the list of virtues. They stand higher than such common place virtues as honesty or kindness. -Modern Japan, P.237 By Inaze Nitolee (ଲେଖକ ଜାପାନୀ)

ଆମର କଥାରେ ଅଛି, "ଚୋରଠୁଁ ବିଧେ ପାଇଲେ ବି ଲାଭ ।" ଜାପାନର ନିନ୍ଦାବାଦ କଲାବେଳେ ଆମକୁ ଏଇ କଥାଟା ଅନ୍ତତଃ ସ୍ମରଣ କରିବାକୁ ହେବ ଯେ, କ୍ଷୁଦ୍ର ଜାପାନ ସ୍ୱାଧୀନ ଓ ଆମର ବିରାଟ ଭାରତବର୍ଷ ପରପଦାନତ; ମାତ୍ର ସତୁରିବର୍ଷ ଭିତରେ ଜାପାନ ନିଜକୁ ଯେପରି ଭାବରେ ଗଢ଼ିନେଇଛି, ତାହା ଆଶ୍ଚର୍ଯ୍ୟଜନକ; ପରନ୍ତୁ ତାହା ଅନୁକରଣୀୟ । ସାପ ପ୍ରତି ବର୍ଷ କାତି ଛାଡ଼େ ବୋଲି ବୋଧହୁଏ ସାପର ଦେହ ଏତେ ମସୃଣ ଥାଏ । ନୂତନ ଚର୍ମ ସାପ ଦେହକୁ କେବଳ ସୁନ୍ଦର କରେନାହିଁ, ତା'ର ସରୀସୃପତ୍ୱ ମଧ୍ୟ ବଢ଼ାଏ । ଆମେ ଭାରତୀୟ; ଆମର ବୈଦିକ କାଳର ପୁରୁଣା ଖୋଳ ଭିତରେ ପଡ଼ିରହିବାକୁ କେବଳ ସୁଖକର ମଣୁ ତାହା ନୁହେଁ, ଆମେ ମନେକରୁ ଯେ ଏହା ସୁନ୍ଦର; ପୁଣି ଏହା ନିରାପଦ । ଏହି ମୂର୍ଖତାର ପୁରସ୍କାର ଆମେ ପଦେ ପଦେ ପାଉଛୁ । ଜାପାନ ଅବସ୍ଥାର ପରିବର୍ତ୍ତନ ଦେଖି ଖୋଳ ବଦଳେଇବାର ଶିଖିଛି, ସେଥିପାଇଁ ଜାତୀୟ ପ୍ରତିଯୋଗିତାରେ ସେ ସବୁବେଳେ ଆଗରେ । ମୋ' ଜାତିର ସଭ୍ୟତା ଇତିହାସ ସୁଦ୍ଧା କହିପାରୁନାହିଁ; କାରଣ କବିଙ୍କ ଭାଷାରେ, 'ପ୍ରଥମ ପ୍ରଭାତ ଉଦୟ ତବ ଗଗନେ' । ମୋ' ଦେଶରେ ମାନବ-ସଭ୍ୟତାର ପ୍ରଥମ ପ୍ରଭାତ ହେଲାବେଳେ, ହୁଏତ ସମସ୍ତ ଜଗତ ନିଦ୍ରିତ ଥିଲା; କିନ୍ତୁ ଆଜି ? ଆଜି ଯେ ଅନ୍ୟ ସମସ୍ତେ ଜାଗ୍ରତ ହୋଇ ଆମର ବହୁ ଆଗରେ; ଆମେ ଏତେ ପଛରେ ପଡ଼ିଛୁ ଯେ, ଆମର ନିଜର ଜାହାଜ ନାହିଁ ବୋଲି ମତେ ଜାପାନୀ ଜାହାଜରେ ଆସିବାକୁ ହେଲା । ଜାପାନୀ ଜାହାଜରେ ଚଢ଼ିଲାବେଳେ ମୋର ଏହି କଥାଟା ବରାବର ମନେହେଉଥାଏ; କିନ୍ତୁ ବର୍ତ୍ତମାନ ଅବସ୍ଥା ଯେପରି ଆମର ଜାପାନୀମାନଙ୍କଠୁଁ ବି ଅନେକ କଥା ଶିଖିବାର ଅଛି । ଉଦ୍ଧବ ଚିଲ, ଅଜଗର ପ୍ରଭୃତି ଗୁରୁଙ୍କଠୁଁ ବି ଜ୍ଞାନ ଲାଭ କରିଥିଲେ । ନବଜାଗ୍ରତ ଭାରତବର୍ଷ ଏହି ସଂକଳ୍ପ କରିବା ଉଚିତ ଯେ, ଜଗତରେ ଯେଉଁଠି ଯାହା ଶିଖିବାର ଅଛି, ତାହା ଆମର ସଂପୂର୍ଣ୍ଣ ନିଜସ୍ୱ କରିବାକୁ ହେବ । ଆଜି ତା' ବାହୁବଳରେ ଶକ୍ତି ନାହିଁ; ଶକ୍ତି ମନୁଷ୍ୟର ମୁଣ୍ଡରେ । ଭାରତୀୟ ମସ୍ତକକୁ ଜଗତର ସକଳ ପ୍ରକାର ଜ୍ଞାନର ଭଣ୍ଡାର କରିବାକୁ ହେବ । ନ ହେଲେ ତ ଅନ୍ୟମାନଙ୍କ ସହ ପ୍ରତିଯୋଗିତାରେ ପାରିଉଠିବା ଆଜି ବଡ଼ କଠିନ ବ୍ୟାପାର । ଜାପାନ ଗତ ଶତାବ୍ଦୀରେ ଏହି ପ୍ରତିଜ୍ଞା ଧରି ଉଠିଥିଲା । * ଆଜି ସେ ତା'ର ଫଳ ପାଉଛି । ଆମର ଦୁଇଶ' ବର୍ଷର ଶିକ୍ଷା ଆମକୁ କେବଳ ଚାକିରି ଯୋଗାଇ କୃତାର୍ଥ କରିଛି ।

---

* The aim of education was conceived in a liberal spirit – "knowledge shall be sought throughout the world"– Modern Japan– Inaze Nitolee P.118.

ଜାହାଜରେ ଜାପାନୀ ପୁରୁଷ ଓ ସ୍ତ୍ରୀ ସମସ୍ତେ ୟୁରୋପୀୟ ପୋଷାକ ବ୍ୟବହାର କରୁଥାନ୍ତି । ବେଳେ ବେଳେ ମାତ୍ର କାମରୁ ବିଶ୍ରାମନେଲେ ପୁରୁଷ ବା ସ୍ତ୍ରୀ ଜାପାନୀ-ପୋଷାକ ପିନ୍ଧନ୍ତି । ଜାପାନୀ ପୋଷାକ 'କିମୋନୋ' ପୁରୁଷ ଓ ସ୍ତ୍ରୀ ଉଭୟଙ୍କୁ ୟୁରୋପୀୟ ପୋଷାକ ଅପେକ୍ଷା ସୁନ୍ଦର ଦେଖାଯାଏ । ମୁଁ ଦିନେ ଜଣେ ଜାପାନୀ ଅଫିସରଙ୍କୁ ପଚାରିଲି, ''ତମ ପୋଷାକ ଏତେ ସୁନ୍ଦର; ତମେ ଏ ୟୁରୋପୀୟ ପୋଷାକ ପିନ୍ଧିଛି କାହିଁକି ?'' ସେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲା, ''ୟୁରୋପୀୟ ପୋଷାକ ଆମ ପୋଷାକ ଅପେକ୍ଷା ଶସ୍ତା – ତେଣୁ ସାଧାରଣ କାମ ପାଇଁ ଆମେ ୟୁରୋପୀୟ ପୋଷାକ ଗ୍ରହଣ କରିଛୁ; କେବଳ ସାମୟିକ ବ୍ୟବହାର ପାଇଁ ଆମ ଜାତୀୟ ପୋଷାକ ଗୋଟେ ଗୋଟେ କରି ରଖିଥାଉଁ ।'' ଏ ପ୍ରକାର ସାଂସାରିକ-ବୁଦ୍ଧି ଭାରତୀୟଙ୍କର ଜୀବନରେ କାର୍ଯ୍ୟ କରୁନାହିଁ; ତେଣୁ ଆମେ ପ୍ରାଚୀନ ଖୋଳ ଭିତରେ ପଡ଼ିରହିଛୁଁ ।

ଜାହାଜ ମାର୍ସେଲଠାରୁ ଜିବ୍ରାଲ୍‌ଟର ଭିତରେ ଯାଉଥିଲା ବେଳେ ମୁଁ ଦିନେ କାପ୍‌ଟେନ ସଙ୍ଗେ ଦେଖାକରି ଜାପାନ ସମ୍ବନ୍ଧରେ କଥାବାର୍ତ୍ତା ହୋଇଥିଲି । ମୁଁ ପଚାରିଲି, ''ଜାପାନର ଏ ଅଦ୍ଭୁତ ଅଭ୍ୟୁଦୟର କିଛି ରହସ୍ୟ ତମେ ଜାଣ ?''

''ନା, ମୁଁ କହିପାରିବି ନାହିଁ, କହିବା ବଡ଼ କଠିନ ।''

''ସତୁରି ବର୍ଷ ପୂର୍ବେ ଜାପାନକୁ କେହି ଜାଣି ନ ଥିଲେ; ଜାପାନ ଅସଭ୍ୟ ଥିଲା ।''

''ନା ନା, ଜାପାନକୁ କେହି ନ ଜାଣିଲେ କ'ଣ ହେବ, ଜାପାନ ନିଜକୁ ଜାଣିଥିଲା; ଜାପାନ ବହୁ ପୂର୍ବରୁ ସଭ୍ୟ ।''

''ମୁଁ ମନେକରୁଛି, ତମର ଶିକ୍ଷା-ପ୍ରଣାଳୀ ତମର ଅଭ୍ୟୁଦୟର ମୂଳରେ ।''

''ହୋଇପାରେ ।''

''ମତେ ତମର ଶିକ୍ଷାପଦ୍ଧତି ଟିକିଏ ବୁଝେଇ ଦେବ କି ?''

କାପଟେନ୍‌ଙ୍କ କଥା ଓ ପରେ ମୋର ପଢ଼ାରୁ ମୁଁ ଜାପାନୀ ଶିକ୍ଷା-ପଦ୍ଧତି ସମ୍ବନ୍ଧରେ ଯାହା ଜାଣିଛି, ମୋଟରେ ତାହା କହିବି ।

ଛ'ବର୍ଷ ବୟସରେ ଜାପାନୀ ବାଳକ-ବାଳିକା ବିଦ୍ୟାରମ୍ଭ କରନ୍ତି; ପ୍ରାଥମିକ ଶିକ୍ଷା ବାଧ୍ୟତାମୂଳକ ଓ ପ୍ରାୟ ଛଅ ବର୍ଷ ନିଏ । ଜାପାନୀ ଭାଷାର ଲିଖନ-ପଠନ ଛଡ଼ା ପ୍ରାଥମିକ ବିଦ୍ୟାଳୟରେ ଗଣିତ, ଜାପାନର ଇତିହାସ, ଜାପାନ ଓ ପୃଥିବୀର ଭୂଗୋଳ, ସଙ୍ଗୀତ, ଚିତ୍ରାଙ୍କନ, ପଦାର୍ଥବିଦ୍ୟା (Physics) ଓ ରସାୟନ-ବିଦ୍ୟା (Chemistry) ବି ପଢ଼ାହୁଏ । ଆମର ଶିକ୍ଷାବିଭାଗୀୟ କର୍ତ୍ତୃପକ୍ଷଗଣଙ୍କ ଅବଧାନକୁ ଆଣିବାକୁ ଏଥିରେ ବିଷୟ ଅଛି । ମୁଁ ପ୍ରଥମେ ବିଶ୍ୱାସ କରିପାରିଲିନାହିଁ ଯେ, ପଦାର୍ଥବିଦ୍ୟା ଓ ରସାୟନ-ବିଦ୍ୟା ପ୍ରାଇମେରୀ ସ୍କୁଲରେ କିପରି ପଢ଼ାହେଉଛି । କିନ୍ତୁ କାପ୍‌ଟେନ କହିଲେ ଯେ

ଏହା ପ୍ରାଥମିକ ଧରଣର । ଯେଉଁ ଧରଣର ହେଉ, ମାତୃଭାଷାରେ ଶିକ୍ଷାଦିଆହେଉଥିବାରୁ ଯେ କେବଳ ଏହା ସମ୍ଭବ ହେଉଛି, ଏଥିରେ ତ ସନ୍ଦେହ ନାହିଁ । ଭାରତବର୍ଷରେ ଏସବୁ ବିଷୟର ପାଖ ପଶିବାକୁ ଯୁବକମାନଙ୍କୁ ଅସାଧ୍ୟ ସାଧନ କରିବାକୁ ହୁଏ । ହାୟରେ ପ୍ରଭେଦ ! ପ୍ରାଥମିକ ବିଦ୍ୟାଳୟମାନଙ୍କରେ ସଙ୍ଗୀତଶିକ୍ଷା ମଧ୍ୟ ବିଚାର କରିବାର କଥା । ଆମର ପ୍ରାଚୀନ ଚାଟଶାଳୀମାନଙ୍କରେ ଛାନ୍ଦ, ଚୌପଦୀ ଗାଇବାର ଅବକାଶ ଥିଲା । ସେହି ସୂତ୍ରରେ ଗ୍ରାମମାନଙ୍କର ବାୟୁମଣ୍ଡଳ ସଙ୍ଗୀତ-ମୁଖର ହୋଇଉଠୁଥିଲା । ବର୍ତ୍ତମାନର ଗଦ୍ୟମୟ ଶିକ୍ଷା ଜାତିକୁ ନିରାନନ୍ଦ କରିପକାଉଛି । ଏ ଦିଗରେ ଦୃଷ୍ଟି ଦେଲେ କର୍ତ୍ତୃପକ୍ଷ ଦେଶର ଉପକାର କରନ୍ତେ ।

ବାରବର୍ଷ ବୟସରେ ଜାପାନୀ ବାଳକ 'ମଧ୍ୟ-ବିଦ୍ୟାଳୟ'କୁ ଆସେ । ଏଠି ଦୁଇ ଧରଣର ଶିକ୍ଷା – ନିଜର ରୁଚି ନେଇ । ଯେଉଁମାନେ ଉଚ୍ଚତର ଶିକ୍ଷା ପାଇଁ ଯିବେ, ତାଙ୍କ ପାଇଁ ଅଲଗା ବନ୍ଦୋବସ୍ତ । ଆଉ ଯେଉଁମାନେ କୌଣସି ଶିଳ୍ପଶିକ୍ଷା କରି ଜୀବିକା ନିର୍ବାହର ତୁରନ୍ତ ବନ୍ଦୋବସ୍ତ ଚାହାନ୍ତି, ତାଙ୍କ ପାଇଁ ଅଲଗା । ଏ ଶିକ୍ଷା ପ୍ରାୟ ପାଞ୍ଚ ବର୍ଷ ଲାଗେ; ତେଣୁ ଯେଉଁମାନେ ଶୀଘ୍ର ଜୀବିକା ଅର୍ଜନ କରିବାକୁ ଚାହାନ୍ତି, ସେମାନେ ସତର ବର୍ଷ ହେଲା ବେଳକୁ ସେଥିପାଇଁ ପ୍ରସ୍ତୁତ ହୋଇଯାଇଥିବେ । ଭାରତବର୍ଷରେ ଶିକ୍ଷା-ପ୍ରଣାଳୀ କେତେ ବର୍ଷ ବୟସରେ ଯୁବକକୁ ଜୀବନ ଲାଗି ପ୍ରସ୍ତୁତ କରାଏ ?

ଯେଉଁମାନେ ଉଚ୍ଚତର ଶିକ୍ଷା ଚାହାନ୍ତି, ସେମାନେ ଇଂରେଜୀ, ମାଥ୍‌ମେଟିକ୍‌ସ୍, ଉଚ୍ଚତର ଭୂଗୋଳ ଓ ଇତିହାସ, ନୀତି ଓ ଦର୍ଶନ, ଉଚ୍ଚତର ଫିଜିକ୍‌ସ ଓ କେମିଷ୍ଟ୍ରି, ପ୍ରକୃତିବିଦ୍ୟା ପ୍ରଭୃତି ପଢ଼ିବାର ଏହି ମଧ୍ୟ-ବିଦ୍ୟାଳୟରେ ବନ୍ଦୋବସ୍ତ ହୁଏ । ଆମର ମଧ୍ୟ-ବିଦ୍ୟାଳୟର ପାଠ୍ୟ-ତାଲିକା ସହିତ ଏ ମଧ୍ୟ-ବିଦ୍ୟାଳୟର ପାଠ୍ୟ-ତାଲିକା ତୁଳନା କରି କର୍ତ୍ତୃପକ୍ଷ ପ୍ରଭେଦ ଦେଖିବେ କି ? ଏହି ମଧ୍ୟ-ବିଦ୍ୟାଳୟରେ ଯେଉଁମାନେ କେବଳ ଟେକ୍‌ନିକାଲ୍‌କୁ ଯାଆନ୍ତି, ସେମାନଙ୍କୁ କେବଳ ଇଂରେଜୀ ଶିଖେଇ ଦେବାର ଭିନ୍ନ ବନ୍ଦୋବସ୍ତ ଅଛି ।

ମୁଁ କାପ୍‌ଟେନ୍‌କୁ ପଚାରିଲି, ''ତମର ଟେକ୍‌ନିକାଲ୍ ଶିକ୍ଷା କେଉଁ ଭାଷାରେ ହୁଏ ?'' କାପ୍‌ଟେନ୍ ଉତ୍ତର କଲେ, 'ଜାପାନୀ ଭାଷାରେ' । ମୁଁ ପଚାରିଲି, ''ତେବେ ପାରିଭାଷିକ ଶବ୍ଦ ସବୁ କ'ଣ ଅନୁବାଦ କରି ନେଇଛ ?'' ସେ କହିଲେ, ''ନା, ଅନେକ ଟେକ୍‌ନିକାଲ୍ ଟର୍ମ୍ ଆମେ ସେଇମିତି ରଖିଛୁ । ଜାପାନୀ ଭାଷାରେ ଶିକ୍ଷା ଦିଆହୁଏ; କିନ୍ତୁ ଶବ୍ଦଗୁଡ଼ାକ ଇଂରେଜୀ । ପଚାରିଲି–''ତମର କିଛି ଅସୁବିଧା ହୁଏ କି ?'' ସେ କହିଲେ, ''ନା'' ।

କାପ୍‌ଟେନ୍ ନିଜେ ମିଡ଼ଲ୍ ସ୍କୁଲରୁ ପାଶ୍ କରି ନୌ-ବିଦ୍ୟାଳୟକୁ ଯାଇଥିଲେ ଓ

ସେଠି ପାଶ୍ କରି ଜାହାଜରେ ଚାକିରି ଗ୍ରହଣ କରିଥିଲେ । ତଳୁ ଉଠି ଉଠି ଏବେ କାପଟେନ୍ ହୋଇଛନ୍ତି ।

ସତର ବର୍ଷରେ ଜାପାନୀ ଯୁବକ ହାଇସ୍କୁଲରେ ପ୍ରବେଶ କରେ । ଏଠି ବି ଦୁଇ ଧରଣର ଶିକ୍ଷା । ଗୋଟିଏ ଶିକ୍ଷା ଯୁବକକୁ ବିଶ୍ୱବିଦ୍ୟାଳୟ ପାଇଁ ପ୍ରସ୍ତୁତ କରାଏ; ଆଉ ଏକ ଶିକ୍ଷା ଆଇନ ଓ ଡାକ୍ତରୀ ପ୍ରଭୃତି ବିଶିଷ୍ଟ ଶିକ୍ଷା ଦିଏ । ଏ ଶିକ୍ଷା ପ୍ରାୟ ଚାରି ବର୍ଷ ଖଣ୍ଡେ ଲାଗେ । ଏହି ହାଇସ୍କୁଲ୍‌ରୁ ପାଶ୍ କଲେ ହିଁ ଜାପାନରେ ଯୁବକମାନେ ଭିନ୍ନ ଭିନ୍ନ ସରକାରୀ ବିଭାଗରେ ଚାକିରି ପାଆନ୍ତି– ଆମର ବି.ଏ. ପାଶ୍ କଲେ ଯେପରି ।

ଜାପାନୀ ଲୋକଙ୍କର ସଂଖ୍ୟା ପ୍ରାୟ ସାତ କୋଟି । ସବୁ ପ୍ରକାର ଶିକ୍ଷା ପାଇଁ ଜାପାନର ପ୍ରାୟ ସାଢ଼େ ୭୧ (ଏକସ୍ତରି) କୋଟି ଟଙ୍କା ଖର୍ଚ୍ଚ ହୁଏ । ଏ ହିସାବରେ ଓଡ଼ିଆ ଜାତିର ଶିକ୍ଷା ପାଇଁ ଦଶ କୋଟି ଟଙ୍କା ଖର୍ଚ୍ଚ ହେବାର କଥା । କିନ୍ତୁ ବ୍ରିଟିଶ-ଓଡ଼ିଶାର ଆୟ ପୂରା ଦୁଇ କୋଟି ବି ନୁହେଁ । ଜାପାନ ସରକାର ତାଙ୍କ ଆୟର ଶତକଡ଼ା ପନ୍ଦର ଭାଗ ଶିକ୍ଷାପାଇଁ ବ୍ୟୟ କରନ୍ତି; ଭାରତବର୍ଷରେ ଅନୁପାତ କ'ଣ ମୁଁ ଜାଣେ ନାହିଁ । ସର୍ବବ୍ୟାପ୍ତ ଶିକ୍ଷା ପ୍ରଚାର ଫଳରେ ଜାପାନରେ ଆଜି ନିରକ୍ଷର କେହି ନାହାନ୍ତି । ଆଉ ଲୋକଙ୍କର ପଢ଼ିବାର ସ୍ପୃହା ଏତେ ବଢ଼ିଛି ଯେ, ଗୋଟେ ଗୋଟେ ଜାପାନୀ ଖବରକାଗଜର କାଟ୍‌ତି ୨୦ ଠାରୁ ୩୦ ଲକ୍ଷ ପର୍ଯ୍ୟନ୍ତ ଉଠୁଛି । ଗୋଟେ ଗୋଟେ ଖବରକାଗଜର ନିଜର ଜାହାଜ, ତାର ଲାଇନ ଓ ବ୍ୟୋମଯାନ ସବୁ ଅଛି । ଭାରତବର୍ଷରେ ଖବରକାଗଜର ସବୁଠୁ ବଡ଼ କାଟ୍‌ତି ବୋଧହୁଏ ମାତ୍ର ପଚାଶ ହଜାର । ଦରିଦ୍ର ଓଡ଼ିଶାର କଥା ଏଠି ପକେଇବା କାହିଁକି ?

ଜାପାନର ଶିକ୍ଷା ସର୍ବବ୍ୟାପ୍ତ ଯେପରି, ସେହିପରି ଗଭୀର ମଧ୍ୟ । ଜାପାନରେ ପରୀକ୍ଷାରେ ପାଶ୍ କରିବା ଏକ କଠିନ ବ୍ୟାପାର । ପ୍ରତି ସ୍କୁଲରେ ପିଲା ନିଆଯାଏ ପ୍ରତିଯୋଗିତାମୂଳକ ପରୀକ୍ଷା ଦ୍ୱାରା । ହାଇସ୍କୁଲକୁ ଯେଉଁମାନେ ନାଁ ଲେଖିବା ପାଇଁ ଆସନ୍ତି, ସେମାନଙ୍କ ଭିତରୁ ମୋଟେ ଶତକଡ଼ା ଦଶ ଜଣଙ୍କୁ ନିଆଯାଏ । ଫଳରେ ଶିକ୍ଷିତ ଜାପାନୀର ମସ୍ତିଷ୍କ ଏପରି ଗଢ଼ା ହୁଏ ଯେ, ଜଗତର ଯେକୌଣସି ସମସ୍ୟାର ସମ୍ମୁଖୀନ ହେବା ପାଇଁ ସେ ଭୟକରେନା । ଆଜି ଯେ ସେ ଦୁର୍ଦ୍ଧର୍ଷ, ତା'ର ମୂଳରେ ଏହି ପ୍ରକୃଷ୍ଟ ଶିକ୍ଷା-ସାଧନା । ଆମେରିକାରୁ ପ୍ରକାଶିତ Geographical Magazine ପୃଥିବୀ-ପ୍ରସିଦ୍ଧ ପତ୍ରିକା । ଏଠି ଜଣେ ଇଂରେଜ ଭଦ୍ରଲୋକଙ୍କଠୁଁ ଶୁଣି ମୁଁ ଆଶ୍ଚର୍ଯ୍ୟ ହେଲି ଯେ, ସେ ମାଗାଜିନ୍‌ର ଫଟୋ ବିଭାଗରେ ଜଣେ ଜାପାନୀ ହିଁ ସର୍ବମୟ କର୍ତ୍ତା । ଆଜିକାଲି ତ କୃତିତ୍ୱର ଯୁଗ; ଜାପାନୀ ତା'ର କୃତିତ୍ୱର ଏହି ବୋମା, ବାଣିଜ୍ୟ, ବିଜୟ– ସବୁଠି ଦେଖେଇଦେଉଛି ।

ଏସବୁରେ ଭାରତବର୍ଷର ଜାପାନଠୁଁ ଅନେକ କଥା ଶିଖିବାର ଅଛି । ଅନ୍ୟ ଦିଗରେ ମଧ୍ୟ ଜାପାନ ଆମକୁ ଶିକ୍ଷା ଦେବାର କଥା । ଜୀବନକୁ ସୁନ୍ଦର, ସୁଖମୟ, ଉପଭୋଗ୍ୟ କିପରି କରାଯାଇପାରେ, ତା' ଜାପାନ ହିଁ ଜାଣେ । ଜାପାନୀ ପରି ସୌନ୍ଦର୍ଯ୍ୟପ୍ରିୟ ଜାତି ଜଗତରେ ଦ୍ୱିତୀୟ ନାହିଁ । ଜାହାଜରେ ଜଣେ ଇଟାଲୀୟ ଲିଖିତ ଜାପାନୀ ଉପନ୍ୟାସ ମୁଁ ପଢ଼ିବାକୁ ପାଇଥିଲି । ସେଥିରେ ଜାପାନୀ ଜୀବନର ବର୍ଣ୍ଣନ ଅତ୍ୟନ୍ତ ମନୋରମ । ପଢ଼ି ମନେହେଲା ଜାପାନୀ ନରନାରୀ ଯେପରି ବର୍ଣ୍ଣ-ବିଳାସୀ ପ୍ରଜାପତି– ଜୀବନକୁ ବର୍ଣ୍ଣ-ଗନ୍ଧମୟ ଉଦ୍ୟାନରେ ପରିଣତ କରି ସେଇଥିରେ କାଳ ଯାପନ କରିବା ତାଙ୍କର ବିଳାସ । ତାଙ୍କର ବେଶ ତ ବର୍ଣ୍ଣ-ବିଭବମୟ, ସୁନ୍ଦର ଓ ସ୍ୱାଚ୍ଛନ୍ଦ୍ୟଯୁକ୍ତ । ତାଙ୍କର ଖାଦ୍ୟ, ସ୍ନାନ, ସାମାଜିକ ରୀତିନୀତି– ସବୁଥିରେ ଏପରି ସୂକ୍ଷ୍ମ ବିଚାର କାର୍ଯ୍ୟ କରିଛି ଯେ, ତା'ର ଫଳରେ ସେମାନଙ୍କର ଜୀବନ ଆନନ୍ଦମୟ ହୋଇଉଠୁଛି । ଆମେ ଖାଇବା ଜାଗାରେ ଯାହା ଖାଇ ନ ପାରୁ ତାହା ଚୋବେଇ ଚୋବେଇ ପାଟିରୁ କାଢ଼ି ସେଇଠି ପକାଉ । ଏଇଟା ବଡ଼ କୁତ୍ସିତ ପ୍ରଥା । ଜାପାନୀର ରୂପ-ପାୟୀ ଚକ୍ଷୁ ଏ ଦୃଶ୍ୟ ସହ୍ୟ କରିପାରେ ନାହିଁ । ଜାପାନୀ ଖାଦ୍ୟ ଏପରି ଭାବରେ ତିଆରି ଯେ, ସେଥିରେ ଆଉ ଚୋବେଇ ପକେଇଦେବାର କିଛି ନ ଥିବ– ସବୁଟା ଖାଦ୍ୟ । ଜାପାନୀ ବଡ଼ ପରିଷ୍କୃତ-ପରିଚ୍ଛନ୍ନ ଜାତି । ମଇଳା ସେମାନେ ସହି ପାରିବେ ନାହିଁ । ସେଥିପାଇଁ ସେ ନଗ୍ନ ସ୍ନାନର ପକ୍ଷପାତୀ ଓ ନଗ୍ନତାକୁ ସେମାନେ ଏପରି ସ୍ୱାଭାବିକ କଥା ବୋଲି ଧରିନିଅନ୍ତି ଯେ ଅନେକ ସ୍ଥାନରେ ନାରୀ ପୁରୁଷ ଏକତ୍ର ନଗ୍ନ ହୋଇ ସ୍ନାନ କରନ୍ତି । ପରିଦର୍ଶକମାନଙ୍କର ମତ ଏହି ଯେ, ଏକାଠି ସ୍ନାନ କଲେ ମଧ୍ୟ ଏପରି ଅବସ୍ଥାରେ ଜାପାନୀ ନରନାରୀ ମନରେ କୌଣସି ବିକାର ଆସେନି ଏବଂ କୌଣସି ନାରୀ ପ୍ରତି ଏପରି ଅବସ୍ଥାରେ ଚାହିଁବା ବା କୁତ୍ସିତ ସଙ୍କେତ ଦେବା ଜାପାନରେ କେହି ଦେଖନ୍ତି ନାହିଁ । ମୋ' ମତରେ ଭାରତବର୍ଷରେ ଏ ଅବସ୍ଥା ଆଣିବା ଉଚିତ । ସାମାଜିକ ସଂସ୍କାର ଆମକୁ ଏପରି ଗଢ଼ି ଆଣୁଛି ଯେ, ଆମେ ସ୍ୱାଭାବିକ ଅବସ୍ଥାକୁ ଅସ୍ୱାଭାବିକ ମନେକରୁ । ଜାହାଜରେ ମୁଁ ଜାପାନୀ ପୁରୁଷମାନଙ୍କୁ ନଗ୍ନ ହୋଇ ଗାଧୋଇବାର ଦେଖିଛି । ଆମକୁ ତ ସଂକୋଚ ଲାଗିବାର କଥା; ସେମାନେ କିନ୍ତୁ ନିଃସଂକୋଚ । ଅନେକ ସମୟରେ ଅନେକ ଜାପାନୀଙ୍କି କେବଳ ଖଣ୍ଡେ କୌପୀନ ମାରି ନଗ୍ନ ଦେହରେ ଚଲାବୁଲା କରିବାର ଦେଖିଛି ।

ଜାପାନୀମାନେ ରାତିରେ ସ୍ନାନ କରନ୍ତି । ଦିବସର ସମସ୍ତ ଜଞ୍ଜାଳ ଶେଷ କରି ଶରୀରର ଦିନଯାକର କ୍ଳେଦ ପରିଷ୍କାର କରି ଦିନର ଶେଷ ବିଶ୍ରାମ ନେବା ମୋ'

ମତରେ ଖୁବ୍ ଯୁକ୍ତିଯୁକ୍ତ ବ୍ୟବସ୍ଥା । ଜାହାଜରେ ଦେଖିଛି, ଖୁବ୍ ସକାଳୁ ଉଠି ଜାପାନୀ ଶ୍ରମିକ ଓ କର୍ମଚାରୀ କାମରେ ଲାଗିଯାନ୍ତି– କିନ୍ତୁ ମୁହଁକୁ ଅନେଇଲେ ମନେହୁଏ ଯେପରି ଏହିକ୍ଷଣି ସ୍ନାନ ପ୍ରସାଧନ ସାରିଛନ୍ତି; କିନ୍ତୁ ପରେ ବୁଝିଛି ଏଇଟା ରାତ୍ରିସ୍ନାନର ଫଳ । ଆମର ସକାଳୁ ଉଠି ପ୍ରାତଃକୃତ୍ୟ କରୁ କରୁ କଚେରି ଘଣ୍ଟା ବାଜିଯାଏ । କେଉଁ କାମ କେତେବେଳେ ଓ କିପରି କଲେ ସମୟ ବଞ୍ଚିବ ଓ ସବୁପ୍ରକାର ସୁବିଧା ହେବ, ଆମର ଜୀବନ-ପ୍ରଣାଳୀରେ ସେ ବିଚାର ନାହିଁ ।

ଜାପାନରେ ଫୁଲ ସଜାଇ ଶିଖିବା ପାଇଁ ସ୍କୁଲ ଅଛି । ଜାପାନୀ ମାଳୀ ଜଗତରେ ଶ୍ରେଷ୍ଠ ମାଳୀ । ତା' ବଗିଚାରେ ଯେତେ ଫୁଲ ଫୁଟେ, ଆଉ କେଉଁଠି ଫୁଟେ ନାହିଁ । ସେ ଋତୁ-ଭେଦରେ ବଗିଚାକୁ ଏପରି ସଜାଏ ଯେ, ବର୍ଷର ସବୁ ଋତୁରେ ବଗିଚା ପୁଷ୍ପମୟ ଥିବ । ତା'ର ଉଦ୍ୟାନ ରଚନା ପଛରେ ଜାପାନୀ ରୂପ-ତତ୍ତ୍ୱର ଶତ ଶତ ବର୍ଷର ଇତିହାସ ରହିଛି । ଜୀବନର ଜଞ୍ଜାଳରୁ ପ୍ରକୃତି ମନୁଷ୍ୟ-ଆତ୍ମାକୁ କିପରି ଶାନ୍ତି ଦେଇପାରେ, ଜାପାନୀ ଉଦ୍ୟାନ ସେହି ଉଦ୍ଦେଶ୍ୟ ନେଇ ତିଆରି । ଜାପାନୀ ଉଦ୍ୟାନ ନଦୀ-ପର୍ବତ-ବନ-ବେଳା-ସମନ୍ୱିତ ଅନନ୍ତ ପ୍ରକୃତିର ଗୋଟିଏ ଗୋଟିଏ ଛୋଟ ପ୍ରତିବିମ୍ବ । ଜାପାନୀର ଗୃହ-ରଚନା ମଧ୍ୟ ସେହିପରି ସୌନ୍ଦର୍ଯ୍ୟ ଓ ସ୍ୱାଚ୍ଛନ୍ଦ୍ୟର ସମାହାର ।

ଜାପାନୀ ସାମାଜିକ ଜୀବନରେ ରୂପଭୋଗ-କାମନା ଗୈଷା ସମ୍ପ୍ରଦାୟରେ ବିକାଶ ଲାଭ କରିଛି । ଭାରତବର୍ଷରେ ନୃତ୍ୟ-ଗୀତ ପ୍ରଭୃତି ରୂପକଳା ବାରାଙ୍ଗନାମାନଙ୍କ ସହିତ ଜଡ଼ିତ; କିନ୍ତୁ ଗୈଷା ନୃତ୍ୟ-ଗୀତରେ ଜୀବିକାର୍ଜନ କଲେ ହେଁ ସେ ବାରାଙ୍ଗନା ନୁହେଁ । ନୃତ୍ୟଗୀତାଦି କଳା ନିର୍ଦ୍ଦୋଷ ଭାବରେ ଯେ ଉପଭୋଗ କରାଯାଇପାରେ, ତା' ଆମର ଧାରଣା ନାହିଁ । କିନ୍ତୁ ଜାପାନୀ ଆନନ୍ଦ ଉପଭୋଗ ସଙ୍ଗେ ଜାତିକୁ ସଂଯତ ରଖିବା ଲାଗି ଗୈଷା ସୃଷ୍ଟି କଲେ ହେଁ ତାକୁ ବେଶ୍ୟା କରିନାହିଁ । ଗୈଷା ତିନି ପ୍ରକାର । କେବଳ ନିମ୍ନତମ ଗୈଷା ବାରବନିତା । ଉଚ୍ଚତମ ଗୈଷାର ଆଦର୍ଶ ଏହି ଯେ ତା'ର ଶରୀରକୁ ସେ କୌଣସି ପୁରୁଷର ସ୍ପର୍ଶଦ୍ୱାରା କଳଙ୍କିତ କରିବ ନାହିଁ । ଏମାନଙ୍କୁ ନୃତ୍ୟଗୀତ ଶିକ୍ଷା ଦେବା ପାଇଁ ଜାପାନର ସର୍ବତ୍ର ଉଚ୍ଚ ଦରର ବିଦ୍ୟାନୁଷ୍ଠାନ ଅଛି ଏବଂ ଶିକ୍ଷା ମଧ୍ୟ ବହୁବର୍ଷବ୍ୟାପୀ । ଅନେକ ଗରିବ ଘରର କନ୍ୟା ମା'ବାପଙ୍କୁ ସାହାଯ୍ୟ ଦେବାପାଇଁ ଗୈଷା ହୁଅନ୍ତି – ପରେ ପଇସା ହେଲେ ପୁଣି ଘରକୁ ଫେରିଆସି ବିଭାଚୁଡ଼ା କରନ୍ତି । ଏଥିରୁ ଜାପାନର ସାମାଜିକ ଉଦାରତା ସହଜରେ ବୁଝାପଡ଼େ । ଯେକୌଣସି ମଜ୍‌ଲିସ୍‌ରେ ଜାପାନରେ ଗୈଷାମାନଙ୍କର ନୃତ୍ୟଗୀତ ଏକ ଶ୍ରେଷ୍ଠ ଅଂଶ । ହୋଟେଲ୍, ଚା' ଦୋକାନ ପ୍ରଭୃତି ଗୈଷା ଯୋଗାନ୍ତି । କିନ୍ତୁ ନୃତ୍ୟଗୀତ ଦେଇ ଆନନ୍ଦ ଦେଲେ ମଧ୍ୟ ଗୈଷା ନିଜର ଇଜ୍ଜତ ନିଜ ହାତରେ ରଖେ ।

ଭାରତବର୍ଷରେ ଜୀବନକୁ ଉପଭୋଗ୍ୟ କରିବାର ଏପରି ଅନୁଷ୍ଠାନ ସବୁ ନାହିଁ– ସେଥିପାଇଁ ଆମର ଜୀବନ ନିରାନନ୍ଦମୟ । ତେଣୁ ଆମର ବୁଦ୍ଧିମାନ୍ ଲୋକେ ଜୀବନରେ ବୀତସ୍ପୃହ ହୋଇ ସନ୍ନ୍ୟାସ ଆଚରଣ କରନ୍ତି ଓ ଜାତି ଆଗରେ ସନ୍ନ୍ୟାସ ଆଦର୍ଶ ଥୋଇ ଯାଇଛନ୍ତି । ବୁଦ୍ଧିକୁ ଶାଣିତ କରି ଜଗତର ସକଳ ଜ୍ଞାନ ଓ ଇନ୍ଦ୍ରିୟମାନଙ୍କୁ ଜାଗ୍ରତ କରାଇ ଜଗତର ସକଳ ଆନନ୍ଦକୁ ନିଜସ୍ୱ କରିବା ମନୁଷ୍ୟର ଆଦର୍ଶ ନ ହେବ କାହିଁକି, ମୁଁ ବୁଝିପାରୁନାହିଁ । ଜଗତରେ ରୂପ, ରସ, ଶବ୍ଦ, ଗନ୍ଧ ପୂରିରହିଛି । ସେସବୁକୁ ଆହରଣ କରିନେବାପାଇଁ ବିଧାତା ଆମକୁ ଏକାଧିକ ଇନ୍ଦ୍ରିୟ ଦେଇଛି । ବିଶିଷ୍ଟ ଇନ୍ଦ୍ରିୟ ସହିତ ବିଶିଷ୍ଟ ବିଷୟର ସମ୍ପର୍କ ମିଳନ; ତେଣୁ ଅତ୍ୟନ୍ତ ସ୍ୱାଭାବିକ କଥା; କିନ୍ତୁ ଭାରତବର୍ଷରେ ଏସବୁରେ ଆତଙ୍କ ଉଠେ । ଫଳରେ ଆମେ ବହୁ ଯୁଗ ଧରି ଆମର ଇନ୍ଦ୍ରିୟବାତାୟନ ସବୁ ରୁଦ୍ଧ କରିବାକୁ ଶିଖିଛୁ; ମାତ୍ର ଯୁଗଯୁଗର ଏ ଅସ୍ୱାଭାବିକ ତାଡ଼ନା ଫଳରେ ଆମର ଇନ୍ଦ୍ରିୟସବୁ ସେମାନଙ୍କର ସ୍ୱାଭାବିକ ସୂକ୍ଷ୍ମ ପ୍ରକୃତି ହରାଇ ବସିଛନ୍ତି । ଆମେ ଘର ଦାଣ୍ଡ ଅପରିଷ୍କାର କରୁ; କାରଣ ଆମ ଆଖି ସୌନ୍ଦର୍ଯ୍ୟ ଦେଖି ଶିଖି ନାହିଁ । ଆମେ ପଚା ଦୁର୍ଗନ୍ଧ ଭିତରେ ପଡ଼ିରହୁ, କାରଣ ଆମ ନାସିକା ସୁବାସର ମୂଲ୍ୟ ବୁଝିବାକୁ ଜାଣି ନାହିଁ । ଇନ୍ଦ୍ରିୟମାନଙ୍କର ଅତି-ଭୋଗ ମନୁଷ୍ୟକୁ ଦୁଃଖ ଦେଇପାରେ । ସେଥିରେ ଆତଙ୍କିତ ହେବାର କାରଣ ଅଛି; କିନ୍ତୁ ଇନ୍ଦ୍ରିୟମାନଙ୍କର ସ୍ୱାଭାବିକ କ୍ଷୁଧା ନଷ୍ଟ କରିବାରେ ଲାଭ ହେବାଟା ଘୋର ସନ୍ଦେହଜନକ । ଜୀବନ ରୂପମୟ, ରସମୟ, ମଧୁର ଗନ୍ଧମୟ ଓ ମଧୁର ଶବ୍ଦମୟ ହେବାରେ ମୁଁ କୌଣସି ପାପ ଦେଖୁନାହିଁ; ବରଂ ଜୀବନର ପୂର୍ଣ୍ଣତା ଏହିଠାରେ । ଜୀବନକୁ ପରିପୂର୍ଣ୍ଣ ଉପଭୋଗ ଦେବା ସଭ୍ୟତାର ଶ୍ରେଷ୍ଠ ଚିହ୍ନ । ଏ ଦିଗରେ ଆମର ସଭ୍ୟତା ଅପୂର୍ଣ୍ଣ ରହିଛି । ତରୁଣ ଭାରତବର୍ଷ ନିଜ ସମ୍ମୁଖରେ ନୂତନ ଆଦର୍ଶ ରଖି ଯାତ୍ରା ଆରମ୍ଭ କରିବା ମୋର ନୀତି । ଆମର ନୂତନ ଜାତି ଯେ ନୂତନ ଭାବରେ ଗଢ଼ାହେବ, ତା' କେବଳ ରାଜନୈତିକ ମୁକ୍ତିଦେଇ ନୁହେଁ; ଜାତିର ସକଳ ଅବରୁଦ୍ଧ ଇନ୍ଦ୍ରିୟ ଦ୍ୱାର ଆମ୍ଭମାନଙ୍କୁ ଖୋଲି ଦେବାକୁ ହେବ ଏବଂ ଆମ୍ଭମାନଙ୍କୁ ଦେଖିବାକୁ ହେବ ଯେ, ସେହି ବାତାୟନ ଦେଇ ଜାତି ଯେପରି ପ୍ରଚୁର ଆନନ୍ଦ ଓ ଆଲୋକ ପାଏ ।

ଇତିମଧ୍ୟରେ ଜାପାନର ଅତ୍ୟାଚାରରେ ଚୀନ ଧ୍ୱଂସହେବା ଉପରେ; କିନ୍ତୁ ଏହି ଧ୍ୱଂସଲୀଳାରେ ଜାପାନ ତ ଏକା ଅପରାଧୀ ନୁହେଁ । ତା'ର ଗୁରୁଦେବ ଯେଉଁ ସବୁ ଆଦର୍ଶ ଦେଖେଇଛନ୍ତି, ସେ ତ ତା' ପାଳନ କରିବ ? ନ ହେଲେ ଗୁରୁଙ୍କୁ ଉପଯୁକ୍ତ ଦକ୍ଷିଣା ଦେବ କିମିତି ? ଆଶ୍ଚର୍ଯ୍ୟର କଥା, ବିଲାତରେ ଜାପାନୀ ଛାତ୍ର ଗୋଟିଏ

ବୋଲି ଏପର୍ଯ୍ୟନ୍ତ ଦେଖିନାହିଁ । ସେମାନେ ତାଙ୍କ ଦେଶରେ ସବୁ କରିନେଲେଣି । ବର୍ତ୍ତମାନ ଏଠି ଓ ୟୁରୋପର ଅନ୍ୟ ଦେଶମାନଙ୍କରେ ଚୀନା ଛାତ୍ରଛାତ୍ରୀ ବହୁତ । ଥରେ ଏଡ଼ିନବରା ବିଶ୍ୱବିଦ୍ୟାଳୟର ଗୋଟିଏ କୋଣରେ ମୁଁ ବସିଛି; ଏହି ସମୟରେ ଯୋଡ଼ିଏ ଚୀନା ଛାତ୍ର-ଛାତ୍ରୀ ସେଠାକୁ ଆସି ବେଞ୍ଚରେ ବସିଲେ ଓ ଗୋଟିଏ ଚୀନା ଖବରକାଗଜ ପଢ଼ିବାକୁ ଲାଗିଲେ । ମୁଁ ସେମାନଙ୍କୁ ଭାରତବର୍ଷରେ ଜାପାନୀ ଜିନିଷର ବୟକଟ୍ କଥା କହିଲି ଓ ତାଙ୍କୁ ପଚାରିଲି, ''ତମେ କ'ଣ ଜୟ କରିବ ବୋଲି ଆଶା କର ?'' ଛାତ୍ରଟି ପଢୁଥାଏ; କିନ୍ତୁ ଛାତ୍ରୀ ଉତ୍ତର କଲା, ''ନିଶ୍ଚୟ ।''

''ଜାପାନୀମାନଙ୍କର ଅସ୍ତ୍ରଶସ୍ତ୍ର ଯେ ତମର ନାହିଁ ?''

ସେହି ତରୁଣୀ ପୁଣି ଉତ୍ତରଦେଲା, ''ଆମର ତାଙ୍କ ଅପେକ୍ଷା ଭଲ ।'' ସେ ଚୀନା-ତରୁଣୀର ସେ ତେଜୋଦୀପ୍ତ ମୁଖମଣ୍ଡଳ ଓ ଗର୍ବ-ସ୍ଫୀତ-ଉତ୍ତର ମୁଁ ଭୁଲିପାରିବି ନାହିଁ ।

ଯେଉଁ ଜାତିର ନାରୀ ଏପରି ଜାଗ୍ରତ, ସେ ଜାତିକି ଜଗତଯାକର ବୋମା ଦମନ କରିପାରିବ ନାହିଁ ।

## ଯାତ୍ରା ଓ ଯାତ୍ରୀ

ଦିନ ବାରଟାବେଳେ ଜାହାଜ ଯାତ୍ରାରମ୍ଭର ସଂକେତଧ୍ୱନି ଦେଲା ଏବଂ କ୍ଷୁଦ୍ର ଜାପାନୀ ଜାହାଜ 'କାଶୀମାମାରୁ' ଲଙ୍ଗର ଉତ୍ତୋଳନ କରି ଗତିଶୀଳ ହେବାକୁ ଆରମ୍ଭ କଲା । କଲମ୍ବୋ ବନ୍ଦର ପାଚେରିଘେରା । ସମୁଦ୍ର ଭିତରକୁ ପ୍ରାୟ ଦେଢ଼ ମାଇଲ ଯାଏ ପାଚେରି ବୁଲି ଗୋଟିଏ ମଣ୍ଡଳ ରଚନା କରିଛି; ତାହାହିଁ ବନ୍ଦର । ଏଥିରେ ସମୁଦ୍ରପାଣି ସ୍ଥିର ଥାଏ । ମଣ୍ଡଳର ମଝିରେ ଜାହାଜମାନଙ୍କର ଆଗମନ ନିର୍ଗମନ୍ର ଲାଗି ଉନ୍ମୁକ୍ତ ଦ୍ୱାର ଅଛି । ମଣ୍ଡଳର ବାହାରେ ଭାରତ ମହାସାଗରର ମୌସୁମୀ-ସଂଚାଳିତ ଦୁର୍ବାର ତରଙ୍ଗରାଜି ସେହି ପ୍ରାଚୀର ଉପରେ ପିଟି ହେଉଥାନ୍ତି । ପୃଥିବୀର ଆଲିଙ୍ଗନରୁ ସେମାନଙ୍କୁ ଦୂରରେ ରଖିଥିବାରୁ ତା' ଉପରେ ଯେପରି ସେମାନଙ୍କର ବିଶେଷ କ୍ରୋଧ ।

ଜାହାଜ ଯେମିତି ପାଚେରି ଡେଇଁଛି, ସମୁଦ୍ରର କ୍ଷୁବ୍ଧ ବଂଧୁର ବକ୍ଷରେ ପଡ଼ି ତାହା ଭୟଙ୍କର ଭାବରେ ଆନ୍ଦୋଳିତ ହେବାକୁ ଲାଗିଲା । ମୁଁ କୌଣସି କର୍ମରେ ଜାହାଜର ଉପର ମହଲାକୁ ଯାଇଥିଲି । ଉପର ମହଲାର ଡେକ୍ ରେଲିଂକି ଧରି ଚାରିଆଡ଼ର ଦୃଶ୍ୟ ଦେଖିବାକୁ କିଛିକ୍ଷଣ ଚେଷ୍ଟାକଲି । ଜାହାଜ ଭୀଷଣ ଭାବରେ

ଉଠ-ପଡ଼ ହେବା ଦେଖି ଓ ପ୍ରଭଞ୍ଜନର ବେଗ ସହି ନ ପାରି ମୁଁ ଟଳି ଟଳି ତଳକୁ ଚାଲିଆସି ଶଯ୍ୟାର ଆଶ୍ରୟ ନେଲି । ଶଯ୍ୟା ଗ୍ରହଣ କଲେ ମଧ୍ୟ ବିପଦରୁ ରକ୍ଷାନାହିଁ, କାରଣ ଜାହାଜର ଆନ୍ଦୋଳନ ହେଲେଇ ସମୁଦ୍ର-ପୀଡ଼ା ଆରମ୍ଭହୁଏ । ମୁଁ ସମୁଦ୍ର-ପୀଡ଼ାର କଥା ଶୁଣିଥିଲି ଓ ପଢ଼ିଥିଲି, ଚିଲିକାରେ ସାମାନ୍ୟ ମୃଦୁଭାବରେ ଅନୁଭବ କରିଥିଲି ମଧ୍ୟ; କିନ୍ତୁ ଏହି ପୀଡ଼ାର ବିଭୀଷିକା ବର୍ତ୍ତମାନ ପରିପୂର୍ଣ୍ଣ ଭାବରେ ଅଙ୍ଗେ ନିଭାଇବାକୁ ହେଲା ।

କଲମ୍ବୋଠାରୁ ଯାତ୍ରା ଆରମ୍ଭ ପରେ ଏଡେନ୍ ଆମର ଦ୍ୱିତୀୟ ବନ୍ଦର । ସେଠାରେ ପହଞ୍ଚିବାକୁ ଆମକୁ ବର୍ତ୍ତମାନ ପ୍ରାୟ ସପ୍ତାହେ ଲାଗିବ । ବାଟରେ କେବଳ ଅନନ୍ତ ନୀଳଜଳଧି, ଦିକ୍‌ଚକ୍ରରେଖା ଯା'ର ଚିର ପରିବର୍ତ୍ତମାନ ସୀମା । ସାତ ଦିନ ସୂର୍ଯ୍ୟ ଉଇଁବେ ଓ ବୁଡ଼ିବେ; ଆମେ କିନ୍ତୁ ବରୁଣର ଏକବର୍ଣ୍ଣୀ ରାଜ୍ୟରେ ବିଷ୍ଣୁ ପ୍ରଳୟ-ଜଳରେ ବଟପତ୍ରରେ ଭାସିଲା ପରି କେବଳ ଭାସୁଥିବୁ । ଏଇ ପ୍ରଥମ ସମୁଦ୍ରଯାତ୍ରା – ତେଣୁ ପ୍ରଥମକରି ଏକାଦିକ୍ରମେ ସାତଦିନ ଅନବଚ୍ଛିନ୍ନ ଭାବରେ ସମୁଦ୍ର ଉପରେ ଭାସିବାକୁ ପଡ଼ିବାରୁ ହୃଦୟ ଦବିବାକୁ ଲାଗିଲା । ମନୁଷ୍ୟ ଜଳ, ସ୍ଥଳ, ବାୟୁ ସବୁ ଜୟକରିଛି ସତ; କିନ୍ତୁ ସେ ସ୍ଥଳ ଛଡ଼ା ପ୍ରକୃତିର ଅନ୍ୟ କୌଣସି ଅଂଶକୁ ବିଶ୍ୱାସ କରିବାକୁ ଶିଖିନାହିଁ । ଜଳ, ବାୟୁ ପ୍ରଭୃତି ଏ ଯାଏ ମନୁଷ୍ୟର ଶତ୍ରୁ । ଏକେ ତ ମନୁଷ୍ୟ ଯେଉଁ ସ୍ଥିର ନିରାପଦ ଆଶ୍ରୟଟିକକ ଲୋଡ଼େ, ତା' ଏମାନେ ଦେଇପାରନ୍ତି ନାହିଁ; ତା' ଛଡ଼ା ମନୁଷ୍ୟକୁ ଆପନ୍ନ କରିବାକୁ ଜଳବାୟୁ ପ୍ରଭୃତି ପ୍ରକୃତିର ଏକ ଏକ ପରମ ଅସ୍ତ୍ର । ମନୁଷ୍ୟ ଆଜି ଏମାନଙ୍କ କାନମୋଡ଼ି କାମ ଆଦାୟ କରିଛି ମାତ୍ର । ଧରଣୀର ଅବହେଳିତ ମାଟିରେ ମନୁଷ୍ୟ ଯେଉଁ ବନ୍ଧୁତା, ଯେଉଁ ଆଶ୍ରୟ ପାଏ, ରତ୍ନାକରଙ୍କର ବିରାଟ ରାଜ୍ୟରେ ସେ ବନ୍ଧୁତା ମିଳେନାହିଁ; ବରଂ ମନୁଷ୍ୟ ପ୍ରକୃତିର କିପରି ଅନାକାଙ୍‌କ୍ଷିତ ତାହା ସମୁଦ୍ର-ପୀଡ଼ା ହିଁ ସୂଚନା କରେ । ପ୍ରଥମ ସମୁଦ୍ର-ଯାତ୍ରାର ପ୍ରଥମ ଛେଦରେ ସପ୍ତାହବ୍ୟାପୀ ସମୁଦ୍ରପୀଡ଼ା ମତେ ବିକଳ କରିଦେଲା ।

ସମୁଦ୍ର-ପୀଡ଼ା କ'ଣ ତାହା କହି ବୁଝେଇ ହେବ ନାହିଁ । ଯାକୁ ବୁଝିବାକୁ ହେଲେ ଅନୁଭବ କରିବାକୁ ହେବ । ଜାହାଜ ଏପରି ଭାବରେ ଆନ୍ଦୋଳିତ ହୁଏ ଯେ, ପାଦ ସ୍ଥିର ରହେନାହିଁ– ଟଳମଳ ଟଳମଳ ହୋଇ ଚାଲିବାକୁ ହୁଏ । ସମସ୍ତ ଶରୀର ଝାଙ୍କି ହେଲା ପରି ବୋଧହୁଏ; ମୁଣ୍ଡ ବୁଲେଇ ହେଲା ପରି ଲାଗେ । ପେଟ ଓ ହୃତ୍‌ପିଣ୍ଡ ଏପରି ଆକ୍ରାନ୍ତ ହୁଏ ଯେ, ମନେହେବ ଯେପରି ଭିତରର ଅନ୍ତଶିରା ସବୁ କିଏ ଛିଣ୍ଡେଇ ଦୁହୁଁଛି । କାହାର କାହାର ଭୟଙ୍କର ବାନ୍ତି ହୁଏ । ମୋର ବାନ୍ତି ହୋଇନାହିଁ; କିନ୍ତୁ ସେଥିଲାଗି ପୀଡ଼ା ମୁଁ କମ୍ ଭୋଗକରିନାହିଁ । ପୀଡ଼ା ଯେମିତି

ଆରମ୍ଭହେଲା, ଖାଇବାକୁ ଇଚ୍ଛା ହେଲାନାହିଁ ଏବଂ ଉପବାସ କାଳେ ପୀଡ଼ାର ଉପଶମ ଆଣିବ ଭାବି ମୁଁ କଲମ୍ବୋ ଛାଡ଼ିବାର ଦିନକ ପରେ ଖାଡ଼ା ଉପବାସ ରହି କେବଳ ଶେଯରେ ଶୋଇରହିଲି । ପୀଡ଼ା କମିବାର ନୁହେଁ; ଏଡେନ୍ ଯାଏଁ ଶେଯରେ ଆଖି ବୁଜି କୌଣସିମତେ ପଡ଼ିଥାଏ ଏବଂ ଛାଡ଼ିଆସିଥିବା ଗୃହର ସୁଖ ସବୁ ମନେପକାଉଥାଏଁ । ଭାବୁଥାଏ, ଏଇ ତ ପ୍ରବାସର ଆରମ୍ଭ ହେଲା– ହାୟରେ ! ରୋଗଶୋକରେ ଏପରି ଆଶ୍ରୟହୀନ ହୋଇ ପଡ଼ିରହିଲେ କିଏ ପଚାରିବ ଆଉ ? ନାରୀର କୋମଳ କରପଲ୍ଲବର ସ୍ନେହ-ରଞ୍ଜିତ ମୃଦୁଘର୍ଷଣ କପାଳପଟରେ ଆଉ ପାଇବି ସତେ ! ପ୍ରିୟଜନର ପରିଚିତ କଣ୍ଠସ୍ୱରର 'କିପରି ଲାଗୁଛି', 'କ'ଣ ଦେବି', 'କ'ଣ ଖାଇବ', 'ଭଲ ହୋଇଯିବ' ପ୍ରଭୃତି ଆଶ୍ୱାସ-ବାଣୀ, ମୃଣାଳ-ଭୁଜର ଚୂଡ଼ି ସଂଚାଳନ ସଙ୍ଗେ ମିଳିତ ହୋଇ ମୋର ରୋଗ-ବ୍ୟାକୁଳ ପ୍ରାଣକୁ ଏହି ପ୍ରବାସରେ ଆଉ ବୋଧଦେବ ! ମନେହେଉଥାଏ, ଯେପରି ସେ ନରକ-ଯନ୍ତଣାର ଶେଷ ନାହିଁ । ପୀଡ଼ା ଯେତେବେଳେ ତୀବ୍ର ବୋଧହୁଏ, ହତାଶ ହୋଇ ବେଳେ ବେଳେ ଅଶ୍ରୁ ତ୍ୟାଗ କରିଛି ମଧ୍ୟ । ସମୁଦ୍ର ସ୍ଥିର ହେଲା; କିନ୍ତୁ ଆଉ ପୀଡ଼ା ନାହିଁ । ଫେର୍ ଆନ୍ଦୋଳନ ଆରମ୍ଭ ହେଲେ ପୀଡ଼ାର ଆରମ୍ଭ । ଏହିପରି ଆରବ ସାଗରରେ, ଭୂମଧ୍ୟସାଗରର ପ୍ରଥମ ଅଂଶରେ ଏବଂ ଆଟ୍‌ଲାଣ୍ଟିକ ମହାସାଗର ଆଇବେରୀୟ ଉପକୂଳରେ ଆମ୍ଭମାନଙ୍କୁ ତିନି ଥର ଏହି ସମୁଦ୍ର-ପୀଡ଼ାରେ ବ୍ୟସ୍ତ ହେବାକୁ ପଡ଼ିଥିଲା । ଜାହାଜ ଟିକିଏ ଦୋହଲିବାକୁ ଆରମ୍ଭ କଲେ ମୁଁ ଡେକ୍ ଛାଡ଼ି, ତଳେ ଶେଯଧରି ସ୍ଥିର ହୋଇ ଶୋଇପଡ଼େ । ପୁଣି ସମୁଦ୍ର ସ୍ଥିର ହେବାର ଜାଣିଲେ ଉପରକୁ ଆସେ । ଜାହାଜର ଆନ୍ଦୋଳନ ଓ ଶାନ୍ତ ଗତି ସଙ୍ଗେ ମୋର ଏଇ ପ୍ରକାର ସମ୍ପର୍କ ଦେଖି ମୋର ସାଥିମାନେ ମୋତେ ଜାହାଜର ବେରୋମିଟର ନାମ ଦେଲେ ।

ଜାହାଜରେ ସିଲୋନ୍‌ର ତିନି ଚାରି ଜଣ ଛାତ୍ର, ପଞ୍ଜାବରୁ ଜଣେ ଛାତ୍ର ଓ ଜଣେ ଶିକ୍ଷିତ ଯୁବକ ବ୍ୟବସାୟୀ ମୋ' ସାଥିରେ ଉଠିଥିଲେ । ଏମାନେ ସମସ୍ତେ ତୃତୀୟ ଶ୍ରେଣୀର । କିନ୍ତୁ ଏହି ଶ୍ରେଣୀରେ ଦଳେ ଭାରତୀୟ ବୁଲାବିକା ବି ଉଠିଛନ୍ତି; ସଂଖ୍ୟା ପ୍ରାୟ ବାର, ଚଉଦ । ପଞ୍ଜାବ ଓ ଉତ୍ତର-ପଶ୍ଚିମ ପ୍ରଦେଶ ଏମାନଙ୍କ ଘର । ଏମାନଙ୍କ ଭିତରୁ ଜଣେ ଦି'ଜଣ ମାତ୍ର ଇଂରେଜୀରେ ଭଙ୍ଗା ଭଙ୍ଗା କଥା କହିପାରନ୍ତି – ବାକୀତକ ବିଲ୍‌କୁଲ ଇଂରେଜୀ ଜାଣନ୍ତିନାହିଁ । ମଇଳା ବେଶ, ଅପରିଷ୍କାର ଅଭ୍ୟାସ ସବୁ । ଏପରି ଲୋକ ସବୁ ଯେ ବିଲାତ ଆସନ୍ତି, ଏ ଧାରଣା ଆମ ଦେଶରେ ଅନେକଙ୍କର ନାହିଁ । କିନ୍ତୁ ବିଲାତ ଆସି ଦେଖୁଛି, ଏଠି ଏମିତି ବଡ଼ ସହର ନାହିଁ, ଯେଉଁଠିକି ଏହି ଧରଣର ଭାରତୀୟ ବୁଲାବିକା ନାହାନ୍ତି ।

ଏମାନେ ଡଣ୍ଡି, ଗ୍ଲାସ୍‌ଗୋ ପ୍ରଭୃତି ସହରରୁ କପଡ଼ା ପ୍ରଭୃତି ମୋଟା ଦରରେ କିଣି ପୋଷାକ ବନେଇ ଦିଅନ୍ତି ଓ ତାକୁ ଖୁଚୁରା ଦରରେ ଗାଁଗଣ୍ଡା ସହରତଳି ବୁଲି ବିକନ୍ତି । ଏଥିରେ ବେଶ୍ ଦି'ପଇସା ପା'ନ୍ତି ମଧ୍ୟ । ମୁଁ ଏଠାକୁ ଆସିଲା ପରେ ବାଟଘାଟରେ ଏମାନଙ୍କ ଭିତରୁ କେତେ ଜଣଙ୍କୁ ଦେଖିଛି । ଥରେ ନିଉକାସଲ୍‌ରେ ଥିବା ଏମାନଙ୍କର ବସାଘରକୁ ବି ଯାଇଛି । ଯାତ୍ରାରେ ବାହାରିବା ସାଇବ ପରି କୌଣସିମତେ ପୋଷାକ ପିନ୍ଧିବା ଶିଖିଛନ୍ତି ସତ; କିନ୍ତୁ ଭାରତବର୍ଷର ନୋଂରା ଅଭ୍ୟାସଯାକ ସାଙ୍ଗରେ ଆଣିଛନ୍ତି ଓ ସାଇତି ରଖିଛନ୍ତି । ଗୋଟେ ବଖରାରେ ଚାରିଜଣ ଲେଖେଁ ରହିବେ, ସେଇଠି ରୋଷେଇ, ସେଇଠି ଲୁଗାପଟା, ପେଡ଼ି-ପେଟରା, ମଇଦା, ମାଂସ– ଠିକ୍ ଭାରତବର୍ଷ ପରି । ଜାହାଜରେ ମୁଁ ଓ ପଞ୍ଜାବର ଶିକ୍ଷିତ ଯାତ୍ରୀ ଦୁଇଜଣ ଯେଉଁ କେବିନ୍‌ରେ ଥିଲୁଁ, ଏମାନେ ବି ସେଇଠି ଉଠିଥିଲେ । ସାଙ୍ଗରେ ଲମ୍ବ ନଳୀବାଲା ଗୋଟେ ହୁକ୍‌କା ଆଣିଥାନ୍ତି । କେବିନ ଭିତରକୁ ଯେତେବେଳେ ପଶିବ, ପଂଝାକଯାକ ବୃତ୍ତାକାରରେ ବସି, ହୁକ୍‌କାକୁ କେନ୍ଦ୍ରରେ ଥୋଇ, ପାଳିକରି ହୁକ୍‌କା ଟାଣୁଥିବେ । ଘରଯାକ ଧୂଆଁ । ପଶି ହୁଏ ନାହିଁ କି ରହି ହୁଏ ନାହିଁ; କହିଲେ ବି ଶୁଣିବେ ନାହିଁ । ଭାରତବର୍ଷରେ ଏହି ଶ୍ରେଣୀର ଲୋକଙ୍କୁ ଏ ଅବସ୍ଥାରେ କିଛି ଉପଦେଶ ଦେଲେ ବରାବର ତ ଉତ୍ତର ଶୁଣିବ– ''କାହିଁକି ହୋ, ଆମେ କ'ଣ ଭଡ଼ା ଦେଇନୁ ? ତମେ କ'ଣ ଏକୁଟିଆ କମ୍ପାନୀକୁ ପଇସା ଦେଇଛ ?'' ଏମାନଙ୍କର ବି ସେଇ ମନୋଭାବ । ଦିନେ ଡେକ୍ ଉପରେ ଶୋଇଛୁଁ, ମୋ' ପାଖରେ ଏହି ଦଳର ଗୋଟେ ଭେଣ୍ଡା ଶୋଇ ପିକା ଖାଇବାକୁ ଲାଗିଲା । ଧୂମପାନର ଅସୁବିଧା, ପାଖରେ ବସିଥିବା ଲୋକ ହିଁ ସହେ । ମୁଁ ଧୂଆଁରେ ଅସ୍ଥିର ହୋଇ ତାକୁ କହିଲି, ସେ ଅନ୍ୟ ଆଡ଼େ ଧୂଆଁ ଛାଡୁ । ସେ ମୂର୍ଖୋଚିତ ଉତ୍ତର କଲା– 'ତମ ନାକ କାଟିପକାଉନା !' ଅବସ୍ଥା ଏପରି ହେଲା ଯେ, ଯାତ୍ରାର ଅଧିକାଂଶ ଦିନ ମୁଁ ମୋ' କେବିନ୍‌ରେ ନ ରହି, ଅନ୍ୟତ୍ର ଯାଇ ଶୁଆବସାକଲି ।

ଜାହାଜ ଯେଉଁ ଦିନ କଲମ୍ବୋ ଛାଡ଼ିଲା, ସେ ଦିନ ସକାଳେ ସିଲୋନୀ ଛାତ୍ରମାନେ ଆମ ସାଥିରେ ମିଶିଲେ । ସେମାନଙ୍କୁ ଛାଡ଼ିବାକୁ ତାଙ୍କ ଭାଇବନ୍ଧୁ ସବୁ ଆସିଥିଲେ । ତାଙ୍କ ଭିତରୁ ଜଣେ ମତେ ଦେଖି କହିଉଠିଲା– 'ଏଇ ଯେ ! କାଲି ଯେ ରାସ୍ତାରେ ତମ ସାଥିରେ ଦେଖାହୋଇଥିଲା !' ମୁଁ ସେ ଲୋକଙ୍କୁ ଆଦୌ ଦେଖିନାହିଁ । ମୁଁ ଆଶ୍ଚର୍ଯ୍ୟ ହେଲି । ସେ ପୁଣି କହିଲା– 'ଚିହ୍ନିପାରୁନାହଁ ? ତମେ ବୋଧହୁଏ ତମ ବାଳ ଓ ଦାଢ଼ି କାଟିପକେଇଛ !' ମୁଁ ଆଶ୍ଚର୍ଯ୍ୟ ହେଲି । ଲୋକଟି ନିରାଶ ହୋଇ ଫେରିଗଲା । ପ୍ରାୟ ଦିନେ ଦୁଇ ଦିନ ପରେ ଏ ରହସ୍ୟ ଧରାପଡ଼ିଲା ।

ଏଇ ବୁଲାବିକାଦଳରେ ଦୁଇ ଜଣ ଶିଖ୍ ଅଛନ୍ତି । କିନ୍ତୁ କଲମ୍ବୋରେ ଜାହାଜ ଧରିବା ପୂର୍ବରୁ ସେମାନେ ତାଙ୍କର ସ୍ୱାଭାବିକ ଦାଢ଼ି ଓ କେଶକୁ ନିଷ୍କାସନ କରି ଆସିଛନ୍ତି । ସେ ଭଦ୍ରଲୋକ ସେମାନଙ୍କୁ ଦାଢ଼ି ଥିବାବେଳେ ଦେଖି, ମତେ ଜାହାଜରେ ଦେଖି ବାଉଳା ହେଲେ । ବଡ଼ ଆଶ୍ଚର୍ଯ୍ୟର କଥା ଯେ, ଅଶିକ୍ଷିତ ହେଲେହେଁ ହିନ୍ଦୁ, ମୁସଲମାନ, ଶିଖ୍ ସମସ୍ତେ ଏହି ଦଳରେ ପରମ ପ୍ରୀତିରେ ବସାଉଠା କରୁଥିଲେ । ଏମାନଙ୍କୁ ଦେଖି କେହି କହିବ ନାହିଁ ଯେ ହିନ୍ଦୁ, ମୁସଲମାନ ଭିତରେ ଅହି-ନକୁଳ ସମ୍ବନ୍ଧ । ମତେ ଜଣେ ଜାପାନୀ କର୍ମଚାରୀ ଭାରତବର୍ଷର ହିନ୍ଦୁ-ମୁସଲମାନ କଳିକଥା ପଚାରିବାରୁ ମୁଁ ଏଇମାନଙ୍କୁ ଦେଖେଇ କହିଲି, 'ଯେଉଁଠି ହିନ୍ଦୁ-ମୁସଲମାନ କଳି କରୁଛନ୍ତି, ସେଠି ସଇତାନ ମନ୍ତ୍ର ପଢ଼ୁଛି । କଳି ଲଗାଇବାର ଲୋକ ଯଦି କେହି ଥାଏ, ତେବେ ଅଶିକ୍ଷିତ ଜନସଂଘକୁ ମତେଇଦେବା ନିତାନ୍ତ ସହଜ କଥା ।'

ଏମାନେ ଗରିବ । ଯାତ୍ରାର ଖର୍ଚ୍ଚ ଜଣେ ଦଲାଲ୍‌ଠାରୁ ଧାର କରି ଆଣିଛନ୍ତି । ସମସ୍ତେ ମିଶି ଦଲାଲକୁ ଖର୍ଚ୍ଚପତ୍ର ଦେଇ ତାକୁ କଲମ୍ବୋଯାଏଁ ସାଥିରେ ଧରି ଆସିଥିଲେ । କଲମ୍ବୋ ବନ୍ଦରରେ ଯାତ୍ରାରମ୍ଭ ଦିନ ବ୍ରେକ୍‌ଫାଷ୍ଟବେଳେ ଆମ୍ଭେମାନେ ସମସ୍ତେ ବସି ଖାଉଛୁ– ଜଣେ ଲୋକ ଲୁଙ୍ଗି ଓ ପଞ୍ଜାବି ପିନ୍ଧିଛି; ପଞ୍ଜାବିର ବୋତାମ ଫିଟା; ଛାତିରେ ଗୋଟିଏ ତ୍ରିକୋଣାକାର ଭୂମି ବାହାରକୁ ଦିଶୁଛି– ଆମର ଟେବୁଲ ଚାରିପାଖେ ଘୂରି ଘୂରି ଉଚ୍ଚସ୍ୱରରେ ସେହି ଦଳର ଲୋକଙ୍କୁ ଡାକି ଡାକି 'ମଛି ଖାଓ', 'ଅଣ୍ଡା ଖାଓ', 'ରୋଟୀ ଖାଓ', 'ଆଚ୍ଛା ତରସେ ଖାଓ' ଇତ୍ୟାଦି କହି କହି ସେମାନଙ୍କୁ ଉତ୍ସାହିତ କରୁଛି । କି ଲଜ୍ଜାର କଥା ! ଲୋକଟା ଏମିତି ବ୍ୟବହାର କରୁଛି ଯେ ଜାପାନୀମାନେ ଭାବିବେ ଯେପରିକି ଏ ଭାରତୀୟମାନଙ୍କୁ ଏ ସବୁ ଖାଇବାକୁ ମିଳେନାହିଁ, ବର୍ତ୍ତମାନ ଯୋଗ ପଡ଼ିଛି, ଯେତେ ଖାଇବ ଖାଅ । ପରେ ଶୁଣିଲି, ସେହି ଲୋକଟା ଦଲାଲ୍ । ଜାହାଜ ଛାଡ଼ିବା ପୂର୍ବରୁ ସେ ଅନ୍ତର୍ହିତ ହୋଇଥିଲା ।

ଏହି ଦଳକୁ ସମୂହଭାବରେ ମୁଁ 'ଗାଙ୍ଗ୍' (Gang) ନାମ ଦେଇଥିଲି । ସମସ୍ତେ ସେହି ନାମରେ ସେମାନଙ୍କ ସମ୍ବନ୍ଧରେ କଥା କହିବାକୁ ଆରମ୍ଭ କଲେ । ସେମାନଙ୍କର ରୂପ ଭେକ, ଚାଲିଚଳଣ ଦେଖି ସେମାନଙ୍କୁ 'ଗାଙ୍ଗ' ନ କହି ରହିହେବ ନାହିଁ । ସେମାନଙ୍କର ବା ଦୋଷ କ'ଣ ? ଭାରତବର୍ଷରେ ବାହାରର ଭେଦ ପ୍ରତି ବଡ଼ ଅନାସ୍ଥା । ତେଣୁ ଭାରତବର୍ଷରେ ଜଗତର ଅନ୍ୟ ସମସ୍ତ ଜନତାଠାରୁ ଅତ୍ୟନ୍ତ ଦୈନ୍ୟଗ୍ରସ୍ତ ଓ ଅସଂସ୍କୃତ ଦିଶେ । ଅଙ୍ଗାଚ୍ଛାଦନ ବା ବେଶବିନ୍ୟାସରେ ପୁଣି ଆମ୍ଭମାନଙ୍କର କୌଣସି ସାମଞ୍ଜସ୍ୟ ବି ନାହିଁ । ଜଣେ ଚୁଟି ରଖେ ତ, ଆଉ ଜଣେ ମୁଣ୍ଡକୁ ଏକାବେଳକେ ଚାଞ୍ଛେ; କେତେକ ନିଶ-ଦାଢ଼ି ରଖନ୍ତି, କେତେକ ଦାଢ଼ି ରଖି

ନିଶ ରଖନ୍ତି ନାହିଁ, କେତେକ ନିଶ ରଖିବେ ତ ଦାଢ଼ି ରଖିବେ ନାହିଁ; ଆଉ କେତେକ ଏକାବେଳକେ ଚିକ୍‌କଣ ମୁଖ । କେତେକର ପଗଡ଼ି, କେତେକର ଗାନ୍ଧି-ଟୋପି, କେତେକ ଖାଲିମୁଣ୍ଡ । କା'ର ଦେହରେ ପଞ୍ଜାବି, କା'ର କୁର୍ତ୍ତା ଓ କୋଟ, କା'ର ଲମ୍ବା କୋଟ୍, କା'ର ଦେହରେ କିଛି ନାହିଁ । ଚର୍ମର ବର୍ଣ୍ଣ ବି ବିଭିନ୍ନ । ଏ ସମସ୍ତର ମିଶ୍ରଣ ହେଲେ କୌଣସି ଭାରତୀୟ ଜନ-ସମବାୟ ଗୋଟିଏ ଦେଶର ଲୋକ ବୋଲି କେହି କହିବ ନାହିଁ । ବେଶ-ବିନ୍ୟାସରେ ପ୍ରାୟ ଅନାସ୍ଥାଯୋଗୁଁ ଭାରତୀୟ ପୁରୁଷ ଜନତା ଆଖିକି କେବଳ ପ୍ରାଣୀ-ସଂଘ ପରି ଦିଶେ; ଜନ-ସଂଘ ପରି ନୁହେଁ । ବୋଟ୍‌ରେ ଜାପାନୀମାନଙ୍କୁ ଦେଖୁଥାଉଁ । ଅଧିକାଂଶର ମୁଖର ଆକୃତି ବିଭଙ୍ଗ । କେତେକ ପୁରାଣର ଦୈତ୍ୟମାନଙ୍କର କଥା ବି ସ୍ମରଣ କରାଉଥାନ୍ତି । କିନ୍ତୁ ପୋଷାକପତ୍ରର ସାମଞ୍ଜସ୍ୟ ଓ ତହିଁରେ ସ୍ନେହ ଯୋଗୁଁ ସେମାନଙ୍କର ଜନତା ଯତ୍ନକର୍ତ୍ତିତ ବୃକ୍ଷ-କୁଞ୍ଜ ପରି ଦେଖାଯାଏ । ଜନତାର ଯେ ଗୋଟେ ସ୍ୱତନ୍ତ୍ର ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ଅଛି, ତା' ଏ ଦେଶକୁ ଆସି ଆହୁରି ବିଶେଷ ଭାବରେ ଅନୁଭୂତ ହେଉଛି । ଏ ଦେଶରେ ଯେଉଁ ସହରକୁ ଯାଅ, ଦେଖିବ ସହସ୍ର ସହସ୍ର ପୁରୁଷର ଏକ ପୋଷାକ, ସହସ୍ର ସହସ୍ର ନାରୀମାନଙ୍କର ଏକ ପୋଷାକ । ଫଳରେ ଯେଉଁଠାରେ ବା ଯେତେବେଳେ ଏମାନେ ଜମା ହୁଅନ୍ତି, ଏଠାର ଜନ-ମେଳନ ଯତ୍ନବର୍ଦ୍ଧିତ ଏକ-ବୃକ୍ଷର ବନାଂଶ ପରି ମନେହୁଏ– ତା' ତୁଳନାରେ ଭାରତୀୟ ଜନତା ଅନାବନା ଗଛର ଜଙ୍ଗଲ ।

ଏ ଦେଶକୁ ଆସି ମୁଁ ଦେଖୁଛି ଯେ ସାହେବ ଆଉ ଭାରତୀୟର ମୁଖାକୃତିରେ କିଛି ହେଲେ ପାର୍ଥକ୍ୟ ନାହିଁ– ପ୍ରଭେଦ ଯାହା ବର୍ଣ୍ଣର । ପ୍ରସ୍ଥ ଓ ଉଚ୍ଚତାରେ ମଧ୍ୟ ବିଶେଷ ପାର୍ଥକ୍ୟ ଦେଖୁନାହିଁ; କିନ୍ତୁ କେବଳ ପୋଷାକ, ଶ୍ୱେତାଙ୍ଗ ପୁରୁଷକୁ ଗୋଟେ ପ୍ରକାର ବ୍ୟକ୍ତିତ୍ୱ ଦାନକରେ, ଯାହା ଭାରତୀୟ ପୁରୁଷର ନାହିଁ । ମୋର ଇଚ୍ଛା ନବଜାଗ୍ରତ ଭାରତ ଏ ଦିଗରେ ଚିନ୍ତା କରିବା ଉଚିତ । ତୁର୍କୀ ଓ ଜାପାନୀ ଇଉରୋପୀୟ ପୋଷାକ ଗ୍ରହଣକରି ସେମାନଙ୍କର ଜାତୀୟତାକୁ କୌଣସି ପ୍ରକାରେ ଖର୍ବ କରିନାହାନ୍ତି । ପଶ୍ଚିମର ଆଦର୍ଶରେ ଆମ୍ଭମାନଙ୍କର ପୁରୁଷ-ପୋଷାକରେ ଏହିପରି କିଛି ପରିବର୍ତ୍ତନ ହେଲେ ଆମ୍ଭମାନଙ୍କର ଲଜ୍ଜାର କଥା କିଛି ନାହିଁ । ଏ ଦେଶର ଲୋକେ ଭାରତବର୍ଷର ପାଇଜାମାକୁ ରାତ୍ରିବାସରୂପେ ଗ୍ରହଣ କରିଛନ୍ତି – ଆମେ ତାଙ୍କଠୁ କିଛି ଗ୍ରହଣକଲେ ଆମର ଅପମାନ ହେବ କାହିଁକି ? ଭାରତୀୟ ନାରୀର ଅଙ୍ଗାଚ୍ଛାଦନ ଏତେ ମନୋହର ଯେ, ଏ ଦେଶରେ ତା'ର ଭୂରି ଭୂରି ପ୍ରଶଂସା । ତାକୁ ଛାଡ଼ି ଆମର ଯେଉଁମାନେ ମେମ୍‌ସାହେବ ସାଜିବାକୁ ଚେଷ୍ଟା କରନ୍ତି, ସେମାନେ ମୂର୍ଖ ନିଶ୍ଚୟ । ପଞ୍ଜାବୀ ପଗଡ଼ି ମଧ୍ୟ ସେହିପରି ମନୋରମ

ଉଷ୍ଣୀଷ । ଏହିପରି ଭାରତବର୍ଷରେ ଯାହା ସୁନ୍ଦର ଓ ପ୍ରୟୋଜନୀୟ ତା' ରଖି ଆବଶ୍ୟକୀୟ ପରିବର୍ତ୍ତନ ଆଣିବା ଉଚିତ ଓ ସମଗ୍ର ଦେଶର ଅଙ୍ଗାଚ୍ଛାଦନରେ ଏକ ସାମଞ୍ଜସ୍ୟ ଆଣିବା ମଧ୍ୟ ଦରକାର ।

କିନ୍ତୁ ମୂର୍ଖୋଚିତ ବ୍ୟବହାର କଲେ ହେଁ ଓ ନୋଂରା ଅଭ୍ୟାସ ଥିଲେ ହେଁ ଆମ୍ଭେମାନେ ନିଜ ଦେଶର ଲୋକ ବୋଲି ଏହି ଗ୍ୟାଙ୍ଗ୍ ପ୍ରତି ସର୍ବପ୍ରକାର ଭଦ୍ରୋଚିତ କର୍ତ୍ତବ୍ୟ କରୁଥିଲୁଁ । ଜନୈକ ପଞ୍ଜାବୀ ଶିକ୍ଷିତ ଯାତ୍ରୀ ପ୍ରଥମେ ଆପତ୍ତି କରିଥିଲେ ଯେ, ''ଆମେ ସେମାନଙ୍କଠୁଁ ଅଲଗା ରହିବା ।'' ମୁଁ ତା'ର ପ୍ରତିବାଦ କରିଥିଲି । ମୁଁ କହିଲି, 'ଜାପାନୀମାନେ ଯେପରି ଜାଣିବେ ନାହିଁ ଯେ, ଅଶିକ୍ଷିତ ବୋଲି ଆମେ ସେମାନଙ୍କୁ ଘୃଣା କରୁଛୁ ବା ଆମ ଭିତରେ ଏମିତି ଭେଦାଭେଦ ଅଛି ।' ସେ ପ୍ରସ୍ତାବ ତେଣୁ ବନ୍ଦହେଲା ଏବଂ ସେହି ଭଦ୍ରବନ୍ଧୁ 'ଗ୍ୟାଙ୍ଗ୍'ର ବିଶେଷ ସେବା କରିବାକୁ ଲାଗିଲେ । ଆମ୍ଭେମାନେ ସମସ୍ତେ ଏକତ୍ର ଖାଉଥାଉ ଓ ଉଠାବସା କରୁଥାଉ । ଏକାଠି ଖାଇଲାବେଳେ ମୁଁ ସେମାନଙ୍କୁ ଦେଖି ଥରେ ଥରେ ଭାବେ, 'ଏମାନଙ୍କ ଦୈନ୍ୟ-ଗ୍ରସ୍ତ ଅବସ୍ଥା ପାଇଁ ଏମାନେ ତ ଆଦୌ ଦାୟୀ ନୁହନ୍ତି । ଏହି ଶ୍ରେଣୀର ଅନ୍ୟ ଦେଶୀୟ ଲୋକମାନଙ୍କଠୁ ଏମାନେ ଯେ ବୁଦ୍ଧି ବା ସାହସରେ ନ୍ୟୂନତର, ତା' ମୁଁ ମାନିବାକୁ ପ୍ରସ୍ତୁତ ନୁହେଁ । ପ୍ରଭେଦ ଏହି ଯେ ଅନ୍ୟ ଦେଶରେ ମନୁଷ୍ୟକୁ ବିଧାତା ଯେଉଁ କଞ୍ଚାମାଲ ଦେଇ ଏ ଜଗତକୁ ପଠାଇଥାଏ, ସେ ଦେଶର ସରକାର ସେ କଞ୍ଚାମାଲ କେମିତି ପ୍ରକୃଷ୍ଟ ଭାବରେ କାମରେ ଲାଗିବ, ତା' ଦେଖନ୍ତି; କିନ୍ତୁ ଭାରତବର୍ଷରେ ସେଥିଲାଗି କାହାର ମୁଣ୍ଡବ୍ୟଥା ହୁଏ ନାହିଁ । ଏହି ବୁଲାବିକାମାନଙ୍କ ଜୀବନରେ କି ସମ୍ଭାବ୍ୟତା ଥିଲା, କିଏ କହିବ ! କିନ୍ତୁ ସେମାନଙ୍କ ମସ୍ତିଷ୍କର ବାତାୟନ ଖୋଲିବାକୁ କେହି ତ ଚେଷ୍ଟା କରିନାହିଁ ! ତା'ର ଛାତିର ସାହସ, ଡେଣାର ବଳ, ଆଙ୍ଗୁଠିର କରାମତି ପରୀକ୍ଷା କରିବାକୁ ତାକୁ କେହି ସୁଯୋଗ ତ ଦେଇନାହିଁ । ମୋ' ଦେଶର ଜନସାଧାରଣର ଅପୂର୍ବ ସମ୍ଭାବ୍ୟତା ଏହିପରି ଶତ ଶତ ବର୍ଷ ଧରି ଆପେ ଆପେ ନଷ୍ଟ ହୋଇଯାଇଛି । ମୋ' ଦେଶ ସ୍ୱାଧୀନ ହୋଇଥିଲେ, ଏମାନେ ବୁଲାବିକା ନ ହୋଇ ଭଦ୍ର ବଣିକ ହୋଇଥାନ୍ତେ; କିଏ ବା ସୈନିକ, କିଏ ବା ନାବିକ ହୋଇଥାନ୍ତା । ଏଇ ତ ଜାପାନୀମାନଙ୍କୁ ଦେଖୁଛି । ସେମାନେ ସମସ୍ତେ ଶିକ୍ଷିତ; ସମସ୍ତେ ପରିଷ୍କୃତ, ଭଦ୍ର, ସୁବେଶ । ମୋ' ଦେଶର ଏମାନଙ୍କୁ ଶିକ୍ଷା ଦେଇଥିଲେ, ଏମାନେ କ'ଣ ସେଇମିତି ହୋଇ ନ ଥାନ୍ତେ ? ଯେକୌଣସି ଷଣ୍ଢକୁ ସଜେଇଲେ ସେ ତ ବାସୁଆ ବଳଦ ହେବ; ସେଥିଲାଗି କ୍ଷଣଜନ୍ମା ହେବା ତ ଦରକାର ନାହିଁ । ସବୁ ଜାତିର ଜନସାଧାରଣ ସଭ୍ୟ, ଭଦ୍ର ଓ ସଂସ୍କୃତ ହେଲେ;

ଆମରି ଦେଶର ଜନତା କେବଳ ଦୀନହୀନ, ପତିତ ହୋଇ ପଡ଼ିରହିଲେ । ରବୀନ୍ଦ୍ରନାଥଙ୍କର ସେହି ମର୍ମ୍ମଭେଦୀ ବାଣୀ ମନେପଡ଼େ– 'ଦିନ ଆଗତ ଐ, ଭାରତ ତବୁ କୈ, ସେ କି ରହିଲ ନିଦ୍ରିତ ହୟେ ସବ ଜନ ପଶ୍ଚାତେ ।'

ଏହି ବୁଲାବିକାମାନେ କିପରି ଦୀନହୀନ, ତା' ଗୋଟିଏ ଘଟଣାରୁ ବୁଝାପଡ଼ିବ । କ୍ରମେ ଆମେ କଥାବାର୍ତ୍ତାରୁ ବୁଝିଲୁ ଯେ, ଏମାନେ ପ୍ରତ୍ୟେକେ ସେମାନଙ୍କର ପାସ୍‌ପୋର୍ଟ ଲାଗି ପ୍ରାୟ ତିନିଶ' ଟଙ୍କା ଲେଖେଁ ଲାଞ୍ଚ ଦେଇଛନ୍ତି । ଭାରତବର୍ଷର ସରକାରୀ ଅଫିସମାନଙ୍କରେ ଦରିଦ୍ର-ଅଶିକ୍ଷିତ ପ୍ରଜାସାଧାରଣଙ୍କର ଅବସ୍ଥା ଏଇଥିରୁ ସହଜେ ଜଣାପଡ଼ିବ । ଆମ୍ଭେମାନେ ଯେତେବେଳେ କହିଲୁ ଯେ ପାସ୍‌ପୋର୍ଟ ପାଇଁ ଆମକୁ ଡାକ ଖର୍ଚ୍ଚ ଛଡ଼ା ଅନ୍ୟ କିଛି ପଡ଼ିନାହିଁ, ଏମାନେ ଆଦୌ ବିଶ୍ୱାସ କଲେନାହିଁ । ମତେ ଜଣେ କହିଲା, 'ହଁ ତମ ମୁହଁକୁ ଦେଖି ମାହାଲିଆ ଦେଇଥିବ;' ଏବଂ ସେମାନଙ୍କର ଦୃଢ଼ ବିଶ୍ୱାସ ଯେ ତିନିଶ' ଟଙ୍କା ଲେଖେଁ ଦେଇ ସେମାନେ ଯେ ପାସ୍‌ପୋର୍ଟଟିମାନ ପାଇଛନ୍ତି, ତାହା ସେମାନଙ୍କର ଚାଲାକି ଯୋଗୁଁ କେବଳ ।

ଓଡ଼ିଆ ଶ୍ରମିକ କଲିକତା-ରେଙ୍ଗୁନ ଗଲା ପରି ପଶ୍ଚିମ ଭାରତୀୟ ବା ପଞ୍ଜାବୀ ଶ୍ରମିକ ଆଫ୍ରିକା ବା ୟୁରୋପ ଯାଏ । ଓଡ଼ିଆ ଶ୍ରମିକ ନୋଳି ମାଳି ପିନ୍ଧି ବିଦେଶରୁ ଫେରି ମାସକ ପରେ ତାକୁ ବନ୍ଧା ପକାଏ – ଏମାନଙ୍କର ମଧ୍ୟ ସେହି ଦଶା ଶୁଣିଲି । ତଥାପି ଏମାନଙ୍କର ଗର୍ବ, ଅହଙ୍କାର, ମୂର୍ଖତା ବଡ଼ ବିରକ୍ତ ଲାଗିଥିଲା ସମୟେ ସମୟେ । ହାୟରେ, ଯେଉଁ ଦେଶ ବା ଶାସନ ଏମାନଙ୍କୁ ଏଇପରି ବଣମଣିଷ ପରି କରି ରଖିଛି, ସେ ସିନା ଏଥିଲାଗି ଦାୟୀ ।

ପଞ୍ଜାବର ଦୁଇ ଜଣ ଯାତ୍ରୀଙ୍କ ମଧ୍ୟରୁ ବ୍ୟବସାୟୀ ଯୁବକଙ୍କର ନାମ ଚମନଲାଲ । ଭଦ୍ର ଓ ଧନୀ ଘରର ପିଲା । ଆମେରିକା ପ୍ରଭୃତି ବ୍ୟବସାୟ ବ୍ୟପଦେଶରେ ବୁଲିଆସିଛନ୍ତି । ବର୍ତ୍ତମାନ ବି ବ୍ୟବସାୟ ସୂତ୍ରରେ ବିଲାତ ଯାଉଛନ୍ତି । ବିବାହ ନ କରି ଅର୍ଜିତ ଧନ କୌଣସି ଜନସେବାରେ ବ୍ୟୟ କରିବା ତାଙ୍କର ସଙ୍କଳ୍ପ । ବାଟଯାକ ସେ ଆମର ବହୁତ କାମ କରି ଦେଇଥିଲେ । ମୁଁ ଓଡ଼ିଶାରେ ଏଇମିତି କେତୋଟି ଯୁବକ ଦେଖିବାକୁ ଚାହେଁ ।

ପଞ୍ଜାବର ଆର ଜଣକ ଜଣେ କଲେଜ ଲେକ୍‌ଚରର, ବିଲାତି-ଡିଗ୍ରୀ ପାଇଁ ଯାଉଛନ୍ତି । ବାପା ତାଙ୍କର ଗୋଟେ କଲେଜର ଭାଇସ୍-ପ୍ରିନ୍‌ସିପାଲ । ଦିନେ ମୁଁ ତାଙ୍କୁ ପଚାରିଲି, ''ତମେ ତ ଲେକ୍‌ଚରର, ତମ ବାପା ତ ଭଲ ଚାକିରି କରିଛନ୍ତି, ତମେ ଜାପାନୀ ଜାହାଜର ତୃତୀୟ ଶ୍ରେଣୀରେ କାହିଁକି ଆସିଲ ?'' ସେ ବଡ଼ କରୁଣ କାହାଣୀ କହିବାକୁ ଲାଗିଲେ– ''ଭାଇ, ଆମେ ଏଗାର ଭାଇ । ବାପା ବୋଉ,

ଚାକର ଚାକରାଣୀ ମିଶି ଦୈନିକ ତିରିଶ ଜଣର ଖୋରାକ ଦରକାର । ଜୋତା କିଣା ହେଲେ ଏଗାର ହଳ ଜୋତା, ପୋଷାକ କିଣା ହେଲେ ଏଗାରଟା ପୋଷାକ, ସେମାନଙ୍କର ଶିକ୍ଷା, ହେନତେନ– ଟଙ୍କା ଆସିବ କୁଆଡୁ ? ମୁଁ ବଡ଼ପୁଅ । ବାପାଙ୍କ ଅନ୍ତେ ସମଗ୍ର ପରିବାରର ଭାର ମୋ' ଉପ୍ରେ ପଡ଼ିବ । ମୁଁ ବାପାଙ୍କୁ ବେଳେ ବେଳେ ସଂକେତ ଦିଏ, ଏଡ଼େ ବଡ଼ ପରିବାର କାହିଁକି କଲେ ଯେ ! ବାପା କହନ୍ତି– ଆଚ୍ଛା, ଏମାନଙ୍କ ଭିତରୁ ତୁ କାହାର ମରଣ ଚାହୁଁ କହ ?''

ବଡ଼ କରୁଣ ଅବସ୍ଥା ନିଶ୍ଚୟ । ଯେଉଁମାନେ ପରିବାର ଆରମ୍ଭ କରିବା ଉପରେ, ସେମାନଙ୍କର ଏଥିରୁ ଶିକ୍ଷା କରିବାର ଅଛି ବୋଧହୁଏ ।

ଜାହାଜର ଫାଷ୍ଟ୍ ଓ ସେକେଣ୍ଡ୍ କ୍ଲାସରେ ଅନେକ ଶ୍ୱେତାଙ୍ଗ ଯାତ୍ରୀ, ଜାପାନୀ ଯାତ୍ରୀ ମଧ୍ୟ ଅଛନ୍ତି । ଏମାନେ ତୃତୀୟ ଶ୍ରେଣୀ ଯାତ୍ରୀମାନଙ୍କ ସଙ୍ଗେ ଆଦୌ ମିଶନ୍ତି ନାହିଁ । ଗୋଟେ ଯୋଡ଼େ ଶ୍ୱେତାଙ୍ଗ ଦମ୍ପତିର ଦୁଇ ତିନୋଟି ଶିଶୁ ବେଳେ ବେଳେ ତୃତୀୟ ଶ୍ରେଣୀର ଡେକ୍ ଉପରେ ଆସି ଖେଳାବୁଲା କରନ୍ତି; କିନ୍ତୁ ସମସ୍ତ ଶ୍ୱେତାଙ୍ଗ ସଂପ୍ରଦାୟର ବ୍ୟବହାର ଆମମାନଙ୍କ ପ୍ରତି ଘୃଣାବ୍ୟଞ୍ଜକ ଛଡ଼ା ଆଉ କିଛି ନୁହେଁ ।

ଆମମାନଙ୍କ ଭିତରେ ଜଣେ ଦରିଦ୍ର ଶ୍ୱେତାଙ୍ଗ ତରୁଣ ବି ଅଛି; ତା'ର ଜୀବନ-ଇତିହାସ ଓ ଚରିତ୍ର କୌତୂହଳକର । ସେ ଭାରତବର୍ଷ-ବାଟେ ସିଙ୍ଗାପୁର ପର୍ଯ୍ୟନ୍ତ ସାଇକଲରେ ଯାଇଥିଲା । ସେଠି କୌଣସି କ୍ରମେ ତା'ର ସମସ୍ତ ପୁଞ୍ଜି ହରେଇଲା । ପୁଲିସ ତାକୁ ତୃତୀୟ ଶ୍ରେଣୀର ଟିକଟ କଟେଇ ଦେଶକୁ ଫେରେଇଦେବାର ବନ୍ଦୋବସ୍ତ କରିଦେଲେ । ଖଣ୍ଡିଏ ହାଫ୍-ପ୍ୟାଣ୍ଟ୍ ଓ ଖଣ୍ଡିଏ ହାଫ୍-ସାର୍ଟ ଛଡ଼ା ତା'ର ଦ୍ୱିତୀୟ ବସ୍ତ୍ର ନାହିଁ । ହାତରେ କେତୋଟି ସିଲିଂ ମାତ୍ର ସମ୍ବଳ । କିନ୍ତୁ ତା'ର ଚରିତ୍ରର ବଳ ଏପରି ଯେ, ସେ କାହାକୁ ହେଲେ ନିଜର ଦୈନ୍ୟ ଦେଖେଇବାକୁ ଚାହେନାହିଁ । ଆମ୍ଭମାନଙ୍କ ମଧ୍ୟରୁ ଏକାଧିକ ଲୋକ ତାକୁ ପୋଷାକ ଦେବାକୁ ଯାଚିଲେ; ସେ ନାହିଁକଲା । ସେ କାହାକୁ କଥା କହେନାହିଁ: ଚୁପ୍‌ଚି କରି ଡେକ୍‌ର ଗୋଟେ ପାଖରେ ବସିଥାଏ । ଶ୍ୱେତାଙ୍ଗମାନଙ୍କ ସଙ୍ଗରେ ବି ମିଶେ ନାହିଁ । ଭୂମଧ୍ୟସାଗରକୁ ଜାହାଜ ପହଞ୍ଚିଲା ପରେ ବିଶେଷ ଶୀତ ଆରମ୍ଭ ହେଲା । ସମସ୍ତେ ଶୀତବସ୍ତ୍ର ବ୍ୟବହାର କରିବାକୁ ଆରମ୍ଭ କଲେ । ସେ କିନ୍ତୁ ସେହି ଚିରା ହାଫ୍-ପ୍ୟାଣ୍ଟରେ ତୃତୀୟ ଶ୍ରେଣୀର ଖୋଲା ଡେକ୍‌ରେ ଜାଡ଼ ସହି ବସିଥାଏ । ଶୀତ ବେଶିହେଲେ ବେଳେ ବେଳେ ଦେହ ହାତ ନିଜେ ନିଜେ ଘଷି ହୁଏ । ଏ ପ୍ରକାର ଚରିତ୍ର ଭାରତବର୍ଷରେ ବିରଳ ବୋଧହୁଏ । ଶ୍ୱେତଚର୍ମ ଯେ କାହିଁକି କୃଷ୍ଣ ଓ ପାଣ୍ଡୁର ଚର୍ମ ଉପରେ କ୍ଷମତା ବିସ୍ତାର କରିଛି, ତା'ର ପ୍ରଥମ ପରିଚୟ ଏହିଠାରୁ ପାଇଲୁଁ । ଲଣ୍ଡନ୍‌ରେ ସେ ଯୁବକ ସେହି ଚିରା ହାଫ୍-ପ୍ୟାଣ୍ଟ

ଓ କାମିଜ୍ ପିନ୍ଧି ଜାହାଜରୁ ବାହାରି ଲଣ୍ଡନର ବିରାଟ ଜନତାରେ ମିଶିଗଲେ । ଜାହାଜରେ ଆମେ ତାଙ୍କୁ କହୁଥାଉ– Mysterious mariner ବା ରହସ୍ୟମୟ ନୌଯାତ୍ରୀ ।

ଏହି ପ୍ରକାର ସହଯାତ୍ରୀମାନଙ୍କର ସଙ୍ଗମେଳରେ ଦିନ ପରେ ଦିନ କଟିବାକୁ ଲାଗିଲା । ଦିନ ପରେ ଦିନ କେବଳ ଜଳ ଜଳ ଜଳ; ଉପରେ ନୀଳ ଆକାଶ, ତଳେ ନୀଳ ଜଳ– ବିରାଟ ବିସ୍ତାର ମଧ୍ୟରେ ଆମର କ୍ଷୁଦ୍ର ନୌକା ଭାସମାନ । ବେଳେ ବେଳେ ଦୂର ଚକ୍ରବାଳରେ ଆଫ୍ରିକା ବା ଅନ୍ୟାଭିମୁଖୀ ବାଷ୍ପୀୟ ପୋତ ବିରାଟ ତିମିଙ୍ଗିଳ ପରି ଭାସିଉଠି କିଛି କ୍ଷଣ ପରେ ଲୀନ ହୋଇଯାଏ । ଆମେମାନେ ସେସବୁକୁ କୌତୂହଳ ସହକାରେ ନିରୀକ୍ଷଣ କରି ରହୁଁ ।

## ଘାଟେ ଘାଟେ

କଲମ୍ବୋ ଛାଡ଼ିବାର ଛ' ଦିନ ପରେ ଅପରାହ୍ଣରେ ଆମ୍ଭେମାନେ ସ୍ଥଳ ଦେଖିବାକୁ ପାଇଲୁ । ଡେକ୍ ଉପରୁ ଆରବର ଉପକୂଳ ପର୍ବତମାଳା ଦିଗ୍‌ବଳୟ ଉପରେ ଧୂମବର୍ଣ୍ଣ ମେଘରେଖା ପରି ହଠାତ୍ ଦୃଷ୍ଟିକୁ ଆସିଲା । ଅତ୍ୟନ୍ତ କୌତୂହଳରେ ଡେକ୍ ଉପରେ ଠିଆ ରହି କ୍ରମନିକଟାଗତ ଉପକୂଳ ଭୂମିର କ୍ରମପ୍ରସ୍ଫୁଟିତ ଆକୃତି ଅନେକ ବେଳଯାଏ ଦେଖିବାକୁ ଲାଗିଲୁଁ । ଜାହାଜ ବର୍ତ୍ତମାନ ଏଡେନ୍ ଉପସାଗରରେ । ଆରବସାଗରର ଉନ୍ମୁକ୍ତ ବକ୍ଷ ଛାଡ଼ି ଆମ୍ଭେମାନେ ବର୍ତ୍ତମାନ ଯେଉଁ ସାଗରାଂଶରେ ଭାସୁଛୁ, ତାହା ତିନି ଦିଗରେ ସ୍ଥଳଭାଗ ଦ୍ୱାରା ସୀମାୟିତ – ତେଣୁ ସମୁଦ୍ରଜଳ ବର୍ତ୍ତମାନ ଶାନ୍ତ, ସମୁଦ୍ର-ପୀଡ଼ା ନାହିଁ । ଆମ୍ଭେମାନେ ଛ'ଦିନର ମରଣସମ ପୀଡ଼ାରୁ ଉଠି ଆଜି ମସ୍ତିଷ୍କର ପୂର୍ବ ସ୍ଥିରତା ଅନୁଭବ କରି ଟିକିଏ ଆଶ୍ୱସ୍ତ ଓ ଖୁସି ଅଛୁ ।

କ୍ରମେ ଏଡେନ୍‌ର ରୁକ୍ଷ, କଠୋର ଗିରିପୁଞ୍ଜ ଅସ୍ତରାଗରଞ୍ଜିତ ବ୍ୟୋମ-ପିଠିକାରେ ପରିଷ୍କାର ଭାବରେ ଦେଖାଗଲା । ଏଡେନ୍‌ରେ ଓହ୍ଲାଇ ସହର ବୁଲି ଆସିବୁ ବୋଲି ଆମ୍ଭେମାନେ ପୋଷାକ ପିନ୍ଧିବାକୁ କୋଠରିକୁ ଚାଲିଗଲୁଁ । ପୁଣି ଡେକ୍ ଉପରକୁ ଆସିଲା ବେଳକୁ ସନ୍ଧ୍ୟାର ଅନ୍ଧକାର ଜଳସ୍ଥଳ ଚାରିଆଡ଼କୁ ଆବୃତ କରି ଦେଇଥିଲା । ଜାହାଜ ବନ୍ଦରରୁ ପ୍ରାୟ ଅର୍ଦ୍ଧକ୍ରୋଶ ଦୂରରେ ସ୍ଥିର ରହି ଆପଣାକୁ ବିଶ୍ରାମ ଦେବାରେ ଓ ସମଗ୍ର ଯାତ୍ରାରେ ଜମାୟିତ ଆପଣା ଶରୀରର ସମସ୍ତ ମଳମୂତ୍ର ନିକାଶ କରିବାରେ ଲାଗିଗଲାଣି । ଜାହାଜର ଚତୁର୍ଦ୍ଦିଗରେ କୃଷ୍ଣା ରଜନୀର ଅନ୍ଧକାର ତଳେ ଅଗାଧ ବାରିଧିର ଘୋର କୃଷ୍ଣତରଙ୍ଗମାଳା ଶତ ଶତ କୃଷ୍ଣ ଅଜଗର ପରି ପରେ ପରେ ଭାସି ବୁଲୁଛନ୍ତି । ଦୂରରେ

ସମଗ୍ର ବନ୍ଦର ବହୁକ୍ରୋଶ ଧରି ବିଦ୍ୟୁତ୍ ଆଲୋକର ରୋଶ୍‌ନିରେ ସମୁଜ୍ଜ୍ୱଳ ।

ଛୋଟ ମଟର ବୋଟ୍‌ରେ ବସି ଆମ୍ଭେମାନେ ଯେତେବେଳେ ଏଡେନ୍‌ର ପାଷାଣୀ ବେଳାରେ ଓହ୍ଲାଇ କଠିନ ଭୂଇଁରେ ପାଦ ପକେଇ ପୁଣି ଚାଲିଲୁ, ବହୁ ଦିନର ସମୁଦ୍ର-ଭାସଣ ପରେ ମୋତେ ତାହା କୌତୁକକର ଲାଗିଲା । ପାଦ ଟଳ ଟଳ ହେବାର ନାହିଁ– ଆମ୍ଭେମାନେ ବର୍ତ୍ତମାନ ଆମର ପରମକଲ୍ୟାଣମୟୀ ଧାତ୍ରୀ ମାଟି ଉପରେ । ଏଠି ନିର୍ଭୟରେ ମଣିଷ ଚାଲବୁଲ କରିପାରିବ; ପଡ଼ିବାର ଭୟ ନାହିଁ । ପଡ଼ିଲେ ସେହି ମାଟି ପୁଣି ଉଠିବାରେ ସାହାଯ୍ୟ କରିବ । ତରଳ ପ୍ରକୃତିରେ ମଣିଷ ଖସିପଡ଼ିଲେ ତା'ର ଉଠିବା କଥା ତେଣିକି ଥାଉ ସେ ଯେ ସଦ୍ୟ ସଦ୍ୟ ଅନ୍ୟ ଜୀବର ଖାଦ୍ୟ ହେବ । ମଣିଷ ଏଇସବୁ ଧୂଳି-ଧୂସର କୋଳକୁ ଫେରିଆସିବାକୁ ମନକରେ– ସେ ଯେ ମାତୃକୋଳ ପରି ନିର୍ଭୟ ଓ ନିର୍ଭରର ସ୍ଥାନ ।

ଏଡେନ କେବଳ ପାହାଡ଼, କେବଳ ରୁକ୍ଷ କଠିନ ଦୁର୍ବିନୀତ ପଥରର ପାହାଡ଼; କିନ୍ତୁ ଶ୍ୱେତାଙ୍ଗର ନିହାଣ, ମୁଗୁର ସେ ପାହାଡ଼କୁ ଚୂନା କରିଚି; ତା'ର ମୁଷ୍ଟ୍ୟାଘାତରେ ପଥର ବୋଲ ମାନି ଶିଖିଛି । ତେଣୁ ଏଡେନ୍– ଜନହୀନ, ବୃଷ୍ଟିହୀନ, ରୁକ୍ଷ, କଠିନ ପ୍ରସ୍ତରମୟ ଏଡେନ୍ ଆଜି ବେଶ୍ ସମୃଦ୍ଧ ନଗରୀ । କଠିନ ପଥର ଉପରେ ସୁନ୍ଦର ଉପବନ ସୃଷ୍ଟି ହୋଇଛି । ସୁନ୍ଦର ରାସ୍ତା, ସୁନ୍ଦର ହର୍ମ୍ୟରାଜି ଭେଦ କରି ପର୍ବତର ତଳୁ ଉପରକୁ ଏଣେତେଣେ ନାନା ଦିଗରେ ଗତି କରି ଚାଲିଛି । ମୁଁ ବିଦ୍ୟୁତାଲୋକିତ ଏଡେନ୍ ନଗରର ରାସ୍ତା ରାସ୍ତାରେ ଘୂରିବୁଲିଲାବେଳେ କେବଳ ଏଇ କଥାହିଁ ଭାବୁଥାଏ ଯେ, ଏହି ଦିନେ ଅବହେଳିତ, ମାନବବାସର ଅଯୋଗ୍ୟ ରୁକ୍ଷ ପର୍ବତମାଳା, ଇଂରେଜର ହାତ ବାଜି ଆଜି କ'ଣ ହୋଇଛି ! ବିଜ୍ଞାନ ମଲା ପଥରରୁ ବିଳାସ ଓ ବିଭବ ସୃଷ୍ଟି କରିଛି । ଅବହେଳିତା ଏଡେନ୍ ବେଳା ଆଜି ଯୌବନପ୍ରାପ୍ତ ବିଳାସିନୀ ପରି ପୂର୍ବ ଓ ପଶ୍ଚିମ ଏହି ରାସ୍ତା ଉପରେ ତା'ର ଭବନ ରଚନା କରି, ପୃଥିବୀର ସବୁ ଦେଶର ନାଗରିକମାନଙ୍କୁ ଆତିଥ୍ୟ ଆପ୍ୟାୟନ ଦାନ କରୁଛି ।

ଏଡେନ୍ ଆରବ ମରୁଭୂମିର ପ୍ରାନ୍ତଦେଶରେ । ଭୟଙ୍କର ଗରମ ଜାଗା– କ୍ୱଚିତ୍ ବର୍ଷା ହୁଏ । ଆମେମାନେ ରାତିରେ ଓହ୍ଲେଇଥିବାରୁ ସେଠାର ଗରମ ସହିବାରୁ ରକ୍ଷା ପାଇଥିଲୁ । ଗରମ ଯୋଗୁଁ ଏଡେନ୍‌ର ନାଗରିକମାନେ ଖୋଲା ରାସ୍ତାରେ ଉନ୍ମୁକ୍ତ ଆକାଶ ତଳେ ଟେବୁଲ ଚୌକି ପକାଇ ମଉଜ ମଜଲିସ୍ କରନ୍ତି । ଏଠାର ଅଧିକାଂଶ ବାସିନ୍ଦା ଆରବୀୟ; ଅନେକ ଭାରତୀୟ ବି ଅଛନ୍ତି । ବଜାର ଭିତରେ ଘୂରିବୁଲିଲାବେଳେ ମୁଁ ଏଇଠି ପ୍ରଥମେ ଆଫ୍ରିକୀୟ କୃଷ୍ଣ ମନୁଷ୍ୟ ଦେଖିବାକୁ ପାଇଲି । ଭାରତବର୍ଷରେ ତ କୃଷ୍ଣଚର୍ମ ଲୋକର ଅଭାବ ନାହିଁ । କିନ୍ତୁ ଭାରତୀୟର ଚିକ୍‌କଣ କଳା ଓ ମୁଖର ନିଖୁଣ

ଗଠନ କୃଷ୍ଣଚର୍ମକୁ ମଧ୍ୟ ମନୋରମ ରୂପ ଦାନ କରେ । ଆଫ୍ରିକୀୟମାନଙ୍କର ମୁଖର ଗଠନ ଅଲଗା, ବାଳ କୁଞ୍ଚିତ ଓ କର୍କଶ, ଚର୍ମର ବର୍ଣ୍ଣ ହୁଏତ ପାଉଁଶିଆ କଳା, ନ ହେଲେ ଘୋର କଳା, ଦାନ୍ତ ମଲ୍ଲିଫୁଲ ପରି ଶୁଭ୍ର ଓ ସୁନ୍ଦର । ଏଡେନ୍ ଆଫ୍ରିକାର ନିକଟ ହେବାରୁ ଅନେକ ଆଫ୍ରିକୀୟ ଏଠି ଜୀବିକା ପାଇଁ ଜମା ହୁଅନ୍ତି । ଇଟାଲୀର ଆକ୍ରମଣରୁ ରକ୍ଷା ପାଇବା ଲାଗି ଅନେକ ଆବିସିନିଆର ଲୋକ ଏଡେନ୍‌କୁ ପଳାଇ ଆସିଥିବାର ଶୁଣିଲି । ଆମ ସାଥିରେ ଦୁଇ ତିନୋଟି ସୁମାଲି ଟୋକା କୌତୂହଳରେ ସାଙ୍ଗ ଧରିଥାନ୍ତି । ସେମାନେ ଯେତେବେଳେ ହସନ୍ତି, ସେମାନଙ୍କର ଅଘଟଣ ମୁଖମଣ୍ଡଳରେ ମୁଁ ଲାବଣ୍ୟ ଦେଖିବାକୁ ପାଉଥାଏଁ ।

ରାତି ହୋଇଥିବାରୁ ଏଡେନ୍‌ର ଦୁର୍ଗ ପ୍ରଭୃତି ଦେଖିବାକୁ ଯାଇପାରିଲୁ ନାହିଁ । ଏଣେ ଆମର ଭାରତୀୟ ଗ୍ୟାଙ୍ଗ ମଧ୍ୟ ବଜାର ବଜାର ବୁଲି ଜାହାଜରେ ରୁଟି ବନେଇବା ମଇଦା କିଣିବାରେ ଲାଗିଲେ । ଆମର ଚମନଲାଲ ତାଙ୍କର ଦଳପତି ସାଜିଲେ । ଲେକ୍‌ଚରର ବାସ୍ତି ଓ ମୁଁ ସେମାନଙ୍କ ପଛରେ ଘୂରି ଘୂରି ଗପ କରି କରି ଯାଉ ଯାଉ ଜଣେ ଭାରତୀୟ ମୁସଲମାନ ଦୋକାନୀ ଆମ୍ଭମାନଙ୍କୁ ଭାରତୀୟ ଦେଖି ବଡ଼ ଆଗ୍ରହ କଲା । ତା'ର ବାପ ଏଡେନ୍‌କୁ କାରବାର କରି ଆସିଥିଲା । ସେ ସେଇଠି ଜନ୍ମ ହୋଇଛି । ଏଡେନ୍ ତା'ର ବର୍ତ୍ତମାନ ଘର; କିନ୍ତୁ ଜନ୍ମଭୂମିର ମାୟା ସେ ଛାଡ଼ିପାରିନାହିଁ । ଘୂରି ଘୂରି ଭୟଙ୍କର ତୃଷା ହେବାରୁ ବାସ୍ତି ଓ ମୁଁ ତା'ର ଘରୁ ଜଳ ପାନକରି ଆଶ୍ୱସ୍ତ ହେଲୁ । ବିରାଟ କୂଅମାନଙ୍କରୁ ପାଣି ତୋଳି ସମଗ୍ର ଏଡେନ୍‌ରେ ଜଳ ସରବରାହ କିପରି ହେଉଛି ତା' ତା'ଠାରୁ ଶୁଣିଲୁ କେବଳ– ଦେଖିପାରିଲୁ ନାହିଁ ।

ରାତି ନଅଟା ବେଳେ ଜାହାଜକୁ ଫେରିଲୁ । ଜାପାନୀ ଲାଇନର୍ ପ୍ରାୟ ସବୁ ଜାହାଜ ମାଲ ଓ ମନୁଷ୍ୟ ଦୁଇକୁ ଏକାଠି ବୁହନ୍ତି । ଆମେମାନେ ଫେରିଲା ବେଳକୁ ତୃତୀୟ ଶ୍ରେଣୀର ଡେକ ଉପରୁ ପଟାସବୁ କାଢ଼ିନିଆହୋଇ ଭିତରୁ ମାଲ ସବୁ କ୍ରେନ୍ ସାହାଯ୍ୟରେ କଢ଼ା ହୋଇ ଜାହାଜର ଦୁଇ କରର ଛୋଟ ଛୋଟ ବୋଟ୍ ଉପରେ ଥୋଇଦିଆହୋଇଛି । କ୍ରେନ୍‌ର ଚକ୍ର-ଘୂର୍ଣ୍ଣନରେ ଏତେ ଶବ୍ଦ ହେଉଛି ଯେ ଶୋଇବା ଅସମ୍ଭବ । ଡେକ୍ ଖୋଲାହୋଇଥିବାରୁ ଶୋଇବାର ଜାଗା ବି ନାହିଁ । ତଳେ ତୃତୀୟ ଶ୍ରେଣୀର ବଖରାଗୁଡ଼ାକ ଭୟଙ୍କର ଗରମ । ବାଧ୍ୟ ହୋଇ ରାତି ବାରଟା ପର୍ଯ୍ୟନ୍ତ– ଯେତେବେଳେ ଜାହାଜ ଛାଡ଼ିଲା, ସେତେବେଳେଯାଏ ଏଣେତେଣେ ବୁଲି କଟେଇବାକୁ ଲାଗିଲୁ ।

ତହିଁ ଆରଦିନ ପ୍ରଭାତରେ ନିଦ୍ରାଭଙ୍ଗ ହେଲାବେଳକୁ ଆମ୍ଭେମାନେ ବାବେଲ ମାଣ୍ଡେବ ପ୍ରଣାଳୀ ପାରହୋଇ ଲୋହିତ ସାଗରରେ ପଡ଼ିଛୁ । ଲୋହିତ ସାଗରର ଏହି

ଅଂଶ ଅତ୍ୟନ୍ତ ସଂକୀର୍ଣ୍ଣ । ଦୁଇ ପାଖରେ କୂଳଭୂମି ପ୍ରାୟ ଦେଖାଯାଏ– ବିଶେଷତଃ ଆରବ କୂଳ । ଆମ୍ଭମାନଙ୍କର ଡାହାଣ ପଟେ, ଅର୍ଥାତ୍ ଆରବ କୂଳରେ ଅନେକ ପ୍ରସ୍ତରମୟ ଦ୍ୱୀପମାଳା; ଜନବସତିହୀନ, ରୁକ୍ଷ-କାନ୍ତ, ଗୋଟେ ବତିଘର । ସେନାନିବାସ ପରି କେବଳ କେତେକ ସାଦାଘର ଦେଖିବାକୁ ପାଇଲୁ । ଆମେମାନେ ମନେକଲୁ ଏସବୁ ପେରିମ୍ ଦ୍ୱୀପମାଳା ।

ଲୋହିତ ସାଗର ପାରିହେବାକୁ ଆମ୍ଭମାନଙ୍କୁ ଚାରି ଦିନ ଲାଗିଲା । ଆମମାନଙ୍କର ସମସ୍ତ ଜଳଯାତ୍ରା ଭିତରେ ଲୋହିତ ସାଗରର ଦିନଗୁଡ଼ିକ ସବୁଠାରୁ ଅତ୍ୟନ୍ତ ସୁଖଦାୟକ ହୋଇଥିଲା । ଜଳ ଏକାବେଳକେ ଶାନ୍ତ, ଯେପରି ଗାଁ ପୋଖରୀର ପାଣି– ତା'ର ଯାହା କିଛି ତରଙ୍ଗ କେବଳ ଗ୍ରାମ୍ୟ ବଧୂର ପାଣି-କଳସୀର ଆଘାତ ଯୋଗୁ । ଏହି ଶାନ୍ତ ଉଦାର ଜଳରାଶି ଉପରେ ଭାସୁ ଭାସୁ, ବେଳେ ବେଳେ ଯେତେବେଳେ ଦୁଇ କୂଳର ପର୍ବତମାଳା ଦୃଷ୍ଟିପଥରେ ଭାସିଉଠେ, ସେତେବେଳେ ଚିଲିକାର ଦୃଶ୍ୟ ମୋର ବରାବର ମନେପଡୁଥାଏ । ଚିଲିକାର ସ୍ମୃତିକୁ ପରିପୂର୍ଣ୍ଣ କରିବାକୁ ବେଳେ ବେଳେ ସାମୁଦ୍ରିକ ଗଲ୍ ପକ୍ଷୀର ଦଳ ଲୋହିତ ସାଗରର ତରଙ୍ଗମାଳାରେ ଦୋଳି ଦୋଳି ସନ୍ତରଣ କରିବାର, ଜଳାସ୍ତରଣ ଉପରେ ଉଠିବାର, ବେଳେ ବେଳେ ଜାହାଜର ମାସ୍ତୁଲ ଉପରକୁ ଆସି ବସିବାର ଦୃଶ୍ୟ ମଧ୍ୟ ଆମ ଭାଗ୍ୟରେ ଘଟିଗଲା । ବେଳେ ବେଳେ ଜାହାଜର ଦୁଇ ପାଖରେ କ୍ରୋଶ କ୍ରୋଶ ଧରି ବିରାଟ କୃଷ୍ଣକାୟ ପରପାଇସ୍ ମାଛର ପଲ ଖେଳି ଖେଳି ପହଁରୁଥିବାର ଦେଖି ରାଧାନାଥଙ୍କର ''କଳା ମୁଣ୍ଡ ଜଳେ ଛଂକେ ଦେଖାଇ, ବୁଲଇ ମଗର ଏଣେତେଣେ ଧାଇଁ'' ମନେପଡୁଥାଏ । ଲୋହିତ ସାଗରରେ ସନ୍ଧ୍ୟାର ଅନ୍ଧକାର ମାଡ଼ି ଆସୁଥିଲା ବେଳେ, ଦୁଇ କୂଳର କ୍ରମ-ଅସ୍ପଷ୍ଟଭୂତ ପର୍ବତମାଳ, ଉପରର ନୀଳ ଆକାଶ, ତରଳ, ନୀଳ-ଜଳ-ବିତାନ ଏସବୁ ମିଶି ଚିଲିକାରେ ସନ୍ଧ୍ୟାଗମର ଛବି ମନେପକାଇ ମୋର ହୃଦୟକୁ ଦେଶର ସ୍ମୃତିରେ ତରଳ କରିଦେଉଥିଲେ ।

ବେଳେବେଳେ ରାତ୍ରି ଆଗମରେ ଅନନ୍ତ ସାଗର ମଧ୍ୟରେ ବତିଘର ଦେଖିବାକୁ ପାଉଥାଉଁ । ଘୋର କୃଷ୍ଣ ରଜନୀର ଅନ୍ଧକାର ଆବରଣ ଭେଦ କରି ଶତ ଶତ କ୍ରୋଶବ୍ୟାପୀ କୃଷ୍ଣସାଗରର ତରଙ୍ଗ ଲୀଳା ଭିତରେ ଏକାକୀ ଠିଆ ରହି ସମୁଦ୍ରଯାତ୍ରୀକୁ ଆଲୋକ ଦେଖାଉଥିବା ଏହି ବତିଘରର ଛବି ମୁଁ ଭୁଲି ପାରିବି ନାହିଁ । ହୁଏତ ପାଞ୍ଚ ମାଇଲ ଆଗରୁ ଆମେମାନେ ତାକୁ ଦେଖିବାକୁ ପାଉଁ– ତାକୁ ଅତିକ୍ରମ କରି ପାଞ୍ଚ ମାଇଲ ଗଲାଯାଏଁ ସେ ଆମର ଆଖିକି ଦିଶୁଥାଏ । ମୁଁ ଡେକ୍ ଉପରେ ଠିଆରହି ବତିଘରର ଆଲୋକ ଦେଖୁଥାଏ । ମୋର ମନରେ ପ୍ରଶ୍ନ ଉଠୁଥାଏ, କିଏ ସେ ବତିଘରରେ ଅଛି ? ଅସୀମ ସମୁଦ୍ର-ପଥର ଏକ ପ୍ରାନ୍ତରେ ଠିଆରହି ଯାତ୍ରୀମାନଙ୍କୁ ଏହି

ଅନ୍ଧକାର ରାତ୍ରିରେ ଆଲୋକ ଦେଖାଉଛି,– ଆମେମାନେ ତ ପାର ହୋଇଗଲୁଁ; ଆମ ପରି ସମସ୍ତେ ତ ଯାଉଥିବେ ଓ ଆସୁଥିବେ; ଜନବସତିର ବହୁ ଦୂରରେ ଅନନ୍ତ ସାଗର ଭିତରେ ଖଣ୍ଡେ ପଥର ଉପରେ ଠିଆରହି ସେ ମନୁଷ୍ୟଟି କି ପ୍ରକାର ଜୀବନ ଯାପନ କରୁଥିବ । ଏକ ରାତ୍ରି ସେଠାରେ ରହି ଉଦାର ବାରିଧିର ଭୀଷଣ ନିର୍ଜନତା, ଜନହୀନ ପରିତ୍ୟକ୍ତ ଦ୍ୱୀପର ଉପଭୋଗ୍ୟ ନିଃସଙ୍ଗତା ଉପଭୋଗ ସଙ୍ଗେ ସଙ୍ଗେ ବୋଇତମାନଙ୍କର ଯିବା-ଆସିବା ଥରେ ଦେଖନ୍ତି କି !

ଲୋହିତ ସାଗରରେ ଭୟଙ୍କର ଗରମ ହୁଏ ବୋଲି ଶୁଣିଥିଲି । ଗରମ ହେଲା ସତ; କିନ୍ତୁ ଚାରିଦିନଯାକ ବେଶ୍ ପବନ ହେଉଥାଏ । ଆମେମାନେ ତୃତୀୟ ଶ୍ରେଣୀ ଡେକ୍‌ର କାନଭାସ୍ ତଳେ ଦିନ ରାତି ବେଶ୍ ମଉଜରେ କଟେଇଥିଲୁ । ଏ ସମସ୍ତ ମଜା ଭିତରେ ମୁଁ ଅବଶ୍ୟ ଭୁଲି ନ ଥିଲି ଯେ, ଆମେମାନେ ବର୍ତ୍ତମାନ ଦୁଇଟି ବିରାଟ ମହାଦେଶକୁ ଦୁଇ ପାଖରେ ରଖି ଗତି କରୁଛୁ– ଡାହାଣପଟେ ମାନବିକ ସଭ୍ୟତାର ମାତୃଭୂମି ଏସିୟା, ବାମପଟେ କୃଷ୍ଣ ମହାଦେଶ ଆଫ୍ରିକା; ଏକପଟେ ଆରବ, ଆରପଟେ ଇଜିପ୍ଟ । ଏଇ ଆରବର ମରୁଭୂମିରେ ମହମ୍ମଦ ଜନ୍ମ ହୋଇ କେବଳ ଯେ ଅସଭ୍ୟ, ଦୁର୍ଦ୍ଦାନ୍ତ ଆରବ ଜାତିକୁ ଏକତ୍ରିତ ଓ ସଭ୍ୟ କଲେ ତାହା ନୁହେଁ; ଜଗତକୁ ଏକ ମହାନ୍ ସତ୍ୟ ଓ ମନୋହର ସଂସ୍କୃତି ଦାନକରି ମାନବର ଇତିହାସକୁ ନୂତନ ଭାବରେ ଗଢ଼ିଦେଇଗଲେ ଏବଂ ଆମ୍ଭେମାନେ ଯେତେବେଳେ ମନେକରୁ ଯେ, ଏହି ମହମ୍ମଦଙ୍କର ସାମାନ୍ୟ ଅକ୍ଷରଜ୍ଞାନ ମଧ୍ୟ ନଥିଲା, ସେତେବେଳେ ତାଙ୍କୁ ପ୍ରଫେଟ୍, ପୟଗମ୍ବର, ରସୁଲ ବୋଲି ମସ୍ତକ ନତ କରି ନମସ୍କାର ନ କରି ଚାରା କାହିଁ ?

ଆମର ବାମପଟେ ସୋମାଲୀଲାଣ୍ଡ, ଆବିସିନିୟା, ଇଜିପ୍ଟ ପ୍ରଭୃତି ନାନା ମିଶ୍ରିତ ସ୍ମୃତି ମୋ' ମନରେ ଜାଗ୍ରତ କରିଥିଲେ । ଆବିସିନିୟାର ଦେହରେ ମୁସୋଲିନୀର କୁନ୍ତାଘାତ କେବଳ ଆବିସିନିୟାକୁ ବ୍ୟଥିତ କରିନାହିଁ, ସେ ବ୍ୟଥା ତ ସମଗ୍ର ଧରିତ୍ରୀର, ସମଗ୍ର ମାନବ ଜାତିର । ଆଫ୍ରିକା ଆଡ଼କୁ ଅନାଇ ଅନାଇ ସେ ବ୍ୟଥା ମୁଁ ଅନୁଭବ କରିଥିଲି । ସହସ୍ର ସହସ୍ର ବର୍ଷର ଇତିହାସ ଭେଦ କରି ମିଶରର ଗୌରବ-ମଣ୍ଡିତ ସାମ୍ରାଜ୍ୟଗାଥା ମଧ୍ୟ ମନେପଡ଼ିଲା । ସମଗ୍ର ଇହୁଦୀ ଜାତିକୁ ଇଜିପ୍ଟର ଫେରାଓ ଦାସ କରି ରଖିଥିଲେ । ବହୁବର୍ଷର ଅତ୍ୟାଚାରପରେ ସେମାନଙ୍କ ନେତା ମଜେସ୍ ସେମାନଙ୍କୁ ଏକତ୍ର କରି ଏଇ ଲୋହିତ ସାଗର ବାଟେ ପାଲେଷ୍ଟାଇନ୍‌କୁ ନେଇଆସି ସେମାନଙ୍କୁ ଦାସତ୍ୱରୁ ମୁକ୍ତ କରିଥିଲେ ଓ ସଭ୍ୟ ସଂସ୍କୃତ କରିଥିଲେ । ଦକ୍ଷିଣ ଆଫ୍ରିକାର ଅତ୍ୟାଚାରିତ ଭାରତୀୟମାନଙ୍କର ନେତା ହୋଇ ଗାନ୍ଧିଜୀଙ୍କର ସତ୍ୟାଗ୍ରହୀ ବାହିନୀର ପରିଚାଳନାରେ ମଜେସ ଓ ଇହୁଦୀମାନଙ୍କର ଇତିହାସ ପୁନରାବୃତ୍ତି ହୋଇଛି ବୋଲି ମୁଁ ମନେକରେ ।

ଏହିପରି ଐତିହାସିକ ଜଳରାଶି ଉପରେ ଭାସି ଭାସି ଆମ୍ଭେମାନେ ସୁଏଜ୍ ବନ୍ଦରରେ ପହଞ୍ଚିଲୁ । ଲୋହିତ ସାଗରର ଏ ଅଂଶ ମଧ୍ୟ ସଂକୀର୍ଣ୍ଣ । ଦୁଇକୂଳ ପରିଷ୍କାର ଦେଖାଯାଉଛି । ଆଫ୍ରିକା ପଟେ ରୁକ୍ଷ, ଟାଙ୍ଗର, ଉତ୍ତୁଙ୍ଗ ପର୍ବତ ପ୍ରାଚୀର ସମୁଦ୍ରର କୂଳେ କୂଳେ ବହୁଦୂର ଯାଏ ମାଡ଼ି ଚାଲିଛି । କ୍ରମେ ଆମ୍ଭେମାନେ ସୁଏଜ୍ ଉପସାଗରର କ୍ରମ-ସଂକୀର୍ଣ୍ଣ ମୁଣ୍ଡ ଆଡ଼କୁ ଗତି କରି ସୁଏଜ୍ ନାଳରେ ପ୍ରବେଶ କଲୁ । ସୁଏଜ୍ ବନ୍ଦରରେ ଜାହାଜ ଅଳ୍ପ ସମୟ ମାତ୍ର ରହେ । ଏଠୁ ଦଳେ ଯାତ୍ରୀ କାଇରୋ ପିରାମିଡ୍ ଦେଖିବା ପାଇଁ ଓହ୍ଲାଇଗଲେ, ସେମାନେ ପୋର୍ଟ ସଏଦ୍‌ରେ ଜାହାଜରେ ପୁଣି ଚଢ଼ିବେ ।

ସୁଏଜ୍ କେନାଲରେ ଦୃଶ୍ୟପଟ ପରିବର୍ତ୍ତିତ ହେଲା । ବାମପଟର ପାହାଡ଼-ପ୍ରାଚୀର ପଛରେ ରହିଲାଣି । ବର୍ତ୍ତମାନ ଦୁଇକଡରେ ଧୁ ଧୁ ବାଲି ଦିଗ୍‌ବଳୟ ପର୍ଯ୍ୟନ୍ତ ଦୁଇ ଦିଗରେ ମାଡ଼ି ଚାଲିଚି । ପ୍ରଖର ସୂର୍ଯ୍ୟକିରଣ ହେମକାନ୍ତ ବାଲୁକାରାଶି ଉପରେ ପତିତହୋଇ ଏପରି ତୀବ୍ରଭାବରେ ପ୍ରତିଫଳିତ ହେଉଛି ଯେ, ଆଖି ସେ ବାଲି ଉପରେ ରଖିହେଉନି । ଆମ ଘର ତ ସମୁଦ୍ରବେଳାରେ । ଦୀର୍ଘ ସମୁଦ୍ରକୂଳବ୍ୟାପୀ ରଙ୍ଗା ବାଲିର ବନମାନଙ୍କରେ ବାଲି ହରିଣ ପଛରେ ଗୋଡ଼ାଇବାର, ଗୁଡ଼କଙ୍କର କଣ୍ଟକିତ ଫୁଲ ଉଡ଼େଇ ଖେଳିବାର, କଇଁସାରି ଲଟା ଛିଣ୍ଡାଇବାର ଓ ବାଲି ଆଖୁ ବୋଲି ଗୋଟିଏ ପ୍ରକାର ମୋଟା ଘାସକୁ ଚୋବାଇବାର ଯେଉଁ ଅନୁଭୂତି ମୋର ପ୍ରାଣର ପରମ ସାଇତା ଧନ; କିନ୍ତୁ ବର୍ତ୍ତମାନ ଯେଉଁ ବାଲି ଦେଖୁଛ ଏ ମରୁ ବାଲି– ଗୋଟିଏ ଦୂର୍ବା ସୁଦ୍ଧା ତହିଁରେ ନାହିଁ । କୌଣସି ଜୀବର ଦେଖାନାହିଁ । ଯେଉଁ ସମୁଦ୍ର ଛାଡ଼ିଆସିଛି ତା'ର ଦୁର୍ବାର ତରଙ୍ଗମାଳା ପରି ଏଇ ମରୁ-ସମୁଦ୍ରର ବାଲୁକା-ତରଙ୍ଗ ଦୁର୍ବାର ପ୍ରସାରରେ ଦିଗବଳୟ ପର୍ଯ୍ୟନ୍ତ ମାଡ଼ିଚାଲିଛି । ଦିଗ୍‌ବଳୟର ଆରପଟେ ଆକାଶର ଶେଷଯାଏ ପୁଣି ଯେ ଏହି ବାଲୁକା, ତାହା ମୁଁ ସହଜରେ ଅନୁମାନ କରିପାରିଲି । ଏଇ ତାହାହେଲେ ମରୁଭୂମି ! କିନ୍ତୁ ପ୍ରକୃତି ମରୁଭୂମିକୁ ମଧ୍ୟ ଏକ ପ୍ରକାର ସୌନ୍ଦର୍ଯ୍ୟ ଯେ ଦେଇଛି, ତାହା ଯା'ର ଆଖି ଥିବ ସେ ଦେଖିପାରିବ । ପ୍ରାଣକୁ ଚମତ୍କାରିତା ଯୋଗାଇବା ସୌନ୍ଦର୍ଯ୍ୟର ଏକ ଅଂଶ । ମହାନଦୀର ପଙ୍କିଳ ଜଳମୟୀ ବନ୍ୟାର ସୌନ୍ଦର୍ଯ୍ୟ ତା'ର ଭୀଷଣତାରୁ ଆସେ । ଯୋଗୀର ଅକିଂଚନତା ପରି ଏହି ମରୁବାଲିର ରୁକ୍ଷତାରେ ଏକ ପ୍ରକାର ମର୍ଯ୍ୟାଦା ଅଛି । ଯେଉଁ ଦାରିଦ୍ର୍ୟରେ ବ୍ୟକ୍ତିତ୍ୱ ଫୁଟି ବାହାରେ, ତା' ପଦତଳେ ଧନ ମୁଣ୍ଡ ନୁଆଁଏ । ମରୁଭୂମି ନିଜର ରୁକ୍ଷ ନିଷ୍ଠୁର ପ୍ରସାର ଘେନି ନିଜେ ସନ୍ତୁଷ୍ଟ ହୋଇ ଯେ ପଡ଼ିରହିଚି, ସେଇଥିରେ ତା'ର ସ୍ୱତନ୍ତ୍ର ମାଧୁରୀ ଫୁଟି ଉଠୁଚି ।

ବଣର ଦନ୍ତାହାତୀ ପଲ ଛାଡ଼ି ଖେଦାରେ ପଶିଲାପରି ସମୁଦ୍ର ଜଳ ତା'ର ଅସୀମ ତରଙ୍ଗ ଲୀଳାକୁ ଦୂ. ନ ରଖି ବର୍ତ୍ତମାନ ସୁଏଜ୍ ନାଳର କ୍ଷୁଦ୍ର ସୀମା ଭିତରେ ପଶିଚି ।

ସୁଏଜ ନାଳ ଆମର ତାଳଦଣ୍ଡା କେନାଲର ହୁଏତ ଦୋହରା । ଜଳ ମନୋରମ ନୀଳ– ଯେପରି ତରଳ ଆକାଶ । ଦୁଇପାଖରେ ସ୍ୱର୍ଣ୍ଣ ବାଲୁକା-ବିସ୍ତାର ଭିତରେ ଏଇ ନୀଳ ଜଳରେଖା ଭାରତୀୟ ବରବର୍ଣ୍ଣିନୀମାନଙ୍କର ସ୍ୱର୍ଣ୍ଣ ପୃଷ୍ଠରେ କୃଷ୍ଣ-ବେଣୀର ଦୃଶ୍ୟ ମନେ-ପକାଉଥିଲା । ବାମ ପାଖର ବାଲୁକା ରାଶି ଉପରେ ନୂତନ ଭାବରେ ଉଦ୍ଭିଦ ରୋପଣର ବ୍ୟବସ୍ଥା ଚାଲିଛି । ସ୍ଥାନେ ସ୍ଥାନେ ସେ ଚେଷ୍ଟା ସଫଳ ମଧ୍ୟ ହେଇଛି । ନାଳର ବାମ ଦିଗରେ କିଛିଦୂର ଛଡ଼ା ଛଡ଼ାରେ ସୁନ୍ଦର ବଙ୍ଗଳା ଘର ସବୁ– ବୋଧହୁଏ ନାଳ-କର୍ମଚାରୀମାନଙ୍କ ଘର । ସେଇ ଘରମାନଙ୍କର ଚାରିଦିଗରେ ସୁନ୍ଦର ଛୋଟ ଉପବନ ରଚିତ ହୋଇଅଛି । ମଣିଷର ହାତ ମଲା ମରୁବାଲିରେ ବି କିପରି ସୌନ୍ଦର୍ଯ୍ୟ ସୃଷ୍ଟି କରିପାରେ, ତା' ଦେଖି ମୁଁ ମୁଗ୍ଧ ହେଉଥାଏ ଏବଂ ଭାବୁଥାଏ ଭାରତବର୍ଷରେ ଆମେ ଜୀଅନ୍ତା ପ୍ରକୃତିକୁ ଅବହେଳା ଓ ମୂର୍ଖତାରେ କିପରି ଶ୍ରୀହୀନ କରି ପଶୁପରି ବଞ୍ଚୁଛୁଁ ।

ସୁଏଜ କେନାଲ ଏତେ ଛୋଟ ଯେ, ଦୁଇପାଖର ସବୁ କଛି ଦେଖାଯାଉଥାଏ । ଆମର ଡାହାଣ ପାଖେ ଅନେକ ଲୋକ ରାସ୍ତା ତିଆରିରେ ଲାଗିଥିବା ଦେଖିଲି । ବାମ ପାଖେ ଅନେକ ଦୂର ଯାଏ ଏକ ରେଲ ଲାଇନ୍ ଚାଲିଛି– ବୋଧହୁଏ କାଏରୋ ଯାଏଁ । ତା'ଛଡ଼ା, ସୁନ୍ଦର ସଡ଼କ, କେନାଲ୍‌ର ଦି କୂଳରୁ ବାହାରି ଦୂର ବାଲୁକାରେ ମିଶିଯିବାର ଦେଖିଲି । ରେଲଗାଡ଼ି ଓ ମଟର ଯିବାଆସିବା କରିବା ମଧ୍ୟ ଦେଖିଲି ।

ସୁଏଜ କେନାଲ ଏକାବେଳକେ ସବୁଟା ଖୋଳାହୋଇନାହିଁ, ମଝିରେ ଥିବା ଦୁଇ ତିନିଟି ଛୋଟ ବଡ଼ ହ୍ରଦ ସହିତ ଏହି କେନାଲ ମିଶିଛି ମାତ୍ର । ଦିବା ଅବସାନ ପୂର୍ବରୁ ଆମ୍ଭମାନଙ୍କ ଜାହାଜ ପ୍ରଥମ ହ୍ରଦରେ ପଡ଼ିଥିଲା । ସେ ହ୍ରଦ ଏତେ ବଡ଼ ଯେ ତା'ର କୂଳ ଦେଖାଯାଉନଥାଏ ।

## ଘାଟେ ଘାଟେ (ପୋର୍ଟ୍ ସଏଦ୍, ଭୂମଧ୍ୟସାଗର, ମେସିନା ପ୍ରଣାଳୀ)

ସେପ୍‌ଟେମ୍ବର ଆଠ ତାରିଖ ସକାଳେ ତଳୁ ଡେକ୍ ଉପରକୁ ଆସିଲା ବେଳକୁ ନୂତନ ଓ କୌତୁକକର ଦୃଶ୍ୟ ଆଖିରେ ପଡ଼ିଲା । ଜାହାଜ ରାତି ରାତି ସୁଏଜ୍ କେନାଲ ପାର ହୋଇ ପୋର୍ଟ ସଏଦ୍‌ରେ ପହଞ୍ଚିଛି । ସମଗ୍ର ପୋର୍ଟ ସଏଦ୍ ଆମର ସମ୍ମୁଖରେ ବେଳାଦେହରେ ପ୍ରସାରିତ । ନଗରର ସୀମାଠାରୁ ଆମେ ମୋଟେ ଦୁଇଶ ହାତ ତଫାତରେ, ସେ ତଫାତ୍ ପୁଣି ଗୋଟିଏ ଭାସମାନ ସେତୁଦ୍ୱାରା କଟେଇଦିଆଯାଇଛି । ତେଣୁ ମନେହେଲା ଆମେ ଯେପରି ଆମର ଗାଡ଼ିକୁ ଟିକିଏ ଦୂରରେ ଠିଆକରେଇ କୌଣସି ବିରାଟ ନଗରର ଉପକଣ୍ଠ ଦୃଶ୍ୟ ଦେଖି ମୁଗ୍ଧ

ହେଉଛୁ । ଏଣେ ସମଗ୍ର ଉପସାଗର ଧରି ନାନା ବୋଇତ ମଝାଲ ମାଡ଼ି ରହିଛନ୍ତି । ଯେଉଁ ଆଡ଼କୁ ଅନେଇବ କେବଳ ଜାହାଜ । ଆମ ଜାହାଜର ଏ ପାଖେ ସେ ପାଖେ ଛୋଟ ଛୋଟ ପାଲଟଣା ନାଆ ଭାସି ବୁଲୁଛନ୍ତି । କୁତ୍ସିତ କଦାକାର ବାଷ୍ପୀୟ ପୋତମାଳା ଭିତରେ ସେଗୁଡ଼ିକର ଯା-ଆସ କେବଳ ମାନବ ଇତିହାସର ଏକ ପ୍ରାଚୀନ ଅଧ୍ୟାୟର କଥା ନୁହେ, ଦୃପ୍ତଚାରିଣୀ ନବଯୁଗର ନାରୀ ପାଖରେ ପ୍ରାଚୀନା ଲଜ୍ଜାନମ୍ରା ଗୃହବଧୂର ଶଙ୍କାସଙ୍କୋଚମୟ ଶ୍ରୀଯୁକ୍ତ ଗତିକୁ ମଧ୍ୟ ବାରମ୍ବାର ମନେପକାଉଥିଲେ । ଏହି ସ-ପାଲ ନୌକା ଗୁଡ଼ିକରେ ମିଶରୀ ବୁଲାବିକା ସବୁ ନାନାପ୍ରକାର ଜିନିଷର ପସରା ମେଲେଇ, ଉଚ୍ଚସ୍ୱରରେ ଜାହାଜର ଯାତ୍ରୀମାନଙ୍କ ଦୃଷ୍ଟି ଆକର୍ଷଣ କରୁଥାନ୍ତି । ଏଣେ ପ୍ରାୟ ତିନିଶ-ଚାରିଶ ମିଶରୀ କୁଲି ମହା କୋଳାହଳ କରି ଆମର ଜାହାଜରେ କୋଇଲା ବୋଝେଇ କରିବାରେ ଲାଗିଛନ୍ତି । କୋଇଲା ଗୁଣ୍ଡରେ ସେମାନଙ୍କର ସମଗ୍ର ଦେହ କୃଷ୍ଣାୟିତ– ମତେ ବାଲ୍ମୀକିଙ୍କର ବାନର ସେନାମାନଙ୍କ କଥା ମନେ ପକାଇ ଦେଲା । କିନ୍ତୁ ସକଳ କୁତ୍ସିତ ପାରିପାର୍ଶ୍ୱିକତା ଭିତରେ ପରିଶ୍ରମ ଓ ପାରିଶ୍ରମିକ ଆନନ୍ଦ ମନୁଷ୍ୟକୁ କିପରି ଫୂର୍ତ୍ତି ଦେଇପାରେ, ମୁଁ ସେମାନଙ୍କର ସୁଖବ୍ୟଞ୍ଜକ କୁହାଟ କୋଳାହଳରୁ ବୁଝିପାରୁଥିଲି ।

ପ୍ରାତଃକୃତ୍ୟ ସାରି ଆମ୍ଭେମାନେ ସହର ବୁଲି ବାହାରିପଡ଼ିଲୁଁ । ଜାହାଜରୁ ସହରକୁ ଓ ସହରରୁ ଜାହାଜକୁ ଯିବା ଆସିବା, ଘରୁ ଦାଣ୍ଡ ଓ ଦାଣ୍ଡରୁ ଘର ପରି ଅତ୍ୟନ୍ତ ଅନାୟାସ ସାଧ୍ୟ ହେବାରୁ ଆମେ ବାରମ୍ବାର ଯିବା ଆସିବା କରିବାକୁ ଲାଗିଲୁ । ପ୍ରଥମ ଥର ଗଲୁ, ସହରର କେତେଟା ରାସ୍ତା ଘୂରି ଆସିଲୁ । ଫେରି ଆସି ସମୁଦ୍ରର ଗାନ୍ଥୁନୀ-ବନ୍ଧା ବେଳା ଧାରେ ଧାରେ ଯାଇ ଶେଷ ପ୍ରାନ୍ତରେ ଅବସ୍ଥିତ ଲେସେପସ୍ ସ୍ମୃତିସ୍ତମ୍ଭ ନିକଟରେ ପହଞ୍ଚିଲୁ । ଏହି ଲେସେପସ୍ ଫରାସୀ ଇଞ୍ଜିନିୟର ଓ ଯାଙ୍କରି ତତ୍ତ୍ୱାବଧାନରେ ସୁଏଜ କେନାଲ ଖୋଳାହୋଇଥିଲା । ତାଙ୍କରି ସ୍ମୃତିର ଯୋଗ୍ୟ ପୂଜା ଲାଗି ଏସିଆ ଓ ୟୁରୋପର ଏହି ଦୋସନ୍ଧିରେ ଏବଂ ସୁଏଜ୍ ନାଳର ମୁଣ୍ଡ ଉପରେ ତାଙ୍କର ଏହି ବିରାଟ ପ୍ରତିମୂର୍ତ୍ତି ଠିଆକରାହୋଇଛି । ପ୍ରତିମୂର୍ତ୍ତିରେ ଲେସେପସ୍‌ଙ୍କର ଡାହାଣ ହାତ ଏସିୟା ଆଡ଼କୁ ଲମ୍ବିତ ହୋଇ ୟୁରୋପବାସୀମାନଙ୍କୁ ପ୍ରାଚ୍ୟଭୂମିକୁ ବାଟ ଦେଖାଇ ଦେଉଛି; କିନ୍ତୁ ମୋର ମନେହେଲା ଲେସେପସ୍ ଯେଉଁ ବାଟ ଦେଖେଇଛନ୍ତି, ସେ ବାଟ ପାଣ୍ଡୁର ଓ କୃଷ୍ଣଜାତିମାନଙ୍କର ଅଶ୍ରୁ, ରକ୍ତ, ହାହାକାରରେ ଉତପ୍ତ । ଏ ବାଟ କଟା ନ ହୋଇଥିଲେ ସ୍ୱାଧୀନ ଆବିସିନିଆ ଇଟାଲୀର ତରଳ ଅଗ୍ନି ଓ ବିଷବାଷ୍ପରେ ପୋଡ଼ିହୋଇ ମରିନଥାନ୍ତା । ୟୁରୋପ ଏକ ପ୍ରକାଣ୍ଡ ସ୍ପଞ୍ଜ୍ ପରି ସମଗ୍ର ପୃଥିବୀର ଜୀବନ ରସ ଟାଣି ଟାଣି ନିଜକୁ ଏତେ ମୋଟା କରିବାରେ ଏହି ବାଟ ପ୍ରଧାନ ନାଡ଼ିର କାର୍ଯ୍ୟ

କରିଛି । ଏ ବାଟ ପ୍ରାଚ୍ୟ ଓ ପାଶ୍ଚାତ୍ୟର ମିଳନର ସୁବିଧା କରିଛି ବୋଲି କହିବା ତାହା ମିଛ କହିବା ସଙ୍ଗେ ସମାନ । ବାଘ ଛେଳି ଓ ହରିଣକୁ ନିଜର ନଖାଲିଙ୍ଗନ ଦେଲେ ସେଇଟାକୁ ଯଦି ସେମାନଙ୍କର ମିଳନ କୁହାଯାଏ, ତେବେ ସେଇ ଅର୍ଥରେ ସୁଏଜ ନାଳ କାଟି ଲେସେପସ୍, ୟୁରୋପର ଓ ପ୍ରାଚ୍ୟ ଭୂଖଣ୍ଡର ମିଳନ ଘଟେଇଛନ୍ତି ।

ଏହି ସ୍ତମ୍ଭରୁ ଫେରି ପୁଣି ସହର ବୁଲିବାକୁ ଗଲୁଁ । ଆମର ଗ୍ୟାଙ୍ଗ୍ ଏଡେନ୍ ପରି ଏଠି ବି ସଉଦା କରିବାରେ ଲାଗିଲେ । ସେମାନଙ୍କ ସଉଦା ଯାଇ ସହରର ମିଶରୀ ବଜାରମାନଙ୍କରେ ମିଳିବ । ଆମ୍ଭେମାନେ ନାନା ରାସ୍ତା ଘୂରି ଘୂରି ସେଇ ବଜାରଆଡ଼କୁ ଗଲୁଁ । ପୋର୍ଟ ସୟଦ୍ ୟୁରୋପ ଓ ଏସିଆର ମିଶ୍ରଣ-ଭୂମି । ସହରଟି ନୂଆଗଢ଼ା । ପ୍ରଶସ୍ତ ରାସ୍ତା ଓ ପ୍ରକାଣ୍ଡ ପ୍ରକାଣ୍ଡ ଅଟ୍ଟାଳିକା ଏହାର ୟୁରୋପୀୟ ସମ୍ପର୍କ ଯେପରି ସୂଚନାକରେ, ଅପର ପକ୍ଷରେ ମିଶରୀ ବଜାରମାନଙ୍କର ସଂକୀର୍ଣ୍ଣତା ଓ ଜନାକୀର୍ଣ୍ଣତା ଏହାର ଏସିଆତ୍ୱ ଚିହ୍ନେଇ ଦିଏ । ନୂତନ ରାସ୍ତାମାନଙ୍କରେ ଯାଉ ଯାଉ ଏଇଠି ପ୍ରଥମେ ୟୁରୋପୀୟ ଧରଣର ବଡ଼ ବଡ଼ ରେସ୍ତରାଂ ଦେଖିବାକୁ ପାଇଲୁ । ଗୋଟିଏ ରେସ୍ତରାଂର ସମ୍ମୁଖରେ ଦଳେ ଶ୍ୱେତାଙ୍ଗିନୀ ଅର୍କେଷ୍ଟ୍ରା-ବାଦନରତ ଥିବାର ଦେଖିଲୁ । ନାରୀ ଓ ସଙ୍ଗୀତ ଦେଇ ଗରାଖମାନଙ୍କୁ ମଦ ବୋତଲ ଓ ମାଂସ ଥାଳି ପାଖକୁ ଟାଣିବା ବଡ଼ ଉର୍ବର କଳ୍ପନା ନିଶ୍ଚୟ ।

ଆମ୍ଭମାନଙ୍କର ଆସିବାର ଅଳ୍ପ ପୂର୍ବେ ମିଶର ସ୍ୱାଧୀନ ହୋଇ ତା'ର ସ୍ୱତନ୍ତ୍ର ରାଜା ପାଇଥାଏ । ବଜାର ଭିତରେ ବୁଲୁ ବୁଲୁ କୌଣସି ସ୍ଥାନରେ ଜଣେ ମିଶରୀ ମୋ' ସାଙ୍ଗେ ଭାରତବର୍ଷ ସମ୍ବନ୍ଧରେ କଥା ହେଲା । ସେ ଗାନ୍ଧି ଓ କଂଗ୍ରେସ କଥା ପଚାରିଲା । ମୁଁ ଯାହା କହିବାର ତାହା କହିଲି । ସେ ବଳେ ବଳେ କହିଲା, ''ଆମେ ବର୍ତ୍ତମାନ ଆମର ନିଜର ରାଜା ପାଇଛୁ । ଆମ ଦେଶ ସ୍ୱାଧୀନ । ରାଜାଙ୍କ କଥା ପଦକରେ ଆମେ ପ୍ରାଣ ଦେବାକୁ ପ୍ରସ୍ତୁତ ।'' ମୁଁ ନୀରବରେ ତା'ର ଉଲ୍ଲାସ ଶୁଣିଲି ଓ ନିଜକୁ ଜିଜ୍ଞାସା କଲି, ଭାରତବର୍ଷ ସମ୍ବନ୍ଧରେ ଆମ୍ଭେମାନେ କେବେ ଏମିତି କହି ପାରିବା ?

ଏଠାର ଲୋକେ ଏ ଦେଶକୁ ମିଶର କହନ୍ତି, ଆମେ ଇଣ୍ଡିଆକୁ ଭାରତବର୍ଷ କହିଲା ପରି । ଆଫ୍ରିକାରେ ଥିବାରୁ ଆମ୍ଭମାନଙ୍କ ମଧ୍ୟରୁ ଅନେକଙ୍କର ଧାରଣା ଯେ ମିଶରୀ ଜାତି ବୋଧହୁଏ କୃଷ୍ଣକାୟ । ପୋର୍ଟ ସଏଦ୍‌ର ରାସ୍ତାମାନଙ୍କରେ ବୁଲିଲାବେଳେ ଏହି ଧାରଣା କେବଳ ଯେ ମନରୁ ଖସିଗଲା ତାହା ନୁହେଁ, ତା'ର ସ୍ଥାନରେ ସୁଖକର ଆଶ୍ଚର୍ଯ୍ୟଭାବକୁ ରଖିଦେଇଗଲା । ଆଫ୍ରିକାର ଉତ୍ତର ସୀମାନ୍ତ ଭୂମଧ୍ୟସାଗରର ନିକଟ ଥିବାରୁ ଏହି ଭୂଭାଗ ଭୂମଧ୍ୟସାଗରୀୟ ଜଳବାୟୁ ପାଏ ।

ଫଳରେ ଏହି ସମଗ୍ର ଅଞ୍ଚଳରେ ପ୍ରକୃତି ପରି ମନୁଷ୍ୟ ମଧ୍ୟ ପରମରୂପ-ସମ୍ପନ୍ନ । ମିଶରୀ ପୁରୁଷ ଓ ନାରୀ ଏହି ସୌଭାଗ୍ୟର ଦାୟାଦ । ସାଧାରଣ ମିଶରୀ ପୁରୁଷ ଉଚ୍ଚ, ପୁଷ୍ଟାଙ୍ଗ ଓ ଗୌରାଙ୍ଗ । ସାଧାରଣ ମିଶରୀ ନାରୀ ଗୌରୀ ଓ ରୂପବତୀ । ୟୁରୋପୀୟମାନଙ୍କ ଚମଡ଼ା ପରି ଏମାନଙ୍କର ଚର୍ମ ଶେତା ନୁହେଁ । ୟୁରୋପ ଓ ଏସିଆର ମଧୁର ମିଶ୍ରଣ ରୂପେ ଏମାନେ ମନୋହର ଚମ୍ପକ ଗୌରବର୍ଣ୍ଣ ପାଇଛନ୍ତି । କୌଣସି କୌଣସି ମିଶରିଣୀର କେଶଜାଲ କାଞ୍ଚନ-ପ୍ରଭ ଓ ଆଖି ଆକାଶ ପରି ନୀଳ । ଅନେକ ମିଶରୀ ପୁରୁଷ, ନାରୀ ଆଧୁନିକା ହେବାରୁ ୟୁରୋପୀୟ ପୋଷାକ ଗ୍ରହଣ କରିଛନ୍ତି । ସେ ପୋଷାକରେ ମିଶରୀଙ୍କୁ ୟୁରୋପୀୟ ବୋଲି ଭ୍ରମ ହେବା ସ୍ୱାଭାବିକ । ଏଡ଼ିନବରାରେ ଜଣେ ମିଶରୀ ଛାତ୍ର ମତେ ତାଙ୍କ ମଟରରେ ସ୍ଥାନ ଦେଇଥିଲେ । ପ୍ରଥମେ ମୁଁ ତାଙ୍କୁ ଇଂରେଜ ବୋଲି ଭାବିଥିଲି; କେବଳ କଥାବାର୍ତ୍ତାରୁ ଜାଣିଲି ଯେ ସେ ମିଶରୀ । ମୁଁ ଏ ଯାଏଁ ମିଶରିଣୀମାନଙ୍କର ଅଙ୍ଗର ମଧୁରତା ଅନ୍ୟତ୍ର ଦେଖିନାହିଁ । କେଶଜାଲ ରୁମାଲରେ ଆଚ୍ଛାଦନ କରି କାଞ୍ଚନପ୍ରଭ ଯୁଗ୍ମବେଣୀକୁ ବକ୍ଷରେ ଦୋଳାୟିତ କରି ଏମାନଙ୍କୁ ଯିବାଆସିବାର ଦେଖି ଦେଖି ମୁଁ ଆରବ୍ୟ ରଜନୀର ରୂପ-ପୁରୀକୁ ଚାଲିଯାଇଥିଲି ।

ଦିନ ବାରଟାରେ ବୋଧହୁଏ ଜାହାଜ ପୋର୍ଟ ସଏଦ୍ ଛାଡ଼ିଲା । ବର୍ତ୍ତମାନ ଆମେ ଭୂମଧ୍ୟସାଗରରେ । ଯାହାହେଉ ଇଉରୋପର ସୀମା ଭିତରେ ତ ପହଞ୍ଚିଲେଣି– ଏହି ଭାବନାରେ ମନକୁ ସାନ୍ତ୍ୱନା ଦେଇ ଜଳଯାତ୍ରାର କଷ୍ଟକୁ ଲଘୁ କରିବାକୁ ଚେଷ୍ଟାକଲୁ । ପ୍ରଥମ ଦିନଯାକ ଭୂମଧ୍ୟସାଗରର ଜଳ ଗୋଳିଆ ଦିଶୁଥାଏ– ଖୁବ୍ ସମ୍ଭବତଃ ନୀଳଦନୀର ପଙ୍କିଳ ଜଳରାଶିର ମିଶ୍ରଣ ଯୋଗୁ । ପ୍ରଥମ କେତେ ଶହ ମାଇଲ ପୁଣି ସମୁଦ୍ରପୀଡ଼ା ବି ଟିକେଟିକେ ହେଲା; କିନ୍ତୁ ଆରବସାଗର ପରି ନୁହେଁ ।

ଆମର ପରବର୍ତ୍ତୀ ବନ୍ଦର ନେପଲସ୍, ପ୍ରାୟ ଚାରି ଦିନର ବାଟ । ପ୍ରଥମ ଦିନ ପରେ ଭୂମଧ୍ୟସାଗର ଘୋର ନୀଳବର୍ଣ୍ଣ ପାଲଟିଲା । ଜଳ ସେତେ କ୍ଷୁବ୍ଧ ନ ଥିବାରୁ ଆମ୍ଭେମାନେ ଅନେକ ସମୟରେ ଡେକ୍ ଉପରେ ଠିଆହୋଇ କାଳେ କେଉଁ ଦିଗରେ ଦ୍ୱୀପ ବା ପର୍ବତମାଳା ବା ଜନବସତିର ଅନ୍ୟ କିଛି ଚିହ୍ନ ପଡ଼ିବ, ଏଇ ଅପେକ୍ଷାରେ ଥାଉ; କିନ୍ତୁ କେବଳ ଜଳ, ଜଳ–ଜଳ । ଦିନେ ରାତିରେ ଡେକ୍ ଉପରେ ବୁଲି ବୁଲି ଅନନ୍ତସାଗର ଉପରେ ଚନ୍ଦ୍ରର ଉଦୟାସ୍ତ ଦେଖିବାକୁ ପାଇଥିଲୁ । ଅପୂର୍ଣ୍ଣଚନ୍ଦ୍ର ସୁନାର ବୋଇତ ପରି ସମୁଦ୍ରର ଶେଷରେ ଧୀରେ ଧୀରେ ତଳକୁ ଖସି ଖସି ଅସ୍ତ ହେବାର ଦୃଶ୍ୟ ମୁଁ ଭୁଲିବି ନାହିଁ ।

ଏଇ ଭିତରେ ଦିନେ ଜଣେ ଜର୍ମାନ୍ ଛାତ୍ର ସଙ୍ଗେ ମୋ' ପରିଚୟ ହେଲା । ସେ

ମେଡ଼ିକାଲ ଛାତ୍ର । ବେରୀବେରୀ ରୋଗ ସମ୍ବନ୍ଧରେ ଅନୁସନ୍ଧାନ କରିବାକୁ ଜାଭା ଯାଇଥିଲା – ସେଠୁ ଫେରୁଛି । ଘରକୁ ଯାଇ ଏଇ ସମ୍ବନ୍ଧରେ ଅନୁଶୀଳନ ଦେଖାଇଲେ ସେ ତା'ର ଡିଗ୍ରୀ ଓ ଚାକିରି ଉଭୟ ପାଇବ । ବଡ଼ ସୁଦର୍ଶନ ତରୁଣ । ଦିନେ ସେ ତା'ର ଫାଷ୍ଟ କ୍ଲାସ କାବିନରୁ ଓହ୍ଲାଇ ଆମର ଗ୍ୟାଙ୍ଗ ରୋଟୀ ତିୟାର କରୁଥିବା ଦେଖି ତୃତୀୟ ଶ୍ରେଣୀ ଡେକକୁ ଆସିଲା । ମଇଦାକୁ ଦେଖି ସେ ପଚାରିଲା, ''ଏ କ'ଣ ଟାପିଓକା ? ଏ ରୁଟୀ କିମିତି ତୟାର କର ?'' ଏଇ ପ୍ରଶ୍ନର ଉତ୍ତର ଦେବା ଛଳରେ ତା'ର ମୋର ପରିଚୟ ହେଲା । ଆଉ ଦିନେ ମୁଁ ଫାଷ୍ଟକ୍ଲାସ ଡେକରେ ବୁଲୁ ବୁଲୁ ତାକୁ ଦେଖି ତା' ସଙ୍ଗେ ଜର୍ମାନୀ ବିଷୟରେ ଅନେକ କଥାବାର୍ତ୍ତା ହେଲି । ସେ ଅନେକ ମଜାର କଥା କହିଲା । ତେଣୁ ତା'ର ବର୍ଣ୍ଣନା ଦେବି ।

ବୁଝିଲି, ସେ ନାଟ୍‌ସୀ ନୁହେଁ, କିନ୍ତୁ ନାଟ୍‌ସୀମାନଙ୍କ ପରି ତା'ର ଚିନ୍ତା । ହିଟ୍‌ଲର ଜୁ'ମାନଙ୍କୁ ତଡ଼ିବାଟା ସେ ପସନ୍ଦ କରେନାହିଁ; କାରଣ ସବୁ ଜୁ' ଖରାପ ନୁହନ୍ତି; କିନ୍ତୁ ତାଙ୍କର ଫ୍ୟୁରେହର (ନେତା) ଯାହା କହିବେ ତାହା ସେମାନେ ମାନିବେ । ଜାତି ତା' ଦରକାରକରେ । ନାଟ୍‌ସୀମାନେ ଶ୍ରମିକମାନଙ୍କର ଶତ୍ରୁ ନୁହନ୍ତି । ଜର୍ମ୍ମାନୀରେ ସବୁ ଶ୍ରେଣୀର ଲୋକଙ୍କର ପ୍ରୟୋଜନ ଅଛି । ବୁଦ୍ଧିଜୀବୀ ଓ ଶ୍ରମଜୀବୀ ଉଭୟେ ସେଠି ସମାନ ଦୃଷ୍ଟି ପାଉଛନ୍ତି । ହିଟ୍‌ଲରଙ୍କ 'ଜାତୀୟ ସାମ୍ୟବାଦ' ସମଗ୍ର ଜାତିର ପ୍ରତୀକ, କୌଣସି ଗୋଟିଏ ଶ୍ରେଣୀର ନୁହେଁ । ମୁଁ ପଚାରିଲି, ''ଜର୍ମ୍ମାନୀରେ ବେକାର ସମସ୍ୟା ବର୍ତ୍ତମାନ କିମିତି ?'' ସେ କହିଲା, ''ବର୍ତ୍ତମାନ ଏ ସମସ୍ୟା ବହୁତ କମିଛି ଓ କ୍ରମେ କମୁଛି । ହିଟଲର ଶାସନ ନୂତନ କାରଖାନା, ସଡ଼କ, କଳ ପ୍ରଭୃତି ଆରମ୍ଭକରି, ଜଙ୍ଗଲ ଜଳାଭୂମି ସଫା କରି ଲକ୍ଷ ଲକ୍ଷ ଲୋକଙ୍କୁ କାମ ଦେଇଛି । ସେମାନେ ଆଶା କରୁଛନ୍ତି ଯେ, ତାଙ୍କର ଇଞ୍ଜିନ୍, ମଟର ପ୍ରଭୃତି ସମଗ୍ର ପୃଥିବୀରେ କାଟ୍‌ତି ପାଇବ ଓ ସେଥିରୁ ଅଜସ୍ର ଟଙ୍କା ସେମାନଙ୍କ ହାତକୁ ଆସିବ ।'' ମୁଁ କହିଲି, ''ବର୍ତ୍ତମାନ ତ ସବୁ ସଭ୍ୟ ଦେଶ ଏଇ ଚେଷ୍ଟାରେ ଲାଗିଛନ୍ତି– ତମେ କିମିତି ବଜାର ଯାକ ମାଡ଼ି ବସିବ ବୋଲି ଭାବୁଛ ?'' ସେ କହିଲା ''ଦେଖ, ତମେ ଇଣ୍ଡିୟାରେ ନୀଳ ବିକ୍ରୀ କରୁଥିଲ । ଜର୍ମାନୀ ରାସାୟନିକ ନୀଳ ବାହାରକରି ସେ ବାଣିଜ୍ୟକୁ ମାଟିକରିଦେଲା । ରାସାୟନିକ ପଦାର୍ଥ ପ୍ରାକୃତିକ ପଦାର୍ଥ ଅପେକ୍ଷା ଶସ୍ତା । ଆମେ ପବନରୁ ନାଇଟ୍ରୋଜେନ୍, କୋଇଲାରୁ ପେନ୍‌ସିଲ ଓ ରବର, କାଠରୁ ଲୁଗା ବାହାର କରୁଛୁ । ଏସବୁ ବଡ଼ ଶସ୍ତା, ଅନ୍ତତଃ ଅନ୍ୟ ଦେଶର ଏଇ ଜିନିଷ ସବୁଠୁ ଏସବୁ ଅଧିକ ଶସ୍ତା । ଆବିଷ୍କାର କରିବାର ଶକ୍ତି ଜର୍ମାନ୍ ଜାତିର ଶ୍ରେଷ୍ଠ ସମ୍ପଦ । ତା' ନ ହେଲେ

ଆମେ ଆମଠୁ ଦଶଗୁଣ ବଳୀୟାର ଶତ୍ରୁଙ୍କ ସଙ୍ଗେ ଦୀର୍ଘ ଚାରିବର୍ଷକାଳ କିମିତି ଲଢ଼େଇ କଲୁ ? ଆମର ଲୁହା ନଥିଲା କି ତମ୍ବା ନ ଥିଲା, ଆମେ ତାହା ରାସାୟନିକ ପ୍ରକ୍ରିୟାରେ ତୟାର କଲୁ । ଆମର ଯେତେ ସମସ୍ୟା, ତାକୁ ସମାଧାନ କରିବା ପାଇଁ ଆମର ମସ୍ତିଷ୍କ ଅଛି ।'' ଏକଥା କହିଲାବେଳେ ସେ ଯେଉଁ ଧଳା ହାଫ୍‌ପ୍ୟାଣ୍ଟ ଓ କୁର୍ତ୍ତା ପିନ୍ଧିଥିଲା, ତାକୁ ଦେଖାଇ ସେ କହିଲା, ''ଏ ଲୁଗା କାଠରୁ ବାହାରୁଛି ।'' ସେ ଲୁଗାର ଆମର ଚିକ୍‌ଣ ଖଦଡ଼ ପରି ଦିଶୁଥାଏ । ମୁଁ ତ ତା' ଦେଖି ଆଶ୍ଚର୍ଯ୍ୟ ହେବାର କଥା । ମୁଁ ତାକୁ ପଚାରିଲି, ''ତମେ ତ ଯୁଦ୍ଧ ପରେ ଭୟଙ୍କର ଦରିଦ୍ର ହୋଇଯାଇଥିଲ – ବର୍ତ୍ତମାନ ଏସବୁ ନୂଆ କଥା ଆରମ୍ଭ କରିବାପାଇଁ ଟଙ୍କା କୁଆଡୁ ପାଉଛ ?'' ସେ କହିଲା, ''ଜର୍ମାନୀରେ ଆୟକର ଭୟଙ୍କର ବେଶି । ଜଣେ ଲୋକର ଆୟ ଯଦି କୋଡ଼ିଏ ହଜାର, ସେ ପ୍ରାୟ ତେର ହଜାର ଟଙ୍କା ଷ୍ଟେଟ୍‌କୁ ଦିଏ ।''

ସେ ସତ୍ୟାଗ୍ରହ କଥା ଜାଣେ । 'ବିନା ଅସ୍ତ୍ରରେ ଯୁଦ୍ଧ ଯଦି ସଫଳ ହୁଏ, ତେବେ ଜଗତର ପରମ କଲ୍ୟାଣ ହେବ' ବୋଲି ସେ କହିଲା । ମୁଁ ତାକୁ ଜର୍ମାନୀରେ ଭାରତବର୍ଷର କଥା କିମିତି ଜଣା ବୋଲି ପଚାରିଲି । ସେ କହିଲା, ''ବେଶି ନୁହେଁ– ଜର୍ମାନୀରେ ଏତେ ରକମର ଘଟଣା ଘଟୁଛି ଯେ, ଅନ୍ୟ ଦେଶର କଥା ଜାଣିବାକୁ ଆମର ଆଗ୍ରହ ନାହିଁ ।'' ତା'ପରେ ଜର୍ମାନୀରେ କି ପ୍ରକାର ଶିକ୍ଷାପଦ୍ଧତି ପ୍ରଚାରିତ ସେ କଥା ପଚାରିଲି । ସେ କହିଲା, ''ଜର୍ମାନୀରେ ପ୍ରାଇଭେଟ୍ ସ୍କୁଲ ନାହିଁ– ସବୁ ଷ୍ଟେଟ୍‌ର । ପ୍ରଥମେ ପପୁଲାର ସ୍କୁଲ ବା ପ୍ରାଇମେରୀ ସ୍କୁଲ– ଏଠି ଲିଖନ ପଠନ, ଗଣନ କେବଳ ଶିଖାଯାଏ । ଏ ସ୍କୁଲ୍‌କୁ ପ୍ରତ୍ୟେକ ପିଲା ଯିବାକୁ ବାଧ୍ୟ । ତା'ପରେ ଜିମ୍ନାସିୟମ୍ ବା ହାଇସ୍କୁଲ । ଏଠି ଜର୍ମାନ୍ ଛଡ଼ା ଦୁଇଟା ବିଦେଶୀ ଭାଷା ଶିଖିବାକୁ ହୁଏ ଓ ତା'ଛଡ଼ା ଅଙ୍କ, ଇତିହାସ, ଅର୍ଥ-ବିଦ୍ୟା, ପଦାର୍ଥବିଦ୍ୟା ଓ ଦର୍ଶନ ପ୍ରଭୃତି ପରେ ପରେ ଶିଖାଯାଏ । ଶେଷ ବର୍ଷଟାରେ ଅନେକ ପ୍ରକାର ଖେଳ କସରତ୍ ପ୍ରତି ନଜର ଦିଆଯାଏ । ଜିମ୍ନାସିୟମ୍ ବା ହାଇସ୍କୁଲ ପରେ ବିଶ୍ୱବିଦ୍ୟାଳୟ । ଜର୍ମାନୀରେ ପ୍ରତ୍ୟେକ ସୁସ୍ଥ ଛାତ୍ରକୁ ବର୍ଷେ ସୈନିକ ଶିକ୍ଷା ନେବାକୁ ପଡ଼େ ।''

ଆମ୍ଭେମାନେ ହିଟ୍‌ଲରଙ୍କର ଜ୍ୟୁ-ବିତାଡ଼ନ ଓ ଗତ ଯୁଦ୍ଧରେ ଜର୍ମାନମାନଙ୍କର ଅମାନୁଷିକ ଅତ୍ୟାଚାର କଥା ଭାବିଲେ ଜର୍ମାନ ଜାତିକୁ ହୃଦୟହୀନ ଦୈତ୍ୟ-ଦାନବ ବୋଲି ଭାବିବା ସ୍ୱାଭାବିକ । କିନ୍ତୁ ଏହି ଜର୍ମାନ ଛାତ୍ର ଓ ଏ ଦେଶରେ ଅନ୍ୟାନ୍ୟ ଜର୍ମାନ ତରୁଣ ତରୁଣୀଙ୍କି ଦେଖି ଓ ତାଙ୍କ ସଙ୍ଗେ କଥା ହେଇ ବୁଝିଛି, ଏମାନେ ଏକ ଚମତ୍କାର ଜାତି । ଏଡ଼ିନବରାରେ ଜଣେ ଜର୍ମାନ ତରୁଣୀ ସଙ୍ଗେ ମୋର

ପରିଚୟ ହୋଇଥିଲା । ସେ ଇଂରେଜୀ ଶିଖିବାକୁ ସେଠାକୁ ଆସିଥାଏ । ହିଟ୍‌ଲରର ଆଦେଶରେ ଜର୍ମାନୀ ବାହାରକୁ ସାମାନ୍ୟ କେତୋଟି ମୁଦ୍ରା ଛଡ଼ା ଅଧିକ ଯାଇ ପାରିବ ନାହିଁ; ତେଣୁ ସେ ବାଳିକାଟି ଜଣେ ଇଂରେଜ ଭଦ୍ରଲୋକ ଘରେ ଦାସୀ ରୂପେ କାମ କରି ଜୀବିକାର୍ଜ୍ଜନ କରୁଥାଏ । କିନ୍ତୁ ସେ ସଦ୍‌ବଂଶଜା– ତା'ର ସୁସ୍ଥ ସୁନ୍ଦର ବପୁ ଓ ଧୀରଭାଷୀ ଓ ମିଠା ଇଂରେଜୀ ମୋର ବରାବର ମନେଅଛି । ଏଠି ନିଉକାସଲରେ ଜଣେ ଜର୍ମାନ ତରୁଣ ସଙ୍ଗେ ମୋର ବରାବର ଭେଟ ହୁଏ– ସେ ହିଟଲରର ଶତ୍ରୁ । ସେ ଦିନେ ମତେ କହିଲା, ''ସେ ମୋ' ଜାତିର ଶତ୍ରୁ । ଆମର ଉପନିବେଶ କ'ଣ ହେବ ? କେବଳ ସାମ୍ରାଜ୍ୟ ଗୌରବ ପାଇଁ ହିଟଲର ଜାତିକୁ ଇମିତି ମତାଉଛି । ବ୍ରିଟିଶ୍ ସରକାର ମତେ ଦଶ ହଜାର ପାଉଣ୍ଡ ଦେଲେ ମୁଁ ହିଟଲରକୁ ଗୁଳି କରି ମାରି ଦିଅନ୍ତି ।'' ଏହି ତରୁଣଟି ଆଜିକି ପାଞ୍ଚବର୍ଷ ହେଲା ଜର୍ମାନୀରୁ ପଳାୟିତ । ଗତ ପାଞ୍ଚବର୍ଷ ହେଲା ସେ ତା' ଘରୁ କୌଣସି ପ୍ରକାର ଚିଠି ପତ୍ର ପାଇନାହିଁ ବୋଲି ଦିନେ ମତେ କହିଲା ।

ଏଗାର ସେପ୍‌ଟେମ୍ବର– ସମୁଦ୍ର ଭୟଙ୍କର କ୍ଷୁବ୍‌ଧ ହେବାରୁ ମୁଁ ସମୁଦ୍ର ପୀଡ଼ାରେ ଶୋଇରହିଥାଏ । ପ୍ରାୟ ଦିନ ଚାରିଟା ବେଳକୁ ସମୁଦ୍ର ଧୀର ହୋଇ ଆସିଲାରୁ ମୁଁ ଯେତେବେଳେ ଶୁଣିଲି ଯେ ସ୍ଥଳଭାଗ ଦେଖାଗଲାଣି, ମୁଁ ଶେଯରୁ ଉଠି ଉପରକୁ ଆସିଲି । ସେତେବେଳକୁ ଜାହାଜ ଇଟାଲୀ ଓ ସିସିଲୀ ମଝିରେ ମେସିନା ପ୍ରଣାଳୀ ଭିତରକୁ ଯାଉଛି । ଉଭୟ ଭୂଭାଗ ଉଚ୍ଚ ଗିରିମାଳାରେ ପ୍ରାଚୀରାୟିତ । ଠିକ୍ ଜଳଧାରରୁ ଭୂମି ଋଜୁଭାବରେ ଉପରକୁ ଉଠିଛି– କୃଷ୍ଣ କଠୋର ଗିରିମାଳା ଯେପରି ପାତାଳ ଫୁଟି ବାହାରିଛନ୍ତି । କ୍ରମେ ଆମ୍ଭେମାନେ ସିସିଲି ଦ୍ୱୀପ ଓ ଇଟାଲୀର ପଦାଙ୍ଗୁଷ୍ଠ ଭିତରେ ପଶିଲୁ । ଦୁଇପାଖରେ ସୌଧମାଳାମଣ୍ଡିତ ଗିରିବ୍ରଜ, ମଝିରେ ସ୍ଥିର ନୀଳ ବାରିରାଶି ଉପରେ ଆମ୍ଭମାନଙ୍କର ବୋଇତ ଗତି କରୁଥିଲା ବେଳେ, ପଦେ ପଦେ ଦୃଶ୍ୟର ଗମ୍ଭୀରତା ଆମ୍ଭେମାନେ ଅନୁଭବ କରୁଥାଉ । ପ୍ରାକୃତିକ ଦୃଶ୍ୟ ସଙ୍ଗେ ଇତିହାସର ସମ୍ପର୍କ ସେହି ଅନୁଭବକୁ ଏକ ନୂତନ ପୀଠିକା ଦାନ କଲା । ଏଇ ଇଟାଲୀ ୟୁରୋପୀୟ ସଭ୍ୟତାର ଦ୍ୱିତୀୟ ମାତା । ଏଇ ଯେଉଁ ରୁକ୍ଷ ପର୍ବତମାଳା ଦିଶୁଛି, ଯାରି ଆରପଟେ ଥିବା ମାଟିରେ କଳା, ସାହିତ୍ୟ, ସଙ୍ଗୀତ, କବିତା, ଜ୍ଞାନ ଓ ବିଜ୍ଞାନ ବିକଶିତ ହୋଇ ସମଗ୍ର ୟୁରୋପଖଣ୍ଡକୁ ଆଲୋକ ଦେଇଛି ! ରୋମାନମାନଙ୍କର କ୍ଷାତ୍ରଧର୍ମ୍ମ ଏହିଠି ଅଭିନୀତ ହେଇ ଇତିହାସରେ ଗୌରବମୟ ଅଧ୍ୟାୟ ରଖିଯାଇଛି ! ଏଇ ସେଇ ସିସିଲି, ଯା'ର ଉପକୂଳରୁ ଗାରିବାଲଡ଼ି ତାଙ୍କର ସ୍ୱେଚ୍ଛାସେବୀ ବାହିନୀ ଧରି ବାହାରି ଇଟାଲୀକୁ ଅଷ୍ଟ୍ରିଆର ବନ୍ଧନରୁ ମୁକ୍ତ କରିଥିଲେ । ମେସିନା ପ୍ରଣାଳୀ ଭିତର ଦେଇ ଯାଉ ଯାଉ ଦୁଇପାଖର ଅଭ୍ରଂକଷ ପର୍ବତ-ପ୍ରାଚୀର ତଳେ ପ୍ରକୃତିର

ନୀଳତୋୟା ପ୍ରଣାଳୀର ଗମ୍ଭୀର ଦୃଶ୍ୟ ଅନୁଭବ କରୁ କରୁ ଏ ସମସ୍ତ ଇତିହାସ ମୋର ସ୍ମୃତିରେ ଜାଗରିତ ହେବାକୁ ଲାଗିଲା । ତେଣୁ ଆଶ୍ଚର୍ଯ୍ୟ ଅନୁପାତଟା ଟିକିଏ ବେଶି ହେବାର କଥା । ମେସିନା ପ୍ରଣାଳୀ ଏତେ ସଂକୀର୍ଣ୍ଣ ଯେ ସିସିଲୀ ଓ ଇଟାଲୀ ଆମ ଜାହାଜଠୁ ପ୍ରାୟ ଅଧମାଇଲିଏ ଲେଖା ଦୂରରେ ଥିଲା ପରି ଜଣାପଡୁଥାଏ । ଦୁଇ କୂଳର ପର୍ବତଗାତ୍ର ମଣ୍ଡନ କରି ଛୋଟ ନଗରମାନଙ୍କର ସୌଧଗୃହାବଳି— ନୀଳ ସମୁଦ୍ର ଓ ନୀଳ ଶୈଳର ପିଠିକାରେ ସେଗୁଡ଼ିକ ବଡ଼ ମନୋରମ ଦେଖାଯାଉଥାନ୍ତି । ପର୍ବତର ଚୂଡ଼ାରେ, କଟିଦେଶରେ, ପାଦଦେଶରେ, ବେଳାକୁ ଲାଗିକରି, ଚାରିଆଡ଼େ ଘର ସବୁ ବିଞ୍ଛି ହୋଇ ରହିଛି । ସେଆଡ଼କୁ ଅନେଇ ମୁଁ ପ୍ରଥମେ ଆମର ଗ୍ରାମ୍ୟ-ସଭ୍ୟତା ସଙ୍ଗେ ଏ ଦେଶର ନଗର-ସଭ୍ୟତାର ପ୍ରଭେଦ ଅନୁଭବ କଲି । ଏଇଠୁ ଆରମ୍ଭକରି, ନେପ୍‌ଲସ୍, ମାର୍ସେଲେ, ଜିବ୍ରାଲ୍‌ଟର ସବୁଠି ଟାଙ୍ଗରା ପାହାଡ଼ ଉପରେ କେମିତି ମନୋହର ନଗର ଓ ବିରାଟ ଜନବସତି ଗଢ଼ିଉଠିଛି ତା' ଦେଖିଲେଇ ଏ ଦେଶର ଲୋକଙ୍କର ନାଡ଼ି ଆମ ନାଡ଼ିଠୁ କେମିତି ଭିନ୍ନ ତା' ସହଜରେ ଦେଖାପଡ଼େ । ବାହ୍ୟ ପ୍ରକୃତିକୁ ଜବତ୍ କରି ତା' ଉପରେ ମନୁଷ୍ୟର ସିଂହାସନ ରଚନା କରିବା କ'ଣ, ତା' ଭାରତବର୍ଷର ଲୋକେ ଜାଣନ୍ତି ନାହିଁ, ଶ୍ୱେତାଙ୍ଗ ଜାଣେ । କିନ୍ତୁ ଏ କଥାର ଆଲୋଚନା ପରେ କରିବା— ଆଗ ଯାତ୍ରା ସରୁ ।

ଇଟାଲୀର ପଶ୍ଚିମକୂଳ ଦେଇ କ୍ରମେ ଜାହାଜ ଚାଲିଲା । ସେହି ପର୍ବତର ପ୍ରାଚୀନ ଇଟାଲୀର ସମଗ୍ର ଉପକୂଳ ଧରି ମାଡ଼ିଚାଲିଛି । ପର୍ବତ ଉପକଣ୍ଠ ଦେଇ ଗୋଟିଏ ରେଳ ଓ ମଟର ଗାଡ଼ିର ଯାତାୟାତ ସ୍ପଷ୍ଟ ଦେଖାପଡୁଥାଏ । କୂଳଯାକ ଗାଁ ଓ ଛୋଟ ନଗର ତ ଲାଗି ରହିଛି । ଠାଏ ଠାଏ ଗିରି-ନଦୀମାନଙ୍କର ରଜତପ୍ରବାହ ପର୍ବତଗାତ୍ରରେ ଖଡ଼ିଗାର ଟାଣି ସମୁଦ୍ର-ସଙ୍ଗମ ପାଇଁ ବହିଯାଉଥିବାର ବି ଦେଖିଲୁ । ଏହି ଦୃଶ୍ୟ ସବୁ ଦେଖି ଦେଖି ଆମ୍ଭେମାନେ ତଳକୁ ଓହ୍ଲେଇଗଲୁ । ରାତି ପାହିଲେ ଯାଇ ନେପ୍‌ଲସ୍ ସହର ।

## ଘାଟେ ଘାଟେ (ନେପ୍‌ଲସ)

୧୯୩୭ ବାରତାରିଖ ସେପ୍‌ଟେମ୍ବର ପ୍ରତ୍ୟୁଷରୁ ଆମ୍ଭମାନଙ୍କ ଜାହାଜ ନେପ୍‌ଲସ୍‌ର ପ୍ରସିଦ୍ଧ ଓ ରମଣୀୟ ଉପସାଗରରେ ପ୍ରବେଶକଲା । ଇଟାଲୀୟାନ୍‌ମାନେ କହନ୍ତି, 'ନେପ୍‌ଲସ ଦେଖି ମର,' ଅର୍ଥାତ୍ ନେପ୍‌ଲସ୍ ନଗରର ସୁଷମା ଯେ ନ ଦେଖି ମରିଛି ତା'ର ଜୀବନ ଅପୂର୍ଣ୍ଣ : ପ୍ରକୃତରେ ନେପ୍‌ଲସ୍ ନୟନାଭିରାମ, କିନ୍ତୁ ତାକୁ ନ ଦେଖିଲେ ଜୀବନ ଅପୂର୍ଣ୍ଣ ହେବ ବା ମରିବା ପୂର୍ବରୁ ପ୍ରତ୍ୟେକ ଓଡ଼ିଆ ବା ଭାରତବର୍ଷୀୟକୁ ତାହା ଦେଖି ଆସିବା ଯେ ନିହାତ୍ ଦରକାର, ଏ କଥା ମୁଁ

କହିପାରୁନାହିଁ । ଭୂମଧ୍ୟସାଗରର ସୁନୀଳ ନୀରାସ୍ତରଣର ଧାରରୁ ଅଙ୍କୋଢ ନୀଳାଚଳର ଅର୍ଦ୍ଧଚନ୍ଦ୍ର ବିସ୍ତାର ଓ ସେହି ପର୍ବତର ନୀଳଗାତ୍ରରେ ଶୁଭ୍ର ଆବାସମାଳାର ନକ୍ଷତ୍ରୀୟମାନ ବିକାଶ ନେପ୍‌ଲସ୍‌କୁ ନୟନ ପ୍ରୀତିକର କରେ ନିଶ୍ଚୟ ଏବଂ ଏହି ମନୋରମ ଚିତ୍ରର ପୀଠିକା ସ୍ୱରୂପ ଅଦୂର ଚକ୍ରବାଳ ଉପରେ ବିସୁବିୟସର ମେଘ ଦୂର ଧୂମୋଦ୍‌ଗାରୀ ପୀରାମିଡ଼ ସମସ୍ତ ଦୃଶ୍ୟକୁ ରୁଦ୍ରକାନ୍ତ କରି ରଖେ । ପ୍ରକୃତି ଓ ମନୁଷ୍ୟ, ଉଭୟର ହାତ ବାଜି ନେପ୍‌ଲସ୍‌ରେ ଯେଉଁ ସୌନ୍ଦର୍ଯ୍ୟର ବିକାଶ ଘଟିଛି ତାହା ଇଉରୋପରେ ବହୁ ଦେଶର କବି ଓ ଶିଳ୍ପୀଙ୍କୁ ମୁଗ୍ଧ କରିଛି । ଇଂରେଜ କବି ଶେଲୀଙ୍କର କେତୋଟି ପ୍ରସିଦ୍ଧ କବିତା ଏହି ନେପ୍‌ଲସ୍ ଉପସାଗର କୂଳରେ ରଚିତ ।

କିନ୍ତୁ ଆମର ଦୁର୍ଭାଗ୍ୟକୁ ସେଦିନ ରୂପସୀ ନେପ୍‌ଲସ୍ କୌଣସି ଅଜ୍ଞାତ କାରଣରୁ ଅଭିମାନର ଓଢ଼ଣା ଟାଣି ତା'ର ରୂପକୁ ଲୁଚେଇବାରେ ଲାଗିଲା । ସକାଳଟା ମେଘୁଆ ହୋଇଥିଲା । ପ୍ରାତଃକୃତ୍ୟ ସାରି ନଗରର ଭୂଇଁରେ ପାଦ ଦେଲା ବେଳକୁ ବର୍ଷା ଓ ପ୍ରବଳ ପବନ ଆରମ୍ଭ ହେଲା । ନେପ୍‌ଲସ୍ ଆମ୍ଭମାନଙ୍କ ପକ୍ଷରେ ୟୁରୋପ-ଭୂମିର ଦ୍ୱାର ସ୍ୱରୂପ ହୋଇଥିଲା, ଯେହେତୁ ଏହାହିଁ ପ୍ରଥମ ୟୁରୋପୀୟ ସହର, ଯେଉଁଠି ଆମର ବୋଇତ ପ୍ରଥମେ ନଙ୍ଗର କଲା । ତେଣୁ ବର୍ଷା ପବନ ସତ୍ତ୍ୱେ ସହରଟା ଥରେ ବୁଲିଯିବାର ପ୍ରଲୋଭନ ଏଡ଼ି ପାରିଲୁ ନାହିଁ । ନ ବୁଲିଲେ ଜାହାଜରେ ବା ବସି ବସି କ'ଣ କରିବୁ ?

ନେପ୍‌ଲସ୍‌ର ଅଦୂରରେ ବିସୁବିୟସ୍ ଓ ତା'ର ପାଦଦେଶରେ ପଂପିଆଇ ସହରର ଭୁବନବିଖ୍ୟାତ ଧ୍ୱଂସାବଶେଷ । ଆମ୍ଭମାନଙ୍କ ମଧ୍ୟରୁ କେତେକ ପଂପିଆଇ ଦେଖିବାକୁ ଓ କେତେକ ନେପ୍‌ଲସ୍ ଦେଖିବାକୁ ବାହାରିଲେ । ମୁଁ ଶେଷ ଦଳରେ ରହିଲି, କାରଣ ପଂପିଆଇ ଗଲେ ମୋର ସ୍ୱଳ୍ପ ପୁଂଜିରୁ ବିଶେଷ ଭାବରେ କିଛି ଖତମ ହୋଇଯିବ ବୋଲି ଭୟହେଲା ଓ ମୃତ ସହର ପରିବର୍ତ୍ତରେ ଜୀବନ୍ତ ସହର ନ ଦେଖିବି କାହିଁକି ବୋଲି ମଧ୍ୟ ନିଜକୁ ପଚାରିଲି ଏବଂ ଭାବିଲି ଘରକୁ ଫେରିଲାବେଳେ ଏଇ ବାଟରେ ଆସି ହୁଏତ ବିସୁବିୟସ୍ ଓ ପଂପିଆଇ ଦେଖି ଆସିବି । କିନ୍ତୁ ଫେରିଲା ବେଳେ ସେ ବାଟେ ଆସିପାରିଲି ନାହିଁ । ମୋର ୟୁରୋପ ପ୍ରବାସ ଭିତରେ କେତୋଟି ଅନୁତାପନୀୟ ଘଟଣା ଭିତରୁ ଏ ଗୋଟିଏ । କାରଣ ରୋମୀୟ ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ନିଜ ଆଖିରେ ଦେଖିବାର ବାସନା ମୋର ବହୁଦିନରୁ ଥିଲା । ମିଲାନ, ଫ୍ଲରେନ୍‌ସ ଓ ରୋମ୍ ପ୍ରଭୃତି ଇଟାଲୀୟ ସହରମାନଙ୍କରେ ଥରେ ବୁଲିଆସିଥିଲେ ସେ ବାସନା ମୋର ପୂରିଯାଇଥାନ୍ତା; କିନ୍ତୁ ଅଳ୍ପ ପୁଂଜି ଯୋଗୁଁ ଫେରିଲା ବେଳେ ତାହା ସମ୍ଭବ ହେଲା ନାହିଁ । ଅଥଚ ନେପ୍‌ଲସରୁ ପଂପିଆଇ ଯାଇଥିଲେ କିଛି ହେଲେ ଅନ୍ତତଃ ଦେଖି ଆସିଥାନ୍ତି –ତାହା

ବି ହେଲା ନାହିଁ । ଅଳ୍ପ ପୁଂଜିର ଭୟ ଓ ଭ୍ରମ ଦରିଦ୍ର ହିଁ ଜାଣେ ।

ମୁଁ ତେଣୁ ଚମନଲାଲର ପିଛା ଧରି ନେପ୍‌ଲସ ବୁଲି ବାହାରିଲି । ଯାତ୍ରା ଆରମ୍ଭରେ ଚମନଲାଲ ପ୍ରକାଶ କରିଥିଲା ଯେ, ଭାରତୀୟ ବୁଲାବିକାମାନଙ୍କୁ ଆମେ ସାଙ୍ଗରେ ମିଶେଇବା ନାହିଁ । ଇତିମଧ୍ୟରେ ସେହି ଚମନଲାଲ କିନ୍ତୁ ସ୍ୱଦେଶପ୍ରୀତିରେ ଉଦ୍‌ବୁଦ୍ଧ ହୋଇ ସେହି ବୁଲାବିକାମାନଙ୍କ ନିକଟରେ ଏକ ପ୍ରକାର ଗାନ୍ଧି ପାଲଟିଛି ଏବଂ ନୂତନ ଉତ୍ତେଜନା ସବୁଠି ଯେପରି ପଥାପଥ ବାରିପାରେ ନା, ଏଠି ବି ସେପରି ହୋଇଛି । ମୋର ଆଦୌ ଇଚ୍ଛା ନ ଥିଲା ବୁଲାବିକାମାନଙ୍କ ସାଙ୍ଗରେ ସହର ବୁଲିବାକୁ । ପ୍ରଲିଟେରିୟେଟ୍‌କୁ ସମ୍ମାନ ଦେଖାଇବାର ଜାଗା ଅଲଗା, ସମୟ ଅଲଗା । ଯେଉଁ ପଥର ରାଜପଥ ତିଆରିରେ ଲାଗିବା କଥା ତାକୁ ଦେବବିଗ୍ରହ ରଚନା କରିବାକୁ ନେଲେ ଏଣେ ନାହିଁ ରାଜପଥ, ନାହିଁ ଦେବବିଗ୍ରହ କିଛି ହିଁ ହେବ ନାହିଁ । ମୋର ନେପ୍‌ଲସ ଭ୍ରମଣରେ ସେଇୟା ହେଲା ।

ଇତିମଧ୍ୟରେ ଆମ୍ଭେମାନେ ଜଣେ ଇଟାଲୀୟାନ ପଣ୍ଡା ପାଇଛୁ । ସେ ଇଂରେଜୀ କହି ଜାଣେ । ଆମେ ଦଶବାର ଜଣ ଥିଲୁ । ଅଳ୍ପ କିଛି କିଛି ଦେଇ ତା'ର ମୂଲ ମେଣ୍ଟିପାରିବୁ ଦେଖି ତାକୁ ନିଯୁକ୍ତି କଲୁ । ସେ ପ୍ରଥମେ ଆମକୁ ଟ୍ରାମରେ ବସେଇ ଥୋଡ଼େ ବାଟ ନେଲା । ସେଠୁ ଓହ୍ଲେଇ ଆଉ ଏକ ବୈଦ୍ୟୁତିକ ଯାନରେ ପର୍ବତଗାତ୍ରଖୋଦିତ ସୁଡ଼ଙ୍ଗ ଦେଇ ଏକ ପର୍ବତର ଉଚ୍ଚ ସ୍ତରକୁ ଅଣେଇଲା । ଏଇଠି ଗୋଟିଏ ଛୋଟ ମ୍ୟୁଜିୟମ୍ ଓ ଗୋଟିଏ ସୁନ୍ଦର ହୋଟେଲ୍ । ମ୍ୟୁଜିୟମ୍‌ଟି ବନ୍ଦ ଥିଲା – ଖୋଲାହେବାକୁ ଅଳ୍ପ ସମୟ ବାକୀ ଅଛି । ଆମ୍ଭେମାନେ ସେହି ହୋଟେଲ ବାରଣ୍ଡାରେ ଚଲାଫେରା କରିବାକୁ ଲାଗିଲୁ । ସେହି ବାରଣ୍ଡାର ଏକ କୋଣରୁ ନେପ୍‌ଲସ୍ ନଗରୀକୁ ମୁଁ ଯେପରି ଦେଖିଛି ତାହା ମୋ' ସ୍ମୃତିରୁ ଲିଭିବ ନାହିଁ । ବାହାରେ ପ୍ରଭଞ୍ଜନ ଭାଙ୍ଗିପଡୁଥାଏ । ଅହରହ ବର୍ଷା ହେଉଥାଏ । ସମସ୍ତ ଆକାଶ ଛାୟାମୟ । ମେଘାକୂଳ ଗଗନ ତଳେ ନେପ୍‌ଲସ୍‌ର ଚନ୍ଦନଚର୍ଚ୍ଚିତ ନୀଳକଳେବର ମୋର ଦୃଷ୍ଟିତଳେ ଶାୟିତ ରହିଛି । ନୀଳପର୍ବତର ଉପରୁ ନୀଳ ସମୁଦ୍ରର ଧାର ଯାଏଁ ଶ୍ୱେତ ଗୃହମାଳା ଧାଡ଼ି ଧାଡ଼ି ହୋଇ ପେଚ୍ଛିତ ହୋଇ ଉଠିଛି । ପର୍ବତର ପାଦ ଓ ସମୁଦ୍ର ବେଳା ମଧ୍ୟରେ ସୁନ୍ଦର ରାଜପଥ ମନୋରମ ବୃକ୍ଷଶ୍ରେଣୀ ଭିତର ଦେଇ ସର୍ପିଳ ଗତିରେ ଚାଲିଛି । ନୀଳ ଶାନ୍ତ ସମୁଦ୍ର ଅର୍ଦ୍ଧବୃତ୍ତ ବେଳା ତଳେ ପଡ଼ିରହିଛି । ଦୂର ଦିଗ୍‌ବଳୟ ଉପରେ ବିସୁବିୟସ୍‌ର ଧୂମନିଃସାରୀ ଭୀମ-ସୁନ୍ଦର ମୂର୍ତ୍ତି ଦଣ୍ଡାୟମାନ । ତା'ର ସ୍କନ୍ଧ ଦେଶରେ ମେଘମାଳାର ଲୁଚକାଳି ଚାଲିଛି । ଏଯାଏଁ ନେପ୍‌ଲସ୍ ନାମ ପଡ଼ିଲେ ମୋର ସ୍ମୃତିରେ ଏହି ଛବିଟି ଭାସିଉଠୁଛି ।

ଇତିମଧ୍ୟରେ ମ୍ୟୁଜିୟମ୍‌ର ଦ୍ୱାର ଖୋଲାହେଲାଣି । ଇଟାଲୀୟମାନେ କେଜାଣି କାହିଁକି ଆମ୍ଭମାନଙ୍କୁ ଇଂରେଜୀ ପିକା ଖଣ୍ଡେ ଦେଇ ପାରିବୁ କି ନାହିଁ ବୋଲି ପଚାରୁଥାନ୍ତି । ମ୍ୟୁଜିୟମର ଫାଟକ ନିକଟରେ ଗୋଟିଏ ଇଟାଲୀୟାନ୍ ଭଦ୍ରଲୋକ ସଙ୍ଗେ ପରିଚୟ ହେଲା । ସେ ଭଙ୍ଗା ଭଙ୍ଗା ଇଂରେଜୀ କହିପାରେ । ମ୍ୟୁଜିୟମ୍‌ର ପଣ୍ଡା ଆଦୌ ଇଂରେଜୀ ଜାଣେ ନାହିଁ । ତେଣୁ ଏ ଭଦ୍ରଲୋକଟି କିଛି କାମରେ ଆସିଲେ । ମ୍ୟୁଜିୟମଟି ଛୋଟ କିନ୍ତୁ କେତେଗୁଡିଏ ଦେଖିବାର ଜିନିଷ ଅଛି । ବୋର୍ବୋଂ ରାଜାମାନଙ୍କର ସ୍ୱର୍ଣ୍ଣଛଦ, ଅଶ୍ୱ, ଶକଟ, ହାତୀଦାନ୍ତ ଓ ସୁନାର ନୌକା କୌତୂହଳର ଜନକ ଓ ପୂରକ । ଏ ସବୁ ଛଡ଼ା ଷୋଡ଼ଶ ଶତାବ୍ଦୀର କେତେକ ଅପ୍ରସିଦ୍ଧ ଇଟାଲୀୟ ଶିଳ୍ପୀଙ୍କର ବିଗ୍ରହାଦି ମଧ୍ୟ ଅଛି । କିନ୍ତୁ ଏ ସବୁ ବିଭବ ମଧ୍ୟରେ ଗୋଟିଏ ଛିଣ୍ଡା ଲାଲକୁର୍ତ୍ତା ଓ ଟୋପି ମଧ୍ୟ ଅତି ଯତ୍ନରେ ରଖା ହୋଇଛି । ସେ କା'ର ? ଗାରିବାଲଡ଼ି ଓ ତାଙ୍କର ଲାଲକୁର୍ତ୍ତାମାନଙ୍କର ରୋମାଞ୍ଚକର କାହାଣୀ ଆଜି ତ ବିଶ୍ୱବିଦିତ । ଯେଉଁମାନେ ଜାଣନ୍ତି ନାହିଁ ସେମାନଙ୍କର ଏହି କଥା ପଢ଼ି ରଖିବା ଉଚିତ । ତେବେ ଏହି କୁର୍ତ୍ତା ଗାରିବାଲଡ଼ିଙ୍କର ନୁହେଁ, ତାହା ତାଙ୍କର ଏକ ଅନୁଗାମୀ ସାଧାରଣ ଲାଲକୁର୍ତ୍ତା ସୈନିକର । ଯେଉଁ ଜାତି ଜଣେ ସାଧାରଣ ସୈନିକର ସ୍ମୃତିକୁ ଏ ପୂଜା ଦେଇପାରେ, ତା'ର ଚରଣରେ ଦାସତ୍ୱ-ଶୃଙ୍ଖଳା ବାନ୍ଧି ଦେବାର ଆଶଙ୍କା କମ୍ । ଆମ ଦେଶରେ ବୀରର ପୂଜା କାହିଁ ? ଜୟୀ ରାଜଗୁରୁ ଓ ଜଗବନ୍ଧୁ ବିଦ୍ୟାଧରଙ୍କର ଇତିହାସ ଓଡ଼ିଆରେ ସେଥିପାଇଁ ଏ ଯାଏ ମଧ୍ୟ ଲେଖା ହୋଇପାରିନାହିଁ । ତେବେ ପରିତାପର କଥା ଏହି ଯେ ଯେଉଁ ଇଟାଲୀ ଗାରିବାଲ୍‌ଡ଼ିଙ୍କ ବୀରତ୍ୱ ଓ ମାଟ୍‌ସିନୀଙ୍କ ସ୍ୱପ୍ନ ଦେଇ ତା'ର ସ୍ୱାଧୀନତା ଅଷ୍ଟ୍ରୀୟ ଅତ୍ୟାଚାରରୁ ଲାଭକରିଥିଲା, ସେହି ଇଟାଲୀ ମୁସୋଲିନୀ ପରି ନରପିଶାଚଦ୍ୱାରା ନିୟନ୍ତ୍ରିତ ହୋଇ ଆବିସିନିଆ ଓ ଆଲବାନିଆ ପ୍ରଭୃତି ନିରପରାଧ ଏବଂ ସ୍ୱାଧୀନ ଦେଶମାନଙ୍କର ରକ୍ତରେ ନିଜ ହାତକୁ କଳୁଷିତ କରିଛି ।

ମ୍ୟୁଜିୟମ୍‌ରୁ ବାହାରିଲୁଁ । ମୋର ଇଚ୍ଛା ନେପ୍‌ଲସ୍‌ର ଶ୍ରେଷ୍ଠ ମ୍ୟୁଜିୟମକୁ ଯାଇ ଆଉ କିଛି ଦେଖିବା । କିନ୍ତୁ ଆମର ଗ୍ୟାଙ୍ଗ ମ୍ୟୁଜିୟମ୍‌ର ବିନ୍ଦୁବିସର୍ଗ ବୁଝିବାକୁ ନାହାଁନ୍ତି । ନିରକ୍ଷର ସେମାନେ, ରେନେସାଁ ବା ବୋର୍ବୋଂ ରାଜାର କଥା କ'ଣ ବୁଝିବେ ? ସେମାନେ ଏକସ୍ୱରରେ କହିଲେ, 'ଆମେ ଜାହାଜକୁ ଫେରିଯିବୁ' । ମେଜରିଟିର ଶକ୍ତିକୁ ନମସ୍କାର କରି ନେତା ଚମନଲାଲ ଜାହାଜକୁ ଫେରିବାକୁ ବାହାରିଲା । ଟ୍ରାମ୍‌ରେ ପୁଣି ତଳକୁ ଓହ୍ଲାଇଲୁ । ଅନବରତ ବର୍ଷା ହେଉଥାଏ । ଟ୍ରାମ୍‌ରୁ ଓହ୍ଲାଇ ଅନେକ ଗୁଡ଼ାଏ ବାଟ ସେହି ବର୍ଷାରେ ଚାଲିବାକୁ ହେଲା । ମୁଁ ଆମର ପଣ୍ଡାକୁ ପଚାରିଲି, ''ନେପଲସ୍‌ରେ ଦାନ୍ତେଙ୍କର କିଛି ସ୍ମାରକ ଅଛି ?'' ସେ କହିଲା, ''ଚାଲନ୍ତୁ ଦାନ୍ତେ

ସ୍କୋୟାର୍ ଦେଖିବେ ।'' ଭାଗ୍ୟକୁ ଏହି ଚତୁଷ୍କ ଆମର ଫେରିବା ବାଟରେ ଥିଲା, ନ ହେଲେ ଗ୍ୟାଙ୍ଗ୍ କି ସହଜରେ ମଙ୍ଗିଥାନ୍ତେ ? ସେହି ବର୍ଷାରେ ପଣ୍ଡାର ଛତା ତଳେ ମୁଣ୍ଡଗୁଞ୍ଜି ଅନେକ ବାଟ ଆସିଲା ପରେ ନିର୍ଦ୍ଦିଷ୍ଟ ଚତୁଷ୍କରେ ଦେଖିଲି ଦାନ୍ତେଙ୍କର ମନୁଷ୍ୟ ପ୍ରମାଣ ମୂର୍ତ୍ତି; ସେହି ଗମ୍ଭୀର ମୁଖ, ସେହି ଶୁକନାସା, ସେହି ପାଦଲମ୍ବୀ ଆଲଖାଲା ଓ ସମଗ୍ର ମୁଖମଣ୍ଡଳରେ ଗଭୀର ବିଷାଦର ଛାୟା, ଯାହା ଚିତ୍ରରେ ଆମ୍ଭମାନଙ୍କର ପରିଚିତ । ଦାନ୍ତେଙ୍କ ଜନ୍ମସ୍ଥାନ ଫ୍ଲରେନ୍‌ସ ସହରରେ, ସେ ତ ଉତ୍ତର ଇଟାଲୀରେ; ନେପ୍‌ଲସ୍ ସଙ୍ଗେ ତାଙ୍କର କି ସମ୍ପର୍କ ଥିଲା ମୁଁ କହି ପାରିବି ନାହିଁ । କିନ୍ତୁ ନେପ୍‌ଲସ୍ ସହର, ଜାତିର ମହାକବିଙ୍କ ପୂଜା କରିବାରେ କି ପଛେଇଯିବ ? ଓଡ଼ିଶା କଥା ଛାଡ଼ିଦିଅ, ଭାରତର ଅନ୍ୟାନ୍ୟ ପ୍ରଦେଶରେ ଏ ଭାବ ଜନସମାଜରେ ଜାଗ୍ରତ ହେବାକୁ ଡ଼େରିଅଛି ।

ଦାନ୍ତେ ମୂର୍ତ୍ତି ଦେଖିସାରି ଗୋଟିଏ ରାସ୍ତାର ପଦ-ପଥରେ ମତେ ଓ ଇଟାଲୀର ପଣ୍ଡାକୁ ପ୍ରାୟ ଘଣ୍ଟାଏ ଖଣ୍ଡେ ଖାଲି ଅପେକ୍ଷା କରିବାକୁ ପଡ଼ିଲା; କାରଣ ଚମନଲାଲ ଗ୍ୟାଙ୍ଗକୁ ନେଇ ଜାହାଜରେ ଛାଡ଼ି ପୁଣି ଆମ ନିକଟକୁ ଫେରି ଆସିବାକୁ ହେଲା । ସେ ଫେରିଲା ବେଳକୁ ଦିନ ପ୍ରାୟ ବାରଟା ଗୋଟେ । କ୍ଳାନ୍ତି ଓ କ୍ଷୁଧାରେ ଦେହ ଦୁର୍ବଳ । ତେଣୁ ଗୋଟେ ହୋଟେଲର ଅନୁସନ୍ଧାନରେ ବାହାରିଲୁଁ । ଗୋଟେ ଛୋଟ କାଫେରେ ଗ୍ଲାସେ ଦୁଧ ଓ କେତେ ଖଣ୍ଡ କେକ୍ ଖାଇଲୁ । ଛୋଟ ଗ୍ଲାସେ ଦୁଧର ମୂଲ୍ୟ ଭାରତୀୟ ମୁଦ୍ରାରେ ପ୍ରାୟ ତିନିଅଣା । ୟୁରୋପର ଏହି ପ୍ରଥମ ସହରରୁ ୟୁରୋପୀୟ ଜୀବନର ମହାର୍ଘତା କ୍ରମେ ବୁଝିଲି । ଏହି କାଫେରେ କିନ୍ତୁ ଆଉ ଗୋଟିଏ ମଜା ଘଟଣା ଘଟିଲା । ଆମର ପଣ୍ଡାଟି କାଫେକର୍ତ୍ତ୍ରୀଙ୍କ ସଙ୍ଗେ ସଲା କରି ତା'ର କଫି ପାନର ଖର୍ଚ୍ଚାଟା ଆମଠୁ ଉଠେଇବାର ବନ୍ଦୋବସ୍ତ କରିଥିଲା । ତା' ଛଡ଼ା ୟୁରୋପୀୟ ହୋଟେଲମାନଙ୍କରେ ଖାଦ୍ୟ ପାନୀୟ ପାଇଁ ଉଚିତ ମୂଲ୍ୟ ଛଡ଼ା ପରିବେଷଣ ପାଇଁ ମଧ୍ୟ କିଛି ନିଆଯାଏ । ଏହି ଟିପ୍-ଦାନ ଫ୍ରାନ୍‌ସ ରାଜ୍ୟର କାନୁନ୍ – ଖାଦ୍ୟ ମୂଲ୍ୟର ଶତକଡ଼ା ଦଶ । ମୁଁ ଜାଣେନା ଇଟାଲୀରେ ସେ କାନୁନ୍ ହୋଇଛି କି ନାହିଁ– ତେବେ ପ୍ରଥା ତ ନିଶ୍ଚୟ । କିନ୍ତୁ ବ୍ୟବସାୟୀ ଚମନଲାଲ ପଇସା ଦେଲାବେଳେ ଏସବୁ ନ ଦେବାପାଇଁ ଏକାବେଳେକେ ନଛୋଡ଼ବନ୍ଦା । ଛୋଟ ଧରଣର ଏକ ତକରାଳ ହେଲା । ଶେଷରେ ଚମନଲାଲ ରାସ୍ତାକୁ ଯାଇ ଗୋଟିଏ କଟୁଆଳକୁ ଡାକି ଆଣିବାରୁ ଆମ୍ଭମାନଙ୍କର ଟଣାଭିଡ଼ା ବନ୍ଦ ହେଲା । ଆମେ ନଅ ଲିରା ପରିବର୍ତ୍ତରେ ସାତ ଲିରା ଦେଇ ଆସିଲୁଁ । ୟୁରୋପ ପ୍ରବାସର ପ୍ରଥମ କେତେ ଘଣ୍ଟା ଭିତରେ ଏ ଅଭିଜ୍ଞତା ବେଶ୍ କୌତୁକକର ବୋଧହେଉଥାଏ, ତା' ଛଡ଼ା କାଫେରୁ ବାହାରିଲାବେଳେ ମୁଁ ଚମନ୍‌ଲାଲର ବିଷୟବୁଦ୍ଧି କଥା ଭାବୁଥାଏ । ମୁଁ ଦୁଇଟି ଲିରା ପାଇଁ କୌଣସି କାଳେ

ଅଧଘଣ୍ଟାବ୍ୟାପୀ ବଚନ ସଂଗ୍ରାମ କରି ନ ଥାନ୍ତି, କିନ୍ତୁ ବୁଝିଲି, ଯେ କରେ ସେହି କେବଳ ଚମନଲାଲ ପରି ହଜାର ହଜାର ଟଙ୍କାର ମାଲିକ ହୋଇପାରେ ।

କାଫେରୁ ବାହାରି ମୁଁ ଚମନ୍‌ଲାଲକୁ କହିଲି, ବର୍ତ୍ତମାନ ଗ୍ୟାଙ୍ଗ୍ ତ ନାହାନ୍ତି, ଚାଲ ବଡ଼ ମ୍ୟୁଜିୟମ୍‌ଟି ଦେଖିଆସିବା । ସେ ମଙ୍ଗିଲା, କିନ୍ତୁ ସେଦିନ ରବିବାର କି କ'ଣ ଥିବାରୁ ମ୍ୟୁଜିୟମ୍‌ଟି ଗୋଟାଏ ବେଳୁ ବନ୍ଦ ହୋଇଯାଇଥିଲା । ନିରାଶ ମନରେ ଫେରିଲି । ଆଉ ବର୍ତ୍ତମାନ କିଛି କାମ ନାହିଁ । ବର୍ତ୍ତମାନ ରାସ୍ତାରେ ବୁଲି ବୁଲି ୟୁରୋପୀୟ ନାଗରିକ ଜୀବନ ଦେଖିବାରେ ଲାଗିଲୁଁ । ଭାରତବର୍ଷରେ ତ ନାଗରିକ ଜୀବନ ୟୁରୋପର ଛାୟାରେ ଗଢ଼ିଉଠୁଛି – ତଥାପି ତାହା ୟୁରୋପୀୟ ମୂଳର ସମାନ ହୋଇପାରୁନାହିଁ । ଏକ କଥା, ଅଧିକାଂଶ ଭାରତୀୟ ସହରର ସ୍ଥାପନ ଓ ଗଠନ ବଡ଼ ବେଢ଼ଙ୍ଗ, ରାସ୍ତା ଧୂଳିମୟ, କ୍ୱଚିତ୍ ପକ୍‌କା । ତା'ପରେ ଭାରତୀୟ ମାନଙ୍କର ନୋଂରା ନିର୍ଜୀବ ବେଶ-ବାସ । ତା'ପରେ ରାସ୍ତାରେ ନାରୀମାନଙ୍କର ଅଦର୍ଶନ । ଆମ ଦେଶରେ ଭଦ୍ରଲୋକର ଝିଅ ବୋହୂଏ ବାହାରକୁ ବାହାରନ୍ତି; କିନ୍ତୁ ତାଙ୍କୁ ବୋହି ନେବାକୁ ହୁଏ ଗାଡ଼ି-ମୋଟରରେ । ଆମ୍ଭମାନଙ୍କର ଜାଣିରଖିବା ଉଚିତ ନାରୀ-ସୌନ୍ଦର୍ଯ୍ୟ ଗତିରେ ହିଁ ବେଶି ଫୁଟେ, ସ୍ଥିତିରେ ନୁହେଁ । କେବଳ ଘରୁ ବାହାରି ମଟରରେ ବୁଲିଲେ ହେବନାହିଁ; ଆମ ଦେଶର ନଗର ରାସ୍ତାମାନଙ୍କରେ ଦଳ ଦଳ ହୋଇ ଆମର ମା-ଭଉଣୀଏ ଚାଲିଲେ ଯାଇ ସହର ବଜାର ପ୍ରକୃତରେ ସୁନ୍ଦର ଦିଶିବ । ୟୁରୋପର ନଗରମାନଙ୍କରେ ଇଟା-ପ୍ରସ୍ତର ପିହିତ, ରାଜପଥର ଦୁଇ ଧାରରେ ଅଭ୍ରଂକଶ ପ୍ରାସାଦମାଳା । ଦୁଇ ଆବାସ ଶ୍ରେଣୀର ତଳେ ତଳେ ସୁସଜ୍ଜିତ ଶ୍ୱେତାଙ୍ଗ ନରନାରୀମାନଙ୍କର ବିହାର ପ୍ରକୃତରେ କେବଳ ଚକ୍ଷୁ ସୁଖକର ନୁହେଁ; ଭାରତୀୟମାନଙ୍କ ପକ୍ଷରେ ଏକ ସାମାଜିକ ଓ ନୈତିକ ଆବଶ୍ୟକତା ।

ନେପ୍‌ଲସ୍ ଇଟାଲୀର ସର୍ବଶ୍ରେଷ୍ଠ ସହର । ପ୍ରାକୃତିକ ଅବସ୍ଥାନ ଚମତ୍କାର । ତା'ର ଐତିହାସିକ ଗୌରବ ମଧ୍ୟ ଅଛି; କିନ୍ତୁ ରାସ୍ତାରେ ଘୂରି ଘୂରି ଦେଖିଲି, ଇଟାଲୀୟ ଜୀବନର ଦାରିଦ୍ର୍ୟର ଛାୟା ଏଭଳି ସହର ଉପରେ ମଧ୍ୟ ପଡ଼ିଛି । ରାସ୍ତାଗୁଡ଼ିକ ଟିକିଏ ନୋଂରା ଓ ନୋଂରାମିର ଜୀବନ୍ତ ମୂର୍ତ୍ତି ଭିକାରିଦଳ ସର୍ବତ୍ର । ଆମ୍ଭେମାନେ ଯିବାବେଳେ ଇଟାଲୀୟ ଭିକାରି ଭିକାରୁଣୀମାନଙ୍କର କରୁଣ 'ସିନୋରେ, ସିନୋରେ' (ମହାଶୟଗଣ, ମହାଶୟଗଣ) ଚିତ୍କାର ମୁଁ ଏ ଯାଏ ଭୁଲିନାହିଁ । ଆଉ ମଧ୍ୟ ଭୁଲିନାହିଁ ଫୁଟ୍‌ପାଥ୍‌ର ଧାରରେ ପଡ଼ିଥିବା ଛିନ୍ନ କନ୍ଥା ଘୋଡ଼ିହୋଇ ଏକ ସ୍ୱର୍ଣ୍ଣକେଶିନୀ କାଙ୍ଗାଳିନୀ, ଯାର ସ୍ମୃତି ରାଜା କଫେଚୁଆ ଓ ଭିକାରୁଣୀ ଝିଅ କଥାକୁ ମୋର ଅଭିଜ୍ଞତା ସ୍ତରକୁ ନେଇଆସିଥିଲା ।

ଇଟାଲୀ ନାମ ଧଇଲେ ଦାନ୍ତେଙ୍କ କଥା ଓ ବ୍ୟାଟ୍ରିଶ୍ ନାମକ ତରୁଣୀ ସଙ୍ଗେ ତାଙ୍କର ସ୍ୱର୍ଗୀୟ ପ୍ରଣୟର ମଧୁର ଗାଥା ସ୍ମୃତିକୁ ଆସେ । ମୁଁ ପୂର୍ବରୁ ଭାବିଥିଲି ଇଟାଲୀ କେବଳ ବ୍ୟାଟ୍ରିଶ୍‌ମାନଙ୍କର ଦେଶ – ମତେ ଭୟଙ୍କର ଭାବରେ ନିରାଶ ହେବାକୁ ହେଲା । ମୁଁ ରାସ୍ତାରେ ଘୂରି ସହସ୍ର ସହସ୍ର ଇଟାଲୀୟ ନାରୀ ଦେଖିଥିବି; କିନ୍ତୁ କାହାରିକି ଏପରି ରୂପସୀ ଦେଖିଲିନାହିଁ ଯେ କି ଆଧୁନିକ ଦାନ୍ତେଙ୍କର ଆଧୁନିକା ବ୍ୟାଟ୍ରିଶ୍ ହୁଅନ୍ତେ । ଆଉ ଏକ କଥା, ସମଗ୍ର ଶ୍ୱେତ ଜଗତରେ କର୍ତ୍ତିତକେଶା, ଲେପଦିଆ ମୁହଁ, ଛୋଟ ସ୍କାର୍ଟ ଓ ହାଇ ହିଲ୍ ଜୋତା ନେଇ ନାରୀର ଯେଉଁ ଏକସ୍ୱରିଆ ବେଶ ଠିଆକରାହୋଇଛି, ସେଥିରେ ଅଛି ସିନା ପ୍ରୟୋଜନର ପ୍ରାବଲ୍ୟ, କିନ୍ତୁ ନାହିଁ ଅଛି ସୁଷମା, ନାହିଁ ଅଛି ରୁଚି ।

ଘୂରି ଘୂରି ଶେଷରେ ବନ୍ଦର ପାଖେ ହେଲୁଁ । ଇଟାଲୀର ସ୍ୱାଧୀନତାଦାୟକ ଗାରିବାଲ୍‌ଡ଼ିଙ୍କର ଘୋଡ଼୍‌ସବାର ମୂର୍ତ୍ତି ଅଦୂରରେ ସ୍ଥାପିତ । ମୁଁ ଯାଉଁ ଯାଉଁ ଚମନ୍‌ଲାଲକୁ କହିଲି, ''ଇଟାଲୀକୁ ଆସି ଅଙ୍ଗୁର ଖାଇବା ନାହିଁ ?'' ତେଣୁ କିଛି ଅଙ୍ଗୁର କିଣି ବାଟଯାକ ଖାଇ ଖାଇ ଗଲୁଁ । ମୁଁ ବାଟରେ ଓ ଜାହାଜରେ, ଅକାରଣ ବୁଲାବିକାଙ୍କୁ ନେପଲସ୍ ବୁଲିବାକୁ ନେଇ ସେ କିପରି ସମୟ ନଷ୍ଟକଲା, ସେ କଥା ଚମନଲାଲକୁ ଆଛା କରି ଦି'ପଦ ଶୁଣେଇ ଦେଇଥିଲି । ଆମ ଆଗରେ ଜନତାର ନେତା ହୋଇ ସେ ପ୍ରଥମେ ଗାନ୍ଧି ହେବାକୁ ବସିଥିଲା ସତ; କିନ୍ତୁ ଲଣ୍ଡନ ପହଞ୍ଚିବା ପୂର୍ବରୁ ସେଇ ଫେରିବାଲାଙ୍କଠୁ ସେ ଇମିତି ବ୍ୟବହାର ପାଇଲା ଯେ, ତାକୁ ଅଭିମାନରେ ଅନଶନ କରିବାକୁ ପଡ଼ିଥିଲା ଓ ତା'ର ଗାନ୍ଧି ହେବାର ସ୍ୱପ୍ନ ଭାଙ୍ଗିଯାଇଥିଲା ।

ଇତିମଧ୍ୟରେ ପଂପିଆଇରୁ ଆମର ଛାତ୍ର-ବନ୍ଧୁମାନେ ଫେରିଆସିଥିଲେ ଜାହାଜକୁ । ପଂପିଆଇର ସୌଧଗାତ୍ରମାନଙ୍କରେ ଇନ୍ଦ୍ରିୟ-ତୋଷିଣୀ ନରନାରୀ ଚିତ୍ର ଓ ମୂର୍ତ୍ତିମାନଙ୍କର କଥା କେହି କେହି କହିବାକୁ ଲାଗିଲେ । ସେତେବେଳେ ମୋର ଏକ ଅଭିଜ୍ଞତା ମନେ ପଡ଼ିଲା । ଆମେ ନେପଲସ୍ ସହର ବୁଲୁଥିଲାବେଳେ ବର୍ଷା ହେଉଥିଲା, ମୁଁ କହିଛି । ମୋର ବର୍ଷାତି ବା ଓଭରକୋଟ୍ ନ ଥାଏ । ମୁଁ ଇଟାଲୀ ପଣ୍ଡାର ଛତା ତଳେ ଆଶ୍ରୟ ନେଇଥାଏ । ମତେ ଏକୁଟିଆ ପାଇ ସେ ପଣ୍ଡା ଥିର୍ ଥିର୍ କହିଲା, ''ପଂପିଆଇରେ ନାରୀମାନଙ୍କର ଭିନ୍ନ ଭିନ୍ନ ଛନ୍ଦରେ ନଗ୍ନ ଚିତ୍ର ସବୁ ଅଛି । ନେପ୍‌ଲସରେ ତା'ର ଜୀବନ୍ତ ଅନୁକରଣ ଦେଖି ପାରିବେ– ଯିବେ ?'' ମୁଁ ଠକ୍‌ଠାକ୍ ନାହିଁକରିବାରୁ ସେ ଆଉ ପାଟି ଫିଟେଇଲା ନାହିଁ । ୟୁରୋପ ପ୍ରବାସ ଭିତରେ ମୁଁ ଯେଉଁ ଦୁଇ ତିନି ଥର ଅଶ୍ଳୀଳ ଆକର୍ଷଣ ପାଇଛି, ସେ ଏଇ ଭିତରୁ ଗୋଟିଏ । ଯଥାସ୍ଥାନରେ ସେ କଥା କହିବି । ବର୍ତ୍ତମାନ ନେପ୍‌ଲସ୍ ଦେଖା ସରିଲା ଓ ଆମ୍ଭେମାନେ ପୁଣି ସମୁଦ୍ର ବକ୍ଷରେ ଭାସମାନ ହେଲୁଁ ।

# ଶେଷ କ୍ରୋଶ
## (ମାର୍ଶେଲିସ୍, ଜିବ୍ରାଲଟର, ଲଣ୍ଡନ ଓ ଏଡିନବରୋ)

ନେପ୍‌ଲସ୍‌ରୁ ଅପରାହ୍ନ ପାଞ୍ଚଟାରେ କାଶୀମା ବିଦାୟ ନେଲା । ସୌଧ-ତାରକିତ ବେଳାଭୂମି ଓ ପୃଷ୍ଠଭୂମିରେ ଦଣ୍ଡାୟମାନ ମେଘମେଦୁର ବିସୁବିୟସ କ୍ରମେ ଦିଗ୍‌ବଳୟରେ ଲୁଚିଗଲେ ।

ଇଟାଲୀର ଉପକୂଳକୁ ଦୂରରେ ରଖି କାଶୀମା ପୁଣି ଖୋଲା ସମୁଦ୍ରରେ ପଶିଲା । ବାଟରେ ପଡ଼ିଲା ସାର୍ଡିନିଆ ଓ କର୍ଶିକା ଦ୍ୱୀପ । କେବଳ ରୁକ୍ଷ, ନିର୍ବୃକ୍ଷ ପାହାଡ଼ମାଳା । ବଡ଼ ଇଚ୍ଛା ହେଉଥିଲା ଜାହାଜ କିପରି କର୍ଶିକାରେ ଟିକିଏ ଅଟକିଗଲେ ନେପୋଲିୟନଙ୍କ ଜନ୍ମସ୍ଥାନ ଓ ବାଲ୍ୟଲୀଳାର ଭୂମି ଆଜାକ୍‌ଚିଓ ସହର ଦେଖିଆସନ୍ତି; କିନ୍ତୁ ତା'ତ ହେବାର ନୁହେଁ । କର୍ଶିକା ଓ ଖୁବ୍ ସମ୍ଭବତଃ ଏଲ୍‌ବା ଦ୍ୱୀପକୁ ଦୁଇପଟେ ରଖି କାଶୀମା ତା'ର ନିର୍ଦ୍ଦିଷ୍ଟ ପଥରେ ଚାଲିବାକୁ ଲାଗିଲା ।

ଚଉଦ ତାରିଖ ସେପ୍‌ଟେମ୍ବର ସକାଳେ ଜାହାଜ ମାର୍ଶେଲିସ୍ ବନ୍ଦରରେ ଲାଗିଲା ।

ମାର୍ଶେଲିସ୍ ମଧ୍ୟ ଏକ ପ୍ରାକୃତିକ ବନ୍ଦର । କୂଳରେ ଅର୍ଦ୍ଧଚନ୍ଦ୍ରାକାର ପାହାଡ଼ ଶ୍ରେଣୀ, ତଳେ ଗଭୀର ଜଳ । ଜାହାଜ ଏକାବେଳକେ ବେଳା ଭୂମିକୁ ଛୁଇଁଲା ପରି । ସମଗ୍ର ଭାରତବର୍ଷରେ ବମ୍ବେ ଓ ଭାଇଜାଗ୍ ଛଡ଼ା ଏ ପ୍ରକାର ପ୍ରାକୃତିକ ବନ୍ଦର ତୃତୀୟ ବୋଧହୁଏ ନାହିଁ । ଅଥଚ ଇଉରୋପରେ ପ୍ରାକୃତିକ ବନ୍ଦରର ସଂଖ୍ୟା ନାହିଁ ।

ମଧ୍ୟାହ୍ନ ଭୋଜନ ସାରି ସହର ବୁଲି ବାହାରିଲୁଁ । କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନ ଥାଏ । ଟ୍ରାମ୍‌ରେ ଥୋଡ଼ା ବାଟ ଯାଇ ଏକ ଉତ୍ତୁଙ୍ଗ ଶିଖରର ପାଦତଳେ ପହଞ୍ଚିଲୁଁ । ସେହି ପାହାଡ଼ର ଚୂଳଦେଶରେ ଏକ ଗିର୍ଜା ଉପରକୁ ଉଠିବାର ଏକମାତ୍ର ଉପାୟ ବୈଦ୍ୟୁତିକ ଗାଡ଼ି । ସେହି ଗାଡ଼ି ଆମ୍ଭମାନଙ୍କୁ ପାହାଡ଼ର କଟିଦେଶରେ ଛାଡ଼ିଦେଲା, ଯେଉଁଠୁ ସୋପାନ ଶ୍ରେଣୀର ଆରମ୍ଭ । ଏହି ସୋପାନ ପରମ୍ପରା ଉଠୁ ଉଠୁ ମୋର ଗୋଡ଼ କଟ୍ କଟ୍ ଡାକିବାକୁ ଲାଗିଲା; କିନ୍ତୁ ଗିର୍ଜାର ପାଦତଳେ ପହଞ୍ଚିଲା ପରେ ବୋଧହେଲା ଯେପରି ସକଳ ଶ୍ରମ ପୁରସ୍କୃତ ହୋଇଗଲା । କାରଣ ସେଠାରୁ ତଳକୁ ଅନାଇଲେ ସାରା ମାର୍ଶେଲିସ ସହର ଓ ଉପକୂଳର ସମୂହ ସୁଷମା ମନୋରମ ଭାବରେ ଦୃଷ୍ଟିଗୋଚର ହୁଏ ।

ଫ୍ରେଞ୍ଚ୍ ଜାତି ବିଶେଷ ଭାବରେ କ୍ୟାଥଲିକ୍ । ଏମାନଙ୍କର ଉପାସନାରେ ହିନ୍ଦୁ ପୌତ୍ତଳିକତା ଓ ଉପଚାରପ୍ରିୟତା ଦେଖିବାକୁ ମିଳେ । ଗିର୍ଜା ଭିତରକୁ ପଶିଲୁଁ । ହିନ୍ଦୁ

ମନ୍ଦିରର ଅଭ୍ୟନ୍ତର ପରି ଅନ୍ଧାରିଆ । ପୀଠଦେଶରେ ଯୀଶୁ ଓ ମେରୀଙ୍କର ବ୍ରୋଞ୍ଜର ପ୍ରତିମୂର୍ତ୍ତି । ହିନ୍ଦୁ ମନ୍ଦିରରେ ଘିଅଦୀପ ଜଳିଲାପରି ଭିନ୍ନ ଭିନ୍ନ ସ୍ଥାନରେ ମହମବତି ଜଳୁଛି । ଆସିଲାବେଳେ ଦେଖିଛୁଁ ଜଗନ୍ନାଥ ମନ୍ଦିର ପାଖରେ ବିଧବା ବ୍ରାହ୍ମଣୀ ସବୁ ଘିଅବତି ବିକିଲା ପରି ପାହାଚମାନଙ୍କରେ ମହମବତି ବିକାହେଉଛି, ଦେବତା ଉଦ୍ଦେଶ୍ୟରେ ଉତ୍ସର୍ଗ କରିବାପାଇଁ; କିନ୍ତୁ ଏସବୁ ସତ୍ତ୍ୱେ ଏକ ବିରାଟ ପ୍ରଭେଦ । ହିନ୍ଦୁ ମନ୍ଦିରକୁ ଜୋତା ଲଗେଇ କେହି ଯାଇପାରିବେ ନାହିଁ – ତା'ର ଅର୍ଥ ମୁଁ ଏ ପର୍ଯ୍ୟନ୍ତ ଜାଣିନାହିଁ, ମୂର୍ଖ ପଣ୍ଡାଏ ଜାଣିଥିବେ; କିନ୍ତୁ ମୁଁ ଜାଣେ ଯେ ହିନ୍ଦୁମନ୍ଦିର ଭିତରକୁ ଗଲେ ସଫା ପାଦ ମଇଳା ହୋଇ ଆସିବ, ସୁସ୍ଥ ମନୁଷ୍ୟ ରୋଗ ନେଇ ଆସିବ । ଜଗନ୍ନାଥ ମନ୍ଦିର ଭିତରୁ ବା ସେହି ସଂସର୍ଗରୁ ଓଡ଼ିଶା ଓ ଭାରତବ୍ୟାପୀ ମହାମାରୀର ବାର୍ଷିକ ଜନ୍ମ ହୁଏ । ହିନ୍ଦୁ ଧର୍ମ, ତା'ର ଦେବତା ଓ ତା'ର ପୁରୋହିତମାନଙ୍କ ପ୍ରତି ଏହାଠାରୁ ବଡ଼ ଅପମାନ କ'ଣ ଥାଇପାରେ ? କିନ୍ତୁ ଏ ଗିର୍ଜାକୁ ସମସ୍ତେ ଆସନ୍ତି ଜୋତା ପିନ୍ଧି । ସବୁ ଗିର୍ଜା ସମ୍ବନ୍ଧରେ ହିଁ ଏହା ଖାଟେ; କିନ୍ତୁ ଚାରିଆଡ଼ କି ଝକ୍‌ଝକ୍ ପରିଷ୍କାର ! କେଉଁଠି ଟିକିଏ ହେଲେ ଧୂଳି ମଳି ନାହିଁ । ଯାଜକ, ଯାଜକାନୀ ଓ ଦର୍ଶକ ସମସ୍ତେ ଦେବତା ନିକଟରେ ତାଙ୍କର ଦୈନନ୍ଦିନ ପୋଷାକରେ ହିଁ ସ୍ୱଚ୍ଛନ୍ଦ ଚଲାଫେରା କରୁଛନ୍ତି । ଗୋଟିଏ ସ୍ୱାଭାବିକତା, ସ୍ୱାଚ୍ଛନ୍ଦ୍ୟ ଓ ପରିଷ୍କୃତିର ବାୟୁମଣ୍ଡଳ । ଦେବତା ସମୀପରେ ଏହାହିଁ ତ ସବୁଠାରୁ ସୁନ୍ଦର ବ୍ୟବହାର ।

ଗିର୍ଜାର ଭିତ୍ତିମାନଙ୍କରେ ଯୀଶୁଙ୍କ ଜୀବନର ଘଟଣାବଳୀ ଚିତ୍ରିତ । ଉପରର ଛାତ୍ର ବି ଚିତ୍ରିତ । ମନ୍ଦିରାଭ୍ୟନ୍ତର ଗଭୀର ଭାବର ଉଦ୍ରେକ କରେ । ମନ୍ଦିରର ଗୋଟିଏ କଣରେ କ୍ରୁଶବିଦ୍ଧ ରକ୍ତାକ୍ତ ଯୀଶୁଙ୍କର ଗୋଟିଏ ଶାୟିତ ମୂର୍ତ୍ତି । ମହାପୁରୁଷଙ୍କର ସେହି କାରୁଣ୍ୟବ୍ୟଞ୍ଜକ ମୂର୍ତ୍ତି ଦେଖି ହୃଦୟ ବିଚଳିତ ହୋଇପଡ଼ିଲା । ଚମନଲାଲ ଓ ମୁଁ ଜାନୁପାତ କରି ସେହି ମହାପୁରୁଷଙ୍କୁ ଓ ତାଙ୍କର ମହୀୟସୀ ଜନନୀ ମେରୀଙ୍କ ଚରଣତଳେ ବାରମ୍ବାର ଶ୍ରଦ୍ଧା ନିବେଦନ କଲୁଁ ।

ଗିର୍ଜାରୁ ବାହାରିଆସିଲୁଁ । ସ୍ମାରକ ସ୍ୱରୂପ ଚିତ୍ରିତ ପୋଷ୍ଟକାର୍ଡ଼ କିଣିବାକୁ ଏକ କକ୍ଷକୁ ଯାଇ ଦେଖିଲି, ବିକ୍ରେତ୍ରୀ ଦୁଇ ତିନିଟି ଖ୍ରୀଷ୍ଟୀୟ ସନ୍ନ୍ୟାସିନୀ । ସେମାନେ ଫ୍ରେଞ୍ଚ, ଇଂରେଜୀ ଜାଣନ୍ତି ନାହିଁ, ତେଣୁ ଆମ ସାଥିରେ କଥା କହିପାରୁନାହାନ୍ତି; କିନ୍ତୁ ସେହି ଅମଳ ଶୁଭ୍ରବସନା ତରୁଣୀ ଶ୍ୱେତାଙ୍ଗୀ ସନ୍ନ୍ୟାସିନୀମାନଙ୍କର ସୁଗଠିତ ମୁଖମଣ୍ଡଳରେ ରୁଚିବ୍ୟଞ୍ଜକ ରୁଚିର ସ୍ମିତରେଖାର ଦୃଶ୍ୟ ମୋର ଆଜିଯାଏ ମନେଅଛି ।

ସେଦିନ ଅପରାହ୍ନ ଛ'ଟାରେ ମାର୍ସେଲିସ୍ ଛାଡ଼ିଲୁଁ । ପୁଣି ତିନିଦିନକାଳ ଅକୂଳ ସାଗରରେ ଭାସମାନ । ମାର୍ଶେଲିସ୍‌ଠାରେ ଅଧିକାଂଶ ଭାରତୀୟ ବୁଲାବିକା ଓହ୍ଲେଇ

ପଡ଼ିଲେ । ଏତେବେଳକୁ ସମୁଦ୍ର ଦେଖି ଓ ସମୁଦ୍ରପୀଡ଼ା ସହି ସହି ମନ କ୍ଳାନ୍ତ ହୋଇଆସିଲାଣି । ମୋର ଟିକଟ ଯଦିଓ ଜିବ୍ରାଲଟର ହେଇଥିଲା ତଥାପି ଏହି ଟିକଟ ବଦଳେଇ ଓହ୍ଲେଇ ପଡ଼ିବାକୁ ବସିଥିଲି; କିନ୍ତୁ ଅଧିକ ଖର୍ଚ୍ଚ ଭୟରେ ସେଥିରୁ ନିବୃତ୍ତ ହେଲି । ଯାଇଥିଲେ କିନ୍ତୁ ପାରିସରେ ସେତେବେଳେ ହେଉଥିବା ଆନ୍ତର୍ଜାତିକ ପ୍ରଦର୍ଶନୀ ଦେଖିଥାନ୍ତି ।

ପାଗ କ୍ରମେ ଅଧିକରୁ ଅଧିକ ଥଣ୍ଡା ହେବାକୁ ଲାଗିଲାଣି – ଠିକ୍ ଓଡ଼ିଶାର ଘୋର ଶୀତକାଳ ପରି । ମାର୍ଶେଲିସଠାରୁ ଜିବ୍ରାଲଟ୍‌ର ପର୍ଯ୍ୟନ୍ତ ସମୁଦ୍ର ଶାନ୍ତ ଥିଲା । ମାନଚିତ୍ରରେ ଜାହାଜର ଗତିପଥ କୂଳ ନିକଟରେ ଥିଲେ ହେଁ, ଜାହାଜ କୂଳରୁ ବହୁ ଦୂରରେ ଗତି କରୁଛି – କାରଣ, ବର୍ତ୍ତମାନ ସ୍ପେନରେ ଅନ୍ତର୍ବିପ୍ଳବ ଲାଗିଛି । ସରକାରୀ ଓ ବିପ୍ଳବୀମାନଙ୍କର କୂଳେ କୂଳେ ସାଗର-ଯୁଦ୍ଧ ହେଉଥିବାର ସମ୍ଭାବନା । କାଶୀମା ସେ ସବୁକୁ ଦୂରରେ ରଖି ଚାଲିଛି । ସତର ତାରିଖ ସେପ୍‌ଟେମ୍ବର ସକାଳେ କୁଜ୍‌ଝଟିକା ଭେଦକରି କ୍ରମେ ଦକ୍ଷିଣ ସ୍ପେନର ରୁକ୍ଷ ପାହାଡ଼ ଶ୍ରେଣୀ ଦେଖାଗଲା । ଏଇମାନଙ୍କ ଭିତରେ ଅନ୍ତରୀପ ପରି ସମୁଦ୍ର ଭିତରକୁ ଝୁଙ୍କି ଆସିଥିବା ଏକ ପାହାଡ଼ ଉପରେ ଜିବ୍ରାଲ୍‌ଟର ସହର, ବନ୍ଦର ଓ ନୌଘାଟୀ ଭୂମଧ୍ୟସାଗର ଓ ଦକ୍ଷିଣ ୟୁରୋପରେ ଇଂରେଜର ବଳିଷ୍ଠ ପ୍ରହରୀ । ଏଠି ଅନେକ ଯାତ୍ରୀ, ଯେଉଁମାନେ ନେପ୍‌ଲସ ମାର୍ଶେଲିସ ପ୍ରଭୃତିରୁ ଆସିଥିଲେ, ଓହ୍ଲେଇ ପଡ଼ିଲେ । କେତେକଙ୍କର ଜିବ୍ରାଲ୍‌ଟର ଇ ଲକ୍ଷ୍ୟ । କେତେକ ଯିବେ ଆଫ୍ରିକା ଓ କେତେକ ସ୍ପେନ । ଜିବ୍ରାଲ୍‌ଟର ପ୍ରଣାଳୀ ଡେଇଁଲେଇ ଆରପଟେ ଆଫ୍ରିକା ଉପକୂଳ– ସେ କୂଳର ଏକ ସହର ଦେଖାଯାଉଛି । ଜିବ୍ରାଲଟରକୁ ତିନିପଟୁ ଘେରିଛି ସ୍ପେନର ସୀମା ।

ଏଠି କୂଳରୁ କିଛି ଦୂରରେ ଜାହାଜ ଛିଡ଼ା ରହିଲା । ଏକ ମଟର ଲଞ୍ଚରେ ଆମ୍ଭେମାନେ କୂଳକୁ ଗଲୁଁ । ଏକ ଦଲାଲ ଜୁଟିଲା ସାଙ୍ଗେ ସାଙ୍ଗେ । ଛ'ଜଣଙ୍କୁ ଦଶ ଶିଲିଂ ହିସାବରେ ଏକ ମୋଟର ଭ୍ରମଣର ବନ୍ଦୋବସ୍ତ ହେଲା । ଏଠି ଦେଖିବାର ଯଦି କିଛି ଥାଏ, ତେବେ ତାହା ସାମରିକ ଆୟୋଜନ; କିନ୍ତୁ ସାଧାରଣଙ୍କ ପ୍ରତି ତାହା ନିଷେଧ । ଯାହା ଦେଖିଲୁ, ସେଥିରେ ମୋ' ପରି ଦରିଦ୍ରର ଅର୍ଥ ଅପବ୍ୟୟ ହୋଇଛି ବୋଲି ମୁଁ ମନେକଲିନାହିଁ ।

ଜିବ୍ରାଲଟର ସହରଟି ଏଡେନ୍ ପରି ରୁକ୍ଷ ପାହାଡ଼ ଉପରେ ଠିଆ ହୋଇଛି । କେରାଏ ଘାସ କେଉଁଠି ଦେଖିବ ନାହିଁ । ନାନା ସାଧ୍ୟ ସାଧନାରେ ଠାଏ ଠାଏ କିଛି କିଛି ଫୁଲଗଛ ବଞ୍ଚି ରହିପାରିଛନ୍ତି । ବିଶେଷତଃ ଏଠି ମୁଁ ଅସଂଖ୍ୟ ରଙ୍ଗ କନିଅର ଗଛ ଦେଖିବାକୁ ପାଇଲି । ସହରଟି କ୍ରମନିମ୍ନ ପାହାଡ଼ ଉପରେ ଠିଆହୋଇଥିବାରୁ ଘରଗୁଡ଼ିକ

ଢଳିପଡ଼ିଲାପରି ଦେଖାଯାନ୍ତି । ତା'ଭିତରେ ଆସବାବପତ୍ର କିମିତି ରଖାହୋଇଛି, ତା'ଦେଖିବାପାଇଁ ମୋର ଭାରି କୌତୂହଳ ହୋଇଥିଲା ।

ଆମର ମଟରକାର କ୍ରମେ ଉପରକୁ ଉପରକୁ ସର୍ପିଳ ଗତିରେ ଉଠି ଏପରି ଏକ ସ୍ଥାନକୁ ଆସିଲା, ଯେଉଁଠୁ ତଳକୁ ଅନାଇଲେ ପାହାଡ଼ର ପ୍ରଲମ୍ବିତ ଢାଲୁ ଓ ତା' ତଳେ ଦିଗନ୍ତବିସ୍ତୃତ ଆଟଲାଣ୍ଟିକ ମହାସାଗର; ଉପରକୁ ଅନାଇଲେ ବି ସେହି ତୀଖ ପାହାଡ଼ ଓ ତା' ଦେହରେ କ୍ୟାଚ୍‌ମେଣ୍ଟ୍ ଏରିଆ ବା ବର୍ଷାଜଳ ଧରିରଖିବାର ଜାଗା । ଏହି ଭୀମକାନ୍ତ ଦୃଶ୍ୟ କିଛି ସମୟ ଦେଖି ଫେରିଲୁଁ । ଫେରିବା ପଥରେ ଏଠାର ମ୍ୟୁଜିୟମ୍, ଚର୍ଚ୍ଚ, ମୁରୀଶ୍ ସ୍ନାନାଗାର ଦେଖି ଦେଖି ଆସିଲୁ; ଏଠାର ମ୍ୟୁଜିୟମ୍‌ରେ ଏକ ମିଶରୀୟ ମମି ବା ସଂରକ୍ଷିତ ମୃତଦେହ ଥିବାର ଦେଖିଲି । ବହୁ ବର୍ଷ ତଳେ ଇଜିପ୍ଟରୁ ଏକ ଜାହାଜ ମମି ନେଇ ଇଂଲଣ୍ଡ ଯାଉଥିଲା । ବିସ୍କେ ଉପସାଗରରେ ଝଡ଼ ମାଡ଼ରେ ଜାହାଜ ବୁଡ଼ିଗଲା । କିଛିଦିନ ପରେ ମମିଟି ଉପରକୁ ଭାସିଉଠିଲା । ସମୁଦ୍ରରୁ ଉଦ୍ଧାର କରି ତାକୁ ଏଇ ଜିବ୍ରାଲ୍‌ଟର ମ୍ୟୁଜିୟମରେ ରଖାହୋଇଛି । ମୋର ମମି ସମ୍ବନ୍ଧରେ ଯେପରି ଧାରଣା ଥିଲା, ତାହା କିନ୍ତୁ ଦେଖିଲିନାହିଁ । ମମି ସଦ୍ୟମୃତ ଶବପରି ଆଦୌ ନ ଥାଏ । ନିଷ୍କାସିତ-ବାୟୁ ଫୁଟ୍‌ବଲ ପରି ଏହା ଶୁଖି ଚମହାଡ଼ ମାତ୍ର ଏକାଠି ଥାଏ ।

ଜାହାଜକୁ ଫେରିବା ବାଟରେ ଏଠାର 'no-man's-land' ବା ଅମାନବ-ରାଜ୍ୟ ମଧ୍ୟ ଦେଖିଲୁଁ । ବ୍ରିଟୀଶ ଅଧିକୃତ ଜିବ୍ରାଲ୍‌ଟରର ଚାରିପଟେ କଣ୍ଟକିତ ଲୌହ ତାରର ବାଡ଼ ଅଛି । ସେଠୁ କିଛି ଜାଗା ଖାଲିପଡ଼ିଛି ଓ ତା'ପରେ ସ୍ପାନିଶ୍ ରାଜ୍ୟର ସୀମାରମ୍ଭ, ସେହିପରି ଲୌହ ତାର ଦେଇ । ଏଇ ମଝି ଜାଗାଟା କାହାର ନୁହେଁ । ଆମ୍ଭେମାନେ ଠିଆ ହୋଇଥିଲାବେଳେ ଏକ ସ୍ପାନିଶ୍ ଗାଈଆଳ ତା'ର ଗୋରୁ ପଲ ଧରି ସ୍ପାନିଶ୍ ଭୂମି ଆଡ଼କୁ ଏଇ ଅମାନବରାଜ୍ୟ ଭିତର ଦେଇ ଯାଉଥିଲା ।

ଜିବ୍ରାଲଟର ଛାଡ଼ିଲାବେଳୁ ଆମ୍ଭମାନଙ୍କ ଭିତରେ ବିସ୍କେ-ବିଭୀଷିକାର ପ୍ରଚାର ହେବାକୁ ଲାଗିଲା । ଅଭିଜ୍ଞ ଯାତ୍ରୀମାନେ କହିବସିଲେ ଯେ ବିସ୍କେ ଉପସାଗରର ସମୁଦ୍ର ପୀଡ଼ା ସବୁଠାରୁ ବଳିଯିବ । ବର୍ଷସାରା ବିସ୍କେରେ ଝଡ଼ ତୋଫାନ ଲାଗି ରହିଥାଏ । କାଶୀମା ପରି ଛୋଟ ଜାହାଜ କଥା ଛାଡ଼, ବଡ଼ ବଡ଼ ଜାହାଜ ବି ଏପଟ ସେପଟ ଟଳ ଟଳ ହୁଅନ୍ତି । ଖାଇବା ଘରେ ମେଜ୍ ଉପରେ ପ୍ଲେଟ ରହିପାରେନା । ମୁଁ ଶୁଣି ଶୁଣି ଆତଙ୍କ ଗଣିବାକୁ ଲାଗିଲି । ଏତିକି ମାତ୍ର ସାନ୍ତ୍ୱନା ଥାଏ ଯେ ଏଇଟା ହେଉଛି ଯାତ୍ରାର ଶେଷ କ୍ରୋଶ । ଯେତେ କ୍ଲେଶଦାୟକ ହେଲେହେଁ ଶୀଘ୍ର ସରିବ ତ !!

ଆମ୍ଭମାନଙ୍କର ଆଶଙ୍କା-ବ୍ୟାକୁଳ ମୁହୂର୍ତ୍ତଗୁଡ଼ିକୁ କିଞ୍ଚିତ୍ ସତେଜ ରଖିବା ପାଇଁ ଦଳେ ଇଂରେଜ ସୈନିକ ଓ ନାବିକ ଜିବ୍ରାଲ୍‌ଟରଠାରେ କାଶୀମାରେ ଉଠିଲେ । ମୁଁ

ମୋ' କେବିନ୍ ଛାଡ଼ି ଅନେକ ସମୟରେ ତୃତୀୟ ଶ୍ରେଣୀର ଲାଇବ୍ରେରୀ ରୁମ୍‌ରେ ଆସି ଶୁଆ ବସା କରୁଥାଏ । ୩/୪ଟି ଇଂରେଜ ସୈନିକ ସେଇ ରୁମ୍‌ରେ ଆଶ୍ରୟ ନେଲେ । କେତେକ ଭାରତୀୟ ମତେ ସେ ରୁମ୍ ଛାଡ଼ିଯିବାକୁ କାନରେ ଧୀରେ ଧୀରେ ଉପଦେଶଦେଲେ । ମୁଁ କିନ୍ତୁ ସ୍ଥାନ ତ୍ୟାଗ କଲିନାହିଁ । କିନ୍ତୁ ମୋର ଛାତି ଯେ ଦକ୍ ଦକ୍ ନ ହେଉଥାଏ ଏହା କହିବା ଘୋର ମିଥ୍ୟା । ବିସ୍କେ ଉପସାଗରରେ ମୋର ଯେପରି ସମୁଦ୍ରପୀଡ଼ା ହେଲା, ଅନ୍ୟ ଅନେକଙ୍କର ସେପରି ହେଲା; ମୋ' ସାଥିରେ ଥିବା ବ୍ରିଟୀଶ ନାବିକମାନଙ୍କର ବି ହେଲା । ସେମାନେ ଧୀର ହୋଇ କମ୍ବଳ ଘୋଡ଼ିହୋଇ ଶୋଇଥାନ୍ତି । କେବେ କିଛି ପଚାରିଲେ ମଧୁର ସ୍ମିତ ସହିତ ଉତ୍ତର ଦିଅନ୍ତି ଅତ୍ୟନ୍ତ ଭଦ୍ରଭାବରେ । ସୈନିକଙ୍କର ଭୀଷଣତା ନେଇ ମୋର ଆଶଙ୍କା କ୍ରମେ ଅପସାରିତ ହେଲା ।

ସେହି ତୃତୀୟ ଶ୍ରେଣୀରେ ରହି ଆହୁରି ଅନେକ ଇଂରେଜ ନାବିକ ଓ ସୈନିକ ଅତ୍ର ତତ୍ର ଥାନ୍ତି । ମଧ୍ୟାହ୍ନ ଓ ସାନ୍ଧ୍ୟଭୋଜନ ପରେ ସେମାନେ ଭାରତୀୟମାନଙ୍କ ସାଙ୍ଗରେ ଭାରି ଖୋଲାଖୋଲି ଭାବରେ ମିଶନ୍ତି । ବୁଲାବିକାମାନଙ୍କ ଭିତରୁ ଯେ କେତୋଟି ବାକୀ ଥିଲେ, ସେମାନେ ଇଂରେଜୀ ନ କହି ପାରିଲେ ମଧ୍ୟ, ଏଇ ଦରିଦ୍ର ନିମ୍ନଶ୍ରେଣୀର ଇଂରେଜମାନଙ୍କ ସଙ୍ଗେ ହସ ଖେଳ, ଥଟା କରିବାରେ ସେମାନଙ୍କର କୌଣସି ବାଧା ନ ଥାଏ; କିନ୍ତୁ ନିମ୍ନଶ୍ରେଣୀର ଇଂରେଜ ହେଲେହେଁ ଡସିପ୍ଲିନ ଏ ଜାତିର ଏପରି ମଜ୍ଜାଗତ ଯେ, ଦିନେ ରାତିରେ ଦଶଟା ପରେ ଏମାନେ ପାଟିକରୁଥିବାର ଦେଖି, ମି.ଓ୍ୟାଷ୍ଟି ଯେମିତି ଚୁପ କରିବାକୁ କହିଛନ୍ତି, ଅନ୍ୟ ଯାତ୍ରୀମାନଙ୍କର ଅସୁବିଧା ଦୃଷ୍ଟିରେ ଏମାନେ ସଙ୍ଗେ ସଙ୍ଗେ ନିଜ ନିଜ କେବିନ୍‌କୁ ଚାଲିଯାଇଥିଲେ । ଭାରତବର୍ଷରେ ଏ ସଂଯମ ସମ୍ଭବ ନୁହେଁ– ଆମ ଲୋକେ ଏତେ ଅଭଦ୍ର ଓ ସ୍ୱାର୍ଥପର । ଠିକ୍ ଏଇ ଅବସ୍ଥାରେ ଭାରତୀୟମାନଙ୍କଠୁ ଉତ୍ତର ମିଳିଥାନ୍ତା, ''ତମେ ଆମକୁ କହିବାକୁ କିଏ ହୋ ? ତମେ ଯେମିତି ପଇସା ଦେଇଛ, ଆମେ ବି ସିମିତି ପଇସା ଦେଇଛୁଁ । ତମ ପଇସାରେ କ'ଣ ସନ ଅଛି, ଆମ ପଇସାରେ ନାହିଁ ? ତମେ ନ ଶୋଇଲେ ଆମର କି ଗଲା ? ଆମ ମନ ଇଚ୍ଛା– ଆମେ ଯାହା କରିବୁ, ତମର କହିବାର କ'ଣ ଅଛି ?'' ଅଧିକ ପରିତାପର କଥା ଏଇ ଯେ ତଥାକଥିତ ଶିକ୍ଷିତ ଲୋକଙ୍କ ଭିତରେ ଏ ପ୍ରକାର ଅଭଦ୍ରତା ବେଶି ।

ଏମାନଙ୍କ ଭିତରେ ଏକ ନାବିକ ଥାଏ ଯେ ସମସ୍ତଙ୍କ ଅପେକ୍ଷା ବେଶି ବାଚାଳ, ସେ ଯେ ଦରିଦ୍ର ତା'ର ଛିନ୍ନ-ପୁରାତନ କୋଟ-ଟ୍ରାଉଜର ସ୍ପଷ୍ଟ ପ୍ରମାଣ କରୁଥାଏ; କିନ୍ତୁ ତା'ର କଥାବାର୍ତ୍ତାର ପରିଚୟ ଦେଲେ ପାଠକମାନେ ଜାଣିବେ

ଇଂଲାଣ୍ଡର ଜନସାଧାରଣଙ୍କ ମାନସିକ ସ୍ତର ଆମ ଦେଶର ଜନସାଧାରଣଙ୍କ ଅପେକ୍ଷା କେତେ ଉପରେ ।

ଏଇ ଦରିଦ୍ର ଇଂରେଜ ନାବିକ କଥା କହିଲେଇ ଜଗତରେ ଯେଉଁଠି ଯେଉଁଠି ପତିତ, ଦଳିତ ଲୋକେ ସ୍ୱାଧୀନତା ଓ ଗଣତନ୍ତ୍ରପାଇଁ ସଂଗ୍ରାମ କରୁଛନ୍ତି, ସେମାନଙ୍କ ପାଇଁ ତା'ର ସହାନୁଭୂତି ଫୁଟିଉଠେ । ସେ ଜେନେରାଲ ଫ୍ରାଙ୍କୋ ଓ ମୁସୋଲିନୀର ଶତ୍ରୁ । ଦିନେ ସେ ଅନ୍ୟ ଇଂରେଜମାନଙ୍କ ସାଥିରେ 'ରିଭୋଲ୍ୟୁଶନ୍' ବା 'ରାଷ୍ଟ୍ରବିପ୍ଳବ' କ'ଣ ତାହା ଯେପରି ଯୁକ୍ତିଯୁକ୍ତ ଭାବରେ ବୁଝାଉଥିଲା, ତା' ଏ ଦେଶର ଗ୍ରାଜୁଏଟମାନେ ପାରିବେନାହିଁ । 'ପୋର୍ଟ ସଏଦ୍'ରେ ସେ ଆରବ ଟୋକାଙ୍କୁ ମତେଇ ମୁସୋଲିନୀ ବିରୁଦ୍ଧରେ ଏକ ନିଜକୃତ ଗୀତ ବୋଲେଇବାକୁ ଆରମ୍ଭ କରିଥିଲା । ତା'ର ଏକପଦ ଏହିପରି–

"Will you come to Abbyssinia
will you come ?
All you need is a bayonet and a gun.
Mussoline will be there,
Selling kippers, penny a pair;
Will you come to Abbyssinia
will you come ?"

'Kipper' ହେଉଛି ଏକ ପ୍ରକାର ଶୁଖୁଆ ମାଛ । ଆବିସିନିଆରେ ମୁସୋଲିନୀ ଶୁଖୁଆ ବିକୁଥିବା କଥାରୁ, ଏ ଇଂରେଜର ସେହି ଦୁର୍ମଦ ଡିକ୍‌ଟେଟର ପ୍ରତି ଘୃଣା ଓ ଉପହାସ ସୂଚିତ ହେଉଛି ମାତ୍ର ।

ଲଣ୍ଡନରେ ଆମ୍ଭେମାନେ ଓହ୍ଲେଇ ଗଲାବେଳେ ଏଇ ନାବିକ ମତେ ସାଲ୍ୟୁଟ କରି କରି ବିଦାୟ ନେବାର ଦେଖି ମୁଁ ଆଶ୍ଚର୍ଯ୍ୟରେ ଅଭିଭୂତ ହେଲି । ଯେଉଁ ଜାତିର ସାମାନ୍ୟ ଜଣେ ଦରିଦ୍ର ନାବିକ ଏପରି ଶିକ୍ଷିତ, ଭଦ୍ର ଓ ବୁଦ୍ଧିମାନ୍ ହୋଇପାରେ, ସେ ଜାତି ନିଶ୍ଚୟ ନମସ୍ୟ ।

ଆମ ଦେଶରେ ଦି'ପଦ ଇଂରାଜୀ ଜାଣିଲେ ଲୋକଙ୍କର କି ଅହଂକାର ! ଏଇଟା ଯେ ଦାସତ୍ୱର ଚିହ୍ନ ଏତକ ବୁଝିବାକୁ ବି ଆମ ଦେଶରେ କଳ୍ପନାର ଅଭାବ; କିନ୍ତୁ ଜିବ୍ରାଲ୍‌ଟରରୁ ଉଠିଥିବା ଏକ ନରଓ୍ୱେଜିୟାନ ନାବିକ ପାଞ୍ଚଟି ଇଉରୋପୀୟ ଭାଷା ଜାଣେ । ସେ ସ୍ପ୍ୟାନିଶ୍ ଅନ୍ତର୍ବିପ୍ଳବରେ ବନ୍ଦୀ ଥିଲା – ଏବେ ଖଲାସ ହୋଇ ଘରକୁ ଫେରୁଛି ।

ଆମ ଜାହାଜ ୨୧ ତାରିଖ ସେପ୍‌ଟେମ୍ବର ରାତି ଆଠଟାବେଳେ ଇଂଲିଶ୍

ଚାନେଲ ଭିତରେ ପଶିବାରୁ କ୍ରମେ ଆଲୋଡ଼ନ ବନ୍ଦହେଲା । କାଶୀମାର ଗତି ଗ୍ରେଟ୍-ବ୍ରିଟେନ୍‌କୁ ନିକଟ ଥିବାରୁ ଉପକୂଳର ବହୁ ଗ୍ରାମ, ବତିଘର ଓ ନଗରର ଦ୍ୱୀପମାଳା ଆମ୍ଭମାନଙ୍କୁ ଦେଖାଯିବାକୁ ଲାଗିଲା । ସକାଳେ ଓ ତହିଁ ଆରଦିନ ମଧ୍ୟ ଇଂଲଣ୍ଡର ଦକ୍ଷିଣ କୂଳର ଶୈଳମାଳା ଛୋଟ ଛୋଟ ଗ୍ରାମ ଓ ନଗରର ଦୃଶ୍ୟ ଦେଖାଇ ଜାହାଜ ଚାଲିଥାଏ । ସେଦିନ ରାତିରେ ଆମ୍ଭେମାନେ ଟେମ୍‌ସ୍ ମୁହାଣରେ ପଶିଲୁ । ଡାହାଣ କୂଳରେ କୌଣସି ଏକ ନଗରର ଅଗଣିତ ବୈଦ୍ୟୁତିକ ଆଲୋକ ରୋସନାଇ ପରି ଦିଶୁଥାଏ । ରାତିରେ ଭଲ ନିଦ ହେଲାନାହିଁ । ସକାଳେ ଦେଖୁଁ କାଶୀମା ଲଣ୍ଡନ୍‌ର ଭିକ୍ଟୋରିଆ ଡକ୍‌ସରେ ଲାଗିଛି; କିନ୍ତୁ ଟେମସ ନଦୀ କାହିଁ ? ଅଗଣିତ ନୌକା ଓ ଜାହାଜରେ ଘୋଡ଼େଇହୋଇ ଟେମ୍‌ସର ପାଣି ସୁଦ୍ଧା ଦିଶୁନାହିଁ ।

କଷ୍ଟମସ୍ ଅଫିସ୍‌ରେ ଜିନିଷ ଖାନ୍‌ତଲାସ ହେବାର କଥା । ବିଲାତରେ ଛାତ୍ରମାନଙ୍କ ପ୍ରତି ଏତେ ବିଶ୍ୱାସ ଯେ, ଆମମାନଙ୍କୁ ଛାତ୍ର ଜାଣି ଆମର ଜିନିଷପତ୍ର ନ ଦେଖି ଛାଡ଼ିଦେଲେ । ବର୍ତ୍ତମାନ ଚମନ୍‌ଲାଲ ହିଁ ମୋର ହର୍ତ୍ତା-କର୍ତ୍ତା ଦୈବୀ ବିଧାତା । ଗୋଟିଏ ଟାକ୍‌ସି ଭଡ଼ାକରି ସେ ମତେ ନେଇଗଲା Toc-H କୁ । ଏଟା ହେଉଛି ଦରିଦ୍ରମାନଙ୍କର ସରାଇ । ରାତିକି ଏକ ଶିଲିଂ ମାତ୍ର ଭଡ଼ା । ଏଠି ଜିନିଷପତ୍ର ରଖିଦେଇ ଯତ୍ରତତ୍ର ବୁଲିବା ଓ ଖାଇବାର ବ୍ୟବସ୍ଥା ହେଲା । ତହିଁ ଆରଦିନ ଇଣ୍ଡିଆନ୍ ହାଇକମିସନର୍ ଅଫିସରେ ସଂପୃକ୍ତ କର୍ମଚାରୀ ଯେତେବେଳେ ଶୁଣିଲେ ଯେ ମୁଁ Toc-H ରେ ଅଛି, ସେ ବିସ୍ମୟାଭିଭୂତ ହୋଇଗଲେ । ମୁଁ ପ୍ରଥମେ ବୁଝିପାରିଲିନି କଥାଟା; କିନ୍ତୁ ଦୁଇ ବର୍ଷ ରହିବା ପରେ ଯାଇ ଜାଣିଲି ! ଇଂଲଣ୍ଡରେ ଉପରଶ୍ରେଣୀ ଲୋକଙ୍କର ତଳଶ୍ରେଣୀ ପ୍ରତି କି ଘୃଣା ! କିନ୍ତୁ ମୁଁ Toc-H ରେ ଦୁଇଦିନ ରହି ଦେଖିଲି ଯେ, ସେଠାରେ ଥିବା ଦରିଦ୍ର ଇଂରେଜଗୁଡ଼ିକୁ ଘୃଣା ଚକ୍ଷୁରେ ଦେଖିବାର କିଛି ନାହିଁ ।

ଲଣ୍ଡନରେ ମୁଁ ଦୁଇଦିନ ରହିବା ପରେ ଏଡ଼ିନ୍‌ବରା ଚାଲିଗଲି । ଅନ୍ୟ ଅନେକ ବିଲାତ ଯାତ୍ରୀ ଲଣ୍ଡନର ବହୁ ବର୍ଣ୍ଣନା ଦେଇଛନ୍ତି– ତେଣୁ ମୁଁ ତା'ର ପୁନରାବୃତ୍ତି କରି କିଛି ଲାଭନାହିଁ । କଲିକତା ବା ବମ୍ବେକୁ ବହୁଗୁଣିତ କରିଦେଲେ ଯାହା, ଲଣ୍ଡନ ସେୟା । ସେଇ ଟ୍ରାମ୍, ବସ୍, ଟାକ୍‌ସି, ଜନତା, ପୋଲିସ୍ ଓ ନଭଶ୍ଚୁମ୍ବୀ ଅଟ୍ଟାଳିକାମାନଙ୍କର ଶ୍ରେଣୀ । ଲଣ୍ଡନ୍ ପୁରୁଣା ସହର । ବସ ଓ କାରଖାନାମାନଙ୍କର ଧୂଆଁରେ ତା'ର ଶରୀର କାଳିମାମୟ । ଅନେକ ରାସ୍ତା ଅତ୍ୟନ୍ତ ଅପ୍ରଶସ୍ତ । ଲଣ୍ଡନ ଇଷ୍ଟ ଏଣ୍ଡ୍ ଓ ୱେଷ୍ଟ୍ ଏଣ୍ଡ୍ ଏପରି ଦୁଇ ଭାଗରେ ବିଭକ୍ତ । ଇଷ୍ଟ୍ ଏଣ୍ଡ୍ ଦରିଦ୍ର ପଲ୍ଲୀ । ତାହା ଯେପରି କୁତ୍ସିତ, ସେପରି ନୋଂରା । ଗାନ୍ଧି ଗୋଲ୍‌ଟେବୁଲ ଯାତ୍ରାବେଳେ ଏଇ ଇଷ୍ଟ୍ ଏଣ୍ଡ୍‌ରେ ଥିଲେ ।

ଲଣ୍ଡନ ବୁଲି ବୁଲି ଦୁଇଟି କଥା ମୋର ଚିତ୍ତାକର୍ଷଣ କରିପାରିଥିଲା – ଗୋଟିଏ

ବୈଜ୍ଞାନିକ, ଅନ୍ୟଟି ଐତିହାସିକ କୀର୍ତ୍ତି । ପ୍ରଥମଟି ହେଉଛି ଲଣ୍ଡନର ପୃଥିବୀବିଖ୍ୟାତ ଭୂଗର୍ଭତଳ ରେଲୱେ । ରାସ୍ତାରେ ଯାଉ ଯାଉ ଏକ ଏକ ଜାଗାରେ ତଳକୁ ପାହାଚ ପାହାଚ କରି ଓହ୍ଲେଇଲେ ଟ୍ୟୁବ୍ ରେଲୱେର ଷ୍ଟେସନ ପାଇବ । ପ୍ରତି ପାଞ୍ଚ ମିନିଟରେ ଗାଡ଼ି ଆସୁଛି । ବିଦ୍ୟୁତ୍‌ରେ ସେ ଚାଲେ । ଧୂଆଁର ଝଂଜଟ ନାହିଁ । ସେଥିରେ ବସି ଯାଉଥିବା ଯାତ୍ରୀମାନଙ୍କର ମୁଣ୍ଡ ଉପରେ ଟେମସ୍ ନଦୀ, ଜାହାଜ, ରେଳ, ଟ୍ରାମ୍ ଓ ବିରାଟ ଲଣ୍ଡନ ସହର । ମତେ ବାସ୍ତବିକ ପାତାଳପୁରୀ ପରି ବୋଧହେଲା ।

ଦ୍ୱିତୀୟଟି ହେଲା ୱେଷ୍ଟମିନିଷ୍ଟର୍ ଆବ୍‌ବି— ଲଣ୍ଡନ ସହରର ପ୍ରସିଦ୍ଧ ଗିର୍ଜା, ଯେଉଁଠି ଇଂଲଣ୍ଡର ରାଜା ରାଣୀ ଅଭିଷିକ୍ତ ହୁଅନ୍ତି । ଏ ଗିର୍ଜାର ଛବି ସମସ୍ତେ ଦେଖିଥିବେ; କିନ୍ତୁ ଛବି ସଙ୍ଗେ ଏ ଗିର୍ଜାର ବାସ୍ତବତାର ସମ୍ପର୍କ ବିଶେଷ ଦେଖିଲି ନାହିଁ । ଏକ ଜୀର୍ଣ୍ଣ ପ୍ରାଚୀନ କୃଷ୍ଣାକାର ମନ୍ଦିର । ଭୁବନେଶ୍ୱରର ବଡ଼ଦେଉଳର ସ୍ଥାପତ୍ୟ ଓ ଶିଳ୍ପ ସମ୍ପଦ ସଙ୍ଗେ ତା'ର ତୁଳନା ଇ ନାହିଁ, କୋଣାର୍କର କଥା ଛାଡ଼ିଦିଅ । କିନ୍ତୁ ଏ ପୁରୁଣା ଗିର୍ଜାରେ ସମଗ୍ର ଇଂରେଜ ଜାତିର ଇତିହାସ ପୁଞ୍ଜୀଭୂତ । ଏହି ନମସ୍ୟ ଜାତିର ଇତିହାସକୁ ଯେଉଁ ବୀର ପୁରୁଷମାନେ ଗୌରବରେ ଭୂଷିତ କରିଯାଇଛନ୍ତି, ସେ ସମସ୍ତଙ୍କର ସମାଧି ବା ମୂର୍ତ୍ତି ଏଠି ଦେଖିବାକୁ ମିଳିବ । କବିମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ଅଂଶ ଛାଡ଼ିଦିଆଯାଇଛି । ତା' ଛଡ଼ା ଯିଏ ଯେଉଁ ବିଭାଗରେ ପ୍ରତିଭା ବଳରେ ଜାତିକୁ ଗୌରବ ଦେଇପାରିଲା, ଇଂରେଜ ତା'ର ମୃତ ଦେହକୁ ଏହି ଗିର୍ଜାରେ ସମାଧିସ୍ଥ କରି, ମୃତାତ୍ମାର ସମ୍ମାନ କରିବା ସଙ୍ଗେ ସଙ୍ଗେ ନିଜକୁ ସମ୍ମାନିତ କରେ । ଗିର୍ଜାର ଦ୍ୱାରଦେଶରେ ସାମ୍ରାଜ୍ୟ-ନିର୍ମାତା ଉଇଲିୟମ୍ ପିଟ୍‌ଙ୍କର ମୂର୍ତ୍ତି । ଭିତରକୁ ପଶିଲେ ଅନ୍ୟ ସମସ୍ତ ବିଶ୍ୱବିଖ୍ୟାତ ଇଂରେଜମାନଙ୍କର ଦେଖା ମିଳିବ । ଭାରତ ବର୍ଷରେ ବା ଓଡ଼ିଶାରେ ଏପରି ଏକ ମୂର୍ତ୍ତିମନ୍ତ ଇତିହାସ କାହିଁ ? ଏମାନେ ଇତିହାସକୁ ସମ୍ମାନ କରି ଜାଣନ୍ତି ବୋଲି ତ ବଡ଼ ଜାତି ହୋଇପାରିଛନ୍ତି । ଆମ ପରି ସ୍ୱାର୍ଥ-ସର୍ବସ୍ୱ ଜାତି ଇତିହାସକୁ ପଚାରିଯିବ କାହିଁକି ? ନିଜର ଓ ନିଜ ପୁଅ ପୁତୁରାର ବ୍ୟବସ୍ଥା କରିପାରିଲେ ଇ ଆମେ ସନ୍ତୁଷ୍ଟ । ତା' ନ ହେଲେ କି ଗୋପବନ୍ଧୁଙ୍କର କୌଣସି ସ୍ମାରକ ଏପର୍ଯ୍ୟନ୍ତ କଟକ ସହରରେ ଉଠି ନ ଥାନ୍ତା ଓ ତାଙ୍କର ପ୍ରିୟ ସତ୍ୟବାଦୀ ସ୍କୁଲ ଇତର ଲୋକଙ୍କର କ୍ରୀଡ଼ାସାମଗ୍ରୀ ହୋଇଥାନ୍ତା ?

ରାଜାରାଣୀ ଯେଉଁ ଚୌକିରେ ବସି ଅଭିଷିକ୍ତ ହୁଅନ୍ତି; ତାହା ସାମାନ୍ୟ କାଠ-ନିର୍ମିତ ମାତ୍ର । ଏହି ଚୌକି ଦୁଇଟି ଅନେକ ଦିନ ଓୟେଷ୍ଟମିନିଷ୍ଟର ପବ୍ଲିକ୍ ସ୍କୁଲରେ ପଡ଼ିରହିଥିଲା । ସେଠି ପିଲେ ତାଙ୍କ ପକେଟ୍-ନାଇଫ୍‌ରେ ଏ ଚୌକି ଦୁଇଟିର ଶରୀରକୁ କ୍ଷତ-ବିକ୍ଷତ କରି ପକାଇଛନ୍ତି, ଯେମିତି ସବୁଠି ପିଲେ କରନ୍ତି; କିନ୍ତୁ ସେହି

ଜରାଜୀର୍ଣ୍ଣ, କାଠଚୌକିକୁ ଅର୍ଦ୍ଧ ଜଗତ ଦୁଇ ଶତାବ୍ଦୀ ଧରି ନମସ୍କାର କରିଆସୁଛି । ଭାରତବର୍ଷରେ ଶତ ଶତ ସାମାନ୍ୟ ଜମିଦାରଙ୍କ ଘରେ ଏହା ଅପେକ୍ଷା ବହୁଗୁଣ ମୂଲ୍ୟର ଚୌକି ଅଛି । କିନ୍ତୁ ସେ ଚୌକିର କି ସମ୍ମାନ ଅଛି କହ ତ ।

ଯିବା ଓ ଫେରିବା ବାଟରେ ମୁଁ ଦୁଇଥର ଏହି ଗିର୍ଜାକୁ ବୁଲି ବୁଲି ଦେଖିଲି– କେବଳ ଏହି ବିରାଟ ଐତିହାସିକ ଆକର୍ଷଣ ଓ କୌତୂହଳ ନିବୃତ୍ତ କରିବା ପାଇଁ । ଅତି ପରିତାପର କଥା ଏହି ଯେ, ଆମ ଦେଶରେ ଲୋକେ ମୋଟା ସରକାରୀ ବୃତ୍ତିରେ ଇଂଲାଣ୍ଡରେ ମଉଜ କରି ଫେରନ୍ତି । ହୁଏତ ଗୋଟିଏ ଗୋଟିଏ ଡିଗ୍ରୀ ଆଣନ୍ତି ବା ଆଣନ୍ତିନି; କିନ୍ତୁ ସେ ଜାତିର ଯାହା ସ୍ୱତନ୍ତ୍ର ମହତ୍ତ୍ୱ ତା' ଏ ଦେଶରେ ପ୍ରଚାର ନକରି, ଆମରି ଦୁର୍ଗୁଣଯାକ ଟିକିଏ ମାର୍ଜିତ ଆକାରରେ ସାହେବିୟାନା ନାମରେ ପ୍ରକାଶ କରନ୍ତି ମାତ୍ର ।

ଏ ଦେଶରେ ସ୍କୁଲ କଲେଜ କଥା ପଡ଼ିଲେ ପ୍ରଥମେ ହିସାବ ହେବ କୋଠା-ବାଡ଼ିର ଖର୍ଚ୍ଚ; କିନ୍ତୁ ଇଂଲାଣ୍ଡରେ ପ୍ରଥମ ଓ ପ୍ରଧାନ ପ୍ରସ୍ତାବ ହେଉଛି ଅଧ୍ୟାପକ ଓ ତା'ର ଯୋଗ୍ୟତା– ଆଉ ସବୁ ପଛେ । ଯାଅ ଦେଖିବ ଅକ୍‌ସଫୋର୍ଡ଼ ଓ କେମ୍ବ୍ରିଜ୍ ପ୍ରଭୃତି ବିଶ୍ୱ ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟର କଲେଜମାନଙ୍କୁ । ସେଗୁଡ଼ିକ ପ୍ରାଚୀନ ଜରାଜୀର୍ଣ୍ଣ ଐତିହାସିକ । ଆମ ରେଭେନ୍‌ସା କଲେଜର ଆଡ଼ମ୍ବର ଆଗରେ ସେମାନେ ଲଜ୍ଜିତ ହେବେ । କିନ୍ତୁ ସେଠି ସେହି ପ୍ରତ୍ୟେକ ଜରାଜୀର୍ଣ୍ଣ ବିଦ୍ୟାମନ୍ଦିରରେ ଜ୍ଞାନର ତପସ୍ୟା ଓ ଆବିଷ୍କାରର ଯେ ଇତିହାସ ରହିଛି, ତାହା ଓଡ଼ିଶା କାହିଁକି ସମଗ୍ର ଭାରତବର୍ଷରେ ବିରଳ ।

ଲଣ୍ଡନ ଅପେକ୍ଷା ଏଡ଼ିନବରା ଶସ୍ତା ପଡ଼ିବ ବୋଲି ମୁଁ ସେଠାକୁ ଯିବାକୁ ବସିଲି । ଚମନ୍‌ଲାଲ ମତେ ଲଣ୍ଡନର ଚେୟାରିଂକ୍ରସ୍ ଷ୍ଟେସନରେ ଗାଡ଼ିରେ ବସେଇ ଦେଇ ଗଲା । ଏ ଗାଡ଼ି ରାତି ନଅଟାରେ ଏଡ଼ିନ୍‌ବରାରେ ପହଞ୍ଚିବ । ମୁଁ ସେଠି କାହାକୁ ଜାଣିନି – କିନ୍ତୁ ଶ୍ୱେତାଙ୍ଗର ଭଦ୍ରତା ମତେ କିପରି ସାହାଯ୍ୟ କଲା, ପରେ କହୁଛି ।

ଲଣ୍ଡନ ପାର ହେଉ ହେଉ ପ୍ରାୟ ଘଣ୍ଟାଏ ଲାଗିଗଲା । ଏଇଥିରୁ ଲଣ୍ଡନର ବିରାଟତା କଳ୍ପନା କରାଯାଇପାରେ । ତା' ପରେ ପଡ଼ିଲା ଇଂଲାଣ୍ଡର ନୟନାଭିରାମ ପଲ୍ଲିଶ୍ରୀ । ଦୁଇ ପାଖକୁ ଅନାଇ ଅନାଇ ଆଖିରେ କ୍ଳାନ୍ତି ଆସୁ ନଥାଏ । ଯେଉଁଆଡ଼େ ଚାହିଁବ ଗାଢ଼ ସବୁଜ ଘାସର ଗାଲିଚା, କି କୋମଳ– କି ସ୍ନିଗ୍ଧ । ଭୂମି ଉଚ୍ଚ ନୀଚ ଥିବାରୁ ପ୍ରତି ପଦରେ ପ୍ରକୃତିର ଶ୍ରୀ ଚିତ୍ରପଟ ଖୋଲି ହୋଇ ହୋଇ ଯାଉଥିଲ ପରି ବୋଧହେଉଥାଏ । ମଝିରେ ମଝିରେ ସବୁଜ ପ୍ରାନ୍ତର, ସେଥିରେ ସୁସ୍ଥ ସବଳ ନାନାବର୍ଣ୍ଣର ଗାଭୀ ଓ ଘୋଟକ । ଛୋଟ ଛୋଟ ନଈଟିମାନ ବହିଯାଉଛି, ଛୋଟ ଛୋଟ ପାହାଡ଼, ଛୋଟ ଛୋଟ ଘର ଓ ବଗିଚା । ଶସ୍ୟକ୍ଷେତ୍ରମାନ ସବୁଜ ବାଡ଼ରେ

ଘେରା, ଆକାର ତାଙ୍କର ଜ୍ୟାମିତିକ– ସବୁ ମିଶି ବିଲାତର ପଲ୍ଲୀଭୂମି ଏକ ମନୋରମ ଚିତ୍ର ପରି ପ୍ରତୀୟମାନ ହେଉଥାଏ ।

ଏ ଦେଶର ପ୍ରକୃତି ପରି ମନୁଷ୍ୟ ମଧ୍ୟ ମନୋହର । ବାଟରେ ତ କେତେ ଲୋକଙ୍କ ସଙ୍ଗେ ଆଳାପ ହେଲା । ଗୋଟିଏ ଦମ୍ପତିର କଥା କହି ଏ କାହାଣୀ ଶେଷ କରେ । କାର୍ଲାଇଲ ସହର କି ତା' ପରେ ଏକ ଦମ୍ପତି ମୋ' କୋଠରିରେ ଉଠିଲେ । କଥାବାର୍ତ୍ତା ଆରମ୍ଭ ହେଲା । ପୁରୁଷଟି ପ୍ରଥମ ମହାଯୁଦ୍ଧରେ ଲଢ଼େଇ କରିଥିଲା – ଏବେ ଏକ ଦୁଧକାରଖାନାରେ କାମ କରେ । ସେମାନେ ନିକଟରେ ଇଂରେଜୀ ସାହିତ୍ୟପ୍ରସିଦ୍ଧ ଲେକ୍ ଜିଲ୍ଲାରେ ଛୁଟି କଟେଇ ଫେରୁଛନ୍ତି । ସେମାନେ କ୍ରମେ ଜାଣିଲେ ଯେ ମୁଁ ଏଡ଼ିନ୍‌ବରା ଯାଉଛି, ସେମାନେ ବି ଏଡ଼ିନ୍‌ବରାରେ ଓହ୍ଲାଇବେ । ସେମାନେ ଜାଣିଲେ ଯେ ମୁଁ ଏଡ଼ିନ୍‌ବରା ପ୍ରଥମେ ଯାଉଛି ଓ ସେଠି ମୁଁ କାହାକୁ ଜାଣେନା ।

ରାତି ନଅଟାରେ ଏଡ଼ିନ୍‌ବରାର ୱାଭର୍ଲି ଷ୍ଟେସନରେ ଗାଡ଼ି ରହିଲା । ମୋର ଶ୍ୱେତାଙ୍ଗ ସହଯାତ୍ରୀ ମତେ ଆଶ୍ୱାସ ଦେଲେ ଯେ, ମୋର ଚିନ୍ତା କରିବାର କିଛି ନାହିଁ; ସେ ମତେ ସାହାଯ୍ୟ କରିବେ । ଲଣ୍ଡନ ଛାଡ଼ିଲାବେଳେ ମତେ ଚମନ୍‌ଲାଲ କେବଳ କହି ଦେଇଥାଏ ଯେ, ମୁଁ Y.M.C.A. ହଷ୍ଟେଲ୍‌କୁ ଚାଲିଗଲେ ସେଠି ପ୍ରାଥମିକ ଆଶ୍ରୟ ପାଇ ପାରିବି । କିନ୍ତୁ ରାତିରେ ଅଜଣା ସହରରେ ମୁଁ ସେ ହଷ୍ଟେଲ ଖୋଜି ପାଉଛି କିପରି ?

ଶ୍ୱେତାଙ୍ଗ ସହଯାତ୍ରୀ ନିଜେ କୁଲି ଡାକି ଓ କୁଲିକି ପଇସା ଦେଇ ମୋର ଜିନିଷପତ୍ର ଏକ ଟାକ୍‌ସିରେ ଭରିଦେଲେ । ସେ, ତାଙ୍କ ସ୍ତ୍ରୀ ଓ ମୁଁ Y.M.C.A. ହଷ୍ଟେଲ୍‌କୁ ଗଲୁ । ସେଠି ଜାଗାର ଅଭାବ । କିନ୍ତୁ ସେକ୍ରେଟାରୀକୁ କୁହାବୋଲା କରି କୌଣସିମତେ ରଖାଇ ଦେଲେ ଓ ତାଙ୍କ କାର୍ଡ଼ ଦେଇ ମୋ'ଠାରୁ ବିଦାୟ ନେଇଗଲେ । ଏପରି ନିଷ୍କାମ ପରୋପକାର ଆମ ଦେଶରେ କେତେଜଣ କରିବେ ?

ଦୀର୍ଘଯାତ୍ରା ମୋର ଶେଷ ହେଲା । ବର୍ତ୍ତମାନ ଏହି ମାଟିରେ ମତେ ପ୍ରାୟ ଦୁଇବର୍ଷ କଟାଇବାକୁ ହେବ । ଏହି ଦୁଇବର୍ଷର ନାନା ଅଭିଜ୍ଞତା ପାଠକମାନଙ୍କୁ କେତୋଟି ପତ୍ରରେ ଜଣାଇ ପୁଣି ଫେରିବା ଯାତ୍ରାର କଥା କହିବି । ଏହି ପତ୍ରଗୁଡ଼ିକ ଯେ ଏ ପ୍ରକାର ଏକ ବହିରେ ବାହାରିବ ବୋଲି ଲେଖାହୋଇଥିଲା, ତାହା ନୁହେଁ । ମୁଁ ରୁଟିନ୍ ମୁତାବକ ଚିଠି ଲେଖୁଥାଏ । ପରେ ଫେରି ଦେଖିଲି ଜଣେ ସେ ସବୁକୁ ଗୋପନରେ ସଂଗ୍ରହ କରି ବହି ଆକାରରେ ଛପେଇବା ଉପରେ । ମୁଁ ପଢ଼ି ଦେଖିଲି, ସେଥିରେ ପ୍ରକୃତରେ ଅନେକ ଜାଣିବାର କଥା ଲେଖା ହୋଇଯାଇଛି ଯାହାକି ମୁଁ ବିସ୍ମୃତ ହୋଇଯାଇଛି । ସେ ସବୁର ପ୍ରବନ୍ଧ ଆକାରରେ ପୁନରାବୃତ୍ତି କରିବା ଉଚିତ ନୁହେଁ; ତେଣୁ ବାଛି ବାଛି ଓ କାଟିଛାଁଟି କେତୋଟି ପତ୍ର ଏଥିରେ ସନ୍ନିବେଶିତ କଲି ।

# ପତ୍ରାବଳୀ–

## ଏଡ଼ିନ୍‌ବରାରେ ପ୍ରାଥମିକ ଜୀବନ

ଏଡ଼ିନ୍‌ବରା, ସ୍କଟଲାଣ୍ଡ
୨୫ ।୯ ।୩୭

ବଡ଼ ଭୁଲ୍ କଲି । କାଲି ମୁଁ ତମର ଚିଠି ଖୋଜିବାକୁ କିଙ୍ଗ୍‌ସ ବିଲଡ଼ିଙ୍ଗ୍‌ସକୁ ଗଲି । ଡକ୍ଟର ମାକେନ୍‌ଜି ସେ ସମୟରେ ଏଡ଼ିନ୍‌ବରାରେ ଭାରତୀୟ ଛାତ୍ରମାନଙ୍କର ତତ୍ତ୍ୱାବଧାରକ ଥିଲେ । ମାକେନ୍‌ଜି ନାହାନ୍ତି, ତେଣୁ ଡକ୍ଟର ଲଡ଼୍‌ଲାମଙ୍କ ସଙ୍ଗେ କଥା ହେଉ ହେଉ ସେଠି ମୋ' କଲମଟା ଛାଡ଼ି ଆସିଲି । ବସାକୁ ଫେରି ଲାଣ୍ଡ୍‌ଲେଡ଼ିକୁ କଲମଟି ମାଗି ଲେଖିବାକୁ ଆରମ୍ଭ କଲି । କିନ୍ତୁ ସେ ଦନ୍ଥରା କଲମ ଚାଲିଲା ନାହିଁ, ମୋର ଅନେକ କଥା ଲେଖିବାର କଥା; ତେଣୁ ଅଧା ଲେଖି ଛାଡ଼ିଦେଲି ।

ଦେଖୁଛି, ମୁଁ ଏଠି ସପ୍ତାହରେ ପନ୍ଦର ଶିଲିଂରେ ଚଳିଯିବ । ତାହାର ଅର୍ଥ ମାସକୁ ତିନି ପାଉଣ୍ଡ ବା ଚାଳିଶ ଟଙ୍କା । ସବୁ ଖର୍ଚ୍ଚ ମିଶି ପଚାଶ ଟଙ୍କାରୁ କେବେହେଲେ ବେଶି ହେବ ନାହିଁ । କାଲି ଉପରଓଳି ଚାଉଳ ଇତ୍ୟାଦି ବଜାରରୁ କିଣିଆଣି ଆଜି ସକାଳେ କୁକ୍‌ରରେ ରାନ୍ଧିଲି । ଚମତ୍କାର ହେଲା ।

ଆଜି ସକାଳେ କିଙ୍ଗସ୍ ବିଲ୍‌ଡ଼ିଙ୍ଗସ୍‌କୁ କଲମ ଖୋଜିବାକୁ ଗଲି । ଡକ୍ଟର ଲଡ଼୍‌ଲାମ ସେଠି ନ ଥିଲେ । ତେଣୁ ତାଙ୍କ ଘରକୁ ଗଲି । ମୁଁ ସେଠି ପହଞ୍ଚିଲାବେଳେ ସେ ବଗିଚାରେ କାମ କରୁଥିଲେ । ହାତରେ ମାଟି ବଲବଲ; କିନ୍ତୁ ମୋ' ନାମ ଶୁଣି ସେ ଘରକୁ ଆସିଲେ ଓ ମୁଁ ସୁପ୍ରଭାତ ଜଣାଉ ଜଣାଉ ସେ ପକେଟରୁ କଲମଟି କାଢ଼ି ହସି ହସି ଦେଖେଇବାକୁ ଲାଗିଲେ । ମୁଁ କଲମଟି ଗ୍ରହଣକଲି ଓ ସେ ଏହାର୍ ଅଧିକତର ଯତ୍ନ ନେବାକୁ କହିଲେ । ଅତି ଚମତ୍କାର ଲୋକ । ତାଙ୍କ ଘରେ ଗୋଟିଏ ସାର୍ବଜନୀନ କ୍ଲବ (କସ୍‌ମୋପଲିଟାନ୍ କ୍ଲବ) ସେ ଷ୍ଟାର୍ଟ କରିଛନ୍ତି । କାଲି ରବିବାର ରାତି ୮ଟାରେ ସେଠାକୁ ଯିବାକୁ ସେ ମୋତେ କହିଛନ୍ତି । ସେ ଇଂରେଜ– ଏଠାର ବିଜ୍ଞାନ କଲେଜର ଅଧ୍ୟାପକ– କିନ୍ତୁ ସବୁ ଜାତି ପ୍ରତି ତାଙ୍କର ସମଜ୍ଞାନ । ଭାରତର ଅନେକ ଖବର ସେ ଜାଣନ୍ତି– ଓଡ଼ିଶା ନାଁ ଶୁଣିଛନ୍ତି । ପଞ୍ଜାବରେ ଯେଉଁ ଜାଲିଆନାବାଲାବାଗ୍ ଅତ୍ୟାଚାର ହୋଇଥିଲା ସେ ସମ୍ବନ୍ଧରେ କଂଗ୍ରେସରେ ପ୍ରକାଶିତ ରିପୋର୍ଟ ମତେ ଦେଖେଇଲେ । ଭାରତବର୍ଷରେ ଏ ବହି ପଢ଼ିବା ବେଆଇନ । ସେ ତାକୁ ଦେଖାଇ କହିଲେ ''ଯାକୁ

ତୁମେ ପଢ଼ ନାହିଁ, ରାତିରେ ଦୁଃସ୍ୱପ୍ନ ଦେଖିବ । ପ୍ରତ୍ୟେକ ଇଂରାଜ ଏଥିପାଇଁ ଲଜ୍ଜିତ– ଭାରତବର୍ଷରେ ଇଂରେଜ ଶାସନର ଇତିହାସରେ ଏହା କୃଷ୍ଣତମ କଳଙ୍କ ।'' ମୁଁ କହିଲି, ''ଆପଣ ସିନା ବ୍ୟକ୍ତିଗତ ଭାବରେ ଲଜ୍ଜିତ ହେଉଛନ୍ତି– ସରକାର ଓ ଇଂରାଜ ଜାତି କ'ଣ କଲା ? ଯେଉଁ ଡାୟାର୍ ଏହା କଲେ, ସେ ବେଶ୍ ମୋଟା ପେନ୍‌ସନ୍ ପାଉଛନ୍ତି ଓ ସରକାର ତାଙ୍କୁ ସାମାନ୍ୟ ତିରସ୍କାର ମଧ୍ୟ କଲେ ନାହିଁ ।'' ସେ କହିଲେ, ''ତା ଠିକ୍, ତେବେ ଇଂଲାଣ୍ଡରେ ସାଧାରଣ ପକ୍ଷରୁ ଏହାର ତୀବ୍ର ନିନ୍ଦା ହୋଇଥିଲା, ଡାୟାର୍‌ଙ୍କୁ ବଡ଼ବଡ଼ିଆମାନେ ରକ୍ଷା କଲେ ମାତ୍ର ।''

ତମେ ଶୁଣିଲେ ଅତ୍ୟନ୍ତ ଦୁଃଖିତ ହେବ ଯେ, ଏଠାରେ ଯେଉଁ ଭାରତୀୟ ଛାତ୍ର ଅଛନ୍ତି ସେମାନେ ଆମକୁ କୌଣସି ପ୍ରକାରେ ସାହାଯ୍ୟ କରୁନାହାନ୍ତି ବା କରିବେ ନାହିଁ । ଅନେକ ଭାରତୀୟ ଛାତ୍ରଙ୍କୁ ଏଠି ଓ ଲଣ୍ଡନରେ ଦେଖିଲିଣି । କିନ୍ତୁ ଦେଶର ଲୋକ ବୋଲି ଆଗ୍ରହ ପ୍ରକାଶ କରିବା ଦୂରେ ଥାଉ, ପ୍ରାୟ ସମସ୍ତେ ମୁହଁ ଆଡ଼େଇଦେଇ ପଳାଉଛନ୍ତି । ମୁଁ ଲଣ୍ଡନରେ ଉପରେପଡ଼ି ଜଣେ ଦି' ଜଣଙ୍କ ସଙ୍ଗେ କଥା ହେଲି; କିନ୍ତୁ ସହାନୁଭୂତି ନ ଥିଲେ ଏ ସବୁ ତ ବେଶି ଦୂର ଯାଇପାରେନା; ଯିବା ଉଚିତ ମଧ୍ୟ ନୁହେଁ । ତେଣୁ ମୁଁ ଆଉ ଭାରତୀୟମାନଙ୍କ ସଙ୍ଗେ ମିଶୁ ନାହିଁ ।

ଅପର ପକ୍ଷରେ ଯେଉଁ ବ୍ରିଟିଶ ଜାତିକୁ ଆମେ ଶତ୍ରୁ ଜାତି ବୋଲି ଭାବୁ ତାଙ୍କର ଚରିତ୍ରରେ ମୁଁ ବାରମ୍ବାର ମୁଗ୍ଧ ହେଉଛି । ଏମାନଙ୍କର କି ସହାନୁଭୂତି, କି ଭଦ୍ରତା, କି ସୁନ୍ଦର ବ୍ୟବହାର । ଗୋଟିଏ ସ୍କଚ୍ ଦମ୍ପତି ମତେ ରେଳରେ ଭେଟିଲେ ଓ ଏଡ଼ିନ୍‌ବରା ଷ୍ଟେସନରେ ଓହ୍ଲାଇ ମୋ' ପାଇଁ କୁଲିକି ପଇସା ଦେଇ, ଟାକ୍‌ସି ଡାକି, ମୋ' ସାଥିରେ ଆସି ବସା ଖୋଜି ମତେ ରଖେଇଦେଇଗଲେ– ରାତି ପ୍ରାୟ ଦଶଟାରେ । ଆମ ଦେଶରେ ଏହା ତମେ କେବେ ସ୍ୱପ୍ନରେ କଳ୍ପନା କରିପାରିବ ? କାଲି ସକାଳେଁ ଘର ଖୋଜିବାକୁ ଯାଉଁ ଯାଉଁ ଗୋଟିଏ ଲୋକକୁ ଗୋଟେ ଘରର ବାଟ ପଚାରୁଛି – ଏହି ସମୟରେ ଜଣେ ବୁଢ଼ୀ ସଉଦା ଧରି ସେଇ ବାଟ ଦେଇ ଚାଲିଯାଉଥିଲା । ସେ ରାସ୍ତାର ସେ ପଟୁ ହସି ହସି ପଚାରିଲା, ''ହଁ ହଁ; ମୁଁ ସେଇଆଡ଼ିକି ଯାଉଛି, ଆସ ମୁଁ ଦେଖେଇଦେବି ।'' ମୁଁ ତା' ସାଥିରେ ଗଲି । ବୁଢ଼ୀର କି ବ୍ୟବହାର ! ଅନେକ ଦୂର ସାଥିରେ ନେଇ ବସାଘର ପାଇଁ ଗୋଟେ ଘର ଦେଖେଇଦେଇ, ତା' ପରେ ସେ ମୋର ମଙ୍ଗଳ କାମନା କରି ଗଲା । କି ଜାତି ଏ– ବାପ୍‌ରେ ! ଆମ୍ଭମାନଙ୍କଠୁଁ କେତେ ଉଚ୍ଚରେ ! ରାସ୍ତାରେ ଯେତେବେଳେ ଯାହାକୁ କିଛି ପଚାରିଛି, କେବେହେଲେ ଅଭଦ୍ର ବ୍ୟବହାର ପାଇନାହିଁ; ସମସ୍ତେ ମତେ ଯଥାସାଧ୍ୟ ସାହାଯ୍ୟ କରିବାକୁ ଚେଷ୍ଟାକରିଛନ୍ତି ।

## ଡକ୍‌ଟର ଲଡଲାମ୍‌ଙ୍କ ଘରେ ସାର୍ବଜନୀନ କ୍ଲବ୍

୨୭ ।୯ ।୩୭

ରବିବାର ରାତି ଆଠଟାରେ ଡକ୍‌ଟର ଲଡ୍‌ଲାମଙ୍କ ଘରେ କ୍ଲବ୍‌କୁ ନିମନ୍ତ୍ରଣ । ଲଡଲାମଙ୍କ ଘର ଏଠୁ ପ୍ରାୟ ତିନିମାଇଲ ହେବ । ଚାଲି ଚାଲି ଗଲି । ସେତେବେଳେ ସେ ବୁଲି ଯାଇଥିଲେ । ମୁଁ ଦୁଆରର ବୋତାମ ଟିପିବା ମାତ୍ରେ ତାଙ୍କର କନ୍ୟା ଆସି ଭିତରକୁ ନେଇଗଲେ ଓ ମୋର ଓଭରକୋଟ୍ ଗୋଟେ ଘରେ ରଖିବାକୁ ଦେଖାଇଦେଇ, ମୋତେ ଉପର ବୈଠକଖାନାକୁ ନେଇଗଲେ । ସେ ଘରେ ଜଣେ ଜର୍ମାନ ତରୁଣୀ ପିଆନୋ-ବାଦନ-ରତା । ମତେ ଦେଖି ହସି ହସି କହିଲା, ''ମତେ ଚିହ୍ନ ଯେ ! ମୁଁ ସକାଳେ ତମ ସାଥିରେ ମଟରରେ ଯାଇଥିଲି ।'' ମୁଁ କହିଲି, ''ଓଃ ତମେ ଯାଇଥିଲ ?'' ତା'ପରେ ସେ ପିଆନୋ ଛାଡ଼ି ମୋ' ସାଥିରେ କଥା ହେବାକୁ ଲାଗିଲା । ସେ ଲଡଲାମଙ୍କ ଘରେ ରହେ । ଜର୍ମାନୀକୁ ଇଂରେଜୀ ଶିକ୍ଷା କରିବାକୁ ଏଠିକି ଆସିଛି । ପ୍ରାୟ ଛ'ମାସ ରହିଲାଣି – ଆଉ ଦୁଇ ମାସ ଖଣ୍ଡେ ରହିବ । ଅନ୍ୟ ଇଉରୋପୀୟ ଜାତିମାନଙ୍କ ପକ୍ଷରେ ଇଂରେଜୀ ବା ଅନ୍ୟ ଇଉରୋପୀୟ ଭାଷା ଶିଖିବା ବଡ଼ ସୁବିଧା । ଖୁବ୍ କମ୍ ସମୟରେ ଏମାନେ ଭଲକରି ଶିଖିଯାନ୍ତି– ଆମର ଜୀବନବ୍ୟାପୀ ସାଧନାରେ ମଧ୍ୟ ତା' ହୁଏ ନାହିଁ । ଲଡଲାମଙ୍କ ଘରେ ପୋଲାଣ୍ଡରୁ ଗୋଟେ ପିଲା ଆସି ରହିଚି । ସେ ଆରବର୍ଷ ଚାରିମାସ ମାତ୍ର ଏଠି ରହି ଇଂରେଜୀ ଶିଖିଯାଇଥିଲା; ଏବେ ସୁନ୍ଦର ଇଂରାଜୀ କହୁଛି ଓ ଇଂରେଜୀରେ ଏଠି ଏବର୍ଷ ଇକନମିକ୍‌ସ୍‌ରେ ଏମ୍.ଏ. ପଢ଼ିବ ।

କ୍ରମେ ଲଡଲାମ ଓ ଅନ୍ୟ ଅତିଥିମାନେ ଆସିଲେ । ଅନେକ ଜାତିର ଲୋକେ ଏଠିକି ଆସନ୍ତି । ଆମେରିକା, ରୁଷିଆ, ଜର୍ମାନୀ, ପୋଲାଣ୍ଡ, ମରିସସ୍, ଭାରତ, ଚୀନ୍ ପ୍ରଭୃତିର ଲୋକଙ୍କୁ ଏଠି ଭେଟିଲି । କୁଞ୍ଚିତ କେଶ ଓ କୃଷ୍ଣକାୟ ନିଗ୍ରୋ ଏଠି ଶ୍ୱେତାଙ୍ଗମାନଙ୍କ ପରି ବ୍ୟବହାର ପାଏ ଓ ସମ୍ମାନିତ ହୁଏ । ପ୍ରଥମେ ସମସ୍ତେ ଏକାଠି ହେଲା ପରେ ଚା'ପାନ ହେଲା । ଶହେ ଜଣ ଯାଏଁ ଉପସ୍ଥିତ ଥିଲେ । ଅନେକ ପୁରାତନ ଓ ନୂତନ ଭାରତୀୟ ଛାତ୍ର ମଧ୍ୟ ଦେଖା ଦେଲେ । ସେମାନଙ୍କ ସଙ୍ଗେ ପରିଚୟ ହେଲା । ମଜାର କଥା ଶୁଣିବ– କେତେକ ଭାରତୀୟ ଛାତ୍ର ମୋ' ଆଗରୁ ଆସି ୱାଇ. ଏମ୍. ସି. ଏ. ହଷ୍ଟେଲ୍‌ରେ ପଡ଼ିରହିଛନ୍ତି, ବସା ଖୋଜି ପାଇପାରିନାହାନ୍ତି । ମୁଁ ଗୋଟିଏ ରାତି ମାତ୍ର ରହିଲା ପରେ ତହିଁ ଆରଦିନ ବସା ଖୋଜି ସେଠା ଛାଡ଼ି

ଆସିଲି । ମତେ ସେମାନେ ସେଠି ଦେଖିଥିଲେ ଓ ମତେ ଦେଖି ମୁଁ ସାଙ୍ଗେ ସାଙ୍ଗେ କିପରି ବସା ପାଇଲି ବୋଲି ଆଶ୍ଚର୍ଯ୍ୟ ହେଲେ ।

ଡକ୍ଟର ଲଡ୍‌ଲାମ୍ ମତେ ଚା' ଏକ କପ୍ ବଢ଼େଇଦେଲେ । ମୁଁ କହିଲି, ''ଚା ଖାଏନା– କ୍ଷମା କରନ୍ତୁ ।'' ସେ କହିଲେ, ''ତମକୁ ଖାଇବାକୁ ହେବ, ଏହା ସଂପୂର୍ଣ୍ଣ ନିର୍ଦ୍ଦୋଷ ପାନୀୟ, ନିରାମିଷ''– ମୁଁ ଗ୍ରହଣ କଲି । ଚା'ସାଥିରେ ବିସ୍କୁଟ ବି ଥିଲା, ମୁଁ ଗୋଟିଏ ଆଣିବାରୁ ସେ ଦୁଇଟା ଆଣିବାକୁ କହିଲେ, ଚା'ପାନ ପରେ ସମସ୍ତେ ବସିଲେ । ତା'ପରେ ସନ୍ଧ୍ୟାର ନିର୍ଘଣ୍ଟ ଆରମ୍ଭ ହେଲା । ପ୍ରଥମେ ଜଣେ ଶ୍ୱେତ ନିଗ୍ରୋ ପିଆନୋ ବଜେଇଲେ, ତା'ପରେ ଆଉ ଜଣେ ବେହେଲା ବଜେଇଲେ । ତା'ପରେ ଜଣେ ନିଗ୍ରୋ ଇଂରେଜୀ ଗୀତ ଗାଇଲେ– ଆଉ ଜଣେ ତାଳ ରଖି ପିଆନୋ ବଜାଉଥାନ୍ତି । ଜଣେ ଋସିଆନ ମିଷ୍ଟ୍ରେସ୍, ତାଙ୍କର କ୍ଲବ ଓ ଲାଇବ୍ରେରୀ ସମ୍ବନ୍ଧରେ କେତେ କଥା କହିଲେ । ଯେଉଁ ସଙ୍ଗୀତ ହେଲା, ତାହା ଭାରତୀୟ ସଙ୍ଗୀତଠାରୁ ଆଦୌ ମଧୁରତର ନୁହେଁ । ଏସବୁ ହେଉ ହେଉ ରାତି ପ୍ରାୟ ଏଗାରଟା– ମୁଁ ଫେରୁଫେରୁ ସାଢ଼େ ଏଗାର ।

## ବିଲାତରେ ଶିଶୁ ଓ ପୋଷ୍ୟପୁତ୍ର ସଂଘ

୧୪୦ ନର୍ଦମ୍ବରଲାଣ୍ଡ ରୋଡ଼
ନିଉକାଶଲ ଅନ୍ ଟାଇନ
୨୬।୧୦।୩୭

ଏଠାର ମା' ଓ ଶିଶୁମାନଙ୍କର କଥା ଲେଖିବାକୁ ଲେଖିଥିଲ– ମୁଁ ଏ ପର୍ଯ୍ୟନ୍ତ ପ୍ରତିଷ୍ଠିତ ହୋଇନି; ତେଣୁ ସେ ପ୍ରକାର ଅନୁଷ୍ଠାନ ସବୁ ଏଯାଏଁ ଭିଜିଟ୍ କରିନି; କିନ୍ତୁ ନିଶ୍ଚେ କରିବି ଓ ବିଶେଷ ବିବରଣ ଦେବି । ତେବେ ଜାହାଜରେ ଓ ଏ ଦେଶରେ ଶ୍ୱେତାଙ୍ଗୀ ଜନନୀ ଏବଂ ଶ୍ୱେତାଙ୍ଗ ଶିଶୁ ମୁଁ ବହୁତ ଦେଖିଲିଣି । ତମେ ଶୁଣି ଆଶ୍ଚର୍ଯ୍ୟ ହେବ ଯେ, ଏଠାର ମା' ଓ ଶିଶୁ, ଆମ ଦେଶର ମା' ଓ ଶିଶୁ ଭିତରେ କିଛି ହେଲେ ପାର୍ଥକ୍ୟ ନାହିଁ– କେବଳ ଚମ ଓ ପୋଷାକ ଛଡ଼ା । ଏଠାର ପିଲାଗୁଡ଼ିକ ଆମ ଦେଶର ପିଲାଙ୍କ ପରି ଦୁଷ୍ଟ ଓ ଉଝଟ ପଣରେ ମା' ଗୁଡ଼ାକୁ ଖାଇପକାନ୍ତି । ଏଡ଼ିନ୍‌ବରାରେ ମୁଁ ଯା' ଘରେ ଥିଲି, ତା'ର ଦି'ଟା ପିଲା– ଅଣ୍ଡିରା ଓ ମାଈ । ଭାରି ସୁନ୍ଦର ସ୍ୱାସ୍ଥ୍ୟ ସେମାନଙ୍କର । ଗୋରା ତକ୍ ତକ୍ ଓ ଉଲର ପୋଷାକ ପିନ୍ଧି ଭାରି ଚମତ୍କାର ଦେଖାଯାନ୍ତି । ମୁଁ ସେମାନଙ୍କର ମା' ଆଗରେ ଦିନେ ପିଲାଙ୍କର ପ୍ରଶଂସା

କଲି । ମା' କହିଲା, ''ତମେ କ'ଣ ସତରେ ଭାବୁଛ ଯେ ଏ ପିଲା ଭଲ ? ମତେ ଯେ ସେମାନେ ଖାଇଯାଉଛନ୍ତି, ଏତେ ଦୁଷ୍ଟ !'' ସତକୁ ସତ ସେ ଲାଣ୍ଡଲେଡ଼ି ବିଚାରୀ ପିଲାଙ୍କୁ ଚିତ୍‌କାର କରି ଗାଳିଦେବାର ଓ ପିଲାଗୁଡ଼ାକ ଗାଳି, ଧମକ ବା ମାଡ଼ରେ ଭେଁ ଭେଁ କାନ୍ଦିବାର ମୁଁ ବରାବର ଶୁଣୁଥିଲି ।

ଜାହାଜରେ ବି ଏହି ଦୃଶ୍ୟ ଦେଖିଥିଲି । କିନ୍ତୁ ଜାହାଜର ଉପର ମହଲାରେ – ଫାଷ୍ଟ କ୍ଲାସରେ ୪-୫ଟି ଜାପାନୀ ପିଲା ଥାନ୍ତି– ଏମିତି ଚିରସୁଖୀ ପିଲା ମୁଁ କେଉଁଠି ଦେଖିନି । ସେମାନଙ୍କୁ କାନ୍ଦିବାର ଆମେ କେବେ ଦେଖିନୁ । ସବୁବେଳେ ଜାହାଜର ବାରଣ୍ଡାରେ ହସି ଖେଳି, ଜାହାଜକୁ ମୁଖର କରୁଥାନ୍ତି । ମୁଁ ଶୁଣିଥିଲି ଜାପାନରେ ପିଲାଏ କାନ୍ଦନ୍ତିନି– ସେଠି ଦେଖିଲି ତା, କିନ୍ତୁ ଠିକ୍ ଦେଶକୁ ନ ଗଲେ ସତକଥା ବୁଝିବା କଠିନ ।

ଏଠାରେ ନାରୀ ସ୍ୱାଧୀନ – ତା'ର ଜୀବନର ବିକାଶରେ କୌଣସି ବାଧା ନାହିଁ– ସମାଜ, ପରିବାର ବା ଧର୍ମର । ସେ ପୁରୁଷ ପରି ଯାହା ଇଚ୍ଛା ତାହା ହୋଇପାରେ ଓ କରିପାରେ । ଏ ସମ୍ବନ୍ଧରେ ମୁଁ ବୃହତ୍ତର ବିବରଣୀରେ ଆଲୋଚନା କରିବି । କିନ୍ତୁ ଗୋଟେ କଥା କହି ରଖେ – ସ୍ୱାଧୀନତାକୁ ସଂପୂର୍ଣ୍ଣ ଉପଭୋଗ କରିବା ପାଇଁ ଅନେକେ ବିବାହ କରନ୍ତି ନାହିଁ । ସେମାନଙ୍କର ଯୌନ-ଜୀବନ କିପରି କଟେ ମୁଁ ଜାଣିନି ବା ଜାଣିବାକୁ ଚେଷ୍ଟା କରିନି; କିନ୍ତୁ ମାତୃ-ଜୀବନ କିପରି କଟେ ଜାଣି ମୁଁ ଆଶ୍ଚର୍ଯ୍ୟ ହେଲି ଏବଂ ତମେ ମଧ୍ୟ ଆଶ୍ଚର୍ଯ୍ୟ ହେବ । ଇଂଲଣ୍ଡରେ ପୋଷ୍ୟପୁତ୍ର ଗ୍ରହଣ ଲାଗି ଗୋଟେ ସୋସାଇଟି ଅଛି । ଏଇ ସୋସାଇଟିର କାମ ଅନାଥ ଶିଶୁ ଯୋଗାଇବା । ଏବେ ଏହି ସୋସାଇଟି ପ୍ରକାଶ କରିଛି ଯେ, ସେମାନେ ଅନାଥ ଶିଶୁ ଯୋଗାଇପାରୁନାହାନ୍ତି, କାରଣ ଅସଂଖ୍ୟ ଅବିବାହିତା ମହିଳା, ସେମାନଙ୍କର ମାତୃକ୍ଷୁଧାର ନିବୃତ୍ତି ପାଇଁ ଏହି ଶିଶୁମାନଙ୍କୁ ପୋଷିବାକୁ ନେଇଯାଉଛନ୍ତି । ସେମାନେ ବିବାହ କରିବେନି ସତ– କାହାରି ଅଧୀନ ହେବେନି ସତ;– କିନ୍ତୁ ଗୋଟିଏ ଗୁଲଗୁଲ ମୁହଁର ଦରୋଟି କଥା ଶୁଣିବାକୁ ଓ ନବନୀତ କୋମଳ ବପୁର ସ୍ପର୍ଶ ପାଇବା ପାଇଁ ଏମାନେ ଅବରୁଦ୍ଧ ମାତୃ-ସ୍ନେହର ମନ୍ଦାକିନୀ ଧାରା ଢାଳି ଦେବେ ନାହିଁ କାହିଁକି ? ନାରୀ ଜୀବନର ସୁଖ ଯେ ଦେବାରେ, ତ୍ୟାଗରେ– ତା'ର ପ୍ରମାଣ ଏହା । ଆଶାକରେ, ଏହା ପଢ଼ିବା ପରେ ତମର ଶିଶୁ ପୁତ୍ରଟି ପ୍ରତି ମମତା ଆହୁରି ବଢ଼ିଯିବ ।

# ସାହେବି ଖାଦ୍ୟ ସଙ୍ଗେ ପ୍ରଥମ ପରିଚୟ

ନିଉକାସ୍‌ଲ ଅନ୍ ଟାଇନ, ଇଂଲାଣ୍ଡ
୧୨।୧୧।୩୭

ସାହେବମାନେ କେବଳ ସିଝେଇ ଖା'ନ୍ତି*। ମସଲା ତ ଏମାନଙ୍କ ଦେଶରେ ହୁଏନାହିଁ– ଏମାନେ ତା'ର ବ୍ୟବହାର ଜାଣିବେ କାହୁଁ ? ପରଷିଲା ବେଳେ ଖାଦ୍ୟ ସଙ୍ଗେ ଲୁଣ, ଗୋଲମରିଚ ଗୁଣ୍ଡ (ସେଇ ଏକମାତ୍ର ମସଲା) ଦିଆହୋଇଥାଏ; ଖାଇବା ଲୋକ ଖାଦ୍ୟ ସଙ୍ଗେ ସେ ସବୁ ମିଶେଇ ଖାଇବ । ଭାରତବର୍ଷରେ କେବେ ଯଦି ଭୁଲରେ ବ୍ୟଞ୍ଜନରେ ଲୁଣ ନପଡ଼ିଥାଏ ବା ଟିକିଏ ବେଶି ପଡ଼ିଯାଇଥାଏ, ତେବେ ରାନ୍ଧୁଣୀର କି ଦୁର୍ଦ୍ଦଶା ଓ ଅପମାନ ! ଏଠି ସେ ସବୁରୁ ମୁକ୍ତ । ମିଶ୍ରଣ ମଧ୍ୟ ଏମାନେ ଜାଣନ୍ତି ନାହିଁ । ସିଝା ମାଂସ ଖାଲି ଥୋଇଦେବେ, ଆଳୁ ସିଝେଇ ମେଞ୍ଚାଏ ଥୋଇଦେବେ– ତମେ ସେସବୁକୁ ଲୁଣ ମସଲା ଦେଇ ମିଶାମିଶି କରି ଖାଇବ । ମଧ୍ୟାହ୍ନ ଭୋଜନ ଆରମ୍ଭରେ ଏମାନେ Soup (ସୁପ) ନାମକ ତରଳ ଖାଦ୍ୟ ପ୍ରଥମେ ଖା'ନ୍ତି । ଏହା ଆମର ପାଣିଆ ଡାଲମା ପରି । ସାମାନ୍ୟ ଫଳମୂଳ ବା ଡାଲି ଇତ୍ୟାଦିକୁ ସାମାନ୍ୟ ମାଂସ ଲାଗିଥିବା ହାଡ଼ ସହ ପାଣିରେ ବହୁତ ବେଳଯାଏ ସିଝାଯାଏ; ହାଡ଼ସବୁ କାଢ଼ି ଦିଆଯାଏ– ବାକୀ ତରଳ ବସ୍ତୁଟା ସୁପ । ଏହାକୁ ମଧ୍ୟ ଲୁଣ ଦେଇ ଖାଇବାକୁ ହେବ । ଏହା କିନ୍ତୁ ବେଶ ରୁଚିକର ହୁଏ ଓ ସ୍ୱାସ୍ଥ୍ୟ ପକ୍ଷରେ ଉପକାରୀ ।

ଏଠି ରାନ୍ଧୁଣୀକୁ ଆଦୌ ବେଶି ଶ୍ରମ କରିବାକୁ ପଡ଼େନା – କାରଣ ଅଧିକାଂଶ ଖାଦ୍ୟ ବଜାରରେ ତିଆରିହୋଇ ବିକ୍ରି ହୁଏ । ଆମର ସେଠି ବଜାର ଜିନିଷ ଖାଇବା ଆପଦପୂର୍ଣ୍ଣ – ଏଠି କିନ୍ତୁ ଓଲଟା । ସରକାର ଲୋକଙ୍କ ସ୍ୱାସ୍ଥ୍ୟର ଏପରି ତତ୍ତ୍ୱ ନିଅନ୍ତି ଯେ, ଖରାପ ଜିନିଷ କେହି ବିକିବା ଅସମ୍ଭବ । ଲୋକଙ୍କର ମଧ୍ୟ ସାଧାରଣ ସାଧୁତା ଆମ ଦେଶ ଅପେକ୍ଷା ଏଠି ବେଶି । ତେଣୁ ଖାଇବା ଜିନିଷରେ ବିଷ ଦେଇ ଟଙ୍କା କରିବାକୁ ଏଠି କେହି କଳ୍ପନା କରିବନି । ଏମାନେ ଘୁଷୁରି ମାଂସ ଖା'ନ୍ତି । ଘୁଷୁରି ଭାରତବର୍ଷରେ ଘୃଣ୍ୟ ଜୀବ; କିନ୍ତୁ ଏଠି ସେମାନେ ରାଜପୁତ୍ର ପରି ରଖାହୁଅନ୍ତି । ଉତ୍ତମ ଗୃହ, ଉତ୍ତମ ଖାଦ୍ୟ ଦେଇ ସେମାନଙ୍କୁ ପରିଷ୍କୃତ ପରିଚ୍ଛନ୍ନ କରି ରଖାହୁଏ ଓ ସେପରିଭାବରେ ରହି ସେମାନେ ଯେପରି ମୋଟା ହୁଅନ୍ତି, ସେମାନଙ୍କର ମାଂସର

* ଏହା ଇଂଲାଣ୍ଡର ପ୍ରଥମ ଅନୁଭୂତିର ବର୍ଣ୍ଣନା । ଲେଖକର ବର୍ତ୍ତମାନ ମତ ଯେ, ଆମମାନଙ୍କର ଖାଦ୍ୟ ସଂପୂର୍ଣ୍ଣ ଇଉରୋପୀୟ ରୀତିରେ ପ୍ରସ୍ତୁତ ଓ ପରିବେଷିତ ହେଲେ, ଜାତିର ସମୂହ କଲ୍ୟାଣ ହେବ ।

ମୂଲ୍ୟ ଖାଦ୍ୟ ଭାବରେ ସେହିପରି ବଢ଼େ । ତମେ ସକାଳୁ ନ ଉଠୁଣୁ 'ସହକାରୀ ଭଣ୍ଡାର' (Co-operative Store) ରୁ ଦୁଧବାଲା ଠିପିମରା ବୋତଲରେ ତମର ଯେତେ ଦୁଧ ଦରକାର, ତାହା ଦୁଆରେ ଥୋଇଯାଇଥିବ । ଦୁଆରେ ପଡ଼ିଥିଲେ ମଧ୍ୟ କେହି ତାକୁ ଚାହିଁବେ ନାହିଁ – ଆଉ ସେ ଦୁଧ ନିର୍ଦ୍ଦୋଷ ଓ ଖାଣ୍ଟି । ଭାରତବର୍ଷରେ ତାହା ତମେ ପାଇବନି ।

ମୁଁ ଏଠାରେ ମାଂସ ଖାଇପାରିଲିନି– କେବଳ ମାଛ ଓ ଅଣ୍ଡା ଖାଏ । ମଝିରେ ମଝିରେ ମୁଁ ମାଛ ବା ନିରାମିଷ ତରକାରି କରେଁ । ଏଡ଼ିନ୍‌ବରା ଓ ଏଠି, ମୁଁ ଯାହା ଦେଖୁଛି, ଭାରତୀୟ ତରକାରିର ଭାରି ପ୍ରଶଂସା । ତେବେ 'କରୀ' (Curry) କହିଲେ ଏମାନେ କେବଳ ମସଲାଦିଆ ମାଂସ ତରକାରି ବୁଝନ୍ତି । ଭାରତର ପୁରବଧୂ ଯେ ଚଉରାଶୀ ପ୍ରକାର ବ୍ୟଞ୍ଜନ ରାନ୍ଧି କୁଣିଆ ଚର୍ଚ୍ଚା କରିପାରେ, ତା' ଏମାନଙ୍କର ଧାରଣା ନାହିଁ । ତା' ଛଡ଼ା ଆମର ପିଠାପଣା ତ ଅଛି । ଗଜା, କାକରା, ରସଗୋଲା ସଙ୍ଗେ ତାଳ ଦେବାକୁ ଏମାନଙ୍କର କିଛି ନାହିଁ । ଆମର ସେହି ମାଂସ ତରକାରିଟି ଯେଉଁମାନେ ଚାଖିଛନ୍ତି, ତାଙ୍କ ପାଟିରୁ ମୁଁ କେତେ ଥର ଶୁଣିଲିଣି ("Oh, curry is lovely") ''ଓଃ, କର୍‌ରୀ ବଡ଼ ଚମତ୍କାର !''

ଆମର ରନ୍ଧନ ପ୍ରଣାଳୀ ଅତ୍ୟନ୍ତ ଆସ୍ୱାଦକର ଓ ସୁକୁମାର ସତ; କିନ୍ତୁ ପ୍ରସ୍ତୁତ କରିବାରେ କୁଳବଧୂର ଜୀବନ ନିଏ ଓ ଲୋଭ ଦେଖାଇ ପୁରୁଷକୁ ପେଟୁ ଓ ଅଳସୁଆ କରାଏ । ସାଦାସିଧା ଖାଦ୍ୟ ଖାଇ ଏମାନେ ଅତ୍ୟନ୍ତ ଚଟ୍‌ପଟ୍ ଓ କାର୍ଯ୍ୟକ୍ଷମ । ପେଟେ ଖାଇ ସାଙ୍ଗେ ସାଙ୍ଗେ ଏମାନେ କାମକୁ ଯିବେ । ଖରାବେଳେ ଶୋଇବା କ'ଣ ଏମାନେ ଜାଣନ୍ତିନି । ଆମର ତ ଏଣେ ଭାତ ବଢ଼ାହେଲାବେଳକୁ ତେଣେ ଶେଯ ପରା ହେବାର କଥା – ଜାତି ଏଥିରେ ବଢ଼ିବ କିପରି କହ ? ଓଡ଼ିଆମାନେ ଯେ ଅଳସୁଆ ତା'ର ଏକ ବଡ଼ କାରଣ ଖାଦ୍ୟରେ ରହିଛି । ଆଶାକରେ ତମେ ଏଥିରେ ଏକମତ ହେବ । ତା'ଛଡ଼ା କେବଳ ରାନ୍ଧିବାରେ ଯଦି ଜାତିର ଅଧକର ଅର୍ଥାତ୍ ନାରୀମାନଙ୍କର ଜୀବନ କଟେ, ତେବେ ଜାତିର ଭବିଷ୍ୟତ ବଂଶର କି ଆଶା ? ଏ ବିଷୟଟା ଅତ୍ୟନ୍ତ ଚିନ୍ତାର ଯୋଗ୍ୟ ।

ରନ୍ଧନ ଅପେକ୍ଷା ଏମାନଙ୍କର ପରିବେଷଣରୁ ଆମର ଆହୁରି ଶିଖିବାର ଅଛି । ଆମର ପରିବେଷଣ ଦୋଷରୁ ହିଁ ଆମେ ଅତି ଭୋଜନ କରୁ ଓ ଅନେକ ଖାଦ୍ୟ ଆମର ନଷ୍ଟ ହୁଏ । ଏମାନଙ୍କର ପରିବେଷଣରେ ଗୋଟିଏ ଖାଦ୍ୟ ଖାଇସାରିଲା ପରେ ଆଉ ଗୋଟିଏ ଖାଦ୍ୟ ଆସେ – ତେଣୁ ଅଇଣ୍ଠା ଛାଡ଼ିଯିବାର ଉପାୟ ନାହିଁ । ଆମର ସବୁ ଖାଦ୍ୟ ଏକାଠି ବଢ଼ାହୁଏ ଓ ପ୍ରଥମ ପରଷା ଶେଷ ନହେଉଣୁ ଦୋଅଡ଼ ଅଜଡ଼ା ହୁଏ ।

ଫଳରେ ଗୁଡ଼ାଏ ଆମେ ଖାଇବାକୁ ବାଧ୍ୟହେଉ, ଗୁଡ଼ାଏ ମଧ୍ୟ ଛାଡ଼ିଯାଉ– ବିଶେଷତଃ ଭୋଜିମାନଙ୍କରେ । ଭୋଜିମାନଙ୍କରେ ଯାହା ଖାଉ ତାହା ମନୁଷ୍ୟ ଉଦର ପ୍ରତି ଏକ ଅତ୍ୟାଚାର ଛଡ଼ା ଆଉ କିଛି ନୁହେଁ । ଇଂଲଣ୍ଡରେ କିନ୍ତୁ ସ୍ୱୟଂ ସମ୍ରାଟ ମଧ୍ୟ ସାଧାରଣତଃ ତିନିଟି ଖାଦ୍ୟ ଖାଇଥାନ୍ତି ।

**ବିଲାତରେ ଭାରତ ସମ୍ବନ୍ଧରେ ଅଜ୍ଞତା –**

ଭାରତବର୍ଷର କଥା ଏଠା ଖବରକାଗଜରେ ଆଦୌ ବାହାରେ ନାହିଁ । ବଡ଼ଲାଟ ଲାହୋର ବା ବିକାନୀରରେ ଦରବାର କଲେ ତା'ର ବିସ୍ତୃତ ବିବରଣୀ ବାହାରିଲା; କିନ୍ତୁ ଗାନ୍ଧି ବା ରବୀନ୍ଦ୍ରନାଥ ବା କଂଗ୍ରେସ କ'ଣ କରୁଛି, ତା'ର କିଛିହେଲେ ଖବର ଏଠିକି ଆସେ ନା । ଏଠାର ଲୋକେ ଯେ ଭାରତବର୍ଷ ସମ୍ବନ୍ଧରେ ଘୋର ଅଜ୍ଞ, ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି କାରଣ ନାହିଁ । କେବଳ ଗାନ୍ଧି ବୋଲି ଜଣେ କିଏ ଲୋକଙ୍କୁ ମତେଇ ଇଂରେଜଙ୍କୁ ଭାରତରୁ ତଡ଼ିବାକୁ ଚେଷ୍ଟାକରୁଛି, ଏଇ କଥା ଏଠି ସାଧାରଣ ଲୋକେ ଜାଣନ୍ତି ଏବଂ ସେହି କାରଣରୁ ଗାନ୍ଧି ନାଁ ଚାରିଆଡ଼େ ବ୍ୟାପ୍ତ । ଏଡ଼ିନ୍‌ବରା ଗଲାବେଳେ ମୋତେ ଗୋଟେ ବୁଢ଼ା ପଚାରିଲା– ''ମୁଁ କାଗଜରେ ପଢ଼ିଥିଲି ଜଣେ କିଏ ତମ ଲୋକଙ୍କୁ ବ୍ରିଟିଶ ବିରୁଦ୍ଧରେ ମତଉଥିଲା ପରା ? କାହିଁକି ସେ ସିମିତି କରୁଥିଲା ? ତମର କି ଲାଭ ସେଥିରେ ?'' ଆଉ ଜଣେ ବାଳିକା ଏବେ ରବୀନ୍ଦ୍ର-ନାଥଙ୍କ ଛବି ମୁଁ ଦେଖେଇଦେବାରେ ପଚାରିଲା, ''ସେ କ'ଣ ବଞ୍ଚିଛନ୍ତି ?'' ଏ ଘଟଣାର ପ୍ରାୟ ତିନିବର୍ଷ ପରେ ରବୀନ୍ଦ୍ରନାଥଙ୍କର ମୃତ୍ୟୁ ହୁଏ । ଏଥିରୁ ଏଠା ଲୋକେ ଭାରତବର୍ଷ ସମ୍ବନ୍ଧରେ କ'ଣ ଜାଣନ୍ତି ଜାଣିବ । ମତେ ବି ଜଣେ ସ୍ତ୍ରୀ ଥରେ ପଚାରିଲା, ''ତମେ କ'ଣ ଗୋଟିଏ ସ୍ତ୍ରୀ ବିଭା ହୋଇଚ ?'' ଅର୍ଥାତ୍ ତା'ର ଧାରଣା ବୋଧହୁଏ ଆମର ସେଠି ପ୍ରତି ଯୁବକର ଚାରି ପାଞ୍ଚଟା ସ୍ତ୍ରୀ ।

## ବିଲାତରେ ଶିଶୁ ଓ ଯୀଶୁ

ନିଉକାସଲ-ଅନ୍-ଟାଇନ

୨୮ ।୧୧ ।୩୭

ଏଠାରେ Day Nursery ସବୁ ଅଛି, ଯେଉଁଠି ଶ୍ରମିକ-ବନିତା ମାନେ ତାଙ୍କର ପିଲାଙ୍କୁ ଛାଡ଼ିଦେଇ ସକାଳ ୬ ।୩୦ରେ କାମକୁ ଯାନ୍ତି ଓ ସଂଧ୍ୟା ୬ ।୩୦ରେ ପିଲାଙ୍କୁ ଧରି ଘରକୁ ଫେରନ୍ତି । ସେଥିପାଇଁ ପ୍ରତ୍ୟେକ ମା'କୁ ଛ'ପେନ୍‌ସ କରି ପ୍ରତିଦିନ ଦେବାକୁ ପଡ଼େ ।

ଭାରତବର୍ଷ ପରି ଏଠି ମଧ୍ୟ ଝିଅର ପିଲା ହେଲେ ମା' ଦେଖାଦେଖି କରେ । ପୋଖତା ଘର ପାଖେଇଲେ, ହୁଏତ ଝିଅ ମା' ଘରକୁ ଯାଏ ବା ମା'ଝିଅ ଘରକୁ ଆସେ । ସାଧାରଣତଃ, ମା' ଯାଏ ଝିଅ ଘରକୁ । ପିଲା ଚାରିମାସ ଖଣ୍ଡେ ହୋଇ ଆସିଲେ ଯେଝା ଘରକୁ ଯିଏ ଯାନ୍ତି । ଛୋଟ ପିଲାମାନେ ଏଠି ମଧ୍ୟ ହଗା ମୂତା କରନ୍ତି ଏବଂ ଆମେ ଯିମିତି କନା ବ୍ୟବହାର କରୁଁ ଏଠି ସେପରି ନେପିକ୍ (ଗୋଟେ ପ୍ରକାର ଛୋଟ ଜଙ୍ଘିଆ) ବ୍ୟବହାର କରନ୍ତି । ସେଗୁଡ଼ାକ ବାରମ୍ବାର ବଦଳେଇବାକୁ ହୁଏ ଓ ଗୋସେଇଁ ମା' ରାତିରେ ବାରମ୍ବାର ଉଠି ତା' କରେ ।

ସାଧାରଣତଃ ଘରେ ଘରେ ପୋଖତା ଘର ହୁଏ । ବର୍ତ୍ତମାନ ଅବଶ୍ୟ ନର୍ସିଙ୍ଗ୍ ହୋମ୍ ପ୍ରଭୃତି ବାହାରିଛି; କିନ୍ତୁ ସେ ସବୁ ଖର୍ଚ୍ଚ କଥା । ଆମ ହୋଟେଲବାଲାର ଶ୍ୱଶୁର କହୁଥିଲା, ତା'ର 'ବଡ଼ଝିଅ ଜନ୍ମହେଲାବେଳେ ତାକୁ ତିରିଶ ସିଲିଂ ଖର୍ଚ୍ଚ କରିବାକୁ ପଡ଼ିଥିଲା; କିନ୍ତୁ ଏବେ ସେ ଝିଅର ଝିଅ ଜନ୍ମ ହେଲାବେଳକୁ ତାକୁ ତେଇଶ ପାଉଣ୍ଡ (୨୩ ´୧୩ଟଙ୍କା) ଖର୍ଚ୍ଚ କରିବାକୁ ପଡ଼ିଲା – କାରଣ ସେମାନେ ନ ଜାଣି ଝିଅକୁ ନର୍ସିଙ୍ଗ୍ ହୋମକୁ ନେଇଯାଇଥିଲେ ।

ଏଠାରେ ପିଲେ ଆମ ଆଡ଼ର ପିଲାଙ୍କ ପରି ଏଠି ସେଠି ହଗିବାର ଦେଖାଯାଏ ନାହିଁ । କାରଣ ଛ'ମାସ ହେଲାକ୍ଷଣି ମା' ପିଲାକୁ କମୋଡ୍ ଉପରେ ବସି ହଗିବା ମୂତିବାକୁ ଶିଖାଏ । କ୍ରମେ ପିଲାଙ୍କର ଏପରି ଅଭ୍ୟାସ ହୋଇଯାଏ ଯେ, ହଗା-ମୂତ ମଡ଼େଇଲେ ପିଲେ ସେ ଜିନିଷଟା ଖୋଜିବେ; କଥା ନ କହି ପାରୁଥିଲେ ମଧ୍ୟ – ଆଉ ବୁଦ୍ଧିମତୀ ମା'ତ ଚଟ୍‌କିନି ଜାଣି ଦେବ ପିଲା କ'ଣ ଦରକାର କରୁଛି; ସେ ସଙ୍ଗେ ସଙ୍ଗେ ପିଲା ପାଖକୁ ସେ ଜିନିଷ ଆଣି ରଖିଦେବ ବା ପିଲାକୁ ସେଠିକି ନେଇଯିବ । ଆମ ଦେଶର ମା'ମାନେ ଏତକ କରୁଥିଲେ ଆମର ଘରଦ୍ୱାର ଅନେକ ସଫାସୁତୁରା ରହନ୍ତା ।

ରବିବାରରେ ମୁଁ ଏଠି ବରାବର ଚର୍ଚ୍ଚକୁ ଯାଏ । ଚର୍ଚ୍ଚରେ ସ-ସଙ୍ଗୀତ ପ୍ରାର୍ଥନା ମତେ ଭାରି ଭଲଲାଗେ । ମୁଁ ବି ସମସ୍ତଙ୍କ ସାଥିରେ ମିଶି ଇଂରେଜୀ ଗୀତ ଗାଇବାକୁ ଚେଷ୍ଟାକରେ । ଟୋକା ଟୋକୀ ଚର୍ଚ୍ଚକୁ ଆଦୌ ଯାନ୍ତିନାହିଁ – କେବଳ ବୟସ୍କ ଓ ବୁଢ଼ା ବୁଢ଼ୀ ଯାନ୍ତି । ଆଜି ତ ଯାଇଥିଲି ଗୋଟେ ଚର୍ଚ୍ଚକୁ । ଧର୍ମଯାଜକ ଦୁଃଖ ପ୍ରକାଶ କରି ବକ୍ତୃତା କରୁଥିଲେ ଯେ ଏ ଦେଶରେ ଶତକଡ଼ା ତିନିଜଣ ମାତ୍ର ରବିବାରରେ ଚର୍ଚ୍ଚକୁ ଆସୁଛନ୍ତି; ବାକୀ ୯୭ ଜଣ ଆମୋଦ-ପ୍ରମୋଦରେ ସମୟ କଟାନ୍ତି । ଏଠି ବି ଲୋକେ ଧର୍ମପାଇଁ ପ୍ରାଣବଳି ଦେଇଛନ୍ତି ଓ ନାନା ଦୁଃଖକଷ୍ଟ ସହିଛନ୍ତି । ଆଜି ନିଜର ଧର୍ମ ପାଳନ କରିବା ପାଇଁ ଏ ଦେଶରେ କୌଣସି ବାଧା ନାହିଁ– କିନ୍ତୁ ଲୋକେ ଧର୍ମକୁ

ପଚାରୁନାହାନ୍ତି । ଯେଉଁମାନେ ସୁଖରେ ଅଛନ୍ତି, ସେମାନଙ୍କର ଈଶ୍ୱରଙ୍କୁ ଡାକିବା ଦରକାର ପଡୁନାହିଁ; ଯେଉଁମାନେ ଦୁଃଖରେ ଅଛନ୍ତି, ସେମାନଙ୍କର ଈଶ୍ୱରଙ୍କୁ ଡାକି କିଛି ଲାଭନାହିଁ । ଏହିପରି ଭାବରେ ବୋଧହୁଏ କ୍ରମେ ଈଶ୍ୱର-ବିଶ୍ୱାସ କମିଯାଉଛି ।

କିଛି ଚର୍ଚ୍ଚରେ ହିଁ ତମେ ଏଠି ଅସଲ ଲୋକଙ୍କୁ ପାଇବ । ଆଉ ରବିବାର ଦିନ ସନ୍ଧ୍ୟାରେ ମୁଁ ଗୋଟିଏ ଚର୍ଚ୍ଚକୁ ଯାଇଥିଲି । ପ୍ରାର୍ଥନା ସରିଲା, ଲୋକମାନେ ଚାଲିଗଲେ । ମୁଁ ଚର୍ଚ୍ଚ ଭିତରେ ଗୋଟିଏ କୋଣରେ ଠିଆହୋଇ କାନ୍ଥରେ ଥିବା ଚିତ୍ର ଦେଖୁଛି, ଏପରି ସମୟରେ ବିପରୀତ କୋଣରୁ ଜଣେ ଲୋକ ଆସିଲା ଓ ଦୁଇ ତିନିଟା ପ୍ରଶ୍ନରେ ମୋର ପରିଚୟ ନେଇ ମତେ ଏକପ୍ରକାର ଭିଡ଼ିନେଲା ତା'ଘରକୁ । ତା'ଘର ପ୍ରାୟ ସହରରୁ ଚାରି ମାଇଲ ଦୂରରେ । ଆମେ ବସ୍‌ରେ ଗଲୁ– ସେ ଟିକଟ କଲା– ତା'ର ସ୍ତ୍ରୀ ତା' ସାଥିରେ ଥାଏ । ଘରେ ପହଞ୍ଚି ମତେ ଅଭ୍ୟର୍ଥିତ କରିବାକୁ ଲାଗିଲା । ମୁଁ ତାକୁ ବାଟରେ ପଚାରିଲି, ''ତମେ ମତେ ଏତେ ଆଗ୍ରହ କରିବାର କାରଣ ?'' ସେ କହିଲା, ''ଦେଖ, ପ୍ରକୃତ ଖ୍ରୀଷ୍ଟିଆନ ପକ୍ଷରେ ଜଗତର ସବୁ ଜାତିର ଲୋକ ଭାଇଭଉଣୀ ପରି । ଯେଉଁମାନେ ଖ୍ରୀଷ୍ଟିଆନ ବୋଲି ପରିଚୟ ଦେଇ ଈଶ୍ୱରଙ୍କୁ ଜଗତର ପିତା ବୋଲି ମନେକରନ୍ତି, ତାଙ୍କର ସେହିପରି ବ୍ୟବହାର କରିବା ଉଚିତ । ମୁଁ ମୋର ଧର୍ମମତକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟାକରୁଛି– ପରଦେଶୀ ଓ ପରଧର୍ମୀମାନଙ୍କ ପ୍ରତି ବନ୍ଧୁତା ଦେଖାଇ ।'' ଲୋକଟି ଇନ୍‌ସିଓରେନ୍‌ସ ଏଜେଣ୍ଟ; କିନ୍ତୁ ବେଶ୍ କଲଚର୍ଡ । ତା'ର ଝିଅ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ପଢ଼େ– ସରକାରୀ ବୃତ୍ତି ପାଇ । ସେ ନାନା ଧର୍ମର କଥା ଜାଣେ– ଯଦିବା ଖ୍ରୀଷ୍ଟଧର୍ମ ଜଗତର ଶ୍ରେଷ୍ଠ ଧର୍ମ ବୋଲି ତା'ର ଦୃଢ଼ ଧାରଣା । ଆମ ଦେଶରେ ଇନ୍‌ସିଓରେନ୍‌ସ ଏଜେଣ୍ଟ୍ ଏପରି ହେଲା ବେଳକୁ ଅନେକ ଦିନ ଅଛି । ତା'ସଙ୍ଗରେ ଧର୍ମ ସମ୍ବନ୍ଧରେ ମୋର ତର୍କ ହେଲା । ମୁଁ ସବୁ ପ୍ରଚାରକଙ୍କ ଭିତରେ ବୁଦ୍ଧଙ୍କୁ ଶ୍ରେଷ୍ଠ ସ୍ଥାନ ଦେଲି– ସେ ଖ୍ରୀଷ୍ଟଙ୍କୁ । କ୍ରମେ ମୁଁ ତାକୁ କୌଣସିମତେ ମୋର ମତକୁ ବାଗେଇଲି । ଏପରି ସମୟରେ ପଚାରିଲି, ''ଆଚ୍ଛା, କହ ତ, ବର୍ତ୍ତମାନ ଜଗତରେ ଶ୍ରେଷ୍ଠ ଖ୍ରୀଷ୍ଟିଆନ କିଏ ?'' ଲୋକଟି ବିନା ଚିନ୍ତାରେ ଉତ୍ତରକଲା, ''ବିନା ଚିନ୍ତାରେ କହିବାକୁ ହେବ ଯେ, ମି: ଗାନ୍ଧି ଓ ତାଙ୍କ ପଛକୁ ଆଣ୍ଡ୍ରୁଜ ।'' ମୋର ତ ଗର୍ବ ଅନୁଭବ କରିବାର କଥା ଓ ମୁଁ ଗାନ୍ଧିଜୀଙ୍କର ଓ ତା'ସଙ୍ଗେ ଦେଶର କଥା କହିବାକୁ ଲାଗିଲି । ମୁଁ ଯେତେବେଳେ ଜାଲିଆନାବାଲାବାଗ୍‌ର ହତ୍ୟାକାଣ୍ଡ ବର୍ଣ୍ଣନା କଲି, ତା'ର ସ୍ତ୍ରୀଙ୍କ ଆଖି ଛଳଛଳ ହୋଇ ଆସିଲା ।

ମତେ ଖୁଆଇ ପିଆଇ ବିଦାୟ ଦେଲାବେଳକୁ ରାତି ପ୍ରାୟ ଦଶଟା । ଭଦ୍ରଲୋକ ଘରୁ ବାହାରି ମତେ ପୁଣି ବସରେ ବସେଇ, ଟିକେଟ କଟେଇ ଆଉ ରବିବାରର ଦିନ

ଦେଖା ହେବାକୁ ଅନୁରୋଧ କରି ବିଦାୟ ନେଲେ ।

ଭାରତବର୍ଷର ଇଂରେଜ ସାହେବ ଓ ଏଠାର ସାହେବଙ୍କ ଭିତରେ କିପରି ପ୍ରଭେଦ ଏଇଥିରୁ ଜାଣିବ । ଆମେ ଯେ ପରାଧୀନ ଏ କଥାଟା ଆମେ ଆମରି ମାଟିରେ ବେଶି ଅନୁଭବ କରୁ । ଏଠାରେ ସ୍ୱାଧୀନ ମାଟିରେ ସମସ୍ତେ ସମାନ ।

## ନଗର-ସଭ୍ୟତାର ହଳାହଳ

ନିଉକାସଲ-ଅନ୍-ଟାଇନ
୨୨ ।୧୨ ।୩୭

ଏ ଦୂର ପ୍ରବାସରେ ସଙ୍ଗହୀନ ଅବସ୍ଥାରେ ମଣିଷ ଘର ଓ ଘରର କଥାପାଇଁ କିପରି ବ୍ୟାକୁଳ ହୁଏ ତା'ନ ଭୋଗିଲେ ବୁଝିହେବ ନାହିଁ । ତମେ ଜାଣ ଯେ, ନିଃସଙ୍ଗତା ବର୍ତ୍ତମାନ ନଗର-ସଭ୍ୟତାର ଏକ ପ୍ରଧାନ ଓ କରୁଣ ଅଭିଶାପ । ଛୋଟ ଛୋଟ ଗ୍ରାମରେ ପ୍ରତ୍ୟେକ ଲୋକ ଅପର ଲୋକକୁ ଚିହ୍ନେ ଓ ଗ୍ରାମର ସମସ୍ତଙ୍କ ମଧ୍ୟରେ ଗୋଟିଏ ଆତ୍ମୀୟ ସମ୍ପର୍କ ଥାଏ । ବିରାଟ ନଗରମାନଙ୍କରେ ଲକ୍ଷ ଲକ୍ଷ ମନୁଷ୍ୟର ସମାଗମ ହୁଏ ସତ, କିନ୍ତୁ ମିଳନ ହୁଏ ନାହିଁ ! ପ୍ରତ୍ୟହ ତମେ ସହସ୍ର ସହସ୍ର ଲୋକଙ୍କ ସଙ୍ଗେ ଦେହ ଘଷି ଚାଲିବ; କିନ୍ତୁ ସେଥିରୁ ଜଣେ ହେଲେ ତମର ଅନ୍ତରର କଥା ବୁଝିବାକୁ ପ୍ରସ୍ତୁତ ନୁହେଁ । ଏକାଘରେ ଲୋକ ଏଠି ରହିବେ କିନ୍ତୁ; ଗୋଟେ ରୁମ୍‌ର ଲୋକ ଆର ରୁମ୍‌ର ଲୋକମାନଙ୍କର ଦୁଃଖ ସୁଖ କିଛି ହେଲେ ଜାଣିବେ ନାହିଁ । ପ୍ରତ୍ୟେକ ପ୍ରତ୍ୟେକର କାର୍ଯ୍ୟରେ ବ୍ୟସ୍ତ – ପ୍ରାଣଭରି ଗପସପ କରିବାକୁ ଅବସର ନାହିଁ । ଓଃ ! ଏପରି ଅବସ୍ଥାରେ ମଣିଷ ବଞ୍ଚେ କିପରି ? ଅନେକ ବାଳିକା କିପରି ସଙ୍ଗହୀନ ଜୀବନ ଯାପନ କରନ୍ତି ସେ ବିଷୟରେ ଚିଠି ଲେଖନ୍ତି ଖବରକାଗଜକୁ । ଟିକିଏ ବଡ଼ହେଲେ ତ ସେମାନେ ବାପ-ମା'ଙ୍କୁ ଛାଡ଼ି ଅର୍ଜ୍ଜନ କରିବାକୁ ସହରକୁ ଚାଲିଆସନ୍ତି; ଏଠି ଆସି କିଏ କି ଅଫିସରେ କାମରେ ଭର୍ତ୍ତି ହୁଏ । ରହିବା ପାଇଁ କେଉଁଠି ଗୋଟେ ରୁମ୍ ଭଡ଼ା ନିଏ ।.ସେହି ରୁମ୍ ଓ ସେହି ଅଫିସ୍ ତା'ର ଜଗତ୍ । ସେ ଯଦି ସୁନ୍ଦରୀ ହୋଇଥାଏ, ତେବେ ତାକୁ ଡାକରା ଆସିପାରେ; ନଚେତ୍ ସମଗ୍ର ଜୀବନ ସେହି ରୁମ୍ ଓ ଅଫିସକୁ ଯିବାଆସିବା କରି କଟିଯିବ । ଅର୍ଜିତ ଟଙ୍କାରେ ଅବଶ୍ୟ ସିନେମା ଥିଏଟର ଦେଖାହୁଏ, ଭିନ୍ନ ଭିନ୍ନ ସ୍ଥାନ ବୁଲା ହୁଏ; କିନ୍ତୁ ମନୁଷ୍ୟର ଆତ୍ମା ଏ ସବୁରେ କିପରି ଶାନ୍ତ ହେବ କହ ? ଏହିପରି ଶତ ଶତ ଆତ୍ମାର ଉଷ୍ଣ-ଅଶାନ୍ତ ନିଃଶ୍ୱାସରେ ଏ ଦେଶର ନଗର-ଜୀବନ ଅସହ୍ୟ ।

ଏଠାରେ ମଉଜ କରିବାକୁ କହନ୍ତି to have a good time. Good time ପାଇବାକୁ ହେଲେ ପଇସା ଖର୍ଚ୍ଚ କରିବାକୁ ଇ ହେବ; କାରଣ ପୁରୁଷର good time ପାଇଁ ନାରୀର ଦରକାର, ନାରୀ ପାଇଁ ପୁରୁଷ ଦରକାର । ସାଧାରଣତଃ ପୁରୁଷ ନାରୀକି ନେଇ good time ଭୋଗ କରିବାକୁ ଚାହେଁ । ସେ ସବୁର ସମସ୍ତ ଖର୍ଚ୍ଚ ପୁରୁଷ ବହନ କରିବ । ସିନେମା, ଥିଏଟର ବା ବୁଲାବୁଲି– ସବୁଥିକି ତ ପଇସା ଦରକାର । ସେଥିପାଇଁ ପୁରୁଷକୁ ପ୍ରସ୍ତୁତ ହେବାକୁ ପଡ଼ିବ । ଆଜିକାଲି ଏଠି ଅନେକ ଯୁବକ ଓ ଯୁବତୀ ଅବିବାହିତ ରହି ଅର୍ଜିତ ଅର୍ଥ ଏହିପରି good time ଭୋଗକରିବାରେ ବ୍ୟୟ କରନ୍ତି । ନାରୀର ଅର୍ଜନ ପୋଷାକ ଓ ପ୍ରସାଧନରେ ଯାଏ । ପୁରୁଷର ଅର୍ଜନ ନାରୀକୁ ନେଇ good time ଭୋଗ କରିବାରେ ଯାଏ । ନୂତନ ସଭ୍ୟତା ଫଳରେ ଏ ଦେଶର ପାରିବାରିକ ଜୀବନ କ୍ରମେ ଚୂର୍ଣ୍ଣ ହେଉଛି । ଏକେତ ଜୀବନଯାପନର ଢାଁଚା ଏତେ ଉଚ୍ଚକୁ ଉଠିଛି ଓ ଖାଦ୍ୟ ଏବଂ ଆସବାବ ଇତ୍ୟାଦିର ମୂଲ୍ୟ ଏତେ ବଢ଼ିଛି ଯେ, ବିବାହ କରି ଗୋଟେ ପରିବାର ଚଳାଇବା ବଡ଼ କଠିନ ବ୍ୟାପାର । ତା'ଛଡ଼ା ଉପଭୋଗର ସୁବିଧା ଯେତେବେଳେ ଏତେ, ବିବାହ କରି ଜଣକଠି ବାନ୍ଧିହେବାକୁ ଯିବ କିଏ ?

**ଇଂଲାଣ୍ଡରେ ଶନିବାର ଓ ରବିବାର –**

ଆମର ଯେପରି ଦରମା ମାସକୁ ମାସ ମିଳେ ଓ ଦିଆନିଆ ସବୁ ମାସ ଶେଷରେ ହୁଏ, ୟାଙ୍କର ସେହିପରି ସପ୍ତାହ ଶେଷରେ ହୁଏ । ସରକାରୀ ଅଫିସଠାରୁ ଆରମ୍ଭକରି ସାମାନ୍ୟ ହୋଟେଲ ପର୍ଯ୍ୟନ୍ତ ସବୁଠାରେ ସାପ୍ତାହିକ ଦେଣା ନେଣା । ସୋମବାରଠୁ ଶନିବାର ଉପରଓଳି ଯାଏ ସବୁଠି କାମ । ଶନିବାର ଉପରଓଳି ଛୁଟି ପାଇ ଓ ସପ୍ତାହକର ଟଙ୍କା ପାଇ କୁମାରୀ, ଗୃହିଣୀ ଓ ଗୃହସ୍ଥ ସମସ୍ତେ ଜିନିଷ କିଣାକିଣି ବା ସପିଙ୍ଗ ପାଇଁ ବା ସିନେମା ଥିଏଟର ପାଇଁ ବାହାରିପଡ଼ନ୍ତି । ଶନିବାର ଉପରଓଳି ରାସ୍ତାରେ ଚାଲିବା ଅସମ୍ଭବ ହୋଇଉଠେ– ଏତେ ଲୋକ ଗହଳ । ସେ ଦିନ ଆମର ହୋଟେଲରେ ଏତେ ଲୋକ ଆସି ଜମା ହୁଅନ୍ତି ଯେ, ଆମକୁ ଘଣ୍ଟେ ଘଣ୍ଟେ ଅପେକ୍ଷା କରିବାକୁ ପଡ଼େ । ହାତରେ ଟଙ୍କା ପାଇ କୁଆଡୁ କୁଆଡୁ ଲୋକ ଆସି ଏହି ହୋଟେଲରେ ଖାଇ ସିନେମା ପ୍ରଭୃତି ଦେଖି ଯିବେ ବା କିଣାକିଣି ସାରି ଏଠି ଖାଇ ଘରକୁ ଯିବେ । କହିରଖିବା ଉଚିତ ଯେ ଏମାନଙ୍କ ମଧ୍ୟରେ ଅଧିକାଂଶ ସ୍ତ୍ରୀ । ରାସ୍ତାରେ ଏଠି ଦଶ ଜଣ ଲୋକରେ ଛ ଜଣ ସ୍ତ୍ରୀ, ଚାରି ଜଣ ପୁରୁଷ ଦେଖିବ ।

ରବିବାର ଦିନ ସକାଳେ ଉଠି ଏଠି ସହରକୁ ବୁଲିଗଲେ ତମେ ଭାବିବ ଲୋକଗୁଡ଼ା କୁଆଡ଼େ ପଳେଇଲେ କି ? ଚାରିଆଡ଼ ଶୂନ୍‌ଶାନ୍ । କଦବା କିଏ କୁଆଡ଼େ ଏଣେତେଣେ

ଯିବାଆସିବା କରୁଛି– ଟ୍ରାମ୍, ବସ୍ ଅଧଘଣ୍ଟା ଅନ୍ତରରେ ଯିବା-ଆସିବା କରେ ଓ ପ୍ରତ୍ୟେକରେ ଲୋକ ଖୁନ୍ଦି ହୋଇଥାନ୍ତି । ରବିବାର ଏମାନଙ୍କର ଧର୍ମଦିନ ଓ ବିଶ୍ରାମ ଦିନ । ସପ୍ତାହଯାକ କାମ କରି ଓ ସହର ଭିତରେ ଆବଦ୍ଧ ରହି ଲୋକେ କ୍ଳାନ୍ତ ହୋଇପଡ଼ନ୍ତି ଓ ଅବସର-ବିନୋଦନ ପାଇଁ ବନ୍ଧୁବାନ୍ଧବ ଘରକୁ ବା ନିକଟବର୍ତ୍ତୀ ସ୍ୱାସ୍ଥ୍ୟକର ଜାଗାକୁ ଯାଇ ଦିନେ କଟେଇ ଆସନ୍ତି । ଚର୍ଚ୍ଚକୁ ଖୁବ୍ କମ୍ ଲୋକ ଯାନ୍ତି । ଟୋକାଟୋକୀଏ ସଙ୍ଗୀ-ସଙ୍ଗିନୀଙ୍କୁ ଧରି ଏହି ଦିନକ 'ଗୁଡ୍ ଟାଇମ୍' ପାଇବା ପାଇଁ ଭିନ୍ନ ଜାଗାକୁ ଚାଲିଯାନ୍ତି । ଶନିବାର ଉପରଓଳି ଓ ରବିବାରକୁ ଏଠି ଉଇକ୍ ଏଣ୍ଡ୍ ବା ସପ୍ତାହ-ଶେଷ କହନ୍ତି । ସୋମବାର ଦିନ ପୁଣି ଦେଖାହେଲେ ଏଠି ଏକ ସାଧାରଣ ପ୍ରଶ୍ନ "How did you spend your week end ?" ତମର ସପ୍ତାହ-ଶେଷ କିପରି କଟେଇଲ ?

ଡେଲିମେଲ୍‌ର ଅଣ୍ଡିର କାନ୍‌ଭାଷିଣୀ –

ମୁଁ କହିଛି ଏଠି ପ୍ରତି ଦଶ ଜଣରେ ଛ'ଜଣ ସ୍ତ୍ରୀ ଦେଖିବ । ଇଏ ହେଲା ଚିତ୍ରାଙ୍ଗଦାର ଦେଶ । ଦିନେ ସକାଳୁ ମୁଁ ଓହ୍ଲେଇ ତଳେ ଥିବା ହୋଟେଲକୁ ବ୍ରେକଫାଷ୍ଟ ଖାଇବା ପାଇଁ ଆସି ଦେଖେ ତ ପଞ୍ଚାଏ ମାଇକିନା ବସି ଗପ କରୁଛନ୍ତି । ସେତେବେଳକୁ ଆଉ କେହି ଆସି ନ ଥାନ୍ତି । ମତେ ସଙ୍କୋଚ ଲାଗିଲା– ମୁଁ ଥପ ଥପ ହୋଇ ଚାଲିଆସିଲାବେଳକୁ ସେମାନେ ଡାକିଲେ । ମୁଁ ଗଲି । ଜଣେ ଚୌକି ପକେଇ ମତେ ବସେଇଲା– ମୁଁ ସଙ୍କୋଚରେ ନିଆଁ ପାଖରେ ବସିଲି । ସେମାନେ ନିଆଁକୁ ଘେରି ଅର୍ଦ୍ଧବୃତ୍ତାକାରରେ ବସିଥାନ୍ତି । ସେମାନଙ୍କର କୌଣସି ପ୍ରକାର ସଙ୍କୋଚ ନାହିଁ । ପୁରୁଷ ପରି ସିଗାରେଟ ଫୁଙ୍କା ଚାଲିଛି; ହେଁ, ହେଁ, ହସ, ଗପ– ଠିକ୍ ପଞ୍ଚାଏ ପୁରୁଷ ଯେପରି । ମୁଁ କ୍ରମେ କ୍ରମେ ମୋ' ପାଖରେ ବସିଥିବା ସ୍ତ୍ରୀ ସାଥିରେ କଥା ହୋଇ ବୁଝିଲି ଯେ ସେମାନେ ଡେଲିମେଲ ନାମକ ଖବରକାଗଜର କାନ୍‌ଭାସାର । ଏଇ ନ'ଟା ବେଲୁ ଯିବେ ଯେ ରାତିକି ଫେରିବେ– ସପ୍ତାହରେ ତିରିଶ ଶିଲିଂ ପାରିଶ୍ରମିକ ପା'ନ୍ତି । ପଚାରି ବୁଝିଲି 'ଡେଲିମେଲ୍'ର ବିକ୍ରି ଦୁଇ ମିଲିୟନ ବା କୋଡ଼ିଏ ଲକ୍ଷ– ତଥାପି ଆହୁରି ବେଶି ବିକ୍ରି ପାଇଁ ଚେଷ୍ଟା ! ଏଇଥିରୁ ଜାଣିବ ଏମାନଙ୍କର ସବୁ ଦିଗରେ କିପରି ବିରାଟ ଚେଷ୍ଟା– ସବୁବେଳେ ଆଗକୁ ମାଡ଼ିବା ପାଇଁ ଅଭିଳାଷ । ଆମର କଥାବାର୍ତ୍ତା ଶୁଣି ମଝିରେ ଥିବା ଜଣେ ବୟସ୍କା କହିଲା– ''ସେ କିଏ ସେ ? ଇଂରେଜୀ କହୁଛି ଯେ !'' ତା'ପରେ ମୁଁ ତା' ସାଥିରେ ବି କଥା ହେଲି । କ୍ରମେ ଭଲ ଆଳାପ ହେଲା । ସେମାନଙ୍କ ଭିତରେ

କିଏ ବିବାହିତା, ଅବିବାହିତା ପଚାରିଲି । ସେମାନେ ବିନା ସଙ୍କୋଚରେ ଯିଏ ଯାହା ତାହା କହିଲେ । ତାଙ୍କ ଭିତରେ ଜଣେ ଯୁବତୀ ଥିଲା – ସେ ବିବାହ କରିଛି ଖୁବ୍ ନିକଟରେ; କିନ୍ତୁ ସେ ପିଲାପରି ଦିଶୁଛି । ମୁଁ ତେଣୁ କହିଲି, ''ସେ ତ ବିବାହ ବୟସର ହେଲାପରି ଦିଶୁନି ।'' ସେ ବାଳିକା ନିଜେ ଉତ୍ତର ଦେଲା– ''କି ! ବର୍ତ୍ତମାନ ମୋତେ କୋଡ଼ିଏ ବର୍ଷ । ମୋର ବିବାହର ବୟସ ଯଥେଷ୍ଟ ।'' ଆମ ଦେଶରେ ବିବାହ କଥା ପକେଇଲେ ବାଳିକାମାନେ କାହିଁ ଯାଇ ବାରିଆଡ଼େ ଲୁଚନ୍ତି । ମୁଁ ପୁଣି ପଚାରିଲି, ''ତମର ସ୍ୱାମୀ କ'ଣ କରେ ?'' ସେ କହିଲା, ''ସେ ପୋଷ୍ଟ ଅଫିସରେ କାମ କରେ ।'' ବେଶ୍ ସ୍ୱାମୀ ଓ ସ୍ତ୍ରୀ ଉଭୟେ କାମ କଲେ ଓ ପଇସା ପାଇଲେ । ବର୍ତ୍ତମାନ ସେମାନେ ପଇସା-ଜମା କରୁଛନ୍ତି– ବେଶି କିଛି ହେଲେ ଘର କିଣିବେ । ସ୍ତ୍ରୀ ହୁଏତ କାମ ଛାଡ଼ି ଘର ଦେଖିବ, ପିଲା ହେଲେ ପିଲା କଥା ବୁଝିବ । ସେମାନେ ଯେତେବେଳେ ବିଦାୟ ନେଲେ ସମସ୍ତଙ୍କ ସଙ୍ଗେ କରମର୍ଦ୍ଦନ ଓ ସୁଖମୟ କ୍ରିଶମାଶ୍ ଜଣେଇଲି– ତାହାହିଁ ପ୍ରଥା । ବିବାହିତା ବାଳିକାଟିର କରମର୍ଦ୍ଦନ କଲାବେଳେ କହିଲି, ''ତମର ବିବାହିତ ଜୀବନ ସୁଖମୟ ହେଉ, ଏହାହିଁ ଇଚ୍ଛା କରେ ।'' ସେ ଧନ୍ୟବାଦ ଦେଲା ଓ ମୁଁ ବିବାହ କଲେ ମୋ' ଭାଗ୍ୟରେ ବି ସେଇୟା ଘଟୁ, ତାହା ଜଣେଇଲା ।

ସେମାନେ ବିଦାୟ ନେଲାବେଳେ ଯେଉଁମାନେ ଅବିବାହିତା ସେମାନଙ୍କୁ ପଚାରିଲି, ''ତମେ ସବୁ ଆଉ ବିଭା ହେବନାହିଁ ? ଏ ଦେଶରେ କେବେ ବିଭା ହୁଅନ୍ତି ?'' ଯାହାକୁ ପଚାରିଲି ତାକୁ ତିରିଶ ବର୍ଷ । ଉତ୍ତର ମିଳିଲା– ''ବର୍ତ୍ତମାନ ଗୁଡ୍ ଟାଇମ୍ ମିଳୁଛି । ଯେତେବେଳେ ମନ ହେବ ସେତେବେଳେ ବିଭାଘର ହେବ ।'' ଏ ଦେଶରେ ବିବାହ ପାଇଁ ବୟସର ବାଧା ନାହିଁ । ଅଶୀ ନବେ ବର୍ଷରେ ବିଭାଘର ହୋଇପାରେ । ସେମାନେ ବିଦାୟ ନେଲାପରେ ମୁଁ ଭାବିଲି ମୋ' ଦେଶର ଓ ଏ ଦେଶର ସ୍ତ୍ରୀମାନଙ୍କ ଭିତରେ କି ପାର୍ଥକ୍ୟ । ଏବେ ଗୋଟେ ମାଗାଜିନରେ ପଢ଼ିଲି ଦି'ଟା ସ୍ତ୍ରୀ କାହାରି ହେଲେ ସାହାଯ୍ୟ ନ ନେଇ କୌଣସି ମଫସଲରେ କାଠର ଦୁଇମହଲା ଘର ତୋଳିଦେଇଛନ୍ତି । ଏମାନେ ଯେ ପୁରୁଷର ସମାନ, ତା'ତ ସେମାନେ ନିଜେ ପ୍ରମାଣ କରିଦେଉଛନ୍ତି, ନା ।

# ଇଂଲାଣ୍ଡରେ ଶୀତକାଳ

ନିଉକାସଲ-ଅନ୍-ଟାଇନ
ତା ୨୮ ।୧୨ ।୩୭

ମୁଁ ଯା' ଭିତରେ ଏକାବେଳକେ ମାଂସ ଛାଡ଼ିଦେଲିଣି । ଏଠାର କଂସାଇ ଦୋକାନମାନଙ୍କରେ ଚମଡ଼ା ଓଲାରି ଦେଇ ପ୍ରକାଣ୍ଡ ପଶୁ ଶବଗୁଡ଼ାକୁ ସେଇମିତି ଓହଳେଇ ଦିଅନ୍ତି– ସେଗୁଡ଼ାକ ଯେପରି ଦେଖିବାକୁ ଜଘନ୍ୟ, ଦୁର୍ଗନ୍ଧ ସେଇପରି । ତାକୁ ସବୁ ଦେଖି ମୋର ଭୟଙ୍କର ଘୃଣା ଜନ୍ମିଛି– ମୁଁ କେବଳ ରୁଟି, ଅଣ୍ଡା, ଦୁଧ ଓ ଫଳମୂଳ ପ୍ରଭୃତି ଖାଉଛି । ଯେଉଁ ହୋଟେଲରେ ଅଛୁଁ, ସେ ଅନେକ ସମୟରେ ପାଣିଆ ଦୁଧ ଦେଉଛି ଓ ପୁରୁଣା ଅଣ୍ଡା ମେଣ୍ଟେଇ ଦେଉଛି । ମତେ ବିରକ୍ତ ଲାଗିଲାଣି, ନିକଟରେ ଅନ୍ୟ ଗୋଟେ ଜାଗାକୁ ପରିବର୍ତ୍ତନ କରିପାରେ ।

ଦୁଇ ସପ୍ତାହ ତଳେ ଭୟଙ୍କର ବରଫ ପଡ଼ିଥିଲା; ଛ' ସାତ ଇଞ୍ଚ; କେଉଁଠି କେଉଁଠି ଫୁଟେ ବହଳର ଧପ୍ ଧପ୍ ଧଳା ବରଫ । ରାଜ୍ୟର ଚାରିଆଡ଼– ଗଛର ଡାଳପତ୍ରଠୁ ଆରମ୍ଭ କରି ଛାତ, ସଡ଼କ, ପ୍ରାନ୍ତର, ରାସ୍ତା– ଯେଉଁଆଡ଼େ ଆଖି ପଡ଼ିବ କେବଳ ଧଳା ବରଫ । ବଡ଼ ଚମତ୍କାର ଦୃଶ୍ୟ । ଦିନେ ସନ୍ଧ୍ୟାବେଳେ ମୁଁ ନିକଟବର୍ତ୍ତୀ ପ୍ରାନ୍ତରରେ ବରଫର ଆସ୍ତରଣ ଉପରେ ଦୌଡ଼ିଲି । ବହୁଦୂର ଯାଇ ଫେରିଲାବେଳକୁ କରକାର ବର୍ଷା ଓ ପବନ ମୁହଁ ଉପରେ ବାଜୁଛି । ହାତ ଗୋଡ଼ କାଲମାରିଗଲା । କୋଟ୍ ଓ ଟୋପି ଓଦା– କୁଆପଥର ମାଡ଼ରେ ମୁହଁ ଟେକି ହେଉ ନ ଥାଏ, ବଡ଼ କଷ୍ଟରେ ସେଦିନ ଫେରିଲି । ଏହିପରି ଅବସ୍ଥାରେ ପଡ଼ି ଗୋଟେ ବାଳିକା ପ୍ରାଣତ୍ୟାଗ କରିଥିବାର ସମ୍ବାଦ ଚାରିଆଡ଼େ ଖବରକାଗଜରେ ବାହାରିଥିଲା । ଆମର ସେଠି ବନ୍ୟାରେ ଯେପରି ସବୁ ଘଟେ, ଏଠି ବରଫଯୋଗୁଁ ସେହିପରି ଘଟେ । ଗାଁଗଣ୍ଡାକୁ ରାସ୍ତା ବନ୍ଦହୋଇଯାଏ, ରେଳ ଓ ରାସ୍ତା ଦୁର୍ଘଟଣା ହୁଏ, ଲୋକେ ଖାଦ୍ୟ ପାଇ ପାରନ୍ତି ନାହିଁ ଇତ୍ୟାଦି । ଏ ବର୍ଷ ଗୋଟେ ରେଳ ଦୁର୍ଘଟଣାରେ ଛତିଶ ଜଣ ଲୋକ ମରିଗଲେ । ଅବଶ୍ୟ ତମର ଧାରଣା ଥାଇପାରେ ଏଠି ଶୀତଦିନଯାକ ବରଫ– ମୋର ବି ସେଇ ଧାରଣା ଥିଲା– ତା' ନୁହେ । ଆମର ଯେମିତି ବର୍ଷାକାଳରେ କେବେ କେବେ କୁଆପଥର ପଡ଼େ, ଏଠି ବରଫ ସେହିପରି । ତେବେ ବରଫ ପ୍ରତିବର୍ଷ ଏଠି ପଡ଼ିବଇ ପଡ଼ିବ– ଏକାଧିକ ଥର – ଆମର କୁଆପଥର ପଡ଼ିପାରେ

ନପାରେ । ବର୍ତ୍ତମାନ ରାସ୍ତାଘାଟ ସଫା । ଶୀତ ବି ଟିକିଏ କମିଛି । କହିବାକୁ ଗଲେ, ଏଠା ଶୀତର ଅତିରଞ୍ଜିତ ଧାରଣା ଆମର ଅଛି । ଶୀତ ଏକାବେଳକେ ଅସହ୍ୟ ହୁଏ– ପୋଷାକପତ୍ର ଥିଲେ ଶୀତ ଆଦୌ ଜଣାପଡ଼ିବାର ନୁହେଁ ।

ଶୀତଦିନ– ଏଠି ଦିନ ସାଢ଼େ ଚାରିଟା ବେଳୁ ରାତି ହୋଇଯାଉଛି ଓ ଦିନ ଆଠଟାବେଳକୁ ଆଲୁଅ ହେଉଛି । ଏଠାର ଲୋକେ ରାତିରେ କାମ କରିବାରେ ଅଭ୍ୟସ୍ତ ନ ହେଲେ ଦୀର୍ଘ ରାତ୍ରି କଟିବ କିପରି ? ଏଠାରେ ପାର୍ଲିମେଣ୍ଟ ରାତିରେ ବସେ । ନାଚ ଇତ୍ୟାଦି ମଉଜ ତ ରାତି ଗୋଟେ ଦି'ଟା ପର୍ଯ୍ୟନ୍ତ ଚାଲେ । ଦିନଯାକ ମେଘୁଆ– ସୂର୍ଯ୍ୟଙ୍କର ଦେଖାନାହିଁ– ଯେବେ ଦେଖାହେବ, ତେବେ ଆମର ଅସ୍ତଗାମୀ ସୂର୍ଯ୍ୟପରି ରକ୍ତ - ପିଣ୍ଡ; କାରଣ ଆକାଶ ସବୁବେଳେ କୁହେଳି ଓ ମେଘରେ ଆଚ୍ଛନ୍ନ । ସୂର୍ଯ୍ୟ ମୁଣ୍ଡ ଉପରକୁ ଆସେନା– ଦିଗ୍‌ବଳୟର ଗୋଟିଏ ଧାରରେ ଗୋଟିଏ କ୍ଷୁଦ୍ର ଅନୁଚ୍ଚ ବୃତ୍ତାଂଶ ଅଙ୍କନ କରି ସେ ଚାଲିଯାଏ । ଏ ହେଲା ପଶ୍ଚିମ ଦେଶ । ଯେଉଁଠି ସୂର୍ଯ୍ୟ ତା'ର ତେଜ ହରେଇ ଅସ୍ତଯିବାର କଥା– ତେଣୁ ସୂର୍ଯ୍ୟର ବୋଧେ ଏ ହୀନ ଦଶା ।

ଏ ଦେଶରେ ଆଚାର-ବ୍ୟବହାର ଯେତେ ପୃଥକ୍ ହେଲେ ମଧ୍ୟ ମନୁଷ୍ୟର ସ୍ୱାଭାବିକ ପ୍ରବୃତ୍ତି ସବୁ ଯେ ସବୁଠି ସମାନ, ତାହା ଏମାନଙ୍କ ସଙ୍ଗେ ମିଶି ଏମାନଙ୍କର ଜୀବନ-ଇତିହାସ ଜାଣିଲେ ସହଜରେ ଜଣାପଡ଼େ । ଦିନେ ଖବରକାଗଜରେ ପାଞ୍ଚଟି ବାଳିକାର କରୁଣ ପତ୍ର ପଢ଼ିଲି– ସେମାନେ ସେମାନଙ୍କର ବା ସେମାନଙ୍କ ସନ୍ତାନମାନଙ୍କର ଜାରଜ ଜୀବନ ବର୍ଣ୍ଣନା କରିଛନ୍ତି । ଓଃ, କି କରୁଣ ଓ ଜୀବନ୍ତ ସେ ଇତିହାସ ! ମୁଁ ତମକୁ ଜଣକର କଥା ତଳେ ଅନୁବାଦ କରି ଦେଲି–

''ମତେ ଯେତେବେଳେ ସାଢ଼େ ଉଣେଇଶ ବର୍ଷ– ମୁଁ ଗୋଟେ ଦୋକାନରେ ଚାକିରି ପାଇଲି । ମୋର ମାଲିକ ମୋ'ଠୁ ପାଞ୍ଚ ବର୍ଷ ବଡ଼ । ମତେ ଚାକିରିରୁ ତଡ଼ିଦେବ ଏଇ ଭୟରେ ତା'ର ମୋର ସମ୍ବନ୍ଧ ଘଟିଗଲା... । ପନ୍ଦର ଦିନ ଖଣ୍ଡେ ଭୟରେ ମୁଁ ଆତ୍ମସମର୍ପଣ କଲି ଓ ତା'ପରେ ମତେ ସେ ବାହାରକରିଦେଲା । କେତେ ସପ୍ତାହ ପରେ ଜାଣିଲି ଯେ ମୁଁ ମା' ହେବାକୁ ଯାଉଛି । ମୋ' ପିଲାକୁ ଏଗାର ଦିନ ହେଲାବେଳେ, ତା'ର ବାପ ଆସି ମତେ କହିଲା ଯେ ସେ ମାସକ ପୂର୍ବରୁ ଆଉ ଜଣକୁ ବିବାହ କରିସାରିଛି । ...ମୁଁ ମୋ' ନିଜ ପରିବାରରେ ରହିଲି; କିନ୍ତୁ ସେମାନେ ମୋ' ସଙ୍ଗେ କୌଣସି ପ୍ରକାର ସମ୍ପର୍କ ରଖିବାକୁ ଏକାନ୍ତ ଅନିଚ୍ଛା ପ୍ରକାଶ କଲେ । ...ଦିନେ ରାତିରେ ମୁଁ ଶୋଇବାକୁ ଚେଷ୍ଟା କରୁଥାଏ, କିନ୍ତୁ ପ୍ରତିଥର ଅଶ୍ରୁଧାରା ମତେ ବିହ୍ୱଳ କରିପକାଉଥାଏ । ମୁଁ ଶେଯରୁ ଉଠିଲି । ମୋର ବାଇବେଲ ବାହାରକଲି ଏବଂ ଈଶ୍ୱର ମତେ କ୍ଷମା ଓ ସାହାଯ୍ୟ କରିବେ କି ନାହିଁ

ଦେଖିବାକୁ ଚେଷ୍ଟାକଲି । ...ମୁଁ ଏହି ବାକ୍ୟ ପଢ଼ିବାକୁ ପାଇଲି – ତତେ ଦୀର୍ଘ ଜୀବନ ଦ୍ୱାରା ସନ୍ତୋଷ ଦାନ କରିବି ଓ ମୋର ତ୍ରାଣଶକ୍ତି ଦେଖେଇବି । ...ସେହି ମୁହୂର୍ତ୍ତରୁ ମୁଁ ଦୃଢ଼ ପ୍ରତିଜ୍ଞା କଲି ଯେ ମୁଁ ପ୍ରତି ଶିଶୁର ପ୍ରାପ୍ୟ ମାତୃ-ସେବା ଓ ମାତୃ-ସ୍ନେହ ମୋ' ଶିଶୁକୁ ନିଶ୍ଚେ ଦେବି ଓ ସେଥିପାଇଁ ପ୍ରାଣପାତ କରି ଯୁଦ୍ଧ କରିବି । ସେଥିଲାଗି ମୁଁ ମୋର ସ୍ୱାସ୍ଥ୍ୟକୁ ଆହୁତି ଦେଇଛି ।

''ଦୁଇ ସପ୍ତାହ ବେକାର ରହିବା ପରେ ମୋର ଭାଗ୍ୟ ଦିନେ ବଦଳିଲା ଓ ମୁଁ ଗୋଟେ ଚାକିରି ପାଇଲି ଏବଂ ମୋର ଟୋକଲି ଗୋଟେ ସ୍କୁଲରେ ମାହାଳିଆ ପଢ଼ିବାର ସୁବିଧା ମଧ୍ୟ ପାଇଲା । ଭଗବାନ ମତେ ଓ ମୋର ଶିଶୁକୁ ଯେ ଏପରି ଦୟା କଲେ, ଏହା ଭାବି ମୁଁ ଆନନ୍ଦରେ ବିହ୍ୱଳ ହୋଇଗଲି ।

''ବର୍ତ୍ତମାନ ସେ ସୁନ୍ଦର ହୋଇ ବଢ଼ିଗଲାଣି ଓ ମୁଁ ତାକୁ ନେଇ ଗର୍ବ କରେ ।

''ବର୍ତ୍ତମାନ ତାକୁ ଅନେଇ ମୁଁ ଗତକଥା ସବୁ ମନେପକେଇଲେ ଓ ଏକା ଏକା କିପରି ତାକୁ ବଢ଼େଇ ଆଣିଲି ଭାବିଲେ ମୋର ହୃଦୟ ଈଶ୍ୱରଙ୍କ ପ୍ରତି କୃତଜ୍ଞତାରେ ଭରିଉଠେ । ଗୋଟିଏ ବାଳିକା ଯୌବନର ଭ୍ରମପାଇଁ ସାମାନ୍ୟତମ ସୁଖ ଓ ସୁବିଧାରୁ ମଧ୍ୟ ବଞ୍ଚିତ ହୋଇଥିଲା– ଦୟାମୟ ଈଶ୍ୱର ତାକୁ ସାହାଯ୍ୟର ଉପଯୁକ୍ତ ବିବେଚନା କଲେ ।'' M.S.M. (ସ୍ତ୍ରୀର ନାମ) ।

## ସନ୍ତାନ ଦାୟିତ୍ୱ ଓ ଜନ୍ମନିରୋଧ

ନିଉକାସଲ-ଅନ୍-ଟାଇନ
୧୧।୧।୩୮

ଏ ଦେଶରେ ପ୍ରକୃତ ପ୍ରଣୟକୁ ସ୍ୱପ୍ନ, ମାୟା, ମିଥ୍ୟା ବୋଲି ଭାବନ୍ତି । ମନେକରନ୍ତି ତାହା କେବଳ କେତୋଟି ମୁହୂର୍ତ୍ତର ଉନ୍ମାଦନା, ଯାହା ଆସେ କେବଳ ଯିବାପାଇଁ ଓ ପଛରେ ରଖିଦେଇଯାଏ କେବଳ ଗୋଟାଏ ଆସଙ୍ଗଲିପ୍ସା, ଯାହାକୁ କି ଲୋକେ ଭୁଲରେ ପ୍ରେମ କହନ୍ତି । ବିବାହିତ ଜୀବନର ପ୍ରେମ କେବଳ ଏହି ଆସଙ୍ଗଲିପ୍ସା– ପାଖରେ ଜଣେ ଲୋକ ରହିବାର ଇଚ୍ଛା । ଅଧିକାଂଶ ବିବାହରେ ପ୍ରେମ ଶେଷରେ ଏହିଥିକି ଆସେ ମଧ୍ୟ ।

ଜଣେ ପାର୍ଲିଆମେଣ୍ଟ ମେମ୍ବର ଏବେ ଇସ୍ତଫା ଦେବେ ବୋଲି ଜଣେଇଛନ୍ତି । କାରଣ କ'ଣ ଜାଣ ? ତାଙ୍କର ପୁଅ ବଡ଼ହୋଇଗଲାଣି, ଇସ୍କୁଲକୁ ଯିବ; କିନ୍ତୁ ତାକୁ ଦେଖାଦେଖି କରିବାକୁ କେହି ନାହିଁ । ଏଣେ ପାର୍ଲିଆମେଣ୍ଟ କାମ କଲେ ପୁଅର

ଭବିଷ୍ୟତ ନଷ୍ଟ ହେବ– ତେଣୁ ସେ ମେମ୍ବର ପଦର ଦାୟିତ୍ୱ ଆଉ ମୁଣ୍ଡେଇବେ ନାହିଁ – ବାପ ପଦର ଦାୟିତ୍ୱ ତାଙ୍କୁ ମୁଣ୍ଡେଇବାକୁ ହେବ । ଏଇଥିରୁ ତମେ ଅନୁମାନ କରିବ, ଏ ଦେଶରେ ପିଲାଙ୍କୁ ମଣିଷ କରିବାକୁ ସେମାନେ କ'ଣ ନ କରନ୍ତି । ଏଥିରେ ଜାତି ଗଢ଼ା ନ ହେବ କାହିଁକି ? ଆଜିର ପିଲାଏ ତ କାଲିର ଜାତି– ଆଜିର ପିଲା ଯେମିତି ମଣିଷ ହେବେ କାଲିର ଜାତି ସେମିତିକା ଜାତି ହେବ । ଏହି ମଣିଷ କରିବାର ଚିନ୍ତା ଯୋଗୁଁ ଅନେକ ବାପ ମା' ନିଃସନ୍ତାନ ରହୁଛନ୍ତି ପଛେ ପିଲା କରୁନାହାନ୍ତି । ମୁଁ ଅନେକ ପତି-ପତ୍ନୀ ଏଠି ଦେଖିଲିଣି, ସେମାନଙ୍କର ପିଲା ନାହିଁ– ପଚାରିଲେ କହିବେ, ଆମେ ଦରକାର କରୁନା– ନ ହେଲେ କହିବେ, ''ତୋପର ଖାଦ୍ୟ ହେବାକୁ ପିଲା ଜନ୍ମ କରିବୁଁ ?'' ଅବଶ୍ୟ ଏହି ଜନ୍ମ-ନିରୋଧ ପାଇଁ ଏ ଦେଶରେ କେହି ବ୍ରହ୍ମଚର୍ଯ୍ୟ ପାଳନ କରନ୍ତି ନାହିଁ । ବ୍ରହ୍ମଚର୍ଯ୍ୟର ଧାରଣା ଏମାନଙ୍କର ନାହିଁ । ସାଧାରଣତଃ ବିବାହିତ ପୁରୁଷ ସ୍ତ୍ରୀ ଜନ୍ମନିରୋଧ ଲାଗି ନବ ଆବିଷ୍କୃତ ଯନ୍ତ୍ରସବୁ ବ୍ୟବହାର କରନ୍ତି । ଗାନ୍ଧିଜୀ ଏସବୁର ଭୟଙ୍କର ଶତ୍ରୁ; କିନ୍ତୁ ମୁଁ ଏଥିରେ କୌଣସି ଅନ୍ୟାୟ ଦେଖୁନି । ବ୍ରହ୍ମଚର୍ଯ୍ୟ ଅତ୍ୟନ୍ତ କାମ୍ୟ ସାଧନା; କିନ୍ତୁ ଯେଉଁ ସାଧନାର ପଥ ମହାଯୋଗୀ ପାରହୋଇ ପାରି ନାହାନ୍ତି– ସାଧାରଣ ନରନାରୀ ପକ୍ଷରେ ତାହା କିପରି ସମ୍ଭବ ଗାନ୍ଧିଜୀ ବୁଝି ନାହାନ୍ତି । ଦୈହିକ ମିଳନ ଯେ ମାନବିକ ପ୍ରେମାନୁଭୂତିର ସୁଖ-ସମାପ୍ତି ତାହା ତ କାବ୍ୟ-କବିତାରେ ଜଗତର ଶ୍ରେଷ୍ଠ କବିମାନଙ୍କ ଦ୍ୱାରା ପ୍ରଚାରିତ ହୋଇଛି । କିନ୍ତୁ ଜଗତର ସକଳ ସୁଖ ଭିତରେ ଦୁଃଖର ମଞ୍ଜି ନିହିତ ଥିଲାପରି, ଏ ମଧୁର ମିଳନ ଭିତରେ ବିଧାତା ବଂଶବୃଦ୍ଧିର ଦାୟିତ୍ୱକୁ ଲୁଚେଇରଖିଚି । ଆଜିକାଲିର ଜଗତରେ ଏହି ବଂଶବୃଦ୍ଧି ଏକ ବିରାଟ ଦାୟିତ୍ୱ । ପିଲା ଜନ୍ମ ହେଲାଠୁ ଅଜସ୍ର ଭାବରେ ଅର୍ଥ ବ୍ୟୟ ଦରକାର ତାକୁ ମଣିଷ କରିବାକୁ । ମଣିଷ କରି ସାରିଲା ପରେ ଦେଖିବ ଯେ ସେ ବେକାର । ଜଣେ ପିତାର ଯଦି ଏହପରି ୪ ।୫ଟି ପିଲା ହୁଅନ୍ତି, ତା'ର ଜୀବନର ଦୁଃଖ ଅନୁମେୟ । ଆମ ଦେଶ ଅପେକ୍ଷା ଏ ଦେଶରେ ଏ ବିପଦ ଅଧିକତର ତୀବ୍ର ଓ ଭୟଙ୍କର । କାରଣ ଏଠି ବଞ୍ଚିବା, ଆମ ଦେଶର ବଞ୍ଚିବା ଅପେକ୍ଷା ବହୁଗୁଣ ବ୍ୟୟସାଧ୍ୟ । ଏଥିରେ ଦମ୍ପତିମାନେ ଯଦି ଜନ୍ମନିରୋଧଦ୍ୱାରା ବଂଶ କ୍ଷୀଣ କରିବାକୁ ବସନ୍ତି, ମୁଁ ତ କିଛି ଅନ୍ୟାୟ ଦେଖୁନି । ବର୍ତ୍ତମାନ ଏମାନଙ୍କର ଜନ୍ମସଂଖ୍ୟା ଭୟଙ୍କର ଭାବରେ କମୁଛି– ଦେଶରେ ଚାରିଆଡ଼େ ଆନ୍ଦୋଳନ– ସ୍କୁଲମାନଙ୍କରୁ ପିଲା କମିଯାଉଛନ୍ତି । ଭାରତବର୍ଷରେ ଏହାର ଠିକ୍ ଓଲଟା । ସେଠି ଜନ୍ମସଂଖ୍ୟା ଏତେ ବଢୁଛି ଯେ, ଆଉ କେତେ ବର୍ଷରେ ଭୟଙ୍କର ଖାଦ୍ୟାଭାବ ଘଟିବ । ଦୂରକଥା ଛାଡ଼, ବର୍ତ୍ତମାନ ମଧ୍ୟ କେତେଟା ପିଲା ଭଲ ଖାଇବାକୁ ପାନ୍ତି ? ଅବାଧ-ଜନନ ଦ୍ୱାରା ଦୁରାହାର ଓ ରୋଗକ୍ଲିଷ୍ଟ ପିଲା-ପଲ ସୃଷ୍ଟିକରି ଦେଶରେ

ଖାଦ୍ୟାଭାବ ଘଟେଇବା ଅପେକ୍ଷା, ନିରୁଦ୍ଧ-ଜନନ ବଳରେ ଅଳ୍ପ ପିଲା ଜନ୍ମକରି ସେମାନଙ୍କୁ ମଣିଷ ପରି ବଞ୍ଚିବାର ସୁବିଧା ଦେବା ଶ୍ରେୟସ୍କର ।

ମୁଁ ଚର୍ଚ୍ଚକୁ ବରାବର ଯାଏ । ସେଠି ଅନେକ ଭଲ ମଣିଷ ଦେଖିବାକୁ ମିଳନ୍ତି । ଗତ ଶୁକ୍ରବାର ଚର୍ଚ୍ଚ ସଂପର୍କୀୟ ଗୋଟିଏ ନୀତି-ସଭାକୁ ଯାଇଥିଲି । ପାଦ୍ରି ଆତ୍ମଜ୍ଞାନ ସମ୍ବନ୍ଧରେ ଚମତ୍କାର ବକ୍ତୃତାଟିଏ ଦେଲେ । ଅନେକ ସ୍ତ୍ରୀପୁରୁଷଙ୍କ ସହିତ କଥାବାର୍ତ୍ତା ହେଲା । ଏ ସବୁରେ ଯୋଗଦେବାରେ ଉଭୟ ଆଡୁ ଲାଭ । ମୁଁ ସେମାନଙ୍କୁ ଜାଣୁଛି, ସେମାନେ ମୋ'ଠାରୁ ଭାରତବର୍ଷର କଥା ଜାଣୁଛନ୍ତି । ଜାନୁୟାରି ତେଇଶ ତାରିଖ ରବିବାର ଦିନ ମୁଁ ଏହିପରି ଏକ ଚର୍ଚ୍ଚ ସମ୍ପର୍କୀୟ ଗୋଟିଏ ଛୋଟ ସଭାରେ 'ଭାରତରେ ଖ୍ରୀଷ୍ଟଧର୍ମ' ସମ୍ବନ୍ଧରେ କିଛି କହିବାପାଇଁ ଅନୁରୁଦ୍ଧ ହୋଇଛି । କିଛି ଦିନ ପରେ ଯେଉଁ ପାଦ୍ରି 'ଆତ୍ମଜ୍ଞାନ' ବିଷୟରେ ବକ୍ତୃତା ଦେଇଥିଲେ ତାଙ୍କ ଘରକୁ ମତେ ସେ ନିମନ୍ତ୍ରଣ କରିଥିଲେ ।

**ଏ ଦେଶରେ ହୋଟେଲବାଲା**

ଏ ଦେଶର ଭାରତବର୍ଷ ସମ୍ବନ୍ଧରେ ଜ୍ଞାନ ଅବଶ୍ୟ କମ୍; କିନ୍ତୁ ଭାରତବର୍ଷ ସମ୍ବନ୍ଧରେ ଏଠାରେ ଖବରକାଗଜରେ କିଛି ହେଲେ ବାହାରେନାହିଁ– ଲୋକେ ଜାଣିବେ କୁଆଡୁ ? ଅବଶ୍ୟ ପାଟିଆଲା, ଆଗାଖାଁ ପ୍ରଭୃତିଙ୍କ କଥା ବାହାରେ– ଲୋକେ ତାଙ୍କ କଥା ବେଶ୍ ଜାଣନ୍ତି । ଭାରତବର୍ଷରେ ନୂତନ ଶାସନ ବିଷୟରେ ପାଦ୍ରିଠୁ ଆରମ୍ଭ କରି ଆମର ହୋଟେଲବାଲା ପର୍ଯ୍ୟନ୍ତ ମୋ' ସାଙ୍ଗରେ କଥା ହୋଇଛନ୍ତି ଏବଂ ହୋଟେଲବାଲା କହେ ଯେ, ଭାରତବର୍ଷକୁ ସ୍ୱାଧୀନତା ଦେଲେ ସେଠାରେ ଲୋକେ ନିଜ ନିଜ ଭିତରେ ବାଡ଼ିଆପିଟା ହୋଇ ମରିଯିବେ ଓ ତା'ର ଜାତି ଭାରତକୁ ଧୀରେ ଧୀରେ ସ୍ୱାଧୀନତା ଦେବ । ମୁଁ ମୋ' ଜୀବନକାଳରେ ଭାରତବର୍ଷର କୌଣସି ହୋଟେଲବାଲା ସହିତ ଏହିପରି କଥା ହୋଇପାରିଲେ ସୁଖରେ ମରନ୍ତି । ସେ ହୋଟେଲବାଲା ପୃଥିବୀର ସବୁ ଅଞ୍ଚଳ ବୁଲିଆସିଛି– ତା'ର ଶ୍ୱଶୁର ମଧ୍ୟ । ଓଡ଼ିଶା ପରି ଦେଶରେ ଏପରି ଗୋଟାଏ ଲୋକ ଗଣମାନ୍ୟ ହୁଅନ୍ତା; କିନ୍ତୁ ଏ ଦେଶରେ ଏମିତି ଲୋକ ଗଣ୍ଡା ଗଣ୍ଡା– ଇଂରେଜର ସମଗ୍ର ପୃଥିବୀ ଘର । ଆମେ ସିନା ଅଜ୍ଞାତ ଭାବରେ ପୃଥିବୀର କେଉଁ ଅଜ୍ଞାତ କୋଣରେ ପଡ଼ିରହୁଛୁଁ– ଆମକୁ ଆମ ଦେଶ ଆରପଟେ କେହି ଜାଣନ୍ତି ନାହିଁ । ଓଃ, କି ପ୍ରଭେଦ ! କି ପତନ ! କେବେ କିପରି ବା ଆମେ ଉଠିବା !

# ନବବର୍ଷର ସମ୍ବର୍ଦ୍ଧନା

ନିଉକାସଲ
୨-୧-୧୯୩୯

କାଲି ନବବର୍ଷ ଆରମ୍ଭହେଲା । ଏ ଦେଶମାନଙ୍କରେ ନବବର୍ଷାରମ୍ଭ ଏକ ଜାତୀୟ ଉତ୍ସବ । ଆମ ଓଡ଼ିଶାରେ ପୁନିଆଁ କହିଲେ ଗରିବ ପ୍ରଜା ଭେଟି କଥାହିଁ ସ୍ମରଣୟକରିବ । ତାହା ଛଡ଼ା ଆମ ଦେଶର ଜନସାଧାରଣର ଜୀବନରେ କି ସୁଖ, କି ସ୍ୱପ୍ନ, କି ଆଶା ଅଛି ଯେ ନୂତନ ବର୍ଷ ଆସିଲେ ବା ପୁରାତନ ବର୍ଷ ଗଲେ ସେମାନଙ୍କ ମନରେ କିଛି ଚାଞ୍ଚଲ୍ୟ ଆସିବ ? ଜନ୍ମରୁ ମୃତ୍ୟୁଯାଏଁ ସାଧାରଣ ଭାରତୀୟ ଜୀବନ ଏକ କ୍ରମାଗତ ଦୁର୍ଦ୍ଦିନ । ସେଥିରେ ତାକୁ କେହି ଯଦି "I wish you a happy and Prosperous New Year" କହି ସଂବର୍ଦ୍ଧନା କରେ; ତେବେ ତାହା ତ ଏକ ଉପହାସ ବା ଅର୍ଥହୀନ ମନଗଢ଼ାକଥା ମାତ୍ର ହେବ । କାରଣ ସୁଖ ଓ ସଂପଦମୟ ସମ୍ବତ୍ସର କ'ଣ ସେ ଜାଣେ ନାହିଁ ।

କିନ୍ତୁ ଏ ଦେଶ ଓ ଆମ ଦେଶରେ ପୃଥିବୀର ସର୍ବତ୍ର ନୂତନବର୍ଷକୁ ଯେ ଲୋକେ ସଂବର୍ଦ୍ଧନା କରନ୍ତି, ଏଥିରୁ ମନୁଷ୍ୟ ଚରିତ୍ରର ଏକାନ୍ତ ଏକତା ବୁଝିପାରିବ । ଗତ ସେପ୍‌ଟେମ୍ବର ବା ଅକ୍ଟୋବର ମାସରେ ଦିନେ ମୋର ପରିଚିତ ଚର୍ଚ୍ଚକୁ ରବିବାରିଆ ଗଲାବେଳକୁ ଦେଖେ ତ ତାହା ପତ୍ରପୁଷ୍ପରେ ସଜ୍ଜିତ ହୋଇଛି । ଉପାସନା ଶେଷରେ ମୁଁ ପଚାରିଲି– ଏହାର ଅର୍ଥ କ'ଣ ? ଉତ୍ତର ମିଳିଲା ଯେ, ଏହା ହାରଭେଷ୍ଟ ଫେଷ୍ଟିଭାଲ ବା ଶସ୍ୟୋତ୍ସବ । ଅର୍ଥାତ୍ ଏ ଦେଶର ଗ୍ରୀଷ୍ମଋତୁ ଶେଷରେ ଶସ୍ୟ କର୍ତ୍ତନ କରି, କୃଷକ ତାହା ଘରେ ସଂପାଦି ସାରିଲା ପରେ ସମଗ୍ର ଜାତି ନବାଗତ ଶସ୍ୟ ଲାଗି ଭଗବାନଙ୍କ ନିକଟରେ କୃତଜ୍ଞତା ଜ୍ଞାପନ କରେ, ଏହି ଉତ୍ସବ ଦେଇ । ସେଦିନ ପ୍ରାର୍ଥନାରେ ପାଦ୍ରି ମଧ୍ୟ ଭଗବାନଙ୍କୁ ଉଦ୍ଦେଶ୍ୟ କରି ଏହି କଥା କହିଲେ । ଆମର ନବାନ୍ନ ଉତ୍ସବ ଠିକ୍ ଏଇ ଉଦ୍ଦେଶ୍ୟରେ ସଂପନ୍ନ ହୁଏ । ବିଧାତା ବର୍ଷକ ଲାଗି ଯେଉଁ ଦାନ ଦେଇଛନ୍ତି ତା'ର ପ୍ରଥମ ଭୋଗ ବେଳେ ତାଙ୍କୁ ମନେକରି କୃତଜ୍ଞ ହେବା ଓ ଭାଇ ବଂଧୁ ପଡ଼ୋଶୀଙ୍କି ଡାକି କଷ୍ଟଲବ୍ଧ ସମ୍ପଦରେ ଅନ୍ତତଃ ଦିନକ ପାଇଁ– ସେଇ ତ ଆମର ନବାନ୍ନ ଭୋଜି ! କ୍ରମେ କ୍ରମେ ଏଇ ସୁନ୍ଦର ଯୁକ୍ତିଯୁକ୍ତ ପ୍ରଥାସବୁ ଦୁର୍ବଳ ହୋଇଯାଉଛି । ଶିକ୍ଷିତ ଲୋକେ ଗ୍ରାମ୍ୟ ଜୀବନର ଏଇ ସରଳ ଆନନ୍ଦୋତ୍ସବରେ ଯୋଗ ନ ଦେଇ କଟକ କଲିକତାରେ ଅଜସ୍ର ଟଙ୍କା

ଖର୍ଚ୍ଚ କରି ଆନନ୍ଦ ଖୋଜୁଛନ୍ତି । ଗ୍ରାମ୍ୟ ଜୀବନର ଓ ଜାତୀୟ ଜୀବନର ସ୍ୱତନ୍ତ୍ର ମୌଳିକ ଚରିତ୍ର କ୍ରମେ ମେରୁଦଣ୍ଡ ହରାଉଛି । ଅଥଚ ଆମର ଶିକ୍ଷିତ ଲୋକେ ଜାଣନ୍ତିନି ଯେ, ଏହି କଳକାରଖାନା-ମଟର- ଏରୋପ୍ଲେନ୍-ଚାଳିତ ଜାତି ତା'ର ଗତଯୁଗର ପଲ୍ଲି-ସଂସ୍କାର ସବୁ ଛାଡ଼ିବାକୁ ନାରାଜ । ନିଉକାସଲ ସହରରେ କୌଣସି କୃଷକ ବାସ କରେ ନାହିଁ । ଏଇଟା କାରଖାନିଆ ସହର; ଅଥଚ ସହରର ଏକାଧିକ ଚର୍ଚ୍ଚରେ ଶସ୍ୟୋତ୍ସବ ପାଳିତ ହେବାର ମୁଁ ଦେଖିଛି । କଟକରେ କେଉଁ ଶିକ୍ଷିତ ଓଡ଼ିଆ ନବାନ୍ନ ପାଳନ କରୁଥିବାର ଜାଣିଲେ ତାକୁ ଜାତୀୟବୀର ବୋଲି ମୁଁ ମାନିବାକୁ ପ୍ରସ୍ତୁତ । ଭବାନିପାଟଣାରେ ଏହି ନବାନ୍ନ ଉତ୍ସବ ଏକ ପ୍ରଧାନ ଉତ୍ସବ । ମୋର ମନେଅଛି, ମୋର ଛାତ୍ରମାନେ ଏହି ଉତ୍ସବବେଳେ ନୂଆ ଲୁଗା ପିନ୍ଧି ମତେ ନମସ୍କାର କରିବାକୁ ସେଦିନ ଆସିଥିଲେ ଓ ଅନେକ ଦିନ ଯାଏ ଚାଙ୍ଗୁ-ମୁନ୍ଦରାର ମନ୍ଦ୍ରଧ୍ୱନିରେ ଚାରିଆଡ଼ର ଗ୍ରାମାଞ୍ଚଳ ଧ୍ୱନିତ ହୋଇ, ନୂତନ ଶସ୍ୟ କୃଷକ ଜୀବନରେ କି ଆଶା ସଂଚାର କରାଇଥାଏ ତାହାର ସୂଚନା ଦେଇଥାଏ । ଏ ତ ଗଲା ଶସ୍ୟୋତ୍ସବ । କିନ୍ତୁ ଏମାନଙ୍କର ନବବର୍ଷ ପାଳନ ଏହାଠାରୁ ଆହୁରି ଅଧିକ କୌତୁକକର । ଏମାନେ ନିଜକୁ ସଭ୍ୟ କହି ଆମକୁ ଅସଭ୍ୟ ଓ କୁସଂସ୍କାରାଚ୍ଛନ୍ନ ଜାତି ବୋଲି ଅବଜ୍ଞା କରନ୍ତି । କିନ୍ତୁ ନିଜର କେତେ କୁସଂସ୍କାର ଅଛି, ତାହା ଏମାନେ ଭୁଲିଯାନ୍ତି । ମୋର ମନେନାହିଁ, ମୁଁ ମୋର ଆରବର୍ଷର ନବବର୍ଷର ଅଭିଜ୍ଞତା କହିଛି କି ନାହିଁ । ବୋଧହୁଏ କହିନି । କିନ୍ତୁ ତାହା ବଡ଼ ଚମକ୍ରାର ଅଭିଜ୍ଞତା– ଯାହା କି କ୍ୱଚିତ୍ ଭାରତୀୟ ଛାତ୍ରଙ୍କ ଭାଗ୍ୟରେ ଘଟିଥିବ ଏବଂ ଆରବର୍ଷର ଅନୁଭୂତି ଏ ବର୍ଷର ଅନୁଭୂତି ସଙ୍ଗେ ଜଡ଼ିତ । ତେଣୁ ଆରବର୍ଷର କଥା କହେଁ ।

ମି: ଓ ମିସେସ୍ ଡିକ୍‌ସନ୍ ମି: ବେହୁରାଙ୍କର ପରିଚିତ ପରିବାର । ସେହି ସୂତ୍ରରେ ସେମାନେ ମତେ ଜାଣିଲେ । ଭାରି ଭଲଲୋକ, ସାଧାରଣ, ନୁହେ ଧନୀ– ଦରିଦ୍ର ଅବସ୍ଥା, ମଦ ବିକି ଜୀବିକାର୍ଜନ କରନ୍ତି । ମୁଁ ପୂର୍ବେ କହିଛି ବାରମ୍ବାର ଯେ, ଏ ଦେଶରେ ବ୍ୟବସାୟ ଓ ବ୍ୟକ୍ତିତ୍ୱ ସମ୍ପର୍କଟା ଆମ ଦେଶପରି ନୁହେଁ । ମୋର ଜଣେ ମୋଚି ବନ୍ଧୁ ଭାରତବର୍ଷର ଇତିହାସ ଲେଖୁଥିବା କଥା କହିଛି ତମକୁ । ମଦବିକାଳି– ଅର୍ଥାତ୍ ଆମ ହିସାବରେ ଶୁଣ୍ଢୀ ଡିକ୍‌ସନ୍, ଦେଖାହେଲେ ଧର୍ମ୍ମ, ଇତିହାସ, ରାଜନୀତିର କଥା ଚର୍ଚ୍ଚା କରିବ । ପାଠପଢ଼ା ପ୍ରାଇମେରୀ ଯାଏ– କିନ୍ତୁ ଯେହେତୁ ନିଜ ଭାଷା ଇଂରେଜୀରେ ସବୁ ଜ୍ଞାନ ପୂରି ରହିଛି, ଆମ ଦେଶପରି ଜ୍ଞାନାର୍ଜନ ପାଇଁ ଏ ଦେଶରେ ଦଶବର୍ଷ ଲେଖେ ଅଜସ୍ର ଟଙ୍କା ଖର୍ଚ୍ଚ କରି ଗୋଟେ ବିଦେଶୀ ଭାଷା ଘୋଷିବା ଦରକାର ନଥିବାରୁ, ବଡ଼ ସୁବିଧା ।

ଗତ ବର୍ଷ ନବବର୍ଷାରମ୍ଭ ବେଳକୁ ମି: ବେହୁରା ଏଡ଼ିନ୍‌ବରାରେ । ଡିକ୍‌ସନ୍ ଦମ୍ପତି ଦିନେ ତାଙ୍କୁ ନିମନ୍ତ୍ରଣ କରିବା ଲାଗି ଆମର କାଫେ (ହୋଟେଲ୍)ରେ ପହଞ୍ଚିଲେ । କିନ୍ତୁ ଯେତେବେଳେ ଜାଣିଲେ ଯେ ବେହୁରା ନାହାନ୍ତି, ସେମାନେ ନବବର୍ଷର ପୂର୍ବ ରାତ୍ରି (New Year's Eve ଅର୍ଥାତ୍ ଡିସେମ୍ବର ୩୧ ତାରିଖ ରାତି) ପାଇଁ ମତେ ନିମନ୍ତ୍ରଣ କରି ଦେଇଗଲେ ।

୧୯୩୭ ଡିସେମ୍ବର ଏକତିରିଶ ତାରିଖ ରାତି ୯ ।୧୦ଟା ବେଳେ ଡିକ୍‌ସନ୍‌ଙ୍କ ଘରେ ପହଞ୍ଚିଲା ପରେ ଯାଇ ସେ ନିମନ୍ତ୍ରଣର ରହସ୍ୟ ଜାଣିଲି । କଥାଭାଷା ହେଲା ପରେ କ୍ରମେ ସେମାନେ ପ୍ରକାଶ କଲେ ଯେ ଡିସେମ୍ବର ୩୧ ତାରିଖ ରାତି ବାରଟା ପରେ ନବବର୍ଷ ଯିମିତି ଆରମ୍ଭ ହେଉଥିବ, ଜଣେ କଳା ଲୋକ ଯଦି ସେମାନଙ୍କ ଘରେ ପ୍ରଥମ ପାଦ ପକାଏ, ତେବେ ତାହା ଅତ୍ୟନ୍ତ ଶୁଭକର । ମି: ବେହୁରା ତାଙ୍କର ବନ୍ଧୁ, କଳା– ତେଣୁ ସେଥିପାଇଁ ତାଙ୍କୁ ନିମନ୍ତ୍ରଣ କରୁଥିଲେ । ସେ ଯେତେବେଳେ ନ ମିଳିଲେ, ମତେ ତାଙ୍କର ସ୍ଥାନ ନେବାକୁ ହେଲା– ଅବଶ୍ୟ ସେମାନେ ମତେ ପାଇ ସେତେ ଖୁସି ନୁହନ୍ତି; କାରଣ ମୁଁ ବେହୁରାଙ୍କ ପରି କଳା ନୁହେଁ; ତେବେ ଏତିକି ସାନ୍ତ୍ୱନା ଯେ, ମୁଁ ଯେକୌଣସି ଇଂରେଜଠୁ କଳା । ମୁଁ ତାଙ୍କୁ ପଚାରିଲି, ସବୁ ଇଂରେଜୀ ପରିବାର କ'ଣ ଏଇ ମୁହୂର୍ତ୍ତ ଲାଗି କୌଣସି ନା କୌଣସି କଳା ଲୋକ ଖୋଜି ଆଣିଥିବେ ? ଉତ୍ତର ମିଳିଲା ଯେ, ଇଂରେଜମାନଙ୍କ ଭିତରେ ବି ବର୍ଣ୍ଣର ତାରତମ୍ୟ ଅଛି– ଯେଉଁମାନଙ୍କର ବାଳ ଓ ଆଖି କଳା ସେମାନଙ୍କୁ କଳା ବୋଲି ଧରିନିଆଯାଏ ଓ ସେମାନେ ଏଇ ମୁହୂର୍ତ୍ତରେ ଶୁଭ ବୋଲି ଧରାଯାନ୍ତି । କୃଷ୍ଣକେଶ ପୁରୁଷ ଓ ସ୍ତ୍ରୀକୁ ଏ ଦେଶରେ ଡାର୍କ କହନ୍ତି । ସେଇଟା ସାଧାରଣ ଶବ୍ଦ । ସ୍ତ୍ରୀମାନଙ୍କର ଅଲଗା ବିଶେଷଣ 'ବ୍ରୁନେଟ୍'; ଯେଉଁମାନେ ସ୍ୱର୍ଣ୍ଣକେଶିନୀ ସେମାନଙ୍କୁ 'ବ୍ଲଣ୍ଡ୍' କୁହାଯାଏ । ସ୍ୱର୍ଣ୍ଣକେଶ ଅତ୍ୟନ୍ତ ମନୋଜ୍ଞ ହେଲେହେଁ ଏ ଦେଶରେ ଅନେକେ କଳା ବାଳକୁ ଭାରି ପସନ୍ଦ କରନ୍ତି । ମୋର କଳାବାଳକୁ ଦେଖି ଏକାଧିକ ପୁରୁଷ ସ୍ତ୍ରୀ ହିଂସା କରିଛନ୍ତି ।

ନୈଶାହାର ସମାପନ ପରେ କଥୋପକଥନ । ତା'ପରେ ଦେଖୁ ଦେଖୁ ବାର ବାଜିଲା । ସଙ୍ଗେ ସଙ୍ଗେ ମି: ଡିକ୍‌ସନ୍ ମତେ ଘରର ପଛଦ୍ୱାର ଦେଇ ଦାଣ୍ଡକୁ ନେଇ ଆସିଲେ ଓ ମୋ' ହାତରେ ଖଣ୍ଡେ ପଥର କୋଇଲା ଦେଇ ଆଗଦ୍ୱାରକୁ ଆଣିଲେ । ଦ୍ୱାରଦେଶରେ ଆଘାତ କଲୁଁ । ମିସେସ୍ ଡିକ୍‌ସନ୍ ଦ୍ୱାର ଖୋଲିଲେ । ମୁଁ କାଲା ଆଦ୍‌ମି । ନବବର୍ଷର ସମ୍ବର୍ଦ୍ଧନା ଜଣାଇ ତାଙ୍କର କରମର୍ଦ୍ଦନ କଲି ଓ ତାଙ୍କ ଘରେ ନବବର୍ଷାରମ୍ଭରେ ପ୍ରଥମ ପାଦ ପକେଇଲି । ପରେ ଉପରକୁ ଯାଇ ହାତରେ ଥିବା କୋଇଲା ଖଣ୍ଡକୁ ପ୍ରଜ୍ୱଳିତ ଅଗ୍ନିରେ ନିକ୍ଷେପ କରିଦେଲି – କାରଣ ତାହାହିଁ

ପ୍ରଥା । ସେମାନଙ୍କ ଘରେ ଏ ଉତ୍ସବ ସରିଲା ପରେ ମତେ ତାଙ୍କର ପ୍ରତିବେଶୀ ବନ୍ଧୁଙ୍କ ଘରେ ମଧ୍ୟ ଏଥିର ପୁରୋଧା ହେବାକୁ ପଡ଼ିଥିଲା । ଏହି ପ୍ରତିବେଶୀ ରାମର * ଚିଠି ଲେଖା-ବନ୍ଧୁ ଆଲେକ୍‌ସିର ଘର । ଆଲେକ୍‌ସିର ବାପା ଓ ମା' ମୋ'ପରି କଳାଲୋକ ନବବର୍ଷରେ ପାଇ ଭାରି ଖୁସିହେଲେ ଓ ତାଙ୍କର ପ୍ରଥା ଅନୁସାରେ ମତେ ମଦ୍ୟପାନ ଲାଗି ଅନୁରୋଧ କଲେ । ମୁଁ ନିଶାସେବନ କରେନି ବୋଲି ନାହିଁ କଲି; କିନ୍ତୁ ସେମାନେ ଛାଡ଼ିବା ଲୋକ ନୁହନ୍ତି । ଅମାଦକ ଆର୍ଦ୍ର-ମଦ୍ୟ (ଜିଞ୍ଜର ୱାଇନ୍) ଗୋଟିଏ ଛୋଟ ପିଆଲାରେ ମତେ ଦେଲେ । ମୁଁ ତାହା ଅକୁଣ୍ଠିତ ଚିତ୍ତରେ ଗ୍ରହଣ କଲି; ସେମାନେ ଅନ୍ୟ ପ୍ରକାର ମଦ୍ୟ ସେବନକଲେ ।

ଏ ଗତବର୍ଷର କଥା । ଏଇ ଭିତରେ ପୂରା ବର୍ଷେ ଚାଲିଗଲା । ମୁଁ ଡିକ୍‌ସନ୍ ବା ତାଙ୍କ ବନ୍ଧୁ ଘରକୁ ଯାଇପାରିନଥିଲି । ଏବର୍ଷ ନବବର୍ଷର ପ୍ରଥମ ଦିନରେ ହଠାତ୍ ମନେକଲି, ଯାଏଁ ସେହି ଦୁଇଟି ପରିବାରକୁ ଦେଖିଆସେଁ, ମୋର ପ୍ରଥମ ପଦପାତର କି ଫଳ ହୋଇଛି ଗତ ବର୍ଷ ସେମାନଙ୍କ ପ୍ରତି । ଗତବର୍ଷ ଏହି ସମୟରେ ପାଗ ବଡ଼ ଭଲ ଥିଲା । ଏବର୍ଷ ଜାନୁୟାରୀ ପ୍ରଥମ ଦିନ ଉଠିଲାବେଳକୁ ଚାରିଆଡ଼ ବରଫାବୃତ ଓ ଝିପ୍ ଝିପ୍ ବର୍ଷାଯୋଗୁଁ ବରଫ ଜକଲିଆ ହୋଇଉଠିଛି । ଏ ପାଗ ବଡ଼ କଦର୍ଯ୍ୟ । ଚାଲିଲେ ମନେହେବ ଯେପରି ଧଳା କାଦୁଅରେ ଚାଲୁଚି । କିନ୍ତୁ ସେହି ପାଗରେ ହିଁ ବାହାରିଲି ।

ସେ ଦିନ ରବିବାର । ମୁଁ ପ୍ରତି ରବିବାର ସକାଳେ ମୋର ସାପ୍ତାହିକ ସ୍ନାନ ସମାଧାନ କରେ । ସ୍ନାନ ଓ ବ୍ରେକ୍‌ଫାଷ୍ଟ୍ ସାରି ପଦାକୁ ବାହାରିଲାବେଳକୁ ପ୍ରାୟ ଦିନ ବାରଟା; କିନ୍ତୁ ଏଠାର ମଧ୍ୟାହ୍ନ ଆମର ରୌଦ୍ରତପ୍ତ ମଧ୍ୟାହ୍ନ ପରି ନୁହେଁ – ସେ କଥା ତ କେତେ ଥର କହିଛି । ଦିନ ବାରଟା ଠିକ୍ ଆମର ସକାଳ ପରି ଲାଗେ । ବରଫ କାଦୁଅରେ ଚାଲି ଚାଲି ଓ ଟ୍ରାମରେ କିଛି ଦୂର ଯାଇ ଡିକ୍‌ସନ୍ ଘର ଦୁଆରେ ପହଞ୍ଚିଲାବେଳକୁ ପ୍ରାୟ ଗୋଟେ । ଦୁଆରେ ଆଘାତ କଲି । କିଛି ସମୟ ପରେ ମି: ଡିକ୍‌ସନ୍ ଦ୍ୱାର ଖୋଲି ମତେ ଦେଖି ଗଭୀର ଆନନ୍ଦ ପ୍ରକାଶକଲେ ଓ ମତେ ଘର ଭିତରକୁ କରମର୍ଦ୍ଦନ କରି ନେଇଗଲେ । ଘରର ଉପର ମହଲାରେ ପହଞ୍ଚିଲାକ୍ଷଣି ସେ ତାଙ୍କର ସ୍ତ୍ରୀକୁ ଡାକି କହିଲେ, ''ଏଇ, ତମ ଲାଗି ଏକ ଆଶ୍ଚର୍ଯ୍ୟ ଘଟଣା ।'' ସ୍ତ୍ରୀ ଅନ୍ୟ କକ୍ଷରୁ ଆସି ମତେ ଦେଖି ଆଶ୍ଚର୍ଯ୍ୟ ହେଲେ ଓ ମୁଁ କରମର୍ଦ୍ଦନ କରିବା ପୂର୍ବରୁ ମୋ' ଗଣ୍ଡରେ ଚୁମ୍ବନ ଦାନ କଲେ । ମୁଁ ଉଭୟଙ୍କୁ ନବବର୍ଷର ଶୁଭ କାମନା ଜଣାଇଲି ଓ ଗତବର୍ଷ କିମିତି ଯାଇଛି ବୋଲି ପଚାରିଲି । ସୁଖର ବିଷୟ, ଗତବର୍ଷଟି ସେମାନଙ୍କର

* ଡକ୍‌ଟର ବସନ୍ତକୁମାର ବେହୁରା – ଡାକ ନାମ ''ରାମ'' ।

ସୁଖରେ କଟିଛି । ମୁଁ ତାଙ୍କୁ କହିଲି, ''ସତରେ ନା ମତେ ଭୁଲେଇବାକୁ ଏପରି କହୁଛ ?'' ସେମାନେ ଉତ୍ତର କଲେ, ''ନା, ଆମର ଗତବର୍ଷଟି ସୁଖରେ ନ କଟିଥିଲେ ତମକୁ ସେକଥା କହନ୍ତୁ ନାହିଁ ।''

ଗତ ରାତ୍ରିରେ ସେମାନେ କୌଣସି ପାର୍ଟିରେ ଯୋଗଦେଇଥିଲେ । ଏଠି ନିଶୋତ୍ସବ, ଅର୍ଥାତ୍ ନୃତ୍ୟାଦି ପ୍ରାୟ ରାତି ଦୁଇଟା ତିନିଟା ପର୍ଯ୍ୟନ୍ତ ଚାଲେ । ସେଠୁ ଫେରି ସେମାନେ ଶଯ୍ୟା ଗ୍ରହଣ କରନ୍ତି ଏବଂ ପରଦିନ ଯଦି ଛୁଟି, ତେବେ ଦିନ ଦଶଟା ଯାଏଁ ଶୋଇ ରହନ୍ତି । ଆମ ଦେଶରେ ଦିନ ପାଞ୍ଚଟା ପରେ ଶୋଇବା ଅସମ୍ଭବ; କାରଣ ଖରା ଓ ଆଲୁଅ; କିନ୍ତୁ ଏଠି ଦିନଟା– ବିଶେଷତଃ ଶୀତ ଦିନ– ଏକ ଦୀର୍ଘ ସନ୍ଧ୍ୟା । ତେଣୁ ଦିନରେ ବେଶ୍ ଶୋଇହେବ ଏବଂ ଏ ଦେଶର ଜଳବାୟୁକୁ ଉପଯୋଗୀ କରି ଏ ଦେଶର ଶଯ୍ୟା ଏମିତି ଆରାମପ୍ରଦଭାବରେ ତିଆରି ହୁଏ ଯେ ଶୋଇବା ଏକ ଉପଭୋଗ– କେବଳ ବିଶ୍ରାମ ନୁହେଁ । ମୁଁ ଘରେ ସମସ୍ତଙ୍କ ଆଗେ ଉଠେ ଜାଣ,– କିନ୍ତୁ ଏଠି ରାତି ଏଗାରଟାରେ ଶେଯ ଧରି ଦିନ ନ'ଟା ପୂର୍ବରୁ ଶେଯ ଛାଡ଼େନାହିଁ । ତା' ପୂର୍ବରୁ ଉଠିବା ଅସମ୍ଭବ । ଡିକ୍‌ସନ୍ ଦମ୍ପତି ସେଦିନ ଛୁଟି ଥିବାରୁ ମୁଁ ଯିବାର ମାତ୍ର ପନ୍ଦର ମିନିଟ୍ ପୂର୍ବରୁ ଅର୍ଥାତ୍ ଦିନ ସାଢ଼େବାରଟା ବେଳକୁ ରାତିର ଶେଯ ଛାଡ଼ିଥିଲେ । ମୁଁ ଯିବା ସଙ୍ଗେ ସଙ୍ଗେ ସେମାନେ ବ୍ରେକ୍‌ଫାଷ୍ଟ୍‌ର ଯୋଗାଡ଼ କଲେ, ଯେଉଁଥିରେ ମତେ ଯୋଗଦେବାକୁ ହେଲା ।

ଆଲେକ୍‌ସିର ବାପା ମା' ବର୍ତ୍ତମାନ ପୂର୍ବର ସ୍ଥାନ ଛାଡ଼ି ନୂଆ ଘର କିଣି ଅନ୍ୟ ସ୍ଥାନରେ ଟିକିଏ ଦୂରରେ ଅଛନ୍ତି । ମୁଁ ସେ ପରିବାରକୁ ଦେଖିବାକୁ ଚାହିଁଲି ଏବଂ ଡିକ୍‌ସନ୍ ଦମ୍ପତି ମୋ' ସାଙ୍ଗେ ଯିବାକୁ ସମ୍ମତ ହେଲେ । ଆରବର୍ଷ ପ୍ରଥମ ପାଦ ଦେଲା ପରେ ଡିକ୍‌ସନ୍ ଦମ୍ପତି ମତେ ନେଇ ସହର ବୁଲିଥିଲେ । ସେତେବେଳକୁ ରାତି ଗୋଟେ ଦି'ଟା; କିନ୍ତୁ ବିଦ୍ୟୁତାଲୋକିତ ଏ ଦେଶରେ ରାତିର ଭୟଙ୍କରତା ଆଦୌ ଜଣାପଡ଼େନାହିଁ । ନବବର୍ଷକୁ ସମ୍ବର୍ଦ୍ଧନା ଦେବାପାଇଁ ଏହି ରାତିରେ ଅନେକେ ରାତି ଦୁଇଟା ତିନିଟା ଯାଏ ଜାଗରିତ ରହନ୍ତି ଏବଂ ମଦ୍ୟପାନ, ନୃତ୍ୟ ଓ ସଙ୍ଗୀତରେ ସମୟ କଟାନ୍ତି । ଆମ୍ଭେମାନେ ବୁଲି ବାହାରିଲାବେଳେ ଅନେକ ସ୍ଥାନରେ ଶତ ଶତ ମଦ ବୋତଲ ରାସ୍ତାରେ ଗଡୁଥିବା ଦେଖିଲୁଁ । ଜଣେ ଦି'ଜଣ ପୁରୁଷ ଓ ସ୍ତ୍ରୀଙ୍କୁ ମାତାଲ ହେବାର ବି ଦେଖିଛି; କିନ୍ତୁ ଏପରି ଘଟଣା ଆଦୌ ସାଧାରଣ ନୁହେଁ– କେବଳ ଏହି ଦିନହିଁ ଏହା ଘଟେ । ନୃତ୍ୟାଳୟମାନଙ୍କରୁ ଦଳେ ଦଳେ ନାରୀ ଫେରିବାର ଦେଖିଲି ଏବଂ ଦେଖିଲି ମଧ୍ୟ ସୁନ୍ଦରୀ ତରୁଣୀ ସବୁ ନିର୍ଭୟରେ ରାତି ୨।୩ଟାରେ ନିର୍ଜନ ରାସ୍ତାରେ ଏକାକିନୀ ଘରକୁ ଫେରୁଥିବାର । ଏପରି ଘଟଣା ଆମ ଦେଶରେ ସମ୍ଭବ

କି ? ଅଥଚ ସହରର ପ୍ରତି ରାସ୍ତାରେ ସେତେବେଳେ ଦଳବଦ୍ଧ ମାତାଲ ପୁରୁଷ ବୁଲୁଥାନ୍ତି– ଯାହା କି ପ୍ରତ୍ୟେକ ତରୁଣୀ ନିଶ୍ଚୟ ଜାଣିଥିବେ । କିନ୍ତୁ ଏ ଦେଶର ପୁରୁଷ ମାତାଲ ଅବସ୍ଥାରେ ମଧ୍ୟ ସ୍ତ୍ରୀକୁ ଅପମାନିତ କରେନା ଓ ସ୍ତ୍ରୀ ନିଜକୁ ରକ୍ଷାକରିବାର ବିଶ୍ୱାସ ଏତେ ଦୃଢ଼ ଯେ, ମଦ୍ୟପ-ସଂକୁଳ ରାସ୍ତାରେ ରାତି ତିନିଟାରେ ସେ ଏକାକିନୀ ନିର୍ଭୟରେ ଚାଲିପାରେ । ଏ ଦେଶରେ ଯେତେ ଘଟଣା ଦେଖିଛି ମୁଁ, ତା' ଭିତରେ ଏହି ଘଟଣା ମୋର ମନରେ ଏକ ଗଭୀର ରେଖାପାତ କରିଛି । ଆମ୍ଭେମାନେ ନିଜକୁ ସଭ୍ୟବୋଲି ଗର୍ବକରୁଁ– କିନ୍ତୁ ଆମର ସଭ୍ୟତା ଏହି ଯେ, ଆମ ଦେଶରେ ସ୍ତ୍ରୀ-ବାଳିକାମାନେ ଦିନରେ ସୁଦ୍ଧା ବାହାରକୁ ବାହାରିବାକୁ ଡରୁଛନ୍ତି । ଆମ୍ଭେମାନେ ଯେ ଇଂରେଜର ଜୋତା ଖାଉଛୁଁ ତାହା ଠିକ୍ ହୋଇଛି । କାରଣ ଆମେ ଏପରି ନରାଧମ ଯେ, ଆମର ମା-ଭଉଣୀମାନେ ଆମର ବାହୁବଳ ବା ଆମର ନୈତିକତା କୌଣସିଟିରେ ବିଶ୍ୱାସ କରିପାରୁନାହାନ୍ତି । ସ୍ତ୍ରୀମାନଙ୍କୁ ସମ୍ପୂର୍ଣ୍ଣ ସ୍ୱାଧୀନତା ଦେଲେ ଏକ ପୁରୁଷରେ ସେମାନେ ଆତ୍ମରକ୍ଷା କରିବାକୁ ଶିଖିବେ; କିନ୍ତୁ କାପୁରୁଷେ ସେତକ ବି କରେଇଦେବେନି । ପ୍ରାୟ ଦିନ ୪ଟାରେ ଡିକ୍‌ସନ୍ ଦମ୍ପତି ସହିତ ମୁଁ ଆଲେକସି ଘରକୁ ବାହାରିଲି । ସେ କଥା ଆଉ ଏକ ପତ୍ରରେ ଲେଖିବି ।

## ଶ୍ୱେତାଙ୍ଗର ଆତ୍ମନିର୍ଭରତା

Students' Union, King's College
14-6-38

ମୋର ଜଣେ ନରୱେଜୀୟ (ଯା'ର ଘର ନରୱେରେ) ବନ୍ଧୁ ସେଦିନ କହିଲା, ସେ ତେରବର୍ଷ ବୟସରୁ ରୋଜଗାର ଆରମ୍ଭ କରିଛି । ତା' ବାପା ପାଦ୍ରି– ବେଶ୍ ସଙ୍ଗତିସମ୍ପନ୍ନ ଓ ସମ୍ମାନିତ । ତାଙ୍କର କେତେଗୁଡ଼ିଏ କୁକୁଡ଼ା ଥିଲା । ବାପ ପୁଅକୁ କୁକୁଡ଼ାମାନଙ୍କର ଯତ୍ନ ନେବାକୁ କହିଲେ । ପୁଅ ହଁ କଲା, କିନ୍ତୁ ଏଇ ସର୍ତ୍ତରେ ଯେ କୁକୁଡ଼ାଗୁଡ଼ିକ ତା'ର ହେବ । ବାପା କହିଲେ, ବିନା ପଇସାରେ ସେ କୁକୁଡ଼ାମାନଙ୍କର ଅଧିକାର ପାଇପାରିବ ନାହିଁ । କୁକୁଡ଼ାଗୁଡ଼ିକର ଦାମ୍ ଦୁଇ ପାଉଣ୍ଡ ଦଶ ଶିଲିଂ । ତା' ଯେତେବେଳେ ସେ ଦେଇପାରିବ ସେତିକିବେଳେ କୁକୁଡ଼ାଗୁଡ଼ିକ ତା'ର ହେବ । ପୁଅ ସେଥିରେ ରାଜିହେଲା ଓ କୁକୁଡ଼ାଗୁଡ଼ିକ ଦେଖାରଖା କଲା । ଅଣ୍ଡା ବିକି ବିକି ଦୁଇ ପାଉଣ୍ଡ ଦଶ ଶିଲିଂ ବାପକୁ ଦେଇଦେଲା । ତା'ପରେ ନୂଆ କୁକୁଡ଼ା କିଣି ଦଳ ବଢ଼େଇ, ମୋଟରେ ଷାଠିଏ ପାଉଣ୍ଡ ସେ ବଞ୍ଚେଇଲା– ସେହି ଟଙ୍କାରେ ସେ

ନିଉକାସଲରେ ବର୍ଷେ ଟ୍ରେନିଂ ନେବାପାଇଁ ଆସିଛି । ଷାଠିଏ ପାଉଣ୍ଡରୁ ଯାହା ଅଧିକ କିଛି ଦରକାର, ତାହା ବାପ ଦେଇଛି । ମୁଁ ପଚାରିଲି– ସେ ଟଙ୍କା ତୁ କ'ଣ ଶୁଝିବୁ ? ସେ କହିଲା– ବାପା ଯଦି ଚାହାନ୍ତି ମୁଁ ଶୁଝିଦେବି । କିନ୍ତୁ ଆମ ଦେଶରେ ପୁଅକୁ ଶିକ୍ଷିତ ଓ ଉପଯୁକ୍ତ କରିବାକୁ ବାପ ଦାୟୀ– ତେଣୁ ସେ ଶୁଝିବାକୁ କହିବେ ନାହିଁ । ସେ ଗତ ଆଠବର୍ଷ ହେଲା ବିଭାଘର କଥା ଭାବୁଛି– କିନ୍ତୁ ବିଭାହୋଇପାରୁନାହିଁ; କାରଣ ତା'ର ସେମିତି ରୋଜଗାର ହୋଇନାହିଁ, ଯେଉଁଥିରେ କି ସେ ଓ ତା'ର ସ୍ତ୍ରୀ ଭଲଭାବରେ ପୋଷି ହୋଇପାରିବେ ।

ଏ ଚିତ୍ର ଆଗରେ ଆମର ଚିତ୍ର କି ଦୁର୍ବଳ, ମଳିନ, ମେରୁଦଣ୍ଡହୀନ, ଜଘନ୍ୟ କହିଲ

## ସୈରିନ୍ଧ୍ରୀ ନିସ୍‌ବେଟ

Students' Union, King's College
New Castle, 19-8-38

ଅଗଷ୍ଟ ପନ୍ଦର ତାରିଖଠୁ ଏଠାର ଗ୍ରୀଷ୍ମକାଳ ଶେଷ । ତା'ପରେ ଶରତ ଋତୁ ଆରମ୍ଭ । 'ଆମର ସୁନ୍ଦର ଶରତ୍‌କାଳ'ରୁ ଏଠା ଶରତ୍ ଠିକ୍ ଓଲଟା । ଏଠାର ଗ୍ରୀଷ୍ମକାଳରେ ପ୍ରକୃତି ନବଜୀବନ ଧାରଣକରେ– ଗଛ ଲତା ସବୁଜ ପତ୍ରରେ ମଣ୍ଡିତହୋଇ ଓ ନାନା ବର୍ଣ୍ଣର ଫୁଲରେ ବନ ପ୍ରାନ୍ତର, ବାଡ଼ି ବଗିଚା ଶବଳିତ ହୋଇ ସାରା ଇଂଲାଣ୍ଡ ଏକ ମନୋହର ଉଦ୍ୟାନରେ ପରିଣତ ହୁଏ । ଏମାନଙ୍କର ଗ୍ରୀଷ୍ମ ଆମ ଗ୍ରୀଷ୍ମଠୁଁ ଠିକ୍ ବିପରୀତ– ଆମର ଗ୍ରୀଷ୍ମ ତ ପ୍ରକୃତିର ଭୀଷ୍ମ ମୂର୍ତ୍ତି । ଅଗଷ୍ଟ ଶେଷଆଡ଼କୁ କ୍ରମେ ଶୀତ ଆରମ୍ଭ ହୁଏ । ଦକ୍ଷିଣ-ପୂର୍ବରୁ ଏକ ପ୍ରବଳ ପବନ ବହେ । ଗଛର ସବୁଜ ପତ୍ର ପାଚିବାକୁ ଆରମ୍ଭ କରି ଝଡ଼ି ତଳେ ପଡ଼େ ଓ ଦକ୍ଷିଣ-ପୂର୍ବ ପବନ ତାହା ଉଡ଼ାଇନେବାରେ ସାହାଯ୍ୟ କରେ । ପ୍ରକୃତିର ଏହି ଜରାବସ୍ଥା ଏଠାର ଶରତ୍ ଋତୁର ଲକ୍ଷଣ ଏବଂ ଏ ଦେଶର କବିମାନେ ମାନବ ଜୀବନର ଶାନ୍ତ ସଂଯତ ପରିପକ୍ୱ ଜରାବସ୍ଥାକୁ ଶରତ୍ ଋତୁ ସାଥିରେ ତୁଳନା କରିଥାନ୍ତି । ଶରତ୍ ଋତୁର ପତ୍ରଝଡ଼ା ଏମିତି ଚାଲି ଚାଲି ନଭେମ୍ବରରେ ପ୍ରକୃତ ଶୀତ ଆରମ୍ଭ ବେଳକୁ ଗଛମାନଙ୍କରେ କେବଳ ଡାଙ୍ଗ ଥିବ ।

କାଲି ଶନିବାର, ମୋର ଜଣେ ପରିଚିତା ଶିଳ୍ପୀ ବାନ୍ଧବୀକୁ ଖାଇବାକୁ ଡାକିଛି; କିନ୍ତୁ ତମକୁ ଏ ମହିଳାଟି ସମ୍ବନ୍ଧରେ ପରିଷ୍କାର କରି କିଛି ନ କହିଲେ ତମେ ହୁଏତ ସ୍ୱାଭାବିକ ନୀତିରେ କିଛି ଆଶଙ୍କା କରିପାର । ସେଥିପାଇଁ କେବଳ ନୁହେଁ, ଆହୁରି ଅନ୍ୟ ଦିଗରୁ ମଧ୍ୟ ଏ ଦେଶରେ ପରିଚିତା ନାରୀମାନଙ୍କର କଥା ତମକୁ ମୋର ଶୁଣେଇବା ଉଚିତ ।

ମୋର ବନ୍ଧୁ ମିସ୍ ନିସ୍‌ବେଟ୍ ଥରେ ଚା–ପାର୍ଟି କରିଥିଲେ । ମୁଁ ସେଠି ଏକମାତ୍ର ଭାରତୀୟ ଥିଲି । ସେ ପ୍ରାୟ ୩।୪ ମାସ ତଳର କଥା । ଏବେ ଦିନେ ହଠାତ୍ ବାଟରେ ଦେଖାହେଲା । ସେ ମୋ' ନାଁ ମନେରଖିଥିଲେ ଅଥଚ ମୁଁ ତାଙ୍କୁ ସମ୍ପୂର୍ଣ୍ଣ ଭୁଲିଯାଇଥିଲି । କିଛି କଥା ହେବା ପରେ ସେ ମତେ ଆଗାମୀ ଅକ୍‌ଟୋବର୍ ମାସରେ ତାଙ୍କର୍ ସମିତି (ଉତ୍ତର ଇଂଲାଣ୍ଡ କଳା ସମିତି) ତରଫରୁ ହେଉଥିବା ଏଲିଜାବେଥୀୟ ନାଟକ ନେଇ ଏକ ବକ୍ତୃତାକୁ ନିମନ୍ତ୍ରଣ କଲେ ଓ ଯେତେବେଳେ ମୋର ସୁବିଧା ହେବ ସେତେବେଳେ ତାଙ୍କ ଘରକୁ ଯିବାକୁ ଅନୁରୋଧ କଲେ ।

ସେହି ଅନୁରୋଧ ଅନୁସାରେ ଦିନେ ଗଲି । ପ୍ରାୟ ୪।୫ ଘଣ୍ଟାକାଳ ଗପ କଲୁଁ । ସେ ମୋ' ଇତିହାସ ଜାଣିଲେ ଓ ମୁଁ ତାଙ୍କ ଇତିହାସ ଜାଣିଲି । ସେ ଧନିକର କନ୍ୟା । ବାପର ଆଦରିଣୀ କନ୍ୟା ଥିଲେ । ଗତ ପ୍ରଥମ ଯୁଦ୍ଧବେଳେ ଫ୍ରାନ୍‌ସରେ ସେବା-କାରିଣୀର କାର୍ଯ୍ୟ କରିଥିଲେ । ଯୌବନରେ ସୁନ୍ଦରୀ ଥିଲେ ହେଁ ଓ ବହୁଲୋକର ପ୍ରିୟପାତ୍ରୀ ଥିଲେ ହେଁ, ମନୋମତ ବର ବାଛୁ ବାଛୁ ବେଳ ଚାଲିଗଲା– ମନ ଅନୁସାରେ କେହି ଜୁଟିଲେନାହିଁ । ଜୀବନରେ ପରେ ପରେ ଦୁଇ ଜଣକୁ ସେ ଆତ୍ମସମର୍ପଣ କରିବା ଉପରେ ବସିଥିଲେ; କିନ୍ତୁ ସେ ମିଳନ ସୁଖକର ହେବନି ବୋଲି ଶେଷ ମୁହୂର୍ତ୍ତରେ ମୁହଁ ଫେରେଇନେଇଛନ୍ତି । କିଛିଦିନ ତଳେ ବାପା ତାଙ୍କର ମରିଗଲା ପରେ ସେ ଲଣ୍ଡନ୍ ଛାଡ଼ି ନିଉକାସ୍‌ଲରେ ଜୀବନ କଟାଉଛନ୍ତି ଓ ଜୀବିକାର୍ଜ୍ଜନପାଇଁ ଚିତ୍ରାଙ୍କନ ଧରିଛନ୍ତି । ମା' ଭାଇ ବଞ୍ଚିଛନ୍ତି ତାଙ୍କର; କିନ୍ତୁ ଏମାନଙ୍କର ସ୍ୱାଧୀନତା ଭାବ ଏତେ ମଜ୍ଜାଗତ ଯେ କେହି କାହା ଆଶ୍ରୟରେ ରହିବେ ନାହିଁ । ନିକଟରେ ତାଙ୍କର ମା' ଆସିବ– କିଛିଦିନ ରହି ପୁଣି ଚାଲିଯିବ, ସେହି ହେଲା ମା' ଝିଅର ଦେଖା । ଆମ ଦେଶଠାରୁ ଏମାନଙ୍କର ବ୍ୟବହାରରେ ଏଇ ଏକ ମସ୍ତ ପାର୍ଥକ୍ୟ । ମୁଁ ମନେକରେ ଏମାନଙ୍କର ଏପ୍ରକାର ଆଚାର ବିଚାରବ୍ୟଞ୍ଜକ । ଆମ ଦେଶରେ କୁକୁରପଲ ପରି ଏକାଠି ରହି କାମୁଡ଼ାକାମୁଡ଼ି ହୋଇ ଜୀବନ କଟାଇବା ବନ୍ୟ ଜୀବନ କଥାହିଁ ସ୍ମରଣ କରାଏ– ସଭ୍ୟତା ନୁହେଁ ।

କଥାବାର୍ତ୍ତା ଭିତରେ ସେ ମୋର ବୟସ ପଚାରିଲେ । ମୁଁ ଅନ୍ଦାଜ କରି ମୋର ବୟସ କହିଲି । ସେ ଆଶ୍ଚର୍ଯ୍ୟ ହୋଇ କହିଲେ, "କେବେ ନୁହେଁ, ମୁଁ ତୁମକୁ ଅଠରବର୍ଷିଆ ଟୋକା ବୋଲି ଭାବିଥିଲି ।" ଏ କଥାରେ ତାଙ୍କ ଅପେକ୍ଷା ମୁଁ ବେଶି ଆଶ୍ଚର୍ଯ୍ୟ ହେବାର କଥା । ମୁଁ ତା'ପରେ ତାଙ୍କୁ ତାଙ୍କର ବୟସ ପଚାରିଲି । ସେ ମତେ ଅନୁମାନ କରିବାକୁ କହିଲେ । ଶ୍ରୀମତୀ ନିସ୍‌ବେଟ୍ ଆମ କଥାବାର୍ତ୍ତାବେଳେ ସ୍ୱଳ୍ପବସନା ଥିଲେ । ଅନାବୃତ ବାହୁ ତାଙ୍କର ସ୍ୱାସ୍ଥ୍ୟ ଓ ବୟସର ବିଜ୍ଞାପନର କାର୍ଯ୍ୟ କରୁଥିଲା । ମୁଁ

ସେହି ବିଜ୍ଞାପନ ଉପରେ ନିର୍ଭର କରି ନିଜର ଅଜ୍ଞତା କେବଳ ଦେଖାଇଲି । ମୁଁ କହିଲି, ''ମିସ୍ ନିସ୍‌ବେଟ୍, ତମେ ବୋଧହୁଏ ୩୫।୪୦ ବୟସ ଭିତରେ ।'' ମୋର ଉତ୍ତରରେ ସେ ଠୋ-ଠୋ ହସି ଉଠିଲେ ଓ କହିଲେ, ''ମୁଁ ତମର ଗୋସେଇଁ ମା' । ମୁଁ ଯେ ପଚାଶ ଏଇକ୍ଷଣି ।'' ମୁଁ ତ ଏକାବେଳକେ କାବା- ମୁଁ କହିଲି, ''ମୁଁ କେବେ ତାହା ବିଶ୍ୱାସ କରିବି ନାହିଁ ।'' ସେ କହିଲେ, ''ଦେଖ, ମୁଁ ପରା ଗତ ଯୁଦ୍ଧରେ କାମକରିଥିଲି ? ସେତେବେଳକୁ ମୁଁ କୋଡ଼ିଏ ଉପରେ । ଏବେ ତ ଯୁଦ୍ଧ ହେବାର ପଚିଶ ବର୍ଷ ହୋଇଗଲା ।''

ଏହି ଦେଶରେ ନାରୀ ଓ ପୁରୁଷମାନଙ୍କର ସ୍ୱାସ୍ଥ୍ୟ ଓ ଯୌବନ କିମିତି ଦୀର୍ଘସ୍ଥାୟୀ, ତାହା ଏଇ ଘଟଣାରୁ ତମେ ଜାଣିପାରିବ । ମିସ୍ ନିସ୍‌ବେଟ୍‌ଙ୍କୁ ଦେଖିଲେ କେହି କହିବନି ଯେ ସେ ପଚାଶ ବର୍ଷର ବୁଢ଼ୀ- ସେ କହିଲା ପରେ ମଧ୍ୟ ମୁଁ ତାଙ୍କୁ ସେହି ୩୫।୪୦ ଭିତର ବୋଲି ଧରିନେଉଛି; କାରଣ ସୌନ୍ଦର୍ଯ୍ୟ ସମଜିବାର ଯେ ପ୍ରଧାନ ଯନ୍ତ୍ର ଆଖି, ତା'ର ଧାରଣା ସେଇୟା । ଏ ବିଷୟରେ ଅନ୍ୟ ଇନ୍ଦ୍ରିୟମାନଙ୍କର ପରାମର୍ଶ ତ ଅନାବଶ୍ୟକ । ମିସ୍ ନିସ୍‌ବେଟ୍ ଭାରତୀୟ ସୌନ୍ଦର୍ଯ୍ୟର ଭାରି ପ୍ରଶଂସା କଲେ । ତମ କଥା ପଚାରି କହିଲେ- ସେ କ'ଣ ତନ୍ୱୀ ? ସେ କ'ଣ କୃଷ୍ଣକେଶିନୀ ? ସେ କ'ଣ ଶାଢ଼ି ପରିଧାନ କରନ୍ତି ? ଲଣ୍ଡନର କୌଣସି ଏକ ଭୋଜି-ସଭାରେ ଶାଢ଼ିପରିହିତା ଭାରତୀୟ ତରୁଣୀକି ସେ ଦେଖିଥିଲେ- ସେପରି ସୁନ୍ଦର ଜିନିଷ ଆଉ ସେ ଦେଖିନାହାନ୍ତି, ସଭାର ସମସ୍ତେ କେବଳ ତା'ରି ଆଡ଼କୁ ଅନାଇଥାନ୍ତି ବୋଲି ସେ କହିଲେ ।

ଏକାକିନୀ ନିସ୍‌ବେଟ୍ ନିଜ ଅର୍ଜନରେ ଏଇପରି ବଞ୍ଚେ । ସେ ପୃଥିବୀର ସବୁ ଦେଶର ଖବର ରଖେ । ଭାରତରୁ ଇଂରେଜର ମୁଷ୍ଟି କେବେ ଅପସାରିତ ହେବ ସେଥିପାଇଁ ସେ ଚିନ୍ତିତ । ସାଧାରଣ ଇଂରେଜ ବାଳିକାର ମସ୍ତକ ଯେପରି କୁଞ୍ଚିତ କନକ କେଶରେ ମନୋହର, ତା'ର ମସ୍ତିଷ୍କ ସେହିପରି ଭାବ ଓ ଭାବନାରେ ସୁଶୋଭିତ । ମୋ' ନିକଟରେ ଥିବା ସାଧାରଣ ଏକ ବାଳିକାର କଥା କହି ସେକଥା ପରେ ବୁଝେଇବି ।

## ସ୍ୱଦେଶର ଅଧମ ପ୍ରତିନିଧିତ୍ୱ

Students' Union, King's College, 24-2-38

ଏ ସପ୍ତାହରେ ଦେଇଥିବା ପୂର୍ବ ପତ୍ର ପାଇଥିବ । ମୁଁ ପଢ଼ାପଢ଼ିରେ ବଡ଼ ବ୍ୟସ୍ତ ଏଇକ୍ଷଣି । ଆଗାମୀ ସପ୍ତାହରେ ମତେ ଗାନ୍ଧିଙ୍କ ବିଷୟରେ କଲେଜରେ

ବକ୍ତୃତା କରିବାକୁ ହେବ । ସେଥିଲାଗି ବି ପଢ଼ାପଢ଼ି କରି ଆହୁରି ବ୍ୟସ୍ତ ହେଉଛି । ମୁଁ ଜାଣେନା, ମୁଁ କ'ଣ ଓ କିପରି କହିବି । ମୁଁ ତ ଲାଜକୁଳା ଜାଣ— ଦଶଜଣଙ୍କ ଆଗରେ ସାହସ କରି ମୁହଁ ଟେକି ପାରେନା । ଏବେ ବି କହିବାକୁ ଗଲାବେଳକୁ ତଣ୍ଟି ଶୁଖିଯାଉଛି, ଛାତି ଧଡ଼ ଧଡ଼ ହେଉଛି । ତେବେ ସାହସ ବାନ୍ଧି ଆଖି ବୁଜି କହିବାକୁ ଚେଷ୍ଟା କରୁଛି— କହୁ କହୁ କାଳେ ଭଲ କହିପାରେ । ଗତ ସପ୍ତାହରେ ଏଠାର ଆନ୍ତର୍ଜାତିକ ସଭାରେ ସ୍ପେନ୍ ବିଷୟରେ ବକ୍ତୃତା ଥିଲା । ବକ୍ତାଙ୍କୁ ଧନ୍ୟବାଦ ଦେବାର ପାଳି ମୋ' ଉପରେ ଯେତେବେଳେ ପଡ଼ିଲା, ମୁଁ ଧନ୍ୟବାଦ ତ ଦେଲି— ତା'ଛଡ଼ା ୟୁରୋପୀୟ ସଭ୍ୟତାର ରକ୍ତାକ୍ତ ସାମ୍ରାଜ୍ୟବାଦ ବିଷୟରେ ଆଚ୍ଛା କରି ଦି'ପଦ ଶୁଣେଇ ଦେଲି । ମୁଁ କହିଲି, ''ସ୍ପେନ ଷୋଡ଼ଶ ଶତାବ୍ଦୀରେ ଆମେରିକାରେ ଯେଉଁ ଅମାନୁଷିକ ଅତ୍ୟାଚାର କରିଛି, ବର୍ତ୍ତମାନ ତା'ର ଫଳ ପାଉଛି । ଏବର ସାମ୍ରାଜ୍ୟ-ଲୋଲୁପ ୟୁରୋପୀୟମାନେ ସାବଧାନ ହେଉନ୍ତୁ— ସେମାନଙ୍କୁ ଦିନେ ନା ଦିନେ ତାଙ୍କ କାର୍ଯ୍ୟର ଫଳ ଭୋଗିବାକୁ ପଡ଼ିବ ।'' ଆନ୍ତର୍ଜାତିକ ସଭାର ସଭାପତି ବି ମୋ' ମତକୁ ପସନ୍ଦ କଲେ । ଅକ୍‌ସଫୋର୍ଡ଼ର ଜଣେ ଇତିହାସ ଅଧ୍ୟାପକ ଏଠି ଆସି ବକ୍ତୃତା ଦେଇଥିଲେ । ତାଙ୍କର ବିଷୟ ଥିଲା, 'ଇଂରାଜ ସାମ୍ରାଜ୍ୟର ଜାତୀୟତା' । ଅନ୍ୟାନ୍ୟ କଥା ଭିତରେ ଭାରତର ଜାତୀୟ ଆନ୍ଦୋଳନ କଥା ସେ କହିଲେ ଏବଂ ଆଶା ଦେଲେ ଯେ ଭାରତବର୍ଷ ଦିନେ ନିଶ୍ଚେ ସ୍ୱାଧୀନ ହେବ । ସେ ବକ୍ତୃତାରେ ଆମେ ଦୁଇଜଣ ମାତ୍ର ଭାରତୀୟ ଥାଉଁ— ମୁଁ ଓ ଦୁର୍ଗାମାଧବ । ବକ୍ତୃତା ଶେଷ ହେଲା ପରେ ଦୁର୍ଗାମାଧବ ଘରକୁ ଯିବାକୁ କହିଲେ । ମୁଁ କହିଲି, ''ଦେଖ ଏଠି ଅନ୍ୟ ଭାରତୀୟ କେହି ନାହାନ୍ତି । ଆଲୋଚନାବେଳେ ଭାରତ ପକ୍ଷରୁ ଜଣେ କିଏ ଥିବା ଦରକାର— ମୁଁ ରହିବି ।'' ଶେଷରେ ସେ ରହିଲେ ଏବଂ ସେଦିନ ସମସ୍ତ ସନ୍ଧ୍ୟାଟା କେବଳ ଭାରତୀୟ ସ୍ୱାଧୀନତା ସଂଗ୍ରାମର ଆଲୋଚନାରେ ହିଁ କଟିଲା କହିଲେ ଚଳେ । କାରଣ ଆଲୋଚନା ଆରମ୍ଭବେଳେ ମୁଁ ବର୍ତ୍ତମାନ ନୂଆ ଶାସନର ଗଲତି କେଉଁଠି— ଭାରତୀୟ ଜାତୀୟ କଂଗ୍ରେସ କାହିଁକି ଏହାର ବିରୁଦ୍ଧରେ, ଇଂରେଜ ଶାସନରେ ଭାରତର ଅବସ୍ଥା କ'ଣ ହୋଇଛି— ଏସବୁ ବିଷୟରେ କହିଲି । ଅଧ୍ୟାପକ ଉତ୍ତର ଦେଲେ— ମୁଁ ତା'ର ପ୍ରତ୍ୟୁତ୍ତର ଦେଲି । ସଭା ଭଙ୍ଗ ପରେ ଅଧ୍ୟାପକ କରମର୍ଦ୍ଦନ କରି କହିଲେ, 'ବେଶ୍ ଆଲୋଚନା ହେଲା— ଅଥଚ ହସହସରେ ।' ....ଇଂରେଜ ଜାତି ସହଜରେ ରାଗେନା— ବଦ୍‌ମିଜାଜ୍ ଏମାନଙ୍କର ସହଜରେ ଧରାପଡ଼େନି । ଏମାନେ ହସି ହସି ସବୁ କଥା କରନ୍ତି— ସେଇଟା ଅନ୍ୟଠି ଦେଖିଲେ ପସନ୍ଦ କରନ୍ତି ।

ଆଗାମୀ ସପ୍ତାହରେ ମୁଁ ଗୋଟିଏ ବାଳିକା ହାଇସ୍କୁଲ ଦେଖିଯିବାକୁ ହେଡ୍ ମିଷ୍ଟ୍ରେସଙ୍କଠାରୁ ନିମନ୍ତ୍ରଣ ପାଇଛି । କ'ଣ ଦେଖିଲି, ଲେଖିବି । ଆନ୍ତର୍ଜାତିକ ସଭାର ସଭାପତି ମୋ' ଅନୁରୋଧରେ ଏହା ଯୋଗାଡ଼ କରିଦେଇଛନ୍ତି । ବାଳକ ସ୍କୁଲକୁ ବି ଯିବି ।

## ବିଲାତର ଶିଖ୍ ବୁଲାବିକାମାନଙ୍କର ଆତ୍ମୀୟତା ଓ ଆତିଥ୍ୟ

ନିଉକାସଲ୍
୧୪-୪-୩୮

ତମର ପତ୍ର ପାଇଲି । ତମେ ସେଠାର ଗରମ କଥା ଲେଖିଛ– ଏଠି ବି ବର୍ତ୍ତମାନ ଗରମ ପଡ଼ିଲାଣି । ଆମ ଦେଶର ଫେବୃଆରୀ ମାସ ପରି ଗଛରେ ସବୁଜ ପତ୍ର ଦେଖାଦେଲାଣି, ଏହା ଏ ଦେଶୀୟ ଗ୍ରୀଷ୍ମର ପ୍ରଥମ ସୂଚନା । ଆମ ଦେଶରେ ଗ୍ରୀଷ୍ମ ଆସିଲେ ପୃଥିବୀ ଶୁଖିଶାଖି ମରୁଭୂମିରେ ପରିଣତ ହୁଏ – କି ବିପରୀତ ।

ଗତକାଲି ଏପ୍ରିଲ୍ ତେର ତାରିଖ– ଶିଖ୍ ଧର୍ମର ଆରମ୍ଭ-ବାସର କୁଆଡ଼େ । ଏଠାର ଶିଖ୍-ବୁଲାବିକାମାନେ ସେମାନଙ୍କର ଗୋଟିଏ ବସାଘରେ ଏହି ଉତ୍ସବ ପାଳନ କରିଥିଲେ । ଜଣେ ଶିଖ୍ ଛାତ୍ର ସେମାନଙ୍କୁ ଏକାଠିକରି ଗୋଟେ ପ୍ରକାର ସଙ୍ଗଠନରେ ସେମାନଙ୍କୁ ରଖିବାକୁ ଚେଷ୍ଟା କରୁଛି । ମୁଁ ଓ ଜଣେ ମରାଠୀ ଛାତ୍ର ଦେଖିବାକୁ ଯାଇଥିଲୁ । ତାଙ୍କ ପୁରାଣ ବୋଲା ହେଉଥିଲା ଗଳାବେଳକୁ– ତାହା ଶେଷ ହେଉ ହେଉ ପ୍ରାୟ ଦୁଇଘଣ୍ଟା କାଳ ବିତିଗଲା । ଜୋତାକୁ ବାହାରେ ରଖି, ଭିତରେ ଚକା ପକେଇ ବସି ବସି ଅଣ୍ଟା ଭାଙ୍ଗିଗଲା । ଶେଷରେ ମିଳିଲା ପ୍ରସାଦ– ଚମତ୍କାର ଘିଅ ପଚ୍‌ପଚ୍ ହାଲୁଆ ବା ମୋହନଭୋଗ । ସେ ସରିଲାରୁ ଖାନା– ପୁରୀ, ହାଲୁଆ, ତରକାରି । ଶିଖ୍‌ମାନେ ଭଲ ରାନ୍ଧନ୍ତି, ସେମାନଙ୍କର ଖାଦ୍ୟ ଭାରତବର୍ଷରେ ସବୁଠୁ ପୁଷ୍ଟିକର । ସବୁ ବି ଭଲହୋଇଥିଲା । ଖାଦ୍ୟ ଶେଷରେ ଗ୍ଲାସେ ଦୁଧ । ଆଉ ଯାଉ କୁଆଡ଼େ ? ବହୁ ଦିନ ହେଲା ଭାରତବର୍ଷର ବିଳାସୀ ଖାଦ୍ୟର ସମ୍ପର୍କ ନ ଥିବାରୁ କାଲି ଦିନଯାକ ଯୁ ଆଳସ୍ୟ ଓ ଅକର୍ମଣ୍ୟତାରେ କଟେଇଛି, ଆଉ କ'ଣ କହିବି ? ରାତିରେ ବି ନିଦ୍ରାରେ ବ୍ୟାଘାତ ହେଲା । କିନ୍ତୁ ଶିଖ୍‌ମାନଙ୍କର– ବୁଲାବିକା ହେଲେ କ'ଣ ହେବ– ବ୍ୟବହାରରେ ମୁଁ ମୁଗ୍ଧ ହୋଇ ଆସିଲି । ବରାବର ଯିବାକୁ ନିମନ୍ତ୍ରଣ ଓ ଗଲେ ଆଦର ଅଭ୍ୟର୍ଥନା । ମୁଁ ହିନ୍ଦୁସ୍ତାନୀ କହିପାରେନି– ତଥାପି ଆମେ ଯେ ଏକ ଦେଶର ଲୋକ, ତାହା ଏହି ମୂର୍ଖ ମୂକ ପଞ୍ଜାବୀ ମଧ୍ୟ ଜାଣିପାରି ଯେ ତା'ର ଜ୍ଞାତିପରି ଆଦର କରୁଛି, ତାହା ବଡ଼

ଉପଭୋଗ୍ୟ ଅନୁଭୂତି । ଏହି ବୁଲାବିକାମାନେ କେହିହେଲେ ସାପ୍ତାହିକ ଦୁଇ ପାଉଣ୍ଡ (ନେଟ୍)ରୁ କମ୍ ରୋଜଗାର କରନ୍ତିନି– ଅଧିକାଂଶ ପାଞ୍ଚ ପାଉଣ୍ଡ, କେହି କେହି ଦଶ ପାଉଣ୍ଡ ବି ରୋଜଗାର କରନ୍ତି । ସାପ୍ତାହିକ ଦଶ ପାଉଣ୍ଡ ମୁଁ ଜୀବନରେ କେବେ ହେଲେ ରୋଜଗାର କରିପାରିବି କି ନା ସନ୍ଦେହ । ଏମାନଙ୍କ ଭିତରୁ କାହାର କାହାର ମୋଟରକାର ବି ଅଛି । ଜଣେ ଏଫ୍.ଏ. ପର୍ଯ୍ୟନ୍ତ ପଢ଼ିଥିଲା, ଏଠାକୁ ଆସିଛି କୌଣସି ଚାକିରି ନ ଜୁଟିବାରୁ ଦେଶରେ– ସୁନ୍ଦର ଇଂରେଜୀ କହୁଛି ଓ ଭାରତବର୍ଷରେ ଯାହା କେବେ ରୋଜଗାର କରିପାରିନଥାନ୍ତା, ତାହା କରୁଛି । ସମଗ୍ର ପଞ୍ଜାବରେ ଶିଖ୍‌ମାନେ ମୋଟ ଲୋକସଂଖ୍ୟାର ଶତକଡ଼ା ପନ୍ଦର ଅଂଶ ମାତ୍ର; କିନ୍ତୁ ଶିଖ୍ ସାରା ପୃଥିବୀରେ ଛାଇ ହୋଇ ଯାଇଛନ୍ତି । ଓଡ଼ିଶା ରାଜାମାନଙ୍କର ମଟର ଡ୍ରାଇଭର ଶିଖ୍, ଜାମସେଦପୁରରେ କଳଚାଳକ ଶିଖ୍, ଭାରତୀୟ ଆର୍ମିରେ କର୍ଣ୍ଣେଲ-ଲେଫ୍‌ଟନେଣ୍ଟ ଶିଖ୍, ଜାଭାଠୁ ଆମେରିକା ଯାଏ ବେପାରୀ ଶିଖ୍ । ଆମେ ଓଡ଼ିଆ ସେଇ ମାଟିକୁ କାମୁଡ଼ି ପଡ଼ିଛୁ– ଆମର ସାହସ ନାହିଁ ଘରୁ ଗୋଡ଼ କାଢ଼ିବାକୁ, ଆମକୁ ଭାତ ମିଳିବ କୁଆଡୁ ? ଖାଲି ମାଟିକି ଖୋଳିଲେ ମାଟି କେତେ ଦେଉଥିବ ? ବୁଦ୍ଧି କି ବିଦ୍ୟାକୁ ଖୋଳିଲେ ସିନା ଅସରନ୍ତି ସମ୍ପତ୍ତି ବାହାରନ୍ତା । ଆମ ଦେଶରେ ସେ ଚେଷ୍ଟା ନାହିଁ । ମି: ଦାସ କିଛି ବାଟ ଦେଖେଇଥିଲେ; କିନ୍ତୁ ତାଙ୍କର ନିଜ ଦୋଷ ଯୋଗୁଁ ସେ ଯେଉଁ ବାଟ ଖୋଳିଥିଲେ ସେଇ ବାଟରେ ନଟା ବାଡ଼ ପକେଇଲେ ।

## ସେକ୍‌ସ୍‌ପୀୟରଙ୍କ ଜନ୍ମସ୍ଥାନକୁ ଯାତ୍ରା

ଷ୍ଟ୍ରାଟଫୋର୍ଡ଼-ଅନ୍-ଏଭନ୍, ୪-୯-୩୮

କାଲି ଶନିବାର ନିଉକ୍ୟାସଲ୍‌ରୁ ଗୋଟାକ ବେଳେ ବାହାରି ରାତି ଦଶଟାରେ ସେକ୍‌ସପୀୟରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡ଼ରେ ପହଞ୍ଚିଲି । ଆଗରୁ ଚିଠି ଲେଖି ଜଣକ ଘରେ ରହିବାର ଠିକ୍ କରିଥିଲି, ନ ହେଲେ ରାତିରେ ବଡ଼ ହଇରାଣରେ ପଡ଼ିଥାନ୍ତି । ଷ୍ଟ୍ରାଟ୍‌ଫୋର୍ଡ଼ ଗୋଟିଏ ଛୋଟିଆ ସହର । ରାତିରେ ଓହ୍ଲେଇଲା ବେଳକୁ ଷ୍ଟେସନ୍‌ରେ ଗାଡ଼ି, ଘୋଡ଼ା, ମଟର କିଛି ନାହିଁ । ଜଣେ ଭଦ୍ରମହିଳା ମାତ୍ର ଷ୍ଟେସନ୍‌ରେ ମୋ' ସାଥିରେ ଓହ୍ଲେଇଲେ, ତାଙ୍କୁ ଭେଟିବାକୁ ଜଣେ ତରୁଣୀ ଆସିଥିଲେ । ସେ ଦିଜଣଙ୍କୁ ମୁଁ ଆର୍ଡେନ୍ ଷ୍ଟ୍ରିଟ୍ କେତେ ବାଟ ବୋଲି ପଚାରିଲି । ସେମାନେ କହିଲେ ବହୁଦୂର ଏବଂ ଏ ଦେଶର ଭଦ୍ରବ୍ୟବହାର ଅନୁଯାୟୀ ତାଙ୍କ ବାଟ ଛାଡ଼ି ଅନେକ ବାଟ ଯାଏଁ ମୋ' ସାଙ୍ଗ ଧରିଲେ ଓ ତା'ପରେ ମୁଁ ଯେମିତି ମୋ' ଜାଗା ପାଇ ପାରିବି ତା'ର

ଠିକଣା ବତେଇଦେଇ ବିଦାୟନେଲେ । ମୁଁ ସେ ଦୁହିଁଙ୍କୁ ଅଶେଷ ଧନ୍ୟବାଦ ଦେଲି ।

ଏ ଦେଶର ରେଳଯାତ୍ରା ଆମ ଦେଶ ପରି ବଡ଼ ହଇରାଣିଆ । ଏହି ଦଶଘଣ୍ଟା ଯାତ୍ରାରେ ମତେ ପ୍ରାୟ ତିନି ଥର ଗାଡ଼ି ବଦଳେଇବାକୁ ହେଲା । ଛୋଟ ଛୋଟ କୋଠରିଟିମାନଙ୍କରେ ଝରକା ପ୍ରଭୃତି ବନ୍ଦ କରି ଦେଇ ବସିବାକୁ ହୁଏ ଶୀତ ଯୋଗୁଁ । ସେଇ ରୁଦ୍ଧ କକ୍ଷରେ ଶ୍ୱେତାଙ୍ଗମାନେ ଧୂମପାନ ଆରମ୍ଭ କରିଦେଲେ ଅବସ୍ଥା କ'ଣ ହେବ, ଅନୁମାନ କର । ଅବଶ୍ୟ ତୃତୀୟ ଶ୍ରେଣୀରେ ମଧ୍ୟ ଆସନ ସବୁ ଗଦିପକା, କିନ୍ତୁ କୌଣସି ଗଦି, ଯେତେ କୋମଳ ହେଉନା କାହିଁକି, ମୁକ୍ତ ପବନର ସୁଖ ଦେଇ ପାରିବ ନାହିଁ ।

ବାଟରେ ଜଣେ ଶ୍ୱେତାଙ୍ଗିନୀ ଦୁଇଟି ପିଲା ଧରି ମୋ' କୋଠରିକି ଆସିଲେ । ପରେ କଥାବାର୍ତ୍ତା ହେଲୁଁ । ତା'ର ମା' ବାଇଶଟି ସନ୍ତାନର ଜନନୀ– ତା'ର ମା' ବୁଢ଼ୀ ଓ ବାପ ବୁଢ଼ା, ଉଭୟେ ବଞ୍ଚିଛନ୍ତି; ସେ ମା'କୁ ଦେଖିବାକୁ ଯାଉଛି । ତା'ର ନିଜର ବୟସ ୪୬, ପିଲା ତା'ର ସାତଟା । କିନ୍ତୁ ସେ ବେଶ୍ ମଜଭୁତ୍ ଅଛି । ତା'ର ବାଳ କଳା– ଆମ ଭାରତୀୟ ମହିଳାମାନଙ୍କ ପରି । ତା'ର ଗୋଟିଏ ପୁଅର ବାଳ ଠିକ୍ ଭାରତୀୟମାନଙ୍କ ବାଳ ପରି ଘୋର କୃଷ୍ଣବର୍ଣ୍ଣ, ଆଉ ଗୋଟାକର କହରା । ଏ ଦେଶରେ କଳା ବାଳ ଯା'ର ତାକୁଇ dark ବା କଳା ବୋଲି କହନ୍ତି । କଳା ବାଳ ଥିବା ଲୋକ ସାଧାରଣତଃ ସେତେ ଧଳା ନୁହନ୍ତି– ଟିକିଏ କାଇଲା ଦେଖାଯାନ୍ତି । ସେ ଶ୍ୱେତାଙ୍ଗିନୀ ମତେ ଏଇମିତିକା ଇଂରେଜ ବୋଲି ଧରିନେଇଥିଲା ବା ଇଂରେଜ ଓ ଅନ୍ୟ ଜାତିର ସଂକର । ମୁଁ କହିଲି, "ମୁଁ ପୂରା ଭାରତୀୟ ।" ସେ କହିଲା, ତା'ର ସ୍ୱାମୀ ମୋ' ପରି dark (କଳା), ତା'ର ଗୋଟେ ଝିଅ ଅଛି, ସେ ମଧ୍ୟ ସେହିପରି । ମଜାର କଥା ଏହି ଯେ, ଏ ଦେଶରେ କଳା ବାଳ ଓ ନରମା ଧଳା ଚମଡ଼ାକୁ, ଝୋଟବାଳ ଓ ଶେତା ଚମଡ଼ା ଅପେକ୍ଷା ବେଶି ଆଦର । କଳା ବାଳ ଓ କଳା ଆଖି ଥିବା ତା'ର ଯେଉଁ ପିଲାଟି ମୋ' ପାଖେ ବସିଥିଲା, ତାକୁ ଦେଖେଇ ସେ କହିଲା– "ସେ ବଢ଼ିଯାଉ, କି ସୁନ୍ଦର ହେବ, ଦେଖିବ !"

ମୋର ଏଠାକାର ଲାଣ୍ଡ଼ଲେଡି ମିସେସ୍ ମାଇଲସ୍ ବେଶ୍ ଚମତ୍କାର ଇଂରେଜ ବୃଦ୍ଧା । ଷ୍ଟ୍ରାଟଫୋର୍ଡ଼ ଏପ୍ରିଲଠୁଁ ସେପ୍ଟେମ୍ବର ଶେଷ ଯାଏଁ ପୃଥିବୀର ଚାରିଆଡୁ ଦର୍ଶକମାନଙ୍କୁ ଆକର୍ଷଣ କରେ । ସେମାନଙ୍କର ପରିଚର୍ଯ୍ୟା କରି ଏଠାର ନାଗରିକମାନେ ବେଶ୍ ଦି' ପଇସା ଅର୍ଜନ କରନ୍ତି । ମିଷ୍ଟର ଓ ମିସେସ୍ ମାଇଲସ୍ ବର୍ତ୍ତମାନ ବୃଦ୍ଧ-ବୃଦ୍ଧା । ପୁଅ ଝିଅ ବିଭାଚୁଡ଼ା ହୋଇ ଯେଝାର ସଂସାର ପାତିଛନ୍ତି । ଘରେ କିଛି ଜଞ୍ଜାଳ ନାହିଁ– ବୁଢ଼ା ତା'ର ବ୍ୟବସାୟ କରି ଟଙ୍କା କମାଏ, ବୁଢ଼ୀ

ଅତିଥି-ସେବା କରି ଅଧିକ କିଛି ଜମାଏ । ଆମ ଦେଶରେ ଏଇ ଲାଣ୍ଡଲେଡିର ବ୍ୟବସ୍ଥା ଚଳିଲେ ଭ୍ରମଣକାରୀମାନଙ୍କର ଯିମିତି ସୁବିଧା ହୁଅନ୍ତା, ଅନେକ ଦରିଦ୍ର ଅସହାୟା ସ୍ତ୍ରୀ ମଧ୍ୟ ସେହିପରି ପୋଷି ହୁଅନ୍ତେ । ମୁଁ ଗଲେ ଜଣକୁ ଏପରି କାମ ଆରମ୍ଭ କରିବାକୁ ପ୍ରବର୍ତ୍ତେଇବି ।

## ସେକ୍‌ସପିୟରଙ୍କ ଜନ୍ମସ୍ଥାନରେ

### (୧)

ସେକ୍‌ସପିୟରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟଫୋର୍ଡ଼-ଅନ୍-ଆଭନ୍ ଗୋଟିଏ କ୍ଷୁଦ୍ର ସହର ଏବଂ କବିଙ୍କ ଜୀବନକାଳଠାରୁ ବର୍ତ୍ତମାନ ତାହା ସମ୍ପୂର୍ଣ୍ଣରୂପେ ପରିବର୍ତ୍ତିତ ହୋଇଯାଇଛି । ବର୍ତ୍ତମାନ ଷ୍ଟ୍ରାଟ୍‌ଫୋର୍ଡ଼ର ରାସ୍ତାମାନଙ୍କରେ ଯାହା ଦୃଷ୍ଟିପଥାରୂଢ଼ ହୁଏ ସେକ୍‌ସପିୟରଙ୍କର ଅତିମାନୁଷିକ କଳ୍ପନା ମଧ୍ୟ ତାହା ଠଉରେଇ ପାରି ନଥିବ । ବିଦ୍ୟୁତ୍, ବେତାର, ସର୍ବତ୍ରଦୃଶ୍ୟ ମୋଟରକାର ଓ ତା'ର ଅପ୍ରିୟ ପେଟ୍ରୋଲ ଗନ୍ଧ, ନୂତନ ଧରଣର ଗୃହାବଳି ଯେଉଁଥିରେ ଆଧୁନିକ ସୁବିଧା ସବୁ ଖଞ୍ଜାଯାଇଛି; କିନ୍ତୁ ଯେଉଁମାନଙ୍କର ଆକାର ଓ ଢାଞ୍ଚା ଏପରି ବିଚାରହୀନ ଭାବରେ ସାମ୍ୟମୟ ଯେ ଦେଖି ଦେଖି ମନରେ ବିତୃଷ୍ଣା ଆସିଯାଏ– ଏଇ ସବୁ ଷ୍ଟ୍ରାଟ୍‌ଫୋର୍ଡ଼କୁ ଗୋଟିଏ ଏଲିଜାବେଥୀୟ ଗ୍ରାମରୁ ଆଧୁନିକ ସହରରେ ପରିଣତ କରିଛନ୍ତି । କିନ୍ତୁ ମୋର ମନେ ହେଉଛି ଏ ପରିବର୍ତ୍ତନ ଏଭଳି ଉପତ୍ୟକାର ଆରଣ୍ୟକ ସୁଷମା ଓ ଶାନ୍ତି ବହୁପରିମାଣରେ ନଷ୍ଟ କରିପକାଇଅଛି ।

କିନ୍ତୁ ସେକ୍‌ସପିୟର ଓ ପ୍ରକୃତିର ଭକ୍ତମାନଙ୍କର ଏଇ ସୌଭାଗ୍ୟ ଯେ ଷ୍ଟ୍ରାଟଫୋର୍ଡ଼ ନିକଟରେ କୋଇଲା ବା ଲୁହା ଆବିଷ୍କୃତ ହୋଇନାହିଁ ଏବଂ ସେଇ ହେଉଛି ଏକମାତ୍ର କାରଣ ଯାହା ହେତୁ ପ୍ରକୃତିର ପରିପୂର୍ଣ୍ଣ ଧ୍ୱଂସ ବାକୀ ରହିଯାଇଛି ଏବଂ ତା'ର ସୌନ୍ଦର୍ଯ୍ୟର ଯଥେଷ୍ଟ ଅବଶେଷ ରହିଛି; ଯାହା ଦର୍ଶକକୁ ଧାରଣା ଦେଇପାରେ ଯେ ବାଳକ ସେକ୍‌ସପିୟର କିପରି ପ୍ରାକୃତିକ ବେଷ୍ଟନୀ ଭିତରେ ବଢ଼ିଥିଲେ, ଯେଉଁଥିରୁ ତାଙ୍କର ନିରତିଶୟ ସ୍ପର୍ଶଶୀଳ କଳ୍ପନା ସେଇ ସବୁ ଛାପ ଧରିନେଇଥିଲା, ଯାହା ତାଙ୍କର କବିତାକୁ ପରେ ଏପରି ଜୀବନ୍ତ ଓ ସ୍ୱାଭାବିକ ଛବିରେ ଭରିଦେଇଥିଲା । କାରଣ ମୁଁ ଉତ୍ତର ଇଂଲଣ୍ଡରୁ ବର୍ମିଂହାମ୍, ସେଫିଲଡ୍ ଓ ସେମାନଙ୍କର ଚତୁଃପାର୍ଶ୍ୱସ୍ଥ ଦେଶ ଦେଇ ଷ୍ଟାଟ୍‌ଫୋର୍ଡ଼ ଆଡ଼କୁ ଗତି କଲାବେଳେ ବେଶ୍ ବୁଝିପାରୁଥିଲି ଷ୍ଟ୍ରାଟ୍‌ଫୋର୍ଡ଼-ଅନ୍-ଆଭନ୍‌ର ଦଶା କ'ଣ ହୋଇଥାନ୍ତା ଯଦି ସେଠି ପୁଞ୍ଜିପତିର ଲୋଭ ସନ୍ତୋଷ କରିବା ପାଇଁ କିଛି ହେଲେ ମିଳିଥାନ୍ତା । ଇଂଲାଣ୍ଡର କାରଖାନିକ ନଗରଗୁଡ଼ିକ ପରି କୁତ୍ସିତ ପଦାର୍ଥ ମନୁଷ୍ୟ

ହସ୍ତ ଆଉ ଦ୍ୱିତୀୟ ସୃଷ୍ଟି କରିନାହିଁ ଏବଂ କୁବେର-ଭକ୍ତଗୁଡ଼ିକ ଏପରି ସ୍ଥୁଳସ୍ପର୍ଶୀ ଯେ ସେକ୍‌ସପିୟର ଜନ୍ମସ୍ଥାନକୁ ସମ୍ମାନ ଦେଖାଇ ସେଠାର ପ୍ରକୃତିକୁ ଶିଳ୍ପ-ସଂପ୍ରସାରଣ ନାମକ ଅପକ୍ରିୟାରୁ ତାକୁ ରକ୍ଷା କରିଥାନ୍ତେ ବୋଲି ଆଶା କରାଯାଏ ନାହିଁ ।

(୨)

ଅତ୍ୟନ୍ତ କୌତୂହଳର କଥା ଏଇ ଯେ ଇଂଲଣ୍ଡର ଏଇ ଛୋଟ ସହରଟି ପୃଥିବୀର ସର୍ବପ୍ରାନ୍ତରୁ ଲକ୍ଷ ଲକ୍ଷ ତୀର୍ଥଯାତ୍ରୀଙ୍କୁ ଆକର୍ଷଣ କରି ଆଣୁଥିଲେ ହେଁ ଷ୍ଟ୍ରାଟ୍‌ଫୋର୍ଡ଼ର ସାଧାରଣ ଅଧିବାସୀ ତା' ଗ୍ରାମ ସଙ୍ଗେ ସେକ୍‌ସପିୟରଙ୍କର ସଂପର୍କ ସମ୍ବନ୍ଧରେ ଏକପ୍ରକାର ନିରୁତ୍ସାହୀ । ଷ୍ଟ୍ରାଟ୍‌ଫୋର୍ଡ଼ ରେଲ ଷ୍ଟେସନରେ ଓହ୍ଲାଇବା ମାତ୍ରେ ମୁଁ ଦୁଇଜଣ ଭଦ୍ରମହିଳାଙ୍କର ସଖ୍ୟ ଲାଭକରି ତାଙ୍କ ସଙ୍ଗେ କଥା ଆରମ୍ଭକଲି । ମୁଁ କହିଲି, "ଯେଉଁଠି ସେକ୍‌ସପିୟର ଜନ୍ମ ହୋଇଥିଲେ ସେହି ଷ୍ଟ୍ରାଟ୍‌ଫୋର୍ଡ଼ର ଅଧିବାସୀ ଭାବରେ ଆପଣମାନଙ୍କର ଗର୍ବବୋଧ କରିବାର କଥା ।" ସେମାନଙ୍କ ଭିତରୁ ଜଣେ ଉତ୍ତର ଦେଲେ, "ନା, ଆମେ ସେପରି ବୋଧ କରୁନା । ସେ ଆମର ଭୟର କାରଣ । ଆମେ ସ୍କୁଲରେ ପଢ଼ିବାବେଳୁ ତାଙ୍କର ନାଟକ ନେଇ ସେ ଏକ ବିଭୀଷିକା ହୋଇଉଠନ୍ତି ।"

ଷ୍ଟ୍ରାଟ୍‌ଫୋର୍ଡ଼ରେ ଏକ ସିନେମାଗୃହ ଅଛି । ହୁଏତ ତାହା ବହୁ କୋଶ ଧରି ଏକମାତ୍ର ସିନେମା । ମତେ ଜଣେ ଇଂରେଜ ପାଦ୍ରି କହିଲେ ଯେ ମଫସଲରୁ ଅଧିକାଂଶ ଲୋକ ଏଇ ସିନେମାଗୃହ ଦେଖିବାକୁ ହିଁ ଆସନ୍ତି ଏବଂ ଯେଉଁ ଥିଏଟର୍‌ରେ ସେକ୍‌ସପିୟରଙ୍କର ବିଖ୍ୟାତ ନାଟକ ସବୁ ଅଭିନୀତ ହେଉଛି ସେଥିପ୍ରତି ସେମାନେ ବୀତସ୍ପୃହ । ରବିବାର ଦିନ ଏଭନ୍ ନଦୀ କୂଳର ପ୍ରାନ୍ତରଗୁଡ଼ିକ ଲୋକାରଣ୍ୟ ହୋଇଉଠେ ଏବଂ ରାସ୍ତାର କଡ଼େ କଡ଼େ ଭର୍ତ୍ତି ହୋଇଯାଏ ନାନା ପ୍ରକାରର ମୋଟରକାର । ମୁଁ ପରେ ଜାଣିଲି, ଏମାନେ ସବୁ ଛୁଟି-କଟାଳି ଭ୍ରମଣକାରୀ– ଏମାନଙ୍କର ସେକ୍‌ସପିୟର ନାଟକ ପ୍ରତି ଟିକିଏ ହେଲେ ଖାତିର ନ ଥାଏ । ସେକ୍‌ସପିୟର-ସ୍ମାରକ ରଙ୍ଗମଞ୍ଚର ଚାରିପାଖେ ବୁଲୁ ବୁଲୁ ଦିନେ ସକାଳେ ଗୋଟିଏ ବାଳକକୁ ଭେଟିଲି । ମୁଁ ତାକୁ ପଚାରିଲି "ସେକ୍‌ସପିୟର କିଏ ?" ସେ ଉତ୍ତର ଦେଲା ଯେ, "ସେ ଜଣେ ଲୋକ ଯେ କି ବହୁତ ଚିଠି ଲେଖିଛି ।" ସେ ପଚାରିଲା, ମୁଁ ସେଠାର ସିନେମା ଘରେ ତତ୍‌କାଳୀନ ପ୍ରଦର୍ଶିତ ମିକ୍-ମାଉସ୍ ଛବି ଦେଖିବାକୁ ଯାଇଛି କି ନା, କାରଣ ତାହା ମତରେ ନିକଟସ୍ଥ ରଙ୍ଗମଞ୍ଚରେ ଅଭିନୀତ ନାଟକାବଳିର ସେହି ଫିଲମ ସଙ୍ଗେ ତୁଳନା ହୋଇପାରେନା ।

## (୩)

ଜର୍ମାନ୍ କବି ଗୋଏଟେ ହିଁ ବାସ୍ତବରେ ସେକ୍‌ସପିୟର ଆରାଧନା ଆରମ୍ଭ କରନ୍ତି । ସେହିଦିନରୁ ଇଂରେଜ ପଣ୍ଡିତମାନେ ସେକ୍‌ସପିୟର କିଂବଦନ୍ତୀକୁ ବିସ୍ମୃତି ଗର୍ଭରୁ ଉଦ୍ଧାର କରି ଜୀବନ୍ତ ରଖିବାପାଇଁ କୌଣସି ପ୍ରକାର ଚେଷ୍ଟାରେ ତ୍ରୁଟି କରି ନାହାନ୍ତି ଏବଂ ଯେପରି ଭାବରେ ସେମାନେ କୃତକାର୍ଯ୍ୟ ହୋଇପାରିଛନ୍ତି ତାହା ଦେଖିଲେ ବିସ୍ମିତ ହେବାକୁ ହୁଏ । କାଳର କବର-ଭୂମିରୁ କବିଙ୍କ ସଙ୍ଗେ ସଂପୃକ୍ତ ଏଡ଼େ ଟିକେ ପଦାର୍ଥ ବି ଖୋଳା ହୋଇ ବାହାରହୋଇଛି, ଯାହା ସେକ୍‌ସପିୟର-ଭକ୍ତଙ୍କ କୌତୂହଳ ଏକାଧାରରେ ତୃପ୍ତି ଓ ବୃଦ୍ଧି କରୁଚି । ଏଇକ୍ରମେ ଏହିପରି ଛୋଟ ଛୋଟ ଘଟଣା ଜଣାପଡ଼ିଛି ଯେ ଲଣ୍ଡନର ଜନୈକ ନାଗରିକ ସେକ୍‌ସପିୟର ଓ ତାଙ୍କର ଆଉ ଦୁଇଜଣ ଦୋସ୍ତଙ୍କ ଭୟରେ ପୋଲିସ୍‌ର ଆଶ୍ରୟ ଭିକ୍ଷା କରିଥିଲା, ବା ସେକ୍‌ସପିୟର ନିଜେ ଏକ ମକଦ୍ଦମାରେ ସାକ୍ଷୀ ହୋଇଥିଲେ । ଏଇସବୁ ଛୋଟ ଛୋଟ ଘଟଣା ନେଇ ମହାକବିଙ୍କ ପ୍ରତିଭାକୁ ସ୍ପଷ୍ଟୀକୃତ କରିବା ଅପେକ୍ଷା ଆହୁରି ଘନୀଭୂତ କରେ ତାହାର ରହସ୍ୟ । କାରଣ ଯିଏ ସାମାଜିକ ଜୀବନରେ ଏପରି ସାଧାରଣ ଥିଲେ, ସେ କିପରି 'ମିଡ୍‌ସମର ନାଇଟସ୍ ଡ୍ରୀମ୍'ର ମଧୁର-ଉଦ୍ଭଟ କଳ୍ପନା ବା 'ହାମ୍‌ଲେଟ'ର ବିସ୍ମୟକର ଆତ୍ମ-ବିଶ୍ଳେଷଣ ସୃଷ୍ଟି କରିପାରେ ।

ଏଇ ସବୁ ଛୋଟ ଛୋଟ ଘଟଣାମାନଙ୍କ ପରି, କବି ଯେଉଁ ଘରେ ଜନ୍ମ ହୋଇଥିଲେ, ଯେଉଁ ସ୍କୁଲରେ ପଢ଼ିଥିଲେ, ଯେଉଁ ଘରେ ଶେଷ ଜୀବନ କଟାଇଥିଲେ ସେ ସବୁ ମଧ୍ୟ ତାଙ୍କର ଊର୍ଜସ୍ୱଳ କୀର୍ତ୍ତି ତୁଳନାରେ ଅତ୍ୟନ୍ତ ସାଧାରଣ ଓ ହୀନ ପ୍ରତିଭାତ ହୁଅନ୍ତି । କଥିତ ଅଛି ଯେ ସେକ୍‌ସପିୟରଙ୍କ ପିତା କେବଳ ଜଣେ ସଂଗତିସମ୍ପନ୍ନ ବ୍ୟବସାୟୀ ନ ଥିଲେ, ସେ ବେଳେ ଷ୍ଟ୍ରାଟଫୋର୍ଡ଼ର ମେୟର ମଧ୍ୟ ହୋଇଥିଲେ । ଜନନୀଙ୍କ ବଂଶ ଆଡୁ ମଧ୍ୟ କବିଙ୍କର ସୌଭାଗ୍ୟ ଥିଲା । କିନ୍ତୁ କବିଙ୍କର ଜନ୍ମ-ଗୃହ ବା ମା' ମେରୀ ଆର୍ଡ଼େନଙ୍କ ଆବାସ, କୌଣସିଟି ହେଲେ ସୂଚନା ଦେଉନି ଯେ ତା'ର ଅଧିବାସୀମାନେ ସଭ୍ୟ-ସ୍ୱଚ୍ଛଳ ଥିଲେ । ଏଇ ସବୁ ଏଲିଜାବେଥ୍‌କାଳୀନ ଗୃହମାନଙ୍କରେ ତଳେ ଯେଉଁସବୁ ପଥର ବିଛାହୋଇଛି, ସେଥିରେ ଚୂନ-ସୁରକୀ ବି ଲାଗିନି, କଡ଼ ବରଗା ସବୁ ଦରଚାଞ୍ଛା କାଠ, ଏବଂ ଛାତ ଏତେ ନୀଚ ଯେ ମୁଣ୍ଡ ବାଜିବାର ଆଶଙ୍କା ବରାବର । ଝରକା ପରିବର୍ତ୍ତରେ କାନ୍ଥମାନଙ୍କରେ ଅଛି ଗୋଟିଏ ଗୋଟିଏ କଣା । ପରିବାରର ସିନ୍ଧୁକମାନଙ୍କରେ ଲୁହାର କବ୍‌ଜା ଲାଗିନାହିଁ; କାରଣ ସେ ସବୁ ସେତେବେଳେ ହୁଏତ ଏ ଦେଶରେ ଜଣା ନ ଥିଲା ଏବଂ ସେକ୍‌ସପିୟର

ଯେଉଁ ସମୟରେ ତାଙ୍କର ରଚ୍ଚିମନ୍ତ ସୃଷ୍ଟି କରିଯାଉଥିଲେ ସେତେବେଳେ ଇଂଲଣ୍ଡରେ ଲୋକେ କାଠ ଥାଳିରେ ହିଁ ଭୋଜନ କରୁଥିଲେ । ଏଇ ସ୍ଥୁଳ, ଆଦିମ ପାରିପାର୍ଶ୍ୱିକତାରୁ ସେକ୍‌ସପିୟରଙ୍କ ପ୍ରତିଭାର ସ୍ଫୁରଣ ଓ ବିକାଶ ହେଲା କିପରି, ମୁଁ ଭାବୁଥାଏ ।

ସେକ୍‌ସପିୟରଙ୍କ ସଂପୃକ୍ତ ସବୁ ସ୍ଥାନ ଭିତରୁ ମତେ ଅଧିକ କୌତୂହଳ ଦାନ କଲା ଷ୍ଟ୍ରାଟ୍‌ଫୋର୍ଡ଼ର ଗ୍ରାମାର ସ୍କୁଲ, ଯେଉଁଠି ବାଳକ ସେକ୍‌ସପିୟର ପାଠ ପଢ଼ିଥିଲେ । ଗତ ତିନିଶତ ବର୍ଷ ଧରି ଷ୍ଟ୍ରାଟ୍‌ଫୋର୍ଡ଼ର ପ୍ରତି ପୁରୁଷର ବାଳକ ବାଳିକା ସେହି ସ୍କୁଲରେ ପାଠ ପଢ଼ି ଆସୁଛନ୍ତି– ଯେଉଁଠି ସେକ୍‌ସପିୟର ଶିକ୍ଷକମାନଙ୍କ ଅଧ୍ୟାପନାରୁ ପ୍ରଥମେ ଜ୍ଞାନ ଗ୍ରହଣ କରିଥିଲେ । ସେକ୍‌ସପିୟରଙ୍କ ସମୟରେ ୩୦ ।୪୦ଟି ପିଲାଙ୍କ ପାଇଁ ଏହା ଏକ ଛୋଟ ବିଦ୍ୟାଳୟ ଥିଲା । ଆଧୁନିକ ପ୍ରୟୋଜନ ଅନୁସାରେ ଏହାକୁ ବହୁ ପରିମାଣରେ ବଢ଼ାଇ ଦିଆଯାଇଛି, କିନ୍ତୁ ସେହି ପ୍ରାଚୀନ କ୍ଲାସରୁମ୍‌ଟି ଯତ୍ନର ସହିତ ସୁରକ୍ଷିତ ଅଛି । ହେଡ୍‌ମାଷ୍ଟରଙ୍କ ପ୍ଲାଟଫର୍ମର ଦକ୍ଷିଣ ପାଖରେ ଗୋଟିଏ ପିତ୍ତଳ ପଟାର ଲେଖା ଦେଖାଇଦିଏ ସେକ୍‌ସପିୟର ଛାତ୍ର ଭାବରେ କେଉଁଠି ବସିଥିଲେ – ସେଇଟା ହେଉଛି ସମ୍ମୁଖ ବେଞ୍ଚର ଶୀର୍ଷସ୍ଥାନ । ତେଣୁ ମନେକରିବାକୁ ହେବ ଯେ ବାଳକ ସେକ୍‌ସପିୟର ତାଙ୍କ ଶ୍ରେଣୀର ଶ୍ରେଷ୍ଠ ଛାତ୍ର ଥିଲେ ।

ଇଂଲାଣ୍ଡର ଶିକ୍ଷାନୁଷ୍ଠାନମାନଙ୍କର ଏ ଏକ ପ୍ରଥା ଯେ ସେଠୁ ବାହାରି ଯେଉଁ ଛାତ୍ରମାନେ ବାହାର ଜଗତରେ ସୁନାମ ଅର୍ଜନ କରିଛନ୍ତି ସେମାନଙ୍କ ନାମ ଏକ କାଠପଟାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ କାନ୍ଥରେ ଝୁଲାଇଦିଆଯାଇଥାଏ, ସାଂପ୍ରତିକ ଛାତ୍ରମାନଙ୍କର ପ୍ରକୃଷ୍ଟ ପ୍ରେରଣା ରୂପେ । ମୁଁ ଏଇ ବିଦ୍ୟାଳୟର ତାଲିକାଗୁଡ଼ିକ ଉପରେ ଆଖି ବୁଲାଇ ଦେଖେ ତ ତାଙ୍କ ଭିତରେ ଅନେକେ ଭାରତବର୍ଷରେ ପୋଲିସ, ମେଡ଼ିକାଲ ଓ ସିଭିଲ ସର୍ଭିସର ଅଫିସର ! ଏବଂ ସେକ୍‌ସପିୟରଙ୍କ ପିତ୍ତଳ-ପଟାର ଠିକ୍ ବିପରୀତ ଦିଗରେ ଆଉ ଏକ ପିତ୍ତଳ ପଟା ଝୁଲୁଛି– ''ଏଇ ସ୍କୁଲର ଅଳ୍ପକାଳ ପାଇଁ ଛାତ୍ର, ବେଙ୍ଗଲର ସିନିୟର ଜିଲ୍ଲା ଓ ସେସନ୍‌ସ ଜଜ୍ ମି: ରାଲଫ ରେନୋଲଡ଼ସ ଗାର୍ଲିକ, ଯେ କି ନିଜର କର୍ତ୍ତବ୍ୟ କରୁ କରୁ ଆତତାୟୀ ହସ୍ତରେ ଆଲିପୁରଠାରେ ପ୍ରାଣତ୍ୟାଗ କରିଛନ୍ତି, ତାଙ୍କରି ସ୍ମୃତି ଉଦ୍ଦେଶ୍ୟରେ ।''

ରାସ୍ତାର ଆରପଟେ, ସାମାନ୍ୟ କେତେ ଗଜ ଦୂରରେ 'ନିଉପ୍ଲେସ୍'-ଭବନର ଧ୍ୱଂସାବଶେଷ ଅଛି । ସେକ୍‌ସପିୟରଙ୍କ ସମୟରେ ଏହି ଘରଟି ଏ ସହରରେ ବୃହତ୍ତମ ଥିଲା । କବି ରଙ୍ଗମଞ୍ଚରୁ ବିଦାୟନେଇ ଓ ଧନୀ ଏବଂ ବିଖ୍ୟାତ ହୋଇ ଯେତେବେଳେ ଲଣ୍ଡନରୁ ନିଜ ଗ୍ରାମ ଷ୍ଟ୍ରାଟ୍‌ଫୋର୍ଡ଼ରେ ଶେଷ ବୟସ କଟେଇବାକୁ ଫେରିଲେ, ସେ ଏଇ ଘରଟି କିଣି, ସେଇଠି ରହିଥିଲେ । ସେକ୍‌ସପିୟରଙ୍କ ପରେ ଏଇ ଘରଟି ବହୁ

ଲୋକର ଅଧିକାରକୁ ଆସି ଶେଷରେ ୧୭୫୯ରେ ଫ୍ରାନ୍‌ସିସ ଗାଷ୍ଟେଲ ନାମକ ଏକ ଧର୍ମଯାଜକର ଅଧିକାରରେ ଆସିଲା । କିନ୍ତୁ ପୁରୋହିତ ବିଚାରାକୁ ଶାନ୍ତି ମିଳିଲା ନାହିଁ, କାରଣ ଦଳ ଦଳ ଲୋକ ଆସିଲେ ସେକ୍‌ସପିୟରଙ୍କ ଘର ଦେଖିବାକୁ । ଏ ଦୌରାତ୍ମ୍ୟରୁ ରକ୍ଷାପାଇବାର ଏକମାତ୍ର ଉପାୟ ରୂପେ ସେହି ମୂର୍ଖ ପୁରୋହିତ ସମଗ୍ର ଘରଟିକୁ ଭାଙ୍ଗିପକାଇଲା ଏବଂ ଧ୍ୱଂସର ଉତ୍ସାହରେ ସେକ୍‌ସପିୟର ନିଜେ ରୋପଣ କରିଥିବା ବହୁ ପ୍ରସାରୀ ମଲବେରୀ ବୃକ୍ଷଟିକୁ ମଧ୍ୟ ନିଜ ହାତରେ ହାଣି ପକାଇ ଥିଲା । ବର୍ତ୍ତମାନ କେବଳ 'ନିଉପ୍ଲେସ'ର ମୂଳଦୁଆ ଦେଖିବାକୁ ମିଳେ । ସେଇଥିରୁ ହିଁ ଧାରଣା କରିହୁଏ ଯେ ଘରଟି ଲମ୍ବା ଚଉଡ଼ା ଥିଲା । ଅଗଣାର ମଝିରେ ଗୋଟିଏ କୂଅ ଅଛି, ଠିକ୍ ଆମ ଭାରତର ଘରମାନଙ୍କ ଅଗଣାରେ ଯେମିତି ଥାଏ । କୁସଂସ୍କାର ଏଇଟିକି ଏକ କାମନା-କୂପରେ ପରିଣତ କରିସାରିଛି । ନାରୀ-ଦର୍ଶକମାନେ ଯାର ଚାରିପାଖେ ତ୍ରିବାର ପ୍ରଦକ୍ଷିଣ କରି ମନେ ମନେ ନିଜର କାମ୍ୟବସ୍ତୁ ଚିନ୍ତା କରିଥାନ୍ତି, ପାଇବା ଆଶାରେ । କିଛି ଦୂରରେ ଏବେ ବି ଏକ ମାଲବେରୀ ଗଛ ଠିଆ ଅଛି, ଯାହାକି ମୌଳିକ ବୃକ୍ଷର ବଂଶଜ ।

ନିଉପ୍ଲେସକୁ ଠିକ୍ ଲାଗି କରି ନା'ଶର ଘର । ନା'ଶ ଥିଲା ସେକ୍‌ସପିୟରଙ୍କ ନାତୁଣୀ ଜୋଇଁ ଏବଂ ତା' ସମୟରେ ବେଶ୍ ପ୍ରତିପତ୍ତିବାନ୍ ନାଗରିକ ଥିଲା । କାରଣ କଥିତ ଅଛି ଯେ ଏଇ ଘରେ ନା'ଶ ଥରେ ଇଂଲାଣ୍ଡର ତତ୍‌କାଳୀନ ରାଣୀଙ୍କୁ ଆତିଥ୍ୟ ଦାନ କରିଥିଲା । ଏଇ ଘରଟିକୁ ବର୍ତ୍ତମାନ ସେକ୍‌ସପିୟର-ମିଉଜିୟମ କରାହୋଇଛି । ଅନ୍ୟାନ୍ୟ ଜିନିଷ ଭିତରେ ଏଇଠି ଦେଖାହୁଏ ହଳେ ଛୋଟ ଛାଗଳ ଚର୍ମର ଦସ୍ତାନା ଓ ଗୋଟିଏ ବ୍ରୋଚ ଯାହା ସେକ୍‌ସପିୟର ନିଜେ ବ୍ୟବହାର କରୁଥିଲେ ବୋଲି କୁହାଯାଏ ।

(୪)

ଇଂଲଣ୍ଡର ଶ୍ରେଷ୍ଠ ନାଟ୍ୟକାରଙ୍କ ସ୍ମୃତିପୂଜାର ଶ୍ରେଷ୍ଠ ପ୍ରତୀକ ରୂପେ ତାଙ୍କର ଜନ୍ମ-ଗ୍ରାମରେ ଏକ ରଙ୍ଗମଞ୍ଚ ଠିଆକରେଇବାର ପ୍ରସ୍ତାବ, ପ୍ରସିଦ୍ଧ ଅଭିନେତା ଗାରିକ୍ ହିଁ ପ୍ରଥମେ ବାଢ଼ନ୍ତି । କିନ୍ତୁ ପ୍ରସ୍ତାବଟି କାର୍ଯ୍ୟରେ ଦେଖାଯିବା ପାଇଁ ଶହେବର୍ଷରୁ କମ୍ ଲାଗିନଥିଲା । ମି: ଚାର୍ଲସ ଫ୍ଲାୱାର ନାମକ ଷ୍ଟ୍ରାଟ୍‌ଫୋର୍ଡ଼ର ନାଗରିକ ହିଁ ଶେଷରେ ଏ ପ୍ରସ୍ତାବ ହାତକୁ ନେଇ ୧୮୬୯ ଖ୍ରୀଷ୍ଟାବ୍ଦରେ ଏଇ ସ୍ମାରକ ରଙ୍ଗମଞ୍ଚ ଠିଆକରାଇଲେ । ଦୁର୍ଭାଗ୍ୟକୁ ସେ ଥିଏଟର ୧୯୨୬ରେ ଅଗ୍ନିଦଗ୍ଧ ହୋଇଗଲା । ଏବର ସ୍ମାରକ ଥିଏଟରଟି ୧୯୩୨ରେ ସଂପୂର୍ଣ୍ଣ ହୋଇଥିଲା ଏବଂ ଉନ୍ମୋଚିତ ହୋଇଥିଲା ଇଂଲଣ୍ଡର ତତ୍‌କାଳୀନ ଯୁବରାଜ ଏବର ଡିଉକ ଅବ୍ ଉଇଣ୍ଡସରଙ୍କ ଦ୍ୱାରା ।

ସ୍ମାରକ ଥିଏଟରଟି ଠିଆହୋଇଛି ଏଭନ୍ ନଦୀର ଠିକ୍ କୂଳରେ, ଘାସାଚ୍ଛନ୍ନ

ସୁନ୍ଦର ପ୍ରାନ୍ତର ଓ ଉଦ୍ୟାନ ପରିବୃତ୍ତ ହୋଇ । କିନ୍ତୁ ସୁନ୍ଦର ପ୍ରାକୃତିକ ବେଷ୍ଟନୀ ଭିତରେ ଏଇ ଆଧୁନିକ ଅଟ୍ଟାଳିକାଟି ଦିଶୁଛି ଏକ କୁତ୍ସିତ କାରଖାନା ଘର ପରି । ଯାହାହେଉ, କୁତ୍ସିତ ବହିରାବରଣର କ୍ଷତିପୂରଣର ବ୍ୟବସ୍ଥା ଭିତରେ ବେଶ୍ ହୋଇଛି, ଦର୍ଶକମାନଙ୍କର ସ୍ୱାଚ୍ଛନ୍ଦ୍ୟରେ । ବାରଶତ ଲୋକଙ୍କର ବସିବାର ଆୟୋଜନ ହୋଇଛି ଏବଂ ଆସନଗୁଡ଼ିକୁ କରାଯାଇଛି ବାୟୁ-କୋମଳ । ପ୍ରେକ୍ଷାଗୃହଟି ଏପରି ବୈଜ୍ଞାନିକ ପ୍ରଣାଳୀରେ ଗଠିତ ଯେ ରଙ୍ଗମଞ୍ଚର କ୍ଷୀଣତମ କର୍ଣ୍ଣ-ଭାଷ ମଧ୍ୟ ଦୂରତମ କୋଣକୁ ସ୍ପଷ୍ଟ ଶୁଣାଯିବ । ମୁଁ ନିଜେ ବାଲକନିରେ ରଙ୍ଗମଞ୍ଚଠାରୁ ବହୁ ଦୂରରେ ବସୁଥାଏ; ତେଣୁ ଏହା ମୋର ନିଜର ଅଭିଜ୍ଞତା । କାନ୍ଥମାନଙ୍କର ଭିତରପଟେ କାଷ୍ଠର ଚିକ୍‌କଣ ଆଚ୍ଛାଦନ ହିଁ ଏକମାତ୍ର ଅଳଙ୍କରଣ । ଏଥିପାଇଁ ବ୍ରିଟିଶ ସାମ୍ରାଜ୍ୟର ପ୍ରତ୍ୟେକ ଦେଶ ନିଜନିଜର ଉତ୍‌କୃଷ୍ଟ କାଷ୍ଠ ଦାନକରିଛନ୍ତି, କବିଙ୍କ ପ୍ରତି ସମ୍ମାନ ପ୍ରଦର୍ଶନର ପ୍ରତୀକରୂପେ ।

ଏପ୍ରିଲ୍‌ଠାରୁ ସେପ୍‌ଟେମ୍ବର ଏଇ ଛଅ ମାସ ଏଇ ଥିଏଟର୍‌ରେ ସେକ୍‌ସପିୟରଙ୍କ ନାଟକ ଅଭିନୀତ ହୁଏ । ବାର୍ଷିକ ସେକ୍‌ସପିୟର ଉତ୍ସବର ଏହା ଏକ ଅଂଶ । ଏପ୍ରିଲ୍ ୨୩ ସେକ୍‌ସପିୟରଙ୍କ ଜନ୍ମ-ଦିବସ । ସେଇ ଦିନ ଉତ୍ସବର ଶ୍ରେଷ୍ଠ ଦିନ । ସେଇଦିନ ରାଷ୍ଟ୍ରଦୂତମାନଙ୍କ ପ୍ରତିନିଧି ସବୁ ଲଣ୍ଡନରୁ ଷ୍ଟ୍ରାଟଫୋର୍ଡ଼ ଆସି ନିଜନିଜର ଜାତୀୟପତାକା ଉତ୍ତୋଳନ କରନ୍ତି, କବିଙ୍କୁ ସମ୍ମାନ ଦେଖାଇବା ଉଦ୍ଦେଶ୍ୟରେ । ହେନ୍‌ଲି ଷ୍ଟ୍ରୀଟରେ ଥିବା କବିଙ୍କ ଜନ୍ମ-ଗୃହରୁ ଗୋଟିଏ ଶୋଭାଯାତ୍ରା ମଧ୍ୟ ବାହାରି ଶେଷ ହୁଏ ଟ୍ରିନିଟି ଚର୍ଚ୍ଚରେ, ଯେଉଁଠି କବିଙ୍କର ସମାଧି ବିଦ୍ୟମାନ । ଏଇ ଟ୍ରିନିଟି ଚର୍ଚ୍ଚ ସ୍ମାରକ ଥିଏଟରଠାରୁ ମାତ୍ର ଅଳ୍ପ ଦୂରରେ ଏଭନ୍ ନଦୀ କୂଳରେ ।

ପ୍ରତିବର୍ଷ ସ୍ମାରକ ରଙ୍ଗମଞ୍ଚର ବ୍ୟବସ୍ଥାପକମାନେ ସେକ୍‌ସପିୟରଙ୍କ ୩୭ଟି ନାଟକରୁ ଆଠଟି ବାଛନ୍ତି, ଯେଉଁଗୁଡ଼ିକର ଅଭିନୟ ଛଅ ମାସ ଧରି ପ୍ରତି ସପ୍ତାହରେ ହୁଏ । ମୁଁ ଏ ବର୍ଷ ଯେଉଁ ଅଭିନୟ ଦେଖିଲି ତାହା ସେପରି ବଚନୀୟ ନୁହେଁ, ତେବେ ଯେଉଁ ବିଦେଶୀମାନେ କେବେହେଲେ ସେକ୍‌ସପିୟର ନାଟକ ରଙ୍ଗମଞ୍ଚରେ ଅଭିନୀତ ହେବାର ଦେଖିନାହାନ୍ତି ସେମାନଙ୍କ ପାଇଁ ସେକ୍‌ସପିୟରଙ୍କର ନାଟକର ଆଭିନୟିକ ଦିଗର ଏକ ଧାରଣା ଦିଏ । ସେକ୍‌ସପିୟର-ପାଠକମାନେ ଜାଣନ୍ତି ଯେ ଏଲିଜାବେଥୀୟ ରଙ୍ଗମଞ୍ଚରେ ଆଧୁନିକ ରଙ୍ଗମଞ୍ଚର ସାଜସଜ୍ଜା, ଯନ୍ତ୍ରପାତି ବା ଉପକରଣାଦି କିଛି ହିଁ ନଥିଲା – କେବଳ ଥିଲା ଏକ ଶୂନ୍ୟ ମଞ୍ଚ । ଦର୍ଶକର ଆକର୍ଷଣ ଆସୁଥିଲା ନାଟକର କବିତାମୟ ଭାଷାରୁ, ଅଭିନେତାମାନଙ୍କର ଉଚ୍ଚ ଚିତ୍କାର ଓ ଯାହା କିଛି ଥିଲା ଅଭିନୟ କଳା । ସେକ୍‌ସପିୟର ଆଧୁନିକ ରଙ୍ଗମଞ୍ଚର କଳ୍ପନାଇ କରିପାରିନଥାନ୍ତେ । କିନ୍ତୁ ମୋର ମନେହେଉଛି ଯେ ସେକ୍‌ସପିୟର ନାଟକର ପ୍ରକୃତ ଉତ୍କର୍ଷ ତା'ର ଋଦ୍ଧିମନ୍ତ କାବ୍ୟରେ,

ଆଧୁନିକ ରଙ୍ଗମଞ୍ଚର ଉପକରଣ ଓ ଯାନ୍ତ୍ରିକ କୌଶଳର ପ୍ରାଚୁର୍ଯ୍ୟ ଦ୍ୱାରା ତା'ର ମୂଲ୍ୟ ବଢ଼ିଯାଉନାହିଁ । ଅନେକ କ୍ଷେତ୍ରରେ ଅଭିନୟର ସ୍ଥୁଳତା ଓ ଇତରତା ପଠିତ ନାଟକର ଧାରଣାକୁ ଚୂର୍ଣ୍ଣୀଭୂତ ମଧ୍ୟ କରିଦେଲା । ପଢ଼ିଲାବେଳେ ସେକ୍‌ସପିୟର ନାଟକର ଇତର ହାସ୍ୟରସ ଓ ସ୍ଥୁଳ ସଂଘର୍ଷ ଏତେ ସ୍ପଷ୍ଟ ହୋଇ ମନରେ ବିକାର ସୃଷ୍ଟି କରୁ ନଥିଲା, ଯେପରି କଲା ଅଭିନୟ ଦେଖି ।

ଗତ ଦୁଇବର୍ଷ ଧରି ରଙ୍ଗମଞ୍ଚର ବ୍ୟବସ୍ଥାପକମାନେ ଏକ ସେକ୍‌ସପିୟର-ସମ୍ମିଳନୀର ମଧ୍ୟ ଆୟୋଜନ କରିଆସୁଛନ୍ତି । ଏହା ଏକ ପକ୍ଷ ଧରି ଚାଲେ । ଏଇକାଳ ଭିତରେ ପ୍ରସିଦ୍ଧ ସେକ୍‌ସପିୟର-ବିଶେଷଜ୍ଞମାନେ ଅଭିନୀୟମାନ ନାଟକ ଉପରେ ବା ସେକ୍‌ସପିୟରଙ୍କର ସମଗ୍ର ସାହିତ୍ୟ ଉପରେ ବକ୍ତୃତା ଦିଅନ୍ତି । ଏ ବର୍ଷର ବିଷୟ ଥିଲା 'ଲିଖନରତ ସେକ୍‌ସପିୟର' । ଏଡ଼ିନବରା ବିଶ୍ୱବିଦ୍ୟାଳୟର ପ୍ରସିଦ୍ଧ ଅଧ୍ୟାପକ ଡୋଭର ଉଇଲସନ୍ ଏବଂ ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରସିଦ୍ଧ ଅଧ୍ୟାପକ ଡକ୍‌ଟର ହାରୀସନ ଏ ବର୍ଷର ଅନ୍ୟାନ୍ୟ ବକ୍ତାମାନଙ୍କ ଭିତରେ ଅନ୍ୟତମ ଥିଲେ । ଅଳ୍ପ ଲୋକ ବକ୍ତୃତା ଶୁଣିବାକୁ ଆସୁଥିଲେ – ଅଧିକାଂଶ ଥିଲେ ସ୍କୁଲ-ମିଷ୍ଟ୍ରେସ । ସେମାନେ ବରାବର ନୋଟ୍ ଲେଖୁଥିବାରୁ ହଲ୍‌ଟି ଗୋଟିଏ କ୍ଲାସ-ରୁମରେ ପରିଣତ ହୋଇଯାଉଥିଲା । ଶ୍ରୋତାମାନଙ୍କ ଭିତରେ ମତେ ମିଶେଇ ତିନିଜଣ ଭାରତୀୟ ମାତ୍ର ଥିଲେ । ଅନ୍ୟ ଦୁଇଜଣ ସ୍ୱାମୀ-ସ୍ତ୍ରୀ, ବଙ୍ଗାଳୀ, ବୋଧହୁଏ ଉଭୟେ କଲେଜର ଅଧ୍ୟାପକ । ଜନୈକ ଚୀନା ଲେଖକଙ୍କୁ ମଧ୍ୟ ଦେଖିଥିଲି, ଯେ ସେଇ ସମୟରେ ସେକ୍‌ସପିୟରଙ୍କ କେତେକ ନାଟକକୁ ଚୀନା ଭାଷାରେ ଅନୁବାଦ କରୁଥିଲେ ଚୀନ୍ ସରକାରଙ୍କ ନିର୍ଦ୍ଦେଶରେ । ସେ ମତେ କହିଲେ ଯେ, ରବୀନ୍ଦ୍ରନାଥ ଚୀନ ଭ୍ରମଣ କରୁଥିଲା ବେଳେ ସେ ତାଙ୍କୁ ଭେଟିଥିଲେ ଏବଂ ରବୀନ୍ଦ୍ରନାଥଙ୍କ କେତେକ କବିତା ସେ ଚୀନ ଭାଷାରେ ଅନୁବାଦ କରିଛନ୍ତି ।

## ଶ୍ୱେତାଙ୍ଗର ଛୁଟି ଭୋଗ

ନିଉକାସ୍‌ଲ, ୩-୭-୩୮

ବର୍ତ୍ତମାନ ଛୁଟି– ସମଗ୍ର ଇଂଲଣ୍ଡ ପ୍ରମୋଦ-ମତ୍ତ । ଅଗଷ୍ଟ ପ୍ରଥମ ସପ୍ତାହଟା ବିଲାତରେ ସମସ୍ତେ ଛୁଟି ପାନ୍ତି । ଛୁଟି ପାଇଲେଇ ଏ ଦେଶର ଲୋକେ ଘର ଛାଡ଼ି ପଥ ଧରନ୍ତି । ଏଇ ଦେଶର ସମୁଦ୍ର, ହ୍ରଦ, ବନ, ପର୍ବତ ସବୁ ତ ଅଛି, ଇଉରୋପର ଭିନ୍ନ ଭିନ୍ନ ଦେଶର ସୁଖକର ଓ ସୁନ୍ଦର ସ୍ଥାନ ସବୁକୁ ମଧ୍ୟ ଲୋକେ ହଜାର ହଜାର ସଂଖ୍ୟାରେ ଛୁଟିଟା କଟେଇ ଦେଇ ଆସିବାକୁ ବାହାରି ପଡ଼ନ୍ତି । ଆଜି ଖବରକାଗଜରେ

ପଢ଼ିଲି, ରେଲ, ଷ୍ଟିମର ଏରୋପ୍ଲେନ୍ କମ୍ପାନୀମାନେ ଗତ କେତେଦିନ ହେଲା ଏଇ ଛୁଟି-ଖୋର-ମାନଙ୍କୁ ଜାଗା ଦେବାକୁ ଓ ସେମାନଙ୍କୁ ନିଆଆଣ କରିବାରେ ହାଲିଆ ହୋଇଗଲେଣି । ଶତ ଶତ ସ୍ପେଶାଲ୍ ଟ୍ରେନ୍ ଯୋଗା ହୋଇ ମଧ୍ୟ ଭିଡ଼ କମୁ ନାହିଁ । ଗତ ବୁଧବାର ଦିନ ମୁଁ ଗ୍ଲାସ୍‌ଗୋ ସାମ୍ରାଜ୍ୟ-ପ୍ରଦର୍ଶନୀ ଦେଖିବାକୁ ଯାଇଥିଲି । ଏତେ ଭିଡ଼ ଯେ, ମୁଁ ଓ ମୋର ଜଣେ ସାଙ୍ଗ ଅନେକ ବାଟ ଠିଆ ହେଇ କରି ଗଲୁ– ଅନ୍ୟ ଶ୍ୱେତାଙ୍ଗ ଯାତ୍ରୀମାନଙ୍କର ମଧ୍ୟ ସେଇ ଦଶା । ଏଇ ବିରାଟ ଚାଞ୍ଚଲ୍ୟ ଭିତରେ ମୁଁ କିନ୍ତୁ ଏଇଠି ସ୍ଥାଣୁ ହୋଇବସିଛି । ତେଣୁ ବୁଝିପାରିବ, ମୁଁ କାହିଁକି ସପ୍ତାହରେ ଦୁଇଟି ଚିଠି ଲେଖିପାରୁନାହିଁ ।

## ରେଲଗାଡ଼ିରେ ଠେଲାପେଲା–

ଆମ ଦେଶରେ ରେଲରେ ଚଢ଼ିଲାବେଳେ କିମିତି ଗହଳ ହୁଏ ଓ ଲୋକେ ଟିକଟ୍ ଏବଂ ଜାଗା ପାଇଁ କିମିତି ଭିଡ଼ାଭିଡ଼ି ହୁଅନ୍ତି ତାହା ତମେ ଜାଣ । ଅନେକଙ୍କର ଧାରଣା ଏଇଟା ଆମ ଲୋକଙ୍କର ବଦ୍ ପ୍ରକୃତି । କିନ୍ତୁ ସେ ଦିନ ଗ୍ଲାସ୍‌ଗୋ ଗଲାବେଳେ ମୁଁ ଯାହା ଦେଖିଲି ସେଥିରେ ମୁଁ ଆଉ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ ଯେ, ଆମ ଦେଶର ଲୋକେ କେବଳ ମେଣ୍ଢା-ମଇଁଷି ପରି– ଅନ୍ୟ ଦେଶର, ବିଶେଷତଃ ଧଳା ଚମଡ଼ା ଥିବା ଲୋକେ ନିତାନ୍ତ ସଭ୍ୟ ଓ ସଂଯତ । ଆମ ଦେଶର ଲୋକଙ୍କୁ ଯେଉଁ ଅବସ୍ଥାରେ ଆଣି ରଖାହୋଇଛି, ଏ ଦେଶର ଲୋକଙ୍କୁ ସେ ଅବସ୍ଥାରେ ରଖିଲେ ଏମାନେ ମଧ୍ୟ ସେହିପରି ବ୍ୟବହାର କରିବେ । ସେଦିନ ନିଉକାସ୍‌ଲ ଷ୍ଟେସନରେ ଗ୍ଲାସ୍‌ଗୋ ଯାତ୍ରୀମାନଙ୍କର ସଂଖ୍ୟା ଅତ୍ୟଧିକ ଦେଖି ସାଙ୍ଗେ ସାଙ୍ଗେ ପ୍ରାୟ ସାତ ଆଠଟା ଡବା ଯୋଡ଼ି ଦିଆଗଲା । ଭାରତବର୍ଷରେ ସରକାର ବିଦେଶୀ-ଚାଳିତ ରେଳ କମ୍ପାନୀ ଆମ ଦେଶର ତୃତୀୟ ଶ୍ରେଣୀ ଯାତ୍ରୀମାନଙ୍କୁ କୁକୁର ପରି ଦେଖିଆସିଛନ୍ତି । ଏମାନଙ୍କର ସୁଖ ସୁବିଧା ଦେଖିବା ସେମାନଙ୍କର କର୍ତ୍ତବ୍ୟ ଭିତରେ ନୁହେଁ– ଆମର ପଇସା ନେଇ, ଉପରବାଲାଙ୍କର ସୁଖସ୍ୱାଛନ୍ଦ୍ୟ ଯୋଗେଇବା ହିଁ ସେମାନଙ୍କର କ୍ରମାଗତ ଚେଷ୍ଟା । ତେଣୁ ତୃତୀୟ ଶ୍ରେଣୀ ରେଳଗାଡ଼ିରେ ଭାରତବର୍ଷର କୋଟି କୋଟି ଯାତ୍ରୀ ଯେ ମାଛ ଗଦାହେଲା ପରି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ବୁହା ହୁଅନ୍ତି । ସେମାନଙ୍କର ଶୋଇବାର, ବସିବାର, ବିଶ୍ରାମ ନେବାର, ମୁହଁ ଧୋଇବାର ବନ୍ଦୋବସ୍ତ ମଧ୍ୟ ନାହିଁ । ସେମାନେ ବେଳେବେଳେ ଠିଆ ହୋଇ ରହିବା ପାଇଁ ମଧ୍ୟ ଖୁନ୍ଦାଖୁନ୍ଦି ହୁଅନ୍ତି– ଏହି ଅପମାନକର ବୀଭତ୍ସ ଦୃଶ୍ୟ ସେମାନେ ଦେଖି ମଧ୍ୟ ନ ଦେଖିଲା ପରି ରହିଆସିଛନ୍ତି ଓ ସବୁ ଦୋଷ ଭାରତବର୍ଷର ନିରୀହ-ନିଷ୍ପେଷିତ ଜନତାଉପରେ ଢାଳିଦେବାକୁ ଚେଷ୍ଟାକରାହୋଇଛି । ପତିତଦଳିତର ଏକମାତ୍ର ବନ୍ଧୁ ମହାତ୍ମା ଗାନ୍ଧି ଏହି ଅନ୍ୟାୟ ବିରୁଦ୍ଧରେ ପ୍ରଥମେ ପ୍ରତିବାଦ କରନ୍ତି ।

ସେଦିନ ସେଇ ଡବା ଯୋଡ଼ା ନହୋଇଥିଲେ ଏ ଦେଶର ତଥାକଥିତ ସୁସଭ୍ୟ ଓ ସଂଯତ ଯାତ୍ରୀଗୁଡ଼ିକ ଠିକ୍ ଆମରି ପରି ବ୍ୟବହାର କରିଥାନ୍ତେ । କାରଣ ଯୋଡ଼ା ହେଉ ନ ହେଉଣୁ ସମସ୍ତେ ସିଟ୍ ପାଇବା ପାଇଁ ଦୌଡ଼ିବାକୁ ଲାଗିଲେ ଓ ଗୋଟେ ଗୋଟେ ବଖରାର ଦ୍ୱାରଦେଶରେ ପୁଞ୍ଜୀଭୂତ ଜନତା ଠେଲାଠେଲି ହୋଇ ସବା ଆଗେ ପଶିବାକୁ ଚେଷ୍ଟାକଲେ । ଯେଉଁଗୁଡ଼ିକ ସିଟ୍ ନ ପାଇ ବାରଣ୍ଡା ବା କରିଡରରେ ଏଣେତେଣେ ବୁଲିବାକୁ ଲାଗିଲେ, ସେମାନଙ୍କୁ କେହି ଡାକିକରି ମଧ୍ୟ ପାଖରେ ବସାଇଲେ ନାହିଁ । ସେମାନଙ୍କ ଭିତରେ ନାରୀ ଓ ବାଳକ ମଧ୍ୟ ଥିଲେ । ପରେ ରେଳ କର୍ମଚାରୀ ଆସି ପ୍ରତ୍ୟେକ ସିଟ୍‌ରୁ ହାତଲାଗୁଡ଼ିକ ଉଠେଇନେଇ, ଅଧିକା ଜାଗା କରି ସେମାନଙ୍କୁ ଆଣି ବସେଇଦେଇଗଲେ ।

କିଏ ହୁଏତ କହିବେ ଯେ, ଏ ଦେଶରେ ଏ ଘଟଣା କଦବା ଘଟେ । ତା' ସତ୍ୟ, କାରଣ ଏମିତି ଭିଡ଼ ବି ଏଠି କଦବା ହୁଏ । ପ୍ରତି ଅଧଘଣ୍ଟାରେ ତ ଗାଡ଼ି ଚାଲିଲା, ଭିଡ଼ ହେବ କାହିଁକି ? ଆମ ଦେଶରେ ଦିନରେ ଥରେ ଦି'ଥର ଗାଡ଼ି ଯିବ– ସେଥିରେ ଭିଡ଼ ହେଲେ କମ୍ପାନୀର ଦୃଷ୍ଟି ନାହିଁ, ତା'ର ଆଖି କେବଳ ଟିକଟ-ଲବ୍‌ଧ ପଇସା ଉପରେ– ସେଥିରେ ଲୋକେ ଯଦି ଖୁନ୍ଦାଖୁନ୍ଦି ଠେଲାଠେଲି ହୁଅନ୍ତି, ତେବେ ଆଶ୍ଚର୍ଯ୍ୟ ବା ନିନ୍ଦାର କଥା ରହିଲା କେଉଁଠି ?

ଆଜି ଖବରକାଗଜରେ ପଢ଼ିଲି, ମହାତ୍ମା ଗାନ୍ଧୀ କାୟାକଳ୍ପ ଦେଇ ନୂତନ ଯୌବନ ଲାଭ କରିବାକୁ ଯାଉଛନ୍ତି ।

**ବିଲାତରେ ମେଳା ଓ ଖେଳାଘର–**

ନିଉକାସଲ୍ ସହର ପାଖେ ଏକ ପ୍ରକାଣ୍ଡ ପଡ଼ିଆ ଅଛି । ଏ ଦେଶରେ ପ୍ରତି ସହରର ପାର୍କ ପଡ଼ିଆ ଏକ ବିଶିଷ୍ଟ ଅଂଶ । ସହରର ଜଞ୍ଜାଳରୁ ମୁକ୍ତି ପାଇ ନାଗରିକ ନାଗରିକାମାନେ ଦଳଦଳ ହୋଇ ସେଠି ଯାଇ ବୁଲନ୍ତି । ନିଉକାସଲ୍ ପାର୍କ ତ ଅଛି; ତା'ଛଡ଼ା ଏକ ପ୍ରକାଣ୍ଡ ପଦା ଜାଗା ଅଛି । ସେ ଜାଗାଟା କିନ୍ତୁ ସେମିତି ପଦା ଭାବରେ ଯତ୍ନରେ ରଖାହୋଇଛି । ଏବେ ସେଇ ପଦାରେ ଏକ ପ୍ରକାଣ୍ଡ ମେଳା ବସିଛି । ପ୍ରତିବର୍ଷ ମେଳା ଏଇ ମାସରେ ହୁଏ । ଏ ମେଳା ପାଇଁ ଏଠାରେ ସ୍କୁଲ ସବୁ ବନ୍ଦ ଓ ଅଫିସ, ଦୋକାନ, ବଜାର ସବୁ ୧୦ଟା ପରେ ବନ୍ଦ । ଗୋଟାକ ପରେ ରାସ୍ତାରେ ଲୋକବାକର ସୁଅ ଚାଲିଛି । ମେଳାଟା ଠିକ୍ ଆମ ଦେଶର ଦୋଳମେଲଣ ପରି । ପଦାରେ ଦି'ଧାଡ଼ି କରି ତମ୍ବୁ ବା କାଠର ବସା ପକାଇ ଦୋକାନୀ ବଜାରୀମାନେ ଡାକହାକ ଦେଇ ନିଜନିଜର ଜିନିଷର ବିଜ୍ଞାପନ ଦେଉଛନ୍ତି । ଆମ ଦେଶ ପରି ଗରିବ ଘରଚ ପିଲେ ମାଇପେ ଶହ ଶହ ସଂଖ୍ୟାରେ ଦୋକାନୀମାନଙ୍କର ଗରାଖ । ମେଳା

ଭିତରେ ଲୋକମାନଙ୍କ ମନ ଟାଣିବାପାଇଁ ଆମ ଦେଶ ପରି ଶସ୍ତା ବାଇସ୍କୋପ, ନଙ୍ଗଳାନାଚ, ଜନ୍ତୁମାନଙ୍କ ସର୍କସ, ସାମୁଦ୍ରିକ (ହାତଦେଖାଳି), କାଳିସୀ (ଭବିଷ୍ୟତ ଯେ କହନ୍ତି) ପ୍ରଭୃତି ଆସି ଜମାହୋଇଛନ୍ତି । ଗୋଳମାଳ, ହଟ୍ଟଗୋଳ, ବିକାକିଣା ଠିକ୍ ଆମ ଦେଶପରି । ମଣିଷ ନାମକ ପ୍ରାଣୀ, ଜଗତରେ ସବୁ ସ୍ଥାନରେ ଏକପରି ବ୍ୟବହାର କରେ । କେବଳ ଜଳବାୟୁର ଫରକ ଯୋଗୁ ଚମଡ଼ାର ଫରକ ସିନା ! କିନ୍ତୁ ଭିନ୍ନ ଭିନ୍ନ ରଙ୍ଗର ଚମଡ଼ା ତଳେ ମଣିଷ ପୃଥିବୀର ସବୁଠି ସେଇ ମଣିଷ ।

ଗତକାଲି ଗୁଡ୍‌ଫ୍ରାଇଡ଼େ ଗଲା । ଦିନଟା ମଉଜରେ କଟିଲା । ଆମେ କେତେ ଜଣ ଭାରତୀୟ ଏକାଠି ହୋଇଗଲୁଁ । ବନ୍ଧୁମାନେ ଆମ ଘରକୁ ଆସିଲେ । ମୁଁ ତରକାରି କଲି– ଭାଇ ପୁରି କଲା– ବେଶ୍ ସମସ୍ତେ ଖାଇଲୁ । ପରେ ବୁଲିଗଲୁ । ବୁଲିବୁଲି ଆମେ ଗୋଟେ ଗାଁକୁ ଗଲୁଁ । ଗୋଟେ କୃଷକର ଖଳା-ଘର ଦେଖିଲୁଁ । ବାପ୍‌ରେ, ଆମର ଏ ଦେଶ ସଂବନ୍ଧରେ କି ଧାରଣା ଅଛି ! ଗୁହାଳକୁ ଗଲୁଁ, ସେଇ ଗୋବରମୂତର ଗନ୍ଧ, ଗାଈଙ୍କ ଦେହରେ ଗୋବର, ବାଟଧାଡ଼ କୁଟା, ଗୋବର, କଳାମାଟି, ଏଠି ପାଳଗଦା, ସେଠି ଖତଗଦା—ଚାରିଆଡ଼େ ଠିକ୍ ଆମର ଚଷାଘର ପରି । ସେଇ କେତୋଟି ମୁହୂର୍ତ୍ତରେ ମୋର ଏ ଦେଶ ପ୍ରତି ଧାରଣା ସଂପୂର୍ଣ୍ଣ ବଦଳିଗଲା । ମୁଁ ବର୍ତ୍ତମାନ ଦେଖୁଛି, ଆମେ କେବଳ ପରାଧୀନ– ସେଇ କେବଳ ତାଙ୍କ ଆମ ଭିତରେ ପ୍ରଭେଦ; ନ ହେଲେ ଏ ଲୋକ ଓ ଆମ ଲୋକ ଭିତରେ ପ୍ରାକୃତିକ ପ୍ରଭେଦ କିଛି ମୁଁ ଦେଖିପାରୁନି । ଆମ ଲୋକଙ୍କୁ ଶିକ୍ଷିତ କଲେ ଓ ସେମାନଙ୍କ ହାତକୁ ଟଙ୍କା ଆସିଲେ, ସେମାନେ ବି ସଫାସୁତରା ହେବେ ଓ ପୋଷାକ-ପରିଚ୍ଛଦ ପିନ୍ଧି ସଭ୍ୟ-ଭବ୍ୟ ହେବେ ।

## ନର୍ସରୀ ସ୍କୁଲ

New Castle
Kings' College 15-8-38

ଆଜି ସକାଳେ ଏଠାରେ ଗୋଟିଏ Nursery School (ଶିଶୁଶାଳା) ଦେଖିବାକୁ ଯାଇଥିଲି । ଦୁଇବର୍ଷଠୁ ପାଞ୍ଚବର୍ଷ ଯାଏଁ ଏଠି ପିଲା ରହନ୍ତି । ବାପ, ମା' କାମ କରିବାକୁ ଗଲେ, ପିଲା କୁଆଡ଼େ ଯିବ ? ଯାହାର ଗୋଟିଏ ପିଲା– ସେ ପିଲା ସାଙ୍ଗ ଖୋଜିବ ଖେଳିବାକୁ, ସାଙ୍ଗ ମିଳିବ କୁଠି ! ଯେଉଁମାନଙ୍କର ବହୁତ ପିଲା, ସେଠି ଆଉ ଗୋଟେ ଛୁଆର ଲାଳନପାଳନ ହେବ କେମିତି ? ଏ ସବୁର ସମାଧାନ ଏହି Nursery Schoolରେ ହେଉଛି । ମୁଁ ଯାଇ ଦେଖିଲି,. ପ୍ରାୟ ତିରିଶ ଖଣ୍ଡେ ଛୁଆ ଦୌଡ଼ାଦୌଡ଼ି

ଲଗେଇଛନ୍ତି । କିଛି ସମୟ ପରେ ସେମାନଙ୍କର ଦୁଧ ଖାଇବାର ସମୟ ହେଲା । ସେମାନଙ୍କ ପାଇଁ ଛୋଟ ଛୋଟ ଟେବୁଲ ଓ ଚୌକି କରିଦିଆହୋଇଚି । ଦି'ତିନି ବର୍ଷର ପିଲା ଯେଝା ଚୌକିରେ ଚିହ୍ନି ବସିଗଲେ । ଦୁଧ ଖାଇବା ପୂର୍ବରୁ ଛୋଟ ପ୍ରାର୍ଥନାଟିଏ କଲେ ।

ଦୁଧ ଖାଇସାରି ଠିକ୍ ଜାଗାରେ ଗିଲାସଟିମାନ ଥୋଇଦେଇ ଆସିଲେ । ଅନେକ ଗରିବ ପିଲା ଅଛନ୍ତି, ଯେଉଁମାନେ ଦୁଧ ଖାଇ ନଥିଲେ, ତେଣୁ ପ୍ରଥମେ ଦୁଧ ଖାଇବାବେଳେ ଅଜଡ଼ା ଅଜଡ଼ି କରିଦେଉଥିଲେ । ଅନେକେ ଚୌକିରେ ବସିଜାଣିନଥିଲେ, ଚାମୁଚରେ ଖାଇ ଜାଣିନଥିଲେ – ସେ ସବୁ ଏଠି ସେମାନଙ୍କୁ ଶିଖିବାକୁ ହେଉଛି । ଦୁଧ ଖାଇବା ପରେ ପାଇଖାନା ଯିବାର ବେଳ । ଆମ ପିଲାଙ୍କ ପରି ମେଣ୍ଢାପଲପରି ପେଲାପେଲି ନାହିଁ–ପଛକୁ ପଛ ଧାଡ଼ି କରି ଠିଆହୋଇଯିବେ, ପରେ ପରେ କାମ ସାରି ଆସିବେ । ନାନା ପ୍ରକାର ଖେଳନା ରଖାହୋଇଛି– ସେଇ ଖେଳନା ନେଇ ଗଣନା ଶିଖିବେ, ସଂଖ୍ୟା ଚିହ୍ନିବେ, କୁ'ଠି କେଉଁ ଜିନିଷ ରଖିବାର କଥା ତା' ଶିଖିବେ । ଏଇଦିନୁ ସେମାନଙ୍କୁ ଗୀତ ଓ ନାଚ ଶିଖାଯାଉଛି । ବଗିଚାକୁ ଖେଳିବାକୁ ଯିବେ, ଅଥଚ ପଛକୁ ପଛ ଧାଡ଼ି ହୋଇ ଠିଆହୋଇ ଗୀତ ଗାଇ ଗାଇ ଯିବେ । ଅଢ଼େଇ ତିନିବର୍ଷିଆ ପିଲା ସବୁ ଆମ ଦେଶରେ ଯା କରିବେ; କିଏ କଳ୍ପନା କରିବ ? ମନୁଷ୍ୟର ଜୀବନ ଏଠି ମୂଲ୍ୟବାନ୍ । ଆଜିର ଶିଶୁ କାଲିର ମନୁଷ୍ୟ । ସେ କିମିତି ତା'ର ସବୁ ଶକ୍ତିର ଅଭିବୃଦ୍ଧି କରି ଜାତିର ଉପଯୁକ୍ତ ଅଂଶ ହେବ, ତା'ର ଚେଷ୍ଟା । ଏଠାରେ ସରକାର, ଯେଉଁମାନଙ୍କର କିଣିବାର ଶକ୍ତି ନାହିଁ, ସେମିତି ସ୍କୁଲ ପିଲାଙ୍କୁ ମାହାଳିଆ ଦୁଧ ଖାଇବାର ବନ୍ଦୋବସ୍ତ କରିଚନ୍ତି । Nursery Schoolରେ ପ୍ରତି ପନ୍ଦର ଦିନରେ ପିଲାଏ ଓଜନ ହୁଅନ୍ତି । କାହାର କିଛି ହେଲେ ତା'ର ସଙ୍ଗେ ସଙ୍ଗେ ଚିକିତ୍ସା । ମଧ୍ୟାହ୍ନ ଭୋଜନ ବି ଏଇଠି । ପିଲାଏ ନିଜେ ନିଜେ ପରଷି ଖାଇବାକୁ ଶିଖାଯାଏ ।

ସ୍ଥାନୀୟ ଶିକ୍ଷା-କମିଟିର ଜନୈକ ସଦସ୍ୟ Mrs. Richardson ମତେ ସେଠାକୁ ନେଇ ସବୁ ଦେଖାଇ ଆଣିଲେ ।

## ଇଂରେଜ ନାଗରିକତାର ଏନ୍ତୁଡ଼ିଶାଳ–

ମୁଁ ଏକ୍ଷଣି ଗୋଟେ ହାଇସ୍କୁଲରେ ଭାରତ ସମ୍ବନ୍ଧରେ ଘଣ୍ଟେ ଖଣ୍ଡେ କହି ଆସିଛି । ଆଉ ଦିନେ ଯାଇ ସେଠି ବାଳିକାମାନେ ଘରକାମ କିମିତି ଶିଖନ୍ତି ଦେଖିଆସିବି । ଜଣେ ଶିକ୍ଷକ ପିଲାଙ୍କ ଭିତରେ ମୋର ଫଟୋ ନେଲେ । ସେ ଫଟୋ ପାଇଲେ

ପଠାଇବି । ସଭା ଶେଷରେ ପିଲାମାନେ ଗୀତ ଗାଇଲେ–

He is a jolly good fellow – ଏ ବଡ଼ ମଜାର ଲୋକ ।
He is a jolly good fellow – ଏ ବଡ଼ ମଜାର ଲୋକ ।
So say all of us – ଆମ ସମସ୍ତଙ୍କର ମତ ତାହା ।
So say all of us – ଆମ ସମସ୍ତଙ୍କର ମତ ତାହା ।

ତା'ପରେ 'Hip Hip Hurrah'. ଏଠାର ପିଲାମାନେ ଏମିତି ନିଃସଙ୍କୋଚରେ ବଢ଼ନ୍ତି ଯେ, ଛୋଟ ଛୋଟ ବାଳିକା– ଆଠ ନ ବର୍ଷର– ମଧ୍ୟ ମୋ' ପାଖକୁ ଆସି ମୋର ଦସ୍ତଖତ୍ ନେଇ ଗଲେ । ସଭା ଶେଷରେ ଗୋଟେ ବାଳିକା ଅତି ଛୋଟ– (୮ ।୯ ବର୍ଷର) ସତୀଦାହ କଥା ପଚାରିଲା । ମୁଁ ତାକୁ କହିଲି ଯେ ସେ ସବୁ ଅତୀତ କଥା । ସଭା ପିଲାଙ୍କର– ପିଲା ପ୍ରେସିଡେଣ୍ଟ, ପିଲା ସେକ୍ରେଟେରୀ– ମାଷ୍ଟ୍ରଙ୍କର କିଛି ହାତ ନାହିଁ । ପିଲାଦିନୁ ଏମାନେ ଏସବୁ ଶିଖନ୍ତି– ପରେ ଦେଶ କାମରେ ଏସବୁ ଲଗେଇବେ । ଏସବୁ ଦେଖିଲେ ଭାରି ଖୁସି ଲାଗେ । ମୁଁ ଯେଉଁଠିକି ଯାଇଥିଲି, ସେଠି ଶିଳ୍ପ-ଶିକ୍ଷା ହୁଏ । ପିଲାମାନେ ବିନା ପଇସାରେ ପଢ଼ନ୍ତି । ସୁନ୍ଦର ସୁନ୍ଦର ଚୌକି, ଟେବୁଲ୍ କରିଛନ୍ତି । ସ୍କୁଲ କାଠ ଦେବ– ପିଲା ଯାହା ତିଆରିକରିବ, ସେ'ଟା ତା'ର । ଏଥିରେ ପିଲା ବି ଖୁସି, ବାପ ମା' ବି ଖୁସି । ଏମିତି ସ୍କୁଲ ଏ ଦେଶର ଚାରିଆଡ଼େ ।

## ଶ୍ୱେତ ନାରୀର ସ୍ୱାସ୍ଥ୍ୟ-ଚର୍ଚ୍ଚା

New Castle
Kings' College, 30-8-38

ମୁଁ ଏଠାର ଗୋଟିଏ ବାଳିକା ହାଇସ୍କୁଲକୁ ଇତିମଧ୍ୟରେ ଦି'ଥର ଗଲିଣି । ଥରେ ସ୍କୁଲ୍ ଦେଖିଲି, ଆଉ ଥରେ ଶିକ୍ଷୟିତ୍ରୀ ଓ ଅଭିଭାବକମାନଙ୍କର ମିଳନ ଦେଖିବାକୁ ଯାଇଥିଲି । ଉଭୟଥର ବାଳିକାମାନଙ୍କର କସରତ୍ ଦେଖି ମୁଁ କାବା ହୋଇ ଆସିଛି । ଜଘଂର ଅଧା ସରିକି ଖଣ୍ଡେ ଓ ଉପରେ ଖଣ୍ଡେ ଜାକେଟ୍ ବା ଅଣ୍ଡରଓୟେର୍ କମିଜ୍ । ଜଘଂ ଓ ବାହୁ ଏକାବେଳକେ ମେଲା; କିନ୍ତୁ ସେମାନଙ୍କର ଆଦୌ ସଙ୍କୋଚ ନାହିଁ । ଡିଆଁ ଡେଇଁ, ଦଉଡ଼, ପାରେଡ୍, କସରତ– ଆମ ଆଗରେ ବେଶ୍ ଫୂର୍ତ୍ତିରେ କରି ଯାଉଥାନ୍ତି । କି ସୁନ୍ଦର ସ୍ୱାସ୍ଥ୍ୟ ! ପ୍ରାୟ ସମସ୍ତଙ୍କର ଡେଣା ଦଉଡ଼ି ବୋଳିଲା ପରି, ମୁହଁ ଲାଲ-ଲାଲ୍ । ସ୍କୁଲରେ ପ୍ରତିଦିନ ପ୍ରତ୍ୟେକ ବାଳିକା କୌଣସି ନା କୌଣସି ବ୍ୟାୟାମ କରିବ– ହେଉ ଡ୍ରିଲ, ନ ହେଲେ ପହଁରା, ନ ହେଲେ ଖେଳ । ଏଇମାନେ ଦେଶରେ ମା'

ହେବେ କି ନା– ସେଥିପାଇଁ ଏମାନେ ସେହି ଆଦର୍ଶରେ ଗଢ଼ା ହେଉଛନ୍ତି । କେବଳ ସ୍କୁଲରେ ନୁହେଁ, ଦେଶମୟ ବର୍ତ୍ତମାନ ଏଠି ବ୍ୟାୟାମ ଲାଗି ଚିତ୍କାର ପଡ଼ିଛି । ପୁରୁଷ ବ୍ୟାୟାମ କରିବେ ଯୋଦ୍ଧା ହେବା ପାଇଁ, ନାରୀ କରିବେ ସୁନ୍ଦରୀ ହେବାପାଇଁ । ଆମ ଦେଶର ଶିକ୍ଷିତ ଶିକ୍ଷିତାମାନେ କୌଣସି ପ୍ରକାର ବ୍ୟାୟାମ କରନ୍ତି କି ? ଭୋଗନ୍ତି ବି ସେଥିପାଇଁ– ରୋଗରେ ଓ କୁରୂପରେ । ପ୍ରାଚୀନ କାଳରେ ଗାଁ ଗାଁକେ ଆଖଡ଼ା ଥିଲା, ଟୋକାମାନେ କସରତ୍ କରି ଯୁଆନ ହେଉଥିଲେ– ତମର ଅଜା, ଗୋସେଇଁ ବାପ ହେରିକା କିମିତିକା ମଣିଷ ହୋଇଛନ୍ତି ଦେଖ । ଏଣେ ବାଳିକାମାନେ ପୁଚି ଖେଳ ଖେଳି, ପାଣି ବୋହି, ଭାତ ରାନ୍ଧି, ଧାନ କୁଟି, ବାପା ଭାଇଙ୍କ ପରଷି ଯୌବନକୁ ଦେହରେ ବାନ୍ଧି ରଖିଥିଲେ । ଏବେ ବିଚିତ୍ର ଯୁଗ ଆସିଲା– ସ୍ୱାସ୍ଥ୍ୟ ପାଇଁ ଟଙ୍କା ଖର୍ଚ୍ଚ କରିବାକୁ ହେବ– ଟେନିସ୍, କ୍ରିକେଟ୍‌ରେ ପଇସା ଖର୍ଚ୍ଚ କରି, ପୁଣି ସିମଳା ଯାଅ, ପୁରୀ ଯାଅ, ଦାର୍ଜିଲିଂ ଯାଅ– ତଥାପି ରୋଗ; ତଥାପି ଦେହରେ କେବଳ ଚମ ଓ ହାଡ଼, ନ ହେଲେ ବିରାଟାକାରରେ ମେଦ । ଏଥି ସଙ୍ଗେ ଗୋଟିଏ ବର୍ଷିୟସୀ ଇଂରେଜ ମହିଳାର ଆତ୍ମକାହାଣୀ ଯାହା କି ଏଠାର ଖବରକାଗଜରେ ବାହାରିଥିଲା, ତା' ପଠେଇ ଦେଉଛି ।

**ଇଂରେଜ ମହିଳାର ବ୍ୟାୟାମପ୍ରିୟତା–**

ଯଦିବା ମୋର ବାଉନ ବର୍ଷ ବୟସ; ମୁଁ ଯୁବତୀ ଓ କିଶୋରୀମାନଙ୍କୁ ସୁନ୍ଦରୀ ହେବାର ଉପାୟ ବତେଇବି ।

ମଧ୍ୟବୟସ ପରେ ପ୍ରଚୁର ଅର୍ଥ ଖର୍ଚ୍ଚ ନ କରି ଜଣେ ସ୍ତ୍ରୀ ସୁନ୍ଦର ଦେଖାଯିବା କ'ଣ ସମ୍ଭବ ! ହଁ ନିଶ୍ଚୟ ସମ୍ଭବ; ମୁଁ ମୋ' ନିଜ ଜୀବନରେ ପ୍ରମାଣ କରିଛି । ମତେ ବର୍ତ୍ତମାନ ବାଉନବର୍ଷ; ତାହା କହିବାକୁ ମତେ ଲାଜ ଲାଗେନା । ମୋର ମାପ ଦେଖ– ଉଚ୍ଚତା ୫ ଫୁଟ୍ ୩ଇଞ୍ଚ, ବକ୍ଷ ୩୪ଇଞ୍ଚ, ଅଣ୍ଟା ୨୭ ଇଞ୍ଚ, ନିତମ୍ବ ୩୫ ଇଞ୍ଚ, ପେଣ୍ଡା ୧୨ଇଞ୍ଚ, ବାହୁ ୧୧ଇଞ୍ଚ ।

ମୁଁ ଯୁଆଡ଼େ ଯାଏ ଲୋକେ ମତେ ଅନାନ୍ତି– ମୋର ଯୌବନପୂର୍ଣ୍ଣ ମୁଖ ଓ ଶରୀରକୁ ଦେଖି ଏବଂ ତମେ ଯଦି ଭାବ ଯେ ମୁଁ ମୋ' ଜୀବନଟା କେବଳ କଷ୍ଟସାଧ୍ୟ ରୂପ-ଶାଳାମାନଙ୍କରେ କଟେଇଛି, ତମେ ଭୁଲ୍ ଭାବୁଛ ।

ମୁଁ ବରାବର ଶ୍ରମମୟ, କଠିନ, ସ୍ୱାସ୍ଥ୍ୟକର ଜୀବନ କଟେଇ ଆସିଛି । ବ୍ୟାୟାମ, ନାଚ, ଅଶ୍ୱାରୋହଣ, ଶିକାର, ମାଛଧରା– ଏ ସବୁଥିରେ ମୋର ଭାରି ଆଗ୍ରହ; କିନ୍ତୁ ମୁଁ ଘର ଚାଁଛିବା, ଲିପିବା, ଝାଡ଼ିବା, ସଫାକରିବା ପ୍ରଭୃତି କଠିନ ଘର କାମ ବି କରିଛି ଏବଂ ମୁଁ ଭାବେ ଅନ୍ୟ ବ୍ୟାୟାମ ପରି ଏ କାମ ମତେ ଢେର୍ ଉପକାର କରିଛି ଏବଂ ମୁଁ ବରାବର ବଗିଚା କାମ କରିବାକୁ ବାଇ ହୋଇଛି । ଯଦି ଆମର ସ୍ତ୍ରୀମାନେ ବୁଝନ୍ତେ

ବଗିଚା କାମ କିମିତି ଚମତ୍କାର ବ୍ୟାୟାମ, ତାହାହେଲେ ଆମେ ଆମର ଚାରିଆଡ଼େ ବହୁତରୁ ସୌଷ୍ଠବ-ସମ୍ପନ୍ନ ଶରୀର ଦେଖିବାକୁ ପାଆନ୍ତୁ ।

ଘାସ କାଟିବାରେ, ବାଛିବାରେ, ମାଟି କୋଡ଼ିବାରେ ଏବଂ ବାଡ଼ ଦେବାରେ ମୁଁ କେତେକ ସମୟ କଟେଇଛି— ବିଶେଷତଃ ମାଟି କୋଡ଼ାରେ ଏବଂ ମୁଁ ଭାବେ, ମୋର ସେ ସବୁ ସମୟ ସୁବ୍ୟୟିତ ହୋଇଛି । ଟୋକୀ ଥିଲାବେଳେ ବଗିଚା କାମରେ ମୁଁ ବରାବର ମୁକ୍ତ ଆକାଶତଳେ ଜୀବନ କଟାଉଥିଲେ । ବାଉନବର୍ଷ ବୟସରେ ତା'ର ଫଳ ମୁଁ ଆଜି ପାଉଛି ।

କେତେକାଳ ଲାଗି ମୁଁ ଭାରତବର୍ଷରେ ଥିଲି । ସେଠି ବି ମୁଁ ବଗିଚା ଆରମ୍ଭ କରିଥିଲି ଏବଂ ପରେ କୁକୁଡ଼ା ପାଳନ ମଧ୍ୟ ଆରମ୍ଭ କଲି । ଯେଉଁମାନେ ଏସବୁ କାମର କିଛି ଜାଣନ୍ତି, ସେମାନେ ଦେଖିପାରିବେ ଯେ, ମତେ ଏ ସବୁରେ ସକାଳୁ ସଞ୍ଜ ଯାଏ ବ୍ୟସ୍ତ ହେବାକୁ ପଡ଼େ । ଭାରତବର୍ଷର ଗରମ ଜଳବାୟୁ ଓ ଏ ପ୍ରକାର କଠିନ କାମ, ଉଭୟେ କ୍ଳାନ୍ତିକର ହେଲେହେଁ ମୁଁ କେବେହେଲେ ରୋଗ ଭୋଗି ନଥିଲି ।

ମୁଁ ଯେତେବେଳେ ସମ୍ଭବ ଦେଖିଛି, ମନଇଚ୍ଛା ଚାଲିଛି ।

ଅଲିଭ ତୈଳ ଲଗେଇ ମୁଁ ସପ୍ତାହରେ ଦୁଇଥର ଗାଧୋଇ ପକାଏ ସେହିଥିରେ ମୋର ବର୍ଣ୍ଣ ଠିକ୍ ରହେ ।

ଆଜିକାଲି ଖାଇବା ସମ୍ବନ୍ଧରେ ଅନେକ ବଡ଼ ବଡ଼ କଥା ଶୁଣାଯାଉଚି । ମୁଁ ମୋର ଯାହା ଇଚ୍ଛା ହୋଇଛି ତାହା ଖାଇଛି । ମତେ ଶାକ୍‌ସବଜି ଭଲ ଲାଗେ— ବିଶେଷତଃ ପାଳଙ୍ଗ ଶାଗ । ମୁଁ ସେଥିରୁ ଗୁଡ଼ିଏ ବରାବର ଖାଏ ।

ଖରାଦିନେ ମୁଁ ଚାହା ପରିବର୍ତ୍ତରେ ଲେମ୍ବୁ-ଜଳ ଖାଏ । ମୁଁ ତରୁଣୀମାନଙ୍କୁ କହେ, ସେମାନେ ତାଙ୍କ ଦେହକୁ କାମ କରିବାକୁ ଦିଅନ୍ତୁ । ଖୋଲା ବାୟୁ, ଖୋଲା ଭୂମିରେ ବୁଲାଚଲା କର । ଘୋଡ଼ା ଚଢ଼ିବା, ପହଁରିବା ବା ମାଛ ଧରିବା ତମ ପକ୍ଷରେ ସମ୍ଭବ ନ ହୋଇପାରେ । ମୋ' ପକ୍ଷରେ ସବୁବେଳେ ଏସବୁ ସମ୍ଭବ ହୋଇନାହିଁ— କିନ୍ତୁ ଘର କାମ ତ ସବୁବେଳେ ସମ୍ଭବ— ସେଇଥିରୁ ମୁଁ ଯଥେଷ୍ଟ ଉପକାର ପାଇଛି । ସେ ସବୁ କଷ୍ଟକର ସତ, କିନ୍ତୁ ତମେ, ଯେତେବେଳେ ସେମାନେ ତମର କିମିତି ଉପକାର କରୁଚନ୍ତି ତା' ଭାବିବ, କଷ୍ଟ କୁଆଡ଼େ ଚାଲିଯିବ । ମୁଁ ତ କରିଛି ସବୁ, ତମେ କାହିଁକି ନ କରିବ ?

ତମେ ବି ବାଉନ ବର୍ଷରେ ନିଜର ଦେହକୁ ନେଇ ଗର୍ବ କରିବ ।

— ମେରୀସେଲୀ

# ଇଂଲଣ୍ଡର ଦରିଦ୍ର ପଲ୍ଲୀ

Kings' College

ନିଉକାସ୍ଲ-ଅନ୍-ଟାଇନ, ତା ୨୨-୧-୩୮

କାଲି ରବିବାର ଜଣେ ବୃଦ୍ଧ ଡାକ୍ତରଙ୍କ ଘରେ କଟେଇ ଆସିଲି । ବୁଢ଼ାବୁଢ଼ୀ ବଡ଼ ଅମାୟିକ । ପରେ ତାଙ୍କ ଝିଅଟିଏ ଆସି ପହଞ୍ଚିଲା । ସେ ନର୍ସ କାମ କରେ । ସପ୍ତାହକୁ ତିନି ପାଉଣ୍ଡ ଅର୍ଥାତ୍ ଅଠଚାଳିଶ ଟଙ୍କା ପାଏ । ବୁଢ଼ା ହାତରୁ ପଇସା ଖର୍ଚ୍ଚ କରି ମତେ ରେଳରେ ବହୁତ ଜାଗା ବୁଲେଇ ଆଣିଲେ । ମୁଁ ମଫସଲ ଦେଖି ନ ଥିଲି ଏଠି, ବୁଢ଼ାଙ୍କ ଯୋଗୁଁ ଦେଖିଲି । ଏଠାର ମଫସଲ ଆମରି ଆଡ଼ର ଗାଁଗଣ୍ଡା ପରି ନୋଂରା– କୁ'ଠି ମାଟି ଗଦା ହୋଇଛି, ଏଠି ଖପରଲି, ସେଠି ଘାସ, ସେଠି ଇଟା– ଲୋକଙ୍କ ଦେହରେ ମଇଳା କୁର୍ତ୍ତା, ପିଲାଙ୍କ ଦେହରେ ଛିଣ୍ଡା ପୋଷାକ । ମୁଁ ଡାକ୍ତରଙ୍କୁ କହିଲି, ''ତମ ଦେଶରେ ମୋ' ଆଖିକି ସବୁଠୁ ବଡ଼ ଆଶ୍ଚର୍ଯ୍ୟ ଜିନିଷ ହେଉଛି ଦରିଦ୍ର ଲୋକ । ତମର ଏଡ଼େ ବଡ଼ ସାମ୍ରାଜ୍ୟ ଥାଇ ଯଦି ତମ ଦେଶରେ ଦରିଦ୍ର ରହିଲେ, ଅନ୍ୟ ଦେଶ ସବୁ କ'ଣ କରିବେ ? ମୁଁ ଆଦୌ କଳ୍ପନା କରିନଥିଲି ଯେ, ଏ ଦେଶରେ ଏପରି ଦରିଦ୍ର ଲୋକ ଥିବେ ।'' ଡାକ୍ତର କହିଲେ– ''ବହୁତ ଗରିବ ଲୋକ– ଏହା ଆମରି ଆର୍ଥିକ ବଣ୍ଟରା ଦୋଷରୁ ହେଉଛି । ଏସବୁ ଭେଦାଭେଦ କିମିତି ଘୁଞ୍ଚିବ ଆମେ ଚେଷ୍ଟାକରୁଛୁ ।''

**ପ୍ରେତବାଦୀ ସମିତି–**

ବୁଢ଼ାଙ୍କ ସାଥିରେ ସନ୍ଧ୍ୟାରେ 'Spiritualists' meeting' ବା 'ପ୍ରେତବାଦୀ ସମିତି' କି ଗଲି । ଏଠି ଅନେକ ସ୍ତ୍ରୀ କାଳିସୀର କାର୍ଯ୍ୟ କରନ୍ତି । ଏମାନଙ୍କୁ ଇଂରେଜୀରେ Clarivoyant କହନ୍ତି । ଏମାନେ ପ୍ରେତାତ୍ମାମାନଙ୍କୁ ଦେଖିପାରନ୍ତି ଓ ସେମାନଙ୍କର କଥା ବୁଝିପାରନ୍ତି । ଏ ସବୁ ଆଖିରେ ନ ଦେଖିଲେ ତମେ ସହଜରେ ବିଶ୍ୱାସ ଯିବ ନାହିଁ । କାଲି ସଭାରେ ଜଣେ ସ୍ତ୍ରୀ-କାଳିସୀ ବକ୍ତୃତା ଦେବାକୁ ଆସିଥିଲା; ବକ୍ତୃତା ତ ଭଲ ଦେଲା ଏଇ ପ୍ରେତବାଦ ବିଷୟରେ; ତା'ପରେ ଚମତ୍କାର ଭାବରେ ପ୍ରେତାତ୍ମାମାନଙ୍କର ସମ୍ବାଦ ସବୁ ଦେଲା । ସଭା ଶେଷରେ ସେ ମୋ' ପାଖକୁ ବଳେ ଆସି କହିଲା– ତମ ନିକଟକୁ ଗୋଟିଏ ସମ୍ବାଦ ଅଛି । ମୁଁ ପ୍ରକାଶ୍ୟ ସଭାରେ କହିଲି ନାହିଁ, କାରଣ ତମ ବାପ ମା' ବଡ଼ କରୁଣ ଭାବରେ ମରିଛନ୍ତି । ତମ ବୋଉଙ୍କର ଆତ୍ମା ମୋତେ ଦେଖାଦେଲେ । ସେ ଭାରୀ ସୁନ୍ଦରୀ । ସେ ତମକୁ ବରାବର ସ୍ନେହ

କରୁଛନ୍ତି । ମତେ ସେ କହିଲେ, ''ତମର ମନସ୍କାମନା ବରାବର ପୂର୍ଣ୍ଣ ହେବ । ତମେ ବର୍ତ୍ତମାନ ମାନସିକ ଅବସାଦ ଭୋଗୁଛ– ସେ ସବୁ ଚାଲିଯିବ । ସେ ସବୁକୁ ପକେଇଦେଇ କାମରେ ଲାଗି ରହ ।''

## ଇଂଲଣ୍ଡରେ ଶୀତାନ୍ତ

Students' Union, King's College
New Castle on Tyne, ୧-୨-୩୯

ତମର ପତ୍ର ପାଇଲି । ବସନ୍ତ ଭାରତରେ ଆରମ୍ଭ ହେବାର ଲେଖିଛ । ନୂଆ ଦକ୍ଷିଣା ପବନରେ ଆମ୍ବଗଛରେ ବଉଳ ଆସିଯିବଣି । ପାଚିଲା ଧାନରେ ଆମଦେଶର କେଦାରମାଳା ହସି ଉଠୁଥିବ । ଶୀତ ଶେଷରେ ସୂର୍ଯ୍ୟର ଅଳ୍ପ ତପ୍ତ କିରଣ ନୂଆ ଘାସ ଓ ବନସ୍ପତିର ନୂଆ ପତ୍ର ଉପରେ ଖେଳି ଖେଳି ଦିନ କାଟୁଥିବ । ଆମ୍ରକୁଞ୍ଜର ଅନ୍ତରାଳରେ ରହି କୋକିଳ କୋକିଳା ପରସ୍ପର କଣ୍ଠ ପରୀକ୍ଷାରେ ପ୍ରକୃତିର ନୂଆ ଦରବାରକୁ ମୁଖରିତ ଓ ଆମୋଦିତ କରୁଥିବେ । ଏସବୁ ମୁଁ ମନଶ୍ଚକ୍ଷୁରେ ଦେଖିପାରୁଛି ଏବଂ ମୋର ପକ୍ଷ ଥିଲେ ମୁଁ ଏହି ମୁହୂର୍ତ୍ତରେ ମୋ' ଦେଶକୁ ଉଡ଼ିଯାଇ ମୋ' ଦେଶର ନବୀନ ବସନ୍ତ ଉପଭୋଗ କରନ୍ତି । ଏଠି ବର୍ତ୍ତମାନ ଘୋର ଶୀତ । ଏଠି ମାର୍ଚ୍ଚ ଶେଷ ଆଡ଼କୁ ଯାଇ ବସନ୍ତ ଆସେ । ମଝିରେ କିଛିଦିନ ଶୀତ କମି ଆସିଥିଲା, ଫେର ଶୀତ ମାଡ଼ି ଆସିଲା । ଏଠି ପାଗ ବଡ଼ ଖାମଖେୟାଲି । କେଉଁ ଦିନ କ'ଣ ହେବ ତା' କେହି କହିପାରିବେ ନାହିଁ । ଦିନଗୁଡ଼ାକ ପ୍ରାୟ ମେଘୁଆ । ଖରା ଦେଖା ନାହିଁ । ଦିନେ ଦିନେ କିନ୍ତୁ ଉଜ୍ଜ୍ୱଳ ସୂର୍ଯ୍ୟ ମେଘମୁକ୍ତ ଆକାଶରେ ହସି ଉଠେ ଓ ଏଠାର ଶୀତ-କ୍ଳିଷ୍ଟ ପ୍ରକୃତି କେତେ ଘଣ୍ଟା ପାଇଁ ଜୀବନ୍ତ ହୋଇଉଠେ । ଖରା ପଡ଼ିଲେ ମଧ୍ୟ ଆମଆଡ଼ିକା ଖରା ପରି ନୁହେଁ । ଦିନଟା ଯାକ ଆମଆଡ଼ର ଶୀତଦିନିଆ ସକାଳ ପରି ଲାଗେ– ବଡ଼ କଅଁଳିଆ ଖରା । ଛୁଟି ଦିନରେ ଯଦି ଏହିପରି ପାଗ ହୁଏ, ତେବେ ପାର୍କ, ପଡ଼ିଆ ପ୍ରଭୃତିରେ ଯାଇ ଦେଖିବ ଯୋଡ଼ି ଯୋଡ଼ି ହୋଇ ତରୁଣ ତରୁଣୀ, ଦଳ ଦଳ ହୋଇ ପିଲା-ପିଲି, ଧୀର ଧୀର ହୋଇ ବୁଢ଼ାବୁଢ଼ୀ ଅନବରତ ଏଣେ ତେଣେ ଘୂରାଘୂରି କରୁଥିବେ । ଏମାନଙ୍କର ସମସ୍ତ ସମୟ ସହରର ସୀମାବଦ୍ଧ ପରିସର ଭିତରେ କଟେକି ନା; ପ୍ରକୃତିର ସ୍ପର୍ଶ ପାଇଁ ଏମାନେ ଆମ ଅପେକ୍ଷା ବେଶି ବ୍ୟାକୁଳ । ଆଉ ଏମାନେ ଏମାନଙ୍କ ଜୀବନର ସବୁ ପ୍ରୟୋଜନୀୟ ଦ୍ରବ୍ୟକୁ ଯେପରି ସଜେଇ ସୁନ୍ଦର କରନ୍ତି, ପ୍ରକୃତିକି ମଧ୍ୟ ସେଇପରି । ପାର୍କଗୁଡ଼ିକ କି ସୁନ୍ଦର ! ନଈ ବହିଯାଉଛି, ଗଛଲତା

ସ୍ତରେ ସ୍ତରେ ସଜ୍ଜିତ । ନାନା ବିହଙ୍ଗର କ୍ରୀଡ଼ା, ମଧ୍ୟେ ମଧ୍ୟେ ଘୋର ସବୁଜବର୍ଣ୍ଣ ଘାସର ଆସ୍ତରଣ । ଭୂମିର ସ୍ୱାଭାବିକ ବନ୍ଧୁରତା ରକ୍ଷାକରି କୃତ୍ରିମ ଉପତ୍ୟକା ସୃଷ୍ଟି, ଊର୍ଦ୍ଧ୍ୱରେ ଓ ନିମ୍ନରେ ରାସ୍ତା, ଛୋଟ ନଈଟି ଉପରେ ଛୋଟ ଛୋଟ ପୋଲ; ଛୋଟ ଛୋଟ ଜଳପ୍ରପାତ ମଧ୍ୟ; ସେ ଭିତରେ ବୁଲିଲେ ବାସ୍ତବିକ ତମର ଦୁଃଖ ତମେ ଭୁଲିଯିବ । ଜୀବନକୁ ଉପଭୋଗ କରିବା ଲାଗି ଏମାନେ ପ୍ରକୃତିକ ଯେତେ ପ୍ରକାରେ ଦୁହାଁଯାଇପାରେ ତା' କରିଛନ୍ତି । ଆମର କାମଧେନୁ ଆମ ପୁରାଣରେ, ୟାଙ୍କର କାମଧେନୁ– ସତ୍ୟ କାମଧେନୁ– ଅର୍ଥାତ୍ ପ୍ରକୃତି ଯାହା ମାଗିବ ତାହା ଦେଉଛି ।

ତମ ଚିଠିରେ ଦେଶର କଥା ଦେବା ଦରକାର ନାହିଁ – ତମେ କେବଳ ତମ କଥା, ଲାଲୁ କଥା, ଘରର ଅନ୍ୟ କଥା ଲେଖିବ । ତମେ ଯେଉଁ ସବୁ ଖବର ଲେଖିଛ, ତାହା ଆମେ ଏଠି ଆଗରୁ ଜାଣିଛୁ । ଆମର ଜଣେ ସାଙ୍ଗ ସାପ୍ତାହିକ 'ଷ୍ଟେଟ୍‌ସମାନ୍' ମଗାନ୍ତି– ଆମେ ତାଙ୍କଠୁ ସେଇଟି ଆଣି ଦେଶର ଖବର ମୋଟାମୋଟି ବୁଝିନେଉ । ନେହେରୁ ଜନନୀଙ୍କର ମୃତ୍ୟୁକଥା ସେଥିରେ ଭଲଭାବରେ ବାହାରିଥିଲା ।

**ଶକୁନ୍ତଳା ଅଭିନୟ–**

ଇତିମଧ୍ୟରେ ଶକୁନ୍ତଳା ନାଟକ ଅଭିନୀତ ହୋଇସାରିଛି । ଆମେ ସମସ୍ତେ ଦେଖିବାକୁ ଯାଇଥିଲୁଁ । ଅଭିନୟ ଚମତ୍କାର ହୋଇଥିଲା । ସାହେବ ସାଇବାଣୀ ଭାରତୀୟ ଲୁଗାପଟା ପିନ୍ଧି ଠିକ୍ ଭାରତୀୟ ପରି ଦେଖାଯାଉଥାନ୍ତି । ଅବଶ୍ୟ ଯେଉଁମାନେ ଅତି ଧଳା, ତାଙ୍କ ଦେହରେ ଗୋଟେ ପ୍ରକାର ରଙ୍ଗ ବୋଳି ମାଟିଆ କରିବାକୁ ହୋଇଥିଲା । ବିଦୂଷକ ଯେ ହୋଇଥିଲା, ସେ ଠିକ୍ ଭାରତୀୟ ପରି ଦେଖାଯାଉଥାଏ ଓ ଅଭିନୟ ବି ଚମତ୍କାର କଲା । ଶକୁନ୍ତଳା ଗୋଟିଏ ସୁନ୍ଦରୀ ବାଳିକା– ତା'ର ସଫେଦ ଗୋରା ଦେହରେ ରକ୍ତବର୍ଣ୍ଣର ଶାଢ଼ି ମନୋରମ ଦେଖାଗଲା । ଇଂରେଜୀରେ ଅବଶ୍ୟ ବଚନିକା– କିନ୍ତୁ ଭାବ ତ ସାର୍ବଜନୀନ । ଶକୁନ୍ତଳା-ବିଦାୟ ମର୍ମସ୍ପର୍ଶୀ ହୋଇଥିଲା । କିନ୍ତୁ ଆମ ପାଖରେ ବସିଥିବା ଶ୍ୱେତାଙ୍ଗ ଶ୍ୱେତାଙ୍ଗିନୀମାନେ ବୁଝିପାରିଲେନି ଶକୁନ୍ତଳା ତ ବିଭାହୋଇ ଯାଉଛି, କାନ୍ଦୁଛି କାହିଁକି ? ତା'ର ସଖୀମାନେ ବା କାନ୍ଦୁଛନ୍ତି କାହିଁକି ? ମୁଁ ବୁଝେଇଲି ଯେ ଏହାହିଁ ଆମ ଦେଶର ବାସ୍ତବ ଚିତ୍ର– ଆମର ପାରିବାରିକ ସମ୍ବନ୍ଧ ବଡ଼ ମଧୁର ଓ ଗଭୀର । ଆମେ ତମ ଅପେକ୍ଷା ଅଧିକ ଭାବପ୍ରବଣ– ଆମର ଘରୁ ଆମ ଭଉଣୀଏ ଗଲାବେଳେ ଆମେ ପ୍ରାୟ ଅଶ୍ରୁପାତ କରି ପକାଉ– ଇତ୍ୟାଦି । ମୋ' ପଛରେ ଜଣେ ଶ୍ୱେତାଙ୍ଗିନୀ ବସିଥାଏ– ସେ ଏଠା ଥିଓସଫିକାଲ ସୋସାଇଟିର ସେକ୍ରେଟାରି– ତେଣୁ ଭାରତ ସମ୍ବନ୍ଧରେ କିଛି କିଛି ଜାଣିଛି– ସେ ଅବଶ୍ୟ ମୋ' କଥାରେ ରାଜିହେଉଥାଏ ଓ କହୁଥାଏ ''ଆମ ଅପେକ୍ଷା ତମର

ବନ୍ଧୁତା ସବୁ ବଡ଼ ଗଭୀର ନିଶ୍ଚୟ, ନ ହେଲେ ଶକୁନ୍ତଳାର ସଖୀମାନେ ଏତେ ଦୁଃଖ ପ୍ରକାଶ କରନ୍ତେ କାହିଁକି ?'' ଜଣେ ଜର୍ମାନ ବାଳିକା ପଚାରିଲା ''ଭାରତବର୍ଷରେ ସମସ୍ତେ କ'ଣ ଏହି ରାଜା ପରି (ଦୁଷ୍ୟନ୍ତ) ଅନୁଭବ କରନ୍ତି ?'' ମୁଁ ଉତ୍ତର ଦେଲି– ''ଭାରତବର୍ଷରେ ସବୁ ପ୍ରେମିକ ଠିକ୍ ଏହିପରି ଭାବାକୁଳ ।'' ସମସ୍ତେ ହସିଉଠିଲେ ।

## ଇଂଲଣ୍ଡରେ ଥିଓସଫିକାଲ ସୋସାଇଟି

କିଙ୍ଗସ୍ କଲେଜ, ୧୫-୨-୩୯

ବର୍ତ୍ତମାନ ଏଠି ପୁଣି ବରଫପାତ– ପୃଥିବୀର ମୁଖ ଶୁଭ୍ରବସ୍ତ୍ରାବରଣ ଆବୃତ । ଭୟଙ୍କର ଥଣ୍ଡା । ଅବଶ୍ୟ ବରଫ ପ୍ରଥମେ ଯେପରି କୌତୂହଳ ଜାଗ୍ରତ କରିଥିଲା, ଏଥର ସେପରି କରୁନାହିଁ । ତଥାପି ଘର ଛାତ, ପ୍ରାନ୍ତର, ରାସ୍ତା, ଗଛପତ୍ରସବୁ ଯେତେବେଳେ ବରଫାବୃତ, ଚାରିଆଡ଼ର ନିର୍ମଳ ଶୁଭ୍ର ରଜତ-ଶୋଭାର ପ୍ରଶଂସା ନକରି ରହିହୁଏନାହିଁ । ମୋ' ଦେଶରେ ହେଲେ ଏପରି ହୋଇଥାନ୍ତା ! ପ୍ରଖର ସୂର୍ଯ୍ୟ ଆମ ଦେଶର ମାଟି ଓ ଆମ ଦେହରୁ ସବୁ ରସ ଶୋଷିନେଉଛି । ଆମେ ସେଥିପାଇଁ ନିର୍ଜୀବ । ଉତ୍ତର ଦେଶର ଶୀତ-ବର୍ଦ୍ଧିତ ଦୁର୍ଦ୍ଧର୍ଷ ଜାତିମାନେ ଆମକୁ ବାରଂବାର ଆକ୍ରମଣ ଓ ପରାସ୍ତ କରି ଆମ ଉପରେ ଶାସନ ଚଳେଇଛନ୍ତି ।

କ୍ରମେ କ୍ରମେ ମୋର ପରିଚିତ ଲୋକଙ୍କ ସଂଖ୍ୟା ବଢୁଛି । କାଲି ରବିବାର ଏଠାର ଥିଓସଫିକାଲ (ବ୍ରହ୍ମତତ୍ତ୍ୱ) ସୋସାଇଟିର ସେକ୍ରେଟେରୀଙ୍କ ଘରେ କଟେଇ ଆସିଛି । ସେ ଜଣେ ତରୁଣୀ । ତା'ର ବାପା ମା' ସମସ୍ତେ ସୋସାଇଟିର ମେମ୍ବର । ସେମାନେ ନିରାମିଷାଶୀ । ସୁନ୍ଦର ନିରାମିଷ ଆହାର ଦେଇଥିଲେ । ଥିଓସଫି, ଭାରତୀୟ ଧର୍ମ ଉପରେ ପ୍ରତିଷ୍ଠିତ । ଭାରତବର୍ଷର ଧର୍ମ, ଦର୍ଶନ, ସଂସ୍କୃତି ପ୍ରତି ଏମାନଙ୍କର ପ୍ରଗାଢ଼ ଶ୍ରଦ୍ଧା । ଏମାନଙ୍କର ସଂଖ୍ୟା ଅବଶ୍ୟ ଏ ଦେଶରେ ବଡ଼ କମ୍; କିନ୍ତୁ ମୋ' ଦେଶ ପ୍ରତି ସମ୍ମାନ ଦେଖାଉଥିବା ଯେକୌଣସି ଲୋକର ସାକ୍ଷାତ ହେଲେ ପ୍ରାଣରେ ଆନନ୍ଦ ଆସିବାର ତ କଥା !

ଏହି ଥିଓସଫିକାଲ୍ ସୋସାଇଟିର ଜଣେ ମେମ୍ବର ଆଉ ଏକ ରବିବାରକୁ ମତେ ନିମନ୍ତ୍ରଣ କରିରଖିଛନ୍ତି । ଏମାନଙ୍କର ନିମନ୍ତ୍ରଣ ଓ ଆମର ନିମନ୍ତ୍ରଣ ଭିତରେ ପ୍ରଭେଦଟା ପୁଣି ଦେଖ । ଆମର କେବଳ କୁଣିଆ ଚର୍ଚ୍ଚା, ଘରର ସ୍ତ୍ରୀଲୋକଙ୍କ ସଙ୍ଗେ ତ ଦେଖାନାହିଁ– ସେମାନେ ରୋଷେଇଘରେ କୁଟି ବାଟି ତରକାରି ବସେଇବା ଓହ୍ଲେଇବାରେ ହିଁ ଘର୍ମ୍ମାକ୍ତ । ଏହା ଏକ ବର୍ବର ପ୍ରଥା । ଏମାନେ ନିମନ୍ତ୍ରଣ କଲେ

ବି, ଏମାନେ ସାଧାରଣତଃ ଯାହା ଖାନ୍ତି ତାହାହିଁ ଦେବେ– ତାଙ୍କୁ ଅଧିକା ପରିଶ୍ରମ କରିବାକୁ ହୁଏନାହିଁ । ଅପର ପକ୍ଷରେ ଏମାନଙ୍କର ନିମନ୍ତ୍ରଣରେ ବୁଦ୍ଧି ଓ ମନର ଆନନ୍ଦ ଜୁଟେ । ଘରଣୀ, ତାଙ୍କର କନ୍ୟା, ଗୃହକର୍ତ୍ତା ପାଖରେ ଆସି ବସିବେ । ଖବରକାଗଜର କଥା, ଦେଶବିଦେଶର କଥା, ଅନ୍ୟାନ୍ୟ ଜ୍ଞାନଚର୍ଚ୍ଚା– ସବୁ କିଛିର ଆଲୋଚନା ହେବ, ସମସ୍ତେ ଯୋଗଦେବେ । ଖାଇଲାବେଳେ ବି ଚର୍ଚ୍ଚା ଚାଲିଥିବ । ଆମର କେବଳ ଗୁଡ଼ାଏ ଖାଇବା– ହାଉଁ ହାଉଁ କରି, ସେଇ ଆମର କୁଣିଆ ଚର୍ଚ୍ଚା । ଏଥିରୁ ଆମ ଭିତରେ ସଭ୍ୟତାର ତାରତମ୍ୟ ବୁଝିପାରୁଥିବ । କାଲି ଯାହାଙ୍କ ଘରେ ଥିଲି, ତାଙ୍କର ବ୍ୟବସାୟ ରାଜମିସ୍ତ୍ରୀ । ସେଇଥିରେ ସେ ପେଟ ପୋଷନ୍ତି; ଅଥଚ, ବାପା, ମା', ଝିଅ ସମସ୍ତେ ଯାଇ ନାଇଟ୍‌ସ୍କୁଲରେ ପ୍ରାଚ୍ୟ ଦର୍ଶନ ପଢ଼ନ୍ତି– ଝିଅ ବୋଟାନୀ ପଢ଼େ – ଏଣେ ଥିଓସଫିକାଲ ସୋସାଇଟିରେ ଯୋଗଦାନ । ମୋ' ସାଥିରେ ଏକାକୀ ବସି ଝିଅ ଡରୋଥୀ ନାରୀ ସମସ୍ୟା, ଭାରତବର୍ଷର ସମସ୍ୟା, ଜାଗତିକ ସମସ୍ୟା ଇତ୍ୟାଦି କଥା ନିର୍ଭୀକ ଭାବରେ ବିନା ସଂକୋଚରେ ଆଲୋଚନାକଲା । ଆମ ଦେଶରେ ବଡ଼ଲୋକଙ୍କ ଝିଅ ମାଇପେ ଯଦି ପାଠ ଜାଣିଥିବେ, ତେବେ କେବଳ ପଚା ଉପନ୍ୟାସ ପଢୁଥିବେ । ଘରକୁ କୁଣିଆ ଆସିଲେ ସେମାନେ ତ କାହିଁ ଲୁଚିବେ । କୁଣିଆ ବିଚାରା କେବଳ ଖାଇବାବେଳକୁ ଅନେଇ ରହିଥିବ– ଆଲୋଚନା କରିବ କା' ସାଥିରେ ? ଏସବୁ ଆଲୋଚନା ସତ୍ତ୍ୱେ ଡରୋଥୀ ହିଁ ଆମକୁ ରାନ୍ଧି ଖାଇବାକୁ ଦେଲା । ଏଥିରୁ ବୁଝିବ, ଆମ ସମାଜ କିପରି ଓଲଟ୍ ପାଲଟ୍ ଦରକାରକରେ ।

## ବିଦେଶରେ ସ୍ୱଦେଶ ସେବାର ସ୍ୱପ୍ନ

ନିଉକାସ୍‌ଲ, ୧୦-୩-୩୯

ତୁମର ମାର୍ଚ୍ଚ ଏକ ତାରିଖର ପତ୍ର ଆଜି ପାଇଲି – ଦଶ ଦିନ କିମିତି ଲାଗିଲା, ମୁଁ ବୁଝିପାରୁନାହିଁ । ଖୁବ୍ ସମ୍ଭବତଃ ବ୍ୟୋମଡାକର ଯିବାଆସିବାରେ ଗୋଳମାଳ ହେଉଛି । ମୁଁ ତ ବରାବର ଚିଠି ଲେଖୁଛି – ମୋ' ଉପରେ ବିରକ୍ତ ହେବାର କୌଣସି କାରଣ ନାହିଁ । ଗତ ସପ୍ତାହରେ ତମଠୁ ଚିଠି ନ ପାଇ କେବଳ ଚିଠି ଲେଖିପାରିନାହିଁ ।

ମୋ' ପାଖରେ ଫଟୋର ବ୍ଲକ ନାହିଁ– ତେଣୁ ଶ୍ରୀ ଚକ୍ରଧର ମହାପାତ୍ରଙ୍କ ପାଖକୁ ପଠେଇବି କ'ଣ ? ତା'ଛଡ଼ା ମୁଁ ତ ନିକଟରେ ଯିବି– ତାଙ୍କର ଏତେ ଉଦ୍‌ବିଗ୍ନ ହେବାର କୌଣସି କାରଣ ନାହିଁ । ମୁଁ ଗତ ଚିଠିରେ ତାଙ୍କ ପାଖରୁ ପାଇଥିବା ଚିଠି

ପଠେଇଦେଇଛି । ସେମାନଙ୍କର ଉତ୍ସାହକୁ ମୁଁ ପ୍ରଶଂସାକରେ, କିନ୍ତୁ ତାଙ୍କ-କର୍ମଯୋଜନାରେ ମିଳିତ ହେବାକୁ ସାହସ କରୁନାହିଁ । ପ୍ରଥମ କଥା ମୋର ନିଜର ଦାରିଦ୍ର୍ୟ । ମୁଁ ମୋର କରଜତକ ସଂପୂର୍ଣ୍ଣ ପରିଶୋଧ ନ କଲା ଯାଏଁ ଅନ୍ୟ କୌଣସି ବ୍ୟୟସାଧ୍ୟ କର୍ମରେ ହାତ ଦେବି ନାହିଁ । ଅନେକ ସମୟରେ ଇଚ୍ଛା ହୁଏ ଗଲେ ପ୍ରେସ୍ କରିବି, ଏହା କରିବି ତାହା କରିବି– କିନ୍ତୁ ସ୍ଥିରମନରେ ଭାବି ଦେଖୁଛି; ମୁଁ ଯେକୌଣସି ପ୍ରକାର କାର୍ଯ୍ୟ– ଯେଉଁଥିରେ କି ଜନତାର ସଂପର୍କ ଅଛି, ସେଥିଲାଗି ସଂପୂର୍ଣ୍ଣ ଅନୁପଯୁକ୍ତ । ମୁଁ ଯାହା କିଛି କରିପାରିବି ତାହା ଘର ଭିତରେ, ଗୋପନରେ, ଜନତାର ଅଗୋଚରରେ । ମୁଁ ଜନତାକୁ ଭୟକରେ; ନିକାଞ୍ଚନ ନିଃସଂଗତା ମତେ ଅନେକ ସମୟରେ ଭଲଲାଗେ । ନାରୀ ମନ୍ଦିରଟିଏ ଆରମ୍ଭ କରିବ– ଟଙ୍କାର ଅଭାବ, ନାନା ମନର ନାନା ଖେଳ– ସେଥିକି ମୁଁ ପାରିବିନି । ଗାନ୍ଧିଜୀ ଦେଶପାଇଁ ଏତେ କଲେ, କିନ୍ତୁ ଗାନ୍ଧିଙ୍କ ପବିତ୍ର ଆଦର୍ଶ ଜୀବନ୍ତ ଥାଉ ଥାଉ ଦେଖ କଂଗ୍ରେସ କିମିତି କଳ୍କଷରେ କଳା ପଡ଼ିବାକୁ ଆରମ୍ଭକଲାଣି । ଗାନ୍ଧିଜୀଙ୍କ ସଙ୍ଗେ ଆମକୁ ତୁଳନା କଲେ ଆମେ ବୁଝିପାରିବା ଆମେ ସାଧାରଣ ଅନୁଷ୍ଠାନ ସବୁ ଗଢ଼ିବାରେ କେତେ ପରିମାଣରେ ଅନୁପଯୁକ୍ତ । ଏସବୁ ବିଚାରି ମୁଁ ସ୍ଥିରକରିଛି ମୁଁ ବ୍ୟକ୍ତିଗତ ଜୀବନରେ ଯଦି କାହାରି– ଅବଶ୍ୟ ପରିବାରର ନୁହେଁ– କିଛି ସେବା କରିପାରିବି, ସେତିକି ଯଥେଷ୍ଟ; କିନ୍ତୁ ସାଧାରଣ ଅନୁଷ୍ଠାନ ସୃଷ୍ଟି କରି ସେ ଜଞ୍ଜାଳରେ ପଶିବା ମୋର ଆଦୌ ଉଚିତ ନୁହେଁ । ବର୍ତ୍ତମାନ ଦେଶରେ ଖବରକାଗଜୀ ପ୍ରଶଂସା, ନାମ, ଅଧିକାର ପାଇଁ ଜଘନ୍ୟ ଦଳାଦଳି ଚାଲିଛି । ପ୍ରହରାଜଙ୍କ ଭାଷାକୋଷଠୁଁ ପ୍ରଧାନମନ୍ତ୍ରୀଙ୍କ ପଦ ପର୍ଯ୍ୟନ୍ତ ସବୁ ଦେଶ-ସେବାର ଛଳନା ତଳେ ବ୍ୟକ୍ତିଗତ ଆକାଂକ୍ଷାର ଲୀଳା । ଆମେ ଏହି କୁତ୍ସିତ ପ୍ରତିଯୋଗିତାରେ ଯୋଗଦେବାର କି କାରଣ ଅଛି ? ମୁଁ ସେଥିପାଇଁ ଏବେ ଭାବୁଛି ଆମର ପ୍ରେସ୍-ଡ୍ରେସ୍, ଶାଢ଼ି-ବାଡ଼ି (ଘର) ଦରକାର ନାହିଁ କଟକରେ– ଆମେ ସୁଦୂର ପଲ୍ଲୀକି ଚାଲିଯିବା, ଦେଖିବା ସେଇ ଅରକ୍ଷିତ, ଦେବଚ୍ୟୁତ ଜନତାର ଯଦି କିଛି କରିପାରିବା । ଭାରତ ତ ପଲ୍ଲୀଦେଶ । ଶିକ୍ଷିତ ଲୋକେ ଗାଁ ଛାଡ଼ି ସହରରେ ପଶି ସହରକୁ କଳୁଷିତ କରୁଛନ୍ତି, ଗାଁ ଜନଶୂନ୍ୟ ଓ ନିରାନନ୍ଦମୟ ହେଉଛି । ମୁଁ ମୋ' ଦେଶକୁ ଯଦି ଭଲପାଏ, ତେବେ ମୁଁ ସେହି ପଲ୍ଲୀକି ସୁଶ୍ରୀ କରିବାରେ କିଛି ଯଦି କରିପାରେ, ତାହାହିଁ କରିବି । ସ୍ତ୍ରୀ-ସ୍ୱାଧୀନତା, ଦେଶ ସ୍ୱାଧୀନତା, ଦେଶ ମିଶ୍ରଣ ଓ ଏ କାମ ସେକାମ ପାଇଁ ସହରରେ ଗଣ୍ଡା ଗଣ୍ଡା ନେତା ବୁଲୁଛନ୍ତି; ଆମେ ସେଠି ଆଉ ଅଧିକା କ'ଣ କରିବା ? କନକମଞ୍ଜରୀ ଓ ଚକ୍ରଧରଙ୍କୁ* ପଚାର ସେ ତାଙ୍କ ଗାଁ ଛାଡ଼ି ଆମ ଗାଁରେ ଦୁଃଖ ସହି

* ପଲ୍ଲୀକବିତା ସଂଗ୍ରାହକ ଶ୍ରୀ ଚକ୍ରଧର ମହାପାତ୍ର ଓ ତାଙ୍କର ପତ୍ନୀ ।

କାର୍ଯ୍ୟ କରିବାକୁ ପ୍ରସ୍ତୁତ ଅଛନ୍ତି କି ? ଅଥବା ସେମାନେ ନିଜ ଗାଁରେ କାମ କରୁନାହାନ୍ତି କାହିଁକି ? କିନ୍ତୁ ଆମର ତାଙ୍କୁ ପରିଷ୍କାର କହିଦେବା ଉଚିତ, କରଜ ଶୁଝା ନ ହେଲା ଯାଏଁ ଆମେ କୌଣସି ପ୍ରକାର ସାଧାରଣ ଅନୁଷ୍ଠାନର କର୍ତ୍ତା ଭାବରେ ପରିଚିତ ହୋଇ ଜଞ୍ଜାଳଗ୍ରସ୍ତ ହେବାକୁ ପ୍ରସ୍ତୁତ ନୋହୁଁ । ମୁଁ ଗତ ଚିଠିରେ ତାଙ୍କୁ ସେୟା କହିଛି ।

ମୁଁ ମେ ମାସରେ ନ ଯାଇ ସମ୍ଭବତଃ ଜୁନ୍‌ରେ ଯିବି । ଭାବିଥିଲି ଇଷ୍ଟର ଛୁଟିରେ ପରୀକ୍ଷା ଇତ୍ୟାଦି ହୋଇଯିବ, କିନ୍ତୁ ପରେ ବୁଝୁଛି ଛୁଟି ଭିତରେ କିଛି ହେଇପାରିବନାହିଁ । ହଉ, ମାସକର ବ୍ୟବଧାନ ତ– ପ୍ରଥମେ ମୁଁ ବଡ଼ ବ୍ୟସ୍ତ ହେଲି – ଏବେ କୌଣସିମତେ ମନକୁ ମଙ୍ଗେଇଦେଇଛି ।

## ଜଣେ ଇଂରେଜ କୃଷକର ଖମାର କ୍ଷେତରେ*

ନିଉକାସଲ୍‌ର ସହର ତଳି ଭିତର ଦେଇ ଯାଉଥିଲା ବେଳେ ମୋର ଇଂରେଜ-ବନ୍ଧୁ ପୃଥିବୀ-ବିଖ୍ୟାତ ଅସ୍ତ୍ର-ଶସ୍ତ୍ରନିର୍ମାଣକାରୀ ଭିକର୍ଜ ଆର୍ମଷ୍ଟ୍ରଙ୍ଗଙ୍କ କମ୍ପାନୀର ଫାକ୍‌ଟରୀର ଲମ୍ୱା ଲମ୍ୱା ଗୃହଶ୍ରେଣୀ ମତେ ଦେଖାଇଦେଲେ । ମୋ' ମନରେ ହଠାତ୍ ଟିକିଏ ଧକ୍‌କା ଲାଗିଗଲା– କାରଣ ମୁଁ ମାରଣାସ୍ତ୍ର-ନିର୍ମାତା ଇଂରେଜକୁ ଦେଖିବାକୁ ଚାହୁଁ ନ ଥିଲି; ମୁଁ ଯାଉଥିଲି ଗୋଟିଏ ଇଂରେଜ କୃଷକ-ଗୃହସ୍ଥର ସାଧାରଣ ଖମାର-କ୍ଷେତ ଦେଖିବାକୁ, ଯେଉଁଠି ବ୍ରିଟିଶ୍‌ର ବୀର୍ଯ୍ୟ ଏ ପର୍ଯ୍ୟନ୍ତ ଜନନୀ ବସୁନ୍ଧରାଠାରୁ ଜାତିର ପ୍ରାଣରସ ଆହରଣ କରିବାରେ ଲାଗିରହିଛି । କିନ୍ତୁ ସହସା ସହରର କୁତ୍ସିତ, ସମ-ଦୃଶ୍ୟ ଘର ଓ ରାସ୍ତା ସବୁ ପଛରେ ପଡ଼ିଲା ଏବଂ ଇଂଲାଣ୍ଡର ମଧୁର ଶାରଦ ପ୍ରକୃତିର ଶୋଭା-ରାଜ୍ୟରେ ପ୍ରବେଶ କଲୁ । ଉଚ୍ଚ ରାସ୍ତାରୁ ଆରମ୍ଭ କରି ବହୁ ନିମ୍ନରେ ପ୍ରବାହିତ ଟାଇନ୍ ନଦୀର ଧାର ପର୍ଯ୍ୟନ୍ତ ସମଗ୍ର ଉପତ୍ୟକା ବର୍ଣ୍ଣ-ବହୁଳ ଏକ ଉପରାଣ ଘୋଡ଼େଇହୋଇ ଶୋଇ ରହିଲା ପରି ଦେଖାଯାଉଥିଲା । ଇଂଲାଣ୍ଡର ଗ୍ରୀଷ୍ମ ଋତୁର ଏଇ ମାତ୍ର ଅବସାନ ହୋଇଛି ଏବଂ ପଲ୍ଲୀ ପ୍ରକୃତିର ଶ୍ୟାମାଭରଣ କ୍ରମେ ହରିତ୍ ଓ ସ୍ୱର୍ଣ୍ଣାଭ ହୋଇ ଆସୁଛି । ବାଡ଼ଘେରା ଲମ୍ୱା ଲମ୍ୱା କିଆରିମାନଙ୍କରେ ଗହମର କ୍ଷେତ ଉପତ୍ୟକାର ଉପରୁ ତଳଯାଏ ପାଚି ପଡ଼ିରହିଛି । ମନେହେଲା ଜଗତର ଘନାୟମାନ ଦୈନନ୍ଦିନ ନୈରାଶ୍ୟ ଭିତରେ ସେ ସବୁ ଯେପରି ମା' ବସୁନ୍ଧରାର ମୁଖରେ ଚିରନ୍ତନ ଆଶାର ସ୍ୱର୍ଣ୍ଣ-ହାସ୍ୟ ।

---

* ମଡ଼ର୍ଣ୍ଣ ରିଭିଉର ୧୯୩୯, ସେପ୍‌ଟେମ୍ୱର ସଂଖ୍ୟାରେ ଲେଖକର ପ୍ରକାଶିତ 'With an English Farmer' ଲେଖାର ଅନୁବାଦ ।

ଆମେ ବସ୍‌ରୁ ଓହ୍ଲାଇ ଏକ ରାସ୍ତାରେ ଚାଲିଲୁ, ଯାହା ଦିନେ ସମ୍ରାଟ୍ ହେଡ୍ରିୟାନ ଓ ତାଙ୍କର ରୋମକବାହିନୀମାନଙ୍କର ଯାତ୍ରାରେ ମୁଖରିତ ହୋଇଥିବ । କାରଣ ଏଇ ରାସ୍ତାହିଁ ଉତ୍ତର ଇଂଲାଣ୍ଡରୁ ସିଧା ଲଣ୍ଡନ ଓ ସେଠୁ ରୋମ ପର୍ଯ୍ୟନ୍ତ ଯାଇଥିଲା । ଆମେ ଯେଉଁ ଖମାରକୁ ଯାଉଥିଲୁ ତାହା ଏଇ ରାସ୍ତାରୁ ପାଏ ମାଇଲ ଦୂରରେ ।

ଖମାରଟି ଗୋଟିଏ ଉଚ୍ଚ ସ୍ଥାନରେ ଯେଉଁଠୁ ସମଗ୍ର କ୍ଷେତ୍ରଟି ସୁନ୍ଦର ଭାବରେ ଦେଖାପଡ଼େ । ଗୋଟିଏ ଛୋଟ ପଦ-ପଥ ଦେଇ ଉପରକୁ ଉଠି ଉଠି ହଠାତ୍ ଯେତେବେଳେ ଖମାର ଘର ଆଗରେ ପହୁଁଚିଗଲୁ, ତା'ର ଆଧୁନିକତା ଓ ପରିପାଟୀରେ ମୁଁ ବିସ୍ମିତ ହୋଇପଡ଼ିଲି । ଯାହାଙ୍କର ଆତିଥ୍ୟ ଗ୍ରହଣକରିବୁ ତାଙ୍କ ସଙ୍ଗେ ଦେଖା ଓ ପ୍ରାରମ୍ଭିକ ଶିଷ୍ଟାଚାର ପରେ ଆମେ ସମସ୍ତେ ବାହାରେ ଶୋଭନୀୟ ଭାବରେ ସଜ୍ଜିତ ଗୃହ-ସମ୍ମୁଖର ଘାସ ଆସ୍ତରଣ ଉପରେ ବସି ଆଳାପ ଆରମ୍ଭ କଲୁ । କଥା ହେଲା ଇଣ୍ଡିଆ ଓ ଗାନ୍ଧି ନେଇ; କାରଣ ଏବେ ଜଣକ କଥା ପଡ଼ିଲେଇ ଅପରିହାର୍ଯ୍ୟ ଭାବରେ ଅନ୍ୟଟି ଆସି ପଡ଼େ । ଇତିମଧ୍ୟରେ ଆମର କୃଷକ-ବନ୍ଧୁଙ୍କର ଛୋଟ କନ୍ୟା ଜୁନ୍ ତା'ର ସ୍ନାନ ସାରି ଉପସ୍ଥିତ ହେଲା । ମୋର ସହଗାମୀ ଇଂରେଜ ବନ୍ଧୁ ଜଣେ ଆର୍ଟିଷ୍ଟ୍ । ସେ ଜୁନ୍‌କୁ କହିଲେ ବୁଦ୍ଧ ପରି ବସିବାକୁ, କାରଣ ସେ ସେଇ ଭଙ୍ଗିରେ ତା'ର ଗୋଟିଏ ଛବି ଆଙ୍କିବାକୁ ଇଚ୍ଛାକରନ୍ତି । ପ୍ରଥମେ ଛୋଟ ଜୁନ୍ ଭାରି ଉତ୍ସାହିତ ହୋଇଉଠିଲା; କିନ୍ତୁ ଆମେ ଯେପରି ଚକା ପକେଇ ବସୁ ତା'ର ସେ ଅଭ୍ୟାସ ନ ଥିବାରୁ ତା'ର ଶୈଶବର ଚଞ୍ଚଳ, କୋମଳ ଅବୟବଗୁଡ଼ିକ କ୍ରମେ ଅସ୍ଥିର ହୋଇଉଠିଲା । ମୋର ବନ୍ଧୁଙ୍କୁ ଶେଷରେ ଚିତ୍ର ନେବାର ଚେଷ୍ଟା ଛାଡ଼ିବାକୁଇ ହେଲା । ଇତିମଧ୍ୟରେ ଜୁନ୍‌କୁ ଅସ୍ଥିର କରୁଥିବାର ଆଉ ଏକ ଉପଦ୍ରବ ମୁଁ ଲକ୍ଷ୍ୟ କଲି— ତାହା ମାଛି । ଆମ ଭାରତୀୟମାନଙ୍କର ଧାରଣା ଯେ ଇଂଲାଣ୍ଡରେ ମଶା ଓ ମାଛି ନାହାନ୍ତି— ଅନ୍ତତଃ ମୋର ସେଇ ଧାରଣା ଥିଲା । କିନ୍ତୁ ଆମର ପରିଚିତ ବନ୍ଧୁ ମଶକଙ୍କୁ ସେକ୍‌ସପିଅରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟ୍‌ଫୋର୍ଡ୍-ଅନ୍-ଏଭନ୍‌ରେ ଭେଟିଥିଲି ଏବଂ ମାଛି ତ ଦେଖିଛି ଅନେକ ଜାଗାରେ, ବିଶେଷତଃ ଗ୍ରୀଷ୍ମ କାଳରେ । କିନ୍ତୁ ଏହା ସତ୍ୟ ଯେ ଭାରତବର୍ଷରେ ମାଛି ଯେପରି ଭାବରେ ମନୁଷ୍ୟର ଖାଦ୍ୟ ଓ ବାସରେ ଭାଗିଦାର ଭାବରେ ବଞ୍ଚେ, ଇଂଲାଣ୍ଡରେ ତା' କରିବାକୁ ଦିଆଯାଏନାହିଁ । ଯେଉଁ କୁତ୍ସିତ ଭାବରେ ଅୟୁତାୟୁତ ମକ୍ଷିକା ଆମର ଗୃହ ଓ ବିପଣୀକୁ ମୁଖରିତ, କୃଷ୍ଣୀକୃତ ଓ ବିଷାକ୍ତ କରନ୍ତି ତାହା ସୁଏଜ କେନାଲ ଏ ପଟେ ଅଜ୍ଞାତ ଓ ଅଦୃଷ୍ଟ ।

## (୨)

କୃଷି ଓ ଖମାରରେ ମୋର ଯେ ଆଗ୍ରହ ତାହା ବ୍ୟବସାୟିକ ନୁହେଁ, ତାହା ଏକାନ୍ତ ପୈତୃକ । ଭାରତବର୍ଷରେ ଏକ କୃଷକ ପରିବାରରେ ମୋର ଜନ୍ମ; ତେଣୁ ଇଂଲାଣ୍ଡକୁ ଆସିଲାଦିନୁ ମୁଁ ବ୍ରିଟିଶ କୃଷି ଓ କୃଷକକୁ ଜାଣିବା ପାଇଁ ବରାବର ଉତ୍ସୁକ । ମୁଁ ଅନେକ ବ୍ରିଟିଶ ଖମାର କ୍ଷେତ୍ରକୁ ଯାଇଛି ଏବଂ ଚାଷ ହେଉଥିବା ଜମିର ସିଆରରେ ସିଆରରେ ଚାଲି ନୂଆ ଓଲଟା ମୃତ୍ତିକାର ସୂକ୍ଷ୍ମ ସୌରଭ ଭୋଗକରିଛି । କିନ୍ତୁ ଏ ଖମାର ଅନ୍ୟମାନଙ୍କଠାରୁ ଟିକିଏ ଭିନ୍ନ । ଏଠି ଯେ ଚାଷୀ ସେ କେବଳ ଜମିର ଶ୍ରମିକ ମାତ୍ର ନୁହନ୍ତି – ସେ କେମ୍ବ୍ରିଜ ବିଶ୍ୱବିଦ୍ୟାଳୟର କୃଷି-ବିଜ୍ଞାନର ଗ୍ରାଜୁଏଟ୍ । ଇଂଲାଣ୍ଡରେ କୃଷି-ବିଜ୍ଞାନରେ ଟ୍ରେନିଂ ପାଇଲା ପରେ ଜଣେ ଭାରତୀୟ ଦେଶକୁ ଫେରି ନିଜ ପୈତୃକ ଜମିଜମାର ରକ୍ଷଣାବେକ୍ଷଣ କରିବାର ଆମେ କଳ୍ପନା କରିପାରିବା କି ? ଯେତେ ଲାଞ୍ଛନା ଓ ଜଞ୍ଜାଳମୟ ହେଉ ପଛେ ଇଣ୍ଡିଆନ୍ ପକ୍ଷରେ ସରକାରୀ ଚାକିରିଟାଏ ପରି ଗୌରବମୟ ଲଭ୍ୟ ପଦାର୍ଥ ଆଉ ନାହିଁ; କିନ୍ତୁ ଯାହା ଅର୍ଥ ଓ ସ୍ୱାଚ୍ଛନ୍ଦ୍ୟ ଆଣିପାରିବ ଏପରି କୌଣସି କାମ ଇଂରେଜ ପକ୍ଷରେ ହେୟ ନୁହେଁ ।

ଇଂଲାଣ୍ଡର କୃଷି ଓ କୃଷକ ସମ୍ବନ୍ଧରେ ସମ୍ୟକ୍ ଧାରଣା ପାଇଁ ଆମକୁ ଇଂଲାଣ୍ଡ ଓ ଇଣ୍ଡିଆରେ ଯେଉଁମାନେ ମାଟିରେ କାମ କରନ୍ତି ସେମାନଙ୍କର ପରିବେଶ ଓ ପରମ୍ପରାର ପାର୍ଥକ୍ୟଟା ପ୍ରଥମେ ବୁଝିବାକୁ ହେବ । ଇଂଲାଣ୍ଡରେ ଫାର୍ମର ବା କ୍ଷେତ୍ରପତି ଅଛନ୍ତି; କିନ୍ତୁ ଆମ ଭାରତବର୍ଷରେ ମୃତ୍ତିକା କର୍ଷଣକୁ ଜୀବନର ଏକମାତ୍ର ଆଶ୍ରୟ ଧରି ଗୋଟିଏ ଶ୍ରେଣୀର କୋଟି କୋଟି ଲୋକ ଯେପରି ସହସ୍ର ସହସ୍ର ବର୍ଷ ଧରି ମାଟି ସଙ୍ଗେ ଲାଗିରହିଛନ୍ତି ସେପରି କୌଣସି ଶ୍ରେଣୀ ଏଠାରେ ନାହାନ୍ତି । ଭାରତବର୍ଷର ଏଇ ଚଷା ଚାଷ ଛାଡ଼ି ଅନ୍ୟ କୌଣସି ବୃତ୍ତି ଧରିବାର କଳ୍ପନା କରିବେ ନାହିଁ ଏବଂ ମାଟି ତାଙ୍କୁ ପ୍ରତିଦାନ ଦେଉ ବା ନଦେଉ ସେମାନେ ମାଟିକି ଛାଡ଼ିବେ ନାହିଁ । ଇଂଲାଣ୍ଡରେ କିନ୍ତୁ ବହୁ ବ୍ୟବସାୟ ଭିତରେ କୃଷି ଗୋଟିଏ ବ୍ୟବସାୟ ଏବଂ ଜଣେ ଇଂରେଜ କୃଷକ ହେବ ଯଦି କେବଳ ସେ ଦେଖେ ଯେ କୃଷି ତାକୁ ଉଦ୍‌ବୃତ୍ତ ଲାଭ ଦେଇପାରିବ । କୃଷି ଏଠି କାହାପ୍ରତି ବାଧ୍ୟତାତ୍ମକ ବା କୌଳିକ ନୁହେଁ । ତେଣୁ ଇଂଲାଣ୍ଡରେ ଦର୍ଜି, ସ୍କୁଲ ମାଷ୍ଟର, ଦୋକାନୀ, କିରାନି ପରି ତଥାକଥିତ କୃଷକ ମଧ୍ୟ ଏକ ଚିର-ପରିବର୍ତ୍ତମାନ ଶ୍ରେଣୀ । ଭାରତୀୟ ଚାଷୀ ପରି ଏଠି ଇଂରେଜ ଚାଷୀ ଚିରକାଳ ଲାଗି ଅସହାୟ ଭାବରେ ମାଟି କାମୁଡ଼ି ପଡ଼ି ରହେ ନାହିଁ ।

ଆମକୁ ଆଉରି ଏକ ବଡ଼ ପ୍ରଭେଦ ମଧ୍ୟ ମନେରଖିବାକୁ ହେବ । ଇଂଲାଣ୍ଡରେ

୩୦୦ରୁ ୬୦୦ ଏକର ପର୍ଯ୍ୟନ୍ତ ବା ତା'ଠୁ ବେଶି ଜମିର ମାଲିକ ପ୍ରାୟଇ ଦେଖାଯାନ୍ତି । କୌଣସି କ୍ଷେତ୍ରପତିର ଏଠି ୬୦ ଏକରରୁ କମ୍ ଜମି ନଥାଏ । କିନ୍ତୁ ଭାରତବର୍ଷରେ ହାରାହାରି କୃଷି ଜମିର ପରିମାଣ ପାଞ୍ଚ ଏକରରୁ ମଧ୍ୟ କମ୍ । ଇଂଲାଣ୍ଡରେ ଜମିର ଆକାର ଏ ପର୍ଯ୍ୟନ୍ତ ବଡ଼ ରହିଛି ସେଠାର ଭୂମି-ବିଧାନର ବିଶେଷତ୍ୱ ଯୋଗୁଁ; ଯା' ଫଳରେ କେବଳ ବାପର ବଡ଼ପୁଅ ହିଁ ପୈତୃକ ସଂପତ୍ତିର ଅଧିକାରୀ ହୁଏ, ଆମ ଭାରତବର୍ଷପରି ସେ ସମ୍ପତ୍ତି ସବୁ ଭାଇଙ୍କ ଭିତରେ ଟିକି ଟିକି କରି ବାଣ୍ଟିଦିଆହୁଏନାହିଁ । କୃଷିକ୍ଷେତ୍ରର ପରିସର ବଡ଼ ଥିବାରୁ ଇଂଲାଣ୍ଡର କୃଷକ କୃଷିର ନୂତନ ପରୀକ୍ଷା କରିପାରେ, ଶସ୍ୟର ପରିବର୍ତ୍ତନ କରିପାରେ ଏବଂ ଶସ୍ୟ ଜନ୍ମାଇବା ସଙ୍ଗେ ସଙ୍ଗେ ପଶୁପାଳନ ମଧ୍ୟ କରିପାରେ । ଭାରତବର୍ଷରେ ଜମି କ୍ରମାଗତ ଏପରି ଖଣ୍ଡବିଖଣ୍ଡିତ ହୋଇ ଚାଲିଛି ଯେ ଶେଷକୁ ତାହା କେବଳ ହିଡ଼ମାଳାରେ ପରିଣତ ହେଉଛି, ଠିକ୍ ଯେମିତି ଆମର ଜାତିପ୍ରଥା ଆମକୁ ଏକ ବଳଶାଳୀ, ସଂହତ, ଏକୀଭୂତ ଜାତିରେ ପରିଣତ ହେବାକୁ ନ ଦେଇ, କରିଛି ଆମର ସମାଜକୁ କୋଟିଧା ବିଭକ୍ତ ।

ବାସ୍ତବ ଦୃଷ୍ଟାନ୍ତକୁ ଆସିଯାଉ । ମୁଁ ବର୍ତ୍ତମାନ ଯାହାଙ୍କର ଅତିଥି, ସେ ବହୁ ଭାଇଙ୍କ ଭିତରୁ ମାତ୍ର ଜଣେ ଯେ କି କୃଷକ ହୋଇଛନ୍ତି, ଅନ୍ୟ ଭାଇମାନେ ନିଜ ନିଜ ରୁଚି ଅନୁସାରେ ଅନ୍ୟ ବ୍ୟବସାୟ ସବୁ ଧରିଛନ୍ତି । ତାଙ୍କର କ୍ଷେତ୍ରର ପରିସର ପ୍ରାୟ ୪୦୦ ଏକର ଏବଂ ସେ ଭଲରେ ଅଛନ୍ତି । କିନ୍ତୁ ହୁଏତ ତାଙ୍କର କୌଣସି ପିଲା କୃଷିକୁ ଆଦରିବେ ନାହିଁ । ତା'ହେଲେ ତାଙ୍କର ଜ୍ୟେଷ୍ଠ ସନ୍ତାନ ଯାକୁ କୃଷି-ପ୍ରେମୀ କୌଣସି ଭଦ୍ରଲୋକକୁ ବିକିଦେବ । ଏଇପରି ଭାବରେ ଇଂଲାଣ୍ଡର ଏଇ ଫାର୍ମ ବା ଖମାର-କ୍ଷେତ୍ରଗୁଡ଼ିକ ଅଖଣ୍ଡିତ ଭାବରେ ପୁରୁଷ ପୁରୁଷ ଧରି ହାତରୁ ହାତକୁ ଆସୁଛନ୍ତି । ଅଖଣ୍ଡିତ ରହୁଥିବାରୁ ଏଇ ଖମାର-କ୍ଷେତ୍ରଗୁଡ଼ିକ ଇଂଲାଣ୍ଡର ପଲ୍ଲୀ-ଅଞ୍ଚଳକୁ ଏକ ବିଶିଷ୍ଟ ସୌନ୍ଦର୍ଯ୍ୟ ଯୋଗାଇଥାନ୍ତି । ଆମେ ଭାରତବର୍ଷରେ ଧାଡ଼ି ଧାଡ଼ି ଘର ଏକାଠି ଜକାଜକି ହୋଇ ଠିଆହେବାର ଯେପରି ଦେଖୁ, ଇଂଲାଣ୍ଡର ପଲ୍ଲୀ ଅଞ୍ଚଳରେ ତାହା ଦେଖିବାକୁ ମିଳେ ନାହିଁ । ଏଠି ସାଧାରଣ ଦୃଶ୍ୟ ହେଉଛି ଗୋଟିଏ ଗୋଟିଏ ବିଶାଳ ଖମାର-କ୍ଷେତ୍ର, ଯାହାର ଚାରିପଟେ ସବୁଜ ବାଡ଼ ଘେରି ରହିଛି ଏବଂ ତା'ରି ଭିତରେ ଠିଆହୋଇଛି କ୍ଷେତ୍ରପତିର ଉଷ୍ମ, ସୁନ୍ଦର, ସ୍ୱାଚ୍ଛନ୍ଦ୍ୟମୟ ଗୃହାବଳି । ଗୋଟିଏ ଖମାର ଅନ୍ୟଠାରୁ ଅଲଗା, ହୁଏତ କୋଶ କୋଶ ଧରି ଦୂର । ଏପରି ଗୋଟିଏ ଫାର୍ମ ବା ଖମାର-ଘରର ବାତାୟନରୁ ଚାରିଆଡ଼କୁ ଦୃଷ୍ଟି ଦେଲେ ଏକ ଅବିସ୍ମରଣୀୟ ଚିତ୍ର ଦେଖାଯାଏ । ଶାନ୍ତ ପଲ୍ଲୀ ଅଞ୍ଚଳ, ଏଠି ସେଠି ଶାନ୍ତ ସୁନ୍ଦର କୁଟୀର ଯେଉଁଥିରୁ କୁଣ୍ଡଳୀକୃତ ଧୂମ ଚିମ୍‌ନି ଦେଇ ବାହାରିଆସୁଛି । ସବୁଜ ବାଡ଼ର ରେଖା ଉପରତଳ ହେଇ ଧାଡ଼ି ଧାଡ଼ି ଲମ୍ବି

ରହିଛି । ସବୁଜ ଚିକ୍‌କଣ ଘାସ ଉପରେ ଗୋରୁ-ଗାଈ ଚରୁଛନ୍ତି ଏବଂ ଏମ୍, ସିକାମୁର, ପାଇନ୍, ଫର ଏବଂ ଚେଶ୍‌ନଟ୍ ପ୍ରଭୃତି ଶୀତକଟିବନ୍ଧର ବୃକ୍ଷମାନଙ୍କର ସମାହାର ସମଗ୍ର ଚିତ୍ରକୁ ଦେଉଛି ଏକ ସୁନ୍ଦର ନୀଳ-ଶ୍ୟାମଳ ପଶ୍ଚାତ୍‌ଭୂମି । ପର୍ଯ୍ୟଟକମାନଙ୍କ ପାଇଁ ଇଂଲାଣ୍ଡର ଶ୍ରେଷ୍ଠ ଆକର୍ଷଣ ତା'ର ଅକଳ୍ପନୀୟ ଭାବରେ ସୁନ୍ଦର ପଲ୍ଲୀ ଅଞ୍ଚଳ, ନୁହେଁ ତା'ର ଜନବହୁଳ ଶିଳ୍ପପ୍ରାଣ ସହର; ଯଦିଓ ଏଇ ପଲ୍ଲୀ ପ୍ରାଣହୀନ ଓ ବିଚାରହୀନ ଶିଳ୍ପ-ସଂପ୍ରସାରଣ ଫଳରେ ଧ୍ୱସ୍ତ ଓ କ୍ଷତବିକ୍ଷତ ହୋଇସାରିଛି ଓ ଏବେ ବି ହେଉଛି ।

(୩)

କିନ୍ତୁ ଏସବୁ ସୁବିଧା ସତ୍ତ୍ୱେ ଇଂଲାଣ୍ଡରେ କୃଷିର ଅବସ୍ଥା କ'ଣ ? ବାସ୍ତବରେ ଏହା ଅତ୍ୟନ୍ତ ନୈରାଶ୍ୟଜନକ । ପଲ୍ଲୀ କ୍ରମେ ଜନଶୂନ୍ୟ ହେଉଛି ଏବଂ ସହରକୁ କ୍ରମାଗତ ଲୋକ-ପ୍ରବାହ ଗତିକରୁଛି ଅଧିକ ଉପାର୍ଜନ ଓ ଅଧିକ ସୁଖ ପାଇବା ଆଶାରେ । କିନ୍ତୁ ଏଣେ ସହର ଓ ମଫସଲ ଉଭୟ ମିଶେଇ ଇଂଲାଣ୍ଡରେ ବର୍ତ୍ତମାନ କୋଡ଼ିଏ ଲକ୍ଷରୁ ଊର୍ଦ୍ଧ୍ୱ ଲୋକ ବେକାର ହୋଇ ବସିଛନ୍ତି । ଏଣେ କୋଡ଼ିଏ ଲକ୍ଷ ବେକାରଙ୍କୁ ସରକାର 'ଡୋଲ୍' ବା ପଡ଼ି ଦେଇ ବଞ୍ଚେଇଲାବେଳେ, ତେଣେ ଲକ୍ଷ ଲକ୍ଷ ଏକର ଜମି ମନୁଷ୍ୟ ହସ୍ତର ସ୍ପର୍ଶ ନ ପାଇ ବନ୍ଧ୍ୟା ହୋଇ ପଡ଼ିରହୁଛି । ଏହାଠାରୁ ଅଧିକ ଶୋଚନୀୟ କ'ଣ ଥାଇପାରେ ? ପ୍ରସିଦ୍ଧ ଇଂରେଜୀ ପତ୍ରିକା 'ଷ୍ପେକ୍‌ଟେଟର୍'ରେ ଜନୈକ ପାଠକ ଏଇ ପ୍ରଶ୍ନ ପଚାରିଥିଲେ ଯେ ପଢ଼ିଖିଆ ବେକାରମାନଙ୍କ ଦ୍ୱାରା ସରକାର ପନିପରିବା ହେଲେ କାହିଁକି ଉତ୍ପନ୍ନ କରାଉ ନାହାନ୍ତି ? ଉତ୍ତର ମିଳିଲା ଯେ ଯଦି ଏମାନେ ସମସ୍ତେ ଉତ୍ପନ୍ନ କରିବାରେ ଲାଗିଯିବେ, ତେବେ ଯେଉଁମାନେ ଆଗରୁ ପରିବା ବ୍ୟବସାୟରେ ଅଛନ୍ତି ତାଙ୍କୁ ଆର୍ଥିକ ବିପତ୍ତି ଆସିବ । ମୋର ମନେହେଉଛି ଯେ ଏପରି ଗୋଟିଏ ଆର୍ଥିକ ବ୍ୟବସ୍ଥା ଯାହା ଚାହେଁ ଯେ କେତେକ ଲୋକ ଲାଭ ପାଇବା ପାଇଁ ଲକ୍ଷ ଲକ୍ଷ ଲୋକ ବେକାର ରହନ୍ତୁ, ତାହା କେବଳ ଯେ ପାପମୟ ନୁହେଁ, ମୂର୍ଖତା ମଧ୍ୟ ।

ଇଂଲାଣ୍ଡର କୃଷି-ବ୍ୟବସ୍ଥାରେ ବେକାର ସମସ୍ୟା ମଧ୍ୟ ଏକମାତ୍ର ମନ୍ଦ ଫଳ ନୁହେଁ । ଇଂଲାଣ୍ଡରେ କୃଷକ ବ୍ୟୟସାଧ୍ୟ କୃଷି-ଯନ୍ତ୍ର, ବୈଜ୍ଞାନିକ୍‌ସାର ବ୍ୟବହାର କରେ ଓ ଗଭୀର ବୈଜ୍ଞାନିକ ଜ୍ଞାନ ପ୍ରୟୋଗ କରେ । ଭାରତବର୍ଷର କୃଷକ ଏସବୁ କାହୁଁ ପାଇବ ? ତା'ର ଯନ୍ତ୍ରପାତି ବୈଦିକ ଯୁଗର, ମରହଟ୍ଟୀ । କିନ୍ତୁ ଏସବୁ ସତ୍ତ୍ୱେ ଇଂଲାଣ୍ଡର କୃଷି ବ୍ୟବସାୟ ଏକା-ଦିନକେ ଭୁଶୁଡ଼ି ପଡ଼ିବ ଯଦି ତାହା ସରକାରୀ ସାହାଯ୍ୟ ବା ସବ୍‌ସିଡି ଓ ଶସ୍ୟ ବିକ୍ରି କରେଇଦେବାର ଗ୍ୟାରାଣ୍ଟି ନ ପାଏ । ଆଉ

କୃଷିଜାତ ଦ୍ରବ୍ୟର ଗୁଣ ଓ ପରିମାଣ କିପରି ? ମୁଁ ହିସାବ-କିତାବର ଧନ୍ଦାରେ ପଶିବି ନାହିଁ, କେବଳ ସାଧାରଣ ଲୋକର ଦୃଷ୍ଟିରୁ କହିବି ଯେ ମୁଁ ଭାରତବର୍ଷରେ ଇଂଲାଣ୍ଡ ଅପେକ୍ଷା ଅଧିକ ବଡ଼ ଓ ସୁନ୍ଦର ଗୋଲଆଳୁ, ଟମାଟୋ ଓ ଫୁଲକୋବି ଦେଖିଆସିଛି । ଭାରତବର୍ଷ ପରି ଇଂଲାଣ୍ଡରେ ମଧ୍ୟ ଲକ୍ଷ ଲକ୍ଷ ଲୋକ ହୀନ ଖାଦ୍ୟର କୁଫଳ ଭୋଗକରୁଛନ୍ତି । କମ୍ବରଲାଣ୍ଡ୍ ଜିଲ୍ଲାର କୌଣସି ଏକ ସ୍ଥାନରେ କେତେଗୁଡ଼ିଏ ବାଳକବାଳିକାଙ୍କୁ ଅଣ୍ଡା ଦିଆଯାଇଥିଲା; କିନ୍ତୁ ଦେଖାଗଲା ଯେ ତାକୁ ନେଇ ସେମାନେ କ'ଣ କରିବେ ଜାଣିପାରିଲେ ନାହିଁ । ମୁଁ ଗୋଟିଏ ନର୍ସରି ବା ପ୍ରାକ୍-ପ୍ରାଥମିକ ବିଦ୍ୟାଳୟ ଦେଖିବାକୁ ଯାଇଥିଲି । ତା'ର ହେଡ୍‌ମିଷ୍ଟ୍ରେସ୍‌ଙ୍କଠୁ ଶୁଣିବାକୁ ପାଇଲି ଯେ କେତେକ ପିଲା ପ୍ରଥମେ ଯେବେ ସ୍କୁଲରେ ଭର୍ତ୍ତିହେଲେ ଗ୍ଲାସରେ ଦୁଧ କିମିତି ଖାଇବାକୁ ହେବ ଜାଣିନଥିଲେ । ଭାରତବର୍ଷ ଅପେକ୍ଷା ଇଂଲାଣ୍ଡରେ ସବୁ ଖାଦ୍ୟଦ୍ରବ୍ୟର ଦାମ ଚାରି ପାଞ୍ଚ ଗୁଣ ବେଶି ।

ଦରିଦ୍ର ଲୋକେ ତାଙ୍କର ଦୈନନ୍ଦିନ ଭୋଜନରେ ଦୁଧ ଓ ଅଣ୍ଡା ପରି ପୁଷ୍ଟିକର ଦ୍ରବ୍ୟର ଆୟୋଜନ କରି ପାରନ୍ତି ନାହିଁ । ଇଂଲାଣ୍ଡରେ ଲକ୍ଷ ଲକ୍ଷ ଲୋକ କିପରି ଦାରିଦ୍ର୍ୟରେ ଥାନ୍ତି ଭାରତବର୍ଷର ଲୋକେ ତାହା କଳ୍ପନା କରିପାରିବେ ନାହିଁ ।

ଅଳ୍ପ କଥାରେ ଏଇ ତ ଇଂଲାଣ୍ଡର କୃଷିର ଚିତ୍ର । ବ୍ୟୟସାଧ୍ୟ ଯନ୍ତ୍ରପାତି, ସାର, ବୈଜ୍ଞାନିକ ଅନୁସନ୍ଧାନ ଏବଂ ସର୍ବୋପରି ଷ୍ଟେଟ୍‌ର ସାହାଯ୍ୟ ଓ ଗାରେଣ୍ଟି ସତ୍ତ୍ୱେ ଏଠି କୃଷି ଏପରି ଲାଭହୀନ ଯେ ଲୋକେ ଯାକୁ ଛାଡ଼ି ସହରକୁ ପଳାଉଛନ୍ତି, ଉତ୍ପାଦନ ଏତେ କମ୍ ଯେ ଏହା ଏ ଦେଶର ଲୋକଙ୍କୁ ମୋଟେ ୩ ମାସ ପୋଷିପାରେ ଏବଂ ଉତ୍ପନ୍ନ ଦ୍ରବ୍ୟ ପୁଣି ଏତେ ମହର୍ଗ ଯେ ଲକ୍ଷ ଲକ୍ଷ ଲୋକ ସେ ସବୁକୁ ବ୍ୟବହାରଇ କରି ପାରନ୍ତି ନାହିଁ । ଭାରତବର୍ଷ ସଙ୍ଗେ କି ପାର୍ଥକ୍ୟ – ସେଠି କୃଷକର ସେହି ଆଦିମ ମରହଟ୍ଟୀ ଧରଣର ଚାଷ ଏକ ବିରାଟ ଜାତିକି ପୋଷି ରଖିଛି ଏବଂ ଗୋଟିଏ ବିଦେଶୀ ସରକାର ଓ ଦଲାଲ ପୁଞ୍ଜିପତି ସବୁ ନ ଥିଲେ ସେ ଦେଶ ପ୍ରକୃତରେ ପ୍ରାଚୁର୍ଯ୍ୟ ଭୋଗକରୁଥାନ୍ତା ଆଜି, ଯେପରି କରୁଥିଲା ସେ ପଚାଶ ବର୍ଷ ତଳେ ।

ମି:ଲଏଡ୍ ଜର୍ଜ ରାଷ୍ଟ୍ରନୈତିକ ନେତା ଭାବରେ ଯେପରି କୃତକାର୍ଯ୍ୟ ସେଇପରି ସିଦ୍ଧହସ୍ତ କୃଷକ ଭାବରେ । ଇଂଲାଣ୍ଡର କୃଷି ବ୍ୟବସ୍ଥାର ନୈରାଶ୍ୟଜନକ ପରିସ୍ଥିତି ବିରୁଦ୍ଧରେ ସେ ମଝିରେ ମଝିରେ ଜ୍ୱାଳାମୟୀ ବକ୍ତୃତା ଦେଇଥାନ୍ତି । ଏବେ ଗୋଟିଏ ସ୍କୁଲ ଶିକ୍ଷକଙ୍କ ସଭାରେ ସେ କହିଛନ୍ତି ଯେ ଫ୍ରାନ୍ସରେ ଶତକଡ଼ା ୪୦, ଜର୍ମାନୀରେ ଶତକଡ଼ା ୩୦ ଲୋକ ମାଟିରେ ନିଯୁକ୍ତ ଥିଲାବେଳେ ଇଂଲାଣ୍ଡରେ ମୋଟେ ଶତକଡ଼ା ୫ । ଖାଦ୍ୟାଭାବହିଁ ପ୍ରଥମ ମହାଯୁଦ୍ଧରେ ବର୍ତ୍ତମାନ ଜର୍ମାନୀକୁ ପରାଜୟ

ଆଣିଦେଇଥିଲା । ଫଳରେ ଜର୍ମାନମାନେ ଏହା ଭିତରେ ଏପରି ଜମିକୁ ହଳାୟତ୍ତ କରିଛନ୍ତି ଯାହା କି କେବେ କେହି ଛୁଉଁନଥିଲେ; କିନ୍ତୁ ବ୍ରିଟୀଶ ଏ ପର୍ଯ୍ୟନ୍ତ ମାଟିକି ଉପେକ୍ଷା ଦେଖାଇ ଆସୁଛି ।*

(୪)

କିନ୍ତୁ ମୁଁ ମୋର କୃଷକବନ୍ଧୁଙ୍କ ଜମିରେ ଯାହାସବୁ ଦେଖିଲି ସେଥିରୁ ଯେ ଭାରତୀୟ କୃଷକର ଅନେକ କିଛି ଶିଖିବାର ଅଛି ଏଥିରେ ସନ୍ଦେହ ନାହିଁ ।

ଭାରତୀୟ କୃଷକର ଦାରିଦ୍ର୍ୟ ଏବଂ ତା'ର କୃଷିକ୍ଷେତ୍ରର ପରସ୍ପର-ବିଚ୍ଛିନ୍ନତା ଓ କ୍ଷୁଦ୍ରତା ହେଉଛି ତା'ର ଉନ୍ନତିର ପ୍ରକୃତ ଅର୍ଗଳ । ତା'ର ଜମି ତା'କୁ ଓ ତା'ର ପରିବାରକୁ ଅତି କଷ୍ଟରେ ପୋଷେ । ମାଟିକୁ ଅଧିକ ଉତ୍ପାଦନକ୍ଷମ କରିବା ପାଇଁ ତା'ର ପୁଞ୍ଜି ନାହିଁ । ତେଣୁ ଅସୁବିଧା ଓ ଅଭାବର ପାପଚକ୍ର ଘୂରିଚାଲିଛି । ଯା ସାଥିକି ତା'ର ନିଜ ମୂର୍ଖତାର ପାପଚକ୍ର ବି ଅଛି । ମୋର ଇଂରେଜ କୃଷକବନ୍ଧୁଙ୍କ ପରି କୌଣସି ଭାରତୀୟ କୃଷକର ୩୬୦ ଏକର ଜମି ଥିଲେ ହୁଏତ ସେ କେବଳ ଗୋଟାଏ ଫସଲରେଇ ଜମିକି ଛାଡ଼ିଦିଅନ୍ତେ । ଇଂରେଜ ବନ୍ଧୁ ମତେ କିନ୍ତୁ ଏକ ପତ୍ରରେ ଜଣାଇଛନ୍ତି ଯେ "ତାଙ୍କର ଏଇ ୩୬୦ ଏକରର ଇଷ୍ଟେଟ୍‌ରୁ ସେ କେବଳ ସାମାନ୍ୟ ଅଂଶ ଚାଷ କରନ୍ତି, କେତେକରେ ଜଙ୍ଗଲ ଅଛି, କେତେକ ଭାଗ ଦିଆଯାଇଛି, କେତେକରେ ଲୋକେ ଭଡ଼ା ନେଇ ରହିଛନ୍ତି । ହାରାହାରି ପ୍ରତିବର୍ଷ ପ୍ରାୟ ୨୫ ଏକର ହିଁ ଶସ୍ୟ ପାଇଁ ଚାଷ କରାଯାଏ, ୬ ଏକର ମୂଳ-ଫସଲ (ଗୋଲଆଳୁ ଇତ୍ୟାଦି) ପାଇଁ ଚାଷକରାଯାଏ ଏବଂ ବାକୀତକରେ ଘାସ ବଢ଼େ । ଘାସ କିଆରିଗୁଡ଼ିକ ମଝିରେ ମଝିରେ ଚାଷ କରି ପୁଣି ସେଇ ଘାସମଞ୍ଜି ବୁଣିଦିଆଯାଏ, ଯା' ଫଳରେ ଜମି ଉର୍ବର ରହେ ।"

ମାତ୍ର ୩୦ ଏକର ଜମି ଉପରେ ଦୃଷ୍ଟି ଦେବା ଫଳରେ ଏଇ ଇଂରେଜ କୃଷକ ପ୍ରତି ଏକରକୁ ୨୫ରୁ ୩୦ ହନ୍ଦର ଗହମ, ୩୦ ହନ୍ଦର ଯବ, ୬ରୁ ୧୦ଟନ ଗୋଲ ଆଳୁ ଏବଂ ୧୫ ଟନ ଟର୍ଣିପ୍ ପାଆନ୍ତି । ଯେଉଁମାନେ ଚାଷରେ ଅଛନ୍ତି ସେମାନେ ଏହା ସହିତ ଭାରତବର୍ଷରେ ଏକର ପିଛା ଉତ୍ପାଦନ ସଙ୍ଗେ ଯାକୁ ତୁଳନା କରିପାରନ୍ତି । ମୋ' ପ୍ରଶ୍ନର ଉତ୍ତରରେ ଇଂରେଜ କୃଷକ ଜଣାଇଛନ୍ତି ଯେ ସେ ଏକର ପିଛା ନିମ୍ନଲିଖିତ ଭାବରେ ଖର୍ଚ୍ଚ କରନ୍ତି–

* ଏହା ଭିତରେ ଲଏଡ୍ ଜର୍ଜଙ୍କର ମୃତ୍ୟୁ ହୋଇଯାଇଛି ଏବଂ ଦ୍ୱିତୀୟ ମହାଯୁଦ୍ଧରେ ଇଂରେଜ ନିଜ ମାଟିରୁ ନିଜ ଖାଦ୍ୟ ଉଠେଇବା ପାଇଁ ପ୍ରାଣାନ୍ତ ଚେଷ୍ଟା କରିଛି ଏଥିରେ ସନ୍ଦେହ ନାହିଁ ।

| | | |
|---|---|---|
| ମୂଲିଆ ଖର୍ଚ୍ଚ | ୩ ପାଉଣ୍ଡ | |
| ଭଡ଼ା | ୨ ,, | |
| ପଶୁ ଖାଦ୍ୟ | ୩ ,, | |
| ଯାନବାହନ ଖର୍ଚ୍ଚ | | ୧୫ ଶିଲିଂ |
| ସାର | | ୧୫ ,, |
| ଅନ୍ୟାନ୍ୟ ଖର୍ଚ୍ଚ | ୧ ,, | |
| ମୋଟ | ୧୦ ପାଉଣ୍ଡ | (ପ୍ରାୟ ଟ୧୫୦ଙ୍କା) |

ଅବଶ୍ୟ ଭାରତରେ କୌଣସି ଶ୍ରେଣୀର କୃଷକ ହିଁ ଏକ ଏକର ଜମିରେ ୧୫୦ଟଙ୍କା ଖର୍ଚ୍ଚ କରିବା ସମ୍ଭବପର ନୁହେଁ । କିନ୍ତୁ ଏହା ତାହାର ସାମର୍ଥ୍ୟ ଭିତରେ ଥିଲେ ମଧ୍ୟ କେତେ ଜଣ ନୂତନ ଧରଣର କୃଷିପ୍ରଣାଳୀ ପରୀକ୍ଷା କରିବାକୁ ଉତ୍ସାହ ପ୍ରକାଶ କରିବେ ?

ଏଇ ଇଂରେଜ କୃଷକ ମିଶ୍ରିତ-ଚାଷ କରନ୍ତି– ଶସ୍ୟ ଉତ୍ପାଦନ ଓ ପଶୁପାଳନ ଏକତ୍ର ହୁଏ । ତାଙ୍କର ପ୍ରଧାନ ଆୟ ହେଉଛି ପଶୁପାଳନରୁ । ମୁଁ ତାଙ୍କର ଗୁହାଳ ବୁଲି ଦେଖିଲି । ଭାରତବର୍ଷର ଗାଈମାନଙ୍କ ଅପେକ୍ଷା ତାଙ୍କ ଗାଈ ଯେ ବୃହତ୍ତର ଓ ସୁସ୍ଥତର ଏଥିରେ ସନ୍ଦେହ ନାହିଁ । କେତେକ ଗାଈର ପହ୍ନା ଦୁଗ୍ଧର ପ୍ରାଚୁର୍ଯ୍ୟରେ ଭୂଇଁକି ପ୍ରାୟ ଲାଗି ଓହଳି ପଡ଼ିଥାଏ । ଆମର ଗୁହାଳ ପରି ତାଙ୍କ ଗୁହାଳ ଗନ୍ଧ ହେଉଥିଲେ ମଧ୍ୟ, ଆମ ଅପେକ୍ଷା ଢେର୍ ପରିଚ୍ଛନ୍ନ ଥିଲା । ମୁଁ ଗଲାବେଳେ ଗାଈ ସବୁ ବୈଦ୍ୟୁତିକ ଶୋଷକ ଯନ୍ତ୍ର ସାହାଯ୍ୟରେ ଦୁହାଁହେଉଥିଲେ ।

ମୋର ବନ୍ଧୁ ଦୁଇ କିସମର ଗୋରୁ ପୋଷୁଛନ୍ତି– ଦୁଧ ପାଇଁ ଜର୍ସି-ଗାଈ ଏବଂ ମାଂସ ପାଇଁ ଆଙ୍ଗସ୍-ଜାତି । ସେ ଜଣାଇଛନ୍ତି, ଜର୍ସି-ଗୋଠରେ ୭୦ଟି ଗୋରୁ ଭିତ୍ରରୁ ୩୦ଟି ହେଉଛନ୍ତି ଗାଈ, ଆଙ୍ଗସ୍-ଗୋଠରେ ୨୫ଟି ମାତ୍ର ଗାଈ । ଗ୍ରୀଷ୍ମକାଳରେ ତାଙ୍କର ୨୫ଟି ବାଛୁରୀ ଓ ୪ଟି ଷଣ୍ଢଙ୍କୁ ରଖାଯାଇଥାଏ କେବଳ ଶୀତ କାଳରେ ମାଂସ ପାଇଁ ବିକ୍ରି କରିଦେବା ଲାଗି ।

ଭାରତବର୍ଷରେ ମଣିଷଙ୍କ ପରି ଗୋରୁଗାଈ ମଧ୍ୟ ବିନା ଚିନ୍ତା, ବିନା ଯୋଜନାରେ ବଢ଼ିଚାଲିଛନ୍ତି । ସେମାନଙ୍କର ପାଳନ ପରିପାଟୀ ଓ ରକ୍ଷଣ-ଭକ୍ଷଣର କଥା କେହି ଭାବନ୍ତି ନାହିଁ । ହିନ୍ଦୁ ଗୋମାତାକୁ ହତିଆରରେ ମାରେନା; କିନ୍ତୁ ଆଉରି ନିଷ୍ଠୁର ଭାବରେ ଉପାସ ରଖେଇ ମାରେ । ହାଣିଦେବା ଅପେକ୍ଷା ମୋ' ମତରେ ଏ ମରଣ ଅଧିକ ପାପାବହ । ମୋର ମତରେ ଆର୍ଥିକ ଓ ରାଜନୈତିକ ଉଭୟ କାରଣରୁ ହିନ୍ଦୁ ଗୋରୁ ପ୍ରତି ତାଙ୍କର ଦୃଷ୍ଟିକୋଣ ବଦଳାଇ ଅଦରକାରୀ ବଳକା

ଗୋରୁଙ୍କୁ ହତ୍ୟାର ଦୟାମୟ ବ୍ୟବସ୍ଥା କରିବା ଉଚିତ । ବର୍ତ୍ତମାନ ହିନ୍ଦୁ ଗୋଟିଏ ପ୍ରାଣୀ, ଗୋରୁ ପାଇଁ ଗୋଟିଏ ମନୁଷ୍ୟ– ମୁସଲମାନକୁ ହତ୍ୟା କରିବାକୁ ପ୍ରସ୍ତୁତ । ଆମ ଦେଶର ରାଜନୈତିକ ଲକ୍ଷ୍ୟ ଆଡ଼କୁ ଦୃଷ୍ଟିଦେଲେ ହିନ୍ଦୁର ଗୋରୁ ପ୍ରତି ଅତ୍ୟଧିକ ଭକ୍ତି ଅଯୌକ୍ତିକ ନିଶ୍ଚୟ । ଗାଈ, ମାଛ ବା ଛେଳି ପରି ଗୋଟିଏ ପ୍ରାଣୀ ମାତ୍ର, ଏବଂ ଯଦିବା ତାହା ପବିତ୍ର ବୋଲି ଧରାଯାଏ, ତେବେ ଶାସ୍ତ୍ରର ବାକ୍ୟ ଓ ଉଦ୍ଦେଶ୍ୟକୁ ପ୍ରକୃତ ସମ୍ମାନ ଦେଖାଇବାକୁ ହେଲେ ହୁଏତ ଆମକୁ ଜନ୍ମ ନିୟନ୍ତ୍ରଣ କରି ଗୋରୁଙ୍କ ସଂଖ୍ୟା ନିୟନ୍ତିତ କରିବାକୁ ହେବ; ନଚେତ୍ କେତେକଙ୍କୁ ହତ୍ୟା କରିବାକୁ ହେବ, ଯେପରିକି ଅବଶିଷ୍ଟ ସୁସ୍ଥ ସବଳ ହୋଇ ବଞ୍ଚିପାରିବେ । ମୋର ପ୍ରଶ୍ନରେ ଇଂରେଜ ବନ୍ଧୁ ଉତ୍ତର ଦେଲେ ଯେ ''ତାଙ୍କ କ୍ଷେତ୍ରରେ କେବଳ ନିର୍ଦ୍ଦିଷ୍ଟ ସଂଖ୍ୟକ ଗୋରୁ ରହିବାକୁ ଦିଆଯା'ନ୍ତି – କାରଣ ତା'ଠୁ ବେଶି ସଂଖ୍ୟା ଏଠି ପୋଷିବା ଅସମ୍ଭବ । ବଳକାତକ ପ୍ରତିବର୍ଷ ବିକ୍ରି କରି ଦିଆଯାଏ– ମାଂସ ପାଇଁ ।''

ମୋର ମନେହୁଏ ଭାରତବର୍ଷର ଚାଷୀ ଏଥିରୁ କିଛି ଚିନ୍ତା କରିବାର ଅଛି ।

ଇଂରେଜ କୃଷକ ବନ୍ଧୁଙ୍କ କ୍ଷେତ୍ରରେ ଦୁଇଜଣ ମୂଲିଆ ସ୍ଥାୟୀ ଭାବରେ କାମ କରନ୍ତି । ସେମାନଙ୍କୁ ଘର ଦିଆଯାଇଛି । ସପ୍ତାହରେ ପାଆନ୍ତି ୪୫ ସିଲିଙ୍ଗ୍ କରି ଏବଂ ଉତ୍ପନ୍ନ ଶସ୍ୟ ସବୁର କିଛି କିଛି ଅଂଶ । ଭାରତବର୍ଷରେ କେଉଁ ବିଲ ମୂଲିଆ ସପ୍ତାହରେ ୪୫ ସିଲିଙ୍ଗ୍ ପାଇବାର ଆଶା କରିପାରେ ? ବଡ଼ ବେଶି ହୁଏତ ସେ ଦୁଇ ସିଲିଙ୍ଗ ଆଶ କରିପାରେ ।* ମୁଁ ଏଠି କାମକରୁଥିବା ଇଂରେଜ ମଜୁରିଆର ଘର ଦେଖିବାକୁ ଯାଇଥିଲି; ଦେଖିଲି ଭାରତବର୍ଷରେ ଜଣେ ଉଚ୍ଚ ମଧ୍ୟବିତ୍ତ ପରିବାରର ଘର ଅପେକ୍ଷା ତା'ର ସାଜସଜ୍ଜା ଓ ଆସବାବ ଉତ୍ତମତର । ଅଛି ତା'ର ପିଆନୋ, ଗଦିଦିଆ କୁର୍ଚି ଓ ସୋଫା, ବେତାରସେଟ୍ ଏବଂ ଅନ୍ୟାନ୍ୟ ସମସ୍ତ ଆଧୁନିକତା ।

ଇଷ୍ଟେଟ୍‌ରେ ବୁଲିବା ଭିତରେ ଦେଖିଲି ମଧ୍ୟ କୃଷକବନ୍ଧୁଙ୍କର ଜଙ୍ଗଲ । ଇଂଲାଣ୍ଡର ଅନ୍ୟ ସବୁ ବନାନୀ ପରି ଏ ମଧ୍ୟ ରୋପିତ ଅରଣ୍ୟ । ଭାରତବର୍ଷରେ କୃଷକ ବୃକ୍ଷରୋପଣ ପ୍ରତି ଆଉ ଦୃଷ୍ଟି ଦେଉ ନାହିଁ । ଇଂଲାଣ୍ଡଠାରୁ ଭାରତବର୍ଷ ଆଜି ଏ ଦିଗରେ ଶିଖିବାର ଅଛି । ଇଂଲାଣ୍ଡର ପଲ୍ଲୀ ଅଞ୍ଚଳକୁ ବୈଶିଷ୍ଟ୍ୟ ଦିଏ ତା'ର ସୁନ୍ଦର ରୋପିତ ଅରଣ୍ୟମାଳା ।

# ଲେଉଟାଣି

## (କେମ୍ବ୍ରିଜ, ଲଣ୍ଡନ, ପାରିସ, ଭେନିସ୍)

ଇଂଲାଣ୍ଡ ଭୂସ୍ୱର୍ଗ ହେଲେ ମଧ୍ୟ ନିଜ ଜନ୍ମମାଟିର ଆକର୍ଷଣଠାରୁ କି ତା' ଆକର୍ଷଣ ବଡ଼ ହେବ ?

ଅନେକ ଭାରତୀୟ ଛାତ୍ରଙ୍କଠୁଁ ବୁଝିଛି ଓ ମୋ' ନିଜ ଅଭିଜ୍ଞତା ମଧ୍ୟ ସେଇୟା ଯେ, ପ୍ରାୟ ଛ'ମାସ୍ ଖଣ୍ଡେ ରହି ଇଂଲାଣ୍ଡ ସଙ୍ଗେ ପରିଚିତ ହୋଇଗଲା ପରେ ଭାରତୀୟମାନଙ୍କର ମନ ଘରମୁହାଁ ହୋଇପଡ଼େ– ସେଠି ରହି ସେଇକଥା ଦେଖିବାକୁ ମନ ଆଉ ଚାହେଁ ନାହିଁ । ଇଂଲାଣ୍ଡର ପ୍ରଚଣ୍ଡ ଶୀତ, ପବନ ଓ ଚିରମେଘୁଆ ପାଗରେ ଭାରତୀୟର ଉଜ୍ଜ୍ୱଳ-ସୌରକର-ପରିଚିତ ମନ ତା'ର ସେହି ଚିର ସୌରକରୋଦ୍ଭାସିତ ଦେଶଟିକି ଫେରିଯିବାକୁ ଆନ୍ଦୋଳିତ ହୁଏ ।

ମୁଁ ତ ସେଠି ପହଞ୍ଚିଲାକ୍ଷଣି ଭାବିଥିଲି ଦେଶକୁ ଫେରିଆସିବି । ସ୍ୱଭାବ ମୋର ଘରପଶା । ଏତେ ଦୂର ଦେଶରେ ବନ୍ଧୁବାନ୍ଧବହୀନ ଅବସ୍ଥାରେ, ଅର୍ଥର ଅସ୍ୱଚ୍ଛଳତା ଭିତରେ, ଅସହ୍ୟ ଜଳବାୟୁ ସଙ୍ଗେ ଯୁଦ୍ଧକରି ମୁଁ କାହିଁକି ରହନ୍ତି ? ଖାଲି ଲୋକେ କ'ଣ କହିବେ, ଏହି ଭୟରେ ମୁଁ ରହିବାକୁ ନିଜକୁ ବାଧ୍ୟ କଲି ମାତ୍ର । ଏକବର୍ଷ ପୂରାହେଲା ପରେ, ମେଘଦୂତର ଯକ୍ଷ-ପତ୍ନୀ ଯେପରି ଦିନ ଗଣୁଥିଲା, ମୁଁ ସେହିପରି କେବେ ଦେଶକୁ ଫେରିବି ତା'ର ମାସ ଗଣିବାକୁ ଲାଗିଲି । ପିଏଚ.ଡି. କୋର୍ସ ପ୍ରାୟ ତିନି ବର୍ଷରେ ସାରିବାର କଥା, ମୁଁ କିନ୍ତୁ ଦିନରାତି ଲାଗି ଦୁଇ ବର୍ଷରେ ଖତମ୍ କରିବାକୁ ଚେଷ୍ଟାକଲି । ମୋର ପ୍ରଫେସର ବାସ୍ତବିକ କହିଲେ, ''ଆମ ପିଲେ ସାଧାରଣତଃ ପିଏଚ.ଡି. ଥେସିସ୍ ତିଆରି କରିବା ପାଇଁ ପ୍ରାୟ ତିନି ବର୍ଷ ନିଅନ୍ତି । ତମେ ଯେ ଦୁଇବର୍ଷରେ ଶେଷ କରି ପାରିଲ, ଏହା ତମର ବାହାଦୁରୀ ।'' ନିଜର ବୁଦ୍ଧି ବିଦ୍ୟାର ତାରିଫ୍ ମୁଁ କେବେହେଲେ କରିପାରିନାହିଁ – ଯାହା କିଛି ହୋଇଛି, ତାହା ମାଟିର ଆକର୍ଷଣ ଯୋଗୁଁ ।

ମୁଁ କୌଣସି ନିର୍ଦ୍ଦିଷ୍ଟ ଡିଗ୍ରୀ ପାଇବା ପାଇଁ ଇଂଲଣ୍ଡ ଯାଇନଥିଲି । ବିଶ୍ୱବିଦ୍ୟାଳୟର ଡିଗ୍ରୀ ମୋ' ଜୀବନର ଦୁଃଖର ସ୍ମାରକ । ତେଣୁ ମୁଁ ମନେ ମନେ ସେଗୁଡ଼ିକୁ ଘୃଣା କରେ ଏବଂ ଏକାନ୍ତ ବାଧ୍ୟ ନ ହେଲେ, ଏହି ବିଚିତ୍ର ବର୍ଣ୍ଣମାଳା ନାମ ପଛରେ

* ଦ୍ୱିତୀୟ ମହାଯୁଦ୍ଧ ଭିତରେ ଓ ପରେ ଇଂଲାଣ୍ଡ ଓ ଭାରତବର୍ଷ ଉଭୟତ୍ର ଶ୍ରମିକମାନଙ୍କର ମଜୁରି ଅପ୍ରତ୍ୟାଶିତ ଭାବରେ ବଢ଼ିଯାଇଛି ।

ଯୋଡ଼େ ନାହିଁ । (ଇଂରେଜମାନେ ସାଧାରଣତଃ ସେମାନଙ୍କ ନାମ ପଛରେ ବିଶ୍ୱବିଦ୍ୟାଳୟ ଦତ୍ତ ବର୍ଣ୍ଣମାଳା ବ୍ୟବହାର କରନ୍ତି ନାହିଁ, ଯେପରି ଭାରତୀୟମାନେ ବ୍ୟବହାର କରନ୍ତି, ଯାହା ସୂଚାଏ ଯେ ଆମମାନଙ୍କର ଅନ୍ୟ ପୌରୁଷର ଅଭାବ– ନ ହେଲେ କେବଳ ଡିଗ୍ରୀ ଜୋର୍‌ରେ ଆମର ତରୁଣପୁଙ୍ଗବମାନେ କାମିନୀ ଓ କାଞ୍ଚନ ଦାବି କରନ୍ତେ କିପରି ?) ମୋର ଇଂଲାଣ୍ଡ ଯିବାର ପ୍ରଧାନ କାରଣ ହେଉଛି, ଇଂଲାଣ୍ଡ ଓ ଇଉରୋପ ଦେଖିଆସିବା, ଡିଗ୍ରୀ ଲାଭ ଗୌଣ ଉଦ୍ଦେଶ୍ୟ । ପିଲାଦିନରୁ ମୁଁ ଭ୍ରମଣକାହାଣୀର ଅତ୍ୟନ୍ତ ଭକ୍ତ । ଓଡ଼ିଆ, ବଙ୍ଗଳା, ଇଂରାଜୀରେ ଭ୍ରମଣ ବୃତ୍ତାନ୍ତ ଆଖିରେ ପଡ଼ିଲେଇ ମୁଁ ପଢ଼ିବି– ପଢ଼ିବି । ଏବେ ବି ପଢ଼େ । ଏସବୁ ପଢ଼ି ପଢ଼ି ଏ ଯୁଗର ମାନବିକ ସଭ୍ୟତାର ପୀଠସ୍ଥଳ ପଶ୍ଚିମଦେଶ ଥରେ ନିଜ ଆଖିରେ ଦେଖି ଆସିବାକୁ ବହୁକାଳରୁ ବାସନା ଥିଲା ।

ମୋର ବନ୍ଧୁ ଶ୍ରୀମାନ୍ ଦୁର୍ଗାମାଧବ ବେହୁରା (ବର୍ତ୍ତମାନ ଓଡ଼ିଶାର କୃଷି ବିଭାଗର ଆସିଷ୍ଟାଣ୍ଟ୍ ଡିରେକ୍‌ଟର) ଇତିମଧ୍ୟରେ ଇଂଲାଣ୍ଡ ଯିବାରୁ ମୋର ଅନ୍ତର୍ନିହିତ ବାସନା କ୍ରମେ ବାହାରକୁ ଆସିବାକୁ ଲାଗିଲା । ବେହୁରା ଯେତେବେଳେ ଇଂଲାଣ୍ଡରୁ ଲେଖିଲେ ଯେ, ସେଠି ଶସ୍ତାରେ ଏତିକି ଟଙ୍କା ଭିତରେ ଚଳିହେବ, କୌଣସିମତେ ଟଙ୍କା ଯୋଗାଡ଼ କରି ଚାଲି ଆସ; ମୁଁ ବିନା ବିଚାରରେ ଲମ୍ଫ ପ୍ରଦାନ କରିବାକୁ ବସିଲି ।

ପ୍ରକୃତରେ ଶସ୍ତାରେ ଚଳି ଆସିଲି; କିନ୍ତୁ ଅର୍ଥାଭାବ ଯୋଗୁଁ ବନ୍ଧୁ ବେହୁରାଙ୍କୁ ଅସୁବିଧାରେ ପକାଇବା ସଙ୍ଗେ ସଙ୍ଗେ ସେହି ବ୍ୟୟବହୁଳ ଦେଶରେ ମୁଁ ନିଜେ ଯେପରି ଅସୁବିଧାରେ ଚଳି ଆସିଛି, ତାହା ସ୍ମରଣ କଲେ, ଅନ୍ୟ କୌଣସି ତରୁଣ ମୋ' ପରି ଅବିମୃଶ୍ୟକାରୀ ନ ହେବା ପାଇଁ ବାରମ୍ବାର ସାବଧାନ କରାଇବି । ଅସୁବିଧା ଅପେକ୍ଷା ବଡ଼ ବିପଦ ଅସମ୍ମାନ । ଏଠି ଭାରତବର୍ଷରେ ତ ଦରିଦ୍ରର ସମାଜରେ ସ୍ଥାନ ନାହିଁ, ସେଠି ଇଂଲାଣ୍ଡରେ ଦାରିଦ୍ର୍ୟ ଲୋକକୁ କି ନିଷ୍ପୀଡ଼ିତ ମନୋବୃତ୍ତି ଦେଇପାରେ ସହଜରେ କଳ୍ପନେୟ । ଦେଶକୁ ଫେରିବାର ପାଞ୍ଚବର୍ଷ ଭିତରେ ଧାର ଉଧାର ଅଧିକାଂଶ ଭାବରେ ପରିଶୋଧ କରିଦେଲେ ମଧ୍ୟ ସେ ଦିନର ହାତପତେଇବାର କରୁଣ ଅଭିଜ୍ଞତା ମୋ' ମନରୁ ଯାଉନାହିଁ । ମୋ' ଦେଶର ତରୁଣମାନଙ୍କ ପ୍ରତି ମୋର ଏକ ଉପଦେଶ– ''ସ୍ୱର୍ଗଭୋଗ ପାଇଁ ମଧ୍ୟ ହାତ ପାତ ନାହିଁ । ନିଜ ପରିଶ୍ରମରେ ଅର୍ଜିତ ମାଟିର କୁଡ଼ିଆ, ଛିଣ୍ଡା ପଟି, ପଥର ବାସନ ହିଁ ତମର ସ୍ୱର୍ଗ ହେଉ ।'' ଦେଶରେ ପ୍ରତ୍ୟେକ ଯୁବକ ଯୁବତୀ ପ୍ରାଣରେ ଏହି ତୀବ୍ର ଆତ୍ମସମ୍ମାନ ଜାଗ୍ରତ ନ ହେଲା ଯାଏ ଆମର ଦୁଃଖର ଶେଷ ନାହିଁ ଓ ଆମର ହୃତଗୌରବ ଆମେ କେବେ ହେଲେ ଫେରିପାଇବାନାହିଁ ।

ପୂର୍ବରୁ କହିଛି, କେବଳ ଶସ୍ତା ପଡ଼ିବ ବୋଲି ଲଣ୍ଡନ-ବାସର କଳ୍ପନା

ପରିତ୍ୟାଗ କରି ଗଲି ଏଡିନ୍‌ବରା । ସେଠି ପ୍ରାୟ ରହିଥିଲି ମାସେ ଦେଢ଼ମାସ । କିନ୍ତୁ କ'ଣ ପଢ଼ିବି କିଛି ଠିକ୍ କରି ପାରୁ ନଥାଏ । ପ୍ରଥମେ ଭାବିଥିଲି ଏଡୁକେସନ୍ ଡିଗ୍ରୀ ନେବି; ଦିନେ ଦୁଇଦିନ ଟ୍ରେନିଂ କଲେଜକୁ ଗଲି ମଧ୍ୟ । ଅନେକ ଭାରତୀୟ ନୂଆ ନାମ ଲେଖାଉଥାନ୍ତି । ପରେ ଭାବିଲି, ମୁଁ ତ ଭାରତବର୍ଷରେ ଏଡୁକେସନ ଡିଗ୍ରୀ ନେଇଛି – ଏଠି ପୁଣି ଚର୍ବିତ ଚର୍ବଣ କରିବି ନା କ'ଣ ? କ'ଣ ଗୋଟାଏ ଡିଗ୍ରୀ ପାଇଁ ମୋର ଆସିବା ? ତାକୁ ଛାଡ଼ି ଦିନାକେତେ ୟୁନିଭରସିଟିର ଏମ୍.ଏ. କ୍ଲାସରେ ଯାଇ ବସିଲି । ଏଡିନ୍‌ବରା ବିଶ୍ୱବିଦ୍ୟାଳୟରେ ଆଇ.ଏ., ବି.ଏ. କିଛି ନାହିଁ । ମାଟ୍ରିକ୍ୟୁଲେସନ ପାସ୍ କରି ସେଠି ପିଲେ ଏମ୍.ଏ. ପଢ଼ନ୍ତି । ସିଲାବସ୍ ଓ ଅଧ୍ୟାପନାର ରୀତି ଦେଖିଲେ ସ୍ପଷ୍ଟ ଜଣାପଡ଼ିବ ଯେ, ନାମ ସିନା ଏମ୍.ଏ. କାର୍ଯ୍ୟତଃ ତାହା ସାଧାରଣ ବି.ଏ. ଅନର୍ସ କୋର୍ସ ସଙ୍ଗେ ସମାନ, ଯଦିବା ଆମ ପାଟଣା, କଲିକତା ପ୍ରଭୃତିର ବି.ଏ. ସ୍ତର ଅପେକ୍ଷା ତା'ର ସ୍ତର ଯଥେଷ୍ଟ ଉଚ୍ଚ ଯିବ ନିଶ୍ଚୟ ।

ଦିନାକେତେ ସେ କ୍ଲାସରେ ବସିଲି । କିନ୍ତୁ ଦେଖିଲି ମୋର ଚାରିପାଖେ ସଦ୍ୟ ମାଟ୍ରିକ ପାସ୍‌କରା ଶ୍ୱେତାଙ୍ଗ ଟୋକା ଟୋକୀ । ପାଠ ବି ମୋର ପରିଚିତ । ମନରେ ଏକ ପ୍ରତିକ୍ରିୟା ଆସିଲା । ଭାବିଲି, ମୁଁ ଭାରତବର୍ଷରେ ଏଇମିତି ଟୋକାଙ୍କୁ ପଢ଼େଇ ଆସିଛି । ଏ ପାଠ ସମ୍ବନ୍ଧରେ ବି ମୁଁ ତ ଏକାବେଳକେ ଅଜ୍ଞ ନୁହେଁ, ମୁଁ ମୋର ଛାତ୍ର ବୟସର ପିଲାଙ୍କ ସାଥିରେ ଚର୍ବିତ ଚର୍ବଣ କରିବି ଛାର ଡିଗ୍ରୀଟାଏ ପାଇଁ ? ଫିସ୍ ବି ପ୍ରଚୁର । ଯାହା ପାଣ୍ଠି ଥାଏ ସେତକ ଛାଡ଼ିବାକୁ ମୁଁ ନାରାଜ, କାଳେ କ'ଣ ହେବ ଭାବି । ଫିସ୍ ଦେବାକୁ ଆଉ ଦିନେ ନା ଦି'ଦିନ ଥାଏ, ସେ ପନ୍ଥା ତ୍ୟାଗ କଲି ।

ଏଇ ସମୟରେ ସେଠାରେ ବିଜ୍ଞାନ କଲେଜର କେମିଷ୍ଟ୍ରୀ ଅଧ୍ୟାପକ ଡକ୍‌ଟର ଲଡ଼ଲାମ୍‌ଙ୍କ ସଙ୍ଗେ ପରିଚୟ ହୁଏ । ତାଙ୍କର କଥା ପତ୍ରାବଳିରେ କୁହାହୋଇଛି । କଥା ପ୍ରସଙ୍ଗରେ ମୋର ସାମ୍ପ୍ରତିକ ଅସୁବିଧା ସବୁ ତାଙ୍କୁ ଜଣେଇବାରୁ ସେ କହିଲେ, ''ତମେ ତ ଭାରତବର୍ଷରେ ଏମ୍.ଏ. ପାସ୍ କରିଛ, ଏଠି ପୁଣି ଏମ୍.ଏ. ବା ଅନ୍ୟ ଡିଗ୍ରୀପାଇଁ ପଢ଼ିବାର କି ଦରକାର ଅଛି ? ଏମ୍.ଏ.ଠାରୁ ଉଚ୍ଚତର ଡିଗ୍ରୀ ପିଏଚ୍.ଡ଼ି. ପାଇଁ ଚେଷ୍ଟାକରୁନାହଁ ।'' ସେ ଯାଏ ପି.ଏଚ୍.ଡ଼ି. କ'ଣ ମୁଁ ଜାଣିନଥିଲି । ସେ ବୁଝେଇଦେବାରୁ ମୁଁ ପୁଣି ପ୍ରଶ୍ନ କଲି, ''ମୁଁ କି ବିଷୟରେ ରିସର୍ଚ୍ଚ କରିପାରେ ? ମତେ ତ କିଛି ବିଷୟ ଆଖିକି ଦିଶୁନାହିଁ ।'' ସେ କହିଲେ, ''ତମେ ସଂସ୍କୃତ ଜାଣ ?'' ମୁଁ ହଁ କରିବାରୁ ସେ କହିଲେ, ''ଜଣେ ସଂସ୍କୃତ କବି ସଙ୍ଗେ ଜଣେ ଇଂରେଜ କବି ବା ସଂସ୍କୃତ ନାଟକ କିମ୍ବା ଉପନ୍ୟାସ ସଙ୍ଗେ ଇଂରେଜୀ ଉପନ୍ୟାସ ବା ନାଟକର ତୁଳନା କରି ଥେସିସ୍ ଲେଖିପାର ।'' କଥାଟା ମନକୁ ପ୍ରକୃତରେ

ଘେନିଲା । ଭାବିଲି ଡିଗ୍ରୀ ତ ସମସ୍ତେ ପାଉଛନ୍ତି, ମୁଁ ଯଦି ଏଠି ଦୁଇବର୍ଷ ଦୁଃଖରେ କଟାଇ କିଛି ରିସର୍ଚ୍ଚ କରିପାରେ, ତାହା ନାମ ପଛରେ ଦୁଇଟି ବର୍ଣ୍ଣଯୋଜନା କରିବା ଅପେକ୍ଷା ନିଶ୍ଚୟ ବଡ଼ କାମ ହେବ । ଡକ୍‌ଟର ଲଡ଼୍‌ଲାମ୍ ସେଇଠି ଗୋଟିଏ ଦରଖାସ୍ତ ଲେଖିଦେଲେ ଏଡିନ୍‌ବରା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କୁ, ମତେ ରିସର୍ଚ୍ଚ ଛାତ୍ର ଭାବରେ ଗ୍ରହଣ କରିବାକୁ । କିନ୍ତୁ ସେତେବେଳକୁ ସେଠି ସମୟ ଚାଲିଯାଇଥିଲା । ନିକଟତମ ବିଶ୍ୱବିଦ୍ୟାଳୟ ଡରହାମ୍‌କୁ ଲେଖିଲି ଓ ତାର କଲି । ଡରହାମ୍‌ରେ ବନ୍ଧୁ ଶ୍ରୀ ବେହୁରା ପଢୁଥାନ୍ତି । ସେ ବି ଏକ ଆକର୍ଷଣ । ଭାଗ୍ୟକୁ ଉତ୍ତର ଆସିଲା ଆଶାପ୍ରଦ । ଏଡିନ୍‌ବରା ଛାଡ଼ି ଚାଲିଲି ନିଉକାସଲ୍– ଡିଗ୍ରୀର କୋଇଲା ବୋହିବାକୁ ।

ଦେଶକୁ ଫେରିଲି ଡିଗ୍ରୀ ଧରି । ଭାରତବର୍ଷର ବଜାରରେ ବିଲାତି ଡିଗ୍ରୀ ଲୋକଙ୍କୁ ଯେ ସୁବିଧା ଓ ସମ୍ପଦ ଦିଏ, ତାହା ଲାଭ କରିବା ମୋ' ପକ୍ଷରେ ଅବଶ୍ୟ ସହଜସାଧ୍ୟ ହୋଇନାହିଁ । ଯା'ର ଜୀବନରେ ସବୁ କିଛି କଷ୍ଟ-ସାଧ୍ୟ ଓ କଷ୍ଟ-ଲବ୍‌ଧ, ଏଠି ବା ସେ ନିୟମର ବ୍ୟତିକ୍ରମ ହୁଅନ୍ତା କିପରି ? ସେଥିପାଇଁ ଦୁଃଖ ନାହିଁ । ମୋ' ଦେଶରେ, ମୋ' ନିଜ ଗ୍ରାମରେ ବି ଲୋକେ ଅନାହାରରେ, ନିର୍ବସ୍ତ୍ର, ନିର୍ବାସ, ରୁଗ୍‌ଣ, ଋଣୀ ହୋଇ କାଳ କାଟିବାର ମୁଁ ଆଖି ଆଗରେ ଦେଖୁଛି । ମୁଁ ତାଙ୍କରି ପରି ଜଣେ ହେଲେ ବିଧାତାର କେଉଁ ନିୟମଟା ଭାଙ୍ଗିଗଲା ବୋଲିବାକୁ ହେବ ? ଗଲି, ଦେଶ ଦେଖିଲି, ଆସିଲି – ଏହି ଅଭିଜ୍ଞତା ଏକ ମହତ୍ ସମ୍ପଦ, ଯଦି ମୁଁ ସେହି ଅଭିଜ୍ଞତା ଅନୁସାରେ ନିଜକୁ ଗଢ଼ିପାରିଥାଏ । ଅନ୍ୟ ପକ୍ଷରେ ଏଇ ଭ୍ରମଣ-କାହାଣୀ ଯଦି ମୋର ଦେଶବାସୀଙ୍କି ଆନନ୍ଦ ଦେଇପାରେ ତେବେ ବି ମୋର ସକଳ ଦୁଃଖକୁ ସାର୍ଥକ ମନେକରିବି ।

ନିଉକାସ୍‌ଲରେ ଅନେକ ମାସ ହୋଟେଲ୍‌ରେ, କିଛିକାଳ ନିଜ ହାତରେ ରୋଷେଇ କରି, କିଛି କାଳ ବେହୁରାଙ୍କ ସାଙ୍ଗରେ, କିଛିକାଳ ଏକାକୀ, ଏଇପରି ଭାବରେ ପ୍ରାୟ ଏକବର୍ଷ ଦଶମାସ କଟାଇଲି । ମୋ'ପରି ଆଉରି ଅନେକ ଭାରତୀୟ ଛାତ୍ର ସେଠି ଥା'ନ୍ତି । ଆମମାନଙ୍କର ଗୋଟିଏ 'ଭାରତୀୟ ଛାତ୍ର ସଂଘ' ବି ଥାଏ । ମୁଁ ଫେରିଲା ବର୍ଷ ତା'ର ସେକ୍ରେଟାରୀ ଥିଲି । କିନ୍ତୁ ଦୁଃଖର ବିଷୟ, ଭାରତୀୟମାନେ ବିଲାତରେ ବି ନିଜ ସ୍ୱଭାବ ଛାଡ଼ନ୍ତି ନାହିଁ– ପରସ୍ପର ଭିତରେ ଈର୍ଷା, ଚୁଗୁଲି । ସାମ୍ପ୍ରଦାୟିକତାର କୌଣସି ଅଭାବ ସେଠି ନ ଥାଏ । କେମ୍ବ୍ରିଜରେ ମୁଁ ଓଡ଼ିଶୀ କଳା ବିଷୟରେ କିଛି କହିବା ପରେ, ଭାରତୀୟ ଛାତ୍ରମାନଙ୍କ ଭିତରେ ମୋ' ଆଖିଆଗରେ ଏକ ହିନ୍ଦୁ ମୁସଲମାନ ବିବାଦ ଘଟିଗଲା ।

ଅର୍ଥାଭାବ ବଶତଃ ଯେତେ ଜାଗା ବୁଲିବା ମୋର ଇଚ୍ଛା ଥିଲା, ତା' ବୁଲି ପାରିଲି ନାହିଁ । ଥରେ ଯାଇଁଥିଲି ଗ୍ଲାସଗୋ, ସେଠି ହେଉଥିବା 'ସାମ୍ରାଜ୍ୟ ପ୍ରଦର୍ଶନୀ'

ଦେଖିବାକୁ । ଦେଖିଲି ବହ୍ୱାଡ଼ମ୍ବରେ ଲଘୁକ୍ରିୟା । ଥରେ ଗଲି ସେକ୍ସପିଅରଙ୍କ ଜନ୍ମ ସ୍ଥାନ ଷ୍ଟାଟ୍‌ଫୋର୍ଡ଼ରେ ତାଙ୍କର ନାଟକମାନଙ୍କର ଅଭିନୟ ଦେଖିବାକୁ । ଯାହା ଦେଖିଲି ସେଥିରେ ଶ୍ରମ ସାର୍ଥକ ହେଲା ।

ମୋର ଭାରି ଇଚ୍ଛା ଥିଲା ଇଂଲାଣ୍ଡର କୌଣସି କୃଷକ ପରିବାରରେ ରହି ମାସେ ବା ଦୁଇମାସ କୃଷି କାର୍ଯ୍ୟ କରିବାକୁ: କିନ୍ତୁ ତା' ସମ୍ଭବ ହେଲାନାହିଁ । କାରଣ ପ୍ରଥମ ଗ୍ରୀଷ୍ମାବକାଶରେ ମୁଁ ଗଲି ସେକ୍ସପିୟରଙ୍କ ଜନ୍ମସ୍ଥାନକୁ । ଦ୍ୱିତୀୟ ଗ୍ରୀଷ୍ମାବକାଶ ବେଳକୁ ଏକପ୍ରକାର ଗଣ୍ଠିରା ବାନ୍ଧିଲିଣି । କିନ୍ତୁ ମୁଁ ଇଂରେଜ କୃଷକ ପରିବାର ସଙ୍ଗେ ଦିନ କଟେଇ ଆସିଛି । ଏ ସମ୍ବନ୍ଧରେ ଓ ମୋର ଷ୍ଟ୍ରାଟ୍‌ଫୋର୍ଡ଼ ଅଭିଜ୍ଞତା ନେଇ ମୁଁ ପ୍ରସିଦ୍ଧ ଇଂରାଜୀ ମାସିକ ପତ୍ର 'ମଡ଼ର୍ଣ୍ଣ ରିଭ୍ୟୁ'ରେ ଦୁଇଟି ଲେଖା ଲେଖିଥିଲି ।

ନିଉକାସ୍‌ଲର କଳା ବିଦ୍ୟାଳୟରେ ଜଣେ ମହିଳା ଅଧ୍ୟାପିକା ଅଛନ୍ତି – ତାଙ୍କର ନାମ ମିସେସ୍ ଡାଏନା ଲାଲ । ସେ ଜଣେ ପଞ୍ଜାବୀ ବାରିଷ୍ଟରଙ୍କୁ ତରୁଣ ବୟସରେ ବିବାହ କରି ଭାରତବର୍ଷରେ ଅନେକ ଦିନ ଥିଲେ । ପରେ ସ୍ୱାମୀ ମରିଯିବାରୁ ଦେଶକୁ ଫେରି ଚାକିରି କରି ଜୀବିକାର୍ଜନ କରିବାକୁ ଲାଗିଲେ । ତାଙ୍କର ବୈବାହିକ ଜୀବନ ଅତ୍ୟନ୍ତ ସୁଖମୟ ହୋଇଥିଲା ବୋଲି ସେ ମତେ କହିଥାନ୍ତି ଏବଂ ଭାରତର କଳା, ସଂସ୍କୃତି ଓ ଜୀବନଯାପନ ପ୍ରତି ତାଙ୍କର ଶ୍ରଦ୍ଧା ଏକାବେଳକେ ଅକୃତ୍ରିମ । ଅନେକ ସମୟରେ ତାଙ୍କ ସଙ୍ଗେ ଭାରତୀୟ କଳା ସମ୍ବନ୍ଧରେ ଆଳାପ ହୁଏ; କିନ୍ତୁ ଦେଖିଲି ଓଡ଼ିଶା, ଯାହା କି ହିନ୍ଦୁ କଳାର ଶ୍ରେଷ୍ଠ ପୀଠ, ତା' ସମ୍ବନ୍ଧରେ ସେ କିଛି ଜାଣନ୍ତି ନାହିଁ । ମତେ ଏ କଥା ସହ୍ୟ ହେଲାନାହିଁ । ମୁଁ ବାରମ୍ବାର ତାଙ୍କୁ ଓଡ଼ିଶାର କଳା, ସ୍ଥାପତ୍ୟ ବିଷୟରେ କହିବାରୁ ସେ ଦିନେ କହିଲେ, ''ତମେ ଏ ବିଷୟରେ ଗୋଟିଏ ଟକ୍ (ଭାଷଣ) ଦିଅ । ତମେ କ'ଣ ଚାହଁ କହିଲେ ଆମେ ତା'ର ସବୁ ବନ୍ଦୋବସ୍ତ କରିଦେବୁ ?'' ମୁଁ କେତେକ ବହିର ନାମ ଦେଲି, ସେ ବହି ସବୁ ଲଣ୍ଡନରୁ ମଗାଇ ଅଣାଗଲା । ସେ ସବୁ ବହିରୁ ବାଛି ବାଛି ଓଡ଼ିଶା କଳାର ଛବିତକର ସ୍ଲାଇଡ଼୍ କରିବାକୁ କହିଲି, ତା' ବି ସେ କଲେଜ୍ ଟଙ୍କାରେ କରେଇନେଲେ । ତା' ପରେ ସେ ସ୍ଲାଇଡ଼ ସାହାଯ୍ୟରେ ମୁଁ ଓଡ଼ିଶାର ମନ୍ଦିର ଓ ମୂର୍ତ୍ତିମାନଙ୍କ ବିଷୟରେ ଯାହା ଜାଣିଥିଲି ବା ପଢ଼ିଥିଲି, ତାକୁଇ ସମ୍ବଳ କରି ଗୋଟିଏ ଭାଷଣ ଦେଲି । ଏଇ ଭାଷଣ ପରେ ଆଉରି ଅନେକ ଜାଗାରୁ ନିମନ୍ତ୍ରଣ ଆସିଲା, ସେଇ ବକ୍ତୃତା ଦେବାକୁ । ନିଉକାସ୍‌ଲରେ ଥିଲାବେଳେ ବହୁ ଜାଗାରୁ ଲୋକେ ମତେ ଡାକିନେଉଥିଲେ ଗାନ୍ଧିଙ୍କ ବିଷୟରେ କିଛି ଶୁଣେଇବାକୁ । ଯୁଦ୍ଧ ପରେ ଯେ ଇଂଲାଣ୍ଡର ଜନସାଧାରଣ ଚର୍ଚ୍ଚିଲ୍ ଦଳକୁ ତଡ଼ି ଶ୍ରମିକମାନଙ୍କୁ ଶାସନ-ପୀଠରେ ଥୋଇଲେ, ତା'ର ସୂଚନା ମୁଁ ସେଇଠି ଥିଲାବେଳେ

ବରାବର ପାଉଥିଲି – କାରଣ ଭାରତବର୍ଷ ଓ ପତିତ ଦଳିତ ଜାତିମାନଙ୍କ ପାଇଁ ସହାନୁଭୂତି ଇଂଲାଣ୍ଡର ଚାରିଆଡ଼େ ଦେଖିବାକୁ ମିଳୁଥିଲା ।

ଫେରିବା ବାଟରେ ମତେ କେମ୍ବ୍ରିଜ ଆସିବାକୁଇ ପଡ଼ିଲା – କାରଣ ସେ ବିଶ୍ୱବିଦ୍ୟାଳୟର ଜଣେ ଅଧ୍ୟାପକ ମୋର ଥେସିସ୍‌ର ପରୀକ୍ଷକ । ତାଙ୍କ ସାକ୍ଷାତରେ ବାଚନିକ ପରୀକ୍ଷା ହେବାର ନିୟମ । ପରୀକ୍ଷାର ଫଳ ନ ଜାଣି ମଧ୍ୟ, ମୁଁ ନିଉକାସଲ୍ ଛାଡ଼ିଥାଏ ଘରମୁହାଁ ହୋଇ– ଫେଲ୍, ପାସ୍ ଯାହା ହେଉ, ମୁଁ ଦେଶକୁ ଫେରିବି । ପରୀକ୍ଷକଙ୍କ ନିକଟକୁ ଗଲାବେଳକୁ ଛାତି ଧଡ୍‌ପଡ୍ ହେଉଥାଏ; କିନ୍ତୁ ମୋର ପରୀକ୍ଷକ ଡକ୍ଟର ଟମାସ୍ ମତେ ଦେଖି ପରୀକ୍ଷା କରିବା ଦୂରେ ଥାଉ, ମୋ' ସଙ୍ଗେ ଭାରତୀୟ ବିଷୟର ବାଜେ ଚର୍ଚ୍ଚା କରିବାକୁ ଲାଗିଲେ । କଥାବାର୍ତ୍ତା ଭିତରେ ଖାଲି ଜଣେଇଦେଲେ ଯେ 'ଅନ୍ୟ ପରୀକ୍ଷକଙ୍କ ସହିତ ମୁଁ ଏକମତ ହୋଇସାରିଛି ଯେ ତମର ଥେସିସ୍ ପିଏଇଚ.ଡି.ର ସଂପୂର୍ଣ୍ଣ ଉପଯୁକ୍ତ ।' ତା'ପରେ ସେଠୁ ଫେରି ସେଇ କେମ୍ବ୍ରିଜରୁ ଘରକୁ ସାଫଲ୍ୟ ସୂଚକ ଏକ କେବଲ ପଠାଇ ଆନନ୍ଦ ଚିତ୍ତରେ ଲେଉଟା ବାଟରେ ଅଗ୍ରସର ହେଲି । ଆସିଲି ଅକ୍‌ସଫୋର୍ଡ଼, ପୁଣି ଲଣ୍ଡନ । ଘୂରି ଘୂରି ବହୁତ ଦେଖିଲି । ହୁଏତ ଅନେକ କିଛି ଯାହା ଦେଖିବାର କଥା, ତାହା ଦେଖି ପାରିଲି ନାହିଁ; କିନ୍ତୁ ଚିନ୍ତା ନାହିଁ । ମୋର ପାଣ୍ଠି ଅନୁସାରେ ମୁଁ ଯାହା କରିବାର କଥା ତା' କରିଛି ଭାବି ନିର୍ବିକାର ଥାଏ ।

ଲଣ୍ଡନ୍‌ର ପ୍ରସିଦ୍ଧ ହାଇଡ୍‌ପାର୍କର କଣମାନଙ୍କରେ ପେସାଦାରୀ ରାଜନୈତିକ ବକ୍ତାମାନଙ୍କର ବକ୍ତୃତା ଶୁଣିବାର କଥା ନୁହେଁ, ଦେଖିବାର କଥା । ଏମାନେ ନିଜେ ନିଜେ ଟୁଲ୍ ବୋହିଆଣି ତା'ପରେ ଠିଆହୋଇ ତଣ୍ଟି ପଡ଼ିଲାଯାଏଁ ବକ୍ତୃତା କରୁଥାନ୍ତି । ଜଣେ ଏଠି, ଦଶହାତ ଦୂରରେ ଆଉ ଜଣେ । ତା' ପାଖକୁ ଆଉ ଜଣେ । ସମସ୍ତଙ୍କର ବାକ୍ୟସ୍ରୋତ ଅନର୍ଗଳ ଚାଲିଛି । ହୁଏତ ଜଣେ ଏଠି ଯାହା କହୁଛି, ତା' ପାଖ ଜଣକ ଠିକ୍ ତା'ର ଓଲଟା କହୁଛି । ଶ୍ରୋତାର ଦଳ ଆସୁଛନ୍ତି, ଏଠି କିଛି ସମୟ ସେଠି କିଛି ସମୟ ଶୁଣି ଶୁଣି ଚାଲି ଯାଉଛନ୍ତି । ଶ୍ରୋତା କେହି ନଥିଲେ ବି ବକ୍ତୃତା ଶୂନ୍ୟେ ଶୂନ୍ୟେ ଚାଲିଥାଏ; କିନ୍ତୁ ବରାବର ଡିସିପ୍ଲିନ୍‌ର ବାୟୁମଣ୍ଡଳ । ଆମେ ଯେଉଁ କଥାଟା ପସନ୍ଦକରୁ ତା'ର ବିରୋଧ କଥାଟା ଟେକା ପଥର ଫିଙ୍ଗି କୁହାଇ ନ ଦେବାର ଚେଷ୍ଟା ଆଦୌ ନାହିଁ । ପ୍ରତ୍ୟେକ ଲୋକର ଏଠି ନିଜର ମତ ବ୍ୟକ୍ତ କରିବାର ପୂରା ଅଧିକାର । ନିତାନ୍ତ ଅଶ୍ଳୀଳ ଓ ଅନୈତିକ ନ ହେଲେ ପୋଲିସ ବା କର୍ତ୍ତୃପକ୍ଷ କୌଣସି ମତବାଦକୁ ପଚାରିଯିବେନାହିଁ – ଲୋକେ ଗ୍ରହଣ କଲେ କଲେ, ନ ହେଲେ ନାଇଁ । ସାର ଓ୍ୱାଜ୍‌ଓ୍ୱାଲଡ଼ ମସ୍‌ଲେ ବ୍ରିଟିଶ ଫାସିଷ୍ଟ ନେତା । ସେ ବକ୍ତୃତା ଦେଲାବେଳେ ଲୋକେ ଟେକା ପଥର ଫୋପାଡ଼ିଥିବାରୁ ଦେଶସାରା ଚହଲପଡ଼ିଯାଇଥିଲା; ଖବରକାଗଜମାନେ

ତୀବ୍ର ପ୍ରତିବାଦ କରିଥିଲେ । ଇଂଲଣ୍ଡ ବ୍ୟକ୍ତିଗତ ସ୍ୱାଧୀନତାର ଲୀଳାଭୂମି ।

ଡୋଭର୍ ପ୍ରଣାଳୀ ପାରିହୋଇ ପାରିସ୍‌ରେ ରାତିରେ ପହଞ୍ଚିଲି । ଜଣେ ପୋଲ୍-ବନ୍ଧୁଙ୍କ ଚିଠି ପାଇ ଦୁଇଜଣ ପୋଲ୍ ଭଦ୍ରଲୋକ ଷ୍ଟେସନକୁ ମତେ ଭେଟିବାକୁ ଆସିଥିଲେ ଓ ମୋର ରହିବାର ବନ୍ଦୋବସ୍ତ କରିଦେଇଗଲେ ଏବଂ ପାରିସ୍‌ରେ ଥିଲାତକ ମତେ ଖୁବ୍ ସାହାଯ୍ୟ କରିଥିଲେ । ଏ ଦୁହେଁ ଇଂରେଜୀ ଜାଣନ୍ତି; କିନ୍ତୁ ଗୋଟିଏ ପ୍ରଣାଳୀର ବ୍ୟବଧାନ ଥିଲେହେଁ ଫ୍ରାନ୍‌ସରେ ଇଂରେଜୀ ଜାଣିବା ଲୋକ ଗୋଟିଏ ଖୋଜି ପାଇବା ସହଜ ନୁହେଁ । ଅଥଚ ଇଂଲାଣ୍ଡରୁ ସାତହଜାର ମାଇଲ ଦୂରରେ ବିରାଟ ଭାରତବର୍ଷର ସହସ୍ର ସହସ୍ର ବାଳକ ବାଳିକା ଇଂରାଜୀ ନ ଶିଖିଲେ ସଭ୍ୟ ବୋଲି ଗଣା ହେବେନି ବୋଲି ଭୟ । ମୁଁ ଯେଉଁ ହୋଟେଲରେ ଥିଲି, ତା'ର ଲାଣ୍ଡଲେଡ଼ି ସଙ୍ଗେ କେବଳ ଠରାଠରିରେ ଭାବ ବିନିମୟ କଲି ।

ପାରିସ୍‌ରେ ତିନି ଦିନ ଥିଲି । ଆପେ ଆପେ ଘୂରାଘୂରି କରି ଯାହା କିଛି ଦେଖିଲି । ଲଣ୍ଡନ ଅପେକ୍ଷା ପାରିସ୍ ସୁନ୍ଦର ସହର– ଢେର୍ ସୁନ୍ଦର । ଖୁବ୍ ଚଉଡ଼ା ରାସ୍ତା, ରାସ୍ତାର ଦୁଇକଡ଼ରେ ବଗିଚା । ଲୋକେ ବି ଇଂରେଜମାନଙ୍କ ଅପେକ୍ଷା– ବିଶେଷତଃ ସ୍ତ୍ରୀ ଲୋକେ, ଅଧିକ ଲାଳିତ୍ୟଭରା । ପାରିର ପୃଥିବୀ ବିଖ୍ୟାତ ରାସ୍ତା ଶାଁସ ଏଲୀଜେର ମୁଣ୍ଡରେ ବିରାଟ ବିଜୟ-ତୋରଣ । ତା' ତଳେ ଫରାସୀ ଜାତିର ଶାଶ୍ୱତ ସ୍ୱାଧୀନତାର ପ୍ରତୀକ ରୂପେ ଅଲିଭା ଅଗ୍ନି ଜଳୁଚି । ପାଖରେ ପ୍ରଥମ ମହାଯୁଦ୍ଧରେ ମୃତ ଅଜ୍ଞାତ ସୈନିକର ସମାଧି, ଯେଉଁଠି କେହି ନା କେହି ପ୍ରତ୍ୟହ ସଜ ଫୁଲର ଉପହାର ଥୋଇ ଯାଉଛି; କିନ୍ତୁ ଦ୍ୱିତୀୟ ବିଶ୍ୱ-ଯୁଦ୍ଧରେ ହିଟଲର ପଦତଳେ ଫରାସୀ ଜାତିର ଆତ୍ମସମର୍ପଣ ସଙ୍ଗେ ଏସବୁ ବାହ୍ୟାଡ଼ମ୍ବର ଅର୍ଥହୀନ ହୋଇଉଠୁଛି । ପୋଲ୍ ବନ୍ଧୁଙ୍କ ସଙ୍ଗେ ମୁଁ ଦିନେ ପାରିସ୍‌ର 'ଲାଟିନ୍-କ୍ୱାଟର'– ଯେଉଁ ଅଞ୍ଚଳରେ ଶିଳ୍ପୀ ଓ କବିମାନେ ସେମାନଙ୍କର ସାଧନାରେ ଲାଗିଥିବାର ମୁଁ ପଢ଼ିଥିଲି, ସେଠାକୁ ବୁଲିବାକୁ ଗଲି । କୌଣସି ଆର୍ଟିଷ୍ଟକୁ ଭେଟିଲି ନାହିଁ; କିନ୍ତୁ ସେତେବେଳେ ବିଶ୍ୱବିଦ୍ୟାଳୟର ପରୀକ୍ଷା ଶେଷହୋଇଥାଏ । ରାସ୍ତାରେ ଦଳ ଦଳ ଛାତ୍ର ବୁଲୁଥାନ୍ତି । ସେମାନେ ଗ୍ରାମାଗତ ପଲ୍ଲୀବାଳିକାମାନଙ୍କ ପ୍ରତି ଯେପରି ବ୍ୟବହାର କରୁଥାନ୍ତି, ସେଥିରୁ ମୁଁ ଭାବୁଥାଏ ଏ ଜାତିର ମେରୁଦଣ୍ଡ ଟାଣ ଅଛି ନା ଜୀର୍ଣ୍ଣ ହେବାକୁ ବସିଲାଣି ।

ବିଶ୍ୱପ୍ରସିଦ୍ଧ ଲୁଭ୍ର ମ୍ୟୁଜିୟମ୍ ଓ ପାରିସ୍‌ରୁ କୋଡ଼ିଏ ମାଇଲ ଦୂରସ୍ଥ ବୋରବୋଁ ସମ୍ରାଟ୍‌ମାନଙ୍କର ବିଳାସ-ପ୍ରାସାଦ ଭେର୍ସାଇଲ ମଧ୍ୟ ଯାଇ ବାରମ୍ବାର ବୁଲି ଦେଖିଲି; କିନ୍ତୁ ପୁସ୍ତକଗତ ବର୍ଣ୍ଣନା ଓ ଛବିଠାରୁ ବାସ୍ତବଟା ନିକୃଷ୍ଟ ବୋଧହେଲା । ବିସ୍ମୟାଭିଭୂତ

ହେବାର ମୁଁ କିଛି ଦେଖିଲିନାହିଁ । ଲୁଭ୍ର ମ୍ୟୁଜିୟମ୍‌ରେ ଡା' ଭିନ୍‌ଚିଙ୍କର ସୁପ୍ରସିଦ୍ଧ ଛବି ମୋନାଲିସାର ମୌଳିକତା ଦେଖିବାକୁ ପାଇଲି: କିନ୍ତୁ ମନେହେଲା ମୌଳିକ ଅପେକ୍ଷା ତା'ର ପ୍ରିଣ୍ଟ୍‌ଗୁଡ଼ାକ ସୁନ୍ଦରତର ।

ପାରିସ୍‌ରୁ ଭେନିସ୍ ପର୍ଯ୍ୟନ୍ତ ଏକ ଥ୍ରୁଟ୍ରେନ୍ ଚାଲେ । ଏକ ଅପରାହ୍ନରେ ସେଇ ଟ୍ରେନ୍‌ରେ ଚଢ଼ିଲି । ଦିଲ୍ଲୀ ସେଣ୍ଟ୍ ଷ୍ଟିଫେନ୍‌ସ କଲେଜର ଇତିହାସ ଅଧ୍ୟାପକ ଡକ୍ଟର କ୍ୟୁରେଶୀ ବି ଦେଶକୁ ଫେରୁଥିଲେ । ସେ ମୋ' କୋଠରିରେ ଉଠିଲେ । ପରେ ପରିଚୟ ଓ ବନ୍ଧୁତା ହେଲା ।

ବାଟରେ ବିଶେଷ କିଛି ଘଟିନାହିଁ । କେବଳ ଗାଡ଼ି ସୁଇଜରଲାଣ୍ଡ ଦେଇ ଗଲାବେଳେ ଭୟଙ୍କର ଶୀତ ହେଲା– ଯଦିଓ ସେଟା ଗ୍ରୀଷ୍ମକାଳ । ବାଟରେ କୌଣସି ଜାଗାରେ କଷ୍ଟମ୍‌ସ କର୍ମଚାରୀମାନେ ଆମକୁ ନିଦରୁ ଉଠେଇଥିବାର ମନେପଡ଼େ । ଆମ୍ଭେମାନେ ତୃତୀୟ ଶ୍ରେଣୀରେ ଯାଉଥିଲୁଁ । ଇଂଲାଣ୍ଡର ତୃତୀୟଶ୍ରେଣୀ ଭାରତବର୍ଷର ପ୍ରଥମ ଶ୍ରେଣୀ ପରି । କଣ୍ଟିନେଣ୍ଟଲ, କିନ୍ତୁ ଅବସ୍ଥା ସେତେ ଭଲ ନୁହେଁ । ସେଠାରେ ତୃତୀୟ ଶ୍ରେଣୀ ଆମର ଇଣ୍ଟର ଶ୍ରେଣୀ ପରି ।

ତହିଁ ଆରଦିନ ସକାଳ ନ'ଟା ଦଶଟା ବେଳେ ଭେନିସ୍‌ରେ ପହଞ୍ଚିଲୁ । ଡକ୍ଟର କ୍ୟୁରେଶୀ ସାମାନ୍ୟ ଇଟାଲିୟାନ୍ ଜାଣନ୍ତି । ବହୁ କଷ୍ଟରେ ଏକ ହୋଟେଲ ମିଳିଲା – ସେଠି ଏକ ରାତ୍ରି ଯାପନ କଲୁଁ ।

ଭେନିସ୍ ହେଲା ବରୁଣ-ପୁରୀ । ବହୁ କ୍ଷୁଦ୍ର କ୍ଷୁଦ୍ର ଦ୍ୱୀପ ଉପରେ ସହରଟି ତିଆରି । ଏକ ଦ୍ୱୀପ ଓ ଅନ୍ୟ ଦ୍ୱୀପ ଭିତରେ ସାମୁଦ୍ରିକ ଜଳ । ଜଳର ଲହରୀ ଘରର ପାହାଚ ଉପରେ ଓ ବାତାୟନମାନଙ୍କର ଠିକ୍ ନିମ୍ନରେ ଭାଙ୍ଗିପଡୁଛି । ଆଡ୍ରିଆଟିକ୍ ଏକ ଜୁଆର-ହୀନ ଓ ଉତ୍ତାଳତରଙ୍ଗହୀନ ସାଗର । ଜଳ ସବୁବେଳେ ଶାନ୍ତ ଥିବାରୁ ଏ ପ୍ରକାର ନଗର ରଚନା ସମ୍ଭବ ହୋଇପାରିଛି । ଚିଲିକାରେ ବାର୍ଷିକ ବନ୍ୟା ନଥିଲେ ଓ ଜଳ ଶାନ୍ତ ଥିଲେ, ଆମ ପାରିକୁଦରେ ଏ ପ୍ରକାର ବସତି ଖୁବ୍ ସମ୍ଭବ ହୋଇପାରନ୍ତା । ବର୍ତ୍ତମାନ ମଧ୍ୟ ଆମ ଗାଁର ବାଡ଼ି ପଛଆଡ଼େ ଚିଲିକା ।

ମୋର ଧାରଣା ଥିଲା, ଭେନିସ୍ ସହରରେ ଆଦୌ ରାସ୍ତା ନାହିଁ – ରାସ୍ତା ପରିବର୍ତ୍ତରେ ଅଛି କେବଳ କେନାଲ; କିନ୍ତୁ ତା' ନୁହେଁ । ଏକ ଦ୍ୱୀପ ଓ ଅନ୍ୟ ଦ୍ୱୀପ, ଅର୍ଥାତ୍ ଏକ ନଗରାଂଶ ଓ ଅନ୍ୟ ନଗରାଂଶ ଭିତରେ ସମୁଦ୍ର-ନାଳୀ । ସେସବୁ ଉପରେ ପୋଲ ଅଛି । ଦୂର ସ୍ଥାନକୁ ଗଲେ ନୌକା ଦରକାର । ସେକ୍‌ସପିୟରଙ୍କ ପ୍ରସିଦ୍ଧ ନାଟକ 'ଭେନିସ୍-ବଣିକ'ରେ ଆମ୍ଭେମାନେ ରିଆଲଟୋର କଥା ପଢୁଁ– ଯେଉଁଠି ଆଣ୍ଟନିଓ ଓ ସାଇଲକ୍‌ର କଳି ହେଉଥାଏ, ତାହା ଏହିପରି

ଏକ ପୋଲ ମାତ୍ର– ଅପେକ୍ଷାକୃତ ବଡ଼ ଓ ପ୍ରଶସ୍ତ ।

ଭେନିସ୍‌ର ନୌକାଗୁଡ଼ିକୁ ଗଣ୍ଡୋଲା କୁହାଯାଏ । ପୃଥିବୀର ସର୍ବାଞ୍ଚଳର ବିଳାସୀମାନେ ଭେନିସ୍‌କୁ ଆସନ୍ତି ଏହି ଗଣ୍ଡୋଲାରେ ବସି ଜଳକ୍ରୀଡ଼ା କରିବାପାଇଁ । ମୁଁ ଓ ମୋର ବନ୍ଧୁ ହୋଟେଲରୁ ଏକ ଗଣ୍ଡୋଲାରେ ବସି ଜାହାଜ ଧରିବାକୁ ଗଲୁଁ । କୌଣସି ସ୍ୱର୍ଗସୁଖ ଅନୁଭବ କଲି ବୋଲି ମନେନାହିଁ; କିନ୍ତୁ ମୁଁ ଦେଖୁଥାଏ ଇଟାଲୀୟ କେଉଟମାନଙ୍କୁ । ସେମାନଙ୍କ ଚେହେରା, ଭାବଭଙ୍ଗୀ ସମସ୍ତଇ ଆମ ଚିଲିକା କେଉଟଙ୍କ କଥା ମତେ ମନେ ପକେଇ ଦେଉଥାଏ ।

ଭେନିସ୍‌ରେ ଦେଖିବାର କଥା ପ୍ରାଚ୍ୟରୀତିରେ ତିଆରି ସେଣ୍ଟ ମାର୍କ ଗିର୍ଜାଘର ଓ ତାହାର ପ୍ରାଙ୍ଗଣରେ ଚିର-କୂଜନରତ ଅସଂଖ୍ୟ ପାରାବତ । ଲଣ୍ଡନର ଟ୍ରାଫାଲ୍‌ଗାର ସ୍କୋୟାରରେ ନେଲସନ୍ ସ୍ତମ୍ଭ ତଳେ ବି ଏହିପରି ପାରାବତମାନଙ୍କର ସମାବେଶ ଦେଖିଥିଲି । ଗଣ୍ଡୋଲାରେ ବସି ଭେନିସ୍‌ର ପ୍ରଧାନ ପୟଃପ୍ରଣାଳୀ ଗ୍ରାଣ୍ଡ୍ କେନାଲରେ ଜଳକ୍ରୀଡ଼ା କରୁଥିଲାବେଳେ ସେଣ୍ଟ ମାର୍କ-ମୁକୁଟିତ ଏହି ନଗରୀ-ରାଣୀର ସାୟନ୍ତନ ଶୋଭା ଅନେକ ଇଉରୋପୀୟ କବି ଓ ଶିଳ୍ପୀଙ୍କୁ ମୁଗ୍ଧ କରିଛି – କରିବାର କଥା ମଧ୍ୟ ।

ମୁଁ ଆସିଥିଲି ଏକ ଜାପାନୀ ଜାହାଜରେ – ଭେନିସ୍‌ରେ ଉଠିଲି ଏକ ଇଟାଲୀୟାନ୍ ଜାହାଜରେ । ଅବଶ୍ୟ ଏଥିପାଇଁ ଇଂଲାଣ୍ଡରୁ ମତେ ଟିକଟ୍ କାଟିବାକୁ ହୋଇଥିଲା ଓ ତା'ର ଯାତ୍ରାରମ୍ଭ ଦିନକୁ ଲକ୍ଷ୍ୟ ରଖି ମୁଁ ଇଂଲାଣ୍ଡରୁ ବାହାରିଥିଲି । ଏହି ଜାହାଜଟିର ନାମ 'କଣ୍ଟିରସୋ'– ଦ୍ୱିତୀୟ ମହାସଂଗ୍ରାମରେ ଏହା ଆରବ ସାଗରରେ ଜଳ-ସମାଧି ଲାଭ କରିଥିବା ସମ୍ବାଦପତ୍ରରେ ପଢ଼ିଛି । ହୁଏତ କାଶୀମା ବି ବର୍ତ୍ତମାନ ସମୁଦ୍ର ଗର୍ଭରେ । ଯେଉଁ ଇଟାଲୀୟାନ ଓ ଜାପାନୀ ନାବିକ ଏବଂ ଅଫିସରମାନଙ୍କୁ ଦେଖିଥିଲି, ତାଙ୍କ ଭିତରୁ କେତେ ଜଣ ବା ବଞ୍ଚିଥିବେ ?

ମୋର ଜିନିଷପତ୍ର ନେଇ ଭେନିସ୍‌ରେ କଷ୍ଟମ୍ ଅଫିସରେ ମୁଁ ଯାହା ହଇରାଣ ହୋଇଛି, ତାହା ସାରା ଇଉରୋପରେ କାହିଁ ହୋଇନାହିଁ । ମୁଁ କେତେ ଖଣ୍ଡ ଇଂଲିଶ୍ ରେକର୍ଡ଼ ସାଥିରେ ଧରି ଫେରୁଥିଲି । କେଜାଣି କାହିଁକି ଇଟାଲୀୟାନ କର୍ମଚାରୀମାନେ ତାକୁଇ ନେଇ ମତେ ପ୍ରାୟ ଘଣ୍ଟେକାଳ ଏପରଟ ସେପଟ, ଏଠାକୁ ସେଠା ଚଲେଇବାକୁ ଲାଗିଲେ । ରେକର୍ଡ଼ ବଜା ହେବା ପର୍ଯ୍ୟନ୍ତ ଗଲା । ସେଠୁ ଫେରି ପୁଣି ଅଟକିଲି ବନ୍ଦରର ବରକନ୍ଦାଜ ନିକଟରେ । କଣ୍ଟିରସୋ ମୋର ସମ୍ମୁଖରେ ଠିଆଥାଏ । ମୁଁ ଇଟାଲୀୟାନ ଜାଣି ନଥିବା ହେତୁ କାହାକୁ ପରିଷ୍କାର ଭାବରେ କିଛି ବୁଝାଇପାରୁନଥାଏ । ଇଟାଲୀୟାନମାନେ ବି ବୁଝିବାକୁ ଚେଷ୍ଟା କରୁନଥାନ୍ତି–

ସେମାନେ ହଇରାଣ କରି ଲାଞ୍ଚର ଅପେକ୍ଷାରେ ଥାନ୍ତି । ଶେଷରେ ବରକନ୍ଦାଜ ପରିଷ୍କାର ବିଅର-ପାନ ପାଇଁ କିଛି ମାଗିଲା । ମୁଁ ସାମାନ୍ୟ କେତେ ଲୀରା ଦେବାରେଇ, ମସୋଲିନୀର କଷ୍ଟମ୍‌ସ-ଅର୍ଗଳ ସହସା ମୁକ୍ତହୋଇଗଲା । ମୁଁ ନିଃଶ୍ୱାସ ଛାଡ଼ି ଜାହାଜରେ ଉଠିଲି ଏବଂ ବୁଝିଲି ଯେ ମସୋଲିନୀର ସକଳ ବାଗାଡ଼ମ୍ବର ସତ୍ତ୍ୱେ, ଇଟାଲୀୟାନ ଜାତି ନୈତିକ ମେରୁଦଣ୍ଡହୀନ । ଗତ ଦ୍ୱିତୀୟ ମହାଯୁଦ୍ଧ ତାହାହିଁ ପ୍ରମାଣ କରାଇଯାଇଛି । କଣ୍ଟିରସୋ ଭେନିସ୍ ଛାଡ଼ିଲା ପରେ ଆଡ୍ରିୟାକ୍‌ର ଦକ୍ଷିଣ ବନ୍ଦର ବ୍ରିଣ୍ଡିସିରେ କେତେ ଘଣ୍ଟା ଅପେକ୍ଷା କରିଥିଲା । ଆମ୍ଭେମାନେ ସହର ବୁଲିଗଲୁଁ । ସେ ସମୟ ଗ୍ରୀଷ୍ମକାଳ । ଦକ୍ଷିଣ ଇଟାଲୀ ଆମରି ଭାରତବର୍ଷ ପରି ଗରମ ବୋଧହେଲା ଏବଂ ବ୍ରିଣ୍ଡିସି ସହର ଓ ସେଠାର ଇଟାଲୀୟ ଅଧିବାସୀ ଆମରି ପରି ନୋଂରା ଓ ଅଳସୁଆ ବୋଧହେଲେ ।

ଶ୍ରୀଯୁକ୍ତ ବେହୁରା ଓ ମୁଁ ବର୍ଷେ ଏକାଠି ରହିଲା ପରେ ସେ ନିଉକାସଲ ଛାଡ଼ି ଉତ୍ତର ୱେଲସ୍‌କୁ ଚାଲିଗଲେ ଫଳ-ଚାଷରେ ରିସର୍ଚ୍ଚ କରିବାକୁ । ତା' ପରେ ତାଙ୍କର ମୋର ପ୍ରାୟ ସଂପର୍କ ଇ ନଥିଲା । ଭେନିସ୍‌ରେ କଣ୍ଟିରସୋ ଜାହାଜରେ ଚଢ଼ି ଟିକିଏ ଏପଟ ସେପଟ ହେଉଛି, ଏହି ସମୟରେ ଜଣେ ବଙ୍ଗାଳୀ ଛାତ୍ର ମୁଁ ଓଡ଼ିଶାର ଜାଣିପାରି ମତେ ଖବର ଦେଲେ ଯେ ଓଡ଼ିଶାରୁ ମି: ବେହୁରା ବି ଏଇ ଜାହାଜରେ ଯାଉଛନ୍ତି । ମୁଁ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲି ଓ ଖୋଜି ଖୋଜି ମି: ବେହୁରାଙ୍କୁ ଡେକ୍ ଉପରେ ଭେଟିଲି ।

ଏଇ ଜାହାଜରେ ଅନେକ ଭାରତୀୟ ଛାତ୍ର, ଅଧ୍ୟାପକ ଓ ବ୍ୟବସାୟୀ ଫେରୁଥିଲେ । ସେମାନେ ଇଉରୋପର ସର୍ବାଞ୍ଚଳରୁ ଫେରୁଥିଲେ ଓ ଭାରତର ସର୍ବାଞ୍ଚଳକୁ ଯିବେ । ତାଙ୍କ ଭିତରେ ଆମେ ଦୁଇଜଣ କେବଳ ଓଡ଼ିଆ । ଆଉ ଭାରତୀୟ ବ୍ୟବସାୟୀମାନଙ୍କ ଭିତରୁ କେତେକ ପଶ୍ଚିମ ଆଫ୍ରିକା ଓ ଦକ୍ଷିଣ ଆମେରିକାରୁ ଫେରୁଥିଲେ । ଭେନିସ୍ ଓ ବ୍ରିଣ୍ଡିସିଠାରେ ଅନେକ ଇହୁଦୀ ସ୍ତ୍ରୀପୁରୁଷ, ବାଳକବାଳିକା ଉଠିଲେ– ଏମାନେ ହିଟ୍‌ଲର ଦ୍ୱାରା ଜର୍ମାନୀରୁ ବିତାଡ଼ିତ ହୋଇ ଯାଉଥିଲେ ସଂଘାଇ । ଦୁଇଟି ବାଳକ ଜର୍ମାନୀରୁ ଲୁଚି କରି ଆସି ଇଟାଲୀରେ ପଶିଥିଲେ । ମସୋଲିନୀର ପୋଲିସ ତାଙ୍କୁ ଧରିଆଣି ବ୍ରିଣ୍ଡିସିଠାରେ ଏକ ଜାହାଜରେ ଉଠାଇ ଦେଇଥିଲେ । ଏପରି ଗୃହ-ତାଡ଼ିତ, ସଂପଦ-ଚ୍ୟୁତ ଅବସ୍ଥାରେ ଆମେ ଭାରତୀୟମାନେ ଯେପରି ମୁଣ୍ଡରେ ହାତମାରି ଜୀବନକୁ ଧିକ୍‌କାର କରୁଥାନ୍ତୁ, ଏମାନଙ୍କଠାରେ ସେ ଅପୌରୁଷ ଲକ୍ଷଣ କିଛି ହେଲେ ଦେଖାଯାଉ ନ ଥିଲା । ସାଂଘାଇରେ ସେମାନଙ୍କର ଭବିଷ୍ୟତ ଅନିର୍ଦ୍ଦିଷ୍ଟ ଥିଲେ ହେଁ ଏବଂ ଅତୀତ ତାଙ୍କର ସମସ୍ତ ସଞ୍ଚୟ ଛଡ଼ାଇନେଇଥିଲେ ହେଁ, ସେମାନେ ଆମମାନଙ୍କ ସାଥିରେ ହସ, ଗପ, ଖେଳ, ନାଚକୁଦରେ ପ୍ରାଣର ସହିତ ଯୋଗଦେଉଥିଲେ । ସେମାନଙ୍କ

ବସନର ପରିପାଟୀ ଓ ଉଠାବସାର ସୌଖୀନତା ଦେଖିଲେ କିଏ କହିବନି ଯେ ସେମାନେ ସର୍ବହରା । ଏ ସମସ୍ତର ମୂଳରେ, ମୁଁ ମନେକରେ, ଅଛି ଆତ୍ମପ୍ରତ୍ୟୟ । ସେଥିପାଇଁ ଇହୁଦୀ, ପୃଥିବୀର ଯେଉଁ ଜାଗାକୁ ରିକ୍ତ ହସ୍ତରେ ଗଲେ ହେଁ, କେତେଟା ବର୍ଷ ଭିତରେ, ସେ ଯେଉଁ ବିଭାଗରେ ଢୁକିଥିବ, ତା'ର ଶିଖରରେ ଆସନ ପକେଇବାର ଦେଖାଯାଏ ।

ଫେରିବାର ପଥ ବର୍ତ୍ତମାନ ଯିବାର ପଥ ପରି – କେବଳ ସହଯାତ୍ରୀ ଭିନ୍ନ ମାତ୍ର । ଇଟାଲୀୟ ଜାହାଜରେ ଭାରତୀୟ ଭୋଜନର ଭଲ ବ୍ୟବସ୍ଥାଥାଏ । ଇଣ୍ଡିଆନ୍ ଖାନସମା ଥାନ୍ତି । ଜଣେ ମହୀଶୂରୀୟ ଇଞ୍ଜିନିୟର ମାଞ୍ଚେଷ୍ଟରରୁ ଶିକ୍ଷା ସମାପ୍ତ କରି ଫେରୁଥାନ୍ତି । ପ୍ରତିଦିନ ସେ ଓ ମୁଁ ଏକା ଟେବୁଲରେ ବସୁ । ବଡ଼ ଥଟାଳିଆଲୋକ । ପିଲେ ମିଠେଇ ଦେଖିଲେ ଯେମିତି ହୁଅନ୍ତି, ସେ ଭାତ ଦେଖିଲେ ସେଇମିତି ହୁଅନ୍ତି ।

ସେଇ ପୋର୍ଟସଏଦ୍. ସୁଏଜ କେନାଲ, ଲୋହିତ-ସାଗର, ଏଡ଼େନ୍ ବନ୍ଦର । ଆରବସାଗରରେ ମୌସୁମୀର ଉଦ୍ଦାମ ନର୍ତ୍ତନରେ ଆମେ କଠିନ ସମୁଦ୍ର-ପୀଡ଼ା ପାଇଲୁଁ । ତିନିଦିନ ଧରି ମୁଁ ଶେଯରୁ ଉଠିପାରିଲିନାହିଁ । ବମ୍ବେ ପାଖ ହେବାରୁ ଜାହାଜ କ୍ରମେ ଶାନ୍ତ ହେଲା, ଆମର ପୀଡ଼ା ମଧ୍ୟ ଅପସାରିତ ହେଲା ।

**ବମ୍ବେ–**

ଶ୍ରୀଯୁକ୍ତ ହରୀଶ ବଡ଼ାଳଙ୍କ ଚିଠି ଷ୍ଟେସନରେ ପାଇଲି । ନିମନ୍ତ୍ରଣ ଅଛି, ଭୂସାୱାଲ୍‌ରେ ଓହ୍ଲାଇ ତାଙ୍କ ଆତିଥ୍ୟ ଗ୍ରହଣ କରିବାକୁ; କିନ୍ତୁ ମୁଁ ଘରମୁହାଁ ହୋଇ ଦଉଡ଼ିଛି– ବାଟରେ ଅଟକିବାକୁ ତର କାହିଁ ? ଭୂସାୱାଲ୍ ନ ଯାଇ କିନ୍ତୁ ମୁଁ ଅନୁଚିତ କଲି । ବଡ଼ାଳଙ୍କୁ ମୁଁ ଏ ଯାଏଁ ସାକ୍ଷାତରେ ଦେଖିନାହିଁ, କିନ୍ତୁ ବିଲାତରେ ଥିଲାବେଳେ ମୋଠୁ ପତ୍ର ପାଇଲା ମାତ୍ରେ ସେ ମତେ ଯେପରି ଆର୍ଥିକ ସାହାଯ୍ୟ କରିଥିଲେ, ତାହା ଓଡ଼ିଶା ପରି ଅନୁଦାର ପରଶ୍ରୀକାତର ଦେଶରେ ଅତ୍ୟନ୍ତ ବିରଳ । କ୍ରମେ ତାଙ୍କ ଅର୍ଥ ଅବଶ୍ୟ ତାଙ୍କୁ ଫେରାଇଦେଇପାରିଛି ।

.... ଝାରସୁଗୁଡ଼ା... ପ୍ରଥମେ ଓଡ଼ିଆ କଥା ଏଠି ଶୁଣି ମନରେ ଏକ ଆଶ୍ୱାସନା ଆସିଲାଯେ, ମୋର ଜନ୍ମମାଟି, ମୋର ମାତୃଭାଷାଭାଷୀ ଜାତିର କୋଳକୁ ଫେରିଆସିଛୁଁ ।

ଓଡ଼ିଶା ମାଟିରେ ପାଦ ଦେଇ କଳ୍ପଲୋକର ବୁଦ୍‌ବୁଦ ସବୁ ଗୋଟି ଗୋଟି କରି ଫାଟିବାକୁ ଲାଗିଲା । ସେଇ କ୍ଷୁଦ୍ରତା, ପରଶ୍ରୀକାତରତା, ସ୍ୱାର୍ଥ, ନୀଚତା କୀଟ ଚାହେ କୀଟଠାରୁ ଭୟ ଓ ସମ୍ମାନ ! ରେଭେନ୍‌ସା-କଲେଜରୁ ଗ୍ରାଜୁଏଟ୍ ହୋଇ ବାହାରିଲା ଦିନୁଁ ଆଜିକି ପନ୍ଦର ବର୍ଷ ହେଲା ମୁଁ କେବଳ ଏହା ହିଁ ଦେଖୁଛି ଓ ଭୋଗୁଛି ।

ବିଦେଶୀଙ୍କଠୁ ଯେ ଆଦର, ଯେ ଉତ୍ସାହ, ଯେ ସମବେଦନା ମିଳୁଛି, ନିଜର ଜ୍ଞାତିଠାରୁ ତା' ମିଳୁନାହିଁ । ତଥାପି ଯେଉଁମାନେ ଦେଶର ଓ ଜାତିର କଲ୍ୟାଣ ଚାହାନ୍ତି, ସେମାନେ ଏସବୁକୁ ଭ୍ରୂକ୍ଷେପ ନ କରି ସାଧନା କରିଯିବା ଉଚିତ ।

## ଆମେ ଓ ଇଂରେଜ

ଏ ଦେଶରେ ଇଂରେଜୀ ଭାଷା ଓ ଶିକ୍ଷାପ୍ରଣାଳୀର ପ୍ରବର୍ତ୍ତନ କରାଇ ଲର୍ଡ଼ ମେକଲେ କହିଥିଲେ ଯେ, ''ଏହି ନୂତନ ରୀତିରେ ଶିକ୍ଷିତ ଓ ଦୀକ୍ଷିତ ହୋଇ ଯେଉଁଦିନ ଭାରତୀୟମାନେ ଇଂଲଣ୍ଡୀୟ ଅନୁଷ୍ଠାନ ସବୁ ଦାବିକରିବେ, ସେହିଦିନ ହେବ ଇଂଲାଣ୍ଡର ଶ୍ରେଷ୍ଠତମ ଗୌରବଦିବସ ।''

ସେ ଦିନ ଆଗତପ୍ରାୟ । ଦୁଇଶତ ବର୍ଷର ପରିଚିତ ଶାସନ-ଦଣ୍ଡକୁ ଭାରତୀୟମାନଙ୍କ ହାତକୁ ଫେରାଇଦେଇ ଇଂରେଜ ହିନ୍ଦୁସ୍ଥାନ ଛାଡ଼ି ନିଜ ରାଜ୍ୟକୁ ଫେରିଯିବା ଉପରେ ।

ବର୍ତ୍ତମାନ ପ୍ରଶ୍ନ ହୋଇପାରେ ଯେ, ଦୁଇଶ' ବର୍ଷ ଭିତରେ ଆମେ ଇଂରେଜଠୁ କ'ଣ ଶିଖିଲେ ? ଶିଖିବାର କିଛି ଗୁଣ ତାଙ୍କଠି ଅଛି ? ନାଁ ଗତ ପଚାଶ ବର୍ଷ ଧରି ଆମ୍ଭେମାନେ ଇଂରେଜକୁ ଶୋଷକ, ବଦ୍‌ମାୟେସ୍, ମିଥ୍ୟାବାଦୀ, ଠକ୍ ଇତ୍ୟାଦି କହି ଯେସବୁ ଗାଳି ଦେଇ ଆସିଛୁ, ସେ ତାହାର ଏକାନ୍ତ ଉପଯୁକ୍ତ ? ଆମର ତା'ଠୁ କିଛି ଶିଖିବାର ନାହିଁ ?

ଭାରତବର୍ଷର ସ୍ୱାଧୀନତା ପାଇଁ ଇଂରେଜ ଓ ଭାରତୀୟମାନଙ୍କ ଭିତରେ ଯେଉଁ ସଂଗ୍ରାମ ଚାଲିଛି, ତା'ର ଶେଷ ସମାଧାନ ନ ହେଲା ପର୍ଯ୍ୟନ୍ତ ଆମ୍ଭେମାନେ ଇଂରେଜର ପ୍ରକୃତ ଚିତ୍ର କେବେହେଲେ ଦେଖିପାରିବାନାହିଁ । ସେହି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଇଂରେଜ ଆମ ଆଖିରେ ବଦମାୟେସ୍ ବୋଲି ଦେଖାଯିବା ନିତାନ୍ତ ସ୍ୱାଭାବିକ ।

କିନ୍ତୁ ମୋର ବିଶ୍ୱାସ, ହିନ୍ଦୁସ୍ଥାନ ସ୍ୱାଧୀନ ହୋଇସାରିଲା ପରେ ଓ ସାମ୍ପ୍ରତିକ ସଂଘର୍ଷର ମାନସିକ ଉତ୍ତେଜନାମୟ ଧୂଳିପଟଳ ଅପସାରିତ ହୋଇଗଲା ପରେ ଇଂରେଜ ଜାତିର ପ୍ରକୃତ ମହତ୍ତ୍ୱର ଛବି ଆମ୍ଭମାନଙ୍କ ସମ୍ମୁଖରେ ସ୍ପଷ୍ଟତର ହୋଇଉଠିବ । କେତେବର୍ଷ ପରେ ଆମର ଚିନ୍ତା-ନାୟକମାନେ ବାଧ୍ୟହୋଇ କହିବେ ଯେ, ଭାରତବର୍ଷର ସମୂହ କଲ୍ୟାଣ ଓ ରାଷ୍ଟ୍ରୀୟ ସମ୍ମାନର ପୁନରୁତ୍‌ଥାନ ପାଇଁ ଆଙ୍ଗ୍‌ଲୋ-ସାକ୍‌ସନ୍ ଜାତିର ଶାସନ, ସଂପର୍କ ଓ ସହାନୁଭୂତି ଭାରତବର୍ଷର ଏକାନ୍ତ ଦରକାର ଥିଲା । ଇଂରେଜ ଛଡ଼ା ପୃଥିବୀର ଅନ୍ୟ କୌଣସି ଜାତି ଭାରତବର୍ଷର ରାଷ୍ଟ୍ରୀୟ, ଜାତୀୟ ଓ ସାମାଜିକ ଅଭାବ ସବୁ ଶାନ୍ତ, ନୀରବ ଭାବରେ ଦୂରୀଭୂତ କରିପାରିନଥାନ୍ତା ।

ଭାରତବର୍ଷ ପୃଥିବୀର ଅପରାପର ଅନେକ ଜାତିକି ଧର୍ମ ଓ ସଭ୍ୟତା ଦେଇଛି । ପ୍ରତିଭା ଓ ବିଚକ୍ଷଣତାରେ ଭାରତବର୍ଷର ଲୋକେ ପୃଥିବୀର ଅନ୍ୟ ଯେକୌଣସି ଜାତିର ସମକକ୍ଷ ତ ନିଶ୍ଚୟ, କେତେକ ଦିଗରେ ଭାରତୀୟ ଅନ୍ୟ ସକଳ ଜାତିଠାରୁ ଶ୍ରେଷ୍ଠତର । ତଥାପି ଭାରତୀୟର ଜାତୀୟ ଚରିତ୍ରରେ ଅନେକ କିଛି ଦୋଷ, ଦୁର୍ବଳତା ରହିଛି । ନଚେତ୍ ଏ ଦେଶ ଶତ ଶତ ବର୍ଷ ଧରି ପରାଧୀନ ରହିଥାନ୍ତା କିପରି ? ଏହି ଦୋଷଗୁଡ଼ିକର ନିରାକରଣ ପାଇଁ ଅନ୍ୟ ଜାତିମାନଙ୍କ ଅପେକ୍ଷା ଇଂରେଜ ହିଁ ଆମର ପ୍ରକୃଷ୍ଟ ଆଦର୍ଶ ।

ଜର୍ମାନ, ଫ୍ରେଞ୍ଚ ପ୍ରଭୃତି ଜାତି ଇଂରେଜ ଅପେକ୍ଷା ବହୁ ଗୁଣରେ ବିଚକ୍ଷଣ । ଇଂଲାଣ୍ଡ ଏକ କ୍ଷୁଦ୍ର ଦ୍ୱୀପ, ଯାହାକି ଜାତିକୁ ମାତ୍ର ତିନିଟି ମାସର ଖାଦ୍ୟ ଯୋଗାଇପାରେ; କିନ୍ତୁ ଏଇ ସ୍ୱଳ୍ପକ୍ଷୀରା ଜନନୀର ସନ୍ତାନ, ଧରଣୀ ପୃଷ୍ଠରେ ମାନବେତିହାସର ବୃହତ୍ତମ ସାମ୍ରାଜ୍ୟ ସ୍ଥାପନ କରିପାରିଛି, ଯେଉଁଥିରେ ସୂର୍ଯ୍ୟାସ୍ତ ହୁଏନାହିଁ । ଏହି ସାମ୍ରାଜ୍ୟ କେବଳ ଶୋଷଣ ଓ ଅତ୍ୟାଚାରର ପ୍ରତୀକ ହୋଇଥିଲେ, ଇଂଲିଶ୍ ପାର୍ଲିମେଣ୍ଟକୁ ଲୋକେ ପାର୍ଲିମେଣ୍ଟ-ପ୍ରସବିନୀ ବୋଲି କହୁ ନ ଥାନ୍ତେ । କାରଣ ଇଂଲିଶ୍ ପାର୍ଲିମେଣ୍ଟର ଆକ୍ଟ ଫଳରେ କାନଡ଼ା, ନିଉଜିଲାଣ୍ଡ, ଅଷ୍ଟ୍ରେଲିଆ ପ୍ରଭୃତି ବହୁ ଦେଶ ନିଜନିଜର ପାର୍ଲିମେଣ୍ଟ ପାଇ ବର୍ତ୍ତମାନ ସୁଖୀ ଓ ସ୍ୱାଧୀନ । ଭାରତବର୍ଷରେ ମଧ୍ୟ ଏହା ହେବା ଉପରେ ବା ହେବ । ପାର୍ଲିମେଣ୍ଟାରୀ ବା ଲୋକପ୍ରତିନିଧି ଶାସନ ବିଷୟରେ ଇଂଲାଣ୍ଡ ସମଗ୍ର ଜଗତର ଗୁରୁ । ପ୍ରସିଦ୍ଧ ଫରାସୀ ରାଷ୍ଟ୍ରବିପ୍ଳବ ବେଳେ ବିପ୍ଳବର ନେତାମାନେ ଇଂଲାଣ୍ଡ ଓ ଇଂରେଜଜାତିକୁ ଦୃଷ୍ଟାନ୍ତ ସ୍ୱରୂପ ଲୋକ ସମ୍ମୁଖରେ ଥୋଇଥିଲେ । ଫରାସୀ ରାଷ୍ଟ୍ରବିପ୍ଳବର ଅବ୍ୟବହିତ ପୂର୍ବରୁ ଏହି ଆଙ୍ଗଲୋ-ସାକ୍ସନ୍ ଜାତି ହିଁ ଆମେରିକା ଯୁକ୍ତରାଷ୍ଟ୍ରରେ ଏକ ସାଧାରଣତନ୍ତ୍ର ଶାସନ ଆରମ୍ଭ କରିସାରିଥିଲେ; ଯାହା କି ଏବେ ସମଗ୍ର ପୃଥିବୀର ଭାଗ୍ୟ ନିୟନ୍ତ୍ରଣ କରୁଛି । ସୋଭିଏଟ୍ ରୁଷିୟାରେ ଆଜି କେହି ବେକାର ନ ଥାଇପାରନ୍ତି; କିନ୍ତୁ ଇଂଲାଣ୍ଡ ବା ଯୁକ୍ତରାଷ୍ଟ୍ରରେ ସାଧାରଣ ନାଗରିକ ଯେପରି ଅନାଶଙ୍କିତ, ଅଭୟ ବାୟୁମଣ୍ଡଳରେ ବାସକରେ, ସେଠି ତା' ଅସମ୍ଭବ । ସେଠି ବ୍ୟକ୍ତିର ସ୍ୱାଧୀନତା ନାହିଁ, ବାଣୀର ସ୍ୱାଧୀନତା ନାହିଁ । ରୁଷ ବା ଜର୍ମାନମାନଙ୍କର ଇତିହାସରେ ଏସବୁ ଅପରିଚିତ କଥା; କିନ୍ତୁ ବ୍ୟକ୍ତି-ସ୍ୱାଧୀନତା ଓ ବାଣୀ ସ୍ୱାଧୀନତା ପାଇଁ ଇଂରେଜ ଜାତି ତା'ର ସମଗ୍ର ଇତିହାସକୁ ନିଜ ରକ୍ତରେ ରଞ୍ଜିତକରିଆସିଛି ।

ଆମେ କହୁଁ– ଇଂରେଜ୍ ଆମକୁ ଏକ୍ସପ୍ଲଏଟ୍ ବା ଶୋଷଣ କରିହିଁ ପେଟ ମୋଟା କରିଛି । କିନ୍ତୁ ଆଫ୍ରିକା, ଅଷ୍ଟ୍ରେଲିଆ, ଆମେରିକାରେ, ଯେଉଁଠି କେବଳ ଜଙ୍ଗଲ, ଜଙ୍ଗଲୀ ଜନ୍ତୁହିଁ ସହସ୍ର ସହସ୍ର ବର୍ଷ ଧରି ଥିଲେ, ସେଠି ଆଙ୍ଗଲୋ-ସାକ୍ସନ୍ ଯେ ତା'ର ରକ୍ତ ଓ ସ୍ୱେଦ ଢାଳି ମାତ୍ର ଶହେ ଦୁଇଶହ ବର୍ଷ ଭିତରେ ବିରାଟ ସଭ୍ୟତା ସବୁ

ଠିଆ କରେଇ ପାରିଛି, ତାହା କ'ଣ କେବଳ ପ୍ରବଞ୍ଚନା ବା ଶୋଷଣର ଚିହ୍ନ ନା ସୁଦୃଢ଼ ପୌରୁଷର ? ପୌରୁଷବନ୍ତ ଇଂରେଜର ଦୃଢ଼ହସ୍ତ ଧରାପୃଷ୍ଠର ସହସ୍ର ସହସ୍ର ମାଇଲ ବନ୍ଧ୍ୟା, ରୋଗାକୀର୍ଣ୍ଣ ମାଟିକୁ ଆଜି ସ୍ୱର୍ଣ୍ଣପ୍ରସୂ ଓ ସଭ୍ୟତାର ଲୀଳାସ୍ଥଳୀ କରିପାରିଛି । ତାହାହିଁ ଆଜିର ଅଷ୍ଟ୍ରେଲିଆ, ଆଫ୍ରିକା, ନିଉଜିଲାଣ୍ଡ, କାନଡ଼ା, ଆମେରିକା । ଏଥିରୁ ଯେକୌଣସିଟିର ଇତିହାସ ପଢ଼ିଲେ ସାଧାରଣ ଇଂରେଜର ବୀର୍ଯ୍ୟ, ଧୈର୍ଯ୍ୟ, ଗଭୀର ଧର୍ମବିଶ୍ୱାସ ଓ କର୍ତ୍ତବ୍ୟପରାୟଣତାରେ ଚିତ୍ତ ଅଭିଭୂତ ହୋଇପଡ଼େ । ଏ ପ୍ରତ୍ୟେକଟିର ମାଟି ସହସ୍ର ସହସ୍ର ଅଜ୍ଞାତ ଇଂରେଜର ସାଧୁ, ସାହସିକ, ନିଃସ୍ୱାର୍ଥ କର୍ତ୍ତବ୍ୟନିଷ୍ଠାର ସ୍ୱର୍ଣ୍ଣରେଣୁରେ ରଞ୍ଜିତ । ସେ ପ୍ରକାର ଗୋଟିଏ ହେଲେ ଜୀବନ ଆମ ସମାଜରେ ଦୁର୍ଲ୍ଲଭ । ତା' ନ ହେଲେ କି ସହସ୍ର ସହସ୍ର ବର୍ଷ ଧରି ଆମେ ପ୍ରକୃତିର କ୍ରୀଡ଼ନକ ମାତ୍ର ହୋଇ ରୋଗ, ଦୁର୍ଭିକ୍ଷ, ବନ୍ୟା, ମହାମାରୀରେ ଅର୍ଦ୍ଧମୃତ ହୋଇ ସଢ଼ୁଥାନ୍ତେ ? ଆମ ପରି ଇଂରେଜ ବିଶ୍ୱସଭ୍ୟତାକୁ କୌଣସି ଧର୍ମ ବା ଦର୍ଶନ ନ ଦେଇଥାଇପାରେ; କିନ୍ତୁ ଆମପରି ସେ ଜୀବନର ସମସ୍ୟାମାନଙ୍କୁ ଡରି ସନ୍ନ୍ୟାସର ବ୍ୟବସ୍ଥା ପସନ୍ଦ କରେନାହିଁ ବା କପାଳରେ ହାତମାରି ବସିଯାଏନାହିଁ । ସେ ଧୀରେ ଅଥଚ ଦୃଢ଼ତା ସହକାରେ ପ୍ରକୃତିର ବିଷଦାନ୍ତ ଉପାଡ଼ି ତାକୁ ବଶ କରି ନିଜର ଭୃତ୍ୟ କରିପାରିଛି, ପୃଥିବୀର ସର୍ବତ୍ର । ଇଂରେଜ ଯଦି ଗୋଟାଏ କାମ କରିବ ବୋଲି ଧରିଲା, ଜାଣ ଯେ ସେ ତା' କରିବ ଇ କରିବ । ପ୍ରାଣ ଯିବ ପଛେ ସେ ଛାଡ଼ି ଆମ ପରି ପଳେଇଯିବନି । ଜଣକର ଅର୍ଦ୍ଧସିଦ୍ଧ କାମ ଆଉ ଜଣେ ଇଂରେଜ ଧରିନେଇ ସେଇ ନିଷ୍ଠାର ସହିତ ପୁଣି କାମ ଚଳେଇବ । ଏହି କର୍ତ୍ତବ୍ୟନିଷ୍ଠା ଇଂରେଜର ରକ୍ତଗତ । ସେଥିପାଇଁ ଇଂରେଜକୁ ସାଧାରଣତଃ ବୁଲଡ଼ଗ୍ ସାଥିରେ ତୁଳନା ଦେଇଥାନ୍ତି ।

ଇଂରେଜ ଏ ଦେଶ ଛାଡ଼ି ଚାଲିଗଲେଇ ଯେ ଆମର ସର୍ବପ୍ରକାର କଲ୍ୟାଣ ଆପେ ଆପେ ସମ୍ଭବ ହୋଇପଡ଼ିବ, ଏହା ଭାବିବା ଘୋର ଆତ୍ମ-ପ୍ରତାରଣା । ଇଂରେଜର ଅନୁକରଣରେ ଆମର ପାର୍ଲିମେଣ୍ଟ, ହାଇକୋର୍ଟ୍, ଇଉନିଭରସିଟି, ମ୍ୟୁନିସିପାଲିଟି ହେଲା ସତ, କିନ୍ତୁ ଇଂରେଜର ଯେଉଁ ଯେଉଁ ଚାରିତ୍ରିକ ବୈଶିଷ୍ଟ୍ୟରୁ ଏ ଗୁଡ଼ିକର ଜନ୍ମ ଓ ଅଭିବୃଦ୍ଧି ହୋଇଥିଲା, ସେହି ଗୁଣଗୁଡ଼ିକ ଆମ ରକ୍ତରେ ନ ମିଶେଇବାଯାଏ ସେଗୁଡ଼ିକ ପ୍ରକୃତ କଲ୍ୟାଣ ପ୍ରସବ କରିବା ବିଷୟ ସନ୍ଦେହଜନକ ବୋଲି ଆମର ବିଶ୍ୱାସ । ଏହି ଅଭାବ ଯୋଗୁ ହିଁ ଭାରତବର୍ଷରେ ସ୍ଥାନୀୟ ସ୍ୱାୟତ୍ତଶାସନ, ଯୌଥ କାରବାର ଓ ସହଯୋଗ ଆନ୍ଦୋଳନ ପ୍ରଭୃତି, ଯାହା କି ଅନ୍ୟାନ୍ୟ ଦେଶମାନଙ୍କରେ ଅଶେଷ ଲୋକକଲ୍ୟାଣ କରିପାରିଛି, ଏ ଦେଶରେ ତାହା ଲାଞ୍ଚ, ମିଛ, ଅକର୍ମଣ୍ୟତା ଓ ସ୍ୱାର୍ଥପରତାର ପୀଠସ୍ଥଳୀ ହୋଇଆସିଛି ।

ଖରାପ ଓ ଭଲ ମଣିଷ ସବୁ ଜାତିରେ ସମାନ ଭାବରେ ବଣ୍ଟା ହୋଇଛନ୍ତି ।

ବିଧାତା କୌଣସି ଜାତି ପ୍ରତି ପକ୍ଷପାତୀ ନୁହନ୍ତି । ତେବେ 'ଭଲ' କ'ଣ, ତା'ର ଆଦର୍ଶ ନେଇ ବ୍ୟକ୍ତି ଓ ଜାତିର ଉତ୍କର୍ଷ ଓ ଅପକର୍ଷ ଘଟେ । ଆମ ଦେଶରେ ଯେଉଁ ବାପ ପୁଅକୁ ବା ପୁଅମାନଙ୍କୁ ବଞ୍ଚି ଥାଉ ଥାଉ ଖୁବ୍ ଭୋଜିଭାତ, ଜାକ୍‌ଜମକ୍ ଭିତରେ ବିବାହ ଦେଇପାରିଲା, ସମାଜରେ ସେ କୃତାର୍ଥ; କିନ୍ତୁ ଅଧିକାଂଶ କ୍ଷେତ୍ରରେ ଏହା ଅଶେଷ ଅନିଷ୍ଟର କାରଣ ହୋଇଥାଏ । ଇଂରେଜ ବାପ କିନ୍ତୁ ପୁଅକୁ ବିବାହକରେଇବା କଥା କଳ୍ପନାଇ କରିବନି । ସେ ଦାୟିତ୍ୱ ନିତାନ୍ତ ଭାବରେ ପୁଅର; ବାପ ଯଦି ଏ ଦିଗରେ କିଛି ଚାପ ପ୍ରୟୋଗ ବା ଅନୁରୋଧ ଉପରୋଧ ଆରମ୍ଭକରେ, ସେ ଲୋକ ନିନ୍ଦାର ଭାଗୀ ତ ହେବ, ତା'ର ସ୍ୱାଧୀନତାରେ ବାପ ବାଧା ଦେଉଛି ବୋଲି ପୁଅ ବିଦ୍ରୋହୀ ହୋଇଉଠିବ । କିନ୍ତୁ ଇଂରେଜ ବାପର ଆପାତତଃ ନିର୍ମମତାରେ ଇଂରେଜ ଜାତିର କଲ୍ୟାଣର ବୀଜ ନିହିତ ରହିଛି । ଇଂରେଜ ପୁଅ ଏହାଦ୍ୱାରା ନିଜ ଗୋଡ଼ରେ ଠିଆହୁଏ, ଆତ୍ମବଳରେ ବଳୀୟାନ୍ ହୋଇ ଦୁର୍ଦ୍ଧର୍ଷ ହୋଇଉଠେ ।

ଯେଉଁ ଯେଉଁ ଗୁଣର ଅଭାବ ଆମର ଜାତୀୟ ଜୀବନକୁ ବିକଳାଙ୍ଗ କରିପକାଉଛି ଓ ଯେଉଁ ଯେଉଁ ଗୁଣ ଇଂରେଜର ଜାତୀୟଜୀବନର ବୈଶିଷ୍ଟ୍ୟ ଏବଂ ଆମର ସର୍ବଥା ଅନୁକରଣୀୟ ଏହିପରି କେତେଗୁଡ଼ିଏ ଗୁଣର କଥା ବର୍ତ୍ତମାନ କହେଁ ।

ଇଂରେଜର ପ୍ରଥମ ବଡ଼ ଗୁଣ ହେଉଛି, ମଜ୍ଜାଗତ ଦେଶାତ୍ମବୋଧ । ଇଂରେଜମାନଙ୍କ ଭିତରେ ଧନ ଓ ଧର୍ମର ବୈଷମ୍ୟ ନେଇ ଅନେକ ଦଳ ଓ ଗୋଷ୍ଠୀ ଅଛି । ତାଙ୍କ ଭିତରେ ଭେଦାଭେଦ, ଶୂଦ୍ର-ବ୍ରାହ୍ମଣର ଭେଦାଭେଦଠୁଁ କମ୍ ନୁହେଁ; କିନ୍ତୁ କେଜାଣି କି ମନ୍ତ୍ର ବଳରେ ଦେଶର ସମୂହ କଲ୍ୟାଣ ବା ବିପଦବେଳେ, ସର୍ବଦଳ ଓ ସର୍ବଗୋଷ୍ଠୀର ଇଂରେଜ ଗୋଟିଏ ମଣିଷ ପରି କାମ କରିବାର ଦେଖାଯାଏ । ବ୍ୟକ୍ତିଗତ ଜୀବନରେ ମଧ୍ୟ ଇଂରେଜର ଅର୍ଦ୍ଧେକ ଚେତନା ନିଜ ଜୀବନ ପାଇଁ ଓ ଆଉ ଅଧକ ତା'ର ଦେଶ ଓ ଜାତିପାଇଁ ଜାଗ୍ରତ ରଖିଥାଏ । ପ୍ରତିଦିନ ଓ ପ୍ରତି ମୁହୂର୍ତ୍ତର କଥାଭାଷା, କ୍ରୀଡ଼ା କର୍ମ ଭିତରେ ବି ସେ ଭୁଲିଯାଏନା ଯେ, ସେ 'ଇଂରେଜ', ସେ ସାମାନ୍ୟ ଟମ୍, ଡିକ୍, ହାରୀ ନୁହେଁ– ତା'ର ପ୍ରତ୍ୟେକ କଥା, ଆଦେଶ, ବ୍ୟବହାର ଉପରେ ଇଂରେଜ ଜାତିର ସମ୍ମାନ ଯେ ନିର୍ଭରକରେ, ସେ ବିଷୟରେ ସେ ବରାବର ସଚେତନ । ନଚେତ୍ ବ୍ରାଉଟନ୍ ନାମକ ଏକ ଅପ୍ରସିଦ୍ଧ ଇଂରେଜ ବୈଦ୍ୟ, ସାହାଜାହାନଙ୍କ କନ୍ୟାର ରୋଗୋପଶମ କରିସାରିଲା ପରେ, ନିଜ ପାଇଁ କିଛିମାତ୍ର ପାରିତୋଷିକ ନ ଚାହିଁ, ତା'ର ଜାତି ହିନ୍ଦୁସ୍ଥାନରେ କିପରି ବାଣିଜ୍ୟର ସୁବିଧା ପାଇବ ତାହାହିଁ ମାତ୍ର ଚାହିଥାନ୍ତା କିପରି ?

କିନ୍ତୁ ଆମେ ? ଆମେ ଚିରକାଳ ଜୟଚନ୍ଦ୍ର ଓ ଶିଖୀ ମନାଇର ଜାତି । ଆମେ ଏଡ଼େ ନିମ୍ନସ୍ତରର ମଣିଷ ଯେ ନିଜର ସ୍ୱାର୍ଥପାଇଁ ଆମେ ଜାତି, ଧର୍ମ, ଦେଶ ଓ

ଈଶ୍ୱରଙ୍କୁ ମଧ୍ୟ ଭୁଲିଯାଉଁ । ନିଜେ ବା ନିଜର ପୁଅ, ପୁତୁରା, ଦାଦୀ, ମଉସା କିମିତି ଭଲରେ ରହିବେ ଏଇ ଆମର ଚିନ୍ତା– ଦେଶ ଓ ଜାତି ଆମର ଦୈନନ୍ଦିନ ଭାବନା ଭିତରେ ସ୍ଥାନ ପାଏନାହିଁ । ସାମାନ୍ୟ ଅନ୍ନସଂସ୍ଥାନ ପାଇଁ ଆମେ ଆମରି ଲୋକଙ୍କର ଅନିଷ୍ଟ ଓ ଅହିତ କରିବାକୁ ସାନନ୍ଦରେ ପ୍ରସ୍ତୁତ – ନଚେତ୍ ଇଂରେଜ ସାମ୍ରାଜ୍ୟ ଏତେଦିନ ତିଷ୍ଠନ୍ତା କିପରି ?

ଯେଉଁଠି ଇଂରେଜ ନାହିଁ, ସେଠି ହିନ୍ଦୁ ସ୍ୱାର୍ଥ; ମୁସଲମାନ ସ୍ୱାର୍ଥ; ବଙ୍ଗାଳୀ ସ୍ୱାର୍ଥ; ଓଡ଼ିଆ ସ୍ୱାର୍ଥ । ମହାଜାତିର ଉନ୍ମୁକ୍ତ ଉଦାର ଆକାଶର ବିଶୁଦ୍ଧ, ନିର୍ମଳ ବାୟୁ ଆମକୁ ସହ୍ୟ ହେଉନାହିଁ । ଛୋଟ ଛୋଟ ଗୋଷ୍ଠୀର ଆବଦ୍ଧ, କଳୁଷିତ, ସଂକୀର୍ଣ୍ଣ ବାୟୁମଣ୍ଡଳରେ ଆଶ୍ରୟ ନେବା ତେଣୁ ଆମର ମଜ୍ଜାଗତ ଅଭ୍ୟାସ ।

ବର୍ଣ୍ଣାଶ୍ରମର ପାଚେରି, ଧର୍ମର ପାଚେରି ଓ ଧନର ପାଚେରି ସବୁ ଚୂନା ହୋଇ ଦେଶମୟ ଯଦି ସାମ୍ୟବାଦ ପ୍ରତିଷ୍ଠା ହୁଏ, ତେବେ ଯାଇ ଭାରତୀୟ ଚରିତ୍ରର ଏହି ବ୍ୟାଧି ନିରାକୃତ ହେବାର ଆଶା କରାଯାଏ; ନଚେତ୍ ନୁହେଁ । ଏହି ବାସନା ଶୀଘ୍ର ସଫଳ ହେଉ । ଭାରତମାତାର କଲ୍ୟାଣ ପାଇଁ ଏଇ ଔଷଧ ଏକାନ୍ତ ଲୋଡ଼ା ।

ଇଂରେଜ ଚରିତ୍ରର ଦ୍ୱିତୀୟ ବୈଶିଷ୍ଟ୍ୟ ହେଉଛି ସ୍ୱାବଲମ୍ବନ । ଜଣେ ନରୱେଜୀୟ ବନ୍ଧୁର ସ୍ୱାବଲମ୍ବନ କଥା ପତ୍ରାବଳି ଭିତରେ ବର୍ଣ୍ଣିତ ଅଛି । ତାହା ଯେକୌଣସି ଇଂରେଜ ବାଳକ ପକ୍ଷରେ ସତ୍ୟ । ଥରେ ମୁଁ ଗୋଟିଏ ବୃଦ୍ଧ ଇଂରେଜ ଦମ୍ପତିର ଆତିଥ୍ୟ ଗ୍ରହଣ କରି ତାଙ୍କ ଘରକୁ ଯାଇଥିଲି । ବୁଢ଼ାବୁଢ଼ୀଙ୍କର ପୁଅ ଝିଅ ସାତଟି । ସମସ୍ତେ ସ୍ୱାଧୀନ ଭାବରେ ନିଜନିଜର ବ୍ୟବସାୟ କରନ୍ତି ଓ ସେହି ଏକ ସହରର ଭିନ୍ନ ଭିନ୍ନ ସ୍ଥାନରେ ଅଲଗା ରହନ୍ତି । ବୁଢ଼ାବୁଢ଼ୀ ମଧ୍ୟ ଥାନ୍ତି ଅଲଗା । ଏକା ସହରରେ ସାତ ପୁଅ ଝିଅ ଅଲଗା ଅଲଗା ଓ ବୁଢ଼ା ବୁଢ଼ୀ ଅଲଗା, ଏହା ଆମ ଭାରତୀୟ ଆଖିକି କେବଳ ବିଚିତ୍ର ନୁହେଁ, ବୀଭତ୍ସ ଲାଗିବାର କଥା । ବୁଢ଼ା ଜଣେ ପ୍ରସିଦ୍ଧ ଡାକ୍ତର ଥିଲେ, ଏବେ ରିଟାୟାର କରି ଘରେ ବସିଛନ୍ତି । ବେଳେ ବେଳେ ପୁଅମାନଙ୍କ ପାଖକୁ ଯାଇ ସେମାନଙ୍କୁ ନିଜ ନିଜ ବ୍ୟବସାୟରେ ସାହାଯ୍ୟ ଦିଅନ୍ତି; କିନ୍ତୁ କେବେ ସେମାନଙ୍କ ଘରେ ରହିବେନି । ବୁଢ଼ୀ ନିୟମ କରିଦେଇଛି ଯେ, ଅମୁକ ଝିଅ ସୋମବାର ଦିନ, ଅମୁକ ଝିଅ ବୁଧବାର ଦିନ ଆସି ଘର କାମ ଯଦି କିଛି ଥାଏ ସେଥିରେ ସାହାଯ୍ୟ କରିଯିବ ଓ ଅପରାହ୍ଣରେ ଚା' ଖାଇ ଯିବ । ଯାହା ନିୟମ କରାହୋଇଛି, ଠିକ୍ ତାହାହିଁ ମାନି ଚଳିବେ । ଆମ ଦେଶ ପରି ମା-ଘର ବୋଲି ଝିଅମାନେ ଯେତେବେଳେ ଇଚ୍ଛା ସେତେବେଳେ ଆସିଯିବେନାହିଁ ।

ବାପା-ମା-ପୁଅ-ଝିଅ ସମନ୍ୱିତ ଏକସ୍ଥାନସ୍ଥିତ ଗୋଟିଏ ପରିବାରର ଏପ୍ରକାର ଭିନ୍ନତା-ମୂଳକ ବ୍ୟବସ୍ଥା ଦେଖି ମୁଁ ପ୍ରଥମେ ବିସ୍ମୟାଭିଭୂତ ହୋଇପଡ଼ିଲି – ହେବାର

କଥା । ଭାରତବର୍ଷରେ ଏପରି ତ ଘଟିବ ନାହିଁ, ଘଟିଲେ ସମାଜ ସେପରି ପୁଅଝିଅ ବା ବାପମାନ'ଙ୍କୁ କି ବାଟ ଚଲେଇଦେବ ?

ମୁଁ ବାଧ୍ୟହୋଇ ବୃଦ୍ଧା ଭଦ୍ରମହିଳାଙ୍କୁ ପଚାରିଲି, ''ତମର ଏତେ ପୁଅ ଝିଅ ଏଇ ସହରରେ ଅଛନ୍ତି, କାହାରି ସାଥିରେ ନ ରହି ଏକା ଏକା ରହୁଛ କାହିଁକି ? ନିଜ ହାତରେ ଘର ସଫାକରିବା, ରୋଷେଇବାସ, ବଜାର ସଉଦା କରିବା କ'ଣ କଷ୍ଟକର ବୋଧ ହେଉନାହିଁ ?''

ବୃଦ୍ଧା ଉତ୍ତର ଦେଲେ, ''ଆମେ ସ୍ୱାଧୀନହୋଇ ରହିବାକୁ ଚାହୁଁ । ଅନ୍ୟ ଘରେ ଅଳସୁଆ ହୋଇ ସ୍ୱାଚ୍ଛନ୍ଦ୍ୟ ଭୋଗକରିବା ଅପେକ୍ଷା ଏ କଷ୍ଟ ବହୁତ ସୁଖକର ।''

ମୁଁ କହିଲି, ''ତମ ପୁଅ ବା ଝିଅ ସାଥିରେ ତ ରହନ୍ତ – 'ଅନ୍ୟ'ର କଥା ଏଠି କାହିଁ ?''

''ହେଲେ କ'ଣ ହେଲା – ତାଙ୍କ ଜୀବନ, ତାଙ୍କ ସ୍ୱାଚ୍ଛନ୍ଦ୍ୟ ତାଙ୍କର । ଆମର ଜୀବନ ଅଲଗା ।''

ମୁଁ ପୁଣି କହିଲି, ''ବର୍ତ୍ତମାନ ପର୍ଯ୍ୟନ୍ତ ନିଜ କାମ ନିଜେ କରିପାରୁଛ । ଭଗବାନ ନ କରନ୍ତୁ, ଦିନେ ଯଦି ଗୋଡ଼ହାତ ନ ଚଳେ ?''

ବୃଦ୍ଧାର ଉତ୍ତର ପ୍ରତ୍ୟେକ ଭାରତୀୟର ବେଦବାକ୍ୟ ପରି ମନେରଖିବାର କଥା । ବୃଦ୍ଧା ଅଭିନୟର ସହିତ କହିଲା, ''ସେତେବେଳେ ପର ଉପରେ ଗଳଗ୍ରହ ହେବା ଅପେକ୍ଷା, ନିଜେ ଗୁଳିଖାଇ ମରିଯିବା ଶ୍ରେୟସ୍କର ।''

ଆମ ଦେଶରେ କିନ୍ତୁ ପର ଉପରେ ନିର୍ଭର କରି ଚଳିବା ଏକ ସୁଖସ୍ୱପ୍ନ । ପୁଅ ଆଶା କରେ ଓ ପାଏ ବାପର ଟଙ୍କା ଉଡ଼େଇବାକୁ । ଜ୍ୱାଇଁ ଆଶାକରେ ଶ୍ୱଶୁର ଟଙ୍କାରେ ଜୀବନଟା ଗଢ଼ିନେବାକୁ, ଦୂର ନିକଟର ବନ୍ଧୁବାନ୍ଧବ, ଦଦା-ମଉସା, ନିଜ ଗୋଷ୍ଠୀ ଭିତରୁ ଜଣେ କେହି ରୋଜଗାରିଆ ବାହାରିଲେ ତା' ପକେଟ କଣା କରିବାକୁ ଦାବି ବୋଲି ମନେ କରନ୍ତି । ଏହା ସମଗ୍ର ଜାତିର ପୌରୁଷ, ମନୁଷ୍ୟତା ଓ ଆତ୍ମସମ୍ମାନର ଅଭାବ ସୂଚିତ କରେ ।

ତିନୋଟି ସାମାଜିକ ଅନୁଷ୍ଠାନ ଏହି ସ୍ୱାବଲମ୍ବନ ଭାବକୁ ଇଂରେଜ ରକ୍ତରେ ମିଶେଇ ଦେଇଛି । ସେ ତିନୋଟି ହେଉଛି– ଆତ୍ମଚେଷ୍ଟାରେ ବିବାହ, ସ୍ୱାନ୍ନ ପରିବାର, ଏକମାତ୍ର ଜ୍ୟେଷ୍ଠପୁତ୍ରର ପୈତୃକ ସମ୍ପତ୍ତି ଲାଭ ।

ଆମ ଦେଶରେ ତରୁଣ ତରୁଣୀଙ୍କୁ ଛନ୍ଦାଛନ୍ଦି କରିବାର ଦାୟିତ୍ୱ ପିତାମାତାଙ୍କର । କ୍ରମେ ଏହା ଏପରି ଅବସ୍ଥାକୁ ଆସିଛି ଯେ, ପୁଅ ବା ଝିଅକୁ ବିବାହ ନ କରେଇ ପାରିଥିଲେ, ବାପ ବା ମା' ଶାନ୍ତିରେ ମରିପାରନ୍ତିନାହିଁ । ବାପ ମା' କେବଳ ଯେ ଦାୟିତ୍ୱ ତୁଲେଇବା ପାଇଁ ପିଲାଙ୍କୁ ବିବାହ ଦେଇଦିଅନ୍ତି, ତାହା ନୁହେ, ନାତିନାତୁଣୀ

ଦେଖିଯିବାର ଏକ ଅବାଞ୍ଛନୀୟ ବାସନା ମଧ୍ୟ ଏଥିରେ ନିହିତ । ଏପରି ଦେଖାଯାଉଛି ଯେ ଏକ ଚାଳତଳେ ବାପ, ମା' ଓ ପୁଅଝିଅଙ୍କର ବଂଶବୃଦ୍ଧି ସମାନ ଗତିରେ ଚାଲିଛି ଏବଂ ସର୍ବମୁଖରେ ଆହାର ଦେବାର ଦାୟିତ୍ୱ ମୂଳ ଗୃହସ୍ଥର । ଆମ୍ଭେମାନେ ଏ ସବୁଥିରେ ଏତେ ଅଭ୍ୟସ୍ତ ଯେ ଏ ସବୁ ଲଜ୍ଜାକର ବୋଲି ମନେହୁଏନାହିଁ; କିନ୍ତୁ ଭଦ୍ରଲୋକର ପିଲାକୁ ନିଜ ଘରପାଇଁ ବଜାରରୁ ବିଡ଼େ ଶାଗ କିଣି ଆଣିବାକୁ ପଡ଼ିଲେ, ସେ ଲଜ୍ଜା ସେ ସହ୍ୟକରିପାରେନା । ଯେଉଁ ସମାଜ ଏପରି ବ୍ୟାଧିଗ୍ରସ୍ତ, ସେଠି କି ଉନ୍ନତି, କି ମନୁଷ୍ୟତା ସମ୍ଭବ ହୋଇପାରେ ?

ସମଗ୍ର ଶ୍ୱେତାଙ୍ଗ ଜାତି ମଧ୍ୟରେ କିନ୍ତୁ ବିବାହ ବିଷୟଟା ତରୁଣ-ତରୁଣୀମାନଙ୍କର ନିଜର ଦାୟିତ୍ୱ । ସେମାନେ ନିଜେ ନିଜେ ବଛାବଛି ହୋଇ ବିଭାହେବେ, ପୁଣି ଉପାର୍ଜନକ୍ଷମ ନ ହେଲା ପର୍ଯ୍ୟନ୍ତ ଆଦୌ ବିବାହ କରିବେ ନାହିଁ । ଦେଖାଯାଇଛି ଯେ, ଗୋଟିଏ ଯୁବକ ଓ ଯୁବତୀ ପାରସ୍ପରିକ ପ୍ରେମରେ ପଡ଼ି ବିବାହ କରିବାର ସ୍ଥିରକଲେ; କିନ୍ତୁ ଯୁବକର ଉପାର୍ଜ୍ଜନ ଏତେ ହୋଇନାହିଁ, ଯେଉଁଥିରେ ଦୁହେଁ ସୁଖରେ ଅଲଗା ଘରକରି ରହିପାରିବେ । ଏପରି ସ୍ଥଳରେ ଯୁବତୀ ଯୁବକଟିର ଉପାର୍ଜନ ବଢ଼ିଲା ଯାଏ ଅପେକ୍ଷା କରି ରହେ । ଏହିପରି ବାଗ୍‌ଦତ୍ତ ଯୁବକ ଯୁବତୀ ଦଶ ବାର ବର୍ଷ ଯାଏଁ ପରସ୍ପରକୁ ଅପେକ୍ଷା କରି ରହିବାର ଦେଖାଯାଇଛି । ପ୍ରେମର ଏ ଦୃଢ଼ତାର ମହିମାମୟ ଆଦର୍ଶ ଏ ଦେଶରେ କାହିଁ ?

ଖ୍ରୀଷ୍ଟାନ୍ ସଂପ୍ରଦାୟ ଓ ଭାରତର ଆଦିମ ଅଧିବାସୀମାନଙ୍କ ଭିତରେ ମଧ୍ୟ ନିଜେ ନିଜେ ବଛାବଛି ବିବାହ ପ୍ରଥା ପ୍ରଚଳିତ । ସେଥିପାଇଁ ଏହି ଏହି ସଂପ୍ରଦାୟ ସଭ୍ୟମ୍ମନ୍ୟ ହିନ୍ଦୁ ଓ ମୁସଲମାନମାନଙ୍କ ଅପେକ୍ଷା ଅଧିକ ସୁଖୀ ଓ ସ୍ୱାବଲମ୍ବନଶୀଳ । ଆମ୍ଭମାନଙ୍କର ପ୍ରତ୍ୟେକ ଯୁବକ ଯୁବତୀ ଉପାର୍ଜନକ୍ଷମ ନ ହେଲା ଯାଏଁ ବିବାହ କରିବେ ନାହିଁ ବୋଲି ପ୍ରତିଜ୍ଞା କଲେଇ ଆମ ସମାଜର ପଙ୍ଗୁତ୍ୱ ଅନେକ ପରିମାଣରେ ଉଭେଇଯାନ୍ତା ।

ଶ୍ୱେତାଙ୍ଗ ଯୁବକ ଯୁବତୀ ବିବାହ କଲା ପୂର୍ବରୁ ନିଜର ଘର ଠିକ୍‌କରିଥାନ୍ତି । କଲା ମାତ୍ରେ, ବାପ ମା'ର ଘରକୁ ନ ଆସି, ଯାଆନ୍ତି ନିଜର ଘରକୁ । ତେଣୁ ଆମ ଦେଶପରି ଗୁଡ଼ାଏ ମରଦ, ଗୁଡ଼ାଏ ସ୍ତ୍ରୀ ଓ ସେମାନଙ୍କର ପଲେ ପିଲା ଏକାଠି ରହି ଚିର କଳି-କନ୍ଦଳମୟ, ବିଶୃଙ୍ଖଳ, ହାଉଯାଉ ଜୀବନ ଯାପନ କରିବାର ଦୃଶ୍ୟ ସେ ଦେଶରେ ଏବେ ନାହିଁ କି କେବେ ନ ଥିଲା । ପ୍ରତ୍ୟେକ ସ୍ତ୍ରୀ, ପୁରୁଷ ନିଜ ଘରର ଦାୟିତ୍ୱ ନିଜ ମୁଣ୍ଡରେ ନେବାରୁ ଜୀବନରେ ସ୍ୱାତନ୍ତ୍ର୍ୟ, ଆତ୍ମନିର୍ଭରତା, ସଂଯମ, ମିତାଚାରିତା ପ୍ରଭୃତି ଗୁଣ ଆପେ ଫୁଟିଉଠେ ଓ ପୁଅଝିଅମାନେ ଯତ୍ନ, ସୁଶିକ୍ଷା ଓ ଶୃଙ୍ଖଳାମୟ ଜୀବନ ଭିତରେ ବଢ଼ିବାକୁ ପାଆନ୍ତି ।

ଆମ ଦେଶରେ ବାପର ସବୁ ପୁଅ ସ୍ଥାବରାସ୍ଥାବର ସମ୍ପତ୍ତିକୁ ଟିକି ଟିକି କରି ବାଣ୍ଟି

ନିଅନ୍ତି । ଫଳରେ ଚାଷଜମି ସବୁ ହିଡ଼ମାଳ ହେବା ଉପରେ ଏବଂ ଭାଇଭାଇର କଳିରେ ଓକିଲମାନଙ୍କ ପକେଟ ପୁଷ୍ଟିଲାଭକରେ । ଇଂଲଣ୍ଡରେ କିନ୍ତୁ ବାପର ସମ୍ପତ୍ତି ବଡ଼ପୁଅଇ ପାଏ, ଅନ୍ୟ ପୁଅମାନେ କେବଳ ଜୀବିକାର୍ଜନର ଯୋଗ୍ୟତା ପାଇଁ ଯେତିକି ସାହାଯ୍ୟ ଦରକାର ତାହାହିଁ ପାଆନ୍ତି । ଏହା ଫଳରେ ସେ ଦେଶରେ ଚାଷଜମି ସବୁ ବହୁଶତବର୍ଷଧରି ଅଖଣ୍ଡିତ ବିସ୍ତୃତି ଭୋଗକରିଆସୁଛି । ପୁଣି ଜ୍ୟେଷ୍ଠେତର ସନ୍ତାନମାନେ ମାଟିକି ଆଶା ନ କରି, ଜୀବିକାନ୍ୱେଷଣରେ ପୃଥିବୀବ୍ୟାପ୍ତ ହୋଇପଡ଼ିଛନ୍ତି । ଆଜି ଯେ ସଗର ରାଜାର ଷଷ୍ଟିସହସ୍ର ସର୍ବଗ୍ରାସୀ ସନ୍ତାନମାନଙ୍କ ପରି ଇଂରେଜ ଧରାପୃଷ୍ଠର ସର୍ବତ୍ର ଦୁଃସାହସିକ କର୍ମରେ ଲାଗିଥିବାର ଦେଖାଯାଏ, ତା'ର ମୂଳ କାରଣ ଏହିଠାରେ ।

ଆମ ଦେଶରେ ଏ ପ୍ରକାର ଉତ୍ତରାଧିକାରୀତ୍ୱ ପ୍ରଚଳିତ ହେଲେ ଜାତିର ସମୂହ କଲ୍ୟାଣ ହୁଅନ୍ତା– ସନ୍ଦେହ ନାହିଁ । ତେବେ ହେବା ସମ୍ଭବ ନୁହେଁ । ନିଜ–ନିର୍ଭରତାର ଗୌରବାବହ, ସୁଖପ୍ରଦ ଅହଙ୍କାର ଆମ ରକ୍ତରେ ନାହିଁ ।

କର୍ତ୍ତବ୍ୟପରାଣୟତା ଇଂରେଜ ଜାତିର ଆଉ ଏକ ପ୍ରଧାନ ବୈଶିଷ୍ଟ୍ୟ । ସାଧାରଣ ଇଂରେଜ ଭାବପ୍ରବଣ ନୁହେ । ସେ ଉନ୍ମାଦନାକୁ ନାପସନ୍ଦକରେ, ଯାହା ସେ କରେ ତାହା ଭାବିଚିନ୍ତି କରେ; କିନ୍ତୁ ଯଦି ସେ କୌଣସି କାର୍ଯ୍ୟ କରିବ ବୋଲି 'ହଁ' ଭରିଛି, ସେ ପ୍ରାଣଦେଇ ତାହା କରିବ ଏବଂ ତାହା ସୁସମ୍ପନ କରିବ । ଆମ୍ଭେମାନେ ଇଂରେଜକୁ ଜଗତର ସର୍ବବୃହତ୍ ସାମ୍ରାଜ୍ୟର ଶାସକ ଭାବରେହିଁ ଜାଣୁ । କିନ୍ତୁ କୌଣସି ପତ୍ରିକାରେ ପଢ଼ିଥିଲି ଯେ, ଇଉରୋପରେ ଇଂରେଜ ଚାକରମାନଙ୍କର ଚାହିଦା ବେଶି, କାରଣ ଚାକର ଭାବରେ ମଧ୍ୟ ଇଂରେଜ ତା' ପ୍ରଭୁର ଯେପରି ମନତୁଷ୍ଟି କରିପାରେ, ଅନ୍ୟ ଜାତିର ଲୋକେ ସେପରି ପାରନ୍ତି ନାହିଁ । ଅନ୍ୟ ଜାତିର ଲୋକେ ଏଟା ସେଟା କରିବାକୁ କୁଣ୍ଠାବୋଧକରନ୍ତି; କିନ୍ତୁ ଇଂରେଜ ଚାକର କୌଣସି ହେଲେ କାମକୁ କୁଣ୍ଠିତ ହେବେନାହିଁ । ଏଥିପାଇଁ କଣ୍ଟିନେଣ୍ଟରେ ସେମାନେ ଏତେ ପ୍ରିୟ । ଆମେ ବି ଦେଖିଛୁ ଇଂଲିଶ୍ ଲାଣ୍ଡ୍‌ଲେଡ଼ିଗୁଡ଼ିକ ଯେପରି ଖଟନ୍ତି ଓ ସବୁ କାମଗୁଡ଼ିକ ଯେପରି ସୁସମ୍ପନ୍ନ କରି ରଖନ୍ତି, ତାହା ଦେଖିବାର ଜିନିଷ । ଦିବା ବା ରାତ୍ରିର ଯେକୌଣସି ସମୟରେ ଅମୁକ କାମଟି କରିଦେବାକୁ ଆଗରୁ ସେମାନଙ୍କୁ କହି ରଖିଥିଲେ, ଠିକ୍ ସେହି ସମୟରେ ସେହି କାମଟି ନିଶ୍ଚୟ କରାହୋଇଥିବାର ଦେଖିବ । ଇଂଲାଣ୍ଡରେ ମୋର ଲାଣ୍ଡ୍‌ଲେଡ଼ିଟି ଏପରି ଶିକ୍ଷିତା ଯେ, ସେ ଥିଓସଫିକାଲ୍ ସୋସାଇଟିର ମେମ୍ବର । ମୁଁ ଦିନେ ଥିଓସଫିକାଲ୍ ସୋସାଇଟିରେ ଯୋଗ ଦେବାକୁ ଯାଇ ଦେଖେ ତ, ସେଠି ମୋର ଲାଣ୍ଡ୍‌ଲେଡ଼ି – ଅଥଚ ସେ ପ୍ରତିଦିନ ମୋର ରୁମ୍ ସଫାକରେ, ଅଇଣ୍ଠାବାସନ ଧୁଏ, ମୂତ୍ର–କୁଣ୍ଡ ବି ସଫା କରେ, ବିଛଣା କରିଦିଏ, ବହିପତ୍ର ସଜାଡ଼ିଦିଏ, ଅଗ୍ନିକୁଣ୍ଡରେ

ନିଆଁ କରିଯାଏ– ମୋଟ ଉପରେ ମୋ' ଜୀବନକୁ ସ୍ୱଚ୍ଛନ୍ଦ କରିବା ପାଇଁ ଯାହା ଯାହା ଦରକାର, ସେ ତାହା କରିବାକୁ ସବୁବେଳେ ପ୍ରସ୍ତୁତ ଥାଏ । ଏ ଦେଶରେ ଶିକ୍ଷିତ ଓ ଶିକ୍ଷିତା ହେଲେ ଲୋକେ ହାତପାଇଟିକି ଘୃଣାକରନ୍ତି ଓ ତାସ୍, ପଶା, ଚୁଗୁଲି, ଥିଏଟର ଓ ସିନେମାରେ ଅବସର ସମୟ କଟାନ୍ତି; କିନ୍ତୁ ଇଂଲାଣ୍ଡରେ ଯେଉଁ ସ୍ତ୍ରୀ ଏପରି ଶିକ୍ଷିତା ଯେ ସେ ଭାରତୀୟ ଦର୍ଶନ ଚର୍ଚ୍ଚାକରେ, ଅଥଚ ସେ କର୍ତ୍ତବ୍ୟାନୁରୋଧରେ ଅଇଣ୍ଠାବାସନ ମାଜିବା ବା ମୂତ୍ରକୁଣ୍ଡ ସଫା କରିବାକୁ ବି କୁଣ୍ଠା ବୋଧ କରେନାହିଁ । ଏହି ବୟସ୍କା ଲାଣ୍ଡ୍‌ଲେଡ଼ି ପ୍ରତି ତେଣୁ ମୋର ଶ୍ରଦ୍ଧା ଜାଗ୍ରତ ହେଲା ଓ ମୁଁ ଅନେକ ସମୟରେ ତାକୁ ରୁମ୍‌କୁ ଡାକି ତା' ସଙ୍ଗେ କଥାବାର୍ତ୍ତା ହୁଏ । ସେ ଅନେକ ସମୟରେ ମତେ ସୁନ୍ଦର ଉପଦେଶ ଦେଉଥାଏ, ବେଳେ ବେଳେ ଥଟ୍ଟା କରି ହସାଏ ମଧ୍ୟ । ଆମେ ସମସ୍ତେ ଏଇ ନଗଣ୍ୟ ଇଂରେଜ ମହିଳାର କର୍ତ୍ତବ୍ୟବୋଧ ଯଦି ନିଜ ଚରିତ୍ରର ଅଙ୍ଗୀଭୂତ କରିବା ତେବେ ଯାଇ ନିଜକୁ ସଭ୍ୟ ମନେକରିବା, ସୁଖୀ ବି ହେବା ।

ଆମର ଜାତୀୟ ଦୋଷ ହେଉଛି ଏହି ଯେ କୌଣସି କାମ କରିବସିଲେ ହୁଏତ ଆମେ ନ ବୁଝି ନ ବିଚାରି କରୁ ବା ବାଧା ଓ ଅସୁବିଧାର ଛଳନା କରି ପଛେଇଯାଉ । ଇଂରେଜ ବୁଝି ବିଚାରି କାମରେ ହାତ ଦିଏ, ବାଧା, ଅସୁବିଧା ଥିବ ବୋଲି ଧରି ନିଏ; କିନ୍ତୁ ପଛେଇ ନ ଯାଇ ମାଡ଼ିଚାଲେ । ତା'ର ଆଖି ବାଟରେ ଥିବା ବାଧା ଅସୁବିଧା ଉପରେ ନ ଥାଏ, ଥାଏ ଶେଷ ଲକ୍ଷ୍ୟ ଉପରେ । ଆମର ଆଖି କେବଳ ବାଧାଗୁଡ଼ିକ ଉପରେ ଘୂରି ବୁଲେ ।

କର୍ଣ୍ଣାଟ ସମରବେଳେ ଥରେ ଟିପୁ ସୁଲତାନ୍ ଅନେକ ଶତ ଇଂରେଜଙ୍କୁ ବନ୍ଦୀକରି ନେଇଥିଲେ । ସେମାନେ ପ୍ରାୟ ବାରବର୍ଷ କାଳ ରହିଲେ । ଏମାନଙ୍କ ଉପରେ ଏପରି ଅମାନୁଷିକ ଅତ୍ୟାଚାର ହୋଇଥିଲା ଯେ ଏମାନେ ହୁଏତ ମଲେ ବା ପାଗଳହେଲେ । ଇଂରେଜମାନଙ୍କର ସୈନ୍ୟ ସମାବେଶର ସନ୍ଧାନ କହିଦେଇଥିଲେ, ଏମାନଙ୍କୁ ସମସ୍ତ ପ୍ରକାର ସ୍ୱାଚ୍ଛନ୍ଦ୍ୟ ଦିଆଯାଇଥାନ୍ତା; କିନ୍ତୁ କୌଣସିମତେ ତାହା ନକହି, ଏହି ଅଶିକ୍ଷିତ ଓ ଅଳ୍ପ ଶିକ୍ଷିତ ଇଂରେଜ ସିପାହି ଦୀର୍ଘ ବାରବର୍ଷ କାଳ ଅକଥନୀୟ ଅତ୍ୟାଚାର ବରିନେଲେ ।

ଏଇ ପ୍ରକାର ମାନସିକ ଦୃଢ଼ତା ଓ କର୍ତ୍ତବ୍ୟପରାୟଣତା ଆମର ପ୍ରତ୍ୟେକ ଯୁବକ ଓ ଯୁବତୀଠାରୁ ଯେ ପର୍ଯ୍ୟନ୍ତ ଆଶା ନ କରିଛୁଁ, ସେ ପର୍ଯ୍ୟନ୍ତ ଆମର ରାଷ୍ଟ୍ରୀୟ ଦୃଢ଼ତା ଅସମ୍ଭବ ।

ଭଦ୍ରତା ଓ ଭଦ୍ର ବ୍ୟବହାର ଇଂରେଜ ଜାତିର ଆଉ ଏକ ମଧୁର ବୈଶିଷ୍ଟ୍ୟ । ଏହା କେବଳ ବହୁ ଗୁଣ ଭିତରୁ ଗୋଟିଏ ଗୁଣ ନୁହେ, ଏହାହିଁ ଇଂରେଜ– କୃଷ୍ଟିର

ଆଦର୍ଶ । ଆମର. ଆଦର୍ଶ ଯେପରି ନିରାସକ୍ତି, ଇଂରେଜର ଇହଜୀବନର ଆଦର୍ଶ ହେଲା ଜେଣ୍ଟଲମ୍ୟାନ୍ ହେବା । ଏହି ଜେଣ୍ଟଲ୍‌ମ୍ୟାନ୍ ଶବ୍ଦକୁ ଆମେ 'ଭଦ୍ରଲୋକ' ବୋଲି ଅନୁବାଦ କରୁଛୁଁ ସତ; କିନ୍ତୁ ସେ ଶବ୍ଦର ଯାଥାର୍ଥ୍ୟ 'ଭଦ୍ରଲୋକ' ଶବ୍ଦରେ ପ୍ରକାଶ ପାଉ ନାହିଁ । 'ଜେଣ୍ଟଲ୍‌ମ୍ୟାନ୍' ଆଦର୍ଶର ମୂଳ ଭାବ ହେଲା କାହାରି ମନରେ କଷ୍ଟ ନ ଦେବା । ଏଇ ଆଦର୍ଶରୁ ସାଧାରଣ ଇଂରେଜର ମିଠା ବ୍ୟବହାରର ଜନ୍ମ । ଇଂରେଜ ପୁଅ ଝିଅଙ୍କୁ ମୂଳରୁ ଏହି ଆଦର୍ଶରେ ଯତ୍ନର ସହିତ ଗଠନ କରାଯାଏ । ସେମାନେ ପରସ୍ପର ପ୍ରତି ଓ ଅପରିଚିତଙ୍କ ପ୍ରତି ଭଦ୍ର ବ୍ୟବହାର କରିବାକୁ ବାଧ୍ୟ । ଏଥିପାଇଁ ଦୈନନ୍ଦିନ ଜୀବନରେ ନାନା-ଭାବରେ ସଂଯମ ଦରକାର; କିନ୍ତୁ ପିଲାଦିନରୁ ଅଭ୍ୟାସ କରି କରି ଏ ସଂଯମ ସବୁ ଇଂରେଜମାନଙ୍କର ସହଜାତ ହୋଇଯାଏ । ଦଶଜଣ ଭାରତୀୟ ଏକାଠି ହେଲେ କେହି କାହା କଥାକୁ ଅପେକ୍ଷା ନ କରି ଏପରି ଉଚ୍ଚସ୍ୱରରେ କଥା କହିବେ ଯେ, ମନେହେବ ମାଡ଼ଗୋଳ ହେଉଛି । କିନ୍ତୁ ସହସ୍ର ଇଂରେଜଙ୍କୁ ଏକାଠି ରଖିଦିଅ, କୌଣସି ଶବ୍ଦଇ ହେବ ନାହିଁ । ଯେଉଁଠି ଜନତା ଭିତରେ କଥା କହିବାର ଦରକାର ପଡ଼େ, ଇଂରେଜମାନେ ପରସ୍ପରକୁ ଅତ୍ୟନ୍ତ ନିମ୍ନସ୍ୱରରେ କହିଥାନ୍ତି, ଯେପରି ଅନ୍ୟ ପ୍ରତିବେଶୀମାନେ ବିରକ୍ତ ହେବେନାହିଁ । ମୋର ଇଂଲାଣ୍ଡ-ବାସର ପ୍ରଥମଦିନ ବନ୍ଧୁ ଚମନଲାଲ ମତେ ଗୋଟିଏ ରେଷ୍ଟୁରାଣ୍ଟକୁ ନେଇଗଲେ । ଦରଜା ଖୋଲି ଘରେ ପଶିଯାଏ ତ ଦେଖେଁ, ପ୍ରକାଣ୍ଡ ହଲ୍ ଓ ତା'ର ପାର୍ଶ୍ୱଦେଶମାନଙ୍କରେ ଭିନ୍ନ ଭିନ୍ନ କକ୍ଷ । ସବୁଆଡ଼େ ପ୍ରାୟ ପାଞ୍ଚ ଶତରୁ ଅଧିକ ପୁରୁଷ ସ୍ତ୍ରୀ ମଧ୍ୟାହ୍ନ-ଭୋଜନରତ । ପରିବେଷଣକାରିଣୀମାନେ ଖାଦ୍ୟ ଯୋଗେଇଦେଉଛନ୍ତି– ଖାଲି ପ୍ଲେଟ ନେଇଯାଉଛନ୍ତି । ନୂଆ ଲୋକ ଖାଇବାକୁ ଆସୁଛନ୍ତି । ପୂର୍ବରୁ ଆସିଥିବା ଲୋକ ଖାଇ ଓ ଦେୟ ବୁଝେଇଦେଇ ଚାଲିଯାଉଛନ୍ତି; କିନ୍ତୁ ଚାରିଆଡ଼ ତୁନ୍‌ତାନ୍ । ଦୁଆର ଆରପାଖେ କେହି କଳ୍ପନା କରିପାରିବ ନାହିଁ ଯେ ଘରେ ପାଞ୍ଚଶହ ଲୋକ ଖିଆପିଆ କରୁଛନ୍ତି । ଏହା ସମ୍ଭବ ହୁଏ କେବଳ ଏହି କାରଣରୁ ଯେ, ପ୍ରତ୍ୟେକ ଇଂରେଜ କାଳେ ଅନ୍ୟର କିଛି ଅସୁବିଧା ହେବ, କଥାରେ ହେଉ ବା କାମରେ ହେଉ, ଏ ବିଷୟରେ ଚିରଜାଗ୍ରତ । ପ୍ରତ୍ୟେକେ ଅପରର ସ୍ୱାଚ୍ଛନ୍ଦ୍ୟ ପ୍ରତି ସମ୍ମାନ ଦେଖାଇବାକୁ ଚେଷ୍ଟା କରିବାରୁ ଭଦ୍ରତା ସମଗ୍ର ଜାତିର ରକ୍ତର ଅଙ୍ଗୀଭୂତ ହୋଇପଡ଼ିଛି । ତେଣୁ ଦ୍ୱନ୍ଦ୍ୱଯୁଦ୍ଧ ପରେ ଇଂରେଜ ଜେତା ଓ ବିଜେତା ସସ୍ମିତବଦନରେ ପରସ୍ପରର କର ମର୍ଦ୍ଦନ କରି ଘରକୁ ଫେରନ୍ତି; ଅଥଚ ଏ ଦେଶରେ ଫୁଟବଲ ମ୍ୟାଚ୍ ପରି ଅବସରବିନୋଦନରୁ ମୁଣ୍ଡ ଫଟାଫଟି ଆରମ୍ଭ ହୁଏ । ଇଂରେଜ, ଶତ୍ରୁକୁ ମଧ୍ୟ ହସି ହସି କଥା କହେ । ଦୋକାନକୁ ଗଲେ ପ୍ରତ୍ୟେକ ବିକ୍ରେତ୍ରୀ ବାଳିକା 'ଆପଣଙ୍କର କଅଣ ଦରକାର' ଏହି ପ୍ରଶ୍ନଟିକୁ

ଶୁଭ୍ର ସ୍ମିତରେ ମନୋହରଣ କରି କ୍ରେତା ଆଗରେ ପରିବେଷିତ କରିବେ । ଶୁଣିଛି, କୌଣସି ଦୋକାନରେ ଜଣେ ବାଳିକା ବିକ୍ରେତ୍ରୀ ସ୍ମିତାଭିନୟ କରିପାରିଲା ନାହିଁ; ତେଣୁ ଦୋକାନର ମାଲିକ ତାକୁ ବାହାରକରିଦେଲା । ଅପରିଚିତ ଲୋକଙ୍କ ପ୍ରତି, ପଥିକମାନଙ୍କ ପ୍ରତି, ଇଂରେଜର ଭଦ୍ରତା ଓ ସାହାଯ୍ୟର କଥା ଏହି ପୁସ୍ତକରେ ଅନ୍ୟତ୍ର ବର୍ଣ୍ଣିତ ଅଛି ।

ଆମ ଦେଶରେ ଅଭଦ୍ରତାଟାକୁ ଅନେକେ, ବିଶେଷତଃ ତଥାକଥିତ ଶିକ୍ଷିତ ଲୋକେ ପୌରୁଷ ଓ ପ୍ରାଧାନ୍ୟର ଚିହ୍ନ ବୋଲି ମନେକରନ୍ତି – ଏହାଠାରୁ ଅଧିକ ପରିତାପର କଥା କ'ଣ ହୋଇପାରେ ? ବଡ଼ମାନଙ୍କର ଆଦର୍ଶ ଛୋଟମାନେ ଗ୍ରହଣ କରୁଛନ୍ତି । ତେଣୁ ଆଜି ସମଗ୍ର ଭାରତବର୍ଷରେ ଛାତ୍ରସମାଜରେ ଶିକ୍ଷକମାନଙ୍କ ପ୍ରତି ଔଦ୍ଧତ୍ୟ ଓ ଅଭଦ୍ରତା ପରିଲକ୍ଷିତ ହେଉଛି ଓ ତାହା ନେତାମାନଙ୍କର ମଧ୍ୟ ଚିନ୍ତାର ବିଷୟ ହେଲାଣି । ବାଟରେ ଗଲାବେଳେ ମୁଁ ଦେଖେଁ ବେଳେ ବେଳେ ଛାତ୍ରମାନେ ସାରା ରାସ୍ତାର ଏପାଖ ସେପାଖ ମାଡ଼ି ହାତ ଧରାଧରି ହୋଇ ଚାଲିଥିବେ; ଅନ୍ୟ ପଥିକ ଆଡ଼ ହୋଇଯିବ, କିନ୍ତୁ ସେମାନେ ଆଡ଼ ହୋଇ ଯିବାଟାକୁ ବା ରାସ୍ତାର ଏକ ପାଖରେ ଚାଲିବାଟାକୁ କର୍ତ୍ତବ୍ୟ ମନେକରନ୍ତି ନାହିଁ । ଏମାନେ ପରସ୍ପର ଭିତରେ କଥାଭାଷା ହେଲାବେଳେ ମନେ କରନ୍ତି ନାହିଁ ଯେ, ଜଗତରେ ଆଉ କାନ-ଥିବା ଲୋକ ଅଛନ୍ତି । ଛାତ୍ରମାନଙ୍କର ଭୋଜନବେଳର ହଟଗୋଳ ତ ଅସହ୍ୟ । ମନୁଷ୍ୟର ସମଗ୍ର ଚରିତ୍ରର ଗଠନ ଦୈନନ୍ଦିନ ଜୀବନରେ ଏହିପରି ଶତ ଶତ ଛୋଟ ଛୋଟ ଘଟଣାରୁ ହିଁ ଧରାପଡ଼େ । ମୁଁ ଛାତ୍ରମାନଙ୍କ କଥା ଏଠାରେ ବିଶେଷ ଭାବରେ ଉଲ୍ଲେଖ କଲି ଏହି ଉଦ୍ଦେଶ୍ୟରେ ଯେ, ସେହିମାନେ ପରା ଭବିଷ୍ୟତ ଜାତି । ମୁଁ ଏହି ଅଧ୍ୟାୟରେ ଯେତେ କଥା କହିଆସୁଛି, ସବୁ ତାଙ୍କରି ଉଦ୍ଦେଶ୍ୟରେ ଲିଖିତ । ବଡ଼ମାନେ ତ ମୃତ୍ୟୁପଥର ପଥିକ; ତାଙ୍କର ଦୋଷଯାକ ଅନୁକରଣ ନ କରି, ତାଙ୍କର ଗୁଣ ଓ ଇଂରେଜମାନଙ୍କର ଗୁଣ ସବୁର ଅଭ୍ୟାସ କଲେ ଏହି ଛାତ୍ରମାନେ କାଲିର ସ୍ୱାଧୀନ ଭାରତର ସମାଜ ଓ ରାଷ୍ଟ୍ରକୁ ସୁନ୍ଦର ସୁଦୃଢ଼ କରି ଗଢ଼ିପାରିବେ । ସେମାନେ ଆତ୍ମପରୀକ୍ଷା କରି ଦେଖନ୍ତୁ, ଆମକୁ ଇଂରେଜ କାହିଁକି ଶାସନ କରୁଛି ? ଆମ ଅପେକ୍ଷା ଇଂରେଜର ଅଧିକ ବୈଶିଷ୍ଟ୍ୟ ଅଛି ? ବୈଶିଷ୍ଟ୍ୟ ବୁଦ୍ଧିରେ ନାହିଁ, ଦୈହିକ ବଳରେ ନାହିଁ, ଧନରେ ନାହିଁ । ଏ ତିନିଟି କଥା ଆମ ଜାତି ଓ ଦେଶରେ ଯଥେଷ୍ଟ ଅଛି; କିନ୍ତୁ ଅଭାବ ରହିଯାଉଛି ଜାତିର ଚରିତ୍ରରେ । ସେହି ଅଭାବ ସବୁ ଦୂରକରିବାପାଇଁ ଆମକୁ ଇଂରେଜଶୂନ୍ୟ ଭାରତରେ, ଇଂରେଜକୁ ଗୁରୁରୂପେ ମାନି ନିଜକୁ ଚାଳିତ କରିବାକୁ ହେବ ।

—

# ଭୂମିକା

ପ୍ରାୟ ଦୁଇ ବର୍ଷ ପୂର୍ବ ପର୍ଯ୍ୟନ୍ତ ଶାରଳା ଦାସଙ୍କ ମହାଭାରତ, ଲେଖକ ନିକଟରେ ଏକ ଅପଠିତ ଓ ଅପାଠ୍ୟ ପୁସ୍ତକ ଥିଲା ।

ପ୍ରତିବର୍ଷ କାର୍ତ୍ତିକ ମାସରେ ଆମ ଘରେ ମାସବ୍ୟାପୀ ପୁରାଣ ପାଠ ହୁଏ । ପ୍ରତି ବର୍ଷ ଏକ ଏକ ନୂଆ ପୁରାଣ ଧରାହୁଏ । ସମଗ୍ର ଗାଁଟି ଆମ ପିଣ୍ଡା ଓ ଚାନ୍ଦିନୀରେ ଜମା-ହୋଇ ଶୁଣୁଥିଲେ । ଏଇପରି ଭାବରେ ଥରେ ପିଲାଦିନେ ସ୍କୁଲରୁ ଛୁଟିରେ ଆସିଥିବା ସମୟରେ ପ୍ରଥମକରି ଶାରଳା ମହାଭାରତ ଶୁଣିଥିଲି, ଗ୍ରାମ-ପୁରୋହିତ ସ୍ୱର୍ଗତ ରାମ ପଣ୍ଡାଙ୍କ ସୁଲଳିତ ପଠନ-କଳା ନେଇ ।

ତା'ପରେ ବାଣପୁରରେ ମାଇନର୍ ସ୍କୁଲରେ ପଢ଼ିଲାବେଳେ, ଖୋର୍ଦ୍ଧା ହାଇସ୍କୁଲରେ ପଢ଼ିଲାବେଳେ, ପୁଣି କଟକରେ କଲେଜରେ ପଢ଼ିଲାବେଳେ, ଶାରଳା ମହାଭାରତକୁ ଆମୂଳ ଶେଷ ଥରେ ଭଲଭାବରେ ପଢ଼ିବାର ଚେଷ୍ଟା ଲେଖକ କରିଛି, କିନ୍ତୁ ପାରିନି । କବିଙ୍କ ଉତ୍କଟ କଳ୍ପନାର ନାନା ଗୁଳ୍ମ-କଣ୍ଟକ-ବନସ୍ପତିମୟ ଜଙ୍ଗଲରେ ପଶି, ପଳେଇ ଆସିବାକୁ ଚେଷ୍ଟା କରିଛି ସିନା, ସେ ଭିତରକୁ ଯାଇ ପଥ ହରେଇବାର ଦୁଃସାହସିକତାକୁ ସେ ବରଣ କରିପାରିନି, ଯେପରି ସେ କରିଛି ଏକାଧିକ ଅନ୍ୟ ପ୍ରାଚୀନ ଓଡ଼ିଆ କବିଙ୍କୁ ଜାଣିବା ପାଇଁ ।

ଅବଶ୍ୟ ସେହି ଛାତ୍ରାବସ୍ଥାରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ 'ଶାରଳାଚରିତ' କେବଳ ଜୀବନୀ ଭାବରେ ଲେଖକ ପଢ଼ିନେଇଥିଲା । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଶାରଳା ମହାଭାରତର ସମାଲୋଚନା ଲେଖକ କେବଳ ସାମାନ୍ୟ ଭାବରେ ପଢ଼ିଥିଲା ପ୍ରାଚୀନ 'ଉତ୍କଳ-ସାହିତ୍ୟ'ର କ୍ରମପ୍ରକାଶିତ ପୃଷ୍ଠାମାନଙ୍କରେ ।

ପ୍ରାୟ ତିନିବର୍ଷ ତଳେ ଭାରତ ସାହିତ୍ୟ ଏକାଡେ଼ମୀ ଲେଖକ ଉପରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବାର ଭାର ଦେଲେ ।

ବର୍ତ୍ତମାନ, ଯେତେ ବିରାଗ ଥାଉ ପଛେ, କୌଣସି ପ୍ରସିଦ୍ଧ ଓଡ଼ିଆ କବିଙ୍କି ଭଲ ଭାବରେ ଜାଣିବାର ଚେଷ୍ଟା ନକରି ବାଟ କାହିଁ ? ଲେଖକ ତେଣୁ ଶାରଳାମହାଭାରତକୁ ଯଥାସାଧ୍ୟ ଚିହ୍ନିବାର ଚେଷ୍ଟା କଲା, ବାଧ୍ୟ ହୋଇ । ପଥପ୍ରଦର୍ଶକ ଭାବରେ ସେ ପ୍ରଥମ ଥର କରି ପଣ୍ଡିତ ଗୋପୀନାଥ ନନ୍ଦଙ୍କ ଶାରଳା ମହାଭାରତ ଉପରେ ଲେଖା 'ଭାରତଦର୍ପଣ' ବହିଟି ଏମୁଣ୍ଡ ସେମୁଣ୍ଡ ଯାଏ ପଢ଼ିଲା ଏବଂ ସେଇ ଅନୁଯାୟୀ ଶାରଳାଙ୍କ

ଅପରିଚିତ ମହାଦେଶର ଖଣ୍ଡେ ଖଣ୍ଡେ ଆବିଷ୍କାର କରିବାକୁ ଲାଗିଲା ।

ଇତିମଧ୍ୟରେ ଚଳନ୍ତି ଓଡ଼ିଆ ସାହିତ୍ୟରେ ଶାରଳା ଦାସଙ୍କୁ ନେଇ ବେଶ୍ ଉତ୍ସାହ ଓ ଉତ୍ତେଜନା ଦେଖାଯାଇଛି । ତାଙ୍କର କଳ୍ପିତ ଜନ୍ମସ୍ଥାନ କନକପୁର ଗ୍ରାମରେ କବି ଯାହାଙ୍କୁ ଉପାସନା କରିଥିଲେ ବୋଲି ପ୍ରଚାର କରାଯାଉଛି– ସେହି ଶାରଳା ଦେବୀ ମନ୍ଦିର ଆଗରେ ଖୁବ ଜାକଜମକରେ କବିଙ୍କ ପାଇଁ ଏକ ସ୍ମୃତି-ସ୍ତମ୍ଭ ସ୍ଥାପନ କରାଯାଇଛି । କବିଙ୍କ ପ୍ରକୃତ ଜନ୍ମସ୍ଥାନ ଝଙ୍କଡ଼ ଗ୍ରାମ, ସେଠାରୁ ଦୁଇ ମାଇଲ୍ ଦୂରରେ ଓ କବିଙ୍କ ସମୟର ଶାରଳା-ମନ୍ଦିର ଏକ ମାଇଲ ପଛକୁ, ବର୍ତ୍ତମାନ କେବଳ କେତେଖଣ୍ଡ ପ୍ରସ୍ତରାବଶେଷ । ତେଣେ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି କବିଙ୍କ ଜନ୍ମସ୍ଥାନ ଓ ଜନ୍ମକାଳ ନେଇ ଆମ୍ଭମାନଙ୍କର ସମସ୍ତ ପୂର୍ବ ଧାରଣା ଉପରେ କୁଠାର ଚଳେଇବା ଆରମ୍ଭ କରିଛନ୍ତି । ଡ: କୃଷ୍ଣଚନ୍ଦ୍ର ପାଣିଗ୍ରାହୀ କିନ୍ତୁ ଶାରଳା-ମହାଭାରତରେ ଓଡ଼ିଶାର ଚତୁର୍ଦ୍ଦଶ-ପଞ୍ଚଦଶ ଶତାବ୍ଦୀର ଇତିହାସର ପ୍ରଚ୍ଛନ୍ନ ଅବସ୍ଥାନ ଉଦ୍‌ଘାଟନ କରି ଶାରଳା ଦାସଙ୍କ ରଚନାକୁ ଏକ ଅକଳ୍ପନୀୟ ଭୂମିକାରେ ଠିଆକରାଇଛନ୍ତି ।

ଶାରଳା ଦାସଙ୍କ ଉପରେ ଓଡ଼ିଆରେ ଯାହା କିଛି ଲେଖାହୋଇଛି, ଲେଖକ ତାହା ପଢ଼ିଛି । କିନ୍ତୁ ସେ ଦେଖିଲା ଯେ ନାନା ଆଲୋଚନାର ଗଣ୍ଡଗୋଳ ଭିତରେ ବିଚାରା ସାହିତ୍ୟିକ ଶାରଳା ଦାସ ଏକାବେଳକେ ବିସ୍ମୃତ । ଏ ଦିଗରେ ପଣ୍ଡିତ ଗୋପୀନାଥ ନନ୍ଦ ସାମାନ୍ୟ ସୂଚନା ଦେଇଯାଇଥିଲେ ମାତ୍ର । କିନ୍ତୁ ସାହିତ୍ୟ ସ୍ରଷ୍ଟା ଭାବରେ ଶାରଳା ଦାସଙ୍କୁ ଆମେ କି ଭାବରେ ଦେଖିବା, ତା'ର ଆଲୋଚନାର ଚେଷ୍ଟା ମଧ୍ୟ ହୋଇନାହିଁ । ଯେଉଁ ଓଡ଼ିଆ-ସାହିତ୍ୟର ଇତିହାସ ଲେଖକ ଇଂରାଜୀରେ ଲେଖିଯାଇଛି ଅନ୍ୟଭାଷୀ ଲୋକେ ପଢ଼ିବାପାଇଁ, ସେଥିରେ ଶାରଳା ଦାସଙ୍କ ଜନ୍ମସ୍ଥାନ ବା ଜନ୍ମକାଳର ଯୁକ୍ତିତର୍କ ନେଇ ଆଲୋଚନାର ବିଶେଷ ମୂଲ୍ୟ ନାହିଁ । ସେଠି କେବଳ ବିଚାର ହୋଇଛି ମହାକାବ୍ୟର ଲେଖକ ଭାବରେ ଏହି କବିଙ୍କର ବୈଶିଷ୍ଟ୍ୟ କ'ଣ ।

ଏଇ ଦୃଷ୍ଟିରୁ ହିଁ ଲେଖକ ଶାରଳା ମହାଭାରତକୁ ଗତ ଦୁଇ ବର୍ଷ ଧରି ଆଲୋଚନା କରି ଆସିଛି । ଏବଂ ତାହାର ଯାହା ସିଦ୍ଧାନ୍ତ ସେ ତାହା ସନ୍ନିବେଶିତ କରିଛି ତା'ର ଇଂରାଜୀରେ ଲେଖା ଓଡ଼ିଆ ସାହିତ୍ୟର ଇତିହାସରେ । ଏଇ ଯେ ଓଡ଼ିଆ ପୁସ୍ତକ, ଏ କେବଳ ସେଇ ଇଂରାଜୀ ଲେଖାର ଅଭିବର୍ଦ୍ଧିତ ସଂସ୍କରଣ ମାତ୍ର । ଏ ପୁସ୍ତକରେ ଓଡ଼ିଆ ପାଠକମାନେ ଶାରଳା ଦାସଙ୍କ ଜନ୍ମ ଓ କାଳ ନେଇ, ତାଙ୍କର ଜାତି, ଗୋତ୍ର ନେଇ, ତାଙ୍କର ଇତିହାସ, ଭୂଗୋଳ ନେଇ ଯାହାସବୁ ବାଦ ବିବାଦ ତାହାର କୌଣସି ସୂଚନା ଖୋଜିଲେ ନିରାଶ ହେବେ । ଏ ସମସ୍ତ ପୁସ୍ତକଟି କେବଳ ସାହିତ୍ୟସ୍ରଷ୍ଟା ଶାରଳାଦାସଙ୍କୁ ନେଇ । କବି ଓଡ଼ିଆ ଭାଷାକୁ କ'ଣ ଦେଇଯାଇଅଛନ୍ତି ଓ ଦେଇ ପାରି

ନାହାନ୍ତି ଓ କାହିଁକି, ତାହାରି ଆଲୋଚନା ହିଁ ଏ ପୁସ୍ତକ ।

ଲେଖକ ନିକଟରେ ଶାରଳା ମହାଭାରତ ଏ ପର୍ଯ୍ୟନ୍ତ ଏକ ଜଙ୍ଗଲ । ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି ଶାରଳାଙ୍କ ଆଦିମ ରଚନା ପ୍ରତି ଆମର ଦୃଷ୍ଟି ଆକର୍ଷଣ କରି ଅତ୍ୟନ୍ତ କାଳୋପଯୋଗୀ କାମ କରିଛନ୍ତି । ସେହି ଦୃଷ୍ଟିରୁ ଶାରଳା ମହାଭାରତର ଏକ ଶୁଦ୍ଧ ସଂସ୍କରଣ ଶୀଘ୍ର ପ୍ରକାଶିତ ହେବା ଉଚିତ । ତା' ସଙ୍ଗେ ସଙ୍ଗେ ଶାରଳା ମହାଭାରତର, କବିଙ୍କର ଆଦିମ ଶୈଳୀକୁ ସୁରକ୍ଷିତ ରଖି ଏକ ସଂକ୍ଷିପ୍ତ ସଂସ୍କରଣ ମଧ୍ୟ ଏକାନ୍ତ କରଣୀୟ । ଓଡ଼ିଶାର ସାଧାରଣ ପାଠକ ଓ ଅନ୍ୟ ଭାଷାଭାଷୀଙ୍କ ସୁବିଧାପାଇଁ ଏ ପ୍ରକାର ସଂସ୍କରଣ ଏକାନ୍ତ ଆବଶ୍ୟକ, ଯେଉଁଥିରେ ଆମେ କବିଙ୍କ ରଚନାରେ ଉତ୍କୃଷ୍ଟାଂଶ ହିଁ କେବଳ ଦେଖିବାକୁ ପାଇବା ।

୧୫।୧୨।୧୯୫୮ ମାୟାଧର ମାନସିଂହ

ହେମାଳୟ,
ଥୋରିଆ ସାହି,
କଟକ ।

# ମାଟିର ମହାକବି ଶାରଳାଦାସ

ଭାରତବର୍ଷର କୌଣସି ଭାଷାରେ ମହାଭାରତ ପରି ମହାକାବ୍ୟ ଆମର ଶାରଳା ଦାସଙ୍କ ପରି କେବଳ ମାତୃଭାଷା ଜାଣିଥିବା ଜଣେ ପ୍ରକୃତ କୃଷିକାରୀ ଦ୍ୱାରା ରଚିତ ହୋଇନାହିଁ । ପୁଣି ଏପରି ଅ-ପଣ୍ଡିତ ବ୍ୟକ୍ତି ଦ୍ୱାରା ରଚିତ ହେଲେହେଁ, କାବ୍ୟ-କଳା ବା ସୃଜନ-ନୈପୁଣ୍ୟରେ ଶାରଳା ଦାସଙ୍କ ମହାଭାରତକୁ ଅନ୍ୟ ଯେକୌଣସି ଦେଶୀ ମହାଭାରତଠାରୁ ନ୍ୟୂନ ବିଚାରିବାର ମଧ୍ୟ କୌଣସି ହେତୁ ନାହିଁ । ବରଂ ଅନ୍ୟ ମହାଭାରତ ସବୁ ଊଣା ଅଧିକେ ମୂଳର ପ୍ରତିବିମ୍ବ, କିନ୍ତୁ ଶାରଳାଙ୍କ ଓଡ଼ିଆ ମହାଭାରତ, ସ୍ୱକୀୟ ମହିମାରେ ଆଜି ଏକ ମୌଳିକ ରଚନାର ମର୍ଯ୍ୟାଦା ଦାବି କରେ । ସେ ମର୍ଯ୍ୟାଦା ପୁଣି କେବଳ ଭିନ୍ନତାରେ ପର୍ଯ୍ୟବସିତ ବୋଲି କେହି ଭାବିବା ଉଚିତ ନୁହେଁ । ତାହା ପ୍ରତିଭାର ରହସ୍ୟମୟ, ଗୌରବମୟ ସ୍ପର୍ଶରେ ଉଦ୍‌ଭାସିତ ହୋଇ, ସମସ୍ତଙ୍କଠାରୁ ବିସ୍ମିତ ପ୍ରଣତି ଆପେଇ ଘେନିଯାଏ ।

ଛ'ଶତ ବର୍ଷ ପରେ ଆଜି ଆମେ ଦେଖୁଛୁ ଯେ ଓଡ଼ିଶାର ଏହି ପ୍ରଥମ ବିରାଟ ସ୍ରଷ୍ଟା ଯେ ମାଟିର ପୁତ୍ର ଚଷା ଥିଲେ, ତାହା ଏ ଦେଶର ସାହିତ୍ୟ ପ୍ରତି ଏକ ପରମ ଆଶୀର୍ବାଦ । ସେହି ଚଷା ଯେ ସଂସ୍କୃତ ଜାଣିନଥିଲେ ବା ବିଦ୍ୟାବନ୍ତ ନଥିଲେ, ସେ ପୁଣି ଆଉ ଏକ ଅଧିକ ଆଶୀର୍ବାଦ । ଚଷାପୁଅ ସିଦ୍ଧେଶ୍ୱର ପରିଡ଼ା ଝଙ୍କଡ଼ ଗ୍ରାମରେ ମାଟି ଚାଷ କରିବା ସଙ୍ଗେ ସଙ୍ଗେ, ଜନ୍ମହୋଇଥିଲା ତା'ର ଅଜ୍ଞାତ, ଅବଜ୍ଞାତ ଭାଷାକୁ ମଧ୍ୟ ଚାଷ କରି ଥୋଇଯିବ ବୋଲି କାବ୍ୟର ଏକ ବିରାଟ ଶାଶ୍ୱତ ଧାନଗଦା । ତାକୁ ବିଧାତା ଚଷାଘରେ ଜନ୍ମ ଦେଇଥିଲା ଏଇ ଉଦ୍ଦେଶ୍ୟରେ ଯେ ସେ ମାଟିର ଭାଷାରେ ମାଟିର ପିଲେ ବୁଝିବା ଭଳି ମାଟିର ନାରୀପୁରୁଷଙ୍କୁ ନେଇ ପୁରାଣ ଲେଖିଯିବ, ଯେଉଁଥିରୁ ସେମାନେ ପାଇବେ ମାନସିକ ଆନନ୍ଦ ଓ ପ୍ରଜ୍ଞା, ଯେଉଁ ଉଭୟଥିରୁ ସେମାନଙ୍କୁ ବଞ୍ଚିତ କରି ରଖିଥିଲା ଉଚ୍ଚବର୍ଣ୍ଣର ଏକଚାଟିଆ ସଂସ୍କୃତଭାଷା । ଓଡ଼ିଶା ମାଟିର କବି ଶାରଳା ଦାସ ଓ ତାଙ୍କର ମହାଭାରତ ଓଡ଼ିଶା ମାଟିର ମର୍ମବାଣୀ । ଶାରଳାଦାସଙ୍କ ମହାଭାରତ କେବଳ କୁରୁ-ପାଣ୍ଡବଙ୍କ ଯୁଦ୍ଧର ଗାଥା ନୁହେଁ, ଏହା ଓଡ଼ିଆ ଜାତିର ପ୍ରକୃତ ଓ ପ୍ରକୃଷ୍ଟ ଜାତୀୟ ମହାକାବ୍ୟ ।

ଶାରଳା ମହାଭାରତର କାବ୍ୟଗୌରବର ବିଚାର ଛାଡ଼ିଦେଲେ ହେଁ, ସେ ଯେଉଁ କାଳ ଓ ଅବସ୍ଥାରେ ଓ ଯେପରି ମାନସିକ ପାଣ୍ଠି ନେଇ ଏପରି ଏକ ବିରାଟ

ପୁସ୍ତକ ଲେଖିବସିଲେ, ତାହାହିଁ ତାଙ୍କର ଅନନ୍ୟସାଧାରଣ ପ୍ରତିଭାର ସୂଚନା ଦିଏ । ଅନ୍ତର୍ନିହିତ ପ୍ରତିଭାର ଅବାରଣୀୟ ଉଦ୍‌ବେଗ ନ ଥିଲେ, ଜଣେ ଦରପାଠୁଆ ଚଷା ଏ ଉପହସନୀୟ ଚେଷ୍ଟା କରିନଥାନ୍ତା । ସେତେବେଳେ ଓଡ଼ିଆରେ ଯଦି କିଛି ଲେଖା ଥିଲା, ସେ କେବଳ ଗୋଟିଏ ଦୁଇଟି କ୍ଷୁଦ୍ର କବିତା, କେତୋଟି ବା ବ୍ରତ କଥା, କେତେକ ପଲ୍ଲୀ କବିତା ବି ଥାଇପାରେ । ପୁଣି ଏ ସବୁ ଦେଶର ଜନତା ଭିତରେ ଲୁଚେଇ ଚୋରେଇ ପ୍ରଚଳିତ ମାତ୍ର ଥିବ । ଦେଶର ରାଜା ବା ପଣ୍ଡିତଙ୍କ ନିକଟରେ ଓଡ଼ିଆରେ କାବ୍ୟକବିତା ରଚନା ସେତେବେଳେ ତାଚ୍ଛଲ୍ୟ ଓ ଘୃଣାର ଘଟଣା । ଏଇପରି ଏକ ଘୃଣ୍ୟ ଉପହସନୀୟ ଅପାଂକ୍ତେୟ ଭାଷାରେ ଜଣେ ଅପଣ୍ଡିତ ଚଷା ବାହାରିଲା, ଛୋଟ ଚୌପଦୀ, ଚଉତିଶା ନୁହେଁ ମହାଭାରତ, ରାମାୟଣ ପରି ବିରାଟ ମହାଗ୍ରନ୍ଥ ସବୁ ଲେଖିବାପାଇଁ । କେବଳ ଭାବିଲା ସେ ନାହିଁ, ଗୋଟାକ ପରେ ଗୋଟେ ମହାଗ୍ରନ୍ଥ ସେ ଲେଖିଚାଲିଲା । ପୁଣି ଲେଖିଲା ତା'ର ନିଜର ଅନବଦ୍ୟ ଶୈଳୀରେ, ଯାହା ଖାଣ୍ଟି ଲୋକମୁଖର ଭାଷାକୁ ଦେଇଯାଇଛି ଗୌରବାଢ୍ୟ ସାହିତ୍ୟିକ ମର୍ଯ୍ୟାଦା ଚିରଦିନ ଲାଗି । ସେହି ବରେଣ୍ୟ କୃଷକପ୍ରତିଭାକୁ ଆମ ସମସ୍ତଙ୍କର ନମସ୍କାର ।

ମୂଳ ମହାଭାରତ ପଢ଼ିଲେ ଆଜି ଆମର ଏଇ ହୃଦ୍‌ବୋଧ ହେବ ଯେ ଏହା କେବଳ ବ୍ରାହ୍ମଣ ଓ କ୍ଷତ୍ରିୟ, ରାଜା ଓ ତାଙ୍କ ପୁରୋହିତମାନଙ୍କର ଗ୍ରନ୍ଥ । କାରଣ, ସମଗ୍ର କାବ୍ୟଟି ଯେ କେବଳ ଏଇ ଶ୍ରେଣୀର ନରନାରୀଙ୍କ ଲେଖା ତାହା ନୁହେଁ, ଯେତେ ସବୁ ହିତୋପଦେଶ ସେଥିରେ ଦେଖିବାକୁ ମିଳେ, ସେ ସବୁ ମଧ୍ୟ ଏଇମାନଙ୍କର କଲ୍ୟାଣକୁ ଲକ୍ଷ୍ୟକରି । କିନ୍ତୁ ଶାରଳାଦାସଙ୍କ ମହାଭାରତ ଯେ ଏକାନ୍ତଭାବରେ ବୈଶ୍ୟ-ଶୂଦ୍ରର ସାହିତ୍ୟ, ସେହି ଲକ୍ଷ୍ୟ ଓତପ୍ରୋତଭାବରେ ସେହି ମହାଗ୍ରନ୍ଥର ମୂଳରୁ ଶେଷଯାଏ ପରିବ୍ୟାପ୍ତ । ମୂଳ ମହାଭାରତର ଶାନ୍ତି ଓ ଅନୁଶାସନ ପର୍ବ ନାନାବିଧ ଉପଦେଶରେ ଭରା । ପଦ୍ଦୁ ପଦ୍ଦୁ ଧୈର୍ଯ୍ୟଚ୍ୟୁତି ବାରମ୍ବାର ଘଟେ, ପୁଣି ସେଥିରୁ ଅଧିକାଂଶ ଆଜିକାର ଭାରତବର୍ଷରେ ମୂଲ୍ୟହୀନ କେବଳ ନୁହେଁ, ଉପହସନୀୟ ମଧ୍ୟ । ଶାରଳାଙ୍କ ମହାଭାରତରେ ଶାନ୍ତିପର୍ବରେ ଶରଶଯ୍ୟାଶାୟୀ କୁଳବୃଦ୍ଧ ଭୀଷ୍ମଙ୍କ ମୁଖରୁ ଓ ସ୍ୱର୍ଗାରୋହଣ ପର୍ବରେ ଯୁଧିଷ୍ଠିରଙ୍କ ମୁଖରୁ ଆମ୍ଭେମାନେ ସାମାନ୍ୟ କିଛି ଉପଦେଶ ପାଉ; କିନ୍ତୁ ସେ ସମଗ୍ରଟା ମୁଖ୍ୟତଃ କୃଷକର । ତାହା ସମାଜର ନିମ୍ନସ୍ଥ ଜନତାର ଦୃଷ୍ଟିକୋଣରୁ ହିଁ ଲେଖା । ଯୁଧିଷ୍ଠିର ମହାରାଜା, ପୃଥିବୀରୁ ବିଦାୟ ନେଲାବେଳେ ନାତି ପରୀକ୍ଷିତଙ୍କୁ ରାଜନୀତି ଶିକ୍ଷା ଦେବା ପୂର୍ବରୁ ପ୍ରଥମେ ନିଜ ହାତରେ ମାପି ଆଦର୍ଶ ନଳ ଓ ପଦିକା କ'ଣ, ଆଦର୍ଶ ଜମି ବାଟିକ କେତେ ଓ ସେଥିରୁ ଚାଷୀ ସଞ୍ଜାରେ କେତେ ପାଇବା ଉଚିତ ଓ ରାଜା ତା'ଠୁ କେତେ

ପରିମାଣ ଶସ୍ୟ କର ଭାବରେ ନେବା ଉଚିତ, ତାହା ହିଁ ଦେଖାଇଦେଇଛନ୍ତି । ଆଜି ଆମର ବିଧାନସଭାରେ ଆମର ଲୋକପ୍ରତିନିଧି ସରକାର, ଚାଷୀ ଓ ଭାଗଚାଷୀ ପ୍ରତି ନ୍ୟାୟ ବିଚାରପାଇଁ ଯାହା କରିବାକୁ ଯାଉଛନ୍ତି, ଛଅଶବର୍ଷ ତଳେ କୃଷକ କବି ଶାରଳାଦାସ ନ୍ୟାୟପରାୟଣ ମହାରାଜ ଯୁଧିଷ୍ଠିରଙ୍କୁ ଦେଇ ସେୟା କରେଇ ନେବାର ହିଁ ଚେଷ୍ଟା କରିଥିଲେ । ଜାତିର ସମୂହ କଲ୍ୟାଣ ଦୃଷ୍ଟିରୁ ଛଅଶ ବର୍ଷ ତଳେ ଦିନେ ଏହି ପ୍ରତିଭାବାନ୍ ଦୂରଦ୍ରଷ୍ଟା କବି ଦେଶର ଶାସକକୁ ଯେଉଁ ଅନ୍ୟ ଏକ ମହାନ୍ ଉପଦେଶ ଦେଇଥିଲେ, ତାହା ମଧ୍ୟ ଏବର ଶାସକଗୋଷ୍ଠୀ ସ୍ମରଣ କରିବେ କି ? ଶାରଳାଦାସ ଭୀଷ୍ମଙ୍କ ମୁଖରେ ମହାରାଜ ଯୁଧିଷ୍ଠିରଙ୍କୁ ଏଇ ଶେଷ ଉପଦେଶ – ''ଗୁଣୀ ଗୁଣ ଜାଣିକରି କରୁଥିବୁ ପୂଜା / କବିମାନଙ୍କୁ କୃପଣ ନ ହୋଇବୁ ରାଜା ।'' – କାହିଁକି ଦେଇଥିଲେ, ଦେଶର ଶାସକବର୍ଗ ଆଜି ଟିକିଏ ବିଚାରକୁ ଆଣନ୍ତୁ ।

ଏ ପର୍ଯ୍ୟନ୍ତ ଶାରଳାଙ୍କ ଅନେକ ଗଳ୍ପ ଉପାଖ୍ୟାନ ଆମେ ହସରେ ଉଡ଼େଇ ଦେଉଥିଲୁ । ଉପହାସର ବିଷୟମାନଙ୍କ ଭିତରୁ ବୃଦ୍ଧ ମହାରାଜ ଯୁଧିଷ୍ଠିରଙ୍କର ଯାଜପୁରରେ ହରିସାହୁ ବଣିଆର କନ୍ୟା ସୁହାଣୀକୁ ବିବାହ କରିବା ଏକତମ । ବରେଣ୍ୟ ଯୁଧିଷ୍ଠିରଙ୍କୁ ବୃଦ୍ଧବୟସରେ ଏପରି ଏକ କାମାସକ୍ତ ପୁରୁଷ ଭାବରେ ଚିତ୍ରିତ କରିବା ମୂଢ଼ତା ଓ ଅଧମତାର ହିଁ ଚିହ୍ନ ବୋଲି ଧରିନେବାର କଥା, ଧରି ମଧ୍ୟ ନିଆଯାଇଛି, ଶାରଳା ମହାଭାରତକୁ ଏକ ନିକୃଷ୍ଟ ଗ୍ରନ୍ଥରୂପେ ପ୍ରମାଣ କରେଇବାପାଇଁ । କିନ୍ତୁ ତତ୍ତ୍ୱ ଓ ସତ୍ୟ ଆଦୌ ତାହା ନୁହେଁ । ଏଇ ଉପଖ୍ୟାନର ଲକ୍ଷ୍ୟ ଓ ମର୍ମ ବୁଝିଲେ ଆଜି ଆମେ ଏହି ଛଅଶ ବର୍ଷ ତଳର ବରେଣ୍ୟ କୃଷକ କବିର ମନୀଷା ଓ ଲୋକୋପଚିକୀର୍ଷାକୁ ନମସ୍କାର ନ କରି ରହିପାରିବା ନାହିଁ । ନିଜର ପୁଣ୍ୟ ପ୍ରଭାବରେ ସୁହାଣୀକୁ କେବଳ ଯମ ମୁହଁରୁ ରକ୍ଷାକରିବାପାଇଁ ହିଁ ଯୁଧିଷ୍ଠିର ହରିସାହୁ, ତତ୍ରତ୍ୟ ଜନତା ଓ ନିଜ ଭାଇମାନଙ୍କ ଅନୁରୋଧରେ ଏ ବିବାହରେ ରାଜି ହୋଇଛନ୍ତି । ଏଣେ ସୁହାଣୀକି ଯୁଧିଷ୍ଠିର ପତ୍ନୀଭାବରେ ଗ୍ରହଣ କଲାବେଳେ ତେଣେ ଅର୍ଜ୍ଜୁନ ଓ ସହଦେବ ମୃତ୍ୟୁଦେବତା ସଙ୍ଗେ ସମରଲିପ୍ତ । ଜଣେ ଅଜ୍ଞାତ ଅବଜ୍ଞାତ ଲୋକର ଉପକାର ପାଇଁ ମଧ୍ୟ ପୁଣ୍ୟଶ୍ଳୋକ ଯୁଧିଷ୍ଠିର ଓ ଧର୍ମପ୍ରାଣ ପାଣ୍ଡବ ଭାଇମାନେ କ'ଣ କରିପାରନ୍ତି, ଏଇ ହରିସାହୁ ଘଟଣା ତାହାର ଏକ ଚରମ ଦୃଷ୍ଟାନ୍ତ । ଏହା ବୌଦ୍ଧ ଜାତକମାନଙ୍କର ବୋଧିସତ୍ତ୍ୱ ଆଦର୍ଶର ଅନ୍ୟ ଏକ ରୂପ ମାତ୍ର । ଯୁଧିଷ୍ଠିରଙ୍କର ଚରିତ୍ରରେ ଏଇ କରୁଣାର ମହନୀୟ ପ୍ରକାଶ ଫୁଟେଇବା ସଙ୍ଗେ ସଙ୍ଗେ, ଶାରଳାଦାସ ଏଇ କ୍ଷତ୍ରିୟ-ବୈଶ୍ୟ, ପୁଣି ଯୁଧିଷ୍ଠିରଙ୍କ ପରି ବରେଣ୍ୟ ପୁରୁଷ ସହିତ ବୈଶ୍ୟ କନ୍ୟାର ବିବାହ ଦେଇ ଜାତିପ୍ରଥାର ବିଲୋପ ଓ ନିମ୍ନସ୍ଥ ପାଟକଜାତିର ଉନ୍ନୟନର ଯେ ଏକ ସୁଚତୁର ପ୍ରଶଂସନୀୟ ଚେଷ୍ଟା କରିଛନ୍ତି,

ଏଥିରେ ସନ୍ଦେହ ନାହିଁ । ଶାସକ, କୃଷକ ଓ ବ୍ୟବସାୟୀ– ଶାରଳାଦାସ ସମାଜର ଏଇ ତିନୋଟି ପ୍ରଧାନ ସ୍ତମ୍ଭ ପ୍ରତି ହିଁ ଦୃଷ୍ଟି ଦେଇ ତାଙ୍କର ଶାନ୍ତି ଓ ସ୍ୱର୍ଗାରୋହଣ ପର୍ବ, ଅର୍ଥାତ୍ ମହାଭାରତର ଶେଷକଥା ଯେପରି ଲେଖିଯାଇଛନ୍ତି ! ମହାଜନର ସଂସ୍ପର୍ଶରେ ଆସି ଦୋକାନୀ ହରିସାହୁ ମହାମନା ହୋଇଉଠିଛି । ତା' ଝିଅପାଇଁ ବନ୍ଧାହୋଇଥିବା ଯମର କଷ୍ଟ ସେ ସହି ନ ପାରି ଅର୍ଜୁନଙ୍କୁ ଯାଇ ସେ ଅନୁରୋଧ କରିଛି, ତାକୁ ମୁକ୍ତି ଦେଇଦେବା ପାଇଁ । ଯମ ତାକୁ ବର ମାଗିବାକୁ କହିଲେ, ସେ ନିଜ ପାଇଁ କିଛି ନ ମାଗି, ହରିସାହୁ ତା' ଜାତିର ସୌଭାଗ୍ୟ ଭିକ୍ଷା କରିଛି । ଯମ କିନ୍ତୁ ଠିକ୍ ବୌଦ୍ଧରୀତିରେ ବୈଶ୍ୟଜାତି ଦୀର୍ଘଜୀବୀ ଓ ଭାଗ୍ୟବନ୍ତ ହେବା ପାଇଁ କେତେକ ଶୀଳାଚାରର ହିଁ ଉପଦେଶ ଦେଇଯାଇଛନ୍ତି– ଯାହା ଦୈନିନ୍ଦିନ ଜୀବନରେ ପାଳିଲେ ସେମାନେ ଭଲରେ ରହିବେ । ଆଶ୍ଚର୍ଯ୍ୟର କଥା ଏ ଉପଦେଶରେ ଆମେ ପ୍ରାଚୀନ ପୁରାଣମାନଙ୍କରେ ଏପରିକି ଗୀତାରେ ମଧ୍ୟ ଯେପରି ଦେଖୁଁ, 'ମତେ ପୂଜା କର', 'ବିଷ୍ଣୁଙ୍କୁ ପୂଜା କର', 'ଶିବଙ୍କୁ ପୂଜା କର', ତା'ହେଲେ ତମର ଐହିକ ବା ପାରତ୍ରିକ କିଛି ଦୁଃଖ ରହିବ ନାହିଁ; ଏପରି ଅଯୌକ୍ତିକ ପିଲାଭୁଲାଣିଆ ଧୂର୍ତ୍ତତା ଆଦୌ ନାହିଁ । ବୈଶ୍ୟଜାତିର ଉନ୍ନତି ପାଇଁ ଶାରଳାଦାସଙ୍କ ଉପଦେଶ ହେଉଛି ଏଇ –

ତାହା ଶୁଣି ଯମ ବୋଲେ ଶୁଣ ବୈଶ୍ୟଜାତି
କେଉଁପରି କର୍ମ କଲେ ନୋହିବ ବିକୃତି ।
ବାଣିଜ୍ୟର ସ୍ୱରୂପ ମୁଁ କହୁଅଛି ଯଥା,
ଲାଭ ପାଇଁକି କଦାଚ ନ କହିବ ମିଥ୍ୟା ।
ଗଣ୍ଡାକେ କଡ଼ା, ବୋଡ଼ିକେ ଘେନିବ ଗଣ୍ଡାଏ
ପଣକେ ବୋଡ଼ି, କାହାଣେ ଲାଭ ପଦିକାଏ ।
ଯେତେ ଲାଭ ହେଲେ ମିଥ୍ୟା ନ କହିବ ହାଦେ
ଚାରି ପାଦ କିଣି ନେଇ ବିକି ପାଞ୍ଚ ପାଦେ ।
ଯମ ବୁଝାଇଣ ଦେଲେ ବାଣିଜ୍ୟ ସ୍ୱରୂପ
ଏରୂପ କଥାରେ ଆଉ ନ ହୁଅଇ ପାପ । (ସ୍ୱର୍ଗାରୋହଣ ପର୍ବ)

ଏ ଦେଶର ବ୍ୟବସାୟୀ ଜାତିମାନଙ୍କ ପ୍ରତି କୃଷକକବି ଶାରଳାଦାସଙ୍କର ଛଅଶ ବର୍ଷ ତଳର ଏଇ ଉପଦେଶ, ଆଜି ବି କ'ଣ ପ୍ରଯୁଜ୍ୟ ନୁହେଁ ?

କେବଳ ଚାଷୀ ବା ପାଟକ ଜାତି ନୁହେଁ, ଶାରଳାଦାସଙ୍କ ମହାଭାରତର ସର୍ବତ୍ର ଅବହେଳିତ ଜନତା ପ୍ରତି, ଏଇ ମହାକବିଙ୍କର ଉଦାର ଚିତ୍ତ, କରୁଣା, ସମବେଦନା ଓ ଦାକ୍ଷିଣ୍ୟରେ ସ୍ପନ୍ଦିତ ହେଉଥିବାର ଦେଖିପାରୁଁ । ଏ ଦେଶର ସହସ୍ର ସହସ୍ର ବର୍ଷ

ଧରି ଅପାଂକ୍ତେୟୀଭୂତ ବିରାଟ ଆଦିବାସୀ ଜନତା ପ୍ରତି ଓଡ଼ିଶାର ଶୂଦ୍ରକବି ଶାରଳା ଦାସ ଯେଉଁ ସମ୍ମାନ, ଯେଉଁ ଗୌରବ ଦାନ କରିଛନ୍ତି ତାହା ସମଗ୍ର ଭାରତୀୟ ସାହିତ୍ୟରେ ବିରଳ । ଯେଉଁ ଋଷିକବି ବ୍ୟାଧ-ଶରାହତ କ୍ରୌଞ୍ଚ ପକ୍ଷୀର ଯାତନାରେ ଏତେ ବିଚଳିତ ହୋଇ ପଡ଼ିଲେ ଯେ, ତାଙ୍କର ପ୍ରାଣର ନିବିଡ଼ି ବେଦନା ମାନବସଭ୍ୟତାର ପ୍ରଥମ କବିତା ହୋଇ ଫୁଟିପଡ଼ିଥିଲା, ସେହି ବାଲ୍ମୀକି ରାମଙ୍କପରି ପୁରୁଷୋତ୍ତମଙ୍କୁ କେବଳ ତପସ୍ୟା କରିବାର ଅପରାଧରେ ଅନାର୍ଯ୍ୟ ଶମ୍ବୂକକୁ ହତ୍ୟା କରେଇବାକୁ ଛାଡ଼ିନାହାନ୍ତି । ଏବର ଦ୍ରାବିଡ଼ କଜାଗାମ୍ ଆନ୍ଦୋଳନର ବୀଜ ଏହିଠାରେ । ଏଇ ମନୋଭାବର ବିଷମୟ ପରିଣତି ମଧ୍ୟ ହେଉଛି ଆମେରିକା ଓ ଆଫ୍ରିକାରେ ଶ୍ୱେତାଙ୍ଗର କୃଷ୍ଣାଙ୍ଗଙ୍କ ପ୍ରତି ଅତ୍ୟାଚାର ।

ଏଇ ପରିପ୍ରେକ୍ଷଣରେ ଛଅଶ ବର୍ଷ ତଳର ଓଡ଼ିଶାର ଅପଣ୍ଡିତ ଶୂଦ୍ରକବି ଶାରଳା ଦାସଙ୍କ ମହାଭାରତରେ ପତିତ ଜନତା ପ୍ରତି ଯେଉଁ ମର୍ଯ୍ୟାଦା ଦିଆଯାଇଛି ତାହା ଦେଖିଲେ, ଏଇ ଦୂରଦ୍ରଷ୍ଟା ପ୍ରତିଭାକୁ ନମସ୍କାର ନ କରି ରହି ହେଉ ନାହିଁ ।

ଦ୍ୱାପରଯୁଗର ଅବତାର ଶ୍ରୀକୃଷ୍ଣଙ୍କୁ କଳିଯୁଗର ଅବତାର ଜଗନ୍ନାଥଙ୍କ ସଙ୍ଗେ ଯୋଡ଼ିବାର ଯୌକ୍ତିକ ଯୋଜନା ଓ ପ୍ରଚାର ଆମେ ବଳିଷ୍ଠଭାବରେ ଶାରଳା ମହାଭାରତରେ ହିଁ ପ୍ରଥମେ ପାଉଁ । ଶ୍ରୀକୃଷ୍ଣ-ଘାତକ ଜାରା ଶବର, ଶ୍ରୀକୃଷ୍ଣଙ୍କର ସମୁଦ୍ରରେ ଭାସମାନ ଦରପୋଡ଼ା ହୃତ୍‌ପିଣ୍ଡକୁ ଜଗିଜଗି ଭାରତବର୍ଷର ସମଗ୍ର ସମୁଦ୍ରବେଳା ଅତିକ୍ରମ କରି ଆସି ପହଞ୍ଚିଛି ପୁରୀ ସମୁଦ୍ରତଟରେ । ସେଇଠି ଯୁଗ ଯୁଗ ଧରି ନୀଳମାଧବ ପୂଜା ଚାଲିଲା ପରେ, ମାଳବରୁ ଆସିଲେ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ବ୍ରାହ୍ମଣ ବିଦ୍ୟାପତି ବିଷ୍ଣୁ ସନ୍ଧାନରେ । ପଥରର ନୀଳମାଧବ ଉଭେଇ ଯାଇ ବାଙ୍କି ମୁହାଣରେ ଦେଖାଦେଲେ ପୁଣି ଦାରୁବ୍ରହ୍ମ ଆକାରରେ । ରାଜା ଇନ୍ଦ୍ରଦ୍ୟୁମ୍ନ ସୈନ୍ୟସାମନ୍ତ ନେଇ ଗଲେ ଦାରୁବ୍ରହ୍ମଙ୍କୁ ବୋହିଆଣିବା ପାଇଁ । କିନ୍ତୁ ରାଜାର ସକଳ ଅଶ୍ୱ, ଗଜ ଓ ଜନଶକ୍ତି ସତ୍ତ୍ୱେ ଦାରୁବ୍ରହ୍ମ ରହିଲେ ଅଟଳ । ରାଜା ଅଧ୍ୟା ପଡ଼ିଲେ । ଦେବତା ରାଜାକୁ ସ୍ୱପ୍ନ ଦେଲେ– ''ରାଜା, ତୋ'ର ପାର୍ଥିବଶକ୍ତିରେ ମତେ ଟଳେଇବାର ବୃଥା ପ୍ରୟାସ ଛାଡ଼ । କାଲି ଡାକିଆଣି ଠିଆକରେଇବୁ ପାଖକେ ମୋର ପ୍ରକୃତ ସେବକ ବିଦ୍ୟାପତିର ବଂଶଧର ଓ ଆରପାଖେ ଜାରାର ବଂଶଧରକୁ – ସେଇମାନେ ଏକତ୍ର ମତେ ଛୁଇଁଲେଇ ମୁଁ ଯିବି ।'' ଶେଷରେ ସେଇୟା ହିଁ ହେଲା । ଆଜିର ଏଇ ସ୍ୱାଧୀନ ଗଣତନ୍ତ୍ର ଭାରତରେ ଓଡ଼ିଆ କବି ଶାରଳା ଦାସଙ୍କର ଏହି ପରମତତ୍ତ୍ୱପୂର୍ଣ୍ଣ ବ୍ୟଞ୍ଜନା ଭାରତୀୟ ରାଜନୈତିକ ଓ ସାମାଜିକ ସକଳ ସମସ୍ୟାର ପରମ ସମାଧାନ ବୋଲି ମନେ ହେଉନାହିଁ କି ? ଭାରତର ଗଣଦେବତା, ଆର୍ଯ୍ୟ-ଅନାର୍ଯ୍ୟ, ବ୍ରାହ୍ମଣ-

ଶୂଦ୍ର, ହିନ୍ଦୁ-ମୁସଲମାନର କରମିଳନ ଓ ହୃଦୟ ମିଳନକୁ ଯେ ଅପେକ୍ଷା କରିଛନ୍ତି ତାଙ୍କର ରଥଯାତ୍ରା ପାଇଁ, ଏହି ସ୍ପଷ୍ଟ ନିର୍ଦ୍ଦେଶ ଓଡ଼ିଶାର କବି ଶାରଳାଦାସ ଛଅଶ ବର୍ଷ ତଳେ ହିନ୍ଦୁଦେବତା ଜଗନ୍ନାଥଙ୍କ ଉପାଖ୍ୟାନରେ ରଖିଯାଇଛନ୍ତି ।

ଅନେକେ ଏଇ ଧାରଣା ସୃଷ୍ଟି କରେଇବାର ଚେଷ୍ଟା କରିଛନ୍ତି ଯେ, ଶାରଳାଦାସଙ୍କ ଲେଖନୀରେ ମୂଳ ମହାଭାରତର ଆଦର୍ଶ ଚରିତ୍ର ସବୁ ନୀଚ, ଦୋଷଦୁଷ୍ଟ ହୋଇପଡ଼ିଛି । ପ୍ରତ୍ୟେକଟି ଚରିତ୍ରକୁ ମୂଳ ଓ ଶାରଳା-ମହାଭାରତରେ ମିଳାଇ, ବିଶ୍ଳେଷଣ କରି ଆଲୋଚନା କଲେ ଯାଇ ଏ ସାଧାରଣ ସତ୍ୟ ବା ମିଥ୍ୟା ପ୍ରମାଣିତ ହେବ । ସେ ଦରକାର କରେ ଏକ ସ୍ୱତନ୍ତ୍ର ପୁସ୍ତକ, ତାହା ପାଇଁ ଏଠି ସ୍ଥାନ ନାହିଁ । କିନ୍ତୁ ଗୋଟିଏ ଦୁଇଟି ଛୋଟ ଉଦାହରଣ ଦେଖାଇ ଏଇ ଲେଖକ ପ୍ରମାଣ କରିବାକୁ ଚାହେଁ ଯେ, ଶାରଳା-ପ୍ରତିଭା କେତେକ ସ୍ଥଳରେ ମୂଳର ଚରିତ୍ରଚିତ୍ରଣକୁ ବିକୃତ ଯଦିବା କରିଥାଏ, ଅନେକତ୍ର ସେ ସବୁକୁ ଯେ ମଧୁରତର, ମହନୀୟତର ଓ ବାସ୍ତବତର ମଧ୍ୟ କରିଛି, ତାହା ନ ମାନିବା କେବଳ ମତାନ୍ଧତାର ପରିଚୟ ଦେବ ।

ଆଶ୍ରମିକ ପର୍ବରେ ଜରାଜୀର୍ଣ୍ଣ ଧୃତରାଷ୍ଟ୍ର ଓ ଗାନ୍ଧାରୀ ଯେତେବେଳେ ବାନପ୍ରସ୍ଥ କରିବାକୁ ବାହାରିଛନ୍ତି, ହଠାତ୍ ପୁଅମାନଙ୍କୁ ଛାଡ଼ି କୁନ୍ତୀ ମଧ୍ୟ ତାଙ୍କ ସହିତ ଯିବାକୁ ବାହାରିଲେ ଓ ଗଲେ ମଧ୍ୟ । ମୂଳ ମହାଭାରତରେ ପାଣ୍ଡବ-ଜନନୀଙ୍କର ଏହି ଅପ୍ରତ୍ୟାଶିତ ବ୍ୟବହାରର କୌଣସି ଯୌକ୍ତିକ ବ୍ୟାଖ୍ୟାନ ନାହିଁ । କିନ୍ତୁ ଶାରଳାଦାସ ଯେପରି ଭାବରେ କୁନ୍ତୀଙ୍କୁ ବାନପ୍ରସ୍ଥକୁ ନେଇଛନ୍ତି ତାହା ଏହି ମହାନ୍‌ନାରୀଙ୍କୁ ମନୁଷ୍ୟତ୍ୱର ଅପୂର୍ବ ମହିମାରେ ଭୂଷିତ କରିବା ସଙ୍ଗେ ସଙ୍ଗେ ତାଙ୍କୁ ଓଡ଼ିଆ ଘରର ଖାଣ୍ଟି ବୋହୂ ରୂପେ ଠିଆକରାଇଅଛି । ପୁଅ ପଞ୍ଚପାଣ୍ଡବେ ବିସ୍ମିତ ହୋଇ ମା' କୁନ୍ତୀଙ୍କୁ ଯେତେବେଳେ କାରଣ ପଚାରିଲେ, ସେ ଉତ୍ତର ଦେଲେ– ''ଦେଖ, ଆମେ ତିନିଜଣ– ଗାନ୍ଧାରୀ, ମାଦ୍ରୀ ଓ ମୁଁ ଏ ଘରକୁ ତିନି ବୋହୂ ହୋଇ ଆସିଥିଲୁ । ମାଦ୍ରୀ ତ ବହୁଦିନୁ ମରିଛନ୍ତି । ବାକୀ ଥିଲୁ ଆମେ ଦି'ଯା । ବଡ଼ ଯା' ମୋର ବଣକୁ ଯାଉଛନ୍ତି, ମୁଁ କି ସୁଖରେ ଏଇ ଉଆସରେ ଦିନ କଟେଇବି ? ମୋର ବା ଜୀବନରେ ଆଉ କି ସୁଖ ଅଛି ? କର୍ଣ୍ଣ ପରି ପୁଅ ମଲା, ଅଭିମନ୍ୟୁ ପରି ନାତି ମଲା, ଗୋଟିଏ ବୋଲି ଯେ ବୋହୂ, ତା'ର ବାପ, ଭାଇ, ଜ୍ଞାତିବର୍ଗ ଓ ସକଳ ସନ୍ତାନ, ଏପରି ସମସ୍ତେ ଯୁଦ୍ଧରେ ପୋଛିହୋଇଗଲେ ଯେ, ସେଟା ଦିନରାତି କାନ୍ଦୁଛି । ମୁଁ ଆଉ କି ସୁଖ ଭୋଗକରିବି ଯେ ଏଠି ରହିବି ? ପୁଣି ଗାନ୍ଧାରୀ-ଧୃତରାଷ୍ଟ୍ର ତ ଜାଣି ଅନ୍ଧ ଅନ୍ଧୁଣୀ, ଏବେ ପୁଣି ଜରାଜୀର୍ଣ୍ଣ । ବଣରେ ଖାଲ-ଢିପ, ବାଟ-ଅବାଟ ଦେଖେଇବା ପାଇଁ ତ ତାଙ୍କ ସାଥିରେ କିଏ ଥିବା ଦରକାର ? ମୁଁ ସାଥିରେ ଗଲେ ତାଙ୍କର ଏତିକି

ହେଲେ ତ ସେବା କରିପାରିବି ?''

କି ଘରୋଇ, ଅଥଚ କି ମର୍ମସ୍ପର୍ଶୀ ମହନୀୟ ଚିତ୍ର ! ଏ ଚିତ୍ର ମୂଳ ମହାଭାରତରେ ନାହିଁ ।

ଭାରତ ଦି'ଭାଗ ହେଲା ପରେ ବାପୁଜି ପାକିସ୍ଥାନକୁ ତା'ର ପ୍ରାପ୍ୟ ପଚାଶ କୋଟି ଟଙ୍କା ଦେଇଦେବା ପାଇଁ ଜିଦ୍ ଧରିଥିବା ବେଳେ, ବାସ୍ତବବାଦୀ, ଟାଣୁଆ ସର୍ଦାର ଜିଦ୍ ଧରିଥାନ୍ତି ନଦେବାକୁ । ଠିକ୍ ଏଇ ଦୃଶ୍ୟର ଅଭିନୟ ଘଟିଥିଲା ମହାଭାରତ ଯୁଦ୍ଧ ପରେ । ମୂଳ ମହାଭାରତରେ ଏହା ଅଛି । କିନ୍ତୁ ଶାରଳାଙ୍କ ମହାଭାରତରେ ଏହା ରୂଢ଼ ହେଲେହେଁ ଯେପରି ସ୍ୱାଭାବିକ, ବାସ୍ତବ ଓ ଚିତ୍ତାକର୍ଷକ ହୋଇଛି, ମୂଳରେ ତାହା ହୋଇନାହିଁ ।

ବାନପ୍ରସ୍ଥ ଯିବା ପୂର୍ବରୁ ଧୃତରାଷ୍ଟ୍ର ପାଣ୍ଡବମାନଙ୍କ ନିକଟକୁ ବିଦୁରକୁ ପଠାଇଲେ ଏଇ ସମ୍ବାଦ ଦେଇ ଯେ, ସେ କେତେକ ତୀର୍ଥରେ ପିତୃପୁରୁଷଙ୍କର ଶ୍ରାଦ୍ଧ କରିବେ, ତେଣୁ ଅର୍ଥ ଦରକାର, ତାହା ସେ ଯେପରି ପାଆନ୍ତି । କୋମଳମନା ଯୁଧିଷ୍ଠିର ଓ ଅର୍ଜ୍ଜୁନ ସାଙ୍ଗେ ସାଙ୍ଗେ ମଙ୍ଗିଗଲେ । କିନ୍ତୁ ଭୀମ ପ୍ରତିବାଦ କଲେ । ସେ କହିଲେ, ''ପ୍ରଥମ କଥା, ପିତୃଶ୍ରାଦ୍ଧ ସେ କଲେ ପିତୃପୁରୁଷ ପିଣ୍ଡ ପାଇବେ, ଆମେ କଲେ ପାଇବେନି ? ଆମର ପିତୃପୁରୁଷ ତ ଏକ । ଆମେ ତାଙ୍କୁ ଅର୍ଥ ଦେବା, ସେ କାହିଁକି ଶ୍ରାଦ୍ଧ କରିବେ, ଆଉ ସେଇ ଅର୍ଥରେ ଆମେ ଶ୍ରାଦ୍ଧ କରିବାନି କାହିଁକି ? ପୁଣି ଯାହା ଯୋଗୁ କୁଳ ନଷ୍ଟ, ରାଜ୍ୟ ନଷ୍ଟ, ତାକୁ ପୁଣି ରାଷ୍ଟ୍ରୀୟ ଗନ୍ତାଘରୁ ଅର୍ଥ ସାହାଯ୍ୟ ଦିଆଯିବ ? ମୁଁ ବଞ୍ଚିଥିବାଯାଏ ତା' କରାଇଦେବିନି । ଯାହାର ଦୟା ହେଉଛି ସେ ନିଜ ଅଙ୍ଗିଲା ସମ୍ପତ୍ତିରୁ ଦେଇପାରନ୍ତି ।''

ଶେଷରେ ତାହାହିଁ ହେଲା । ମୂଳ ମହାଭାରତରେ କିନ୍ତୁ ଧୃତରାଷ୍ଟ୍ର ଷ୍ଟେଟ୍ ଫଣ୍ଡ୍‌ରୁ ହିଁ ପିତୃ-ଶ୍ରାଦ୍ଧ ପାଇଁ ଅର୍ଥ ନେଇଗଲେ ।

ବାନପ୍ରସ୍ଥକୁ ଯିବା ପୂର୍ବରୁ ଧୃତରାଷ୍ଟ୍ର ଯୁଧିଷ୍ଠିରଙ୍କ ନିକଟକୁ ଆସି ତାଙ୍କୁ ଅନେକ ଉପଦେଶ ଦେଇଛନ୍ତି । ମୂଳ ମହାଭାରତରେ ଏହା ନିର୍ବିଘ୍ନରେ ଘଟିଯାଇଛି । କିନ୍ତୁ ଶାରଳା ମହାଭାରତରେ ଧୃତରାଷ୍ଟ୍ରଙ୍କ ବକ୍ତୃତା ଶେଷରେ ଭୀମ କହିଛନ୍ତି, ''ଆଜ୍ଞା, ଏ ଉପଦେଶଗୁଡ଼ାକ ଆପଣଙ୍କ ପୁଅମାନଙ୍କୁ ଆପଣ ଦେଇପାରିଲେନି କାହିଁକି ? ଆଉ ଏଇ ଯୁଧିଷ୍ଠିର ମହାରାଜାଙ୍କୁ କ'ଣ ରାଜନୀତି ଅଜଣା ଯେ ଆପଣ ଏ ବକ୍ତୃତା ଦେଉଛନ୍ତି ? ଆପଣ ଯେତେ ଶୀଘ୍ର ବଣକୁ ଯାଆନ୍ତି, ସେତେ ସମସ୍ତଙ୍କର ମଙ୍ଗଳ । ତାହାହିଁ କରନ୍ତୁ ।''

ଏହା ରୂଢ଼ ବୋଧହୋଇପାରେ । କିନ୍ତୁ ଏହା ଯେ ମୂଳ ଅପେକ୍ଷା ଜୀବନ୍ତ ଓ ସମାଜର ବାସ୍ତବତାର ଅଧିକ ନିକଟବର୍ତ୍ତୀ, ଏହା ଯେକୌଣସି ନିରପେକ୍ଷ ପାଠକ

ବୋଧକରିବେ ବୋଲି ଆଶା ।

ଭୀମଙ୍କୁ ଶାରଳାଦାସ ଏକ ହୁଣ୍ଡା-ଗୁଣ୍ଡା ଭାବରେ ଚିତ୍ରିଛନ୍ତି ବୋଲି ଅନେକ ପ୍ରକାଶ କରିଛନ୍ତି । କିନ୍ତୁ ଶାରଳା ମହାଭାରତ ପାଠକରି ଏବେ ଦେଖୁଛି ଯେ, ଏ ମତ ଏକାନ୍ତ ଏକତରଫା । ପାଣ୍ଡବମାନଙ୍କର ହିମାଳୟ ଅଭିଯାନରେ ଶାରଳାଦାସ ଭୀମଙ୍କୁ ଏକ ପରମ ହୃଦୟବାନ୍, ସମବେଦନଶୀଳ ବୀର ପୁରୁଷ କରି ଚିତ୍ରିଛନ୍ତି । ସେଠି ଯୁଧିଷ୍ଠିର ଏକାନ୍ତ ଆତ୍ମ-କୈନ୍ଦ୍ରିକ, କାରଣ କାହାରି ଦୁଃଖକୁ ନ ଚାହିଁ ଚାଲିଛନ୍ତି ସେ ଆଗେ ଆଗେ । ପଛରେ ଦ୍ରୌପଦୀ, ସହଦେବ, ନକୁଳ ଓ ଅର୍ଜୁନ, ଏକେ ଏକେ ବରଫଶଯ୍ୟାରେ ଟଳିପଡ଼ିଛନ୍ତି । ପ୍ରତ୍ୟେକର ପତନବେଳେ ଭୀମହିଁ ଧାଇଁଯାଇଛନ୍ତି ମୁମୂର୍ଷୁମାନଙ୍କୁ କୋଳ କରି ସାନ୍ତ୍ୱନା ଦେବାପାଇଁ ଓ ବଡ଼ଭାଇଙ୍କି ବାରମ୍ବାର ଡାକି ସାହାଯ୍ୟ କରିବାକୁ ଆହ୍ୱାନ କରିଛନ୍ତି । ବଡ଼ଭାଇଙ୍କ ନିର୍ମମତାକୁ ସେ ମଧ୍ୟ ଭର୍ତ୍ସନା କରିଛନ୍ତି । ଶେଷରେ କରୁଣଭାବରେ ହେଲେ ମଧ୍ୟ, ବୀରୋଚିତ, ପୁରୁଷୋଚିତ ଭାବରେ ସ୍ୱୟଂ ଭୀମଙ୍କର ପତନ ହୋଇଛି । ମୂଳ ମହାଭାରତରେ ଏଇ ଗରିମାମୟ ଚିତ୍ର ନାହିଁ ।

ପୃଥିବୀର ସକଳ ସଭ୍ୟଜାତିର ଏକ ଏକ 'ଜାତୀୟ' ମହାକାବ୍ୟ ଅଛି । ଏଇ ମହାକାବ୍ୟ ସେହି ସେହି ଜାତିର ସ୍ୱପ୍ନ, ଆଦର୍ଶ ଓ ସଂସ୍କୃତିର ପ୍ରତିବିମ୍ବ । ଶାରଳାଙ୍କ ମହାଭାରତ କେବଳ ଗୋଟାଏ ଦେଶୀଭାଷାର ପୁରାଣ ନୁହେଁ– ଏହା ଓଡ଼ିଆଜାତିର ପ୍ରକୃତ ନାଶନାଲ୍ ଏପିକ୍ ବା ଜାତୀୟ ମହାକାବ୍ୟ । ଏ ମହାଗ୍ରନ୍ଥରେ ଓଡ଼ିଆର ଲୌକିକ, ବ୍ୟାକରଣ ନିରପେକ୍ଷ, ଦୈନନ୍ଦିନ, ତରଳ, ଚପଳ ଭାଷା ପ୍ରଥମେ ହିଁ ସାହିତ୍ୟ-ମାଧ୍ୟମ ରୂପେ ବ୍ୟବହୃତ ହୋଇଛି । ସେହି ଭାଷା ଛଅଶ ବର୍ଷ ପରେ ଏବେ ବି ଓଡ଼ିଆ ଚଷା ଧାନବିଲରେ, ଧାନଖଳାରେ, ଗାଁଦାଣ୍ଡରେ ଓ ଭାଗବତ ଘରେ ବ୍ୟବହାର କରେ । କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁରର ତଥାକଥିତ ଶିକ୍ଷିତ ଓଡ଼ିଆ ଯେତିକି ପରିମାଣରେ ଏ ଭାଷା ବ୍ୟବହାର ନ କରନ୍ତି ସେମାନଙ୍କୁ ସେତିକି ପରିମାଣରେ କମ୍ ଓଡ଼ିଆ ବୋଲି ଧରିବାକୁ ହେବ । ଶାରଳାଦାସ ସଂସ୍କୃତ ପଣ୍ଡିତ ନଥିଲେ, କିନ୍ତୁ ସଂସ୍କୃତ ମହାଭାରତ ସଙ୍ଗେ ବୋଧହୁଏ ଅପରିଚିତ ନ ଥିଲେ । କିନ୍ତୁ ତାହା ସତ୍ତ୍ୱେ ସେ ମୂଳର ନାୟକନାୟିକା, ଗଳ୍ପଉପାଖ୍ୟାନ, ଚରିତ୍ର-ଚିତ୍ରଣ, ସମସ୍ତକୁ ଜାଣିଜାଣି ଭାଙ୍ଗିଛନ୍ତି ଓ ଓଲଟ୍ ପାଲଟ କରି ଏକ ମୌଳିକ ଗ୍ରନ୍ଥ ଠିଆକରେଇଛନ୍ତି, ବୋଧହୁଏ ଓଡ଼ିଆ ଜନତାପାଇଁ ଏକ ଜାତୀୟ ମହାକାବ୍ୟ ଛାଡ଼ିଯିବା ଉଦ୍ଦେଶ୍ୟରେ । ସେ ବୋଧହୁଏ ତେଣୁ ଜାଣି ଜାଣି ମୂଳଗ୍ରନ୍ଥର ମହାମାନବମାନଙ୍କୁ ଟାଣିଆଣିଛନ୍ତି ଓଡ଼ିଶାର ଗୋହିରି ଦାଣ୍ଡର ଧୂଳି ଓ ଧାନବିଲର କାଦୁଅକୁ, ଯେପରି କି ଓଡ଼ିଶାର

ଅଶିକ୍ଷିତ ଜନତା ଏମାନଙ୍କୁ ନିଜର ବୋଲି ମନେକରିବେ । ଫଳରେ ଏମାନେ ସମସ୍ତେ ହୋଇଛନ୍ତି ଓଡ଼ିଆ, ଖାଣ୍ଟି ଓଡ଼ିଆରେ କଥାଭାଷା ତାଙ୍କର, ଓଡ଼ିଆ ଖାଦ୍ୟ, ବସନ ହିଁ ତାଙ୍କର ଖାଦ୍ୟ-ବସନ ଓ ଓଡ଼ିଶାର ସାମାଜିକ ବିଧିବ୍ୟବସ୍ଥା ନିୟନ୍ତ୍ରଣ କରିଛି ସେମାନଙ୍କ ଚରିତ୍ର । ଧର୍ମ, ଦର୍ଶନ, ଆଦର୍ଶ ଓ ଲକ୍ଷ୍ୟ ନେଇ ଶାରଳାଙ୍କ ମହାଭାରତ ତେଣୁ ହୋଇଉଠିଛି ଓଡ଼ିଆ ଜାତିର ଚିରଚିତ୍ତବିନୋଦକ ଜାତୀୟ ମହାକାବ୍ୟ । ଯଦି କୌଣସି ଗୋଟାଏ ମାତ୍ର ପୁସ୍ତକ କେଉଁ ଦେଶର କେଉଁ ଜାତିର ସମଗ୍ର ସାହିତ୍ୟକୁ ଗଢ଼ିଥାଏ, ତେବେ ସେ ହେଉଛି କୃଷକକବି ଶାରଳାଦାସଙ୍କ ଓଡ଼ିଆ ମହାଭାରତ । ଏ ବହି କେବଳ ନିଜେ ଏକ ଅସାଧାରଣ ପ୍ରତିଭାର ସ୍ୱାକ୍ଷର ବହନ କରିଛି ତାହା ନୁହେଁ, ଏହାର ରଚନା ଗୋଟାଏ ଐତିହାସିକ ଜାତିର ଦଳିତ ଭାଷାକୁ ଦେଲା ସାହସ, ତେଜ ଓ ଉତ୍ସାହ, ମୁଣ୍ଡ ଉଞ୍ଚା କରି ସଗର୍ବରେ ଠିଆହେବାକୁ । ଗାଁଗହଳର ପ୍ରତିଭାବାନ୍ ସିଦ୍ଧେଶ୍ୱର ପରିଡ଼ା ବାଟ ଦେଖାଇ ନଥିଲେ ଶହେ ବର୍ଷ ପରେ ଉଚ୍ଚଶିକ୍ଷିତ ଓ ନଗରବାସୀ ବଳରାମ ବା ଜଗନ୍ନାଥଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ମଧ୍ୟ ଆମକୁ ରାମାୟଣ, ଭାଗବତ ଓଡ଼ିଆରେ ପରଷିବାକୁ ସାହସ କରିନଥାନ୍ତେ । ତା'ର ଅର୍ଥ, ଓଡ଼ିଆ ସାହିତ୍ୟର ଇତିହାସ କି ରୂପ ଧରିଥାନ୍ତା ଆଜି ତାହା କହିହେଉନାହିଁ ।

ସମଗ୍ର ପ୍ରାଚୀନ ଓଡ଼ିଆସାହିତ୍ୟର ଇତିହାସରେ ଶାରଳାଦାସ ମଧ୍ୟ ପ୍ରଥମ ଐତିହାସିକ ବ୍ୟକ୍ତି ବୋଲି ମନେହୁଏ । ଉପେନ୍ଦ୍ରଭଞ୍ଜ ରାଜାପୁଅ ହୋଇ ମଧ୍ୟ ତାଙ୍କର ବ୍ୟକ୍ତିଗତ ଜୀବନର ପତ୍ତା ଆମେ ପାଉନା । କିନ୍ତୁ ପୁରାଣତମ କବି ହେଲେହେଁ, ଆମେ ଶାରଳାଦାସଙ୍କ ଜନ୍ମସ୍ଥାନ, ବଂଶ, ସମାଧି ଯେ ଆଜି ସ୍ପଷ୍ଟ କରି ଦେଖାଇପାରୁଛୁ, ଏହା ଅତ୍ୟନ୍ତ ଭାଗ୍ୟର କଥା । ତାଙ୍କର ସମାଧି ଆଜି ଜାତିର ତୀର୍ଥକ୍ଷେତ୍ର । ସମଗ୍ର ଜାତି ଆଜି ଏହି ଜାତିସ୍ରଷ୍ଟା, ବିରାଟ ପ୍ରତିଭାବାନ୍ ଚଷାର ପୁଣ୍ୟ ସ୍ମୃତିକୁ ନମସ୍କାର କରେ । ଛଅଶ ବର୍ଷ ତଳେ 'ନେଶନ୍'ର ଭାବ ପୃଥିବୀରେ କୌଣସିଠାରେ ଦେଖା ଦେଇ ନଥିଲେ ମଧ୍ୟ, ଶାରଳଦାସ ଓଡ଼ିଶାକୁ ଯେପରି ଗର୍ବର ସହିତ ଭଲପାଉଥିଲେ, ତାହା ବାସ୍ତବିକ୍ ବିସ୍ମୟକର । ତାଙ୍କ ଦେଶ ଉତ୍ତରାଷ୍ଟ୍ର, ଗାଁ ଝଙ୍କଡ଼ ଓ କନକପୁର, ତାଙ୍କ ନଦୀ ଚନ୍ଦ୍ରଭାଗା, ତାଙ୍କ ଗାଁପାଖ ତୀର୍ଥ କୋଣାର୍କର କଥା କହିଲାବେଳେ ଏହି ମହାକବିଙ୍କ ପ୍ରାଣ ଆନନ୍ଦରେ ସ୍ପନ୍ଦିତ ହେଉଥିବାର ଆମେ ଆଜି ସ୍ପଷ୍ଟ ଅନୁଭବ କରୁଛୁ । ସମଗ୍ର ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଶାରଳା ଦାସ ହେଉଛନ୍ତି ଏକମାତ୍ର କବି ଯେ ଇହ ଜୀବନକୁ, ଏଇ ଦେଶ, ଏଇ ମାଟି, ଏଇ ନଦୀ, ଏଇ ତୀର୍ଥଘାଟକୁ ପ୍ରାଣ ଦେଇ ଭଲପାଇଛନ୍ତି । ଅନ୍ୟମାନେ ଧର୍ମ ପ୍ରଚାର କରିଛନ୍ତି, ପ୍ରେମ ପ୍ରଚାର କରିଛନ୍ତି, ଏକମାତ୍ର ଶାରଳା ଦାସ ସମଗ୍ର ଜୀବନକୁ ପ୍ରଚାର କରିଯାଇଛନ୍ତି ।

**ଗଙ୍ଗା-ଶାନ୍ତନୁ –**



ପୂର୍ବ ପ୍ରବନ୍ଧରେ ଶାରଳା ଦାସ ସଂସ୍କୃତ ମହାଭାରତକୁ କିପରି ଜନତାର କାବ୍ୟ କରିଯାଇଛନ୍ତି ତାହା ଦେଖାହୋଇଛି । ଦାସଙ୍କ ମହାଭାରତ ପଢ଼ିଲେ ଏହି ବୋଧଟି କ୍ରମେ ସ୍ପଷ୍ଟ ହୋଇଉଠିବ ଯେ ଏହି କୃଷକକବି, ତାଙ୍କର ଅସାଧାରଣ ସୃଜନୀପ୍ରତିଭା ସତ୍ତ୍ୱେ, ମହାଭାରତ ପରି ମହାକାବ୍ୟକୁ ଜାଣି ଜାଣି ଯେପରି ଗ୍ରାମ୍ୟଜନର ସ୍ତରକୁ ଟାଣି ଆଣିଛନ୍ତି, ଯେପରି କି ତାହା ଗ୍ରାମ୍ୟ ଜନତାର ବୋଧଗମ୍ୟ କେବଳ ହେବ ନାହିଁ, ହେବ ଅତିମାତ୍ରାରେ ଉପଭୋଗ୍ୟ । ଏହାଦ୍ୱାରା ଦାସଙ୍କ ମହାଭାରତ ଓ ଓଡ଼ିଆ ସାହିତ୍ୟ, ଉଭୟର କି କ୍ଷତି ମଧ୍ୟ ହୋଇଛି ତାହା ପରେ ବିଚାର କରିବା । କିନ୍ତୁ ପ୍ରଶ୍ନ ତ ହୋଇପାରେ ଯେ, ଶୂଦ୍ରକବି ନିଜର କ୍ଷମତା ଅଭାବରୁ ସଂସ୍କୃତ ମହାଭାରତର ତୁଙ୍ଗ ଅଧିତ୍ୟକାକୁ ଉଠି ନପାରି ନିମ୍ନସ୍ଥ ପରିଚିତ ଧାନଖେତ– ଗାଁଦାଣ୍ଡ-ନଈଘାଟର ଉପତ୍ୟକାରେ ରହିଗଲେ, ନା ଏହି ଅଧଃସ୍ଥିତି ଭିତରେ କିଛି ପ୍ଲାନ୍ ଥିଲା ତାଙ୍କର ? କବି, ଗ୍ରନ୍ଥର ସର୍ବତ୍ର ନିଜକୁ ଅପଣ୍ଡିତ, ଅଶାସ୍ତ୍ରଜ୍ଞ, ମୂର୍ଖ, ବିଦ୍ୟାହୀନ, ସାଧୁଜନ-ସଖ୍ୟରହିତ ବୋଲି ପ୍ରଚାର କରାଇଛନ୍ତି । ଏହା ଅଧା ସତ୍ୟ ଓ ଅଧା ପ୍ରକୃତ ବିନୟ ବୋଲି ଧରାଯାଇପାରେ । କିନ୍ତୁ ସଂସ୍କୃତରେ ପ୍ରକୃତ ପଣ୍ଡିତ ହୋଇଥିଲେ, ବା ଅନ୍ତତଃ ସଂସ୍କୃତ ମୂଳ ମହାଭାରତ ଥରେ ପଢ଼ିଥିଲେ, ସେ ଭାଷାର ଓ ସେ ମହାକାବ୍ୟର ଯାଦୁକ୍ରିୟାରୁ ନିଜକୁ ଏପରି ବିଛିନ୍ନ କରି ଅନ୍ୟ ସ୍ୱତନ୍ତ୍ର ପଥରେ ଯିବା କୌଣସି ଭାରତୀୟ ପକ୍ଷରେ ସମ୍ଭବ ବୋଲି ମନେହୁଏନା । କାଳିଦାସ, ରବୀନ୍ଦ୍ରନାଥ ତ ପାରିନାହାନ୍ତି, କା କଥା ଅନ୍ୟେ । କିନ୍ତୁ ଦାସେ ତାଙ୍କ ଗ୍ରନ୍ଥରେ ଯେଉଁ ପାଣ୍ଡିତ୍ୟ ଓ ସୃଜନୀଶକ୍ତିର ପରିଚୟ ଦେଇଛନ୍ତି, ତାହା ମଧ୍ୟ ଯାଦୁକ୍ରିୟା ପରି ବିସ୍ମୟକର । ତେଣୁ ଧରିନେବାକୁ ହେବ ଯେ ଏହି କୃଷକକବିଙ୍କର ଧୀଶକ୍ତି ରାମକୃଷ୍ଣ ପରମହଂସଦେବଙ୍କ ପରି ସହଜ ପ୍ରତିଭା ଓ ସାଧୁ ଜୀବନର ଫଳ । ସଂସ୍କୃତରେ ପଣ୍ଡିତ ହୋଇଥିଲେ ଓ ମୂଳ ମହାଭାରତ ଉତ୍ତମରୂପେ ଅନୁଶୀଳନ କରିଥିଲେ, କୃଷକକବି ଆମକୁ ମୂଳ ଗ୍ରନ୍ଥର ସୁନ୍ଦର ଅନୁବାଦଟିଏ ଦେଇଯାଇଥାନ୍ତେ – ବହୁ ଶତାବ୍ଦୀ ପରେ ରାଜା କୃଷ୍ଣ ସିଂହ ବା ଫକୀରମୋହନଙ୍କୁ ସେ କଷ୍ଟ କରିବାକୁ ପଡ଼ି ନ ଥାନ୍ତା । କିନ୍ତୁ ସେହି ଶୁଭାବହ ଅଜ୍ଞତା ଯୋଗୁ ବୋଧହୁଏ କୃଷକକବିଙ୍କର ସହଜାତ ପ୍ରତିଭା ଅଦ୍ଭୁତଭାବରେ ନିଜର ବାଟ ନିଜେ କାଟି ଚାଲିଲା, ନିଜର ଆଦର୍ଶ ଓ ଲକ୍ଷ୍ୟ ଅନୁସରଣ କରି ।

ଶାରଳାଦାସ ଯେ କେବଳ ମାତ୍ର ଜଣେ କଳ୍ପନାବିଳାସୀ ଗ୍ରାମ୍ୟ କଥକ ମାତ୍ର ନ ଥିଲେ, ଥିଲେ ପ୍ରକୃତ ଉଚ୍ଚକୋଟୀର ସୃଜନୀପ୍ରତିଭାର ଅଧିକାରୀ ତାହା ତାଙ୍କ

କାବ୍ୟର କେତୋଟି ପ୍ରସିଦ୍ଧ ଚରିତ୍ରର ବିଶ୍ଳେଷଣ ଓ ମୂଳ ସଙ୍ଗେ ତୁଳନା କଲେ, ସହଜରେ ଅନୁଭୂତ ହୁଏ । ମୂଳ ଉପରେ ସେ ଏପରି ପରିବର୍ତ୍ତନ ଆଣିଛନ୍ତି ଯେ, ତାହା ଜଣେ ସାଧାରଣ ଭାରତୀୟ ସହଜରେ କଳ୍ପନାକୁ ଆଣିପାରିବ ନାହିଁ । କିନ୍ତୁ ଆଜି ଆମେ ବିଶ୍ୱସାହିତ୍ୟ ଓ ନୂତନ ମନସ୍ତତ୍ତ୍ୱର ପରିଚୟ ଫଳରେ କହିବାକୁ ସାହସ କରିବା ଯେ, କୃଷକକବି ମୂଳଠାରୁ ଯେଉଁ ଭିନ୍ନତା ଆଣିଛନ୍ତି, ତାହା ଯଥାର୍ଥ, ସତ୍ୟର ଓ ବାସ୍ତବତାର ନିକଟତମ ଏବଂ ମୂଳର ସେହି ସେହି ଚରିତ୍ରର ମହିମାକୁ ହାନି କରିବା ଦୂରେ ଥାଉ, ବରଂ ସେମାନଙ୍କୁ ଅଧିକ ମନୋଜ୍ଞ କରିପାରିଛି ।

– ଦୃଷ୍ଟାନ୍ତ ସ୍ୱରୂପ ଗଙ୍ଗା ଓ ଦ୍ରୌପଦୀ ଚରିତ୍ର ଆଲୋଚିତ ହେଉ ।

ହିନ୍ଦୁ ମନରେ ଗଙ୍ଗା ଏକେ ନିଜେ ପତିତପାବନୀ ନଦୀ, ପୁଣି ଦ୍ୱିତୀୟରେ ଶିବପତ୍ନୀ । ଏଇପରି ଭାବରେ ସେ କୋଟି କୋଟି ହିନ୍ଦୁର ପରମପୂଜ୍ୟା । କିନ୍ତୁ ମହାଭାରତରେ ସେ ଚନ୍ଦ୍ରବଂଶୀ ରାଜା ଶାନ୍ତନୁଙ୍କର ପତ୍ନୀ ଓ ଭୀଷ୍ମଙ୍କର ଜନନୀ ଭାବରେ ଖ୍ୟାତ । ଭୀଷ୍ମ ତାଙ୍କର ଅଷ୍ଟମ ସନ୍ତାନ । ପୂର୍ବର ସାତଟିଯାକ ସନ୍ତାନଙ୍କୁ ପତିତପାବନୀ ଗଙ୍ଗାଦେବୀ ପାଣିରେ ବୁଡ଼ାଇ ମାରିଦେଇଥିଲେ । ମହାଭାରତରେ ଏହି ବୀଭତ୍ସ କ୍ରିୟାର ଏକ ବ୍ୟାଖ୍ୟା ବି ଯୋଗାଇ ଦିଆଯାଇଛି । ଶାପଗ୍ରସ୍ତ ଅଷ୍ଟବସୁଙ୍କୁ ନରଜନ୍ମରୁ ଶୀଘ୍ର ଶୀଘ୍ର ଉଦ୍ଧାର କରାଇଦେବା ପାଇଁ ଗଙ୍ଗା ଏପରି କରିଥିଲେ । କେବଳ ଅଷ୍ଟମ ବସୁ ରହିଗଲେ ପୁଣ୍ୟଶ୍ଳୋକ ଭୀଷ୍ମଦେବ ରୂପେ ଜଗତରେ ପରିଚିତ ହେବାପାଇଁ । ଗଙ୍ଗା ପ୍ରକୃତରେ ଶାନ୍ତନୁଙ୍କ ପିତା ପ୍ରତୀପଙ୍କର ପ୍ରେମାର୍ଥିନୀ ହୋଇ ଆସିଥିଲେ – ସେ ନାହିଁକରିବାରୁ, ବହୁ ବର୍ଷ ପରେ ପୁଅ ଶାନ୍ତନୁଙ୍କୁ ବିବାହ କଲେ । ଅଷ୍ଟମ ପୁତ୍ର ଜନ୍ମହେବା ପରେ ସେ ରାଜାଙ୍କୁ ପରିତ୍ୟାଗ କରି ପଳାଇଗଲେ । ସଂସ୍କୃତ ମହାଭାରତରେ ଗଙ୍ଗା ପରମ ରୂପବତୀ ଓ ପ୍ରେମମୟୀ ରୂପେ ବର୍ଣ୍ଣିତା ।

ଶିବପତ୍ନୀ ହୋଇ ଗଙ୍ଗା କିପରି ଜଣେ ରାଜାକୁ ପୁଣି ବିବାହ କଲେ, ମା' ହୋଇ ପୁଣି ପିଲାଗୁଡ଼ାଙ୍କୁ କିପରି ପାଣିରେ ବୁଡ଼ାଇ ମାରିବେ, ପୁଣି ପ୍ରେମଶୀଳା ପତ୍ନୀ ହୋଇ ସ୍ୱାମୀକି ଛାଡ଼ି ବା ପଳାଇ ଯିବେ କାହିଁକି, ଏଇସବୁ ବାସ୍ତବ ଲୌକିକ ବିଚାରରେ ସଂସ୍କୃତ ମହାଭାରତର ଗଙ୍ଗା-ଶାନ୍ତନୁ ଉପାଖ୍ୟାନ ରକ୍ତମାଂସହୀନ କେବଳ ଏକ ଗାଲଗଳ୍ପ ପରି ରହିଯାଏ ।

କିନ୍ତୁ ଏଇ କ୍ଷେତ୍ରରେ ଶାରଳା ଦାସ ଗଙ୍ଗାଙ୍କୁ ଏକ ଚମତ୍କାର ସ୍ୱାଭାବିକ ବାସ୍ତବ ଚିତ୍ର ଦେଇ ଠିଆକରାଇଛନ୍ତି, ଯାହାଙ୍କ କ୍ରିୟାର ସକଳ ଅପ୍ରିୟ ବୀଭତ୍ସତା ଏପରି ଦୃଢ଼ ମନସ୍ତତ୍ତ୍ୱ ଓ ପରିବେଶ ପ୍ରଭାବ ଉପରେ ପ୍ରତିଷ୍ଠିତ ଯେ ତାଙ୍କୁ କୌଣସି ଅପକର୍ମପାଇଁ ଦୋଷ ତ ଦେଇ ହେବ ନାହିଁ, ବରଂ ତାଙ୍କର ସହଜ, ସ୍ୱାଭାବିକ, ଜୀବନ୍ତ, ପ୍ରାକୃତିକ

ଦୁର୍ଦ୍ଦମନୀୟ ନାରୀତ୍ୱର ଅକପଟ ପ୍ରକାଶରେ ଆମକୁ ମୁଗ୍ଧ ହେବାକୁ ପଡ଼ିବ ।

– ଶାରଳା ଦାସ ଗଙ୍ଗାଙ୍କୁ ଏଇପରି ଭାବରେ ଗଢ଼ି ଠିଆକରାଇଛନ୍ତି ।

ରାଜା ନିର୍ଘାତଙ୍କ ଘରେ କନ୍ୟା ଜନ୍ମଗ୍ରହଣ କଲା । ସେ ଧବଳାଙ୍ଗୀ ଥିବାରୁ ତା'ର ନାମ ହେଲା ଗଙ୍ଗା । କନ୍ୟାଟି ଯେତେ ବଢ଼ିଲା, ସେତିକି ହେଲା ଚପଳ, ଚଞ୍ଚଳ, ମୁକ୍ତ, ଦୁର୍ଦ୍ଦାନ୍ତ । ଏଠି ଶାରଳା ଦାସ, ଅବାଧବାହିନୀ ସେହି ନାମର ନଦୀର ପ୍ରାକୃତିକ ଚରିତ୍ରକୁ ଆଣି ଏଇ କନ୍ୟାଠାରେ ଆରୋପ କରିଛନ୍ତି, ଯାହାକି ଯଥାର୍ଥ ଓ ତା'ର ପର ଜୀବନର ଘଟଣା ସହିତ ସାମଞ୍ଜସ୍ୟ ରକ୍ଷାକରୁଛି । ମୂଳ ମହାଭାରତର ପ୍ରେମଶୀଳା, ଗୁଣାନ୍ୱିତା, ସୁନ୍ଦରୀ ବଧୂ ସହିତ ଗଙ୍ଗାର ଗଙ୍ଗାତ୍ୱର କିଛି ସମ୍ପର୍କ ଇ ନାହିଁ । ଅଥଚ ପ୍ରେମଶୀଳା ବଧୂ ସହିତ, ସନ୍ତାନହତ୍ୟାକୁ ମଧ୍ୟ ଆମେ ଏକାଠି କରି ପାରୁନା ।

କ୍ରମେ କୁମାରୀ ଗଙ୍ଗା ନାରୀ ହେଲେ – କିନ୍ତୁ ତାଙ୍କର ସ୍ୱଭାବ ସେଇପରି ରହିଲା । ଘରେ ନ ରହି ରାଜ୍ୟର ପିଲାଙ୍କ ସାଙ୍ଗେ ସବୁବେଳେ ବଣ ଜଙ୍ଗଲରେ ବୁଲିଲେ, ନାନା କ୍ରୀଡ଼ାରେ ମାତି ରହିଲେ । ପିତା ଚିନ୍ତିତ ହୋଇ ସ୍ୱୟମ୍ବରର ପ୍ରସ୍ତାବ କଲେ । କିନ୍ତୁ ତା' ଶୁଣି ସେ ବାପାଙ୍କୁ କହିଲେ– ''ବାପା, ମୁଁ ସ୍ଥିର କରିଛି– କେବଳ ଶିବଙ୍କୁ ହିଁ ବିବାହ କରିବି । ଅନ୍ୟ ପ୍ରସ୍ତାବ ପକାଇ ଲାଭ ନାହିଁ ।''

ଶିବ ସେ କାଳକୁ ବ୍ରହ୍ମହତ୍ୟା ପାପରୁ ମୁକ୍ତିପାଇଁ ହାଟକେଶ୍ୱର ଶିବଭାବରେ ଯାଇ ପାତାଳରେ ତପସ୍ୟା କରୁଥିଲେ । ବହୁଯୁଗ ବିତିଗଲାଣି । ଶାନ୍ତନୁ ରାଜା ଶିବଭକ୍ତ । ଶିବଙ୍କର ପ୍ରତ୍ୟକ୍ଷ ଉପାସନା ପାଇଁ ସେ ମଧ୍ୟ ପାତାଳରେ ହାଟକେଶ୍ୱରଠାରେ ଯାଇ ରହିଲେ । ସେ ସେହିଠାରୁ ହିଁ ରାଜ୍ୟଶାସନ କରୁଥାନ୍ତି । ଏଇପରି ବହୁଯୁଗ ମଧ୍ୟ ବିତିଗଲା । ଶେଷରେ ହାଟକେଶ୍ୱର ଶିବ କହିଲେ ଶାନ୍ତନୁଙ୍କୁ– ''ତମେ ଯାଅ, ପୃଥିବୀର ଅନ୍ୟ ଦେବଦେବୀଙ୍କୁ ପୂଜା କର । ଏଠି ତ ଅନେକ କାଳ ରହିଲ । ବର୍ତ୍ତମାନ ନିଜ ରାଜ୍ୟକୁ ଫେରିଯାଅ ।''

ସେତେବେଳକୁ ଶାନ୍ତନୁ ଜଟାଜୁଟ ମଣ୍ଡିତ ହୋଇ ଓ ସକଳ ଶୈବ ଚିହ୍ନ ଧାରଣ କରି ଏକ ପ୍ରକାର ଶିବ ପାଲଟି ଗଲେଣି । ସେ ଯେତେବେଳେ ପାତାଳରୁ ଉପରକୁ ଆସିଲେ, ସେ ଆସିଲେ ବୃଷଭ ବାହନରେ ଓ ଡମ୍ବରୁ ଧ୍ୱନି କରି । ଆସି ପହଞ୍ଚିଲେ ନିର୍ଘାତ ରାଜାର ରାଜ୍ୟରେ ।

ନିର୍ଘାତ ତାଙ୍କୁ ଦେଖି କନ୍ୟା ଗଙ୍ଗାଙ୍କୁ ଡାକି କହିଲେ, ''ମା' ଏଇ ଯେ ଶିବ ସ୍ୱୟଂ ବିରାଜମାନ । ତୋର ବିବାହର ବେଳା ଆସିଗଲା– ତୁ ପ୍ରସ୍ତୁତ ହୁଅ ।'' ତେଣେ ଶାନ୍ତନୁଙ୍କୁ ଶିବ ବୋଲି ଧରିନେଇ, ରାଜା ସସମ୍ମାନ ତାଙ୍କୁ ଘରକୁ ଆଣି, କନ୍ୟାର୍ପଣର ପ୍ରସ୍ତାବ କଲେ । ଶାନ୍ତନୁ ବହୁକାଳ ତପସ୍ୟା ପରେ ରାଜ୍ୟକୁ ଫେରୁଛନ୍ତି ।

ନୂତନ ଜୀବନରେ ସହଧର୍ମିଣୀ ତ ଦରକାର – ସେ ରାଜିହୋଇଗଲେ । ବିବାହକ୍ରିୟା ଆରମ୍ଭ ହେଲା । ବେଦୀ ଉପରେ କିନ୍ତୁ ଯେତେବେଳେ ବରର ଗୋତ୍ର ଆଦି ପଚରା ଗଲା, ଅଭ୍ୟାସବଶତଃ, ଶାନ୍ତନୁ ନିଜ ଗୋତ୍ର ଓ ପୂର୍ବପୁରୁଷଙ୍କ ନାମ ସବୁ କହିଲେ । ତାହା ଶୁଣି ଗଙ୍ଗା ବେଦୀରୁ ଉଠିପଡ଼ି କ୍ରୋଧରେ କହିବାକୁ ଲାଗିଲେ– "ଏ କ'ଣ ! ଏ କି କପଟାଚାର ! ଶିବଙ୍କର ଗୋତ୍ର କ'ଣ ? ପୂର୍ବପୁରୁଷ କ'ଣ ? ମୁଁ ଯାଙ୍କୁ ଶିବ ବୋଲି ଭାବିଥିଲି; ଏ ଯେ ଜଣେ ରାଜା ମାତ୍ର । ମୁଁ ଯାଙ୍କୁ ବିଭାହେବିନି !"

ମହାକାଣ୍ଡ ! ପିତା ନିର୍ଘାତ ଝିଅର ହାତଧରି କହିଲେ– 'ମା', ସବୁ ଭୁଲ୍ ମୋର । ମୁଁ ତତେ ଦେବି ବୋଲି ସତ୍ୟକରିସାରିଛି । ମୋର ସତ୍ୟପାଇଁ ତୁ ଏଥିରେ ମଙ୍ଗିଯା ।'

ଗଙ୍ଗା ପିତାଙ୍କ ବଚନ ପାଇଁ କେବଳ ଶାନ୍ତନୁଙ୍କୁ ବିବାହ କଲେ । କିନ୍ତୁ ବିବାହ ବାସରରେ ହିଁ ନବ ସ୍ୱାମୀଙ୍କୁ ଠୋକ୍‌ଠାକ୍ କହିଦେଲେ– "ଦେଖ, ଆଉ ଜଣକୁ ବିବାହ ହେବାରେ ମୋର ଚିତ୍ତ ଥିଲା । ତମଠି ମୋର ଆସକ୍ତି ନାହିଁ । ତେବେ ବିବାହ ତ ହେଲି । ମୋ' ଆର୍ଦ୍ଦୋଳି ତମେ ସହ୍ୟ କରିବ । ମୋ' ବିରୁଦ୍ଧରେ କୌଣସି କଥା କରିବନି ବା ମୋ' କାମରେ କୌଣସି ବାଧା ଦେବନି । ବାଧା ଦେଲେ ଇ ମୁଁ ତମକୁ ଛାଡି ପଳାଇବି । ଗଙ୍ଗା କହିଲେ ଥିବି, ଗାଙ୍ଗୀ କହିବ ତ ଯିବି ।"

ଏ ପରିସ୍ଥିତିରେ ଦାମ୍ପତ୍ୟଜୀବନ ଯେପରି ହେବାର କଥା, ତାହା ଶାରଳା ଦାସ ଅତି ଜୀବନ୍ତଭାବରେ ବର୍ଣ୍ଣନା କରିଛନ୍ତି । ସମଗ୍ର ପ୍ରାଚୀନ ସାହିତ୍ୟରେ ଏ ଚିତ୍ରଣର ପଟାନ୍ତର ନ ଥିବ । ଏହା ଏକାନ୍ତ ମତ୍ତ୍ୱର୍ଣ୍ଣ । ଏବଯାକେ ବି ଆମେ କାବ୍ୟ-କବିତାରେ, ଗଳ୍ପ ଉପନ୍ୟାସରେ କେବଳ ମଧୁମୟ ଦାମ୍ପତ୍ୟର ଚିତ୍ର ଦେଖୁଁ– ଯାହାକି ସମ୍ପୂର୍ଣ୍ଣ ଅଳୀକ । କିନ୍ତୁ ଛଅଶହ ବର୍ଷ ତଳେ କୃଷକକବି ଶାରଳାଦାସ, ଏକ ଜନକାବ୍ୟରେ ସାଧାରଣ ଦାମ୍ପତ୍ୟ-ଦ୍ୱନ୍ଦ୍ୱକୁ ଜୀବନ୍ତଭାବରେ ଫୁଟାଇଯାଇଛନ୍ତି । ସେ ଯୁଗରେ ବି ଏ ମହାକବି ନାରୀର ସତୀତ୍ୱ ବା ମାଧୁର୍ଯ୍ୟ ଅପେକ୍ଷା ନାରୀତ୍ୱର ସ୍ୱକୀୟ ଦାବୀ ସ୍ୱୀକାର କରିଥିଲେ । ସେ ମୁକ୍ତକଣ୍ଠରେ ପ୍ରଚାର କରିଥିଲେ ଯେ ଗଙ୍ଗାପରି ପ୍ରତ୍ୟେକ ନାରୀର ସ୍ୱତନ୍ତ୍ର ଇଚ୍ଛା, ସ୍ୱକୀୟ ପ୍ରବୃତ୍ତି, ସ୍ୱାଧୀନ ସିଦ୍ଧାନ୍ତକୁ ଆମକୁ ମାନିବାକୁ ଇ ହେବ; ନଚେତ୍ ଗାର୍ହସ୍ଥ୍ୟ ଜୀବନରେ ଶାନ୍ତି ଅସମ୍ଭବ । ଛଅଶହ ବର୍ଷ ତଳେ ଓଡ଼ିଶାରେ କବି ଶାରଳାଦାସ ଏହାର ଜୀବନ୍ତ ଆଲେଖ୍ୟ ଛାଡ଼ିଯାଇଛନ୍ତି ।

ଶାନ୍ତନୁ ରାଜା ହେଲେ ମଧ୍ୟ ଥିଲେ ସନ୍ନ୍ୟାସଧର୍ମୀ । ସେ ଯାଗ-ଯଜ୍ଞ କରନ୍ତି, ଉପବାସ କରନ୍ତି, ଉପାସନା ଇତ୍ୟାଦିରେ ମାତିଥାନ୍ତି । ନବବିବାହିତା ଉଚ୍ଛଳଯୌବନା ଗଙ୍ଗା ଏସବୁ ଦେଖି ସ୍ୱାମୀଙ୍କୁ ଅକୁଣ୍ଠବାଣୀରେ କହିଲେ– 'ତମେ ରାଜା, ତମେ କ୍ଷତ୍ରିୟ । ତମର ଏସବୁ ତପସ୍ୟା, ଉପବାସ କ'ଣ ? ତମର କର୍ତ୍ତବ୍ୟ ହେଉଛି

ପରରାଜ୍ୟକୁ ନିଜ ରାଜ୍ୟରେ ମିଶେଇବା, ଯୁଦ୍ଧକରିବା, ପ୍ରଜା ପାଳିବା । ସେଇ ତ ତମର ମୁକ୍ତିର ଉପାୟ । ଏ ସବୁ ବୈରାଗୀ ଢଙ୍ଗ କ'ଣ ? ମୁଁ ତା' କରେଇଦେବିନି ।'

ସେ ତାହା ହିଁ କଲେ ମଧ୍ୟ । ସ୍ୱାମୀଙ୍କୁ ଏକାଦଶୀ କରାଇଦେଲେନି । (ଶାରଳା ଦାସ ତାଙ୍କ ମହାଭାରତର ସର୍ବତ୍ର ଏକାଦଶୀ-ପାଳନା ଉପରେ ଭାରି ଜୋର୍ ଦେଇଛନ୍ତି । ଶାନ୍ତିପର୍ବରେ ଭୀଷ୍ମଙ୍କ ମୁହଁରେ ଯୁଧିଷ୍ଠିରଙ୍କୁ ଉପଦେଶ ମଧ୍ୟ ଦେଇଛନ୍ତି ଯେ– 'ରାଜା, ତୁ ଦେଖିବୁ, ଯେପରି ତୋର ପ୍ରଜାମାନେ ସମସ୍ତେ ଏକାଦଶୀ ଉପବାସଟା ଅନ୍ତତଃ ମାନି ଚଳନ୍ତି ।' ସ୍ୱାମୀଙ୍କର ସ୍ରୁବ ସ୍ରୁଚ ପ୍ରଭୃତି ଯଜ୍ଞୋପକରଣ ସବୁକୁ ନେଇ ଚୁଲିରେ ପୋଡ଼ିଦେଲେ । ନାନା ଭାବରେ ସ୍ୱାମୀଙ୍କୁ ବୈରାଗୀ-ମନୋବୃତ୍ତିରୁ ଫେରାଇ ଆଣିବାକୁ ଚେଷ୍ଟାକଲେ । ଜଣେ ତରୁଣୀ ପତ୍ନୀ ପକ୍ଷରେ ଏହା ହୁଏତ ନିତାନ୍ତ ସ୍ୱାଭାବିକ ଚେଷ୍ଟା ।

ଆଧୁନିକ ପରିଭାଷାରେ ଏ'ତ ହେଲା ଇନ୍‌କମ୍ପାଟିବ୍‌ଲ୍ ମାରେଜ୍ ବା ଅସମଞ୍ଜସ ବିବାହ । ଏପରି ବିବାହର କାମ-ଜୀବନ ବା ସେକ୍‌ସ-ଲାଇଫ୍ କିପରି ହେବ ତା' ଏବର ମନସ୍ତତ୍ତ୍ୱବିଦ୍‌ମାନେ ପ୍ରାଞ୍ଜଳ ବର୍ଣ୍ଣନା କରିଯିବେ । ଶାରଳାଙ୍କ ବର୍ଣ୍ଣନା ଜୀବନ୍ତ ଭାବରେ ସତ୍ୟ – ଏଠାରେ ସେ ବର୍ଣ୍ଣନା ନିଷ୍ପ୍ରୟୋଜନ । କିନ୍ତୁ ଆମର କୌଣସି ମନସ୍ତତ୍ତ୍ୱବିତ୍ ଏହାର ବୈଜ୍ଞାନିକ ଆଲୋଚନା କରିବା ଏକାନ୍ତ ଉଚିତ ।

ଗଙ୍ଗାଙ୍କ ବ୍ୟବହାର ଅସହ୍ୟ ହୁଅନ୍ତେ ସାଧୁ ଶାନ୍ତନୁ ବେଳେ ବେଳେ ତାଙ୍କୁ ସେ କାହିଁକି ଏପରି ଦୁର୍ଦ୍ଦାନ୍ତ ହୋଇ ତାଙ୍କ ପ୍ରାଣକୁ ଜାଳୁଛନ୍ତି ବୋଲି ମିନତି କରି କହିବାରୁ ଗଙ୍ଗା ରୋକ୍‌ଠୋକ୍ ଜବାବ ବି ଦେଇଛନ୍ତି– ''ଏଇ ହେଲା ମୋର ସ୍ୱଭାବ । ମତେ କେବଳ ଶିବ ହିଁ ସମ୍ଭାଳିଥାନ୍ତେ । ତମଠି ବା ଏ ଘର ସଂସାର ପ୍ରତି ମୋର ତ ଆଦୌ ଆସକ୍ତି ନାହିଁ, ଜାଣ – ମତେ ଏସବୁ ପଚାରୁଛ କ'ଣ ?''

ଯାହାହେଉ ଏ ପରିସ୍ଥିତିରେ ବି ସନ୍ତାନ ଜନ୍ମ ହେଲା । ତା'ବି ସଂସାରରେ ଘଟିଥାଏ ସାଧାରଣରେ । ଦୁର୍ଦ୍ଦମନୀୟା ନାରୀ ଗଙ୍ଗା କି ଏଇ ବାଳବଚ୍ଚାଙ୍କ ଲାଳ ପୋଛିବାକୁ ଯେଉଁ ସ୍ୱାମୀ ପ୍ରତି ତାଙ୍କର ଆସକ୍ତି ନାହିଁ, ତା' ଘରେ ବାନ୍ଧିହୋଇ ରହିବେ ? ସେ ସନ୍ତାନ କି ପ୍ରାଣର ବା ପ୍ରଣୟର ସନ୍ତାନ ? ସେ ଯେ କେବଳ ଦେହଜ, କେବଳ ବନ୍ଧନ । ମୁକ୍ତିକାମିନୀ ଗଙ୍ଗା ସେ ବନ୍ଧନକୁ ଜାଣି ଜାଣି କାଟିଲେ । ଗୋଟାକ ପରେ ଗୋଟେ ସନ୍ତାନକୁ ନିଜ ହସ୍ତରେ ହତ୍ୟା କଲେ ।

ସାଧୁ ଶାନ୍ତନୁ ସ୍ତ୍ରୀର ଚରିତ୍ର ତ ଭଲକରି ଜାଣିଲେଣି । ସେ ଆଶା କରିଥିଲେ ସନ୍ତାନସନ୍ତତି ହେଲେ ବା ତା'ର ସ୍ୱଭାବ ପରିବର୍ତ୍ତିତ ହେବ, ଘର ପ୍ରତି ମାୟା ଲାଗିବ । କିନ୍ତୁ ସେ ଦେଖି ଅବାକ୍ ହେଲେ ଯେ ତାଙ୍କ ସ୍ତ୍ରୀ ନିଜ ପିଲାଗୁଡ଼ାଙ୍କୁ ଜନ୍ମ

ଦେଲାକ୍ଷଣି ନିଜ ହାତରେ ମାରିପକାଉଛି । ସେ ପ୍ରଥମ ଥର ପରେ ବାରବାର ମନାକରିବାକୁ, ରୋଧ କରିବାକୁ ଚେଷ୍ଟାକଲେ; କିନ୍ତୁ ନିରସ୍ତ ହେଲେ ଏୟା ଭାବି ଭାବି– ଏ ତ ମା' ହୋଇ ନିଜ ପିଲାଙ୍କୁ ମାରିପକାଉଛି, ତା'ର ମନରେ ତିଳେହେଲେ ଦୁଃଖ ନାହିଁ – ମୋ' କଥାରେ ସେ ଟଳିବ ନା ? ବରଂ ମୁଁ ମନାକଲେ ସେ ଘର ଛାଡ଼ି ପଳେଇବ । ଯାହାହେଉ, ଘରଣୀ ହୋଇ ତ ଜଣେ ଅଛି – ସେ ଚାଲିଗଲେ, ଏ ବୟସରେ ଆଉ କାହାକୁ ଆଣିବାକୁ ଯିବି ?

ଏଇ ବିଚିତ୍ର ଦମ୍ପତିର ଲୀଳା ଏଇପରି ଚାଲିଲା । କିନ୍ତୁ ଅଷ୍ଟମ ସନ୍ତାନକୁ ମଧ୍ୟ ଗଙ୍ଗା ଯେତେବେଳେ ହତ୍ୟା କରିବାକୁ ବସିଲେ ବୃଦ୍ଧ ଶାନ୍ତନୁ ଆଉ ଧୈର୍ଯ୍ୟ ଧରି ପାରିଲେ ନାହିଁ । ସେ ବର୍ତ୍ତମାନ ତାଙ୍କର ପ୍ରତିଜ୍ଞା ଭଙ୍ଗକରି ଗଙ୍ଗାଙ୍କୁ ଗାଳିଦେବାକୁ ଓ ରୋଧିବାକୁ ଆରମ୍ଭ କଲେ– "ଲୋ, ପାମରି ଗାଙ୍ଗି, ତୋର କ'ଣ ଦୟାମାୟା ନାହିଁ ? ତୁ କ'ଣ ରାକ୍ଷସୀ ? ମୋର ଏଇ ପିଲାଟିକୁ ହେଲେ ଛାଡ଼ିଦେ– ସବୁ ତ ମାଆ ହୋଇ ଖାଇଲୁ ।"

ବେଶ୍, ଗଙ୍ଗା ତ ସେତିକି ଚାହୁଁଥିଲେ । ସେ ବର୍ତ୍ତମାନ ଏତେଦିନେ ହେଲେ ଶାନ୍ତନୁ ଆଗରେ ହାସ୍ୟମୟୀ ପ୍ରସନ୍ନା । ସେ କହିଲେ– "ଦେଖ, ତମଠୁ ମୁଁ ଏ ଗାଙ୍ଗୀ ଶବ୍ଦ ଶୁଣିବାପାଇଁ ହିଁ ଗୋଟାକ ପରେ ଗୋଟେ ପୁଅକୁ ହତ୍ୟା କରିଛି । ଏତେଦିନେ ତମର ଧୈର୍ଯ୍ୟ ଭଙ୍ଗ ହେଲା । ମୋ'ଠାରୁ ଆସକ୍ତି ତମର କଟିଲା । ମୁଁ ମଧ୍ୟ ତମ ବନ୍ଧନରୁ ମୁକ୍ତ ହେଲି । ବିଦାୟ ।"

ମହାଭାରତରେ ଏହି ଗଙ୍ଗୋପାଖ୍ୟାନ ଖୁବ୍ ସମ୍ଭବତଃ ଏକ ଆଲେଗୋରୀ ବା ରୂପକ । ଖୁବ୍ ସମ୍ଭବତଃ ରାଜା ଶାନ୍ତନୁ କେବେ ଗଙ୍ଗା-ପ୍ଲାବନରୁ କୌଣସି ଜନନୀ ଓ ତା'ର ସନ୍ତାନମାନଙ୍କୁ ଉଦ୍ଧାର କରିଥିବା ଘଟଣାର ଏହା ରୂପକ ପ୍ରକାଶ, ବା ସେଇପରି ଅନ୍ୟ କିଛି । କିନ୍ତୁ ସେ ଯାହାହେଉ, ନର-ନାରୀ, ସ୍ୱାମୀ-ସ୍ତ୍ରୀର ଆଲେଖ୍ୟଭାବରେ ମୂଳ ମହାଭାରତରେ ଏହା ରହିଯାଇଛି ରୂପ-କଥାର ଅସମ୍ଭବ ଅସଙ୍ଗତ ସ୍ତରରେ, ଯେଉଁଠି ସବୁ ଧରିନେବାକୁହୁଏ, ଯେଉଁଠି ଯୁକ୍ତି ବା ବିଚାରର ପ୍ରବେଶ ନିଷିଦ୍ଧ । ଏହି ଉପାଖ୍ୟାନ କିନ୍ତୁ ପ୍ରାଣବନ୍ତ, ସ୍ୱାଭାବିକ, ଯୁକ୍ତିପ୍ରତିଷ୍ଠ ଓ ଏକାନ୍ତ ଆଧୁନିକ ହୋଇଉଠିଛି ଶାରଳାଙ୍କ ପ୍ରତିଭାର ସ୍ପର୍ଶରେ । ପୁରାଣ ହୋଇଉଠିଛି ପ୍ରତ୍ୟକ୍ଷରେ ଆଧୁନିକ, ଗଳ୍ପ ହୋଇଉଠିଛି ରକ୍ତ-ମାଂସର ଦୈନନ୍ଦିନ ସତ୍ୟ, ରୂପକଥା ପ୍ରସ୍ତୁତ ହୋଇ ରହିଛି ଆଧୁନିକ ମନସ୍ତାତ୍ତ୍ୱିକ ସକଳ ବୈଜ୍ଞାନିକ ବିଶ୍ଲେଷଣ ପାଇଁ । ଏ ଏକ ଅଦ୍ଭୁତ କୃତି, କାରଣ ଏବଯାଏଁ ବି ଆମେ ସାହିତ୍ୟରେ, ଯାହା ଅପ୍ରିୟ, ଲୋକଚକ୍ଷୁରେ ଯାହା ଅସୁନ୍ଦର, ଅସାମାଜିକ ବୋଲି ଧରାଯାଏ, ତାହା ପ୍ରକାଶ

କରିବାକୁ ସାହସ କରୁନା । ଆମର ସମଗ୍ର ସାହିତ୍ୟ ଏ ପର୍ଯ୍ୟନ୍ତ ସତ୍ୟରେ ସତ୍ୟଭୀରୁ ଓ ଜୀବନଠାରୁ ପଳାତକ । ଆମେ ସାହିତ୍ୟରୁ ଶିଶୁପରି ଖାଲି ମିଠା ଚାହୁଁ, ଫଳରେ ଆମର ଶିକ୍ଷ-ସାହିତ୍ୟର ରୁଚି ସେଇ ଶିଶୁ-ସ୍ତରରେ ହିଁ ରହିଯାଇଛି । ଆମ ରୁଚିକି ସୁହାଇ ସାହିତ୍ୟ ଗଢ଼ାଚାଲିଛି । ଆମ ରୁଚି ଚାହେ ପ୍ରେମ ହେବ କେବଳ ମଧୁର, ନାୟକ ନାୟିକା ହେବେ ସୁନ୍ଦର ଓ ଗୁଣବାନ୍, ପଦ୍ୟ ମାତ୍ରେ ହେବ ଯମକ ଅନୁପ୍ରାସରେ ଅଳଙ୍କୃତ; ଅବାଂଛିତ, ଅଶୋଭନ କିଛି ଆମେ ଦେଖିବାକୁ ବା ଜାଣିବାକୁ ଚାହୁନା । ଜୀବନର ରୂପ କିନ୍ତୁ ଓଲଟା । ସେଠି ରୂପ-ପୁଷ୍ପ ଫୁଟେ, କିନ୍ତୁ ଫୁଟେ କୁତ୍ସିତ ମାଟି ଭେଦକରି । ମଧୁର ସେଠି ନିସ୍ୟନ୍ଦିତ ହୁଏ କଠୋର ସାଧନାରୁ । ସେଠି ଶାନ୍ତି ପରେ କେବଳ ଆସେ ଦ୍ୱନ୍ଦ୍ୱର ଦୀର୍ଘ ସଙ୍ଘର୍ଷ । କେବଳ ସୁନ୍ଦର ବା ମଧୁର ଚାହିଲେ ବା ଚିତ୍ରିଲେ, ଆମେ ଜୀବନର ସାମାନ୍ୟତମ ଅଂଶ ହିଁ ଦେଖିଲୁ ବା ଜାଣିଲୁ । ପ୍ରକୃତ ଜୀବନ, ଯାହାକି ସକଳ କଳା ଓ ସାହିତ୍ୟର ଉତ୍ସ, ଆମଠୁ ଦୂରରେ ରହିଗଲା । ଇଂରେଜ ନାଟ୍ୟକାର ସେକ୍‌ସପିୟର୍ ତାଙ୍କ ନାଟକାବଳୀରେ ଜୀବନର ଏଇ ପୂରା-ମିଶ୍ରିତ ଆଲେଖ୍ୟ ନିର୍ବିକାରଭାବରେ ଆଙ୍କିଯାଇଥିବାରୁ, ଜୀବନର ଶିଳ୍ପୀ-ଭାବରେ ସମଗ୍ର ବିଶ୍ୱସାହିତ୍ୟରେ ଅଦ୍ୱିତୀୟରୂପେ ସେ ବିରାଜିତ ଓ ପୂଜିତ । ଆମର କାଳିଦାସ ଓ ରବୀନ୍ଦ୍ରନାଥ ମଧ୍ୟ ସେ ସାହସ ଓ ନିପୁଣତା ଦେଖାଇନାହାନ୍ତି । ଶାରଳାଦାସଙ୍କୁ କାଳିଦାସ ବା ରବୀନ୍ଦ୍ରନାଥଙ୍କଠାରୁ ବଡ଼ ବା ସମକକ୍ଷ କହିବାକୁ ସାହସ କରିବାଭଳି ପଣ୍ଡିତ ବା ମୂର୍ଖ ମୁଁ ନୁହେଁ । ତେବେ ମନେହୁଏ ଆମର ସମଗ୍ର ପ୍ରାଚୀନ ସାହିତ୍ୟରେ, ଶାରଳା ମହାଭାରତରେ ଗଙ୍ଗାଶାନ୍ତନୁଙ୍କର ଅସୁଖ ବିବାହର ଯେ ଚିତ୍ର ଆମେ ପାଉଁ, ତାହା ସୃଜନର ସାହସ ଓ ବର୍ଣ୍ଣନାର ନିପୁଣତାରେ ଅଦ୍ୱିତୀୟ ବୋଲି କହିବାକୁ ହେବ । ଏହାର ପଟାନ୍ତର ଚିତ୍ର କେହି ପାଇଥିଲେ ଦୟା କରି ଜଣାନ୍ତୁ ତ । କେବେ ଥିଲେ ମଧ୍ୟ ଶାରଳା-ପ୍ରତିଭା ତାହାଦ୍ୱାରା ନ୍ୟୂନ ପ୍ରମାଣିତ ହେବ ନାହିଁ, କାରଣ ଏହା ନିଶ୍ଚିତ ଯେ ଏଇ କୃଷକକବି ନିଜ ଭାଷା ଛଡ଼ା ଅନ୍ୟ କୌଣସି ଭାଷା ଜାଣି ନଥିଲେ ।

ସୂକ୍ଷ୍ମଦର୍ଶୀ ପଣ୍ଡିତ ଗୋପୀନାଥ ନନ୍ଦ ଏଇ ଗଙ୍ଗାଙ୍କ ବ୍ୟବହାରକୁ ଲକ୍ଷ୍ୟକରି ମତ ପ୍ରକାଶ କରିଛନ୍ତି ଯେ, ଏହା ବୋଧହୁଏ କବିଙ୍କ ନିଜ ଜୀବନର ଅଭିଜ୍ଞତା– ଅର୍ଥାତ୍ କବିଙ୍କ ସ୍ତ୍ରୀ ଥିଲେ କଳିହୁଡ଼ୀ ଓ ଘରଭଙ୍ଗେଇ । କିନ୍ତୁ ଶାରଳା ମହାଭାରତର ଗଙ୍ଗା କି କେବଳ କଳିହୁଡ଼ୀ ସ୍ତ୍ରୀ ମାତ୍ର ? ସେ ତା' ନୁହନ୍ତି । ଚନ୍ଦ୍ରବଂଶୀ ରାଜଚକ୍ରବର୍ତ୍ତୀଙ୍କୁ ସ୍ୱାମୀ ରୂପେ ପାଇ ମଧ୍ୟ ସେ ସନ୍ନ୍ୟାସୀ ଶିବ ପ୍ରତି ଆସକ୍ତା ଏବଂ ତାହା ମଧ୍ୟ ଗୋପନରେ ନୁହେଁ, ତାହା ସେ ବିବାହବାସରରେ ହିଁ ସ୍ୱାମୀ ଆଗରେ ଅସୀମ ସାହସରେ ଘୋଷଣା କରିଛନ୍ତି । ସନ୍ନ୍ୟାସୀ ଶିବ ପ୍ରତି ଆସକ୍ତ ହେଲେ ହେଁ ରାଜନ୍ୟ

କ୍ଷତ୍ରିୟ ସ୍ୱାମୀଠାରେ ଦୁର୍ବଳ ତପସ୍ୱୀ-ଭାବକୁ ସେ ପସନ୍ଦ କରିନାହାନ୍ତି ଓ ତାହା ସେ ସ୍ପଷ୍ଟଭାବରେ ବ୍ୟକ୍ତ କରିଛନ୍ତି । ଶାନ୍ତନୁଙ୍କ ପ୍ରତି ତାଙ୍କର ଆସକ୍ତି ନାହିଁ, କେବଳ ପିତାଙ୍କ ବଚନ ରକ୍ଷା ପାଇଁ ସେ ବିବାହ କରିଛନ୍ତି । ପୁଣି ତା' କରିଥିଲେ ମଧ୍ୟ ସେ ଚିର-ମୁକ୍ତିକାମିନୀ, ଏହା ମଧ୍ୟ ସେ ସ୍ପଷ୍ଟ ବାଣୀରେ ପ୍ରକାଶ କରିଛନ୍ତି । ପରନ୍ତୁ ଗଙ୍ଗାନଦୀର ଦୁର୍ଦ୍ଦମନୀୟ, ଉଚ୍ଛଳ, ଦୁର୍ବାର ପ୍ରକୃତିକୁ ଏହି ନାୟିକାଠାରେ ଆରୋପ କରି, କବି ଏକ ଅନୁପମ, ପ୍ରାଣବନ୍ତ, ଲୀଳାମୟ, ମହନୀୟ ନାରୀ-ଚରିତ୍ର ଆମ ଆଗରେ ଠିଆ-କରାଇଛନ୍ତି, ଯେ କି ଅନ୍ତତଃ ଆମ ସାହିତ୍ୟର ସମଗ୍ର ନାରୀ-ସଂସାରରେ ଅସାଧାରଣ । ଏ ନାରୀ ଝଙ୍କଡ଼ ଗ୍ରାମର ସିଦ୍ଧେଶ୍ୱର ପରିଡ଼ାଙ୍କର 'କଳିହୁଡୀ' ସ୍ତ୍ରୀଙ୍କର ପ୍ରତିବିମ୍ବ ମାତ୍ର ହୋଇ ନ ପାରନ୍ତି – ଏ ଏକ ପ୍ରତିଭାଶାଳୀ ସ୍ରଷ୍ଟାର ଏକ ଅପୂର୍ବ ସୃଷ୍ଟି । ବ୍ୟାସଙ୍କ ଗଙ୍ଗା କେବଳ ରହସ୍ୟମୟୀ ଦେବୀ – ଶାରଳାଙ୍କ ଗଙ୍ଗା ଏଇ ଆମ ପରିଚିତ ପୃଥିବୀର ରକ୍ତମାଂସମୟୀ ମାନବୀ । ନିଜର ନାରୀତ୍ୱର ଦାବିରେ ହିଁ ସେ ମହନୀୟା ।

ସର୍ବୋପରି, ସଂସ୍କୃତ ଗ୍ରନ୍ଥର ନାୟକ ଓ ନାୟିକା ଉଭୟର ଚରିତ୍ରକୁ ପୁନର୍ଗଠିତ କରି, ଗଙ୍ଗା ପରି ଦେବୀକୁ ଜଣେ ବୃଦ୍ଧ ରାଜାଠାରେ ଆତ୍ମସମର୍ପିତା ହେବା ଓ ସେଠି ପ୍ରତ୍ୟାଖ୍ୟାତା ହେବାରୁ ତା'ର ପୁତ୍ରର ଶରଣପଶିବାରୂପକ ଅସ୍ୱାଦ୍ୟ ଚିତ୍ର ବଦଳରେ ଗଙ୍ଗାଙ୍କୁ ବରାବର ଶିବାସକ୍ତା ରଖି, ଶିବ-ଭ୍ରମରେ ଜଣକୁ ବିବାହ କରିପକାଇଥିବାରୁ, ସେହି ବ୍ୟପଦେଶରେ ପଛର ତିକ୍ତ କ୍ରିୟା-କଳାପକୁ ଏକ ମନସ୍ତାତ୍ତ୍ୱିକ ପଟ୍ଟଭୂମିକାର ଯୋଗାଡ଼ କରି ଶାରଳାଦାସ ଅପୂର୍ବ ଚିନ୍ତା ଓ କଳ୍ପନା ଶକ୍ତିର ପରିଚୟ ଦେଇଛନ୍ତି । ଏହି ବ୍ୟଞ୍ଜନାପୂର୍ଣ୍ଣ ପରିବର୍ତ୍ତନଇ ତ ସୂଚନା କରେ ଯେ, କୃଷକକବି ଜାଣି ଜାଣି ହୁଏତ ମୂଳ ମହାଭାରତକୁ ଜନତା-ଯୋଗ୍ୟ କରିବାକୁ ଯାଇଛନ୍ତି ।

## ଦ୍ରୌପଦୀ –

ଶାରଳାଦାସଙ୍କ ଓଡ଼ିଆ ମହାଭାରତ ପଢ଼ିଗଲେ ଯେଉଁ କେତୋଟି ବିଭାଗରେ କବିଙ୍କର ସର୍ବୋତ୍ତମ ଉତ୍ସାହ ଓ ନୈପୁଣ୍ୟ ଫୁଟିଉଠିଥିବାର ସ୍ପଷ୍ଟ ବୋଧହେବ, ସେ ହେଉଛନ୍ତି– ସମାଜ, ସମର ଓ ସୌନ୍ଦର୍ଯ୍ୟ । ଶାରଳାଙ୍କ ମହାଭାରତରେ ବୀରରସର ଓତପ୍ରୋତ ବିସ୍ତୃତି ଓ ପ୍ରକାଶ ପ୍ରତ୍ୟେକ ପାଠକ ଅନୁଭବ କରନ୍ତି । ଏ ଦିଗରେ ଏହି କବି ସମଗ୍ର ପ୍ରାଚୀନ ଓଡ଼ିଆସାହିତ୍ୟରେ ବୋଧହୁଏ ଏକାନ୍ତ ଏକକ । ପଣ୍ଡିତ ଗୋପୀନାଥ, କବିଙ୍କ ଲେଖାରେ ବୀରରସର ପ୍ରାଚୁର୍ଯ୍ୟ ଓ ପୁଷ୍କଳ ପ୍ରକାଶକୁ ଲକ୍ଷ୍ୟକରି କହିଛନ୍ତି ଯେ କବି ତରୁଣ-ବୟସରେ ନିଶ୍ଚୟ ଯୋଦ୍ଧୃବିଦ୍ୟା ଶିକ୍ଷାକରିଥିଲେ ଏବଂ ଖୁବ୍ ସମ୍ଭବତଃ ତାଙ୍କ ଜାତିର ଦାୟିତ୍ୱ ମେଣ୍ଟାଇବା ପାଇଁ ତାଙ୍କୁ ବାଧ୍ୟ ହୋଇ ସମ୍ରାଟ

କପିଳେନ୍ଦ୍ରଦେବଙ୍କ ଦାକ୍ଷିଣାତ୍ୟ ଅଭିଯାନମାନଙ୍କରେ ସୈନ୍ୟଭାବରେ ଯୋଗଦେବାକୁ ହୋଇଥିବ । ଦାକ୍ଷିଣାତ୍ୟର ନଦୀ, ପର୍ବତ, ନଗର ସବୁର ସଠିକ ସଂକେତ ଓ ପ୍ରତ୍ୟକ୍ଷ ବର୍ଣ୍ଣନା ଶାରଳାଙ୍କ ଲେଖାରୁ ଯାହା ମିଳୁଛି ଏବେ ସେଥିରୁ ଏହି ଧାରଣା ଦୃଢ଼ ହେଉଛି । ଗୋଦାବରୀ ନଦୀ କୂଳରେ ଓଡ଼ାଦି ଶିବପୁର ଅଦ୍ୟାପି ଏକ ନଗର ଓ ତୀର୍ଥସ୍ଥାନ । ଶାରଳାଙ୍କ ମହାଭାରତରେ ଏ ସ୍ଥାନ ବର୍ଣ୍ଣିତ ଅଛି । ଏ ସ୍ଥାନ କିନ୍ତୁ ସେତେ ଜଣାଶୁଣା ନୁହେଁ । ତେଣୁ ବିଶ୍ୱାସ ଯେ ଆମର କବି ତରୁଣବୟସରେ ସେ ସ୍ଥାନ ଦେଖିଥିଲେ; ହୁଏତ ତୀର୍ଥଯାତ୍ରୀଭାବରେ ବା କପିଳେନ୍ଦ୍ରବାହିନୀର ସୈନ୍ୟ-ଭାବରେ । ତୀର୍ଥଯାତ୍ରୀ ତ ସେ ଥିଲେ – କିନ୍ତୁ ସାମାନ୍ୟ ଡୁ ଡୁ ଖେଳରୁ ଆରମ୍ଭକରି ଗହନ ବ୍ୟୂହଯୁଦ୍ଧ ପର୍ଯ୍ୟନ୍ତ ଶାରଳାଦାସ ପ୍ରତ୍ୟେକଟି ଲଢ଼ାଇକୁ ଯେପରି ଉତ୍ସାହ, ନିପୁଣତା ଓ ପ୍ରତ୍ୟକ୍ଷ ଅନୁଭବ ପରି ପ୍ରାଣବନ୍ତ କରି ବର୍ଣ୍ଣନା କରିଛନ୍ତି, ତାହା ତାଙ୍କର ସୈନିକତ୍ୱର ମଧ୍ୟ ଦୃଢ଼ ସୂଚନା ଦିଏ ।

ଶାରଳା ମହାଭାରତ ପୁଣି ଓଡ଼ିଶାର ପଲ୍ଲୀସମାଜର ଯେ ଗୋଟିଏ ସୁନ୍ଦର ଆଲେଖ୍ୟଶାଳା, ତାହା ମଧ୍ୟ ଅତି ସ୍ପଷ୍ଟ । ଏ ଗ୍ରନ୍ଥର ସଂସାର ହେଉଛି ଓଡ଼ିଶାର ସାମାଜିକ ଜଗତ୍ । ଗୋ-ଶସ୍ୟ-କୈନ୍ଦ୍ରିକ, କୁସଂସ୍କାରପ୍ରତିଷ୍ଠ, ଦେବଦେବୀପୂର୍ଣ୍ଣ, ଧର୍ମଭୀରୁ ଏଇ ପଲ୍ଲୀ-ସମାଜ ଆଜି ବି ଠିକ୍ ସେଇପରି ଅଛି, ଯେପରି ଥିଲା ଶାରଳାଙ୍କ ସମୟରେ । ଶାରଳାଦାସ ଏଇ ସମାଜ ପାଇଁ ହିଁ ତାଙ୍କର ମହାଭାରତ ଲେଖିଥିଲେ । ମୂଳଗ୍ରନ୍ଥର ନାୟକ ନାୟିକାଙ୍କୁ ଏଇ ସମାଜ ପାଇହିଁ ସେ ଏଇ ସମାଜର ନରନାରୀ କରି ଗଢ଼ିଲେ । ଫଳରେ ତାଙ୍କ ଗ୍ରନ୍ଥ ହୋଇଉଠିଛି ଓଡ଼ିଶାର ଚିତ୍ରଶାଳା, ଓଡ଼ିଶାର ପ୍ରକୃତ ନାଶନାଲ ଏପିକ୍ ।

କିନ୍ତୁ ପଲ୍ଲୀସମାଜରେ ଜନ୍ମହୋଇ ଓ ବଢ଼ି, ରୁକ୍ଷ କୃଷକ ବା ସୈନିକଭାବରେ ଜୀବନ କଟାଇ, କୌଣସି ସଭ୍ୟ, ସଂସ୍କୃତ ସାହିତ୍ୟ ବା ସମାଜ ସହିତ କୌଣସି ପ୍ରକାର ପ୍ରତ୍ୟକ୍ଷ ବା ଗଭୀର ପରିଚୟ ନ ଥାଇ ମଧ୍ୟ, ଏହି କୃଷକକବିଙ୍କର ଗଭୀର, ସୂକ୍ଷ୍ମ, ସୁକୁମାର ସୌନ୍ଦର୍ଯ୍ୟବୋଧ ସବୁଠାରୁ ଅଧିକ ବିସ୍ମୟ ଦାନ କରୁଛି । ତାହା ମଧ୍ୟ ତାଙ୍କର ସହଜାତ ପ୍ରତିଭାର ସୂଚନା ଦେଉଛି । ପ୍ରତିଭା ହେଉଛି ସେହି ଅଦୃଶ୍ୟ ତୃତୀୟ ନେତ୍ର, ଯାହା ରୁକ୍ଷ ଭିତରେ କୋମଳର, କୁତ୍ସିତ ଭିତରେ ସୁନ୍ଦରର, କ୍ଷଣିକ ଓ କ୍ଷୀୟମାଣ ଭିତରେ ଶାଶ୍ୱତକୁ ଦେଖିପାରେ । ଆମେ ଆମର ଏଇ କୃଷକ କବିଙ୍କର ଅନୁପମ ସୌନ୍ଦର୍ଯ୍ୟ ବୋଧରୁ ତାଙ୍କର ସେହି ପରମ ଅଭିଳାଷଣୀୟ ତୃତୀୟ ନେତ୍ର ଥିବାର ଦୃଢ଼ ବୋଧ କରୁଁ ।

ଆମର ପ୍ରାଚୀନ ସାହିତ୍ୟରେ ନାରୀ-ତନୁର ବର୍ଣ୍ଣନାର ତ ଅଭାବ ନାହିଁ । କିନ୍ତୁ ସେଥିରୁ ଅଧିକାଂଶ କେବଳ ଗତାନୁଗତିକ– ସେଇ ବଧୁଲୀ ଅଧର, ମୁକ୍ତା ପରି

ଦାନ୍ତ, ଇନ୍ଦ୍ର କୋଦଣ୍ଡ ପରି ଭ୍ରୂଲତା, ସିଂହକଟୀ ପରି ଅଣ୍ଟା ଇତ୍ୟାଦି । ନୂତନ ଅନୁଭୂତିର, ନୂତନ ଦୃଷ୍ଟିକୋଣର ପରିଚୟ କ୍ୱଚିତ୍ କାହିଁ ମିଳେ । କବିସୂର୍ଯ୍ୟଙ୍କ "ଜମ୍ବୁନଦସାର ଜଙ୍ଗମ ହେବାର" ଏଇପରି ଏକ ସୂକ୍ଷ୍ମ କୋମଳ ଦର୍ଶନ ଓ ଅନୁଭବର ପରିଚୟ ଦିଏ । କିନ୍ତୁ ରଥେ ବା ତାଙ୍କ ଗୋଷ୍ଠୀର କବି ସବୁ ଅଳଙ୍କାର-ବ୍ୟବସାୟୀ, ତାଙ୍କର ବେପାର ହେଲା ନାରୀ ସୌନ୍ଦର୍ଯ୍ୟ । କିନ୍ତୁ ଆମର ଦାସେ ହେଲେ ପ୍ରକୃତରେ ଗଳ୍ପସାଗର । ଘଟଣା ପ୍ରବାହ, ଜୀବନ, ମରଣ, ସଂଘର୍ଷ, ପାପ-ପୁଣ୍ୟ, ନେଇ ତାଙ୍କ ବ୍ୟବସାୟ । ଏସବୁ ଶାରଳାଦାସ ଆମକୁ ଅତିରିକ୍ତ ମାତ୍ରାରେ ଦେଇଛନ୍ତି । କିନ୍ତୁ ତା' ଭିତରେ ଯେଉଁ କେତୋଟି ସ୍ଥାନରେ ସେ ଦେବାକୁ ଯାଇଛନ୍ତି ନାରୀ ସୌନ୍ଦର୍ଯ୍ୟର ବର୍ଣ୍ଣନା, ତାହା ସରସତା ଓ ସରଳତା ଭଞ୍ଜାଦି ପରବର୍ତ୍ତୀ ଆଳଂକାରିକ କବିମାନଙ୍କର କ୍ଲିଷ୍ଟ କଳ୍ପନାର ଅନାବଶ୍ୟକ ପ୍ରୟାସକୁ ଅନେକ ପରିମାଣରେ ଅସ୍ୱାଦ୍ୟ କରିଦେଉଛି । ଏଇ ଚିତ୍ରଣର ପରାକାଷ୍ଠା ଆମେ ଦେଖୁଁ ମହାଭାରତର ପ୍ରଧାନତମା ନାରୀ ଦ୍ରୌପଦୀଙ୍କଠାରେ । ଏ ଦୁଇର ଏକତ୍ର ସମାବେଶ କୌଣସି ମତେ ଆକସ୍ମିକ ହୋଇନପାରେ । ଚତୁର କୃଷକକବି ତାଙ୍କର ତୂଳିକାର ସର୍ବଶ୍ରେଷ୍ଠ ବର୍ଣ୍ଣ ଓ ଚିତ୍ରଣ-କ୍ଷମତା ଯେ ଜାଣି ଜାଣି ଏଇ ପ୍ରିୟ ଚରିତ୍ର ପାଇଁ ରଖିଥିଲେ, ଏହା ସହଜରେ ବିଶ୍ୱାସ କରାଯାଇପାରେ ।

ଦ୍ରୌପଦୀଙ୍କ ସ୍ୱୟଂବର କାଳ । ଭାରତବର୍ଷର ସକଳ ପ୍ରାନ୍ତରୁ ତରୁଣ ବୀର ରାଜାମାନେ ଲାଖ ବିନ୍ଧି ସେଇ ବିଶ୍ୱ-ସୁନ୍ଦରୀଙ୍କୁ ଲାଭ କରିବାପାଇଁ ପାଞ୍ଚାଳ ନଗରରେ ସମାଗତ । ବାହାରେ ଦ୍ରୁପଦ-ନନ୍ଦନ ଧୃଷ୍ଟଦ୍ୟୁମ୍ନ, ସମାଗତ ରାଜା ଓ ଅନ୍ୟାନ୍ୟ ଅତିଥିମାନଙ୍କର ଚର୍ଚ୍ଚାରେ ବ୍ୟସ୍ତ । ଅନ୍ତଃପୁରରେ ଦାସୀବର୍ଗ ଦ୍ରୌପଦୀଙ୍କୁ ବେଶଭୂଷା ପିନ୍ଧାଇବାରେ ବ୍ୟସ୍ତ । ଦ୍ରୌପଦୀଙ୍କ ତନୁର କୋମଳତାର ବ୍ୟଞ୍ଜନା କବି ଏଇପରି ଭାବରେ ଦେଇଛନ୍ତି–

"ନ ସହଇ ସେ ସୁନ୍ଦରୀ ଅଳଙ୍କାର ଭାରା ।" ଯଦିଓ "ବେଶଭୂଷଣକୁ ଦେବୀ ମଣଇ ବିମୁଖ", ତଥାପି ଯାହା ନ ଦେଲେ ନ ଚଳେ ତାହା ପିନ୍ଧାଇ ତାକୁ ହାନ୍ଦୋଳାରେ ଭର୍ତ୍ତିକରି ସଭାମଣ୍ଡପକୁ ଅଣାଗଲା । ରାଜା ଦ୍ରୁପଦ ଲାଖର ଲକ୍ଷ୍ୟ ଓ ବର୍ଣ୍ଣନା ଦେଇ ରାଜାମାନଙ୍କୁ ପ୍ରତିଯୋଗିତା ଆରମ୍ଭ କରିବାକୁ ଅନୁରୋଧ କରି ଚାଲିଗଲେ । କିନ୍ତୁ ରାଜାମାନେ ବିଶ୍ୱ-ସୁନ୍ଦରୀ ଦ୍ରୌପଦୀଙ୍କୁ ଥରେ ଦେଖିବାକୁ ଅସମ୍ଭାଳ ହେଲେଣି । ସମସ୍ତଙ୍କର ଇଚ୍ଛା, କିନ୍ତୁ କେହି ପାଟି ଫିଟାଇ କହିପାରୁନାହାନ୍ତି । ଧୈର୍ଯ୍ୟଧରି ନ ପାରି ଜରାସନ୍ଧ କହିଉଠିଲା– "ଶୁଣ ଧୃଷ୍ଟଦ୍ୟୁମ୍ନ, ମନର କଥା କେହି କହିପାରୁନାହାନ୍ତି । ତମେ ତ ଦ୍ରୌପଦୀକି ହାନ୍ଦୋଳା ଭିତରେ ରଖିଲ, ଏ ରାଜାମାନେ

ତ କେହି ତାଙ୍କୁ ଦେଖିପାରିଲେନି, ଲାଖ ବିନ୍ଧିବେ କାହା ଲାଗି ? ମେଢ଼ରୁ ସଭାକୁ ତାଙ୍କୁ ଆଣ, ସବୁ ରାଜା ତାଙ୍କ ବଦନମଣ୍ଡଳ ଦେଖିବାକୁ ପାଆନ୍ତୁ ।''

ମୂଳ ମହାଭାରତରେ, ଭାରତର ତରୁଣ ଜନତାର ରୂପ ପ୍ରତି ଏଇ ଶାଳୀନ ମର୍ଯ୍ୟାଦା ଦାସେ ତାଙ୍କ ମହାଭାରତରେ ଯାହା ଦେଖାଇଛନ୍ତି, ତାହା ନାହିଁ । କିପରି ନାହିଁ, ଆଶ୍ଚର୍ଯ୍ୟ ହେବାକୁ ହୁଏ । କାରଣ ସେ ଯୁଗରେ ଗୋଟିଏ ଗୋଟିଏ ସାରା ଦେଶ ଗୋଟିଏ ଗୋଟିଏ ସୁନ୍ଦରୀ ସହିତ ନିଜର ନାମକୁ ଜଡ଼ିତ କରି ନିଜକୁ ଗୌରବାନ୍ୱିତ ମନେକରୁଥିଲେ । ସୀତା ତେଣୁ ବୈଦେହୀ, ନିଖିଳ ବିଦେହ ରାଜ୍ୟର ଶ୍ରେଷ୍ଠ ସୁନ୍ଦରୀ । ଦ୍ରୁପଦକନ୍ୟା ମଧ୍ୟ ତେଣୁ ପାଞ୍ଚାଳୀ, ସମଗ୍ର ପାଞ୍ଚାଳ ରାଜ୍ୟର ସର୍ବୋତ୍ତମ ମଣି । ତାଙ୍କରି ପାଇଁ ତ ନିଖିଳ ଭାରତର ସମଗ୍ର କ୍ଷାତ୍ରସମ୍ପ୍ରଦାୟର ଶ୍ରେଷ୍ଠ ଶୌର୍ଯ୍ୟ କ୍ଷୁଦ୍ର ପାଞ୍ଚାଳ ନଗରରେ ସମବେତ । ତେଣୁ ଲାଖ ବିନ୍ଧିବାର ଇନ୍‌ସ୍ପିରେଶନ୍ ଆସିବ କାହୁଁ, ଯେ ପର୍ଯ୍ୟନ୍ତ ବିଶ୍ୱ-ବିଶ୍ରୁତା ପାଞ୍ଚାଳ-ସୁନ୍ଦରୀଙ୍କୁ ସେମାନେ ଥରେ ହେଲେ ଏଯାଏଁ ଦେଖିନାହାନ୍ତି ? ଜରାସନ୍ଧ ମୁଖରେ ତରୁଣର ଏଇ ଦାବି ଦାସ-କବି ଯେପରି ଭାବରେ ପୂରାଇଛନ୍ତି, ତାହା ତାଙ୍କର ମାନବଚରିତ୍ରର ଗଭୀର ପର୍ଯ୍ୟବେକ୍ଷଣର ସୂଚନା ଦିଏ ।

ସୁନ୍ଦରୀ ଦ୍ରୌପଦୀଙ୍କୁ ହାନ୍ଦୋଳାର ଗୋପନ ଅଭ୍ୟନ୍ତରରୁ ଯେତେବେଳେ ବାହାର କରି ଆଣି ସମବେତ ଜନସଂଘର କୋଟି କୋଟି ଦୃଷ୍ଟି ତଳେ ଠିଆକରାଇଦିଆଗଲା, ଉପସ୍ଥିତ ପ୍ରତିଯୋଗୀମାନଙ୍କ ଭିତରେ ଏକ ମହା ବିସ୍ମୟର ବାତ୍ୟା ବହିଗଲା । ସେମାନେ ଦ୍ରୁପଦ ରାଜାର କନ୍ୟା ସୁନ୍ଦରୀ ବୋଲି ଶୁଣିଥିଲେ, କିନ୍ତୁ ଏପରି ସୁନ୍ଦରୀ ! ଏଯେ ଅଶ୍ରୁତପୂର୍ବ ଓ ଅଦୃଷ୍ଟପୂର୍ବ ! ନାରୀର ସୌନ୍ଦର୍ଯ୍ୟ ନିକଟରେ ପୁରୁଷର ଶାଶ୍ୱତ ଆତ୍ମସମର୍ପଣକୁ କୃଷକକବି ଆଶ୍ଚର୍ଯ୍ୟ ସୂକ୍ଷ୍ମଦର୍ଶନର ପରିଚୟ ଦେଇ ଦ୍ରୌପଦୀରୂପ-ବିମୁଗ୍ଧ ରାଜାମାନଙ୍କ ମୁଖରେ କୁହାଇଛନ୍ତି–

ନ ଜାଣି ଦ୍ରୁପଦ ରାଜା କଲା ସ୍ୱୟଂବର
ଏଥି ନାହିଁ କେହି ବର ଯାର ପଟାନ୍ତର ।

ଦମନ ଦେଶର ରାଜା ଆପେ ଆପେ କହିଉଠିଲେ– ''କନ୍ୟାର ଦେହରେ ଅଳଙ୍କାର ତ ବେଶି ନାହିଁ ?''

ପାଖରେ ଥିବା ଦୁର୍ଯ୍ୟୋଧନ ଉତ୍ତର ଦେଲେ– ''ପାଗଳ ନା କିସହୋ ତମେ; ଏଇତକ ବୁଝିପାରୁନ ? ଏ ଶରୀରକୁ ଯେ ଅଳଙ୍କାର ମାତ୍ରେ ଇ ଭାରା ।''

କର୍ଣ୍ଣ ରସ ସଂଯୋଗ କରି କହିଲେ– ''ଏ କନ୍ୟାର ଅଳଙ୍କାର ଦରକାର କ'ଣ ? ସୁବର୍ଣ୍ଣରୁ ଶତେଗୁଣ ତା'ର ଶାରୀରିକ ସୁଷମା ।''

ଅନ୍ୟେ ସବୁ କୁହାକୁହି ହେଲେ– ''ଯାର ଅପାଙ୍ଗଦୃଷ୍ଟିରେ ଲୁହା, ପଥର, ବଜ୍ର

ବି ଫାଟିଯିବ– ମନୁଷ୍ୟର ହୃଦୟ କେତେ କଥା ? × × × ଏହାର ସୁରଭି ତ ନିଃଶ୍ୱାସରେ, ମନୁଷ୍ୟର ଚିତ୍ତ କଥା ଦୂରେ ଥାଉ, ମନେହୁଏ, ଯେପରି ନିମ୍ବ, ସାହାଡ଼ା ପରି ତିକ୍ତରସ ନିର୍ଗନ୍ଧ ତରୁ ମଧ୍ୟ ଚନ୍ଦନ ପାଲଟିଯିବେ ।''

ଦ୍ରୌପଦୀ, କବିଙ୍କର ମାନସୀ ସୁନ୍ଦରୀ । ଯେପରି ଜୀବନର ସକଳ ଅବସ୍ଥା ଭିତରେ ସେ ରହିଛି ଅପୂର୍ବ ମୋହିନୀ, ଏପରି କି ମୃତ୍ୟୁ ସମୟରେ ମଧ୍ୟ । ମୂଳ ମହାଭାରତରେ ଦ୍ରୌପଦୀଙ୍କ ମୃତ୍ୟୁ ହିମାଳୟ ଦେହରୁ ଖଣ୍ଡେ ଟେଳା ଖସିଲାପରି, ଅତି ସାମାନ୍ୟ ଘଟଣା ପରି ଶେଷକରିଦିଆଯାଇଛି । କିନ୍ତୁ ଶାରଳା ମହାଭାରତରେ ଏହା ଅତ୍ୟନ୍ତ ନାଟକୀୟ, କରୁଣ ଓ ବିସ୍ତୃତ । କବି, ସୁନ୍ଦରୀ ଦ୍ରୌପଦୀଙ୍କୁ ଜରାଦିର ବୀଭତ୍ସତା ଭିତରେ ଇହସଂସାରରୁ ବିଦାୟନେବାକୁ ଦେଇନାହାନ୍ତି । ସେ ତାଙ୍କ ମହାଗ୍ରନ୍ଥରେ ପରମରୂପର ପ୍ରଭାମଣ୍ଡଳ ନେଇ ଆମ ସମ୍ମୁଖରେ ଆବିର୍ଭୂତ ହୋଇଥିଲେ ଯେପରି, ବିଦାୟ ମଧ୍ୟ ନେଇଛନ୍ତି ସେଇପରି । ରୂପର ପୂଜାରୀ କୃଷକକବି ଜାଣିଜାଣି ଏହା କରିଥିବାର ଜଣାପଡ଼େ, କାରଣ ଏପରି ନ କରିଥିଲେ ମଧ୍ୟ ପାଣ୍ଡବମାନଙ୍କର ସ୍ୱର୍ଗାରୋହଣ ବର୍ଣ୍ଣନାରେ ଅପୂର୍ଣ୍ଣତା ଦୋଷ ଆସିନଥାନ୍ତା ।

ସ୍ୱର୍ଗାରୋହଣପଥରେ ହିମାଳୟର ଶୃଙ୍ଗଦେଶରେ କ୍ଳାନ୍ତଚରଣା ଦ୍ରୌପଦୀ ଓ ପଥଶ୍ରାନ୍ତ ଅନ୍ୟ ପାଣ୍ଡବମାନଙ୍କୁ 'ଆସ' ବୋଲି କହି ଧର୍ମରାଜ ଯୁଧିଷ୍ଠିର ଆଗକୁ ଚାଲିଲେ । କିନ୍ତୁ ଠିକ୍ ପରେ ପରେ ଦ୍ରୌପଦୀଙ୍କର ପାଦ ଖସିଗଲା । ସେ ମୁହଁ ମାଡ଼ି ପଡ଼ିଗଲେ ଓ 'ଧର' 'ଧର' ବୋଲି ଚିତ୍କାରକଲେ । ଭୀମ, ବଡ଼ଭାଇଙ୍କି ପଛରୁ ଡାକିଲେ ''ଭାଇ, ଲେଉଟି ଆସ – ଦ୍ରୌପଦୀ ଯେ ତଳେ ପଡ଼ିଗଲେ ।'' ଜୀବନ-ବିରାଗୀ ଯୁଧିଷ୍ଠିର ଉତ୍ତର ଦେଲେ– ''ତାକୁ ଛାଡ଼ିଦେଇଆସ । କର୍ମ ଅନୁସାରେ ଯେଝା କର୍ମଫଳ ପ୍ରତ୍ୟେକ ଭୋଗକରନ୍ତି – ସେଥିପାଇଁ ବିକଳ ହେବାର କି ଅଛି ?''

ମୂଳ ମହାଭାରତର ଭୀମକର୍ମା ବୃକୋଦର ଏଇଠି ଶାରଳାଙ୍କ ହାତରେ ଅପୂର୍ବ ମାନବିକତାରେ ମହିମାନ୍ୱିତ ହୋଇଉଠିଛନ୍ତି । କେବଳ ଦ୍ରୌପଦୀ ନୁହେଁ, ପ୍ରତ୍ୟେକ ପଥ-ସାଥୀର ପତନରେ ସେହି ହିଁ ଧାଇଁଯାଇଛନ୍ତି ମୁମୂର୍ଷୁଙ୍କୁ କୋଳରେ ଧରି ଶେଷ ନିଃଶ୍ୱାସ ବେଳେ ମନୁଷ୍ୟ ଖୋଜୁଥିବା ସ୍ନେହ, ସହାନୁଭୂତିଟିକ ଢାଳିଦେବାପାଇଁ । ସେ ଧାଇଁଯାଇ ଦ୍ରୌପଦୀଙ୍କି ଟେକି କୋଳରେ ଧରିଲେ ଏବଂ ଯୁଧିଷ୍ଠିରଙ୍କୁ ଭର୍ତ୍ସନା କରି ଅତି ଦୁଃଖିତ ହୋଇ କହିଲେ–

''ରାଜନ୍, ଏପରି ନିଷ୍ଠୁର କିପାଇଁ ହେଉଛ ? ଏ ତମୁକୁ ସାରା ଜୀବନ ଦାସୀପରି ସେବାକରିଆସିଛି । ଜଣେ ସ୍ତ୍ରୀହୋଇ ଏ ପାଞ୍ଚଟା ସ୍ୱାମୀଙ୍କର ଆର୍ଦ୍ଦୋଳି ସହିଲା । ଏପରି ସ୍ତ୍ରୀକି କିଏ ଛାଡ଼ି ଯିବାକୁ ଚାହିଁବ ? ଏହାର କେଶ କୃଷ୍ଣଚାମରୀର ଚାମରପରି,

ଏହାର ଶରୀର-ସୌରଭର ଲୋଭରେ ମଧୁକର ଏହାର ପାଶ ତ୍ୟାଗକରନ୍ତି ନାହିଁ । ଯେଉଁ ନାରୀ ଏପରି କୋମଳାଙ୍ଗୀ ଯେ ଭାର ହେବା ଯୋଗୁଁ ମସ୍ତକରେ ପୁଷ୍ପ ଗ୍ରହଣ କରେ ନାହିଁ, କି ଶରୀରରେ ଅଳଙ୍କାର ପିନ୍ଧେ ନାହିଁ, ଯାର ଚକ୍ଷୁ ନୀଳେନ୍ଦୀବରଦଳକୁ ଧିକ୍କାର କରେ, ଯାହାର ରୂପପାଇଁ ମୁନିଗଣ ଧ୍ୟାନ ତ୍ୟାଗ କରନ୍ତି, ବିନା ତାମ୍ବୁଳରେ ମଧ୍ୟ ଯାହାର ଓଷ୍ଠ ପକ୍ୱବିମ୍ବ ପରି, ଯାହାର ଅଙ୍ଗୁଳିପନ୍ତି ଚମ୍ପକ କଳିକାପରି ଓ ପଦନଖରାଜି କୁନ୍ଦପୁଷ୍ପପରି, ଯାହାର ବଚନ କୋକିଳର ସ୍ୱରପରି ଅତ୍ୟନ୍ତ ଲଳିତ– ହେ ଧର୍ମରାଜ, ଏପରି ସୁଲକ୍ଷଣା, ସୁଶୋଭନା ପତ୍ନୀକୁ ଛାଡ଼ିଯିବାପାଇଁ ତମର ଇଚ୍ଛା ହେଉଛି କିପରି ? ଆମର ଚନ୍ଦ୍ରବଂଶର ଏ ପଟ୍ଟମହିଷୀ, ଏହାର ସାହଚର୍ଯ୍ୟରେ ବହୁ ଯାଗଯଜ୍ଞ କରିଛ, ଏପରି ପ୍ରିୟବତୀ ଭାର୍ଯ୍ୟା ପ୍ରତି କି ନିମନ୍ତେ ପାଷାଣକାୟପରି ନିର୍ଦ୍ଦୟ ହେଉଛ, ଧର୍ମରାଜ ?''

ପଞ୍ଚପାଣ୍ଡବ ମଧ୍ୟରେ ଯେ ସବୁଠାରୁ ଦୁର୍ଦ୍ଦାନ୍ତ, ଅବିନୀତ, ଜାନ୍ତବ, ତାହାରିଠାରୁ ତାଙ୍କର ଅଶ୍ରୁତପୂର୍ବ ରୂପର ସ୍ତୁତି ଶୁଣି ଶୁଣି ସୁନ୍ଦରୀଲଲାମ ଦ୍ରୌପଦୀ ଏ ଜଗତରୁ ବିଦାୟ ନେଇଛନ୍ତି । କବିଙ୍କର ସ୍ୱପ୍ନ ପ୍ରତିମାର ଆବାହନ ଓ ଉଦ୍‌ଯାପନ, ଉଭୟ ହୋଇଛି ରୂପର ପ୍ରାଣମୟ ସ୍ତୁତି ଓ ପୂଜାରେ । କୃଷକକବି ପ୍ରତିଭାର ତୃତୀୟନେତ୍ରରେ ସ୍ପଷ୍ଟ ଦେଖିପାରିଥିଲେ ଯେ ନାରୀର ନାରୀତ୍ୱର ସର୍ବଶ୍ରେଷ୍ଠ ପ୍ରକାଶ ତା'ର ମୋହିନୀତ୍ୱରେ, ହ୍ଲାଦିନୀଶକ୍ତିରେ, ସୃଷ୍ଟିକୁ ରୂପରେ ଓ ଗୁଣରେ ମୁଗ୍ଧ-ଚକିତ କରିବାରେ ।

କିନ୍ତୁ ଏହି ରୂପର ସ୍ୱପ୍ନ-ପ୍ରତିମା ଦ୍ରୌପଦୀ ମଧ୍ୟ କୃଷକକବିଙ୍କ ଲେଖନୀରେ ଆମର ଏଇ ସାଧାରଣ ରକ୍ତମାଂସର ମାନବୀ । ଶାରଳାଦାସ ତାଙ୍କର କୌଣସି ଚରିତ୍ରକୁ କାଦୁଅ-ଗୋଡ଼ ନ କରି ଛାଡ଼ିନାହାନ୍ତି । ବାଦ୍ ପଡ଼ିନାହାନ୍ତି ଶ୍ରୀକୃଷ୍ଣ ଓ ଯୁଧିଷ୍ଠିର, ବାଦ୍ ପଡ଼ିନାହାନ୍ତି ମଧ୍ୟ ଦ୍ରୌପଦୀ । ସେ ସ୍ୱର୍ଗ ଓ ଦେବତାରେ ବିଶ୍ୱାସ କରିନଥିଲେ । ସେ ଧରିନେଇଥିଲେ ଯେ, ଦେବଦେବୀ ବା ସ୍ୱର୍ଗ ସମସ୍ତେ ଏହି ମାଟିର ପୃଥିବୀରେ ଦେଖାଯାନ୍ତି । ସେମାନଙ୍କର ଉପରଟା ଯେତେ ନିର୍ମଳ, ପବିତ୍ର, ସ୍ୱାର୍ଗିକ ହେଲେହେଁ, ସେ ସମସ୍ତଙ୍କର ପାଦ ଆମର ଏଇ ପରିଚିତ ଧୂଳି ମାଟିର ଘନସ୍ପର୍ଶରେ ମହନୀୟ ଭାବରେ ମଳିନ । କବିଙ୍କର ଏଇ ଅନନ୍ୟ ଦୃଷ୍ଟିକୋଣରୁ, ଯଜ୍ଞସମ୍ଭୂତା ଦେବୀ ହେଲେ ହେଁ, ପରମ ରୂପବତୀ ହେଲେହେଁ ଦ୍ରୌପଦୀକି ସେ ଗଢ଼ିଯାଇଛନ୍ତି ଏକ ସୁଖ, ଦୁଃଖ, ଈର୍ଷା, କ୍ରୋଧ, ଆଶା, ବାସନା ଜର୍ଜରିତ ସାଧାରଣ ସ୍ତ୍ରୀରୂପେ, ଏବଂ ସେହି-ପରିମାଣରେ ଦ୍ରୌପଦୀର ଚରିତ୍ର ଶାରଳା ମହାଭାରତରେ ହୋଇଉଠିଛି ଅତୁଳନୀୟ ।

ବ୍ରାହ୍ମଣବେଶୀ ଅର୍ଜୁନ ଲାଖବିନ୍ଧି ଦ୍ରୌପଦକୁ ଲାଭକଲେ । ଯୁଦ୍ଧରେ ମଧ୍ୟ

ପ୍ରତିଯୋଗୀ ରାଜାମାନେ ପରାଜିତ ହେଲେ । ଯୁଦ୍ଧର ବିଶୃଙ୍ଖଳା ଓ ଗଣ୍ଡଗୋଳ ଭିତରେ ଛଦ୍ମବେଶୀ ପାଣ୍ଡବମାନେ ଦ୍ରୌପଦୀକି ନେଇ ଚାଲିଗଲେ କୁମ୍ଭାରଶାଳକୁ, ମାତାଙ୍କ ନିକଟରେ ଖବର ଦେବାକୁ । ଜଣକର ଚିଜ ପାଞ୍ଚଜଣଙ୍କର କିପରି ହେଲା ତାହା ସମସ୍ତଙ୍କୁ ଜଣା । ତରୁଣୀ ରାଜନନ୍ଦିନୀ, ଅଶ୍ରୁତପୂର୍ବା ରୂପସୀ ଦ୍ରୌପଦୀ ଘଡ଼ିକଭିତରେ ପାଞ୍ଚଟି ଦରିଦ୍ର ବ୍ରାହ୍ମଣଙ୍କର ଯେ ସାଧାରଣୀ ସ୍ତ୍ରୀ ହୋଇପଡ଼ିଲେ ଓ ପାଞ୍ଚାଳ ରାଜପ୍ରାସାଦର କୋମଳ ସୁଖ-ସ୍ୱାଚ୍ଛନ୍ଦ୍ୟରୁ ହଠାତ୍ ଆସି ଏକ ପରିତ୍ୟକ୍ତ କୁମ୍ଭାରଶାଳରେ ବଞ୍ଚିବାକୁ ଆରମ୍ଭକଲେ, ଏଥିରେ କି ତାଙ୍କର କୌଣସି ପ୍ରକାର ମାନସିକ ଅବସାଦ ବା ବିକ୍ରିୟା ହେବାର ଆମେ ଆଶା କରିବା ନାହିଁ ?

ମୂଳଗ୍ରନ୍ଥରେ ସତୀ ଓ ଦେବୀ ଦ୍ରୌପଦୀ, ସବୁକୁ ନିର୍ବିକାରଚିତ୍ତରେ ବରି-ନେଇଛନ୍ତି, ଯାହା କି ମନସ୍ତତ୍ତ୍ୱ ଦିଗରୁ ଅସମ୍ଭବ । କିନ୍ତୁ ଶାରଳାଦାସ ଯଥାର୍ଥ ଚିତ୍ର ଦେଇ ଘଟଣାକୁ ଖାଣ୍ଟି ମାନବିକ ରସରେ ଭରିଦେଇଛନ୍ତି ।

ଦ୍ରୌପଦୀ ଦେଖିଲେ, ଏକ ଅଳ୍ପାଲୋକିତ କୁମ୍ଭାରଶାଳ, ଶାଳର ପାଉଁଶ ଉପରେ ଶୋଇଛନ୍ତି ବୃଦ୍ଧା ଶାଶୁ ଓ ତାଙ୍କ ତଳେ ପାଞ୍ଚଟି ଦରିଦ୍ର, ଭିକ୍ଷାଶୀ, ଅର୍ଦ୍ଧନଗ୍ନ ବ୍ରାହ୍ମଣ । ସେ ସମସ୍ତଙ୍କ ପାଦତଳେ ସେଇ ପାଉଁଶ ଉପରେ ଶୋଇପଡ଼ିବାକୁ ଶାଶୂ ନୂତନ ବଧୂକୁ ନିର୍ଦ୍ଦେଶ ଦେଲେ । ରାଜନନ୍ଦିନୀ ଦ୍ରୌପଦୀ ଅନ୍ତତଃ ମୁହୂର୍ତ୍ତକ ପାଇଁ ବିମୁଖ ଓ ବିଚଳିତ ହୋଇପଡ଼ିଲେ ଓ ମନେମନେ ବିଳାପ କରିବାକୁ ଲାଗିଲେ—

ଦ୍ରୌପଦୀ ବିକଳ ହେଲେ ପାଉଁଶକୁ ଦେଖି
ହେ ଦଇବ, ମୋର କର୍ମେ ଥିଲୁ ଏହା ଲେଖି ।
ହଂସୁଳୀ ତୂଳୀର ମୁକ୍ତା ରତ୍ନଖଟ ଘେରି
ଖଟିଥାନ୍ତି ନିତ୍ୟ ଶତ ଶତ ପରିବାରୀ ।
ସୁପାତି ଉପରେ ପୁଣି ଦାସୀ ନେତ ପାରି
ତହିଁ ଉପରେ କର୍ପୂରଗୁଣ୍ଡିକି ସିଞ୍ଚାଡ଼ି,
ତହିଁ ଉପରେ ପଡ଼ଇ ଶରୀର ମୋହରି
କେମନ୍ତେ ଶୋଇବି ମୁଁ ଗୋ ପାଉଁଶ ଉପରି !
ପାଞ୍ଚାଳ ରାଜାର ମୁହିଁ ଅଟଇ ଦୁଲଣୀ
ଦଇବ ପୁରୁଷ ମତେ ଏହା କଲା ଆଣି !

ଶାଶୂ ବୋହୂର ଥଙ୍ଗଥଙ୍ଗ ଭାବ ଦେଖି କହିଲେ—

''କୁନ୍ତୀ ବୋଇଲେ ଭିକ୍ଷାଶୀ ଅଟନ୍ତି ମୋ' ପୋଏ
ତୋ' କର୍ମେ ଏହାଙ୍କୁ ତୁହି ପାଇଲୁ ଗୋ ମାଏ ।

ଯାହା ତୁ ଅରଜି ଅଛୁ, ତାହା ଭୋଗ କର
ସମ୍ପଦ ବିପଦ ଏ ଗୋ ସଂସାର ବେଭାର ।''

ଆଉ ଗୁଣ୍ଡା ଭୀମସେନ ଗର୍ଜିଉଠିଲେ-

ଏହା ଦେଖି ଭୀମସେନ ତରାଟିଣ ଚାହିଁ
କି ଚାହୁ ଦ୍ରୌପଦୀ, ଶୋଉ ନାହୁଁ ଲୋ କିପାଇଁ ?
ଦେଖି ମହାଭୟ କଲେ ଦ୍ରୁପଦ-କୁମାରୀ
ଏ ଦୁଷ୍ଟ ବ୍ରାହ୍ମଣ ମତେ ପୁଣ ତ ନ ମାରି !

କି ସ୍ୱାଭାବିକ ମର୍ମସ୍ପର୍ଶୀ କରୁଣ ଚିତ୍ର ! କିପରି ଜୀବନ୍ତ ଓ ମଧୁର ଭାବରେ ପାର୍ଥିବ ଏ ବର୍ଣ୍ଣନା । ଯେଉଁ ଭୀମ ପ୍ରଥମ ରାତ୍ରରେ ରାଜନନ୍ଦିନୀ ଦ୍ରୌପଦୀର ପାଉଁଶରେ ଶୋଇବାକୁ ବିମୁଖତା ଦେଖି, ଆଖି ତରାଟି ତାକୁ ଜବଦ୍ କରିଯାଇଛି, ସେହି ପୁଣି ଦୌପଦୀର ଶେଷ ନିଶ୍ୱାସ ବେଳେ ତାଙ୍କୁ କୋଳରେ ଧରି ଗୁଣଗାନ କରି କରି ଶୋକରେ ବିହ୍ୱଳ ହୋଇଛି । ଏ ସବୁ ଆକସ୍ମିକ, କାକତାଳୀୟ ମାତ୍ର ହୋଇ ନ ପାରେ । ପ୍ରତିଭାବାନ୍ କବି ଯୋଜନାକ୍ରମେ ହିଁ ତାଙ୍କ ଗ୍ରନ୍ଥର ଚରିତ୍ର ପରମ୍ପରା ଏ ପ୍ରକାରେ ସ୍ୱାଭାବିକ ପାର୍ଥିବ ବିକାଶ ଦେଖାଇଦେବାକୁ ଯାଇଛନ୍ତି, ଏଥିରେ କି ସନ୍ଦେହର କାରଣ ଥାଇପାରେ ? ଛଅଶ ବର୍ଷ ତଳର ସେହି ଅର୍ଦ୍ଧଶିକ୍ଷିତ ଗ୍ରାମ୍ୟ ପ୍ରତିଭାର ଏହି ସୃଜନ-କୌଶଳ ଦେଖି ବାସ୍ତବିକ୍ ମୁଗ୍ଧ ବିସ୍ମିତ ହେବାକୁ ପଡୁଛି ।

ଯା ପରେ ଯେଉଁ ଦ୍ରୌପଦୀ ସେଦିନ କୁମ୍ଭାରଶାଳରେ ନିଜର ଭାଗ୍ୟକୁ ନିନ୍ଦାକରି ବିଳାପ କରି କରି ଶୋଇଥିଲେ, ତାଙ୍କୁ ଆମେ ଦେଖୁ ରାଜରାଜେଶ୍ୱରୀ ଭାବରେ । ରାଜସୂୟ ଯଜ୍ଞ ହେଉଛି । ବିଶ୍ୱ-ବିଶ୍ରୁତା ରାଜନନ୍ଦିନୀ ସ୍ୱାମୀ ସମ୍ରାଟ୍ ଯୁଧିଷ୍ଠିରଙ୍କ ସହିତ ଏକ-ଆସନରେ ସମ୍ରାଜ୍ଞୀରୂପେ ଅଧିଷ୍ଠିତା । ଶ୍ରୀକୃଷ୍ଣଙ୍କ ସହିତ ଭାରତର ସକଳ ରାଜନ୍ୟବର୍ଗ ସମ୍ରାଟ୍ ଓ ସମ୍ରାଜ୍ଞୀଙ୍କୁ ସମ୍ମାନ ବିବେଦନ ପାଇଁ ସମାଗତ । ମୂଳଗ୍ରନ୍ଥରେ ଜରାସନ୍ଧ ଓ ଶିଶୁପାଳବଧ ପରି ଶାରଳାଙ୍କ ମହାଭାରତରେ ମଧ୍ୟ ଅନେକ ସୁବିଦିତ ଘଟଣା ସ୍ଥାନପାଇଛି । ପରନ୍ତୁ ଭୀମ, ଅର୍ଜୁନ, ନକୁଳ, ସହଦେବ– ଏହି ଚାରିଭାଇଙ୍କ ଦିଗ୍-ବିଜୟ ପ୍ରସଙ୍ଗରେ ଶାରଳାଦାସ ମୂଳଗ୍ରନ୍ଥ ସହିତ ସମ୍ପର୍କ-ଲେଶହୀନ ଏପରି ରାଜା ଓ ଦେଶମାନଙ୍କର କଥା ସବୁ ଆଣି ପକେଇଛନ୍ତି, ଯାହା ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ଆଲୋଚନା ପାଇଁ ଅତି ଚମତ୍କାର ଉପାଦାନ – ତା' ଉପରେ ମୋର କିଛି ହିଁ କହିବାର ନାହିଁ । କିନ୍ତୁ ଦ୍ରୌପଦୀଙ୍କ ସମ୍ପର୍କରେ ଶାରଳା ଦାସ ଏପରି ଏକ ଘଟଣାର ସମାବେଶ ଏଠି କରିଛନ୍ତି, ଯାହା ଏକାବେଳକେ ଅଚିନ୍ତନୀୟ । ଏ ଘଟଣା ଦାସଙ୍କର କଳ୍ପନାପ୍ରବଣତା,

ଜୀବନପ୍ରତି ଗଭୀର ଶ୍ରଦ୍ଧା ଓ ପ୍ରତିଭାର ଅକୁତୋଭୟ ସାହସିକତା ଯେପରି ସୂଚନା ଦିଏ, ସେହିପରି କରେ ଦ୍ରୌପଦୀ ଚରିତ୍ରକୁ ମନୋଜ୍ଞଭାବରେ ସ୍ୱାଭାବିକ ଓ ମାନବିକ । ଏଇ ପରମ ଉପଭୋଗ୍ୟ ଚିତ୍ର ମୂଳଗ୍ରନ୍ଥରେ ଆଦୌ ନାହିଁ ।

ରାଜସୂୟ ଉତ୍ସବରେ ସମ୍ରାଟ ଯୁଧିଷ୍ଠିର ସମ୍ରାଜ୍ଞୀ ଦ୍ରୌପଦୀ ରାଜମୁକୁଟ ଧାରଣ କରି ଆସୀନା । ସଭାସ୍ଥଳ ଭାରତର ନିଖିଳ ରାଜନ୍ୟବର୍ଗରେ ପରିପୂର୍ଣ୍ଣ । ଏଇ ସମୟରେ ସଭାସ୍ଥଳରେ ପହଞ୍ଚିଲେ ଘଟୋତ୍କଚ– ଭୀମଙ୍କର ବଣୁଆ ସ୍ତ୍ରୀ ହିଡ଼ିମ୍ବିକାର ପୁତ୍ର, ବର୍ତ୍ତମାନ ନିଜର ବନ୍ୟରାଜ୍ୟର ତରୁଣ ରାଜା । ମା-ପୁଅ ନିଜ ନିଜ ଭିତରେ ବହୁତ ଯୁକ୍ତିତର୍କ ପରେ ବିନା ନିମନ୍ତ୍ରଣରେ ଯଜ୍ଞସ୍ଥଳରେ ଉପସ୍ଥିତ । ହିଡ଼ିମ୍ବିକା ପୁଅକୁ ଆଗରୁ କହିଦେଇଥାଏ, ସେ ପ୍ରଥମେ ବାପ ଭୀମସେନଙ୍କୁ ନମସ୍କାର କରିବ, ତାପରେ ଶ୍ରୀକୃଷ୍ଣଙ୍କୁ, ତାପରେ ସଭାସ୍ଥଳକୁ, ତାପରେ ଯୁଧିଷ୍ଠିରଙ୍କୁ ଆଉ କାହାକୁ ନାହିଁ । ପୁଅ ମା'କୁ ଚେତାଇ ବି ଦେଲା, ଯୁଧିଷ୍ଠିରଙ୍କୁ ନମସ୍କାର କରି, ଦ୍ରୌପଦୀଙ୍କୁ ନ କରିବ କିପରି । ମା' ତା'ର ସଉତୁଣୀ ହିଂସାରେ ଏପରି କହୁଛି କି । ମା ଉତ୍ତର ଦେଲା– 'ସେ ସ୍ତ୍ରୀଟା କି ହିଡ଼ିମ୍ବିକାର ସନ୍ତାନ ରାଜା ଘଟୋତ୍କଚର ସମ୍ମାନର ପାତ୍ର ? ଗୋଟିଏ ସ୍ତ୍ରୀ ହୋଇ ପାଞ୍ଚଟା ସ୍ୱାମୀ କରିଛି, ସେଟା ବ୍ୟଭିଚାରିଣୀ, ତାକୁ ନମସ୍କାର କରିବା ଅର୍ଥ ଦେହକୁ ପାପ ଆଣିବା ।' ମା ହିଡ଼ିମ୍ବିକା ମଧ୍ୟ କାଳେ ସଭାସ୍ଥଳରେ ପୁଅର କିଛି ଅନିଷ୍ଟ ଘଟେ, ଏଥିପାଇଁ, 'ଚାଲ୍, ମୁଁ ତୋ ସାଥିରେ ଯିବି' କହି ଉପସ୍ଥିତ ରାଜସଭାରେ ।

ଭୀମ ନିଜ ପୁଅକୁ ଦେଖି ଭାରି ଖୁସୀ । ସେ ଓ ଶ୍ରୀକୃଷ୍ଣ ତାକୁ ନେଇ ସଭାରେ ଉପସ୍ଥିତ କରାଇଲେ । କେହି ଏହି ଭୀମ ପୁଅ ତରୁଣ ରାଜାକୁ ଆଗରୁ ଦେଖି ନ ଥିଲେ – ଦେଖି ସମସ୍ତେ ଆନନ୍ଦିତ ହେଲେ । ଦ୍ରୌପଦୀ ସେତେବେଳକୁ ପୁତ୍ରବତୀ ତ ନୁହନ୍ତି, ସନ୍ତାନବତୀ ମଧ୍ୟ ନୁହନ୍ତି । ଏଇ ଘଟୋତ୍କଚ ଯୋଗୁ, ଯୁଧିଷ୍ଠିରଙ୍କର ଅପୁତ୍ରିକତା ଦୋଷ କଟୁଛି ବୋଲି ଶାରଳାଦାସ ଯୁକ୍ତି କରିଛନ୍ତି । ଏ ନଥିଲେ ଯୁଧିଷ୍ଠିର ଯଜ୍ଞରେ ଅଧିକାରୀ ହୋଇପାରି ନ ଥାନ୍ତେ । ଏକେ ସଉତୁଣୀର ପୁଣି ବଂଶର ଏକମାତ୍ର ପୁତ୍ର, ପୁଣି ସୁନ୍ଦର ତରୁଣ ଓ ନିଜ ଅଧିକାରରେ ଏକ ବଡ଼ ରାଜ୍ୟର ରାଜା, ସମଗ୍ର ସଭା ତାକୁ ଦେଖି ଖୁସୀ । ସଭାରେ ଚହଳପଡ଼ିଯାଇଛି । ଅଧିକନ୍ତୁ ଏ ଟୋକା ମା'ର ଶିକ୍ଷା ଅନୁସାରେ ଦ୍ରୌପଦୀଙ୍କୁ ନମସ୍କାର କଲା ନାହିଁ । ଦ୍ରୌପଦୀଙ୍କର କ୍ରୋଧ ଓ ଈର୍ଷା ଫାଟିପଡ଼ିଲା । ସେ ରାଜସଭାର ଗାମ୍ଭୀର୍ଯ୍ୟ ପ୍ରତି ଦୃଷ୍ଟି ରଖିପାରିଲେ ନାହିଁ । ଠିକ୍ ସ୍ୱାଭାବିକ ଈର୍ଷାନ୍ୱିତା ନାରୀପରି ସେ ପାଟି କରି ଉଠିଲେ– ''ହଇରେ, ତୋ ମା' ତତେ ଏଇ ଭଦ୍ରତା ଶିଖେଇଛି ? ମୁଁ ତୋର ମା', ପୁଣି

ବ୍ରାହ୍ମଣରାଜାର ଝିଅ, ତୋର ଅସୁରୁଣୀ ମା'ର କୁଶିକ୍ଷାରେ ମତେ ନମସ୍କାର ନକରି, ଏତେ ବଡ଼ ରାଜସଭାରେ ଅପମାନ ଦେଲୁ ମତେ । ଅଳ୍ପାୟୁଷ ହେବୁ ରେ ତୁ !''

ହିଡ଼ିମ୍ବିକା ସଭାଗୃହର ବାରଣ୍ଡାରେ ଠିଆହୋଇ ସବୁ ଶୁଣୁଥିଲା । ସେ କି ଆଉ ସମ୍ଭାଳେ ? ସେ ସ୍ୱାଧୀନା, ଆଦିବାସୀ ନାରୀ । ସେ ଧସେଇପଶିଲା ସଭାଗୃହରେ । ସମଗ୍ର ସଭା ସମ୍ମୁଖରେ ବିନା ସଂକୋଚରେ ସେ ଦ୍ରୌପଦୀଙ୍କୁ ସମ୍ବୋଧନ କରି କହିଲା – ''ହଇଲୋ, ତୁ ଗୋଟେ ସ୍ତ୍ରୀ ଯେ ମୋ ରଜାପୁଅ ତତେ ନମସ୍କାର କରିବ ? ପାଞ୍ଚଟା ସ୍ୱାମୀ ତୋର– ଜାଣି ଅସତୀ, ପୁଣି ଆଣ୍ଠୁକୁଡ଼ୀ, ତୋ ମୁହଁ ଚାହିଁ ନ ଯୋଗାଇ ଫେର୍ ମୋ ରଜାପୁଅଠୁ ନମସ୍କାର ଦାବି କରୁଛୁ ? ତୋର ଭଦ୍ରତା କ'ଣ କହ ତ– ମା' ହେଇ ପୁଅକୁ ଅଳ୍ପାୟୁ କହିଲୁ ? ହେଇ ଦେଖ୍, ତୁ ମୋ ପୁଅକୁ ଅଭିଶାପ ଦେଲୁ, ମୁଁ ବି ପାଲଟା ଅଭିଶାପ ଦେଉଛି ଯେ, ତୋର ଯେତେ ପୁଅ ହେବେ ସମସ୍ତେ ଅଳ୍ପ ବୟସରେ ମରିବେ ।''

ଦି' ସଉତୁଣୀଙ୍କର କଳି ଏଇପରି ଭାବରେ ସମାପ୍ତ ହେଲା ।

ଯଦି ଦ୍ରୌପଦୀ ସଉତୁଣୀ ଓ ତାର ପୁଅକୁ ଆଦର ଅଭ୍ୟର୍ଥନା କରି ବରି-ନେଇଥାନ୍ତେ, ତେବେ ଅନେକେ କହିବେ ଯେ, ସେଟା ଆଦର୍ଶ ହୋଇଥାନ୍ତା । ହଁ ଆଦର୍ଶ, କିନ୍ତୁ ତାହା କାଳ୍ପନିକ ଆଦର୍ଶ ଯାହା ପୃଥିବୀରେ ଘଟେନା, ଜୀବନରେ ସତ୍ୟ ନୁହେଁ, ସେଇପରି ଆଦର୍ଶ । ଶାରଳାଦାସଙ୍କୁ କ'ଣ ସେପରି ଆଦର୍ଶ ଆଙ୍କି ଆସିନଥାନ୍ତା ? ସେଥିରେ ଯେ କମ୍ ପରିଶ୍ରମ ! ଭାବିବାର କିଛି ନାହିଁ– ରଙ୍ଗ ଉପରେ ରଙ୍ଗ ଚଢ଼େଇଗଲେ ଗଲା– ଗୁଣ ଉପରେ ଗୁଣ ଗୁନ୍ଥିଯାଅ । ପ୍ରକୃତ କଠିନ କାମ ହେଉଛି, ଆଦର୍ଶ ଓ ବାସ୍ତବ ମଧ୍ୟରେ ଅନୁପାତ ରଖି ବ୍ୟକ୍ତିତ୍ୱ ସୃଷ୍ଟି କରିବା । ଦ୍ରୌପଦୀ, ସଉତୁଣୀ ପ୍ରତି ଈର୍ଷାନ୍ୱିତା ହେବାଟା କି ଆଦର୍ଶକୁ ନ୍ୟୂନ କରିଦେଉଛି ? ଏ'ତ ସ୍ୱାଭାବିକ, ପ୍ରାକୃତିକ ଘଟଣା, ଜୀବନର ଅଙ୍ଗ । ପ୍ରତିଭାବାନ୍ ସ୍ରଷ୍ଟା ତାଙ୍କର ସ୍ୱପ୍ନ-ପ୍ରତିମା ଦ୍ରୌପଦୀ ଭିତରେ ମଧ୍ୟ ସାଧାରଣ ନାରୀତ୍ୱର ପରିଚିତ ପ୍ରକାଶ ଯେ ଦେଖେଇବାକୁ ପଶ୍ଚାଦ୍‌ପଦ ହୋଇନାହାନ୍ତି, ତାହା ତାଙ୍କର ଶିଳ୍ପମହିମାକୁ ଆଜି ଆମ ଆଖିରେ ମହୀୟାନ୍ କରି ଥୋଇଛି ।

ଶାରଳାଙ୍କ ମହାଭାରତର ବନପର୍ବରେ ଆମେ ସତ୍ୟାମ୍ବା ଗଳ୍ପ ପାଉଁ, ଯାହା ମୂଳ ମହାଭାରତରେ ନାହିଁ । ଏହା ଏକ ଅକଳ୍ପନୀୟ ବ୍ୟାପାର । 'ସତ୍ୟାମ୍ବା ଗଳ୍ପ' ଓଡ଼ିଶାର ରୂପ କଥା ଦେଇ ପ୍ରତି ଓଡ଼ିଆ ନିକଟରେ ପରିଚିତ । ଦାସେ ଓଡ଼ିଶାର ଏହି ଫୋକ୍-ଟେଲ୍ ବା ଲୋକଗଳ୍ପକୁ ନେଇ ମହାଭାରତରେ ଭର୍ତ୍ତି କରି ଦେଇଛନ୍ତି ଏବଂ ତା'ନେଇ ବୀର, ଶୂର ପାଣ୍ଡବ ଓ ସତୀ ଦୌପଦୀଙ୍କୁ ଏକ ଆଗ୍ନେୟ ଆତ୍ମ-ପରୀକ୍ଷାରେ ପକାଇଛନ୍ତି ।

ପାଣ୍ଡବମାନଙ୍କ ବନବାସର ଚାରି ପାଞ୍ଚବର୍ଷ ପରେ, ସେମାନଙ୍କର କୌଣସି ଖବର ଆଉ ନ ପାଇ ଦୁର୍ଯ୍ୟୋଧନ ଭାବିଲେ ସେମାନେ ବୋଧହୁଏ ବଣରେ ମରିହଜି ଗଲେଣି । ତା' ହେଲେ ଶତ୍ରୁ ଆପେ ଆପେଇ ଦୂର ହେଲା । ତଥାପି ସନ୍ଦେହ ଯାଉ ନ ଥାଏ । ତେଣୁ 'ପଣ୍ଡା' ସଂଜ୍ଞାଧାରୀ ଜଣେ ବ୍ରାହ୍ମଣକୁ ପାଣ୍ଡବମାନଙ୍କର ଗତିବିଧି ଓ ଅସ୍ତିତ୍ୱ-ଅବସ୍ଥାନ ଦେଖିଆସିବାକୁ ପଠାଗଲା । କଥା ହେଲା, ସେମାନେ ଯଦି ବଣୁଆଲୋକ ବା ମୁନିଋଷିଙ୍କ ପରି ବଞ୍ଚୁ ଥିବେ, ତେବେ ପାଣ୍ଡବ ବୋଲି ତାଙ୍କୁ ସ୍ଥିର ଭାବରେ ଚିହ୍ନିବାର ଉପାୟ କ'ଣ ? କୌରବପକ୍ଷରୁ ବୁଦ୍ଧି ଦିଆଗଲା ଯେ, ପଣ୍ଡା ନିଜେ ଋଷି ବେଶ ଧାରଣକରି, ଖାଇବା ପାଇଁ କୌଣସି ଅଦିନିଆ ଫଳ ମାଗିବ, ଯଥା - ଶରତ୍‌କାଳରେ ପାଚିଲା ଆମ୍ବ - ଆଉ, ତାହ ଯିଏ ଯୋଗେଇ ଦେଇପାରିବେ ତାଙ୍କୁ ଧରିନେବ ଯେ ସେମାନେ ପାଣ୍ଡବ । କାରଣ ପାଣ୍ଡବଭାଇମାନେ କୌଣସି ଲୋକ କିଛି ମାଗିଲେ ନାହିଁ କରନ୍ତିନି, ପୁଣି, ଅସମ୍ଭବ ଦ୍ରବ୍ୟ ଦେବା ସେମାନଙ୍କ ପକ୍ଷରେ ହିଁ ସମ୍ଭବ ।

ପଣ୍ଡା ଗଲା । ବଣରୁ ବଣକୁ ଯାଇ ଯାଇ କୌଣସି ଏକ ବଣରେ ପାଣ୍ଡବ ଓ ଦ୍ରୌପଦୀଙ୍କର ଭେଟ ପାଇଲା । ସେ ତେଣୁ ପରୀକ୍ଷା ପାଇଁ ଋଷିବେଶ ପକାଇ ତାଙ୍କ ନିକଟକୁ ଯାଇ କିଛି ଖାଇବାକୁ ମାଗିଲା । ପାଣ୍ଡବମାନେ କହିଲେ– "ଆମେ ତ ବଣରେ ବୁଲି ଫଳମୂଳ ଖାଉଛୁ, ତୁମକୁ କ'ଣ ଆଉ ଦେବୁ ?" ପଣ୍ଡା କହିଲା– "ମତେ ଫଳମୂଳ କିଛି ହେଲେ ଦିଅ ।" ପାଣ୍ଡବ ପଚାରିଲେ– "କି ଫଳ ଖାଇବ ?" ପଣ୍ଡା କହିଲା - "ମୋର ଆମ୍ବ ଖାଇବାକୁ ଭାରି ଇଚ୍ଛା ହେଉଚି ।" ଏହା ଶୁଣି ପାଣ୍ଡବମାନେ ଏକାନ୍ତ ବିସ୍ମିତହେଲେ, କାରଣ ସେ ଆମ୍ବର ଋତୁ ନୁହେଁ । ସେମାନେ ଛଦ୍ମବେଶୀ ଋଷିଙ୍କି ସେୟା ମଧ୍ୟ କହିଲେ । ଋଷି କିନ୍ତୁ ଏକା ଜିଦ୍ ଧରିଲେ ।

ପାଣ୍ଡବମାନେ ଅଧର୍ମ ଓ ଋଷି ଅଭିଶାପ ଭୟରେ ଶ୍ରୀକୃଷ୍ଣଙ୍କୁ ସ୍ମରଣ କଲେ । ଶ୍ରୀକୃଷ୍ଣ ଅଇଲେ । ସମସ୍ତ ଶୁଣିଲେ । ଶୁଣି, ଗୋଟିଏ ଆମ୍ବ ଟାକୁଆ ପୋତିଦେଲେ । ଆମ୍ବଗଛ ଉଠିଲା । ତା'ପରେ ସେ କହିଲେ– "ଦେଖ, ସତ୍ୟ ହେଉଛି ପରମ ତପସ୍ୟା । ସତ୍ୟଦ୍ୱାରା ଅସମ୍ଭବ ସମ୍ଭବ ହୁଏ । ତମେ ସମସ୍ତେ ଏହି ଆମ୍ବଗଛ ନିକଟରେ ନିଜନିଜର ପାପ ଅକୁଣ୍ଠିତ ଭାବରେ ସ୍ୱୀକାର କର– ଦେଖିବ ଋତୁ ନ ହେଲେ ମଧ୍ୟ ଏଇ ଗଛରେ ଆମ୍ବ ଫଳିବ ।"

ଶ୍ରୀକୃଷ୍ଣଙ୍କ କଥା ଅମାନ୍ୟ କରିବ କିଏ ? ପଞ୍ଚପାଣ୍ଡବ ଏକ ଏକ କରି ଆମ୍ବଗଛକୁ ଲକ୍ଷ୍ୟ କରି ନିଜନିଜର ପାପ ସ୍ୱୀକାର କଲେ । ବର୍ତ୍ତମାନ ସେମାନଙ୍କ ସଙ୍ଗେ ଆମର ସଂପର୍କ ନାହିଁ । ଦ୍ରୌପଦୀଙ୍କ ପାଳି ଯେତେବେଳେ ପଡ଼ିଲା, ସେ ପଞ୍ଚସ୍ୱାମୀ ଓ ଶ୍ରୀକୃଷ୍ଣଙ୍କ ସମ୍ମୁଖରେ ଅକୁଣ୍ଠିତ ବାଣୀରେ କହିଲେ, "ମୋର ପଞ୍ଚସ୍ୱାମୀ ସତ୍ତ୍ୱେ, କର୍ଣ୍ଣ

ପ୍ରତି ମୋର ଆକର୍ଷଣ ଥାଏ ।''

ପଣ୍ଡିତ ମୃତ୍ୟୁଞ୍ଜୟ ରଥ ପ୍ରଭୃତି ଦ୍ରୌପଦୀଙ୍କର ଏହି ପ୍ରକାଶ୍ୟ ଆତ୍ମବିଶ୍ଳେଷଣକୁ ଭଲ ଆଖିରେ ଦେଖିନାହାନ୍ତି । କୌଣସି ଭାରତୀୟ ପ୍ରକୃତରେ ଏହା ସମ୍ଭାଳିବାର କଥା ନୁହେଁ । କିନ୍ତୁ ସାହିତ୍ୟ ସମାଲୋଚନାରେ ଧର୍ମ ଓ ସାମାଜିକ ସଂସ୍କାର ସବୁକୁ ଆମେ ଦୂରେଇ ନ ପାରିବାରୁ ହିଁ, ଆମେ ସତ୍ୟ ଉପଲବ୍ଧି କରିପାରୁନା । ଆମକୁ ପିଲାବେଳୁ ଶିଖାହୋଇଛି ଯେ ପାଞ୍ଚସ୍ୱାମୀରେ ମଧ୍ୟ ଦ୍ରୌପଦୀ ସତୀ । ବେଶ୍ ଭଲ କଥା । କିନ୍ତୁ ପାଞ୍ଚସ୍ୱାମୀର ଯେଉଁ ସ୍ତ୍ରୀ ସତୀ ହେଲା, ସେ ଷଷ୍ଠସ୍ୱାମୀରେ ଅସତୀ ହେବ କାହିଁକି ?

ଶାରଳାଦାସ ବ୍ୟଭିଚାରର ପ୍ରଚାରକ ନୁହନ୍ତି, କି ତାଙ୍କର ସ୍ୱପ୍ନ-ପ୍ରତିମା ଦୌପଦୀଙ୍କୁ ସେ ସମ୍ଭୋଗ ଲାଳସାବତୀ ସାଧାରଣ ନାରୀ ମାତ୍ର କରି ଚିତ୍ରିବା ତାଙ୍କର ଲକ୍ଷ୍ୟ ନ ଥାଇପାରେ । ଏଇ ସତ୍ୟାମ୍ଭା ଗଛ ନେଇ ଆମର ଶୂଦ୍ରକବି ବରଂ ମହାଭାରତର ଏକ ପରମ ଅସଂଗତିକୁ ସଂଗତି ଦାନ କରିଯାଇଛନ୍ତି । ପଣ୍ଡୁଙ୍କ ପୁଅ ନ ହେଲେ ମଧ୍ୟ, କୁନ୍ତୀଙ୍କ ପୁଅ ଭାବରେ କର୍ଣ୍ଣ ଏକ ପାଣ୍ଡବ । ଶୌର୍ଯ୍ୟ, ବୀର୍ଯ୍ୟ, ସୌନ୍ଦର୍ଯ୍ୟରେ ସେ ପୁଣି ଅନ୍ୟ ପାଞ୍ଚ ପାଣ୍ଡବଭାଇଙ୍କଠାରୁ ଉତ୍ତମ । ଯଦି ସୁନ୍ଦରୀ ନାରୀ ବୀର ଓ ସୁନ୍ଦର ପୁରୁଷ ପ୍ରତି ସାଧାରଣରେ ଆସକ୍ତ ହୁଅନ୍ତି ବୋଲି ସାମାଜିକ, ସାହିତ୍ୟିକ ଓ ମନସ୍ତାତ୍ତ୍ୱିକ ପ୍ରସିଦ୍ଧିକୁ ଆମେ ଗ୍ରହଣକରୁ, ତେବେ ଦ୍ରୌପଦୀର କର୍ଣ୍ଣ ପ୍ରତି ଆସକ୍ତି କିଛି ଅସ୍ୱାଭାବିକ ବା ଅବାନ୍ତର ନୁହେଁ । ପୁଣି ସେହି କର୍ଣ୍ଣକୁ ଆମେ ପ୍ରଥମ ପାଣ୍ଡବ ରୂପେ ଧଇଲେ, ଏଇ ଆସକ୍ତି ଯେ ଅଧିକତର ସ୍ୱାଭାବିକ ଓ ଏକାନ୍ତ ଧର୍ମ୍ମ ବୋଲି ଧରାଯିବ, ଏଥିରେ କହିବାର କ'ଣ ଅଛି ? ଯେଉଁ ନାରୀ ଜନ୍ମ ହୋଇଥିଲା, ପାଣ୍ଡବ ବା କୌନ୍ତେୟମାନଙ୍କ ପାଇଁ, ତାର ଶ୍ରେଷ୍ଠତମ ପାଣ୍ଡବ (ବା କୌନ୍ତେୟ) ପ୍ରତି ଆସକ୍ତି ଦୋଷାବହ ହେବ କିପରି ? ମୂଳ ମହାଭାରତରେ ମଧ୍ୟ ଶ୍ରୀକୃଷ୍ଣ ଯୁଦ୍ଧାରମ୍ଭ ପୂର୍ବରୁ କର୍ଣ୍ଣକୁ ପାଣ୍ଡବପକ୍ଷରେ ଯୋଗ ଦେବା ପାଇଁ ଯେଉଁ ଯୁକ୍ତି ସବୁ କରିଛନ୍ତି ତା ଭିତରେ ଏଇ ପ୍ରଲୋଭନ ମଧ୍ୟ ଅଛି ଯେ, ସେ ପାଣ୍ଡବ ବୋଲି ସ୍ୱୀକୃତ ହେବେ, ଛତ୍ରପତି ହେବେ ପୁଣି ଦ୍ରୌପଦୀର ଷଷ୍ଠଦିବସର ଅଧିକାରୀ ହେବେ ।

ମୂଳ ମହାଭାରତରେ ଯାହା ମାତ୍ର ପ୍ରଲୋଭନରୂପେ, ଦ୍ରୌପଦୀର ଚିତ୍ତକୁ ଲକ୍ଷ୍ୟ ନ ରଖି, କେବଳ ତାଙ୍କର ତନୁର ସମ୍ଭୋଗକୁ ଏକ ଦାବୀରୂପେ ଧରାଇଦିଆଯାଇଛି, ଓଡ଼ିଆ ମହାଭାରତରେ ଶୂଦ୍ରକବି, ପୌରାଣିକ, ଧାର୍ମିକ, ମନସ୍ତାତ୍ତ୍ୱିକ ସବୁ ଦିଗରୁ ଯାହା ଏକାନ୍ତ ସ୍ୱାଭାବିକ, ତାହା ଏହି ମହାକାବ୍ୟର ପ୍ରଧାନ ନାୟିକାର ନିଜ ମୁଖରେ ଏକ କନ୍‌ଫେସନ୍ ବା ସ୍ୱୀକାରୋକ୍ତିରୂପେ ଯେପରି ବ୍ୟକ୍ତ କରାଇଛନ୍ତି, ତାହା ତାଙ୍କର ଅସାଧାରଣ ବିଶ୍ଳେଷଣ ଓ ଆଶ୍ଳେଷଣ ଶକ୍ତିର ପରିଚୟ ଯେ ଦିଏ,

ଏଥିରେ ସନ୍ଦେହ ନାହିଁ । ଏହି ସ୍ୱୀକାରୋକ୍ତି ଫଳରେ ଯାହାଙ୍କ ଆଖିରେ ଦ୍ରୌପଦୀ ଅସତୀ ହୋଇଉଠନ୍ତି, ତେବେ ସେ ମୂଳ ମହାଭାରତରେ ଯେଉଁ ବାଧା ବନ୍ଧନହୀନ ଉଦାର, ବିମୁକ୍ତ, ପରିପୂର୍ଣ୍ଣ ମାନବିକ ଜୀବନକୁ ଠିଆକରାଯାଇଛି, ତାକୁ ଯଥୋଚିତ ସମ୍ମାନ ଦେବାର ସେ ଜାଣି ନାହାନ୍ତି କହିବାକୁ ହେବ । ମହାଭାରତର ସଂସାରରେ ନର କେବଳ ନର ଓ ନାରୀ କେବଳ ନାରୀ । ସେଠି ଆମର ଛୋଟ, ସଂକୀର୍ଣ୍ଣ, ଦୁର୍ବଳ ନୈତିକତା ବା ବିଧିନିଷେଧ ସବୁର ସ୍ଥାନ ନାହିଁ । ପ୍ରାଣ-ରସର ଅନର୍ଗଳ ପ୍ରକାଶ ଯୋଗୁ ହିଁ ମହାଭାରତର ଆଖ୍ୟାୟିକା ଏପରି ନାଟକୀୟ, ଏପରି ରସପୂର୍ଣ୍ଣ ହୋଇଛି ଓ ଏପରି ବ୍ୟାପକଭାବରେ ଆମର ଚିତ୍ତକୁ ଆନ୍ଦୋଳିତ କରେ । ଦ୍ରୌପଦୀର ସ୍ୱୀକାରୋକ୍ତି ସେହି ବନ୍ଧନହୀନ ପ୍ରାଣସ୍ରୋତର ଏକ ଅଭିବ୍ୟକ୍ତି ମାତ୍ର । ମାନବ ଜୀବନର କବି ଶାରଳାଦାସ ତେଣୁ ଅକୁଣ୍ଠିତ ଚିତ୍ତରେ ତାହା ଚିତ୍ରିଯାଇଛନ୍ତି ।

× × × ×

ସମସ୍ତ ପ୍ରତିଭା ସତ୍ତ୍ୱେ ଶାରଳାଦାସଙ୍କ ବୌଦ୍ଧିକ ଦୃଷ୍ଟି ଯେ ଗ୍ରାମ୍ୟବେଷ୍ଟନୀରୁ ବେଶୀ ଦୂରକୁ ଯାଇପାରିନଥିଲା, ତାଙ୍କର ମହାକାବ୍ୟ ଯେ ରହିଗଲା ସେହି କାରଣରୁ ଏକାନ୍ତ ଭାବରେ କୃଷକର ଗାଥା, ତାହାହିଁ ପୁଣିଥରେ କହି ଏ ଆଲୋଚନା ଶେଷ କରେଁ ।

ଏବେ ଶାରଳାଦାସଙ୍କ ବିଷୟରେ ନାନା କଥା କୁହାଯାଉଛି । ତା ଭିତରେ ଗୋଟିଏ କଥା ହେଉଛି ଯେ ଦାସେଆପଣେ ଭାରି ପଣ୍ଡିତ ଥିଲେ । ଏହାର ଯଥାର୍ଥ ତାତ୍ପର୍ଯ୍ୟ କ'ଣ ଯେ କହୁଛନ୍ତି ତାହା ବୁଝୁଛନ୍ତିଟିକି ? ପାଣ୍ଡିତ୍ୟ ଅପେକ୍ଷା ପ୍ରତିଭା ବଡ଼ । ମୁଁ ଶାରଳାଦାସଙ୍କଠି ଉଚ୍ଚକୋଟୀର ପ୍ରତିଭା ଦେଖିପାରୁଛି— କିନ୍ତୁ ପାଣ୍ଡିତ୍ୟ କେଉଁଠି ଦେଖିଲିନି । ସେକାଳରେ ଏବଂ ଏକାଳରେ ମଧ ପାଣ୍ଡିତ୍ୟ କହିଲେ Classical Scholarshipକୁ ହିଁ ବୁଝାଏ । ଭାରତବର୍ଷରେ କୌଣସି ଲୋକ ସଂସ୍କୃତରେ ଗଭୀର ଓ ପରିବ୍ୟାପ୍ତ ଜ୍ଞାନ ବ୍ୟତୀତ କିପରି ପଣ୍ଡିତ ବୋଲାଇବ ମୁଁ ଭାବିପାରୁନି ! କେହି କହିପାରନ୍ତି ପ୍ରତିଭା ବଳରେ ସବୁ ଜାଣିହେବ । ଏପରି କୌଣସି ଦୃଷ୍ଟାନ୍ତ ପୃଥିବୀ-ସାହିତ୍ୟରେ ବା ଜ୍ଞାନଜଗତରେ ଦେଖାଯାଇନି । ଆମେ ଯେତେ ପ୍ରତିଭାଶାଳୀ ଲୋକଙ୍କର ଜୀବନୀ ଆଲୋଚନା କରୁ ସେତେ ଜାଣିବାକୁ ପାଉ ଯେ, ପ୍ରତିଭା କେବଳ ସର୍ବଜ୍ଞାନକୁ ଆହରଣ କରିବାର ଶକ୍ତି ଓ ସାଧନା ଛଡ଼ା ଆଉ କିଛି ନୁହେଁ । ସୁଦୂର ଅତୀତର କଥା ଛାଡ଼ିଦିଆଯାଉ – ଏବେ ଯେଉଁସବୁ ପ୍ରତିଭାଶାଳୀ ଲୋକଙ୍କର ଜୀବନୀ ବିସ୍ତୃତଭାବରେ ଆମେ ଜାଣିବାକୁ ପାଉଛୁ ଯଥା ଗୋଏଟେ, ରବିଠାକୁର— ଏମାନଙ୍କର ଜିଜ୍ଞାସା ଓ ତଦନୁଯାୟୀ ଅଧ୍ୟୟନ ସାଧାରଣ ବୁଦ୍ଧିର ଲୋକ ପକ୍ଷରେ ଅକଳ୍ପନୀୟ । କାଳିଦାସ ଓ ସେକ୍ସପିୟରଙ୍କ ଜୀବନଚରିତ ଅତ୍ୟନ୍ତ ଅସ୍ପଷ୍ଟ । କିନ୍ତୁ

ଏ ପ୍ରତ୍ୟେକଙ୍କ ରଚନାବଳୀରେ ବିପୁଳ ଅଧ୍ୟୟନର ମୁଦ୍ରଣ ଯେ ଅତ୍ୟନ୍ତ ସୁସ୍ପଷ୍ଟ ଏହା ଯା'ର ସେଇ ଜାତୀୟ ଆଖି ଅଛି ସେ ଦେଖିଲାମାତ୍ରେ ବୁଝିବ ।

ଶାରଳା ଦାସଙ୍କ ରଚନାରେ ଏହି ଅଧ୍ୟୟନ-ପୋଷିତ ଜ୍ଞାନର ରୁଚିବନ୍ତ ସ୍ପର୍ଶର ଏକାନ୍ତ ଅଭାବ । ସଂସ୍କୃତ ନାମଗୁଡ଼ିକର ସେ ଯେପରି ବ୍ୟୁତ୍ପତ୍ତିଗତ ଅର୍ଥ ଦେଇଛନ୍ତି ତାହା ଏକାନ୍ତ ହାସ୍ୟକର । ଭୀଷ୍ମ ଜନ୍ମ ହେଲାବେଳେ ସମସ୍ତେ ବିସ୍ମୟରେ ଚାହିଁବାରୁ ତାଙ୍କର ଏପରି ନାମ ହେଲା । କାତି ଧରିଥିବାରୁ ଦୁର୍ଗାଙ୍କ ନାମ କାତ୍ୟାୟିନୀ । ଏଥିରୁ କୌଣସି ପାଠୁଆ ଲୋକ ଜୋର୍ ଦେଇ କହିବା ଉଚିତ୍ ନୁହେଁ ଯେ, ଶାରଳାଦାସ ସଂସ୍କୃତ ଜାଣିଥିଲେ, ଗଭୀରଭାବରେ ଜାଣିବା ଦୂରେ ଥାଉ । ଦାସଙ୍କ ମହାଭାରତରେ ଯତ୍ର ତତ୍ର ଜ୍ୟୋତିଷଚର୍ଚ୍ଚା ଅଛି । ସେଇଥିରୁ ଅନେକେ ଧରିନେଉଛନ୍ତି ଯେ ସେ ବଡ଼ ପଣ୍ଡିତ ଲୋକ ଥିଲେ । କିନ୍ତୁ ଶାରଳା ମହାଭାରତରେ ଆମେ ପାଉ ଲୌକିକ ଆଷ୍ଟ୍ରୋଲଜି ମାତ୍ର– ଏଇ ଗାଁ ଅବଧାନଙ୍କ ପାଠ, କୌଣସିଠାରେ ଆଷ୍ଟ୍ରୋନମି ବା ପ୍ରକୃତ ଜ୍ୟୋତିଷ ବିଜ୍ଞାନର କୌଣସି ଚିହ୍ନ ନାହିଁ । ଆମେ ଆମ କବିଙ୍କି ପ୍ରଶଂସା କରିବାକୁ ଯାଇ ପ୍ରତିଷ୍ଠିତ ବିଶେଷଣମାନଙ୍କର ଅପମାନ କରିବା କି ?

ଶୂଦ୍ରକବିଙ୍କ ଜ୍ଞାନ ଓ ଦୃଷ୍ଟି ଯେ ତାଙ୍କର ପରିଚିତ ଗ୍ରାମ-ସୀମା ଭିତରେ ହିଁ ଆବଦ୍ଧ ଥିଲା, ତାହାର ଗୋଟିଏ ଦୁଇଟି ଦୃଷ୍ଟାନ୍ତ ଦିଏଁ ।

ଦୌତ୍ୟକର୍ମରେ ଦ୍ୱାରକାଧିପତି ଶ୍ରୀକୃଷ୍ଣ କୌରବ ରାଜସଭାକୁ ଆସି, ବିଦୁର ଘରେ ଆତିଥ୍ୟ ଗ୍ରହଣ କଲେ । ବିଦୁର ତ ରାଜବଂଶୀ, କୃଷ୍ଣ ତ ରାଜା– ତେଣୁ କୌତୂହଳ ହେବାର କଥା ବିଦୁର ଶ୍ରୀକୃଷ୍ଣଙ୍କୁ କ'ଣ ଖାଇବାକୁ ଦେଲେ ? ଦାସକବି ତା'ର ବର୍ଣ୍ଣନା ଦେଇଛନ୍ତି । କିନ୍ତୁ ସେ ସମସ୍ତ ଉପାଦାନ ଓ ପରିବେଷଣକ୍ରିୟା ଏବେ ବି କେବଳ ଗ୍ରାମମାନଙ୍କରେ ହିଁ ସମ୍ଭବେ । ବିଦୁର ତାଙ୍କ ଘରେ ବରେଣ୍ୟ ରାଜ-ଅତିଥି ପହଞ୍ଚିଲା ମାତ୍ରେ, ସ୍ନାନ-ମାର୍ଜନା ପରେ, ବାଢ଼ିଦେଇଥିଲେ –

ଲିଆ-ମୁଆଁ, ଲଡ୍ଡୁ, ଦୁଧ, ସରର ପାପୁଡ଼ି
ପଞ୍ଚାମୃତ ଆଦି ସେହି ସ୍ଥାନେ ସ୍ଥାନେ ବାଢ଼ି ।
ଦୁଗ୍ଧ ସହିତେ ନବାତ ଖଣ୍ଡ ମିଶ୍ର କରି
ଅମୃତପାଣି କଦଳୀ ଗୁଟିକାରେ ଭରି ।
କାଞ୍ଚନ ଝରି ଭିତରେ ସୁବାସିତ ପଣା
କର୍ପୂର ବାସରେ ମନ ହୋଇଯାଏ କିଣା ।
କୁମୁଦୁ-ବେଣ୍ଟ ପୁଡ଼ାଏ, ନଡ଼ିଆ ଗୁଡ଼ାଏ
କୌତୁକେ ମଣୋହି କଲେ ତହିଁ ଦେବରାୟେ ।

ପୁଣି—
ବିଦୁର ବୋଇଲା ଦେବ ପକ୍ୱ ରମ୍ଭା ଅଛି,
ପ୍ରସନ୍ନ ହୋଇଣ ନାଥ, ତହୁଁ ଭୁଞ୍ଜ କିଛି ।
ଭୋଜନର ଜୀର୍ଣ୍ଣକାଳ ହୋଇଲାକ ଯହୁଁ
ଅମୃତପଣା କଦଳୀ ଭକ୍ତ ଆଣେ ତହୁଁ
ଚୋପା ଛଡ଼ାଇ ଦିଅଇ କେଶବଙ୍କ ହସ୍ତ
ଅତି ଶ୍ରଦ୍ଧାରେ ଭୁଞ୍ଜନ୍ତି ଦେବ ଜଗନ୍ନାଥ ।

ଏବେ ସିନା ଆମେ ସବୁ 'ବାବୁ' ହୋଇଗଲେ, ତେଣୁ ସେଇ ଝଙ୍କଡ଼ରେ ଶୂଦ୍ରକବିଙ୍କ ବଂଶଧର ବୋଲାଉଥିବା 'ବାବୁ'ମାନଙ୍କ ଘରକୁ ଗଲେ ଏବେ ଆମକୁ ଲୁଚି, ରସଗୋଲା ଓ ବିଲାତୀଆଳୁ ଭଜା ସଭ୍ୟତାର ଚିହ୍ନ ସ୍ୱରୂପ ଖାଇବାକୁ ଦିଆଯିବ, କିନ୍ତୁ ଶୂଦ୍ରକବିଙ୍କ ଗ୍ରାମରେ ବା ଓଡ଼ିଶାର ଯେ କୌଣସି ଗ୍ରାମରେ ଯେଉଁଠି 'ବାବୁଆନୀ'ର ଘୃଣ୍ୟ ବର୍ଣ୍ଣସଂକରତା ପଶିନି ଏଯାଏଁ, ସେଠି ଆତିଥ୍ୟର ପରମଶ୍ରଦ୍ଧା ଏବେ ବି ପ୍ରକାଶପାଏ, ଠିକ୍ ଦାସକବି ଯେପରି ବର୍ଣ୍ଣନା କରିଛନ୍ତି ।

ତା' ଠିକ୍; କିନ୍ତୁ ଏଇ କ'ଣ ଓଡ଼ିଶାର ଅଭିଜାତ ବଂଶର ଭୋଜ୍ୟ ? ଓଡ଼ିଆମାନେ କ'ଣ କଦଳୀପଣାଠାରୁ ଅଧିକ କିଛି ଖାଇବା ଦ୍ରବ୍ୟ ଜାଣିନଥିଲେ— ଏପରି ଆଦିମ ଥିଲେ ସେମାନେ ? ରନ୍ଧନର କଳା ଓ ପରିପାଟୀ ସର୍ବଦେଶରେ ଜାତୀୟ ସଭ୍ୟତାର ଏକ ପ୍ରଧାନ ମାନଦଣ୍ଡ । ଲେଖକ ତେଣୁ ଆମର ପ୍ରାଚୀନ ସାହିତ୍ୟର ନଜର ରଖି-ଖୋଜିଛି ଆମର ଜାତୀୟ ଖାଦ୍ୟ କ'ଣ ଥିଲା ତା'ର ପରିଚୟ ପାଇବା ପାଇଁ । ଏବଯାଏଁ ଯାହା ତା' ନଜରକୁ ଆସିଛି, ଆମ ଜାତୀୟ ଖାଦ୍ୟର ଉତ୍କୃଷ୍ଟତମ ବର୍ଣ୍ଣନା ସେ ପାଇଛି ଅମ୍ବିକାବିଳାସ କାବ୍ୟରେ । ଏ କାବ୍ୟ ନିଃସନ୍ଦେହରେ ରାଜଦରବାରରେ ଲେଖାହୋଇଥିଲା । ତେଣୁ ରାଜାଙ୍କ ଖନ୍ଦାରେ ଯାହା ହେଉଥିଲା, ତାରି ବର୍ଣ୍ଣନା ଆମେ ଅମ୍ବିକାବିଳାସ କାବ୍ୟରେ ପାଉ । ଦାସ-କବି କିନ୍ତୁ ଗାଁ ଜନ୍ତାଳ ଓ ଗ୍ରାମ୍ୟ ଆତିଥ୍ୟଠାରୁ ଆମକୁ ଅଧିକ କିଛି ଦେଇପାରିନାହାନ୍ତି — କାରଣ ତାଙ୍କର ଅଭିଜ୍ଞତା ସେତିକିରେ ବୋଧହୁଏ ସୀମାବଦ୍ଧ ଥିଲା । ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ବେଳେ ଯେଉଁ ରୋଷେଇର ଆୟୋଜନ ହୋଇଛି, ତାହା ମଧ୍ୟ ସେହିପରି ଏକାନ୍ତ ଗ୍ରାମ୍ୟ । ତାହା କୌଣସି ଏକ ଗ୍ରାମ୍ୟ ଜମିଦାରଙ୍କ ବିଭାଘର ଭୋଜିକି ହିଁ ସ୍ମରଣ କରାଇଦିଏ । ତାହା ଯେପରି ବାସ୍ତବ, ସେଇପରି କୌତୁକପ୍ରଦ । ଏହି ରାଜ-ଭୋଜ୍ୟର ଆଦର୍ଶ ହେଉଛି—

ଅକାଟିଲା, ଅବାଟିଆ ଯୋଗାଡ଼ ସହିତେ
ସୁଧା ହେଉଥିବ, ପାକ କରିବେ ଯେ ଯେତେ ।

ଏହା ପୁରୀ ଦେଉଳର ଘଟଣା ଛଡ଼ା ଆଉ କିଛି ନୁହେଁ । ଶ୍ରୀକୃଷ୍ଣ ଏଇ ରାଜସୂୟ ଯଜ୍ଞ ପାଇଁ, ତାଙ୍କର ଗଉଡ଼ ଭାଇମାନଙ୍କୁ ଆଦେଶ ଦେଇଦେଲେ ଯେ ସେମାନେ ଲକ୍ଷ ଲକ୍ଷ ଭାର ଦୁଧ ଆଣି ଥୋଇଲେ । ଏକ କିରାତରାଜାକୁ ଆଦେଶ ଦେଲେ ଯେ ସେ ଆଣି କାଠ ଗଦେଇଦେଇଗଲା, ପୁଣି ଏକ କୈବର୍ତ୍ତରାଜାକୁ ଆଦେଶ ଦିଆଗଲା ଯେ ସେ ଇନ୍ଦ୍ରଙ୍କ ତୋଟାରୁ ପନିପରିବା ଫଳମୂଳ ସବୁ ଆକାଶ ଗଙ୍ଗାରେ କୋଟି କୋଟି ନୌକାରେ ବୋହିଆଣିଲା –

ପୁଣି ବ୍ୟଞ୍ଜନ ଯୋଗାଡ଼ ସର୍ବ ପଦାର୍ଥକୁ
ଇନ୍ଦ୍ରତୋଟାଳିଆ ଦ୍ୟନ୍ତି କୈବର୍ତ୍ତରାଜାକୁ,
ନବ ଖର୍ବ, ନବ ଅର୍ବୁଦ ନାବମାନ ଭିଡ଼ି
ଇନ୍ଦ୍ରପ୍ରସ୍ଥେ ପ୍ରବେଶନ୍ତି ସେ ନାବରେ ଚଢ଼ି ।
ନାବେ ଫଳମାନ ଭରି ଆଣଇ ସୁବାହୁ
ଆଳୁ ସାରୁ କଦଳୀ ଯେ ନାନା ଜାତି ତହୁଁ ।
× × ×
ପରିବା, ପିଠଉ, ଲୁଣ, ବେସର ସଜାଡ଼ି
ଘୃତଯୋଗେ ଏକାବେଳେ ଦିଅନ୍ତି ଯୋଗାଡ଼ି,
ଭାଣ୍ଡେ ପୂରାଇ ତକ୍ଷଣେ ଚୁଲିରେ ଜାଳିଲେ,
କ୍ଷଣକେ ଅମୃତ ହୁଏ ଦୋହରା ଚିନ୍ତିଲେ ।
ଏ ରାନ୍ଧଣା ଗୌରୀ, ଶୌରୀ, ପୁଣି ନଳ-ବିଧି
ବିନା ପୟେ ପାକ ହୁଏ ହୋଇଣ ସଂସିଦ୍ଧି । (ସଭାପର୍ବ)

'ଦୋହରା' ଶବ୍ଦର ଅର୍ଥ କ'ଣ, ପୁଣି ଗୌରୀ, ଶୌରୀ, ନଳ ଏଇ ତିନିପ୍ରକାର ରନ୍ଧନପ୍ରଣାଳୀ କ'ଣ କେହି ବୁଝାଇଦେଲେ ଅନେକେ ଉପକୃତ ହେବେ – ଏ ଲେଖକ ଜାଣେନା । ତେବେ ମୋଟ ଉପରେ ଏହା ଜଗନ୍ନାଥଙ୍କ ରୋଷେଇ ପରି ଯେ ମନେହେଉଛି, ଏଥିରେ ସନ୍ଦେହ ନାହିଁ । ଦାସକବି ତାହାହିଁ ଦେଖିଥିଲେ, ଦେଖିଥିଲେ ଗାଁଜନ୍ତାଳ, ଦେଖିଥିଲେ ସ୍ଥାନୀୟ ଧନିକର ଭୋଜି ବ୍ୟବସ୍ଥା – ସେ ତାହାହିଁ ଲେଖି ଯାଇଛନ୍ତି । ସେଇ ଗ୍ରାମ୍ୟ ଅଭିଜ୍ଞତାରୁ ବେଶୀ ଦୂରକୁ ସେ ଯାଇପାରିନାହାନ୍ତି ।

ଦାସଙ୍କ ସମଗ୍ର ମହାଭାରତରେ ଆଉ ଏକ ପ୍ରଧାନ ଗ୍ରାମ୍ୟ-ଲକ୍ଷଣ ଓତପ୍ରୋତ ହୋଇ ରହିଛି – ତାହା ତାଙ୍କର ସ୍ୱଭାବଗତ ଅତିଶୟୋକ୍ତି । ଗାଁ ଲୋକେ ପ୍ରାୟ କଥାକୁ ଅତିରଞ୍ଜନ କରନ୍ତି । କିନ୍ତୁ ଆମର କୃଷକ କବିଙ୍କ ଅଦ୍ଭୁତୋକ୍ତିକୁ ଟପିବାର ସାହସ ମଧ୍ୟ କେହି କରିପାରିବେ ନାହିଁ । ଗୋଟିଏ ଛୋଟ ଦୃଷ୍ଟାନ୍ତ ଦିଏଁ । ବନ୍ୟାରାଣୀ

ହିଡ଼ିମ୍ବିକା, ପୁଅ ଘଟୋତ୍କଚକୁ ଘେନି ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞକୁ ଆସିଲା । ରାଜାଙ୍କୁ ଭେଟି ଦେବ ତ ? କ'ଣ ଆଣିଲା ସେ ଭେଟି ? ଦାସଙ୍କ ଭାଷାରେ–

ଶତେ ରଥ ପୂରାଇଲା ପାଣିଦ୍ରବ୍ୟ ଯେତେ,
ଶତେ ରଥ କସ୍ତୁରୀଗୁ ଯୁଆଦ ସହିତେ ।
ସୁଗନ୍ଧ ଅଏଁଳା ନେଲା ଏକ ଲକ୍ଷ ଭାର,
ଲକ୍ଷ ଭାର ସଜ କଲା ଚନ୍ଦନ, କର୍ପୂର ।
ପୁଣି ଲକ୍ଷ ଲକ୍ଷ ଭାର ନେଲା ଚୂତଫଳ,
ଯିବାପାଇଁ ସଜ ହେଲା ହିଡ଼ିମ୍ବୀର ବାଳ । (ସଭାପର୍ବ)

ଏବର ଦରିଦ୍ର ଓଡ଼ିଶାଦେଶର କଥା ଛାଡ଼ିଦିଅ, ସମ୍ରାଟ୍ କପିଳେନ୍ଦ୍ର ଦେବଙ୍କ ସମୃଦ୍ଧିମନ୍ତ ଓଡ଼ିଶାରେ ବି ଭାରେ କସ୍ତୁରୀ ବା ଦୁଇ ଭାର କର୍ପୂର ଯୋଗାଡ଼ କରିବା କଷ୍ଟକର ବ୍ୟାପାର ହୋଇଥାନ୍ତା । କିନ୍ତୁ ଦାସକବିଙ୍କୁ ଶହେ ରଥ କସ୍ତୁରୀ ଓ ଲକ୍ଷେ ଭାର କର୍ପୂରର କଥା କହିବାକୁ ଆଦୌ ବାଧୁନି । ଦାସକବି ଜାଣିଥିଲେ ଯେ ଗ୍ରାମ୍ୟଜନତା ପକ୍ଷରେ ଅତିରଞ୍ଜନ ପରି ବିସ୍ମୟକର ଓ ଆମୋଦଦାୟକ ଘଟଣା ଆଉ ଦ୍ୱିତୀୟ ନାହିଁ । ଫୁଟେ ଲମ୍ବର ସାପ ତ ସେମାନେ ଦେଖିଥାନ୍ତି, ସେମାନଙ୍କୁ ଲକ୍ଷେ ଫୁଟ ଲମ୍ବ ସାପର କଥା କହିଲେ ଇ ସେମାନେ ଭୁଲିଲେ ।

× × × ×

ମୋଟ ଉପରେ ଶୂଦ୍ରକବି, ସେ ଯେଉଁ ଅବସ୍ଥାରେ, ଯେଉଁ ପରିବେଶରେ ଜନ୍ମ ହୋଇଥିଲେ, ଯେପରି ତାଙ୍କର ଶିକ୍ଷାଦୀକ୍ଷା, ଯେପରି ଅବସ୍ଥା ତତ୍‌କାଳୀନ ଓଡ଼ିଆ ସାହିତ୍ୟର, ସେସବୁକୁ ଚାହିଁଲେ, ଏକ ଅଭାବନୀୟ କର୍ମ କଲେ ବୋଲି କହିବାକୁ ହେବ । ଏପରି ଲୋକ ପକ୍ଷରେ ମହାଭାରତ ପରି ମହାକାବ୍ୟ ଲେଖିବାର ଚେଷ୍ଟା-କରିବା କେବଳ ପ୍ରତିଭା ଦରକାର କରେନାହିଁ, କରେ ଅଗାଧ ମାନସିକ ବିଶ୍ୱାସ ଏବଂ ବୋଧହୁଏ ଭଗବତ୍-ପ୍ରେରଣା । ଏ ମହାଗ୍ରନ୍ଥର ଅସାଧାରଣ ଜନପ୍ରିୟତାରୁ ଏହାର ସାର୍ଥକତା ମଧ୍ୟ ପ୍ରମାଣିତ ହେଉଛି । ପଣ୍ଡିତଜନମାନେ ମଧ୍ୟ ଛଅଶ ବର୍ଷ ତଳେ ଜଣେ ଗ୍ରାମ୍ୟ କୃଷକ କବି, ଏପରି ଅକଳ୍ପନୀୟ ମୌଳିକତା ଏ ଗ୍ରନ୍ଥରେ ଦେଖାଇଥିବାରୁ ବିସ୍ମିତ । ଏ ଗ୍ରନ୍ଥ ଲେଖା ହୋଇ ନ ଥିଲେ, ପୁଣି ହୋଇ ମଧ୍ୟ ଏପରି ଜନପ୍ରିୟ ହୋଇନଥିଲେ, ଓଡ଼ିଆଭାଷାର ଇତିହାସ କିପରି ହୋଇଥାନ୍ତା କହିହେଉନି ।

ଦାସକବି ମୂଳ ମହାଭାରତର ଆଖ୍ୟାନ ଭାଗଟା ମୋଟାମୋଟି ଗ୍ରହଣ କଲେ । ଗ୍ରହଣ କରି ସେସବୁକୁ ନିଜ ରୀତିରେ କହି ଓଡ଼ିଶାର ଗ୍ରାମ୍ୟଜନତାକୁ ମୁଗ୍ଧ କଲେ । କିନ୍ତୁ ଏତେ ବଡ଼ ବୁଦ୍ଧିମାନ୍ ଲୋକ ହୋଇ, ଶୂଦ୍ର ହେଲେହେଁ ମୁନି ହୋଇ, ସେ

ମହାଭାରତ ପରି ମହାଗ୍ରନ୍ଥର ଯାହା ସାରସତ୍ତ୍ୱ ସେହି ସାଂସ୍କୃତିକ ଅଂଶଗୁଡ଼ିକୁ ଛାଡ଼ିଗଲେ କିପରି ? ମହାଭାରତ କେବଳ ଗୋଟିଏ ଗଳ୍ପପର୍ଯ୍ୟାୟ ନୁହେଁ – ଏହା ଭାରତୀୟ ସଂସ୍କୃତିର ଆଦି ଉତ୍ସ । ଭାରତବର୍ଷର ସମାଜ ଓ ସାହିତ୍ୟ ଏହାରି ଉପରେ ଠିଆ । ଏହାର ଉପାଖ୍ୟାନାଂଶ ଏହାର ଆଧ୍ୟାତ୍ମିକ ଓ ସାଂସ୍କୃତିକ ବାଣୀର ବାହକ ମାତ୍ର । ଏହାର ପ୍ରକୃତ ମୂଲ୍ୟବାନ୍ ଅଂଶ ହେଉଛି ସେହି ନୈତିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ ବାଣୀ । ପୁଣି କି ମୂଲ୍ୟବାନ୍ ସେ ଅଂଶ ! ଏକାଳର ଭାବଧାରାର ମାପରେ ଆମ ଆଖିରେ କେତେକାଂଶ ନିନ୍ଦନୀୟ, କେତେକ ଉପହାସ୍ୟ ଓ କେତେକ ନିରର୍ଥକ ଜଣାଯାଇପାରେ, ତଥାପି ଯାହାର ଉପଯୋଗିତା ଚିରକାଳ ପାଇଁ ଓ ସର୍ବଜନ ପାଇଁ ତାହାର ପରିମାଣ ତ କମ୍ ନୁହେଁ । ସେଥିର ପୁଣି ଅଳ୍ପ କେତେକ ଅଂଶ ଅଛି, ଯାହା ସମଗ୍ର ବିଶ୍ୱ-ସାହିତ୍ୟରେ ବା ବିଶ୍ୱଧର୍ମରେ ମଧ୍ୟ ଅତୁଳନୀୟ । ଦାସକବି ପ୍ରତିଭାବାନ୍ ଲୋକ ହୋଇ ସେସବୁ କିପରି ବାଦ୍‌ଦେଲେ, ଆଜି ଭାବିଲେ ଅବାକ୍ ହେବାକୁ ହୁଏ ।

ଆମର ସାଧାରଣ ଧାରଣା ଯେ କାବ୍ୟ କବିତା ଲେଖିବା ବଡ଼ ସହଜ କଥା । ହଁ ସହଜ, କେବଳ ଆମରି ନିମ୍ନ ମାନଦଣ୍ଡରେ । ପ୍ରକୃତ କାବ୍ୟ ସୃଷ୍ଟି ବା ଶିଳ୍ପସୃଷ୍ଟି ଦରକାର କରେ ଅତି ଗଭୀର ଅନୁଭବଶକ୍ତି ସହିତ ଅତି ଉଚ୍ଚକୋଟୀର ମାନସିକ ଶକ୍ତି । ଏଇ ଦୁଇର ମିଶ୍ରଣ ହିଁ ସୃଷ୍ଟି କରେ ଉନ୍ନତ କଳା । ପ୍ରତ୍ୟେକ ଉଚ୍ଚ କଳା ବା କାବ୍ୟ ଭିତରେ, ସୌନ୍ଦର୍ଯ୍ୟର ଆପାତ ସ୍ୱାଭାବିକ ସୁକୁମାର ଆବରଣତଳେ ଆମେ ଏଇ ଉଜ୍ଜ୍ୱଳ ବୌଦ୍ଧିକ ଉତ୍କର୍ଷର ମଧ୍ୟ ସ୍ପର୍ଶ ପାଉ । ତା' ନ ହୋଇଥିଲେ କଳାସୃଷ୍ଟି ଶିଶୁଖେଳ ହୋଇଥାନ୍ତା । ସଂସ୍କୃତରେ ଯେତେ କବି ଅଛନ୍ତି ତାଙ୍କ ଭିତରେ କାଳିଦାସଙ୍କ ଲେଖା ହିଁ ସବୁଠାରୁ ସରଳତମ ଅଥଚ ସବୁଠାରୁ ମନୋହରତମ ଓ ସବୁଠାରୁ ଅଧିକ ଭାବ-ପ୍ରକାଶକ, ପୁଣି ସବୁଠାରୁ ଅଧିକ ଜ୍ଞାନଗର୍ଭକ । ବଙ୍ଗଦେଶର ଦୁଇ ତିନୋଟି ଅତି ବଡ଼ ପଣ୍ଡିତଙ୍କ ରଚନା ଏଇ ଲେଖକ ପଢ଼ିଛି । ଆମପରି ମୂର୍ଖ ବି ସେପରି ସରଳ ଭାଷାରେ ଲେଖି ପାରିବେ ନାହିଁ– ଅଥଚ ସେମାନଙ୍କର ପ୍ରତି ବାକ୍ୟଟି ପଛରେ ଅଛି ଗୋଟାଏ ଗୋଟାଏ ପୋଥିର ଜ୍ଞାନ । ଯାରି ନାମ ପ୍ରକୃତ ପାଣ୍ଡିତ୍ୟ ।

ଆମର ଦାସକବିଙ୍କ ଲେଖାରେ ଏଇ ବୌଦ୍ଧିକ ଓ ସାଂସ୍କୃତିକ ଅଙ୍ଗର ହାନି ହୋଇଥିବାରୁ, ଓଡ଼ିଶାର ଜନସାଧାରଣରେ ମହାଭାରତୀୟ ଆର୍ଯ୍ୟ ସଂସ୍କୃତିର, ଅନ୍ୟ ପ୍ରଦେଶ ତୁଳନାରେ, ଅସ୍ତିତ୍ୱ ନାହିଁ କହିଲେ ଚଳେ । ତା'ଦ୍ୱାରା ଆମର ଜାତୀୟ-ଜୀବନର ଯେ ଘୋର କ୍ଷତି ହୋଇଛି, ତାହା ଅକୁଣ୍ଠିତ ବାକ୍ୟରେ କୁହାଯାଇପାରେ । ପ୍ରଥମରୁ ଯାହା କହିଛି, ଶୂଦ୍ରକବି ଶୂଦ୍ରଜନର ଭାଷାରେ ଶୂଦ୍ରଜନତା ପାଇଁ ଏ ମହାଗ୍ରନ୍ଥ ଲେଖିଥିଲେ, ସେ ଦୃଷ୍ଟିରୁ ଦେଖିଲେ ଶାରଳା ମହାଭାରତ ଏକ ବିସ୍ମୟକର ସୃଷ୍ଟି ।

କବିଙ୍କର ସୃଜନକ୍ଷମତା, ଗଳ୍ପକାରିତା, ସମାଜଚିତ୍ରଣ, ମନୁଷ୍ୟ ମନସ୍ତତ୍ତ୍ୱର ଗଭୀର ଜ୍ଞାନ ପ୍ରକୃତରେ ଅସାଧାରଣ । ସ୍ଥାନେ ସ୍ଥାନେ କବିଙ୍କର ଉଦାର ଦୃଷ୍ଟି କୋଣ ମଧ୍ୟ ବିସ୍ମୟକର ଭାବରେ ଆଧୁନିକ । ଏ ମହାଭାରତ ଖାଣ୍ଟି ଓଡ଼ିଆ ଭାଷାର ରାଷ୍ଟ୍ରୀୟ ଗନ୍ତାଘର କହିଲେ ଅତ୍ୟୁକ୍ତି ହେବ ନାହିଁ । କିନ୍ତୁ ମହାକବି ଆମର ପରିଚିତ ମାଟିର ସଂସାରକୁ ସିନା ଅମର କରିଦେଇଗଲେ, କିନ୍ତୁ ଏଇ ମାଟିର ନିମ୍ନ ଉପତ୍ୟକାରୁ ଉପରେ ଥିବା ସଂସ୍କୃତିର ଓ ନିର୍ମଳ ଆଧାତ୍ମିକତାର ସ୍ୱର୍ଣ୍ଣ ଅଧିତ୍ୟକାକୁ ବାଟ ତ ଦେଖାଇଗଲେ ନାହିଁ ? ସର୍ବଶ୍ରେଷ୍ଠ କଳା, ଶିଳ୍ପ ଓ କବିତା ଏଇ ମାଟିକି ନେଇ ଗଢ଼ା । କିନ୍ତୁ ସେ ସବୁର ସ୍ପର୍ଶ ଆମକୁ ଏଇ ମାଟିରେ ଲିପ୍ତ ରଖେନାହିଁ । ସେସବୁ ନେଇଯାଆନ୍ତି ଏକ ସୂକ୍ଷ୍ମ ସୁକୁମାର କଳ୍ପଲୋକକୁ, ଯେଉଁଠି ଆମେ ଏଇ ମାଟିର ସକଳ ସ୍ଥୂଳତା, ମଳିନତା, କୁତ୍ସିତତାକୁ ଭୁଲି ଆମେ କେବଳ ଏକ ସୂକ୍ଷ୍ମ, ସୁକୁମାର ଅନୁଭୂତିର ଓ ଜ୍ଞାନର ଜଗତରେ ପ୍ରବେଶକରୁ । କୋଣାର୍କ, ଅଜନ୍ତା, ଗୀତାଞ୍ଜଳି, ମେଘଦୂତ ଓ ଶକୁନ୍ତଳା ଆମକୁ ସେହି ଜଗତକୁ ନେଇଥାନ୍ତି । ଶାରଳା ମହାଭାରତରେ ଆମେ ସେ ଜଗତର ସନ୍ଧାନ ପାଉନା । ସଂସ୍କୃତ ମହାଭାରତର ବହୁ ସ୍ଥାନରେ କିନ୍ତୁ ଆମେ ତାହା ପାଉ । ଶୂଦ୍ରକବି ଶାରଳାଦାସଙ୍କ କାବ୍ୟ ଏକାନ୍ତରେ ମାଟିର କାବ୍ୟ, ମାଟିର ଜନତା ପାଇଁ । ତାହାର ଓ ତା'ର ମହାସ୍ରଷ୍ଟାର ପରମସାର୍ଥକତା ସେହିଠାରେ । ସେ ଦେଖିଲେ ଯେ ସଂସ୍କୃତ ମହାଭାରତ ପଣ୍ଡିତମାନେ ପଢୁଛନ୍ତି ଓ ବରାବର ପଢ଼ିବେ । କିନ୍ତୁ ଶିଶୁମନର ସ୍ତରରେ ଥିବା ଜନତାକୁ କ'ଣ ଦିଆଯାଇପାରିବ ? ଯଦି ସଂସ୍କୃତ ମହାଭାରତର ରାଜନୀତି, ଧର୍ମନୀତି, ଦର୍ଶନ, ଅନୁଶାସନ ସହିତ ତା'ର ସମସ୍ତ ବିପୁଳତାକୁ ଓଡ଼ିଶାର ନିରକ୍ଷର ଜନତା ଉପରେ ଲଦିଦିଆଯାଏ, ତେବେ ସେମାନଙ୍କର ଶିଶୁମନ ତାହା ଗ୍ରହଣ କରିବ କି ? ଶିଶୁମନ କେବଳ ଗଳ୍ପ ଚାହେ । ପୁଣି ସେ ଗଳ୍ପ ହେବ ଶିଶୁର ପରିଚିତ ପରିସ୍ଥିତ ଭିତରଦେଇ । କିଂଚିତ୍ ଅତିରଞ୍ଜନର ପ୍ରକ୍ଷେପ ହେଲେ ଶିଶୁ-ମନ ମୁଗ୍ଧ ହୋଇଉଠେ । ସାହିତ୍ୟସ୍ରଷ୍ଟା ଶାରଳାଦାସ ଜନତା ଚିତ୍ତର ଏଇସବୁ ଲକ୍ଷଣ ଉତ୍ତମରୂପେ ଜାଣିଥିଲେ । ସେ ତେଣୁ ନିଜକୁ ଓ ମହାଭାରତକୁ ନେଇ ଆସିଛନ୍ତି, ଜାଣି ଜାଣି, ଓଡ଼ିଶାର ଗାଁକୁ ଓ ଗାଁ ମଣିଷର ବୌଦ୍ଧିକସ୍ତରକୁ । ଆମେ ତେଣୁ ତାଙ୍କ ଗ୍ରନ୍ଥରେ ଅଦ୍ଭୁତ ଉତ୍ଥାନ ପତନ ଲକ୍ଷ୍ୟ କରୁ । ପ୍ରତିଭା ବଳରେ ସେ ଅଜ୍ଞାତସାରରେ ଠାଏଠାଏ ସୃଜନ-ଶିଳ୍ପର ଉଚ୍ଚତମ ଶିଖରକୁ ଉଠିଯାଇଛନ୍ତି । କିନ୍ତୁ ପରକ୍ଷଣରେ ପୁଣି ଖସିଆସିଛନ୍ତି ଗ୍ରାମ୍ୟଜନତାର ଧୂଳି- କାଦୁଅ ସ୍ତରକୁ । ଏଥିପାଇଁ ଏହି ମହାସ୍ରଷ୍ଟାଙ୍କୁ ଆଜି ଦୋଷ ଦେଇ ଲାଭ ନାହିଁ । ଓଡ଼ିଶାର ନିରକ୍ଷର ଜନତାର କଲ୍ୟାଣ ପାଇଁ ଏଇ ପ୍ରତିଭାଶାଳୀ କବି, ନିଜର ଉଜ୍ଜ୍ୱଳ ପ୍ରତିଭାର ହୋମ କରିଯାଇଅଛନ୍ତି ।

--

# ଶାରଳାଦାସଙ୍କ ସ୍ମୃତି ପୂଜା *

ଆଜି ଆମେମାନେ ଯେଉଁମାନେ କି ଓଡ଼ିଆ ଭାଷାରେ ସାହିତ୍ୟ ସୃଷ୍ଟି କରିବାର ଗର୍ବ କରୁଁ, ପାଞ୍ଚଶ ବର୍ଷ ତଳେ ଜଣେ ଅଶିକ୍ଷିତ କୃଷକ, ମହାଭାରତ ପରି ଏକ ମହାକାବ୍ୟ ରଚନାକରି ଆମର ଭାଷାକୁ କି ମହାଦାନ ଦେଇଯାଇଛି, ତାହା ଆମେ ପ୍ରାୟ ମନେରଖୁ ନାହିଁ । ସେତେବେଳେ ସଭ୍ୟ ଭାଷା ଥିଲା ସଂସ୍କୃତ । ବ୍ରାହ୍ମଣମାନେ ଜାତିର ଧର୍ମ ଓ ସାହିତ୍ୟ ଉଭୟର ଥିଲେ ସ୍ରଷ୍ଟା ଓ ଗନ୍ତାଇତ । ସେଠି ଅନ୍ୟ ଜାତିର ପ୍ରବେଶ ନଥିଲା । ଦେଶରେ ଜନସାଧାରଣର ଦୈନନ୍ଦିନ ଭାଷା ଅସ୍ପୃଶ୍ୟ ଓ ଅପାଂକ୍ତେୟ ହୋଇ ରହିଥିଲା । ବ୍ରାହ୍ମଣ ରାଜାଙ୍କୁ ଆର୍ଶୀର୍ବାଦ କରୁଥିଲେ ସଂସ୍କୃତରେ, ରାଜା କାହାକୁ ମାଣେ ଜମି ଦେଲେ ଆଦେଶ ଦେଉଥିଲେ ସଂସ୍କୃତରେ ! ଏବେ ସଭ୍ୟମ୍ମନ୍ୟ ଆମେ, ଆଦିବାସୀମାନଙ୍କ ଭାଷାକୁ ଯେଉଁ ଆଖିରେ ଦେଖିବାରେ ଅଭ୍ୟସ୍ତ, ପାଞ୍ଚଶ ବର୍ଷ ତଳେ ବ୍ରାହ୍ମଣମାନେ ଏ ଦେଶରେ ଜନସାଧାରଣ ବା ପ୍ରକୃତ ବାସିନ୍ଦା ଆମମାନଙ୍କର ଦୈନନ୍ଦିନ ଭାଷାକୁ ଠିକ୍ ସେଇ ଚକ୍ଷୁରେ ଦେଖୁଥିଲେ । ଆମ ଭାଷାରେ ସେତେବେଳକୁ ହୁଏତ ଏକମାତ୍ର ସାହିତ୍ୟ ଥିବ କାହାଣୀ ଓ ଢଗଢ଼ମାଳି, ହୁଏତ ଗୋଟିଏ ଦୁଇଟି ଚଉତିଶା । ଏ ସମସ୍ତ ପୁଣି କେବଳ ମୁଖେ ମୁଖେ ହିଁ ବଞ୍ଚିଥିବ । ସଂସ୍କୃତ ଭାଷାର କାବ୍ୟ-କବିତା ଓ ଶାସ୍ତ୍ର-ସୂତ୍ର ପରି ପୋଥିର ଯତ୍ନ ସହକାରେ ଲିପିବଦ୍ଧ କରିବା ଭଳି ଓଡ଼ିଆରେ କୌଣସି ସାହିତ୍ୟ ସୃଷ୍ଟି କରିବାର ଚେଷ୍ଟା ବା ଦୁଃସାହସିକତା ସେପର୍ଯ୍ୟନ୍ତ କେହି କରିନଥିଲେ ।

ବ୍ରାହ୍ମଣମାନଙ୍କର ବେଦଗାନ ଓ ଦେବଭାଷା ବହୁ ନିମ୍ନର ମାଟିର ଧରଣୀକୁ ସ୍ପର୍ଶ କରିପାରୁନଥିଲା । ଦେଶର ମାଟି ଚାହିଁଲା ନିଜର କଥା ନିଜର ପରିଚିତ ସୁବୋଧ ଭାଷାରେ ଶୁଣିବାକୁ । ମାଟିର ଭାରତୀ ଆବିର୍ଭୂତା ହେଲେ ମାଟିର ଜୀବ ସିଦ୍ଧେଶ୍ୱର ପରିଡ଼ାଙ୍କ କଣ୍ଠରେ । ଜନ୍ମ ହେଲା ଓଡ଼ିଆ ଭାଷାର ପ୍ରଥମ ମହାକାବ୍ୟ, ଖାଣ୍ଟି ଓଡ଼ିଆ ଭାଷାରେ, ଓଡ଼ିଆ ସମାଜର ନିଖୁଣ ଚିତ୍ର ଧରି ।

ମହାକବି ସିଦ୍ଧେଶ୍ୱର ପରିଡ଼ାଙ୍କର ପାଣ୍ଡିତ୍ୟର କୌଣସି ଅଭିମାନ ନଥିଲା ।

---

* କନକପୁର ଗ୍ରାମର ଶାରଳା ମନ୍ଦିର ସମ୍ମୁଖରେ ଶାରଳାଦାସଙ୍କ ଉଦ୍ଦେଶ୍ୟରେ ଗୋଟିଏ ସ୍ମୃତିସ୍ତମ୍ଭ ସ୍ଥାପିତ ହୋଇଛି । ଏହି ପ୍ରବନ୍ଧଟି ସେହି ଉତ୍ସବ ପାଇଁ ଲେଖାହୋଇଥିଲା – କିନ୍ତୁ ପଠିତ ହୋଇନଥିଲା । ଭଲହେଲା, କାରଣ ଏବେ ବୁଝୁଛି ଯେ ବର୍ତ୍ତମାନ କନକପୁର ଶାରଳା ମନ୍ଦିର ସହିତ ଦାସ କବିଙ୍କର କିଛିହିଁ ସମ୍ପର୍କ ନଥିଲା – ଏ ସ୍ମୃତିସ୍ତମ୍ଭ ଏକ ରାଜନୈତିକ କ୍ରିୟାମାତ୍ର ।

ତାଙ୍କର ସମଗ୍ର ମହାଭାରତରେ ଆମ୍ଭେମାନେ କେବଳ ତାଙ୍କର ଗଭୀର ସଙ୍କୋଚ ଓ ବିନୟର ପରିଚୟ ପାଉଁ । ପୃଥିବୀର ସବୁ କାଳର ପ୍ରକୃତ କବିମାନଙ୍କ ପରି ସେ ତାଙ୍କ ପ୍ରତିଭା ସମ୍ବନ୍ଧରେ ବରାବର ସନ୍ଦିଗ୍ଧମନା ଥିଲେ । ଅନ୍ତର୍ନିହିତ ପ୍ରତିଭାର ତାଡ଼ନା ନଥିଲେ ଅଳ୍ପ ଶିକ୍ଷିତ ଜଣେ ଗ୍ରାମ୍ୟ ଚଷା, ଯେଉଁ ଭାଷାରେ କିଛି ହିଁ ସାହିତ୍ୟ ପୂର୍ବେ ନଥିଲା ସେଥିରେ ମହାଭାରତ ପରି ପ୍ରକାଣ୍ଡ ବ୍ୟାପାରରେ ହାତ ଦିଅନ୍ତା କିପରି ? କିନ୍ତୁ କଲମ୍ବସ ଆମେରିକା ଆବିଷ୍କାର କରି ତାକୁ ଇଣ୍ଡିଆ ବୋଲି ଭାବିଲା ପରି, ନବପଥର ପଥିକ ଏହି ବିନୀତ ପଲ୍ଲୀକବି ନିଜର ସୃଷ୍ଟି ଓ ନିଜର ପ୍ରତିଭାରେ ଆଦୌ ବିଶ୍ୱାସ କରିପାରିନଥିଲେ ।

ସେ କାଳର ବ୍ରାହ୍ମଣ-ପାଣ୍ଡିତ୍ୟ-ପୀଡ଼ିତ ସମାଜରେ ଜଣେ ଶୂଦ୍ର ପକ୍ଷରେ ତାହା ଯେ ଏକ ସ୍ୱାଭାବିକ ମାନସିକ ଅବସ୍ଥା ଏଥିରେ ସନ୍ଦେହ ନାହିଁ । ସେଥିପାଇଁ କବି ନିଜେ ହୁଏତ ପ୍ରକୃତରେ ବିଶ୍ୱାସ କରୁଥିଲେ ଏବଂ ତାଙ୍କ କାବ୍ୟରେ ବାରମ୍ବାର ପ୍ରଚାର କରିଛନ୍ତି ଯେ ଝଙ୍କଡ଼ବାସିନୀ ଠାକୁରାଣୀ ତାଙ୍କୁ ଯାହା ଯେପରି ଲେଖାଇ ଦେଉଛନ୍ତି, ସେ କେବଳ ସେହିପରି ଲେଖିଛନ୍ତି, ତାଙ୍କର ନିଜର ଲେଖିବାର କୌଣସି ଅଧିକାର ବା କ୍ଷମତା ନାହିଁ ଏବଂ ସେ ଜଣେ ଅପଣ୍ଡିତ ଶୂଦ୍ର ମାତ୍ର । ବିନୟ ଓ ନିରହଙ୍କାରିତ୍ୱର ଆନ୍ତରିକ ଗଭୀରତାରେ କବି ନିଜର କୌଳିକ ନାମ ପର୍ଯ୍ୟନ୍ତ ଲୁଚାଇ, ନିଜର କାବ୍ୟରେ ନିଜକୁ କେବଳ ଶାରଳା ଠାକୁରାଣୀଙ୍କର ଦାସ ବା ଶାରଳା ଦାସ ବୋଲି ପ୍ରଚାର କରିଅଛନ୍ତି । ମହାକବି ସିଦ୍ଧେଶ୍ୱର ଓଡ଼ିଶାର ପ୍ରତ୍ୟେକ ନରନାରୀ ନିକଟରେ ଏହି ନାମରେ ହିଁ ପରିଚିତ ।

ଶୂଦ୍ର ଶାରଳା ଦାସଙ୍କ ମହାଭାରତ ଉପରେ ଉଚ୍ଚ କୋଟୀର ବ୍ରାହ୍ମଣ ପଣ୍ଡିତ ଗୋପୀନାଥ ନନ୍ଦେ ଓ ମୃତ୍ୟୁଞ୍ଜୟ ରଥେ ଉନ୍ନତ ସ୍ତରର ଆଲୋଚନା କରିଯାଇଛନ୍ତି । ଏଇଠି ହିଁ ଆମେ ଦେଖିବାକୁ ପାଉ ପଲ୍ଲୀକବିଙ୍କର ବିଜୟ । କବିଙ୍କ ସମୟରେ ଓ ତା'ର ବହୁ ପର ଯାଏଁ ଅନେକ ଓଡ଼ିଆ ସଂସ୍କୃତରେ କାବ୍ୟ ବ୍ୟାକରଣ ଲେଖିଛନ୍ତି । ସାହିତ୍ୟଦର୍ପଣକାର ବିଶ୍ୱନାଥ ମହାପାତ୍ରଙ୍କ ଛଡ଼ା ଆଜି ସମସ୍ତଙ୍କର ନାମ ବିସ୍ମୃତିର ସମାଧି ତଳେ ଲୀନ । ସାହିତ୍ୟ ଦର୍ପଣ ମଧ କେବଳ ପଣ୍ଡିତମାନଙ୍କ ନିକଟରେ ପରିଚିତ । କିନ୍ତୁ ଓଡ଼ିଶାରେ ଏପରି ଗ୍ରାମ ଅଛି କି ଯେଉଁଠି ଶାରଳା ଦାସଙ୍କ ମହାଭାରତ ଶୁଣାଯାଉନି – ଏହି ଗ୍ରନ୍ଥ ଆଜି ଜନସାଧାରଣ ତଥା ପଣ୍ଡିତ ସାଧାରଣ ଉଭୟଙ୍କର ଆଦରର ଓ ପୂଜାର ସାମଗ୍ରୀ ହୋଇଅଛି ।

ସଂସ୍କୃତ ମହାଭାରତ ସଙ୍ଗେ ତୁଳନା କରି ସମାଲୋଚକମାନେ ଶାରଳା ଦାସଙ୍କ ଗ୍ରନ୍ଥରେ ଅନେକ ଦୋଷ ଦେଖାଇଅଛନ୍ତି । ସେଥିରେ ଆମର ବିକ୍ଷୋଭିତ ଓ ଲଜ୍ଜିତ

ହେବାର କୌଣସି କାରଣ ନାହିଁ । ସିଦ୍ଧେଶ୍ୱର ପରିଡ଼ାଙ୍କର ପାରିପାର୍ଶ୍ୱିକତା ଓ ପଶ୍ଚାତ୍‌ପଟକୁ ଅନେଇଲେ, ଏହି ଦୋଷଗୁଡ଼ିକର ସ୍ଥିତି ଆମକୁ ଅକୁଣ୍ଠଭାବରେ ମାନିନେବାକୁ ହେବ । କିନ୍ତୁ ମନେରଖିବାକୁ ହେବ, ସଂସ୍କୃତ ମହାଭାରତ ଗୋଟିଏ ଲୋକର କୃତିତ୍ୱ ନୁହେଁ । ବହୁ ଯୁଗର ବହୁ ମନୀଷୀଙ୍କର ସାହିତ୍ୟିକ ଦାନର ସମାହାରରେ ସଂସ୍କୃତ ମହାଭାରତର ଅବୟବରାଜି ଗଠିତ । କିନ୍ତୁ ଶାରଳା ମହାଭାରତ ଜଣେ ଲୋକର ଲେଖା ଏବଂ ସେ ଲୋକଟି ଜଣେ ପଲ୍ଲୀବାସୀ ଅର୍ଦ୍ଧ ଶିକ୍ଷିତ 'କୃଷକ' ମାତ୍ର ଏବଂ ଏହାହିଁ ତା' ଭାଷାର ପ୍ରଥମ ସାହିତ୍ୟ । ତେଲୁଗୁ ମହାଭାରତ ତିନୋଟି ପ୍ରସିଦ୍ଧ ଆନ୍ଧ୍ର ମହାକବିଙ୍କର ପରପର ଚେଷ୍ଟାରେ ଲିଖିତ । ଏହା ଲେଖିବାକୁ ଏକାଦଶ ଶତାବ୍ଦୀରୁ ଚତୁର୍ଦ୍ଦଶ ଶତାବ୍ଦୀ ଯାଏ ଚାରିଶହ ବର୍ଷ ଲାଗିଥିଲା । ନାନ୍ନୟା, ତିକୋନ୍ନା ଓ ୟେରାପ୍ରେଗାଦା, ଏହି ଆନ୍ଧ୍ର 'କବିତ୍ରୟ' ଉଚ୍ଚଦରର ସଂସ୍କୃତଜ୍ଞ ପଣ୍ଡିତ ଥିଲେ । ବଙ୍ଗଳାରେ ମହାଭାରତ ଲେଖାହେଲା ମୁସଲମାନ ଶାସକମାନଙ୍କ ପ୍ରେରଣାରେ, ସପ୍ତଦଶ ଶତାବ୍ଦୀରେ । କାଶୀରାମ ଦାସ ମଧ୍ୟ ସଂସ୍କୃତଜ୍ଞ ବ୍ରାହ୍ମଣ ପଣ୍ଡିତ ଥିଲେ । ମନେହୁଏ, ଭାରତର କୌଣସି ପ୍ରାଦେଶିକ ଭାଷାରେ ଓଡ଼ିଆରେ ମହାଭାରତ ଯେପରି ଏକ ମାଟିର ମଣିଷଠାରୁ ମାଟିର ଭାଷାରେ ବାହାରିଛି, ସେପରି ହୋଇ ନାହିଁ । ଫଳରେ ଉଚ୍ଚ ଦର୍ଶନ ବା ଆଦର୍ଶବାଦ, ଯାହା ଆମେ ସଂସ୍କୃତ ମହାଭାରତରେ ପାଉଁ ତାହା ଶାରଳା ମହାଭାରତରେ କ୍ଷୁଣ୍ଣ ହୋଇଥିଲେ ହେଁ, ଏ ଗ୍ରନ୍ଥ ଓଡ଼ିଆ ସମାଜର ଦୈନନ୍ଦିନ ଓ ପ୍ରତ୍ୟକ୍ଷ ଅନୁଭୂତିର ସତ୍ୟ ସ୍ପର୍ଶରେ ଜୀବନ୍ତ ହୋଇଉଠିଛି, ଯେମିତି ସାହିତ୍ୟ ହେବାର କଥା । ସାହିତ୍ୟରେ କେବଳ ଉଚ୍ଚ ଦର୍ଶନର ଚର୍ଚ୍ଚା ହେବ ବା ତହିଁର ନାୟକ ନାୟିକା କେବଳ ଯତି ଓ ସତୀ ହେବେ, ଏପରି ଧରାବନ୍ଧା କଥା କିଛି ନାହିଁ । ପାଞ୍ଚଟି ସହୋଦର ଭାଇର ସାଧାରଣୀ ସ୍ତ୍ରୀ ଦ୍ରୌପଦୀଙ୍କୁ ଆମେ 'ସତୀ' ବୋଲି ଧରିନେବାଟା କେବଳ ଏକ ପୌରାଣିକ ସଂସ୍କାର ମାତ୍ର । ନଗ୍ନ ବାସ୍ତବତାର କବି ସିଦ୍ଧେଶ୍ୱରଙ୍କ ବର୍ଣ୍ଣନାରେ ଯଦି ଦ୍ରୌପଦୀଙ୍କର ଏଇ ଅନ୍ତର କଥା ଫୁଟି ବାହାରେ ଯେ, ପଞ୍ଚସ୍ୱାମୀ ଥିଲେହେଁ ଦ୍ରୌପଦୀଙ୍କର ଚିତ୍ତ, ଶତ୍ରୁପକ୍ଷୀୟ କର୍ଣ୍ଣପ୍ରତି ପ୍ରସନ୍ନ ଥିଲା, ସେଥିରେ ବିକ୍ଷୁବ୍ଧ ହେବାର କି ଅଛି ? ମହାଭାରତୀୟ ବା ରାମାୟଣୀୟ ଚରିତ୍ରଗୁଡ଼ିକୁ ଆମେ ଦେବ ସମ୍ପର୍କିତ ଭାବି ଆସିଛୁ ବୋଲି ଏ ପ୍ରକାର ଚିତ୍ର ସହଜରେ ହଜମ ହୋଇନପାରେ, କିନ୍ତୁ ଏମାନଙ୍କୁ ଯଦି ଆମରିପରି ଏଇ ମାଟିରୁ ଉଠୁଥିବା ଦୋଷ ଦୁର୍ବଳତା ସମନ୍ୱିତ ନରନାରୀ ବୋଲି ଧରାହୁଏ, ତେବେ ଶାରଳାଦାସଙ୍କ ଚରିତ୍ର ଚିତ୍ରଣର ସତ୍ୟ ଓ ମାଧୁର୍ଯ୍ୟ ଆମେ ହୃଦୟଙ୍ଗମ କରିପାରିବାରେ କଷ୍ଟ ହେବନାହିଁ ।

ଏବେ ପୃଥିବୀର ସବୁ ଦେଶର ମହାକାବ୍ୟଗୁଡ଼ିକ ଏକପ୍ରକାର ଡୋର ବନ୍ଧାହୋଇ

ରହିଲେଣି । ପ୍ରତି ମାସରେ ଭିନ୍ନ ଭିନ୍ନ ବୁକ୍-କ୍ଲବର ପ୍ରକାଶିତ ଚମକପ୍ରଦ ଗ୍ରନ୍ଥାବଳୀ ପଢ଼ିବାକୁ ସମୟ ନାହିଁ, ଆଧୁନିକ ପାଠକର, ପ୍ରାଚୀନର ପୁରାଣ ପଢ଼ିବାକୁ ବେଳେ କାହିଁ ? ପ୍ରାଚୀନ ମହାକାବ୍ୟଗୁଡ଼ିକର ମୂଲ୍ୟ ଆଜି କେବଳ ଐତିହାସିକ, ଅର୍ଥାତ୍ ତତ୍‌କାଳୀନ ସମାଜର ଚିତ୍ରଣରୂପେ ହିଁ ସେଗୁଡ଼ିକର ଅସ୍ତିତ୍ୱର ଯାହା କିଛି ଅଛି ଆମ ନିକଟରେ । ଏ ମାପକାଠିରେ ମାପିଲେ ଶାରଳା ମହାଭାରତର ଗୌରବ ଓଡ଼ିଆ ସାହିତ୍ୟରେ ଚିରଦିନ ଅକ୍ଷୁଣ୍ଣ ରହିବ । କାରଣ ଏ ମହାଭାରତ ଏକାନ୍ତ ଭାବରେ ଓଡ଼ିଆ ଜାତିର ମହାଭାରତ । ଏଥିରେ ଓଡ଼ିଆ ବୈଶ୍ୟ ହରି ସାହୁର କନ୍ୟାକୁ ଯୁଧିଷ୍ଠିର ବିବାହ କରିଛନ୍ତି । ଏଠି ତରୁଣ କୌରବ ଓ ପାଣ୍ଡବ ଭାଇମାନେ ଡୁ ଡୁ ଖେଳୁ ଖେଳୁ କୁରୁକ୍ଷେତ୍ର ଯୁଦ୍ଧର ସୂତ୍ରପାତ ହୋଇଛି । ଶିଶୁ ଭୀମ ହାଣ୍ଡିଶାଳରେ ପଶି ଭାତ ତରକାରୀ ଲୁଚାଇ ଖାଇଯାଇଛି ଏବଂ ଦିନେ ଧରାପଡ଼ିବାରୁ ବୃକୋଦର ପଳାଉଛି ଓ ପଛେ ପଛେ ବନବାସୀ ରାଜା ପାଣ୍ଡୁ ' ଆଜି ତୋର ଜୀବନ ନେବି' କହି ଗୋଡ଼ାଇଛନ୍ତି । ଏ ଦୃଶ୍ୟସବୁ ଏବ ଯାଏଁ ଓଡ଼ିଶାର ପଲ୍ଲୀଗୃହମାନଙ୍କରେ ପରିଚିତ ଦୃଶ୍ୟ । ସେଥିପାଇଁ ଏ ଚିତ୍ରଣ ଆମ ଦେଶବାସୀଙ୍କର ଏପରି ମନୋରଞ୍ଜନ କରିପାରିଛି ଯେ, ସଂସ୍କୃତ ଅନୁବାଦିତ ମୂଳ ମହାଭାରତ ସେମାନଙ୍କ ଆଗରେ ଥୋଇଲେ ମଧ୍ୟ, ସେମାନେ ଶାରଳା ମହାଭାରତକୁ ଛାଡ଼ିବାକୁ ନାରାଜ ।

ଏଇ ପାଞ୍ଚଶ ବର୍ଷ ଭିତରେ ଓଡ଼ିଆ ଭାଷାରେ ନାନା ପ୍ରକାର ଶୈଳୀ ଦେଖାଦେଇଛି । ମାଦଳାପାଞ୍ଜିର ବିକୃତ ଓଡ଼ିଆ ଯେ କାହାର ଓ କେଉଁ ଯୁଗର ପ୍ରତିନିଧିତ୍ୱ କରେ ବୁଝିହୁଏନା । ତା'ପରେ ଭଞ୍ଜାଦି ଆଳଙ୍କାରିକ କବିମାନଙ୍କର ସଂସ୍କୃତିଆ ଓଡ଼ିଆର ଯୁଗ ପ୍ରାୟ ଦୁଇଶବର୍ଷଯାଏଁ ଚାଲିଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ଏହି ଯେ, ଏ କାଳର ଓଡ଼ିଆ ସଙ୍ଗେ ପ୍ରାଚୀନ ଯୁଗର କେଉଁ କାଳର ଓଡ଼ିଆର କେଉଁଠି ଆମେ ଯଦି ମିଳନ ପାଇବା, ତାହା ହୋଇଛି ଶାରଳା ମହାଭାରତରେ । ନାୟିକା ଲାବଣ୍ୟବତୀର ପ୍ରସାଧନ ସମ୍ପର୍କରେ ଭଞ୍ଜେ କହିଛନ୍ତି –

ମର୍ଦ୍ଦଳାକାର କଙ୍କତିକା ଝଳି,
କାଙ୍ଗୁଲା କମ ସୁଷମ ପିତୁଳି
ସୁସଞ୍ଚ ଘନ ଦଶନ ଆବଳି,
ଗଳିବ କି ନାହିଁ କୁନ୍ତଳ ଭାଳି
ନଖେ ଟଙ୍କାର ଦେଲେ ବେଶକାରୀ କି,
ଦେଲା କେଶ କୁଣ୍ଡିଆଇ ଯେ ।

କିନ୍ତୁ ସ୍ୱୟମ୍ବର ସଭାକୁ ଯାଉଥିବା ଦ୍ରୌପଦୀଙ୍କର ପ୍ରସାଧନର ବର୍ଣ୍ଣନା ଶାରଳା

ଦାସ ଏଇପରି ଭାବରେ କରିଛନ୍ତି–

ତଇଳ ଅଁଏଳା ଚନ୍ଦନ ଶିରରେ ବୋଳି
ସୁବାସିତ ଜଳ ଢାଳି କବେରି ପଖାଳି
ଘୋଟିକରି କୁଙ୍କୁମ ଯେ ଲେପନ୍ତି ଶରୀରେ
ମୃଗନାଭି କସ୍ତୁରୀ ଲେପିଲେ ତଥିପରେ ।
ଆଲଟ ଚାମର ଧରି ଶୁଖାବନ୍ତି କେଶ
ଅଙ୍ଗେ. ପରିଧାନ କରାନ୍ତି ଝୀନବାସ
ଜାଇ ଯୂଇ ମଲ୍ଲୀ ଆଉ ମାଳତୀ ସେବତୀ
ସୁବେଶ କରି କବରୀ ସଜାଇଲେ ଧାତୀ ।

ପାଠକମାନେ ବର୍ତ୍ତମାନ ବିଚାରନ୍ତୁ କେଉଁ କବି ଓ କେଉଁ ଭାଷା ଅଧିକତର ଭାବରେ 'ମଡ଼ର୍ଣ୍ଣ' ଓ ଆମ ପ୍ରତି ନିକଟତର ।

'ଶାନ୍ତି' ପର୍ବରେ ଭୀଷ୍ମଦେବ ଯୁଧିଷ୍ଠିରଙ୍କୁ ନାନା ଉପଦେଶ ଦେଉଛନ୍ତି । ତାହା ଭିତରେ କିନ୍ତୁ ସ୍ପଷ୍ଟ ଧରାପଡ଼େ ପଲ୍ଲୀବାସୀ କୃଷି–ଜୀବୀର ଦୃଷ୍ଟିକୋଣ । ରାଜ କର୍ମଚାରୀ ଏବପରି ସେବେ ମଧ୍ୟ ପ୍ରଜାକୁଳର ଭୟର କାରଣ ଥିଲେ, ତେଣୁ କବି କହିଛନ୍ତି –

ରାଜ୍ୟର ଖବର ତିନିବାର ବୁଝୁ ଥିବୁ
ଉତ୍ତମ ଲୋକ ଦେଖିଣ ମନ୍ତ୍ରୀ ଯେ କରିବୁ ।
କିନ୍ତୁ ତାର ହାତେ ଦଣ୍ଡବିଧି ଯେ ନ ଦେବୁ
କୃଷିକାରୀକି ଯେ ଧନଦ୍ୱାରା ନ ଦଣ୍ଡିବୁ ।

ଶେଷ ଆଡ଼କୁ ପଦେ କଥା କହିଛନ୍ତି ଯାହା ଏବେ ବି ଆମ ଶାସନର ମନ୍ତ୍ରରୂପେ ରହିବା ଅନ୍ୟାୟ ହେବନାହିଁ ।

ଗୁଣ ଜାଣି ଲୋକଙ୍କୁ ଯେ କରୁଥିବୁ ପୂଜା
କବିଙ୍କଠାରେ କୃପଣ ନୋହିବୁ ହେ ରାଜା ।

ଶାରଳା ଦାସ କେବଳ ମହାକବି ନୁହନ୍ତି, ସେ କବିମାନଙ୍କର କବି, କାରଣ ରାଧାନାଥଙ୍କ ପର୍ଯ୍ୟନ୍ତ ବହୁ ଓଡ଼ିଆକବି ତାଙ୍କ ମହାଭାରତରୁ ନିଜ ନିଜ କାବ୍ୟପାଇଁ ଉପାଦାନ ସଂଗ୍ରହ କରିଛନ୍ତି । କବିଙ୍କ ଯୋଗୁଁ ଶାରଳାଦେବୀ ଓଡ଼ିଶାର ବାଗ୍‌ଦେବୀ ହୋଇଉଠିଛନ୍ତି, ଏବଂ ଏହି ପୀଠ ବହୁ ଶତ ବର୍ଷ ଧରି ଏ ଦେଶରେ ପୁଣ୍ୟ ପୀଠରୂପେ ପରିଚିତ ହୋଇଆସିଛି ।

——

° (ଝଙ୍କାର ପ୍ରଥମବର୍ଷ ଏକାଦଶ, ସଂଖ୍ୟା, ୧୯୫୦, ଫେବୃୟାରୀ ।)

# ପ୍ରତ୍ୟକ୍ଷ ଅନୁଭବର କବି ଶାରଳା ଦାସ

ଶାରଳା ଦାସ ସ୍ୱଭାବକବି । ସେ ପଣ୍ଡିତ ନଥିଲେ । ଓଡ଼ିଶାର ଏକ ଦୂରବର୍ତ୍ତୀ କ୍ଷୁଦ୍ର ପଲ୍ଲୀଗ୍ରାମରେ ସେ ଥିଲେ ଏକ ଅର୍ଦ୍ଧ ଶିକ୍ଷିତ କୃଷକ ମାତ୍ର । ତାଙ୍କର ସମଗ୍ର ରଚନାରେ କୌଣସି ଚିହ୍ନ ଦେଖିବାକୁ ମିଳେ ନାହିଁ ଯେ, ସେ ସଂସ୍କୃତ ଭାଷାହିଁ ଜାଣିଥିଲେ, ତାଙ୍କର ସେହି ମହନୀୟ ଭାଷାରେ ବିଖ୍ୟାତ କାବ୍ୟ ଶାସ୍ତ୍ରାଦିର ଅଧୀତ ଜ୍ଞାନ ଥିବା ତେଣିକି ଥାଉ । ତାଙ୍କର ମହାଭାରତ ଓ ବିଲଙ୍କା ରାମାୟଣ ପଢ଼ିଲେ ଗୋଟିଏ ଅତି ବିଚକ୍ଷଣ ଗ୍ରାମ୍ୟ କଥକର କାହାଣୀ ଶୁଣିଲା ପରି ହିଁ ଲାଗେ । ବର୍ଣ୍ଣନା ଅତି ଚମତ୍‌କାର, ପ୍ରତ୍ୟକ୍ଷ ଗ୍ରାମ୍ୟ ଅନୁଭୂତି ସମୂହର ସ୍ପର୍ଶରେ ଗଭୀର ଭାବରେ ଜୀବନ୍ତ । ପୁଣି ତାହା ଅଳ୍ପ ଶିକ୍ଷିତ ହେଲେ ହେଁ ସେହି କୃଷକ କଥକର ସହଜାତ ପ୍ରତିଭାର ଅପ୍ରତିରୁଦ୍ଧ କଳ୍ପନାର ଇନ୍ଦ୍ରଧନୁ ରଙ୍ଗରେ ଅତ୍ୟନ୍ତ ବିଚିତ୍ର । କିନ୍ତୁ, ଏକ ବିଦ୍ୟା-ସଂସ୍କୃତିବନ୍ତ, ଶାସ୍ତ୍ରାଧ୍ୟୟନର କଠୋରତା ଦେଇ ସଂଯମିତ ଓ ସୁଗଠିତ ବୁଦ୍ଧି ଓ ବ୍ୟକ୍ତିତ୍ୱ ନିକଟରୁ ଆମେ ଯେଉଁ ଜ୍ଞାନ, ଜିଜ୍ଞାସା ଓ ଦର୍ଶନ ଆଶା କରିବା, ଦାସଙ୍କ କାବ୍ୟରେ ଆମେ ତାହା ପାଉନା, ପାଇବାର ଆଶା କରିବା ଉଚିତ୍ ବି ନୁହେଁ । କୌଣସି ଦେଶ ବା କାଳର ଏକ ଅର୍ଦ୍ଧ-ଶିକ୍ଷିତ ଚଷା, ଯେତେ ପ୍ରତିଭାଶାଳୀ ହେଉପଛେ, ସଂସ୍କୃତ ମହାଭାରତର ଉଦ୍‌ଯୋଗ ପର୍ବର ବିଦୁର-ସଞ୍ଜୟ ଓ ନାରଦ-ଯୁଧିଷ୍ଠିର ସମ୍ବାଦ ବା ଶାନ୍ତିପର୍ବ ସୃଷ୍ଟି କରି ନ ପାରେ । କୃଷକ ଶାରଳା ଦାସଙ୍କ ମହାଭାରତକୁ ତେଣୁ ଆମେ ଏକ ବିରାଟ, ଉଚ୍ଚ-କୋଟୀର ଗ୍ରାମ୍ୟ ବା ଲୋକ-ମହାକାବ୍ୟ ଭାବରେ ଦେଖିଲେ ହିଁ ଏହି ଉଚ୍ଚ, ସହଜ, ସ୍ୱାଭାବିକ, କୃଷକ ପ୍ରତିଭାର ପ୍ରକୃତ ସମ୍ମାନ କରିବା ।

ଶାରଳା ଦାସ ଗାଁ ଓ ଗାଁ-ସମାଜରେ ରହି ଯାହା ଦେଖିଥିଲେ, ଶୁଣିଥିଲେ, ଜାଣିବାକୁ ପାଇଥିଲେ ଓ ସେହି ପରିବେଶରେ ରହି କଳ୍ପନାରେ ଯେତିକି ଦୂର ଯିବାର ଆଶା କରାଯାଏ, ସେହି ସବୁହିଁ ସେ ଲେଖିଯାଇଛନ୍ତି ଏବଂ ଠିକ୍ ଏଇ କାରଣରୁ ହିଁ ତାଙ୍କ ରଚନା ଏପରି ସ୍ୱାଦ୍ୟ ଓ ଜୀବନ୍ତ ହୋଇଉଠିଛି । ତାଙ୍କର ସମଗ୍ର ମହାଭାରତ ପଛରେ ଆମେ ଏକ ତୀବ୍ର-ଦର୍ଶନ ପ୍ରତିଭାର ଦୁଇଟି ଅହରହ କ୍ରିୟାବାନ୍ ଚକ୍ଷୁ ଯୁଗଳର ଉପସ୍ଥିତି ଅନୁଭବ କରୁ । ଏ କାବ୍ୟ ପ୍ରତ୍ୟକ୍ଷ ଅନୁଭବର ବାଣୀ ବହନକରୁଛି ତାର ପ୍ରତ୍ୟେକ ପଂକ୍ତିରେ, ତେଣୁ ହିଁ ତାହା ଓଡ଼ିଆ ଜନତାର ଏତେ ପ୍ରିୟ ବସ୍ତୁ ।

ନିଜର ପ୍ରତ୍ୟକ୍ଷ ଅନୁଭବ ଜନିତ ଅଭିଜ୍ଞତା ସବୁକୁ ଅକୁତୋଭୟ ଭାବରେ

ବର୍ଣ୍ଣନା କରିଯାଇଥିବାରୁ, ଆମେ ଶାରଳାଙ୍କ ମହାଭାରତରେ ଅନେକ କିଛି ପାଉ, ଯାହା ଆଜି ରୁଚିସମ୍ପନ୍ନ ବୋଲି ଗ୍ରହଣ କରାଯାଇପାରିବ ନାହିଁ । କିନ୍ତୁ ତା' ସାଥି ସାଥି, ମଝିରେ ମଝିରେ ସେ ଏପରି ଘଟଣାସବୁର ବର୍ଣ୍ଣନା ଦେଇଯାଇଛନ୍ତି, ଯାହା, ଛଅଶହ ବର୍ଷ ପରେ ସେହି ମହାକବିଙ୍କୁ ଆଜି ଆମ ଆଖିରେ ଠିଆକରାଉଛି ଏକ ବିରାଟ ସାମାଜିକ ଇତିହାସ ଲେଖକ ଭାବରେ । ଏ ସବୁ ଘଟଣାର ବର୍ଣ୍ଣନା ମୂଳ ମହାଭାରତରେ ନାହିଁ, କି ମହାଭାରତର ମୋଟାମୋଟି ବର୍ଣ୍ଣନା ପକ୍ଷରେ ନିତାନ୍ତ ଆବଶ୍ୟକ ମଧ ନୁହେଁ । କିନ୍ତୁ ସେଗୁଡ଼ିକର ଆବିର୍ଭାବରେ ମହାଭାରତର ପୁରୁଣା ଗପଟି ନୂତନ ମାନବିକତାର ମହାର୍ଘ ସ୍ପର୍ଶରେ ଏକାବେଳକେ ଜନ୍ମାନ୍ତର ଲାଭ କଲାପରି ମନେହୁଏ ।

କେତେଟି ଦୃଷ୍ଟାନ୍ତ ଦେଇ ମହାକବିଙ୍କ ପ୍ରତିଭାର ଏହି ବିଶିଷ୍ଟ ଦିଗଟିକୁ ବୁଝାଇଦିଏଁ । ଅନେକ ସମୟରେ ଏପରି ତ ଘଟିଥାଏ, ଓଡ଼ିଶାର ଗ୍ରାମମାନଙ୍କର ଯେ ଦରିଦ୍ର ବ୍ରାହ୍ମଣର ପିଲା ଓ ଧନୀ କ୍ଷତ୍ରିୟ କି ଖଣ୍ଡାଏତର ପିଲା ଦାଣ୍ଡରେ ଏକାଠି ଖେଳୁଛନ୍ତି, ଆଉ ଖେଳୁଖେଳୁ ଦରିଦ୍ର ଲୋକର ପିଲା ଧନୀ ଘରର ପିଲାକୁ ମାଡ଼ ମାରିଛି । ଧନୀର ସେରନ୍ତା ପିଲା କାନ୍ଦି କାନ୍ଦି ଯାଇ ବାପାକୁ କି ମା'କୁ କହିଛି । ଦଉଡ଼ିଆସନ୍ତି ମା, ବାପ ଆଉ ପିଲାଟିକୁ ତାର ଦାରିଦ୍ର୍ୟକୁ ଉପଲକ୍ଷ୍ୟ କରି ଗାଳି ବି ଦିଅନ୍ତି, ଚଦନ୍ତି, ମାଡ଼ ବି ମାରନ୍ତି ବେଳେ ବେଳେ ।

ଗ୍ରାମ୍ୟ ଜୀବନର ଏହି ତୁଚ୍ଛ, ସାମାନ୍ୟ ଘଟଣାଟିକୁ ଆମର ମହାକବି ତାଙ୍କ ମହାକାବ୍ୟରେ ସ୍ଥାନ ଦେବାପାଇଁ ଆଦୌ ଦ୍ୱିଧା ବୋଧ କରିନାହାନ୍ତି । ପୁଣି ସେ ଯାହା ଦେଖିଆସୁଥିଲେ, ତାହା ଠିକେ ଠିକେ ବର୍ଣ୍ଣନା କରି ଶେଷ ପରିଣତିଟିକୁ ଏପରି ଏକ ମୋଡ଼ ଦେଇଛନ୍ତି ଯେ, ଗ୍ରାମ୍ୟ ଜୀବନର ଏହି କୁତ୍ସିତ, ଅବାଞ୍ଛନୀୟ ଘଟଣାଟି ପରମ କରୁଣାର ଉଦାର ସ୍ପର୍ଶରେ ମହନୀୟ ହୋଇଉଠିଛି । ଖୁବ୍ ସମ୍ଭବତଃ, ଉଦାରପ୍ରାଣ କୃଷକ-କବି ଏଇ ପିଲାଙ୍କ ଧୂଳିଖେଳରେ ମଧ ଧନୀର ଦରିଦ୍ର ପ୍ରତି ତାଚ୍ଛଲ୍ୟ ମନେମନେ ସହିପାରୁନଥିଲେ । ଏଇ ସାମାନ୍ୟ ଘଟଣାଟିକୁ ତାଙ୍କ ମହାପୁରାଣରେ ସ୍ଥାନ ଦେଇ ଓ ତା'ର ପରିଣତି ଶେଷକୁ ଓଲଟେଇ ଦେଇ, ସେ ବୋଧହୁଏ ମଦମତ୍ତ ଧନୀକମାନଙ୍କ ଆଗରେ ଏକ ଅନୁକରଣୀୟ ଆଦର୍ଶ ଥୋଇବାର ଚେଷ୍ଟା କରିଛନ୍ତି । ଗଳ୍ପଟି ଉଦ୍‌ଯୋଗ ପର୍ବରେ ବର୍ଣ୍ଣିତ ।

ବୈତରଣୀ କୂଳରେ କରବୀରପୁର (ବର୍ତ୍ତମାନର କବୀରପୁର ?) ବୋଲି ଏକ ବ୍ରାହ୍ମଣ ଗ୍ରାମ ଥିଲା । ସେଠି ରୁଦ୍ରଶ୍ରବଣ ନାମରେ ଏକ ଦରିଦ୍ର ବ୍ରାହ୍ମଣ ଥାଏ । ସେ ଅନ୍ଧ । ସ୍ତ୍ରୀ ଓ ଗୋଟିଏ ପୁଅ ତାର ପରିବାର । କବି କହନ୍ତି ଯେ ତାର "ବାଳୁତ କାଳରୁ ନିରଞ୍ଜନ ଦୀକ୍ଷା ।" ଖୁବ୍ ସମ୍ଭବତଃ ସେ ବୌଦ୍ଧ ଥିଲା । 'ରୁଦ୍ରଶ୍ରବଣ'

ନାମ କୌଣସି 'ଶ୍ରମଣ' ର ସୂଚନା ଦିଏ । ଯାହାହେଉ ଅନ୍ଧ ବ୍ରାହ୍ମଣ (ହୁଏତ ଧର୍ମ ଦିଗରୁ ଅନ୍ଧ) ଭିକ୍ଷାକରି ଯାହା ବଞ୍ଚୁଥିଲା । ସେଥିରେ ପୁଣି ଆସିଲା ବିପଦ । କାଳ ପଡ଼ିଲା । ବ୍ରାହ୍ମଣୀ ବୁଲିବୁଲି ଆଉ ଭିଖ ପାଇଲାନି, ତେଣୁ ସେମାନେ ସ୍ଥିରକଲେ ଦ୍ୱାରକାପୁରକୁ ଯିବେ । ପାଞ୍ଚ ବର୍ଷ ଛଅ ମାସ ବାଇଶ ଦିନରେ ଓଡ଼ିଶାରୁ ସେମାନେ ଚାଲି ଚାଲି ଯାଇ ଦ୍ୱାରକାରେ ପହଞ୍ଚିଲେ । ସେମାନେ ଦେଖିଲେ ସେଠି ଘର ସବୁ ସୁନାରେ ତିଆରି । ବ୍ରାହ୍ମଣୀ ଭିଖ ମାଗିବାକୁ ଗଲେ, ଲୋକେ ସ୍ୱର୍ଣ୍ଣପାତ୍ରରେ ମଣିମାଣିକ୍ୟ ଆଣି ଦେଇଯାଉଛନ୍ତି । ବ୍ରାହ୍ମଣ ବ୍ରାହ୍ମଣୀ ତେଣୁ ବେଶ୍ ସୁଖରେ କାଳ କାଟିବାକୁ ଲାଗିଲେ । ପୁଅ ବଡ଼ହୋଇ ଦାଣ୍ଡରେ ଅନ୍ୟ ପିଲାଙ୍କ ସାଥିରେ ଖେଳିଲା । ସେମାନଙ୍କ ଭିତରେ ଥିଲା ପ୍ରଦ୍ୟୁମ୍ନ ମହାରାଜ ଶ୍ରୀକୃଷ୍ଣଙ୍କର ଏକମାତ୍ର ପୁଅ, ଶତ ଶତ ରାଣୀଙ୍କର ଆଦରର ପାତ୍ର । ରାଜାଙ୍କ ପୁଅ ଯେ ଦାଣ୍ଡରେ ଭିଖାରୀ ପୁଅ ସାଥିରେ ଖେଳୁଥିଲା, ଏଇଥିରୁ ଜଣାଯାଉଛି ଯେ ଶାରଳା ଦାସଙ୍କ ସମୟରେ ଏବକାଳ ପରି ଧନୀ ଓ ନିର୍ଦ୍ଧନ ମଧ୍ୟରେ ସାମାଜିକ ବ୍ୟବଧାନ ଅନ୍ତତଃ ଏପରି ଉତ୍କଟ ନଥିଲା ।

ଦିନେ ପିଲେ ଧୂଳିରେ ଘରକରି ଖେଳୁଥିଲେ । ବ୍ରାହ୍ମଣ ପୁଅ ଘର କରିଥିଲା, ପ୍ରଦ୍ୟୁମ୍ନ ତାକୁ ଭାଙ୍ଗିଦେଲା । ବ୍ରାହ୍ମଣ ପୁଅ ଦରିଦ୍ର ଭିଖାରୀର ପୁଅ ହେଲେ ମଧ୍ୟ କହିଲା – ''ରେ ଗଉଡ଼ଟୋକା, ତୋର ଏତେ ସାହସ । ମୁଁ ଘର କରିଛି, ତୁ ଭାଙ୍ଗି ଦେବୁ ?'' ପ୍ରଦ୍ୟୁମ୍ନ ତ କୃଷ୍ଣଙ୍କ ପୁଅ । ସେ ବିନୀତ ଭାବରେ ଉତ୍ତର ଦେଲା– ''ଧୂଳିର ଘର, ଥରେ ଭାଙ୍ଗିଲେ ଆଉ ଥରେ ଗଢ଼ିହେବ । ତୁ ରାଗୁଛୁ କାହିଁକି ?'' କିନ୍ତୁ ବ୍ରାହ୍ମଣ ପିଲା ମାନିଲାନି । ଦିହେଁ ବାଲି ଫିଙ୍ଗାଫିଙ୍ଗି ହେଲେ । ଶେଷରେ ବ୍ରାହ୍ମଣ ପିଲା ପ୍ରଦ୍ୟୁମ୍ନକୁ ମାଇଲା ଏକ ଚାପଡ଼ । ପ୍ରଦ୍ୟୁମ୍ନ ଭେଁ ଭେଁ ରଡ଼ିଛାଡ଼ି ଶ୍ରୀକୃଷ୍ଣଙ୍କୁ ଯାଇ ଜଣାଇଲା । ଯେତେହେଲେ ତ ବାତ୍ସଲ୍ୟ-ମାୟା ! ଶ୍ରୀକୃଷ୍ଣ କହି ଉଠିଲେ– ''ଏଁ ! କିଏରେ ସେ ମୋର ସେରେନ୍ତା ପୁଅକୁ ମାଇଲା ! ପୁଣି ଭିଖାରୀ ବ୍ରାହ୍ମଣଟାଏ ! ଚାଲ ତ ! ଦେବି ତାର ଶିରକୁ ଚକ୍ରରେ ଛେଦି ।''

ଶ୍ରୀକୃଷ୍ଣ ଓ ପ୍ରଦ୍ୟୁମ୍ନ ଆସିବାର ଦେଖି ଭିଖାରୀ ବ୍ରାହ୍ମଣର ପୁଅ ଦୌଡ଼ିଲା ଭୟରେ ଅନ୍ଧ ବାପା ପାଖକୁ ଓ ସବୁ କଥା କହି ବୋବାଳି ଛାଡ଼ିଲା, ପ୍ରଦ୍ୟୁମ୍ନର ବାପା ମାଡ଼ ଦେବେ ବୋଲି । କିନ୍ତୁ ଭିଖାରୀ ବ୍ରାହ୍ମଣ କହିଲା, ''ବାପା, ଭୟକରନା । ସେ ବ୍ରହ୍ମାଣ୍ଡକର୍ତ୍ତା । ତାଙ୍କ ପାଖରୁ ପଳାଇଯିବାର ତ ବାଟ ନାହିଁ । ଏ ଜୀବନ ତ ତାଙ୍କରି ! ମାରିବେ ବା ତାରିବେ ସିଏ । ସେହି ଏକମାତ୍ର ଶରଣ ।''

ପ୍ରଦ୍ୟୁମ୍ନ ବାପାଙ୍କୁ ଆଣି ଭିଖାରୀ ବ୍ରାହ୍ମଣକୁ ଚିହ୍ନାଇଦେଲା । ଶ୍ରୀକୃଷ୍ଣ ଅନ୍ଧକୁ ପଚାରିଲେ – 'କିରେ ତୁ କେଉଁଠୁ ଆଇଲୁ ? କୁ'ଠାର ଲୋକ ତୁ ? ତୋ ପୁଅ ପୁଣି ମୋ ପୁଅକୁ ମାଇଲା ? ଦେଖିବୁ ?'

ଅନ୍ଧ କହିଲା - ''ପ୍ରଭୁ, ମୁଁ ଜନ୍ମ ଅନ୍ଧ, ପୁଣି ଦରିଦ୍ର । ମୋ ପୁଅ କି ଆପଣଙ୍କ ପୁଅକୁ ମାରିବା ଯୋଗାଏ ? ପିଲାରେ ପିଲାରେ ଲାଗି ଯାହା କରିପକାଇଛନ୍ତି । ମୁଁ ତ ଆପଣଙ୍କର ଭୃତ୍ୟର ଭୃତ୍ୟ । ଯାହା କରିବେ ।''

ପରମ କରୁଣାମୟ ଶ୍ରୀକୃଷ୍ଣ କହିଲେ– 'ଦେଖ୍ ତ– ତୋ ପୁଅ ମୋ ପୁଅକୁ କିମିତି ମାରିଛି । ଗାଲରେ ପାଞ୍ଚ ଆଙ୍ଗୁଠିର ଚିହ୍ନ କିମିତି ଲାଗିରହିଛି, ଦେଖ ଟିକିଏ ଆଖି ଖୋଲି ।'

ଶ୍ରୀକୃଷ୍ଣ 'ଦେଖ୍' 'ଦେଖ୍' କହୁ କହୁ ଅନ୍ଧର ଆଖି ଖୋଲିଗଲା ଓ ସେ ଶ୍ରୀକୃଷ୍ଣଙ୍କ ପାଦତଳେ କୃତଜ୍ଞତାରେ ଲମ୍ବହୋଇ ପଡ଼ିଗଲା । ତା' ପରେ ସେ ଦ୍ୱାରକାରେ ଖୁବ୍ ସମୃଦ୍ଧିରେ କାଳ କାଟିଲା ।

ଗାଁଗହଳର ସାମାନ୍ୟ ଘଟଣାଟିଏ ମହାକବିଙ୍କର ଲେଖନୀର ଯାଦୁସ୍ପର୍ଶରେ କି ଚମତ୍କାର ଦୃଷ୍ଟାନ୍ତରେ ପରିଣତ ହୋଇଛି ! କବିର କଳ୍ପନା ପ୍ରତ୍ୟକ୍ଷ ଅନୁଭବକୁ କିପରି ଦେଇପାରିଛି ଇନ୍ଦ୍ରଧନୁର ବର୍ଣ୍ଣାଢ଼୍ୟତା !

ମହାଭାରତ ଏକ ସମରକାବ୍ୟ । ଏହି ଗାଥାର ମୂଳରୁ ଶେଷଯାଏଁ ଏପରି ମୁହୂର୍ତ୍ତ ନାହିଁ ଯେବେ ଆମେ ରଣ୍ୟବାଦ୍ୟ, ଧନୁର ଟଙ୍କାର, ବୀରମାନଙ୍କର କୁହାଟ, ଯୁଦ୍ଧାଶ୍ୱର ହ୍ରେଷା ଓ ଗଜର ବୃଂହିତ ଶୁଣିବାକୁ ପାଉନା । ଇହଜୀବନକୁ ନିବିଡ଼ଭାବରେ ଉପଭୋଗ କରିବାର ପରମଚିତ୍ରହିଁ ଏହି ମହାକାବ୍ୟ । ନାରୀପାଇଁ ଓ ଭୂମିପାଇଁ, ଏକ ବିରାଟ ଜାତି ପ୍ରତି ମୁହୂର୍ତ୍ତରେ ଏ କାବ୍ୟରେ ପ୍ରାଣୋତ୍ସର୍ଗ ପାଇଁ ପ୍ରସ୍ତୁତ । ଏହି କାବ୍ୟର ଶ୍ରେଷ୍ଠ ଦର୍ଶନାଂଶ ଭଗବଦ୍‌ଗୀତା, ବାପୁଜୀଙ୍କ ଭିନ୍ନ ପ୍ରତିପାଦନ ସତ୍ତ୍ୱେ, ହିଂସାହିଁ ପ୍ରଚାର କରେ– ତାହା ଅବଶ୍ୟ ଅନାସକ୍ତ ହିଂସା । ଭାରତ ଧ୍ୱଂସକାରୀ ନିର୍ବିଶେଷ କୁଳକ୍ଷୟୀ, କୁରୁକ୍ଷେତ୍ର ସମରକୁ ପ୍ରେରଣା ଦେଇଛନ୍ତି ପୁଣି ଏହି କାବ୍ୟର ପ୍ରଧାନ ନାୟିକା ଦ୍ୱୟ– କୁନ୍ତୀ ଓ ଦ୍ରୌପଦୀ । ଶାନ୍ତିସ୍ଥାପନେଚ୍ଛୁ ଉଦାରପ୍ରାଣ ଶ୍ରୀକୃଷ୍ଣଙ୍କୁ, ଏଇମାନେ ପ୍ରତିହିଂସାର ଅନଳ ଜାଳିବାକୁ ବାରମ୍ବାର ଉତ୍ତେଜିତ କରିଛନ୍ତି । ହିଂସା, ହତ୍ୟା, କୂଟଚକ୍ର, ରକ୍ତପାତ, ଭ୍ରାତୃବିବାଦ ପ୍ରଭୃତି ସମସ୍ତ ଜାତୀୟ ଓ ସାମାଜିକ ବୀଭତ୍ସତାର ବିପୁଳ ରଂଗମଞ୍ଚ ଏହି ମହାକାବ୍ୟ, ବର୍ଣ୍ଣ-ସୌରଭରେ ରମଣୀୟ ହୋଇଉଠିଛି କେବଳ ଦୁଇଟି ଉପାଦାନର ସଂଯୋଗରୁ । ସେ ଗୁଡ଼ିକ ହେଉଛନ୍ତି ଦମୟନ୍ତୀ, ସାବିତ୍ରୀ, ଶକୁନ୍ତଳା ପ୍ରଭୃତି କେତୋଟି ଅଲୋକସାମାନ୍ୟା ସୁନ୍ଦରୀଙ୍କର ଅଲୋକ-ସାଧାରଣ ପ୍ରଣୟ-ଗାଥା; କର୍ଣ୍ଣ, ଶକୁନି ପ୍ରଭୃତି କେତୋଟି ପୁରୁଷଙ୍କର ଅସାଧାରଣ ଚରିତ୍ର, ଆଉ ଇତସ୍ତତଃ ବିକ୍ଷିପ୍ତ ଅତି ଉଚ୍ଚକୋଟୀର ବିଜ୍ଞବାଣୀ, ଯାହାର ଶ୍ରେଷ୍ଠ ନମୁନା ହେଉଛି, ଭଗବଦ୍‌ଗୀତା ।

ଶାରଳା ମହାଭାରତ ସଂସ୍କୃତ ମହାଭାରତ ଅପେକ୍ଷା ଅଧିକତର ଭାବରେ

ସମରକାବ୍ୟ । କୃଷକ-ପାଇକ କବିଙ୍କର ଲେଖନୀର ଉତ୍ସାହ, ଯୁଦ୍ଧର ବର୍ଣ୍ଣନାରେ ଯେପରି ଜୀବନ୍ତ ହୋଇ ଫୁଟିଛି, ସେପରି ଅନ୍ୟ କୌଣସି ଦିଗରେ ଦେଖାଯାଏନାହିଁ । ପ୍ରଣୟର ସୂକ୍ଷ୍ମ ସୁନ୍ଦର ବର୍ଣ୍ଣନା ମଧ ଆମେ ଏହି ରୂଢ଼ବାସ୍ତବ, ଧାନବିଲ - ଗାଁଗୋହିରୀର ଧୂଳି-ପଙ୍କ ସହିତ ପରିଚିତ କୃଷକ କବିଠାରୁ କାହୁଁ ଆଶା କରିବା ? ଅର୍ଦ୍ଧ-ଶିକ୍ଷିତ କୃଷକ ବା ଶାନ୍ତିପର୍ବର ବିଜ୍ଞାଲୋଚନାର ସ୍ତରକୁ କିପରି ଯାଇପାରିବ ?

କିନ୍ତୁ ପାଇକ ଯୁଦ୍ଧପ୍ରିୟ ହେଲେହେଁ, କୃଷକ ଚାହେ ଶାନ୍ତି । କୃଷକ ପାଇକ ହୁଏ କେବଳ ତା ଧାନକ୍ଷେତ ଓ ଧାନଗଦାର ନିରାପତ୍ତା ପାଇଁ । ଏ କ୍ଷେତ୍ରକୁ ରକ୍ଷା କରିବାକୁ ଯାଇ ହିଁ କୃଷକ ହୁଏ ଶେଷରେ କ୍ଷତ୍ରିୟ । କିନ୍ତୁ କୃଷକର ଅନ୍ତରାତ୍ମା ପ୍ରକୃତରେ ଚାହେ ଶାନ୍ତି । ତେଣୁ ବୀରରସର ଚିତ୍ରଣରେ କବି ଶାରଳାଦାସଙ୍କ ଲେଖନୀ ତରବାରୀ ପାଲଟି ଯାଇଥିଲେ ହେଁ, କୃଷକ ଶାରଳାଦାସ ଜାତି ଓ ରାଷ୍ଟ୍ରପାଇଁ ଚାହୁଁଥିଲେ ନିଷ୍ଛେ ଶାନ୍ତି । ତେଣୁ ତାଙ୍କର ଏହି ସମର-ସମ୍ବଳ ମହାକାବ୍ୟରେ ଆମ୍ଭେମାନେ ବାରମ୍ବାର ଶାନ୍ତିର, ଅହିଂସାର, ସୁଶାସନର, ଶାନ୍ତ-ସନ୍ତୁଷ୍ଟ କୃଷିଜୀବୀର ସୁନ୍ଦର ଛବି ପାଉ । ସଭାପର୍ବରେ କବି ଯେଉଁପରି ପୂର୍ଣ୍ଣ ଅହିଂସ ରାଷ୍ଟ୍ରର ଚିତ୍ର ଦେଇଛନ୍ତି, ତାହା ତାଙ୍କ ପ୍ରତିଭୋଜ୍ଜ୍ୱଳ କଳ୍ପନାର ଏକ ପ୍ରାମାଣ୍ୟ ଦୃଷ୍ଟାନ୍ତ ।

ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ବ୍ୟପଦେଶରେ ପାଣ୍ଡବ ଭାଇମାନେ ଜଣଜଣକରି ଭିନ୍ନ ଭିନ୍ନ ଦିଗକୁ ରାଜ୍ୟ ଜୟରେ ବାହାରିଛନ୍ତି । ଭାରତବର୍ଷର ପଶ୍ଚିମରେ ସିନ୍ଧୁ ଦେଶରେ ସେମାନେ ଭେଟିଛନ୍ତି ଏକ ଅପୂର୍ବ ରାଷ୍ଟ୍ର ଓ ରାଷ୍ଟ୍ରପତି । ଏଇ ସମୁଦାୟ ରାଜ୍ୟଟି ହଲାଣ୍ଡ ପରି ସମୁଦ୍ରକୁ ବନ୍ଧ ପକାଇ ଉଦ୍ଧାର କରାଯାଇଛି । ଏଇ ଗଠନାତ୍ମକ ଯୋଜନାର ନେତା ହିଁ ଏବେ ରାଜା । ସେ ରାଜ୍ୟର କୌଣସି ପ୍ରତିବେଶୀ ରାଜ୍ୟ ବା ଲୋକଙ୍କ ସହିତ ଦ୍ୱେଷ ବା ଗୋଳ ନାହିଁ । ରାଜା ଓ ପ୍ରଜା ସମସ୍ତେ ଅହିଂସପନ୍ଥୀ । ରାଜା ପ୍ରତ୍ୟହ ପ୍ରଜାଙ୍କ ସହିତ କାମକରେ ଓ ଶ୍ରମଲବ୍ଧ ଅନ୍ନରେ ବଞ୍ଚେ । ପାଣ୍ଡବ ବାହିନୀକୁ ଲକ୍ଷିତ କରି ଏହି ପ୍ରାଚୀନ ବିନୋଭା କହିଥିଲେ– ''ଏଇପରି ଆମର ରାଜ୍ୟ । ଆମର ସମଗ୍ର ପୃଥିବୀରେ କାହା ସହିତ କିଛି ବିବାଦ ନାହିଁ । ଆମେ ଆମ ଦୁଃଖ ସୁଖରେ ଅଛୁ । ତମେ ଆସିଚ ଆମକୁ ଲଢ଼େଇରେ ମାରିବାକୁ ? ପଳା, ପଳା, ଏଠୁ ।''

ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ ସହିତ ମୁଁ ଏକମତ ଯେ, ଶାରଳା ଦାସ ଖୁବ୍ ସମ୍ଭବତଃ ଖାରବେଳଙ୍କର ଉଦୟଗିରିରେ ଯାପିତ ଶେଷ ସନ୍ନ୍ୟାସ ଜୀବନର ଯେଉଁ ଜନଶ୍ରୁତି, ତାହା ଏବ ଅପେକ୍ଷା କବିଙ୍କ ସମୟରେ ତାଜା ଥିଲା । ବୋଧ ହୁଏ ତାକୁଇ ଉପାଦାନ ରୂପେ ଗ୍ରହଣକରି ଏଇ ସୁନ୍ଦର ସ୍ୱପ୍ନରାଷ୍ଟ୍ରର ଚିତ୍ର ସେ ଦେଇଯାଇଛନ୍ତି । କିନ୍ତୁ ସମରସମ୍ବଳ ଏକ ରଚନାରେ ପୁଣି କାବ୍ୟନାୟକମାନଙ୍କର

ବୀରତ୍ୱକୁ ଧିକ୍‌କାର ଦେଲାଭଳି, ଏପରି ଅହିଂସ ରାଷ୍ଟ୍ର ଓ ସମାଜର ଚିତ୍ର ଦେବାର ପ୍ରୟାସ ଓ ସାହସହିଁ ଉଚ୍ଚ ଅକୁତୋଭୟ ସୃଜନୀ ଶକ୍ତିର ପରିଚୟ ଦିଏ । କବି ହୁଏତ ଖାଲି ସମ୍ରାଟ ଖାରବେଳଙ୍କ ଶେଷ ବୟସର ଭିକ୍ଷାଶୀ ଗୁହାଜୀବନର କଥା ଶୁଣି ନଥିଲେ, ସେ ନିଶ୍ଚୟ ଜୈନ ଓ ବୌଦ୍ଧ ସନ୍ନ୍ୟାସୀମାନଙ୍କୁ ଦେଖିଥିବେ ଓ ଏମାନଙ୍କର ଶାନ୍ତ, ପବିତ୍ର ଅହିଂସ-ଜୀବନ ପ୍ରତି କବିଙ୍କର ଚିତ୍ତରେ ସ୍ୱାଭାବିକ ଶ୍ରଦ୍ଧା ନିଶ୍ଚୟ ଜାଗ୍ରତ ହୋଇଥିବ । କବି ହୁଏତ ତାଙ୍କର ମାନସ ଜଗତରେ ସୁଯୋଗ ଖୋଜୁଥିବେ ତାଙ୍କ ମହାକାବ୍ୟର କେଉଁଠି ହେଲେ ଏଇ ଶାନ୍ତି, ପବିତ୍ର, ଅହିଂସ ଶ୍ରମଣ ଗୋଷ୍ଠୀର ଚିତ୍ରଟିଏ ଛାଡ଼ିଯିବାକୁ । ସେ ଯଥାସ୍ଥାନରେ ତାହା ଦେଇଯାଇଛନ୍ତି । ତାଙ୍କର ସ୍ଥାନକାଳ ନିର୍ବାଚନ ମଧ୍ୟ ଚମତ୍‌କାର ।

ଦେଖିବା ଶୁଣିବା ଅଙ୍ଗେନିଭେଇବା କଥାକୁ ହିଁ ମହାକବି କିପରି ତାଙ୍କର କାବ୍ୟର ଉପାଦାନ ରୂପେ ଅକୁଣ୍ଠିତ ଭାବରେ ବରିନେଉଥିଲେ, ତାହାର ବିଚିତ୍ରତମ ଦୃଷ୍ଟାନ୍ତ ହେଉଛି ଆଦିପର୍ବରେ ବର୍ଣ୍ଣିତ ବିଷ୍ଣୁକର ପଣ୍ଡାର ଉପାଖ୍ୟାନ । ଏଇ ଉପାଖ୍ୟାନ ତ ମୂଳଗ୍ରନ୍ଥରେ ନାହିଁ । ପୁନଶ୍ଚ ଏହାର ଆଶ୍ରୟ ହେଉଛି ବ୍ରାହ୍ମଣ ଚଣ୍ଡାଳ ଯୁଦ୍ଧ । ନିଜେ ଦେଖି ନଥିଲେ ବା କାହିଁ ଘଟିବାର ଶୁଣିନଥିଲେ, ଜଣେ ହିନ୍ଦୁ ପକ୍ଷରେ ଏପରି ଏକ କାଣ୍ଡ ଅକଳ୍ପନୀୟ– ଘଟିଥିଲେ ତ କଥାଇ ନାହିଁ । ଯଦି ଏକାନ୍ତ ଭାବରେ କବିକଳ୍ପନା-ପ୍ରସୂତ, ତା' ହେଲେ ମଧ୍ୟ ଏହା ସମାଜତତ୍ତ୍ୱାନ୍ୱେଷୀମାନଙ୍କର ଗଭୀର ଗବେଷଣାର ବସ୍ତୁ । କାରଣ, କୌଣସି କଳ୍ପନା ଏକାବେଳକେ ବାସ୍ତବ–ନିରପେକ୍ଷ ହୋଇନପାରେ । ହୁଏତ ଏହା କୌଣସି ସମୟରେ ଏଦେଶରେ ଘଟିତ, ତୀବ୍ର ଆର୍ଯ୍ୟ-ଅନାର୍ଯ୍ୟ ବା ବ୍ରାହ୍ମଣ ଶୂଦ୍ର ବିବାଦର ସୂଚନା ପ୍ରଦାନ କରେ । ସମାଧି-ମଗ୍ନ ଭୋଳା ଇତିହାସ ଯାହା ଭୁଲିଯାଇଛି, ହୁଏତ କବି-ପ୍ରତିଭା ତାହାର ଇମ୍ପ୍ରେସନିଷ୍ଟ ଚିତ୍ର ରଖିଯାଇଛି ତାର କାବ୍ୟରେ ।

ଉପଖ୍ୟାନଟି ଏହିପରି –

ବନବାସ କାଳରେ ପାଣ୍ଡବମାନେ ବୁଲୁବୁଲୁ ଆସି ପହଞ୍ଚିଲେ ଗୋଦାବରୀ ନଦୀ କୂଳରେ ଓଡ଼ାଦିଶିବପୁରରେ । ଏଇ ସ୍ଥାନ ଏବେ ବି ଏକ ତୀର୍ଥରୂପେ ଅବସ୍ଥିତ । ସେଠାରେ କୁନ୍ତୀଙ୍କ ସହିତ ପାଣ୍ଡବମାନେ ବିଷ୍ଣୁକର ପଣ୍ଡା ନାମକ ଏକ ବ୍ରାହ୍ମଣ ଘରେ ଆଶ୍ରୟ ନେଲେ । କିଛିକାଳ ପରେ ଯୁଧିଷ୍ଠିର ଇଚ୍ଛାକଲେ ଗୌତମୀ ତୀର୍ଥକୁ ଯିବାକୁ । ସମସ୍ତେ ଗଲେ । କେବଳ ବୃଦ୍ଧା କୁନ୍ତୀ ଏତେ ବାଟ ଚାଲିପାରିବେନି ବୋଲି ବିଷ୍ଣୁକର ପଣ୍ଡା ଘରେ ରହିଲେ ଓ ତାଙ୍କୁ ଦେଖାଚାହାଁ କରିବାପାଇଁ ଭୀମସେନଙ୍କୁ ରଖାଇ ଦିଆଗଲା ।

ଦିନେ ଭୀମ ଦେଖିଲେ ଛୋଟିଆ ଓଡ଼ାଦିଶିବପୁର ଗାଁଟି ନାନା କୋଳାହଳରେ

ଜାଗ୍ରତ – ଯେପରିକି ଯୁଦ୍ଧର ଆୟୋଜନ । ଭୀମ ବିଷ୍ଣୁକର ପଣ୍ଡାଙ୍କୁ ବ୍ୟାପାରର ହେତୁ ପଚାରିଲେ । ପଣ୍ଡା ଉତ୍ତର ଦେଲା ଏଇରୂପେ –

''ବହୁକାଳ ପୂର୍ବେ ଏଇ ଶିବପୁରରେ ଜଣେ ପୂତ-ଚରିତ୍ର ବ୍ରାହ୍ମଣ ବାସକରୁଥିଲେ । ସେ ବିବାହ କରିଥିଲେ ଓ ତାଙ୍କର ବ୍ରାହ୍ମଣୀ ସ୍ତ୍ରୀ ଆଡୁ ଦୁଇଟି ପୁତ୍ର ମଧ୍ୟ ହୋଇଥିଲେ । ଥରେ ସେ ବ୍ରାହ୍ମଣ ବୈତରଣୀ ସ୍ନାନପାଇଁ ଯାତ୍ରାକଲେ । ବୁଦ୍ଧକୂଟ ନାମକ ପାହାଡ଼ ଦେଇ ଏକ ନିର୍ଜନ ରାସ୍ତାରେ ଗଲାବେଳେ ଗୋଟିଏ ପ୍ରଗଲ୍‌ଭା ଚଣ୍ଡାଳକନ୍ୟା ସେହି ସୁନ୍ଦର ବ୍ରାହ୍ମଣ ଯୁବକକୁ ଲୋଭକରି ମନ୍ତ୍ରମୁଗ୍ଧକରି ନେଇଗଲା । ସେହି ବ୍ରାହ୍ମଣ ଔରସରେ ଚଣ୍ଡାଳୁଣୀର ଦଶୋଟି ସନ୍ତାନ ମଧ୍ୟ ହେଲା । ସେହି କାଳରୁ ସେହି ବ୍ରାହ୍ମଣର ବ୍ରାହ୍ମଣୀ ଆଡ଼ର ବଂଶଧର ଓ ଚଣ୍ଡାଳୁଣୀ ଆଡ଼ର ବଂଶଧରମାନଙ୍କ ଭିତରେ ଦ୍ୱନ୍ଦ୍ୱ ଚାଲିଆସିଛି । ଚଣ୍ଡାଳମାନେ ଉତ୍ତରଦେଶରୁ ପ୍ରତିବର୍ଷ ଶ୍ରାବଣମାସରେ ଆସି ଶିବପୁର ଲୁଟିକରନ୍ତି ଓ ବ୍ରାହ୍ମଣୀ କନ୍ୟାମାନଙ୍କୁ ମଧ୍ୟ ଘେନି ପଳାନ୍ତି । ସେଗୁଡ଼ାକ ଦୁର୍ଦ୍ଦାନ୍ତ ଓ ବର୍ବର । ଏବର୍ଷ ଏଇ ତାଙ୍କର ସମୟ ହୋଇଆସିଲା – ସେଥିପାଇଁ ଆମମାନଙ୍କ ପକ୍ଷରୁ ଏ ଯୁଦ୍ଧାୟୋଜନ ।''

ଚଣ୍ଡାଳମାନେ ଆସିଲେ, ଲୁଟପାଟ ହାଣକାଟ କଲେ । ଭୀମ ଓ ବିଷ୍ଣୁକର ପଣ୍ଡା ଦୂରରେ ଏକ ଗଛମୂଳେ ଠିଆହୋଇ ଘଟଣା ଦେଖୁଥାନ୍ତି । ଭୟରେ ଥରିଥରି ଆତ୍ମରକ୍ଷା ପାଇଁ ପଣ୍ଡା ପଳାୟନ କଲାବେଳେ, ଭୀମ ତାଙ୍କୁ ଧରିରଖିଲେ । ତା'ପରେ ଲୁଟପାଟ ହାଣକାଟ ଦେଖିଦେଖି ଭୀମସେନଙ୍କର ରକ୍ତ ଯେତେବେଳେ ଉଷ୍ଣ ହୋଇଉଠିଲା, ସେ ଯେଉଁ ଗଛତଳେ ଠିଆହୋଇଥିଲେ, ତାକୁଇ ଉପାଡ଼ି, ଝାମ୍ପଦେଲେ ଯୁଦ୍ଧକୁ ଓ କେତୋଟି ମୁହୂର୍ତ୍ତରେ ଚଣ୍ଡାଳମାନଙ୍କୁ ନିପାତ କରିଦେଲେ ।

ଶିବପୁରର କୃତଜ୍ଞ ପୁରବାସୀଗଣ ବର୍ତ୍ତମାନ ଭୀମଙ୍କ ନିକଟକୁ ଆସି ତାଙ୍କୁ ତାଙ୍କ ନଗରର ରାଜା ହେବାକୁ ଅନୁରୋଧ କଲେ । ଭୀମ ରାଜାହେଲେ ଓ ବିଷ୍ଣୁକର ପଣ୍ଡାଙ୍କୁ ମନ୍ତ୍ରୀ କଲେ । କ୍ରମେ ଆଖପାଖ ଅନେକ ରାଜାଙ୍କୁ ପରାସ୍ତକରି ଭୀମ ଏକ ବଡ଼ ରାଜ୍ୟର ରାଜା ହେଲେ । ବିରାଟ ଏକ ପ୍ରାସାଦ ବି ତିଆରିକଲେ । କିନ୍ତୁ ଭାଇମାନେ ଫେରିଆସିଲା ପରେ ବିଷ୍ଣୁକର ପଣ୍ଡାଙ୍କୁ ସେହି ରାଜ୍ୟର ରାଜପଦରେ ବସାଇ ପୁଣି ବନବାସରେ ବାହାରିଲେ । ପରେ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞ ସଭାକୁ ବିଷ୍ଣୁକର ପଣ୍ଡା ଦକ୍ଷିଣଭାରତର ଏକ ମାନ୍ୟଗଣ୍ୟ ରାଜା ଭାବରେ ନିମନ୍ତ୍ରିତ ହୋଇଥିଲେ ।

ଏହା ଏକ ଅତ୍ୟନ୍ତ କୌତୂହଳୋଦ୍ଦୀପକ ଉପାଖ୍ୟାନ । ବ୍ରାହ୍ମଣ ଚଣ୍ଡାଳର ବିବାହ ପୁଣି ବ୍ରାହ୍ମଣ ଚଣ୍ଡାଳର ଯୁଦ୍ଧ । ପୁଣି ବର୍ବର ଚଣ୍ଡାଳମାନେ କବିଙ୍କ ନିଜ ଦେଶ ଓଡ଼ିଶାରୁ ଦକ୍ଷିଣକୁ ଯାଉଥିଲେ । ଆଦ୍ୟରେ ଇଲେକ୍ଟେଡ଼ ବା ନିର୍ବାଚିତ ରାଜା,

ତା'ପରେ ବ୍ରାହ୍ମଣ ରାଜବଂଶ ସ୍ଥାପନା । ଏ ସବୁର ପଛରେ ଗଭୀର ଐତିହାସିକ ଓ ସାମାଜିକ ତତ୍ତ୍ୱପୂର୍ଣ୍ଣ ଘଟଣାବଳୀ ଅଛି ନିଶ୍ଚୟ, କିନ୍ତୁ ସେସବୁ ଅତୀତର ଘନ ତିରସ୍କରିଣୀ ଅନ୍ତରାଳରେ ରହି ବର୍ତ୍ତମାନ ସମ୍ପୂର୍ଣ୍ଣ ବିସ୍ମୃତ । କିନ୍ତୁ ଉପାଖ୍ୟାନ ଭାବରେ ଘଟଣାର ନିର୍ଯ୍ୟାସ ରହିଯାଇଛି ଆମର ପ୍ରକୃତ ଜାତୀୟ ଐତିହାସିକ ଶାରଳା ଦାସଙ୍କ ଲେଖନୀରେ । ଏ ଉପାଖ୍ୟାନ ମୂଳ ମହାଭାରତରେ ନାହିଁ କି ଏହା ନ ଦେଇଥିଲେ ଶାରଳାଦାସଙ୍କ ମହାଭାରତର ବର୍ଣ୍ଣନା ମଧ୍ୟ କୌଣସି ଭାବରେ ଅପୂର୍ଣ୍ଣ ରହିନଥାନ୍ତା । କିନ୍ତୁ ଦେବାଦ୍ୱାରା ହିଁ, ଏଇ କୃଷକ କବିର ଅସଂସ୍କୃତ ଲେଖା ଜାତୀୟ ମହାକାବ୍ୟର ସ୍ତରକୁ ଉଠିଛି ଓ ଜଣାଇଦେଉଛି ଯେ ଏହି ପ୍ରତିଭାଶାଳୀ କୃଷକର ସୃଷ୍ଟିର ଏକମାତ୍ର ଉପାୟ ଥିଲା ତା'ର ନିଜର ତୀବ୍ରଶକ୍ତିସଂପନ୍ନ ଦୁଇଟି ଆଖି ଓ ଦୁଇଟି କାନ । ସେ ଯାହା ଦେଖୁଥିଲା, ଶୁଣୁଥିଲା, ତାରି ଉପରେ ନିର୍ଭର କରି ହିଁ ଏ ବିରାଟ ମହାକାବ୍ୟ ସେ ଲେଖିଚାଲିଥିଲା ।

ଶେଷରେ କଳିର ଆବିର୍ଭାବ ରୂପକ ଚମତ୍କାର ଉପାଖ୍ୟାନଟି ଆଲୋଚନା କରି ବିଦାୟ ନିଏ । ଏହା ମଧ୍ୟ ଏକାନ୍ତରେ ଶାରଳା ଦାସଙ୍କର ବୋଲି ଏପର୍ଯ୍ୟନ୍ତ ଗୃହୀତ– ଅନ୍ତତଃ ମୂଳ ମହାଭାରତରେ ଏହା ନାହିଁ ।

ଯୁଧିଷ୍ଠିରଙ୍କ ସ୍ୱର୍ଗାରୋହଣ ବେଳେ ଦିନେ ତାଙ୍କର ବିଚାର ପାଇଁ ଏକ ବିଚିତ୍ର ମୋକଦ୍ଦମା ଆସି ପହଞ୍ଚିଲା । ଜଣେ ବ୍ରାହ୍ମଣର ଗୋଟିଏ ଶୂଦ୍ର ଭୃତ୍ୟ ଥିଲା । ଦିନେ ବ୍ରାହ୍ମଣ ଭୃତ୍ୟକୁ କହିଲେ, ତାଙ୍କ ବିଲ ନିକଟରେ ଯେଉଁ ଡ଼ିପଜାଗାଟା ଅଛି ତାକୁ ଖୋଳି ଜମି ସାଥିରେ ସମତୁଲ କରିଦେବାକୁ । ଭୃତ୍ୟ ତାହା କରିବାକୁ ଗଲା; କିନ୍ତୁ କିଛି ସମୟ ପରେ ସେ ଯୋଡ଼ିଏ ରତ୍ନଖଚିତ ସ୍ୱର୍ଣ୍ଣକଙ୍କଣ ଆଣି ତାର ମୁନିବ ଆଗରେ ଥୋଇ କହିଲା, 'ମାଟି ଖୋଳୁ ଖୋଳୁ ଏହା ପାଇଲି । ଖୁବ୍ ସମ୍ଭବତଃ ଏହା ଆପଣଙ୍କର କୌଣସି ପୂର୍ବ ପୁରୁଷଙ୍କର ପୋତାମାଲ, ଆପଣ ରଖନ୍ତୁ ।' ବ୍ରହ୍ମଣ କହିଲେ, 'ନା, ନା, ଏ ଦ୍ରବ୍ୟ କାହାର ମତେ ଜଣାନାହିଁ । ତୁ ପାଇଲୁ ତୁ ନେ– ମୁଁ କାହିଁକି ନେବି ?' ଭୃତ୍ୟ ଉତ୍ତର ଦେଲା, 'ଆଜ୍ଞା, ଏ ମାଟି ଆପଣଙ୍କର । ଏଥିରୁ ଯାହା ମିଳିବ ସେସବୁ ଆପଣଙ୍କର ହିଁ ପ୍ରାପ୍ୟ । ମୁଁ ଯାକୁ କାହିଁକି ନେବି ? ଆପଣଙ୍କର ଦ୍ରବ୍ୟ ଏ, ଆପଣଇ ନିଅନ୍ତୁ ।' ମାଲିକ କହିଲେ– ଦେଖ, ମାଟି ଉପରେ ଯେଉଁ ଶସ୍ୟ ଉତ୍ପନ୍ନ ହୁଏ ତାହାହିଁ ମୋର ପ୍ରାପ୍ୟ । ତୁ ନିଜେ ଶ୍ରମ କରି ଯାକୁ ମାଟିତଳୁ ପାଇଲୁ, ଏହା ତୋହରି ପ୍ରାପ୍ୟ । ତୁ ନେଇଯା, ମୁଁ ନେବି ନାହିଁ ।'

ଏଇପରି ଭାବରେ ଯୁକ୍ତିତର୍କ ଚାଲିଲା । କୌଣସି ମୀମାଂସା ନ ହୋଇ ପାରିବାରୁ ସେ ଦୁହେଁ ଯୁଧିଷ୍ଠିରଙ୍କ ନିକଟକୁ ଗଲେ । ଯୁଧିଷ୍ଠିର ଏ ବ୍ୟାପାର ଦେଖି ଅବାକ୍ । ସେ ତେଣୁ ମନ୍ତ୍ରୀ ସହଦେବଙ୍କର ପରାମର୍ଶ ଚାହିଲେ । ସହଦେବ କହିଲେ, ''ଆଜ୍ଞା,

ଏହାର ମୀମାଂସା ଏଇକ୍ଷଣି ହୋଇଯିବ ଦେଖନ୍ତୁ । ଏ ପର୍ଯ୍ୟନ୍ତ ଦ୍ୱାପର ଯୁଗ ରହିଛି ବୋଲି ଏହା ସମ୍ଭବ ହୋଇଛି । କାରଣ କଳିଯୁଗ ଆରମ୍ଭ ହୋଇଗଲେ ମଧ୍ୟ, ଶ୍ରୀକୃଷ୍ଣଙ୍କ ଆଦେଶରେ ଆପଣ ପୃଥିବୀରେ ଥିଲା ଯାଏଁ ମୁଁ କଳିକି ବାନ୍ଧିରଖିଛି । ଯେଉଁ ଦିନ ଶ୍ରୀକୃଷ୍ଣ ଆମ ଲାଗି ଦୁର୍ଯ୍ୟୋଧନର ସଭାକୁ ଦୌତ୍ୟ କରିବାକୁ ଗଲେ, ସେହି ଦିନ କଳି ପୃଥିବୀକୁ ଆଗମନ କଲା । ଶ୍ରୀକୃଷ୍ଣ ମତେ କହିଲେ, ସାଙ୍ଗେ ସାଙ୍ଗେ ତାକୁ ବାନ୍ଧିରଖିବାକୁ । ବର୍ତ୍ତମାନ ତ ଆପଣ ସ୍ୱର୍ଗକୁ ଯିବାକୁ ବାହାରିଲେଣି, ମୁଁ ଏବେ କଳିକୁ ସ୍ୱାଧୀନ କରିଦେଉଛି । ଆଉ, ଆପଣ ଏ ମକଦ୍ଦମାର ବିଚାର କଳିଯୁଗର ରାଜା ପରୀକ୍ଷିତଙ୍କ ଉପରେ ଛାଡ଼ିଦିଅନ୍ତୁ ।''

ସେୟା ହେଲା । କଳି ସ୍ୱାଧୀନ ହୋଇ ସାଙ୍ଗେ ସାଙ୍ଗେ ତାର ପ୍ରଭାବ ବିସ୍ତାର କରିଦେଲା । ବ୍ରାହ୍ମଣ-ପ୍ରଭୁ ଓ ଶୂଦ୍ର-ଭୃତ୍ୟଙ୍କୁ ବର୍ତ୍ତମାନ ପରୀକ୍ଷିତଙ୍କ ନିକଟରେ ପହଞ୍ଚାଇ ଦେଲା ମାତ୍ରେ, ସେମାନଙ୍କର ଯୁକ୍ତିତର୍କ ଠିକ୍ ବିପରୀତ ରଙ୍ଗ ଧାରଣକଲା । ବ୍ରାହ୍ମଣ ଦାବୀକଲା 'ହଜୁର, ଏ କଙ୍କଣ ମୋର, କାରଣ ମୋ ମାଟିରୁ ବାହାରିଛି ।' ଭୃତ୍ୟ କହିଲା 'ହଜୁର, ମାଟି ଉପରେ ଯାହା ଫଳିବ ତାହା ସିନା ୟାଙ୍କର ପ୍ରାପ୍ୟ । ଏ କଙ୍କଣ କ'ଣ ଏ ପୋତିଥିଲେ ଯେ ତାକୁ ଦାବୀ କରିବେ ? ମୁଁ ଶ୍ରମ କରୁ କରୁ ପାଇଛି, ଏ ମୋର ପ୍ରାପ୍ୟ ।'

କଳିଯୁଗର ରାଜା ସବୁ ଶୁଣିଲେ । ତା' ପରେ ରାୟ ଦେଲେ– ''ଏ କଙ୍କଣ ପ୍ରଭୁ ବା ଭୃତ୍ୟ କାହାରି ପ୍ରାପ୍ୟ ନୁହେଁ – ତାହା ରାଜସରକାରଙ୍କର ହିଁ ପ୍ରାପ୍ୟ ।'' ସାଙ୍ଗେ ସାଙ୍ଗେ ଆଦେଶ ଦେଲେ ରତ୍ନଖଚିତ କଙ୍କଣଯୁଗ୍ମକୁ ନେଇ ଗନ୍ତାଘରେ ଗଚ୍ଛିତ ରଖିବାକୁ ।

ଦିନେ ଭାରତୀୟ-ସମାଜ ନିର୍ଲୋଭ, ପରାର୍ଥପରତା ଉପରେ ପ୍ରତିଷ୍ଠିତ ଥିଲା । ଗ୍ରୀକ୍ ରାଜଦୂତ ମେଗାସ୍ଥିନିସ୍‌ଙ୍କ ବର୍ଣ୍ଣନା ଏହାକୁ ସମର୍ଥନ କରୁଛି । ସେଦିନ ସମାଜରେ ସତ୍ୟପ୍ରତି ମର୍ଯ୍ୟାଦା ଓତପ୍ରୋତ ହୋଇ ରହିଥିଲା । ଅର୍ଥ ବା ପଦ ଜୀବନକୁ ନିୟନ୍ତ୍ରଣ କରୁ ନ ଥିଲା, କରୁଥିଲା ଧର୍ମ ଓ ନ୍ୟାୟ । ଏଇ ଉଦାର ଜୀବନ-ଦର୍ଶନ, ଉଭୟ ଶାସ୍ତ୍ରଜ୍ଞ ବ୍ରାହ୍ମଣଠାରେ ଓ ମୂର୍ଖ ଶୂଦ୍ରଠାରେ ଦୈନନ୍ଦିନ ପ୍ରତ୍ୟେକ କର୍ମରେ ଫୁଟିଉଠୁଥିଲା । ପାରସ୍ପରିକ ସହଯୋଗ ହିଁ ଥିଲା ସମାଜ ଜୀବନର ଏକ ଓ ପ୍ରଧାନ ମୌଳିକ ନୀତି । ଏଇ ଉପାଖ୍ୟାନର ପ୍ରଥମ ଭାଗରେ କୃଷକ କବି ସେହି ସ୍ୱର୍ଣ୍ଣଯୁଗର ଏକ ମନୋରମ ଚିତ୍ର ଦେଇଯାଇଛନ୍ତି ।

ତା'ପରେ ଇତିହାସର କେଉଁ ଅଶୁଭ-ମୁହୂର୍ତ୍ତରେ ଲୋକଚରିତ୍ର ହୋଇଉଠିଲା ସ୍ୱାର୍ଥ-କୈନ୍ଦ୍ରିକ, ସଂକୀର୍ଣ୍ଣ, ବିକୃତ ଓ ସଙ୍କୁଚିତ । ଲୋକେ ନିଜକୁ ମନେକଲେ ଅନ୍ୟଠାରୁ ଭିନ୍ନ ଓ ସ୍ୱତନ୍ତ୍ର । ଜନ୍ମ ହେଲା ସମାଜରେ ଲୋଭର ସଂଘର୍ଷ । ଭୟ,

ଅବିଶ୍ୱାସ, ପ୍ରତାରଣା, ଷଡ଼ଯନ୍ତ୍ର, କୂଟଚକ୍ର ପ୍ରଭୃତି ହେଲା ଆମର ପ୍ରତିଦିନର ଧର୍ମ । ନ୍ୟାୟ, ସମବେଦନା, ସହାନୁଭୂତି ଓ ଉଦାର ମାନବିକତାର ଖୋଲା ଆକାଶ, ନିର୍ମଳ ବାୟୁ ଓ ରୋଗଘ୍ନ ସୌରରଶ୍ମି ଚିରକାଳଲାଗି ଆମ ବାତାବରଣରୁ ବିଦାୟ ନେଲେ ।

ଆମେ ଏବେ ମନେକରୁ ଯେ, ଯେହେତୁ କପିଳେନ୍ଦ୍ର ଦେବ ବା ପୁରୁଷୋତ୍ତମ ଦେବ ବର୍ତ୍ତମାନ ଆମର ଜାତୀୟ ବୀର, ତେଣୁ ତାଙ୍କ ରାଜତ୍ୱରେ ଏ ଦେଶରେ ଅନ୍ୟାୟ ଅଧର୍ମ କିଛି ନଥିଲା – ତାହା ଏକାବେଳକେ ଭ୍ରାନ୍ତ ଧାରଣା । ପୌରାଣିକ ରାଜା ପରୀକ୍ଷିତଙ୍କଠାରୁ କପିଳେନ୍ଦ୍ର ଓ ପୁରୁଷୋତ୍ତମ ଅଧିକ ଧାର୍ମିକ ଓ ନ୍ୟାୟବାନ୍ ରାଜା ହୋଇନପାରନ୍ତି । ପରିକ୍ଷିତ ଯେପରି ନ୍ୟାୟ ବିଚାର ଦେଲେ, ସେଥିରୁ ଆମକୁ ଧରିନେବାକୁ ହେବ ଯେ, କୃଷକ କବି ସେହି ପୌରାଣିକ ନୃପତିଙ୍କୁ ତାଙ୍କ ସମସାମୟିକ ଶାସକମାନଙ୍କର ପ୍ରତୀକମାତ୍ର କରି ହିଁ ଠିଆକରାଇଛନ୍ତି । ଦିନେ ଧନୀ ନ ହୋଇ ମଧ୍ୟ ଭୂସ୍ୱାମୀ ତା'ର ଭୃତ୍ୟକୁ ରତ୍ନଖଚିତ ସ୍ୱର୍ଣ୍ଣକଙ୍କଣ ନିଜେ ଆତ୍ମସାତ୍ ନକରି ଭୃତ୍ୟକୁ ଫେରାଇଦେଉଥିଲେ । ଦରିଦ୍ର ଭୃତ୍ୟ ମଧ୍ୟ ସାଧୁତାରେ ଶିକ୍ଷିତ ଭୂସ୍ୱାମୀଠାରୁ ବଳିଯାଉଥିଲା । ସେଦିନର ସାଧୁ ପୁଣ୍ୟାତ୍ମା ରାଜା ମଧ୍ୟ ନିଜେ ତାହା ମାରିନେବା ଭାବିପାରିନଥିଲେ । କିନ୍ତୁ କଳିର ରାଜା ହଠାତ୍ ସ୍ଥିରକରିନେଲେ, ସେ ସ୍ୱର୍ଣ୍ଣକଙ୍କଣ ନାହିଁ ଭୂସ୍ୱାମୀ ବା ଭୃତ୍ୟ କାହାରି ନୁହେଁ, ତାହା ତାଙ୍କର ହିଁ ପ୍ରାପ୍ୟ । ବିବଦମାନ ଦୁଇ ପକ୍ଷକୁ ଏକ ଏକ କଙ୍କଣ ଦେଇଦେବାର ନିର୍ଲୋଭ ସିଦ୍ଧାନ୍ତ ତାଙ୍କ କଳ୍ପନାକୁ ଆସିବା ସମ୍ଭବ ହେଲାନାହିଁ । ଦରିଦ୍ର ପ୍ରଜାର ଦୀନତାକୁ ଭ୍ରୂକ୍ଷେପ ନ କରି ରାଜତନ୍ତ୍ରର ଆତ୍ମ-ସ୍ଫୀତି ଶାରଳାଦାସଙ୍କ ସମୟରେ ଇତିହାସର ଅନ୍ୟ କାଳ ପରି ନଘଟୁଥିବାର ଆଶା କରିବା କେବଳ ମିଥ୍ୟା ଜାତୀୟତା । କବି ନିଜେ ଏସବୁ ଦେଖି ମନେ ମନେ ନିଶ୍ଚୟ କ୍ଷୁବ୍ଧ ହୋଇଥିବେ । କିନ୍ତୁ କରିବେ କ'ଣ ? ଅନ୍ତତଃ ସମାଜର ଶାସକମାନଙ୍କୁ ଟିକିଏ ଚେତାଇଦେବାପାଇଁ ବୋଧହୁଏ, କବି, ମୂଳ-ଗ୍ରନ୍ଥରେ ନଥିଲେ ମଧ୍ୟ, ଏଇ ଚମତ୍କାର ରୂପକଟିକୁ ଆମ ଆଗରେ ଥୋଇଯାଇଛନ୍ତି, ଶାସନ-ରଶ୍ମି ଦେଇ ସକଳ କାଳର ସମାଜଶୋଷକମାନଙ୍କର ହେୟ ପ୍ରତିଚ୍ଛବି ରୂପେ, ଯେପରି କି ଅପକର୍ମ ଅପକର୍ମ ବୋଲି ହିଁ ପରିଚିତ ରହିବ ।

——

# ସୂଚନା

ମୋର ନିଜ ଜୀବନ ଏପରି ପଙ୍ଗୁ, ପକ୍ଷାଘାତଗ୍ରସ୍ତ ଓ କ୍ଷତବିକ୍ଷତ ଯେ, ମୋର ଅନ୍ୟକୁ ଉପଦେଶ ଦେବାକୁ ଯିବା ଚରମ ଧୃଷ୍ଟତା ।

ତେବେ 'ଆଜିର ମଲୁ କାଲିର ବୈଦ୍ୟ' ରୀତିରେ ଯେଉଁମାନେ ଜୀବନ ସଂଗ୍ରାମରେ ଭଗ୍ନଜାନୁ, ତାଙ୍କଠି ବି କିଛି ଶିଖିବାର ଥାଇପାରେ ବୋଲି ମନେକରେ । ଇହଜୀବନରେ ନାନା ଆଘାତ ଖାଇ ଓ ନାନା ଭ୍ରମପ୍ରମାଦ କରି ମୁଁ ବହୁତ ଅଣ୍ଡାଳି ହୋଇଛି ଉତ୍ତମ ପନ୍ଥାପାଇଁ । ଆମ ଦେଶରେ ଜୀବନରୁ ମୁକ୍ତି ପାଇବା ପାଇଁ ଶାସ୍ତ୍ର ଗଦା ଗଦା ଓ ଗୁରୁ ଗଣ୍ଡା ଗଣ୍ଡା; କିନ୍ତୁ ଇହଜୀବନଟି ସୁସ୍ଥ, ବିଚାରବନ୍ତ ଭାବରେ କିପରି ବଞ୍ଚିହେବ, ସେଥିପାଇଁ ଯୁକ୍ତିଯୁକ୍ତି ଶାସ୍ତ୍ରର ଅଭାବ । ଇଉରୋପୀୟ ସାହିତ୍ୟରେ ହିଁ ଏହି ଗ୍ରନ୍ଥ ପଢ଼ିଲାବେଳେ ଓଡ଼ିଆରେ ସେହିପରି ଖଣ୍ଡେ ବହି କିପରି ଲେଖାଯାନ୍ତା, ତାହା ବରାବର ଭାବୁଥାଏ । ଏ ପୁସ୍ତକଟି ସେଇ ଭାବନାର ଫଳ । ବିଶେଷତଃ ଫରାସୀ ଲେଖକ ଆନ୍ଦେ ମରୟଙ୍କର 'ଆର୍ଟ୍ ଅବ୍ ଲିଭିଂ' ବା 'ଜୀବନକଳା' ପୁସ୍ତକଟି ମତେ ବିଶେଷ ଭାବରେ ଉତ୍ସାହିତ କରିଛି ।

ଏ ପୁସ୍ତକ ଜୀବନର କେତେକ ପ୍ରଧାନ ପ୍ରଧାନ ସମସ୍ୟାକୁ ସ୍ପର୍ଶ କରିଛି ମାତ୍ର । ଦୈନନ୍ଦିନ ଜୀବନର ଅନେକ ସମସ୍ୟା ଉପରେ ଅନେକ କିଛି ଶିଖିବାର କଥା ଅଛି, ଯାହା କି ଏ ପୁସ୍ତକର ସୀମାର ବାହାରେ । ଆମେ ସ୍ୱାଧୀନତା ପାଇଗଲେ ବୋଲି ସବୁ ଜାଣିବାର, ଶିଖିବାର ବୋଧହୁଏ ଶେଷ ହୋଇଗଲାନି । ଇଂରେଜର କର୍ତ୍ତବ୍ୟ-ବୋଧ, ଭଦ୍ରତା, ବାକ୍ୟର ମୂଲ୍ୟ, ଚରିତ୍ରବଳ ପ୍ରଭୃତିକି କେବଳ କି ସ୍ଲୋଗାନ୍ ଗାଇ ଉଡ଼େଇ ଦିଆଯାଇପାରିବ ? ଇଂରେଜ-ମୁକ୍ତ ଭାରତକୁ ଚଳେଇବା ପାଇଁ ଆମର ଆଜି ବଡ଼ ଦରକାର ଇଂରେଜର ଗୁଣାବଳୀ । ଆଜି ଆମର ସ୍କୁଲ୍ କଲେଜରେ ଇଂରେଜ କାବ୍ୟନାଟକର ଅଧ୍ୟାପନା ବନ୍ଦ କରି, ଇଂରେଜର ବିଶ୍ୱବିଖ୍ୟାତ ଉତ୍କୃଷ୍ଟ ଗୁଣାବଳୀ, ଭବିଷ୍ୟତ ଜାତିର ଚରିତ୍ରର ଅଙ୍ଗୀଭୂତ କିପରି ହେବ, ତାହାରି ବ୍ୟବସ୍ଥା କରିବା ବେଶି ଜରୁରି ବୋଲି ମନେକରେ ।

ଏ ଦିଗରେ ମାର୍କିନ୍ ଲେଖକ ଡେଲ୍ କାର୍ଣ୍ଣେଜୀ, ଇଂରେଜ ଲେଖକ ସ୍ମାଇଲସ୍, ଆଭେବରୀ, କବେଟ୍ ପ୍ରଭୃତିଙ୍କ ପୁସ୍ତକମାନ ଆମର ଯୁବକ ଯୁବତୀମାନେ ବାରମ୍ବାର ପଢ଼ିବା ଉଚିତ୍ । ଏ ଗୁଡ଼ିକରେ ଦୈନନ୍ଦିନ ସାମାଜିକ ଜୀବନର ନାନା ସମାଧାନ ସେମାନେ ପାଇପାରିବେ ।

କୋଜାଗରୀ ପୂର୍ଣ୍ଣିମା — ମାୟାଧର ମାନସିଂହ

କଟକ, ୧୭।୧୦।୪୮

# ସମାଜ ଓ ରାଷ୍ଟ୍ର

ମନୁଷ୍ୟ ନିତାନ୍ତ ଭାବରେ ଗୋଷ୍ଠୀକ ଜୀବ । ସେ ସ୍ୱତନ୍ତ୍ର ରହିବାକୁ ଚାହେ; କିନ୍ତୁ ଏକା ରହିବାକୁ ଚାହେନା । ଆମେ ଘରଟିଏ କରି ଚାରିପାଖରେ ବାଡ଼ ବା ପାଚେରୀ ଘରାଇଦେଉ, ଆମର ସ୍ୱକୀୟ ସ୍ୱାତନ୍ତ୍ର୍ୟର ଜୟପତାକା ଉଡ଼ାଇ; କିନ୍ତୁ ଯେତେ ସ୍ୱାତନ୍ତ୍ର୍ୟ ଚାହିଲେ ମଧ୍ୟ, କେହି ନିର୍ଜନ ମରୁଭୂମିରେ ବା ଶ୍ମଶାନରେ ଘର କରେ ନା । କାରଣ, ମନୁଷ୍ୟ ସ୍ୱାତନ୍ତ୍ର୍ୟ ଚାହେ, ତା' ସଂଗେ ସଂଗେ ସାମୂହ୍ୟ ବି ଚାହେ । ସିନ୍ଧୁର ଅଗଣିତ ବିନ୍ଦୁ ସିନ୍ଧୁରେ ମିଶିଗଲା ପରି ସେ ନିଜର ସତ୍ତାକୁ ଭୁଲିଯିବାକୁ ଚାହେ ନା । ସେ ସିନ୍ଧୁତ୍ୱ ଚାହେ, ବିନ୍ଦୁତ୍ୱ ମଧ୍ୟ ଚାହେ । ସମାଜର ପ୍ରତ୍ୟେକ ବ୍ୟକ୍ତି ଅପର ବ୍ୟକ୍ତିକୁ ଅବିଶ୍ୱାସ ବା ହିଂସାଦୃଷ୍ଟିରେ ଦେଖିପାରେ, କିନ୍ତୁ ପ୍ରତ୍ୟେକେ ସମଷ୍ଟି ଭାବରେ ସମାଜକୁ ଚାହାନ୍ତି । ଏକତ୍ରିତ ଜନତାର ଏକ ସ୍ୱକୀୟ ପ୍ରୟୋଜନ ଓ ସୌନ୍ଦର୍ଯ୍ୟ ଅଛି । ମେଳାରେ ଲୋକେ ଲୋକଙ୍କୁ ହିଁ ଦେଖିବାକୁ ଦୌଡ଼ନ୍ତି । ବ୍ୟକ୍ତି ଓ ସମଷ୍ଟି ଗଛ ଓ ତା'ର ଡାଳ ପରି, ପରସ୍ପରର ଅଙ୍ଗାଙ୍ଗୀ ।

ସମାଜର ଏକକ କୁଟୁମ୍ବ, କୁଟୁମ୍ବର କେନ୍ଦ୍ର ନାରୀ । ଏବେ ବି ପୃଥିବୀ ପୃଷ୍ଠରେ ଅନେକ ଗ୍ରାମ ଅଛି, ଯେଉଁଠି ସାରା ଗ୍ରାମଟି ଗୋଟିଏ କୁଟୁମ୍ବ, ଅର୍ଥାତ୍ ଗୋଟିଏ ଯୁଗ୍ମର ପ୍ରସାରିତ । ଲକ୍ଷ ଲକ୍ଷ ବର୍ଷ ଧରି ଏକ ଏକ ନରନାରୀ-ଯୁଗ୍ମର କୁଟୁମ୍ବର ସଂପ୍ରସାରଣ ହୋଇ ହୋଇ କୋଟି-କୋଟି-ସଂଖ୍ୟା ଜାତି ଗଢ଼ିଉଠିଛି । ପୁରାଣରେ ସେଥିପାଇଁ ଦୀତି, ଅଦୀତି ଦୁଇ ଭଉଣୀଠାରୁ ଦୈତ୍ୟ ଓ ଦେବତାମାନଙ୍କର ଉଦ୍ଭବ ବ୍ୟଞ୍ଜିତ ହୋଇଛି । ଇଂରେଜ ଓ ଜର୍ମାନ, ଗତ ଦୁଇଟି ମହାଯୁଦ୍ଧରେ ପରସ୍ପର ନାଗ-ନେଉଳ ପରି ଗଳା କଟାକଟି କଲେହେଁ ସେମାନଙ୍କର ରକ୍ତ ଏକ୍; ବହୁ ସହସ୍ର ବର୍ଷ ପୂର୍ବେ ସେମାନଙ୍କର ଜନନୀ ବୋଧହୁଏ ଏକ୍ ଥିଲା । ସ୍ୱାର୍ଥ ଓ ସ୍ୱାତନ୍ତ୍ର୍ୟ ଇଚ୍ଛା ଯୋଗୁଁ କୁଟୁମ୍ବ ଯେପରି ଫଡ଼ା ଫଡ଼ା ହୁଏ, ସମାଜ ମଧ୍ୟ ସେହିପରି ରାଷ୍ଟ୍ରରେ ବିଭିନ୍ନ ହୋଇ ଲଢ଼େଇ ପାଇଁ ତିଆରିହୁଏ ।

ଖ୍ରୀଷ୍ଟୀୟ ପୁରାଣ ଅନୁସାରେ ସମଗ୍ର ମାନବଜାତି ଆଡ଼ାମ୍ ଓ ଇଭ୍ ଏହି ଆଦିମ ନର-ନାରୀ ଯୁଗ୍ମରୁ ଉତ୍ପନ୍ନ । ପୃଥିବୀର ଶତ ଶତ ଭିନ୍ନ ଭିନ୍ନ ଧର୍ମ, ଆଚାର ବ୍ୟବହାର, ପୁଣି ଚର୍ମର ଭିନ୍ନ ଭନ୍ନ ବର୍ଣ୍ଣ ଓ ମୁଖମଣ୍ଡଳର ଗଠନବୈଚିତ୍ର୍ୟ ଦେଖିଲେ ବିଶ୍ୱାସ କରିବାକୁ କଷ୍ଟ ହୁଏ ଯେ, ଆମେ ସମଗ୍ର ମାନବଜାତି ଏକ ବାପ-ମାଠୁଁ ଜାତ । ସେ ଯାହାହେଉ; ଇତିହାସ ଆଲୋଚନା କଲେ ଏତିକି ଅନ୍ତତଃ ଜଣାପଡୁଛି ଯେ,

ପୃଥିବୀରେ ଦିନେ ଏତେ ଧର୍ମ ନଥିଲା, କି ଏତେ ଭାଷା ବି ନ ଥିଲା– ଯେଉଁ ଧର୍ମ ଓ ଭାଷା ହିଁ ଆଜି ମନୁଷ୍ୟ ମନୁଷ୍ୟ ଭିତରେ ସହସ୍ର ଅଲଂଘ୍ୟ ପାଚେରୀର କାମ କରୁଛନ୍ତି । ଧର୍ମ ଓ ଭାଷାଗୁଡ଼ାକ ଗଣନୀୟ କାଳ ଭିତରେ ହିଁ ଜନ୍ମ ଓ ଅଭିବୃଦ୍ଧି ପାଇଛନ୍ତି । ଚତୁର୍ଦ୍ଦଶ ଶତାବ୍ଦୀ ପର୍ଯ୍ୟନ୍ତ ଇଉରୋପର ବିଶ୍ୱବିଖ୍ୟାତ ଭାଷାଗୁଡ଼ିକର ସତ୍ତାହିଁ ନ ଥିଲା । ଆଧୁନିକ ଭାରତର ଭାଷାଗୁଡ଼ିକର କଥାହିଁ ସେହିପରି । ବଙ୍ଗାଳୀ, ଓଡ଼ିଆ ଓ ବିହାରୀ, ଛଅଶ ବର୍ଷ ତଳେ ଏକ ଭାଷାରେ କଥା ଭାଷା ହେଉଥିଲେ; ଏବେ କିନ୍ତୁ ନିଜନିଜର ସ୍ୱତନ୍ତ୍ର ଭାଷାର ଦ୍ୱାହି ଦେଇ ସେମାନେ ପରସ୍ପରର ମୁଣ୍ଡ ଫଟେଇବାକୁ ସଦା ଜାଗ୍ରତ । ଧର୍ମର କଥା ବି ସେହିପରି । ମାନବିକ ସଭ୍ୟତା ଅନ୍ତତଃ ସାତ ହଜାର ବର୍ଷର; କିନ୍ତୁ ଖ୍ରୀଷ୍ଟଧର୍ମର ଜନ୍ମ ମାତ୍ର ୧୯ ଶହ ବର୍ଷ ତଳେ, ଇସ୍‌ଲାମ୍‌ର ୧୨ ଶହ ବର୍ଷ ତଳେ ; କିନ୍ତୁ ଏ ଦୁଇଟିଯାକ ଧର୍ମ ମନେକରନ୍ତି ଯେ, ଈଶ୍ୱର ତାଙ୍କୁହିଁ ପ୍ରକୃତ ସତ୍ୟ ଓ ଜ୍ଞାନ ଦେଇଛନ୍ତି ଏବଂ ସେଥିପାଇଁ ଏ ଦୁଇଟି ଧର୍ମ ଯୋଗୁଁ ପୃଥିବୀରେ ଯେତେ ରକ୍ତପାତ ହୋଇଛି, ରାଜା ରାଜାର ଲଢ଼େଇ ଯୋଗୁଁ ବୋଧହୁଏ ସେତେ ହୋଇନାହିଁ ।

ଧର୍ମ ଓ ଭାଷାକୁ ଚିରନ୍ତନ ଓ ଅପରିବର୍ତ୍ତିତ ବା ଅପରିବର୍ତ୍ତନୀୟ ଘଟଣା ବୋଲି ଧରି ସମାଜରେ କନ୍ଦଳ ସୃଷ୍ଟି କରିବାକୁ ତେଣୁ ଅନେକ ବୁଦ୍ଧିମାନ୍ ଓ ବିଚାରବନ୍ତ ଲୋକ ଏବେ ଆଉ ପସନ୍ଦ କରନ୍ତି ନାହିଁ । ବର୍ତ୍ତମାନ ପୃଥିବୀର ଚିନ୍ତାନାୟକମାନେ ଧର୍ମ, ଭାଷା ଓ ବର୍ଣ୍ଣର ସକଳ ଭିନ୍ନତାକୁ ଉପେକ୍ଷା କରି ପୁଣି ମାନବସମାଜକୁ ତା'ର ଆଦିମ ଏକତ୍ୱକୁ ଫେରାଇ ନେବାକୁ ଚାହାନ୍ତି । ସେଥିପାଇଁ ଲିଗ୍ ଅବ୍ ନେଶନ୍‌ସ୍‌ର ଜନ୍ମ ଓ ମୃତ୍ୟୁ ଏବଂ ପୁଣି ୟୁ.ଏନ୍. ଓ. ଭାବରେ ତା'ର ଦେହାନ୍ତର ପ୍ରାପ୍ତି । ସେଥିପାଇଁ ମଧ୍ୟ ପୃଥିବୀରେ ଗୋଟିଏ ସାଧାରଣ ଭାଷା ପ୍ରଚଳନର ଚେଷ୍ଟା । ସେଥିପାଇଁ ଧର୍ମକୁ ରାଷ୍ଟ୍ରୀୟ ସକଳ ବିଚାରରୁ ପୃଥକୀକରଣ ।

ସମାଜ ଚିରନ୍ତନ, କିନ୍ତୁ ଚର୍ଚ୍ଚ ବା ଷ୍ଟେଟ୍, ଅର୍ଥାତ୍ ଧର୍ମ ବା ରାଜ୍ୟ ପରର ଘଟଣା । ଘଟଣାଚକ୍ରରୁ ସେମାନଙ୍କର ଉଦ୍ଭବ । ଗଡ଼ଜାତର ଜଙ୍ଗଲରେ ନରନାରୀ ଆଦିମ ଅବସ୍ଥାରେ ଥିଲେ ହେଁ, ସେମାନଙ୍କର ଏକ ବିଧି ବେଷ୍ଟିତ ସମାଜ ଅଛି, କିନ୍ତୁ ଆମେ ଯେପରି ଧାରଣା କରୁଁ ସେପରି ଧର୍ମ ବା ଷ୍ଟେଟ୍ ସେମାନଙ୍କର ନ ଥିଲା ବା ଏବଯାଏଁ ନ ଥାନ୍ତା– ଯଦି ବାହାରୁ ଏ ସବୁ ତାଙ୍କ ଉପରେ ଲଦି ଦିଆ ନ ଯାଇଥାନ୍ତା । ଆଜି ମାନବସମାଜକୁ ବିଭେଦ-ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଧର୍ମକୁ ସମାଜର ପୃଷ୍ଠଭାଗକୁ ଠେଲିଦିଆଯାଉଛି ଏବଂ ରାଷ୍ଟ୍ର ଓ ସମାଜକୁ ଏକାକାର କରିଦେବାର ପ୍ରୟାସ ହେଉଛି । ସୋଭିଏଟ୍ ରୁଷିଆରେ ଏହାର ହିଁ ପରୀକ୍ଷା ଚାଲିଛି ।

ବିଦ୍ୟା ଓ ଧନର ତାରତମ୍ୟ ନେଇ ସମାଜରେ ଓ ରାଷ୍ଟ୍ରରେ ଯେଉଁ ଉଚ୍ଚାବାଚ ପରମ୍ପରା ଦେଖାଯାଉଥିଲା, ତାହା ବିଦ୍ୟାର ସାର୍ବଜନୀନ ପ୍ରଚାର ଫଳରେ ଓ ଧନସଂପଦର ସମବିତରଣ ବ୍ୟବସ୍ଥା ଫଳରେ କ୍ରମେ ଯେ ଉଭେଇଯିବ, ଏଥିରେ ସନ୍ଦେହ କରିବାର କାରଣ ନାହିଁ । ସେଦିନ ଜମିଦାରଙ୍କ କନ୍ୟାର ବିଭାଘରର ଜାକ୍‌ଜମକ ଦେଖି ପଧାନ ବାପୁଡ଼ା ଆଁ କରି ଚାହିଁଥାଏ । ଆଜି ପଧାନ ଓ ମହାପାତ୍ର ଉଭୟେ ପ୍ରାଦେଶିକ ପାର୍ଲିମେଣ୍ଟରେ ବସି ନିୟମ କରିବେ ଯେ, କେହି ବିଭାଘରେ ୫୦ ଜଣରୁ ବେଶୀ ଲୋକଙ୍କୁ ଖୁଆଇପାରିବେନି । ଏଠି ସମାଜ ରାଷ୍ଟ୍ରକୁ ଚଳେଇଲା ଓ ରାଷ୍ଟ୍ର ସମାଜକୁ ନିୟନ୍ତ୍ରିତ କଲା । କ୍ରମେ କ୍ରମେ ସମାଜ ହେବ ରାଷ୍ଟ୍ରର ପ୍ରତିବିମ୍ବ ମାତ୍ର, ରାଷ୍ଟ୍ର ହେବ ସମାଜର ସୃଷ୍ଟି ।

କିନ୍ତୁ ଆମେ ଯେଉଁ ଗୋଷ୍ଠୀରେ ବାସକରୁଁ, ତାହା ସମାଜ ହେଉ ବା ରାଷ୍ଟ୍ର ହେଉ ବା ଉଭୟ ମିଳିତ ଗଠନ ହେଉ, ତହିଁରେ ବ୍ୟକ୍ତିର ଦାୟିତ୍ୱ କ୍ରମେ ବଢୁଛି; ବରଂ କମିବାକୁ ନାହିଁ । ପୂର୍ବେ ଆମେ ଜଣେ ରାଜା ଉପରେ ସବୁ ଭାର, ସବୁ ଦାୟିତ୍ୱ ଥୋଇଦେଇ ନିଜ ନିଜ ବ୍ୟବସାୟରେ ଲାଗିରହିଥିଲେ । ରାଜା ଇଚ୍ଛା ଅନୁସାରେ ବାଛୁଥିଲେ ମନ୍ତ୍ରୀ ଓ ସେନାପତି; ଆମଠୁ ଖଜଣା ନେଇ ନିଜର ଜୟସ୍ତମ୍ଭ ବା ପ୍ରିୟାର ସ୍ମୃତିମନ୍ଦିର ଗଢୁଥିଲେ । ଆମର କିଛି କହିବାର ନ ଥିଲା । ଭାରତବର୍ଷ କଥା ଛାଡ଼ିଦିଅ, ଇଂଲଣ୍ଡରେ ତ ଅଷ୍ଟାଦଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜା ଈଶ୍ୱର ପ୍ରେରିତ ଓ ସର୍ବଥା ମାନନୀୟ– ଏ ଧାରଣା କମ୍ ବଳବତ୍ତର ନ ଥିଲା । ଆଜି ସେ ସବୁ ଆଲୋଚନା ବା ସ୍ମରଣ କରିବାର ଅର୍ଥ କିଛି ନାହିଁ । ଆଜି ଆଉ ରାଜା ନାହାନ୍ତି; କିନ୍ତୁ ରାଜ୍ୟ ଅଛି, ରାଷ୍ଟ୍ର ଅଛି, ସମାଜ ଅଛି । ଏ ସବୁର ସମୂହ ଦାୟିତ୍ୱ ଆଜି ଆମ ଉପରେ । ସମାଜ ବ୍ୟକ୍ତିର ସମଷ୍ଟି ମାତ୍ର । ତେଣୁ ଦାୟିତ୍ୱ ପ୍ରକୃତରେ ପ୍ରତ୍ୟେକ ବ୍ୟକ୍ତିର ।

ଯେହେତୁ ରାଜା ଆଜି ନାହିଁ ଅନେକ ଲୋକଙ୍କର ଧାରଣା ହେଉଛି, କାହାକୁ ନ ମାନିବାହିଁ ହେଉଛି ସ୍ୱାଧୀନତାର ପ୍ରକୃଷ୍ଟ ଅଭିବ୍ୟକ୍ତି । କିନ୍ତୁ ମନେରଖିବାକୁ ହେବ, ଛୋଟ ହେଉ ବା ବଡ଼ ହେଉ, ଜଣେ ଦଳପତି ବିନା ଦଳ କୌଣସି କାମ କରି ପାରେନା ଏବଂ ଦଳଭାବରେ ଗୌରବାନ୍ୱିତ ଜୀବନ ଯଦି ଚାହ, ତେବେ ଦଳପତିର ଆଦେଶ ମାନିବାକୁ ହେବ । ନରପତିଙ୍କି ସିନା ବିଦାୟଦେଲେ, ଦଳ ଥିବା ଯାଏ ଦଳପତି ଥିବେ । ଯିଏ ଆଦେଶ ଦେଇ ନ ଜାଣେ, ସେ ଦଳପତି ହେବାର ଯୋଗ୍ୟ ନୁହେ ଏବଂ ଆମେ ନିଜ ନିର୍ବାଚିତ ଦଳପତିର ଆଦେଶ ଯଦି ନ ମାନୁଁ ତେବେ ଆମକୁ ଜନ୍ତୁଠାରୁ ହୀନ ମନେ କରିବାକୁ ହେବ । କାରଣ ଅଧିକାଂଶ ଜନ୍ତୁ, ଦଳର ସଂହତି ଓ ଗୌରବ ପାଇଁ ଦଳପତିର ନିର୍ଦ୍ଦେଶରେ ଅକାତରରେ ପ୍ରାଣଦେଇଥାନ୍ତି ।

ଆଦିମ ଯୁଗରେ ଦଳପତି ହିଁ ପରେ ନରପତି ହେଲେ । ପ୍ରଥମେ ଦଳପତି ପ୍ରତି କୃତଜ୍ଞ ଭାବ ଯୋଗୁ ହେଉ ବା ବାରମ୍ବାର ନିର୍ବାଚନ କଷ୍ଟରୁ ରକ୍ଷା ପାଇବାକୁ ହେଉ, ସମାଜ ଦଳପତିର ପୁଅକୁ ଜନ୍ମର ଅଧିକାରରେ ଏକାଧାରରେ ନରପତି ଓ ଦଳପତି କଲା । ବହୁ ସହସ୍ର ବର୍ଷ ଧରି ଯା ଚଳିଆସିଲା । ଏବେ କେବଳ ଇଂଲଣ୍ଡ ପ୍ରଭୃତି କେତେକ ଦେଶ ଛଡ଼ା ଆଉ ପ୍ରାୟ କେଉଁ ଦେଶରେ ନରପତି ନାହାନ୍ତି କହିଲେ ଚଳେ । ଇଂଲଣ୍ଡରେ ରାଜା କେବଳ ପ୍ରଦର୍ଶନୀ ପାଇଁ, ରାଜ୍ୟ ଚଳାନ୍ତି ନିର୍ବାଚିତ ମନ୍ତ୍ରୀ; କିନ୍ତୁ ଚିରପରିବର୍ତ୍ତମାନ ଇଂଲଣ୍ଡୀୟ ସମାଜରେ ଅପରିବର୍ତ୍ତିତ ରାଜମୁକୁଟ ଜାତୀୟ ଇତିହାସର ପ୍ରତୀକରୂପେ ବ୍ରିଟିଶ୍ ରାଷ୍ଟ୍ରକୁ ଏକ କେନ୍ଦ୍ର ଯୋଗାଉଛି ଓ ଜାତିକୁ ଏକପ୍ରକାର ସଂହତି ଦାନକରିଛି, ଯାହା ଅନ୍ୟ ଜାତିରେ ଅସମ୍ଭବ । ଏହି କେନ୍ଦ୍ରର ଅଭାବରୁ ଫ୍ରାନ୍ସରେ ପ୍ରତି ସପ୍ତାହରେ ମନ୍ତ୍ରୀମଣ୍ଡଳର ଉଦୟାସ୍ତ ଚାଲିଛି, ରାଷ୍ଟ୍ର ସଂହତିହୀନ ଓ ଶକ୍ତିହୀନ ।

ନରପତିର ତାତ୍ପର୍ଯ୍ୟ ହେଉଛି ସ୍ଥାୟୀ ଦଳପତି । ଏହି ଅନୁଷ୍ଠାନ ସମାଜ ହିଁ ସୃଷ୍ଟି କରିଥିଲା; କିନ୍ତୁ ପରେ ନରପତିବୃନ୍ଦ ସବୁ ଦେଶରେ ସମାଜସୃଷ୍ଟି ସ୍ଥାୟିତ୍ୱକୁ ଦୈବନିର୍ଦ୍ଦିଷ୍ଟ ବୋଲି ପରିପ୍ରଚାର କରାଇ ଅଜ୍ଞ ଜନତାକୁ ଯେତେଭାବରେ ଠକାଯାଇପାରେ ତାହା କରିଗଲେ । ଲୋକେ ସଚେତନ ହେବା ଫଳରେ ଓ ରାଜାମାନଙ୍କର ଅତ୍ୟାଚାର ଅସହ୍ୟ ହେବା ଫଳରେ କ୍ରମେ ରାଜମୁକୁଟର ମହିମା ହ୍ରାସ ହେବାକୁ ବସିଲା ।

ନେତା ଦିନେ ନରପତି ହୋଇଥିଲେ – ଏବେ ନରପତି ଯାଇ ପୁଣି ନେତା ଆସିଲେ । ନେତା ନ ହେଲେ ରାଷ୍ଟ୍ରର କଥା ଛାଡ଼ିଦିଅ, ଏକ ଛୋଟ କୁଟୁମ୍ବ ବି ସୁରୁଖୁରୁରେ ଚଳି ପାରିବ ନାହିଁ । କାର୍ଯ୍ୟର ସୌକର୍ଯ୍ୟ ପାଇଁ ଦୁଇଜଣ ମାତ୍ର ଲୋକ ଥିଲେ ବି ତାଙ୍କ ଭିତରେ ଜଣେ ନେତା, ଅନ୍ୟ ଜଣକ ନୀତ ହେବା ଉଚିତ, ନ ହେଲେ କାମ ଚଳିପାରିବ ନାହିଁ । ଜଣେ ଏକ ପ୍ରକାର କହିଲେ, ଆଉ ଜଣେ ଆଉ ପ୍ରକାରେ କହିବା ସ୍ୱାଭାବିକ । ଦାୟିତ୍ୱ ତେବେ କାହା ଉପରେ ? ପ୍ରତ୍ୟେକ କାର୍ଯ୍ୟର ଶେଷ ଦାୟିତ୍ୱ ଜଣକ ଉପରେ ରଖିଲେ ଲକ୍ଷ୍ୟ ଏକମୁଖୀ ହୁଏ, କାମ ଆଦାୟ କରିବାର ସୁବିଧା ହୁଏ । ଛୋଟ କ୍ଷେତ୍ରରେ ଯେପରି, ବଡ଼ କ୍ଷେତ୍ରରେ ସେହିପରି ଜଣେ ନେତା ନିତାନ୍ତ ଦରକାର ।

ଏଇ ନେତା ପୂର୍ବକାଳର ନରପତି ପରି ସ୍ୱର୍ଗରୁ ପ୍ରେରିତ ହେବେନି ଈଶ୍ୱରଙ୍କ ଦ୍ୱାରା, ତାଙ୍କୁ ଆମେଇ ବାଛିବା, ସେ ଆମରି ଭିତରୁ ହିଁ ଜଣେ ହେବେ । ନେତା ଯଦି ଭଲ ବା ମନ୍ଦ ହେଲେ ସେ ଦାୟିତ୍ୱ ଆମରି । ସେଥିପାଇଁ ଆମେ ଆଉ କାହାକୁ ଦୋଷ ଦେଇପାରିବାନି ଏବଂ ଥରେ ଜଣକୁ ନେତା ବାଛି ତାଙ୍କୁ ନ ମାନିବା ବା ଅସମ୍ମାନ କରିବା ଏକ ରାଷ୍ଟ୍ରୀୟ ଅପରାଧ । ଶାସନ ବିଧାନ ଅନୁସାରେ ଏବେ

କୌଣସି ନେତା ତିନିବର୍ଷ, ପାଞ୍ଚବର୍ଷ, ଅତିବେଶି ସାତବର୍ଷରୁ ଅଧିକ କାଳ ଆସନରେ ରହିପାରିବେ ନାହିଁ । ଯଦି ନେତା ଆଶାନୁରୂପ ନ ହେଲେ, ତେଣୁ ତିନିବର୍ଷ ପାଞ୍ଚବର୍ଷ ପରେ, ଏପରିକି ତା' ପୂର୍ବରୁ ମଧ୍ୟ ନେତାଙ୍କୁ ପଦଚ୍ୟୁତ କରିବାର ଅଧିକାର ଓ ଦାୟିତ୍ୱ ଲୋକଙ୍କ ହାତରେ ଅଛି । ପୂର୍ବେ ଏକ ଓ ଏକାଧିକ ନରପତିମାନଙ୍କର ଅତ୍ୟାଚାର ଲୋକେ ପୁରୁଷାନୁକ୍ରମେ ଭୋଗୁଥିଲେ; ତା' ତୁଳନାରେ ତିନିବର୍ଷ, ପାଞ୍ଚବର୍ଷ କିଛି ନୁହେଁ । ପୂର୍ବେ ଅତ୍ୟାଚାରୀ ନରପତିଙ୍କୁ ନିକାଲିବାର କୌଣସି ବାଟ ନ ଥିଲା । ତାଙ୍କ ବିରୁଦ୍ଧରେ ଅସ୍ତ୍ରଧାରଣ କରିବାର ସାହସ କିପରି ହେବ– ସେ ଯେ ଦେବତା ! କିନ୍ତୁ ଆଜି ଲୋକଙ୍କୁ ଅସ୍ତ୍ରଧାରଣ କରିବାକୁ ପଡ଼ିବନି – ଭୋଟ୍ ହିଁ ଜନତା ହସ୍ତରେ ପରମ ଅସ୍ତ୍ର, ତା'ରି ବଳରେ ସେ ନେତାଙ୍କୁ ଥୋଇବ ଓ କାଢ଼ିବ ।

ଲୋକଙ୍କ ଦାୟିତ୍ୱ ଅପେକ୍ଷା ନେତାର ଦାୟିତ୍ୱ ପୁଣି ସହସ୍ର ଗୁଣ । ନେତା ମନ୍ଦ ହେଲେ ସାରା ରାଷ୍ଟ୍ର ବିପନ୍ନ ହେବ, ଅର୍ଥାତ୍ ସହସ୍ର ସହସ୍ର, ଲକ୍ଷ ଲକ୍ଷ ଲୋକଙ୍କର ଦୁର୍ଦ୍ଦଶା । ଜାତିର କଲ୍ୟାଣ ବା ସମୁଚ୍ଚ ଆଦର୍ଶର ଖାତିର୍‌ରେ ଗାନ୍ଧୀ ବା ଆବ୍ରାହାମ୍ ଲିନ୍‌କନ୍‌ଙ୍କ ନିର୍ଦ୍ଦେଶରେ ଜାତି ଦୁର୍ଦ୍ଦଶା ଭୋଗକରିବାରେ ସୁଖ ଅଛି; କିନ୍ତୁ ମହମ୍ମଦ୍ ଟୋଗ୍‌ଲକ ବା ହିଟଲରଙ୍କ ପରି ନେତା ମାନବସମାଜର ଜୀବନ୍ତ ଅଭିଶାପ । କେବଳ ନେତୃତ୍ୱର ପ୍ରାଧାନ୍ୟ ଲାଳସାରେ ଜନତାକୁ ସଂକୀର୍ଣ୍ଣ ସ୍ୱାର୍ଥ ସବୁ ଲାଗି ମତାଇଦେବାର ପରିଣାମ ଯେ କି ବିଭୀଷିକାମୟ, ତାହା ଆମକୁ ବୁଝେଇବାକୁ ପଡ଼ିବନି । ମୁସ୍‌ଲିମ୍ ଲୀଗ୍‌ର ପରିପ୍ରଚାରର ଫଳ ଆମର ଅଙ୍ଗେନିଭା କଥା । ନେତା ସେହି, ଯାହାର ଲକ୍ଷ୍ୟ ସ୍ପଷ୍ଟ ଏବଂ ଯିଏ ନିଜର ଉତ୍ତେଜନାମୟୀ ବକ୍ତୃତା ବା ନିର୍ଦ୍ଦେଶର ପରିଣାମ କ'ଣ ହେବ ତାହା ଆଗରୁ ଜାଣିପାରି ସେଥିପାଇଁ ପ୍ରସ୍ତୁତ ରହେ ।

ଅନେକ କ୍ଷେତ୍ରରେ ଦେଖାଯାଇଛି ଯେ, ନିର୍ବାଚନ ପୂର୍ବରୁ ଯେଉଁ ଲୋକର ନାନାଭାବରେ ସୁନାମ ଥିଲା, ଅଧିକାର ପାଇଲା ପରେ ତାହାର ନିନ୍ଦା ଆରମ୍ଭ ହୁଏ । ଏକେ କୌଣସି ଲୋକ ସମସ୍ତଙ୍କୁ ସନ୍ତୁଷ୍ଟ କରିପାରେନା; ଏବଂ ଅସନ୍ତୁଷ୍ଟ ଦଳ ଅପପ୍ରଚାର କରିବାରେ ଆଶ୍ଚର୍ଯ୍ୟ କ'ଣ ? କିନ୍ତୁ ଅଧିକାଂଶ କ୍ଷେତ୍ରରେ ନିନ୍ଦାର ମୂଳ ଏହା ନୁହେଁ । ପ୍ରକୃତରେ ଅଧିକାର ପାଇଲା ପରେ ଅନେକ ଲୋକ ନିଜର, ନିଜ ଦଳର, ନିଜ ପ୍ରିୟାପ୍ରୀତିର ସୁବିଧା କିପରି କରିହେବ ତାହାହିଁ ଦେଖିବାକୁ ଆରମ୍ଭ କରନ୍ତି । ଏହାଠାରୁ ଅଧିକତର ଗର୍ହିତ ରାଷ୍ଟ୍ରୀୟ ଓ ନୈତିକ ଅପରାଧ ନ ଥାଇ ପାରେ । ଯେଉଁ ନେତା ନିର୍ମମ ନ୍ୟାୟ ବିତରଣ କରିବାକୁ ବଦ୍ଧପରିକର, ଯାହା କି କୌଣସି ଲୋଭ ଟଳାଇପାରେନା, ତାଙ୍କ ନିକଟରେ ସଫଳମନୋରଥ ଓ ବିଫଳମନୋରଥ ଉଭୟେ ନତମସ୍ତକ ।

ନେତା କହିଲେ କେବଳ ରାଜନୈତିକ ନେତା ବୁଝିବାକୁ ହେବ ନାହିଁ – ଅଫିସର ହେଡ୍, କାରଖାନାର ମ୍ୟାନେଜର୍, କଲେଜ ବା ସ୍କୁଲର ଅଧ୍ୟକ୍ଷ, କୁଟୁମ୍ବର ପରିଚାଳକ, ବାହିନୀପତି, ସେକ୍ରେଟାରୀୟାଟ୍‌ରେ ପ୍ରତ୍ୟେକ ଡିପାର୍ଟମେଣ୍ଟର ହେଡ୍– ବହୁ ଲୋକଙ୍କର ଭାଗ୍ୟ ଯେଉଁ ଜଣେ ଲୋକର ହାତରେ, ତାଙ୍କୁ ଜଣେ ନେତା ବୋଲି ଧରିବାକୁ ହେବ । ଜଣେ ଡିପାର୍ଟମେଣ୍ଟାଲ୍ ହେଡ୍ ଯଦି ଅପାରଗ ଓ ଖାମ୍‌ଖେୟାଲି ହୁଅନ୍ତି, ତେବେ ସାରା ଡିପାର୍ଟମେଣ୍ଟ କିପରି ଶୃଙ୍ଖଳାହୀନ ଅବନତି ଆଡ଼କୁ ଯିବ, ତାହା ଓଡ଼ିଶାର ସମସ୍ତେ ଅଙ୍ଗେ ନିଭେଇଛନ୍ତି । ତେଣୁ ଯେ ଦାୟିତ୍ୱ ରାଜନୈତିକ ନେତାର, ତା'ଠୁ ଜଣେ ହେଡ୍‌ମାଷ୍ଟର ବା ଜଣେ ଡିପାର୍ଟମେଣ୍ଟାଲ୍ ହେଡ୍‌ର ଦାୟିତ୍ୱ କିଛି କମ୍ ନୁହେଁ । ଛୋଟ ହେଉ ବା ବଡ଼ ହେଉ, ଶୀର୍ଷତ୍ୱ ପାଇଲେଇ ସେଥିରେ ଅହଂକାର, ଅଧିକାର, ସ୍ୱାର୍ଥପରତା, ପକ୍ଷପାତିତା ପ୍ରଭୃତିର ପ୍ରଲୋଭନ ଅଛିଇ ଅଛି; କିନ୍ତୁ ରାଜନୀତି ହେଉ ବା ଅଫିସ୍ ହେଉ, ଶୀର୍ଷସ୍ଥର ଏ ସବୁର ଉପରେ ଉଠି ବ୍ୟକ୍ତି-ଗୋଷ୍ଠୀ-ଜାତି-ଧର୍ମ-ନିର୍ବିଶେଷରେ ଅପକ୍ଷପାତ ନ୍ୟାୟ ବିଚାର ଦେବାହିଁ ପ୍ରଧାନ ଓ ପ୍ରଥମ ଦାୟିତ୍ୱ । ତା' ନ ହେଲେ ସମାଜ, ରାଷ୍ଟ୍ର ବା ଛୋଟ ଅଫିସ୍ କୌଣସିଠାରେ ଶୃଙ୍ଖଳା ରହିବ ନାହିଁ ।

ଅପକ୍ଷପାତ ବିଚାର ପରେ ନେତା ବା ଶୀର୍ଷସ୍ଥର ଦ୍ୱିତୀୟ ପ୍ରଧାନ ଗୁଣ ହେଉଛି, ନିଜର ବିଭାଗୀୟ ବିଷୟ ଉପରେ ବିସ୍ତୃତ ଓ ଗଭୀର ଅଧୀତ ଜ୍ଞାନ ବା ଭୂୟୋଦର୍ଶନ । ଶିକ୍ଷାବିଭାଗର ହେଡ୍ ଯିଏ ହେବ, ସିଏ ଶିକ୍ଷାବିଜ୍ଞାନରେ ବ୍ୟୁତ୍ପନ୍ନ ଲୋକ ନ ହେଲେ, ଡିପାର୍ଟମେଣ୍ଟ ତାଙ୍କଠୁ ପାଇବ କ'ଣ ? ତାଙ୍କୁ ଶ୍ରଦ୍ଧା ବା କିପରି କରିବ ? ଅନ୍ୟ ଡିପାର୍ଟମେଣ୍ଟ ସମ୍ବନ୍ଧରେ ବି ସେଇ କଥା । ଭିନ୍ନ ଭିନ୍ନ ଦଳ ସରକାର ଯଦି ନିଜର ପ୍ରିୟାପ୍ରୀତିଙ୍କି ଖୁସି କରିବା ପାଇଁ ଅଯୋଗ୍ୟତା ପ୍ରତି ଆଖି ବୁଜି ବଡ଼ ବଡ଼ ଚାକିରି ବାଣ୍ଟିବାରେ ଲାଗନ୍ତି, ତେବେ ଦେଶ ଧ୍ୱଂସ ଆଡ଼କୁ ଯିବାରେ ସନ୍ଦେହ ନାହିଁ ।

ଏ ସବୁ ପରେ ନେତା ବା ଶୀର୍ଷସ୍ଥର ଅନ୍ୟାନ୍ୟ ଅପରିହାର୍ଯ୍ୟ ଗୁଣ ହେଉଛି, ଅନ୍ୟ ତମ ପ୍ରତି ସହିଷ୍ଣୁତା, ଗୁଡ଼ାଏ କହି ନ କରିବା ଅପେକ୍ଷା ଅଳ୍ପ କହି ସେଇତକ କୌଣସି ମତେ କରିନେବାର ଧୈର୍ଯ୍ୟ ଓ ଅଭ୍ୟାସ, ପରିମିତ ଆହାର ବିହାର ଓ ଶାରୀରିକ ଉତ୍ତମ ସ୍ୱାସ୍ଥ୍ୟ ।

ନେତା ଦୁଇ ପ୍ରକାର– ସେବକ ଓ ଶାସକ । ସେବକ ନାୟକର ପ୍ରକୃଷ୍ଟ ଆଦର୍ଶ ଆମର ପ୍ରାଣର ବାପୁଜୀ । ଶାସକ-ନାୟକର ଆଦର୍ଶ ଭାବରେ ମୁଁ ଆବ୍ରାହାମ୍ ଲିନ୍‌କନ୍‌ଙ୍କୁ ଧରେ । ଏ ଦୁହିଁଙ୍କର ସାମ୍ୟ ଏହିଠି ଯେ, ସାମାନ୍ୟତମ ଲାଭ ପାଇଁ ମଧ୍ୟ ଏ ଦୁହେଁ କେବେହେଲେ ଜାତିକି ସେ ବାଟ ବତେଇନାହାନ୍ତି, ଯେଉଁଥିରେ ସତ୍ୟ, ନ୍ୟାୟ,

ଧର୍ମର କିଞ୍ଚିତ୍ ହେଲେ ଅବମାନନା ହେବ । ଲିନ୍‌କନ୍ ମାର୍କିନ୍ ଯୁକ୍ତରାଷ୍ଟ୍ରର ପ୍ରେସିଡେଣ୍ଟ ଥିଲେ; କିନ୍ତୁ କୃଷ୍ଣଜାତିକୁ ମାନବିକ ସ୍ୱାଧୀନତା ଦେବାପାଇଁ ତାଙ୍କ ଯୋଗୁ ସେହି ରାଷ୍ଟ୍ର ଦକ୍ଷିଣ ଓ ଉତ୍ତର ଦୁଇଭାଗ ହୋଇ ରକ୍ତାକ୍ତ ଗୃହବିବାଦରେ ମତ୍ତ ହୋଇଥିଲା । ଏହି ଯୁଦ୍ଧରେ କେବଳ ଗୋଟିଏ ଆଦର୍ଶ ପାଇଁ ଭାଇ ଭାଇ, ବନ୍ଧୁ ବନ୍ଧୁ ରଣଭୂମିରେ ଗଡ଼ାଗଡ଼ି ହେବାର ରୋମାଞ୍ଚକର କାହାଣୀ ପ୍ରତ୍ୟେକ ଭାରତୀୟର ପଢ଼ିବା ଉଚିତ । ସେଇ ପାଞ୍ଚଟି ବର୍ଷ ଲିନ୍‌କନ୍ ନିଜ ନେତୃତ୍ୱରେ ନିଜ ଜାତିର ରକ୍ତକ୍ଷୟ ଦେଖି କି ମର୍ମଦଗ୍ଧ ଯନ୍ତ୍ରଣା ଭିତର ଦେଇ ଯାଇଥିବେ ତାହା କେବଳ ଅନୁମେୟ; କିନ୍ତୁ ଉଦାର ମାନବିକ ଆଦର୍ଶ ପାଇଁ ତାଙ୍କୁ ତାହା କରିବାକୁ ହେଉଥିଲା । ସେ ବିଜୟ ଲାଭ କଲେ । କୃଷ୍ଣଜାତି ଦାସତ୍ୱରୁ ମୁକ୍ତିପାଇଲା; କିନ୍ତୁ ବିଜୟ ନିଶୀଥରେ ହିଁ ମହାପ୍ରାଣ ଲିନ୍‌କନ୍ ଆତତାୟୀ ହସ୍ତରେ ନିହତ ହେଲେ ।

ଏପରି ଶାସକ-ନାୟକଠାରୁ ମଧ ସେବକ-ନାୟକ ମହତ୍ତର । ଲିନ୍‌କନ୍‌ଙ୍କଠାରୁ ବାପୁଜୀ ଉଚ୍ଚତର, କାରଣ ଲିନ୍‌କନ୍ ପ୍ରେସିଡ଼େଣ୍ଟ ହେବାପାଇଁ ଚେଷ୍ଟାକରିଥିଲେ, କିନ୍ତୁ ବାପୁଜୀ ଦିନେ ହେଲେ କୌଣସି ପଦ ପଦବୀ ପାଇଁ ଚେଷ୍ଟା କରି ନ ଥିଲେ । ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ ଥଲା, ଦୁଃସ୍ଥ ମାନବର ସେବା କରିବା ।

ସବୁ ନେତା ବା ଶୀର୍ଷସ୍ଥ ଏପରି ମହାପୁରୁଷ ହେବେ ବୋଲି ଆଶା କରିବା ବାତୁଳତା ମାତ୍ର; କିନ୍ତୁ ପ୍ରତ୍ୟେକ ନେତା, ଦଳପତି ବା ଶୀର୍ଷସ୍ଥ ଅନ୍ତତଃ ମହାନ୍ ଆଦର୍ଶକୁ ସବୁବେଳେ ଆଗରେ ରଖି କାମ କରିବା ଯଥେଷ୍ଟ ସମ୍ଭବପର । ଜଣା-ଅଛି, ଲିନ୍‌କନ୍‌ଙ୍କ ପରେ ପ୍ରାୟ ପ୍ରତ୍ୟେକ ମାର୍କିନ ପ୍ରେସିଡ଼େଣ୍ଟ ରାଷ୍ଟ୍ରର ଜଟିଳ ସମସ୍ୟା ଦ୍ୱାରା ବିଚଳିତ ହେଲେ ମନେ ମନେ ଭାବନ୍ତି– 'ଏଇ ଅବସ୍ଥାରେ ଲିନ୍‌କନ୍ କ'ଣ କରିଥାନ୍ତେ ?' ତାହାହିଁ ପ୍ରକୃଷ୍ଟ ପନ୍ଥା । ଆଦର୍ଶକୁ ସମ୍ମାନ କରିବାକୁ ଯାଇ ବିଫଳ ହେବା, ଆଦର୍ଶକୁ ପାଦରେ ଦଳି ବିଜୟୀ ହେବାଠାରୁ ନିଶ୍ଚୟ ମହତ୍ତର ଓ ଅଧିକ ଗୌରବାବହ କର୍ମ । ଯେଉଁ ନେତା ବା ଦଳପତି ସତ୍ୟ ନ୍ୟାୟ ଧର୍ମକୁ ବଳିଦେଇ ସାଂପ୍ରତିକ ବାହାବା ନେବାରେ ତତ୍‌ପର, ତାଙ୍କର ବାହାବା କ୍ଷଣସ୍ଥାୟୀ ଓ ଦେଶର ସମୂହ ଅକଲ୍ୟାଣର ଏକ ପ୍ରସ୍ତୁତି ।

ପୂର୍ବେ କହିଛି ଯେ, କ୍ରମେ କ୍ରମେ ରାଷ୍ଟ୍ର ସମାଜକୁ କବଳିତ କରିବାକୁ ଯାଉଛି । ଆମର ସମଗ୍ର ସାମାଜିକ ଜୀବନ ରାଷ୍ଟ୍ର ବା ରାଷ୍ଟ୍ରଶାସକର କରଗତ ହେବାକୁ ଯାଉଛି । ବାପୁଜୀ ଏହି ବ୍ୟାପକ ଛନ୍ଦଣି-ବନ୍ଧଣିର ଘୋର ବିରୋଧୀ ଥିଲେ । ସେ ଚାହୁଁଥିଲେ ବିଶ୍ୱମାନବତା; କିନ୍ତୁ 'ତା' ସଙ୍ଗେ ସେ ମଧ ସ୍ୱପ୍ନ ଦେଖୁଥିଲେ କ୍ଷୁଦ୍ରତମ ଗ୍ରାମ ଓ ପରିବାର ସ୍ୱାବଲମ୍ବୀ ହେଉ । କ୍ଷୁଦ୍ର ଓ ବିରାଟର ଏଇ ମଧୁର

ସଂପର୍କ ସ୍ଥାପନ ହିଁ ବାପୁଜୀଙ୍କ ରାମରାଜ୍ୟର ବ୍ୟବସ୍ଥା । ପ୍ରାଚୀନ ଭାରତର ରାଜ୍ୟବ୍ୟବସ୍ଥା ଏଇ ନୀତିରେ ଗଠିତ ହୋଇଥିଲା । ଆଜି କିନ୍ତୁ ଫାସିଷ୍ଟ୍ ନୀତିରେ ବିରାଟ ଶାସନଯନ୍ତ୍ର ଆମ ପରି ଅଗଣିତ କ୍ଷୁଦ୍ରର ସକଳ ସ୍ୱାତନ୍ତ୍ର୍ୟ ଅପହରଣ କରି ଆମକୁ ସେହି ଯନ୍ତ୍ରର ଏକ କଣ୍ଟା ମାତ୍ର କରିବାକୁ ବସିଛି; ଏହା ସର୍ବତୋଭାବରେ ପ୍ରତିରୋଧ୍ୟ । ନିଜର ଲୁଗା, ନିଜର ଖାଦ୍ୟ, ନିଜର ଆସବାବ୍ ନିଜ ହାତରେ ସୃଷ୍ଟିକରି, ରାଷ୍ଟ୍ରର ବା ଯନ୍ତ୍ର-ସଭ୍ୟତାର କବଳରୁ ନିଜକୁ ରକ୍ଷାକରି, କିପରି ସ୍ୱାବଲମ୍ବୀ କରାଯାଇପାରେ, ବାପୁଜୀ ତା'ର ସର୍ବତ୍ର ପ୍ରଯୋଜ୍ୟ କର୍ମପନ୍ଥା ଦେଇଯାଇଛନ୍ତି । ସେସବୁ ଆମେ ଗ୍ରହଣ ଓ ଅଭ୍ୟାସ ନ କରି ଅନ୍ୟକୁ ଦୋଷ ଦେବାରେ ବା କି ଲାଭ ?

ରାଷ୍ଟ୍ର ଶାନ୍ତି ଓ ନିରାପତ୍ତା ଉପରେ ପ୍ରତିଷ୍ଠିତ । ସମାଜ ପ୍ରତିଷ୍ଠିତ ମାତୃତ୍ୱ ଉପରେ । ଯୌନ-ଭୋଗ, ମାତୃତ୍ୱ ପାଇଁ ପ୍ରକୃତିର କୌଶଳ ମାତ୍ର । ନାରୀ ତା'ର ସୃଜନୀ-କ୍ଷୁଧାର ଉପଶମ ପାଇଁ ମୋହିନୀ ରୂପରେ ଆବିର୍ଭୂତ ହୁଏ ଓ ପୁରୁଷର ପ୍ରେୟସୀ ହୁଏ । ମାନବିକ ସମାଜ ପ୍ରିୟା ଓ ଜନନୀ ଏହି ଦୁଇବିନ୍ଦୁକୁ କେନ୍ଦ୍ର କରି ଘୂରୁଛି ଏବଂ ସେହିମାନଙ୍କ ସଂପର୍କର ପ୍ରଭାବରେ କୋଟି କୋଟି ଛୋଟ ଗୋଷ୍ଠୀ ଗଢ଼ିଉଠୁଛି, ଯେଉଁଠି ଅନ୍ତତଃ ମନୁଷ୍ୟ ଜାନୁୟାର ନୁହେଁ ଏବଂ ଯେଉଁଠି କୌଣସି ରାଷ୍ଟ୍ରର ଅକ୍‌ଟୋପାସ୍ ସାମାଜିକ ମାଧୁର୍ଯ୍ୟକୁ ଶୋଷିଦେଇ ପାରିବ ନାହିଁ । ଆମର ତେଣୁ ଏ ବିଷୟରେ ସଦା ଜାଗ୍ରତ ରହିବା ଉଚିତ ଯେ, ଛୋଟ ଗୋଷ୍ଠୀ ବା ପାରିବାରିକ ଜୀବନରେ ଯେପରି ଶାନ୍ତି, ଶୃଙ୍ଖଳା ଓ ସଦ୍‌ଭାବ ଜୀବନ୍ତ ରହି ବାହାରର ଅତ୍ୟାଚାରରୁ ଆମକୁ ଆଶ୍ରୟ ଦିଏ । ସ୍ୱାମୀ-ସ୍ତ୍ରୀ, ବାପ-ପୁଅ, ଭାଇ-ଭାଇ, ଭାଇ-ଭଉଣୀର ସଂପର୍କ ଯେଉଁଠି ମାଧୁର୍ଯ୍ୟମୟ ସେହିଠିହିଁ ଧରାସ୍ୱର୍ଗ । ଯେଉଁ ଲୋକ ଜୀବନରେ ଉତ୍ତମ ଜନନୀ ଓ ଉତ୍ତମ ପ୍ରେୟସୀ ପାଇଛନ୍ତି, ଦାରିଦ୍ର୍ୟ ସତ୍ତ୍ୱେ, ତାଙ୍କଠୁ ଅଧିକ ଭାଗ୍ୟବାନ୍ ଲୋକ ଥାଇ ନ ପାରନ୍ତି ।

ସମାଜର ବା ରାଷ୍ଟ୍ରର ବା ବିଶୃଙ୍ଖଳା ବା ଅବାଞ୍ଛନୀୟତା ପାଇଁ ଆମ ସମସ୍ତଙ୍କର ବଦ୍ଧମୂଳ ଅଭ୍ୟାସ, ଆମ ଛଡ଼ା ଅନ୍ୟ ସମସ୍ତଙ୍କୁ ଗାଳିଦେବା; କିନ୍ତୁ ଅନ୍ୟକୁ ଦୋଷ ଦେବା ପୂର୍ବରୁ ପ୍ରତ୍ୟେକର ଆତ୍ମପରୀକ୍ଷା କରି ଦେଖିନେବା ଉଚିତ୍, ସିଏ ସେହି ବିଶୃଙ୍ଖଳା ବା ପାପାଚାର ପାଇଁ କିଂଚିତ୍ ପରିମାଣରେ ହେଲେ ଦାୟୀ କି ନାହିଁ ? ଏଠାରେ କନ୍‌ଫୁସିଅସ୍‌ଙ୍କ ଏକ ବାଣୀ ଆମ ସମସ୍ତଙ୍କର ପ୍ରଣିଧାନ ଓ ଅଭ୍ୟାସ କରିବାର କଥା –

''ଯଦି ପୃଥିବୀକୁ ସଂଶୋଧନ କରିବାକୁ ଚାହଁ, ତେବେ ଆଗେ ନିଜ ଜାତିକି ସଂଶୋଧନ କର । ନିଜ ଜାତିକି ସଂଶୋଧନ କରିବାକୁ ଯଦି ଅଭିଳାଷ, ତେବେ ନିଜ ପରିବାରକୁ ସଂଶୋଧନ କର । ନିଜ ପରିବାରକୁ ସଂଶୋଧନ କରିବାକୁ ଯଦି ଚାହଁ, ତେବେ ଆଗେ ନିଜକୁ ସଂଶୋଧନ କର ।''

## ୨ । ପ୍ରେମ ଓ ବିବାହ

ପୃଥିବୀର ବାଳକ ଓ ବାଳିକା ଦାଣ୍ଡରେ ମାଟି ଗୋଡ଼ି ନେଇ ଖେଳୁଥାନ୍ତି; ଅନିଚ୍ଛାରେ ପାଠଶାଳାକୁ ଯାନ୍ତି, ବଣ-ବିଲ-ତୋଟାମାଳରେ ଅକ୍ଲାନ୍ତଭାବରେ ବୁଲି, ଲୁଚେଇ ଲୁଚେଇ କୋଳି, ଆମ୍ବ, ପିଜୁଳି ତୋଳି ଖାନ୍ତି ଏବଂ ବେଳେ ବେଳେ ବଡ଼ମାନଙ୍କଠାରୁ ବେଶ୍ ବିଧିମତ କର୍ଣ୍ଣମୋଚନ ଓ ଚପେଟାଘାତ ବି ଅପ୍ରଚୁର ଭାବରେ ପାଇଥାନ୍ତି । ଏଣେ କଳ୍ପଜଗତରେ କିନ୍ତୁ ସେମାନେ ବୁଲୁଥାନ୍ତି ରଜାପୁଅ, ମନ୍ତ୍ରୀପୁଅ, ରାଜକନ୍ୟା ଓ ଅସୁରୁଣୀ ବୁଢ଼ୀର ରାଜ୍ୟରେ । ଅମୁହାଁ ଦେଉଳରେ ବନ୍ଦିନୀ ରାଜକନ୍ୟା ଶୋଇଛି, ରାଜପୁତ୍ର ଛୁଇଁଲେ– ଏଇ ତା'ର ମୋହ ଭଙ୍ଗ ହେବ ।

ସଦୟ ପ୍ରକୃତି, କିନ୍ତୁ ଅଲକ୍ଷିତଭାବରେ, ଧନୀ-ଦରିଦ୍ର ନିର୍ବିଶେଷରେ ଜଗତର ସକଳ କିଶୋର କିଶୋରୀଙ୍କ ପାଇଁ ସେମାନଙ୍କର କଳ୍ପଲୋକକୁ ସତ୍ୟକରିଦିଏ । ସେ ପଠାଇଦିଏ ଶିଳ୍ପୀ ଯୌବନକୁ । ଯୌବନ, ଧନୀ-ଦରିଦ୍ର ନିର୍ବିଶେଷରେ ସକଳ କିଶୋରକିଶୋରୀଙ୍କି କରିଦିଏ ରାଜପୁତ୍ର ଓ ରାଜକନ୍ୟା– ଅନ୍ତତଃ କିଛି କାଳ ପାଇଁ । ମାଟିର ପୃଥିବୀ ସ୍ୱର୍ଗ ହୋଇଉଠେ । ଜୀବନର ପ୍ରଥମ ଓ ପ୍ରଧାନ ଆକର୍ଷଣ ହୁଏ ଏହି ରାଜପୁତ୍ର ଓ ରାଜକନ୍ୟାର ଦଳ ପରସ୍ପରକୁ କିପରି ପାଇବେ; ତା' ନ ହେଲେ ଏ ଜୀବନ ଯେ ବୃଥା ।

ଯୌବନ-ରଙ୍ଗମଞ୍ଚରୁ ଓହ୍ଲାଇ ଆସିଲା ପରେ ଅନେକେ ମନେକରନ୍ତି– ଆଃ, କି ବୋକାମି ନ କଲି ! ଏସବୁ ନ ହୋଇଥିଲେ କ'ଣ କ୍ଷତି ହୋଇଯାଇଥାନ୍ତା; ଏ ଯେ ଏକ ବୃଥା ଅଭିନୟ ମାତ୍ର ।

କିନ୍ତୁ ତଳେଇ ଦେଖିଲେ ବୁଝାଯିବ ଯେ, ସେଇ କେତେ ଦିନର ଅଭିନୟ ଉପରେ ହିଁ କେବଳ ଜୀବଗ୍ରାମର ସ୍ଥିତି ଯେ ନିର୍ଭର କରୁଛି ତାହା ନୁହେଁ, ଯାହାକୁ ଆମେ ମାନବିକ ସଭ୍ୟତା କହୁଁ, ତା'ର ଉଦ୍ଭବ ସେଇ ରଙ୍ଗମଞ୍ଚରୁ । ରାଜକନ୍ୟାମାନଙ୍କୁ କେନ୍ଦ୍ର କରି ରାଜପୁତ୍ରମାନେ ଯେଉଁ ସାଧନା, ଆବିଷ୍କାର, ଓ ସୃଷ୍ଟି କରିଯା'ନ୍ତି, ତାହାହିଁ ପୃଥିବୀର ସଭ୍ୟତା ଓ ସମାଜ ।

ରାଜପୁତ୍ର ଓ ରାଜକନ୍ୟାମାନଙ୍କର ପରସ୍ପରକୁ ପାଇବାର ଇଚ୍ଛାର ନାମ ପ୍ରେମ । ନୀତିବାଗୀଶମାନେ କହିବେ ପ୍ରେମ ବୋଲି କିଛି ନାହିଁ – ସେ କଥାଟା କେବଳ କାମ; ଅର୍ଥାତ୍ ନିଛକ ଯୌନ ଆକର୍ଷଣ, ଅର୍ଥାତ୍ ପରିତ୍ୟାଜ୍ୟ ଓ ଘୃଣ୍ୟ ।

କିନ୍ତୁ ଯା' ଉପରେ ଜୀବଗ୍ରାମର ସ୍ଥିତି ନିର୍ଭର କରୁଛି, ଯେଉଁଥିରୁ ଆମ ପରି ଇତର ଜନର କଥା ଛାଡ଼ି ଦିଅ, ବୁଦ୍ଧ, ମହମ୍ମଦ, ଆଏନ୍‌ଷ୍ଟାଇନ୍, ସେକ୍‌ସପିଅର, କାଳିଦାସ, ଗାନ୍ଧୀଜୀ ପ୍ରଭୃତିଙ୍କର ସୃଷ୍ଟି ସମ୍ଭବ ହୋଇଛି, ସେ କ୍ରିୟା ଘୃଣ୍ୟ କିପରି ହେବ ?

ଧରାରେ ଜନ୍ମ ହେବା ଓ ବଞ୍ଚିବାଟାକୁହିଁ ଯଦି ଏକ ଅଭିଶାପ ବା ପୂର୍ବକୃତ ପାପ ଅପରାଧର ଶାସ୍ତି ବୋଲି ଧରାଯାଏ, ତେବେ ଅବଶ୍ୟ ଏ ଜୀବନର ସମସ୍ତ ଆମୋଦ ପ୍ରମୋଦ, ଭୋଗ ବାସନା ଘୃଣ୍ୟ ବା ପରିତ୍ୟାଜ୍ୟ ହୋଇପାରେ । ତା' ହେଲେ ଯୌନଆକର୍ଷଣ କାହିଁକି, ଭୋଜନ, ପରିଧାନ ପ୍ରଭୃତି ବଞ୍ଚିବାର ସବୁ କିଛି ଆନୁଷଙ୍ଗିକ କ୍ରିୟା ଘୃଣ୍ୟ ଓ ପରିତ୍ୟାଜ୍ୟ ହେବା ଉଚିତ । ପାର୍ଥିବ ଜୀବନ ପରି ଅଭିଶାପରୁ ମୁକ୍ତି ପାଇବାର ସିଧା ବାଟ ମଧ୍ୟ ହେଉଛି, ବଡ଼ ମନିଷର ଆତ୍ମହତ୍ୟା ଓ ଜନ୍ମମାତ୍ରେ ଶିଶୁହତ୍ୟା ।

ବାଟୋଇ ବାଟ ପାଖରେ ଗଛମୂଳେ ମୁଠେ ଫୁଟେଇ ଖାଇ ଚାଲିଯାଏ; କିନ୍ତୁ ସେହି ଅଳ୍ପକ୍ଷଣ ପାଇଁ ମଧ୍ୟ ସେ ଗଛମୂଳଟି ସଫା ସୁତୁରା କରିବା ଓ ଗଲାବେଳେ ମଧ୍ୟ ସେଇପରି ସଫାସୁତୁରା କରି ଛାଡ଼ିଯିବାରେ ଯଦି ଦୂଷଣୀୟ କିଛି ନ ଥାଏ, ତେବେ ପାର୍ଥିବ ଜୀବନର ଭୋଗ, ବାସନା, ଆମୋଦ ପ୍ରମୋଦ ଗୁଡ଼ିକୁ ସଂସ୍କୃତ, ରୁଚିବନ୍ତ, ମାର୍ଜିତ, ସୁସ୍ଥ, ବର୍ଣ୍ଣମୟ, କଳାସମ୍ପନ୍ନ କରିବାରେ କିଛି ମାତ୍ର ଦୋଷ ନାହିଁ ।

ପ୍ରାଣୀଜଗତ୍‌ରେ ଯାହା ନିଛକ ଯୌନସମ୍ଭୋଗ ମାତ୍ର, ନରସମାଜରେ ତାହାହିଁ ରୁଚିବନ୍ତ, ବର୍ଣ୍ଣମୟ, କଳାସମ୍ପନ୍ନ ହୋଇ ବିବର୍ତ୍ତିତ ହୋଇଛି ପ୍ରେମ ରୂପରେ । ଅନ୍ୟ ପ୍ରାଣୀଠାରେ ଯାହା କେବଳ ପ୍ରକୃତି-ପ୍ରେରିତ ଗୋଷ୍ଠୀସଂପ୍ରସାରଣୀ କ୍ରିୟା ମାତ୍ର, ମନୁଷ୍ୟଠାରେ ତାହା ହୋଇଛି ଜୀବନର ଏକ ପରମ ଭୋଗ୍ୟ ଐଶ୍ୱର୍ଯ୍ୟ, ନିବିଡ଼ ଆଧ୍ୟାତ୍ମିକ ଅନୁଭୂତି, କଳା ଓ ସାହିତ୍ୟର ଲୀଳାପୀଠ, ଯେଉଁଥିରୁ ଉଦ୍ଭବ ହୋଇଛି ତାଜମହଲ, ମେଘଦୂତ, ଶକୁନ୍ତଳା, ଡିଭାଇନ୍ କମେଡ଼ି ।

ମାନିବାକୁ ହେବ, ମନୁଷ୍ୟ ଅନେକାଂଶରେ ଏପର୍ଯ୍ୟନ୍ତ ପ୍ରାଣୀହିଁ ଅଛି । ହିଂସା ଓ କାମ, ଜନ୍ତୁର ଏଇ ଦୁଇଟି ପ୍ରଧାନ ଲକ୍ଷଣ ସାଧାରଣ ମନୁଷ୍ୟଠାରେ ଏଯାଏଁ ପୂରା ବନ୍ୟ ଅବସ୍ଥାରେ ଅଛି । ହିଂସାର ଉପଦ୍ରବ, ଯୁଦ୍ଧବିଧ୍ୱସ୍ତ ଇଉରୋପ ଏବଂ ରକ୍ତାକ୍ତ ପାଲିଷ୍ଟିନ୍ ଓ ଭାରତବର୍ଷ ମର୍ମେ ମର୍ମେ ଭୋଗକରୁଛି । ଭାରତବର୍ଷରେ ସାଂପ୍ରଦାୟିକ କଳହ ଫଳରେ ଉଭୟ ପକ୍ଷରୁ ସହସ୍ର ସହସ୍ର ନାରୀ ଅପହରଣ ସୂଚିତ କରୁଛି ଯେ, କାମ ପ୍ରବୃତ୍ତିରେ ମଧ୍ୟ ମନୁଷ୍ୟ ରହିଛି ଆଦିମ ଓ ଜାନ୍ତବ ।

କିନ୍ତୁ ପୃଥିବୀରେ ଅନେକ ଜାତି ଏପର୍ଯ୍ୟନ୍ତ ଲୁଗା ପିନ୍ଧି ନାହାନ୍ତି ବୋଲି ଆମେ ଯେଉଁମାନେ ସହସ୍ର ସହସ୍ର ବର୍ଷ ଧରି କେବଳ ଲୁଗା ଯେ ନ ପିନ୍ଧିଛୁ ନୁହେଁ,

ଯେଉଁମାନଙ୍କ ହାତରେ ବସ୍ତକଳା ଅକଳ୍ପନୀୟ ଭାବରେ ଗତିଶୀଳ ହୋଇଚାଲିଛି, ସେମାନେ ବସ୍ତୁକୁ ପରିତ୍ୟାଗ କରିବା ବା ହେୟଜ୍ଞାନ କରିବା ଯାହା, କାମ ଓ ହିଂସାରେ ଅଧିକାଂଶ ମନୁଷ୍ୟ ଏ ପର୍ଯ୍ୟନ୍ତ ଗୂଢ଼-ଜାନ୍ତବ ପ୍ରକୃତି ପରିତ୍ୟାଗ କରିପାରିନାହାନ୍ତି ବୋଲି, କାମଭାବକୁ ଘୃଣ୍ୟ ବିବେଚନା କରିବା ସେଇୟା ।

ପ୍ରକୃତିରେ ମନୁଷ୍ୟ ଯାହା ଯୋଗକରେ, ତାହାହିଁ ସଂସ୍କୃତି ବା ସଭ୍ୟତା । ପ୍ରକୃତି କେବଳ କଞ୍ଚା ମାଲ ଯୋଗାଏ । ମନୁଷ୍ୟକୁ ବିଧାତା ଦେଇଛି ବୁଦ୍ଧି, ଅନୁଭୂତି ଓ କଳ୍ପନା– ଯାହା ବଳରେ ସେ ଏଇ କଞ୍ଚାମାଲକୁ ରୂପାନ୍ତରିତ କରି ତା'ର ସଭ୍ୟତା ଗଢ଼େ । ନଗଣ୍ୟ, ହେୟ ପଥରରୁ ମନିଷ ସୃଷ୍ଟି କରିଛି ମନୋଜ୍ଞ ଚୀନାଂଶୁକ ଏବଂ ଯାହା ଗାଈ, କୁକୁରଠାରେ ସାମୟିକ ଯୌନ ସମ୍ପର୍କ ମାତ୍ର, ସେଥିରୁ ବିବର୍ତ୍ତିତ ହୋଇଛି ମାନବିକ ସମାଜର ରୋମାଞ୍ଚକ ପ୍ରଣୟଲୀଳା ।

ମାନବିକ ପ୍ରଣୟ ଲୀଳାରେ କେନ୍ଦ୍ର ବସ୍ତୁ ଯେ ଯୌନ ଆକର୍ଷଣ ଏବଂ ଜୀବସଂପ୍ରସାରଣ ପାଇଁ ପ୍ରକୃତିର ଯେ ଏହା ଏକ ଜାଲ ମାତ୍ର, ଏଥିରେ କୌଣସି ସନ୍ଦେହ ନାହିଁ । ଏହି ଆକର୍ଷଣ ସ୍ତ୍ରୀ ଓ ପୁରୁଷ ଜୀବନରେ ଠିକ୍ ସେହି ବୟସରେ ଆରମ୍ଭହୁଏ, ଯେତେବେଳେ ଉଭୟେ ଜୀବ-ପ୍ରଜନନ ପାଇଁ ଉପଯୁକ୍ତ ହୁଅନ୍ତି । ଜୀବ-ପ୍ରଜନନ ଶକ୍ତିର ଦୁର୍ବଳତା ସଙ୍ଗେ ସଙ୍ଗେ ଏହି ଆକର୍ଷଣ ମଧ୍ୟ କମିଆସେ; କିନ୍ତୁ ପ୍ରକୃତିର ଯାହା ନିଛକ ଆବଶ୍ୟକତା, ବୁଦ୍ଧି ଓ କଳ୍ପନାର ସଞ୍ଚାର କରି ମନୁଷ୍ୟ ତାକୁ ଉପଭୋଗ୍ୟ ବିଳାସରେ ପରିଣତ କରିପାରେ ଓ ବହୁ ଯୁଗ ଧରି ତାହାହିଁ ହୋଇଆସିଛି – ତାହାହିଁ ପ୍ରେମ ।

ପ୍ରେମରେ ଦେହ ଓ ଚିତ୍ତର ମିଶ୍ରିତ କ୍ରିୟା ରହିଥାଏ । ଯେଉଁଠି କ୍ରିୟା କେବଳହିଁ ଦୈହିକ ଓ ଯେତିକି ଦୈହିକ ତାହା ସେହି ପରିମାଣରେ ପାଶବ । ଯେଉଁଠି ପ୍ରେମ କେବଳ ଚିତ୍ତର ବା ଅଧିକାଂଶ ଭାବରେ ଚିତ୍ତର, ପ୍ରେମ ସେତିକି ମଧୁର, ସ୍ଥାୟୀ, ସୁନ୍ଦର ଓ ଶୁଭଂକର । ଦୈହିକ ସଂପର୍କରୁ ଅକସ୍ମାତ୍ କେବେ ଜୀବ-ଜନନ ହୋଇଥାଏ, କିନ୍ତୁ ଅଧିକାଂଶ ଭାବରେ ଏହା କ୍ଷଣସ୍ଥାୟୀ, ଦେହ ଓ ମନର ବୈକ୍ଲବ୍ୟଦାୟୀ ଏବଂ ପରିଣାମରେ ଅସୁଖକର ଓ ଅଶୁଭକର । ଚିତ୍ତ ଚିତ୍ତର ଦେହହୀନ ବା ଦେହନିମ୍ନ ସଂପର୍କରୁ ହିଁ ଉତ୍କୃଷ୍ଟ କଳା ଓ କବିତାର ଉତ୍ପତ୍ତି ।

ବହୁ ସହସ୍ର ବର୍ଷ ପୂର୍ବେ ଭାରତୀୟ ଋଷିମାନେ ଯାହା ଆବିଷ୍କାର କରିଥିଲେ, ଏବେ ବିଜ୍ଞାନ ତାହା ପ୍ରମାଣ କରୁଛି ଯେ, ମନୁଷ୍ୟର ମସ୍ତିଷ୍କ ସଙ୍ଗେ ତା'ର ଜନନେନ୍ଦ୍ରିୟର ସଂପର୍କ କେବଳ ଘନିଷ୍ଠ ନୁହେ, ଘନିଷ୍ଠତମ । ବିବର୍ତ୍ତନ ସୂତ୍ରକୁ ପର୍ଯ୍ୟବେକ୍ଷଣ କଲେ ଦେଖାଯାଉଛି ଯେ, ପ୍ରାଗୈତିହାସିକ ଯୁଗରେ ମନୁଷ୍ୟର ମସ୍ତିଷ୍କ

ବର୍ତ୍ତମାନ ପରି ନ ଥିଲା । ମନୁଷ୍ୟର ଜନନେନ୍ଦ୍ରିୟ ଓ ତତ୍‌ସଂପର୍କିତ ଗ୍ରନ୍ଥି ସମୂହ ମଧ୍ୟ ଏବପରି ନ ଥିଲା । ଏହି ଉଭୟ ଅବୟବର ବିବର୍ତ୍ତନ ସମାନସ୍କନ୍ଧ ଭାବରେ ଉଠି ଉଠି ଏବର ଅବସ୍ଥାକୁ ଆସିଛି । ପୁରୁଷର ଅଣ୍ଡକୋଷ ଶିଶୁସୃଷ୍ଟି ପାଇଁ ଯେ କେବଳ ମଞ୍ଜି ଯୋଗାଏ ତାହା ନୁହେଁ, ସେହି ମଞ୍ଜି-ସଂପୃକ୍ତ ଲାଳଦ୍ରବ୍ୟରେ ଏପରି କିଛି ଉପାଦାନ ଅଛି, ଯାହା ରକ୍ତରେ ସଂଚାରିତ ହୋଇ ମସ୍ତିଷ୍କକୁ ପରିପୁଷ୍ଟି ଦେଇପାରେ । ମସ୍ତିଷ୍କ ମନୁଷ୍ୟର ଉତ୍ତମାଙ୍ଗ; ସେଇ ଧୂସର ପଙ୍କ-ପିଣ୍ଡରେ ଥାଏ ମନୁଷ୍ୟର ବୁଦ୍ଧି, କଳ୍ପନା, ସୃଜନ ଶକ୍ତି ବା ଯାହା କିଛି ମନୁଷ୍ୟକୁ ମନୁଷ୍ୟ ବୋଲି ପରିଚିତ କରାଉଛି । ସେଇଥିରୁ ବାହାରିଛି– କାବ୍ୟ, ଦର୍ଶନ, କଳା । ତେଣୁ ସେହି ମସ୍ତିଷ୍କକୁ ସତେଜ, ବଳବନ୍ତ, ପରିପୁଷ୍ଟ ରଖିବା ପ୍ରତ୍ୟେକ ପୁରୁଷର ଏକାନ୍ତ କର୍ତ୍ତବ୍ୟ । ମସ୍ତିଷ୍କର ଉତ୍କୃଷ୍ଟ ପରିପୋଷକ ଖାଦ୍ୟ ହେଉଛି ମନୁଷ୍ୟର ଅଣ୍ଡକୋଷରେ ସୃଷ୍ଟି ହେଉଥିବା ଜୀବ-ବୀଜ । ସେଥିପାଇଁ ଆମର ବିଜ୍ଞ ଶାସ୍ତ୍ରକାର କହିଥିଲେ, 'ଜୀବନଂ ବିନ୍ଦୁଧାରଣାତ୍' । ଜୀବନକୁ ସୁଖମୟ ଓ ସ୍ୱାସ୍ଥ୍ୟପୂର୍ଣ୍ଣ ଭାବରେ ଉପଭୋଗ କରିବାକୁ ଇଚ୍ଛା ଥିଲେ, ଜୀବ-ବୀଜର ବୃଥା ଅପଚୟ ରୋଧନ ପ୍ରଥମ କର୍ତ୍ତବ୍ୟ ।

ଯେଉଁଠାରେ ପ୍ରକୃତ ପ୍ରେମର ସଂଚାର ହୁଏ, ସେଠି ଦେହ ଗୌଣ ହୁଏ ବା ଦେହର ପରାଜୟ ଘଟେ । ପ୍ରକୃତ ପ୍ରଣୟୀଯୁଗଳ ଜାଣିପାରନ୍ତିନି– ଯେ, ସେମାନେ କାହିଁକି ପରସ୍ପର ପ୍ରତି ଏତେ ଆକୃଷ୍ଟ । ସେମାନେ କେବଳ ଚାହାନ୍ତି ପରସ୍ପରକୁ ଚାହିଁରହିବାକୁ– ନୟନର ଦ୍ୱାର ଦେଇ ଏକ ଆତ୍ମା ଅନ୍ୟ ଆତ୍ମାର ମିଳନ-ଭୋଗ ଚାହେ ମାତ୍ର । ପ୍ରଣୟୀ ଚକ୍ଷୁରେ ଦେହ ଓ ଆତ୍ମା ଏପରି ଅଙ୍ଗାଙ୍ଗୀ ଭାବରେ ମିଶ୍ରିତ ହୋଇଯାନ୍ତି ଯେ, ଅନ୍ୟ ପ୍ରଣୟୀର ଦେହ ତା' ନିକଟରେ ଆତ୍ମା, ତା'ର ଆତ୍ମାହିଁ ତା'ର ଦେହ । ସେଥିଲାଗି ପାଗଳା ଶିବ ସତୀଙ୍କ ମୃତ ଦେହଟାକୁ ଧରି ବିଶ୍ୱ ଜଗତ୍ ପରିଭ୍ରମଣ କରିଥିଲେ । ମନୁଷ୍ୟର କଥା ଛାଡ଼ିଦିଅ, ଅନେକ ଜୀବଜନ୍ତୁ ମଧ୍ୟ ପ୍ରିୟଜନର ମୃତ ଦେହକୁ ଜଗି ଜଗି ନିରାହାରରେ ପ୍ରାଣ ହରାଇବାର ଶୁଣା ଅଛି ।

କେବଳ ରୂପର ଆକର୍ଷଣରୁ ଯେ ଅନେକ କ୍ଷେତ୍ରରେ ପ୍ରଣୟର ଉଦ୍‌ଭବ ହୁଏ ଏହା ଜଣା କଥା । ଏହାମଧ୍ୟ ଜଣାକଥା ଯେ, ପରିଚୟରୁ ମଧ୍ୟ ପ୍ରଣୟର ଜନ୍ମ ହୁଏ । ଅଧିକାଂଶ ପ୍ରାଚ୍ୟ ଦେଶ ପରି ଅନେକ ପାଶ୍ଚାତ୍ୟ ଦେଶରେ ମଧ୍ୟ କିଶୋର-କିଶୋରୀମାନଙ୍କର ବିବାହ ପିତାମାତାଙ୍କ ଦ୍ୱାରା ସ୍ଥିରୀକୃତ ହୁଏ । ଅନେକ ତଥାକଥିତ ପ୍ରେମବିବାହ ଅପେକ୍ଷା ଏ ବିବାହଗୁଡ଼ିକ ସୁଖ ଓ ଶାନ୍ତିର ହୁଏ । ଏହାର କେତେକ କାରଣ ଅଛି । ପ୍ରଥମ ଏହି ଯେ, ଯୁବକ ଯୁବତୀକୁ ସ୍ୱତନ୍ତ୍ର ସଂସାର କରିବାକୁ ନ ପଡୁଥିବାରୁ ସେମାନଙ୍କ ଭିତରେ ସଂଘର୍ଷର ଉପାଦାନ କମ୍ ରହେ; ଦ୍ୱିତୀୟରେ ଏ

ପ୍ରକାର ବିବାହରେ ଯେଉଁମାନେ ସମ୍ମତ ହୁଅନ୍ତି, ସେମାନେ ବିବାହକୁ ବିଧାତା-ନିର୍ଦ୍ଦିଷ୍ଟ ବୋଲି ଧରି ନେଇ ଯଥାଲାଭରେ ସନ୍ତୁଷ୍ଟ ରହନ୍ତି । ତୃତୀୟ କାରଣ ହେଉଛି ଏହି ଯେ, ଯୁବକ ବା ଯୁବତୀର ଯାହା ସଙ୍ଗେ ପ୍ରଥମ ଯୌନ ପରିଚୟ ହୁଏ, ତାହା ପ୍ରତି ଏକ ସ୍ଥାୟୀ ଆକର୍ଷଣ ଆସିଯାଏ ଏବଂ ଶେଷ ବା ବଡ଼ କାରଣ ହେଉଛି ଏହି ଯେ, ନବବଧୂର ରୂପ ଥିଲେ ତ କଥା ନାହିଁ, ତା' ନଥିଲେ ମଧ୍ୟ ସେବା, କର୍ମଠତା, ଚରିତ୍ର, ଘରକରଣା, ସୁଶୀଳ ସ୍ୱଭାବ ପ୍ରଭୃତିରେ ପୁରୁଷର ବହୁପଥଧାବୀ ଚିତ୍ତ କ୍ରମେ ଏକ ପଥର ଆଶ୍ରୟ ନିଏ ।

ପୁରୁଷ ଯେ ରୂପ ଚାହେଁ, ଏହା ଯେଉଁ ନାରୀ ସୁଖଶାନ୍ତିମୟ ବିବାହ ଇଚ୍ଛା କରେ, ତାହା ବରାବର ମନେ ରଖିବା ଉଚିତ । ବିବାହ-ପୂର୍ବ ବା ବିବାହ-ପରର କିଛି କାଳ ଯାଏଁ ପ୍ରସାଧନ ଚେଷ୍ଟା ପ୍ରବୃତ୍ତିପ୍ରେରିତ । ତାହା ପୁରୁଷର ଦୃଷ୍ଟି ଓ ଚିତ୍ତ ଆକର୍ଷଣ ପାଇଁ; କିନ୍ତୁ ନିଆଁ ଜାଳି ରଖିବାକୁ ହେଲେ ବରାବର ଇନ୍ଧନ ଯୋଗେଇବା ଓ ପବନ ଦେବା ଦରକାର; ପ୍ରଦୀପ ଜଳେଇ ରଖିବାକୁ ଚାହିଁଲେ, ବରାବର ତେଲ ପ୍ରୟୋଗ ଓ ବତିରୁ ରଡ଼ ନିଷ୍କାସନ ଏକାନ୍ତ ଦରକାର । ପ୍ରକୃତିର ଉଦ୍ୟାନରେ ସବୁ ଋତୁରେ କିଛି ନା କିଛି ଫୁଲ ଫୁଟି ରହୁଛି; କେବଳ ବସନ୍ତର ସ୍ମୃତିରେ ଆମକୁ ସାରା ବର୍ଷ ରୁଖା ଜୀବନ କଟାଇବାକୁ ପଡ଼େନା । ନାରୀ ଏକ ଉଦ୍ୟାନ । ଯତ୍ନ ଓ ଇଚ୍ଛା ଥିଲେ ସେ ଉଦ୍ୟାନରେ ପ୍ରତ୍ୟହ ନୂତନ ନୂତନ ଫୁଲ ଫୁଟିବାରେ ଅସମ୍ଭବତା କିଛି ନାହିଁ । ଯେଉଁ ନାରୀ ନାରୀତ୍ୱର ଏଇ ଗୁହ୍ୟମନ୍ତ୍ର ଆୟତ୍ତ କରିପାରିଛନ୍ତି, ତାଙ୍କ ନିକଟରେ ଜଣେ ପୁରୁଷ ଏକାନ୍ତ ଅନୁଗତ ରହିବା ବଡ଼ କଥା ନୁହେଁ ।

ସାଧାରଣତଃ ପୁରୁଷ ଚାହେ ସେହିପରି ନାରୀ, ଯିଏ ସୁନ୍ଦର, କମନୀୟ, ବାଧ୍ୟ, ସୁଶୀଳ, ସହିଷ୍ଣୁ, ସେବାପରାୟଣା; ଏବଂ ନାରୀ ଚାହେ ସେହିପରି ପୁରୁଷ-ଯିଏ ବଳିଷ୍ଠ, ଚରିତ୍ରବାନ୍, ସତ୍ୟବନ୍ତ ଓ ସୁନ୍ଦର ମଧ୍ୟ । ଏହାର ଓଲଟା ହେଲେ ବିବାହ ଅଶାନ୍ତିକର ହେବା ପାଇଁ ଯଥେଷ୍ଟ ଅବକାଶ ଅଛି । ଲଜ୍ଜା, ନମ୍ରତା, ସହନଶୀଳତା, ତିତିକ୍ଷା ପ୍ରଭୃତି ଗୁଣଦ୍ୱାରା ନାରୀର ଆକର୍ଷଣୀ ଶକ୍ତି ବହୁଗୁଣ ବଢ଼ିଯାଏ । ଏ ସବୁ ଗୁଣର ଅଭାବରେ କେବଳ ଦୈହିକ ସୁଷମାର ଶକ୍ତି ନାହିଁ ଯେ ପୁରୁଷ ସେଥିରେ ବାନ୍ଧିହୋଇ ରହିବ । ଇତିହାସରେ ଯେଉଁ ନାରୀମାନେ ବରେଣ୍ୟ ହୋଇଅଛନ୍ତି, ସେମାନେ ହୋଇଛନ୍ତି ଏଇ ସବୁ ଗୁଣଯୋଗୁ, ରୂପଯୋଗୁ ନୁହେଁ । ପ୍ରତ୍ୟେକ ପ୍ରତିଭାବନ୍ତ ପୁରୁଷ ମଧ୍ୟ ରୂପ ଅପେକ୍ଷା ନାରୀର ଏହି ଗୁଣଗୁଡ଼ିକ ପ୍ରତି ଆକୃଷ୍ଟ ହୋଇଥାନ୍ତି । ଅସ୍ଥିରସ୍ୱଭାବା, ଦାବୀକାରିଣୀ, ଅସହିଷ୍ଣୁ, କୋପନା, କଳହନ୍ତା, ସ୍ୱତନ୍ତ୍ରା ନାରୀ, ସ୍ୱାମୀ ବା ପୁତ୍ରକନ୍ୟା କାହାରି ଭକ୍ତି ଶ୍ରଦ୍ଧା ବା ସମ୍ମାନ ପାଇ ପାରନ୍ତି ନାହିଁ ।

ଅନ୍ୟ ପକ୍ଷରେ ଚରିତ୍ରବାନ୍ ବଳିଷ୍ଠ ପୁରୁଷ ନିକଟରେ ନାରୀ ପରିପୂର୍ଣ୍ଣ ଆତ୍ମସମର୍ପଣ କରି ସୁଖ ପାଏ । ବିବାହକାଳରେ ବା ପରେ ନାରୀ ଯେବେ ଜାଣିବାକୁ ପାଏ ଯେ, ତା'ର ଜୀବନସଖା ଅନ୍ୟ କୌଣସି ନାରୀର ଶରୀର ସ୍ପର୍ଶ କରିନାହିଁ, ସେତେବେଳେ ତା'ର ଆତ୍ମା ସୁଖ ଓ ଗୌରବରେ ଉତ୍‌ଫୁଲ୍ଲ ହୋଇଉଠେ ଏବଂ ସେ ସୁଖମୟ ସଂସାରର ସ୍ୱପ୍ନ ଦେଖେ । ଯଦି ସୁଖମୟ ଗାର୍ହସ୍ଥ୍ୟ ଜୀବନର ଆକାଂକ୍ଷା ଥାଏ, ତେବେ ପ୍ରତ୍ୟେକ ଯୁବକ, ଆଦର୍ଶ ସ୍ୱାମୀତ୍ୱ ଓ ପିତୃତ୍ୱ ପାଇଁ ନିଜକୁ ପ୍ରସ୍ତୁତ କରି ରଖିବା ଉଚିତ । ନିଜର ସୁଖ ପାଇଁ, ବଳିଷ୍ଠ ଓ ନିଷ୍କଳଙ୍କ ବ୍ୟକ୍ତିତ୍ୱ ପାଇଁ, ଭବିଷ୍ୟତ ସଂଗିନୀର ଶାନ୍ତିପାଇଁ, ଭବିଷ୍ୟତ୍ ପୁତ୍ରକନ୍ୟାର ସୁଖ ଓ ସ୍ୱାସ୍ଥ୍ୟପାଇଁ, ଏବଂ ଜାତିର କଲ୍ୟାଣ ପାଇଁ, ପ୍ରତ୍ୟେକ ଯୁବକକୁ ବଳିଷ୍ଠ, ସଂଯତ ଓ ଚରିତ୍ରବାନ୍ ରହିବାକୁ ହ ହେବ ।

ବିବାହିତ ଜୀବନରେ ନାରୀ ପୁରୁଷକୁ ନିଜର ରୂପ ଓ ଗୁଣର ମାଧୁର୍ଯ୍ୟରେ ଯେପରି ଅଜସ୍ର ଭାବରେ ମୁଗ୍ଧ ରଖିବାକୁ ଚେଷ୍ଟା କରିବା ଉଚିତ, ପୁରୁଷର ମଧ ନାରୀକୁ ସନ୍ତୁଷ୍ଟ ଓ ସମ୍ମାନିତ ରଖିବା ଏକାନ୍ତ କର୍ତ୍ତବ୍ୟ । ଆଦର୍ଶ ସ୍ୱାମୀ ବା ଗୃହସ୍ଥ ବିରକ୍ତ ବା କ୍ରୁଦ୍ଧ ହେବେ ନାହିଁ । ସ୍ତ୍ରୀ ଯେପରି ହେବାର ସେପରି ହୋଇଥାନ୍ତି, ତେବେ ତାଙ୍କୁ ବରାବର ଶ୍ରଦ୍ଧା ଓ ସମ୍ମାନ କର, ଏବଂ କରିବାରେ ସୁଖ ଅଛି । ଯଦି ସେ ସେପରି ନୁହନ୍ତି, ତେବେ ତାଙ୍କୁ ମନ ଅନୁରୂପେ ଗଢ଼ିବାକୁ ଚେଷ୍ଟା କର । ମନ ଅନୁରୂପ ନ ହେଲେ ମଧ ବା ମନ ଅନୁରୂପେ ସ୍ତ୍ରୀକୁ ଗଢ଼ି ନ ପାରିଲେ ମଧ, ପୁରୁଷ ବା ସ୍ତ୍ରୀ କାହାରି ଅନ୍ୟ-ଚାରୀ ହେବା ଏକାନ୍ତ ଅନୁଚିତ ।

ମୋଟ ଉପରେ କିନ୍ତୁ ବିବାହିତ ଜୀବନର ସୁଖାଶାନ୍ତି ନାରୀ ଉପରେହିଁ ନିର୍ଭର କରେ । ଘର ହେଉଛି ନାରୀର ସାମ୍ରାଜ୍ୟ । ସେ ସାମ୍ରାଜ୍ୟରେ ସେହିହିଁ ରାଜା, ସେହିହିଁ ମନ୍ତ୍ରୀ– ଅର୍ଥ, ଶିକ୍ଷା, ସ୍ଥାନୀୟ ଶାସନ, ନିୟମ-ଶୃଙ୍ଖଳା, ଖାଦ୍ୟ, ବାସ– ସବୁ ବିଭାଗର ମନ୍ତ୍ରୀ ସେ । ନାରୀର ବୁଦ୍ଧି ଓ ଚରିତ୍ର ପ୍ରଭାବରେ ବହୁ ପୁରୁଷର ଜୀବନରେ ଅଭୂତପୂର୍ବ ପରିବର୍ତ୍ତନ ଘଟିଥିବା କଥା ସମସ୍ତେ ଜାଣନ୍ତି; କିନ୍ତୁ ଏହାର ବିପରୀତଟା ସତ୍ୟ ନୁହେଁ । ନାରୀ ଜନ୍ମରୁ ସ୍ୱୟଂସିଦ୍ଧା । ତା'ର ପ୍ରବୃତ୍ତି ଓ ପ୍ରକୃତିରେ ପରିବର୍ତ୍ତନ ଆଣିବା କଠିନ ବ୍ୟାପାର । ଆବ୍ରାହାମ୍ ଲିଙ୍କନ୍‌ଙ୍କ ପରି ସାଧୁ, ପ୍ରତିଭାବାନ୍, ଧର୍ମପରାୟଣ ନରନେତା ପୃଥିବୀର ଇତିହାସରେ କମ୍ ଜନ୍ମଗ୍ରହଣ କରିଛନ୍ତି; କିନ୍ତୁ ତାଙ୍କର ଅଯୋଗ୍ୟ ସ୍ତ୍ରୀ ସେହି ମହାମାନବଙ୍କର ଜୀବନକୁ ପ୍ରତ୍ୟହ ଅଗ୍ନି ଦହନର ଯନ୍ତ୍ରଣା ଦେଉଥିଲା ।

ପୁରୁଷର ଅଭିବୃଦ୍ଧି ମୃତ୍ୟୁ ପର୍ଯ୍ୟନ୍ତ । ନାରୀ-ଜୀବନର ପ୍ରଥମ ପାଦରେ ତା'ର କ୍ଷିପ୍ର ଅଭିବୃଦ୍ଧି ଘଟିଯାଏ– ଶରୀର ଓ ମନରେ– କିନ୍ତୁ ତା' ପରେ ସବୁ ବନ୍ଦ । ଜଣେ

ସ୍କୁଲ ଶିକ୍ଷକ ଦିନେ ଦେଶର ପ୍ରଧାନମନ୍ତ୍ରୀ ହୋଇପାରେ, କିନ୍ତୁ ତିରିଶ ବର୍ଷ ତଳେ ତା'ର ସ୍ତ୍ରୀ ଯେପରି ଥିଲେ ସେ ପ୍ରାୟ ସେହିପରି ରହିଥିବେ; ଅବଶ୍ୟ ମନରେ; କାରଣ କଁଚା ବୟସର ଲାବଣ୍ୟ ତ ଦେଖୁ ଦେଖୁ ଉଭେଇଯାଏ ସମସ୍ତଙ୍କର । ଏଇ କାରଣ ଯୋଗୁ ଅନେକ ବିବାହ ପ୍ରଥମ ପାଦରେ ଅତ୍ୟନ୍ତ ସୁଖକର ହୋଇଥିଲେ ମଧ୍ୟ ପରେ ତାହା ଭାଙ୍ଗିପଡ଼େ । ପୁରୁଷ ଚିନ୍ତାର ସ୍ତରରୁ ସ୍ତରକୁ ଉଠିଚାଲେ, କିନ୍ତୁ ନାରୀ ସାମାନ୍ୟ କେତୋଟି ଦ୍ରବ୍ୟ ଉପରେ ତା'ର ସମସ୍ତ ଶ୍ରଦ୍ଧା ଓ ଚିନ୍ତା ଢ଼ାଳି ପଡ଼ିରହେ । ସେଥିପାଇଁ ଅନେକ ଶିକ୍ଷିତ ସ୍ୱାମୀ ଦୁଃଖରେ ନିଜନିଜର ଉଚ୍ଚଶିକ୍ଷିତା ସ୍ତ୍ରୀମାନଙ୍କ ସମ୍ବନ୍ଧରେ ବି କହିବାର ଶୁଣାଅଛି 'ଯେତେ ଶିକ୍ଷା ଦିଅ, ସ୍ତ୍ରୀ ସେହି ସ୍ତ୍ରୀ ।'

ବିବାହ ମନୁଷ୍ୟକୁ ଶାନ୍ତି ଦିଏ, ଆଶ୍ରୟ ଦିଏ, ଏବଂ ଭୋଗ ଦିଏ । କିନ୍ତୁ ବିବାହ ମାତ୍ରେ ବା ନାରୀ ବା ପୁରୁଷ ମାତ୍ରେ ଏହିପରି ଭୂସ୍ୱର୍ଗ ଦେଇ ପାରିବେ ନାହିଁ । କଳ୍ପନାପ୍ରବଣ ତରୁଣ ତରୁଣୀ ବିବାହରୁ ଆଶା କରନ୍ତି ସେହି ସ୍ୱର୍ଗ– ଯାହା କାବ୍ୟ ଉପନ୍ୟାସରେ ବର୍ଣ୍ଣିତ ହୋଇଥାଏ । ଯେଉଁମାନେ ନିରକ୍ଷର, କାବ୍ୟ ଉପନ୍ୟାସ ପଢ଼ି ନଥା'ନ୍ତି– ସେମାନେ ମଧ୍ୟ କାଳ୍ପନିକ ସ୍ୱର୍ଗର ଅପେକ୍ଷା ରଖନ୍ତି, କାରଣ ଯୌବନ ଆସିବା ମାତ୍ରେ ମନୁଷ୍ୟର ମନ ସ୍ୱପ୍ନପ୍ରବଣ ହୋଇଉଠେ । କିନ୍ତୁ କଳ୍ପନାର ଘୋଡ଼ାକୁ ବିଚାରର ରଶ୍ମି ଦେଇ ସଂଯତ କରିବାକୁ ହେବ । ପ୍ରେମ ଓ ବିବାହରୁ ଅପାର୍ଥିବ, ଅସମ୍ଭବ ସୁଖ ଆଶା କରିବା ବିଡ଼ମ୍ବନା । ସୁଖ ଓ ଶାନ୍ତି ବିବାହରୁ ମିଳେ, କିନ୍ତୁ ସେଥିପାଇଁ ଉଭୟ ପକ୍ଷରୁ ବହୁ ତ୍ୟାଗ, ବହୁ ସାଧନା, ବହୁ ସହନଶୀଳତା ଦରକାର । ପ୍ରେମ ଓ ବିବାହ ପୂର୍ବରୁ ଦୀର୍ଘ, ସଂଯତ ବିଚାର ମଧ୍ୟ ନିତାନ୍ତ ଆବଶ୍ୟକ । କାରଣ ପ୍ରତ୍ୟେକ ନାରୀ ଓ ପ୍ରତ୍ୟେକ ପୁରୁଷର ସ୍ୱଭାବ, ପ୍ରକୃତି, ଅଭ୍ୟାସ ଓ ଆଦର୍ଶ ଭିନ୍ନ । ଗଣିତ ଶାସ୍ତ୍ରର ଦୁଇ ଦୁଇ ମିଶିଲେ ଚା'ରି ପରି, ପ୍ରେମ ଓ ବିବାହରେ ଜଣେ ପୁରୁଷ ଓ ଜଣେ ନାରୀର ମିଳନରେ କ'ଣ ଫଳ ହେବ, ତାହା କେହି କହିପାରିବେନି । ଏ ଦାୟିତ୍ୱ ତରୁଣ ତରୁଣୀଙ୍କର ଏକାନ୍ତ ଭାବରେ ନିଜର ଦାୟିତ୍ୱ ।

ପ୍ରେମ ରୋମାଞ୍ଚକ ଓ କାବ୍ୟ କବିତାର ବସ୍ତୁ । କାରଣ ଦୈନନ୍ଦିନ ଜୀବନର ବାସ୍ତବ ସମସ୍ୟା ସଙ୍ଗେ ତା'ର ସମ୍ପର୍କ ନାହିଁ । ଜ୍ୟୋସ୍ନା ରାତ୍ରି, ବସନ୍ତକାଳ, ପୁଷ୍ପସୁରଭିତ ଉଦ୍ୟାନ– ଏଇ ପରିବେଶରେ ଯୁଗଳ ଯୁବକ ଯୁବତୀଙ୍କର ପ୍ରଣୟ ରସାସ୍ୱାଦନ କଳ୍ପନା କରିବାରେ କଷ୍ଟ କିଛି ନାହିଁ; କିନ୍ତୁ ବସନ୍ତ ଓ ଜ୍ୟୋସ୍ନା ମାତ୍ର କେତେ ଦଣ୍ଡ ପାଇଁ ରହନ୍ତି । ଘରେ ଖାଇବାକୁ ନାହିଁ, ମା ରୋଗଶଯ୍ୟାରେ, ଭଉଣୀର ବିବାହ ହୋଇପାରୁନି, ନିଜର ପଢ଼ିବାର ସମ୍ବଳ ନାହିଁ, – ଜୀବନର ଏହି ନିଷ୍ଠୁର ଓ ଅତି ପରିଚିତ ବାସ୍ତବତା ସଙ୍ଗେ ଆମ୍ଭେମାନେ ସାଧାରଣତଃ ପ୍ରେମକୁ ସଂପୃକ୍ତ

କରୁନା । ବାଇରନ୍ କହୁଥିଲେ, ଜଣେ ନାରୀ ପାଇଁ ପ୍ରାଣତ୍ୟାଗ କରିବା ବରଂ ସହଜ, କିନ୍ତୁ ତା' ସଙ୍ଗେ ଏକାଠି ବଞ୍ଚିବା ଅତ୍ୟନ୍ତ କଠିନ ବ୍ୟାପାର । ଦାନ୍ତେ ଯଦି ବିଆଟ୍ରିଶ୍‌କୁ ବିବାହ କରିଥାନ୍ତେ ତେବେ ଡିଭାଇନ୍ କମେଡ଼ୀ ଲେଖା ହୋଇ ନ ଥାନ୍ତା ବୋଲି ଅନେକେ ଥଟ୍ଟା କରି କହନ୍ତି । ଏଥିରେ ନାରୀଚରିତ୍ର ପ୍ରତି ବ୍ୟଙ୍ଗ ଓ ତାଚ୍ଛଲ୍ୟ ବ୍ୟଞ୍ଜିତ ହେଉଛି; କିନ୍ତୁ ଏଥିରେ ଯେ ସତ୍ୟ ନାହିଁ, ଏପରି ନୁହେଁ । ଯୌବନ ଯେଉଁ କଳ୍ପନାର ଅଞ୍ଜନ ପ୍ରୟୋଗ କରିଯାଏ, ତା' ଫଳରେ ଯୁବକ ଆଖିରେ ପ୍ରତ୍ୟେକ ତରୁଣୀ ମନେହୁଏ ଏଞ୍ଜେଲ୍, ଅପାର୍ଥିବ ଅପ୍‌ସରୀ; କିନ୍ତୁ ସେ ଦିନର କନ୍ୟା ଆଜି ହୋଇଛି ଯୁବତୀ, କାଲି ହେବ ବର୍ଷୀୟସୀ ମା', ପରେ ହେବ ଶୁକ୍ଳକେଶା ଦନ୍ତହୀନା ଗୋସେଇଁ ମା– ଏଇ ତ ନାରୀ, ଏକାନ୍ତ ଭାବରେ ଏଇ ପୃଥିବୀର ଜୀବ, ମାଟିର ଜୀବ, ସେ ଏଞ୍ଜେଲ୍ ନୁହେଁ, ଦେବୀ ନୁହେଁ, ସେ ନିତାନ୍ତ ଦୋଷବହୁଳା ଏକ ମନୁଷ୍ୟ । ସେଥିପାଇଁ ଇଂରେଜୀରେ ଏକ କଥା ଅଛି– "Love if you can bear with all the faults of man । – ଅର୍ଥାତ୍ ଯଦି ମନୁଷ୍ୟର ସମସ୍ତ ଦୋଷ ଦୁର୍ବଳତା ସହିନେବାକୁ ପ୍ରସ୍ତୁତ ଅଛ, ତେବେ ପ୍ରଣୟ କର ।

କିନ୍ତୁ ପ୍ରେମର ପ୍ରକୃତ ପରୀକ୍ଷା ଦୈନନ୍ଦିନ ଜୀବନରେ, ଜ୍ୟୋତ୍ସ୍ନା ରାତ୍ରିର ଅଭିସାରରେ ନୁହେଁ ବା ପ୍ରବୃତ୍ତିର ଘୂର୍ଣ୍ଣାବର୍ତ୍ତରେ ଝାମ୍ପଦେବାରେ ନୁହେଁ । ସେଣ୍ଟ୍ ଥେରେସା ଜଣେ ଖ୍ରୀଷ୍ଟୀୟ ସନ୍ନ୍ୟାସିନୀ । ତାଙ୍କୁ ଥରେ ଜଣେ ତରୁଣୀ ସନ୍ନ୍ୟାସିନୀ 'ଭାଗବତ ଜୀବନ' କିପରି ଓ କ'ଣ ବୋଲି ପଚାରିଲା । ଥେରେସା ତରୁଣୀ ସନ୍ନ୍ୟାସିନୀଙ୍କ ସଙ୍ଗରେ ନେଇ ଗଲେ ଗୋଟିଏ ଜାଗାକୁ, ଯେଉଁଠି ସେ ଗୋଟିଏ ନୂଆ ମଠ ସ୍ଥାପନ କରୁଥିଲେ । ପ୍ରାୟ ୬ ମାସ ଯାଏ ତରୁଣୀ ସନ୍ନ୍ୟାସିନୀ ନୂଆ ମଠରେ ବହୁ ଅସୁବିଧା, ବହୁ ଅଭାବ ଭିତରେ ବଞ୍ଚିଲା ପରେ, ସେ ସେଣ୍ଟ୍ ଥେରେସାଙ୍କୁ ପୁଣି ପଚାରିଲେ, 'ତମେ ପରା ମତେ ଭଗବତ ଜୀବନ ବୁଝେଇଦେଉଥିଲ ?' ତରୁଣୀ ସନ୍ନ୍ୟାସିନୀ ଆଶାକରିଥିଲେ ଯେ, ଥେରେସା ତାଙ୍କୁ ଅନେକ କିଛି ଆଚମ୍ବିତ ଐଶ୍ୱର୍ଯ୍ୟ ଦେଖାଇବେ; କିନ୍ତୁ ଥେରେସା କହିଲେ, ''ଭାଗବତ ଜୀବନ ତ ଏଇ – ଏଇ ଦୈନନ୍ଦିନ ଜୀବନର ନାନା ଦୁଃଖ କଷ୍ଟକୁ ହସି ହସି ସହି ପ୍ରେମ ଓ ସହିଷ୍ଣୁତାରେ ଦିନ କାଟିନେବା ।''

ଦୁଇଟି ନର ଓ ନାରୀର ସ୍ୱଭାବ, ଅଭ୍ୟାସ, ଚିନ୍ତା, ଖାଇବା ପିନ୍ଧିବାର ରୁଚି, ଆଦର୍ଶ, ଚିନ୍ତାର ସ୍ତର ପ୍ରଭୃତି ଯେ ଏକାବେଳକେ ସମାନ ହୋଇଯିବ, ଏହା ଅସମ୍ଭବ । ବିଭିନ୍ନତା ରହିବଇ ରହିବ । ପ୍ରଣୟ ବା ବିବାହର ପ୍ରଥମ ପାଦରୁ ତାହା ବୁଝିନେଇ ସେଇ ଅନୁସାରେ ନିଜକୁ ଅପରର ସୁଖ ଶାନ୍ତି ପାଇଁ ପରିଚାଳିତ କରି

ଶିଖିବା ପ୍ରେମର ସାଧନା । ଯଦି ସହଜରେ ବିରକ୍ତ ହେଉଁ, ତେବେ ପ୍ରତ୍ୟହ ଏତେ ଛୋଟ ଛୋଟ ବିରକ୍ତିକର ଘଟଣା ଘର ଭିତରେ ଘଟେ ଯେ, ପ୍ରତି କଥା ପାଇଁ ଆମେ ଯଦି ବିରକ୍ତ ହେଉଁ, ତେବେ ତାହା ନିଜର ହିଁ ବେଶୀ ଅକଲ୍ୟାଣ କରିବ । ବିରକ୍ତ ବା କ୍ରୋଧ ବା ଅଭିମାନରେ କୌଣସି ସମସ୍ୟାର ସମାଧାନ ନ ହୋଇ ବରଂ ଉପରେ ସମାଧାନ ହୋଇଗଲା ବୋଲି ଭାବିଲେ ହିଁ ଅନ୍ତର ଭିତରେ ତାହା ଏକ କ୍ଷତ ସୃଷ୍ଟିକରେ; ଯାହା ସହଜରେ ଶୁଖେନାହିଁ । କ୍ଷମା, ପ୍ରେମ, ସହିଷ୍ଣୁତା ହିଁ ମିଳିତ ଜୀବନର ସର୍ବବ୍ୟାଧିର ମହୌଷଧ ।

ବ୍ୟକ୍ତି ବ୍ୟକ୍ତି ଭିତରେ ନାନା ଫରକ ଥିଲେହେଁ ମୋଟାମୋଟି ନାରୀ ଓ ପୁରୁଷ ମଧ୍ୟରେ ସାଧରଣ ଭିନ୍ନତା ସହଜରେ ଧରିହୁଏ । ପୁରୁଷ-ପ୍ରକୃତି ଛୋଟରେ, ଅପରିସର ଭୂମିରେ ଆବଦ୍ଧ ରହିବାକୁ ନାରାଜ, ତା'ର କର୍ମକ୍ଷେତ୍ର ବିସ୍ତୃତ ହେବା ଚାହି । ସେ ଧରାକୁ ତାଡ଼ିବ, ପାହାଡ଼କୁ ଭାଙ୍ଗିବ, ଜଙ୍ଗଲକୁ ନିପାତ କରିବ, ଦେଉଳ, ପ୍ରାସାଦ ଠିଆକରାଇବ, ଆବିଷ୍କାର କରିବ ଦେଶ, ଯନ୍ତ୍ର ଓ ଗ୍ରହ ତାରା; ଲେଖିବ ମହାକାବ୍ୟ, ନାଟକ, କବିତା । ନାରୀର କର୍ମକ୍ଷେତ୍ର କିନ୍ତୁ ଛୋଟ ଘରଟି ଓ ତା'ର ସୁଖଦୁଃଖ । ଯେଉଁ ନାରୀ ବିବାହକୁ ସୁଖକର କରିବାକୁ ଚାହେ, ସେ ପୁରୁଷର ବାହାର ଜୀବନରେ କୌଣସି ବାଧା ଦେବା ଉଚିତ୍ ନୁହେଁ । ସ୍ୱାମୀର ବାହାରର କ୍ରିୟାକଳାପରେ ସ୍ତ୍ରୀ କୁତୂହଳିନୀ ହୋଇ ସବୁବେଳେ ଏଣୁ ତେଣୁ ପ୍ରଶ୍ନ ପଚାରିବା ବା ସେଥିରେ ହସ୍ତକ୍ଷେପ କରିବାକୁ ଯିବା ବଡ଼ ଅଶାନ୍ତିଦାୟକ । ଯଦି କୌଣସି ନାରୀ ସ୍ୱାମୀର ସବୁ କ୍ଷେତ୍ରକୁ ଅଧିକାର କରିବାର ପ୍ରୟାସ କରନ୍ତି, ତେବେ ସ୍ୱାମୀର ପତନ ଓ ଘରେ ଅଶାନ୍ତି । ସ୍ୱାମୀ କବି, ଶିଳ୍ପୀ, ଅଧ୍ୟାପକ, ଓକିଲ ହୁଅନ୍ତୁ ବା ଚଷା ବଢ଼େଇ ହୁଅନ୍ତୁ, ପ୍ରତ୍ୟେକ କ୍ଷେତ୍ରରେ ସ୍ତ୍ରୀର ସାହାଯ୍ୟ କରିବାର ଯଥେଷ୍ଟ ଅଛି । ସ୍ତ୍ରୀ ଯଦି ସେଥିରେ ଅପାରଗ, ତେବେ ସ୍ୱାମୀକୁ ଅନ୍ତତଃ ଘର ଜଞ୍ଜାଳରୁ ରକ୍ଷାକରିବା ଓ ଘରଟି ଶୃଙ୍ଖଳାରେ ଚଳେଇଲେ ହିଁ ଯଥେଷ୍ଟ । ଯେଉଁ ପୁରୁଷକୁ ବାହାରର ଜଞ୍ଜାଳରୁ ଆସି ଘରର ଜଞ୍ଜାଳରେ ପଶିବାକୁ ହୁଏ, ତା'ର ଦଶା ଜୀବନ୍ତମରଣ । ପ୍ରତ୍ୟେକ ଟିକି ଟିକି କଥାରେ କଚର କଚର କରିବାକୁ ଇଂରେଜୀରେ ନାଗିଂ କହନ୍ତି । ନାଗିଂ ନାରୀ ପରି ଅପ୍ରିୟ ଓ ଅଶାନ୍ତିକର ଜିନିଷ ଜଗତରେ ଦ୍ୱିତୀୟ ନାହିଁ ।

ନାଗିଂ ଦ୍ୱାରା ଯେ ପୁରୁଷକୁ ଜିତିବାର କୌଣସି ସମ୍ଭାବନା ନାହିଁ, ଏହା ପ୍ରତ୍ୟେକ ନାରୀର ବୁଝିରଖିବା ଉଚିତ । ଏହା କେବଳ ଘରକୁ ଅଶାନ୍ତିମୟ କରେ, ନିଜକୁ ଜାଳେ ଏବଂ ସ୍ୱାମୀ ଓ ପୁତ୍ରକନ୍ୟାଙ୍କୁ ନିକଟରୁ ଦୂରରୁ ଦୂରକୁ ନେଇଯାଏ । ନାରୀଗୁଣାବଳିର ନିର୍ଯ୍ୟାସ ହେଉଛି ମାଧୁର୍ଯ୍ୟ । ଏହି ମାଧୁର୍ଯ୍ୟ-ବିକାଶ ରୂପରେ, ବେଶ-

ଭୂଷାରେ, ସେବାରେ ସେତେ ନୁହେଁ, ଯେତେ ବଚନରେ । ପ୍ରିୟଭାଷିଣୀ ନାରୀ ସମସ୍ତଙ୍କ ହୃଦୟ କିଣିପାରେ ଓ ପୁଷ୍ପର ସୌରଭ ପରି ତା'ର ଚାରିପାଖରେ ଆନନ୍ଦ ବିକରଣ କରେ । ବିଶ୍ୱସାହିତ୍ୟର ବିଖ୍ୟାତ ନାୟିକାମାନେ ସେମାନଙ୍କର ମଧୁର କଣ୍ଠସ୍ୱର ପାଇଁ ପରିଜ୍ଞାତ । ନାରୀର ଏହି ଅମୋଘ ଅସ୍ତ୍ରରେ ଯାହା ସିଦ୍ଧ ନ ହୋଇଛି, ତାହା ନାଗିଂ, କଳି, କୋପନ, ଅଭିମାନରେ ହେବାରେ ସମ୍ଭାବନା କମ୍ । ଯଦି ହେବ, ତାହା କେବଳ ସାମାଜିକତାର ଖାତିରରେ, ବାଧ୍ୟବାଧକତାରେ– ସେଥିରେ ଅନ୍ତରର ସ୍ପର୍ଶ ନଥିବ ।

ଅନ୍ୟ ପକ୍ଷରେ କେବଳ ସଂଭୋଗହିଁ ଯେଉଁ ସ୍ୱାମୀର ଏକମାତ୍ର ଲକ୍ଷ୍ୟ, ସେ ହୀନ ଓ ହେୟ । ପୁରୁଷର ଅନେକ ସମୟରେ ସ୍ମରଣ ନଥାଏ ଯେ, ନାରୀର ବି ଚିତ୍ତ ଅଛି, ବ୍ୟକ୍ତିତ୍ୱ ଅଛି, ଆତ୍ମସମ୍ମାନ ଓ ଆତ୍ମ ବିକାଶ ଅଛି । ବୁଦ୍ଧିବୃତ୍ତିରେ ସ୍ତ୍ରୀ ସ୍ୱାମୀର ସମାନ ହୋଇନଥାଇପାରେ, କିନ୍ତୁ ଘରଣୀଭାବରେ, ଜୀବନର ନିର୍ବାଚିତ ସଂଗିନୀଭାବରେ ଓ ସନ୍ତାନର ଜନନୀଭାବରେ ସେ ସର୍ବଥା ସମ୍ମାନାସ୍ପଦ । ତାଙ୍କ ପ୍ରତି କଠୋର ବଚନ ପ୍ରୟୋଗ କରିବା, ତାଙ୍କୁ ଅବହେଳା ବା ନିର୍ଯ୍ୟାତନା କରିବା ପୁରୁଷର ଜନ୍ମଗତ ଦାବୀ ନିଶ୍ଚୟ ନୁହେ । ଏକପତ୍ନୀକତା ବ୍ୟକ୍ତି ସମାଜ ପକ୍ଷରେ ଏକାନ୍ତ କଲ୍ୟାଣକାରକ । ଜଗତର ଇତିହାସରେ ବହୁପତ୍ନୀକ ସମାଜ ବରାବର ଏକପତ୍ନୀକ ଜାତିଦ୍ୱାରା ପରାଭୂତ ହୋଇଆସୁଛି । ପ୍ରବୃତ୍ତି ସନ୍ତୋଷହିଁ ଯେଉଁଠି ବ୍ୟକ୍ତି ଓ ସମାଜର ଲକ୍ଷ୍ୟ ସେଠି ଦୁହେଁ ଧ୍ୱଂସମୁଖରେ ବୋଲି ଧରିନେବାକୁ ହେବ ।

ଯଦି ପ୍ରେମ ସ୍ଥାୟୀ ହେବାର ଲକ୍ଷ୍ୟ ଥାଏ ଏବଂ ବିବାହ ସୁଖ ଓ ଶାନ୍ତିର ହେବା ଇଚ୍ଛା, ତେବେ ସ୍ୱାମୀ ଓ ସ୍ତ୍ରୀ ଶେଷଦିନ ଯାଏଁ ପ୍ରଣୟୀ ଓ ପ୍ରଣୟିନୀ ରହିବାକୁ ଚେଷ୍ଟାକରନ୍ତି । ଯୌବନର ସେହି ବାସନ୍ତ ଦିବସଗୁଡ଼ିକ ସ୍ମରଣକର । ସେହି ଅହରହ-ମଳୟ-ସୁରଭି କାଳରେ ତରୁଣ ତରୁଣୀ ପରସ୍ପରର ଦୋଷକୁ ମଧ ଗୁଣ ବୋଲି ଧରିନେଉଥିଲେ । ପରସ୍ପର ଅନ୍ୟକୁ କିପରି ଖୁସି ରଖିବେ ଏହାହିଁ ଥିଲା ଚେଷ୍ଟା; ତାହା କ'ଣ କେବଳ ଦେହର ବାସନା ଯୋଗୁଁ ? ସେ ବାସନା ମେଣ୍ଟିଯାଇଛି ବୋଲି କ'ଣ ଆଜି ପ୍ରତି କଥାରେ କଳହ କରି ଜୀବନ ଅଶାନ୍ତିମୟ କରିବ ? ଦେହର ଆକର୍ଷଣ ପ୍ରତ୍ୟେକ ପ୍ରେମ ଓ ବିବାହର ମୂଳ ପତ୍ତନ । କିନ୍ତୁ ତା'ର ଉପରେ ଗଢ଼ାହୁଏ ସୁଖ-ଶାନ୍ତିର ସୌଧ । ବିବାହ ଦ୍ୱାରା ଦୈହିକ ଚରିତାର୍ଥତାର ମୂଳ ପତ୍ତନ ତ ପଡ଼ିଯାଇଛି ଏଣିକି ସାବଧାନ ହାଇ ସୌଧଟିକୁ ବାସଯୋଗ୍ୟ ଓ ଭୋଗ୍ୟ କରି ରଖ । ଆମର ଦେହଟିକି ସଫା ଓ ସୁସ୍ଥ ରଖିବାକୁ ଆମେ ପ୍ରତ୍ୟହ ସ୍ନାନ କରୁ, ଦିନକୁ ତିନିଥର ଖାଉ, ପୁଣି ନାନା ରୁଚି ଅନୁଯାୟୀ ରସନାକୁ ପରିତୃପ୍ତ କରୁ ।

ଦେହର ପରିଚର୍ଯ୍ୟା ଯଦି ଏତେ, ପ୍ରେମର ପରିଚର୍ଯ୍ୟା, ସୁଖ ଶାନ୍ତିର ପରିଚର୍ଯ୍ୟା କି ଯାଠୁ କମ୍ ହେବ ? ନାରୀ ପ୍ରତ୍ୟହ ଓ ପ୍ରତିମୁହୂର୍ତ୍ତରେ ପ୍ରଣୟିନୀ ରହିବାକୁ ଓ ପୁରୁଷ ପ୍ରତ୍ୟହ ନୂତନ ପ୍ରେମିକ ହେବାରେ କ୍ଷତି କ'ଣ ?

ନାରୀ ପ୍ରତ୍ୟହ ସୁସଜ୍ଜିତା ଓ ସୁଦୃଶ୍ୟା ରହିବାରେ, ଘର ସୁନ୍ଦର ଓ ଗୃହସ୍ଥର ଚିତ୍ତରେ ଆନନ୍ଦ । କେବଳ ବହୁମୂଲ୍ୟ ଅଳଙ୍କାର ପିନ୍ଧିଲେ ନାରୀର ସୌନ୍ଦର୍ଯ୍ୟ ବଢ଼ିଯାଏ ନାହିଁ । ନାରୀର ଶ୍ରେଷ୍ଠ ଅଳଙ୍କାର ସ୍ୱାସ୍ଥ୍ୟ ଓ ସୁପୁଷ୍ଟ ଶରୀର । ସାମାନ୍ୟ ଆୟାସରେ ତାହା ରକ୍ଷା କରି ହେବ । ପୁଷ୍ପମାଲ୍ୟ, ଗନ୍ଧଦ୍ରବ୍ୟ ଆଦିର ଦୈନିକ ବ୍ୟବହାର ନାରୀର କର୍ତ୍ତବ୍ୟ କେବଳ ନୁହେଁ, ଦାବୀ ବୋଲି ଧରିଲେ କ୍ଷତି ନାହିଁ । ଅନେକ ବିବାହ, ନାରୀର ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟ ପ୍ରତି ସାମାନ୍ୟ ଅବହେଳା ଯୋଗୁଁ ଭାଙ୍ଗିଯାଏ । ଅନ୍ୟ ପକ୍ଷରେ ପୁରୁଷ ପ୍ରତ୍ୟହ ସ୍ତ୍ରୀକୁ କଥାରେ, ସ୍ମିତରେ, କର୍ମରେ ଦେଖାଇ ଦେବା ଉଚିତ୍ ଯେ, ସେ ତାକୁ ଠିକ୍ ପୂର୍ବପରି ସମଭାବରେ ସ୍ନେହ କରେ । ପରସ୍ପରକୁ ଖୁସି କରିବାର ଏହି ସଚେତନ ଚେଷ୍ଟାରେ ବିବାହିତ ପ୍ରଣୟ ଜୀବନ୍ତ ରହିବାରେ ସନ୍ଦେହ ନାହିଁ ।

ମନେଅଛି, କୌଣସି ଆମେରିକାନ୍ ମାଗାଜିନ୍‌ରେ ଜଣେ ଲେଖିକା ବିବାହିତ ଜୀବନକୁ ସୁଖୀ କରାଇବା ପାଇଁ କେତେଗୁଡ଼ିଏ ଉପଦେଶ ଦେଇଥିଲେ । ସେଥିରୁ କେତେକ ଏହିପରି –

ପ୍ରତ୍ୟେକ ସ୍ତ୍ରୀ ସ୍ୱାମୀର ରୁଚି ଅନୁଯାୟୀ ତାଙ୍କର ସମସ୍ତ ପ୍ରକାର ସ୍ୱାଚ୍ଛନ୍ଦ୍ୟ ଯୋଗାଇବା ଉଚିତ୍ ।

ପୁରୁଷ ଅର୍ଜନ କରେ । ଟଙ୍କା ପଇସା ନେଇ ତାଙ୍କ ସଙ୍ଗେ କଳହ କର ନାହିଁ । ସେଥିରେ ତାଙ୍କର କର୍ତ୍ତୃତ୍ୱ ମାନିନିଅ ।

ନିଜ ହାତରେ ରାନ୍ଧି ନିଜେ ପରଷି ସ୍ୱାମୀଙ୍କୁ ଖୁସୀ କରାଇବାକୁ ଚେଷ୍ଟାକର । ଯେଉଁ ସ୍ତ୍ରୀ ପୁରୁଷକୁ ଖୁଆଇ ସନ୍ତୁଷ୍ଟ କରି ଜାଣେ, ତା' ନିକଟରେ ପୁରୁଷ ବନ୍ଧା ।

ପ୍ରତ୍ୟେକ ସ୍ୱାମୀ, ପ୍ରତ୍ୟହ ସ୍ତ୍ରୀର ପ୍ରୀତି ସଂପାଦନ ପାଇଁ କିଛି ନା କିଛି କରି ରଖିବେ । ସାମାନ୍ୟ ଫୁଲଟିଏ ଆଦରରେ ପିନ୍ଧାଇଦିଅ, ଦେଖିବ ସ୍ତ୍ରୀ ମନରେ କି ଆନନ୍ଦ ।

ପ୍ରତ୍ୟେକେ ପ୍ରତ୍ୟେକ ପ୍ରତି ସତ୍ୟବ୍ରତ ରହିବାକୁ ଏକାନ୍ତ ଧର୍ମ ବୋଲି ଧରିନେବେ ।

ପୁରୁଷର ବାହାର ଜଗତର ବିଷୟ ସଂପର୍କରେ ସ୍ତ୍ରୀ ଅଯଥା କୁତୂହଳିନୀ ହେବେ ନାହିଁ ବା ସେଥିରେ ହସ୍ତକ୍ଷେପ କରିବେନାହିଁ, ବରଂ ସେ ଦିଗରେ ସ୍ତ୍ରୀ ସାହାଯ୍ୟ କରିବେ ।

ଏକତ୍ର ଭୋଜନ, ଆଳାପ ଓ ପ୍ରାର୍ଥନାର ଅଭ୍ୟାସ ରଖିଲେ ଏଥିରେ ଶାନ୍ତି ଓ ସୁଖ ମିଳିବ ।

ଉଭୟେ ଯୌନବିଜ୍ଞାନ ଶାସ୍ତ୍ର ଉତ୍ତମରୂପେ ପଢ଼ି ସେହି ଅନୁସାରେ ଅନ୍ୟୋନ୍ୟଙ୍କୁ ଦୈହିକ ଆନନ୍ଦଦାନରେ ସାହାଯ୍ୟ କରିବେ ।

ଭୋଗ ଅପେକ୍ଷା ସଂଯମ କଲ୍ୟାଣକର । ଏ ଦିଗରେ ଉଭୟେ ଉଭୟଙ୍କୁ ସାହାଯ୍ୟ କରିବେ ।

ବୌଦ୍ଧଶାସ୍ତ୍ରରେ ଦେବୀ ବିଶାଖାନାମ୍ନୀ ଜଣେ ମହୀୟସୀ ମହିଳାଙ୍କର ଚରିତ ବର୍ଣ୍ଣିତ ଅଛି । ସେ ଗୌତମ ବୁଦ୍ଧଙ୍କର ସମକାଳୀନ ଥିଲେ । ଆଦର୍ଶ କନ୍ୟା, ଆଦର୍ଶ ନାରୀ ଏବଂ ଆଦର୍ଶ ବଧୂ ଭାବରେ ତାଙ୍କ ଜୀବନର ଘଟଣାବଳୀ ଗଳ୍ପରେ ପରିଣତ ହୋଇଯାଇଛି । ନିମ୍ନରେ ସେହି ଗଳ୍ପର ଶିକ୍ଷଣୀୟ ଅଂଶହିଁ କୁହାଯାଉଛି ।

ଶ୍ରାବସ୍ତୀ ନଗରୀର ଜଣେ ମହା ଧନୀ, ମୃଗାରଙ୍କର ପୁଅ ପାଇଁ ଗୋଟିଏ ବୋହୂ ଲୋଡ଼ା ହେଲା । ସେ ସେଥିପାଇଁ ଜଣେ ବ୍ରାହ୍ମଣ ଘଟକ ନିଯୁକ୍ତ କଲେ । ସେହି ଘଟକ ବହୁ ନଗର ଓ ପଲ୍ଲୀରେ ଗୋଟିଏ ନିଖୁଣ ଗୁଣବତୀ କନ୍ୟାର ସଂଧାନ କରି କରି ଶେଷରେ ଆସି ଏକ ସ୍ଥାନରେ ଦେଖିଲେ ଯେ, ଦଳେ କୁମାରୀ ଆମୋଦ ପ୍ରମୋଦ ପାଇଁ ନଗର ଉପକଣ୍ଠସ୍ଥ ବଣକୁ ଯାଉଛନ୍ତି । ସେ ସେମାନଙ୍କ ପଛେ ପଛେ ଯାଇ ସେମାନଙ୍କ କର୍ମକଳାପ ଓ ଗତିବିଧି ଉପରେ ଆଖି ରଖିଲେ ।

ଘଟକ ଦେଖିଲେ ଯେ, ଅନ୍ୟ ସମସ୍ତ ବାଳିକା ଉଚ୍ଛନ୍ନ ଭାବରେ ଦୌଡ଼ାଦୌଡ଼ି, ଡ଼ିଆଁଡେଇଁ, ପାଟିତୁଣ୍ଡ କରୁଛନ୍ତି, କିନ୍ତୁ ଗୋଟିଏ ବାଳିକା ବଡ଼ ଧୀରସ୍ଥିର ଓ ଅଳ୍ପଭାଷିଣୀ । ଅନ୍ୟ ସମସ୍ତେ ଦେହର ଲୁଗାପଟା ଫୋପାଡ଼ିଦେଇ ପୋଖରୀରେ ଗାଧୋଇବା ପାଇଁ ପଶିଗଲେ, କିନ୍ତୁ ସେ ବଡ଼ ସଲଜ୍ଜ ଭାବରେ ଓ ଚାରିଆଡ଼କୁ ଦୃଷ୍ଟିଦେଇ ନିଜର ବସ୍ତ୍ର ଖୋଲିଲା ଓ ସ୍ନାନ ପରେ ସେହିପରି ସଲଜ୍ଜ ଭାବରେ ବସ୍ତ୍ର ପରିଧାନ କଲା । ସ୍ନାନ ପରେ ସମସ୍ତେ ତରତରରେ ଖାଇବାକୁ ଲାଗିଲେ, କିନ୍ତୁ ସେହି ବାଳିକାଟି ପ୍ରଥମେ ପରଶୁଣୀକୁ ଖୁଆଇ ତା'ପରେ ଯାଇ ଖାଇଲା । ବ୍ରାହ୍ମଣ ପୁଣି ଦେଖିଲେ ଯେ, ବାଳିକାମାନେ ଫେରିବା ବାଟରେ ପାଣି ଥିବାରୁ ଅନ୍ୟ ସମସ୍ତେ ପାଦରୁ ପାଦୁକା ଖୋଲି ଦେଲେ, କିନ୍ତୁ ସେହି ବାଳିକାଟି ପାଦରେ ପାଦୁକା ରଖି ପାଣିରେ ପଶିଲା । ବଣରେ ଅନ୍ୟ ସବୁ ବାଳିକା ଛାଇ ଥିବାରୁ ତାଙ୍କର ଛତା ବନ୍ଦକରିଦେଲେ, କିନ୍ତୁ ସେହି ବାଳିକା ଛାଇରେ ଗଛତଳେ ମଧ୍ୟ ଛତା ଖୋଲି ଚାଲିଗଲା ।

ବ୍ରାହ୍ମଣ ଆଉ ଧୈର୍ଯ୍ୟ ରକ୍ଷା କରି ନ ପାରି ବର୍ତ୍ତମାନ ବାଳିକାର ସମ୍ମୁଖୀନ ହେଲେ ଓ ତାଙ୍କୁ କେତେକ ପ୍ରଶ୍ନ ପଚାରିବାକୁ ଇଚ୍ଛା କଲେ । ବ୍ରାହ୍ମଣଙ୍କର ବୃଦ୍ଧ

ବୟସ ଓ ସୌମ୍ୟ ମୂର୍ତ୍ତି ଦେଖି ବାଳିକା ମଧ୍ୟ ଉତ୍ତର ଦେବାରେ ଅନିଚ୍ଛା କଲେ ନାହିଁ । ବ୍ରାହ୍ମଣ ପଚାରିଲେ– 'ମା, ତୁମର ନାମ କ'ଣ ?

ବାଳିକା – ମୋର ନାମ ବିଶାଖା ।

ବ୍ରାହ୍ମଣ – ମା, ତୁମ ପିତାଙ୍କର ନାମ କ'ଣ ?

ବାଳିକା – ମୋର ପିତାଙ୍କର ନାମ ବାଳମିତ୍ର ।

ବ୍ରାହ୍ମଣ – ମା, ମୁଁ ତୁମକୁ କେତେକ ପ୍ରଶ୍ନ କରିବି, ତୁମେ ନ ରାଗି ଉତ୍ତର ଦିଅ । ଅନ୍ୟ ବାଳିକାମାନେ ଏତେ ଧୂମ୍‌ଧାମ୍, ଦୌଡ଼ାଦୌଡ଼ି କରୁଥିଲା ବେଳେ ତୁମେ କାହିଁକି ଏତେ ଧୀରସ୍ଥିର ଭାବରେ ଚଲାବୁଲା କରୁଥିଲ ?

ବାଳିକା – ମହାଭାଗ, କନ୍ୟାମାତ୍ରେ ପିତାମାତାଙ୍କର ପଣ୍ୟ ଦ୍ରବ୍ୟ ପରି । ମୁଁ ଅସଂଯତ ଭାବରେ ଡେଇଁ କୁଦି ଯଦି ମୋର କୌଣସି ଅଙ୍ଗକୁ କ୍ଷତ କରାଏ ବା ହରାଏ, ତେବେ ମତେ ସାରା ଜୀବନ ବାପଘରେ ରହିବାକୁ ପଡ଼ିବ; କାରଣ ମତେ କେହି ବିଭା ହେବାକୁ ରାଜି ହେବେ ନାହିଁ ।

ବ୍ରାହ୍ମଣ – ମା, ଅନ୍ୟ ସବୁ ବାଳିକା ଲୁଗାପଟା ଫିଙ୍ଗିଦେଇ ଗାଧୋଇ ଗଲେ, ତୁମେ ସେପରି କଲ ନାହିଁ କାହିଁକି ?

ବାଳିକା – ମହାଭାଗ, ଲଜ୍ଜା ନାରୀର ଅଳଙ୍କାର । ବିବସ୍ତ୍ରା ହୋଇ ଅନ୍ୟ ଚକ୍ଷୁରେ ପଡିବା ସେମାନଙ୍କର ଉଚିତ୍ ନୁହେଁ ।

ବ୍ରାହ୍ମଣ – ମା, ସେଠାରେ ତ କେହି ଦେଖିବାକୁ ନ ଥିଲେ ।

ବାଳିକା – ମହାଭାଗ, ଆପଣ ତ ଦେଖିଛନ୍ତି ।

ବ୍ରାହ୍ମଣ – ଆଚ୍ଛା ମା, ଅନ୍ୟ ସମସ୍ତେ ପରିଚାରିକାମାନଙ୍କୁ ଅବହେଳା କଲେ – କିନ୍ତୁ ତୁମେ ସେମାନଙ୍କୁ ଆଗେ ଖାଇବାକୁ ଦେଲ କାହିଁକି ?

ବାଳିକା – ମହାଭାଗ, ଆମର ଜୀବନରେ ଭୋଗ ଅଛି, ସୁବିଧା ଅଛି, କିନ୍ତୁ ସେମାନଙ୍କ ଭାଗ୍ୟରେ ଖାଲି କଠିନ ଶ୍ରମ ।

ବ୍ରାହ୍ମଣ – ମା, ତୁମେ ପାଣି ଭିତରେ ମଧ୍ୟ ଗୋଡ଼ରେ ପାଦୁକା ଦେଲ କାହିଁକି ?

ବାଳିକା – ପାଣି ଭିତରେ କ'ଣ ଅଛି ଆମେ ତ ଦେଖିପାରୁନା । କଣ୍ଟା ପଥର ବାଜି କାଳେ ମୋ ଗୋଡ଼ କଟିଯାଇଥାନ୍ତା, ସେଥିପାଇଁ ପାଣି ଭିତରେ ବି ପାଦୁକା ପିନ୍ଧିଥିଲି ।

ବ୍ରାହ୍ମଣ – କିନ୍ତୁ ମା, ତୁମେ ଗଛର ଛାଇତଳେ ମଧ୍ୟ ଛତା ଧରି ଚାଲିଲ କାହିଁକି ?

ବାଳିକା – ମହାଭାଗ, ପକ୍ଷୀମଳ, ମାଙ୍କଡ଼ମାନଙ୍କ ଦ୍ୱାରା ନିକ୍ଷିପ୍ତ ଆବର୍ଜନା ଇତ୍ୟାଦି ଗଛଉପରୁ ପଡ଼ିବାର ଆଶଙ୍କା ଅଛି । ଖୋଲା ଆକାଶ ତଳେ ଏ ଭୟ ନାହିଁ ।

ବିଶାଖାର କଥୋପକଥନରେ ଅତ୍ୟନ୍ତ ପରିତୁଷ୍ଟ ହୋଇ, ବ୍ରାହ୍ମଣ ତତ୍‌କ୍ଷଣେ ହିଁ ବାଳମିତ୍ରଙ୍କ ନିକଟକୁ ଯାଇ ମୃଗାରକ ପୁତ୍ର ସହ ବିଶାଖାର ବିବାହ ପ୍ରସ୍ତାବ କଲେ । ପିତା ରାଜିହେଲେ । ବିଶାଖା ବିବାହପରେ ଶ୍ୱଶୁର-ନଗର ଶ୍ରାବସ୍ତିରେ ଯାଇ ରହିଲେ ।

ବୁଦ୍ଧିମତୀ ଓ ହୃଦୟବତୀ ବିଶାଖା, ବୁଦ୍ଧଙ୍କର ଭକ୍ତ ଥିଲେ; କିନ୍ତୁ ମୃଗାର, ତାଙ୍କ ପୁଅ ବା ତାଙ୍କ ପରିବାର କେହି ସେଥିପ୍ରତି ଶ୍ରଦ୍ଧାସଂପନ୍ନ ନ ଥିଲେ । ସେଥିପାଇଁ ବିଶାଖାଙ୍କ ବଧୂଜୀବନ କିଛି ପରିମାଣରେ ଅଶାନ୍ତିମୟ ହୋଇଉଠିଲା; କିନ୍ତୁ ସମସ୍ତ ମତଭିନ୍ନତା ସତ୍ତ୍ୱେ ବିଶାଖା ଯାହା ପ୍ରତି ଯାହା କର୍ତ୍ତବ୍ୟ ତାହା ସ୍ମିତମୁଖରେ କରୁଥିଲେ । ବିଶେଷତଃ ସେ ପଞ୍ଚ ସୁଷମାର ପୂର୍ଣ୍ଣ ଅଧିକାରିଣୀ ଥିବାରୁ ତାଙ୍କ ରୂପରେ ସମସ୍ତେ ମୁଗ୍ଧ ହେଉଥିଲେ । ଏହି ପାଞ୍ଚ ସୁଷମା ହେଉଛି-କେଶର ସୁଷମା, ମାଂସର ସୁଷମା, ଅସ୍ଥିର ସୁଷମା, ଚର୍ମର ସୁକ୍ଷମା ଏବଂ ଯୌବନର ସୁଷମା । କେଶର ସୁଷମା ହେଉଛି– ଯେତେବେଳେ ତାହା ପଶ୍ଚାତ୍‌ଭାଗରେ ଲମ୍ୱମାନ ହୋଇ ମୟୂରପୁଚ୍ଛ ସହ ତୁଳନୀୟ ହୋଇପାରେ; ମାଂସର ସୁଷମା ହେଉଛି– ଯେଉଁଠି ଓଷ୍ଠ ପକ୍ୱବିମ୍ୱ ପରି ଉଜ୍ଜ୍ୱଳ ଲାଲ୍; ଅସ୍ଥିର ସୁଷମା ହେଉଛି – ଦନ୍ତପନ୍ତି ସମଭାଗ ଓ ମୁକ୍ତା ପରି ଉଜ୍ଜ୍ୱଳ ହେଲେ; ଚର୍ମର ସୁଷମା – ଯେତେବେଳେ କୌଣସି ପ୍ରସାଧନର ବିନା ଆରୋପରେ ମଧ୍ୟ ତାହା ପଦ୍ମଦଳ ପରି ଚିକ୍କଣ ଓ କର୍ଣ୍ଣିକାର ପୁଷ୍ପପରି ପ୍ରଭାମୟ ହୁଏ; ଯୌବନ ସୁଷମା ହେଉଛି – ବହୁ ସନ୍ତାନର ଜନନୀ ହୋଇ ମଧ୍ୟ ଯୌବନଯୁକ୍ତ ରହିବା । ବିଶାଖାଙ୍କର ଏହି ସମସ୍ତ ସୁଷମା ଥିଲା, ପୁଣି ଆଉ ଏକ ଦୁର୍ଲଭ ସୁଷମାର ମଧ୍ୟ ସେ ଅଧିକାରିଣୀ ଥିଲେ – ତାଙ୍କର ସ୍ୱର ବୀଣାଝଙ୍କାର ପରି ମଧୁର ଥିଲା ।

କିନ୍ତୁ ସବୁ ଗୁଣ ସତ୍ତ୍ୱେ ବିଶାଖାଙ୍କ ହୃଦୟରେ ଶାନ୍ତି ନ ଥିଲା । ଶ୍ୱଶୁର ମୃଗାର କୃପଣ ଓ ଅନୁଦାର ଥିଲେ, ପୁଣି ବୁଦ୍ଧଙ୍କୁ ତାଚ୍ଛଲ୍ୟ କରୁଥିଲେ । ଲୋକେ ମଧ୍ୟ ମୃଗାରଙ୍କୁ କହିବାକୁ ଲାଗିଲେ– 'ଏପରି ଅପବିଶ୍ୱାସିନୀ ବୋହୂଟାକୁ ଘରେ କାହିଁକି ପୂରେଇଲ ? ସେ ତୁମ ଘରେ ଅମଙ୍ଗଳ ସୃଷ୍ଟି କରିବ । ସେ ଯେ ଧର୍ମଦ୍ରୋହୀ ଗୌତମ ଚେଲା – ତାକୁ ଘରୁ ବାହାର କରି ଦିଅ ।'

ଦିନେ ମୃଗାର ଭୋଜନ କରୁଥିଲେ । ବିଶାଖା ଶ୍ୱଶୁରଙ୍କ ନିକଟରେ ବସି ବ୍ୟଞ୍ଜନ ଚାଳନା କରୁଥିଲେ । ଏହି ସମୟରେ ଜଣେ ସାଧୁ ଭିକ୍ଷା ମାଗିଲେ । ମୃଗାର ଶୁଣି ନ ଶୁଣିଲାପରି ହେଲେ ଏବଂ ଖାଇବାରେ ଲାଗିଲେ ।

ବିଶାଖା କହିଲେ, ''ହେ ସାଧୁ, ତୁମେ ଚାଲିଯାଅ । ପିତା ବାସି ଖାଦ୍ୟ ଖାଉଛନ୍ତି । ଏ ଖାଦ୍ୟ ତୁମକୁ ସୁଖ ଲାଗିବ ନାହିଁ ।''

ଏ କଥା ଶୁଣି ମୃଗାର କ୍ରୋଧରେ ଚିତ୍କାର କରିବାକୁ ଲାଗିଲେ– 'ଫୋପାଡ଼

ଏ ଖାଦ୍ୟ; ଏ ସ୍ତ୍ରୀକୁ ଏ ଘରୁ ବାହାର କରି ଦିଅ । କହୁଛି ପୁଣି ମୁଁ ବାସି ଭାତ ଖାଉଛି ଆଜି ଏ ଉତ୍ସବ ଦିନରେ ।''

ବିଶାଖା ଅତ୍ୟନ୍ତ ଧୀରତା ସହ ଉତ୍ତର ଦେଲେ, ''ବାପା, ମୁଁ ସହଜରେ ଏ ଘର ଛାଡୁନାହିଁ । ମୁଁ କ'ଣ ନଈଘାଟରୁ ଗୋଟେଇଆଣିବା ବାରବନିତା ଯେ, ମତେ ଯେତେବେଳେ ଇଚ୍ଛା ସେତେବେଳେ କାଢ଼ି ଦେବ ଘରୁ ? ମୋର ପିତା ଏପରି ଘଟିବ ବୋଲି ଆଗରୁ ଆଶଙ୍କା କରିଥିଲେ ଏବଂ ସେଥିପାଇଁ ମୁଁ ଘର ଛାଡ଼ିଲାବେଳେ ଏ ନଗରର ଆଠ ଜଣ ଭଦ୍ରଜନଙ୍କ ନାମ କହିଥିଲେ, ଯେ କି ମୋ ବିରୁଦ୍ଧରେ କିଛି ଅଭିଯୋଗ ହେଲେ, ସେ ବିଷୟରେ ଅନୁସନ୍ଧାନ କରିବାକୁ ଡକାହେବେ । ତାଙ୍କୁ ବର୍ତ୍ତମାନ ଡାକି ମୋ କଥା ବିଚାର କରନ୍ତୁ ।''

ଅଷ୍ଟ ଗୃହପତି ଆସିଲେ । ସେମାନେ ମୃଗାରଙ୍କ ଅଭିଯୋଗ ଶୁଣି ବିଶାଖାଙ୍କୁ ପଚାରିଲେ– 'ମା, ଏ ଯାହା କହୁଛନ୍ତି, ତାହା କଣ ସତ୍ୟ ?'

ବିଶାଖା କହିଲେ, ''ମୋର କଥାର ଅର୍ଥ କିନ୍ତୁ ତାହା ନୁହେଁ । ମୁଁ ଯେତେବେଳେ କହିଲି, ମୋର ଶ୍ୱଶୁର ବାସି ଖାଦ୍ୟ ଖାଉଛନ୍ତି, ମୋ କହିବାର ତାତ୍ପର୍ଯ୍ୟ ଏୟା ଯେ, ସେ ପୂର୍ବଜନ୍ମର ସୁକୃତ କେବଳ ଭୋଗକରୁଛନ୍ତି । ଏ ଜନ୍ମରେ ନୂତନ ପୁଣ୍ୟକର୍ମ କରିବାର ଶ୍ରଦ୍ଧା ତାଙ୍କର ନାହିଁ – କାରଣ ସେ କାହାକୁ ଭିଖ ମୁଠିଏ ମଧ୍ୟ ଦିଅନ୍ତି ନାହିଁ ।'' ଅଷ୍ଟ ଗୃହପତି କହିଲେ, ''ବାଃ, ଆମ ବୋହୂତ ବଡ଼ ସୁନ୍ଦର କଥା କହୁଛନ୍ତି – ଏଥିରେ ରାଗିବାର କ'ଣ ଅଛି ?''

ମୃଗାର କହିଲେ, ''ଏଇଟା ଯଦିବା ଦୋଷ ନ ହେଲା, ତା'ର ଆଉରି ଅନେକ ବଦ୍‌ଗୁଣ ଅଛି । ଏ ଘରକୁ ଆସିଲାବେଳେ ତା' ମା' ତାକୁ କେତୋଟି କ'ଣ ଉପଦେଶ ଦେଇଛି, ସେ ସେଇଥିରେ ଚାଲେ, ଯାହା କି ଆମେ ଆଦୌ ପସନ୍ଦ କରୁନା । ଆମର ଏଠାର ପ୍ରଥା ହେଉଛି ପଡ଼ୋଶୀଙ୍କି ଦରକାର ହେଲେ ନିଆଁ ଯୋଗାଇବା । କିନ୍ତୁ ସେ ସବୁବେଳେ କହିବ, 'ଭିତର ନିଆଁ ବାହାରକୁ ନିଅନା', ଏହାର ମାନେ କ'ଣ ?''

ଗୃହପତିମାନେ କହିଲେ, ''ମା, ଏ ଯେପରି କହୁଛନ୍ତି, ତାହା ସତ କି ? ତା'ର ଅର୍ଥ କ'ଣ ?

ବିଶାଖା କହିଲେ, ''ତା'ର ଅର୍ଥ ହେଉଛି– ଯଦି ପରିବାର ଭିତରେ କାହାର କିଛି ଦୋଷ ଦେଖ, ତେବେ ସେ କଥା ବାହାର ଲୋକଙ୍କୁ କେବେହେଲେ କହିବ ନାହିଁ । କାରଣ ତା'ଠୁ ବଡ଼ ନିଆଁ ଜଗତରେ ନାହିଁ । ଏଟା କ'ଣ ମୋର ଦୋଷ ?''

ଗୃହପତିମାନେ କହିଲେ, ''ବୋହୂ କି ଚମତ୍କାର କଥା କହୁଛନ୍ତି । ମୃଗାର,

ତମର ରାଗିବାର କ'ଣ ଅଛି ?''

ମୃଗାର କହିଲେ– ''ମହାଶୟଗଣ, ଏଟା କଟିଗଲା, କିନ୍ତୁ ବାହାରର ନିଆଁ ଘର ଭିତରକୁ ଆଣିବନି; ଏ କିପରି କଥା ? ଇଏ ବି ତା' ବୋଉ ଶିଖାଣ । ଘରେ ନିଆଁ ନିଭିଗଲେ, ବାହାରୁ ନିଆଁ କିଏ ନ ଆଣେ ?''

ଗୃହପତିମାନେ କହିଲେ, ''ମା, ଏହାର କ'ଣ ଅର୍ଥ ?''

ବିଶାଖା କହିଲେ, ''ଏହାର ଅର୍ଥ ଏହି – ଯଦି ବାହାରର ଲୋକ ଘରଭିତରର କୌଣସି ଲୋକର ନିନ୍ଦା କରେ, ତେବେ ଘରଭିତରେ ସେଗୁଡ଼ାକ ପୁନରାବୃତ୍ତି କରନା । କାରଣ ବାକ୍ୟଠାରୁ ବଡ଼ ନିଆଁ ଆଉ କ'ଣ ଅଛି ?

ଗୃହପତିମାନେ କହିଲେ, ''ମା, ଏ ତ ଭଲକଥା; ତା' ପରେ ଅନ୍ୟ ସବୁ ?

ବିଶାଖା ଉତ୍ତର ଦେଲେ– ''ମୋ ମା' ମତେ କହିଥିଲେ, ଯେ ଦିଏ ତାକୁ ଦିଅ, ଯେ ନ ଦିଏ ତାକୁ ମଧ ।'' ଏହାର ତାତ୍ପର୍ଯ୍ୟ ଜ୍ଞାତି କୁଟୁମ୍ବ ପ୍ରତି ଦାନଶୀଳ ହୁଅ, ସେ ଶୁଝି ପାରନ୍ତୁ ବା ନା ପାରନ୍ତୁ । ପୁଣି – 'ସୁଖ ଉପବେଶନ କର ।' ଏହାର ତାତ୍ପର୍ଯ୍ୟ– 'ଯେତେବେଳେ ଶାଶୁ, ଶ୍ୱଶୁର ବା ସ୍ୱାମୀଙ୍କି ଦେଖିବୁ, ସେତେବେଳେ ସାଙ୍ଗେ ସାଙ୍ଗେ ଉଠି ଠିଆ ହେବୁ ।' ପୁଣି – 'ସୁଖ ଭୋଜନ କର ।' ଏହାର ତାତ୍ପର୍ଯ୍ୟ – 'ସେମାନଙ୍କୁ ଆଗ ଖାଇବାକୁ ଦେଇ ପରେ ଖାଇବୁ ।' ପୁଣି–ସୁଖ ଶୟନ କର ।' ଏହାର ତାତ୍ପର୍ଯ – 'ସେମାନଙ୍କର ସମସ୍ତ ସୁବିଧା ଓ ସ୍ୱାଛନ୍ଦ୍ୟ ଦେଖି ସାରିଲା ପରେ ଯାଇ ତୁ ଶୋଇବାକୁ ଯିବୁ ।'. . . ମହାଭାଗଗଣ, ମୁଁ ଏହି ସବୁ ଉପଦେଶ ପାଳନ କରିଆସୁଛି । ମୋର କ'ଣ ଦୋଷ ହେଲା, ଆପଣମାନେ କହନ୍ତୁ ।''

ମୃଗାର ଅତ୍ୟନ୍ତ ଲଜ୍ଜିତ ହୋଇ ଅଧୋମୁଖରେ ବସିରହିଥିଲେ । ଗୃହପତିମାନେ ତାଙ୍କୁ ପଚାରିଲେ, ''ହେ ଶ୍ରେଷ୍ଠି, ତୁମର ବଧୂ ବିରୁଦ୍ଧରେ ଆଉ କିଛି କହିବାର ଅଛି ?''

ସେ କହିଲେ– ''ନା, ଆଉ କିଛି ନାହିଁ ।''

କିନ୍ତୁ ବିଶାଖା ବର୍ତ୍ତମାନ ଉପଯୁକ୍ତ କ୍ରୋଧରେ କହିଉଠିଲେ, ''ମହାଭାଗଗଣ, ମୁଁ ଦୋଷୀ ସାବ୍ୟସ୍ତ ହୋଇ ଘରୁ ତଡ଼ାଖାଇଥିଲେ ଭଲ ହୋଇଥାନ୍ତା କି ? କିନ୍ତୁ ବର୍ତ୍ତମାନ ମୋର ନିର୍ଦ୍ଦୋଷତା ପ୍ରମାଣିତ ହୋଇସାରିଲା ପରେ, ମୁଁ ଆଉ ଏଠାରେ ଦଣ୍ଡେ ରହିବାକୁ ଚାହେନା ।''

ବିଶାଖା ତାଙ୍କର ଭୃତ୍ୟମାନଙ୍କୁ ଯିବାର ବ୍ୟବସ୍ଥା କରିବା ପାଇଁ ଆଦେଶଦେଲେ । ମୃଗାର ଲଜ୍ଜା ଓ ଭୟରେ ତାଙ୍କ କ୍ଷମା ଭିକ୍ଷା କରିବାକୁ ଲାଗିଲେ । ଶେଷରେ ବିଶାଖା ଶାନ୍ତ ହୋଇ କହିଲେ, ''ମୁଁ ଏପରି ଏକ ପରିବାରରେ ଜାତ, ଯେ କି ତଥାଗତଙ୍କର

ଭକ୍ତ । ମୁଁ ସଘଂରେ ଯୋଗଦେବାର ଅବାଧ ଅଧିକାର ଯଦି ପାଏ ତେବେ ଯାଇଁ ରହିବି – ନଚେତ୍ ନୁହେଁ ।''

ମୃଗାର ସେଥିରେ ରାଜିହେଲେ । କେବଳ ରାଜି ହେଲେ ନୁହେ, ତାଙ୍କର ଗୁଣବତୀ ବଧୂ ଶ୍ୱଶୁରଙ୍କୁ ଗୌତମଙ୍କ ନିକଟକୁ ନିଜ ସଙ୍ଗରେ ବାରମ୍ବାର ନେବା ଫଳରେ, ସେ ମଧ୍ୟ ବୁଦ୍ଧଙ୍କର ଭକ୍ତ ହେଲେ । ଏହି ବିଶାଖା ନିଜକୁ ନାନା ସତ୍‌କର୍ମରେ ସଂଯୁକ୍ତ କରି ଓ ସନ୍ତାନବତୀ ହୋଇ ଦୀର୍ଘ ଆୟୁଷ ଭୋଗକରିଥିଲେ । ତାଙ୍କ ସମ୍ବନ୍ଧରେ ଥରେ ବୁଦ୍ଧ କହିଥିଲେ, ''ଶ୍ରମଣଗଣ, ଗଦାଏ ଫୁଲ ପାଇଲେ ଦକ୍ଷ ମାଳାକାର ଯେପରି ଅସଂଖ୍ୟ ମାଳା ରଚି ଚାଲିଯାଏ, ବିଶାଖା ଦେବୀଙ୍କ ଚିତ୍ତ ସେହିପରି ସତ୍‌କର୍ମର ମନୋଜ୍ଞ ମାଳା ରଚିବାରେ ନିଯୁକ୍ତ ।''

ପ୍ରତ୍ୟେକ କନ୍ୟା, ବଧୂ, ପତ୍ନୀ ଓ ପ୍ରେୟସୀଙ୍କର ବିଶାଖା ଦେବୀଙ୍କ ପୁଣ୍ୟଚରିତ୍ରରୁ ବହୁତ ଶିଖିବାର ଅଛି ।

ବିବାହ ପୂର୍ବରୁ ବା ବିବାହର ଅବ୍ୟବହିତ ପରେ ତରୁଣ ତରୁଣୀ ଉଭୟଙ୍କର କୌଣସି ଏକ ମିଳିତ ଆଦର୍ଶ ଦିଗରେ ଜୀବନ ଚାଳନା କରିବା ସ୍ଥିର କରିନେବା କଲ୍ୟାଣଜନକ । କୌଣସି ଏକ ଉଚ୍ଚ ଆଦର୍ଶ ଉଭୟର ଲକ୍ଷ୍ୟ ହେଲେ ଉଭୟର, ଦେହ, ମନ, ଚିନ୍ତା, ଘରକରଣା– ସମସ୍ତହିଁ ସେହି ଅନୁଯାୟୀ ଗଢ଼ାହୋଇଯିବ । ଛୋଟ ଛୋଟ କଥା ଉପରୁ ଦୃଷ୍ଟି ଚାଲିଯିବାରୁ ଦୈହିକ ଭୋଗ ବଡ଼ ବା ପ୍ରଧାନ କଥା ହୋଇ ରହିବନାହିଁ ।

ବିବାହ ସୁଖର ହେଉ ବା ଅଶାନ୍ତିମୟ ହେଉ, ଉଭୟ କ୍ଷେତ୍ରରେ ବିରହ-ବିଚ୍ଛେଦର ମୂଲ୍ୟ ଅଛି । ବିରହ, ପ୍ରେମର ଲବଣ । ପ୍ରତ୍ୟେକ ମାସ ବା ମଝିରେ ମଝିରେ ସ୍ୱାମୀ ସ୍ତ୍ରୀ ଅଲଗା ଅଲଗା ରହିବା ଉଭୟ ପକ୍ଷରେ ମାନସିକ ଔଷଧ । ମାସ, ମାସ, ବର୍ଷ ବର୍ଷ ଧରି ଏକ ଯାଗାରେ ଏକ ପ୍ରକାର କାମ କରି ଓ ଏକ ଭାବରେ ଜୀବନ କାଟି କାଟି ମନ ଚିଟାଧରିଯାଏ । କିଛି କାଳ ଅଲଗା ରହି ଫେରି ଆସିଲାପରେ ପୁଣି ନୂଆ ମନିଷ ଭେଟ ହେଲାପରି ଲାଗିବ ।

ସର୍ବାଙ୍ଗ ସୁଖୀ ବିବାହ କେବଳ ଏକ କାଳ୍ପନିକ ସ୍ୱର୍ଗ । ମନୁଷ୍ୟ ଅସଂପୂର୍ଣ୍ଣ; ତେଣୁ ତା'ର କର୍ମ ଓ ଅନୁଷ୍ଠାନ ମଧ୍ୟ ଅପୂର୍ଣ୍ଣ । ତେଣୁ ସ୍ୱାମୀ ମନ ଅନୁଯାୟୀ ବା ସ୍ତ୍ରୀ ମନ ଅନୁଯାୟୀ ହେଲାନି ବୋଲି ଜୀବନକୁ ଅସନ୍ତୋଷମୟ କରିବା ମୂର୍ଖତା । ଯାହା ଭାଗ୍ୟରେ ମିଳିଛି ତାକୁଇ ଗଢ଼ି ଭାଙ୍ଗି ସୁନା କରିବାହିଁ ମନୁଷ୍ୟତା ଓ କୃତାର୍ଥତା ।

—

## ୩ । ଶ୍ରମ-କୌଶଳ

ପ୍ରସିଦ୍ଧ ଇଂରେଜ ଲେଖକ ଚାର୍ଲସ୍ ଲାମ୍ ଏକାଦିକ୍ରମେ ଦୀର୍ଘ ପଚିଶ ବର୍ଷ କାଳ ଇଣ୍ଡିଆ ଅଫିସରେ କିରାଣି ଥିଲେ । ସେ ଯେତେବେଳେ କାମରୁ ଅବସର ନେଲେ, ସେ ଆନନ୍ଦରେ ନୃତ୍ୟ କରିବାକୁ ଲାଗିଲେ; ବନ୍ଧୁମାନଙ୍କ ନିକଟକୁ ବଡ଼ ଖୁସିରେ ପତ୍ର ଲେଖି ଜଣାଇବାକୁ ଲାଗିଲେ, ସେ ବର୍ତ୍ତମାନ କି ଖୁସି; କାରଣ ତାଙ୍କର ପ୍ରଚୁର ବିଶ୍ରାମ, ସେ ବର୍ତ୍ତମାନ ପକ୍ଷୀ ପରି ସ୍ୱାଧୀନ । କିନ୍ତୁ ବର୍ଷେ ନଯାଉଣୁ ଚାର୍ଲସ୍ ଲାମ୍‌ଙ୍କ ମତ ବଦଳିଲା । ସେ ପୁଣି ସେହି ବନ୍ଧୁଙ୍କ ଭିତରୁ ଜଣକୁ ଲେଖିଲେ– ''ମୁଁ ଦେଖୁଛି 'ନାହିଁ ଶ୍ରମ' ଠାରୁ 'ବହୁ ଶ୍ରମ' ଶ୍ରେୟସ୍କର । ମୁଁ ଏବେ ଖାଲି ଚାଲୁଛି– ସେହି ହିଁ ମୋର ଏକମାତ୍ର କାମ । ମୋତେ ଆଉ କିଛି ଭଲ ଲାଗୁନି ।'' ସେ ବୁଝିବାକୁ ଲାଗିଲେ ଯେ ଏ ବିଶ୍ରାମଠାରୁ ସେବର କିରାଣିଗିରି, ସେହି ନିୟମିତ ଦୈନିକ ଖାଟିଣି ବରଂ ଦେହ ଓ ମନର ଉପକାରୀ ଦ୍ରବ୍ୟ ଥିଲେ ।

ଚାର୍ଲସ୍ ଲାମ୍‌ଙ୍କ ପରି ଅନେକ ଚାକିରିଆ ଅବସର ନେବା ପରେ ନିଜ ନିଜ ପିଲାକୁଟୁମ୍ବଙ୍କ ଭିତରେ ଏକ ଦୁର୍ବହ ଭାର ହୋଇପଡ଼ିବାର ଜଣାଅଛି । କାରଣ, ବିଶ୍ରାମର ଭାରା ସେମାନଙ୍କ ନିକଟରେ ଅସହ୍ୟ ହୁଏ । ରାଷ୍ଟ୍ର ଓ ମେସିନ୍, ସଭ୍ୟ ମନିଷର କର୍ମକୁ ନିୟନ୍ତ୍ରିତ କରିସାରିଛନ୍ତି; ତା' ହାତରୁ ଅନେକ ଶ୍ରମ ଛଡ଼େଇ ନେଇ ସାରିଲେଣି । ବର୍ତ୍ତମାନ ମନିଷର ଭାଳେଣି, ଶ୍ରମ-ଲାଘବ ନୁହେଁ, ଭାଳେଣି– ଶ୍ରମରେ ନିଜକୁ କିପରି ନିଯୁକ୍ତ ରଖିଲେ ଦେହର ଓ ମନର ସ୍ୱାସ୍ଥ୍ୟ ଭଲ ରହିବ । ଆଜି ପ୍ରତି ରାଜ୍ୟରେ ବେକାର ରହିବା ରାଷ୍ଟ୍ରୀୟ ଓ ବ୍ୟକ୍ତିଗତ ସମସ୍ୟା ।

କିନ୍ତୁ ଜଗତର କୋଟି କୋଟି ଲୋକ ପକ୍ଷରେ ପ୍ରକୃତ ସମସ୍ୟା ଏହା ନୁହେଁ ଯେ, ବିଶ୍ରାମର କିପରି ସଦ୍‌ବ୍ୟବହାର କରିବା, ବଡ଼ ସମସ୍ୟା ଶ୍ରମକୁ କିପରି ଶୃଙ୍ଖଳିତ କରିବା । ଶ୍ରମକୁ ନିୟମିତ କରିପାରିଲେ ସେଇଥିରୁ ଶ୍ରମ ଓ ବିଶ୍ରାମ ଦୁଇଟି ଯୁଗ୍ମଫୁଲ ପରି ଫୁଟିଉଠିବ । ବିଶ୍ରାମ ନୈଷ୍କର୍ମ୍ୟ ନୁହେଁ, ତାହା ପ୍ରୀତିକର ଶ୍ରମମାତ୍ର ।

ଗୀତା ହିନ୍ଦୁମାନଙ୍କର ଏକ ଧର୍ମଶାସ୍ତ୍ର ବୋଲି ଧରାହୁଏ । କୋଟି କୋଟି ହିନ୍ଦୁ ଏ ଗ୍ରନ୍ଥକୁ ପୁଣ୍ୟାର୍ଜନ ଲକ୍ଷ୍ୟରେ ପ୍ରତ୍ୟହ ପାଠାଭ୍ୟାସ କରିଥାନ୍ତି; କିନ୍ତୁ ଏ ଗ୍ରନ୍ଥରେ ପାପ ବା ପୁଣ୍ୟର ଚର୍ଚ୍ଚା ନାହିଁ । ଏହା କିପରି ବିଚାରବନ୍ତ ଭାବରେ ଜୀବନ ଯାପନ କରିବାକୁ ହେବ, ତାହାରି ନାନାଦିଗରୁ ଆଲୋଚନା ମାତ୍ର ଏବଂ ପ୍ରଧାନତଃ

ଏହା, କର୍ମ-ତତ୍ତ୍ୱର ହିଁ ଆଲୋଚନା । କାରଣ ଜୀବନ ବୋଇଲେ କର୍ମ । ଜଗତରେ ପ୍ରକୃତିଚାଳିତ ହୋଇ ସମସ୍ତ ଜୀବ କିଛି ନା କିଛି କର୍ମରେ ପ୍ରତି-ମୁହୂର୍ତ୍ତରେ ବ୍ୟାପୃତ । ଏ ଜୀବନରେ ନିଷ୍କର୍ମତା କ୍ଷଣକପାଇଁ ହେଲେ ଅସମ୍ଭବ । ତେଣୁ ସମଗ୍ର ଗୀତା ଏହି କର୍ମ୍ମଧାରାକୁ ମନୁଷ୍ୟ କିପରି 'ଜାଣିଶୁଣି ନିଜର ଓ ବିଶ୍ୱର କଲ୍ୟାଣ ପାଇଁ ପରିଚାଳିତ କରିବ, ତାହାରି ଆଲୋଚନାର ଗ୍ରନ୍ଥ ।

ଗୀତା କିନ୍ତୁ ମାନବ ଜୀବନକୁ ସମଗ୍ରଭାବରେ ଧରି ଆଲୋଚନା କରିଥିବାରୁ ଦୈନନ୍ଦିନ ଜୀବନର ଟିକିନିଖି ବିଷୟର ଆଲୋଚନା ପାଇଁ ସେଥିରେ ସ୍ଥାନ ନାହିଁ; ଯଦି ବା ଖାଦ୍ୟାଖାଦ୍ୟ ଦାନଧର୍ମ ବିଷୟରେ ପଦେ ପଦେ ଏଠି ସେଠି ଅଛି । ସାଧାରଣ ମନିଷକୁ ଦୈନନ୍ଦିନ ଜୀବନର ଛୋଟ ଛୋଟ ବ୍ୟାପାରହିଁ ବଡ଼ ସମସ୍ୟା । ମୁକ୍ତି, ପାପ, ଧର୍ମ, ପୁଣ୍ୟ ପ୍ରଭୃତିର ତାତ୍ତ୍ୱିକବିଚାର, ଆମର ପ୍ରାତ୍ୟହିକ ଜୀବନରେ, ଆମର ଚିତ୍ତଲୋକର ସଦର ଦରଜା ମାଡିବାକୁ ସାହସ କରେନା । ସେଠି ପ୍ରଚଣ୍ଡ ଭିଡ଼, ପାର୍ଥିବ ଜୀବନର ଲାଭ-କ୍ଷତିର ସିପାହୀମାନଙ୍କର । ଆମ ଦେଶରେ ବରାବର ଏ ଗୁଡ଼ିକୁ ତାଚ୍ଛଲ୍ୟ କରାଯାଇଛି । ଏମାନଙ୍କୁ ସଂଯତ, ସମୃଦ୍ଧ, ନିୟମିତ କରିବାର କୌଣସି ବ୍ୟବସ୍ଥା କରା ନ ହେବାରୁ ଆମ ଦେଶରେ ପାର୍ଥିବ ସଫଳତା ଯେତେ ପରିମାଣରେ ଋଦ୍ଧିମନ୍ତ ହେବାର କଥା ତାହା ହୁଏ ନାହିଁ ।

କର୍ମକୁ ଶୃଙ୍ଖଳିତ ଓ ସମୃଦ୍ଧ କରିବାର ଉପାୟ ବାଛିବା ଆଗରୁ ଆମର ଜାଣିବା ଉଚିତ, କର୍ମ କ'ଣ ଓ ଅକର୍ମ କ'ଣ । ଯେ କୌଣସି ଶାରୀରିକ ବା ମାନସିକ ଚାଳନା କର୍ମ ନୁହେଁ, ଶ୍ରମ ମାତ୍ର । କର୍ମ ସେହି, ଯାହା ଫଳପ୍ରସୂ, ଯାହା ମନିଷକୁ ଅଭିବୃଦ୍ଧି ଦାନକରେ, ଯାହା ଦ୍ୱାରା ମଣିଷ ମାଟିକୁ ସୁନା କରେ । କୌଣସି ଲୋକ ପାହାଡ଼ଟାକୁ ହାତୁଡ଼ି ନେଇ ଦିନଯାକ ପିଟିପାରେ – ତାହା ଶ୍ରମ ମାତ୍ର, କାରଣ ତାହା ଅଫଳପ୍ରସୂ । ସେହି ଶ୍ରମ ପ୍ରୟୋଗ କଲେ, ପାହାଡ଼ ତଳେ ମାଟିରୁ ସୁନା ଫଳିବ । ତାହା ହେବ କର୍ମ । ଏହି କର୍ମହିଁ ମଣିଷକୁ ବଞ୍ଚେଇରଖିଛି ଓ ତାହାର ସଭ୍ୟତାକୁ ଗଢ଼ିଛି ।

ଜାତିବିଭାଗ ଦ୍ୱାରା ହଜାର ହଜାର ବର୍ଷ ଧରି ଭାରତବର୍ଷରେ ଜନ୍ମ ବେଳୁ ବ୍ୟକ୍ତିପାଇଁ କର୍ମ ନିର୍ଦ୍ଦିଷ୍ଟ ରହିଆସିଥିଲା । ହାଡ଼ିର ପିଲା ହାଡ଼ି ଓ ବ୍ରାହ୍ମଣର ପିଲା ବ୍ରାହ୍ମଣ ହୋଇ ଆସୁଥିଲେ । ଏବେ କିନ୍ତୁ ଅବସ୍ଥା ବଦଳିଛି । ଆଜି ଭାରତବର୍ଷରେ ଜୀବନ ପଥରେ ସବୁଜାତିର ପିଲେ ଏକା ବିନ୍ଦୁରୁ ଯାତ୍ରା କରିବା ଶିଖିଲେଣି । ବ୍ରାହ୍ମଣ ଓ ଚମାର ଏକା ପାଠ ପଢ଼ି ଏକା ବୟସରେ ଏକ ଜାତି-ହୀନ କର୍ମ-କ୍ଷେତ୍ରରେ କାନ୍ଧକୁ କାନ୍ଧ ଲଗାଇ ଠିଆହେବାକୁ ଆରମ୍ଭକଲେଣି । ଗୁଣାନୁଯାୟୀ,

ଏବେ ଚମାର ବ୍ରାହ୍ମଣ ଓ ବ୍ରାହ୍ମଣ ଚମାର ହୋଇପାରେ । ଜନ୍ମହେତୁକ ଗୋଷ୍ଠୀ-ସୃଷ୍ଟିର କାଳ ଗଲା, ବର୍ତ୍ତମାନ ଗୀତୋକ୍ତ ଗୁଣକର୍ମହେତୁକ ଗୋଷ୍ଠୀ-ସୃଷ୍ଟିର ପ୍ରକୃତ ଯୁଗ ଆସିଛି ।

ତରୁଣ ଜୀବନ ଆଗରେ ବହୁ ଆଦର୍ଶର ପ୍ରଲୋଭନ । ମନ୍ତ୍ରୀ, ସେନାପତି, ବକ୍ତା, କବି, ଅଧ୍ୟାପକ, ବୈଜ୍ଞାନିକ-ସେ କ'ଣ ହେବ ବା ନ ହେବ ? ସିଦ୍ଧି ଅପେକ୍ଷା ଯଶର ଲାଳସା ବେଶୀ । ଯଶର ଲାଳସାରେ ସେ ହୁଏତ ଯା-ହେବ କି ତାହା-ହେବାର ଆଲୋଚନାରେ କେବଳ ସହଜତମ ପନ୍ଥାଆଡ଼କୁ ଆକୃଷ୍ଟ ହେବ । ଭାରତବର୍ଷରେ ଏବେ ଅନେକ ଯୁବକ ଯୁବତୀର ରାଜନୀତି-ପ୍ରବେଶର ମାନସିକ ତତ୍ତ୍ୱ ଏହିଠି; କିନ୍ତୁ ଏହା ମାରାତ୍ମକ ପନ୍ଥା । ଗୀତା ଏହାକୁ ଲକ୍ଷ୍ୟ କରି କହିଛି, "ସ୍ୱଧର୍ମେ ନିଧନଂ ଶ୍ରେୟଃ, ପରଧର୍ମୋ ଭୟାବହଃ ।" ଯାହାର ବୈଜ୍ଞାନିକ ହେବାର ଥିଲା, ସେ ଯଦି ଶସ୍ତା ଜନପ୍ରିୟତା ବା ପଦମର୍ଯ୍ୟାଦା ଲୋଭରେ ବିଜ୍ଞାନର ରୁକ୍ଷ-କଠିନ ପଥ ଛାଡ଼ି ନେତା ସାଜେ ବା ବ୍ୟବସାୟ କରେ, ତେବେ ତା'ର ମୃତ୍ୟୁ ଅପଘାତ ମୃତ୍ୟୁଠାରୁ ଅଧିକ ଦୁଃଖାବହ ।

ଇହଜୀବନର ବହୁ କର୍ମପନ୍ଥା ଭିତରୁ ଆମକୁ ଗୋଟିଏ ବାଛିନେବାକୁ ହେବ । ତାହା ସହଜାତ ଗୁଣ ଅନୁଯାୟୀ ବା ଅଭିଳାଷ ଅନୁଯାୟୀ ହୋଇପାରେ । କିନ୍ତୁ ଥରେ ବାଛିଲେ, ଆଉ ଯେପରି ପଛକୁ ହଟିବା ବା ଇତଃସ୍ତତ ହେବାର ନ ଥାଏ । ବରଂ ତେଣିକି ତାରି ଉପରେ ଏକାଗ୍ର ଅଭିନିବେଶ ପୁଞ୍ଜୀଭୂତ କରିବା ଉଚିତ୍ । ସେଇଥିରେ ହିଁ ସିଦ୍ଧି ସମ୍ଭବ । ପାଣି ନିରବଚ୍ଛିନ୍ନ ଭାବରେ ପଡ଼ି ପଡ଼ି ପଥରକୁ କ୍ଷୟ କରେ । ତେଣୁ ନିରବଚ୍ଛିନ୍ନ ଅଭ୍ୟାସରେ ଯେ କୌଣସି କର୍ମରେ ଯେ ଫଳ ମିଳିବ, ଏଥିରେ ସନ୍ଦେହ ନାହିଁ । ପୁଣି, ଗୋଟାଏ ବଡ଼ କାମରେ ହାତ ଦେଇ ଅଧାପନ୍ତରିଆ କରିବା ଅପେକ୍ଷା, ଛୋଟ କାମରେ ପୂର୍ଣ୍ଣ ସିଦ୍ଧି ଅଧିକ ପ୍ରଶଂସାଜନକ । ନିପଟୁ ପ୍ରଫେସର ଅପେକ୍ଷା, ନିପୁଣ କୁମ୍ଭକାର ବା ପଥୁରିଆର ସମ୍ମାନ ଓ ଆଦର ସମାଜରେ ବେଶି ।

ଗୋଟିଏ ପ୍ରଶସ୍ତ କର୍ମ-ପନ୍ଥାରେ ପୁଣି ଛୋଟ ଛୋଟ ପଥ ଅନେକ ଅଛି । ସାହିତ୍ୟ ଜଗତର କଥା ଧରାଯାଉ । ଛୋଟଗଳ୍ପ, ଉପନ୍ୟାସ, ନାଟକ, କବିତା, ସଂବାଦପତ୍ର ସେବା– କେତେ ବିଭାଗ ଏଥିରେ ଅଛି । କୌଣସି ଲୋକ ପକ୍ଷରେ ସବୁ ବିଭାଗରେ ସମଭାବରେ ନିପୁଣତା ଲାଭ କରିବା ସମ୍ଭବ ନୁହେଁ । ସାହିତ୍ୟିକ ନିଜର ରୁଚି ଅନୁଯାୟୀ ଗୋଟିଏ ବିଭାଗ ବାଛିନେଇ, ସେଇ ଦିଗରେହିଁ ସମସ୍ତ ଉଦ୍‌ଯୋଗ ପ୍ରୟୋଗ କରିବା ଉଚିତ । ନେପୋଲିୟନ କହୁଥିଲେ ଯେ,

'ସଂଗ୍ରାମରେ ଅନ୍ତତଃ ଗୋଟିଏ ବିନ୍ଦୁରେ ବଳବତ୍ତର ରହିଲେ, ଅନ୍ୟ ବିନ୍ଦୁଗୁଡ଼ିକର ଦୁର୍ବଳତା ମେଣ୍ଟେଇ ହୋଇଯିବ ।'

କୌଣସି କର୍ମ ହାତକୁ ନେବା ଆଗରୁ ତାହାର ପୁଙ୍ଖାନୁପୁଙ୍ଖ ଯୋଜନା କରି ରଖିବା ଉଚିତ । କୌଣସି କାମକୁ କ୍ଷୁଦ୍ର ବୋଲି ଅବହେଳା କରାଯିବା ମାରାତ୍ମକ ପ୍ରମାଦ । ଡିଉକ୍ ଅବ୍ ୱେଲିଙ୍ଗ୍‌ଟନ୍ ଭାରତବର୍ଷରେ ସେନାପତି ଥିଲାବେଳେ, ବଳଦ ଗାଡ଼ି ଘଣ୍ଟାରେ କେତେ ମାଇଲରୁ ଅଧିକ ଚାଲିବନି, ଚାଉଳକୁ କିପରି ରନ୍ଧାଯିବ ଇତ୍ୟାଦି ନିତାନ୍ତ ଛୋଟ ଛୋଟ ବିଷୟରେ ସୈନ୍ୟମାନଙ୍କ ଭିତରେ ଲିଖିତ ଇସ୍ତାହାର ଦେଉଥିଲେ । ଛୋଟ ବଡ଼ ସମସ୍ତ ବିଷୟ ଖିନ୍ନଭିନ୍ନ ବିଚାର କରିସାରି କୌଣସି କର୍ମପଥରେ ଯେ ପାଦ ଦିଆଯିବ, ତାର ଆଉ ଲେଉଟିବା ଯେପରି ନ ଥାଏ । ସେନାପତି ଆଦେଶ ଦେବା ଆଗରୁ ଉପାୟ, ଅପାୟ ସବୁ ଭାବି ଦେଖିବେ; କିନ୍ତୁ ଥରେ ଆଦେଶ ବାହାରିଲେ ତା'ର ବ୍ୟତିକ୍ରମ ଯେପରି ନ ହୁଏ । ସଂଗ୍ରାମ ଭୂମିରେ ଯେପରି, ଅଫିସ୍ ସ୍କୁଲରେ ମଧ୍ୟ ସେଇପରି ଏ ନିୟମ ପ୍ରତିପାଳିତ ହେବା ଉଚିତ । ଏହା ନ ହେଲେ ଡିସିପ୍ଲିନ୍‌ରେ ମୂଳରେ କୁଠାରାଘାତ ହେବ ।

କୌଣସି କର୍ମାରମ୍ଭ ପୂର୍ବରୁ ବା ନିମ୍ନସ୍ଥ କର୍ମଚାରୀମାନଙ୍କୁ କୌଣସି କର୍ମ ଯୋଜନା ପାଇଁ ଆଦେଶ ଦେବା ପୂର୍ବରୁ, ଭାବିନେବା ଉଚିତ, ଯାହା ଆରମ୍ଭ କରାଯିବ ବା ଯେଉଁ ବିଷୟରେ ଆଦେଶ ଦିଆଯାଉଛି ତାହା ସମ୍ଭବ କି ନା । ଅସମ୍ଭବ ବା ଦୁଷ୍କର କର୍ମରେ ହାତ ଦେଇ ବାରମ୍ବାର ଭଗ୍ନାଂଶ ହେଲେ, ଆତ୍ମପ୍ରତ୍ୟୟ ନଷ୍ଟ ହୁଏ ଏବଂ ଜୀବନ ହାହାକରମୟ ହୁଏ । ଏହା ଅପେକ୍ଷା ବରଂ ନିଜର ଶକ୍ତି, ସାମର୍ଥ୍ୟର ଅନୁକୂଳ ଗୋଟିଏ ଗୋଟିଏ ଛୋଟ କାମ ହାତକୁ ନେଇ ସେଥିରେ ସିଦ୍ଧକାମ ହେଲେ ଆତ୍ମବିଶ୍ୱାସ ବଢ଼ିବ ଓ ବଡ଼ ବଡ଼ କାମ ହାତକୁ ନେବାକୁ ସାହସ ହେବ । ଯଦି ବା କୌଣସି ବଡ଼ କାମ ହାତରେ ପଡ଼ିଲା, ତାକୁ ସୁଚିନ୍ତିତ ଭାବରେ ଭାଗ ଭାଗ କରିଦେଇ, ଏକ ଏକ ଭାଗ ଆରମ୍ଭ ଓ ନିଖୁଣ ଭାବରେ ଶେଷ କଲା ପରେ, ଅନ୍ୟାନ୍ୟ ଭାଗରେ ହାତ ଦେବା ଉଚିତ । କଠିନ ଅଂଶଗୁଡ଼ିକୁ ପଛକୁ ରଖି, ପ୍ରଥମେ ସହଜ ଭାଗଗୁଡ଼ିକ ଆରମ୍ଭ ଓ ଶେଷ କରାଯାଇପାରେ । ଯେଉଁ ଭାଗଟି ହାତକୁ ନେବ; ସେ ଭାଗଟି ଶେଷ ନହେଲା ଯାଏ, ପୂର୍ବ ବା ପରଭାଗ ପ୍ରତି ଆଦୌ ଦୃଷ୍ଟି ଦେବ ନାହିଁ ।

ଗୀତାରେ ଅଛି, ''ଯୋଗଃ କର୍ମସୁ କୌଶଳଂ'' । କର୍ମର ପ୍ରଧାନ କୌଶଳ ହେଉଛି ଯୋଗ ବା ଏକାନ୍ତ ଅଭିନିବେଶ । ଯେଉଁମାନେ ଜନପ୍ରିୟ ହେବାକୁ ବା ସବୁଦିଗରେ ପାରଙ୍ଗମତା ଦେଖାଇବା ପାଇଁ ନାନା ବିଦ୍ୟାରେ ହାତ ଦିଅନ୍ତି ବା

କୌତୂହଳ ପ୍ରକାଶ କରନ୍ତି, ସେମାନେ ଜୀବନରେ ବିଶେଷ କିଛି ସିଦ୍ଧି ଲାଭ କରି ପାରନ୍ତି ନାହିଁ । ଜଗତରେ ଯେଉଁମାନେ ବଡ଼ କାମ କିଛି କରିଯାଇଛନ୍ତି, ସେମାନଙ୍କର ବୁଦ୍ଧି ଏକମୁଖୀ । ଗୀତା ବି କହିଛନ୍ତି ଅବ୍ୟବସାୟୀ, ଅର୍ଥାତ୍, ଲଘୁ-ପ୍ରତିଜ୍ଞ ଲୋକର ବୁଦ୍ଧି ବହୁଶାଖ – ତେଣୁ ସେ ସିଦ୍ଧି ଲାଭ କରିବ କିପରି ? ବାପୁଜୀ ନିଜର କର୍ମ ଯୋଜନାରେ ଏଡ଼େ ଅଭିନିବିଷ୍ଟ ଥିଲେ ଯେ, ଜଗତ୍‌ବିଖ୍ୟାତ ଅଭିନେତା ଚାର୍ଲିଚାପ୍‌ଲୀନ୍‌ଙ୍କର ନାମ ବି ଶୁଣି ନଥିଲେ । ଲଣ୍ଡନରେ ଚାର୍ଲିଚାପ୍‌ଲୀନ୍ ତାଙ୍କ ସଙ୍ଗେ ଦେଖାକରିବାକୁ ଆସିଲାବେଳେ ବାପୁଜୀଙ୍କର ଏହି ଅଜ୍ଞତା ନେଇ ବିଲାତର ଖବରକାଗଜମାନଙ୍କରେ ଚହଳ ପଡ଼ିଥିଲା । କିନ୍ତୁ ସାଧନା ଫଳରେ ବାପୁଜୀ ମହାତ୍ମା ହେଲେ; ସେଥିରେ କୌଣସି ଅଭିନେତା ବା ଅଭିନେତ୍ରୀ ବା ଏରୋପ୍ଲେନ୍‌ର ଗତି ବା ଫୁଟ୍‌ବଲ ଖେଳ ବିଷୟରେ ଜାଣିବା ନ ଜାଣିବାରେ କି ଲାଭ କ୍ଷତି ଅଛି ?

କର୍ମ-ସିଦ୍ଧିର ତେଣୁ ମୂଳମନ୍ତ୍ର ହେଉଛି, ଏହି ପରିଚିତ ଇଂରେଜୀ ବାକ୍ୟ– Mind your own business. ଶିକ୍ଷକ, ଅଧ୍ୟାପକ, ଛାତ୍ର, କିରାଣୀ, ପୋଲିସ୍ କର୍ମଚାରୀ– ଏ ସମସ୍ତେ ପ୍ରଥମେ ନିଜନିଜର କର୍ତ୍ତବ୍ୟ ନିଖୁଣ ଭାବରେ କରୁଛନ୍ତି କି ନାହିଁ, ତାହାର ଆତ୍ମ ପରୀକ୍ଷା କରିବା ଦରକାର । ତା' ନ କରି ଆନ୍ତର୍ଜାତିକ ସମସ୍ୟାର ଚର୍ଚ୍ଚା, ମନ୍ତ୍ରୀଙ୍କି ଗାଳି ବା ୟା'ର ତା'ର ନିନ୍ଦା ପ୍ରଶଂସାରେ ସମୟ ଦେବା ସମୟ ଓ ଶ୍ରମର ଅପବ୍ୟୟ ମାତ୍ର ।

ସାର୍ ପି.ସି. ରାୟ ଅନେକଥର କହିଛନ୍ତି ଯେ, ଜଣେ ଲୋକ ଦିନରେ ଅନ୍ତତଃ ଦୁଇଘଣ୍ଟା ମନୋଯୋଗ ଦେଇ ପଢ଼ିଲେ ଏକ ଅତିବଡ ପଣ୍ଡିତ ହୋଇଉଠିବ । ଯେ ଅଳସ ଓ ଯାର କାମ ବିଶୃଙ୍ଖଳ, ତାକୁ ଛୋଟବଡ଼ ସବୁ ପ୍ରକାର ସିଦ୍ଧି ଅସମ୍ଭବ । କାମରେ ଅଭିନିବେଶ ଓ ଶୃଙ୍ଖଳା ରହିଲେ, କୌଣସି ସିଦ୍ଧିରେ ସନ୍ଦେହ କରିବାର ଅବକାଶ ନାହିଁ । ଜଣେ ଲେଖକ ଦିନରେ ଦୁଇପୃଷ୍ଠା ମାତ୍ର ଲେଖିଲେ ଏକ ବର୍ଷରେ ସାତ ଶହ ପୃଷ୍ଠାର ଏକ ପୁସ୍ତକ ଲେଖିଦେଇପାରେ । ଏକ ଏକ ଅଧ୍ୟାୟ ଲେଖୁଲେଖୁ ଦିନେ ଜଣେ ଲେଖକ ଦେଖିବ ଯେ, ସେ ନିଜ ଦେଶର ଇତିହାସ ବା କୌଣସି ବଡ଼ଲୋକର ଜୀବନୀ ନେଇ ଏକ ପ୍ରକାଣ୍ଡ ଗ୍ରନ୍ଥ ଲେଖିପାରିଛି । ପାଦେ ପାଦେ କରି ଚାଲି ଯାତ୍ରୀ ହଜାର ହଜାର କୋଶ ଘୂରିଆସେ ।

କର୍ମରେ ଉପଯୁକ୍ତ ଅଭିନିବେଶ ଓ ଶୃଙ୍ଖଳା ପାଇଁ ଅବଶ୍ୟ ନିରୋଳ ଶାନ୍ତି ଦରକାର । ଏଥିପାଇଁ ବହୁକାଳରୁ ଆମ ଦେଶରେ ଯୋଗଧ୍ୟାନ ପାଇଁ ଲୋକେ ଲୋକାଳୟରୁ ଦୂରକୁ ବଣରେ ଯାଇ ରହୁଥିଲେ । ଏବେ ତାହା ସମ୍ଭବ ନୁହେଁ;

କିନ୍ତୁ ଘରେ, ସହରରେ ବି ଯଥେଷ୍ଟ ନୀରବ ଶାନ୍ତ ବାୟୁମଣ୍ଡଳ ମିଳିପାରେ ବା ମିଳିବାର ବନ୍ଦୋବସ୍ତ କରାଯାଇପାରେ । ଆମେ ଭାରତବର୍ଷରେ ଲୋକେ କଥା-ଭାଷାରେ ବଡ଼ ଶବ୍ଦ କରୁ । ପାଞ୍ଚଶ ଇଂରେଜ ଖାଇବସିଥିଲେ ଉଁଚୁଁ ଶବ୍ଦ ଶୁଭିବ ନାହିଁ; କିନ୍ତୁ ପାଞ୍ଚଟି ଭାରତୀୟ ଏକାଠି ହେଲେ ହାଟ ବସିଲା ଜାଣ । ଟ୍ରାମ୍‌ରେ, ବସ୍‌ରେ ବା ଲୋକ ଜମାହୋଇଥିବା ଜାଗାରେ ଇଂରେଜମାନେ ଖୁବ୍ ଧୀରେ ଧୀରେ କଥା କହନ୍ତି– ଅବଶ୍ୟ ଚେଷ୍ଟାକରି; ଅନ୍ୟମାନଙ୍କର ଅସୁବିଧା ଯେପରି ନ ହେବ, ତା'ପ୍ରତି ସାବଧାନ ହୋଇ । ବିଲାତରେ ପ୍ରତ୍ୟେକ ଘରେ ପ୍ରତ୍ୟେକ ବଖରାର କବାଟ ବରାବର ବନ୍ଦ ଥାଏ । ପ୍ରତ୍ୟେକ ବଖରାରେ ଥିବା ଲୋକ ନିଜର ଯାହା ଇଚ୍ଛା ସେ ଅନୁସାରେ ଅବାଧରେ କରିବାର ସୁବିଧା ଦେବାପାଇଁ ହିଁ ଏଇ ବ୍ୟବସ୍ଥା । କୌଣସି ବଖରାକୁ କେହି ଯିବାକୁ ଚାହିଲେ ଆଗନ୍ତୁକ ପ୍ରଥମେ ଧୀରେ ଧୀରେ ଟିପରେ କବାଟ ଉପରେ ଆଘାତ କରିବେ । କକ୍ଷ ଭିତରୁ ଅନୁମତି ମିଳିଲେ, ଆଗନ୍ତୁକ ଦୁଆର ଖୋଲିବେ ଓ ପୁଣି ନିଜେ ବନ୍ଦକରି କଥାଭାଷା ଆରମ୍ଭ କରିବେ । ଏ ପ୍ରକାର ସୁନ୍ଦର ବ୍ୟବସ୍ଥା ଥାଇ ମଧ୍ୟ ଅନେକ ମଧ୍ୟବିତ୍ତ ଇଂରେଜ ପରିବାରରେ ଏକ ଏକ ଲାଇବ୍ରେରୀ ରୁମ୍ ଥାଏ, ଯେଉଁଠି ଗୃହକର୍ତ୍ତା ବା ତାଙ୍କର ପୁଅଝିଅ ଖାଇପିଇ ଲେଖାପଢ଼ି ପାଇଁ ଚାଲିଯାନ୍ତି– ସେଠି ଅନ୍ୟ କାହାରି ପ୍ରବେଶ ଏକାନ୍ତ ନିଷିଦ୍ଧ ।

ଗୃହକର୍ତ୍ତା ବା ଗୃହକର୍ତ୍ତ୍ରୀ ପରିବାରର କାମ ଯଥାଯୋଗ୍ୟ ଭାବରେ ବାଣ୍ଟିଦେବେ, ଯାହାର ଭାଗରେ ଯେଉଁ କାମ ପଡ଼ିଲା ସେ ନୀରବରେ ତାହା କରିଯିବେ । କଥାବାର୍ତ୍ତା ବା ଆଦେଶ ଉପଦେଶ ଯାହା ଦରକାର, ତାହା ଧୀର, ଅନୁଚ୍ଚ ସ୍ୱରରେ ହେଲେ, ପ୍ରତ୍ୟେକ ଘରେ ଯଥେଷ୍ଟ ଶାନ୍ତି ମିଳିବ ।

ଏ ତ ଗଲା ଘରର ଆଭ୍ୟନ୍ତରିକ ଶାନ୍ତି । ବାହାରୁ ଅନାକାଙ୍କ୍ଷିତ ଆଗନ୍ତୁକ, ଦର୍ଶକ ଓ ଭିକ୍ଷାଶୀର ଦଳ ମଧ୍ୟ କର୍ମଯୋଗୀ ପ୍ରତି ଆଉ ଏକ ଅଶାନ୍ତିର କାରଣ । ଯେଉଁ ବ୍ୟକ୍ତି ନିଜର ଲକ୍ଷ୍ୟସାଧନାରେ ସହାୟକ, କେବଳ ତାଙ୍କୁ ବାଦ୍‌ଦେଇ; ଅନ୍ୟମାନଙ୍କ ପ୍ରତି ମାୟାମମତା ଦେଖାଇବାର କୌଣସି କାରଣ ନାହିଁ । ପରିଷ୍କାର କହିଦିଅ ଯେ, ତମଦ୍ୱାରା ତାଙ୍କର ପ୍ରତ୍ୟାଶା ପୂରଣ ହୋଇପାରିବ ନାହିଁ ବା ତୁମେ ବର୍ତ୍ତମାନ ସେ ଅନୁରୋଧ ହାତକୁ ନେଇପାରିବନି; କିନ୍ତୁ ଯାହା କହିବ ଅତ୍ୟନ୍ତ ଭଦ୍ରଭାବରେ କହିବା ଉଚିତ୍ । କୌଣସି ଲକ୍ଷ୍ୟରେ ପହଞ୍ଚିବା ଲାଗି ରୁକ୍ଷ ବ୍ୟବହାର ସହାୟକ ନୁହେ ।

ସିଦ୍ଧି ଲାଗି କର୍ମରେ ଶୃଙ୍ଖଳା, ଅଭିନିବେଶ, ଶାନ୍ତି ଯେପରି ଦରକାର, ସେହିପରି

ଦରକାର ଆଭ୍ୟନ୍ତରୀଣ ଚିତ୍ତସଂଯମ । ଯେଉଁ ଲୋକ ପ୍ରତ୍ୟେକ ଅନୁଭୂତିଦ୍ୱାରା ଅଭିଭୂତ ହୋଇପଡ଼େ, ସେ ଜଗତର ଭାର ଲଘୁ କରିବ କିପରି ? ଗୋଟିଏ ବଡ଼ ଅନୁଭୂତିପାଇଁ ଆମକୁ ଅନେକ କ୍ଷୁଦ୍ର କ୍ଷୁଦ୍ର ଅନୁଭୂତିକୁ ବଳି ଦେବାକୁ ହେବ । ଜଗତର କଲ୍ୟାଣ ଉଦ୍ଦେଶ୍ୟରେ ରାଜପୁତ୍ର ସିଦ୍ଧାର୍ଥ ପତ୍ନୀ ଓ ନବଜାତ ପୁତ୍ରକୁ ପରିତ୍ୟାଗ କରିଥିଲେ ।

ଜଗତରେ କବି, ଲେଖକ, ବୈଜ୍ଞାନିକ ବା ମନ୍ତ୍ରୀ, ନେତା ସଂଖ୍ୟା ମୁଷ୍ଟିମେୟ । ଏମାନେ ଉପର ସ୍ତରରେ ରହିଲେ । ଏମାନଙ୍କର କର୍ମପନ୍ଥା ଏମାନେ ନିଜେ ବାଛିବାରେ ଓ ତାକୁ ଚଳେଇବାରେ ଏମାନଙ୍କର ସ୍ୱାଧୀନତା ଅଛି; କିନ୍ତୁ ଜଗତର ଅଧିକାଂଶ ଲୋକ ଅଧସ୍ତନ ହୋଇହିଁ କାଳ କଟାନ୍ତି । ଆମ ଭିତରୁ ଅଧିକାଂଶ କିରାଣି, ଶିକ୍ଷକ, ମଜୁରିଆ, ଟାଇପିଷ୍ଟ, ସେକ୍ରେଟେରୀ ହୋଇ ରହିବେ । ଏମାନଙ୍କର କର୍ମ-ପନ୍ଥାରେ କୌଶଳ କ'ଣ ?

ଯେ କୌଣସି ଅଧସ୍ତନର ଦୁଇଟି ମୂଳ କର୍ମ ନୀତି ହେଉଛି; ଆଦେଶ ପାଳନ ଓ ସହଯୋଗ । ଅଧସ୍ତନ, ଊର୍ଦ୍ଧ୍ୱତନର ଆଦେଶ ତ ମାନିବେ ବିନା ଆପତ୍ତି ଓ ବିନା ଅସନ୍ତୋଷ ପ୍ରକାଶ କରି, ବରଂ ତାଙ୍କର ଉଚିତ ଊର୍ଦ୍ଧ୍ୱତନଙ୍କୁ ସବୁପ୍ରକାରେ ସାହାଯ୍ୟ କରିବା । ସେ ଊର୍ଦ୍ଧ୍ୱତନର କାମକୁ ନିଜର କାମ ପରି ମନେକରିବେ, ସମସ୍ତ କାଗଜପତ୍ର, ନୋଟ୍ ଇତ୍ୟାଦି ସବୁବେଳେ ଯୋଗାଡ଼ି ରଖିବେ, ପ୍ରତିଦିନର କାମ ପ୍ରତ୍ୟହ ସଫାକରି ବାକୀ ଯେପରି ନ ରହେ, ତା'ର ଚେଷ୍ଟା କରିବେ । ଅନେକ ସମୟରେ ଅବଶ୍ୟ ଏପରି ହୁଏ ଯେ, ଅଯୋଗ୍ୟ ବ୍ୟକ୍ତି ଊର୍ଦ୍ଧ୍ୱତନ ପଦ ଅଧିକାର କରି ବସନ୍ତି । ସେ ଲୋକ ତା'ର କର୍ତ୍ତବ୍ୟ ଜାଣେନା, କେବଳ ଖିଆଲ୍ ନେଇ ହୁକୁମ ଦିଏ । କାମରେ ଶୃଙ୍ଖଳା ନାହିଁ । ଏ ଅବସ୍ଥା ଅତ୍ୟନ୍ତ ସଂକଟମୟ । ତଥାପି ଯେ କର୍ତ୍ତବ୍ୟନିଷ୍ଠ, ତା ପ୍ରତି ସମସ୍ତଙ୍କର ଭୟ ଓ ସମ୍ମାନ ଥାଏ । ତେଣୁ ନିଜର କର୍ତ୍ତବ୍ୟଟିକୁ ସୁସମ୍ପନ୍ନ କରିରଖିବାହିଁ ଅଧସ୍ତନର ପ୍ରଧାନ ଅସ୍ତ୍ର । ଯଦି ଅନ୍ୟାୟ ଆଦେଶ ଉପରୁ କେବେ ଆସେ, ତେବେ ସାହସର ସହିତ ଊର୍ଦ୍ଧ୍ୱତନଙ୍କୁ ତାହା ଜଣାଇଦେବା ଉଚିତ; କିନ୍ତୁ କର୍ମରେ ଅବହେଳା କରିବ ନାହିଁ । ଯଦି ଦେଖିବ ଯେ, କୌଣସି ଆଦେଶ ନିଜ ଦେଶ ବା ଜନସାଧାରଣର ଅନିଷ୍ଟ କରିବାକୁ ଯାଉଛି ଏବଂ ଯାହା ପାଳନ କରିବାକୁ ତୁମର ବିବେକ ଅନୁମୋଦନ କରୁ ନାହିଁ, ସେ କ୍ଷେତ୍ରରେ ବରଂ କର୍ମରୁ ଇସ୍ତଫା ଦିଆଯାଇପାରେ ।

ଯଦି ଊର୍ଦ୍ଧ୍ୱତନ ବ୍ୟକ୍ତି ପ୍ରକୃତ ପ୍ରତିଭାଶାଳୀ, ତେବେ ତାଙ୍କର ଖିଆଲ୍ ଜଗି ଚଳିବା ଅନୁଚିତ ନୁହେଁ, ବରଂ ସେଥିରେ ଆନନ୍ଦ ଓ କଲ୍ୟାଣ ଅଛି । ଗାଳି,

ଅପମାନ, ତାଚ୍ଛଲ୍ୟକୁ ଅଗ୍ରାହ୍ୟ କରି ବସ୍‌ଓଏଲ୍ ଡକ୍ଟର ଜନ୍‌ସନଙ୍କ ପଛେ ପଛେ ଲାଗିରହିଥିବାରୁ ବିଶ୍ୱସାହିତ୍ୟ ଏକ ଉଚ୍ଚ କୋଟିର ଜୀବନୀ ଗ୍ରନ୍ଥ ପାଇପାରିଛି । ଅଧସ୍ତନ ବ୍ୟକ୍ତିର ମନରେ ନିଜ ସଂବଂଧରେ କୌଣସି ଅହଂକାର ରହିବା ଆଦୌ ଉଚିତ ନୁହେଁ । ଅହଂକାର ରହିଲେଇ କାମରେ ଗୋଳମାଳ ଆସିବ ।

ଅନେକ ସମୟରେ ଟୋକା ବୟସରେ ବଡ଼ କାମ କାନ୍ଧରେ ଆସି ପଡ଼େ । ଅନେକ ବଡ଼ ବଡ଼ ଗୋପନୀୟ ରାଷ୍ଟ୍ରୀୟ ବ୍ୟାପାର ସଙ୍ଗେ ପ୍ରତ୍ୟକ୍ଷ ସଂପର୍କ ଘଟେ । ନିଜର ପ୍ରାଧାନ୍ୟ ଦେଖାଇବା ପାଇଁ ଅନେକେ ଅହଂକାର ସହିତ ଏହା ବନ୍ଧୁମହଲରେ ପ୍ରକାଶ କରିବାର ଅନେକ ସମ୍ଭାବନା; କିନ୍ତୁ ଦେଶର ଓ ବ୍ୟକ୍ତିର କଲ୍ୟାଣ ଦୃଷ୍ଟିରୁ ଏହା ଏକାନ୍ତ ଅନୁଚିତ । ସମସ୍ତଙ୍କଠାରୁ କଥା ନେବ; କିନ୍ତୁ କାହାକୁ ବା ଏହାର କଥା ତାକୁ ନ ଯୋଗାଇବା ଆଫିସିକ ଓ ସାମାଜିକ ଜଗତରେ ଏକ ଅପରିହାର୍ଯ୍ୟ ଆଦର୍ଶ ।

ପ୍ରତ୍ୟେକ ବ୍ୟକ୍ତିର ପ୍ରତ୍ୟହ କିଛି ନା କିଛି ଶାରୀରିକ ପରିଶ୍ରମ କରିବା ଦରକାର । ବାପୁଜୀଙ୍କର ଏହାହିଁ ଆଦର୍ଶ । ଏବେ କମ୍ୟୁନିଷ୍ଟ୍‌ମାନେ ସମଗ୍ର ଜଗଦ୍‌-ବାସୀଙ୍କୁ ବୁର୍ଜୁଆ ଓ ପ୍ରୋଲିଟେରିଏଟ୍, ଏପରି ଦୁଇଭାଗରେ ବିଭକ୍ତ କରି, ଏହି ଦୁଇ ଦଳର ସଂଘର୍ଷ ଉପରେ ଭବିଷ୍ୟତ ପୃଥିବୀର ଭାଗ୍ୟ ନିୟନ୍ତ୍ରିତ ହେବ ବୋଲି ଆଶା କରୁଛନ୍ତି । ପ୍ରୋଲିଟେରିଏଟ୍ ସେହି, ଯେଉଁମାନେ କାମ କରି ପୋଷିହୁଅନ୍ତି, ବୁର୍ଜୁଆ ଦଳ ବିନା ଶ୍ରମରେ, ବା ଅନ୍ୟର ଶ୍ରମ ଉପରେ ଆରାମରେ ଦିନ କଟାନ୍ତି । ସଂଘର୍ଷ ସୃଷ୍ଟି କରିବା ଯଦି ଉଦ୍ଦେଶ୍ୟ ହୁଏ, ତେବେ ମନୁଷ୍ୟଜାତିକୁ ନାନା ଭାବରେ ବିଭାଗ କରାଯାଇପାରେ । ଏକେ ତ ଧଳା କଳାର ଭେଦ, ତା' ଉପରେ ଧର୍ମର ଭେଦ, ତା' ଉପରେ ଆସିଲା ନାସ୍‌ନାଲିଜମ୍ ବା ଜାତୀୟତାର ଭେଦ । ଏ ସବୁ ଭେଦ ଯୋଗୁ ମାନବ ଇତିହାସର ପୃଷ୍ଠା ରକ୍ତରଞ୍ଜିତ ହୋଇଆସିଛି । ଏବେ ଏହି କମ୍ୟୁନିଜମ୍‌ର ଭେଦ ସମଗ୍ର ପୃଥିବୀରେ ଅଶାନ୍ତି ଓ ଅଭାବ ସୃଷ୍ଟି କରିଛି । ତଳେଇ ଦେଖିଲେ ଯେଉଁ ଭେଦ ଓ ତଜ୍ଜନିତ କଳ୍ପିତ ସଂଘର୍ଷ ଉପରେ କମ୍ୟୁନିଜମ୍ ପ୍ରତିଷ୍ଠିତ, ତା'ର କୌଣସି ଗଭୀର ଅର୍ଥ ଥିଲାପରି ବୋଧ ହେଉ ନାହିଁ । କ୍ରେମଲିନ୍‌ର ବିଳାସଭୋଗୀ ଷ୍ଟାଲିନ୍ ଆଜି ବୁର୍ଜୁଆ ନା ପ୍ରୋଲିଟେରିଏଟ୍ ? ଜଗତରେ ଅଧିକାଂଶ ଲୋକର ପ୍ରାଥମିକ ଜୀବନ ପ୍ରୋଲିଟେରିଏଟ୍ ଓ ପରଜୀବନ ବୁର୍ଜୁଆ । ଚାଷୀ ବୟସ ଥିଲା ଯାଏଁ କଠିନ ଶ୍ରମ କରେ; ତା'ପରେ ବୃଦ୍ଧ ବୟସରେ ସେ ଘରେ ବସେ, ତା'ର ପୁଅମାନେ ତାକୁ ପୋଷନ୍ତି, ବୋହୂମାନେ ତା'ର ସେବା କରନ୍ତି । ବର୍ତ୍ତମାନ ବୁଢ଼ା ଚାଷୀ ହେଲା ବୁର୍ଜୁଆ; ତା'ର ପୁଅମାନେ ହେଲେ ପ୍ରୋଲିଟେରିଏଟ୍ !

କର୍ମର ଅନ୍ୟ ଏକ ଭେଦ ମଧ୍ୟ ରହିବ ଓ ଚାଲିଛି– ହାତର ଶ୍ରମ ଓ ବୁଦ୍ଧିର ଶ୍ରମ ଭିତରେ; କିନ୍ତୁ ଭେଦ ସତ୍ତ୍ୱେ ଏଥିରେ ସଂଘର୍ଷର କାରଣ କିଛି ନାହିଁ । ଏ ଦୁଇ ଶ୍ରମ ପରସ୍ପରର ବିରୋଧୀ ନ ହୋଇ ବରଂ ପରସ୍ପର ପରିପୂରକ । ଭଞ୍ଜଙ୍କ ପ୍ରଣୟସଙ୍ଗୀତ ଚାଷା ବିଲର କି ପଥିକ ବାଟ ଚାଲିଲାବେଳେ ଗାଇଲେ ସେଇଠି ହୁଏ ବୁଦ୍ଧିଶ୍ରମ ଓ ଦୈହିକଶ୍ରମର ଅପୂର୍ବ ମିଳନ । କୋଣାର୍କ ଓ ତାଜମହଲରେ ମନିଷର ବୁଦ୍ଧି ଓ ହାତ ମିଳିତ ହୋଇ ମୃତ୍ୟୁହୀନ ସୌନ୍ଦର୍ଯ୍ୟ ଓ ବିସ୍ମୟ ସୃଷ୍ଟି-କରିଛନ୍ତି । ତେଣୁ ବୁଦ୍ଧିଶ୍ରମ ଓ ହାତଶ୍ରମ ଭିତରେ ବଡ଼ ବା ସାନ କେଉଁଟି ସେ ତର୍କ ମଧ୍ୟ ବୃଥା । ଚଷା ଶସ୍ୟ ଉତ୍ପାଦନ ନ କଲେ, ତନ୍ତୀ ଲୁଗା ନ ବୁଣିଲେ କବି ଓ ବୈଜ୍ଞାନିକ ବଞ୍ଚିବେ କିପରି । କବି ଓ ବୈଜ୍ଞାନିକ ନ ବଞ୍ଚିଲେ ମନୁଷ୍ୟ ସମାଜ ବଣ୍ୟ ଜୀବଗୋଷ୍ଠୀ ସଙ୍ଗେ ଏକୀଭୂତ ହୋଇଯିବ ।

ତେଣୁ ସକଳପ୍ରକାର ଶ୍ରମର ମୂଲ୍ୟ ଅଛି । ଏମାନଙ୍କ ଭିତରେ ସମାଧାନ ଆଣିବାରେହିଁ ଜଗତରେ ଶାନ୍ତି । ସଂଘର୍ଷ ସୃଷ୍ଟି କରେଇଦେବା ବଡ଼ ସହଜ କଥା; କିନ୍ତୁ ଏହାର ପରିଣାମ ଅତ୍ୟନ୍ତ ଭୟାବହ । ବାପୁଜୀଙ୍କ ଜୀବନରେ ବୁଦ୍ଧି ଓ ହସ୍ତ-ଶ୍ରମ; ବୁର୍ଜୁଆ ଓ ପ୍ରୋଲିଟେରିଏଟ୍‌ର ମଧୁର ସଂମିଶ୍ରଣ ଦେଖାଯାଉଥିଲା । ଶେଷ କଥା ହେଉଛି, ଯିଏ ଯେଉଁ ଶ୍ରମ କରୁ, ତାହା ସୁସମ୍ପନ୍ନ ହେଲେହିଁ ତା'ର ମୂଲ୍ୟ ଓ ସୌନ୍ଦର୍ଯ୍ୟ ଫୁଟେ । ତୃତୀୟ ଶ୍ରେଣୀ କବି ଅପେକ୍ଷା ପ୍ରଥମ ଶ୍ରେଣୀ ମାଳୀର ମୂଲ୍ୟ ବେଶୀ; ଅଧମ ହାକିମ ଅପେକ୍ଷା କୁଶଳୀ କିରାଣୀର ମୂଲ୍ୟ ବେଶି–ଏହା ତ ନିତ୍ୟ ଅନୁଭୂତିର ଘଟଣା ।

ଆମର ଘରେ ଘରେ ଦୈନନ୍ଦିନ ଜୀବନରେ ବୁଦ୍ଧି ଓ ହାତଶ୍ରମର ମଧୁର ମିଳନ ଘଟେ ବା ଘଟିବା ଉଚିତ ଗୃହିଣୀମାନଙ୍କଠାରେ । ଉପଯୁକ୍ତ ଗୃହିଣୀ ହାତରେ ଘରଟି ଗୋଟିଏ ଛୋଟ ରାଜ୍ୟ । ସେ ରାଜ୍ୟର ସେ ରାଜା ଓ ରାଣୀ, ସେ ଶିକ୍ଷାମନ୍ତ୍ରୀ ଓ ଅର୍ଥମନ୍ତ୍ରୀ । ସ୍ୱାମୀ ବା ପୁରୁଷ କେବଳ ରେଭିନ୍ୟୁ ମିନିଷ୍ଟର । ଉପଯୁକ୍ତ ଗୃହିଣୀ ଏ ରାଜ୍ୟକୁ ଏପରି ସୁଶୃଙ୍ଖଳ ଭାବରେ ପରିଚାଳିତ କରି ରଖିବେ ଯେ, ପ୍ରତ୍ୟେକ କାର୍ଯ୍ୟ ଘଣ୍ଟାକଣ୍ଟା ଅନୁଯାୟୀ ଚାଲିଥିବ, ରାଜ୍ୟବାସୀ ସମସ୍ତେ ଖୁସୀ, ଅଥଚ ନିୟମ-ବଦ୍ଧ, ବ୍ୟୟ ଅଳ୍ପ, ସ୍ୱାସ୍ଥ୍ୟ ଓ ଶାନ୍ତି ପ୍ରଚୁର । ଯେଉଁଠି ଘରେ ଅଶାନ୍ତି, ଦ୍ରବ୍ୟ ଓ କର୍ମର ଶୃଙ୍ଖଳା ବା ସୁଷମା ନାହିଁ, ସେଠି ଧରିନେବାକୁ ହେବ ଯେ ଗୃହିଣୀ ଅପାରଗ ।

ଜୀବିକାର୍ଜନ ଲାଗି ଯେ ଖାଟିଣି ତାକୁ ତାର ପ୍ରାପ୍ୟ ଦେଇ ସାରିଲା ପରେ ମଧ୍ୟ ହାତରେ ଅନେକ ସମୟ ରହେ । ରୁଚି ଅନୁଯାୟୀ ଏ ସମୟକୁ କେହି ଲେଖାପଢ଼ି, କେହି ବ୍ୟାୟାମ, କେହି ବା ବଗିଚା କାମରେ ନିୟୋଜିତ କରି-

ପାରନ୍ତି । ତାସ୍ ବିଡ଼ାଏ ଧରି ବସିଯିବା କେବଳ ସମୟର ଅପବ୍ୟୟ ମାତ୍ର । ଦେଖିବା ଉଚିତ, ପ୍ରତ୍ୟେକ ଶ୍ରମ ଫଳପ୍ରସୂ ଓ କଲ୍ୟାଣଜନକ ହେଉଛି କି ନା । ଫୁଟ୍‌ବଲ୍ ପ୍ରଭୃତି ବ୍ୟାୟାମ ମନ ଓ ଶରୀର ପ୍ରତି ଖାଦ୍ୟ । ସମଗ୍ର ଇଂରେଜ ଜାତିର ଚରିତ୍ର ଗଢ଼ା ହୁଏ ଖେଳପଡ଼ିଆରେ; କାରଣ, ଖେଳରେ ସ୍ୱାଧୀନତା ଓ ନିୟମାଧୀନତାର ମିଳନ । ଖେଳିବାର ଆମୋଦ ଭୋଗ କରିବା ପୂର୍ବରୁ ତୁମକୁ ଖେଳର ନିୟମ ମାନିବାର ମୌନ ସ୍ୱୀକୃତି ଦେବାକୁ ହେବ । ଖୁବ୍ ମନ ଦେଇ ଖେଳିବ; କିନ୍ତୁ ଜୟ ପରାଜୟକୁ ଲଘୁଭାବରେ ଦେଖିବ—ଏହା ମଧ୍ୟ ଏକ ମାନସିକ ଶିକ୍ଷା । ଏହି ଶିକ୍ଷା 'ସ୍ପୋର୍ଟସ୍‌ମ୍ୟାନ୍-ଶିପ୍' ସୃଷ୍ଟି କରେ । ଆମ ଦେଶରେ କୌଣସି କଥାରେ ଦ୍ୱନ୍ଦ୍ୱ ହେବା ମାନେଇ ଶତ୍ରୁ ହେବା; କିନ୍ତୁ ଇଂରେଜମାନେ ଖେଳପଡ଼ିଆ ବା ରାଜନୀତିରେ ଦୁଇ ପକ୍ଷରୁ ଘୋରତର ସଂଗ୍ରାମ ଚଳେଇଲା ପରେ, ବିଜୟୀ ଓ ବିଜେତା ଉଭୟେ କରମର୍ଦ୍ଦନ କରି ସସ୍ମିତ ବଦନରେ ବନ୍ଧୁ ହୋଇ ଫେରନ୍ତି ।

କବି, ଲେଖକ, ଶିଳ୍ପୀର କାର୍ଯ୍ୟକୁ ଯେଉଁମାନେ ଶ୍ରମହୀନ ସ୍ୱପ୍ନର ବିଳାସ ବୋଲି ମନେକରନ୍ତି, ସେମାନେ ସୃଷ୍ଟି କଣ ଜାଣନ୍ତି ନାହିଁ । ଅନେକ ତରୁଣ କବି, ଲେଖକ, ଶିଳ୍ପୀଙ୍କ ମଧ୍ୟ ଏହି ଭ୍ରାନ୍ତ ଧାରଣା ଥାଇପାରେ । କଳାରେ ସ୍ୱପ୍ନ ଓ କଳ୍ପନା ତ ରହିବାର କଥା, କିନ୍ତୁ ସେହି ସ୍ୱପ୍ନକୁ ରୂପ ଦେବା କି ସହଜ କଥା ? ଯେଉଁ କବି ଓ ଲେଖକର ରଚନା ପଢ଼ିଲାବେଳେ ନଦୀସ୍ରୋତର ଅନୁକୂଳ ଗତିରେ ଡଙ୍ଗାରେ ବସି ଭାସିଗଲା ପରି ଲାଗେ, ସେହି କବି ଓ ଲେଖକଙ୍କର ମୂଳଖାତା ସବୁ ଯଦି ଥାଏ, ତେବେ ଯାଇ ଦେଖ – କେତେ କଟାକଟି, କେତେ ନଷ୍ଟି ଓ ସୃଷ୍ଟି ପରେ ତାଙ୍କର ଶୈଳୀ ଜନ୍ମଲାଭ କରିଛି । ରବୀନ୍ଦ୍ରନାଥ ଅହୋରାତ୍ର ସାମାନ୍ୟ ୩।୪ ଘଣ୍ଟା ମାତ୍ର ନିଦ୍ରାଭୋଗକରି ବାକୀ ସମୟତକ ନାନା ଶ୍ରମରେ ନିଜକୁ ନିୟୋଜିତ ରଖିଥିଲେ ।

ଶ୍ରମ ପରି ବିଶ୍ରାମ ମଧ୍ୟ ଶରୀରର ଖାଦ୍ୟ ଓ ଆବଶ୍ୟକ ଦ୍ରବ୍ୟ । ବିଶେଷତଃ ବୁଦ୍ଧିଜୀବୀର ଦରକାର ଶାନ୍ତି । ମଝିରେ ମଝିରେ ପିଲାପିଲି, ଘରଦ୍ୱାର ଛାଡ଼ି କିଛିଦିନ ଦୂର ପ୍ରବାସରେ ନିଶ୍ଚିନ୍ତ ସମୟ କ୍ଷେପଣ କରି ଆସିଲା ପରେ ପୁନର୍ଜନ୍ମ ହେଲା ପରି ମନେହୁଏ । ସ୍ତ୍ରୀ ଓ ପୁତ୍ରକନ୍ୟା ପ୍ରତି ଆକର୍ଷଣ ତୀବ୍ର ହୁଏ । କାମ ପ୍ରତି ନୂତନ ସ୍ପୃହା ମଧ୍ୟ ଆସେ । ସବୁବେଳେ ଏକ-ବୃତ୍ତ ଦୈନନ୍ଦିନ ଜୀବନ ବଞ୍ଚିବାକୁ ପଡ଼ିଲେ ଚିତ୍ତର ଅନେକ ସୂକ୍ଷ୍ମ ଶକ୍ତି ଓ ମରମର ଅନେକ ସୂକ୍ଷ୍ମ ଅନୁଭୂତି କ୍ରମେ କ୍ରମେ ନଷ୍ଟ ହୋଇ ଆସେ । ଇଂରେଜମାନଙ୍କର ସପ୍ତାହ ଶେଷ ଓ ଉଇକ୍‌ଏଣ୍ଡ ପ୍ରଥାଟି ସୂଚାଇଦିଏ ଯେ, ସେହି କର୍ମଠ ଜାତି କାମର କୌଶଳ କିପରି ଜାଣେ ।

ମାସକୁ ମାସ ଦରମା ପରିବର୍ତ୍ତରେ ଇଂଲଣ୍ଡରେ ସାପ୍ତାହିକ ବର୍ତ୍ତନ ପ୍ରଥା । ଶନିବାର ଉପରଓଳି ସମସ୍ତେ ପାଉଣାତକ ପାଇଲେ ଛୁଟନ୍ତି ଆମୋଦ ପ୍ରମୋଦ ଓ ବିଶ୍ରାମ ପାଇଁ । ସୋମବାର ସକାଳେ ଇଂରେଜ ଫେରେ ପୁଣି କାମକୁ, ଶରୀର ଓ ମନର ନୂତନ ସ୍ୱାସ୍ଥ୍ୟ ନେଇ ।

କାର୍ଲାଇଲଙ୍କ ଏକ ମହାବାକ୍ୟ ହେଉଛି ଶ୍ରମହିଁ ଉପାସନା । କଲ୍ୟାଣକର କର୍ମରେ (ତହିଁରୁ ତମର ଜୀବିକା ନ ମିଳୁ ପଛେ) ନିଜକୁ ଅନ୍ତରର ସହିତ ବ୍ୟାପୃତ ରଖିବାଠାରୁ ଆଖି ବୁଜି କଳ୍ପିତ ଦେବତାଙ୍କର ନାମ ନେବା କିଛି ବଡ଼ କଥା ନୁହେଁ । ମାନବ ଓ ଜୀବଗ୍ରାମର କଲ୍ୟାଣକୁହିଁ ଆଦର୍ଶ ରଖି କାମ କରିବା ତ ଆହୁରି ମହତ୍ତର । ଗାଙ୍ଗପୁର ଷ୍ଟେଟ୍‌ର ନିବିଡ଼ ଜଙ୍ଗଲରେ ମଫସଲରେ ଅନାର୍ଯ୍ୟ ବସତି ଭିତରେ ଉଚ୍ଚଶିକ୍ଷିତ ଓ ଉଚ୍ଚବଂଶଜ ଇଉରୋପୀୟ ଖ୍ରୀଷ୍ଟାନ ମିଶନାରୀମାନେ ମାନବିକ ସେବାର ଯେଉଁ ଆଦର୍ଶ ଥୋଇଛନ୍ତି, ତାହା ଦେଖି ଆସ, – ଓଡ଼ିଆ ପକ୍ଷରେ ଦୂରକୁ ଯିବା ଦରକାର ନାହିଁ । ନିର୍ମଳ ଆଦର୍ଶରେ ଅନୁପ୍ରାଣିତ ହୋଇ ଗୋଟିଏ ଜୀବନ ଯାହା କରିପାରେ, କୌଣସି ରାଷ୍ଟ୍ର ବା କୋଟି କୋଟି ଜନସଂଘର ଆନ୍ତରିକତାଶୂନ୍ୟ ମିଳିତ ଚେଷ୍ଟାରେ ତାହା ଅସମ୍ଭବ । ରିକ୍ତ ଦୁର୍ବଳ ବାପୁଜୀ ଭାରତବର୍ଷକୁ ଯେ ଜନ୍ମାନ୍ତର ଦେଇଗଲେ, ତାହାର ମୂଳରେ ଏହି ନିର୍ମଳ ଆଦର୍ଶ ଓ ସେଲାଗି କର୍ମର ବିଳାସ । ତାଙ୍କର ପ୍ରତ୍ୟେକ ଦୈନନ୍ଦିନ କର୍ମ ଓ ବଚନ ହିଁ ଥିଲା ଦେବାରାଧନାଠାରୁ ଅଧିକ ପବିତ୍ର ଓ କଲ୍ୟାଣକର ।

ଶ୍ରମକୁ ବିଧାତାର ଆଶୀର୍ବାଦ ବୋଲି ଧରି ସେଥିରେ ନିଜକୁ ନିଯୁକ୍ତ କର । ତାହାରି ଦେଇ ନିଜର, ସମାଜର ଓ ଜଗତର କଲ୍ୟାଣ କରିବାକୁ ଚେଷ୍ଟାକର । କୌଣସି ଶ୍ରମ ନିନ୍ଦନୀୟ ବା ଘୃଣ୍ୟ ନୁହେଁ । ସୁସମ୍ପନ୍ନ ହେଲେ, ପ୍ରତ୍ୟେକ ଶ୍ରମରେ ସୌନ୍ଦର୍ଯ୍ୟ ଓ କଲ୍ୟାଣ ଫୁଟେ । ଯେଉଁ ଜାତିର ପ୍ରତ୍ୟେକ ନରନାରୀ ଶ୍ରମର ଏହି ଆଦର୍ଶରେ ଦୀକ୍ଷିତ; ସେହି ଜାତିହିଁ ସ୍ୱାଧୀନ, ସମୃଦ୍ଧ ଓ ଶ୍ରୀସଂପନ୍ନ ହୋଇପାରେ– ନଚେତ୍ ନୁହେଁ ।

—

# ୪ । ଧର୍ମଜୀବନ

ମନୁଷ୍ୟର ଇଚ୍ଛାନୁସାରେ ସବୁ କଥା ଘଟିଯାଉଥିଲେ ପୃଥିବୀରେ ଭଗବାନ ବା ଧର୍ମର ସୃଷ୍ଟି ହୁଏତ ହୋଇ ନ ଥାନ୍ତା । କିନ୍ତୁ ତା'ର ଇଚ୍ଛା ପଦେ ପଦେ ପ୍ରତିହତ ହେବା ସଙ୍ଗେ ସଙ୍ଗେ ଅନେକ ଘଟଣା ଜଗତରେ ଘଟୁଛି, ଯାହା ତାହାର କଳ୍ପନା ଓ ବୁଦ୍ଧିର ବାହାରେ । ମନୁଷ୍ୟର ଯଥେଷ୍ଟ ଅହଂକାର ଅଛି, ତା'ର ଶକ୍ତି, ତା'ର ପୌରୁଷକୁ ନେଇ; କିନ୍ତୁ ବାର୍ଦ୍ଧକ୍ୟ, ବ୍ୟାଧି, ମୃତ୍ୟୁ, ବନ୍ୟା, ଅନାବୃଷ୍ଟି, ଦୁର୍ଭିକ୍ଷ, ଝଟିକା, ଭୂମିକମ୍ପ, ମହାମାରୀ ପ୍ରଭୃତି ଆଗରେ ତା'ର ଶକ୍ତି ନିରସ୍ତ । ବିନିଦ୍ରିତା ସ୍ନେହମୟୀ ଜନକ ଜନନୀଙ୍କ ଆଖି ଆଗରୁ ପ୍ରାଣର ଶିଶୁକୁ କିଏ ନେଇ ପଳାଉଛି ? ସେହି ଅଦୃଶ୍ୟ ହସ୍ତ କାହାର ? ଇହଜୀବନରେ ଏହି ସବୁ ବିତ୍‌ପାତ ନ ଘଟି ମନିଷ କିମିତି ଶାନ୍ତି ଓ ସୁଖରେ ଦିନ କଟେଇନେବ, ଏଇଥି ଲାଗି ହିନ୍ଦୁ ଗୃହାଙ୍ଗନରେ ତୁଳସୀ ଚଉରା ଓ ଘିଅବତିଠାରୁ ଆରମ୍ଭକରି ସମଗ୍ର ପୃଥିବୀରେ ନିଭଶ୍ଚୁମ୍ବୀ ମନ୍ଦିର, ଗୀର୍ଜା ଓ ମସ୍‌ଜିଦ୍‌ର ଆବିର୍ଭାବ । ସାଧାରଣ ମନିଷର ଚିତ୍ତରେ ଭଗବାନଙ୍କ ଆବିର୍ଭାବ, ଭୟରୁ । ଋକ୍‌ବେଦରେ ମନୁଷ୍ୟର ପ୍ରଥମତମ ପ୍ରାର୍ଥନା ଆମ୍ଭେମାନେ ଶିଶୁ ଓ ଆଦ୍ୟତମ ପୂଜା ଦେଖୁଁ । ସେହି ପ୍ରାର୍ଥନାରେ ଅଧିକାଂଶ ଭାବରେ ଅନ୍ତର୍ନିହିତ ଅଛି ଏହି ଭୟ । ''ଆମର ଶତ୍ରୁମାନେ ନାଶ ହୁଅନ୍ତୁ; ଆମର ଗାଈ ଭଲ ଦୁଧ ଦେଉ; ଆମ ଖେତରେ ଭଲ ଫସଲ ହେଉ ।'' ବୈଦିକ ପ୍ରାର୍ଥନାଗୁଡ଼ିକ ଦୈନନ୍ଦିନ ଜୀବନର ଏଇ ପ୍ରକାର ପ୍ରୟୋଜନର ଭିକ୍ଷାରେହିଁ ପୂର୍ଣ୍ଣ ।

ଫଳରେ ଆମେ ଶୁଣିବାକୁ ପାଉଁ ଯେ ଭକ୍ତର ପ୍ରାର୍ଥନା ଶୁଣି କେଉଁଠି ଶ୍ରୀକୃଷ୍ଣ ଛୋଟ ବାଳକ ରୂପେ ଭକ୍ତର ଘରେ ଚାଉଳ ଡାଲି ଦେଇଗଲେ, କେଉଁଠି ଯୀଶୁଖ୍ରୀଷ୍ଟ ପାଦ୍ରିକି ଆଦେଶ ଦେଲେ ଯାଅ ହୀଦନ୍‌କୁ ଆଲୋକ ଦିଅ, ଓ ସେଥିପାଇଁ ଅଯାଚିତ ଭାବରେ ଅର୍ଥ ଯୋଗେଇଦେଲେ ଏବଂ କେଉଁଠି ଆଲ୍ଲା ଇସ୍‌ଲାମର ବିଜୟ ପାଇଁ ମୁସ୍‌ଲିମ ଲୀଗ୍ ମେମ୍ୱର ଭୋଟ ପାଇବାରେ ସାହଯ୍ୟ ବି କଲେ । ଏସବୁ ସତ୍ୟ, ମିଥ୍ୟା ପ୍ରମାଣ କରିବାରେ ପ୍ରୟାସ ଆମର ନାହିଁ । ଏ ସବୁ ଆମର ଅଭିଜ୍ଞତାର ବାହାରେ । କିନ୍ତୁ ଈଶ୍ୱରଙ୍କୁ ଆମର ସାମ୍ପ୍ରତିକ ଓ ପାର୍ଥିବ ପ୍ରୟୋଜନ ଗୁଡ଼ିକର କାରପଟ୍‌ଦାର ମାତ୍ର ଭାବିଲେ ସେ ଯେ କିପରି କରୁଣାତ୍ମକ ଓ ହାସ୍ୟାତ୍ମକ ପରିବେଶରେ ଦେଖାଯିବେ ତାହା ଧର୍ମାନ୍ଧଗୁଡ଼ିକ ବଡ଼ ସହଜରେ ଭୁଲିଯାନ୍ତି । ହିନ୍ଦୁ ମୁସଲମାନଙ୍କୁ ଘୃଣା କରେ ଗୋଖାଦକ ମ୍ଳେଚ୍ଛ ବୋଲି, ମୁସଲ୍‌ମାନ ହିନ୍ଦୁକୁ ଘୃଣା-

କରେ ପୌତ୍ତଳିକ କାଫେର ବୋଲି । ଉଭୟେ ଭାବନ୍ତି ଭଗବାନ ତାଙ୍କରି ପଛରେ, ସତ୍ୟ ତାଙ୍କରି ହାତରେ । ଗତ ସାଂପ୍ରଦାୟିକ କନ୍ଦଳରେ ଦୁଇପଟୁ ସହସ୍ର ସହସ୍ର ନିରୀହ ନିରପରାଧ ନରନାରୀ ଓ ଶିଶୁ ମଲେ ଓ ଅକଥନୀୟ କଷ୍ଟ ପାଇଲେ; କିନ୍ତୁ ହିନ୍ଦୁର କି ମୁସଲମାନର ଈଶ୍ୱର ଠିକ୍ ତାହା ପୂର୍ବପରିହିଁ ଅପ୍ରମାଣିତ ରହିଗଲା ।

ବାଇବେଲ୍ କହେ ଯେ, ସ୍ୱର୍ଗସ୍ଥ ପିତା ସଂସାରର ସମସ୍ତ ଜୀବଜନ୍ତୁ ସୃଷ୍ଟି କରି ସାରିଲା ପରେ, ମନୁଷ୍ୟକୁ ଠିକ୍ ନିଜର ଆକୃତି ଅନୁରୂପରେ ସୃଷ୍ଟି କଲେ । ବିଧାତାର ପ୍ରତିମା ଶକ୍ତିଶାଳୀ ସିଂହ, ବର୍ଣ୍ଣବିଚିତ୍ର ମୟୂର, ଭୀମକାନ୍ତ ହିମାଳୟ ବା କାନ୍ତ କୋମଳ ଚନ୍ଦ୍ର ପରି ନ ହୋଇ, ମର୍କଟ ପୁତ୍ର ମନୁଷ୍ୟ ପରି କାହିଁକି ହେବ, ତା'ର କୌଣସି ଯୁକ୍ତି ନାହିଁ । ଏଥିରେ ଅଛି ମନୁଷ୍ୟର ଅହମିକା ଓ କଳ୍ପନା । ମନୁଷ୍ୟ ଅନୁରୂପ ନ ହୋଇ ବରଂ ସତ୍ୟ ଏହି ଯେ, ଭଗବାନ ମନୁଷ୍ୟର କଳ୍ପନାନୁରୂପରେ ହିଁ ନାନା ରୂପରେ ଏ ଜଗତରେ ପ୍ରକାଶିତ । କଳ୍ପନା, ସ୍ୱାର୍ଥ ଓ ମତାନ୍ଧତାର ତ୍ରିବେଣୀ ସଙ୍ଗମ ନ ହେଲେ, ବାରମ୍ବାର ଧର୍ଷିତ ଖଣ୍ଡିଏ ନିମ୍ବ କାଠକୁ 'ଜଗତର ନାଥ' ବୋଲି ବା ମାତ୍ର ୧୯୦୦ ବର୍ଷ ତଳେ ଜାତ ହୋଇଥିବା ଜଣେ ଧର୍ମପ୍ରଚାରକଙ୍କୁ ଈଶ୍ୱରଙ୍କର ଏକମାତ୍ର ପୁତ୍ର ଜଗତର ଦୁଃଖ ଦୂର କରିବା ପାଇଁ ଅବତୀର୍ଣ୍ଣ ହୋଇଥିବାର କୁହାଯାନ୍ତା ନାହିଁ । ରାଜପ୍ରତିଷ୍ଠିତ ଜଗନ୍ନାଥଦେବଙ୍କର ପ୍ରତିଦିନର ସେବାପୂଜା ଜଣେ ଭାରତୀୟ ରାଜାର ଦୈନିକ ରୁଟୀନ୍ ଛଡ଼ା ଆଉ କିଛି ନୁହେଁ । ଭଗବାନ ସକାଳୁ ଉଠି ମୁହଁ ଧୋଇବେ, ବ୍ରେକ୍‌ଫାଷ୍ଟ୍ ଖାଇବେ, ମଧ୍ୟାହ୍ନରେ ଖିରି ଖେଚଡ଼ି, ରାତିକି ପିଠା ଓ ଦହିପଖାଳର ବ୍ୟବସ୍ଥା, ମଝିରେ ମଝିରେ ପୁଣି ବାରବନିତାର ନୃତ୍ୟ । ଭଗବାନଙ୍କ ସମ୍ପର୍କରେ ଏ ବ୍ୟାପାର ସବୁ ଉଦ୍ଭଟ ବା ବାଳକୀୟ କଳ୍ପନା ଛଡ଼ା ଆଉ କ'ଣ ହୋଇପାରେ ? ଯଦି ନୃତ୍ୟ ଭଗବାନଙ୍କର ଏକ ପ୍ରିୟ ଭୋଗ ତେବେ ନିଜେ ରାଜାରାଣୀ ବା ଆମେ ସମସ୍ତେ ତାଙ୍କ ଆଗରେ ନାଚିବାର ବନ୍ଦୋବସ୍ତ ନ ହୋଇଚି କାହିଁକି ? ବାରବନିତା ନାଚିବେ କାହିଁକି ?

ଈଶ୍ୱରଙ୍କୁ ଆମେ ଯେ ପର୍ଯ୍ୟନ୍ତ ଆମର ପ୍ରୟୋଜନର ପରିଧି ବୃତ୍ତରେ ରଖିଛୁ, ସେ ପର୍ଯ୍ୟନ୍ତ ସେ ଏହିପରି ଅପୂର୍ଣ୍ଣ, ଅଯୌକ୍ତିକ, ହାସ୍ୟାସ୍ପଦ ରୂପରେ ଦେଖା ଯିବେଇ ଯିବେ । ଦରିଦ୍ରକୁ ତେଲ ଲୁଣ ବା ଧନିକକୁ ବିଳାସ ଯୋଗେଇବାର ଗୁମାସ୍ତା ମାତ୍ର ଭଗବାନ ହୋଇ ନ ପାରନ୍ତି । ପ୍ରକୃତ ଧାର୍ମିକ ସେହି, ଯାହାର ଈଶ୍ୱରଙ୍କ ନିକଟରୁ କୌଣସି ପ୍ରୟୋଜନର ଆଶା ନାହିଁ – ସ୍ୱୟଂ ଈଶ୍ୱରହିଁ ତା'ର ଏକମାତ୍ର ଓ ଶ୍ରେଷ୍ଠ ପ୍ରୟୋଜନ । ଭୟ, ଅଭାବ ବା ପାର୍ଥିବ ବିଜୟ ଈଶ୍ୱରାନୁଭୂତିର ପ୍ରକୃତ ଭିତ୍ତି ନୁହେଁ । ପ୍ରକୃତ ଈଶ୍ୱରାନୁଭୂତିର ଜନ୍ମ ବିସ୍ମୟ ଓ ଜିଜ୍ଞାସାରୁ ।

କେବଳ ଅଜ୍ଞ ବା ପଲ୍ଲବଗ୍ରାହୀ କହିପାରନ୍ତି ଯେ, ବିଜ୍ଞାନ ଓ ଧର୍ମ ପରସ୍ପରର ବିରୋଧୀ । ପ୍ରକୃତ ସତ୍ୟାନୁରାଗୀ ସହଜରେ ବୁଝିପାରିବେ ଯେ, ବିଜ୍ଞାନ ଓ ଧର୍ମ ଅନ୍ୟୋନ୍ୟର ପରିପୂରକ । କେଉଁଠି ଈଶ୍ୱର ଜ୍ଞାନ, ବିଜ୍ଞାନ ଉପରେ ପ୍ରତିଷ୍ଠିତ ନୁହେଁ, ତାହା ଭାବପ୍ରବଣତା ବା ପ୍ରାଚୀନ ସଂସ୍କାର ହୋଇପାରେ, କିନ୍ତୁ ସତ୍ୟ ନୁହେଁ । ପୁଣି ଯେଉଁଠି ବିଜ୍ଞାନ ଈଶ୍ୱର ଶୂନ୍ୟ ତାହା କେବଳ ପାଷଣ୍ଡ ପାଣ୍ଡିତ୍ୟ ।

ଆମେ ଚର୍ମଚକ୍ଷୁରେ ଯେତିକି ଦେଖିପାରୁଛେଁ, ସେତିକିରେ ଏହି ଦୃଶ୍ୟମାନ ଜଗତର ବୈଚିତ୍ର୍ୟ ଓ ବିରାଟତା ଆମ୍ଭେମାନଙ୍କର ବୁଦ୍ଧିକୁ ଅଭିଭୂତ କରିପକାଏ । କିନ୍ତୁ ବିଜ୍ଞାନ ଆଜି ଯେଉଁ ଅଦୃଶ୍ୟ ଓ ଦୃଷ୍ଟି-ଅତୀତ ସୃଷ୍ଟିର ଚିତ୍ରପଟ ଆମ ଆଗରେ ମେଲେଇଦେଇଛି, ତାହାର ଅନ୍ତହୀନ ବୈଚିତ୍ର୍ୟ, ଶେଷହୀନ ବିସ୍ତୃତି ଓ ପରମାଣୁରୁ ପରମ ଜ୍ୟୋତିଷ୍କ ଯାଏଁ ଜଡ଼ ଓ ଚେତନ ଦେଇ ସମାନ ଅପରିବର୍ତ୍ତନୀୟ ନିୟମରାଜିର ଅବିଶ୍ରାନ୍ତ ଲୀଳା ଦେଖିଲେ ମନୁଷ୍ୟଚିତ୍ତ ବିସ୍ମୟାଭିଭୂତ ନ ହେବ କିପରି ? ନାକ୍ଷତ୍ର ଜଗତର ବିସ୍ତାର ଆମର ପରିଚିତ କ୍ରୋଶ ବା ମାଇଲରେ ଧରି ହେବ ନାହିଁ; ତେଣୁ ବୈଜ୍ଞାନିକମାନେ ଏଥିପାଇଁ ଆଲୋକ-ବର୍ଷକୁ ମାନଦଣ୍ଡ ରୂପେ ବ୍ୟବହାର କରନ୍ତି । ଆଲୋକ, ପ୍ରତି ସେକେଣ୍ଡରେ ୧୮୬,୦୦୦ ମାଇଲ ଗତି କରେ । ଏଇ ଗତିରେ ଆଲୋକ ଗୋଟିଏ ପାର୍ଥିବ ବର୍ଷ ସମୟରେ କେତେ କୋଟି ମାଇଲ ଗତି କରିପାରେ କଳ୍ପନୀୟ । ଆମ ସୌରଜଗତର ଆମ ନିଜର ସୂର୍ଯ୍ୟଟିକୁ ଛାଡି ଆମେ ଯଦି ବିଶ୍ୱ ଯାତ୍ରାରେ ବାହାରୁ, ତେବେ ନିକଟତମ ସୂର୍ଯ୍ୟରେ ପହଞ୍ଚିବାକୁ ଆମକୁ ଚାରୋଟି ଆଲୋକବର୍ଷ ଓ ଶ୍ରେଷ୍ଠ ଶକ୍ତିଶାଳୀ ଦୂରବୀକ୍ଷଣରେ ଏପର୍ଯ୍ୟନ୍ତ ଧରାପଡ଼ିଥିବା ଦୂରତମ ସୂର୍ଯ୍ୟରେ ପହଞ୍ଚିବାକୁ ୫ କୋଟି ବର୍ଷ ଲାଗିବ । କି ପ୍ରକାଣ୍ଡ ଏ ବିଶ୍ୱ !

ତେଣେ ବୃହତ୍‌ରୁ ବୃହତ୍ତର ଓ ଦୂରରୁ ଦୂରତର ଯେପରି କଳ୍ପନାକୁ ସ୍ତମ୍ଭୀଭୂତ କରିଛି, ଏଣେ ତାହାଠାରୁ ଅଧିକତର କରେ ସୂକ୍ଷ୍ମରୁ ସୂକ୍ଷ୍ମତର । ଗୋଟିଏ ପିନ୍ କଣ୍ଟାର ଅଗ୍ରରେ ଯେଉଁ ଜଳ ବିନ୍ଦୁ ରହିପାରେ ତାରି ଭିତରେ ରହିଛନ୍ତି କୋଟି କୋଟି ଅଣୁ; ପ୍ରତି ଅଣୁ ଭିତରେ ପରମାଣୁ ଏବଂ ପ୍ରତି ପରମାଣୁରେ ଇଲେକ୍‌ଟ୍ରନ୍ ଓ ପ୍ରୋଟନ୍‌ର ସେହି ଚକ୍ର-ନର୍ତ୍ତନ ଯାହାକି ତେଣେ ଉର୍ଦ୍ଧ୍ୱରେ ସୌରମଣ୍ଡଳରେ ଅହରହ ଚାଲିଛି । ଇଲେକଟ୍ରନ୍ ଓ ପ୍ରୋଟନ୍ କେବଳ ପଜିଟିଭ୍ ଓ ନେଗେଟିଭ୍ ବିଦ୍ୟୁତ୍ ବିନ୍ଦୁ । ଜୀବଜଗତରେ ପୁରୁଷ ଓ ନାରୀର ସମ୍ମିଳନରେ ସୃଷ୍ଟିର ସଂପ୍ରସାରଣ ସମ୍ଭବ ହେବାର ଆମେ ଦେଖୁଛୁଁ । ତଥାକଥିତ ଜଡ଼-ସୃଷ୍ଟିରେ ବି ସେହି ନିୟମ । ପଜିଟିଭ୍ ଓ ନେଗେଟିଭ୍ ଶକ୍ତି-ବିନ୍ଦୁର ମିଳନରେ ଅଣୁର ଉଦ୍ଭବ ଓ ଅଣୁରେ ସମଗ୍ର ଜଡ଼ ସଂସାର ଗଠିତ । ବିଜ୍ଞାନ ମଧ୍ୟ ଆଜି ସ୍ୱୀକାର କରୁଛି ଯେ ଜଡ଼ ବୋଲି କିଛି

ନାହିଁ – ସମସ୍ତ ହିଁ ଚେତନ । ପ୍ରସିଦ୍ଧ ବୈଜ୍ଞାନିକ ସାର୍ ଜେମସ୍ ଜୀନ୍‌ଙ୍କ କଥାରେ ଏ ବିଶ୍ୱ-ସୃଷ୍ଟି ଗୋଟାଏ ଚିନ୍ତା ବା କଳ୍ପନା । ପୁଣି ଜଡ଼ର ବ୍ୟବହାର ଦେଖିଲେ କିପରି ନ କହିବା ଯେ ସେଥିରେ ବି ବୁଦ୍ଧି ଅଛି ? ଆମର ପରିଚିତ ଲବଣର କଥା ଧରନ୍ତୁ । ଲବଣର ଏକ ଅଣୁକୁ ବିଶ୍ଳେଷଣ କଲେ ଦେଖାଯାଉଛି ଯେ, ତାହା ଦୁଇଗୋଟି ସଂପୂର୍ଣ୍ଣ ଭିନ୍ନ ମୌଳିକ ପଦାର୍ଥର ଏକ ଏକ ସମ-ପରିମିତ ପରମାଣୁ ସଂଯୋଗରେ ଗଠିତ । ଗୋଟିଏ ଉପାଦାନ ହେଉଛି କ୍ଲୋରାଇନ୍, ଯାହା ଏକ ଦୁର୍ଗନ୍ଧ ବାଷ୍ପ; ଅନ୍ୟଟି ସୋଡ଼ିଅମ୍ ନାମକ ଏକ ଧାତୁ, ଯାହାକୁ ପାଣିରେ ରଖିଲେ ଜଳିଉଠେ ଓ ଯାହା ଅତ୍ୟନ୍ତ ବିସ୍ୱାଦ । ଏ ଦୁଇଟିରୁ କୌଣସିଟିକୁ ମନୁଷ୍ୟ ପାଟିରେ ଦେଇ ପାରନ୍ତା ନାହିଁ; କିନ୍ତୁ ଦୁହିଙ୍କର ସଂଯୋଗରେ ଲବଣର ସୃଷ୍ଟି, ଯାହାକି ଆମର ସକଳ ଖାଦ୍ୟକୁ ସ୍ୱାଦୁ ଯୋଗାଉଛି । ଆହୁରି ମଜାର କଥା ଏଇ ଯେ, ଯଦି କେହି ରାସାୟନିକ କ୍ଲୋରାଇନ୍ ବା ସୋଡ଼ିଅମ୍‌ରୁ କୌଣସିଟିକୁ ବେଶୀ ମିଶେଇବାକୁ ଚେଷ୍ଟାକରେ, ତେବେ ତାହା ବୃଥା ହୁଏ । ଏ ଦୁହେଁ ପରସ୍ପରର ଯେତିକି ମିଶିଲେ ଲୁଣ ହେବ, ସେତିକି ପରିମାଣରେ ମିଶ୍ରିତ ହୋଇ ବଳକା ଉପାଦାନ ଛାଡ଼ିଯାନ୍ତି । କି ବିସ୍ମୟକର ବ୍ୟାପାର ! କିଏ ଏମାନଙ୍କୁ ଏପରି କରାଏ ? ବିରାଟରୁ କ୍ଷୁଦ୍ର ଯାଏ କୋଟି କୋଟି ତତ୍ତ୍ୱ ପରଂପରାରେ ଏ ସଂସାରକୁ ଅନୁପମ କୌଶଳରେ କିଏ ଏପରି ଚଳାଉଛି ? ସେହି ମହାଶକ୍ତିକି ନମସ୍କାର । ଗୀତାର ବିଶ୍ୱରୂପଦର୍ଶନ ବିସ୍ମୟକର ସୃଜନଲୀଳାର ଏକ ରୂପକ ମାତ୍ର । ଅର୍ଜ୍ଜୁନ ଅଭିଭୂତ ଚିତ୍ତରେ ଗାଇ ଉଠିଛନ୍ତି –

''ତ୍ୱମାଦିଦେବଃ ପୁରୁଷଃ ପୁରାଣଃ ତ୍ୱମସ୍ୟ ବିଶ୍ୱସ୍ୟ ପରଂ ନିଧାନଂ
ବେତ୍ତାଽସି ବେଦ୍ୟଂଚ ପରଂଚ ଧାମ ତ୍ୱୟା ତତଂ ବିଶ୍ୱମନନ୍ତରୂପ ।''

ତ୍ୱୟା ତତଂ ବିଶ୍ୱମନନ୍ତରୂପ – ହେ ଅନନ୍ତରୂପ, ତୁମରି ଦ୍ୱାରାହିଁ ବିଶ୍ୱର ସମସ୍ତ ପରିବ୍ୟାପ୍ତ ! ପ୍ରକୃତ ଈଶ୍ୱରାନୁଭୂତି ଏଇ ପ୍ରକାର ବିସ୍ମୟରୁ, ଏଇ ପ୍ରକାର ଆତ୍ମଜୀବନକୁ ବିଶ୍ୱଜୀବନ ସଙ୍ଗେ ଏକୀଭୂତ ହେବାର ଭାବରୁ ଜାତ । ଈଶ୍ୱର, ସୃଷ୍ଟି ପଛରେ ଅପୂର୍ବ କୌଶଳମୟ ନିୟମର ପରଂପରା ମାତ୍ର । ସେ ତେଲ, ଲୁଣ ବା ଡେପୁଟୀ ଚାକିରି ଯୋଗେଇବାର ବା ହୀଦନ୍‌କୁ ଖ୍ରୀଷ୍ଟାନ ବନେଇବାକୁ ଟଙ୍କା ଯୋଗାଡ଼ କରିବାର ବା ମୁସଲିମ୍ ଲୀଗ୍‌କୁ ଇଲେକ୍‌ସନରେ ସାହାଯ୍ୟ କରିବାର ଏଜେଣ୍ଟ ମାତ୍ର ହୋଇ ନ ପାରନ୍ତି ।

ବିବେକାନନ୍ଦ କହିଛନ୍ତି, ଆଧୁନିକ ଯୁଗର ଧାରଣା ହେଉଛି ଯେ, ଧର୍ମର ଦିନ ଶେଷ ହୋଇଆଣିଲାଣି, କିନ୍ତୁ ତାହା ଭୁଲ । ତାଙ୍କ ମତରେ ସଂକୀର୍ଣ୍ଣ ଗୋଷ୍ଠୀଗତ, ମତାନ୍ଧ ଧର୍ମର ଦିନ ଶେଷ ହୋଇ ଆସୁଛି, କିନ୍ତୁ ଜ୍ଞାନ-ପ୍ରତିଷ୍ଠିତ ଉଦାର ବିଶ୍ୱ-ଧର୍ମର

ଉଷାକାଳ ସମାଗତ । ଆମେ ଦେଖୁଛୁ ଯେ, ଗୋଷ୍ଠୀଗତ ଧର୍ମମାନଙ୍କର ମତାନ୍ଧତାରେ ମାନବ ଇତିହାସର ପୃଷ୍ଠା ମୂଳରୁ ଏଯାଏଁ ରକ୍ତାକ୍ତ । ଇସ୍‌ଲାମ୍‌ର ଦାମ୍ଭିକତାରେ ମନୁଷ୍ୟ ଓ ଆଲ୍ଲା କ୍ଷତବିକ୍ଷତ । ବ୍ରାହ୍ମଣର ମୂର୍ଖତା ଓ ଅନାଚାର ଫଳରେ ହିନ୍ଦୁ କ୍ଷୟିଷ୍ଣୁ, ତା'ର ଅଙ୍ଗ ପକ୍ଷାଘାତଗ୍ରସ୍ତ, ଦେବତା ଦାରୁଭୂତ ଏବଂ କୋଟି କୋଟି ମନୁଷ୍ୟର କଷ୍ଟର ସୀମା ନାହିଁ । ପାଦ୍ରୀ ଓ ପୋପ ବଞ୍ଚିଛି; କିନ୍ତୁ ଖ୍ରୀଷ୍ଟ ନିଜର ଅଗଣିତ ଅନୁଚରମାନଙ୍କ ଦ୍ୱାରା ପ୍ରତି ମୁହୂର୍ତ୍ତରେ ନିହତ ହେଉଛନ୍ତି । ଆମକୁ, ଈଶ୍ୱର ଓ ମନୁଷ୍ୟ ମଧ୍ୟସ୍ଥ ପୁରୋହିତ ସମ୍ପ୍ରଦାୟକୁ ଅକାମୀ କରି, ସେହି ଏକ ପରମପିତାଙ୍କର ସମସ୍ନେହଭାଗୀ ପୁତ୍ର କନ୍ୟାରୂପେ ବର୍ଣ୍ଣ-ଧର୍ମ-ନିର୍ବିଶେଷରେ ବିଶ୍ୱର ସକଳ ଜାତି ବିବେକାନନ୍ଦକଳ୍ପିତ ଉଦାର ବିଶ୍ୱଧର୍ମର ପ୍ରତିଷ୍ଠା କରିବାକୁ ହେବ, ନଚେତ୍ ମାନବର ଭବିଷ୍ୟତ ଅସ୍ପଷ୍ଟ । ପ୍ରାଚୀନ ସଂସ୍କାର ସହଜରେ ମରେନା ସତ, କିନ୍ତୁ ବିଜ୍ଞାନର ଆଲୋକରେ ଆସ୍ତେ ଆସ୍ତେ ମନୁଷ୍ୟର ଭୁଲ୍‌ଭ୍ରାନ୍ତିର ଅନ୍ଧକାର ଘୁଞ୍ଚିବ ବୋଲି ଆଶାକରାଯାଏ ।

ଧର୍ମ ମନୁଷ୍ୟକୁ ମନୁଷ୍ୟ ସାଥିରେ ମିଳାଇବାର କଥା, ଅସଭ୍ୟ ନରକୁ ସଭ୍ୟତାର ଆଲୋକରେ ଆଲୋକିତ କରିବାର କଥା, ଶତ୍ରୁକୁ ଭାଇ କରିବାର କଥା, ସ୍ଥୂଳଜଗତର ଇନ୍ଦ୍ରିୟତନ୍ତ୍ରତାରୁ ଅତୀନ୍ଦ୍ରିୟତାକୁ ଘେନିଯିବାର କଥା; କିନ୍ତୁ ହିନ୍ଦୁଧର୍ମ ମନିଷକୁ ମନିଷଠାରୁ ଅଲଗାକରି ରଖିଛି, କୋଟି କୋଟି ମନୁଷ୍ୟକୁ ଯୁଗ ଯୁଗ ଧରି ଅସ୍ପୃଶ୍ୟ କରିରଖିଛି । ଧର୍ମର ଚାନ୍ଦାରେ ବ୍ରାହ୍ମଣ ଓ ମହନ୍ତ ହାତରେ ଅର୍ଥ ଓ ବ୍ୟସନ ଯୋଗେଇଛି । ଧର୍ମ ବଢେଇଛି ହିନ୍ଦୁ ଓ ମୁସଲମାନ ପରସ୍ପରର ଗଳା କଟାକଟି କରିବାକୁ; ଧର୍ମ ଶିଖେଇଛି ପାଦ୍ରୀ କଳେ ବଳେ ଖ୍ରୀଷ୍ଟଉପାସକର ସଂଖ୍ୟା ବଢ଼େଇବାକୁ । ଇଏ କି ଅଦ୍ଭୁତ ଧର୍ମ ? ଧରାର ନୂତନ ମାନବ ଏ ଧର୍ମର ଉଚ୍ଛେଦ କରି ସେହି ଧର୍ମ ପ୍ରତିଷ୍ଠା କରିବ, ଯାହା କୌଣସି ଗୋଷ୍ଠୀର ସ୍ୱତନ୍ତ୍ର ଦ୍ରବ୍ୟ ନହୋଇ ହେବ ବିଶ୍ୱମାନବର, ଯାହା ଧରଣୀର ସକଳ ମାନବକୁ ଏକ ଭ୍ରାତୃସୂତ୍ରରେ ଗୁନ୍ଥିପାରିବ, ଯାହା ସାମ୍ୟବାଦର ଆର୍ଥିକ ବନ୍ଦୋବସ୍ତ ଶେଷ ହେଲା ପରେ ମନୁଷ୍ୟକୁ ଦେଖାଇବ ଅତି-ପାର୍ଥିବ ଜୀବନର ମୂଲ୍ୟ ଓ ମାଧୁର୍ଯ୍ୟ । ଆମ ସମସ୍ତଙ୍କୁ ପୃଥିବୀରେ ଏହି ଈଶ୍ୱର ରାଜ୍ୟ ସ୍ଥାପନ ପାଇଁ ନିଜ ନିଜ ଶକ୍ତିରେ ଚେଷ୍ଟା କରିବାକୁ ହେବ । ସେଥିପାଇଁ ପ୍ରତ୍ୟେକ ଧର୍ମରେ ଯାହା କ୍ଷୁଦ୍ର, ସଂକୀର୍ଣ୍ଣ, ପଶୁତ୍ୱ-ବୋଧକ, ଅବିଚାରସିଦ୍ଧ, ତାହା ପ୍ରତ୍ୟେକଙ୍କୁ ପ୍ରତ୍ୟାହାର କରିବାକୁ ହେବ । ନଚେତ୍ ଧର୍ମର ଓ ମନୁଷ୍ୟର ଭବିଷ୍ୟତ ବରାବର ଅନୁଜ୍ଜ୍ୱଳ ରହିବ ।

ଗତ ଶହେ ବର୍ଷ ଭିତରେ ପୃଥିବୀ ପୃଷ୍ଠରେ ଅନେକ କୁସଂସ୍କାରର ମୃତ୍ୟୁ ହୋଇଅଛି । ଆତାତୁର୍କ୍ କେମାଲ୍ ଏକା ରାତିକେ ଇସ୍‌ଲାମିକ କୁସଂସ୍କାର ରାଶିର ପୀଠସ୍ଥଳି ତୁର୍କିରାଷ୍ଟ୍ରକୁ ଧର୍ମ-ଶୃଙ୍ଖଳହୀନ, କୁସଂସ୍କାରଲୁପ୍ତ, ଖାଲିଫଚ୍ୟୁତ ସାଧାରଣ-

ତନ୍ତ୍ରରେ ରୂପାନ୍ତର କରିଦେଇ ଚାଲିଗଲେ । ବାପୁଜୀଙ୍କ ପ୍ରେରଣାରେ ଭାରତର ବହୁଯୁଗର ଅସ୍ପୃଶ୍ୟତା କଳଙ୍କ କେତେଟା ବର୍ଷରେ ଧୋଇହୋଇଗଲା । ଧର୍ମ ଜଗତରେ ମଧ୍ୟ ଏହିପରି ଆସ୍ତେ ଆସ୍ତେ ପ୍ରାଚୀନ କାଳର ସଂକୀର୍ଣ୍ଣ ଧାରଣା ସବୁ ବଦଳିଯିବ । ବିଶ୍ୱର ଯେଉଁ ବିରାଟ ଚିତ୍ର ବିଜ୍ଞାନ ଆମ ଆଗରେ ଥୋଇଛି, ତାକୁ ହିମାଳୟ ପରି ମନେକରାଗଲେ ମଧ୍ୟ, ଆମର ଏହି ବସୁନ୍ଧରା ସେହି ହିମାଳୟର ଏକ ରେଣୁ ହେବ କି ନା ସନ୍ଦେହ । ଏହି କ୍ଷୁଦ୍ରାତି କ୍ଷୁଦ୍ର ରେଣୁରେ ମନୁଷ୍ୟର ହାସ୍ୟକର ସାମ୍ରାଜ୍ୟବିସ୍ତାର ଓ ଅହମିକାର ନାଟକାଭିନୟ । ଏହି ରେଣୁରେ ଗୁରୁଣ୍ଡୁ ଥିବା କ୍ଷୀଣ ଜୀବ କ୍ଷୁଦ୍ର କୀଟ-ରୂପୀ ମନୁଷ୍ୟର ପୁଣି ଅକଳ୍ପନୀୟ ଈଶ୍ୱରଙ୍କୁ ଜାଣିବାର ସ୍ପର୍ଦ୍ଧା । କେବଳ ଜାଣିବା ନୁହେଁ, ଆମ ଭିତରେ ସବୁ ଜାତିରେ ଏପରି ମୂର୍ଖ ଅଛନ୍ତି ଯେଉଁମାନେ ଦାବୀ କରନ୍ତି ଯେ, ସେମାନେ ଈଶ୍ୱରଙ୍କୁ ଯେପରି ଜାଣନ୍ତି, ଈଶ୍ୱର କେବଳ ସେହିପରି, ଆଉ ସବୁ କଥା ଝୁଟା । ଉପନିଷଦ ଈଶ୍ୱରଙ୍କୁ 'ଅବାଙ୍‌ମାନସ ଗୋଚର' ରୂପେ ବର୍ଣ୍ଣନା କରି ଅତ୍ୟନ୍ତ ସତ୍ୟ କଥାହିଁ କହିଛନ୍ତି । ମହାଭାରତର ଶେଷରେ ପ୍ରାଜ୍ଞ ମହାକବି ଏଇପରି ଭାବରେ ଈଶ୍ୱରଙ୍କୁ ପ୍ରାର୍ଥନା କରିଛନ୍ତି– "ହେ ଦେବ, ତମେ ଅବାଙ୍‌ମାନସ ଗୋଚର ଜାଣି ମଧ୍ୟ ମୁଁ ତୁମକୁ ଧ୍ୟାନରେ କଳ୍ପନା କରିବାକୁ ଚେଷ୍ଟା କରିଛି । ତମେ ଅନିର୍ବଚନୀୟ ଜାଣି ମଧ୍ୟ, ମୁଁ ମୋର ବାଣୀରେ ତମର ବର୍ଣ୍ଣନା ଦେବାକୁ ଯାଇଛି । ତମେ ସର୍ବସ୍ଥ ଜାଣି ମଧ୍ୟ ତୁମଲାଗି ତୀର୍ଥ ଯାତ୍ରା କରିଛି । ଭଗବାନ୍, ମୋର ଏଇ ତିନୋଟି ସଜ୍ଞ ଅପରାଧ ଲାଗି ମତେ କ୍ଷମା ଦେବ ।"

"ରୂପଂ ରୂପବିବର୍ଜିତସ୍ୟ ଭବତୋଧ୍ୟାନେନ ଯତ୍ କଳ୍ପିତଂ
ସ୍ତୁତ୍ୟାନିର୍ବଚନୀୟତା ଖିଳ ଗୁରୋ, ଦୂରୀକୃତା ଯନ୍ମୟା ।
ବ୍ୟାପୀତ୍ୱଂ ଚ ନିରାକୃତଂ ଭଗବତୋ ଯତ୍ ତୀର୍ଥଯାତ୍ରାଦିନା
କ୍ଷନ୍ତବ୍ୟଂ ଜଗଦୀଶ ତଦ୍ ବିକଳତା ଦୋଷତ୍ରୟଂ ମତ୍‌କୃତଂ ।"

ଏପରି ମଧୁର, ପ୍ରାଣସ୍ପର୍ଶୀ ଓ ଏକାନ୍ତ ଭାବରେ ମାନୁଷିକ ପ୍ରାର୍ଥନା ମୁଁ ଅନ୍ୟ କୌଣସିଠାରେ ପଢ଼ିନାହିଁ । ଏଥିରେ ବିଧାତାର କଳ୍ପନାତୀତ ବିରାଟତା ସଙ୍ଗେ, ମନୁଷ୍ୟର ଅନୁକମ୍ପ୍ୟ କ୍ଷୁଦ୍ରତା ଓ ଅଜ୍ଞତା ପ୍ରାଣସ୍ପର୍ଶୀ ଭାବରେ ବ୍ୟଞ୍ଜିତ ହୋଇଛି; କିନ୍ତୁ ଏଥିରେ ମତାନ୍ଧତା ନାହିଁ ।

ଈଶ୍ୱରାନୁଭୂତି ବା ଧର୍ମଜୀବନ ଅନେକଙ୍କ ଚିତ୍ତରେ ଆତଙ୍କ ଆଣେ । କାରଣ ବହୁଯୁଗର ପ୍ରାଚୀନ ସଂସ୍କାର, ସ୍ୱର୍ଗ ଓ ପୃଥିବୀ ଈଶ୍ୱର ଓ ମନୁଷ୍ୟକୁ ଅଲଗା ଅଲଗା କରି ଦେଖିବାକୁ ଶିଖାଇ ଆସିଛି । ନିଜ ବଦ୍‌ମାସିର ସୁବିଧାପାଇଁ ଆମେ ଜୀବନକୁ ଖଣ୍ଡ ଖଣ୍ଡ କରିବାରେ ଅଭ୍ୟସ୍ତ । 'ବ୍ୟବସାୟରେ ମିଛ ନ କହିଲେ ଚଳିହେବନି',

'ରାଜନୀତିରେ ଧର୍ମର ସ୍ଥାନ ନାହିଁ' ପ୍ରଭୃତି ଲୋକମତ ଏଇ ଦୃଷ୍ଟିକୋଣରୁ ଜନ୍ମ ନେଇଛି । ବାପୁଜୀଙ୍କ ସମଗ୍ର ଜୀବନ ଓ କର୍ମ ଏଇ ମତବାଦର ଏକ ବଳିଷ୍ଠ ପ୍ରତିବାଦ । ଜୀବନ ଅଖଣ୍ଡିତ; ସେହି ଅଖଣ୍ଡିତ ଜୀବନରେ ଏକତ୍ର ରହିଛି ପୃଥିବୀ ଓ ସ୍ୱର୍ଗ, ରହିଛି ଈଶ୍ୱର ଓ ମନୁଷ୍ୟ, ରହିଛି ଘର ଓ ଦେବାଳୟ । ଈଶ୍ୱର ପାଇଁ ମନୁଷ୍ୟକୁ ଘର ଛାଡ଼ି ଯିବାର କୌଣସି ବଳବାନ୍ ଯୁକ୍ତି ନାହିଁ; ଘୃଣା କରି ଜଙ୍ଗଲରେ ପଶିଲେ ଲୋକାଳୟକୁ ସ୍ୱର୍ଗ ମିଳିଯିବ ନାହିଁ । ରାମକୃଷ୍ଣ ବିବାହକରିଥିଲେ ଏବଂ ପରମହଂସ ହେଲେହେଁ ତାଙ୍କର ନାହିଁ ଥିଲା ଜଟାଜୂଟ, ନାହିଁ ଥିଲା ଗୈରିକ ବସନ । ସେ ସାଧାରଣ ବଙ୍ଗାଳୀ ଭଦ୍ରଲୋକ ପରି ଜୀବନ ଯାପନ କରୁଥିଲେ । ଶେଷ ଅଧ୍ୟାୟରେ ଧର୍ମ ଜୀବନ ବିଷୟରେ ଗୀତାର ମୂଲ୍ୟବାନ୍ ଉପଦେଶ ଏହିପରି–

''ଯତଃ ପ୍ରବୃତ୍ତିର୍ଭୂତାନଂ ଯେନ ସର୍ବମିଦଂ ତତମ୍
ସ୍ୱକର୍ମଣା ତମଭ୍ୟର୍ଚ୍ୟ ସିଦ୍ଧିଂ ବିନ୍ଦତି ମାନବଃ ।''

''ଯାହାଙ୍କଠାରୁ ଜୀବଗ୍ରାମର ଉତ୍ପତ୍ତି ଏବଂ ଯାହାଙ୍କ ଦ୍ୱାରା ଏ ସମସ୍ତ ପରିବ୍ୟାପ୍ତ, ତାହାଙ୍କୁ ନିଜନିଜର କର୍ତ୍ତବ୍ୟ ଦ୍ୱାରାହିଁ ଅର୍ଚ୍ଚନା କରି ମନୁଷ୍ୟ ସିଦ୍ଧିଲାଭ କରିବେ ।''

ଗୀତାର ଏହି ଶ୍ଳୋକ ସଙ୍ଗେ ମିଳିଯାଏ କାର୍ଲାଇଲ୍‌ଙ୍କ ମହାବାକ୍ୟ 'କର୍ମହିଁ ଉପାସନା' । ଈଶ୍ୱର ସର୍ବଘଟଣାର, ସର୍ବଶକ୍ତିର ମୂଳରେ ଏହା ଜାଣି, ନିରହଂକାର ଭାବରେ ନିଜର କର୍ତ୍ତବ୍ୟ କର୍ମ ନିଷ୍ଠାର ସହିତ କରାଯିବ, ଏହାହିଁ ଜୀବନର ମହତ୍ ତପସ୍ୟା ।

ଧର୍ମ ଜୀବନର ତେବେ ଲକ୍ଷ୍ୟ କ'ଣ ? ଈଶ୍ୱରଙ୍କୁ ବୁଝିବାକୁ, ତାଙ୍କୁ ସ୍ମରଣ କରିବାକୁ ବା ଉପାସନା କରିବାକୁ ଯିବୁ କାହିଁକି, ଯଦି ଆମର ଦୈନନ୍ଦିନ ପ୍ରୟୋଜନର କଥା ତାଙ୍କୁ ନ ଜଣାଇବୁ ?

ବାପୁଜୀଙ୍କ ମତରେ ଯଦି ଦୈନନ୍ଦିନ ଜୀବନର ପ୍ରତ୍ୟେକ ଘଟଣାରେ ଈଶ୍ୱର ସହାୟ ନ ହୁଅନ୍ତି, ତେବେ ଈଶ୍ୱରଙ୍କୁ ଉପାସନା କରିବାର ଅର୍ଥ ନାହିଁ । ବାପୁଜୀ ପ୍ରତ୍ୟେକ ଛୋଟ ବଡ଼ କର୍ମରେ ହାତ ଦେବା ଆଗରୁ ଭିତରର 'ବାଣୀ'ର ନିର୍ଦ୍ଦେଶକୁ ଅପେକ୍ଷା କରୁଥିଲେ । ଏଥିପାଇଁ ତାଙ୍କୁ ଅନେକ ଥଟ୍ଟା ଓ ସମାଲୋଚନା ସହିବାକୁ ହେଉଥିଲା । କାରଣ 'ଭିତରର ବାଣୀ'ର ନିର୍ଦ୍ଦେଶରେ ସେ ସବୁ କାମ କରୁଥିଲେହେଁ ବାପୁଜୀ ଅନେକ ଭ୍ରମ ପ୍ରମାଦ କରୁଥିଲେ, ଯାହା ସେ ନିଜେ ପରେ ମାନୁଥିଲେ । କିନ୍ତୁ ବାପୁଜୀଙ୍କ 'ଭିତରବାଣୀ' ସର୍ବଜ୍ଞ ଈଶ୍ୱର ହୋଇନପାରନ୍ତି । ବାପୁଜୀ ବରାବର କହୁଥିଲେ ଯେ ଆମ ଭିତରେ ଥିବା ସର୍ବଶ୍ରେଷ୍ଠ ବୈଜ୍ଞାନିକ ମଧ୍ୟ ସୃଷ୍ଟିର ବିରାଟ ସ୍ରଷ୍ଟା ନିକଟରେ ଏକ ନଗଣ୍ୟ ଜୀବ । ସତ୍ୟକୁ ସଂପୂର୍ଣ୍ଣରୂପେ ଦେଖିବା ମନୁଷ୍ୟର ଶକ୍ତିର ବାହାରେ । ଆମର ସୀମାବଦ୍ଧ ବୁଦ୍ଧିରେ ଆମେ ସତ୍ୟକୁ ଯେତିକି

ଧରିପାରିବା, ସେହି ଅନୁସାରେ ହିଁ ଆମର କର୍ମ ଓ ଚିନ୍ତା ଅନୁରଞ୍ଜିତ ହେବ ।

ପ୍ରସିଦ୍ଧ ଇଂରେଜ ଲେଖକ ଆଲ୍‌ଡୁସ୍ ହକ୍‌ସିଲି ବହୁ ଧର୍ମ ଓ ବହୁ ଶାସ୍ତ୍ର ଆଲୋଚନା କରି ଧର୍ମ ଓ ଈଶ୍ୱର ସମ୍ବନ୍ଧରେ ନିମ୍ନଲିଖିତ କେତୋଟି ସିଦ୍ଧାନ୍ତ କରିଛନ୍ତି । ସେ ଏହାକୁ 'ପେରେନିଆଲ ଫିଲଜଫୀ' ବା 'ସନାତନ ଦର୍ଶନ' ଆଖ୍ୟା ଦେଇଚନ୍ତି । କାରଣ ସେ ଦେଖୁଛନ୍ତି ଯେ, ଏଇ କେତୋଟି ମୌଳିକ ବ୍ୟାପାର ଉପରେ ସବୁ ଧର୍ମ ଊଣାଅଧିକରେ ପ୍ରତିଷ୍ଠିତ ଓ ସବୁ ଧର୍ମଶାସ୍ତ୍ରରେ ଏହାର ସ୍ଫୁଟିତ ବା ପ୍ରଚ୍ଛନ୍ନ ନିର୍ଦ୍ଦେଶ ଅଛି ।

୧ । ମନୁଷ୍ୟ ଓ ପ୍ରକୃତିକି ନେଇ ଗଠିତ ଏହି ଦୃଶ୍ୟମାନ ଜଗତ ଏକ ଭଗବତ୍ ସତ୍ତାର ଛାୟା ମାତ୍ର । ସେହି ସତ୍ତାହିଁ ପ୍ରକୃତ ଓ ପରିପୂର୍ଣ୍ଣ ବସ୍ତୁ, ଅନ୍ୟ ଯାହା କିଛି ଜୀବ ବା ପଦାର୍ଥ, ଆଂଶିକ ସତ୍ତା ମାତ୍ର ଏବଂ ମୌଳିକ ଭଗବତ୍ ସତ୍ତା ବିନା ସେମାନଙ୍କର ଅସ୍ତିତ୍ୱ ଅସମ୍ଭବ ।

୨ । ମନୁଷ୍ୟ ସେହି ଭଗବତ୍ ସତ୍ତାକୁ କେବଳ ଅନୁମାନ ଦ୍ୱାରା ଜାଣିପାରିବ ତାହା ନୁହେଁ, ଆତ୍ମାବବୋଧ ଦ୍ୱାରା ତାଙ୍କୁ ପ୍ରତ୍ୟକ୍ଷ ଅନୁଭବ କରାଯାଇପାରେ । ଏଇ ଅନୁଭବ ଜ୍ଞାତା ଓ ଜ୍ଞେୟଙ୍କୁ ଏକୀଭୂତ କରିଦିଏ ।

୩ । ମନୁଷ୍ୟ ପ୍ରାଣର ଦୁଇଟି ବିଭାଗ ଅଛି । ଗୋଟିଏ ହେଉଛି ଲୌକିକାଂଶ, ଯାହା ଆମେ ବାହାରେ ଦେଖୁଛୁଁ, ଏକ କଥାରେ ଅହଂକାର । ଅନ୍ୟଟି ଆତ୍ମା, ସେହି ସନାତନ ଭଗବତ୍‌ସତ୍ତାର ଏକ କଣା ।

୪ । ମନୁଷ୍ୟ ଜୀବନର ଏକମାତ୍ର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହେଉଛି ନିଜକୁ ସେହି ସନାତନ ଭଗବତ୍ ସତ୍ତାରେ ମିଳାଇଦେବା ।

୫ । ଏହି ମିଳନ ପାଇଁ ସାଧନା ହେଉଛି ସତ୍ୟ କ'ଣ, ମିଥ୍ୟା କ'ଣ ବୁଝି ସେଇ ଅନୁସାରେ ଜୀବନକୁ ପରିଚାଳିତ କରିବା । ଅନ୍ୟ କଥାରେ ବେଦାନ୍ତର ଜ୍ଞାନ-ଯୋଗ ଅଭ୍ୟାସ ।

ବିଶ୍ୱ-ସତ୍ତା ବା ଭଗବତ୍ ସତ୍ତାକୁ ପ୍ରତ୍ୟକ୍ଷ ଅନୁଭବ କରିବା କିଛି ନୂଆ କଥା ନୁହେଁ । ବୈଦିକ ଯୁଗରୁ ଏ ଯାଏଁ, ପୃଥିବୀର ବିଭିନ୍ନ ଦେଶରେ ଓ ଇତିହାସର ବିଭିନ୍ନ କାଳରେ ସହସ୍ର ସହସ୍ର ସାଧକ ଓ ସାଧିକା ଏହି ଅନୁଭବ ଲାଭକରି, ଅନ୍ୟମାନଙ୍କ କଲ୍ୟାଣ ପାଇଁ ନିଜ ସାଧନା ଓ ସିଦ୍ଧିର କଥା ପଛରେ ଛାଡ଼ିଯାଇଛନ୍ତି; ତାହାହିଁ ଧର୍ମଶାସ୍ତ୍ର । ବିଶେଷତଃ ହିନ୍ଦୁ ଧର୍ମରେ, ବୈଜ୍ଞାନିକ, ଲାବରେଟୋରୀରେ ପ୍ରତ୍ୟେକ ଘଟଣା ଚାକ୍ଷୁଷ ପରୀକ୍ଷା କଲା ପରି, ଏହି ଭଗବତ୍ ଜୀବନର ଘଟଣା-ପରମ୍ପରା ଏପରି ବିଧିବଦ୍ଧ ହୋଇ ବର୍ଣ୍ଣିତ ଅଛି ଯେ, ଯେ କୌଣସି ବ୍ୟକ୍ତି, ଯେ

କୌଣସି ସମୟରେ ସେହି ମାର୍ଗରେ, ନିର୍ଦ୍ଦେଶ କ୍ରମେ ଚାଲିଲେ, ଠିକ୍ ସେହି ସେହି ଫଳ ପାଇବ । ଆଲ୍‌ଡୁସ୍ ହକ୍‌ସିଲି ନିଜେ ବର୍ତ୍ତମାନ ଏହି ସାଧନାର ପଥିକ । ଏହି ସାଧନାର ପ୍ରଥମ ଓ ପ୍ରଧାନ କଥା ହେଉଛି, ହୃଦୟର ପବିତ୍ରୀକରଣ । ଭଗବାନଙ୍କୁ ବୁଦ୍ଧି ପ୍ରୟୋଗରେ ଲାଭ କରି ହେବ ନାହିଁ–ଯଦିବା ତା' ବଳରେ ଓକିଲ ବଡ଼ ମକଦ୍ଦମା ଜିଣିପାରେ, ସେନାପତି ରାଜ୍ୟ ଦଖଲ କରିପାରନ୍ତି, ବ୍ୟବସାୟୀ କୋଟି କୋଟି ମୁଦ୍ରା ଲାଭ ଉଠାଇ ପାରନ୍ତି, ବୈଜ୍ଞାନିକ ମଧ୍ୟ ପ୍ରକୃତିକି ଜବତ୍ କରିବାର ଉପାୟ ଉଦ୍ଭାବନ କରିପାରନ୍ତି । ଭଗବାନଙ୍କୁ କେବଳ ପବିତ୍ର ହୃଦୟରେ ଅନୁଭବ କରାଯାଇପାରେ । ଆମ୍ଭମାନଙ୍କ ହୃଦୟ ସର୍ବଦା ନାନା କାଳିମାରେ ଆଛନ୍ନ– ହିଂସା, ଈର୍ଷା, କାମ, କ୍ରୋଧ, ଲୋଭର ମାୟାଜାଲରୁ କିଏ ମୁକ୍ତ ? ସ୍ୱାର୍ଥ-କେନ୍ଦ୍ରିକ ପାର୍ଥିବ ଜୀବନରେ ତଥାକଥିତ ସାଫଲ୍ୟ ପାଇଁ ଆମେ ଏହିସବୁ ଦାନବର ଆଶ୍ରୟ ନେଇଥାଉଁ । ଯେଉଁ ସାଫଲ୍ୟ ପାଉଁ ତା'ର ଆନନ୍ଦ, ଆଶାରେ ଯେତେ, ବାସ୍ତବ ଭୋଗରେ ସେତେ ନ ଥାଏ; ପୁଣି 'ହାତେ ଆସେ ହାତୁ ଖସିବା ପାଇଁ ସେ' – ଏହା ଜାଣି ମଧ୍ୟ ଆମେ ଜୀବନର ତଥାକଥିତ ଭୋଗ ପାଇଁ ଚିତ୍ତକୁ ନାନା ଅନାଚାରରେ କଳୁଷିତ କରୁ, ପର ଦୁଃଖ ପ୍ରତି ନିଜର ସ୍ୱାର୍ଥପରତାରେ ଆଖି ବୁଜିଦେଉ । ହୃଦୟକୁ ବିଶୁଦ୍ଧ ଓ ପବିତ୍ର କରିବାର ଏକମାତ୍ର ପନ୍ଥା ସେଥିରୁ ସକଳ ସ୍ୱାର୍ଥପର ପ୍ରେରଣାକୁ ନିଷ୍କାସନ କରି, ତାକୁ ସ୍ୱାର୍ଥହୀନ ନିର୍ମଳ ପ୍ରେମରେ ପୂର୍ଣ୍ଣ କରିବା । ଏହା ଫଳରେ ବ୍ୟକ୍ତିଗତ ଓ ବିଶ୍ୱଜୀବନ ଏକୀଭୂତ ହୁଏ ଓ ସେହି ଉଦାରୀକୃତ ପ୍ରାଣରେ ବିଶ୍ୱସତ୍ତା ବା ଭଗବତ୍‌ସତ୍ତା ପ୍ରତ୍ୟକ୍ଷଭାବରେ ଅନୁଭୂତ ହୁଅନ୍ତି ।

ଏ ପନ୍ଥା ଅତୀବ ଦୁର୍ଗମ, ଯଦିଓ ପଢ଼ିଲେ ବା ଶୁଣିଲେ ଅତି ସହଜ ବୋଧ ହେବ । ବୁଦ୍ଧ, ଖ୍ରୀଷ୍ଟ, ରାମକୃଷ୍ଣ ବା ଗାନ୍ଧୀ ସର୍ବରିକ୍ତ ସନ୍ନ୍ୟାସୀ ହୋଇଛନ୍ତି ଏହି ପନ୍ଥା ଅନୁସରଣ କରି । ଖ୍ରୀଷ୍ଟଙ୍କ 'ପାର୍ବତ୍ୟ ଉପଦେଶ', ବୁଦ୍ଧଙ୍କ 'ଅଷ୍ଟପଥ', ରାମକୃଷ୍ଣଙ୍କ 'କାମ-କାଞ୍ଚନ' ତ୍ୟାଗ ଏବଂ ବାପୁଜୀଙ୍କ 'ଆତ୍ମ-ଶୁଦ୍ଧି' ପାଇଁ ଆହ୍ୱାନ– ଏ ସମସ୍ତ ମୂଳରେ ସେହି ଏକ ଉଦ୍ଦେଶ୍ୟ, ପ୍ରାଣକୁ କଳୁଷଶୂନ୍ୟ ଓ ପବିତ୍ର କରିବା । ଏ ପନ୍ଥା ବିନା ଭଗବତ୍ ଅନୁଭୂତି ଅସମ୍ଭବ । କୋଟି କୋଟି ଲୋକଙ୍କୁ ଅସ୍ପୃଶ୍ୟ ରଖି ବା ପ୍ରତିମା ଆଗରେ ପଶୁବଳି ଦେଇ ବା କାଫେରକୁ ହତ୍ୟାକରି ଭଗବାନଙ୍କୁ ପାଇବାର ଚେଷ୍ଟା ଘୋର ପାଷଣ୍ଡତା ଛଡ଼ା ଅନ୍ୟ କିଛି ହୋଇ ନ ପାରେ । ଭଗବତ୍ ଅନୁଭୂତି ଏପରି ଏକ ଏକାନ୍ତ ବ୍ୟକ୍ତିଗତ ବ୍ୟାପାର ଯେ, ସେଥିପାଇଁ ଦଳ ବା ଗୋଷ୍ଠୀଗଠନ ବା ରାଷ୍ଟ୍ର ବା ଗୋଷ୍ଠୀ ସଙ୍ଗେ ତାକୁ ଅଙ୍ଗାଙ୍ଗି ଭାବରେ ସଂପୃକ୍ତ କରିବା ମଧ୍ୟ ଆଉ ଏକ ମହା ପ୍ରମାଦ ।

ଚାକ୍ଷୁଷ ଜଗତ୍ ମିଥ୍ୟା, ବ୍ରହ୍ମହିଁ ଏକମାତ୍ର ସତ୍ୟ ଏବଂ ସେହି ବ୍ରହ୍ମରେ ପୁନର୍ମିଳିତ ହେବାହିଁ ଜୀବର ଲକ୍ଷ୍ୟ – ଏହାହିଁ ବେଦାନ୍ତର ସାରକଥା । ଏହା ପଛରେ ଆଜି ବୈଜ୍ଞାନିକ ସମର୍ଥନ । ପୂର୍ବେ କୁହାହୋଇଛି ଯେ, ବୈଜ୍ଞାନିକ ଆଜି କହିବାକୁ ବାଧ ଯେ ଜଗତରେ ଜଡ଼ ବୋଲି କିଛି ନାହିଁ – ସମସ୍ତହିଁ ଚେତନ । ତଥାକଥିତ 'ଜଡ଼' କେବଳ 'ବନ୍ଦୀ ଚେତନ' । ବନ୍ଦୀ ଓ ମୁକ୍ତ ଚେତନର ସମାବେଶରେ ଚାକ୍ଷୁଷ-ଜଗତର ସୃଷ୍ଟି । ନକ୍ଷତ୍ର ଜଗତରେ ଆମ୍ଭେମାନେ ଦେଖୁ ଯେ, ମହାବ୍ୟୋମରେ କୋଟି କୋଟି ମାଇଲର ଦୂରତା ପରେ ଗୋଟିଏ ଗୋଟିଏ ସୂର୍ଯ୍ୟ । ଆମର ଚକ୍ଷୁର ଭ୍ରମ ଯୋଗୁ ସେମାନେ ପାଖେ ପାଖେ ଥିବାପରି ଦେଖାଯାନ୍ତି । ଏବେ ବୈଜ୍ଞାନିକ ପ୍ରମାଣ କରିଛନ୍ତି ଯେ, ସୁନ୍ଦରୀର ଅଧର ବା ଖଣ୍ଡେ ଲୁହାକୁ ବିଶ୍ଳେଷଣ କଲେ ମଧ୍ଯ ଠିକ୍ ସେହି ଦୃଶ୍ୟ । ଏ ଉଭୟେ ତ ଅର୍ବୁଦାର୍ବୁଦ ପରମାଣୁରେହିଁ ଗଠିତ । ଗୋଟିଏ ପରମାଣୁ ଠାରୁ ଅନ୍ୟ ପରମାଣୁର ଆନୁପାତିକ ଦୂରତା ମଧ୍ୟ ଗୋଟିଏ ସୂର୍ଯ୍ୟଠାରୁ ଅନ୍ୟ ସୂର୍ଯ୍ୟର ଦୂରତା ଠାରୁ କମ୍ ନୁହେଁ । ବସ୍ତୁର ଘନତା ବା ବର୍ଣ୍ଣ ବା ଆକାର କେବଳ ଚକ୍ଷୁର ଭ୍ରମ ମାତ୍ର । ପଦାର୍ଥ-ବିଜ୍ଞାନୀର ଲାବରେଟରୀରେ ସ୍ଥୁଳ ଜଗତ୍ ବର୍ତ୍ତମାନ ଉଭେଇଯାଉଛି– ରହୁଛି କେବଳ ବଦ୍ଧ ଓ ମୁକ୍ତ ଚେତନାର ତରଙ୍ଗ ଲୀଳା । ପ୍ରସିଦ୍ଧ ବୈଜ୍ଞାନିକ ସର୍ ଆର୍ଥର୍ ଏଡ଼ିଂଗଟନ୍‌ଙ୍କ ଭାଷାରେ– ''ମୋର ଛାୟା କହୁଣି ଛାୟା-ଟେବୁଲ ଉପରେ ରହି, ଛାୟା କାଳି ସାହାଯ୍ୟରେ ଛାୟା-କାଗଜରେ ଲେଖୁଛି । ... ପଦାର୍ଥବିଜ୍ଞାନରେ ଏ ସବୁ କେବଳ ପ୍ରତୀକ ମାତ୍ର– ଏମାନଙ୍କର ପ୍ରକୃତ ସତ୍ତା ନାସ୍ତି । ମନ-ଯାଦୁକରହିଁ ଏହି ପ୍ରତୀକମାନଙ୍କୁ ରୂପାନ୍ତରିତ କରେ,... ତାହା ହୋଇଯାଏ ରୂପ, ରସ, ଗନ୍ଧ ଓ କାମନା, ବାସନାର ରାଜ୍ୟ– ସେଥି ସଙ୍ଗେ ମଧ୍ୟ ହୁଏ ଦୁଃଖର ଓ ପାପର ।'' – ଏଇ ତ ବେଦାନ୍ତର ମାୟାବାଦ ।

ବିଦ୍ୟୁତ୍ କଣିକା-ଯୁଗ୍ମ ପ୍ରୋଟନ୍ ଓ ଇଲେକ୍‌ଟ୍ରନ୍‌ର ମିଶ୍ରଣରେ ଗଛ ଓ ଜୀବଜନ୍ତୁର କୋମଳ ଶରୀର ଛାଡ଼ିଦିଅ, ସୁକଠିନ ପଥର, ଲୌହ ପ୍ରଭୃତିର ମଧ୍ୟ ସେହିଥିରୁ ସୃଷ୍ଟି । ଶକ୍ତି ବହୁ ଯୁଗ ତଳେ ଜଡ଼ ହୋଇଥିଲା, ଏବେ ଜଡ଼ ପୁଣି ଶକ୍ତିରେ ରୂପାନ୍ତରିତ ହୋଇ ପୃଥିବୀର ରୂପ ପରିବର୍ତ୍ତନ କରିଦେଇଛି । ବହୁ ବହୁ କୋଟି ବର୍ଷ ତଳର ସଂଚିତ ରବିରଶ୍ମି ଆଜି ପଥର କୋଇଲାରୁ ଉତ୍ତାପ ଓ ଆଲୋକରୂପେ ପୁଣି ବିକୀର୍ଣ୍ଣ ହେଉଛି । ୟୁରେନମ୍ ଧାତୁର ଅନ୍ତର୍ନିହିତ ଶକ୍ତି ଆଜି ପରମାଣୁ ବୋମା ରୂପେ ଜଗତକୁ ସ୍ତମ୍ଭିତ କରୁଛି । ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ଜଡ଼ ଦେହ ଓ ଜଡ଼ ଜଗତ ପରିତ୍ୟାଗ କରି ଆଦିମ ସୂକ୍ଷ୍ମତାକୁ ଫେରିଯିବାକୁ ଇଚ୍ଛୁକ ହେବାରେ ଆଶ୍ଚର୍ଯ୍ୟ କ'ଣ ? ତାହାହିଁ ଆତ୍ମାର ପରମାତ୍ମା ସହିତ ମିଳନ ।

# ୫ । ନିଜ ଦାୟିତ୍ୱ

ବୃକ୍ଷଲତା ଓ ଜୀବଜନ୍ତୁ ଏକାନ୍ତଭାବରେ ପାରିପାର୍ଶ୍ୱିକତା ଓ ବଂଶାନୁକ୍ରମ ଦ୍ୱାରା ପ୍ରଭାବିତ । ଛେଳି ବା ଆମ୍ବଗଛ ନିଜେ ଚେଷ୍ଟା କରି ନିଜର ଉନ୍ନତି କରିପାରିବେ ନାହିଁ – କେବଳ ମନୁଷ୍ୟହିଁ ତାହା କରିପାରେ । ଆମେରିକାର ଉଦ୍ଭିଦ୍‌ବିଜ୍ଞାନୀ ବରବାଙ୍କ ନାନା ଅପକୃଷ୍ଟ ଅକାମୀ ଗଛରୁ ଅନେକ ଉତ୍କୃଷ୍ଟ ନୂତନ ଉପକାରୀ ଗଛଲତା ସୃଷ୍ଟି କରିଯାଇଛନ୍ତି । ବିଜ୍ଞାନ ମୂଷା, ଘୁଷୁରୀ, ଗାଈ, ଘୋଡ଼ା, କୁକୁଡ଼ା ଉପରେ ନାନା ପରୀକ୍ଷା କରି ନୂତନ ନୂତନ ଗୁଣର ଜନ୍ତୁ ସୃଷ୍ଟି କରିପାରୁଛି; କିନ୍ତୁ ଏହି ଉତ୍କର୍ଷରେ ସେହି ଜୀବଜନ୍ତୁର ସଜ୍ଞ ଚେଷ୍ଟା ନାହିଁ – ମନୁଷ୍ୟ ହାତରେ ଏମାନେ ଉପାଦାନ ମାତ୍ର । କିନ୍ତୁ ମନୁଷ୍ୟ ନିଜକୁ ଗଢ଼ିବା ଭାଙ୍ଗିବାର ଉପାଦାନ ନିଜ ହାତରେ ନିଜେ । ବିଧାତା ମନୁଷ୍ୟକୁ ଏଇ ଏକ ଗୁରୁଦାୟିତ୍ୱ ଦେଇ, ମାନବିକ ସଂସାରକୁ ସୁଖ ଦୁଃଖର ଛାୟାଲୋକରେ ବିଚିତ୍ର କରି ରଖିଛି । ଯାହାର ଫଳରେ ମନୁଷ୍ୟ ପର୍ବତ ଗୁହା ଛାଡ଼ି ଆଜି ବିଦ୍ୟୁତ୍‌-ସେବିତ ପ୍ରାସାଦରେ ବାସକରୁଛି ଏବଂ ସେଦିନର ଚର୍ମ ଓ ବଲ୍‌କଲ ଛାଡ଼ି ଆଜି ରେଶମ, ପଶମର ବିଳାସ-ପରିଧାନରେ ଆବୃତ ।

ସମଗ୍ର ଭାବରେ ଏହା ନିତାନ୍ତ ସତ୍ୟ ହେଲେହେଁ ବ୍ୟକ୍ତିଗତ ବା ପାରିବାରିକ ଜୀବନରେ ଆମେ ଆମର ଏହି ବିଧାତୃଦତ୍ତ କଲ୍ୟାଣକର ଦାୟିତ୍ୱ ଓ ଅଧିକାରକୁ ସଂସ୍କାରର ଫାଶୀକାଠରେ ଝୁଲେଇଦେଇ ଗତାନୁଗତିକ ଜୀବନ ଯାପନ କରିବାକୁ ସୁଖ ପାଉ ଓ ସମସ୍ତ ଦୁର୍ଭାଗ୍ୟ ଓ ସୌଭାଗ୍ୟକୁ ମଧ, ଅଦୃଷ୍ଟର ହାତରେ ନ୍ୟସ୍ତ କରି ନିଶ୍ଚେଷ୍ଟ ରହୁ । ଭାରତବର୍ଷର ଯୁଗ ଯୁଗ ବ୍ୟାପୀ ସ୍ଥାଣୁତ୍ୱର ମୂଳରେ ଏହି ନିଶ୍ଚେଷ୍ଟ ଭାବ । ଦିନେ ମନିଷ ନିଜର ସରଞ୍ଜାମ କେବଳ ନିଜ ମୁଣ୍ଡରେ ବା କାନ୍ଧରେ ବୋହୁଥିଲା । ପରେ ବୋଝ ବେଶୀ ହେବାରୁ ତାକୁ ଘୋଡ଼ା ଓ ବଳଦର ପିଠିରେ ଲଦିଲା । ବୋଝ ପୁଣି ଅଧିକ ହେବାରୁ ଦୁଇଟି ବଳଦ ବା ଦୁଇଟି ଘୋଡ଼ାକୁ ଏକାଠି କରି ଗାଡ଼ିର ସୃଷ୍ଟିକଲା; କିନ୍ତୁ ସେହି ଗାଡ଼ି ରହିଲା ସନାତନ ହୋଇ । ତା'ର ଯୁଗଯୁଗ ଧରି ପରିବର୍ତ୍ତନ ହେଲା ନାହିଁ – ତା'ର ସମସ୍ତ ଅସୁବିଧା ସତ୍ତ୍ୱେ । ତରକାରୀରେ ସ୍ୱାଦପାଇଁ ଲୁଣ ଦେବା ବା ବଘାରିବା ଏକ ଏକ ବିପ୍ଲବକାରୀ ଆବିଷ୍କାର, କିନ୍ତୁ ଏବର ଗୃହିଣୀ ଭୁଲିଯାନ୍ତି ଯେ ସେମାନଙ୍କର ମଧ ଗୃହସ୍ଥଳିରେ ସେହିପରି ନୂତନ ଆବିଷ୍କାର କରିବାର, ନୂତନ ଉନ୍ନତି ଆଣିବାର ଅଧିକାର ଅଛି । କିନ୍ତୁ ସେ ଅଧିକାର ଅପେକ୍ଷା ଗତାନୁଗତିକତାହିଁ ଅଧିକାଂଶଙ୍କର ବରଣୀୟ; କାରଣ ସେ ବାଟରେ କଷ୍ଟ ନାହିଁ ।

ବ୍ୟକ୍ତିଗତ ଜୀବନରେ ଆମେ ଅଧିକାଂଶ ଭାବରେ ଗତାନୁଗତିକ ଜୀବନ ଯାପନ କରୁ ଓ ନିଜର ଦୁଃଖ ଦୁର୍ବିପାକ ପାଇଁ ଭାଗ୍ୟ ବା ପାରିପାର୍ଶ୍ୱିକତାକୁ ଦାୟୀ କରାଇଥାଉ । ଅଦୃଷ୍ଟ ଓ ପାରିପାର୍ଶ୍ୱିକତାର ପ୍ରଭାବକୁ ସୃଷ୍ଟିର ନିୟମ ପରମ୍ପରାରୁ ଆମେମାନେ ଏକାବେଳକେ ବାଦ୍ ଦେଇ ନ ପାରୁ; କିନ୍ତୁ ମନୁଷ୍ୟକୁ ଦିଆଯାଇଥିବା ଆତ୍ମ-ଶକ୍ତି ଯେ ଏହି ପ୍ରଭାବ ଗୁଡ଼ିକ ସଙ୍ଗେ ଲଢ଼ିବା ପାଇଁ ଦିଆଯାଇଛି ଏକଥା ଭୁଲିଯିବା ଏକାନ୍ତ ଅଯୌକ୍ତିକ ହେବ । ଭାଗ୍ୟକୁ ଆମ୍ଭେମାନେ ଏକ ନଦୀ ସ୍ରୋତ ରୂପେ କଳ୍ପନା କରିପାରୁ । ସେହି ନଦୀର ପ୍ରଖର ପ୍ରବାହ ଆମେ ରୋଧି ନ ପାରୁଁ; କିନ୍ତୁ ପହଁରି ବା ନୌକା ସାହାଯ୍ୟରେ ତାକୁ ଅତିକ୍ରମ କରିବାର ବୁଦ୍ଧି ଓ ଶକ୍ତି ମନୁଷ୍ୟର ଅଛି । ମନୁଷ୍ୟ ତାହାର ପ୍ରୟୋଗ ନ କରି କେବଳ କୂଳରେ ଠିଆରହି ନିଜର ଅସହାୟତା ଘେନି ବିଳାପ କରିବା ଠିକ୍ ହେବ କି ? ମନୁଷ୍ୟ ଈଶ୍ୱରଙ୍କୁ ମାନୁ ବା ନମାନୁ ଯାଏ ଆସେ ନାହିଁ, କିନ୍ତୁ ଯେ କେହି ଜୀବନର କୌଣସି କ୍ଷେତ୍ରରେ ସିଦ୍ଧି ଲାଭ କରିବାକୁ ଚାହାନ୍ତି, ତାଙ୍କୁ ଏହି ଆତ୍ମ-ଶକ୍ତିକୁ ସକ୍ରିୟ କରିବାକୁ ହେବ । ଅଭାବ, ପରାଭବର ବିରୁଦ୍ଧ ଶକ୍ତି ସଙ୍ଗେ ତାଙ୍କୁ ଲଢ଼ିବାକୁ ହେବ । ଜୀବନର ଲକ୍ଷ୍ୟ ନିର୍ଦ୍ଦିଷ୍ଟ କରି, ଏକାଗ୍ରଚିତ୍ତ ଓ ଏକାଗ୍ରଚେଷ୍ଟ ହୋଇ ସେହି ଲକ୍ଷ୍ୟରେ ନ ପହଞ୍ଚିଲା ପର୍ଯ୍ୟନ୍ତ ତାଙ୍କର ବିଶ୍ରାମ ଯେପରି ନ ରହେ । ଏପରି ଅକ୍ଲାନ୍ତ ସଂଗ୍ରାମରେ ଜୟ ନିଶ୍ଚିତ । ବଡ଼ଲୋକର ପୁଅ ହୋଇ ଜନ୍ମହେବାରେ ନୁହେଁ, ଦାରିଦ୍ର୍ୟ ସଙ୍ଗେ ଲଢ଼ି ବଡ଼ଲୋକ ହେବାରେ ମନୁଷ୍ୟର ପ୍ରକୃତ ପୁରୁଷକାର ।

ଆମର ଅକୃତକାର୍ଯ୍ୟତା ପାଇଁ ଆମେ ନାନା ଅଭାବ ଅସୁବିଧାର ଦ୍ୱାହି ଦେଇଥାଉ; କିନ୍ତୁ ଆତ୍ମ-ପ୍ରେରଣା ନ ଥିଲେ ସବୁ ସୁବିଧା ସତ୍ତ୍ୱେ ବି ସଫଳତା ଆସେ ନାହିଁ । ଜଣେ ମାର୍କିନ୍ ଲେଖକ ତାଙ୍କର କଲେଜ-ପଢ଼ା କାଳର ଜନୈକ ସହାଧ୍ୟାୟୀ ସମ୍ବନ୍ଧରେ ଏଇ ସଂପର୍କରେ ଏକ ମଜାର ଘଟଣା ଲେଖିଛନ୍ତି । ତାଙ୍କର ସହାଧ୍ୟାୟୀ ଖୁବ୍ ଆରାମରେ ଅଧ୍ୟୟନ କରିବା ପାଇଁ ଗୋଟିଏ ଆରାମ-ଚୌକି କିଣିଲା । ସେଥିରେ ପୁଣି ଏପରି ବ୍ୟବସ୍ଥା ରଖାଗଲା ଯେ ଆଲୁଅ ଓ ଖାତା ପତ୍ର ସେହି ଚୌକିରେ ଯଥା ସ୍ଥାନରେ ରଖାଥିବ । ପଢ଼ିଲାବେଳେ ଯେପରି ଶୀତ ବି ଲାଗିବନି ଅଥଚ ଆରାମ ଦେବ, ଏପରି ଏକ ନୂଆ ଢ଼ିଲା କୋଟ୍ ବି କିଣିଲା; କିନ୍ତୁ ଦେଖାଗଲା ଯେ, ସହାଧ୍ୟାୟୀଟି ପ୍ରତ୍ୟହ ସଂାଧ ଭୋଜନ ପରେ ନୂଆ ପୋଷାକ ପିନ୍ଧି ଯେମିତି ଆରାମ ଚୌକିରେ ଢଳିପଡ଼େ, ସେ ଗଭୀର ମନୋଯୋଗରେ ପଢ଼ିବେ କ'ଣ ବେଶ୍ ଘୁଁଗୁଡ଼ି ମାରି ନିଦ୍ରା ଯାନ୍ତି । ଏ ଦୃଶ୍ୟ ସଙ୍ଗେ ତୁଳନା କରାଯାଉ ଯେ, ବିଶ୍ୱସାହିତ୍ୟର ଅନେକ ଅମର ଗ୍ରନ୍ଥ ଜେଲ୍‌ରେ, ଦରିଦ୍ର କୁଟୀରରେ,

ନିର୍ବାସନରେ, ଅଭାବରେ ଏବଂ ରୁଗ୍ଣତାର ଯନ୍ତ୍ରଣା ଭିତରେ ହିଁ ଲେଖାଯାଇଛି । ସେଇଥିରୁ ଆମେ ବୁଝି ପାରିବା ଯେ, ମନୁଷ୍ୟ ପାରିପାର୍ଶ୍ୱିକତାର କ୍ରୀଡ଼ନକ ମାତ୍ର ହେବା ବିଧାତାର ନିର୍ଦ୍ଦେଶ ନୁହେଁ । ପାରିପାର୍ଶ୍ୱିକତାକୁ ଜୟକରି ସତ୍ୟ ଓ ସ୍ୱାଚ୍ଛନ୍ଦ୍ୟର ଆବିଷ୍କାର ପଥରେ ଅବାଧ ଅଗ୍ରସର ହେବା ହିଁ ମନୁଷ୍ୟ ପ୍ରତି ପ୍ରକୃତିର ପ୍ରଚ୍ଛନ୍ନ ନିର୍ଦ୍ଦେଶ ।

ଗ୍ଲେନ୍ କନିଂହାମ୍ ଏକ ମାଇଲ ଦୂରତାକୁ ଶୀଘ୍ରତମ କାଳରେ ଦୌଡ଼ିଛନ୍ତି ୪ ମିନିଟ୍‌ରେ । ଏଇ ମାର୍କିନ୍ ଭଦ୍ରଲୋକ ପିଲାଦିନେ ତାଙ୍କ ସ୍କୁଲ ଘରେ ନିଆଁ ଲାଗିବା ଫଳରେ ଏପରି ଛୋଟା ହୋଇଯାଇଥିଲେ ଯେ, ଡାକ୍ତରମାନେ ମତ ଦେଇ-ଥିଲେ ସେ ଆଉ ଚାଲିପାରିବେନି । ଗ୍ଲେନ୍ କିନ୍ତୁ ଦବି ଯିବାର ଲୋକ ନୁହଁନ୍ତି । ସେ ପ୍ରଥମେ ବିଲରେ ଗୋଟିଏ ଲଙ୍ଗଳକୁ ଧରି ଚାଲିବାକୁ ଆରମ୍ଭକଲେ । ତା'ପରେ ଅକ୍ଲାନ୍ତ ଚେଷ୍ଟା ଚାଲିଲା, ନିଜ ଗୋଡ଼ ଦୁଇଟିର ଶକ୍ତି ଫେରାଇ ଆଣିବାକୁ । ଫଳରେ ସେଦିନର ପରିତ୍ୟକ୍ତ ଛୋଟା, ଦୌଡ଼ିବା ପ୍ରତିଯୋଗିତାରେ ସମସ୍ତ ପୂର୍ବ ରେକର୍ଡ଼କୁ ଭାଙ୍ଗିପାରିଲେ । ଦୁର୍ଭାଗ୍ୟର ବିଷଦନ୍ତ କିପରି ଉପୁଡ଼ାଯାଇପାରେ ଗ୍ଲେନ୍ ତା'ର ଏକ ଉତ୍କୃଷ୍ଟ ଦୃଷ୍ଟାନ୍ତ । ବଡ଼ଲୋକଙ୍କର ଜୀବନୀ ପଢ଼ିବାକୁ ଯିବା ଦରକାର ନାହିଁ – ନିଜର ସାହୀ ବା ଗାଆଁରେ ଯେ କୌଣସି ଲୋକ କୌଣସି ନା କୌଣସି ଦିଗରେ ସଫଳକାମ ହୋଇଛି, ତାକୁ ଯାଇ ପଚାର, ତା' ନିକଟରୁ ଏହିପରି ଆତ୍ମ ପ୍ରଚେଷ୍ଟାର ଗୋଟାଏ ଦି'ଟା କାହାଣୀ ଶୁଣିବ ଇ ଶୁଣିବ ।

ବାହାରର ଅଭାବ, ଅସୁବିଧା, ପରାଭବ ଓ ଦୁର୍ଭାଗ୍ୟ ସହିତ ଲଢ଼ିବା ସଙ୍ଗେସଙ୍ଗେ ମନୁଷ୍ୟକୁ ଭିତରେ ଏକ ଲଢ଼େଇରେ ସଦାଜାଗ୍ରତ ସୈନିକ ହେବା ମଧ୍ୟ ବିଧାତାର ନିଗୂଢ଼ ନିର୍ଦ୍ଦେଶ । ବସ୍ତୁତଃ ବାହାର ସଂଗ୍ରାମ, ଭିତର ସଂଗ୍ରାମର ପ୍ରତିବିମ୍ବ ମାତ୍ର । ଯିଏ ଭିତର ଯୁଦ୍ଧରେ ଜୟୀ, ତାହା ପ୍ରତି ବାହାରର ଯୁଦ୍ଧ କିଛି ହିଁ ନୁହେଁ । ବାହାର ସଂଗ୍ରାମରେ ବହୁ ବିଜୟ ଲାଭ କରିଥିଲେହେଁ ଯିଏ ଭିତର ଲଢ଼େଇରେ କ୍ଷତବିକ୍ଷତ ଓ ପଙ୍ଗୁ, ତା'ର ଜୀବନରେ ସାଫଲ୍ୟ ଥାଇପାରେ, କିନ୍ତୁ ନାହିଁ ଶାନ୍ତି, ନାହିଁ ସୁଖ । ସେଥିପାଇଁ ଜଗତର ଧର୍ମାଚାର୍ଯ୍ୟ ଓ ଦାର୍ଶନିକମାନେ ମନୁଷ୍ୟକୁ ସର୍ବାଦୌ ନିଜ ଭିତରର ଶତ୍ରୁମାନଙ୍କୁ ନିପାତ କରିବାକୁ ବରାବର ଉପଦେଶ ଦେଇ-ଆସିଛନ୍ତି । ଏଇ ଶତ୍ରୁମାନଙ୍କୁ ବଶୀଭୂତ ନ କଲା ଯାଏଁ ମନୁଷ୍ୟର ଆତ୍ମଶକ୍ତିର ପୂର୍ଣ୍ଣ ବିକାଶ ଅସମ୍ଭବ ଏବଂ ଜୀବନ ଅପୂର୍ଣ୍ଣ ଓ ଛିନ୍ନଭିନ୍ନ ରହିବଇ ରହିବ । ଯାର ଜୀବନ ଛିନ୍ନଭିନ୍ନ, ତା'ର ଜମାଖାତାରେ କିଛି ସାଫଲ୍ୟ ଥାଇପାରେ; କିନ୍ତୁ ବିକଶିତ, ଏକୀଭୂତ ବ୍ୟକ୍ତିତ୍ୱର ଯେଉଁ ଆନନ୍ଦ, ତାଙ୍କ ଭାଗ୍ୟରେ ତାହା ଦୁର୍ଲଭ ।

ହିନ୍ଦୁ ଶାସ୍ତ୍ରକାରମାନେ ଯାହାକୁ ବର୍ଣ୍ଣନା କରିଯାଇଛନ୍ତି ମନୁଷ୍ୟର ଷଡ଼ରିପୁ,

ସେହି କାମ, କ୍ରୋଧ, ଲୋଭ ପ୍ରଭୃତିକୁ ଏବେ ମନସ୍ତାତ୍ତ୍ୱିକମାନେ ନାମ ଦେଇଛନ୍ତି ଇନଷ୍ଟିଙ୍କଟ୍ ବା ପ୍ରବୃତ୍ତି । ମନୁଷ୍ୟ ଅନେକଗୁଡ଼ିଏ ପ୍ରବୃତ୍ତି ଘେନି ଜନ୍ମହୁଏ, ଠିକ୍ ଯେପରି ଅନ୍ୟ ପ୍ରାଣୀମାନେ । ଜୀବର ବଂଶବୃଦ୍ଧି ଓ ଆତ୍ମରକ୍ଷଣ ପାଇଁ ପ୍ରକୃତି ପ୍ରତି ଜୀବ ଦେହରେ ଏଇ ସବୁ ପ୍ରବୃତ୍ତି ଖଞ୍ଜି ପଠାଇଥାଏ । କ୍ଷୁଧା, ଭୟ, ମୈଥୁନ ପ୍ରଭୃତି ପ୍ରବୃତ୍ତି, ଜୀବର ରକ୍ଷଣ ଓ ସଂପ୍ରସାରଣ ପାଇଁ ଯେ ନିତାନ୍ତ ଦରକାର, ଏଥିରେ ସନ୍ଦେହ ନାହିଁ; କିନ୍ତୁ ଏକାନ୍ତ ଭାବରେ ପ୍ରବୃତ୍ତି-ଚାଳିତ ହେବା ଜନ୍ତୁର ଲକ୍ଷଣ ହୋଇପାରେ– ମନୁଷ୍ୟର ନୁହେଁ । ବିଧାତା ମନୁଷ୍ୟକୁ ଜନ୍ତୁମାନଙ୍କ ଅପେକ୍ଷା ଏକ ଅଧିକା କଥା ଦେଇଛନ୍ତି– ତାହା ହେଉଛି ବିବେକ । ବିଚାରର ଚାବୁକ ଧରି ବିବେକ ବସିଛି, ଆମ ପ୍ରତ୍ୟେକଙ୍କ ଭିତରେ । ତା' ଚାବୁକକୁ ଆମେ ଯେତିକି ସମ୍ମାନ ଦେବା, ସେହି ପରିମାଣରେ ଆମେ ଜନ୍ତୁରୁ ହେବୁ ମନୁଷ୍ୟ ଏବଂ ଯେଉଁ ପରିମାଣରେ ତା'ର ଚାବୁକକୁ ଖାତିର୍ ନ କରି ପ୍ରବୃତ୍ତିର ପ୍ରେରଣାରେ ଭାସିଯିବୁ, ସେହି ପରିମାଣରେ ହେବୁ ମନୁଷ୍ୟରୁ ଜନ୍ତୁ ।

ବିଚାରକୁ ନ ମାନି କାମକରିଗଲେ ପରେ ଆସେ ଆତ୍ମ-ଗ୍ଲାନି । ଗଛ, ଲତା, ନଦୀ, ପାହାଡ଼ ବା ଜୀବଜନ୍ତୁର ଆତ୍ମ-ଗ୍ଲାନି ନାହିଁ – କେବଳ ଅଛି ମନୁଷ୍ୟର । "ଛି, ଏ କି କାମ କଲି ।" "ଛି, ଆଉ ଏପରି କାମ ଯେପରି ନ କରେ ।" "ଏ କଥା ଶୁଣିଲେ ମୋର ସ୍ତ୍ରୀ ବା ବାପା-ବୋଉ ବା ଲୋକେ କ'ଣ କହିବେ ।" – ଏପରି ଆତ୍ମ-ନିନ୍ଦା ଓ ଆତ୍ମ-ଭର୍ତ୍ସନା କାହାର ଜୀବନରେ ବାରମ୍ବାର ନ ଘଟିଛି ? ହେ ପାଠକ ଓ ପାଠିକା, ବିବେକର ଏହି ପ୍ରାକୃତିକ କ୍ରିୟାକୁ କ୍ରମେ କ୍ରମେ ବଳବତ୍ତର କର । ଏହି ଆତ୍ମ-ଗ୍ଲାନିକୁ କର୍ଣ୍ଣପାତ ନ କରି ମାଡ଼ିଚାଲିଗଲେ ବିବେକ କ୍ରମେ ଦୁର୍ବଳ ହୋଇଆସେ; ଲୋକ ଦୁରଭ୍ୟାସ ଓ ଦୁଷ୍କର୍ମର ପଙ୍କରେ ଲଟପଟ ହୋଇ ଘୁଷୁରୀ ପାଲଟିଯାଏ । ଆତ୍ମ-ଗ୍ଲାନିକୁ ବଳବାନ୍ ଓ ଜୀବନ୍ତ ରଖିପାରିଲେ ଭଲ ବାଟରେ ପଛକୁ ଫେରିବା ସହଜ ହୁଏ ।

ଅନ୍ୟ ପକ୍ଷରେ ବିଚାରପ୍ରତିଷ୍ଠିତ ନ ହେଲେ ଏହି ଆତ୍ମ-ଗ୍ଲାନି ମଧ୍ୟ ଏକ ବିଭୀଷିକାରେ ପରିଣତ ହେବ । 'ବିଚାର'ର ପ୍ରକୃତ ପ୍ରୟୋଗ ଅଭାବରେ 'ଆଚାର' ଆମ୍ଭମାନଙ୍କ ଉପରେ ଅତ୍ୟାଚାର କରେ । ଏହି ଆଚାରର ନିର୍ଦ୍ଦେଶରେ ହିଁ କୋଟି କୋଟି ହିନ୍ଦୁ ବହୁ ଯୁଗ ଧରି 'ଅସ୍ପୃଶ୍ୟ' ରହିଥିଲେ, କୋଟି କୋଟି ନାରୀ ମୃତ ସ୍ୱାମୀର ଚିତାରେ ଅନିଚ୍ଛାରେ ଜଳି ମରିଛନ୍ତି ଏବଂ ଲକ୍ଷ୍ୟ ଲକ୍ଷ୍ୟ ଶିଶୁଙ୍କୁ ଗଙ୍ଗା-ସାଗରରେ ବୁଡ଼େଇ ମାରିଦିଆହୋଇଛି । ବ୍ରାହ୍ମଣ, ପଣକୁ ଛୁଇଁଲେ ଆତ୍ମ-ଗ୍ଲାନି ଭୋଗ କରେ । ମୁସଲମାନ ଗୋରୁକୁ ନିର୍ଦ୍ଦୟ ଭାବରେ ହତ୍ୟା କଲେ ମନରେ

ତା'ର କିଛି ପ୍ରତିକ୍ରିୟା ଆସିବନି, ଅଥଚ ଶୂକର ମାଂସ ଖାଇପକାଇଲେ ତା'ର ହେବ ଆତ୍ମ-ଗ୍ଲାନି । ଏ ପ୍ରକାର ଆତ୍ମଗ୍ଲାନି କେବଳ ଆଚାରର ଅତ୍ୟାଚାର । ବିଚାର ପ୍ରୟୋଗ କରି ଏପରି ଆତ୍ମ-ଗ୍ଲାନିର ଫାଶରୁ ନିଜକୁ ଯେତେ ମୁକ୍ତ କରାଯାଇ ପାରେ, ସେତେ ଭଲ । ଏଇ ବିଚାର ପ୍ରୟୋଗ ଫଳରେ ହିଁ ଆତାତୁର୍କ୍ କେମାଲ୍ ପାଶା ଆଚାର ଅତ୍ୟାଚାରିତ ତୁର୍କ୍ ଜାତିକୁ ରାତାରାତି ଜନ୍ମାନ୍ତର ଦେଇଯାଇଛନ୍ତି । ମୁସଲିମ୍ ନାରୀର ପର୍ଦ୍ଦା, ମୁସ୍‌ଲିମ୍ ପୁରୁଷର ଫେଜ୍ ଟୋପି, ଆରବିକ୍ ଲିପି, ଇସ୍‌ଲାମିକ୍ ରୀତିରେ ବର୍ଷ ଗଣନା, ଖାଲିଫଙ୍କୁ ଆଲ୍ଲାର ପ୍ରତିନିଧି ବୋଲି ସମ୍ମାନ କରିବାର ଭାବ– ଏ ସବୁ ଇସ୍‌ଲାମ ଧର୍ମର ଅପରିହାର୍ଯ୍ୟ ଅଙ୍ଗ ବୋଲି ବହୁଯୁଗ ଧରି ଧରା ହୋଇ ଆସୁଥିଲା, ଯେପରି ବ୍ରାହ୍ମଣର ଉପବୀତ । ପୂର୍ବେ ଏ ସବୁ ଆଚାରର ବ୍ୟତିକ୍ରମ ହେଲେ ତୁର୍କର ଚିତ୍ତରେ ଆତ୍ମ-ଗ୍ଲାନି ଆସୁଥିବ ନିଶ୍ଚୟ; କିନ୍ତୁ ଆଜି ତୁର୍କିସ୍ତାନ ପୂରାପୂରି ଇଉରୋପୀୟ – ଖାଇବା ପିଇବା, ବସନ ଭୂଷଣ, ଚାଲିଚଳନ, ସବୁଥିରେ । ଆଚାର ଘେନି ଆତ୍ମ-ଗ୍ଲାନିର ଯୁଗ ତୁର୍କିସ୍ଥାନରୁ ଚାଲିଯାଇଛି । ଭାରତବର୍ଷରେ ପଙ୍କିଳ ଆଚାର ବିରୁଦ୍ଧରେ ପ୍ରଥମ ଓ ପ୍ରଧାନ ସଂଗ୍ରାମ ଚଳାଇଥିଲେ ବୁଦ୍ଧ । ବେଦକୁ ସାମାନ୍ୟ ମନୁଷ୍ୟ ରଚିତ ଗ୍ରନ୍ଥ ମାତ୍ର ବୋଲି ମନେକରିବା, ସର୍ବ ଜାତିକୁ ସମାନ ମନେକରିବା, ବହୁଯୁଗ ପ୍ରତିଷ୍ଠିତ ଯାଗଯଜ୍ଞର ନିନ୍ଦା କରିବା – ତୀକ୍ଷ୍ଣତମ ବିଚାର ଓ ଅସାଧାରଣ ସାହସ ବିନା ଅସମ୍ଭବ ।

ପ୍ରବୃତ୍ତିମାନଙ୍କୁ ବଶୀଭୂତ କରିବାର ଶାସ୍ତ୍ରୀୟ ପନ୍ଥା ହେଉଛି, ସଂଯମ ଓ ସନ୍ନ୍ୟାସ । ଏ ପନ୍ଥାର ମୂଳ ନୀତି ହେଉଛି ପ୍ରଲୋଭନଠାରୁ ନିଜକୁ ଦୂରରେ ରଖିବା । ଏଥିପାଇଁ ପୁରୁଷପିଲାକୁ ଲୋକାଳୟରୁ ନେଇ ଦୂରରେ ପ୍ରଲୋଭନ-ଶୂନ୍ୟ ଗୁରୁଗୃହରେ ଛାଡ଼ିଆସିବାର ବ୍ୟବସ୍ଥା ଥିଲା । ଏ ଏକ ଉତ୍ତମ ବ୍ୟବସ୍ଥା, ଯଦି ସେପରି ନିର୍ଭର ଯୋଗ୍ୟ ଗୁରୁ ବା ଅନୁଷ୍ଠାନ ସୁଲଭ ହୁଏ । ରାମକୃଷ୍ଣ ମିସନ୍ ଓ ଆର୍ଯ୍ୟସମାଜ ପକ୍ଷରୁ ଏପରି ଅନୁଷ୍ଠାନ ଏବେ ବି ପରିଚାଳିତ ହେଉଥିବାର ମୁଁ କାଗଜରେ ପଢ଼ିଛି; ମାତ୍ର ମୋର ପ୍ରତ୍ୟକ୍ଷ ଅଭିଜ୍ଞତା ନାହିଁ । ବାଲ୍ୟ ଓ କୈଶୋର ପରେ; ବିବାହିତ ଓ ଗୃହସ୍ଥ ଜୀବନରେ ମଧ୍ୟ ସଂଯତ ଜୀବନ ଯାପନ କରିବାର ନିର୍ଦ୍ଦେଶ ଓ ପନ୍ଥା ଶାସ୍ତ୍ରରେ ଅଛି । ସେଥିରେ ବି ମୂଳକଥା ବିଳାସ ଓ ପ୍ରଲୋଭନଠାରୁ ନିଜକୁ ଯେତେ ଦୂରରେ ରଖାଯାଇପାରେ, ତା'ର ଚେଷ୍ଟା କରିବା । ଆମର ଦୁର୍ବଳତା ଯୋଗୁ ଆମେ କୌଣସି ଉପଦେଶ ରକ୍ଷା କରି ନ ପାରିଲୁ ବୋଲି ତାକୁ ନିନ୍ଦା କରିବାର କୌଣସି ଯୁକ୍ତି ନାହିଁ ।

ଶାସ୍ତ୍ରୀୟ 'ବ୍ରହ୍ମଚର୍ଯ୍ୟ' ଏବେ ମନସ୍ତାତ୍ତ୍ୱିକମାନଙ୍କ ଭାଷାରେ ନୂଆ ନାମ ଧରି ବାହାରିଛି । ଇଂରାଜୀରେ ତାକୁ କହୁଛନ୍ତି ସବଲିମେଶନ୍ । ମନସ୍ତାତ୍ତ୍ୱିକ କହନ୍ତି ଯେ, ଇନ୍‌ଷ୍ଟିଂକଟ୍ ବା ପ୍ରବୃତ୍ତି ଜନ୍ତୁର ଲକ୍ଷଣ । ମନୁଷ୍ୟତ୍ୱର ଉଦ୍‌ବୋଧନ ପାଇଁ ଏହିସବୁ ଇନ୍‌ଷ୍ଟିଂକ୍‌ଟ୍ ଗୁଡ଼ିକର ଉନ୍‌ମନ ବା ରୂପାନ୍ତରୀକରଣ ଦରକାର । ପ୍ରବୃତ୍ତି ଭାବରେ କ୍ରୋଧ, ମନିଷ ଓ ଜନ୍ତୁ ଭିତରେ ସମାନ । ନିଜର ସାମାନ୍ୟ ସ୍ୱାର୍ଥରେ ବାଧା ଆସିଲେ ବାଘ, କୁକ୍‌କୁର ପରି ମନିଷ ବି କାମୁଡ଼ିଗୋଡ଼ାନ୍ତି, କଳିତକରାଳ, ମୁଣ୍ଡ ଫଟାଫଟି ହୁଏ; କିନ୍ତୁ ଏହି କ୍ରୋଧ ପ୍ରବୃତ୍ତିକୁ ମନୁଷ୍ୟହିଁ କେବଳ ପରାର୍ଥ ସେବାରେ ଲଗାଇପାରେ । ପ୍ରସିଦ୍ଧ ନର-ନାୟକ ବା କବିମାନଙ୍କର ଅନ୍ୟାୟ ଅତ୍ୟାଚାର ବିରୁଦ୍ଧରେ ଯେଉଁ ଅଗ୍ନି ବିକୀରଣ, ତାହା ଏହି କ୍ରୋଧ ପ୍ରବୃତ୍ତିର କଲ୍ୟାଣକର ରୂପାନ୍ତର ମାତ୍ର । ଆମ ଶାସ୍ତ୍ରକାରମାନେ କହନ୍ତି ଯେ, ଯୌନ ପ୍ରବୃତ୍ତିର ସଂଯମ ହୋଇପାରିଲେ ଅନ୍ୟ ସବୁ ପ୍ରବୃତ୍ତିକୁ ବଶୀଭୂତ ଓ ରୂପାନ୍ତରିତ କରିବା ସହଜ ହୋଇଆସେ । ସେମାନେ ଏକାନ୍ତ ଠିକ୍ । ବାପୁଜୀ ନିଜ ଜୀବନରେ ତାହା ପ୍ରମାଣ କରିଯାଇଛନ୍ତି । ଅନ୍ୟ ପ୍ରବନ୍ଧରେ ମଧ କୁହାଯାଇଛି ଯେ, ପୁରୁଷର ବୀର୍ଯ୍ୟର ଅପଚୟ ନ ହେଲେ ତାହା ରକ୍ତରେ ମିଶି ମସ୍ତିଷ୍କକୁ ପରିପୁଷ୍ଟ କରିବାରେ ସାହାଯ୍ୟ କରେ । ବିଜ୍ଞାନ ମଧ ଆଜି ମାନୁଛି । ଅଭିଜ୍ଞ ଧର୍ମାଚାର୍ଯ୍ୟମାନେ ବରାବର କହି ଆସିଛନ୍ତି ଯେ, ବ୍ରହ୍ମଚର୍ଯ୍ୟ ଫଳରେ ଶରୀର ଓ ମନ ପରିଷ୍କୃତ ହୋଇ ଅଧ୍ୟାତ୍ମ୍ୟ ଭାବପାଇଁ ଉପଯୁକ୍ତ ହୁଏ ।

ଅଧ୍ୟାତ୍ମ ଜୀବନ ଲୋକର ଲକ୍ଷ୍ୟ ହେଉ ବା ନ ହେଉ ଜୀବନର ସାଫଲ୍ୟପାଇଁ ଚିତ୍ତକୁ ନାନା ପ୍ରବୃତ୍ତି, ନାନା ପ୍ରଲୋଭନ, ନାନା ଚିନ୍ତାରେ ଛିନ୍ନଭିନ୍ନ ନକରି ଏକୀଭୂତ କରିବା ସର୍ବଦା କର୍ତ୍ତବ୍ୟ । ନିଜର ଦୁର୍ଭାଗ୍ୟ, ନିଜର ବିଫଳତା ପାଇଁ ପରକୁ ବା ବାହାରର ଘଟଣାବଳିକୁ ଦୋଷ ଦେଇ ପାରହେବାକୁ ଚେଷ୍ଟା କରିବା କେବଳ ନିଜକୁ ଫାଙ୍କିବା । ନିଜର ବାଧା ବିଘ୍ନକୁ ନିଜେଇ ଘୁଞ୍ଚେଇବାକୁ ହେବ, ନିଜର ବୋଝ ନିଜ ମୁଣ୍ଡରେହିଁ ବୋହିବାକୁ ହେବ । ଏଥିପାଇଁ ନିତାନ୍ତ ଦରକାର ଚିତ୍ତର ଏକୀକରଣ । ଇଂରାଜୀରେ ମନସ୍ତାତ୍ତ୍ୱିକ ଭାଷାରେ ଯାକୁ କହନ୍ତି, – Self-integration । ଗୀତାରେ ଏଇ ସେଲଫ୍-ଇଣ୍ଟିଗ୍ରେଶନ୍‌ର ବର୍ଣ୍ଣନା ହେଉଛି ବ୍ୟବସାୟାତ୍ମିକା ବୁଦ୍ଧି । ଅବ୍ୟବସାୟୀମାନଙ୍କର ବୁଦ୍ଧି ବହୁଶାଖ ଓ ଅନନ୍ତ । ଇଣ୍ଟିଗ୍ରେଶନ୍ ଆଣିପାରିଥିବା ଲୋକକୁହିଁ ଗୀତାରେ କୁହାଯାଇଛି ସ୍ଥିତଧୀ, ସ୍ଥିତପ୍ରଜ୍ଞ । ବାପୁଜୀଙ୍କ ନିକଟକୁ ଯେ କେହି ଆସୁଥିଲେ, ସେ ତାଙ୍କର ଏହି ସ୍ଥିତଧୀ ଗୁଣରେ ଅବାକ୍ ହେଉଥିଲେ । ତାଙ୍କର ନ ଥିଲା ଆକର୍ଷଣ, ନଥିଲା ଘୃଣା, ତାଙ୍କର ନଥିଲେ ଶତ୍ରୁ,

ଥିଲେ କେବଳ ମିତ୍ର, ତାଙ୍କର ଦୁଃଖ ବି ନଥିଲା, ସୁଖ ବି ନ ଥିଲା. ଭଗବାନଙ୍କୁ ସାକ୍ଷୀ ରଖି ସେ କେବଳ ଆଗେଇ ଚାଲିଥିଲେ ସତ୍ୟର ରୁକ୍ଷ ପଥରେ ।

ଯଦି ଜୀବନରେ ଆମେ ଶାନ୍ତି, ସୁଖ ଓ ପ୍ରକୃତ ବିଜୟ ଚାହୁଁ, ତେବେ ଆମକୁ ବାପୁଜୀଙ୍କ ପରି ଚିତ୍ତକୁ ଇଣ୍ଟିଗ୍ରେଟେଡ୍ ବା ଏକୀଭୂତ କରିବାକୁ ହେବ । ଯେତେଦିନ ପର୍ଯ୍ୟନ୍ତ ଆମେ ବାହାରର ଦ୍ରବ୍ୟରୁ ସୁଖ ପାଇବୁ ବୋଲି ଆଶା ରଖିଛୁ, ସେତେ ଦିନ ଯାଏଁ ଆମ ଜୀବନରେ ଶାନ୍ତି ନାହିଁ ଏବଂ ସେତେଦିନ ଯାଏଁ ଆମେ ମନିଷ ହେବା ଅସମ୍ଭବ । ଅନ୍ୟ କଥାରେ, ସେତେଦିନ ଯାଏଁ ଆମର ପ୍ରକୃତ ବ୍ୟକ୍ତିତ୍ୱ ଫୁଟି ପାରିବ ନାହିଁ । କୋଠାବାଡ଼ି, ଟଙ୍କାପଇସା, ସ୍ତ୍ରୀ, ପୁତ୍ରକନ୍ୟା, ସାମାଜିକ ବା ରାଷ୍ଟ୍ରୀୟ ପ୍ରସିଦ୍ଧି ଏଇ ସବୁ ବାହାରର ଦ୍ରବ୍ୟ ବା ବ୍ୟକ୍ତି ଉପରେ ଆଶା ରଖି ଲୋକ ଜୀବନ ପଥରେ ଯାତ୍ରା କରେ । ବିଶ୍ଳେଷଣ କରି ଦେଖ, ଆମର ଅଧିକାଂଶ ଦୁଃଖ ଓ ଦୁଶ୍ଚିନ୍ତା ଏଇ ସବୁଥିରୁ ଜାତ । ଏ ସବୁ ଜୀବନପଥର ପାଥେୟ, ସନ୍ଦେହ ନାହିଁ; କିନ୍ତୁ ଏ ସବୁ ଆତ୍ମାର ପ୍ରଭୁ ହେବା ଉଚିତ ନୁହେଁ । ଏ ସବୁର ଲଗାମକୁ ହାତମୁଠାରେ ରଖି ଯେଉଁ ଲୋକ ନିରାକର୍ଷିତ ଭାବରେ ଜୀବନ ଚଳାଏ, ସେ ମୁକ୍ତ, ସେ ସ୍ୱାଧୀନ, ସେ ସୁଖୀ ।

ଗୀତା କହେ –

''ଯେହି ସଂସ୍ପର୍ଶଜା ଭୋଗାଃ, ଦୁଃଖଯୋନୟଃ ଏବ ତେ;
ଆଦ୍ୟନ୍ତବନ୍ତ କୌନ୍ତେୟ ନ ତେଷୁ ରମତେ ବୁଧାଃ ।''

ଯେଉଁ ଭୋଗ ସଂସ୍ପର୍ଶରୁ ଅର୍ଥାତ୍ ବାହାର ଦ୍ରବ୍ୟର ସଂପର୍କରୁ ଜାତ, ତାହା ଦୁଃଖର କାରଣ । ସେ ସବୁର ଆରମ୍ଭ ଓ ଶେଷ ଅଛି – ଅର୍ଥାତ୍ ସେ ସବୁ କ୍ଷଣସ୍ଥାୟୀ । ପଣ୍ଡିତ ଲୋକ ସେଥିପ୍ରତି ଆକୃଷ୍ଟ ହୁଅନ୍ତି ନାହିଁ । ଯୀଶୁଖ୍ରୀଷ୍ଟଙ୍କ ଭାଷାରେ ଯିଏ ଆତ୍ମାକୁ ହରାଇପାରେ ସେହି କେବଳ ଆତ୍ମାକୁ ଫେରିପାଇବ । ଏହାର ତାତ୍ପର୍ଯ୍ୟ ଏହି ଯେ, ପ୍ରବୃତ୍ତିପରିଚାଳିତ ଅହଂମୟ, ସ୍ୱାର୍ଥକୈନ୍ଦ୍ରିକ ଜୀବନକୁ ଆମେ ବିଲୋପ କରିପାରିଲେ, ଆମ ଭିତରେ ଉଚ୍ଚତର ଆତ୍ମାର ଉଦ୍ଭବ ହେବ । ଧର୍ମର କଥା ଛାଡ଼ି ଦେଲେହେଁ କଳା, କବିତ୍ୱ, ବିଜ୍ଞାନ, ଦେଶସେବାରେ ମଧ୍ୟ ଏହି କଲ୍ୟାଣକର ନିୟମ କାର୍ଯ୍ୟ କରେ । ନିଜର ପ୍ରବୃତ୍ତିପଙ୍କିଳ, ସ୍ୱାର୍ଥଜଡ଼ିତ, ଆତ୍ମାକୁ ନ ହଜେଇଲେ କବି ଉତ୍କୃଷ୍ଟ କବିତା, ଶିଳ୍ପୀ ଉତ୍କୃଷ୍ଟ କଳା ସୃଷ୍ଟି କରିପାରିବେନି କି ଦେଶସେବକ ପ୍ରକୃତ ଦେଶସେବା କରିପାରିବେ ନାହିଁ । କେବଳ ବାହାବା ପାଇବାର ଦୁର୍ବାର ଲାଳସା ଘେନି କେହି ପ୍ରକୃତ କବି ବା ଶିଳ୍ପୀ ହୋଇ ନ ପାରନ୍ତି । ସେଥିପାଇଁ କବି ବା ଶିଳ୍ପୀଙ୍କୁ ନିଜ ଅନୁଭୂତିରେ ଓ ନିଜ କଳାରେ

ସମ୍ପୂର୍ଣ୍ଣ ମଗ୍ନିତ ହେବାକୁ ହେବ । ପ୍ରସିଦ୍ଧ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍ ନିଜର ଗବେଷଣା ଛଡ଼ା ଜଗତର ଅନ୍ୟ ଘଟଣାବଳି ସଂପର୍କରେ ନିସ୍ପୃହ । ସାମନ୍ତ ଚନ୍ଦ୍ରଶେଖର ନକ୍ଷତ୍ର ପର୍ଯ୍ୟବେକ୍ଷଣ ପାଇଁ ନିଦ୍ରା ଓ କ୍ଷୁଧା ଭୁଲିଯାଉଥିଲେ ।

ଆମ୍ଭମାନଙ୍କର ଦୁର୍ବଳତା ବହୁତ । କେତେକଙ୍କର ଜୀବନର ସମସ୍ତ ସିଦ୍ଧି ପୋକ ମାରିଯାଏ, ହୁଏତ କେବଳ ଗୋଟିଏ ଦୁରଭ୍ୟାସ ଯୋଗୁଁ । ବାରମ୍ବାର ଚେଷ୍ଟା କଲେ ବି ସେ ଅଭ୍ୟାସ ଛାଡ଼ିହୁଏନା । ମନସ୍ତାତ୍ତ୍ୱିକମାନେ ବି କହୁଛନ୍ତି ଯେ, ଏପରି ସ୍ଥଳରେ ମନୁଷ୍ୟ ଯେଉଁ ବୃହତ୍ତର ଶକ୍ତିରୁ ଉଦ୍ଭୂତ, ସେହି ଶକ୍ତିକୁ ପ୍ରାର୍ଥନା କଲେ ଦୁର୍ବଳ ଆତ୍ମଶକ୍ତି କ୍ରମେ କ୍ରମେ ବଳଶାଳୀ ହୁଏ । ବାପୁଜୀ ଏହି ଦୃଷ୍ଟିରେ ବରାବର ପ୍ରାର୍ଥନା କରୁଥିଲେ । କିନ୍ତୁ, ବୁଦ୍ଧଙ୍କ ପରି ଯେଉଁମାନଙ୍କର ପ୍ରଚୁର ଆତ୍ମଶକ୍ତି ଅଛି ବୋଲି ସେମାନେ ବିଶ୍ୱାସ କରନ୍ତି, ସେମାନେ ଆଦୌ ପ୍ରାର୍ଥନା ନ କରି ପାରନ୍ତି । କିନ୍ତୁ ଈଶ୍ୱରଙ୍କୁ ମାନୁ ବା ନ ମାନୁ, ଜୀବନକୁ ସୁଖୀ ଓ ଶାନ୍ତିମୟ କରିବାର ଏକମାତ୍ର ପନ୍ଥା ହେଉଛି ଜନ୍ତୁର ସ୍ୱାର୍ଥକେନ୍ଦ୍ରିକ ଜୀବନକୁ କ୍ରମେ କ୍ରମେ ପରିତ୍ୟାଗ କରି ନିଜକୁ ଶକ୍ତି ଅନୁଯାୟୀ ପରାର୍ଥପରାୟଣ କରିବା । ସେଥିପାଇଁ ଦରକାର ପ୍ରବୃତ୍ତିମାନଙ୍କର ବଶୀକରଣ ଓ ରୂପାନ୍ତରୀକରଣ, ସେଥିପାଇଁ ଦରକାର ଚିତ୍ତର ଏକୀକରଣ । ଏଇ ମାର୍ଗରେହିଁ ଆତ୍ମଶକ୍ତିର ପ୍ରକୃଷ୍ଟ ବିକାଶ ।

— —

## ୬ । ସୁସ୍ଥ ଶରୀର

ଶିଶୁ ଭଲ ଦୁଧ ଟିକିଏ ପାଇପାରୁନି, ସାଧାରଣ ମଣିଷ ଭଲ ଚାଉଳ ଗଣ୍ଡେ ବା ଡାଲି ଦି'ଟା ପାଇପାରୁନାହାନ୍ତି, ଅଥଚ ତେଣେ ସରକାର ଭିଟାମିନ୍ ଚର୍ଚ୍ଚା ପାଇଁ ଏବଂ ଖାଦ୍ୟ ଓ ସ୍ୱାସ୍ଥ୍ୟର ପ୍ରଦର୍ଶନୀ ବସେଇ ଲକ୍ଷ ଲକ୍ଷ ଟଙ୍କା ଉଡ଼େଇ ପାରୁଛନ୍ତି । ଏଇ ବୋଧହୁଏ ଆଧୁନିକ ସଭ୍ୟତାର ଶ୍ରେଷ୍ଠ ଟ୍ରାଜେଡ଼ି । ଦୁଧ ଓ ଅଣ୍ଡା ପୁଷ୍ଟିକର ଖାଦ୍ୟ, ଏହା ଏ ଦେଶରେ କାହାକୁ ଅଜଣା ? ସେଥିପାଇଁ ଚାର୍ଟ ତିଆରିକରି ମୋଟା-ଦରମାବାଲା ଡାକ୍ତର, ଲୋକଙ୍କୁ ବୁଝେଇବାର ହାସ୍ୟକର ଅଭିନୟ ନ କଲେ କ୍ଷତି କ'ଣ ହୁଅନ୍ତା ?

ସ୍ୱାସ୍ଥ୍ୟ ବିଷୟରେ ସହସ୍ର ସହସ୍ର ପୁସ୍ତକ ବହୁ ଭାଷାରେ ପ୍ରକଶିତ ହୋଇ ଚାଲିଛି; ଡାକ୍ତରଙ୍କ ସଂଖ୍ୟା ଓ ନବାବିଷ୍କୃତ ଔଷଧର ସଂଖ୍ୟା ମଧ୍ୟ ବଢ଼ିଚାଲିଛି; କିନ୍ତୁ ପ୍ରକୃତ ସୁସ୍ଥ ପୁରୁଷ ଓ ସ୍ତ୍ରୀ ସେହି, ଯେ କି ଏ ସବୁ ବହି ବା ଔଷଧର ନାମ ପର୍ଯ୍ୟନ୍ତ ଶୁଣିନାହାନ୍ତି କି ଡାକ୍ତରକୁ ଦେଖିନାହାନ୍ତି ଜୀବନରେ, ଯେଉଁମାନେ ବଞ୍ଚିଛନ୍ତି ମାଟି ଓ ଜଙ୍ଗଲର ଘନିଷ୍ଠ ମିତ୍ରତାରେ । ଗଡ଼ଜାତର ଜଙ୍ଗଲ ଭୂମିରେ ଓ ପଲ୍ଲୀର କେଦାରମାଳାରେ ନରନାରୀର ଯେଉଁ ତନୁମହିମା ଦେଖିବାକୁ ମିଳେ, ତାହା ନଗର ସଭ୍ୟତାର କୃତ୍ରିମ ଓ ଅପ୍ରାକୃତିକ ମାଟିରେ ମିଳିବ କାହୁଁ ? ପ୍ରାସାଦର ସୁଖାଦ୍ୟ ଖାଇ ଓ ମହାର୍ଘ ବସନ ଭୂଷଣ ପରିଧାନ କରି ଯେଉଁ ରୂପର ସଂସାର ଫୁଟିଥିଲା ହସ୍ତୀନାର ରାଜନ୍ତଃପୁରରେ, ସେସବୁ ମଉଳିଗଲା କଣ୍ୱାଶ୍ରମର ନିରାଭରଣ, ସୁସ୍ଥ,, ସରଳ ରୂପ-ପୁଷ୍ପ ନିକଟରେ । ଗଛଲତା, ମାଟି ପବନ, ନଈ ପାହାଡ଼ ମେଳରେ ଏବେ ବି ଠିକ୍ ସେହିପରି ଶତ ଶତ ଶକୁନ୍ତଳା ଫୁଟିଉଠୁଛନ୍ତି । ସହରର ମାଟିରେ, ଉଇନିଭର୍ସିଟିର ସିଆଇ ଗାଲରେ ମାରିବା ପାଇଁ ଉତ୍କଟ ଆଶା ରଖି, ତୈଳ-ମସଲା-ଅତ୍ୟାଚାରିତ ଖାଦ୍ୟ ଖାଇ, ନଗର-କୁମାରୀ, ଅରଣ୍ୟ ଲତା ଓ ପୁଷ୍ପର ମନୋହର ସୁଷମା ଆଶା-କରିବା ବିଡ଼ମ୍ବନା ।

ଖ୍ରୀଷ୍ଟୀୟ ପୁରାଣ ଅନୁସାରେ ମନୁଷ୍ୟର ଆଦିମ ପିତାମାତାର ପାପ କ୍ରିୟା ଫଳରେ ବିଧାତା ତାଙ୍କୁ ଇଡ଼େନ୍ ଉଦ୍ୟାନରୁ ବିତାଡ଼ିତ କରିଦେଇଥିଲେ । ଯଦି ଈଶ୍ୱରଙ୍କ ଆଜ୍ଞା ନ ମାନିବା ମନୁଷ୍ୟର ପ୍ରଥମ ପତନ, ମୋ ମତରେ ତା'ର ଦ୍ୱିତୀୟ ପତନ ହେଉଛି ଇଡ଼େନ୍-ତ୍ୟାଗ । ପ୍ରକୃତିର ଘନିଷ୍ଠ ସଂପର୍କରୁ ମନିଷ ଯେତିକି

ଯେତିକି ଦୂରକୁ ଆସିଛି, ତା'ର ଦୁର୍ଗତି ସେତିକି ସେତିକି ବଢୁଛି । ପାଣି, ପବନ, ବିଦ୍ୟୁତ୍‌କୁ ଜବତ୍ କରିଛି ବୋଲି ବିଜ୍ଞାନର ଗର୍ବ । କିନ୍ତୁ ପ୍ରକୃତି ତା'ର ପ୍ରତିହିଂସା ଅତି ସୂକ୍ଷ୍ମ ଉପାୟରେ ନେଇ ଚାଲିଛି, ନୂତନ ନୂତନ ରୋଗରେ, କୋଟି କୋଟି ଲୋକର ଅର୍ଦ୍ଧାଶନରେ ଓ କୋଟି କୋଟି ଲୋକର ବିକୃତ ଭୋଜନରେ । ସ୍ୱାସ୍ଥ୍ୟ ଓ ନରତନୁର ମଧୁରତମ ସୁଷମା ଫୁଟେଇବାକୁ ଯଦି ଇଚ୍ଛା, ତେବେ ଡାକ୍ତରଖାନା ବସାଇ, ମୋଟା ଦରମାବାଲା ଡାକ୍ତର ରଖାଇ ତା' ହୋଇପାରେନା; ସେଥିପାଇଁ ଆମକୁ ପ୍ରକୃତିର ମାତୃଛାୟା ତଳେ ପ୍ରାକୃତିକ ଜୀବନକୁ ଫେରିଯିବାକୁ ହେବ ।

ଏବର ଜଜ୍, ଅଧ୍ୟାପକ, ନେତା, କବି, ବିଜ୍ଞାନୀ– ଯେଉଁମାନେ ମାଟିହାତ ଓ ମାଟିଗୋଡ଼ ହେବାକୁ ଏବେ ନାରାଜ ବା ଅଶକ୍ତ, ସେମାନେ ସମସ୍ତେ ନିଜ ନିଜ ବଂଶର ଆଦ୍ୟ ପୁରୁଷମାନଙ୍କୁ କଳ୍ପନା କରନ୍ତୁ । ସେମାନେ ସମସ୍ତେ ଦେଖିପାରିବେ ଯେ, ଏବର ସମଗ୍ର ଧୋବଲା ଗୋଷ୍ଠୀର ଆଦି ପୁରୁଷ ନିତ୍ୟ ଗଛ କାଟୁଥିଲେ, ବିଲ ଚଷୁଥିଲେ, ମାଛ ଧରୁଥିଲେ, ଶିକାର କରୁଥିଲେ, ଗଦା ବୁଲାଉଥିଲେ ଏବଂ ଆଦି ନାରୀ ସୂତା କାଟୁଥିଲେ, ବଗିଚା କରୁଥିଲେ, ଧାନ ଉଷାଁଉଥିଲେ, ଧାନ କୁଟୁଥିଲେ, ଗାଈ ଦୁହୁଁଥିଲେ ଓ ଏସବୁ ସତ୍ତ୍ୱେ ପଲ ପଲ ପିଲା ଜନ୍ମକରି ମଧ ତିନି ଚାରି କୋଡ଼ି ବର୍ଷଯାଏଁ ସୁସ୍ଥ ସବଳ ଜୀବନ ବଞ୍ଚି, ନାତିନାତୁଣୀର ବିଭାଘର ନ ଦେଖି ମରୁ ନ ଥିଲେ । ଏବର ପୁରୁଷ ଓ ନାରୀ ଦେହର ଶତ ଶତ ସ୍ନାୟୁ ଓ ମାଂସପେଶୀ ପ୍ରକୃତି-ଉଦ୍ଦିଷ୍ଟ ଭାବରେ ଯେପରି ପ୍ରତ୍ୟହ ପରିଶ୍ରାନ୍ତ ହେବାର କଥା, ତା' ଆଉ ହେଉ ନାହିଁ । ତେଣୁ ଆଜି ଆମେ ଦୁର୍ବଳ, ଅପୁଷ୍ଟ, ରୁଗ୍ଣ ଓ କ୍ଷୀଣାୟୁ; ସ୍ୱାସ୍ଥ୍ୟ ଓ ସୌନ୍ଦର୍ଯ୍ୟର କଥା ଛାଡ଼ିଦିଅ । ମୋର ବାପ ଓ ଦାଦାମାନେ ସମସ୍ତେ ପାଞ୍ଚ ହାତିଆ ମର୍ଦ୍ଦ ଥିଲେ । କେବଳ ଜଣକ ଛଡ଼ା କେହି କୋଟ୍, କାମିଜ ବ୍ୟବହାର କରି ନ ଥିଲେ; କିନ୍ତୁ ତାଙ୍କ ଦେହରୁ ଚିକ୍‌କଣ ବୋହିପଡୁଥାଏ । ମୋର ଗୋସେଇଁ ମା ୮୫ ବର୍ଷରେ ମଲେ; କିନ୍ତୁ ସେ ପର୍ଯ୍ୟନ୍ତ ତାଙ୍କର ସମସ୍ତ ଦାନ୍ତ ଦୃଢ଼ ଥିଲା । ଦାଦା-ବାପାଙ୍କ ପୁରୁଷର ଗାଁର ଯେତେ ମର୍ଦ୍ଦ ସମସ୍ତଙ୍କ ଚେହେରା ଲମ୍ବା ଚୌଡ଼ା; କିନ୍ତୁ ଆମ ପୁରୁଷର କୌଣସି ଭେଣ୍ଡା ବାପା-ଦାଦାଙ୍କ ପୁରୁଷର ଉଚ୍ଚତା ପାଇପାରିନି । ପୁଣି ଆମରି ପୁରୁଷର ଯେଉଁମାନେ ସେହି ଗାଁରେ ରହିଛନ୍ତି ଓ ଯେଉଁ ଏ ସହରରେ ରହି ପାଠ ପଢ଼ି ବାବୁହେଲେ, ତାଙ୍କ ଭିତରେ ତଫାତ୍ ବାରି ହୋଇଯାଉଛି । ମୋର ଯେଉଁ ଭାଇମାନେ ଏବେ ବି ଚାଷ କାମରେ ନିଯୁକ୍ତ, ତାଙ୍କର ପଖାଳଖିଆ ଦେହରେ ମୋର ଶରୀର ଅପେକ୍ଷା ଜୋର୍ ବି ବେଶୀ, ସୌଷ୍ଠବ ବି ବେଶୀ । ଥରେ ଛୁଟୀରେ ଗାଁର ଏକ ପୋଖରୀର ପଙ୍କ ଉଦ୍ଧାର କରାଉଥିଲି । ମୁଁ କୂଳରେ ଗଛ ମୂଳେ

ବସିଥାଏ, ତଳେ ଗାଁର ଭେଣ୍ଡିଆ ଦଳ ପଙ୍କ ଖୋଳା ଓ ପଙ୍କ ବୁହାରେ ଲାଗିଥାନ୍ତି । ଖଣ୍ଡିଏ ଖଣ୍ଡିଏ ଗାମୁଛା ଅଣ୍ଟାରେ ଭିଡ଼ା, ଖଣ୍ଡିଏ ଖଣ୍ଡିଏ ମୁଣ୍ଡରେ ପଗଡ଼ି ଭାବରେ ଭିଡ଼ା, କାହା କାନରେ ଦି' ଦି' ପଟ ନୋଳି, ଅଧିକାଂଶ କିନ୍ତୁ ନିରାଭରଣ । ଗାଁରେ ସବୁବେଳେ ଦାରିଦ୍ର୍ୟ; ସଂକ୍ରାମକ ରୋଗ ବାରମ୍ବାର ଆସୁଛି ଯାଉଛି; ପୂରା ଫସଲଟିଏ ଦୁର୍ଲଭ, ୧୯୪୩ର ସାଇକ୍ଲୋନ୍ ସମସ୍ତଙ୍କ ଅଣ୍ଟା ଭାଙ୍ଗିଦେଇଛି । କିନ୍ତୁ ସେହି ଅଭିଶପ୍ତ ଗ୍ରାମର ଅର୍ଦ୍ଧାଶନ ଯୁବକ ଦଳର ସ୍ନିଗ୍ଧ ତନୁମାନଙ୍କରେ ପୁଷ୍କଳ ମାଂସପେଶୀମାନଙ୍କର ତରଙ୍ଗ ଲୀଳା, ସେମାନଙ୍କର ନୀରୋଗ ସବଳ ଶରୀର, ସୁଦୃଢ଼, ପଦପାତ, ଆନନ୍ଦମୁଖର କଥାବାର୍ତ୍ତା ଦେଖି ଶୁଣି ମୁଁ ନୀରବରେ ଯାହା ଅନୁଭବ କରୁଥାଏ, ସେଥିରେ ଥିଲା ଗଭୀର ଦୁଃଖ, ଲଜ୍ଜା ଓ ଆନନ୍ଦ ।

ପିଲାଦିନେ ବରାବର ଉତ୍କୃଷ୍ଟ ବସାଦହି ସହଯୋଗରେ ମାଣ୍ଡିଆ ଯାଉ ଖାଉଥାଉଁ; କିନ୍ତୁ ଏହା ସବୁଦିନର ଖାଦ୍ୟ ନଥିଲା – ଭାତ ବା ପଖାଳ ନ ଥିଲେ ଏହା ଖାଇବାକୁ ପଡୁଥିଲା । ଗାଁର ଗରିବ ଲୋକେ କିନ୍ତୁ ମାଣ୍ଡିଆ ଖାଇହିଁ ବଞ୍ଚୁଥିଲେ । ଏବେ ବି ତାଙ୍କର ସେୟା ପ୍ରଧାନ ଖାଦ୍ୟ । ଯେଉଁମାନେ କିଞ୍ଚିତ ଧନୀ, ସେମାନଙ୍କର ଏକ ଧାରଣା ଯେ, ମାଣ୍ଡିଆଯାଉ ଗରିବର ଖାଦ୍ୟ । ଏ ଧାରଣା ମୋର ବି ଅନେକ ଦିନ ଧରି ଥିଲା; କିନ୍ତୁ ହାୟରେ ଦୁର୍ଭାଗ୍ୟ, ଏବେ ଖାଦ୍ୟତତ୍ତ୍ୱବିତ୍ କହୁଛନ୍ତି, ଚାଉଳ ଅପେକ୍ଷା ମାଣ୍ଡିଆ କେବଳ ଉତ୍କୃଷ୍ଟତର ଖାଦ୍ୟ ନୁହେଁ, ଏହା ବହୁ ରୋଗରେ ପଥ୍ୟ ।

ତେଣୁ ସ୍ୱାସ୍ଥ୍ୟ ଓ ଶରୀର-ସୌଷ୍ଠବର ମୂଳକୁ ନ ଯାଇ, ଏଣେ ପ୍ରତି ବିଦ୍ୟାଳୟରେ ଲିଭର୍ ଓ କିଡ୍‌ନୀର ଚିତ୍ର କାଟିଲେ ବା ଖାଦ୍ୟତତ୍ତ୍ୱର ଏକ୍‌ଜିବିସନ୍ କରି ଲାଉଡ୍-ସ୍ପିକର ସାହାଯ୍ୟରେ ଓ ମନ୍ତ୍ରୀଙ୍କ ମୁଖରେ ଲୋକଙ୍କୁ ଅପ୍ରାପ୍ୟ ଅଣ୍ଡା, ମାଂସ ବା ଦୁର୍ବୋଧ ପ୍ରୋଟିନ୍, କାର୍ବୋହାଇଡ୍ରେଟ୍ ଖାଇବାକୁ ପ୍ରଚାର କରିବାରେ କି ଲାଭ ମୁଁ ବୁଝିପାରୁନି । ପଧାନର ଦୁଇ ପୁଅରୁ ଗୋଟିଏ ରହୁ ଗାଁରେ ଚାଷ କାମ କରୁ, ଆଉ ଗୋଟିଏ ଆସୁ ଇସ୍କୁଲକୁ, ହଷ୍ଟେଲ୍‌ରେ ରହୁ ଏବଂ ଫୁଟବଲ୍ ଖେଳି ବ୍ୟାୟାମ କରୁ ଓ ମାସ୍-ଡ୍ରିଲ୍‌ରେ ହାତ ଗୋଡ଼ ହଲାଉ – ଦେଖ କିଏ ଅଧିକ କର୍ମଠ, ଅଧିକ ଶ୍ରମ-ସହ, ଅଧିକ ସୁଶ୍ରୀ, ଅଧିକ ସବଳ ଓ ନୀରୋଗ ରହୁଛି । ବ୍ୟାଧିର ନିଦାନ ବାହାର ନ କରି ଇଂଲଣ୍ଡ କି ଜାପାନରେ ଯାହା ହେଉଛି, ପୋଲାଫାଙ୍କିଆ ରୀତିରେ ତା'ର ଅର୍ଥହୀନ ଅନୁକରଣ କରି ଜାତିର ଯୁବକ ଯୁବତୀମାନଙ୍କର ମସ୍ତକ ଭକ୍ଷଣ କରନାହିଁ ।

ଆମର ସର୍ବଶ୍ରେଷ୍ଠ କବିଙ୍କର ବିଜ୍ଞତାର ପ୍ରମାଣ ଏହି ଯେ, ଆମର ସମଗ୍ର ସାହିତ୍ୟରେ ସେହିହିଁ ସ୍ପଷ୍ଟ କହିଛନ୍ତି, 'ଶରୀରମାଦ୍ୟଂ ଖଳୁ ଧର୍ମସାଧନଂ ।' ଇହ ଜଗତରେ ଯାହା କିଛି ସାଫଲ୍ୟ– ଆର୍ଥିକ, ଆଧ୍ୟାତ୍ମିକ, ରାଷ୍ଟ୍ରୀୟ ବା ଶୈକ୍ଷିକ –

ତାର ଆହରଣ ଓ ଭୋଗର ବାହନ ହେଲା ଶରୀର । ତେଣୁ କେବଳ ମୂର୍ଖହିଁ ଏହି ଶରୀରର ଅବହେଳା ବା ତା' ପ୍ରତି ଅତ୍ୟାଚାର କରିପାରେ । ବାପୁଜୀ ନିଜ ସ୍ୱାସ୍ଥ୍ୟକୁ କିପରି ଜଗିଥିଲେ, ତା' ଜଣାକଥା । ଏହା ମଧ୍ୟ ଜଣାଅଛି ଯେ, ବୁଦ୍ଧଦେବ ପ୍ରତ୍ୟହ କସରତ କରୁଥିଲେ, କେବଳ ସ୍ୱାସ୍ଥ୍ୟ ପାଇଁ । କିନ୍ତୁ ଆମର ଯୁବକ ଯୁବତୀ ସ୍କୁଲ କଲେଜରୁ ବାହାରିଲା ବେଳକୁ ନାହିଁ ରହୁଛି ତାଙ୍କ ମୁଖରେ ଶ୍ରୀ ବା ଶରୀରରେ ବଳ ବା ସୌଷ୍ଠବ । ସମାଜ ପକ୍ଷରେ ଏହା ଏକ ମାରାତ୍ମକ ବ୍ୟାପାର । ଡିଗ୍ରୀ ବା ପାଶ୍ ଅପେକ୍ଷା ସୁସ୍ଥ, ନୀରୋଗ ଶରୀରର ମୂଲ୍ୟ କି କମ୍ ? ଆମ ସମସ୍ତଙ୍କର ସମାଜ ପ୍ରତି ମୌଳିକ ଦାୟିତ୍ୱ ଡିଗ୍ରୀ ହାସଲ୍ କରିବା ନୁହେଁ, ଦାୟିତ୍ୱ ହେଉଛି ସୁସ୍ଥ ନୀରୋଗ ପିତୃତ୍ୱ ଓ ମାତୃତ୍ୱର । ପିତୃତ୍ୱ ଓ ମାତୃତ୍ୱ ଲକ୍ଷ୍ୟରେ ବିଦ୍ୟା-ବ୍ୟବସ୍ଥାକୁ ଉପଯୋଗୀ କରିବା ପରିବର୍ତ୍ତରେ ଏବେ ଭୋଗୁଛୁ ଆମେ ଠିକ୍ ବିପରୀତ ବ୍ୟବସ୍ଥା ।

ଶରୀର ସୁସ୍ଥ ଓ ସବଳ ହେବା ସଙ୍ଗେ ସୁନ୍ଦର ମଧ୍ୟ ହେବା ଉଚିତ । ପୁରୁଷ ଓ ନାରୀ ଉଭୟ ଶରୀରରେ କଳା ଓ କବିତା ଲେଖି ବିଧାତା ପଠାଇଥାଏ । କେବଳ ଆମର ଅଜ୍ଞତା ଓ ଅବହେଳାରେ ସେ ଶିଳ୍ପ ଲିଭିଯାଏ ବା ଲୁଚିଯାଏ । ହାମ୍‌ଲେଟ୍ ନାଟକରେ ସେକ୍‌ସପିୟର ନର ନାମକ ପ୍ରାଣୀର ଏଇପରି ଉଚ୍ଛ୍ୱସିତ ବର୍ଣ୍ଣନା ଦେଇଛନ୍ତି– ''ମନୁଷ୍ୟ, ସ୍ରଷ୍ଟାର କି ସୁନ୍ଦର କାରିଗରି ! କି ମହତ୍, କି ଅନନ୍ତ ତା'ର ବିଚକ୍ଷଣତା ! ତନୁର ସୁଷମା ଓ ଚଳାଚଳରେ କି ପ୍ରଶଂସନୀୟ । କର୍ମରେ କିପରି ଦେବୋପମ ! ବୋଧ-ଶକ୍ତିରେ କିପରି ଈଶ୍ୱର ପରି ! ସୃଷ୍ଟିର ସୌନ୍ଦର୍ଯ୍ୟ, ଜୀବ ସଂଗରେ ଚାରୁତାର ଆଦର୍ଶ !''

ଶିଶୁର କୋମଳ ଲାବଣ୍ୟ କାହାକୁ ମୁଗ୍ଧ ନ କରେ ? କୈଶୋର ଓ ଯୌବନ ଦେଇ ସେହି ଲାବଣ୍ୟ ରୂପାନ୍ତରିତ ହେବା ପରିବର୍ତ୍ତରେ ବିକୃତ ହେବ କାହିଁକି ? ସେ ଶିଳ୍ପ ଓ ସୌଷ୍ଠବ ନିରକ୍ଷର କନ୍ଧ ସାନ୍ତାଳ ନାରୀ ପୁରୁଷ ଦେହରେ ବିକଶିତ ରହୁଛି । ତାହା ଶିକ୍ଷା ଓ ସଭ୍ୟତାରେ ଉତ୍କୃଷ୍ଟତର ହୁଅନ୍ତା କ'ଣ ମଳିନତର ଓ ଦରିଦ୍ରତର ହେବ କାହିଁକି ?

ପରିମିତ ଖାଦ୍ୟ, ବ୍ୟାୟାମ ଓ ସଂଯତ ଜୀବନ ଫଳରେ ଦେହର ସ୍ୱାସ୍ଥ୍ୟ, ସୌଷ୍ଠବ ଓ କର୍ମକ୍ଷମତା ବାର୍ଦ୍ଧକ୍ୟର ଶେଷାଂଶ ଯାଏଁ ଯେ ରଖିହେବ, ତାହା ଅନେକଙ୍କ ଜୀବନରେ ପ୍ରମାଣିତ ହୋଇଛି । ଆୟୁର୍ବେଦର ମୂଳତତ୍ତ୍ୱ ମଧ୍ୟ ଏହିଠାରେ । ଏ ଶାସ୍ତ୍ରର ଆଦର୍ଶ ଅତି ସୁନ୍ଦର । ଏହା ରୋଗ ଭଲ କରିବା ନୁହେଁ, ଶରୀରକୁ ନୀରୋଗ ଓ କର୍ମକ୍ଷମ ରଖିବାର ବ୍ୟବସ୍ଥା । ବାର୍ଦ୍ଧକ୍ୟର ଦାଉରୁ ଉଦ୍ଧାର ପାଇବା ପାଇଁ, ଅନ୍ୟ କଥାରେ ଯୌବନକୁ ବହୁକାଳବ୍ୟାପୀ କରିବା ପାଇଁ ହିନ୍ଦୁ ଭୈଷଜିକମାନେ ବହୁତ ଚେଷ୍ଟା କରିଯାଇଛନ୍ତି । ତା'ରି ଫଳ ହେଉଛି ଚ୍ୟବନପ୍ରାଶ, ମକରଧ୍ୱଜ

ପ୍ରଭୃତି ପ୍ରସିଦ୍ଧ ରସାୟନ ଔଷଧର ଆବିଷ୍କାର । ଆଧୁନିକ ବିଜ୍ଞାନ ଏଇ କାମରେ ଅତି ମାତ୍ରାରେ ବ୍ୟସ୍ତ ଥିବା ଖବରକାଗଜରେ ଯୌବନ ଫେରାଇ ଆଣିବାର ନାନା ଔଷଧର ବିଜ୍ଞାପନରୁ ଜଣାପଡୁଛି; କିନ୍ତୁ ଯିଏ ପ୍ରକୃତ ସ୍ୱାସ୍ଥ୍ୟ ଚାହେ, ସେ ଏଇ ବିଜ୍ଞାପନକୁ ଡାକ୍ତର କଲେ, ବହୁ ହତାଶା ଭୋଗକରିବେ ।

ଯାହାଙ୍କୁ ସେଦିନ ଦେଖିଥିଲି ଦି'ସେର ମାଂସ, ସେରେ ପୁରି, ଦିଅଣ୍ଡା ଅଣ୍ଡା ଖାଇ ଫୁଟୁକି ମାରି ଉଡ଼େଇଦେବାର ଗର୍ବ କରିବାର, ଆଜି ସେ ଦନ୍ତହୀନ ଡିସପେପ୍‌ସିଆ ରୋଗୀ । କୋଡ଼ିଏ ବର୍ଷର ତରୁଣ ଭାବିବା ଉଚିତ ଯେ, ଆଜି ସେ ଯାହା ଖାଉଛନ୍ତି ବା ଯେପରି ଖାଉଛନ୍ତି ବା ଯେପରି ଭାବରେ ନିଜର ଜୀବନୀଶକ୍ତିର ଅପଚୟ କରୁଛନ୍ତି, ତା'ର ପ୍ରତିକ୍ରିୟା ଆଜି ଯୌବନର ପ୍ରାଚୁର୍ଯ୍ୟରେ ଜଣା ନ ପଡ଼ିଲେ ମଧ ପ୍ରକୃତି ତାକୁ ସାଇତିରଖିଥିବ ୫୦ ବର୍ଷ ଆରପଟକୁ । ଜୀବନ ଅଖଣ୍ଡ । ବାଲ୍ୟର ପ୍ରତିକ୍ରିୟା ଯୌବନରେ, ଯୌବନର ପ୍ରତିକ୍ରିୟା ବାର୍ଦ୍ଧକ୍ୟରେ ଭୋଗହେବ ଇ ହେବ । ଅନାଚାର, ଅପଚାର କରି ଯୌବନର ଶକ୍ତି ସାମର୍ଥକୁ ଶୀଘ୍ର ନିଃଶେଷ କରି ଦେବା ଅପେକ୍ଷା ମିତାହାର ବିହାରଦ୍ୱାରା ଯୌବନକୁ ଦୀର୍ଘସ୍ଥାୟୀ ଓ ବାର୍ଦ୍ଧକ୍ୟର ଆକ୍ରମଣକୁ ଦୁର୍ବଳୀକୃତ କରିବା ବିଜ୍ଞର କାର୍ଯ୍ୟ ।

ଚାଳିଶ ବର୍ଷ ପରେ ପ୍ରତ୍ୟେକର ଶକ୍ତି ପତନୋନ୍ମୁଖ ହୁଏ । ଦନ୍ତ, ଚକ୍ଷୁ ଓ ଜଠରାନଳ ଦୁର୍ବଳ ହୋଇଆସନ୍ତି । ଦନ୍ତ ଓ ଚକ୍ଷୁର ଚିକିତ୍ସା ବର୍ତ୍ତମାନ ସହଜସାଧ । ରୁଗ୍ଣ ଦନ୍ତ ଉପାଡ଼ିଦେଇ କୃତ୍ରିମ ଲଗେଇବାରେ ଅନେକଙ୍କ ସ୍ୱାସ୍ଥ୍ୟର ଢେର୍ ଉନ୍ନତି ହୋଇଥିବା ମୁଁ ଭୁକ୍ତଭୋଗୀମାନଙ୍କଠାରୁ ଶୁଣିଛି । ଆଉରି ବି କେତେକ ଭୁକ୍ତଭୋଗୀ କହିଛନ୍ତି ଯେ, ଗୋଟିଏ ସ୍ୱାଭାବିକ ଦନ୍ତ ସମସ୍ତ କୃତ୍ରିମଦନ୍ତ ଅପେକ୍ଷା ଭଲ । ରାତ୍ରିରେ ଶୋଇବା ପୂର୍ବରୁ ଦାନ୍ତ ସଫା କରିବାର ଅଭ୍ୟାସ ମୂଳରୁ ରଖିଲେ ଦନ୍ତ ରୋଗର କରୁଣ ଯନ୍ତ୍ରଣା ହାତରୁ ଅନେକ ଭାବରେ ରକ୍ଷାମିଳିପାରେ । ବର୍ଷରେ ଥରେ ଅନ୍ତତଃ କୌଣସି ଦନ୍ତଚିକିତ୍ସକ ହାତରେ ଦାନ୍ତଗୁଡ଼ିକ ପରୀକ୍ଷା କରାଇନେବା ଭଲ । ଦାନ୍ତର ସ୍ୱାସ୍ଥ୍ୟ ଉପରେ ଜୀର୍ଣ୍ଣକ୍ରିୟା ଓ ରକ୍ତର ଶୁଦ୍ଧତା ନିର୍ଭର କରେ । ଯୁଦ୍ଧବେଳେ ଡାକ୍ତରମାନେ ଦେଖିଛନ୍ତି ଯେ, ଯେଉଁମାନଙ୍କର ଦାନ୍ତ ଭଲ, ସେମାନେ ରୁଗ୍ଣଦନ୍ତମାନଙ୍କ ଅପେକ୍ଷା ଅଧିକ ଶୀଘ୍ର ରୋଗମୁକ୍ତ ହୁଅନ୍ତି । ଚାଳିଶ ବର୍ଷ ପରେ ଶରୀରର ପୂର୍ବପରି ଖାଦ୍ୟ ଦରକାର ହୁଏ ନାହିଁ । ତେଣୁ ଖାଦ୍ୟର ପରିମାଣ ଓ ସ୍ତର ଆସ୍ତେ ଆସ୍ତେ କମାଇବା ଭଲ । ମଝିରେ ମଝିରେ, ବିଶେଷତଃ ପୂର୍ଣ୍ଣିମା, ଅମାବାସ୍ୟା, ଏକାଦଶୀ ପ୍ରଭୃତିରେ ଉପବାସ କରିବା ଶରୀର ପକ୍ଷରେ ଅତ୍ୟନ୍ତ ମଙ୍ଗଳକର ।

ବଗିଚାକାମ, କୋଡ଼ିହଣା ପ୍ରଭୃତିର ଦୈନିକ ଅଭ୍ୟାସ ରଖିଲେ ତ ଭଲକଥା;

କିନ୍ତୁ ତାହା ଯିଏ ନପାରିଛନ୍ତି, ତାଙ୍କର କୌଣସି ନା କୌଣସି ପ୍ରକାର କୁସ୍ତି କସରତ ବା ଆସନ ବା ଦଣ୍ଡ ବୈଠକ, କିମ୍ବା ସୂର୍ଯ୍ୟନମସ୍କାର ପ୍ରଭୃତିରୁ କିଛି ଗୋଟାଏ ଅଭ୍ୟାସମତ ପ୍ରତ୍ୟହ କରିବା ଉଚିତ୍ । ମୁଁ ନିଜେ ପ୍ରତ୍ୟହ ପ୍ରଥାମତେ କେତେଟି ସୂର୍ଯ୍ୟନମସ୍କାର ବ୍ୟାୟାମ କରେ । କୋଷ୍ଠବଦ୍ଧତା ଦୂରକରିବାରେ ଏହି ବ୍ୟୟାମ ମତେ ଯଥେଷ୍ଟ ସାହାଯ୍ୟକରେ ।

ଆମେ ଭୋଗକରୁ ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ । ଚାଳିଶବର୍ଷ ପରେ ଇନ୍ଦ୍ରିୟ ସବୁ ଦୁର୍ବଳ ହୋଇଆସନ୍ତି; କିନ୍ତୁ ତା' ସତ୍ତ୍ୱେ ଯେଉଁମାନଙ୍କର ତୃଷ୍ଣା ରହିଯାଏ, ସେମାନେ ଅତ୍ୟନ୍ତ ଦୁର୍ଭାଗା । ଭିତରେ ବାସନା ପ୍ରବଳ, କିନ୍ତୁ ଭୋଗକରିବାର ଶକ୍ତି ନାହିଁ – ଏହାହିଁ ନରକ ଯନ୍ତ୍ରଣା । ଏ ଅବସ୍ଥା ପାଇଁ ସମସ୍ତଙ୍କର ଆଗରୁ ପ୍ରସ୍ତୁତ ରହିବା ଉଚିତ । କ୍ରମେ କ୍ରମେ ଇନ୍ଦ୍ରିୟଭୋଗ୍ୟ ବସ୍ତୁମାନଙ୍କରୁ ଆସକ୍ତି କମେଇ ଆଣିବାର ଅଭ୍ୟାସ ଏକାନ୍ତ ଉଚିତ୍ ।

ଚିତ୍ତ ଯାର ପ୍ରସନ୍ନ, ଯାର ମୁହଁରେ ସଦା ହସ, ଯାର ପ୍ରାଣ ଖୋଲାଖୋଲି, ସେପରି ଲୋକର ସ୍ୱାସ୍ଥ୍ୟ ଭଲ ରହିବ ଇ ରହିବ । ମନର ଶରୀର ଉପରେ ଗଭୀର କ୍ରିୟା । ବାପୁଜୀଙ୍କ ମୃତ୍ୟୁ ଶୋକରେ ପଣ୍ଡିତ ନେହୁରୁ ଏକାଦିନକେ ଦଶବର୍ଷ ବୁଢ଼ା ଦେଖାଯାଇଥିଲେ । ଏ'ତ ଆକସ୍ମିକ ଘଟଣା । ସବୁବେଳେ ଯେଉଁମାନଙ୍କ ମନ ସନ୍ଦେହ, ସଂକୀର୍ଣ୍ଣତାରେ ଭରା ବା ଯେଉଁମାନେ ପ୍ରତି କଥାରେ ଚିଡ଼୍ ଚିଡ଼୍ ହୁଅନ୍ତି, ସେମାନଙ୍କର ରୋଗ, ଫଳ ଭାବରେ ବା କାରଣ ଭାବରେ ଲାଗିରହିଥାଏ । ସେହିମାନେ ସବୁବେଳେ ବିଷଣ୍ଣ ଓ ଜୀବନଟା ବୃଥା ହେଲା ବୋଲି ବିଳାପକରନ୍ତି । ଯେଉଁମାନଙ୍କର ନିଜର ଗୁଣ ଅନୁଯାୟୀ ଯେତିକି ପାଇବାର କଥା ତାଠୁ ବହୁ ଅଧିକ ଆଶା କରିଥାନ୍ତି । ଆମ ପ୍ରତ୍ୟେକଙ୍କର ମନେରଖିବା ଉଚିତ ଯେ, ଅଦୃଷ୍ଟ ଆମର ଯାହା ଯେତିକି ପାଇବାର କଥା ତାହାହିଁ ଦିଏ, ଆମେ ସେଥିରେ ସନ୍ତୁଷ୍ଟ ରହିବା ଉଚିତ୍ । ନିଜର ବିଫଳତା ପାଇଁ ସବୁବେଳେ ପରକୁ ବା ସମାଜକୁ ଦୋଷ ଦେଇ ନିଜର ଚିତ୍ତକୁ ରୁଗ୍ଣ କରିବାରେ ଏକମାତ୍ର ଫଳ ନିଜର ଦୁଃଖକୁ ଘନୀଭୂତ କରିବା ।

ଜାତି ସୁସ୍ଥ ହେବା, ବ୍ୟକ୍ତି ଉପରେ ଯେତିକି, ରାଷ୍ଟ୍ର ଉପରେ ସେତିକି ନିର୍ଭର କରେ । ଦେଶରେ ଯଦି ଭଲ ଖାଦ୍ୟଦ୍ରବ୍ୟ ନ ମିଳିଲା, ସରକାର ଯଦି ଖାଦ୍ୟରେ ଭେଜାଲ ମିଶାଇବା ପାଷଣ୍ଡମାନଙ୍କୁ ଶାସ୍ତି ଦେଲେ ନାହିଁ, ଦେଶରେ ଯଦି ଦୁର୍ଭିକ୍ଷ ପଡ଼ିଲା, ତେବେ ବ୍ୟକ୍ତିଙ୍କ ସ୍ୱାସ୍ଥ୍ୟର ଦୁର୍ଦ୍ଦିନ ଉପସ୍ଥିତ । ଚାଉଳକଳ ଓ ଦାଲ୍ଦା କଳର ପୁଞ୍ଜିପତି ମାଲିକମାନେ ଲୋକଙ୍କ ମୁହଁରେ ବିଷ ଦେଇ, କୋଟି କୋଟି

ଟଙ୍କାର ମୁନାଫା ମାରିନେଉଛନ୍ତି, ଏ କଥା ସରକାର ଦେଖି ଦେଖୁନାହାନ୍ତି । ସରକାରଙ୍କ ଗବେଷଣା ମନ୍ଦିରରୁ ବୈଜ୍ଞାନିକ, କଳଚାଉଳର ନିନ୍ଦା କରି ବୁଲେଟିନ୍ ବାହାର କଲାବେଳକୁ, ସରକାରଙ୍କ କମର୍ସ ବିଭାଗ ତେଣେ ଚାଉଳକଳ ସ୍ଥାପନର ପରମିଟ୍ ଦେବା ସଇତାନି ଛଡା ଆଉ କ'ଣ ହୋଇପାରେ ? ଯେଉଁ ବ୍ୟବସାୟୀ ଦାଲଦା ଟିଣରେ ବଜାର ଭର୍ତ୍ତିକରିଦେଉଛି, ତା'ର ରାନ୍ଧଣା ଘରେ ଯାଇ ଦେଖତ ତା' ପୁରି କଚୁରି କେଉଁଥିରେ ଭଜା ହେଉଛି । ବିଶୁଦ୍ଧ ଗୋ ଘୃତ ନହେଲେ ପୁଞ୍ଜିପତିର ପେଟ ମୋଟା ହେବାରେ ବାଧା ଆସିବ; କିନ୍ତୁ ଜନତା ପାଇଁ ସେ ତିଆରି କରୁଛି ଦାଲଦାର ବିଷ ।

ଦେଶବାସୀଙ୍କର ଅନେକ ଦୁରଭ୍ୟାସ ମଧ୍ୟ ତୁରନ୍ତ ଛାଡ଼ିବା ଉଚିତ । ଦେଶରେ ଦୁଧ ଦୁଷ୍ପ୍ରାପ୍ୟ ହେବାର ପ୍ରଧାନ କାରଣ ହେଉଛି, ସହରର ଗଳିଗଳିରେ ଗୁଡ଼ିଆ ଦୋକାନ ଓ ସେ ଦୋକାନମାନଙ୍କରେ ଦୁଧ ଜିନିଷର ମିଠା ତିଆରି । ଏ ବ୍ୟାଧି ବଙ୍ଗଳାରୁ ଆସିଛି ଓଡ଼ିଶାକୁ । ଓଡ଼ିଆ ଘର ପିଠାପଣାରେ ବିରି, ଚାଉଳ, ନଡ଼ିଆ, ଗୁଡ଼, ଘିଅ ହିଁ ପ୍ରଧାନ ଉପାଦାନ । ଜଗନ୍ନାଥଙ୍କ ଦେଉଳରେ ବି ଏହି ବ୍ୟବସ୍ଥା; କିନ୍ତୁ ବଙ୍ଗାଳୀ ମିଠାଇର ପ୍ରଧାନ ଉପାଦାନ ହେଲା ଛେନା । ପାଞ୍ଚସେର ଖାଣ୍ଟି ଦୁଧ ନଷ୍ଟକଲେ ସେରେ ଛେନା ମିଳିବ । ଆଜି କଟକର ଗୁଡ଼ିଆ ଦୋକାନମାନଙ୍କୁ ମହଣ ମହଣ ଛେନା ଯୋଗାଇବା ପାଇଁ ଓ ଚାଦୋକାନମାନଙ୍କୁ ଦୁଧ ଯୋଗାଇବା ପାଇଁ, ଶତ ଶତ ଗାଁ ଏକାବେଳକେ ଦୁଗ୍ଧଶୂନ୍ୟ । ଏ ଏକ ଜାତିର ବିପତ୍ତି, ଯାହାକୁ ନାହିଁ ସରକାର, ନାହିଁ ଲୋକେ ଦୃଷ୍ଟି ଦେଇଛନ୍ତି । ମିଠେଇ ଜିନିଷଟା ସ୍ଥାୟୀ ଚିଜରେ କରାଯିବାର କଥା । ଇଉରୋପୀୟମାନଙ୍କର ପିଠା, ମିଠେଇ ମଧ୍ୟ ସେଇ ମଇଦା, ଚିନି ମାଖନରେ ତିଆରି । ଓଡ଼ିଶାର ପିଠା ପଣା ମଧ୍ୟ ସେହିପରି । ଆମ ଘରମାନଙ୍କର ଆରିଶା ପିଠା ମାସ ମାସ ଧରି ରହେ । କିନ୍ତୁ ଛେନାର ମିଠେଇ ସଦ୍ୟ କରିବ, ସଦ୍ୟ ଖାଇବ । ଏପରି ସଦ୍ୟନଶ୍ୟ ଓ ଅପବ୍ୟୟଶୀଳ ମିଷ୍ଟାନ୍ନର ପ୍ରଚଳନ ବିରୁଦ୍ଧରେ ଜନମତ ନିଜ କଲ୍ୟାଣ ପାଇଁ ଠିଆହେବା ଉଚିତ୍ ।

ଗ୍ରୀକ୍ ଜାତି ସଭ୍ୟତାର ଉଚ୍ଚ ଶିଖରକୁ ଯେପରି ଉଠିଥିଲା, ଜଗତର କ୍ୱଚିତ୍ ଜାତି ସେପରି ଉଠିଛନ୍ତି; କିନ୍ତୁ ଏ ଜାତିର ପତନ ତା'ର ଉଠିବା ପରି ଆଶ୍ଚର୍ଯ୍ୟଜନକ । ଐତିହାସିକମାନେ ଗ୍ରୀକ୍ ଜାତିର ମାନସିକ ଶକ୍ତିର ଅଧୋଗତି କାହିଁକି ଓ କିପରି ହେଲା ତା'ର ବହୁ ଅନୁସନ୍ଧାନ କରିଛନ୍ତି । ମୁଁ ଦୁଇଟା କାରଣ ପଢ଼ିବାକୁ ପାଇଛି । ଗୋଟିଏ ବହିରେ ପଢ଼ିଛି ଯେ, ଗ୍ରୀକ୍‌ମାନଙ୍କର ଜୀବନ ଯାପନ ବଡ଼ ସାଦା ସିଧା ଥିଲା, ସେମାନେ କେବଳ ଭାତ ମାଛ ଖାଉଥିଲେ; କିନ୍ତୁ ପରେ ସେମାନେ ମାଂସ

ଖାଇବା ଆରମ୍ଭକଲେ । ଏହା ଫଳରେ ହୁଏତ ସେମାନଙ୍କର ଜାତୀୟ ଚରିତ୍ରର ଅବନିତ ଘଟିଲା । ଦ୍ୱିତୀୟ କାରଣ ଆଉ ଏକ ପୁସ୍ତକରେ ପଢ଼ିଛି । ତାହା ହେଉଛି ଏଇ ଯେ, ଗ୍ରୀକ୍ ପୁରୁଷ ଓ ନାରୀମାନଙ୍କର ଯୌନ ଜୀବନ ଆଦୌ ବିଶୁଦ୍ଧ ନ ଥିଲା । ଏଥେନସ୍ ପ୍ରଭୃତି ସହରରେ ପାରିବାରିକ ପବିତ୍ରତା ଏକ ଦୁର୍ଲଭ ଦ୍ରବ୍ୟ ଥିଲା ।

ଏ ଦୁଇଟିଯାକ ଐତିହାସିକ ସିଦ୍ଧାନ୍ତରୁ ଆମର ଶିଖିବାର ଅଛି । ଦ୍ୱିତୀୟ କାରଣଟି ଏଠାରେ ଆଲୋଚ୍ୟ ନୁହେଁ; କିନ୍ତୁ ପ୍ରଥମ କାରଣ ସଙ୍ଗେ ଏବେ ଭାରତବର୍ଷ ବା ଓଡ଼ିଶାର ଆଧୁନିକ ଭୋଜନପ୍ରଣାଳୀ ମିଳାଇ ଦେଖିଲେ ଚିତ୍ତରେ ଆଶଙ୍କା ଆସେ । ଏବେ ଆମ ନିକଟରେ ସୁଭୋଜ୍ୟ, ମାଂସ ବିନା କଳ୍ପନୀୟ ହୋଇପାରୁନି । ହୁଏତ ୧୫।୨୦ ବର୍ଷ ତଳେ ଆମ ଅବସ୍ଥା ଏପରି ନ ଥିଲା । ସେତେବେଳେ ଭୋଜନରେ ଏକମାତ୍ର ଆମିଷ ଥିଲା ମାଛ, ପନିପରିବା, ଦୁଧ ଘିଅରେ ଲୋକେ ସୁଭୋଜ୍ୟ ଯୋଗାଇପାରୁଥିଲେ । ପନିପରିବା ଲଗାଇ ନାନାବିଧ ସୁସ୍ୱାଦୁ ବ୍ୟଞ୍ଜନ ପ୍ରସ୍ତୁତ କରିବାର ଅଭ୍ୟାସ ଦେଶରୁ ଉଭେଇଗଲାଣି । ଏବେ କାହାକୁ ହେଲେ ନିମନ୍ତ୍ରଣଟିଏ କଲେ ପ୍ରଥମେ ଯାଅ କଂସେଇଖାନାକୁ ବା ରାମପକ୍ଷୀର ବେକ ମୋଡ଼ । ଆମର ଗରମ ଦେଶରେ ମାଂସ-ଖାଦ୍ୟ ବିଶେଷ ଲୋଡ଼ା ନାହିଁ । ଦୁଧ ଓ ଡାଲିରୁ ଯାହା ପ୍ରୋଟିନ୍ ମିଳିବାର କଥା ତାହା ଆମ ପାଇଁ ଯଥେଷ୍ଟ । ପୁଣି ମାଂସକୁ ଆମ୍ଭେମାନ ଯେପରି ରାନ୍ଧି ଖାଉଁ ସେଥିରେ ମସଲାମୁଧିରେ ପ୍ରୋଟୀନ୍‌ରତ୍ନ କାହିଁ ଲୁଚିଯାଏ, ତାକୁ ଖୋଜି ପାଇବା ଦୁଷ୍କର । ଫଳ କେବଳ ଡିସ୍‌ପେପ୍‌ସିଆ ।

ଯେଉଁମାନେ କୋଣାର୍କ ଗଢ଼ିଥିଲେ ସେମାନେ ରସଗୋଲ୍ଲା ଦେଖିନଥିଲେ, ବା ପୁରି ମାଂସ ତରକାରି ଚାଖି ନ ଥିଲେ । ଓଡ଼ିଶା ମାଟିରେ ଯାହା ଜନ୍ମୁଥିଲା, ସେହି ଭାତ, ଦୁଧ, ମାଣ୍ଡିଆ, ବିରି, ନଡ଼ିଆ, କଦଳୀ ଖାଇ ସେମାନେ ଅଦ୍ଭୁତକର୍ମା ହୋଇ-ପାରିଥିଲେ । ଦେଶର ଧନ ଦେଶରେ ରହୁଥିଲା, ଜାତିର ସ୍ୱାସ୍ଥ୍ୟ ମଧ୍ୟ ଅକ୍ଷୁଣ୍ଣ ରହୁଥିଲା । ଆମେ ତାଙ୍କ ତୁଳନାରେ କି ଛାର । ଆମେ ତାଙ୍କର ସାଦାସିଧା ଜୀବନର ଅନୁକରଣ ନ କରିବା କାହିଁକି ?

ଦେଶର ଶିକ୍ଷା ବ୍ୟବସ୍ଥା ଯେପରି ଭାବରେ ଆମର ଯୁବକ ଯୁବତୀଙ୍କର ସ୍ୱାସ୍ଥ୍ୟହାନି କରାଉଛି, ତାହା ପ୍ରତି ସରକାର ତୁରନ୍ତ ଦୃଷ୍ଟିଦେବା ଉଚିତ । ସ୍କୁଲର ମେସ୍‌ଗୁଡ଼ିକ ବୈଜ୍ଞାନିକ ରୀତିରେ ପରିଚାଳିତ ହେବା ଉଚିତ । ଅଳ୍ପ ଖର୍ଚ୍ଚରେ ପିଲେ କିପରି ଦେହଗଠନର ସର୍ବପ୍ରକାର ଉପାଦାନ ପାଇପାରିବେ ତା'ର ପରିକଳ୍ପନା ଓ ପରିଚାଳନା ହେବା ତୁରନ୍ତ ଦରକାର । ସ୍ୱାସ୍ଥ୍ୟ ଦୃଷ୍ଟିରୁ ସିଲାବସ୍ ଓ ସ୍କୁଲମାନଙ୍କର ଦୈନନ୍ଦିନ କର୍ମ-ନିର୍ଘଣ୍ଟ ମଧ୍ୟ ଆମୂଳଚୂଳ ଅଦଳବଦଳ ଦରକାର କରେ । ପ୍ରତ୍ୟେକ

ସ୍କୁଲରେ ପିଲେ ତାଙ୍କର ପନିପରିବା ନିଜେ ଉଠେଇବାର ବନ୍ଦୋବସ୍ତ ହେବା ଉଚିତ ।

କୁମାରୀମାନେ ସ୍ମରଣ ରଖିବା ଉଚିତ, ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଫୁଟେଇବା ଓ ବିକୀରଣ କରିବା ନାରୀର ପ୍ରାକୃତିକ ଅଧିକାର । କିନ୍ତୁ ସେ ସୌନ୍ଦର୍ଯ୍ୟର ମୂଳଭିତ୍ତି ଲିପ୍‌ଷ୍ଟିକ୍ ବା ପାଉଡ଼ର ନୁହେଁ – ମୂଳଭିତ୍ତି ହେଉଛି ନିଖୁଣ ସ୍ୱାସ୍ଥ୍ୟ । ସ୍ୱାସ୍ଥ୍ୟବତୀ ନାରୀ କନ୍ୟାରୂପେ, ପ୍ରଣୟିନୀ ରୂପେ ଓ ମା ରୂପେ ସମାଜର ସର୍ବ ଦିଗରେ କଲ୍ୟାଣ ଓ ଆନନ୍ଦ ବିକୀରଣ କରେ । ଶାଢ଼ୀ-ଭୂଷଣସର୍ବସ୍ୱା ସ୍ୱାସ୍ଥ୍ୟହୀନା ନାରୀ, ଏକ ଦୁର୍ବହ ଅଭିଶାପ । ଭବିଷ୍ୟତର ବିରାଟ ଜାତି, ଭବିଷ୍ୟତର ଗାନ୍ଧୀ ଓ ଜହରଲାଲ ଏବର କୁମାରୀମାନଙ୍କ ଅଙ୍ଗଲତାରୁହିଁ ଉଦ୍ଭବ ହେବେ । ଅନ୍ୟ ପନ୍ଥା ତ ପ୍ରକୃତି ରଖିନି । ତେଣୁ ସେ ଅଙ୍ଗଲତାକୁ ପବିତ୍ର, ସବଳ ଓ ସତେଜ ରଖିବା ଜାତିର ଭବିଷ୍ୟତ ମା'ମାନଙ୍କର ପ୍ରଥମ ପ୍ରଧାନ କର୍ତ୍ତବ୍ୟ ନୁହେଁ କି ?

## ୭ । କୁଟୁମ୍ବ

ଦୁଇରୁ ବହୁର ଉତ୍ପତ୍ତି । ଦୁଇର ରକ୍ତ ବହୁକୁ ଏକତ୍ୱ-ବୋଧ ଦିଏ । ସେଇଥିରୁ ହୁଏ କୁଟୁମ୍ବର ଉଦ୍ଭବ । ଇଂରାଜୀରେ ଅଛି, ପାଣିଠୁ ରକ୍ତ ବହଳା, ଅର୍ଥାତ୍ ରକ୍ତର ସଂପର୍କ ଥିଲେ ଇ ଲୋକ ପକ୍ଷପାତିତା କରିବା ସ୍ୱାଭାବିକ । ଓଡ଼ିଶାରେ କୌଣସି ଏକ ସାମାଜିକ ଗୋଷ୍ଠୀକୁ ଲୋକେ ଥଟ୍ଟା କରି କହନ୍ତି, ସେ ଗୋଷ୍ଠୀର ଅଚିହ୍ନା ଲୋକ ଦୁଇଟି ଭେଟହେଲେ ମଧ୍ୟ ଶାଳକର-ମଉସାର-ମାମୁର-ଶ୍ୱଶୁରର-ନାତିଆବୁ-ଭାଇ ବୀ ସେପରି କିଛି ଗୋଟାଏ କୁଟୁମ୍ବିକ ସଂପର୍କ ପାତି ପରସ୍ପରକୁ ସାହାଯ୍ୟକରନ୍ତି । ଏହାର ସମଗ୍ର ଜାତି ଉପରେ ଯେଉଁ ପ୍ରତିକ୍ରିୟା ହେଉନା କାହିଁକି; ସେହି କ୍ଷୁଦ୍ର ଗୋଷ୍ଠୀ ପକ୍ଷରେ ଏହା ନିଶ୍ଚିତ ରୂପେ କଲ୍ୟାଣକର ।

ପୃଥିବୀ ପ୍ରକାଣ୍ଡ, ମାନବ ଜାତିର ବିସ୍ତାର ଅକଳ୍ପନୀୟ ଏବଂ ସମାଜ ଓ ଜାତି ନାନା ହିଡ଼ରେ ବିଭକ୍ତ । ବ୍ୟକ୍ତି ଏହି ବିରାଟ ସମୂହ ଭିତରେ କାହାକୁ ନିଜର ବୋଲି ଧରିବ ? ପୁରୁଷ ନିଜର ସୁଖ ଦୁଃଖକୁ ଅନ୍ୟ ଜଣକର ସୁଖ ଦୁଃଖରେ ମିଶାଇବା ପାଇଁ ବିବାହକରେ; କିନ୍ତୁ ଜଣେ ନାରୀ ଓ ଜଣେ ପୁରୁଷର ମିଳନ, ଦୀର୍ଘ ଓ ବିପଦସଂକୁଳ ଜୀବନ-ପଥରେ ଯଥେଷ୍ଟ ଶକ୍ତିମନ୍ତ ନୁହେଁ । ଘରେ ପିଲାଟିଏ ଜନ୍ମ

ହେଲେ ଆତ୍ମୀୟ ଲୋକଟିଏ ଦରକାର, ମୃତ୍ୟୁରେ ତ ସେହିପରି, ରୋଗ ବୈରାଗ ଅଛି, ଜୀବିକାର୍ଜନ ତ ଅଛି । ସମାଜରେ ବନ୍ଧୁ ମିଳିବେ, ଉପଦେଷ୍ଟା ମିଳିବେ, ମୁନିବ ମିଳିବେ, ଭୃତ୍ୟ ମିଳିବେ, କିନ୍ତୁ ରକ୍ତର ଆତ୍ମୀୟତା ପରି ଆତ୍ମୀୟତା ଆଉ କାହାଠୁ ମିଳିବାର ଆଶା କମ୍ । ମୋ ନିଜ ପରିବାରର ସାନ ମା, ଯା'ର ସ୍ୱାମୀ ନାହିଁ କି ସନ୍ତାନ ନାହିଁ, ବାପଘର ଓ ସ୍ୱାମୀଘରର ପୁତୁରା ଝିଆରୀମାନଙ୍କ ପାଇଁ ଯେଉଁ ସେବା, ଯେଉଁ ସହାନୁଭୂତି ଓ ଯେଉଁ ଅଶ୍ରୁତ୍ୟାଗ ସେ କରେ, ତାହା ଦେଖିଲେ, ସ୍ତମ୍ଭିତ ହେବାକୁ ହୁଏ । କିନ୍ତୁ ଅଧିକାଂଶ ଭାରତୀୟ ପରିବାରରେ ଆହୁରି ଦୂର ସମ୍ପର୍କିତ କେତେ ସାନମା, କେବଳ ଲେଖାଯୋଖାର ପୁତୁରା, ଜ୍ୱାଇଁ, ଝିଆରୀ ପାଇଁ ଜୀବନ କ୍ଷୟ କରିଦେଉଛନ୍ତି– କେବଳ ରକ୍ତର ଆକର୍ଷଣ ଯୋଗୁଁ; 'ନିଜର' ବୋଲି କହିବା ମୋହବତ୍‌ରୁ ।

ବିଜ୍ଞାନ ଯାହା କହେ ଯେ, ଜଗତର ପ୍ରତ୍ୟେକ ଅଣୁ ଅପର ଅଣୁକୁ ଟାଣୁଛି, ତାହାର ପରୀକ୍ଷା ଆମରି ଦେହର ରକ୍ତବିନ୍ଦୁରେ । ପ୍ରତ୍ୟେକ ଅଣୁର ଆକର୍ଷଣ ଓ ଉତ୍‌କ୍ଷେପଣ ଏଇ ଦୁଇଟି ଗୁଣ ଥିବାଯୋଗୁଁ ଯେଉଁ ରକ୍ତ ଆମକୁ ପରସ୍ପର ନିକଟକୁ ଟାଣେ, ସେହି ପୁଣି ପରସ୍ପର ପ୍ରତି ବିଦ୍ୱେଷ ଜାତ କରାଏ । ଭାଇ ଭାଇ, ପିତାପୁତ୍ର, ମା ଝିଅ ସେଥିଲାଗି ପରସ୍ପର ପାଇଁ ଅଶ୍ରୁତ୍ୟାଗ କରନ୍ତି, ପୁଣି ପ୍ରତ୍ୟହ କଳହ କରିପାରନ୍ତି । ଭାଇ ଭାଇ ଭିନ୍ନ ହୁଅନ୍ତି, ବାପପୁଅ ପର ହୁଅନ୍ତି– ଏ ସବୁ ପ୍ରତିଦିନର ପ୍ରତ୍ୟକ୍ଷୀଭୂତ ଘଟଣା; କିନ୍ତୁ ସାବଧାନ ହେଲେ, ଅନେକ ଆଧି ବ୍ୟାଧି, ଯାହାକି ପୂର୍ବେ ବିଧି-ନିର୍ଦ୍ଦିଷ୍ଟ ବୋଲି ଧରିନିଆଯାଇଥିଲା, ସେଥିରୁ ଆଜି ମନିଷ ଯେପରି ମୁକ୍ତ ରହିପାରୁଛି, ବୁଦ୍ଧି ଓ ବିଚାର ସହିତ ଚଳିଲେ ଓ ଚଳେଇପାରିଲେ, ପରିବାର ବା କୁଟୁମ୍ବ ଶାନ୍ତି, ସୁଖ, ସହାନୁଭୂତିର ଆଧାର ହେବାର ଯଥେଷ୍ଟ ସମ୍ଭାବନା । କୌଣସି ଯୁବକ ବା ଯୁବତୀର ବୁଦ୍ଧି ଓ ବ୍ୟବହାର ପ୍ରୀତିକର ହେଲେ ଆମେ କହୁ 'ସେ ଭଲଘରର ପିଲା ପରା ।' ଏଇ ବାକ୍ୟ ସୂଚନା କରେ ଯେ, ପରିବାର ଭଲ ହୋଇପାରେ, ଖରାପ ବି ହୋଇପାରେ ଏବଂ ତା'ର ପ୍ରତିକ୍ରିୟା ପରିବାରର ବାଳକ ବାଳିକାମାନଙ୍କ ଚରିତ୍ର ଓ ଚାଲିଚଳଣରେ ଦେଖାଦିଏ ।

'ଭଲଘର' ସେହି, ଯୋଉଠି ବାପମା ନିଜ ଧନ୍ଦାରେ ଲାଗିଥାନ୍ତି, ପରକଥା, ପରଚୁଗୁଲିକି ଯା'ନ୍ତିନି, ଯେଉଁଠି ଧନର ଆଡ଼ମ୍ବର ନାହିଁ, ପିଲାମାନଙ୍କୁ ବେଆଡ଼ିଆ କାମ କରିବାକୁ ବା ଖରାପକଥା କହିବାକୁ ଦିଆଯାଏନାହିଁ; ଯେଉଁଠି ସତ୍ୟ କଥିତ ହୁଏ, ମିଥ୍ୟାଚାରକୁ ଭୟ ଥାଏ ଏବଂ ସର୍ବୋପରି ଯେଉଁଠି ପିତାମାତା ଘରେ ଦାରିଦ୍ର୍ୟ ହେଉ ବା ସ୍ୱାଚ୍ଛନ୍ଦ୍ୟ ଥାଉ, ସର୍ବଶକ୍ତି ସର୍ବକର୍ମର ମୂଳସ୍ୱରୂପ ଭଗବାନଙ୍କ

ନିକଟରେ ସମସ୍ତ କର୍ତ୍ତୃତ୍ୱ ସମର୍ପଣ କରି ନିରହଂକାର, ନିଷ୍ପାପ ଜୀବନ ଯାପନ କରିବାକୁ ଚେଷ୍ଟାକରନ୍ତି ।

ଯେଉଁଠି କେବଳ 'ଭଦ୍ରଲୋକ' ହେବାର ଚେଷ୍ଟା, ଅର୍ଥାତ୍ ଯାନବାହନ, ଖାନାପିନା, କୋଠାବାଡ଼ିହିଁ ଜୀବନର ଏକମାତ୍ର ଆଦର୍ଶ, ସେଠି ଏ ସବୁ ଦିନେ ଲବ୍ଧ ହୋଇପାରେ, କିନ୍ତୁ ଲବ୍ଧ ଯେତିକି ହେଉଥିବ, ଶାନ୍ତି ଓ ସୁଖ ସେତିକି ସେତିକି ଘରୁ ଦୂରକୁ ପଳାୟନ କରୁଥିବ । ପାଦାର୍ଥିକ ପ୍ରାଚୁର୍ଯ୍ୟ ଘରେ ଯେତିକି ଯେତିକି ଆସି ପହଁଚିବ, ଶାନ୍ତି, ମମତା, ସୁଖ ସେତିକି ସେତିକି ଦୁର୍ଲ୍ଲଭ ହୋଇପଡ଼ିବ, ଯଦି ତା' ସଙ୍ଗେ ସଙ୍ଗେ ଘରେ ଆଧ୍ୟାତ୍ମିକ ଓ ମାନସିକ ସଂପଦ ଗଢ଼ି ନ ଉଠେ ।

ଘରକୁ ଆଧିପତ୍ୟ ବା ସଂପଦ ସାଇତି ରଖିବାର ସ୍ଥାନ ମନେ ନ କରି, ଆଗାମୀ ପୁରୁଷର ଶିକ୍ଷାକ୍ଷେତ୍ର ମନେକରିବା ଉଚିତ୍ । ଏହି ଆଦର୍ଶ ଆଗରେ ରଖିଲେ, ଗୃହକର୍ତ୍ତା ଓ ଗୃହକର୍ତ୍ତ୍ରୀ ନିଜର ସବୁ କାମ ବିଷୟରେ ସାବଧାନ ରହିବେ । ଅନ୍ୟ ବଡ଼ ବଡ଼ କଥା ଥାଉ, ହସିବା, ବସିବା, ଆମୋଦ ପ୍ରମୋଦ କରିବା, କଥା କହିବା, ଖାଇବାରେ ମଧ୍ୟ ସାବଧାନ ରହିବାକୁ ହେବ । କୌଣସିଥିରେ ଉଚ୍ଛୃଙ୍ଖଳତା ବା ଔଦ୍ଧତ୍ୟ ବା ମୁଁକାର-ଭାବ ଯେପରି ପ୍ରକାଶ ନ ପାଏ । ନିଜର ସୁଖ ସୁବିଧା, ନିଜର ସ୍ୱାଚ୍ଛନ୍ଦ୍ୟଟି ପ୍ରଥମେ ଖୋଜିବା ଜୀବର ଲକ୍ଷଣ । କିନ୍ତୁ ମନିଷ ହେବାକୁ ହେଲେ, ଆମକୁ ପରର ସୁବିଧା, ପରର ଦୁଃଖ, ପରର ଅଭାବ, ପ୍ରଥମେ ସ୍ମରଣ କରିବାକୁ ହେବ । ଏଇ ଶିକ୍ଷା ଘରେ ଆରମ୍ଭ ହେବା ଉଚିତ । ଭାଇ ଭଉଣୀମାନେ ନିଜ ନିଜ ପାଇଁ ଦାବୀ ନ କରି ଖାଦ୍ୟପଦାର୍ଥ, ଖେଳନା, ବହିପତ୍ର, ଲୁଗାପଟା ସମସ୍ତେ ସମାନ ଭାବରେ ନିଜେ ନିଜେ ବାଣ୍ଟିକୁଣ୍ଟି ଚଳିବାକୁ ମୂଳରୁ ଶିଖିବା ଉଚିତ । ସ୍ୱାମୀ ଓ ସ୍ତ୍ରୀ ପରସ୍ପରର ଅଭାବ ଅସୁବିଧା ପ୍ରତି ସତର୍କ ନଜର ରଖିଥିଲେ ଓ ସେଇ ଅନୁସାରେ କାମ କରୁଥିଲେ, ପିଲେ ସେହି ଆଦର୍ଶରେ ଅନୁପ୍ରାଣିତ ହେବେ । ଘରେ କୁଟୁମ୍ବ ବା ଦାସ ଦାସୀର ବେରାମ ହେଲେ; ସମସ୍ତେ ସମଭାବରେ ସେବା କରିବାକୁ ମୂଳରୁ ଅଭ୍ୟାସ କରିବା ଉଚିତ । ସେହିପରି ସତ୍ୟ କହିବା, ଖାଇବା ବିଷୟରେ ଉଝଟ ନ ହେବା, ଟିକି ଟିକି କଥାରେ ଅଭିମାନ ନ କରିବା ପ୍ରଭୃତି ମଧ୍ୟ ଘରେ ଅଭ୍ୟାସ ହୋଇଥିଲେ ବାହାରେ ଚଳାଚଳ ବିଷୟରେ ଲୋକର ଏକ ସହଜାତ ସ୍ୱାଚ୍ଛନ୍ଦ୍ୟ ଆସେ । ଯେଉଁମାନେ ନିଜ ପରିବାରରେ ସ୍ୱାର୍ଥପର ଜୀବନ ଯାପନ କରନ୍ତି, ସମାଜ ଓ ରାଷ୍ଟ୍ରରେ ସେମାନେ ନିଃସ୍ୱାର୍ଥପରତା ଦେଖାଇବା ଅସମ୍ଭବ ।

ଚରିତ୍ର ଗଠନ ଶିଶୁର ପ୍ରଥମ ବର୍ଷରୁହିଁ ଆରମ୍ଭ ହେବା ଉଚିତ । ପ୍ରଥମ ବର୍ଷରୁ ହିଁ ଶିଶୁ ଜାଣିବା ଉଚିତ୍ ଯେ, ଏ ଜଗତର ଅନେକ ନିୟମ ମାନି ଚଳିବାକୁ ହେବ

ଏବଂ ଜଗତଟାଯାକ କେବଳ ତାରି ସ୍ୱାଚ୍ଛନ୍ଦ୍ୟ ଯୋଗେଇବା ପାଇଁ ସୃଷ୍ଟି ହୋଇ ନାହିଁ; ଅନ୍ୟ ସମସ୍ତଙ୍କର ଅନ୍ୟାନ୍ୟ ଅନେକ କର୍ତ୍ତବ୍ୟ ପଡ଼ିରହିଛି । ଯେଉଁମାନେ ଶିଶୁ ପାଳନ ବହୁଦିନ ଧରି କରିଛନ୍ତି, ସେମାନେ କହିବେ ଯେ ଛ'ମାସର ଶିଶୁ ମଧ୍ୟ ଜାଣେ ଯେ କାନ୍ଦିଲେ କେହି ତାକୁ ଧରିବ ଏବଂ କେବଳ ସେଥିପାଇଁ ଅନେକ ସମୟରେ ଶିଶୁ କାନ୍ଦେ । ପ୍ରସିଦ୍ଧ ଦାର୍ଶନିକ ବେଟ୍ରାଣ୍ଡ୍ ରସେଲ୍ ଶିଶୁପାଳନ ବିଷୟରେ ଏକ ବହିରେ କହିବାର ମନେଅଛି, ଶିଶୁର କି କି ଅସୁବିଧା ଥାଇପାରେ ତାହାର ଅନୁସନ୍ଧାନ କର, ସେସବୁ ଦୂରକର, ତଥାପି ସେ ଯଦି କାନ୍ଦେ ତେବେ ସେ କାନ୍ଦୁ । କାନ୍ଦି କାନ୍ଦି ସେ ଶୋଇଯିବ; କିନ୍ତୁ କାନ୍ଦି କାନ୍ଦି ଦାବୀ ହାସଲ କରିବାର ଦୁରାଭ୍ୟାସ ଯେପରି ଶିଶୁ ବୟସରୁ ସୃଷ୍ଟି ନ ହୁଏ ।

ଅତି ଆଦର କରି ବାଳକବାଳିକାଙ୍କୁ ବଢ଼େଇବାରେ ପିତାମାତାଙ୍କର ଏକ ପ୍ରକାର ଅହମିକା ଶାନ୍ତିହୋଇପାରେ, କିନ୍ତୁ ସେଇ ପିଲାମାନେହିଁ ଏଥିପାଇଁ ପର-ଜୀବନରେ ଅତ୍ୟନ୍ତ ଦୁଃଖ ଭୋଗକରନ୍ତି । ଯେଉଁମାନେ ବାପା ମାଙ୍କଦ୍ୱାରା ସୁରକ୍ଷିତ ହୋଇ ବାଲ୍ୟଜୀବନ କଟାନ୍ତି, ଜୀବନର କଠୋର ବାସ୍ତବତା ସଙ୍ଗେ ଯେତେବେଳେ ସେମାନଙ୍କର ପରିଚୟ ଘଟେ, ସେତେବେଳେ ସେମାନେ ସମୁଦ୍ରରେ ଭାସିଲା ଭଳି ମନେକରନ୍ତି । ''ହାଁ, ହାଁ, ଖରାକୁ ଯାଆନା'', ''ଦେଖ, ବର୍ଷାରେ ଓଦା ହୁଅନା', ''ଥଣ୍ଡା ପଡ଼ିଛି କୋଟ୍ ଲଗା, ମୁଣ୍ଡରେ ଚାଦର, ଗଳାରେ ମଫ୍‌ଲର୍ ଦେ''– ଯେଉଁ ମା-ମାନେ ପିଲାଙ୍କୁ ଏପରି ସହସ୍ର ନିଷେଧ ଭିତରେ ବଢ଼ାନ୍ତି, ତାଙ୍କରି ପିଲେଇ ବହୁତ ରୋଗ ଭୋଗନ୍ତି, ଅଳ୍ପ ବୟସରେ ହୁଏ ତାଙ୍କର ଡିସ୍‌ପେପ୍‌ସିଆ । ଅନେକ ସମୟରେ ବାପାମାଙ୍କର ସାମାଜିକ ଅହମିକାରୁହିଁ ଏଇ ଭାବ ଜାତହୁଏ ଯେ, ''ଆମ ପିଲେ ବଡ଼ଲୋକ ହୋଇ ବଢ଼ିବେ ।'' ତେଣୁ ସେମାନେ ପିଲାର ଶିବାଶିବକୁ ଭ୍ରୂକ୍ଷେପ ନ କରି ଯାହା ତଥାକଥିତ ବଡ଼ଲୋକ ଘରେ ଦେଖିଥାନ୍ତି, ତା'ହିଁ କରିବାରେ ଲାଗନ୍ତି; କିନ୍ତୁ ବାଲ୍ୟକାଳ ରୁକ୍ଷ କଠିନ ଭାବରେ କାଟିଥିଲେ ପର ଜୀବନ ସୁଖ ହୁଏ, ଏହାହିଁ ଜୀବନର ପ୍ରକୃତ ତଥ୍ୟ । ନିଜକୁ ଚାଷୀ ମଜ୍‌ଦୁରଠାରୁ ବହୁତ ଉପରେ ବା ଏକାବେଳକେ ଭିନ୍ନ ମନେକରିବା ଆଦୌ ଉଚିତ ନୁହେଁ; ବରଂ ବାପା ମା'ର ଯେତେ ଟଙ୍କା ପଇସା ଥାଉ ପଛେ, ପିଲାଙ୍କୁ ଗରିବ ଭାବରେ ଅନ୍ୟ ସହସ୍ର ଗରିବ ପିଲାଙ୍କ ପରି ବଢ଼େଇବାରେ ପ୍ରଚୁର ମଙ୍ଗଳ ନିହିତ । ବିଲାତ ଓ ଆମେରିକାର କୋଟିପତିମାନଙ୍କ ପିଲେ ବାପାର କାରଖାନାରେ କୁଲି ଭାବରେହିଁ ଜୀବନ ଆରମ୍ଭ କରିଥାନ୍ତି ।

ସନ୍ତାନ ନଷ୍ଟ ହେବା ପରେ ବାପା ମାଙ୍କ ପକ୍ଷରେ ପିଲାକୁ ସେରନ୍ତା କରିବା

ସ୍ୱାଭାବିକ; କିନ୍ତୁ ଏହା ମଧ୍ୟ ଉଚିତ ନୁହେଁ । ପ୍ରସିଦ୍ଧ ଐତିହାସିକ ରାଖାଲ୍ ଦାସ ବନ୍ଦୋପାଧ୍ୟାୟ ତାଙ୍କ ଉପରେ ଅନେକ ଭାଇ ଭଉଣୀର ମୃତ୍ୟୁ ପରେ ଜନ୍ମ ହୋଇଥିବାରୁ ବାଲ୍ୟକାଳରେ ଏପରି ସେରନ୍ତା ହୋଇଥିଲେ ଯେ, ବିଡ଼ାବିଡ଼ା କରେନ୍ସି ନୋଟ୍ ଚିରି ପକଉଇବେ ପଛେ, ତାଙ୍କୁ କେହି କିଛି କହୁ ନ ଥିଲେ । ଫଳରେ ରାଖାଲ୍ ଦାସଙ୍କ ଚରିତ୍ର ଭୀଷଣ ଖାମ୍‌ଖିଆଲୀ ହୋଇଉଠିଲା ଏବଂ ସେ ଏପରି ଅମିତବ୍ୟୟୀ ଥିଲେ ଯେ ପ୍ରଚୁର ଉପାର୍ଜନ ସତ୍ତ୍ୱେ କଲିକତାରେ ତାଙ୍କର ପୈତୃକ ବାସଭବନ ତାଙ୍କୁ ବିକିବାକୁ ହୋଇଥିଲା ଓ ଶେଷ ବୟସରେ ସେ ଅର୍ଥାଭାବ ଯୋଗୁ ରୀତିମତ କଷ୍ଟ ଭୋଗିଥିଲେ ।

ଅନ୍ୟ ପକ୍ଷରେ ବାପ ବା ମା କାହାରି ପିଲାଙ୍କ ପ୍ରତି କଠୋର, ରୁକ୍ଷ, ନିଷ୍ଠୁର ହେବା ଆଦୌ ଉଚିତ ନୁହେଁ । ଏପରି ବାପ ବା ମା' ପ୍ରତି ପିଲାଙ୍କର କୌଣସି ସମ୍ମାନ ବା ଭକ୍ତି ରହେ ନାହିଁ । ପିଲାଦିନେ ବାପା, ବୋଉ, ଖୁଡ଼ୀ, ମାଉସୀ ଯେ କେହି ପିଲାଙ୍କୁ ଆଦର କରିଥାନ୍ତି ପର ଜୀବନରେ ପିଲେ ବଡ଼ ବୟସରେ ସେମାନଙ୍କୁ ମନେପକାନ୍ତି ଓ ବେଳେ ବେଳେ ଅଶ୍ରୁତ୍ୟାଗ କରନ୍ତି ସେମାନଙ୍କ ପାଇଁ । ପିଲାଦିନେ ଯେଉଁମାନେ ଆମ୍ଭମାନଙ୍କୁ ସ୍ନେହାଦର ଦେଇଥାନ୍ତି, ପର ଜୀବନରେ ଆମେ ତାଙ୍କର ସବୁ ଦୋଷ ଭୁଲିଯାଇ, ତାଙ୍କର ସ୍ମୃତିରେ ଶ୍ରଦ୍ଧାର ଚନ୍ଦନ ଲେପନ କରୁ ।

''ଲାଲୟେତ୍ ପଞ୍ଚ ବର୍ଷାଣି, ଦଶ ବର୍ଷାଣି ତାଡ଼ୟେତ୍, ପ୍ରାପ୍ତେଷୁ ଷୋଡ଼ଶେ-ବର୍ଷେ, ପୁତ୍ରେ ମିତ୍ରବଦାଚରେତ୍''– ଚାଣକ୍ୟଙ୍କ ଏହି ପରିଚିତ ଶ୍ଳୋକରେ ଅନେକ ବିଜ୍ଞତା ଓ ଜୀବନର ସୂକ୍ଷ୍ମ ଦୃଷ୍ଟି ନିହିତ ଅଛି । କୈଶୋର ପାର ହେବା ପରେ ପରେ ଜୀବନର ଶ୍ରେଷ୍ଠ ସନ୍ଧିକ୍ଷଣ ଆସେ, ଯେଉଁଠି ବାପା ମା ଯଦି ପିଲାଙ୍କର ଏକାଧାରରେ ବନ୍ଧୁ ଓ ଗୁରୁ ନ ହୁଅନ୍ତି, ତେବେ ପିଲାଙ୍କର ବିପଥରେ ଯିବାପାଇଁ ଦାୟୀ ସେହିମାନେ । ସେହି କ୍ଷଣରେ ଯଦି ପିତା ଓ ମାତା ପିଲାଙ୍କ ଛୋଟ ଛୋଟ ସ୍ୱପ୍ନ, ଅଭିଳାଷ ଓ ଅଭିମାନ ସହାନୁଭୂତିର ସହିତ ବୁଝିବାକୁ ଚେଷ୍ଟା କରନ୍ତି, ତେବେ ଜୀବନରେ ଭୁଲଭ୍ରାନ୍ତି ଅନେକ ତ କମିବ, ଏପରି ପିତା ମାତା ପ୍ରତି ପୁତ୍ରକନ୍ୟାର ଶ୍ରଦ୍ଧା ଅଟଳ ରହେ । ବାଲ୍ୟ ଓ ଯୌବନରେ ପୁତ୍ର କନ୍ୟାମାନଙ୍କୁ ଉଚିତ ମାର୍ଗରେ ନେବାର କୌଶଳ ହେଉଛି ପିତା ମାତା ସବୁବେଳେ ତାଙ୍କର ବାଲ୍ୟ ଓ ଯୌବନ ଦିନଗୁଡ଼ିକୁ ସ୍ମୃତି ପଥକୁ ଆଣିବେ । କିଶୋର ଓ ତରୁଣ ସବୁଯୁଗରେ, ସବୁ ପୁରୁଷରେ ସମାନ– ସେହି ସେହି ସମସ୍ୟା ଅଜା, ବାପା, ପୁଅ, ନାତି ସମସ୍ତଙ୍କୁ ଶିଖେଇବାକୁ ହୁଏ, ହୋଇଛି ଓ ହେବ । ତେଣୁ ତରୁଣ ପୁତ୍ରକନ୍ୟାମାନେ ଯେପରି ତାଙ୍କର ସମସ୍ୟାଗୁଡ଼ିକ ବିନା ସଙ୍କୋଚରେ ବାପା ବା ମା ଆଗରେ କହିପାରିବେ, ବାପା' ମା ସେମାନଙ୍କ

ପ୍ରତି ସେହିପରି ବ୍ୟବହାର କରିବା ଉଚିତ ।

କେତେଗୁଡ଼ିଏ କଥାରେ, ଯଥା – ଘରକୁ ସନ୍ଧ୍ୟା ପୂର୍ବରୁ ନିଶ୍ଚୟ ଫେରିବା, ପ୍ରତିଦିନର ଟାସକ୍ ସମୁଚିତ ପ୍ରକାରେ ସମାଧାନ କରିବା, ଘରେ ରୋଗୀ ଥିଲେ ତା'ର ସେବାକରିବା, ଘରୁ ବାହାରିଲେ ବାପା ମାଙ୍କର ଅନୁମତି ନେଇ ଯିବା ଇତ୍ୟାଦିରେ ଖୁବ୍ କଠୋର ଡିସିପ୍ଲିନ୍ ରଖି ଅନ୍ୟ ଅନେକ କଥାରେ ପିଲାଙ୍କୁ ପୂର୍ଣ୍ଣ ସ୍ୱାଧୀନତା ଦେଲେ ପିଲେ ବିପଥରେ ଯିବାର ସଂଭାବନା କମ୍ ଓ ସେମାନେ ଜୀବନ ସଂଗ୍ରାମ ପାଇଁ ଠିକ୍ ଦିଗରେ ପ୍ରସ୍ତୁତ ହେବେ ।

ନାରୀହିଁ କୁଟୁମ୍ବର କେନ୍ଦ୍ର, ସେହି ହିଁ କୁଟୁମ୍ବର ଶାସୟିତ୍ରୀ ଓ ବିନାଶିକା । ସେ ଏକାଧାରରେ ଘରର ମା, ଶିକ୍ଷୟିତ୍ରୀ ଧାତ୍ରୀ, ଅର୍ଥମନ୍ତ୍ରୀ ଓ ଖାଦ୍ୟ ମନ୍ତ୍ରୀ । କୁଟୁମ୍ବହିଁ ନାରୀର ସାମ୍ରାଜ୍ୟ । ସେହି ଛୋଟ ସାମ୍ରାଜ୍ୟ ଭିତରୁ ବିରାଟ ଜାତି ଗଢ଼ିଉଠୁଛି । ଯେଉଁ ଦେଶରେ ଯେତେ ସୁପରିଚାଳିତ 'ଗୃହ', ସେ ଜାତି ସେତେ ଉନ୍ନତ ଓ ସଭ୍ୟ । ଆମକୁ ମାନିବାକୁ ହେବ ଯେ, ଆମ ଦେଶରେ ଘରର ଶୃଙ୍ଖଳା ନ ଥାଏ, ପରିଚାଳନାରେ କଳା ବା ବିଜ୍ଞାନ ନଥାଏ, ଭୋଜନରେ ବା ଉତ୍ସବରେ ବିଚାର ନ ଥାଏ । ନାରୀ ଶିକ୍ଷିତ ହେଲେ ଏବଂ ମାତୃତ୍ୱ ଓ ଗୃହିଣୀତ୍ୱର ଦାୟିତ୍ୱ ନେବାରେ ଶିକ୍ଷିତ ହେଲେ, ଆମ ଦେଶର ଘରଗୁଡ଼ିକ ସୁଶୃଙ୍ଖଳ, ସୁପରିଚାଳିତ, ସୁବ୍ୟବସ୍ଥିତ ହେବାର ଆଶା । ବାପ ମା'ମାନେ କନ୍ୟାମାନଙ୍କୁ କେବଳ ସଜେଇଗୁଜେଇ ବିବାହ-ବିପଣୀର କାଟତି ପାଇଁ ପ୍ରସ୍ତୁତ କରିବା ନାରୀତ୍ୱ ପ୍ରତି ଯେପରି ଅପମାନ, ସେହିପରି ଅକଲ୍ୟାଣକର କନ୍ୟା ପ୍ରତି ଓ ସମାଜ ପ୍ରତି । ଡିଗ୍ରୀ ଧରି ଓ ଡିଗ୍ରୀ ସଙ୍ଗେ ସଙ୍ଗେ ହଳେ ଚଷମା ଓ ଗୋଟିଏ କଙ୍କାଳ ଧରି ଯେଉଁ ତରୁଣୀବର୍ଗ 'ଶିକ୍ଷିତା' ହୋଇ ବାହାରିପଡୁଛନ୍ତି, ଏମାନେ କି ନିରାମୟ, ଆନନ୍ଦମୁଖର ଗୃହରେ ସୁସ୍ଥ, ସବଳ, ନୂଆ ଜାତି ସୃଜନ କରିବାର ବିପୁଳ ଭାର ବହନ କରିପାରିବେ ? ଏଇ ପ୍ରଶ୍ନ ଉପରେ ଆମର ସମଗ୍ର ନାରୀଶିକ୍ଷା ପ୍ରତିଷ୍ଠିତ ହେବା ଉଚିତ । ଯେଉଁ ଘରେ କର୍ତ୍ତ୍ରୀଙ୍କର ବି.ଏ.ପାଶ୍, କିନ୍ତୁ ଆଜି ମୁଣ୍ଡଧରା, କାଲି ଜର, କାଲି କଲିକ୍, ପରଦିନ ଆଉ କିଛି ଲାଗି ରହିଛି; ଫଳରେ ଯେଉଁ କର୍ତ୍ତା ଏକ ହସ୍ତରେ ଔଷଧ ଖର୍ଚ୍ଚ ଓ ଅନ୍ୟ ହସ୍ତରେ ଶାଢ଼ୀ ଅଳଙ୍କାରର. ଖର୍ଚ୍ଚ ତୁଲେଇ ତୁଲେଇ ନୟାନ୍ତ ଓ ତେଣେ ପିଅନ-ପୂଜାରୀ-ସିଦ୍ଧ ଅନ୍ନ ବ୍ୟଞ୍ଜନରେ ତାଙ୍କ ଡିସ୍‌ପେପ୍‌ସିଆ ଆରମ୍ଭ, ସେଠି ଜୀବନର ଆନନ୍ଦ ଓ ଜାତିର ଭବିଷ୍ୟତ, ଉଭୟର ସମାଧି ହେଲା ବୋଲି ଜାଣ । ଯେଉଁଠି ସ୍ତ୍ରୀ ସୁସ୍ଥ, ସବଳ, ସୁନ୍ଦର, ହାସ୍ୟମୟୀ, ମଧୁରଭାଷୀ, କର୍ମଠା ଓ ମିତବ୍ୟୟିନୀ, ସେ ଘରେ ଦାରିଦ୍ର୍ୟ ଓ ଅଭାବ ସତ୍ତ୍ୱେ ସେଠି ସ୍ୱର୍ଗ । ଏ ସ୍ୱର୍ଗ ଆମେ ମଫସଲରେ ଓ ଗଡ଼ଜାତର ଜଙ୍ଗଲରେ ଦେଖୁଁ; କିନ୍ତୁ

ସଭ୍ୟତାର ଅଭିଶାପ ଏହି ଯେ, ଆମେ ଲକ୍ଷ ଲକ୍ଷ ଟଙ୍କା ବ୍ୟୟରେ ସ୍କୁଲ୍ କଲେଜ ବସେଇ ସେଠୁ କିଣୁ ରୋଗ, ଅସୁଖ ଓ ନାରୀତ୍ୱର ବିଦ୍ରୂପ ।

ଏକାନ୍ନବର୍ତ୍ତୀ ପରିବାରର ଅନେକ ଗୁଣ ଅଛି । ଏହି ପ୍ରଥା ଯୋଗୁଁ ଆମ ଦେଶରେ ବୁଢ଼ାବୁଢ଼ୀଙ୍କ ପାଇଁ କ'ଣ କରାଯିବ– ଏ ପ୍ରକାରର ସମସ୍ୟାହିଁ ନାହିଁ । ଆମ ଦେଶରେ ଶୁକ୍ଳକେଶ ହେୟ ବା ପରିତ୍ୟାଜ୍ୟ ନୁହେଁ, ସେ ସମ୍ମାନ ଓ ପାଳନର ଭାଜନ । ଶ୍ୱେତଜାତିମାନଙ୍କର ଟୋକା ଟୋକୀ ଏକାଠି ହେଲେ ତାଙ୍କ କଥା ତାଙ୍କର । ବୁଢ଼ା ବୟସରେ ବାପ ମା, ତାଙ୍କ କଥା ସେ ଦେଖନ୍ତି; କିନ୍ତୁ ଏ ଦେଶରେ ବାପା ବୋଉ ବାର୍ଦ୍ଧକ୍ୟରେହିଁ ତାଙ୍କ ଜୀବନର ସର୍ବ ସାଧନାର ସିଦ୍ଧି, ସୁଖ, ଶାନ୍ତି ଓ ସମ୍ମାନ ପାଇଥାନ୍ତି । ପୁଅ ରୋଜଗାର କରି ବାପକୁ ବସାଇ ଖୁଆଏ, ବୋହୂ ରାତିରେ ଶାଶୁ ଗୋଡ଼ରେ ତେଲ ଲଗାଇ ଘଷି ଘଷି ତାଙ୍କୁ ସୁଖ ନିଦ୍ରା ଦିଏ । ଜୀବନର ଶେଷପାଦରେ ଏହାଠୁ ଆଉ ଅଧିକ କ'ଣ ଆଶା କରାଯାଇପାରେ ? ଏହା ମଧ୍ୟ ଏକାନ୍ତ ଉଚିତ । ପୁଅ ବୋହୂ ବାପା ମା'ର ଶେଷ ବୟସକୁ ସୁଖଶାନ୍ତିମୟ କରିବା ନ୍ୟାୟ ଓ ଧର୍ମତଃ ପରମ କର୍ତ୍ତବ୍ୟ ।

କିନ୍ତୁ ସାଧାରଣ ବିଶ୍ୱାସ ଏହି ଯେ, ଶାଶୁ ଓ ବୋହୂ, ଏଇ ଦୁଇ ନାରୀର କଳହ ଯୋଗୁଁ ଏକାନ୍ନବର୍ତ୍ତୀ ପରିବାର ଅଶାନ୍ତିମୟ ହୁଏ ଏବଂ ଯା'ମାନଙ୍କର କଳହରେ ଏକାନ୍ନବର୍ତ୍ତୀ କୁଟୁମ୍ବ ଭାଙ୍ଗିଯାଏ । – ଏହା ସତ, କିନ୍ତୁ ଅନେକାଂଶରେ ଏଥିପାଇଁ ଅଶିକ୍ଷାହିଁ ଦାୟୀ ବୋଲି ମନେହୁଏ । ଅନେକ ପରିବାର ଯେଉଁଠି ଶାଶୁ ଶିକ୍ଷିତ ଓ ବୋହୂ ବା ବୋହୂମାନେ ଶିକ୍ଷିତ, ସେଠି ଶାନ୍ତି ବିରାଜିତ ଥିବାର ଦେଖୁ । ଯେଉଁଠି ଶାଶୁ ଶ୍ୱଶୁର ନାହାନ୍ତି, ଯେଉଁଠି କେବଳ ଯା'-ମାନଙ୍କ ମେଳା, ସେଠି ଏକତ୍ରାନ୍ନ ସମ୍ଭବ ନୁହେଁ, କାରଣ ସେ ଘରେ କେନ୍ଦ୍ର ନାହିଁ । ଏଥିପାଇଁ ବାପା ମରିବା ଆଗରୁ ପିଲାଙ୍କର ପୃଥକାନ୍ନ ପାଇଁ ସବୁପ୍ରକାର ବ୍ୟବସ୍ଥା କରିଯାଇଥିବା ଉଚିତ ।

କେନ୍ଦ୍ର ଥିଲେ ମଧ୍ୟ, ପ୍ରତ୍ୟେକ ବୋହୂ ଓ ପ୍ରତ୍ୟେକ ପୁଅ ଓ ପ୍ରତ୍ୟେକର ପିଲା-ପିଲି ଅର୍ଜନ-ନିର୍ବିଶେଷରେ ସମଭାବରେ ପାଳିତ ଓ ସମ୍ମାନିତ ନ ହେଲେ ଅସନ୍ତୋଷ ଅବଶ୍ୟମ୍ଭାବୀ । ବହୁତ ହେଉ, କମ୍ ହେଉ ସମସ୍ତଙ୍କ ଅର୍ଜନ ଏକାଠି କରି ସମସ୍ତଙ୍କୁ ସମଭାବରେ ପାଳିବାହିଁ କର୍ତ୍ତବ୍ୟ । ଲେଖକ ଏକ ଏକାନ୍ନବର୍ତ୍ତୀ ପରିବାରରେ ବଢ଼ିଥିଲା, ଏ ପରିବାର ପରେ ଭାଙ୍ଗିଗଲା । ଭାଙ୍ଗିବାର ଏକମାତ୍ର କାରଣ ହେଉଛି, ଯିଏ ଘର ବୁଝାସୁଝା କରୁଥିଲେ, ସେ ତାଙ୍କ ହାତରେ ସକଳ କ୍ଷମତା ପୁଞ୍ଜୀଭୂତ ରଖିବାକୁ ଚେଷ୍ଟାକଲେ । ଅନ୍ୟମାନେ କେବଳ ଭାତ ଖାଇ, ଲୁଗା ପିନ୍ଧି କେତେଦିନ ସନ୍ତୁଷ୍ଟ ରହିବେ; ତେଣୁ ଏ ଯା' କହିଲା ମୁଁ କାହିଁକି କ'ଣ କରିବି, ସେ ଯା' କହିଲା

ଯେ ଦେହ କ'ଣ ହେଉଛି । ବରାବର କଳି, ବରାବର ଅସନ୍ତୋଷ । ତଥାକଥିତ କର୍ତ୍ତା ହାତରୁ ଅଧିକାର ଛାଡ଼ିବାକୁ ନାରାଜ । କଳିତକରାଳ ଫଳରେ ପରିବାରଟି ଭିନ୍ନ ଭିନ୍ନ ହୋଇଗଲା–ଯାହା କି ସ୍ୱାଭାବିକ । ଉପଯୁକ୍ତ ବିଚାର ବିବେଚନା ପ୍ରୟୋଗ କରିଥିଲେ, ଏ ପରିବାର ଏ ପର୍ଯ୍ୟନ୍ତ ଥା'ନ୍ତା, ଅଥବା ବିନା ତକରାଳରେ ସମସ୍ତେ ଭିନ୍ନ ହୋଇଥାନ୍ତେ ।

ଅନେକ ପ୍ରତିଭାବାନ୍ ପୁରୁଷ କୁଟୁମ୍ବର ସଂକୁଚିତ ବେଷ୍ଟନୀ ବିରୁଦ୍ଧରେ ବିଦ୍ରୋହୀ ହୋଇଉଠିଛନ୍ତି । ଅନେକେ ତରୁଣ ବୟସରେ ଓ ପରଜୀବନରେ ଘରର ଜଞ୍ଜାଳ ଓ ଅତ୍ୟାଚାର ସହ୍ୟନକରିନପାରି ଘର ଛାଡ଼ି ପଳାନ୍ତି । 'ମତେ ଖତି ହେଉଛି', 'ରାମ ମୋ ଖାତାରେ ଶିଆଇ ପକାଇଦେଲା', 'ତାର କୁର୍ତ୍ତା ମୋଠୁ ଭଲ- ହେଉଛି'; ''ତା ପାଟିରେ ମନିଷ ଏଠି ରହିପାରିବ ନି'', 'ଏଘରେ ମନିଷ ନ ଖାଇ ମରିବ'', ''ଏ ଘରେ ମନିଷ ମଲେ ବି କେହି ପଚାରିବେନି''– ଏପ୍ରକାର ଅଭିଯୋଗ ପ୍ରତ୍ୟେକ ଘରେ । ବାପ ମା ଏ ସବୁ କ୍ଷୁଦ୍ର ଅଭିଯୋଗର ସାମାଧାନ କରିବେ । ସମସ୍ତ ଅଭାବ ଓ ଅଭିଯୋଗ ସତ୍ତ୍ୱେ ଘରଠାରୁ ପ୍ରିୟତର କେଉଁ ସ୍ଥାନ ନାହିଁ । ଅନେକ ମନ୍ତ୍ରୀ, ଅନେକ ବୈଜ୍ଞାନିକ, ଅନେକ ଧନପତି, ବଡ଼ ଲୋକ ହେଲା ପରେ, ବହୁ ସମ୍ମାନ ପାଇଲାପରେ ସହରର ସମସ୍ତ ସୁଖ ସମ୍ଭୋଗ ଭୋଗ ସାରିଲାପରେ ଚାହାନ୍ତି ସୁଦୂର ମଫସଲର ଜନ୍ମମାଟିକି ଫେରିଯିବାକୁ, ଯେଉଁଠି ପୂର୍ବ-ପୁରୁଷର ଚିତାଭସ୍ମ ଅଛି । ଅଶୀ ବର୍ଷ ବୟସରେ ବୁଦ୍ଧଦେବ କୁଶୀନଗରର ଉପକଣ୍ଠରେ ଶାଳବନରେ ଦେହ ତ୍ୟାଗ କଲେ । ଏବେ ଅନୁମାନ କରାଯାଉଛି ଯେ, ତଥାଗତ ବୋଧହୁଏ ଜୀବନଦୀପ ନିଭିଆସିବାର ଜାଣି ଶିଷ୍ୟ ସମଭିବ୍ୟାହାରରେ ନିଜର ଜନ୍ମଗ୍ରାମ କପିଳବାସ୍ତୁକୁ ଯାଉ ଯାଉ ବାଟରେ ଏ ଜଗତରୁ ବିଦାୟନେଲେ । ସର୍ବତ୍ୟାଗୀ ଯୁଗାବତାରଙ୍କର ମଧ୍ୟ ଘରମାୟା ଥିଲା ।

ବିରାଟ ପୃଥିବୀରେ ଅସହାୟ ମନୁଷ୍ୟର ଗୃହହିଁ ପ୍ରଥମ ଓ ଶେଷ ଆଶ୍ରୟ ।

––

# ଗୌତମ ବୁଦ୍ଧ

ବୈଦିକ ଯୁଗରେ ଆର୍ଯ୍ୟମାନଙ୍କର ଜୀବନଯାପନ ପ୍ରଣାଳୀ ପରି ଈଶ୍ୱର-ଆରାଧନା ମଧ୍ୟ ଅତ୍ୟନ୍ତ ସରଳ ଥିଲା । ସେମାନେ ପ୍ରକୃତିର ଭିନ୍ନ ଭିନ୍ନ ଶକ୍ତିକୁ ବିଭିନ୍ନ ଦେବଶକ୍ତିର ଅଭିବ୍ୟକ୍ତି ବୋଲି ଜ୍ଞାନ କରି ସେମାନଙ୍କୁ ଯଦୃଚ୍ଛାଲବ୍ଧ ସୋମରସ ନୈବେଦ୍ୟରୂପେ ଦାନ ଏବଂ ଭିନ୍ନ ଭିନ୍ନ ଋକ୍‌ରେ ସେହି ସେହି ଦେବତାଙ୍କ ଗୁଣଗାନ କରି, ପୂଜା ସମାପନ କରୁଥିଲେ । କିନ୍ତୁ କ୍ରମେ ଆର୍ଯ୍ୟମାନଙ୍କର ସମାଜ ବୃହତ୍ତର ହୁଅନ୍ତେ ଏବଂ ରାଜବଂଶମାନଙ୍କର ଆବିର୍ଭାବ ଓ ବ୍ରାହ୍ମଣାଦି ଜାତିର ସୃଷ୍ଟି ହୁଅନ୍ତେ, ସାମାଜିକ ଅନୁଷ୍ଠାନସମୂହ ଜଟିଳ ହେବାକୁ ଲାଗିଲା । ଧର୍ମ ରାଜକୀୟ ଆଡମ୍ବରର ଅଙ୍ଗ ହୋଇଉଠିଲା । ଯେଉଁ ଯାଗଯଜ୍ଞ ମୁକ୍ତିର ପନ୍ଥାରୂପେ ନିର୍ଦ୍ଦେଶିତ ହୋଇଥିଲା, ତାହା ସମ୍ପନ୍ନ କରିବାକୁ କେବଳ ଦିଗ୍‌ବିଜୟୀ ସମ୍ରାଟମାନେହିଁ କ୍ଷମ ହେଲେ । କ୍ରମେ ଧର୍ମରୁ ସରଳବିଶ୍ୱାସ ତୁଟି ତାହା ଯାଗ, ମନ୍ତ୍ର-ତନ୍ତ୍ର, ପଶୁବଳି, ଶାରୀରିକ ନିର୍ଯ୍ୟାତନ- ପ୍ରଭୃତିରେହିଁ ପର୍ଯ୍ୟବସିତ ହେଲା । ଧର୍ମ ନାମରେ ଦେଶରେ ଅସଂଖ୍ୟ ନିରୀହ ପଶୁଙ୍କର ନିଷ୍ଠୁରଭାବରେ ହତ୍ୟା ହେବାକୁ ଲାଗିଲା ଏବଂ ମୁକ୍ତିଭିଖାରୀମାନେ ସତ୍ୟମାର୍ଗ ଭୁଲି ଅକାରଣ କୃଚ୍ଛ୍ରସାଧନାରେ ଶରୀରକୁ ନିର୍ଯ୍ୟାତିତ କଲେ । ଧର୍ମର ଏହି ଗ୍ଲାନିବେଳେ ମହାମାନବ ଗୌତମ ବୁଦ୍ଧ ଜଗତରେ ଅବତୀର୍ଣ୍ଣ ହୋଇ ସତ୍ୟ, ମୁକ୍ତି ଓ ଦୟାର ଉଦାରବାଣୀ ପ୍ରଚାର କଲେ ।

ରୋହିଣୀନାମ୍ନୀ ଗିରିନଦୀ ନେପାଳ ରାଜ୍ୟର ପର୍ବତମାଳାରୁ ବାହାରି ଗଙ୍ଗାନଦୀରେ ମିଶିଅଛି । ଆଧୁନିକ ଉତ୍ତରପ୍ରଦେଶର ଗୋରଖପୁର ଜିଲ୍ଲାର ଉତ୍ତର-ପୂର୍ବକୁ ନେପାଳ ରାଜ୍ୟର ସୀମା ମଧ୍ୟରେ ଏହି ରୋହିଣୀନଦୀ-କୂଳରେ ୨୫୦୦ବର୍ଷ ପୂର୍ବେ କପିଳବାସ୍ତୁ ନାମକ ଏକ ସମୃଦ୍ଧ ନଗର ଥିଲା । ଏହି ନଗର ଶାକ୍ୟଜାତିର ରାଜଧାନୀ ଥିଲା । ଶାକ୍ୟମାନେ କ୍ଷତ୍ରିୟ ଥିଲେ ଏବଂ ତଦାନୀନ୍ତନ ଅନ୍ୟାନ୍ୟ ଭାରତୀୟଙ୍କ ପରି ସେମାନେ ମଧ୍ୟ ବ୍ରାହ୍ମଣ୍ୟ ଧର୍ମର ଅନ୍ତର୍ଭୁକ୍ତ ଥିଲେ । ଯେଉଁ କାଳର କଥା କୁହାଯାଉଛି, ସେ ସମୟରେ ନରପତି ଶୁଦ୍ଧୋଦନ ଏହି ଶାକ୍ୟମାନଙ୍କ ଉପରେ ଶାସନ କରୁଥିଲେ । ଶୁଦ୍ଧୋଦନଙ୍କ କୁଳସଂଜ୍ଞା ଗୋତମ ଥିଲା । ଆଶ୍ଚର୍ଯ୍ୟ କଥା ଏହି ଯେ, ଯୁଗଯୁଗାନ୍ତ ପରେ ପ୍ରାଚୀନ କପିଳବାସ୍ତୁ ଉପରେ ଦଣ୍ଡାୟମାନ ବର୍ତ୍ତମାନ ଗ୍ରାମର ଅଧିବାସୀମାନଙ୍କର ମଧ୍ୟ ଏହି କୁଳସଂଜ୍ଞା ଦେଖାଯାଏ ।

ଶୁଦ୍ଧୋଦନ ଓ ତାଙ୍କ ପତ୍ନୀ ମାୟାଦେବୀ ଦୀର୍ଘକାଳ ଅନପତ୍ୟ ହୋଇ ଦାମ୍ପତ୍ୟଜୀବନ ଅତିବାହିତ କରିବା ପରେ, ନାନା ବ୍ରତୋପାସନାରେ ଗୋଟିଏ ପୁତ୍ରସନ୍ତାନ ଲାଭ କଲେ । ବହୁଦିନର କାମନା ପୂର୍ଣ୍ଣ ହୁଅନ୍ତେ ଶୁଦ୍ଧୋଦନ ନବଜାତ ପୁତ୍ରକୁ 'ସିଦ୍ଧାର୍ଥ' ନାମ ଦେଲେ । ସିଦ୍ଧାର୍ଥ ଜନ୍ମ ହେବାର ସପ୍ତାହକ ପରେ ମାତା ମାୟାଦେବୀ ପ୍ରାଣତ୍ୟାଗ କଲେ । ତହୁଁ ନବୀନ ଶିଶୁର ଲାଳନପାଳନ ଭାର ମାତୃଷ୍ୱସା ପ୍ରଜାବତୀଙ୍କ ଉପରେ ପଡ଼ିଥିଲା । ଏହି ଶିଶୁ ଯେ ଦିନେ ଜଗଦ୍‌ବିଖ୍ୟାତ ହେବ, ତାହା ଜ୍ଞାନୀ ଓ ଯୋଗୀମାନେ ଶୁଦ୍ଧୋଦନଙ୍କ ଆଗରେ ଭବିଷ୍ୟଦ୍‌ବାଣୀ କରିଥିଲେ । ଏହି ଶିଶୁ ପିତୃଦତ୍ତ 'ସିଦ୍ଧାର୍ଥ' ନାମ ଛଡ଼ା ପରେ ବୁଦ୍ଧି ବା ତତ୍ତ୍ୱ ପ୍ରାପ୍ତ ହେବାରୁ ବୁଦ୍ଧ, ଗୋତମବଂଶରେ ଜାତ ହୋଇଥିବାରୁ ଗୌତମ ଏବଂ ଶାକ୍ୟଜାତିରେ ସମ୍ଭୂତ ହୋଇଥିବାରୁ ଶାକ୍ୟସିଂହ ଓ ଶାକ୍ୟମୁନି ନାମରେ ଜଗତରେ ସୁପରିଚିତ ହେଲେ ।

ବାଲ୍ୟକାଳରୁ ସିଦ୍ଧାର୍ଥ ଅତ୍ୟନ୍ତ ଚିନ୍ତାଶୀଳ ଥିଲେ । ଅସାଧାରଣ ଲାବଣ୍ୟସମ୍ପନ୍ନ ଓ ସୁଶୀଳ ଥିବାରୁ ରାଜପରିବାରର ସମସ୍ତଙ୍କ ନିକଟରେ ସେ ଅତ୍ୟନ୍ତ ପ୍ରିୟପାତ୍ର ହୋଇଥିଲେ । ପିତା ଶୁଦ୍ଧୋଦନ ଭବିଷ୍ୟଦ୍‌ବକ୍ତାମାନଙ୍କଠାରୁ ଜାଣିଥିଲେ ଯେ, ଯଦି ସିଦ୍ଧାର୍ଥ ବଂଶାନୁଗତ କ୍ଷାତ୍ରଧର୍ମର ଅନୁସରଣ କରନ୍ତି, ତେବେ ଦିନେ ବିରାଟ ପୃଥିବୀର ରାଜଚକ୍ରବର୍ତ୍ତୀ ହେବେ; କିନ୍ତୁ ସଂସାରପ୍ରତି ବିରାଗୀ ହୋଇ ଯଦି ସେ ସନ୍ନ୍ୟାସ ଅବଲମ୍ବନ କରନ୍ତି, ତେବେ ଜଗତରେ ଏକ ନୂତନ ଧର୍ମରାଜ୍ୟ ସ୍ଥାପନ କରିଯିବେ । କ୍ଷତ୍ରିୟ ରାଜା ଶୁଦ୍ଧୋଦନଙ୍କର ଐକାନ୍ତିକ ଇଚ୍ଛା ଥିଲା, ସେ ପୁତ୍ରକୁ ଦିଗ୍‌ବିଜୟୀ ରାଜଚକ୍ରବର୍ତ୍ତୀରୂପେ ଦେଖିବେ; ତେଣୁ ନବୀନ ରାଜକୁମାରଙ୍କର ଯେପରି କୌଣସିକ୍ରମେ ସଂସାରପ୍ରତି ବିରାଗ ନ ଆସେ, ସେଥିଲାଗି ତାଙ୍କୁ ଏକାନ୍ତ ବିଳାସ ମଧ୍ୟରେ ଲାଳନ-ପାଳନ କରିବାକୁ ଲାଗିଲେ । ଏଥିପାଇଁ କେବଳ ରାଜବଂଶୀୟ ସୁନ୍ଦର ସୁକୁମାର କିଶୋରକିଶୋରୀମାନଙ୍କ ସହ ତାଙ୍କୁ କ୍ରୀଡ଼ା କରିବାକୁ ଦିଆଯାଉଥିଲା ଏବଂ ଜଗତରେ ରୋଗ, ବାର୍ଦ୍ଧକ୍ୟ, ମୃତ୍ୟୁ ପ୍ରଭୃତି ଯେଉଁ ଚିରନ୍ତନ ଦୁଃଖରାଶି, ତାହା ତାଙ୍କଠାରୁ ସମ୍ପୂର୍ଣ୍ଣ ଅଜ୍ଞାତ ରଖାଯାଉଥିଲା ।

ସେହି ପନ୍ଥା ଅନୁସରଣ କରି ସିଦ୍ଧାର୍ଥ ଯୌବନ ପ୍ରାପ୍ତ ହୁଅନ୍ତେ, ଶୁଦ୍ଧୋଦନ ପୁତ୍ରର ପରିଣୟବିଧାନ ଲାଗି ଅତ୍ୟନ୍ତ ତତ୍ପର ହୋଇପଡ଼ିଲେ । ତାଙ୍କର ଧାରଣା ଥିଲା ଯେ, ଇହଜଗତର ସକଳ ଭୋଗବିଳାସ ଓ ସୁଖସ୍ୱାଚ୍ଛନ୍ଦ୍ୟରେ ସିଦ୍ଧାର୍ଥଙ୍କ ଜୀବନକୁ ଆବୃତ କରି ବୈରାଗ୍ୟଆଡୁ ତାଙ୍କର ମୁଖ ଫେରାଇଆଣିବେ । ଶାକ୍ୟରାଜ୍ୟକୁ ଲାଗି

କୋଳି ରାଜ୍ୟ । ସେହି ରାଜ୍ୟର ଅଧିପତି ଦଣ୍ଡପାଣିଙ୍କର ପରମା ସୁନ୍ଦରୀ କନ୍ୟା ଯଶୋଧାରାଙ୍କୁ ପୁତ୍ରବଧୂ କରିବା ନିମନ୍ତେ ଶୁଦ୍ଧୋଦନ ଇଚ୍ଛା ପ୍ରକାଶ କରିବାରୁ ଦଣ୍ଡପାଣି ଏହି ମତ ବ୍ୟକ୍ତ କଲେ, "ଶାକ୍ୟ ରାଜପୁତ୍ରଙ୍କର କ୍ଷାତ୍ରବୃତ୍ତିର କୌଣସି ଲକ୍ଷଣ ଦେଖାଯାଉନାହିଁ । ମୁଁ ଏପରି ଦୁର୍ବଳ ବ୍ୟକ୍ତିଙ୍କୁ ନିଜର କନ୍ୟା ସମର୍ପଣ କରିବି ନାହିଁ ।" ଏହି କଥା ସିଦ୍ଧାର୍ଥଙ୍କ କର୍ଣ୍ଣଗୋଚର ହୁଅନ୍ତେ, ସେ ଅନ୍ୟାନ୍ୟ କ୍ଷତ୍ରିୟ ତରୁଣଙ୍କ ସହ ପ୍ରକାଶ୍ୟ ପ୍ରତିଯୋଗିତା ଭିକ୍ଷା କଲେ । ନିର୍ଦ୍ଦିଷ୍ଟ ଦିନରେ ରାଜ୍ୟର ଜନତା ନିର୍ଦ୍ଦିଷ୍ଟ ସ୍ଥାନରେ ସମାଗତ ହେଲେ । ଉଭୟ ରାଜକୁଳର ସମସ୍ତ ଲୋକେ ଉପସ୍ଥିତ ହେଲେ ଏବଂ ପ୍ରତିଯୋଗିତା ଆରମ୍ଭ ହେଲା । ଫଳରେ ଦେଖାଗଲା ଯେ, ଅଶ୍ୱାରୋହଣ, ଧନୁର୍ବିଦ୍ୟା, ଅସିଚାଳନ ପ୍ରଭୃତି ସକଳ କ୍ଷାତ୍ରବିଦ୍ୟାରେ ସିଦ୍ଧାର୍ଥଙ୍କୁ ପରାଜିତ କରିବାକୁ ଶାକ୍ୟରାଜ୍ୟରେ କୌଣସି କ୍ଷତ୍ରିୟଯୁବକ ସମକକ୍ଷ ହେଲେ ନାହିଁ । ସମାଗତ ଜନତା ସମସ୍ୱରରେ ରାଜକୁମାରଙ୍କୁ ଧନ୍ୟ ଧନ୍ୟ କହିବାକୁ ଲାଗିଲେ । ନିର୍ଦ୍ଦିଷ୍ଟ ଦିନରେ ମହାସମାରୋହରେ ସିଦ୍ଧାର୍ଥ ଓ ଯଶୋଧାରାଙ୍କର ଶୁଭପରିଣୟ ସମ୍ପାଦିତ ହେଲା । ପୁତ୍ର ଓ ପୁତ୍ରବଧୂଙ୍କର ଦାମ୍ପତ୍ୟଜୀବନକୁ ସମ୍ଭୋଗମୟ କରିବାଲାଗି ଶୁଦ୍ଧୋଦନ ଶୀତ, ଗ୍ରୀଷ୍ମ, ବର୍ଷା ଏହି ତିନି ଋତୁ ଲାଗି ତିନୋଟି ସ୍ୱତନ୍ତ୍ର ପ୍ରାସାଦ ନିର୍ମାଣ କଲେ । ସିଦ୍ଧାର୍ଥଙ୍କ ଚିତ୍ତବିନୋଦନ ଲାଗି ଅହରହ ସୁନ୍ଦରୀ ନର୍ତ୍ତକୀମାନଙ୍କ ଗୀତନୃତ୍ୟରେ ପ୍ରାସାଦସବୁ ମୁଖରିତ ହୋଇଉଠିଲା ।

କିନ୍ତୁ ବିଧାତାଙ୍କର ମହାନ୍ ଉଦ୍ଦେଶ୍ୟ ବିଫଳ ହେବାର ନୁହେଁ । ଶୁଦ୍ଧୋଦନଙ୍କ ସମସ୍ତ ଯତ୍ନ ସତ୍ତ୍ୱେ ସିଦ୍ଧାର୍ଥ ବିଳାସମୟ ରାଜାନ୍ତଃପୁରର ବାହାରେ ଯେଉଁ ଦୁଃଖ-ଯନ୍ତ୍ରଣାମୟ ଜଗତ୍ ପ୍ରବହମାନ ରହିଅଛି, ତାହାର ସନ୍ଧାନ ଲାଭ କଲେ । ଦିନେ ସାୟଂ-ଭ୍ରମଣ ଉଦ୍ଦେଶ୍ୟରେ ସେ ରଥରେ ବସି ପ୍ରମୋଦୋଦ୍ୟାନକୁ ଯାତ୍ରା କଲାବେଳେ ଜଣେ ଲୁପ୍ତକେଶ, ଗଳିତ-ନଖଦନ୍ତ, ବେପଥୁମାନ୍ ଜରାକ୍ଲିଷ୍ଟ ବୃଦ୍ଧକୁ ଦେଖିପାରିଲେ । ସିଦ୍ଧାର୍ଥ ଏପରି ମନୁଷ୍ୟ ସେଯାବତ୍ ଦେଖିନଥିଲେ – କାରଣ ରାଜପ୍ରାସାଦରେ ସେପରି ଜରାକ୍ଲିଷ୍ଟ ବ୍ୟକ୍ତି କେହି ନଥିଲେ । ସେ ସାରଥିକୁ ପ୍ରଶ୍ନ କଲେ, "ଏ କିଏ ? ଏହାର ଏପରି ଅବସ୍ଥା କାହିଁକି ହୋଇଅଛି ?" ସାରଥି ଉତ୍ତର କଲା, "ଏ ବ୍ୟକ୍ତି ବର୍ତ୍ତମାନ ବାର୍ଦ୍ଧକ୍ୟରେ ଉପନୀତ ହୋଇଅଛି । ପ୍ରତ୍ୟେକ ମନୁଷ୍ୟକୁ ଦିନେ ଏହି ଦଶାରେ ଉପନୀତ ହେବାକୁ ହେବ ।" ସିଦ୍ଧାର୍ଥଙ୍କ ଚିତ୍ତରେ ସହସା ଭାବାନ୍ତର ଉପସ୍ଥିତ ହେଲା । ସେ ଭାବିଲେ, 'ଏ ଦେହ ଓ ଜୀବନର ତେବେ ଏହି ପରିଣାମ !" ରାଜାନ୍ତଃପୁରରେ ରହି ସେ ମାନବ-ଜୀବନର ଯେଉଁ ସୁଖମୟ ଧାରଣା କରିଥିଲେ, ତାହା ସହସା ଦୂରୀଭୂତ ହେବାକୁ ଲାଗିଲା ଏବଂ ସେ

ବିଷଣ୍ଣ ଚିତ୍ତରେ ପ୍ରାସାଦକୁ ଫେରି ଆସିଲେ ।

ଏହି ଘଟନାର ପରେ ପରେ ବିଧାତାର କି ଅଜ୍ଞାତ ଉଦ୍ଦେଶ୍ୟ ଘେନି ସିଦ୍ଧାର୍ଥ ସେହିପରି ପ୍ରମୋଦୋଦ୍ୟାନକୁ ଯାତ୍ରା କଲାବେଳେ ଗୋଟିଏ ରୋଗଗ୍ରସ୍ତ ଓ ପରେ ଗୋଟିଏ ମୃତ ଲୋକ ଦେଖିବାକୁ ପାଇଲେ । ମାନବଜୀବନର ଏହି ବିଭୀଷିକା ସିଦ୍ଧାର୍ଥଙ୍କ ଚିତ୍ତକୁ ବିକଳ କରି ପକାଇଲା । ସେ ଭାବିବାକୁ ଲାଗିଲେ, 'ଯେଉଁ ଜୀବନର ବାର୍ଦ୍ଧକ୍ୟ, ରୋଗ, ମୃତ୍ୟୁ ପ୍ରଭୃତି ଚିରସହଚର ସେଠାରେ ସୁଖ କାହିଁ ? କେଉଁ ସୁଖ-ଆଶାରେ ମନୁଷ୍ୟମାନେ ଏହି କ୍ଷୟଶୀଳ ଓ ପରିଣାମରେ ଦୁଃଖଦାୟକ ସଂସାରରେ ଏପରି ମତ୍ତ ଥାନ୍ତି ? ଏହି ଦୁଃଖ-ପାଶରୁ ଉଦ୍ଧାର ପାଇବାର ପନ୍ଥା କ'ଣ ? କି ଉପାୟରେ ମନୁଷ୍ୟ ରୋଗ, ଜରା, ମରଣାଦି ଦୁଃଖର ପ୍ରଭାବରୁ ନିଜକୁ ମୁକ୍ତ କରିପାରେ ?' ସିଦ୍ଧାର୍ଥଙ୍କ ଚିତ୍ତ ଏହିପରି ବ୍ୟାକୁଳ ଥିବା ସମୟରେ ଆଉ ଦିନେ ପୁଣି ପ୍ରମୋଦୋଦ୍ୟାନକୁ ଯାତ୍ରା କଲାବେଳେ ସେ ଏକ ସନ୍ନ୍ୟାସୀଙ୍କର ଦର୍ଶନ ଲାଭ କଲେ । ତାଙ୍କର ବଦନମଣ୍ଡଳ ପ୍ରଶାନ୍ତ ଜ୍ୟୋତିରେ ଉଦ୍ଭାସିତ ହେଉଥିଲା । ଏବଂ ତାଙ୍କର ନିର୍ବିକାର ଭାବ ଦେଖି ଜଣାପଡୁଥିଲା, ଯେପରି ସେ ଜଗତର ନିତ୍ୟ-କ୍ଷୟିଷ୍ଣୁ ସୁଖଦୁଃଖର ବହୁ ଊର୍ଦ୍ଧ୍ୱରେ– ଜଗତର ଦୁଃଖ-ପାଶରୁ ସେ ଯେପରି ଏକାବେଳକେ ମୁକ୍ତ । ସିଦ୍ଧାର୍ଥ ସାରଥିକୁ ଜିଜ୍ଞାସା କଲେ, ''ଏ କିଏ ?'' କାରଣ ସେପରି ବ୍ୟକ୍ତି ସେ ରାଜାନ୍ତଃପୁରରେ ଦେଖିବାକୁ ପାଇନଥିଲେ । ସାରଥି ଉତ୍ତର କଲା, ''ମହାଭାଗ, ଏ ଜଣେ ସନ୍ନ୍ୟାସୀ । ଏ ସଂସାରର ସମସ୍ତ ପ୍ରଲୋଭନ ଫିଙ୍ଗିଦେଇ ଧର୍ମ ମାର୍ଗରେ ଜୀବନ ଚାଳନ କରୁଅଛନ୍ତି । ଏ ଗୃହହୀନ, କୁଟୁମ୍ବହୀନ, ବନ୍ଧୁହୀନ ତଥାପି ଏହାଙ୍କର ଦୁଃଖନାହିଁ ।'' ସନ୍ନ୍ୟାସୀଙ୍କର ସେହି ପ୍ରଶାନ୍ତ ଲାବଣ୍ୟ ଓ ନିର୍ବିକାର ଭାବରେ ସିଦ୍ଧାର୍ଥ ବିମୋହିତ ହେଲେ ଏବଂ ସହସା ତାଙ୍କ ମନରେ ଏହି ଭାବ ଉଦିତ ହେଲା ଯେ, 'ଏହି ମାର୍ଗହିଁ ଜୀବନରେ ଶାନ୍ତି ଆନୟନ କରିପାରେ ।' ଏହା ଭାବି ସେ ସାରଥିକୁ ରଥ ଲେଉଟାଇବାକୁ କହିଲେ । ଏପରି ସମୟରେ ଦୂତ ଆସି ସମ୍ବାଦ ଦେଲା ଯେ, ଯଶୋଧାରା ଗୋଟିଏ ପୁତ୍ରସନ୍ତାନ ପ୍ରସବ କରିଅଛନ୍ତି । ସିଦ୍ଧାର୍ଥ ହଠାତ୍ ଭାବିବାକୁ ଲାଗିଲେ, ସଂସାର-ପାଶରେ ତାଙ୍କୁ ବାନ୍ଧିରଖିବାକୁ ଏ ଏକ ନୂତନ ବନ୍ଧନ ଏବଂ ସେହି ଧାରଣାରେ ନବଜାତ ପୁତ୍ରକୁ 'ରାହୁଳ' ବୋଲି କହିପକାଇଲେ । ରାହୁଳ ଶବ୍ଦର ଅର୍ଥ ବନ୍ଧନ । ସିଦ୍ଧାର୍ଥଙ୍କ ପୁତ୍ର ସେହି ନାମରେ ହିଁ ଜଗତରେ ପରିଚିତ ।

ରଥାରୋହଣ କରି ରାଜପ୍ରାସାଦକୁ ପ୍ରତ୍ୟାବର୍ତ୍ତନ କଲାବେଳେ ପଥମଧ୍ୟରେ ହର୍ଷୋତ୍‌ଫୁଲ୍ଲ ଜନତା ତାଙ୍କୁ ପୁଷ୍ପବର୍ଷଣ, ଶଙ୍ଖଧ୍ୱନି ଓ ନୃତ-ଗୀତ-ବାଦ୍ୟରୋଳରେ

ସମ୍ବର୍ଦ୍ଧନା କରିବାକୁ ଲାଗିଲା । କିନ୍ତୁ ନାଗରିକ ଓ ନାଗରିକାମାନଙ୍କର ସେ ଅଭିବାଦନ ସିଦ୍ଧାର୍ଥଙ୍କୁ ଆଦୌ ସ୍ପର୍ଶ କରିପାରିନଥିଲା । ସେ କେବଳ ଭାବୁଥିଲେ, କି ଉପାୟରେ ସଂସାରର ସମସ୍ତ ବନ୍ଧନ ଛିନ୍ନ କରି ସତ୍ୟ ଓ ଶାନ୍ତିର ଅନ୍ୱେଷଣ କରିବେ ।

କ୍ରମେ ଆନନ୍ଦ-ମୁଖର ରଜନୀ ଶାନ୍ତ ହେବାକୁ ବସିଲା । ସିଦ୍ଧାର୍ଥଙ୍କ ନେତ୍ରରେ ନିଦ୍ରା ନାହିଁ । ନିଶୀଥକାଳରେ ସେ ଶଯ୍ୟାରୁ ଉଠି ଧୀରେ ଧୀରେ ଅଶ୍ୱଶାଳା ଆଡ଼କୁ ଗଲେ । ସେଠାରେ ବିଶ୍ୱସ୍ତ ଅଶ୍ୱଚାଳକ ଛନ୍ଦକକୁ ଉଠାଇ ନିଜର ପ୍ରିୟ ଅଶ୍ୱ କଣ୍ଟକକୁ ସଜ୍ଜିତ କରିବାକୁ କହିଲେ । ଛନ୍ଦକ ମନ୍ତ୍ରମୁଗ୍ଧ ପରି ପ୍ରଭୁର ଆଦେଶ ପାଳନ କରିବାକୁ ଗଲା । ଏଣେ ସିଦ୍ଧାର୍ଥ ଥରେ ଯଶୋଧାରା ଓ ନବଜାତ ପୁତ୍ରକୁ ଦେଖି ଆସିବା ଲାଗି ଅନ୍ତଃପୁର ଆଡ଼କୁ ଗଲେ । ଯଶୋଧାରା ଶିଶୁସନ୍ତାନ ଦେହରେ ହାତ ରଖି ନିଦ୍ରିତା ଥିଲେ । ସିଦ୍ଧାର୍ଥ ସେମାନଙ୍କ ଆଡ଼କୁ କ୍ଷଣେ ସତୃଷ୍ଣନୟନରେ ଚାହିଁରହିଲେ ଓ ନବଜାତ ପୁତ୍ରଟିକୁ ଥରେ ବକ୍ଷରେ ଧରିବାକୁ ଇଚ୍ଛା କଲେ; କିନ୍ତୁ କାଳେ ଯଶୋଧାରା ନିଦ୍ରା ତ୍ୟାଗ କରି ତାଙ୍କ ପଥରେ ବାଧାଦେବେ, ଏହି ଭୟରେ ସେ ସେହି ଉତ୍ତପ୍ତ ବାସନାକୁ ବକ୍ଷରେ ମାରିଦେଇ ସେଠାରୁ ପ୍ରସ୍ଥାନ କଲେ ।

ପ୍ରାଙ୍ଗଣରେ ଅଶ୍ୱ ସଜ୍ଜିତ ଥିଲା । ସେ ଦିନ ବୈଶାଖ ପୂର୍ଣ୍ଣିମା । ବିମଳ ଚନ୍ଦ୍ରାଲୋକରେ ସମଗ୍ର କପିଳାବସ୍ତୁ ଆଲୋକିତ ହୋଇଉଠିଥାଏ । ରାଜପୁତ୍ର ସିଦ୍ଧାର୍ଥ ନୀରବରେ ପ୍ରାଙ୍ଗଣରୁ ରାଜଦାଣ୍ଡକୁ ଓ ରାଜଦାଣ୍ଡରୁ ଦୁର୍ଗଦ୍ୱାର ଆଡ଼କୁ ଗତି କରିବାକୁ ଲାଗିଲେ । ନଗରରୁ ବହିର୍ଗତ ହୁଅନ୍ତେ ସିଦ୍ଧାର୍ଥ ଅଶ୍ୱାରୋହଣ କଲେ ଓ ଛନ୍ଦକ ପ୍ରଭୁର ଅନୁସରଣ କଲା ।

ସମସ୍ତ ରାତ୍ରି ଗତି କରିବା ପରେ ଉଷାର ଉଦୟ ବେଳକୁ ସିଦ୍ଧାର୍ଥ ଶାକ୍ୟରାଜ୍ୟ ଓ କୋଳିରାଜ୍ୟ ଅତିକ୍ରମ କରି, ଅଶୋମା ନଦୀ କୂଳରେ ଉପସ୍ଥିତ ହୋଇପାରିଥିଲେ । ଅଶୋମାର ସିକତାରେ ଅଶ୍ୱରୁ ଓହ୍ଲାଇ ସିଦ୍ଧାର୍ଥ ନିଜର ରାଜକୀୟ ବେଶଭୂଷା ଦେହରୁ କାଢ଼ି ଛନ୍ଦକକୁ ଅର୍ପଣ କଲେ । ପ୍ରଭୁଭକ୍ତ ଛନ୍ଦକ ସିଦ୍ଧାର୍ଥଙ୍କ ସହଚର ହୋଇ ତାଙ୍କ ଚରଣସେବାର ଅଧିକାରୀ ହେବାକୁ ବିକଳଭାବରେ ଅନୁରୋଧ କଲା । ସିଦ୍ଧାର୍ଥ ନାସ୍ତି କଲେ ଏବଂ କପିଳବାସ୍ତୁ ଫେରିଯାଇ ପିତାମାତାଙ୍କୁ ତାଙ୍କର ସମ୍ବାଦ ଦେବାକୁ ଆଦେଶ ଦେଲେ । ତା'ପରେ କଟିଦେଶରୁ ଅସି ନିଷ୍କାସନ କରି ସ୍ୱହସ୍ତରେ ମସ୍ତକର ଦୀର୍ଘକେଶ ଓ ଶ୍ମଶ୍ରୁ ଛେଦନ କରିପକାଇଲେ ଏବଂ ନିଜର ବହୁମୂଲ୍ୟବସ୍ତ୍ର ନୂତନ ଜୀବନଯାତ୍ରାରେ ସୁନ୍ଦର ଦିଶିବ ନାହିଁ ଭାବି ନିକଟରେ ଯାଉଥିବା ଗୋଟିଏ ଭିକ୍ଷୁକସହ ବସ୍ତ୍ରର ବିନିମୟ କଲେ । ଏହିପରି ଭାବରେ ରାଜପୁତ୍ରଙ୍କର ସନ୍ନ୍ୟାସ

ଜୀବନ ଆରମ୍ଭ ହେଲା । ରାଜ୍ୟ, ସିଂହାସନ, ପିତା, ମାତା, ପତ୍ନୀ, ପୁତ୍ର, ବିଳାସ, ସୁଖସ୍ୱାଚ୍ଛନ୍ଦ୍ୟ ସମସ୍ତ ପଛରେ ଫିଙ୍ଗିଦେଇ ରାଜକୁମାର ସିଦ୍ଧାର୍ଥ ସତ୍ୟର ସନ୍ଧାନ ଲାଗି ପଥର ଭିକାରୀ ହେଲେ । ନିଜର ପ୍ରାଣପ୍ରିୟ ପ୍ରଭୁଙ୍କୁ ଦୀନଦରିଦ୍ର ଭିକ୍ଷୁକବେଶରେ ଅଶୋମାର ବାଲୁକାରେ ନିଃସହାୟ ହୋଇ ଠିଆହୋଇଥିବା ଦେଖି ଛନ୍ଦକ କରୁଣଭାବରେ ବିଳାପ କରି କରି କପିଳବାସ୍ତୁକୁ ପ୍ରତ୍ୟାବର୍ତ୍ତନ କଲା ।

ନିଜ ଦେଶ ଓ ଲୋକଙ୍କଠାରୁ ଦୂରରେ ରହିବା ଉଚିତ ମନେକରି ସିଦ୍ଧାର୍ଥ ସେଠାରୁ ରାଜଗୃହ ଆଡ଼କୁ ଯାତ୍ରା କଲେ । ସେ ସମୟରେ ରାଜଗୃହ ମଗଧରାଜ୍ୟର ରାଜଧାନୀ ଥିଲା ଓ ଜ୍ଞାନାଲୋଚନାର ଏକ ବିଖ୍ୟାତ କେନ୍ଦ୍ର ଥିଲା । ସିଦ୍ଧାର୍ଥ ରାଜଗୃହରେ ପ୍ରବେଶ କରି ରାଜପଥରେ ଦ୍ୱାରେ ଦ୍ୱାରେ ଭିକ୍ଷା କରନ୍ତେ ତାଙ୍କର ସେହି ଲାବଣ୍ୟମୟ ରୂପ, ତରୁଣ ବୟସ ଓ ଉଚ୍ଚ ବଂଶରେ ଜନ୍ମହେତୁ ନଗରରେ ଚାଞ୍ଚଲ୍ୟ ସୃଷ୍ଟି ହେଲା । ନିଜେ ରାଜା ବିମ୍ବିସାର ସିଦ୍ଧାର୍ଥଙ୍କ ନିକଟକୁ ଆସି ତାଙ୍କୁ ଏପ୍ରକାର ସାଧନାରୁ ନିବୃତ୍ତ ହେବାକୁ କହିଲେ ଏବଂ ନିଜ ପ୍ରାସାଦ ନିକଟରେ ତାଙ୍କ ଅଧିବାସ ସମସ୍ତ ଆୟୋଜନ କରିଦେବା ଲାଗି ଅଯାଚିତ ପ୍ରତିଶ୍ରୁତି ଦେଲେ । କିନ୍ତୁ ସିଦ୍ଧାର୍ଥ ସେ ସମସ୍ତ ପ୍ରତ୍ୟାଖ୍ୟାନ କରି ଭିକ୍ଷୁକଜୀବନ ସତ୍ୟାନ୍ୱେଷଣର ଉପଯୋଗୀ ଜାଣି ନଗର ବାହାରେ ଗୃଧ୍ରକୂଟ ପର୍ବତର ଏକ ଗୁହାରେ ବସତି କରିବାକୁ ଲାଗିଲେ । ଏହିଠାରେ ଅବସ୍ଥାନ କରିବା ସମୟରେ ଆଲାର ଓ ଉଦକ ନାମକ ହିନ୍ଦୁଗୁରୁଙ୍କ ନିକଟରେ ସିଦ୍ଧାର୍ଥ ଜ୍ଞାନାଲୋଚନା କରି ମୁକ୍ତିର ସନ୍ଧାନ ପାଇବାକୁ ଚେଷ୍ଟା କରିଥିଲେ । କିନ୍ତୁ ତହିଁରେ ତାଙ୍କ ଚିତ୍ତ ତୃପ୍ତ ନ ହେବାରୁ କଠୋର ତପଶ୍ଚରଣଦ୍ୱାରା କାଳେ ମୁକ୍ତିର ପନ୍ଥା ଲାଭକରାଯାଇପାରେ, ଏହା ବିଚାରି ସେଠାକୁ ଉରୁବେଲ ବନ ଆଡ଼କୁ ଯାତ୍ରା କଲେ ।

ଉରୁବେଲ କାନନ ବର୍ତ୍ତମାନର ବୁଦ୍ଧଗୟା ନିକଟରେ ବିସ୍ତୃତ ଥିଲା । ଏହି ନିବିଡ଼ ନିର୍ଜନ କାନନ ମଧ୍ୟରେ ଗୋଟିଏ ବୃକ୍ଷମୂଳରେ ରାଜକୁମାର ସିଦ୍ଧାର୍ଥ ମାନବଜୀବନର ଦୁଃଖ ନିରାକରଣ ନିମନ୍ତେ କଠୋର ତପସ୍ୟା ଆରମ୍ଭକଲେ । କ୍ରମେ ଅନ୍ୟ ପାଞ୍ଚ ଜଣ ତପସ୍ୱୀ ସିଦ୍ଧାର୍ଥଙ୍କ ମହତ୍ତ୍ୱରେ ଆକୃଷ୍ଟ ହୋଇ ସେଠାରେ ଯୋଗଦାନ କଲେ । ସେମାନଙ୍କର ବିଶ୍ୱାସ ଥିଲା ଯେ, ଏହି ଦେବୋପମ ପୁରୁଷ ନିଶ୍ଚୟ ତପସ୍ୟାରେ ସିଦ୍ଧି ଲାଭକରିବେ । ସେହି ସ୍ଥାନରେ ରହି ସିଦ୍ଧାର୍ଥ ଦୀର୍ଘ ଛଅବର୍ଷକାଳ କଠୋର ତପସ୍ୟାରେ ନିଜ ଶରୀରକୁ ଏପରି ନିର୍ଯ୍ୟାତିତ କଲେ ଯେ, ତାଙ୍କର ଚକ୍ଷୁ କୋଟରଗତ ହେଲା, ଦେହ ଅସ୍ଥିଚର୍ମସାର ହେଲା ଓ ମସ୍ତକରୁ ସମସ୍ତ କେଶ ଅପସାରିତ ହେଇଗଲା । କିନ୍ତୁ ସମସ୍ତ ସାଧନା ସତ୍ତ୍ୱେ ସିଦ୍ଧାର୍ଥ ମୁକ୍ତିର ପନ୍ଥା

ଖୋଜି ପାଇଲେ ନାହିଁ । ଶେଷରେ, ତପଶ୍ଚରଣଦ୍ୱାରା ଜ୍ଞାନଲାଭ ହୁଏ– ଏଥିରୁ ତାଙ୍କର ବିଶ୍ୱାସ ତୁଟିଗଲା । ଛଅ ବର୍ଷ ପରେ ସିଦ୍ଧାର୍ଥ ତପସ୍ୟାରୁ ନିବୃତ୍ତ ହୋଇ ଅନ୍ୟ ସ୍ୱାଭାବିକ ପନ୍ଥା ଅବଲମ୍ବନ କରିବାକୁ ସ୍ଥିରକଲେ ଏବଂ ପୂର୍ବପରି ନିକଟବର୍ତ୍ତୀ ସ୍ରୋତସ୍ୱତୀରେ ସ୍ନାନ କରି କିଛି ଆହାର କରିବାକୁ ଇଚ୍ଛା କଲେ । ଏହି ସମୟରେ ଦେବପ୍ରେରିତବତ୍ ନିକଟବର୍ତ୍ତୀ ଗ୍ରାମର ଶ୍ରେଷ୍ଠୀ-କନ୍ୟା ସୁଜାତା ପାୟସାନ୍ନ ଘେନି ସମ୍ମୁଖରେ ଉପସ୍ଥିତ ହେଲା ଓ ସିଦ୍ଧାର୍ଥଙ୍କୁ ବନଦେବତା ଭାବି ତାଙ୍କ ନିକଟରେ ଅର୍ପଣ କରିଦେଇ ଫେରିଗଲା । ସିଦ୍ଧାର୍ଥ ତାହା ଗ୍ରହଣ କରି କିଞ୍ଚିତ୍ ବଳଲାଭ କରନ୍ତେ ସେଠାରୁ ଉଠି ସ୍ରୋତସ୍ୱତୀର କୂଳେ କୂଳେ ଭ୍ରମଣ କରିବାକୁ ଲାଗିଲେ ଏବଂ ଭାବିବାକୁ ଲାଗିଲେ, 'ମାନବଜୀବନରୁ ଦୁଃଖ-ନିବାରଣର କ'ଣ ପନ୍ଥା ନାହିଁ ? କି ଉପାୟରେ ତାହାର ସନ୍ଧାନ ପାଇବି ?' ଏହା ଭାବି ସେ ନିରଞ୍ଜନା ନଦୀ ତଟରେ ଉପସ୍ଥିତ ହେଲେ । ସନ୍ଧ୍ୟା ସମାଗତ ହୁଅନ୍ତେ ସିଦ୍ଧାର୍ଥ ନଦୀକୂଳସ୍ଥ ଏକ ଅଶ୍ୱତ୍ଥ ତରୁତଳରେ ଉପବେଶନ କରି ପ୍ରତିଜ୍ଞା କଲେ, 'ମୋର ଏ ଶରୀରରୁ ସମସ୍ତ ରକ୍ତ ନିଃଶେଷିତ ହୋଇ ଚର୍ମ ପରିଶୁଷ୍କ ହୋଇଗଲେ ସୁଦ୍ଧା ସତ୍ୟଲାଭ ନ ହେବାପର୍ଯ୍ୟନ୍ତ ମୁଁ ଏଠାରୁ ଉଠିବି ନାହିଁ ।'

ଗଭୀର ମନନ ଫଳରେ ରାତ୍ରିର ଅବସାନ ବେଳକୁ ସିଦ୍ଧାର୍ଥଙ୍କ ଚିତ୍ତରେ ସତ୍ୟ ଆବିର୍ଭୂତ ହୋଇ ତାଙ୍କର ସମସ୍ତ ଅନ୍ତରାତ୍ମାକୁ ଆଲୋକିତ କଲା । ଗଭୀର ଅନ୍ଧକାର ମଧ୍ୟରେ ସେ ସହସା ଆଲୋକରେଖା ଦେଖିପାରିଲେ ଏବଂ ମାନବ-ଜୀବନରେ ଦୁଃଖର କାରଣ ଓ ତା'ର ବିନାଶର ଉପାୟ ଖୋଜି ପାଇଲେ । ସେ ବୁଝିଲେ, ମାନବଜୀବନର ସମସ୍ତ ଦୁଃଖ ତୃଷ୍ଣାରୁ ଉତ୍ପନ୍ନ । ଏହି ତୃଷ୍ଣା ଯୋଗୁହିଁ ମନୁଷ୍ୟ ବାରମ୍ବାର ଏହି ପୃଥିବୀରେ ଜାତ ହୋଇ ନାନା ଦୁଃଖ ଭୋଗକରେ । ମାନବଜୀବନରୁ ଦୁଃଖ-ବିନାଶର ଏକମାତ୍ର ଉପାୟ ତୃଷ୍ଣାର ବିନାଶ । ତୃଷ୍ଣାର ସମୂଳ ବିନାଶ ହେଲେ ମନୁଷ୍ୟ ନିର୍ବାଣ ଲାଭ କରି ପରମ ଶାନ୍ତିର ଅଧିକାରୀ ହୁଏ । ସେ ଆହୁରି ମଧ୍ୟ ବୁଝିଲେ ଯେ, ଯାଗଯଜ୍ଞ ଓ ତପଃସାଧନାରେ ମନୁଷ୍ୟ-ଆତ୍ମାର ମୁକ୍ତି ହୋଇନପାରେ । ସମଗ୍ର ଜଗତ କାର୍ଯ୍ୟକାରଣାତ୍ମକ ନିୟମମାନଙ୍କଦ୍ୱାରା ଚାଳିତ । ପ୍ରତ୍ୟକ୍ଷୀଭୂତ ସକଳ ଘଟନା ପଛରେ କାରଣମାନ ରହିଅଛି ଏବଂ ବର୍ତ୍ତମାନର ଘଟନାମାନଙ୍କରେ ଭବିଷ୍ୟତ୍ ଘଟନାମାନଙ୍କର ବୀଜ ନିହିତ ଅଛି । ଏହି କଠୋର ନିୟମରୁ କାହାରି ଅବ୍ୟାହତି ପାଇବାର ପଥ ନାହିଁ । ମନୁଷ୍ୟମାତ୍ରେ ଏହି ନିୟମର ଅଧୀନ । ମନୁଷ୍ୟର ଇହଜୀବନର ସୁଖ-ଦୁଃଖ ତା'ର ଇହଜୀବନ ବା ପୂର୍ବଜୀବନର ଫଳ ଏବଂ ଭବିଷ୍ୟତ୍ ଜୀବନର ସୁଖ-ଦୁଃଖ ଇହଜୀବନର କର୍ମଉପରେ ନିର୍ଭର କରେ ।

ମନୁଷ୍ୟର ସୁଖ-ଦୁଃଖ ସମ୍ପୂର୍ଣ୍ଣତଃ ତା'ର ନିଜ ହାତରେ । ଶରୀରକୁ ନିର୍ଯ୍ୟାତନା ଦେଇ ବା ଯାଗଯଜ୍ଞ ବାହ୍ୟ ଆଚାରଦ୍ୱାରା ମୁକ୍ତି ଖୋଜିବା ଭ୍ରମ । ତୃଷ୍ଣାହୀନ ପୁଣ୍ୟମୟ ଜୀବନଦ୍ୱାରା ହିଁ ନିର୍ବାଣପ୍ରାପ୍ତି ସମ୍ଭବପର । ଏହି ବୁଦ୍ଧି ବା ଜ୍ଞାନଦ୍ୱାରା ସିଦ୍ଧାର୍ଥଙ୍କର ସକଳ ସନ୍ଦେହ ଦୂର ହେଲା ଏବଂ ଏହା ଲାଭ କରିବାରୁ ସେ ଜଗତରେ 'ବୁଦ୍ଧ' ନାମରେ ପରିଚିତ ହେଲେ ।

ବୁଦ୍ଧ ପ୍ରଥମେ ବିଚାରକଲେ, ଏହି ଯେଉଁ ନୂତନ ସତ୍ୟ ସେ ଲାଭକଲେ, ତାହାଦ୍ୱାରା କେବଳ ନିଜ ଜୀବନକୁ ନିୟମିତ କରିବେ ନା ଜଗତର ସମଗ୍ର ମାନବଜାତିର ହିତଲାଗି ଏହା ପ୍ରଚାର କରିବେ ? ଜୀବ ଓ ମାନବପ୍ରତି ସୀମାହୀନ କରୁଣା ତାଙ୍କୁ ଏହି ସତ୍ୟ ଜଗତର ମଙ୍ଗଳଲାଗି ପ୍ରଚାର କରିବାକୁ ଉଦ୍‌ବୁଦ୍ଧ କଲା । ତହୁଁ ସେ ନୂତନ-ଧର୍ମର ପ୍ରଚାର ଲାଗି ବାରାଣସୀ ଆଡ଼କୁ ଯାତ୍ରା କଲେ । ବାରାଣସୀର ଅଦୂରରେ ମୃଗଦାବ କାନନରେ ସେ ପୂର୍ବପରିଚିତ ପଞ୍ଚ-ସଖାଙ୍କୁ ଭେଟନ୍ତେ ସେମାନଙ୍କର ତୁଷ୍ଟିସାଧନାର୍ଥ ସେହି ସ୍ଥାନରେ, ବର୍ତ୍ତମାନର ସାରନାଥଠାରେ, ବୌଦ୍ଧଧର୍ମର ପ୍ରଥମ ପ୍ରଚାର ଆରମ୍ଭ କଲେ । କ୍ରମେ ପ୍ରଚାର ଓ ଶିଷ୍ୟସଂଖ୍ୟା ବଢ଼ିବାକୁ ଲାଗିଲା । ମହାରାଜ୍ ବିମ୍ବିସାରଙ୍କଠାରୁ ଆରମ୍ଭକରି ସମାଜର ନିମ୍ନତମ ବ୍ୟକ୍ତିଯାଏ, ଜାତିବର୍ଣ୍ଣ-ନିର୍ବିଶେଷରେ ସମସ୍ତଙ୍କ ଲାଗି ଏହି ଧର୍ମର ଦ୍ୱାର ଉନ୍ମୁକ୍ତ ହେଲା । ସାଧାରଣତଃ ଅନଭିଜ୍ଞ ଜନତା, ଧର୍ମର ତତ୍ତ୍ୱ ଅପେକ୍ଷା ତା'ର ବାହ୍ୟିକ ଆଚାରପ୍ରତି ବିଶେଷ ଅନୁରକ୍ତ ହୋଇଥାଏ । ବୁଦ୍ଧ-ପ୍ରଚାରିତ ଧର୍ମରେ ବାହ୍ୟ ଆଚାର ବା ଆରାଧନାର ଆଡ଼ମ୍ବର ଆଦୌ ସ୍ଥାନ ପାଇ ନଥିଲା; କିନ୍ତୁ ତାହା ସତ୍ତ୍ୱେ ଜନସାଧାରଣ ବହୁ ସଂଖ୍ୟାରେ ଯେପରି ଏହା ଗ୍ରହଣ କଲେ, ସେଥିରୁ ବୁଦ୍ଧଙ୍କ ବ୍ୟକ୍ତିତ୍ୱ ଓ ତାଙ୍କ ପ୍ରଚାରିତ ଧର୍ମର ଉଦାରତାହିଁ ପରିଚୟ ମିଳେ ।

ଊନତ୍ରିଂଶତ୍ ବର୍ଷ ବୟସରେ ସିଦ୍ଧାର୍ଥ ଗୃହତ୍ୟାଗ କଲେ । ଛଅ ବର୍ଷ ତପସ୍ୟା ପରେ ପଞ୍ଚତ୍ରିଂଶତ୍ ବର୍ଷ ବୟସରେ ସେ ବୁଦ୍ଧତ୍ୱ ଲାଭ କଲେ । ଏହି ତରୁଣ ବୟସରୁ ଜୀବନର ଶେଷଯାଏ ତାଙ୍କର ପ୍ରତ୍ୟେକ ମୁହୂର୍ତ୍ତ ନୂତନ ଧର୍ମର ପ୍ରଚାରରେ ନିୟୋଜିତ ହେଲା । ସିଦ୍ଧାର୍ଥ ବୁଦ୍ଧତ୍ୱ ଲାଭ କରିଥିବା ଜାଣି ରାଜା ଶୁଦ୍ଧୋଦନ ପୁତ୍ରକୁ ନିଜ ରାଜ୍ୟକୁ ଯିବାପାଇଁ ନିମନ୍ତ୍ରଣ କଲେ । ବହୁଶିଷ୍ୟ-ପରିବେଷ୍ଟିତ ହୋଇ ବୁଦ୍ଧ କପିଳବାସ୍ତୁରେ ପ୍ରବେଶ କରନ୍ତେ ସମଗ୍ର ଶାକ୍ୟରାଜ୍ୟ ଆନନ୍ଦରେ ବିହ୍ୱଳ ହୋଇଗଲା । କିନ୍ତୁ ମୁଣ୍ଡିତମସ୍ତକ, ଭିକ୍ଷୁପରିଧେୟ, ସ୍ଥୂଳ ଦରିଦ୍ର ବାସ ଓ ଭିକ୍ଷାପାତ୍ର ଘେନି ସିଦ୍ଧାର୍ଥ ଯେତେବେଳେ ନିଜ ରାଜଧାନୀର ରାଜପଥରେ ଭିକ୍ଷା କରିବାକୁ ବାହାରିଲେ, ନାଗରିକମାନେ ସ୍ତବ୍ଧ ହୋଇ ଦଣ୍ଡାୟମାନ ରହିଲେ । ତାଙ୍କର ଜଣେ

ପିତୃବ୍ୟ ଆଉ ସହ୍ୟ କରିନପାରି, ରାଜପଥକୁ ଆସି ଗୌତମଙ୍କୁ ପ୍ରକାଶ୍ୟଭାବରେ ତିରସ୍କାର କଲେ ଓ କହିଲେ ଯେ ଶାକ୍ୟବଂଶ ତାଙ୍କଦ୍ୱାରା ଲଜ୍ଜିତ ଓ କଳଙ୍କିତ ହେଲା । ଗୌତମ ପ୍ରଶ୍ନ କଲେ, ''ମୋର ଅପରାଧ କ'ଣ ?'' ପିତୃବ୍ୟ କହିଲେ, ''କପିଳବାସ୍ତୁର କ୍ଷତ୍ରିୟ ରାଜବଂଶରେ କିଏ ଏପରି ଦୀନଦରିଦ୍ର ପରି ଭିକ୍ଷା କରିଥିଲା ?'' ଗୌତମ ଉତ୍ତର କଲେ, ''ପୂର୍ବଯୁଗର ବୁଦ୍ଧଗଣ ଯାହା କରିଅଛନ୍ତି ମୁଁ ତାହାହିଁ କରିଛି ।'' ଏହି ସମୟରେ ନିଜେ ଶୁଦ୍ଧୋଦନ ସେ ସ୍ଥାନରେ ଉପଗତ ହେଲେ ଏବଂ ସିଦ୍ଧାର୍ଥ ଓ ସମସ୍ତ ଶିଷ୍ୟଙ୍କୁ ଭୋଜନ ଲାଗି ନିମନ୍ତ୍ରଣ କଲେ । ରାଜପ୍ରାସାଦରେ ଉପସ୍ଥିତ ହେଲା ପରେ, ରାଜାନ୍ତଃପୁରର ସୀମନ୍ତିନୀଗଣ ବୁଦ୍ଧଙ୍କୁ ବନ୍ଦନା କରିବାକୁ ଆସିଲେ । କିନ୍ତୁ ସେମାନଙ୍କ ମଧ୍ୟରେ ଯଶୋଧାରାଙ୍କୁ ନ ଦେଖି ବୁଦ୍ଧ ନିଜେ ଅନ୍ତଃପୁରକୁ ଯାଇ ଯଶୋଧାରାଙ୍କ କକ୍ଷରେ ପ୍ରବେଶକଲେ । ସ୍ୱାମୀଙ୍କର ଏହି ସନ୍ନ୍ୟାସୀ ବେଶ ଦେଖି ଯଶୋଧାରା ବିଳାପରେ ବିହ୍ୱଳା ହୋଇ ପତିଙ୍କ ପଦତଳେ ଲୁଣ୍ଠିତ ହୋଇପଡ଼ିଲେ । ବୁଦ୍ଧ ତାଙ୍କୁ କିଛି ସାନ୍ତ୍ୱନା ଦେଇ ପୁଣି ଫେରିଆସିଲେ ।

କପିଳବାସ୍ତୁରେ କିଛି ଦିନ ରହି ବୁଦ୍ଧ ପୁଣି ପ୍ରଚାର କାର୍ଯ୍ୟରେ ବାହାରିପଡ଼ିଲେ । ବର୍ଷାକାଳ ଛଡ଼ା ବର୍ଷର ଅନ୍ୟ ସମସ୍ତ ଋତୁରେ ତାଙ୍କର ଶିଷ୍ୟମାନେ ଜନସମାଜରେ ଗ୍ରାମେ ଗ୍ରାମେ ବୁଲି ନୂତନ ଧର୍ମ ପ୍ରଚାର କରିବାକୁ ଲାଗିଲେ । ବର୍ଷା ଋତୁରେ ପ୍ରତ୍ୟାବୃତ୍ତ ଶିଷ୍ୟମାନଙ୍କୁ ସଙ୍ଗରେ ଘେନି ବୁଦ୍ଧଦେବ କୌଣସି ବନ, ନଗରର ଉପକଣ୍ଠ ବା ପର୍ବତଗୁହାରେ ଆଶ୍ରୟ ନେଇ ମନ୍ତ୍ର ଓ ଉପଦେଶ ଦାନରେ ସମୟ ଅତିବାହିତ କରୁଥିଲେ । ବୁଦ୍ଧଙ୍କ ଶିଷ୍ୟମାନଙ୍କ ମଧ୍ୟରେ ଶ୍ରାବସ୍ତୀରେ ପ୍ରସିଦ୍ଧ ଶ୍ରେଷ୍ଠୀ ଅନାଥପିଣ୍ଡକ ଏକତମ । ବୁଦ୍ଧଙ୍କ ସେବାରେ ନିୟୋଜିତ ହେବାପାଇଁ ସେ ବହୁ ସହସ୍ର ମୁଦ୍ରା ବ୍ୟୟରେ ଶ୍ରାବସ୍ତୀ ସମୀପରେ ଦ୍ୱୈତବନ ନାମକ ଉପବନ କ୍ରୟ କରି, ତହିଁରେ ଅସଂଖ୍ୟ ବାସଗୃହ ନିର୍ମାଣ କରାଇଦେଇଥିଲେ । ବୁଦ୍ଧଦେବ ଅନେକ ସମୟ ଏହି ଦ୍ୱୈତବନରେ ଅତିବାହିତ କରୁଥିଲେ ।

କ୍ରମେ ନୂତନ ସତ୍ୟ ଗ୍ରାମେ ଗ୍ରାମେ ଓ ନଗରେ ନଗରେ ପ୍ରଚାର କରି ବୁଦ୍ଧଦେବ ବୃଦ୍ଧ ହୋଇପଡ଼ିଲେ । ସେ ନିପୁଣ ରଥୀ ଓ ଅଶ୍ୱାରୋହୀ ଥିଲେ ଏବଂ ରଥ ଓ ଅଶ୍ୱ ତାଙ୍କୁ ଦୁଷ୍ପ୍ରାପ୍ୟ ନଥିଲା; କିନ୍ତୁ ଏହି ନିରବଚ୍ଛିନ୍ନ ପ୍ରଚାରକ୍ରିୟାରେ ସେ କେବେ ଯାନବାହନ ବ୍ୟବହାର କରୁନଥିଲେ । କେବଳ ପଦବ୍ରଜରେ, ବିଳାସରେ ଲାଳିତପାଳିତ ଏହି ରାଜପୁତ୍ର, ଜନତାର କଲ୍ୟାଣ ଲାଗି, କପିଳବାସ୍ତୁଠାରୁ ରାଜ-ଗୃହଯାଏ ବିରାଟ ଭୂଖଣ୍ଡ ବାରମ୍ବାର ଭ୍ରମଣ କରିଥିଲେ ।

ଥରେ ରାଜଗୃହଠାରୁ ଫେରିଲାବେଳେ ବୁଦ୍ଧ ଅତ୍ୟନ୍ତ ଦୁର୍ବଳତା ବୋଧ କଲେ । ସେ ମନେକଲେ, ତାଙ୍କର ଜୀବଲୀଳା ଶେଷହୋଇଆସୁଛି । ବର୍ତ୍ତମାନର ପାଟନା ନିକଟରେ ଶେଷବାର ଲାଗି ସେ ଗଙ୍ଗା ପାର ହୋଇ ଉତ୍ତର-ପଶ୍ଚିମ ଦିଗରେ କ୍ରମେ ଯାତ୍ରା କରି କୁଶୀନଗର ନାମକ କ୍ଷୁଦ୍ର ନଗରର ଉପକଣ୍ଠରେ ଏକ ବିସ୍ତୀର୍ଣ୍ଣ ଶାଳବନରେ ସଶିଷ୍ୟ ଉପସ୍ଥିତ ହେଲେ । ସେଠାରେ ତାଙ୍କୁ ଏତେ ନିସ୍ତେଜ ବୋଧ ହେଲା ଯେ, ସେ ଶିଷ୍ୟମାନଙ୍କୁ ଗୋଟିଏ ଶଯ୍ୟା ପ୍ରସ୍ତୁତ କରିବାକୁ କହିଲେ । ଶିଷ୍ୟବର୍ଗ ଆଚାର୍ଯ୍ୟଙ୍କର ଶେଷମୁହୂର୍ତ୍ତ ନିକଟ ଜାଣି କରୁଣଭାବରେ ବିଳାପ କରିବାକୁ ଲାଗିଲେ । ବୁଦ୍ଧ ସେମାନଙ୍କୁ କହିଲେ, ''ଶୋକ କରିବା ଅନୁଚିତ । ଜଗତର ନିୟମ ଅନୁଯାୟୀ ଗ୍ରହ-ଉପଗ୍ରହଠାରୁ ଆରମ୍ଭ କରି କୀଟ-ପତଙ୍ଗ ପର୍ଯ୍ୟନ୍ତ ସମସ୍ତଙ୍କୁ ବିନାଶର ସମ୍ମୁଖୀନ ହେବାକୁ ପଡ଼ିବ । ଧର୍ମର ଅନୁସରଣ କରି ନିର୍ବାଣ ଲାଭ ଲାଗି ଯତ୍ନ କଲେହିଁ ମନୁଷ୍ୟ ପରମ ଶାନ୍ତି ପାଇପାରିବ ।'' ଏହିପରି ଉପଦେଶ ଦେଉ ଦେଉ ଅଶୀତିବର୍ଷ ବୟସରେ ବୁଦ୍ଧଦେବ ପୃଥିବୀରେ ଏକ ବିରାଟ ଧର୍ମ ଓ ମହାନ୍ ଆଦର୍ଶ ରଖିଦେଇ ଇହଲୀଳା ସାଙ୍ଗ କଲେ । ସେହି ଦିନଠାରୁ ଏଯାବତ୍ ଜଗତର କୋଟି କୋଟି ନରନାରୀ-କଣ୍ଠରେ 'ବୁଦ୍ଧଂ ଶରଣଂ ଗଚ୍ଛାମି, ଧର୍ମଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି' ଏହି ତ୍ରିଶରଣ ମନ୍ତ୍ର ପ୍ରତ୍ୟହ ପ୍ରତିଧ୍ୱନିତ ହୋଇ ପୃଥିବୀର ବାୟୁମଣ୍ଡଳକୁ ପବିତ୍ର କରି ରଖିଛି ।

## ବୌଦ୍ଧ ଜାତକ

ବୌଦ୍ଧଧର୍ମର ଭିତ୍ତି ଜନ୍ମାନ୍ତରବାଦ ଉପରେ ପ୍ରତିଷ୍ଠିତ । ଜୀବନରେ ତୃଷ୍ଣା ଥିବାଯାଏ ଜୀବକୁ ବାରମ୍ବାର ଜନ୍ମ ଗ୍ରହଣ କରିବାକୁ ହୁଏ ଓ ପୂର୍ବଜନ୍ମର କର୍ମ ଅନୁସାରେ ପରଜନ୍ମରେ ଭୋଗ ହୁଏ । ଯେଉଁମାନେ ବୁଦ୍ଧତ୍ୱ ଲାଭକରନ୍ତି, ସେମାନେ ଏକ ଜନ୍ମରେ ତାହା ପାଇପାରନ୍ତି ନାହିଁ; ତାହା ବହୁ ଜନ୍ମର ପୁଣ୍ୟକର୍ମର ଫଳ । ସ୍ୱୟଂ ଗୌତମଙ୍କୁ ମଧ୍ୟ ଏହିପରି ବହୁ ଜନ୍ମ ମଧ୍ୟ ଦେଇ ଆସିବାକୁ ପଡ଼ିଥିଲା । ପ୍ରତ୍ୟେକ ଜନ୍ମରେ କୌଣସି ଏକ ପୁଣ୍ୟକର୍ମ ଯୋଗୁ ସେ ଅପର ଜନ୍ମରେ ଉଚ୍ଚତର ଜୀବନ ଲାଭ କରିଅଛନ୍ତି ଏବଂ ସେହି ପରମ୍ପରାକ୍ରମେ ସେ ଶେଷରେ ବୁଦ୍ଧତ୍ୱ ଲାଭ କଲେ । ପ୍ରାକ୍ତନ ଜନ୍ମମାନଙ୍କରେ ବୁଦ୍ଧ ଯେ କେବଳ ମନୁଷ୍ୟଜୀବନ ଯାପନ କରିଅଛନ୍ତି ତାହା ନୁହେଁ; ନାନା ପଶୁ, ପକ୍ଷୀ, ସରୀସୃପ, କୀଟ ଓ ପତଙ୍ଗଭାବରେ ମଧ୍ୟ ସେ ସ୍ୱଜାତୀୟ ଅପର ଜୀବମାନଙ୍କର କଲ୍ୟାଣକରି ପୁଣ୍ୟାର୍ଜନ କରିଅଛନ୍ତି ।

ପୂର୍ବଜନ୍ମମାନଙ୍କରେ ବୁଦ୍ଧଙ୍କର ଏହି ଅବତାରମାନଙ୍କୁ 'ବୋଧିସତ୍ତ୍ୱ' କୁହାଯାଏ ଏବଂ ବୋଧିସତ୍ତ୍ୱମାନଙ୍କର ଚରିତ-ବର୍ଣ୍ଣନାକାରୀ ଗଳ୍ପକୁ 'ଜାତକ' କୁହାଯାଏ । ଏହି 'ଜାତକ' ମାନଙ୍କର ଗଳ୍ପ ନାନା ଆକାରରେ ନାନା ଭାବରେ ପୃଥିବୀର ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହୋଇପଡ଼ିଛି । ଜଗତ୍‌ପ୍ରସିଦ୍ଧ ଈଶପୀୟ ଗଳ୍ପସମୂହ ଏହି ବୌଦ୍ଧ ଜାତକ ମାନଙ୍କରୁହିଁ ଜାତ ।

ଏହି ବୌଦ୍ଧ ଜାତକମାନ ଅତ୍ୟନ୍ତ ଶିକ୍ଷାପ୍ରଦ । ଏଥିରୁ ଅଧିକାଂଶ ସ୍ୱୟଂ ଗୌତମଙ୍କର ମୁଖନିଃସୃତ । ଦ୍ୱୈତବନରେ ବା ଅନ୍ୟ ବିହାରମାନଙ୍କରେ ଅବସ୍ଥାନ କାଳରେ, ଗୌତମ ସମାଗତ ଜନପଦବାସୀମାନଙ୍କୁ ଗଳ୍ପଚ୍ଛଳରେ ଧର୍ମର ତତ୍ତ୍ୱ ବୁଝାଉଥିଲେ । ଗଳ୍ପଚ୍ଛଳରେ ଧର୍ମ ଓ ନୀତି ଶିକ୍ଷା ଦେବା ଜଗତରେ ବୁଦ୍ଧଙ୍କଠାରୁ ହିଁ ଆରବ୍ଧ ହୋଇଅଛି ଏବଂ ବୁଦ୍ଧଙ୍କ ମୁଖନିଃସୃତ କେତେକ ଗଳ୍ପ ଅବିକଳଭାବରେ ଖ୍ରୀଷ୍ଟୀୟ ଧର୍ମଗ୍ରନ୍ଥ ବାଇବେଲ୍‌ରେ ଖ୍ରୀଷ୍ଟଙ୍କ ମୁଖରେ ଦିଆଯାଇଅଛି । ଏହି ଗଳ୍ପମାନଙ୍କର ପ୍ରଧାନ ଉପଜୀବ୍ୟ ବିଷୟ ଆତ୍ମତ୍ୟାଗ । ଅପର ସାଧାରଣର ମଙ୍ଗଳ ଲାଗି କିପରି ନିଜକୁ ବଳି ଦିଆଯାଇପାରେ, ଭିନ୍ନ ଭିନ୍ନ ଜୀବାବତାରରେ ବୁଦ୍ଧ ତାହାହିଁ ଦେଖାଇଯାଇଅଛନ୍ତି । ନିମ୍ନରେ ଦୃଷ୍ଟାନ୍ତ ସ୍ୱରୂପ ଗୋଟିଏ ବୌଦ୍ଧ ଜାତକ ଦିଆଗଲା—

ବୋଧିସତ୍ତ୍ୱ ଥରେ ଗୋଟିଏ ମୃଗଦଳର ଅଧିପତି ହୋଇଥିଲେ । ଗୋଟିଏ ପରମରମଣୀୟ ଅଧିତ୍ୟକାରେ ଏହି ମୃଗଦଳ ନିର୍ଭୟରେ ବାସକରୁଥିଲେ । ସେମାନେ ପ୍ରାୟ ସହସ୍ରସଂଖ୍ୟକ ଥିଲେ ଏବଂ ମୃଗାଧିପତି ଦେଖିବାକୁ ଅତ୍ୟନ୍ତ ହୃଷ୍ଟପୁଷ୍ଟ ଓ ସୁନ୍ଦର ଥିଲେ ଏବଂ ନିଜ ଦଳର ଅତ୍ୟନ୍ତ ଯତ୍ନ ନେଉଥିଲେ । ଦିନେ ଜନୈକ ବ୍ୟାଧ ଏହି ଦଳପତି ଓ ତାଙ୍କର ବହୁସଂଖ୍ୟକ ଦଳକୁ ଦେଖିପାରିଲା ଏବଂ ରାଜାଙ୍କ ନିକଟକୁ ଯାଇ ସମସ୍ତ ବିଷୟ ଜଣାଇଦେଲା । ରାଜା ଉତ୍ସାହିତ ଚିତ୍ତରେ ସୁଖକର ମୃଗୟା ଲାଗି ତାଙ୍କର ସୈନ୍ୟମାନଙ୍କୁ ଘେନି ଏହି ଦଳକୁ ଘେରିପକାଇଲେ ।

ଦଳପତି, କି ଉପାୟରେ ମୃଗମୃଗୀମାନଙ୍କର ପ୍ରାଣରକ୍ଷା ହେବ, ତାହା ଭାବିବାକୁ ଲାଗିଲେ । ସେ ଦେଖିଲେ, ଅଧିତ୍ୟକାର ନିମ୍ନରେ ଗୋଟିଏ ବେଗଗାମିନୀ ସ୍ରୋତସ୍ୱତୀକୁ ଅତିକ୍ରମ କରିବା ବ୍ୟତୀତ ପଳାୟନର ଅନ୍ୟ ପନ୍ଥା ନାହିଁ । କିନ୍ତୁ ମୃଗୀ ଓ ଶିଶୁମୃଗମାନଙ୍କର ସେହି ଖରସ୍ରୋତା ଓ ଫେନବତୀ ନଦୀକୁ ପାର ହେବା ଅସମ୍ଭବ ବୋଧ ହେଲା । କ'ଣ କରାଯିବ ? ନିଜର ଜୀବନକୁ ଭୁଲିଯାଇ ଓ କେବଳ ଗୋଷ୍ଠୀର ମଙ୍ଗଳ ମନରେ ଧାରଣକରି ଦଳପତି ତରଙ୍ଗିଣୀ ମଧ୍ୟକୁ ଝାମ୍ପ ପ୍ରଦାନ କଲେ ଏବଂ ମୃଗମୃଗୀମାନଙ୍କୁ ପ୍ରଥମେ ତାଙ୍କର ପୃଷ୍ଠ ଉପରକୁ ଡେଇଁ, ସେହିଠାରୁ ଅପର ତୀରକୁ ଡେଇଁ ଯିବାକୁ ଆହ୍ୱାନ କଲେ । ଗୋଟିଏ ପରେ

ଗୋଟିଏ ହୋଇ ସମସ୍ତ ଦଳ ପ୍ରଥମେ ଦଳପତିଙ୍କ ପୃଷ୍ଠକୁ ଓ ସେଠାରୁ ଅପର ତୀରକୁ ଡେଇଁ, ସେହି ବିପଜ୍ଜନକ ତରଙ୍ଗିଣୀକୁ ପାର ହୋଇଗଲେ । କିନ୍ତୁ ଶତ ଶତ ହରିଣ-ହରିଣୀର ବେଗ-ପତିତ ଖୁରାଘାତରେ ଦଳପତି-ପୃଷ୍ଠରୁ ମାଂସ ଛିନ୍ନ ହୋଇ ଅସ୍ଥି ଦେଖାଗଲା । ସେ ମୃତ୍ୟୁ ନିକଟ ଜାଣି ଚାହିଁଲା ବେଳକୁ ଦେଖିପାରିଲେ, ଗୋଟିଏ ମୃଗଶିଶୁ ପଛରେ ରହିଯାଇଛି । ଦଳପତି ମରଣଯନ୍ତ୍ରଣା ଭୁଲିଯାଇ ସେହିଠାରେ ନିର୍ବିକାର ଭାବରେ ଦଣ୍ଡାୟମାନ ରହିଲେ । ମୃଗଶିଶୁଟି ଲମ୍ଫ ଦେଇ ଆରପାଖକୁ ଉତ୍ତୀର୍ଣ୍ଣ ହେଲା ଏବଂ ବୋଧସତ୍ତ୍ୱ ଅକଥନୀୟ ବେଦନାରେ ସେହି ତରଙ୍ଗିଣୀ-ଜଳରେ ନିପତିତ ହୋଇ ପ୍ରାଣତ୍ୟାଗ କଲେ ।

## କ୍ଷମା

ଜଗତର ସକଳ ଧର୍ମର ଉପାସନାରେ ମନୁଷ୍ୟ ନିଜର ଦୋଷ, ଅପରାଧ କ୍ଷମା କରିବାକୁ ଭଗବାନଙ୍କୁ ପ୍ରାର୍ଥନା କରୁଅଛି । ଯେଉଁମାନେ ଈଶ୍ୱରୋପାସନା କରନ୍ତି, ସେମାନଙ୍କର ବ୍ୟକ୍ତିଗତ ଜୀବନରେ ମଧ୍ୟ ଏହା ଅତ୍ୟନ୍ତ ସତ୍ୟ । ଅଜ୍ଞାନରେ ବା ସଜ୍ଞାନରେ ଆମ୍ଭେମାନେ ଦିନର ପ୍ରତି ମୁହୂର୍ତ୍ତରେ ଅନେକ ଅପରାଧ କରିପକାଉଁ, ଯାହାର ନ୍ୟାୟ ବିଚାର ହେଲେ ଆମ୍ଭେମାନେ କଠିନ ଶାସ୍ତି ଲାଭକରନ୍ତୁ; କିନ୍ତୁ ଜଗତର ଅଦୃଶ୍ୟ ବିଚାରକର୍ତ୍ତା ଆମ୍ଭମାନଙ୍କର ସେସବୁ ଅପରାଧ କ୍ଷମା କରନ୍ତି । ମନୁଷ୍ୟର ଦୁର୍ବଳତା ଓ ଅପରାଧପ୍ରବଣତା ଜଗତର ସୃଷ୍ଟିକର୍ତ୍ତାଙ୍କୁହିଁ ଜଣା; ତେଣୁ ତାଙ୍କର ଅନୁକମ୍ପା ଦୁର୍ବଳ ମନୁଷ୍ୟକୁ କ୍ଷମା ଦିଏ । କିନ୍ତୁ ଯେଉଁ କ୍ଷମା ଆମ୍ଭେମାନେ ସୃଷ୍ଟିକର୍ତ୍ତାଙ୍କୁ ଭିକ୍ଷା କରୁଁ, ତାହା ଅନ୍ୟମାନଙ୍କୁ ଦେଉଁ କି ? ମନୁଷ୍ୟର ଏକ ଦୋଷ ଏହି ଯେ, ସେ ଆତ୍ମଦୋଷ ଓ ଆତ୍ମଦୁର୍ବଳତା ବୁଝିପାରେନାହିଁ; କିନ୍ତୁ ପରଦୋଷ ଓ ପରଦୁର୍ବଳତା ଦେଖିପାରିବାରେ ସେ ଅତ୍ୟନ୍ତ ତତ୍ପର । ଗ୍ରୀକ୍ ଈଷପ୍‌ଙ୍କର ଗୋଟିଏ ଗଳ୍ପ ଏହି ଯେ, ପ୍ରତ୍ୟେକ ମନୁଷ୍ୟ ନିଜ କାନ୍ଧରେ ସବୁବେଳେ ଦୁଇଟି ଭାର ଆଗପଛ କରି ବହନ କରନ୍ତି । ଆଗ ଭାରଟି ପରଦୋଷରେ ଓ ପଛ ଭାରଟି ଆତ୍ମଦୋଷରେ ଭର୍ତ୍ତି ହୋଇଥାଏ । ପଛ ଭାରଟି ଚକ୍ଷୁର ଅନ୍ତରାଳରେ ରହିବାରୁ ସେ ଆତ୍ମଦୋଷ ଦେଖିପାରେ ନାହିଁ । କିନ୍ତୁ ଆଗ ଭାରଟି ସବୁବେଳେ ଆଖି ଆଗରେ ଥିବାରୁ ସେ କେବଳ ପରଦୋଷଗୁଡ଼ିକ ଦେଖିବାକୁ ପାଏ । ଆମ୍ଭମାନଙ୍କ ଦୈନନ୍ଦିନ ଜୀବନର ଗୋଟିଏ ଦିଗ ଏହି ରୂପକରେ ଅତ୍ୟନ୍ତ ସୁନ୍ଦରଭାବରେ ପ୍ରକଟିତ ହୋଇଅଛି । କାରଣ ଏହା ସମସ୍ତଙ୍କର ଅନୁଭୂତି ଯେ, ସାଧାରଣତଃ ଲୋକେ

ବିଚାରନ୍ତି, ସେମାନଙ୍କ ନିଜର କୌଣସି ଅପରାଧ ନାହିଁ । ଜଗତର ଯେତେ ଅନ୍ୟାୟ ସବୁ ଅନ୍ୟମାନେ କରୁଛନ୍ତି ।

ନିଜ ଦୋଷ-ଦୁର୍ବଳତାକୁ ନ ପାସୋରି ପରର ଅପରାଧକୁ ଦୟାଳୁଭାବରେ ବିଚାର କରିବା ସମୀଚୀନ କଥା । ଅପରାଧର ବିଚାର କଲାବେଳେ କରୁଣା ପ୍ରଦର୍ଶନ କଲେ ସେଥିରେ ମନୁଷ୍ୟର ଦେବତ୍ୱ ବିକଶିତ ହୁଏ, ଏହା ସେକ୍‌ସପିୟର ତାଙ୍କର ଏକ ପ୍ରସିଦ୍ଧ ନାଟକରେ ସୁନ୍ଦରଭାବରେ ବ୍ୟକ୍ତ କରିଅଛନ୍ତି । ପ୍ରତିହିଂସା ଓ ଶାସ୍ତି ଅପେକ୍ଷା କ୍ଷମା ଓ କରୁଣାରେ ଯେ ମନୁଷ୍ୟର ଦେବତ୍ୱ ବିକଶିତ ହୁଏ, ତାହା କେହି ଅସ୍ୱୀକାର କରିବେ ନାହିଁ । ଏକେ ତ ଭ୍ରମପ୍ରମାଦ ସମସ୍ତଙ୍କ ଜୀବନରେ ଘଟେ; ତେଣୁ ଅନେକ କ୍ଷେତ୍ରରେ କ୍ଷମାଚରଣ କରିବା ଓ ଦଣ୍ଡ ଦେଲେ ମଧ୍ୟ ଅପରାଧୀ ପ୍ରତି ମାନବିକ ବ୍ୟବହାର କରିବା ଉଚିତ । ତା' ପରେ ଆହୁରି ବିଚାର କରିବାର କଥା ଏହି ଯେ, ଅନ୍ୟାୟ ଓ ଅପରାଧ ଅନେକ କ୍ଷେତ୍ରରେ ଅପରାଧୀର ଚିତ୍ତବୃତ୍ତି ଅପେକ୍ଷା ପାରିପାର୍ଶ୍ୱିକ ଘଟନା ଉପରେ ଅଧିକ ନିର୍ଭର କରେ । ଦେଖାଯାଇଛି ଯେ, ଅନେକ ସାଧୁଲୋକ ମଧ୍ୟ ଅବସ୍ଥାଚକ୍ରରେ ଏପରି ଅନ୍ୟାୟ କରିଅଛନ୍ତି, ଯାହା ଭିନ୍ନ ଅବସ୍ଥାରେ ଥିଲେ ସେ କେବେହେଲେ କରିନଥାନ୍ତେ । ଦୁର୍ଭିକ୍ଷବେଳେ କ୍ଷୁଧାଯନ୍ତ୍ରଣା ସହ୍ୟ କରିନପାରି ମାଆ ପ୍ରାଣର ଶିଶୁକୁ ସାମାନ୍ୟ ଖାଦ୍ୟଲାଗି ବିକ୍ରୟ କରିଦେବାର ଓ ଆହାରବେଳେ ନିଜ ସନ୍ତାନମାନଙ୍କ ସଙ୍ଗେ କଳହ କରିବାର ଦେଖାଯାଇଛି । ଜୀବନରେ ଏପ୍ରକାର ସାଂଘାତିକ ଅବସ୍ଥାରେ ପଡ଼ିଲେ, ପ୍ରତ୍ୟେକ ମନୁଷ୍ୟ ଯେ ଏପରି ଜଘନ୍ୟ ଆଚରଣ କରିବେ, ଏଥିରେ ସନ୍ଦେହ ନାହିଁ । ଜୀବନରେ ଏପରି ଆହୁରି ନାନାପ୍ରକାର ଘଟନାଚକ୍ର ଅଛି ଯେଉଁଥିରେ ଅନ୍ୟାୟ-ଅପରାଧ କରିବା ବିଶେଷ ବିଚିତ୍ର କଥା ନୁହେଁ । ଏକେ ତ ମନୁଷ୍ୟ ଭ୍ରମପ୍ରବଣ, ତା'ପରେ ଭ୍ରମ-ପ୍ରମାଦପାଇଁ ଜଗତରେ ପ୍ରଲୋଭନ ଓ ଉପାଦାନର ଅଭାବ ନାହିଁ । ଏସବୁ ଦୃଷ୍ଟିରେ ମନୁଷ୍ୟ ପ୍ରତି କଠୋର ବ୍ୟବହାର ନ କରି ଅନୁକମ୍ପା ଓ କ୍ଷମା କରିବା ଯେ ସର୍ବଥା ବିଧେୟ, ତାହା କେହି ଅସ୍ୱୀକାର କରିବେନାହିଁ ।

ତା'ପରେ କ୍ଷମା ଓ କରୁଣା କୋମଳ ବ୍ୟବହାରଦ୍ୱାରା ଅପରାଧୀ ହୃଦୟରେ ଅନେକ ସମୟରେ ଦେବତ୍ୱର ବିକାଶ ହୁଏ – ଶାସ୍ତି ଓ ଦଣ୍ଡ ଦ୍ୱାରା ସେପରି ହେବାର କେବେ ଦେଖାଯାଇନାହିଁ । ଶାସ୍ତି ଦେବାର ଏକମାତ୍ର ଉଦ୍ଦେଶ୍ୟ ଏହି ଯେ, ତଦ୍ୱାରା ଅପରାଧୀର ଚରିତ୍ର ସଂଶୋଧିତ ହେବ । କିନ୍ତୁ ଯେପରି ଦେଖାଯାଉଛି, କଠିନ ଶାସ୍ତି ଓ କାରାଗାରର ଅମାନୁଷିକ ଅତ୍ୟାଚାର-ଫଳରେ ଅଧିକାଂଶ ଅପରାଧୀଙ୍କର ଚରିତ୍ର ଚିରକାଳଲାଗି ନଷ୍ଟ ହୁଏ । ଏହି ଅପରାଧୀମାନେ ଯଦି କରୁଣା ଓ ମାନବିକ

ବ୍ୟବହାର ପାଉଥାନ୍ତେ, ତେବେ ଏହା ନିଶ୍ଚିତ କଥା ଯେ, ସେମାନଙ୍କ ଚରିତ୍ର ବହୁ ପରିମାଣରେ ସଂଶୋଧିତ ହୋଇପାରନ୍ତା ।

କ୍ଷମାକୁ କେତେକ ଲେଖକ 'ମହତ୍ତର ପ୍ରତିହିଂସା' ବୋଲି ଆଖ୍ୟା ଦେଇଅଛନ୍ତି । କାରଣ ପ୍ରତିହିଂସା ପଶୁବୃତ୍ତିକୁ ଜାଗ୍ରତ କରି ଜଗତରେ ଅପରାଧ ବଢ଼ାଏ ମାତ୍ର; କିନ୍ତୁ କ୍ଷମା ମାନବ ପ୍ରାଣରେ ଦେବଭାବର ସଞ୍ଚାର କରି ଅପରାଧକୁ ସମୂଳେ ନଷ୍ଟ କରେ । ସେଥିପାଇଁ ଆମ୍ଭମାନଙ୍କର ପ୍ରତ୍ୟେକଙ୍କ ଜୀବନରେ କ୍ଷମାବୃତ୍ତିର ଅନୁଶୀଳନ କରିବା ଉଚିତ । ଆମ୍ଭେମାନେ ଯେତେବେଳେ ଜାଣୁ ଯେ, ଆମ୍ଭମାନଙ୍କର ସମସ୍ତଙ୍କ ଜୀବନରେ ଭ୍ରମ-ପ୍ରମାଦ ଅଛି ଓ ଅବସ୍ଥା ବିଶେଷରେ ଅନ୍ୟ ଜଣେ ଯେପରି ଅନ୍ୟାୟ କରିଛି, ଆମ୍ଭେମାନେ ପ୍ରତ୍ୟେକେ ସେହିପରି କରନ୍ତେ, ତେତେବେଳେ ଆମ୍ଭେମାନେ ଅପର ସାଧାରଣଙ୍କର ବିଚାର ବା ସେମାନଙ୍କ ପ୍ରତି ବ୍ୟବହାର କଲାବେଳେ କ୍ଷମାଶୀଳ ହେବା ଉଚିତ ।

## ଧର୍ମବ୍ୟାଧ

ପୌରାଣିକ ଯୁଗରେ କୌଶିକ ନାମକ ଏକ ବ୍ରାହ୍ମଣ ଯୁବକ ଯୋଗ-ସାଧନା କରିବାଲାଗି ନିଜର ବୃଦ୍ଧ ପିତାମାତାଙ୍କୁ ପରିତ୍ୟାଗ କରି ବଣକୁ ପଳାଇଗଲେ । ବହୁ ବର୍ଷ କଠୋର ସାଧନାରେ ସେ ଅନେକ ଅଲୌକିକ ଶକ୍ତି ଲାଭ କଲେ । ତାହାପରେ ସେ ଲୋକାଳୟକୁ ଫେରିଆସିବାକୁ ବାହାରିଲେ । ପଥମଧ୍ୟରେ ତପ୍ତ ରୌଦ୍ର ଓ ପଥକ୍ଳାନ୍ତି ଯୋଗୁ ସେ ଗୋଟିଏ ବୃକ୍ଷତଳେ ବିଶ୍ରାମ କରୁ କରୁ ଶୋଇପଡ଼ିଲେ । ଅପରାହ୍ନ ହେଲା । କୌଶିକ ନିଦ୍ରାରୁ ଉଠି ହାଇମାରି ଉପରକୁ ଅନାଇଲାବେଳେ ଗୋଟିଏ ବକପକ୍ଷୀ କିଛି ଅମେଧ୍ୟ ଦ୍ରବ୍ୟ ତାଙ୍କ ଉପରକୁ ପକାଇଦେଲା । କୌଶିକ ଯେ ଜଣେ ମହାପୁରୁଷ, ତାହା ବକ-ପକ୍ଷୀ ଜାଣିବ କିପରି ? କିନ୍ତୁ ବକର ଅପକ୍ରିୟାରେ ସିଦ୍ଧ ଯୋଗୀ କୌଶିକ ଅତ୍ୟନ୍ତ କୁପିତ ହୋଇଉଠିଲେ ଏବଂ ତାକୁ ଶାସ୍ତି ଦେବାପାଇଁ କ୍ରୋଧାରୁଣ ନେତ୍ରରେ ଏପରି ଚାହିଁଲେ ଯେ, ନିରୀହ ବକପକ୍ଷୀଟି ତତ୍‌କ୍ଷଣାତ୍ ଭୂତଳରେ ପଡ଼ି ଭସ୍ମୀଭୂତ ହୋଇଗଲା । କୌଶିକ ନିଜର ଅଦ୍ଭୁତ ଶକ୍ତି ଦେଖି ନିଜେ ଅତ୍ୟନ୍ତ ସନ୍ତୋଷ ଅନୁଭବ କଲେ ଏବଂ ବୃକ୍ଷତଳ ଛାଡ଼ି କ୍ରମେ ନଗର ଆଡ଼କୁ ଯାତ୍ରାକଲେ ।

ନଗରରେ ପ୍ରବେଶକରି କୌଶିକ କୌଣସି ଏକ ଗୃହସ୍ଥ-ଦ୍ୱାରରେ ଭିକ୍ଷା ମାଗିଲେ । ଗୃହମଧ୍ୟରୁ ଗୃହିଣୀ ''ଟିକିଏ ଅପେକ୍ଷା କରନ୍ତୁ'' କହି ଭିକ୍ଷା ଦେବାପାଇଁ

ଗଲାବେଳକୁ ହଠାତ୍ ତାଙ୍କର ସ୍ୱାମୀ ଆସି ଉପସ୍ଥିତ ହେଲେ; ତେଣୁ ସେ ଭିକ୍ଷାପାତ୍ର ଥୋଇଦେଇ ସ୍ୱାମୀଙ୍କର ସେବା କରିବାକୁ ଲାଗିଲେ । କର୍ମକ୍ଳାନ୍ତ ସ୍ୱାମୀଙ୍କର ଶୁଶ୍ରୂଷା କରୁ କରୁ କିଛି ସମୟ କଟିବାକୁ ଲାଗିଲା । ଏଣେ କୌଶିକ କେବଳ 'ଟିକିଏ ଅପେକ୍ଷା କରନ୍ତୁ' 'ଟିକିଏ ବସନ୍ତୁ' ଏହା ଶୁଣି ଶୁଣି କ୍ଷୁଧା ଓ କ୍ରୋଧରେ ଅସ୍ଥିର ହୋଇଗଲେଣି । ଶେଷରେ ଗୃହିଣୀ ଭିକ୍ଷା ଧରି ଯେତେବେଳେ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ, ସେ ତାଙ୍କୁ ଅନାତିଥେୟତାପାଇଁ ତିରସ୍କାର କରିବାକୁ ଲାଗିଲେ । କିନ୍ତୁ ଗୃହିଣୀ ଆଦୌ ବିଚଳିତା ନ ହୋଇ କହିଲେ, ''ଆପଣ ବକ-ଭସ୍ମ ପରି ଏଠା କଥା ଭାବନ୍ତୁ ନାହିଁ । ଆପଣଙ୍କର ସକଳ ଯୋଗଶକ୍ତି ଏଠାରେ ବିଫଳ ହେବ । ମୋର କୌଣସି ଅପରାଧ ହୋଇନାହିଁ । ମୁଁ ମୋ' ସ୍ୱାମୀଙ୍କର ସେବା କରୁଥିଲି ।''

କୌଶିକ ଆଶ୍ଚର୍ଯ୍ୟରେ ସ୍ତମ୍ଭୀଭୂତ ହୋଇଗଲେ । ସେ ଭାବିଲେ, 'ଏହି ରମଣୀ ନିଶ୍ଚୟ ଜଣେ ସିଦ୍ଧତପା ଯୋଗିନୀ, ନଚେତ୍ ଏ ବକ-ଭସ୍ମ ଘଟନା ଜାଣନ୍ତେ କିପରି ?' ତେଣୁ ସେ ଗୃହିଣୀଙ୍କ ନିକଟରେ କ୍ଷମା ଭିକ୍ଷା କଲେ ଏବଂ ଗୃହିଣୀ କିପରି ବକ-ଭସ୍ମ କଥା ଜାଣିଲେ ତାହା ଜିଜ୍ଞାସା କଲେ । ଗୃହିଣୀ ଉତ୍ତର କଲେ, ''ମୁଁ କୌଣସି ପ୍ରକାର ଯୋଗ ସାଧନା କରିନାହିଁ । ମୁଁ ଜଣେ ସାମାନ୍ୟ ନାରୀ । ମୋର ଏକମାତ୍ର ସାଧନା ମୋର ସ୍ୱାମୀ, ଶ୍ୱଶୁର ଓ ଶାଶୁଙ୍କର କାୟମନୋବାକ୍ୟରେ ସେବା । ମୋର ଯାହା କିଛି ଧର୍ମଜ୍ଞାନ ତାହାରି ଫଳରେ ।'' ଏହା ଶୁଣି କୌଶିକ ତାଙ୍କଠାରୁ କିଛି ଧର୍ମଜ୍ଞାନ ଶିଖିବାଲାଗି ଇଚ୍ଛା ପ୍ରକାଶ କଲେ । ଗୃହିଣୀ କହିଲେ ଯେ, ତାଙ୍କର ସେଥିପାଇଁ ସମୟ ନାହିଁ । କିନ୍ତୁ ମିଥିଳାନଗରୀରେ ଜଣେ ଧର୍ମବ୍ୟାଧ ଅଛି, ସେ ତାହା ନିକଟକୁ ଗଲେ ଯଥେଷ୍ଟ ଧର୍ମ ଜ୍ଞାନ ପାଇପାରିବେ । ଏତିକି କହି ସେ ଗୃହଭିତରକୁ ଚାଲିଗଲେ ।

ଗୃହିଣୀଙ୍କ କଥା ଅନୁଯାୟୀ କୌଶିକ ମିଥିଳା ଯାତ୍ରା କଲେ । ମିଥିଳାନଗରୀର ବିପଣୀମାନଙ୍କରେ ବୁଲି ବୁଲି, ସେ ଏକ ସ୍ଥାନରେ ଧର୍ମବ୍ୟାଧକୁ ଦେଖିବାକୁ ପାଇଲେ । ସେ ଦେଖିଲେ, ସେହି ବ୍ୟାଧ ପଶୁବଧସ୍ଥାନରେ ରହି ମୃଗ-ମହିଷାଦିର ମାଂସ ବିକ୍ରୟ କରୁଅଛି । କୌଶିକ ଆସିବା ଜାଣିପାରି ସେହି ବ୍ୟାଧ ସ୍ୱସ୍ଥାନ ଛାଡ଼ି ତାହାଙ୍କୁ ସମ୍ଭ୍ରମସହକାରେ ଅଭିବାଦନ କଲା ଏବଂ କୁଶଳ ପ୍ରଶ୍ନମାନ ଜିଜ୍ଞାସା କଲା । ତା'ପରେ ସେ କୌଶିକଙ୍କୁ ନିଜ ଗୃହକୁ ନେଇ ପାଦ୍ୟାର୍ଘ୍ୟାଦି ଦେଇ ପରିଚର୍ଯ୍ୟା କରିବାକୁ ଲାଗିଲା । ବିଶ୍ରାମ ସମୟରେ କୌଶିକ ବ୍ୟାଧକୁ ପଚାରିଲେ, ''ଏଡ଼େ ସଜ୍ଜନ ହୋଇ ତୁମ୍ଭେ ଏପରି ଭୟଙ୍କର ଓ କୁତ୍ସିତ କର୍ମରେ ନିଯୁକ୍ତ ଅଛ କାହିଁକି ?

ବ୍ୟାଧ କହିଲା, ''ହେ ବିପ୍ରୋତ୍ତମ, ଏହି ତ ମୋର ପିତୃପିତାମହ-ପ୍ରଚଳିତ କୌଳିକ କର୍ମ । ମୁଁ ମୋର ନିଜ ଧର୍ମରେ ହିଁ ଅଛି । ତେଣୁ ଆପଣଙ୍କର ମୋ' ଲାଗି ଦୁଃଖିତ ହେବାର କୌଣସି କାରଣ ନାହିଁ । ମୁଁ ପ୍ରଯତ୍ନସହକାରେ ପିତାମାତାଙ୍କର ଶୁଶ୍ରୂଷା କରେ, ସତ୍ୟ କହେ, କାହାପ୍ରତି ଅସୂୟା କରେନାହିଁ, ଯଥାଶକ୍ତି ଦାନ କରେ; ଦେବତା, ଅତିଥି ଓ ଭୃତ୍ୟବର୍ଗଙ୍କୁ ଭୋଗ୍ୟ ପ୍ରଦାନ କରି ଅବଶିଷ୍ଟଦ୍ୱାରା ଜୀବିକା ନିର୍ବାହ କରେ । ମୁଁ ସବୁବେଳେ ଅନ୍ୟ-ହତ ବରାହ, ମହିଷ ପ୍ରଭୃତି ବିକ୍ରୟ କରିଥାଏଁ – ନିଜେ କେବେହେଲେ ବଧ କରେ ନାହିଁ କିମ୍ବା ମାଂସ ଭକ୍ଷଣ କରେ ନାହିଁ । ହେ ଦ୍ୱିଜ, ପୁରୁଷ ଦୁଃଶୀଳ ହୋଇଥିଲେ ମଧ୍ୟ ଶୀଳବାନ୍ ହୋଇପାରେ, ପ୍ରାଣୀହିଂସାରେ ନିଯୁକ୍ତ ଥାଇ ମଧ୍ୟ ଧାର୍ମିକ ହୋଇପାରେ । ଯେଉଁମାନେ ମୋର ନିନ୍ଦା ବା ପ୍ରଶଂସା କରନ୍ତି ସେ ସମସ୍ତଙ୍କୁ ମୁଁ ସାଧୁ କର୍ମଦ୍ୱାରା ସନ୍ତୁଷ୍ଟ କରେ । ମିଥ୍ୟା ପରିତ୍ୟାଗ କରିବ; ପ୍ରାର୍ଥିତ ନ ହୋଇ ଲୋକମାନଙ୍କର ପ୍ରିୟକାର୍ଯ୍ୟ କରିବ । ପ୍ରିୟ ବିଷୟରେ ଅତିଶୟ ହର୍ଷାନ୍ୱିତ ବା ଅପ୍ରିୟ ବିଷୟରେ ଅତିଶୟ ସନ୍ତାପିତ ହେବ ନାହିଁ; ଅର୍ଥକଷ୍ଟ ଉପସ୍ଥିତ ହେଲେହେଁ ବିମୂଢ଼ ହୋଇ ଧର୍ମ ପରିହାର କରିବ ନାହିଁ । ଯଦି କୌଣସି ଅସତ୍ କର୍ମ କରିଥାଅ, ତେବେ ତାହା ପୁନରାୟ ଆଚରଣ କରିବ ନାହିଁ । ଯାହା କଲ୍ୟାଣଜନକ ବୋଧ ହେବ, ସେଥିରେ ହିଁ ନିଜକୁ ନିଯୁକ୍ତ କରିବ । କେହି ଅନିଷ୍ଟାଚରଣ କଲେ ତାହାର ପ୍ରତିହିଂସାକାରୀ ହେବନାହିଁ; ବରଂ ସାଧୁ ବ୍ୟବହାର କରିବ । ଯେଉଁ ପାପାତ୍ମା ପାପ କରିବାକୁ ଇଚ୍ଛା କରେ, ସେ ନିଜେନିଜେହିଁ ପରାହତ ଓ ନଷ୍ଟ ହୁଏ ।''

ଧର୍ମବ୍ୟାଧ ଏହି ପ୍ରକାରେ କୌଶିକଙ୍କୁ ବହୁ ଉପଦେଶ ଦେବାକୁ ଲାଗିଲା । ମହାଭାରତରେ ସେସବୁ ବହୁ ଅଧ୍ୟାୟରେ ଲିପିବଦ୍ଧ ହୋଇଅଛି ଓ ସେସବୁ ବ୍ରାହ୍ମଣ୍ୟଧର୍ମର ଉତ୍କୃଷ୍ଟତମ ଜ୍ଞାନ । ଶେଷରେ ସେ କୌଶିକଙ୍କୁ କହିଲା, ''ହେ ଦ୍ୱିଜପ୍ରବର ! ଆପଣ ମାତାପିତାଙ୍କୁ ଅବମାନନା କରିଅଛନ୍ତି – ଯେହେତୁ ସେମାନଙ୍କର ବିନାନୁମତିରେ ଓ ସେମାନଙ୍କର ସେବା ପ୍ରତି ଉପେକ୍ଷା କରି ଆପଣ ବେଦାଧ୍ୟୟନ କରିବାକୁ ଚାଲିଗଲେ । ବର୍ତ୍ତମାନ ସେମାନେ ଆପଣଙ୍କର ଶୋକରେ ଅନ୍ଧ ହୋଇ ପଡ଼ିଛନ୍ତି । ସେମାନଙ୍କୁ ପ୍ରସନ୍ନ କରିବା ଲାଗି ଆପଣ ଗୃହକୁ ଫେରିଯାଆନ୍ତୁ । ଆପଣ ତପସ୍ୱୀ, କିନ୍ତୁ ଶିଷ୍ଟାଚାର ଅଭାବରେ ଆପଣଙ୍କର ସମସ୍ତ ଶକ୍ତି ନିଷ୍ଫଳ ହୋଇ-ଯାଉଅଛି ।''

ବ୍ୟାଧ-ବାକ୍ୟରେ କୌଶିକ ସାନନ୍ଦଚିତ୍ତରେ ନିଜ ଗୃହକୁ ଫେରିଗଲେ ।

## ଯୀଶୁଖ୍ରୀଷ୍ଟ

ଆଜିକାଲି ଜଗତର ସବୁ ଦେଶରେ ଖ୍ରୀଷ୍ଟାବ୍ଦ ପ୍ରଚଳିତ । ସବୁ ଦେଶର ଲୋକେ କୌଣସି ଏକ ସ୍ମରଣୀୟ ଘଟଣାରୁ ବର୍ଷ ଓ କାଳ ଗଣନା କରିଥାନ୍ତି । ଆମ୍ଭମାନଙ୍କ ପରିବାରରେ ମଧ୍ୟ କୌଣସି ବ୍ୟକ୍ତିର ଜନ୍ମ ବା କାହାର ମୃତ୍ୟୁଠାରୁ ପରବର୍ତ୍ତୀ ଘଟନାମାନଙ୍କର କାଳ ପରିମାପ ହୁଏ । ମାନବଜାତି ପକ୍ଷରେ ଖ୍ରୀଷ୍ଟଙ୍କ ଜନ୍ମ ସେହିପରି ଏକ ଅତ୍ୟନ୍ତ ସ୍ମରଣୀୟ ଘଟନା ହୋଇଥିବାରୁ ଜଗତର ସବୁ ଅଞ୍ଚଳରେ ବର୍ତ୍ତମାନ କାଳଗଣନାରେ ତାହା ସ୍ମାରକସ୍ୱରୂପ ହୋଇଅଛି ।

ଏହି ଖ୍ରୀଷ୍ଟଙ୍କର ପୂର୍ଣ୍ଣ ନାମ ଯୀଶୁଖ୍ରୀଷ୍ଟ ଏବଂ ସେ ଜଗତରେ ଖ୍ରୀଷ୍ଟଧର୍ମର ପ୍ରବର୍ତ୍ତନ କରିଯାଇଅଛନ୍ତି ।

ସେ ଆଧୁନିକ ପାଲେଷ୍ଟାଇନ୍‌ର ବେଥେଲ୍‌ହେମ୍ ନାମକ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତା ଯୋସେଫ୍ ବଢ଼େଇକାମ କରି ଜୀବିକା ନିର୍ବାହ କରୁଥିଲେ ଓ ଦରିଦ୍ର ଥିଲେହେଁ ଅତ୍ୟନ୍ତ ସାଧୁଲୋକ ଥିଲେ । ତାଙ୍କ ପତ୍ନୀଙ୍କର ନାମ ଥିଲା ମେରୀ । ଯୀଶୁଖ୍ରୀଷ୍ଟ ଏହି ମେରୀଙ୍କ ଗର୍ଭରୁ ଜନ୍ମଗ୍ରହଣ କରିଥିବାରୁ ମେରୀ ଆଜି ଲକ୍ଷ ଲକ୍ଷ ଖ୍ରୀଷ୍ଟୀୟାନଙ୍କର ପରମାରାଧ୍ୟା ଜନନୀରୂପେ ସଂପୂଜିତା ।

ଜେରୁଜେଲମ୍ ଇହୁଦୀମାନଙ୍କର ରାଜ୍ୟ । ଯୀଶୁଙ୍କ ଜନ୍ମକାଳରେ ହେରଡ୍ ନାମକ ଜଣେ ଅତ୍ୟାଚାରୀ ନରପତି ଏହି ଇହୁଦୀମାନଙ୍କ ଉପରେ ରାଜତ୍ୱ କରୁଥିଲେ । ଯୀଶୁଙ୍କ ଜନ୍ମ ସମୟରେ ହେରଡ୍ ଭବିଷ୍ୟତ୍‌ବାଣୀ ଶୁଣିପାରିଲେ ଯେ, ଇହୁଦୀମାନଙ୍କର ନୂତନ ରାଜା ଶୀଘ୍ର ଭୂତଳରେ ଅବତୀର୍ଣ୍ଣ ହେବେ । ଏ ସମ୍ବାଦରେ ହେରଡ୍ ସିଂହାସନରୁ ବିଚ୍ୟୁତ ହେବାର ଆଶଙ୍କାକରି ଆଦେଶ ଦେଲେ ଯେ, ତାଙ୍କ ରାଜ୍ୟର ସମସ୍ତ ନବଜାତ ଶିଶୁ ସଙ୍ଗେ ସଙ୍ଗେ ନିହତ ହେବେ । ରାଜାଜ୍ଞା କାର୍ଯ୍ୟରେ ପରିଣତ ହେବା ପୂର୍ବରୁ ଯୋସେଫ୍ ଓ ମେରୀ ସ୍ୱପ୍ନରେ ଏହି ଜଘନ୍ୟ କର୍ମର ସଙ୍କେତ ପାଇ ଗୋପନଭାବରେ ନବଜାତ ପୁତ୍ରକୁ କୋଳରେ ଘେନି ମିଶର ଦେଶକୁ ପଳାୟନକଲେ । କେତେକ ବର୍ଷ ଉତ୍ତାରେ ହେରଡ୍ ପ୍ରାଣତ୍ୟାଗ କରିବାର ଶୁଣି ଯୋସେଫ୍ ଓ ତଦୀୟ ପତ୍ନୀ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । କିନ୍ତୁ ଯେତେବେଳେ ଜାଣିଲେ ଯେ, ହେରଡ୍‌ଙ୍କ ଅତ୍ୟାଚାରୀ ପୁତ୍ର ରାଜଦଣ୍ଡ ଧାରଣ କରିଅଛନ୍ତି, ସେତେବେଳେ ସେମାନେ ବେଥେଲ୍‌ହେମ୍‌କୁ ନ ଫେରି ନାଜାରେତ୍ ନାମକ ନଗରରେ ବାସ କରିବାକୁ ଲାଗିଲେ ।

ନାଜାରେତ୍ ନଗରରେ ତରୁଣ ଯୀଶୁ ପିତାଙ୍କ ବ୍ୟବସାୟ ଅବଲମ୍ବନ କରି ଜନକଜନନୀଙ୍କୁ ସାଂସାରିକ କ୍ରିୟାରେ ସାହାଯ୍ୟ କରିବାକୁ ଲାଗିଲେ । ପ୍ରାୟ ଦ୍ୱାବିଂଶତି ବର୍ଷ ବୟସରେ ତରୁଣ ଖ୍ରୀଷ୍ଟଙ୍କର ଜନ୍ ନାମକ ଜଣେ ଧର୍ମାଚାର୍ଯ୍ୟଙ୍କ ସହିତ ପରିଚୟ ହେଲା । ଏହି ପରିଚୟ ଖ୍ରୀଷ୍ଟଙ୍କ ଜୀବନର ପଥ ପରିବର୍ତ୍ତନ କଲା । ଜନ୍ ଖ୍ରୀଷ୍ଟଙ୍କ ଧର୍ମାନୁରାଗ ଓ ନିର୍ମଳ ଚରିତ୍ର ଦେଖିପାରି ତାହାଙ୍କ ଭବିଷ୍ୟତ୍ ସମ୍ବନ୍ଧରେ ଆଶାବାନ୍ ହୋଇଉଠିଲେ ଏବଂ ଚାରିଆଡ଼େ ପ୍ରଚାର କଲେ ଯେ, 'ଜଗତର ତ୍ରାଣକର୍ତ୍ତା ବର୍ତ୍ତମାନ ଅବତୀର୍ଣ୍ଣ ହୋଇଅଛନ୍ତି ।' ଯୁବକ ଯୀଶୁ ଏହି ଧର୍ମାଚାର୍ଯ୍ୟଙ୍କର ଶିଷ୍ୟତ୍ୱ ଗ୍ରହଣକରି ତାହାଙ୍କଠାରୁ ଦୀକ୍ଷା ଲାଭକଲେ ଓ ଦୀକ୍ଷାର ଚିହ୍ନସ୍ୱରୂପ ଇହୁଦୀୟ ରୀତିରେ ଜନ୍‌ଙ୍କଦ୍ୱାରା ଅଭିଷିକ୍ତ ହେଲେ ।

ଅଭିଷେଚନ ଲାଭ କଲା ପରେ ଖ୍ରୀଷ୍ଟ ନଗରର ଉପକଣ୍ଠସ୍ଥ ଏକ ବନରେ ତପଶ୍ଚରଣ ନିମିତ୍ତ ପ୍ରସ୍ଥାନ କଲେ । ଏହି ସ୍ଥାନରେ ତାହାଙ୍କର ତପୋଭଙ୍ଗ ନିମିତ୍ତ ସଇତାନ ମାୟା ବିସ୍ତାର କରି ତାହାଙ୍କୁ ନାନା ପ୍ରଲୋଭନରେ ପ୍ରଲୋଭିତ କରିଥିବାର ଜଣାପଡ଼େ; କିନ୍ତୁ ଦୈବୀ ଶକ୍ତିରେ ଶକ୍ତିମାନ୍ ଯୀଶୁ ସମସ୍ତ ପ୍ରଲୋଭନ ଏଡ଼ି ଶେଷରେ ଜୟଲାଭକଲେ ।

ଧର୍ମଜୀବନରେ ଏହି ସିଦ୍ଧି ଲାଭ କଲା ପରେ ଖ୍ରୀଷ୍ଟ ଲୋକ-ସମାଜରେ ନୂତନ ସତ୍ୟ ଓ ସ୍ୱର୍ଗରାଜ୍ୟର ବାର୍ତ୍ତା ପ୍ରଚାର କରିବାକୁ ଲାଗିଲେ । ସମାଗତ ଜନତାରୁ ବହୁ ରୋଗଗ୍ରସ୍ତ ବ୍ୟକ୍ତି ତାଙ୍କର ଦିବ୍ୟସ୍ପର୍ଶରେ ରୋଗମୁକ୍ତ ହେବାରୁ ଜନତା କ୍ରମେ ବଢ଼ିବାକୁ ଲାଗିଲା । କ୍ରମବର୍ଦ୍ଧମାନ ଜନସଂଘ ଯୀଶୁଙ୍କୁ ତାଙ୍କର ଦିବ୍ୟବାଣୀ ଶୁଣାଇବା ଲାଗି ବାରମ୍ବାର ଅନୁରୋଧ କରନ୍ତେ ଖ୍ରୀଷ୍ଟ ଏକ କ୍ଷୁଦ୍ର ପର୍ବତରେ ଆରୋହଣ କରି ଖ୍ରୀଷ୍ଟଧର୍ମର ଭିତ୍ତିରୂପୀ ସୁପ୍ରସିଦ୍ଧ ଉପଦେଶାବଳୀ ଘୋଷଣାକଲେ । ଏହି ଉପଦେଶସମୂହ ସେହି କାଳରୁ ଅଦ୍ୟାବଧି କୋଟି କୋଟି ପ୍ରାଣରେ ସଦ୍‌ବୁଦ୍ଧି ସଞ୍ଚାର କରିଅଛି ଓ କୋଟି କୋଟି ପଥଭ୍ରାନ୍ତ ଲୋକଙ୍କୁ ସନ୍ମାର୍ଗ ଦେଖାଇଅଛି । ପର୍ବତଉପରୁ ଏହି ମହାବାଣୀସମୂହ ବିଘୋଷିତ ହୋଇଥିବାରୁ ଏହାକୁ 'ପାର୍ବତିକ ଉପଦେଶ' ବୋଲି କୁହାଯାଏ । ଏଠାରେ ତନ୍ମଧ୍ୟରୁ କେତୋଟି ଉଦ୍ଧାର କରି ଦିଆଯାଉଅଛି ।

''ତୁମ୍ଭେମାନେ ଶୁଣିଛ ଯେ ପ୍ରତିହିଂସା ମନୁଷ୍ୟର କର୍ତ୍ତବ୍ୟ ଏବଂ ଚକ୍ଷୁପାଇଁ ଚକ୍ଷୁ ଓ ଦନ୍ତପାଇଁ ଦନ୍ତ ଦାବୀ କରିବା ଧର୍ମ । କିନ୍ତୁ ମୁଁ ତୁମ୍ଭମାନଙ୍କୁ କହି ରଖୁଛି, ଅପରାଧଲାଗି ପ୍ରତିକ୍ରିୟା କର ନାହିଁ । ବରଂ ତୁମ୍ଭର ଦକ୍ଷିଣ ଗଣ୍ଡରେ ଯଦି କେହି ଆଘାତ କରେ, ତୁମ୍ଭେ ତାହାକୁ ଅନ୍ୟ ଗଣ୍ଡଟି ଦେଖାଇଦିଅ ।''

''ତୁମ୍ଭେମାନେ ଶୁଣିଛ ଯେ, ପ୍ରତିବେଶୀକୁ ସ୍ନେହ କରିବା ଓ ଶତ୍ରୁକୁ ଘୃଣା

କରିବା ଉଚିତ । କିନ୍ତୁ ମୁଁ କହିରଖୁଛି ଯେ, ତୁମ୍ଭେ ଶତ୍ରୁକୁ ମଧ୍ୟ ସ୍ନେହ କର । ଯେଉଁମାନେ ତୁମ୍ଭଙ୍କୁ ଅଭିଶାପ ଦିଅନ୍ତି, ତାହାଙ୍କୁ ଆଶୀର୍ବାଦ କର; ଯେଉଁମାନେ ଘୃଣା କରନ୍ତି, ତାଙ୍କର ଉପକାର କର ଏବଂ ଯେଉଁମାନେ ତୁମ୍ଭ ପ୍ରତି ବିଦ୍ୱେଷରେ ଅତ୍ୟାଚାର କରନ୍ତି ସେମାନଙ୍କ ଲାଗି ପ୍ରାର୍ଥନା କର ।''

''ତୁମ୍ଭେ ଭିକ୍ଷା ଦାନ କଲାବେଳେ ଲୋକଙ୍କୁ ଦେଖାଇହେବାଲାଗି ଦାନ କରନାହିଁ । ଏପରି ଦାନ କରିବ, ଯେପରି କି ଦକ୍ଷିଣ ହସ୍ତର ଦାନ ବାମ ହସ୍ତ ଜାଣିନପାରେ । ତାହେଲେ ତୁମ୍ଭେ ତୁମ୍ଭ ଦାନର ପୁରସ୍କାର ପାଇବ ।''

''ନିଜ ସମ୍ବନ୍ଧରେ, କ'ଣ ଖାଇବି, କ'ଣ ପିଇବି, କ'ଣ ପିନ୍ଧିବି, ଏପରି ଭାବି ବ୍ୟାକୁଳ ହୁଅ ନାହିଁ । ଆକାଶର ବିହଙ୍ଗମାନଙ୍କୁ ଦେଖ, ସେମାନେ ଶସ୍ୟ ବପନ ବା କର୍ତ୍ତନ କରନ୍ତି ନାହିଁ; କିନ୍ତୁ ତୁମ୍ଭମାନଙ୍କର ସ୍ୱର୍ଗସ୍ଥ ପିତା ସେମାନଙ୍କର କ୍ଷୁନ୍ନିବୃତ୍ତିର ବ୍ୟବସ୍ଥା କରିଅଛନ୍ତି । ପୁଣି ଉଦ୍ୟାନର ପୁଷ୍ପରାଜିକୁ ଅନାଅ । ବିନା ଚେଷ୍ଟାରେ ସେମାନେ ଯେଉଁ ବର୍ଣ୍ଣବିଭାମୟ ବସନରେ ଆବୃତ ହାଇଅଛନ୍ତି, ତାହା ରାଜ୍ୟେଶ୍ୱରଙ୍କୁ ମଧ୍ୟ ମିଳେ ନାହିଁ । ତେଣୁ ତୁମ୍ଭର ଅଶନ-ବସନଲାଗି ବ୍ୟାକୁଳ ହେବା ଉଚିତ କି ? ସ୍ୱର୍ଗସ୍ଥ ପିତା ତୁମ୍ଭର କି କି ଦ୍ରବ୍ୟ ଆବଶ୍ୟକ ତାହା ଜାଣନ୍ତି ।''

ଏହି ମହାବାଣୀ ବିଘୋଷିତ ହେବା ପରେ ସମବେତ ଜନତା ମୁଗ୍‌ଧ ଓ ଚକିତ ହୋଇଉଠିଲା । ଅନ୍ଧ, ଖଞ୍ଜ, କୁଷ୍ଠୀ ପ୍ରଭୃତି ବହୁ ଦୁଃସ୍ଥ ଲୋକ ତାଙ୍କର ଦିବ୍ୟସ୍ପର୍ଶରେ ଆରୋଗ୍ୟ ଲାଭ କରିବାଲାଗି ତାଙ୍କ ନିକଟକୁ ଆସିବାକୁ ଲାଗିଲେ । ଜନତାର ସମ୍ବର୍ଦ୍ଧନାରେ ଉତ୍ସାହିତ ହୋଇ ଯୀଶୁ ବର୍ତ୍ତମାନ ନଗରରୁ ନଗରାନ୍ତରରେ ଓ ଗ୍ରାମରୁ ଗ୍ରାମାନ୍ତରରେ ନୂତନ ସତ୍ୟ ପ୍ରଚାର କରିବାରେ ଓ ରୁଗ୍‌ଣ ବ୍ୟକ୍ତିମାନଙ୍କୁ ସୁସ୍ଥ କରିବାରେ ଲାଗିଲେ ।

ସେହି ସମୟରେ ସିରିୟାରେ ଧର୍ମ ଓ ରାଷ୍ଟ୍ର ଉଭୟ ଦିଗରେ ଭୟଙ୍କର ଗ୍ଲାନି ଉପସ୍ଥିତ ହୋଇଥିଲା । ସିରିୟା ରୋମକମାନଙ୍କର ଅଧୀନରେ ଥିଲେହେଁ ରୋମକ ସାମ୍ରାଜ୍ୟର ଅଧଃପତନ ଆରମ୍ଭ ହୋଇଆସୁଥିଲା । ଗୃହବିବାଦର ସୂତ୍ରପାତ ହୋଇ ରାଷ୍ଟ୍ରବିପ୍ଳବ ଓ ତଜ୍ଜନିତ ରକ୍ତପାତ ଦୈନନ୍ଦିନ ଘଟନା ହୋଇଥିଲା । ଏଣେ ଇହୁଦୀମାନଙ୍କ ମଧ୍ୟରେ ଧର୍ମ ନାମରେ ଘୋର ମିଥ୍ୟାଚାର ପ୍ରସାର ଲାଭ କରିଥିଲା । ଫାରିସୀ ଓ ସ୍କାଇବ୍ ନାମଧେୟ ଇହୁଦୀ ଧର୍ମଯାଜକଗଣ ଧର୍ମକୁ ଅର୍ଥାଗମର ଉପାୟ ସ୍ୱରୂପ କରିରଖିଥିଲେ ଏବଂ ସେମାନଙ୍କ ଦେବାଳୟମାନ ବ୍ୟବସାୟର କେନ୍ଦ୍ର ହୋଇଥିଲା ।

ଏହିପରି ମିଥ୍ୟାଚାର ଓ ବିପ୍ଳବ ସମୟରେ ଯୀଶୁଙ୍କ ଆବିର୍ଭାବ ବିଧାତାର

ନିର୍ଦ୍ଦେଶପରି ଜଣାଯାଏ । ମିଥ୍ୟାଚାରର ବିନାଶ କରି ଜଗତରେ ସତ୍ୟଧର୍ମର ପ୍ରତିଷ୍ଠାଲାଗି ସେ ଯେପରି ଜନ୍ମ ପରିଗ୍ରହ କରିଥିଲେ । କିନ୍ତୁ ଜଗତର ଅନ୍ୟାନ୍ୟ ସତ୍ୟଦ୍ରଷ୍ଟାଙ୍କ ପରି ତାଙ୍କୁ ମଧ୍ୟ ଘୋର ପ୍ରତିକୂଳତାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ଇହୁଦୀ ଧର୍ମଯାଜକମାନଙ୍କ ଶଠତା ବିରୁଦ୍ଧରେ ସେ ପ୍ରଚାର କରନ୍ତେ ସେମାନେ କ୍ରମେ ଉତ୍ତ୍ୟକ୍ତ ହୋଇଉଠିଲେ । ଦିନେ ଯୀଶୁ ସେମାନଙ୍କ ଦେବମନ୍ଦିରରେ ପ୍ରବେଶକରି ସେମାନଙ୍କ ସମ୍ମୁଖରେ ଅକୁତୋଭୟଭାବରେ ତାଙ୍କର ଶଠତାଲାଗି ତିରସ୍କାର କଲେ ଏବଂ ସେହି ମନ୍ଦିର ଭଗ୍ନ କରି ନୂତନ ମନ୍ଦିର ଉତ୍ତୋଳନ କରିବାର ସଙ୍କେତ ଦେଲେ । ମନ୍ଦିର-ପୁରୋହିତମାନଙ୍କର କ୍ରୋଧାଗ୍ନିରେ ଏହା ଶୁଷ୍କତୃଣବତ୍ କାର୍ଯ୍ୟ କଲା ଓ ସେମାନେ ଯୀଶୁଙ୍କ ପ୍ରତିଷ୍ଠା ବିନାଶ କରିବାଲାଗି ବଦ୍ଧପରିକର ହେଲେ ।

ପୁରୋହିତମାନଙ୍କର ଯୀଶୁଙ୍କ ବିରୁଦ୍ଧରେ ଆଉ ଏକ ଅଭିଯୋଗ ଥିଲା ଯେ, ସେ ସମାଜର ନିମ୍ନଶ୍ରେଣୀର ଲୋକମାନଙ୍କ ସଙ୍ଗେ ବିଶେଷ ସଖ୍ୟ କରୁଥିଲେ । ଯୀଶୁଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ନିମ୍ନ ଶ୍ରେଣୀର ଲୋକ ଥିଲେ ଏବଂ ଦରିଦ୍ର ଓ ଅବହେଳିତ ଜନତା ମଧ୍ୟରେ ହିଁ ଯୀଶୁ ତାଙ୍କର ବାଣୀ ପ୍ରଚାର କରୁଥିଲେ । ପୁରୋହିତମାନେ ବିଶ୍ୱାସ କଲେ ଯେ, ନୀଚ ଲୋକ-ମାନଙ୍କୁ ଏପ୍ରକାର ପ୍ରଶ୍ରୟ ଦେଇ ଯୀଶୁ ସମାଜରେ ବିପ୍ଳବ ସୃଷ୍ଟିକରିବେ ଓ ଫଳରେ ସେମାନଙ୍କ ପ୍ରତିପତ୍ତି ସମୂଳେ ନଷ୍ଟ ହେବ ।

ଏହି ଅଭିଯୋଗମାନ ବିଚାରକରି ପୁରୋହିତମାନେ ଯୀଶୁଙ୍କ ପ୍ରତି ପ୍ରକାଶ୍ୟଭାବରେ ଅତ୍ୟାଚାର ବା ତାଙ୍କୁ ହତ୍ୟା କରିବାର ଇଚ୍ଛା କଲେ; କିନ୍ତୁ ନଗରେ ନଗରେ ବିପୁଳ ଜନସଂଘ ଯୀଶୁଙ୍କର ଏପରି ଅନୁରକ୍ତ ଥିଲେ ଯେ, ସେମାନେ ତାହା ପ୍ରକାଶ୍ୟଭାବରେ କରିବାକୁ ସାହସ କଲେ ନାହିଁ । ଦିନେ ନିଶାକାଳରେ ଧର୍ମପ୍ରଚାର ଶେଷରେ ଯୀଶୁ ସଶିଷ୍ୟ କୌଣସି ଏକ ଉପବନରେ ବିଶ୍ରାମ କରିବା ସମୟରେ ତାଙ୍କର ଏକ ଶିଷ୍ୟ ଧନଲୋଭରେ ତାଙ୍କୁ ଶତ୍ରୁମାନଙ୍କ ହସ୍ତରେ ସମର୍ପଣ କରିଦେଲା । ଶତ୍ରୁମାନେ ଯୀଶୁଙ୍କୁ ଧରିନେଇ ରୋମକ ରାଜପ୍ରତିନିଧି ପାଇଲେଟ୍‌ଙ୍କ ନିକଟରେ ବିଚାରାର୍ଥ ଉପସ୍ଥାପିତ କଲେ । ବିଚାରବେଳେ ଯୀଶୁ ଏକପ୍ରକାର ନୀରବ ଥିଲେ; କିନ୍ତୁ ପାଇଲେଟ୍ ଯୀଶୁଙ୍କୁ ପ୍ରକୃତରେ ଏକାନ୍ତ ନିରପରାଧ ଜାଣି ତାଙ୍କୁ ମୁକ୍ତି ଦେବାକୁ ଉତ୍ସୁକ ହେଲେହେଁ ଇହୁଦୀ ପୁରୋହିତମାନେ କାଳେ ବିପ୍ଳବ ଆରମ୍ଭ କରିପାରନ୍ତି ଏହି ଆଶଙ୍କାରେ ସେ ଶାନ୍ତ ସାଧୁ ଓ ନିରୀହ ଯୀଶୁଙ୍କୁ ନିଷ୍ଠୁର ଓ ବର୍ବର ଶତ୍ରୁମାନଙ୍କ ହସ୍ତରେ ଅର୍ପଣ କରିଦେଲେ । ବିଜୟୋଲ୍ଲାସରେ ମତ୍ତ ହୋଇ ଶତ୍ରୁମାନେ ସେହି ମହାମାନବଙ୍କୁ ପରିହାସରେ କଣ୍ଟକର ମୁକୁଟ ଦେଇ ପଥ-ମଧ୍ୟରେ ବେତ୍ରାଘାତ

କରି କରି ବଧ୍ୟସ୍ଥାନକୁ ଘେନିଗଲେ । ସେତେବେଳକୁ କାପୁରୁଷ ଶିଷ୍ୟଗଣ ଓ ଅନୁରକ୍ତ ଜନତା ଭୟରେ ତାଙ୍କର ସଙ୍ଗ ତ୍ୟାଗ କରି ପଳାୟନ କରିଥିଲେ । ବଧ୍ୟଭୂମିରେ ଉପସ୍ଥିତ କରାଇ ଶତ୍ରୁମାନେ 'କ୍ରୁଶ' ଯନ୍ତ୍ରରେ ଯୀଶୁଙ୍କର ପୁଣ୍ୟ ଶରୀରକୁ କଣ୍ଟକବିଦ୍ଧ କରି ଯେତେବେଳେ ଅକଥନୀୟ ଯନ୍ତ୍ରଣା ଦେଉଥାନ୍ତି, ସେତେବେଳେ ମହାପ୍ରାଣ ଖ୍ରୀଷ୍ଟ ପ୍ରାର୍ଥନା କରୁଥାନ୍ତି, ''ହେ ସ୍ୱର୍ଗସ୍ଥ ପିତା, ଏମାନଙ୍କୁ କ୍ଷମା କର; ଏମାନେ କ'ଣ କରୁଛନ୍ତି ତାହା ଜାଣିପାରୁନାହାନ୍ତି ।'' ଏପ୍ରକାର କ୍ଷମାମୟ ବାଣୀ ଜଗତର କୌଣସି ମହାପୁରୁଷ-କଣ୍ଠରେ କେବେହେଲେ ଉଚ୍ଚାରିତ ହୋଇନାହିଁ ଏବଂ ଏହା ଏପର୍ଯ୍ୟନ୍ତ କୋଟି କୋଟି ମାନବ କର୍ଣ୍ଣରେ ପୁଣ୍ୟ ଓ ଆଶାର ଅମୃତ ସେଚନ କରୁଅଛି । ଏହି ବାଣୀ ଉଚ୍ଚାରଣ କଲାପରେ ଯୀଶୁ ନୀରବରେ ସମସ୍ତ ଯନ୍ତ୍ରଣା ସହ୍ୟ କରି ସେହି କ୍ରୁଶରେ ପ୍ରାଣ ତ୍ୟାଗ କଲେ ।

ଯୀଶୁ କ୍ଷୀଣଶରୀର ଓ କ୍ଷୀଣବାସ ହୋଇ ଦରିଦ୍ର ପରି ଜୀବନ ଯାପନ କରୁଥିଲେ । ସେ ମାନବଜାତି ଲାଗି ଜନ୍ମ ହୋଇ ମାନବଜାତି ଲାଗି ପ୍ରାଣ ଦାନ କରିଅଛନ୍ତି । ଜଗତରେ ଅନ୍ୟ କୌଣସି ମହାପୁରୁଷ ପରଲାଗି ଏପ୍ରକାର ଆତ୍ମବଳି ଦେଇପାରିନାହାନ୍ତି ।

## ନୂତନ ଭୂମିରେ ମନୁଷ୍ୟର ବାସ

ଆମ୍ଭେମାନେ ଆମର ଜନ୍ମମାଟି ଛାଡ଼ି ପାଦେ ଘୁଞ୍ଚିବାକୁ କୁଣ୍ଠିତ ହେଉଁ । ଅଦୂରରେ ନୂତନ ବାସପାଇଁ ପ୍ରଶସ୍ତ କ୍ଷେତ୍ର ପଡ଼ିଥିଲେ ମଧ୍ୟ ଆମ ଗାଁମାନଙ୍କରେ ଭାଇ ଭାଇ ମଧ୍ୟରେ ବାପ-ଅମଳର କୂଡ଼ିଆଟିରୁ ହାତେ ଭୂମିପାଇଁ ମରାମରି ହେବାର ଦେଖାଯାଏ । ଜୀବନଯାପନର ସହସ୍ର ପନ୍ଥା ଥିଲେ ସୁଦ୍ଧା ଆମ ଦେଶର କୃଷକ ପୂର୍ବପୁରୁଷର ମାଟିକୁ କାମୁଡ଼ି ରହେ ଓ ପୁରୁଷକୁ ପୁରୁଷ ପୂର୍ବାର୍ଜିତ ମାଟିକୁ ବାଣ୍ଟୁ ବାଣ୍ଟୁ ଶେଷକୁ ଜଣଜଣକ ଭାଗରେ ଯାହା ପଡ଼େ ତାହା ଲାଭଜନକ କର୍ଷଣର ଏକାନ୍ତ ଅନୁପଯୋଗୀ ହୋଇପଡ଼େ । ଅଥଚ ଦେଶର ଅନ୍ୟତ୍ର ସହସ୍ର ସହସ୍ର ଏକର ଜମି ପତିତ ହୋଇ ରହେ । ମନୁଷ୍ୟର ହାତ ବାଜିଲେ ସେଥିରୁ ସୁନା ଫଳିବ; କିନ୍ତୁ ଆମ ଦେଶ ଲୋକଙ୍କର ମିଳିତ ସହଯୋଗ ନାହିଁ; ନିଜ ଅବସ୍ଥାକୁ ଉନ୍ନତ ଓ ଅଧିକ ସୁଖମୟ କରିବାର ତୀବ୍ର ଅଭିଳାଷ ନାହିଁ । ଲୋକେ ଭାବନ୍ତି, କୌଣସି ଉପାୟରେ ଦିନ କଟିଗଲେ ଗଲା । ଫଳରେ ଆମ ଦେଶର କୋଟି କୋଟି ଲୋକ ପୁରୁଷରୁ ପୁରୁଷ ଚିର ଦାରିଦ୍ର୍ୟରେ ପଡ଼ି ସଢ଼ୁଛନ୍ତି । ଅଥଚ ଏଇ ଦେଶରେ ପ୍ରକୃତି, ପରିଶ୍ରମୀ

ଓ ସାହସୀ ମନୁଷ୍ୟଲାଗି ଅସୀମ ସମ୍ପଦ ସାଇତି ରଖିଛି ।

ୟୁରୋପୀୟମାନେ ସାହସୀ ଓ ପରିଶ୍ରମୀ । ଫଳରେ ନିଜନିଜର ଛୋଟ ଛୋଟ ଦେଶ ଛାଡ଼ି ସେମାନେ ଆଜି ସାରା ପୃଥିବୀରେ ମାଡ଼ିଯାଇଛନ୍ତି । ସେମାନେ ଯେଉଁଠିକି ଯାଇଛନ୍ତି ନିଜର ବୁଦ୍ଧି ଓ ପରିଶ୍ରମଦ୍ୱାରା ସେଠାର ପ୍ରକୃତିରୁ ନିଗୂଢ଼ ସମ୍ପଦ ବାହାର କରି ଧନୀ ହୋଇଛନ୍ତି ଏବଂ ଜୀବନକୁ ଉପଭୋଗ କରୁଅଛନ୍ତି । ଅଥଚ ସେହି ସ୍ଥାନରେ, ବୁଦ୍ଧି ଓ ପରିଶ୍ରମ ଅଭାବରୁ, ସେସ୍ଥାନର ଆଦିମ ଅଧିବାସୀମାନେ ପୂର୍ବପରି ଦରିଦ୍ର ହୋଇ ପଡ଼ିରହିଛନ୍ତି ।

ୟୁରୋପର ଲୋକେ ଯେତେବେଳେ ଜାଣିଲେ ଯେ ଆଟ୍‌ଲାଣ୍ଟିକ୍ ଆରପଟେ ଏକ ସମୃଦ୍ଧ ଦେଶ ଅଛି, ସେତେବେଳେ ସାରା ୟୁରୋପରେ ଏକ ଚାଞ୍ଚଲ୍ୟ ଖେଳିଗଲା । ପ୍ରଥମେ ସ୍ପେନ ଓ ପର୍ତ୍ତୁଗାଲରୁ ଦଳ ଦଳ ହୋଇ ନାବିକ ଓ ସୈନିକମାନେ ଆମେରିକାକୁ ଯାଇ ସେ ଦେଶର ସମ୍ପଦ ଲୁଟି କରିବାକୁ ଲାଗିଲେ । କିନ୍ତୁ ଡକାଇତର ସମ୍ପଦ ଚିରସ୍ଥାୟୀ ନୁହେଁ । ସ୍ପାନିୟାର୍ଡ଼ ଓ ପର୍ତ୍ତୁଗୀଜ୍‌ମାନେ ଭାଗ୍ୟକ୍ରମେ ଯେଉଁ ଭୂମି ପାଇଥିଲେ ସେ ଭୂମି ତାଙ୍କ ହାତରେ ରଖିପାରିଲେ ନାହିଁ । ଯେଉଁମାନଙ୍କ ଭାଗ୍ୟରେ ସେ ଭୂମି ଭୋଗ କରିବାର ଥିଲା ସେମାନେ ଇଂରେଜ । କାରଣ ଇଂରେଜଜାତି ପରର ଧନ ଲୁଟି କରି ଶୀଘ୍ର ଧନୀ ହେବା ଅପେକ୍ଷା ନିଜର ବୁଦ୍ଧି ଖଟେଇ ଓ ନିଜର ହାତଗୋଡ଼ ଚଳେଇ ଯେଉଁଠି ଧନ ନାହିଁ ସେଠୁ ଧନ କାଢ଼ିବା ଜାଣେ ଏବଂ ଲୁଟିଧନ ଅପେକ୍ଷା ସ୍ୱ-ଶ୍ରମଲବ୍ଧ ଧନକୁ ବେଶି ପସନ୍ଦ କରେ । ଫଳରେ ପୂର୍ବର ଅସଭ୍ୟ ଜଙ୍ଗଲୀ ଆମେରିକାକୁ ଇଂରେଜମାନେ ସଭ୍ୟ କରି ଏବେ ଅପ୍ରତିଦ୍ୱନ୍ଦ୍ୱୀ ହୋଇ ଭୋଗକରୁଅଛନ୍ତି ।

କଲମ୍ବସ୍ ଆମେରିକା ଆବିଷ୍କାର କରିବାର ଦୁଇଶ ବର୍ଷ ପରେ ନିଜ ନିଜ ଧର୍ମପାଳନରେ ବାଧାପଡ଼ିବାରୁ କେତେକ ଇଂରେଜ ଇଂଲଣ୍ଡ ଛାଡ଼ି ନୂତନ ମହାଦେଶରେ ଘରକରିବାପାଇଁ ବୋଇତରେ ଯାତ୍ରା କଲେ । ଏମାନେ ପର୍ତ୍ତୁଗିଜ୍ ବା ସ୍ପାନିୟାର୍ଡ଼ମାନଙ୍କ ପରି କାହାର ଲୁଟି କରିନଥିଲେ । ପରିଶ୍ରମୀ ଓ ସଚ୍ଚରିତ୍ର ଅଧିବାସୀ ହୋଇ ରହିବାପାଇଁ ସେମାନେ ସେଠାକୁ ଯାଇଥିଲେ । ଫଳରେ ଅକ୍ଲାନ୍ତ ଅଧ୍ୟବସାୟ ସହ ଏହି ନବାଗତ ବିଦେଶୀମାନେ ସେହି ଆଦିମ ଭୂମିର ଅରଣ୍ୟ କାଟି, ଜଳାଭୂମି ଶୁଷ୍କ କରି, ରାସ୍ତା ପକାଇ, ଘର, ଗ୍ରାମ, ଉପବନ, ଶସ୍ୟକ୍ଷେତ୍ର ସବୁ କରି କ୍ରମେ କ୍ରମେ ସେ ଦେଶକୁ ସଭ୍ୟ-ମନୁଷ୍ୟର ଉପଯୋଗୀ କରିପକାଇଲେ । ମୁଷ୍ଟିମେୟ ଲୋକ ସେ ଦେଶକୁ ଯାଇଥିଲେ । ସ୍ପାନିୟାର୍ଡ଼ ଓ ପର୍ତ୍ତୁଗିଜ୍‌ମାନଙ୍କ ଅତ୍ୟାଚାର ଫଳରେ ଆମେରିକାର ଆଦିମ ଅଧିବାସୀମାନେ ଶ୍ୱେତାଙ୍ଗ ଦେଖିଲାକ୍ଷଣି ହତ୍ୟା

କରୁଥିଲେ । ଫଳରେ ଇଂରେଜ ଔପନିବେଶିକମାନଙ୍କୁ ବାଧ୍ୟ ହୋଇ ସେମାନଙ୍କ ସଙ୍ଗେ ଚିରନ୍ତନ ସଂଗ୍ରାମ କରିବାକୁ ପଡ଼ିଥିଲା । ସେହି ଖଣ୍ଡଯୁଦ୍ଧମାନଙ୍କରେ ଅନେକ ଇଂରେଜ ନାରୀ-ପୁରୁଷ ପ୍ରାଣ ହରାଇଲେ ମଧ୍ୟ ଯେଉଁମାନେ ବଞ୍ଚି ରହିଲେ ସେମାନେ ନିଷ୍ଠା-ସହକାରେ ନିଜନିଜର କର୍ତ୍ତବ୍ୟ କରିବାକୁ ଲାଗିଲେ । ସେମାନଙ୍କ ନିଷ୍ଠା ଓ ଅଧ୍ୟବସାୟ, ସାହସ ଓ ଧୈର୍ଯ୍ୟ ପୃଥିବୀର ଇତିହାସରେ ବିରଳ । ଫଳରେ ଆଜି ସେମାନେ ସେହି ଆରଣ୍ୟକ ଦେଶକୁ ପୃଥିବୀର ଋଦ୍ଧିମନ୍ତ ଓ ସଭ୍ୟତମ ଦେଶରେ ପରିଣତ କରିପାରିଛନ୍ତି ।

ପ୍ରାୟ ଦେଢ଼ଶ ବର୍ଷ ତଳେ କାପ୍‌ଟେନ୍ କୁକ୍ ଅଷ୍ଟ୍ରେଲିଆ ମହାଦେଶର ବେଳାଭୂମିରେ ଇଂରେଜ ପତାକା ପ୍ରୋଥିତ କରିଥିଲେ । ତାଙ୍କ ଭ୍ରମଣବୃତ୍ତାନ୍ତ ପଢ଼ି ବ୍ରିଟିଶ ସରକାର ଅଷ୍ଟ୍ରେଲିଆକୁ ନିର୍ବାସିତ ଅପରାଧୀମାନଙ୍କର ଉପନିବେଶ କରିବାକୁ ସ୍ଥିର କଲେ । ଫଳରେ ୧୭୮୮ ଖ୍ରୀଷ୍ଟାବ୍ଦର ଜାନୁଆରୀ ୨୨ ତାରିଖରେ ଗୋଟିଏ ଇଂରେଜ ଜାହାଜ କେତେଗୁଡ଼ିଏ ଇଂରେଜ ଅପରାଧୀଙ୍କୁ ଘେନି ଅଷ୍ଟ୍ରେଲିଆର ମାଟିରେ ପହଞ୍ଚାଇଦେଲା । ଯାହା କଏଦୀମାନଙ୍କର ବାସଭୂମି ବୋଲି ସ୍ଥିରୀକୃତ ହୋଇଥିଲା, ତାହା ଏବେ ଇଂରେଜମାନଙ୍କ ସାହସ ଓ ଅଧ୍ୟବସାୟ ଫଳରେ ଏକ ସୁସଭ୍ୟ ଧନୀ ଦେଶରେ ପରିଣତ ହୋଇଅଛି । ଇଂରେଜମାନେ ସେଠାରେ ପହଞ୍ଚିବା ପୂର୍ବରୁ ବିରାଟ ଅଷ୍ଟ୍ରେଲିଆ ମହାଦେଶ କେବଳ କେତେକ ବର୍ବର ଜାତିଦ୍ୱାରା ଅଧ୍ୟୁଷିତ ହେଉଥିଲା । ତାହାର ବିରାଟ ସମ୍ପଦ-ରାଶି ମାନବ-ଚକ୍ଷୁରୁ ପ୍ରଚ୍ଛନ୍ନ ରହିଥିଲା । ଯେଉଁ ଭୂମିରୁ ଇଂରେଜମାନେ କୋଟି କୋଟି ଟଙ୍କାର ସୁନା କାଢ଼ି ଓ କୋଟି କୋଟି ଟଙ୍କାର ଶସ୍ୟ ଉତ୍ପାଦନ କରି ଦେଶକୁ ସମୃଦ୍ଧିମନ୍ତ ସହରମାଳାରେ ମଣ୍ଡିତ କରିଅଛନ୍ତି, ସେହି ଭୂମିରେ ଅଜ୍ଞ, ଅସଭ୍ୟ ଆଦିମ-ମାନବ ବଣମୂଳ ଖାଇ ଅର୍ଦ୍ଧନଗ୍ନ ଅବସ୍ଥାରେ ବନ୍ୟ-ଜୀବନ ଯାପନ କରୁଥିଲେ । ମନୁଷ୍ୟର ବୁଦ୍ଧି ଓ ଶ୍ରମ ମିଶିଲେ ମାଟିକୁ କିପରି ସୁନା କରାଯାଇପାରେ, ଅଷ୍ଟ୍ରେଲିଆର ଗୋ-ମେଷଚାରକମାନଙ୍କ କାହାଣୀ ତାହାର ଦୃଷ୍ଟାନ୍ତ ।

ପ୍ରାୟ ଶହେବର୍ଷତଳେ ସମଗ୍ର ଅଷ୍ଟ୍ରେଲିଆରେ ଗୋଟିଏ ବୋଲି ଗୋ-ମେଷ ନଥିଲେ । ପ୍ରଥମେ ଯେଉଁ ଶ୍ୱେତାଙ୍ଗମାନେ ଅଷ୍ଟ୍ରେଲିଆରେ ପାଦ ପକାଇଲେ, ସେମାନଙ୍କର ବୁଦ୍ଧିମନ୍ତ ଦୃଷ୍ଟି ଦେଖିପାରିଲା ଯେ, ସେହି ଜନହୀନ ମହାଦେଶରୁ ମେଷପାଳନଦ୍ୱାରା କୋଟି କୋଟି ଟଙ୍କା ଅର୍ଜନ କରାଯାଇପାରେ । କାରଣ ସୁଖାଦ୍ୟ-ତୃଣଯୁକ୍ତ ସମତଳ ଭୂମି ସେଠାରେ ସହସ୍ର ସହସ୍ର କୋଶ ଧରି ବିସ୍ତୃତ ରହିଥିଲା । ତେଣୁ ଔପନିବେଶିକମାନେ ଇଂଲଣ୍ଡ ଓ ସ୍ପେନରୁ ଉତ୍କୃଷ୍ଟ ମେଷଦଳ ସଂଗ୍ରହ କରି ସେମାନଙ୍କୁ ଜାହାଜରେ ପୂରାଇ ୟୁରୋପରୁ ଅଷ୍ଟ୍ରେଲିଆକୁ ବୋହି ନେଲେ ଏବଂ

ସେ ଦେଶର ତୃଣଭୂମିରେ ସେମାନଙ୍କୁ ଛାଡ଼ିଦେଲେ । ସେହି ମୁଷ୍ଟିମେୟ ମେଷଦଳ ବଢ଼ି ବଢ଼ି ଏବେ ବହୁକୋଟି ସଂଖ୍ୟକ ହୋଇଅଛନ୍ତି ଏବଂ ଅଷ୍ଟ୍ରେଲିଆକୁ ପ୍ରତି ବର୍ଷ ଅଧିକରୁ ଅଧିକ ସଂପଦ ଆଣିଦେଉଅଛନ୍ତି ।

କିନ୍ତୁ ଯେଉଁ ଅଷ୍ଟ୍ରେଲିୟମାନେ ମେଷପାଳନକୁ ଜୀବିକାସ୍ୱରୂପ ଧରିବସିଲେ, ସେମାନଙ୍କୁ ନଗରର ସୁଖ-ସ୍ୱାଚ୍ଛନ୍ଦ୍ୟ ଛାଡ଼ି ଶତ ଶତ ମାଇଲ ନିର୍ଜନ କାନ୍ତାର ମଧ୍ୟକୁ ପଶିବାକୁ ହୋଇଥିଲା । ସେମାନଙ୍କୁ ନିଜର ପିଲାକୁଟୁମ୍ବ ଛାଡ଼ି ସନ୍ନ୍ୟାସୀମାନଙ୍କ ପରି ଖଣ୍ଡିଏ ଖଣ୍ଡିଏ କୁଡ଼ିଆଘରେ କଷ୍ଟମୟ ଜୀବନ ଯାପନ କରିବାକୁ ପଡ଼ିଥିଲା । କିନ୍ତୁ ଅସୀମ ଧୈର୍ଯ୍ୟ ଓ ପରିଶ୍ରମ ଫଳରେ ସେମାନଙ୍କର ଭାଗ୍ୟୋଦୟ ହେଲା । ସେମାନଙ୍କର ମେଷପଲ ବଢ଼ିବାକୁ ଲାଗିଲେ ଓ କ୍ରମେ ତାଙ୍କର କୁଡ଼ିଆଘରସବୁ ବିବିଧ ବିଳାସମୟ ଉପବନ-ଶୀତଳ ସୌଧାବାସମାନଙ୍କରେ ପରିଣତ ହେଲା । ଏବେ ଅଷ୍ଟ୍ରେଲିଆର କୌଣସି ମେଷପାଳକ ଘରେ ଅତିଥି ହେଲେ ଆମ୍ଭମାନଙ୍କୁ ବିଚିତ୍ର ଅନୁଭୂତି ଘେନି ଆସିବାକୁ ହେବ । ଆମ୍ଭେମାନେ ଦେଖିବା ଯେ, ଆମେ ଯାହାଙ୍କ କୁଣିଆ ହୋଇଛୁଁ ତାଙ୍କରି ଘର ବ୍ୟତୀତ ବହୁ କ୍ରୋଶ ଧରି ଆଉ କାହାରି ସେଠି ଘର ନାହିଁ । ସେହି ବହୁବିସ୍ତୃତ କ୍ଷେତ୍ରରେ ସହସ୍ର ସହସ୍ର ମେଷ ଚରୁଛନ୍ତି ଏବଂ ଏସବୁ ଏକା ତାଙ୍କରି । ତାଙ୍କ ପିଲାମାନେ ହୁଏତ ରେଳରେ ବସି ପ୍ରତିଦିନ ସ୍କୁଲକୁ ଯାନ୍ତି ଏବଂ ତାଙ୍କର ଡାକ ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ବସ୍ତୁ ହୁଏତ ଉଡ଼ାଜାହାଜରେ ଆସେ । ତଥାପି ସେହି ମେଷପାଳକଙ୍କ ଘରେ ପଶିଲେ ଆମ୍ଭେମାନେ ଜାଣିପାରିବା ନାହିଁ ଯେ, ଆମେ ସହରଠୁ ବହୁ ଦୂରରେ ଗୋଟିଏ ନିର୍ଜନ କାନ୍ତାରରେ ଆସି ପଡ଼ିଛେଁ । କାରଣ ମେଷ-ପାଳକଙ୍କର ପ୍ରଚୁର ଧନାଗମ ହେଉଥିବାରୁ ଘର ଭିତରେ ସେ ବିଦ୍ୟୁତ୍‌ଆଲୋକ ପ୍ରଭୃତି ସଭ୍ୟ ଜୀବନର ସକଳ ସ୍ୱାଚ୍ଛନ୍ଦ୍ୟ ଆୟୋଜନ କରିପାରିଛନ୍ତି ଏବଂ ସେହି ଧନପ୍ରାଚୁର୍ଯ୍ୟ ହେତୁ ଏହି ଜନହୀନ ମେଷଚାରଣ କ୍ଷେତ୍ରରେ ପଡ଼ିରହିଛନ୍ତି ।

ଓଡ଼ିଶାର କୋରାପୁଟ ଜିଲାରେ ଓ ଗଡ଼ଜାତ ଅଞ୍ଚଳରେ ଶତ ଶତ କ୍ରୋଶର ଉର୍ବରା ପୃଥିବୀ ମନୁଷ୍ୟ ହସ୍ତକୁ ଅପେକ୍ଷା କରି ପଡ଼ିରହିଛି । ଦେଶର ଯୁବକମାନେ ନିଜର ବୁଦ୍ଧି ଓ ବାହୁ-ବଳରେ ଏହି ଭୂମିକୁ ଆୟତ୍ତ କରି ଏହି ମାଟିରୁ ସୁନା ବାହାରକରି ନିଜର ଓ ଦେଶର ମଙ୍ଗଳ କରିପାରନ୍ତେ । କିନ୍ତୁ ଅତି ପରିତାପର କଥା ଏହି ଯେ, ଆମ ଦେଶର ଲୋକେ ଦେହର ଝାଳ ବୁହାଇ ସ୍ୱାଧୀନଭାବରେ ଚାରିପଇସା ପାଇବା ଅପେକ୍ଷା ପର ପାଖରେ ମୁଣ୍ଡ ନୁଆଁଇ ଦେହସୁଖରେ ଦି ପଇସା ପାଇଯିବାକୁ ଅଧିକ ପସନ୍ଦ କରନ୍ତି । ଏହାହିଁ ଆମ ଜାତି ଉପରେ ଅଭିଶାପ ।

# ପ୍ରକୃତି

ସାଧାରଣତଃ ପ୍ରକୃତି କହିଲେ ବୃକ୍ଷଲତାଦି ଉଦ୍ଭିଜ୍ଜଗତ୍‌କୁ ବୁଝାଏ । କିନ୍ତୁ ବ୍ୟାପକ ଅର୍ଥରେ ଅନନ୍ତ ଅନ୍ତରୀକ୍ଷର ଅଗଣିତ ଜ୍ୟୋତିଷ୍କମଣ୍ଡଳିଠାରୁ ପଦତଳର ସାମାନ୍ୟ ଦୂର୍ବା ପର୍ଯ୍ୟନ୍ତ ସମସ୍ତ ଈଶ୍ୱରସୃଷ୍ଟି ପ୍ରକୃତିର ଅନ୍ତର୍ଗତ । ଏହି ଅର୍ଥରେ ମନୁଷ୍ୟ ମଧ୍ୟ ପ୍ରକୃତିର ଏକ ଅଙ୍ଗ ।

କିନ୍ତୁ ସାଧାରଣ ଅର୍ଥରେ ମନୁଷ୍ୟକୁ ପ୍ରକୃତିଠାରୁ ଭିନ୍ନ ବୋଲି ଧରାଯାଏ । ଏହାର କାରଣ ଏହି ଯେ, ପ୍ରକୃତିର ଅନୁକରଣରେ ପ୍ରକୃତିଠାରୁ ଅଲଗା ହୋଇ ମନୁଷ୍ୟ କାଳକ୍ରମେ ନିଜର ଗୋଟିଏ ସ୍ୱତନ୍ତ୍ର ସଂସାର ଗଢ଼ିପକାଇଛି । ମନୁଷ୍ୟେତର ସକଳ ପ୍ରାଣୀ ପ୍ରକୃତିଦେହରେହିଁ ଆଶ୍ରୟ ଗ୍ରହଣକରନ୍ତି । କିନ୍ତୁ ମନୁଷ୍ୟ ତା'ର ଆଶ୍ରୟ ଲାଗି ପ୍ରକୃତି-କ୍ରୋଡ଼ରୁ ବିଚ୍ଛିନ୍ନ ହୋଇ ଗ୍ରାମ ଓ ନଗରମାନ ସୃଷ୍ଟି କରିଅଛି । କାଳକ୍ରମେ ଏହି ଗ୍ରାମ ଓ ନଗରମାନଙ୍କରୁ ମନୁଷ୍ୟର ଜୀବନପ୍ରଣାଳୀକୁ ଆଶ୍ରୟ କରି ମନୁଷ୍ୟର ବୁଦ୍ଧି, କୌଶଳ ଓ ହସ୍ତପାଟବ ଉପରେ ନିର୍ଭର କରି ଗୋଟିଏ ବିରାଟ ସଭ୍ୟତା ଗଠିତ ହୋଇଛି । ଏହି ସଭ୍ୟତା ସମ୍ପୂର୍ଣ୍ଣତଃ ମନୁଷ୍ୟର । ଈଶ୍ୱରସୃଷ୍ଟ ଅନ୍ୟ କୌଣସି ଜୀବର ଏପ୍ରକାର ସଭ୍ୟତା ନାହିଁ । ଏହି ସଭ୍ୟତାରୁ ଭିନ୍ନ ହେଲେ ମନୁଷ୍ୟ ଓ ଇତର ପ୍ରାଣୀ ମଧ୍ୟରେ ବିଶେଷ କିଛି ପ୍ରଭେଦ ରହେ ନାହିଁ । କାରଣ ଭୋଜନ-ଶୟନାଦି ସାଧାରଣ କ୍ରିୟା ମନୁଷ୍ୟ ପରି ଅନ୍ୟମାନଙ୍କର ମଧ୍ୟ ଅଛି; କିନ୍ତୁ ଚିତ୍ତବିନୋଦନ ଲାଗି ସାହିତ୍ୟ ଓ କଳା ଏବଂ ଶ୍ରମଲାଘବ ଲାଗି ବିଭିନ୍ନ ଯନ୍ତ୍ରସକଳ ଅନ୍ୟ କୌଣସି ପ୍ରାଣୀର ନାହିଁ । ମନୁଷ୍ୟ ସାଧାରଣତଃ ଏହିସବୁ ଘେନି ତା'ର ସଭ୍ୟତାର ଗର୍ବ କରିଥାଏ ।

କିନ୍ତୁ କେତେକ ପଣ୍ଡିତଙ୍କ ମତରେ ମନୁଷ୍ୟର ଏହି ସ୍ୱତନ୍ତ୍ର ସୃଷ୍ଟି ତାହାର ଦୁଃଖକାରକ । ଏମାନଙ୍କ ମତରେ ପ୍ରକୃତି ସଙ୍ଗେ ମନୁଷ୍ୟର ସମ୍ପର୍କ ଯେତେ ଘନିଷ୍ଠ ହେବ, ତା'ର ଦେହ ଓ ମନର ସ୍ୱାସ୍ଥ୍ୟ ତେତେ ଉନ୍ନତ ହେବ । ପ୍ରକୃତି ସହିତ ସଖ୍ୟ ରଖି ପ୍ରାକୃତିକ ଉପାୟରେ ଜୀବନ ଯାପନ କଲେ ମନୁଷ୍ୟ ଯେ କେବଳ ସୁସ୍ଥ ଓ ଦୀର୍ଘାୟୁ ହେବ ତାହା ନୁହେଁ, ତା'ର ମନ ମଧ୍ୟ ଉଚ୍ଚ ଚିନ୍ତାର ଅଧିକାରୀ ହେବ । ବସ୍ତୁତଃ ଦେଖାଯାଏ ଯେ, ପର୍ବତ ଓ ଅରଣ୍ୟମାନଙ୍କରେ ପ୍ରକୃତିର ନିବିଡ଼ ସାହଚର୍ଯ୍ୟ-ମଧ୍ୟରେ ବାସକରୁଥିବା ଆରଣ୍ୟକ ଜାତିସକଳ ନାଗରିକମାନଙ୍କଠାରୁ ଅଧିକ ସୁସ୍ଥ ଓ ଦୀର୍ଘାୟୁ । କେବଳ ତାହା ନୁହେଁ, ସତ୍ୟ ପ୍ରତି ଅନୁରାଗ, ଆତିଥ୍ୟ, ଭକ୍ତି, ବିଶ୍ୱାସ

ପ୍ରଭୃତି ଯେଉଁସବୁ ଗୁଣ ମନୁଷ୍ୟ ଚରିତ୍ରର ଭୂଷଣସ୍ୱରୂପ, ସେସବୁ ଏହି ଜାତିମାନଙ୍କଠାରେ ବିଶେଷଭାବେ ପରିଦୃଷ୍ଟ ହୁଏ । ନଗରବାସୀମାନଙ୍କଠାରେ ଏସବୁ ଗୁଣର କେତେଦୂର ଅଭାବ ତାହା ଏ ଯୁଗର ନଗର-ଜୀବନ ସଙ୍ଗେ ଯେଉଁମାନଙ୍କର ପ୍ରତ୍ୟକ୍ଷ ଯୋଗ ଅଛି, ସେମାନେ ସହଜରେ ବୁଝିପାରିବେ । ପ୍ରଶାନ୍ତ ମହାସାଗରର ପଲିନେଶୀୟ ଦ୍ୱୀପପୁଞ୍ଜ ପ୍ରକୃତିର ବିଭବଭୂମି । ତତ୍ରତ୍ୟ ପ୍ରକୃତିର ବିଳାସ-ମଧ୍ୟରେ ବଢ଼ି ସେହି ଦ୍ୱୀପମାନଙ୍କର ଅଧିବାସୀଗଣ ରୂପ ଓ ସ୍ୱାସ୍ଥ୍ୟରେ ପରମ ଭାଗ୍ୟବାନ୍ ହୋଇଉଠନ୍ତି । ସେଠାରେ ସାଧାରଣ ସ୍ତ୍ରୀ ଓ ପୁରୁଷ ଅତ୍ୟନ୍ତ ସୁନ୍ଦର ଏବଂ ସେମାନେ ଏପରି ସୁସ୍ଥ ଯେ, ୟୁରୋପୀୟ ସଭ୍ୟତା ସେଠାରେ ପ୍ରବେଶ କରିବା ପର୍ଯ୍ୟନ୍ତ ସେମାନେ ରୋଗ କ'ଣ ଜାଣିନଥିଲେ ।

ପ୍ରକୃତିର ଘନିଷ୍ଠ ସମ୍ପର୍କରେ ଥାଇ ଆମର ଏହି ଉତ୍କଳଦେଶର ଗଡ଼ଜାତମାନଙ୍କର ଆଦିମ ଜାତିମାନେ ଅତ୍ୟନ୍ତ ସରଳ-ବିଶ୍ୱାସୀ ଓ ସତ୍ୟପ୍ରିୟ । ଆଧୁନିକ ସଭ୍ୟତା କ୍ରମେ କ୍ରମେ ସେମାନଙ୍କୁ କଳୁଷିତ କରିଦେଉଛି । ବର୍ତ୍ତମାନ ମଧ୍ୟ ସେମାନଙ୍କର ସରଳ ଜୀବନ, ସତ୍ୟାନୁରାଗ, ଆତିଥେୟତା ଗଡ଼ଜାତର ଅରଣ୍ୟମାନଙ୍କୁ ପବିତ୍ର କରି ରଖିଛି ।

ନଗରବାସୀମାନେ ପ୍ରକୃତିଠାରୁ ଦୂରରେ ରହନ୍ତି । ଏମାନେ ମୁକ୍ତ ବାୟୁ, ମୁକ୍ତ ଆଲୋକ, ମୁକ୍ତ ଆକାଶ ଓ ବୃକ୍ଷଲତାଦିର ସ୍ୱଚ୍ଛନ୍ଦ ସାହଚର୍ଯ୍ୟ ପାଇପାରନ୍ତି ନାହିଁ; ତେଣୁ ଏହି ରୁଦ୍ଧ ଜୀବନ ଏମାନଙ୍କ ଦେହ ଓ ମନର ସ୍ୱାସ୍ଥ୍ୟକୁ ନଷ୍ଟକରେ । ସେଥିପାଇଁ ନଗରମାନଙ୍କରେ ବହୁ ରୋଗ ଓ ଚୌର୍ଯ୍ୟାଦି ନାନା ଅପରାଧ ପରିଦୃଷ୍ଟ ହୁଏ । ନଗରରେ ପ୍ରତିବେଶୀ ପ୍ରତି ପ୍ରତିବେଶୀର ବିଶ୍ୱାସ ନଥାଏ; ମନୁଷ୍ୟର ମନୁଷ୍ୟ ପ୍ରତି ଯେଉଁ ସ୍ୱାଭାବିକ ସହାନୁଭୂତି ତାହା ବିକୃତ ଜୀବନପ୍ରଣାଳୀ ଯୋଗୁ ସମାଧି ଲାଭ କରେ ।

ଏହିସବୁ କାରଣ ଯୋଗୁ ୟୁରୋପୀୟ ମନୀଷୀ ରୁଷୋ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ପ୍ରକୃତିବାଦ ପ୍ରଚାର କରି ଚିନ୍ତା-ଜଗତରେ ଯୁଗାନ୍ତର ଆଣିଥିଲେ । କିନ୍ତୁ ଚିନ୍ତା-ଜଗତରେ ତାଙ୍କ ମତ ସମସ୍ତେ ସମର୍ଥନ କଲେହେଁ ବାସ୍ତବ ଜଗତରେ ତାହା କାର୍ଯ୍ୟରେ ପରିଣତ ହେଉନାହିଁ । କ୍ରମେ କ୍ରମେ ପୃଥିବୀର ସବୁଆଡ଼େ ଆଧୁନିକ ମାନବର ପ୍ରକୃତି-ସମ୍ପର୍କହୀନ ସଭ୍ୟତା ମାଡ଼ିଯାଉଛି । ଆମର ପରମପୂଜ୍ୟ ଗାନ୍ଧିଜୀ ପ୍ରକୃତିକୁ ଅତ୍ୟନ୍ତ ଭଲପାଉଥିଲେ । କେବଳ ବର୍ଷାକାଳ ଛଡ଼ା ସେ ସର୍ବଦା ମୁକ୍ତ ଆକାଶତଳେ ନିଦ୍ରାଯାଉଥିଲେ । ସେ ନଗର ଅପେକ୍ଷା ଆଶ୍ରମ ପ୍ରତି ଅଧିକ ଅନୁରକ୍ତ ଥିଲେ ।

# କାଳିଦାସ

ଯେଉଁ ମହାକବିମାନଙ୍କ ଦାନରେ ଆମ୍ଭମାନଙ୍କର ଏହି ଜନ୍ମଭୂମି ଭାରତବର୍ଷର ସାହିତ୍ୟ ରସବନ୍ତ ହୋଇଛି, ସେମାନଙ୍କ ମଧ୍ୟରେ କାଳିଦାସ ଶ୍ରେଷ୍ଠ । ସେ କେବଳ ଭାରତବର୍ଷର ଶ୍ରେଷ୍ଠ କବି ନୁହନ୍ତି, ସମଗ୍ର ଜଗତର ଶ୍ରେଷ୍ଠ କବିମାନଙ୍କ ମଧ୍ୟରେ ଏକତମ । ଊନବିଂଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ କାଳିଦାସଙ୍କ କବିଗୌରବ କେବଳ ଭାରତରେହିଁ ସୀମାବଦ୍ଧ ଥିଲା; କିନ୍ତୁ ଯେତେବେଳେ ପାଶ୍ଚାତ୍ୟ ପଣ୍ଡିତମାନଙ୍କଦ୍ୱାରା ସଂସ୍କୃତ ଭାଷା ଓ ସାହିତ୍ୟ ଅଧୀତ ହେବାକୁ ଲାଗିଲା ଏବଂ କ୍ରମେ କାଳିଦାସଙ୍କ ନାଟକ ଓ କାବ୍ୟ ପାଶ୍ଚାତ୍ୟ ଭାଷାମାନଙ୍କରେ ଅନୂଦିତ ହେଲା, ସେତେବେଳେ ସମଗ୍ର ପାଶ୍ଚାତ୍ୟ ଜଗତର ପଣ୍ଡିତମାନେ କାଳିଦାସଙ୍କ କବିପ୍ରତିଭାରେ ଚମତ୍କୃତ ହେବାକୁ ଲାଗିଲେ । ସେହି ସମୟରେ ଜର୍ମାନ୍ ସାହିତ୍ୟର ମହତ୍ତମ ପୁରୁଷ ଗେଟେ ଜୀବିତ ଥିଲେ । ଗେଟେ କାଳିଦାସଙ୍କ ଶକୁନ୍ତଳା ନାଟକର ଅନୁବାଦ ପାଠ କରି କିପରି ମୁଗ୍ଧ ଓ ଅଭିଭୂତ ହୋଇଥିଲେ, ତାହା ତାଙ୍କର ବର୍ତ୍ତମାନ ସୁବିଦିତ ଶକୁନ୍ତଳା-ପ୍ରଶସ୍ତିରୁ ଜଣାପଡ଼େ । ''ଯଦି ଯୌବନର ପ୍ରସ୍ଫୁଟିତ ପୁଷ୍ପ ଓ ପରିଣତ ବୟସର ଫଳରାଜି ଏକାଧାରରେ ଉପଭୋଗ କରିବାକୁ, ଯଦି ଆତ୍ମା କିପରି ପରିତୁଷ୍ଟ, ପରିପୁଷ୍ଟ ଓ ପୁଲକିତ ହେବ ତାହାର ବ୍ୟବସ୍ଥା କରିବାକୁ ଇଚ୍ଛା ଥାଏ ଏବଂ ଯଦି ଏକ ସ୍ଥାନରେ ସ୍ୱର୍ଗ ଓ ମର୍ତ୍ତ୍ୟର ସୁଖ ଅନୁଭବ କରିବାକୁ ଇଚ୍ଛା କର, ତେବେ ମୁଁ ଶକୁନ୍ତଳାକୁ ନିର୍ଦ୍ଦେଶ କରିବି– ତାହା ପରେ ମୋର ଆଉ ଅଧିକ କିଛି କହିବାର ନାହିଁ ।'' ଗେଟେ କାଳିଦାସଙ୍କର କେବଳ ଯେ ଭକ୍ତ ଥିଲେ ତାହା ନୁହେଁ, ଶିଷ୍ୟ ମଧ୍ୟ । ଗେଟେଙ୍କର ଶ୍ରେଷ୍ଠ ନାଟକରେ ଶକୁନ୍ତଳାର ଛାୟା ସ୍ପଷ୍ଟ ନିପତିତ ହୋଇଅଛି ।

କିନ୍ତୁ ଅତ୍ୟନ୍ତ ପରିତାପର ବିଷୟ, ଏପ୍ରକାର କବିଗୁରୁଙ୍କ ଜୀବନର ଇତିହାସ ଆମ୍ଭମାନଙ୍କୁ ସମ୍ପୂର୍ଣ୍ଣ ଅଜ୍ଞାତ । ତାଙ୍କ ଜନ୍ମକାଳ, ଜନ୍ମସ୍ଥାନ ଘେନି ଏପର୍ଯ୍ୟନ୍ତ ବିବାଦ ଚାଲିଆସିଛି । କେତେକଙ୍କ ମତରେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ କବିଙ୍କର ଜୀବନକାଳ । ଅନ୍ୟମାନଙ୍କ ମତରେ ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ କବି ଜୀବିତ ଥିଲେ । ଲୌକିକ କିମ୍ବଦନ୍ତୀରେ କାଳିଦାସ ବିକ୍ରମାଦିତ୍ୟ ନାମକ ରାଜାଙ୍କ ସଭାରେ ନବରତ୍ନଙ୍କ ମଧ୍ୟରେ ଶ୍ରେଷ୍ଠ ରତ୍ନ ଥିଲେ । କିନ୍ତୁ ଐତିହାସିକ ଅନୁସନ୍ଧାନରୁ ଜଣାଯାଉଛି ଯେ, ଅତୀତ ଭାରତରେ ଏକାଧିକ ବିକ୍ରମାଦିତ୍ୟ ରାଜତ୍ୱ କରିଯାଇଅଛନ୍ତି ଏବଂ ବରାହମିହିରାଦି ନବରତ୍ନ ମଧ୍ୟ ଏକ କାଳରେ ଜୀବିତ ଥିବା ଅସମ୍ଭବ ଜଣାପଡ଼ିଛି । ଅନେକେ ମନେକରନ୍ତି, ମହାକବି ମଗଧର ଗୁପ୍ତସମ୍ରାଟ୍ ସମୁଦ୍ରଗୁପ୍ତଙ୍କର ସଭାକବି ଓ ସମସାମୟିକ

ଥିଲେ । ସମୁଦ୍ରଗୁପ୍ତ ଦିଗ୍‌ବିଜୟୀ ବୀର ଥିଲେ; ତେଣୁ ମହାକବିଙ୍କ ମହାକାବ୍ୟ ରଘୁବଂଶରେ ମହାରାଜ ରଘୁଙ୍କ ଦିଗ୍‌ବିଜୟ ବର୍ଣ୍ଣନା ସମୁଦ୍ରଗୁପ୍ତଙ୍କ ଦିଗ୍‌ବିଜୟର ଛାୟା ବୋଲି କେତେକଙ୍କର ଅନୁମାନ । ଅପର ପକ୍ଷରେ ଉଜ୍ଜୟିନୀରାଜ ଯଶୋଧର୍ମ ବିକ୍ରମାଦିତ୍ୟ ମହାକବିଙ୍କ ପୃଷ୍ଠପୋଷକ ଓ ବନ୍ଧୁ ଥିବାର ପ୍ରମାଣର ମଧ୍ୟ ନିତାନ୍ତ ଅଭାବ ନାହିଁ । ଉଜ୍ଜୟିନୀ ବର୍ତ୍ତମାନ ପର୍ଯ୍ୟନ୍ତ ପଶ୍ଚିମ ଭାରତରେ ଏକ ନ୍ୟୂନାଧିକ ପ୍ରଧାନ ନଗର । ଯେଉଁ ମହାକାଳ ମନ୍ଦିର ଓ ଶିପ୍ରା ନଦୀ ମହାକବିଙ୍କ ଅମର କାବ୍ୟରେ ଅମର ଓ ବିଶ୍ୱବିଶ୍ରୁତ ହୋଇଅଛନ୍ତି, ତାହା ବର୍ତ୍ତମାନ ମଧ୍ୟ ଉଜ୍ଜୟିନୀରେ ଦେଖିବାକୁ ମିଳେ । ସେଠାରେ ଏକ ବୃହତ୍ ପୁଷ୍କରିଣୀମଧ୍ୟରେ ଗୋଟିଏ ଜଳସୌଧ ଅଦ୍ୟାପି ବିରାଜିତ । ତାହା ବିକ୍ରମାଦିତ୍ୟଙ୍କ ଗ୍ରୀଷ୍ମାବାସ ଥିବାର ଓ ତହିଁରୁ କବିଙ୍କ ବର୍ଣ୍ଣିତ ‘ଜଳଯନ୍ତ୍ରପୁର’ ଆସିଥିବାର ଅନେକ ଅନୁମାନ କରନ୍ତି । କବିଙ୍କ ମେଘଦୂତ ନାମକ କାବ୍ୟରେ କୌଣସି ବିରହୀ ମେଘକୁ ଦୂତ କରି ସ୍ୱସ୍ଥାନକୁ ସନ୍ଦେଶ ପଠାଇବାର ବର୍ଣ୍ଣନା ଅଛି । ମେଘର ଗତିପଥରେ ଉଜ୍ଜୟିନୀ ପଡ଼ିନଥିଲେ ହେଁ, ଉଜ୍ଜୟିନୀର ସୌନ୍ଦର୍ଯ୍ୟ ଅନୁଭବ କରିବାଲାଗି କବି ମେଘକୁ ପଥ ଭାଙ୍ଗି ଯିବାପାଇଁ ଅନୁରୋଧ କରିଅଛନ୍ତି । ଉଜ୍ଜୟିନୀ ପ୍ରତି ଏହି ଆତ୍ୟନ୍ତିକ ଅନୁରାଗରୁ କବି ଉଜ୍ଜୟିନୀର ନାଗରିକ ଥିବାର ଅନୁମାନ କରାଯାଏ ।

କାଳିଦାସ କେବଳ କବି ନୁହନ୍ତି– ସେ କାବ୍ୟ, ନାଟକ, ଗଳ୍ପ, ଅଳଙ୍କାର, ମହାକାବ୍ୟ ଓ ଛନ୍ଦରେ ମଧ୍ୟ ଅସାଧାରଣ ପ୍ରତିଭା ଦେଖାଇଯାଇଅଛନ୍ତି । ତାଙ୍କ କାବ୍ୟମାନ ପାଠକଲେ ଏହା ସ୍ପଷ୍ଟ ଜଣାଯାଏ ଯେ, ସେ ଅସାଧାରଣ ପଣ୍ଡିତ ଥିଲେ ଏବଂ ନ୍ୟାୟ, ଜ୍ୟୋତିଷ, ଉପନିଷଦାଦି ବହୁ ଶାସ୍ତ୍ରରେ ତାଙ୍କର ଅଗାଧ ବ୍ୟୁତ୍ପତ୍ତି ଥିଲା । ନୈସର୍ଗିକ ପ୍ରତିଭା ସଙ୍ଗେ ଏହି ଅଗାଧ ପାଣ୍ଡିତ୍ୟର ଗଙ୍ଗା-ସାଗର-ସଙ୍ଗମ ହୋଇଥିଲା । ତାଙ୍କ କାବ୍ୟମାନଙ୍କରୁ ଆହୁରି ମଧ୍ୟ ସ୍ପଷ୍ଟ ଜଣାଯାଉଅଛି ଯେ, ସେ ଅସାଧାରଣ ପର୍ଯ୍ୟଟକ ଥିଲେ ଓ ପ୍ରକୃତିର ନିସର୍ଗ ସୌନ୍ଦର୍ଯ୍ୟ ପର୍ଯ୍ୟବେକ୍ଷଣଲାଗି ତାଙ୍କର ଦିବ୍ୟ ଦୃଷ୍ଟି ଥିଲା । ହିମାଳୟଠାରୁ କୁମାରିକାଯାଏ ନଦୀ, ପର୍ବତ, ବନ, ପ୍ରାନ୍ତରର ଯେଉଁଠି ଯେଉଁ ବିଶିଷ୍ଟ ସୌନ୍ଦର୍ଯ୍ୟ ଅଛି, କାଳିଦାସଙ୍କ ତୀକ୍ଷ୍ଣ ଦୃଷ୍ଟି ସେଥିରୁ କାହାକୁ ଛାଡ଼ିଯାଇନାହିଁ । କୁମାରିକାର ତମାଳ-ତାଳୀ-ବନରାଜି-ନୀଳା ବେଳାଭୂମି ଓ ପୃଥିବୀର ମାନଦଣ୍ଡରୂପୀ ନଗାଧିରାଜ ହିମାଳୟର ପ୍ରକୃଷ୍ଟ ବର୍ଣ୍ଣନାଲାଗି କାଳିଦାସଙ୍କ ଲେଖନୀହିଁ କ୍ଷମ ହୋଇଅଛି ଏବଂ ଭାରତର ଅପରାପର ସ୍ଥାନ ପରି ଏମାନେ ମଧ୍ୟ ମହାକବିଙ୍କ ଲେଖନୀଗୌରବରେ ଅମର ହୋଇଯାଇଛନ୍ତି ।

କାଳିଦାସଙ୍କ ଗ୍ରନ୍ଥସମୂହ ମଧ୍ୟରେ ମେଘଦୂତ, କୁମାରସମ୍ଭବ, ରଘୁବଂଶ,

ଶକୁନ୍ତଳା, ମାଳବିକାଗ୍ନି ମିତ୍ର, ବିକ୍ରମୋର୍ବଶୀ, ଋତୁସଂହାର ପ୍ରଭୃତି ପ୍ରଧାନ । ତାଙ୍କର ଭାଷା ଅତ୍ୟନ୍ତ ଶ୍ରୁତିସୁଖକର, ସରଳ ଓ ସରସ । ସଂସ୍କୃତ ଭାଷାରେ ଅନ୍ୟାନ୍ୟ କବିଙ୍କର ରସହୀନ ଶବ୍ଦକ୍ରୀଡା ତାଙ୍କ ଲେଖାରେ ଦେଖିବାକୁ ମିଳେ ନାହିଁ । ନରନାରୀର ଶାଶ୍ୱତ ଅନୁଭୂତିସବୁ ସହଜ ସ୍ୱଚ୍ଛନ୍ଦ ଭାଷାରେ ସେ କିପରି ଦେଇପାରିଛନ୍ତି, ତାହା ପାଠ ନ କରିଥିବା ଲୋକଙ୍କୁ ସହଜରେ ବୁଝାଇ ହେବ ନାହିଁ । ସଂସ୍କୃତ ସାହିତ୍ୟର ଗତାନୁଗତିକ ପନ୍ଥା ଛାଡ଼ି ନୂତନ ରୀତିରେ ଲେଖିବାରୁ ମହାକବିଙ୍କୁ ସମସାମୟିକ ମୂର୍ଖ ସମାଲୋଚକମାନଙ୍କର କଶାଘାତ ସହ୍ୟ କରିଥିବା ଜଣାପଡ଼େ । ମେଘଦୂତରେ ଦିଙ୍‌ନାଗ ନାମକ ଏହିପରି ଏକ ବିଷମୁଖ ନିନ୍ଦୁକକୁ କବି ଭୟ କରିଥିବାର ଅନୁମିତ ହୁଏ । ବିରାଟ ପ୍ରତିଭାର ଅଧିକାରୀ ହୋଇ ମଧ୍ୟ କବି ଅତ୍ୟନ୍ତ ବିନୟୀ ଥିଲେ । ତାଙ୍କ ଲେଖନୀଯୋଗୁହିଁ ରଘୁବଂଶର ମହିମା ଅମର ହୋଇପାରିଛି । କିନ୍ତୁ ରଘୁବଂଶର ଆରମ୍ଭରେ କବି କହିଅଛନ୍ତି– 'ସୂର୍ଯ୍ୟପ୍ରଭବ ସେହି ଗରିମାମୟ ବଂଶ କାହିଁ ? ମୋ' ପରି ଅଳ୍ପମତି ଲୋକ ବା କାହିଁ ? ଏ କେବଳ ମନ୍ଦ ଲୋକର କବିଯଶଃ ଲାଗି ବ୍ୟାକୁଳତା ମାତ୍ର ! ବାମନ ଚନ୍ଦ୍ରକୁ ହାତ ବଢ଼ାଇଲା ପରି, ମୁଁ କେବଳ ଉପହସିତ ହେବି ମାତ୍ର !' ଏପ୍ରକାର ବିନୟବାଣୀ ଅନ୍ୟ କାବ୍ୟମାନଙ୍କରେ ମଧ୍ୟ ଦୃଷ୍ଟ ହୁଏ ।

## ଚରିତ୍ର

ମନୁଷ୍ୟତ୍ୱର ବିକାଶ ନିମନ୍ତେ ଯାହା ଯାହା ଆବଶ୍ୟକ, ଚରିତ୍ର ସେମାନଙ୍କ ମଧ୍ୟରେ ପ୍ରଥମ ଓ ଶ୍ରେଷ୍ଠ । ଦୃଶ୍ୟମାନ ଉଦ୍ଭିଜ୍ଜଗତ୍‌ରେ ଦେଖାଯାଏ ଯେ, ଉପରିଭାଗର ଶ୍ୟାମଳ ସୁଦୃଶ୍ୟ ଶାଖାପ୍ରଶାଖାଦିର ଅସ୍ତିତ୍ୱ ଭୂଗର୍ଭସ୍ଥ ଅଦୃଶ୍ୟ ମୂଳ ଉପରେ ନିର୍ଭର କରେ । ବୃକ୍ଷ ପ୍ରତି ବୃକ୍ଷର ମୂଳ ଯେପରି, ମନୁଷ୍ୟ ପ୍ରତି ମନୁଷ୍ୟର ଚରିତ୍ର ସେହିପରି । ମନୁଷ୍ୟର ଶରୀର ଯେପରି ପାଦଦ୍ୱୟ ଉପରେ ନିର୍ଭର କରି ଶକ୍ତିମାନ୍ ହୁଏ, ମନୁଷ୍ୟର ବ୍ୟକ୍ତିତ୍ୱ ସେହିପରି ଚରିତ୍ର ଉପରେ ନିର୍ଭର କରି ଶକ୍ତିମାନ୍ ହୁଏ । ବାହୁଦ୍ୱୟରେ ଅସୀମ ବଳ ଥିଲେ ହେଁ ପାଦଦ୍ୱୟ ଭଗ୍ନ ବା ଖଞ୍ଜ ହେଲେ ଯେପରି ତାହା କୌଣସି କାର୍ଯ୍ୟରେ ଆସେ ନାହିଁ, ଚରିତ୍ର ନ ଥିଲେ ଅସାଧାରଣ ପ୍ରତିଭା ମଧ୍ୟ କାର୍ଯ୍ୟକାରୀ ହୋଇପାରେନାହିଁ ।

ପ୍ରାଚୀନ ଯୁଗରେ ଏହି ଚରିତ୍ର ଗଠନ ଲାଗିହିଁ ବ୍ରହ୍ମଚର୍ଯ୍ୟାଶ୍ରମର ବ୍ୟବସ୍ଥା ଥିଲା । ଭବିଷ୍ୟତରେ ବୃକ୍ଷଟିଏ କିପରି ଆକାର ଓ ପ୍ରକାର ଧାରଣ କରିବ, ତାହା

ଚାରା ଅବସ୍ଥାର ଲାଳନପାଳନ ଉପରେ ନିର୍ଭର କରେ । ମନୁଷ୍ୟର ଭବିଷ୍ୟତ୍ ମଧ୍ୟ ସେହିପରି ଶୈଶବର ଶାସନ, ପାଳନ ଉପରେ ନିର୍ଭର କରେ । କାରଣ ଶୈଶବରେ ମନୁଷ୍ୟର ଚିତ୍ତବୃତ୍ତିସମୂହ ଅତ୍ୟନ୍ତ ନମନୀୟ ଥିବାରୁ ସେସବୁ ଗଠନର ଉପଯୋଗୀ ହୁଅନ୍ତି; ତେଣୁ ଏହି କାଳ ଚରିତ୍ର ନିର୍ମାଣ ଲାଗି ପ୍ରକୃଷ୍ଟ ବିବେଚିତ ହୋଇ ପ୍ରାଚୀନ କାଳରେ ବ୍ରହ୍ମଚର୍ଯ୍ୟାଶ୍ରମର ଅଧୀନ ହୋଇଥିଲା ।

ଚରିତ୍ର କହିଲେ ସାଧାରଣତଃ ଇନ୍ଦ୍ରିୟମାନଙ୍କର ସଂଯମ ବୁଝାଯାଏ; କିନ୍ତୁ ପ୍ରକୃତରେ ଚରିତ୍ର ଏହାଠାରୁ ଅଧିକ ବ୍ୟାପକ । ଚରିତ୍ରଦ୍ୱାରା ନୈତିକ, ମାନସିକ ଓ ଆଧ୍ୟାତ୍ମିକ ସକଳ ପ୍ରକାର ଶକ୍ତିର ଉତ୍କର୍ଷ ବୁଝିବାକୁ ହେବ । ଇନ୍ଦ୍ରିୟମାନଙ୍କୁ ସଂଯତ କଲେ ମଧ୍ୟ ଚରିତ୍ର ଅସମ୍ପୂର୍ଣ୍ଣ ରହିପାରେ । ପୁରାଣରେ ଦୁର୍ବାସା ବୋଲି ଜଣେ ଋଷି ଥିବାର ଜଣାଯାଏ । ଋଷି ହେଲେ ମଧ୍ୟ ସେ ଅତ୍ୟନ୍ତ କୋପନସ୍ୱଭାବର ବ୍ୟକ୍ତି ଥିଲେ ଏବଂ ନିଜ ତପଃପ୍ରଭାବରେ ଯାହା ଉପରେ କ୍ରୁଦ୍ଧ ହେଉଥିଲେ ତାହାର ଅନିଷ୍ଟ କରୁଥିଲେ । ଏପ୍ରକାର ଦୁରଭ୍ୟାସ ଚରିତ୍ରର ଦୂଷଣ । ଚରିତ୍ରବାନ୍ ଲୋକ ବିରୁଦ୍ଧ ମତ ବା କାର୍ଯ୍ୟରେ କେବେହେଲେ ବିଚଳିତ ବା କ୍ରୁଦ୍ଧ ହେବେ ନାହିଁ । ସେମାନେ ଧୀରଭାବରେ ତାହା ସହ୍ୟ କରି, କ୍ରମେ ତା'ର ନିରାକରଣ ନିମନ୍ତେ ଚେଷ୍ଟା କରିବେ । ପୁରାଣରେ ଯୁଧିଷ୍ଠିର ଏହିପରି ଏକ ଚରିତ୍ରବାନ୍ ବ୍ୟକ୍ତି ଥିଲେ । ଦ୍ୟୁତାସକ୍ତି ତାଙ୍କର ଏକମାତ୍ର ଦୋଷ ଥିଲା । ଏହି ଏକମାତ୍ର ଦୋଷ ହେତୁ ତାଙ୍କୁ ଅଶେଷ କଷ୍ଟ ଭୋଗ କରିବାକୁ ହୋଇଥିଲା ।

ଅନେକ ପ୍ରତିଭାଶାଳୀ ବ୍ୟକ୍ତିମାନଙ୍କ ଜୀବନର ଘଟନାମାନ ଉଦ୍ଧାର କରି କହନ୍ତି ଯେ, ଜୀବନର ପରିପୂର୍ଣ୍ଣ ବିକାଶ ଚରିତ୍ର ବିନା ମଧ୍ୟ ସମ୍ଭବପର । କିନ୍ତୁ ଏପ୍ରକାର ଧାରଣା ନିତାନ୍ତ ଅମୂଳକ । ଏହା ବୁଝିବା ଉଚିତ ଯେ, ଯେଉଁମାନେ ଚରିତ୍ର ବିନା ଜୀବନରେ କୃତକାର୍ଯ୍ୟ ହୋଇଅଛନ୍ତି, ଚରିତ୍ର-ଶକ୍ତିର ସଂଯୋଗରେ ସେମାନେ ଆହୁରି ବହୁ ଗୁଣରେ କୃତକାର୍ଯ୍ୟ ହୋଇପାରିଥାନ୍ତେ । ଚରିତ୍ର ହୀନତାଯୋଗୁ ଅନେକ ପ୍ରତିଭା ଯେ ନିଷ୍ପ୍ରଭ ହୋଇଯାଇଛି, ତା'ର ପ୍ରମାଣ ବହୁତ । ଇଂରେଜ କବି ବାଇରନ୍ ଚରିତ୍ର ଅଭାବରୁ କେବଳ ଯେ କ୍ଳେଶ ଭୋଗିଥିଲେ ତାହା ନୁହେଁ, ନିଜର ଅସାଧାରଣ ପ୍ରତିଭାକୁ ମଧ୍ୟ ନଷ୍ଟ କରିଦେଇଥିଲେ ।

ଚରିତ୍ରସମ୍ପନ୍ନ ଲୋକହିଁ ଜଗତରେ ସାଧାରଣତଃ କୃତକାର୍ଯ୍ୟ ହୁଅନ୍ତି । ଯେଉଁମାନେ ମନୋବୃତ୍ତି ଓ ଇନ୍ଦ୍ରିୟର ତାଡ଼ନାରେ ଆପଣାକୁ ଭସାଇଦିଅନ୍ତି, ସେମାନେ ଜୀବନରେ ପଥଭ୍ରାନ୍ତ ପଥିକ ପରି ଲକ୍ଷ୍ୟଚ୍ୟୁତ ହୋଇ ଶେଷରେ ହାହାକାର କରନ୍ତି । କିନ୍ତୁ ଯେଉଁମାନେ ସଂଯତ, ଧୀର, ଅକୋପନ, ନିର୍ଭୀକ ଏବଂ ଯେଉଁମାନେ ବିପଦରେ

ମୁହ୍ୟମାନ ବା ସୌଭାଗ୍ୟରେ ବିମୁଗ୍ଧ ହୁଅନ୍ତି ନାହିଁ, ସିଦ୍ଧିଦେବୀ ସେହିମାନଙ୍କ ଉପରେ ହିଁ ପ୍ରସାଦ ବର୍ଷଣକରନ୍ତି ।

ମୋଟ କଥାରେ ଚରିତ୍ରରେ ହିଁ ଜୀବନର ସୌନ୍ଦର୍ଯ୍ୟ ପରିସ୍ଫୁଟ ହୁଏ । ପ୍ରତ୍ୟେକ ଧର୍ମରେ ଚରିତ୍ର ଧର୍ମର ମୂଳ ବୋଲି ଧରାଯାଇଅଛି । ଗୀତା ହିନ୍ଦୁମାନଙ୍କର ଶ୍ରେଷ୍ଠ ଧର୍ମଶାସ୍ତ୍ର । ଗୀତାରେ ଆଦର୍ଶ ଚରିତ୍ରର ଯେଉଁ ଚିତ୍ର ଦିଆଯାଇଅଛି, ତାହା ପୂର୍ଣ୍ଣ କରିବାକୁ ଚେଷ୍ଟା କଲେ ଜୀବନ ଦେବଭାବାପନ୍ନ ଓ ସୁଖଶାନ୍ତିର ଆଧାର ହେବ ।

## ହିନ୍ଦୁଧର୍ମ ଓ ଗୀତା

ପୃଥିବୀର ଅନ୍ୟ ପ୍ରଧାନ ଧର୍ମମାନଙ୍କ ପରି ହିନ୍ଦୁଧର୍ମ କୌଣସି ଏକ ବ୍ୟକ୍ତି ଦ୍ୱାରା ପ୍ରଚାରିତ ବା ପ୍ରତିଷ୍ଠିତ ନୁହେଁ । ବସୁନ୍ଧରାର ପୃଷ୍ଠଦେଶରେ ଶ୍ୟାମଳ ଦୂର୍ବାଶଯ୍ୟା ପରି ଏହା ଯେପରି ଭାରତର କୋଟି କୋଟି ଜନତାର ବିଶ୍ୱାସରୁ ସ୍ୱତଃ ଉଦ୍‌ଭୂତ ହୋଇଅଛି । ଏହା ଏପରି ବ୍ୟାପକ ଯେ, ଅସଂଖ୍ୟ ଉପଧର୍ମ ଏହାର ବୃତ୍ତି ମଧ୍ୟରେ ସୃଷ୍ଟ ଓ ପ୍ରଚାରିତ ହୋଇ ନିର୍ବିରୋଧଭାବରେ ଏହାର ନାମ ଗ୍ରହଣ କରିଅଛନ୍ତି । ଏହି ବ୍ୟାପକତା ଓ ବିସ୍ତୃତି ଯୋଗୁ ଏହାର ସୀମା ଓ ସ୍ୱରୂପ ସହଜରେ ନିରୂପିତ ହୋଇପାରେନାହିଁ । ଏଣୁ ଭିନ୍ନଧର୍ମୀମାନେ ଉପହାସରେ ଏହା ଏକ ଧର୍ମ ନୁହେଁ, କେବଳ ସାମାଜିକ ଆଚାରସମଷ୍ଟି ବୋଲି ପ୍ରକାଶ କରନ୍ତି । ଅନେକେ ପୌତ୍ତଳିକତାକୁ ହିନ୍ଦୁଧର୍ମର ଚିହ୍ନ ବୋଲି ପ୍ରକାଶକରନ୍ତି; କିନ୍ତୁ ତାହା ଭ୍ରମପୂର୍ଣ୍ଣ । ଅନେକ ଅପୌତ୍ତଳିକ ସମ୍ପ୍ରଦାୟ ହିନ୍ଦୁଧର୍ମର ଅନ୍ତର୍ଭୁକ୍ତ । ଅନ୍ୟ ଧର୍ମମାନଙ୍କରେ ସାଧନାର ପନ୍ଥା ଏକ ବା ଅଳ୍ପ; କିନ୍ତୁ ହିନ୍ଦୁଧର୍ମରେ ଭଗବାନଙ୍କୁ ଲାଭ କରିବାର ପଥ ଅନେକ ଓ ପରସ୍ପର-ବିରୋଧୀ । ଏହାର ହେତୁ ଏହି ଯେ, ଏହା କୌଣସି ଏକ ବ୍ୟକ୍ତିବିଶେଷର ମତଦ୍ୱାରା ନିୟମିତ ହୋଇନାହିଁ । ଯୁଗେ ଯୁଗେ ନାନା ମୁନିଙ୍କର ନାନା ମତ ଘେନି ଏହାର ଅଙ୍ଗ ପରିପୁଷ୍ଟ ହୋଇଅଛି ଏବଂ ବିଶାଳ ଭୂଖଣ୍ଡର ବିରାଟ ଜନସଂଘର ବହୁଧା-ରୁଚିକୁ ଏହି ଭିନ୍ନ ଭିନ୍ନ ମତ ଓ ପଥ ଖାଦ୍ୟ ଯୋଗାଇଅଛି । ଏହି ବିଭିନ୍ନ ମତ ଓ ପଥ ମଧ୍ୟରେ ଯେ ଏକ ଅନବଚ୍ଛିନ୍ନ ଐକ୍ୟ ପ୍ରବହମାନ ରହିଅଛି, ତାହା କେହି ଅସ୍ୱୀକାର କରି ପାରିବେ ନାହିଁ । ଭାରତର ବହୁବିଧ ଉପଧର୍ମ, ଏପରି କି ବୌଦ୍ଧ ଓ ଜୈନ ଧର୍ମ ସେହି ଐକ୍ୟ-ପୀଠ ଉପରେ ପ୍ରତିଷ୍ଠିତ । ଏହି ଐକ୍ୟ ଜନ୍ମାନ୍ତର ଓ କର୍ମଫଳବାଦ । ବୌଦ୍ଧ ଓ ଅନ୍ୟାନ୍ୟ ଧର୍ମର ଭିତ୍ତି ଏହାରି ଉପରେ ପ୍ରତିଷ୍ଠିତ ।

ଖ୍ରୀଷ୍ଟ ଓ ମୁସଲମାନ ଧର୍ମରେ ଏହି ବିଶ୍ୱାସ ଯେ, ମନୁଷ୍ୟର ମୃତ୍ୟୁ ସଙ୍ଗେ ଆତ୍ମା

ଚିରନିଦ୍ରା ଲାଭକରେ । ସୃଷ୍ଟିର ଶେଷ ଦିନରେ ବିଧାତାଙ୍କ ତୂର୍ଯ୍ୟନାଦରେ ଏହି ପ୍ରେତାତ୍ମାମାନଙ୍କର ନିଦ୍ରା ଭଙ୍ଗ ହେବ ଓ ଇହଜୀବନର କାର୍ଯ୍ୟକଳାପର ବିଚାର ହୋଇ ଶାସ୍ତି ବା ପୁରସ୍କାର ଲାଭ ହେବ । କିନ୍ତୁ ସକଳ ପଥ ଓ ମତର ହିନ୍ଦୁ ବିଶ୍ୱାସ କରନ୍ତି ଯେ, ଦେହର ନାଶ ସଙ୍ଗେ ଆତ୍ମାର ନାଶ ହୁଏ ନାହିଁ ବା ସେ ନିଦ୍ରା ଯାଏ ନାହିଁ । ଇହଜୀବନର କର୍ମଫଳ ଭୋଗ କରିବାଲାଗି ସେ ପୁଣି ନୂତନ ଶରୀର ଧାରଣକରି ପୃଥିବୀରେ ଜନ୍ମଗ୍ରହଣକରେ । ଏହି ବିଶ୍ୱାସ ଭାରତର ସକଳ ଧର୍ମରେ ଓ ହିନ୍ଦୁର ଦୈନନ୍ଦିନ ଜୀବନରେ ଏପରି ଓତପ୍ରୋତ ଭାବରେ ମିଶିଯାଇଛି ଯେ, ଏହାକୁ ହିନ୍ଦୁଧର୍ମର ଓ ହିନ୍ଦୁର ସାମାଜିକ ଜୀବନର ମେରୁଦଣ୍ଡ କହିଲେ ଚଳେ । ଏହି ବିଶ୍ୱାସ ଉପରେ ଚିତ୍ତ ରଖି ହିନ୍ଦୁର ଯୋଗ, ସନ୍ନ୍ୟାସ, କୃଚ୍ଛ୍ରସାଧନା ପ୍ରଭୃତି ବହୁ ମତ ଓ ବହୁ ପଥ । କିପରିଭାବରେ ପୁଣ୍ୟାର୍ଜନ କଲେ ପରଜନ୍ମରେ ଦୁଃଖ-ଯନ୍ତ୍ରଣାରୁ ମୁକ୍ତି ବା ଇହଜନ୍ମରେ ପରମାତ୍ମା ସଙ୍ଗେ ମିଳନ ହେବ– ଏହାହିଁ ହିନ୍ଦୁ ଜୀବନର ଲକ୍ଷ୍ୟ ।

ଅନେକଙ୍କର ଧାରଣା, ସଂସାରର ସମସ୍ତ ପ୍ରଲୋଭନକୁ ଫିଙ୍ଗିଦେଇ ବନଗିରିରେ ତପସ୍ୟା କରିବାରେ ହିଁ ମୁକ୍ତି ସହଜଲଭ୍ୟ ହୁଏ ଓ ଏହାହିଁ ହିନ୍ଦୁଧର୍ମର ଆଦର୍ଶ । କିନ୍ତୁ ଏହା ଭ୍ରମ । ଗୀତା ହିନ୍ଦୁ ଧର୍ମର ଶ୍ରେଷ୍ଠ ଧର୍ମଗ୍ରନ୍ଥ; ଗୀତାର ଆଦର୍ଶ ସନ୍ନ୍ୟାସ ନୁହେଁ, ଗାର୍ହସ୍ଥ୍ୟ । ସଂସାରର ଦୈନନ୍ଦିନ ଜୀବନ ମଧ୍ୟରେ ଯେ ପୁଣ୍ୟ ସଞ୍ଚୟ କରାଯାଇପାରେ, ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ ତାହାହିଁ ପ୍ରଚାର କରିଅଛନ୍ତି । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ରାଦି ଚାରି ପ୍ରକୃତିର ଲୋକ ଏ ଜଗତରେ ଜନ୍ମଗ୍ରହଣ କରନ୍ତି । ନିଜନିଜର ପ୍ରକୃତି ଅନୁଯାୟୀ ଏମାନଙ୍କର କର୍ତ୍ତବ୍ୟ ଜଗତରେ ପଡ଼ିରହିଛି । ଜଗତରେ କୌଣସି କର୍ମ ହେୟ ନୁହେଁ; ପ୍ରତ୍ୟେକ କର୍ମର ମୂଲ୍ୟ ଓ ଗୌରବ ଅଛି । ନିଜର ପ୍ରକୃତି ଅନୁରୂପ କର୍ମ ହେୟ ହେଲେ ମଧ୍ୟ ତାହା ପରିତ୍ୟାଗ କରିବା ଉଚିତ ନୁହେଁ । କିନ୍ତୁ କର୍ତ୍ତବ୍ୟ ସମ୍ପାଦନରେ କେବେହେଲେ ଆସକ୍ତି ବା ଅହଙ୍କାର ରଖିବ ନାହିଁ । ଆସକ୍ତି ଜଗତରେ ସମସ୍ତ ଦୁଃଖର କାରଣ । ଅନାସକ୍ତଭାବରେ ଜୟ-ପରାଜୟ, ଲାଭାଲାଭକୁ ସମାନ ଦୃଷ୍ଟିରେ ବରଣ କରି କର୍ତ୍ତବ୍ୟ କରିଯିବା ବିଜ୍ଞ ବ୍ୟକ୍ତିର ଲକ୍ଷଣ । ମନୁଷ୍ୟର ଅଧିକାର କେବଳ କର୍ମରେ । କର୍ମର ଫଳାଫଳ ଏକ ଅଦୃଷ୍ଟ-ପୁରୁଷର ହସ୍ତରେ । ସେ ଅଦୃଷ୍ଟ-ପୁରୁଷ ଏହି ଜଗତର ଆଦି; ଜୀବଗ୍ରାମ ତାଙ୍କରିଠାରୁ ଉତ୍ପନ୍ନ ଓ ତାଙ୍କରିଠାରେ ଲୀନ । ଯୁଗଯୁଗାନ୍ତର ଧରି ବିଶ୍ୱ-ଜଗତର ସୃଷ୍ଟି, ସ୍ଥିତି ଓ ପ୍ରଳୟ ମଧ୍ୟରେ ସେହି ଏକା ସ୍ଥିର ଓ ସନାତନ । ମନୁଷ୍ୟ ତାଙ୍କର ନିମିତ୍ତ ମାତ୍ର । ତେଣୁ କୌଣସି କାର୍ଯ୍ୟ ଲାଗି ଅହଙ୍କାର କରିବା ତା' ପକ୍ଷରେ ଘୋର ଅଜ୍ଞାନତା । ତା'ର ଉଚିତ, ସେ ତାଙ୍କରି ହୋଇ କର୍ତ୍ତବ୍ୟ କର୍ମ କରିଯିବ । ଏ ଜଗତରେ ଅନାସକ୍ତ ଓ ନିରହଙ୍କାର ଭାବରେ

କର୍ମ କରିପାରିଲେ ଆତ୍ମା ସେହି ପରମପୁରୁଷଙ୍କୁ ଅନୁଭବ କରିପାରିବ । କର୍ମହିଁ ସକଳ ଧର୍ମାଚରଣର ମୂଳ । ଏହା ସନ୍ନ୍ୟାସ, ଜ୍ଞାନ ଓ ତପସ୍ୟାଠାରୁ ଉତ୍କୃଷ୍ଟ ।

ଏହାହିଁ ଗୀତାର ଉଦାତ୍ତ ବାଣୀ ।

## ସେକ୍‌ସପିୟର୍

ପୃଥିବୀର ସାହିତ୍ୟମାନଙ୍କ ମଧ୍ୟରେ ଇଂରେଜୀ ସାହିତ୍ୟ ସବୁଠାରୁ ସମୃଦ୍ଧ । ଏପରି ଉଚ୍ଚ କୋଟୀର କବି, ନାଟ୍ୟକାର, ଔପନ୍ୟାସିକ ଓ ସନ୍ଦର୍ଭଲେଖକ ଏତେ ସଂଖ୍ୟାରେ ଅନ୍ୟ କୌଣସି ସାହିତ୍ୟକୁ ଋଦ୍ଧିମନ୍ତ କରି ନାହାନ୍ତି । ଇଂରେଜ ଜାତିର ସାମ୍ରାଜ୍ୟ ପୃଥିବୀର ଇତିହାସରେ ସବୁଠାରୁ ବୃହତ୍ । କିନ୍ତୁ ଇଂରେଜ ଜାତିର ସାହିତ୍ୟ-ସାମ୍ରାଜ୍ୟ ଏହି ବିରାଟ ରାଜନୈତିକ ସାମ୍ରାଜ୍ୟଠାରୁ ମଧ୍ୟ ବୃହତ୍ତର । ଏହି କାରଣରୁହିଁ ଇଂରେଜୀ ଆଜି ପୃଥିବୀର ପ୍ରଧାନତମ ଭାଷାରୂପେ ପରିଗଣିତ । ଜାପାନ, ଚୀନ୍ ପ୍ରଭୃତି ଯେଉଁ ଦେଶମାନଙ୍କରେ ଇଂରେଜମାନଙ୍କର ଶାସନସମ୍ପର୍କ ନାହିଁ, ସେ ଦେଶମାନଙ୍କରେ ମଧ୍ୟ ଇଂରେଜୀ ପ୍ରଧାନ ୟୁରୋପୀୟ ଭାଷାରୂପେ ପଠିତ ଓ ଆଦୃତ ।

ସେକ୍‌ସପିୟର୍ ଇଂରେଜ ଜାତିର ଏହି ବିଶ୍ୱବ୍ୟାପୀ ସାହିତ୍ୟ-ସାମ୍ରାଜ୍ୟର ଏକଚ୍ଛତ୍ର ସମ୍ରାଟ୍ । ସେ ଯେ ଜଗତରେ ଶ୍ରେଷ୍ଠ ନାଟକ ରଚୟିତା ଏଥିରେ ସବୁ ଦେଶର ସାହିତ୍ୟିକମାନେ ଏକମତ । ଅନେକେ ତାଙ୍କୁ ଜଗତର ଶ୍ରେଷ୍ଠ କବି ବୋଲି ମଧ୍ୟ ନିର୍ଦ୍ଦେଶ କରିଥାଆନ୍ତି । ଜଗତର ଅନ୍ୟ କୌଣସି ସାହିତ୍ୟିକ ସମ୍ବନ୍ଧରେ ଏତେ ପୁସ୍ତକ ଲେଖାହୋଇନାହିଁ । ଗତ ଦେଢ଼ଶତ ବର୍ଷ ଧରି ସେକ୍‌ସପିୟରଙ୍କ ଜୀବନୀ ଓ ତାଙ୍କ ନାଟକାଦିର ସମାଲୋଚନା ଘେନି ପ୍ରତିବର୍ଷ ଅଜସ୍ର ରଚନା ପ୍ରକାଶିତ ହେଉଅଛି । କିନ୍ତୁ ସମସ୍ତ ଚେଷ୍ଟା ସତ୍ତ୍ୱେ ସେକ୍‌ସପିୟର୍‌ଙ୍କ ଜୀବନୀ ଏପର୍ଯ୍ୟନ୍ତ ରହସ୍ୟମୟ ହୋଇ ରହିଅଛି । ତାଙ୍କ ନାଟକାଦି ପାଠକଲେ ଜଣାଯାଏ ଯେ, ସେ ଏକ ଅସାଧାରଣ ପଣ୍ଡିତ ଓ ଜ୍ଞାନୀ ଲୋକ ଥିଲେ । ମାତ୍ର ଏପର୍ଯ୍ୟନ୍ତ ତାଙ୍କ ଜୀବନୀ ଯାହା ସଂଗୃହୀତ ହୋଇପାରିଅଛି, ସେଥିରୁ ସେ ଜଣେ ସାମାନ୍ୟ ଶିକ୍ଷିତ, ସାଧାରଣ ଲୋକ ଥିଲେ ବୋଲି ପ୍ରକାଶ ପାଏ । ଏପରି ଲୋକ ଏଭଳି କାବ୍ୟନାଟକାଦି କିପରି ଲେଖିଲେ, ତାହାହିଁ ଆଶ୍ଚର୍ଯ୍ୟର କାରଣ । କିନ୍ତୁ ପ୍ରତିଭା ଯାଦୁକରୀ । ଆମ୍ଭମାନଙ୍କର ଉତ୍କଳ-ସାହିତ୍ୟରେ ଗଙ୍ଗାଧର ମେହେର ଓ ଫକୀରମୋହନ ସେନାପତି ସାମାନ୍ୟ ଭର୍ଣ୍ଣାକ୍ୟୁଲାର ଶିକ୍ଷା ପାଇ କିପରି ଉଚ୍ଚ ଦରର କାବ୍ୟ, ଉପନ୍ୟାସ ଲେଖିଯାଇଅଛନ୍ତି ତାହା ମନେରଖିଲେ ସେକ୍‌ସପିୟର୍‌ଙ୍କ ସମ୍ବନ୍ଧରେ ଆଶ୍ଚର୍ଯ୍ୟାନ୍ୱିତ

ହେବାର କୌଣସି କାରଣ ରହିବ ନାହିଁ ।

ଉଇଲିୟମ୍ ସେକ୍‌ସପିୟର୍ ୧୫୬୪ ଖ୍ରୀଷ୍ଟାବ୍ଦର ଏପ୍ରିଲ୍ ମାସ ୨୩ ତାରିଖରେ ମଧ୍ୟ-ଇଂଲଣ୍ଡର ଷ୍ଟ୍ରାଟ୍‌ଫୋର୍ଡ୍-ଅନ୍-ଏଭନ୍ ନାମକ କ୍ଷୁଦ୍ର ନଗରରେ ଜାତହୋଇଥିଲେ । ତାଙ୍କ ପିତା ଜନ୍ ସେକ୍‌ସପିୟର୍ ଏକାବେଳକେ ନିରକ୍ଷର ଥିଲେ । କିନ୍ତୁ ମାତା ମେରୀ ସଦ୍‌ବଂଶଜା ଓ ବୁଦ୍ଧିଶାଳିନୀ ଥିବାର ଜଣାଯାଇଅଛି ଏବଂ ନାଟ୍ୟକାରଙ୍କର ସ୍ୱୀୟ ଜନନୀଙ୍କ ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଓ ଭକ୍ତି ଥିବାର ତାଙ୍କ ନାଟକମାନଙ୍କରୁ ପ୍ରଚ୍ଛନ୍ନ ପ୍ରମାଣ ମିଳେ ।

ଜନ୍ ସେକ୍‌ସପିୟର୍ ବ୍ୟବସାୟୀ ଲୋକ ଥିଲେ । ନାନା ବ୍ୟବସାୟ କରି ସେ ପ୍ରଚୁର ଧନ ଉପାର୍ଜନ କରିପାରିଥିଲେ ଓ ନିରକ୍ଷରତା ସତ୍ତ୍ୱେ ଧନବଳରେ ଷ୍ଟ୍ରାଟ୍‌ଫୋର୍ଡ୍ କର୍ପୋରେସନ୍‌ର ସଭାପତି ହୋଇପାରିଥିଲେ । ଏହି ସ୍ୱଚ୍ଛଳ ଅବସ୍ଥା ସମୟରେ ଜନ୍ ନିଜର ଜ୍ୟେଷ୍ଠପୁତ୍ର ଉଇଲିୟମ୍‌ଙ୍କୁ ଶିକ୍ଷିତ ଓ ସଭ୍ୟ କରିବା ଆଶାରେ ସ୍ଥାନୀୟ ଗ୍ରାମାର୍ ସ୍କୁଲରେ ଭର୍ତ୍ତିକରାଇଥିଲେ । ସେହି ଗ୍ରାମାର୍ ସ୍କୁଲ୍ ବର୍ତ୍ତମାନ ସୁଦ୍ଧା ଷ୍ଟ୍ରାଟ୍‌ଫୋର୍ଡ୍‌ରେ ପ୍ରତିଷ୍ଠିତ ଅଛି ଏବଂ ବାଳକ ଉଇଲିୟମ୍ ଯେଉଁ ସ୍ଥାନରେ ବସୁଥିଲେ ତାହା କିମ୍ବଦନ୍ତୀ ଏବେ ମଧ୍ୟ ଦେଖାଇଦିଏ ।

ଉଇଲିୟମ୍‌ଙ୍କୁ ଯେତେବେଳେ ନଅ ବର୍ଷ ବୟସ ସେତେବେଳେ ତାଙ୍କ ପିତାଙ୍କ ବ୍ୟବସାୟରେ ଏତେ କ୍ଷତି ଘଟିଲା ଯେ, ସେ ଅଳ୍ପ କାଳ ମଧ୍ୟରେ ଋଣଗ୍ରସ୍ତ ହୋଇପଡ଼ିଲେ ଏବଂ ଆର୍ଥିକ ଜଞ୍ଜାଳ ଯୋଗୁ କର୍ପୋରେସନ୍‌ର ଅଧିବେଶନମାନଙ୍କରେ ଯୋଗଦେଇପାରିଲେ ନାହିଁ, ତେଣୁ ତାଙ୍କୁ ସଭାପତି ଓ ସଭ୍ୟ ପଦରୁ ବିଚ୍ୟୁତ କରିଦିଆଗଲା । ଦରିଦ୍ର ଓ ହୀନାବସ୍ଥାପନ୍ନ ହୋଇ ଜନ୍ ପୁତ୍ର ଉଇଲିୟମ୍‌ଙ୍କୁ ସ୍କୁଲରେ ପଢ଼ାଇପାରିଲେନାହିଁ । ଭବିଷ୍ୟତର ବିଖ୍ୟାତ ନାଟକ-ରଚୟିତା ନଅ ବର୍ଷ ବୟସରେ ପାଠ ଶେଷକରି ପିତାଙ୍କୁ ଆର୍ଥିକ ସାହାଯ୍ୟ କରିବାଲାଗି ସ୍କୁଲ ପରିତ୍ୟାଗକଲେ ।

ସ୍କୁଲ ଛାଡ଼ି ଉଇଲିୟମ୍ କଅଣ କଲେ ଠିକ୍ ଜଣାପଡ଼ିନାହିଁ । କିମ୍ବଦନ୍ତୀ ତାଙ୍କ ସମ୍ବନ୍ଧରେ ନାନା କଥା କହେ । କଥିତ ଅଛି ଯେ, ବାଳକ ଉଇଲିୟମ୍ ବାପାଙ୍କ କଂସେଇଖାନାରେ କାର୍ଯ୍ୟ କରୁଥିଲାବେଳେ ମେଣ୍ଢା, ବାଛୁରୀ ପ୍ରଭୃତି ହାଣିବା ପୂର୍ବରୁ ଗୋଟିଏ ଗୋଟିଏ ନାଟକୀୟ ବକ୍ତୃତା ଦେଉଥିଲେ । କେତେକ କହନ୍ତି, ସେ କୌଣସି ଓକିଲଙ୍କର ମୋହରିର ଅଥବା କୌଣସି ସ୍କୁଲରେ ଶିକ୍ଷକ ଥିଲେ । ଏସବୁର କୌଣସି ଐତିହାସିକ ପ୍ରମାଣ ନାହିଁ । କିନ୍ତୁ ତାଙ୍କ ନାଟକାବଳିରେ ସେକ୍‌ସପିୟର୍ ଓକିଲାତି, ଶିକ୍ଷକତା, ଡାକ୍ତରୀ, କୃଷି, ସମର ପ୍ରଭୃତି ନାନା ବିଷୟରେ ଏପରି ଅଦ୍ଭୁତ ଅଭିଜ୍ଞତା ଦେଖାଇଅଛନ୍ତି ଯେ, ଲୋକଙ୍କର ଧାରଣା, ସେ ନିଶ୍ଚୟ ସେହି ସେହି

ବିଷୟରେ ବିଶିଷ୍ଟ ଶିକ୍ଷା ପାଇଥିବେ ।

ଉଇଲିୟମ୍‌ଙ୍କର ଅଠର ବର୍ଷ ବୟସରେ ସେ ତାଙ୍କଠାରୁ ଛଅ ବର୍ଷ ଅଧିକ ବୟସୀ ଆନାହାଥାଏ ନାମକ ତରୁଣୀଙ୍କୁ ବିବାହ କରିଥିବାର ପ୍ରମାଣ ମିଳେ । ତାଙ୍କ ବିବାହର ଅଳ୍ପ କାଳ ମଧ୍ୟରେ ପରେ ପରେ ତିନୋଟି ସନ୍ତାନ ମଧ୍ୟ ହୋଇଗଲେ । ଏଣେ ପିତାଙ୍କର ଆର୍ଥିକ ଦୁରବସ୍ଥା, ସେଥିରେ ନିଜର ପରିବାରବୃଦ୍ଧି– ଏସବୁ ସାଂସାରିକ ଜଞ୍ଜାଳ ତରୁଣ ସେକ୍‌ସପିୟର୍‌ଙ୍କୁ ବିବ୍ରତ କରିପକାଇଥିବ । ନିଜର ଛୋଟ ଗ୍ରାମରେ ରୋଜଗାରର ଅନ୍ୟ ପନ୍ଥା ଦେଖି ନ ପାରି ସେ ଇଂଲଣ୍ଡର ପ୍ରଧାନ ନଗର ଲଣ୍ଡନ ନଗରକୁ ପଳାଇଗଲେ ।

ଆଉ ଏକ କିମ୍ବଦନ୍ତୀ ଅଛି ଯେ, ତରୁଣ ଉଇଲିୟମ୍ କୁସଙ୍ଗରେ ପଡ଼ି ସର୍ ଟୋମାସ୍ ଲୁସି ନାମକ ସ୍ଥାନୀୟ ଜମିଦାରଙ୍କ ବଣରୁ ଗୋଟିଏ ହରିଣ ଚୋରିକରି ଧରାପଡ଼ିଥିଲେ ଏବଂ ସେଥିଲାଗି ଜମିଦାରଙ୍କଦ୍ୱାରା ପ୍ରକାଶ୍ୟରେ ତିରସ୍କୃତ ହୋଇଥିଲେ । ଉଇଲିୟମ୍ ଏହା ପରେ ସର୍ ଲୁସିଙ୍କୁ ଲକ୍ଷ୍ୟ କରି ଏକ ବିଦ୍ରୂପାତ୍ମକ କବିତା ରଚନା କଲେ । ସେହି କବିତା ଏପରି କଟୁ ହୋଇଥିଲା ଯେ, ଜମିଦାର ଲେଖକଙ୍କୁ ଉପଯୁକ୍ତ ଶାସ୍ତି ଦେବାକୁ ଉଦ୍ୟତ ହେଲେ । ଶାସ୍ତି ଭୟରେ ଉଇଲିୟମ୍ ଗ୍ରାମ ଛାଡ଼ି ଲଣ୍ଡନ ପଳାଇଗଲେ । କିନ୍ତୁ ଏ ଘଟନାର ମଧ୍ୟ କୌଣସି ଲିଖିତ ପ୍ରମାଣ ମିଳେ ନାହିଁ ।

ଲଣ୍ଡନରେ ଉଇଲିୟମ୍ ପ୍ରଥମେ ଅତ୍ୟନ୍ତ ଦାରିଦ୍ର୍ୟରେ କାଳ କାଟିଥିଲେ । ସେସମୟରେ ଲଣ୍ଡନ ସହରରେ ପ୍ରଥମ ହୋଇ ଥିଏଟରସବୁ ଖୋଲାହୋଇଥାଏ । ନଗରବାସୀଙ୍କର ତାହା ପ୍ରଧାନ ଆମୋଦ ଥିବାରୁ ଥିଏଟରମାନଙ୍କରେ ବହୁ ଲୋକଙ୍କର ସମାଗମ ହେଉଥାଏ । କଥିତ ଅଛି, ଜୀବିକାର୍ଜ୍ଜନର ଅନ୍ୟ ଉପାୟ ନ ଦେଖି ଉଇଲିୟମ୍ ପ୍ରଥମେ ଥିଏଟର ଦେଖିବାକୁ ଆସୁଥିବା ଭଦ୍ରଲୋକଙ୍କର ଘୋଡ଼ାମାନଙ୍କୁ ଜଗି ଓ ସେମାନଙ୍କର ଯତ୍ନ କରି କିଛି ଅର୍ଥ ପାଇବାର ଚେଷ୍ଟା କରିଥିଲେ । ଉକ୍ତ କାର୍ଯ୍ୟ ସେ ଏଡ଼େ ସୁନ୍ଦରଭାବରେ କଲେ ଯେ, କିଛି କାଳ ପରେ ଅଶ୍ୱାରୋହୀ ଦର୍ଶକ ମାତ୍ରେ ନିଜ ଅଶ୍ୱକୁ ସେକ୍‌ସପିୟର୍‌ଙ୍କ ହେପାଜତ୍‌ରେ ଦେବାକୁ ଖୋଜୁଥିଲେ ।

ଏପ୍ରକାର କାର୍ଯ୍ୟକୁଶଳତାରୁ ହୁଏତ ଥିଏଟର ପରିଚାଳକମାନଙ୍କ ଦୃଷ୍ଟି ଉଇଲିୟମ୍‌ଙ୍କ ଉପରେ ପଡ଼ିଥିବ । କ୍ରମେ ସେକ୍‌ସପିୟର୍ ରଙ୍ଗମଞ୍ଚରେ ଛୋଟ ଛୋଟ ଭୂମିକାରେ ଅଭିନୟ କରିବାର ଜଣାପଡ଼େ । ତା'ପରେ ଅନ୍ୟ ନାଟ୍ୟକାରମାନଙ୍କ ସଙ୍ଗେ ମିଳିମିଶି ଟିକିଏ ଟିକିଏ ଲେଖା ଆରମ୍ଭ କଲେ । କ୍ରମେ ସେ ଏ କାମ ଏପରି ଉତ୍କୃଷ୍ଟଭାବରେ କଲେ ଯେ, ତାଙ୍କର ସୁନାମ ଚାରିଆଡ଼େ ବ୍ୟାପିଗଲା ଏବଂ ପୁରୁଣା

ନାଟକ-ଲେଖକମାନେ ତାଙ୍କୁ ଈର୍ଷା କରିବାକୁ ଲାଗିଲେ । କିନ୍ତୁ ସବୁ ବାଧା ସତ୍ତ୍ୱେ ଉଇଲିୟମ୍‌ଙ୍କ ସୁପ୍ତ ପ୍ରତିଭା କ୍ରମେ ଜାଗରିତ ହେଲା । ଗ୍ରାମ ଛାଡ଼ି ଆସିବାର ସାତ ଆଠ ବର୍ଷ ଭିତରେ ସେହି ଦରିଦ୍ର ନିଃସହାୟ ପଳାତକ ଯୁବକ ଏକ ପ୍ରସିଦ୍ଧ ନାଟ୍ୟକାର ହୋଇଉଠିଲେ । ତାଙ୍କ ପ୍ରତିଭାର ପରିଚୟ ପାଇ ଅନେକ ଉଚ୍ଚବଂଶୀୟ ପୁରୁଷ ତାଙ୍କ ସହିତ ବନ୍ଧୁତା କରିବସିଲେ । ଏମାନଙ୍କ ମଧ୍ୟରେ ଅର୍ଲ ଅବ୍ ସାଉଥାମ୍‌ଟନ୍ ପ୍ରଧାନ । ଏହି ମହାନୁଭବ ଯୁବକ-ସାମନ୍ତ ସେକ୍‌ସପିୟର୍‌ଙ୍କୁ ତାଙ୍କ ପ୍ରତିଭାର ପୁରସ୍କାରସ୍ୱରୂପ ଏକ ହଜାର ପାଉଣ୍ଡ ଦାନକରିଥିଲେ । ସେକ୍‌ସପିୟର୍ ଏହି ଧନ ଘେନି ନିଜର ଏକ ଥିଏଟର ଆରମ୍ଭକଲେ । ତାଙ୍କର ଆର୍ଥିକ ଅବସ୍ଥା ଅତ୍ୟନ୍ତ ସ୍ୱଚ୍ଛଳ ହୋଇଉଠିଲା । ଏହା ଫଳରେ ସେ ନିଜ ଗ୍ରାମରେ ଅନେକ ଜମି ଓ ସେ ସ୍ଥାନର ସବୁଠାରୁ ବୃହତ୍ତମ ଅଟ୍ଟାଳିକା କିଣି ପିତାଙ୍କର ପୂର୍ବ ସାମ୍ନାଜିକ ସମ୍ମାନ ଫେରାଇ ଆଣି ପାରିଥିଲେ ।

ସେକ୍‌ସପିୟର୍ ସତତିରିଶଟି ନାଟକ ଓ ତିନିଟି କାବ୍ୟ ଲେଖିଯାଇଅଛନ୍ତି । ତାଙ୍କ ନାଟକାବଳିରେ ମନୁଷ୍ୟର ଏପରି କୌଣସି ଅନୁଭୂତି ନାହିଁ, ଯାହା ନିପୁଣ ଭାବରେ ପ୍ରକାଶିତ ହୋଇନାହିଁ । ପ୍ରେମ, କ୍ରୋଧ, ଭୟ, ଆଶଙ୍କା, ବାତ୍ସଲ୍ୟ, ଦେଶପ୍ରୀତି, ବୀରତ୍ୱ ପ୍ରଭୃତି ସକଳ ପ୍ରକାର ମାନବିକ ଅନୁଭୂତି ତାଙ୍କ ରଚନାରେ ଅଦ୍ଭୁତଭାବରେ ପ୍ରକାଶ ପାଇଅଛି । ସମାଜରେ ଆମ୍ଭେମାନେ ବୀର, ମିଥ୍ୟାବାଦୀ, ବିଦୂଷକ, କୁଚକ୍ରୀ, ପ୍ରେମିକ, ଈର୍ଷୀ, କ୍ରୋଧୀ, ଦାମ୍ଭିକ, ଧୀର, ସତୀ, ଅସତୀ, ପାଗଳ, ଭାବୁକ, କବି ପ୍ରଭୃତି ଯେତେ ପ୍ରକାର ମନୁଷ୍ୟର କଳ୍ପନା କରିପାରିବା, ସେ ସମସ୍ତେ ନିଖୁଣ ଭାବରେ ସେକ୍‌ସପିୟର୍‌ଙ୍କ ନାଟକରେ ଚିତ୍ରିତ ହୋଇଅଛନ୍ତି । ଜଗତର ସାହିତ୍ୟମାନଙ୍କରେ ଅନ୍ୟ କୌଣସି ଲେଖକର କଳ୍ପନାରୁ ଏପରି ଭିନ୍ନ ଭିନ୍ନ ପ୍ରକାରର ଏତେ ସଂଖ୍ୟକ ଚରିତ୍ର ଚିତ୍ରଣ ବାହାରି ନାହିଁ । ଏହାହିଁ ସେକ୍‌ସପିୟର୍-ପ୍ରତିଭାର ପ୍ରଧାନ ବୈଚିତ୍ର୍ୟ ।

କିନ୍ତୁ ଆଶ୍ଚର୍ଯ୍ୟର କଥା ଏହି ଯେ, ନିଜେ ସେକ୍‌ସପିୟର୍ ତାଙ୍କ ନାଟକମାନଙ୍କର ମୂଲ୍ୟ ବୁଝୁଥିଲା ପରି ଜଣାପଡ଼େନାହିଁ । ସେ ଜୀବିତ ଥିଲାବେଳେ ତାଙ୍କ ନାଟକାବଳିକୁ ଭଲଭାବରେ ମୁଦ୍ରିତ ଓ ପ୍ରକାଶିତ କରିବାଲାଗି ଆଦୌ ଯତ୍ନ କରି ନଥିଲେ । ତାହାସବୁ ତାଙ୍କ ମୃତ୍ୟୁ ପରେ ତାଙ୍କର ବନ୍ଧୁମାନଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ସେକ୍‌ସପିୟର୍‌ଙ୍କର ପ୍ରଧାନ ଚିନ୍ତା ଥିଲା ସେ କିପରି ଟଙ୍କା କଉଡ଼ି ସଞ୍ଚୟ କରି, ଜମିବାଡ଼ି କିଣି ସମାଜରେ ଭଦ୍ରଲୋକ ବୋଲି ପରିଚିତ ହେବେ । ସୌଭାଗ୍ୟର କଥା, ତାଙ୍କର ସେ ଇଚ୍ଛା ପୂର୍ଣ୍ଣ ହୋଇଥିଲା ।

ସେକ୍‌ସପିୟର୍ ୧୬୧୬ ଖ୍ରୀଷ୍ଟାବ୍ଦ ଏପ୍ରିଲ ମାସ ୨୩ ତାରିଖରେ, ୫୩ ବର୍ଷ ବୟସରେ ନିଜ ଗ୍ରାମରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କର ନାଟକମାନଙ୍କ ମଧ୍ୟରେ ହାମ୍‌ଲେଟ୍, ଅଥେଲୋ, ମାକ୍‌ବେଥ୍, କିଙ୍ଗ୍ ଲିୟର୍, ମରଚାଣ୍ଟ୍ ଅଫ୍ ଭିନିସ୍ ପ୍ରଭୃତି ପ୍ରଧାନ ।

## ସତ୍ୟ-ସନ୍ଧାନ

ମନୁଷ୍ୟର ବିଭିନ୍ନ ମନୋବୃତ୍ତି ମଧ୍ୟରେ ବିଚାରବୁଦ୍ଧି ଏକତମ । ଏହି ଶକ୍ତିର ଉପକାରିତା ଏହି ଯେ, ଏହାଦ୍ୱାରା ମନୁଷ୍ୟ ସତ୍ୟର ସନ୍ଧାନ ପାଏ । ବିଜ୍ଞାନପ୍ରତିଷ୍ଠିତ ଯେଉଁ ସଭ୍ୟତା ଆମ୍ଭେମାନେ ଆଜି ଦେଖିବାକୁ ପାଉଁ, ତାହା ଏହି ବିଚାର-ବୁଦ୍ଧିର ଫଳ । କାରଣ ଯେଉଁ ଜିଜ୍ଞାସା ସମସ୍ତ ଜ୍ଞାନର ମୂଳରେ, ତାହା ଏହି ବିଚାରବୁଦ୍ଧିରୁ ଉତ୍ପନ୍ନ । ବିଚାରବୁଦ୍ଧି ଯୋଗୁ ହିଁ ମନୁଷ୍ୟ ପ୍ରକୃତିର ସମସ୍ତ ରହସ୍ୟ ଉଦ୍‌ଭେଦ କରି ଆଜି ପ୍ରକୃତିକୁ ନିଜର କ୍ରୀତଦାସ କରି ରଖିଛି ।

ଆଦିମ ଯୁଗରେ ମନୁଷ୍ୟ ପ୍ରକୃତି ଓ ପଞ୍ଚଭୂତର ବିଭିନ୍ନ ଲୀଳାରେ ମୁଗ୍ଧ ଓ ଚକିତ ହୋଇ ସେହିମାନଙ୍କୁହିଁ ଦେବତା ଜ୍ଞାନରେ ପୂଜାକରିଥିଲା; କିନ୍ତୁ ବିଚାରଶକ୍ତିର ବିକାଶ ହୁଅନ୍ତେ ମନୁଷ୍ୟ କ୍ରମେ କ୍ରମେ ପଚାରିବାକୁ ଲାଗିଲା— ଏହା କ'ଣ ? କାହିଁକି ହୁଏ ଓ କିପରି ହୁଏ ? —ଏହି ପ୍ରଶ୍ନମାନଙ୍କ ଉତ୍ତର ଉପରେ ଆଧୁନିକ ବିଜ୍ଞାନ ଓ ଆଧୁନିକ ସଭ୍ୟତା ପ୍ରତିଷ୍ଠିତ । ଆଜି ଆମ୍ଭେମାନେ ଯେଉଁ ରେଲ-ଶକଟ, ବ୍ୟୋମପୋତ, ବେତାରବାର୍ତ୍ତା ପ୍ରଭୃତି ଆଶ୍ଚର୍ଯ୍ୟକର ବ୍ୟାପାରମାନ ଓ ମନୁଷ୍ୟକୁ ସ୍ୱାଚ୍ଛନ୍ଦ୍ୟ ଦେବାଲାଗି ନୂତନ ଉପାୟମାନ ଦେଖିବାକୁ ପାଉଁ, ତାହା ଏହି ଜିଜ୍ଞାସା ଓ ବିଚାରବୁଦ୍ଧିର ଫଳ । ସାଧାରଣତଃ ଲୋକେ ବିଚାରବୁଦ୍ଧିକୁ ଖଟାନ୍ତି ନାହିଁ । ଜୀବନର ନାନା ଅନୁଷ୍ଠାନ ଓ ସମସ୍ୟାରେ ପ୍ରକୃତ ସତ୍ୟ କେଉଁଠି ତାହା ସାଧାରଣ ଲୋକେ ବୁଝିବାକୁ ଚେଷ୍ଟା କରନ୍ତି ନାହିଁ । ସେମାନେ ଚିରାଚରିତ ପନ୍ଥା ଅବଲମ୍ବନ କରି ଗଡ୍‌ଡ୍‌ଳିକା ପ୍ରବାହରେ ଭାସିଯିବାକୁ ସୁଖପାନ୍ତି; କିନ୍ତୁ ଜଗତକୁ ଯେଉଁମାନେ ଉଚ୍ଚ ଚିନ୍ତା ବା ମହତ୍ କର୍ମମାନ ଦେଇଯାଇଅଛନ୍ତି, ସେମାନଙ୍କ ଜୀବନର ସମସ୍ତ ସିଦ୍ଧିର ମୂଳରେ ଏହି ବିଚାରବୁଦ୍ଧି ଓ ସତ୍ୟର ଅନ୍ୱେଷଣ ବିଦ୍ୟମାନ । ବଡ଼ ବଡ଼ ଧର୍ମପ୍ରଚାରକ, ବୈଜ୍ଞାନିକ, କବି, ଦାର୍ଶନିକ— ସମସ୍ତେ ଏକପ୍ରକାର ସତ୍ୟସନ୍ଧାନୀ । ସେମାନେ ସମସାମୟିକ ବା ପୂର୍ବବର୍ତ୍ତୀ ସମାଜର ମାନସିକ ଓ ଆଧ୍ୟାତ୍ମିକ ଅବସ୍ଥାରେ ସନ୍ତୁଷ୍ଟ ନ ହୋଇ ନୂତନ ସତ୍ୟର ଅନ୍ୱେଷଣ କରିଅଛନ୍ତି । ଇତିହାସର ବହୁ ମହାମାନବ

ଏହି ସତ୍ୟାନ୍ୱେଷଣରେ ପ୍ରାଣ ବିସର୍ଜନ କରିଅଛନ୍ତି ଓ ଅଶେଷ କଷ୍ଟ ସହ୍ୟ କରିଅଛନ୍ତି । ଇତାଲୀୟ ଜ୍ୟୋତିଷୀ ଗାଲିଲିଓ ପୃଥିବୀ ଯେ ଭ୍ରାମ୍ୟମାଣ ଏହା ପ୍ରମାଣ କରିବାକୁ ଚେଷ୍ଟାକରିବାରୁ ତତ୍‌କାଳୀନ ଖ୍ରୀଷ୍ଟିୟାନ୍ ପୁରୋହିତଙ୍କ ବିଷଦୃଷ୍ଟିରେ ପଡି କାରାଦଣ୍ଡ ଭୋଗ କରିଥିଲେ । ସ୍ୱୟଂ ଯୀଶୁଖ୍ରୀଷ୍ଟ, ନୂତନ ସତ୍ୟ ପ୍ରଚାର କରିବାକୁ ଯାଇ ଶତ୍ରୁମାନଙ୍କଦ୍ୱାରା କ୍ରୁଶରେ ପ୍ରାଣତ୍ୟାଗ କରିଥିଲେ ।

ବୌଦ୍ଧଧର୍ମର ଅବସାନ ପରେ ଏ ଦେଶରୁ ସତ୍ୟାନ୍ୱେଷଣ ଏକପ୍ରକାର ଲୁପ୍ତହୋଇଅଛି । ବୌଦ୍ଧ ଧର୍ମର ବିନାଶ କରି ବ୍ରାହ୍ମଣମାନେ ଏ ଦେଶରେ ଯେଉଁ ଧର୍ମ ସ୍ଥାପନ କଲେ, ସେଥିରେ ଜନସାଧାରଣର ବିଚାରବୁଦ୍ଧି ପାଇଁ ଆଦୌ ଅବକାଶ ରହିଲାନାହିଁ । ଲୋକମାନଙ୍କର ଦୈନନ୍ଦିନ ଘଟନାରୁ ଆରମ୍ଭକରି ପରକାଳ ପର୍ଯ୍ୟନ୍ତ ସବୁ ଅବସ୍ଥା ଲାଗି ଶାସ୍ତ୍ର-ପ୍ରମାଣ ପ୍ରତିଷ୍ଠିତ କରିବାଦ୍ୱାରା ଲୋକସାଧାରଣଙ୍କର ସ୍ୱତନ୍ତ୍ର ବିଚାରଶକ୍ତି ଏକାବେଳକେ ବିନାଶ ପାଇଲା ।

କିନ୍ତୁ କେହି ଯେପରି ନ ଭାବନ୍ତି ଯେ, ଏ ଦେଶରେ ସତ୍ୟପ୍ରତି ଆଦୌ ଅନୁରାଗ ନାହିଁ ବା ଏ ଦେଶରେ ଲୋକେ ବିଚାରଶକ୍ତିର ପ୍ରୟୋଗ କରନ୍ତିନାହିଁ । ପ୍ରାଚୀନ ଭାରତର ଲୋକସମାଜରେ ସତ୍ୟ ପ୍ରତି ଗଭୀର ଅନୁରାଗ ଥିଲା । ସେହି ଅନୁରାଗ ଫଳରେ ଭାରତୀୟ ମସ୍ତିଷ୍କରୁ ଜଗତର ଶ୍ରେଷ୍ଠ ଦର୍ଶନ ଜାତହୋଇଅଛି । ସେହି ଅନୁରାଗରୁ ଗୌତମ ବୁଦ୍ଧ ରାଜପ୍ରାସାଦ ଛାଡ଼ି ବନବନାନ୍ତରରେ କଠୋର ସାଧନା କରି ଜଗତକୁ ଏକ ମହା ଧର୍ମ ଦେଇଯାଇଅଛନ୍ତି । ଆମ୍ଭମାନଙ୍କ ଏହି ଉତ୍କଳଭୂମିର ଏକ ଅନ୍ଧକାରାଚ୍ଛନ୍ନ ଗଡ଼ଜାତରେ ସାମନ୍ତ ଚନ୍ଦ୍ରଶେଖରଙ୍କର ସତ୍ୟସାଧନା ଓଡ଼ିଆ ଜାତିକୁ ଗୌରବ ଦେଇଯାଇଛି ।

ଜିଜ୍ଞାସା, ସତ୍ୟସନ୍ଧାନ ଓ ବିଚାରବୁଦ୍ଧିର ପ୍ରୟୋଗ ଜୀବନର ଲକ୍ଷଣ । ନିଜର ସ୍ୱତନ୍ତ୍ର ବିଚାର ପ୍ରୟୋଗ ନକରି କୌଣସି ମତ ଗ୍ରହଣ କରିବା ଜଡ଼ତାର ପରିଚୟ ଦିଏ । ଆମ୍ଭମାନଙ୍କ ଚାରିପାଖରେ ଯେତେ ଘଟନା ଘଟୁଛି ତାହାର ପ୍ରତ୍ୟେକଟିର କାରଣ ଅଛି । ଅନୁସନ୍ଧାନ କଲେ ଆମ୍ଭେମାନେ ସତ୍ୟ ଲାଭ କରିପାରିବା । ଆମ୍ଭମାନଙ୍କର ପ୍ରାତ୍ୟହିକ ଜୀବନରେ ଏହି ସତ୍ୟାନ୍ୱେଷଣ ଅଭ୍ୟାସ କରିବା ଉଚିତ । ଯେ କୌଣସି ନୂତନ ଘଟନା ପ୍ରତ୍ୟକ୍ଷ ବା ନୂତନ ଜ୍ଞାନ ଲାଭ କଲାବେଳେ ଆମ୍ଭେମାନଙ୍କର 'କ'ଣ ? କାହିଁକି ? ଓ କିପରି ?' ଏହି ପ୍ରଶ୍ନଗୁଡ଼ିକ ପଚାରିବା ଉଚିତ । ତାହାହେଲେ ଆମ୍ଭେମାନେ କେବଳ ଯେ ସତ୍ୟ ଲାଭ କରିବା ତାହା ନୁହେଁ, ସୁଖ ଓ ଶାନ୍ତି ମଧ୍ୟ ପାଇପାରିବା ।

# ଆତ୍ମନିର୍ଭରତା

ମୋର ବିଲାତ ପ୍ରବାସ ସମୟରେ ଜଣେ ନରୱେଜୀୟ ଯୁବକ ସଙ୍ଗେ ସଖ୍ୟ ସ୍ଥାପନ କରିବାର ସୌଭାଗ୍ୟ ଘଟିଥିଲା । ଯୁବକଟିର ଘର ନରୱେ ଦେଶରେ । ସେ ବିଲାତକୁ ଇଞ୍ଜିନିୟରିଂ ଶିକ୍ଷା କରିବାକୁ ଆସିଥିଲେ । କଥାପ୍ରସଙ୍ଗରେ ସେ ଦିନେ ତାଙ୍କର ଆତ୍ମକାହାଣୀ କହିଗଲେ । ତାହା ଆମ୍ଭମାନଙ୍କ ଦେଶର ବାଳକବାଳିକାମାନଙ୍କ ପ୍ରତି ଅତ୍ୟନ୍ତ ଶିକ୍ଷଣୀୟ । ତେଣୁ ନିମ୍ନରେ ତାହା ସଂକ୍ଷେପରେ ଦେଲି ।

ଯୁବକଟିର ନାମ ହୋଲନ୍ । ତା'ର ପିତା ଜଣେ ଖ୍ରୀଷ୍ଟୀୟ ପାଦ୍ରୀ । ପାଦ୍ରୀମାନଙ୍କର ଆୟ ଅପ୍ରଚୁର । ତେଣୁ ହୋଲନ୍ ପ୍ରାଇମେରୀ ଶିକ୍ଷା ପାଇସାରିଲାପରେ ଅର୍ଥାଭାବ ବଶତଃ ତା'ର ପିତା ତାକୁ ଆଉ ସ୍କୁଲରେ ପଢ଼ାଇପାରିଲେନାହିଁ । କିନ୍ତୁ ହୋଲନ୍‌ର ପଢ଼ିବାକୁ ଭାରି ଇଚ୍ଛା । ତା'ର ଇଚ୍ଛା ନୁହେଁ ଯେ, ସେ ତା' ଦରିଦ୍ର ପିତାଙ୍କର ଗଳଗ୍ରହ ହୋଇ ପାଠ ପଢ଼ିବ । ସେ ଦେଖିଲା ତା'ର ପିତା କେତେଗୁଡ଼ିଏ କୁକୁଡ଼ା ରଖିଛନ୍ତି । ଦିନେ ସେ ତା'ର ବାପାଙ୍କୁ କହିଲା, ''ବାପା, ତୁମେ ମୋତେ ତୁମର କୁକୁଡ଼ାଗୁଡ଼ିକ ଦେଇଦିଅ । ସେସବୁକୁ ମୁଁ ପାଳିବି ଏବଂ ଡିମ୍ଵ ଓ କୁକୁଡ଼ା ବିକି ଯାହା ପାଇବି ସେଥିରେ ମୁଁ ଅଧିକା ପାଠ ପଢ଼ିବି ।'' ବାପା ଉତ୍ତର କଲେ, ''ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ଦେଖ୍ ହୋଲନ୍, ଏ କୁକୁଡ଼ା ମୋର; ତତେ ମୁଁ କୌଣସିମତେ ମାଗଣା ଦେବି ନାହିଁ । ମତେ କୁକୁଡ଼ାମାନଙ୍କର ମୂଲ୍ୟ ଦେବାକୁ ହେବ ।'' ହୋଲନ୍ ସନ୍ତୁଷ୍ଟ ଚିତ୍ତରେ ସେଥିରେ ରାଜିହେଲା ଏବଂ କୁକୁଡ଼ାଗୁଡ଼ିକର ରକ୍ଷଣ-ପୋଷଣ କରିବାକୁ ଲାଗିଲା । କିଛି କାଳ ଭିତରେ ହୋଲନ୍ ବାପାଙ୍କ ଟଙ୍କାତକ ଶୁଝିଦେଲା; ତା'ଛଡ଼ା ବ୍ୟାଙ୍କରେ ଅନେକଗୁଡ଼ିଏ ଟଙ୍କା ଜମା କରିପାରିଲା । ଫଳରେ ସେ ଏକ ଉଚ୍ଚତର ବିଦ୍ୟାଳୟକୁ ଯାଇ ପାସ୍ କରି ଆସିପାରିଲା । ହୋଲନ୍‌ର ଇଚ୍ଛା ଇଂଲଣ୍ଡ ଯାଇ ଅଧିକା କିଛି ପଢ଼ିଆସିବ । କିନ୍ତୁ ଟଙ୍କା କାହିଁ ? ଖ୍ରୀଷ୍ଟିୟାନ୍ ସମାଜରେ ପାଦ୍ରୀମାନଙ୍କର ସ୍ଥାନ ଅତି ଉଚ୍ଚରେ । ପାଦ୍ରୀର ପୁଅ ହେଲେହେଁ ହୋଲନ୍ ଗୋଟିଏ ଅଫିସ୍‌ରେ ଦପ୍ତରୀ କାମ ଗ୍ରହଣକଲା । ପରେ ଗୋଟିଏ କାରଖାନାରେ ଶ୍ରମିକ ମଧ୍ୟ ହେଲା । ଏହିପରିଭାବରେ ସେ କିଛି ଟଙ୍କା ସଞ୍ଚୟ କରିନେଲା । ପିତା ହୋଲନ୍‌ର ନିଷ୍ଠା ଓ ଆତ୍ମୋନ୍ନତିଲାଗି ପ୍ରଚେଷ୍ଟା ଦେଖି ସନ୍ତୁଷ୍ଟ ହୋଇ ନିଜ ପାଣ୍ଠିରୁ ତାକୁ କିଛି ଦେଲେ । ହୋଲନ୍ ସେହି ଅର୍ଥ ଘେନି ବିଲାତକୁ ପଢ଼ିବାକୁ ଆସିଥିଲା ।

ବାଳକ ହୋଲନ୍‌ର ଯେଉଁ ଆତ୍ମସମ୍ମାନବୋଧ ତାହା ଆମ୍ଭମାନଙ୍କ ଦେଶରେ ବଡ଼ବଡ଼ିଆଙ୍କର ଥିଲେ, ଆମ ଦେଶ ବର୍ତ୍ତମାନ ପରି ଦୁର୍ଦ୍ଦଶାଗ୍ରସ୍ତ ହୋଇନଥାନ୍ତା ।

ପର ଉପରେ ନିର୍ଭର କରିବା ଆମ ଦେଶ ଲୋକଙ୍କର ବଦ୍ଧମୂଳ ଅଭ୍ୟାସ । ପର କାନ୍ଧରେ ଭାର ନ ହୋଇ ନିଜ ଗୋଡ଼ରେ ଠିଆହେଲେ ବା ଚାଲିଲେ ଯେଉଁ ସମ୍ମାନ ଅଛି, ତାହା ଆମ ଦେଶର ଲୋକେ ସହଜରେ ବୁଝନ୍ତିନାହିଁ । ଭିକ୍ଷାବୃତ୍ତି କରିବାରେ, ପରର ଗଳଗ୍ରହ ହେବାରେ ଆମ ଦେଶର ଲୋକେ କୌଣସି ଲଜ୍ଜା ଅନୁଭବ କରନ୍ତି ନାହିଁ । ସେମାନେ ଏସବୁକୁ ପୁରୁଷାନୁକ୍ରମିକ ସ୍ୱାଭାବିକ ବ୍ୟବସ୍ଥା ବୋଲି ଧରିନିଅନ୍ତି । କିନ୍ତୁ ଅନ୍ୟ ଉପରେ ଭାର ହୋଇ ବଞ୍ଚିବାଠାରୁ ଘୃଣ୍ୟ ସ୍ୱଭାବ ମନୁଷ୍ୟର ଆଉ କିଛି ହୋଇନପାରେ ।

ଶ୍ୱେତାଙ୍ଗମାନେ ହୋଲନ୍ ପରି ସବୁବେଳେ ନିଜ ଶିଙ୍ଗରେ ମାଟି ଖୋଳିବାକୁ ଚେଷ୍ଟା କରନ୍ତି; ତେଣୁ ସେମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଗୋଟିଏ ଗୋଟିଏ ବୀରପୁରୁଷ ହୋଇଉଠନ୍ତି ଏବଂ ସମୂହଭାବରେ ସମଗ୍ର ଜାତି ବୀରଜାତି ହୋଇଉଠେ । କିନ୍ତୁ ଆମ ଦେଶରେ ଜଣେ ଖଟି ଖଟି ରୋଜଗାର କଲେ, ଆଉ ପଲେ ଲୋକ ତା' ଉପରେ ପଡ଼ି ଖାଆନ୍ତି । ଫଳରେ ଖଟିବା ଲୋକ ଯେତେ ଉନ୍ନତି କରିବା କଥା ତାହା କରିପାରେ ନାହିଁ; ପରଖିଆଗୁଡ଼ିକ ଚିରକାଳ ଅମନୁଷ୍ୟ ଓ ମାଗିଖିଆ ହୋଇ ରହନ୍ତି । ଆମ ଦେଶର ଶତକଡ଼ା ନବେ ଲୋକଙ୍କର ଏହି ଅବସ୍ଥା ।

ଆତ୍ମନିର୍ଭର ହେବା ପକ୍ଷରେ ଆମ ଦେଶରେ ପ୍ରଧାନ ବାଧା ଆମ ଦେଶବାସୀଙ୍କର ଶାରୀରିକ ଶ୍ରମ ପ୍ରତି ଘୃଣା ଓ ଭୟ । ସ୍ୱାଧୀନଭାବରେ ପରିଶ୍ରମ କରି ଦି' ପଇସା ପାଇବା ଅପେକ୍ଷା ଯଦି ବସିକରି ଦି ପଇସା ମିଳିବ, ତେବେ ଆମ ଲୋକେ ପର ପାଖରେ ମୁଣ୍ଡ ନୋଇଁବାକୁ ପସନ୍ଦ କରନ୍ତି । ଜିଜ୍ଞାସିତ ହେଲେ ସେମାନେ ଉତ୍ତର ଦେବେ, ''ଆମେ ପରା ଭଦ୍ରଲୋକ ଘର ପିଲା, ଆଉ କ'ଣ ଆମେ ମୂଲ ଲାଗି ଯିବୁ ?'' କିନ୍ତୁ ଭାଇ, କକା, ମାମୁ ଓ ମଉସା ପାଖରେ ଗୁଞ୍ଜି ହୋଇ ବା ପର ହାକିମି ତାମିଲ କରି ପେଟ ପୋଷିବା ଅପେକ୍ଷା ସ୍ୱାଧୀନଭାବରେ ମୂଲ ଲାଗିବା ଯେ କେତେ ଗୁଣରେ ସମ୍ମାନନୀୟ କର୍ମ, ତାହା ତାଙ୍କର ହୃଦ୍‌ଗତ ହୁଏ ନାହିଁ ।

ବିଲାତରେ ଜଣେ ଡାକ୍ତରଙ୍କ ସହିତ ମୋର ସଖ୍ୟ ହୋଇଥିଲା । ତାଙ୍କର ଚାରି ପୁଅ ଓ ତିନି ଝିଅ । ପୁଅ ଓ ଝିଅ ସମସ୍ତେ ରୋଜଗାର କରି ସ୍ୱାଧୀନଭାବରେ ଭିନ୍ନ ଭିନ୍ନ ଜାଗାରେ ଥାନ୍ତି । ଏଣେ ବୁଢ଼ା ବୁଢ଼ୀ ଏକୁଟିଆ ଅଲଗା ହୋଇ ଥାନ୍ତି । ବୁଢ଼ୀ ରାନ୍ଧେ, ଘର ଜଗେ; ବୁଢ଼ା ଅବସର ସମୟରେ ପୁଅମାନଙ୍କ ପାଖକୁ ଯାଇ ତାଙ୍କର ତତ୍ତ୍ୱ ନିଏ । ମୁଁ ଦିନେ ତାଙ୍କ ଘରେ ଅତିଥି ହୋଇଥିଲି । ମୁଁ ବୁଢ଼ୀକି ପଚାରିଲି, ''ତୁମେ ତ ବୁଢ଼ା ବୁଢ଼ୀ ହେଲ, ପୁଅମାନେ ତ ରୋଜଗାର କରୁଛନ୍ତି, ତୁମେ ତାଙ୍କ ପାଖେ ଯାଇ ରହୁନା ?'' ବୁଢ଼ୀ କହିଲା, ''ଆମେ ସ୍ୱାଧୀନଭାବରେ ନ ରହି ଯା

ତା' ଘରେ ରହିବୁଁ କାହିଁକି ?'' ମୁଁ କହିଲି, ''ଏବେ ସିନା କର୍ମକ୍ଷମ ଅଛ; ଯେତେବେଳେ ହାତ ଗୋଡ଼ ପଡ଼ିଯିବ, ସେତେବେଳେ ତ ନିଶ୍ଚେ ପୁଅମାନଙ୍କ ଘରେ ଆଶ୍ରୟ ନେବ ?'' ବୁଢ଼ୀ ଅଭିନୟ କରି କହିଲା, ''ଆମେ ଗୁଳି କରି ମରିଯିବୁ ପଛେ, ପରଘରେ ଆଶ୍ରୟ ନେବୁଁ ନାହିଁ !'' ଏ କଥା ଏ ଦେଶର ଲୋକେ ସହଜରେ ବିଶ୍ୱାସ କରିବେ ନାହିଁ । କିନ୍ତୁ ଶ୍ୱେତାଙ୍ଗମାନଙ୍କର ସ୍ୱାଧୀନ ପ୍ରବୃତ୍ତି ପ୍ରଧାନ ଲକ୍ଷଣ ଏବଂ ସେହି ଗୁଣ ଯୋଗୁ ସେମାନେ ବୀରଜାତି ହୋଇଅଛନ୍ତି । ପର-ଉପରେ ସବୁବେଳେ ନିର୍ଭର କରି କରି ଆମର ଅନ୍ତର୍ନିହିତ ଶକ୍ତିସମୂହ ବିକାଶ ପାଉ ନାହିଁ ଏବଂ ଯାହା ଉପରେ ନିର୍ଭର କରୁଁ ତା'ର ରକ୍ତ ଶୋଷି, ତା'ର ଉନ୍ନତି ବନ୍ଦକରି ତାକୁ ଚିରକାଳ ଦରମରା କରି ରଖୁଁ । ଫଳରେ ଆମେ ମଣିଷ ପରି ମଣିଷ ହୋଇପାରୁ ନାହୁଁ ।

ଆମ୍ଭମାନଙ୍କୁ ଏ ଅବସ୍ଥା ଘୁଞ୍ଚେଇବାକୁ ହେବ – ତାହା ନ ହେଲେ ଆମ ଜାତି କେବେହେଲେ ଉପରକୁ ଉଠିପାରିବ ନାହିଁ । ହାତପାଇଚି ଯେ ଗୌରବାବହ କର୍ମ ତାହା ଗ୍ରହଣ କରି, ଦରକାର ପଡ଼ିଲେ ଆମ୍ଭମାନଙ୍କୁ ତାହା କରିବାକୁ ଅଗ୍ରସର ହେବାକୁ ପଡ଼ିବ । ପରିବାରରେ ଯେତେ ଜଣ ଲୋକ ଖାଉଥିବେ, କେବଳ ଶିଶୁ ଓ ଅକର୍ମଣ୍ୟ ବୃଦ୍ଧବୃଦ୍ଧାଙ୍କ ଛଡ଼ା ଅନ୍ୟ ସମସ୍ତଙ୍କୁ ଉପାର୍ଜନ କରିବାକୁ ହେବ । ଯେ ଉପାର୍ଜନ ନ କରିପାରିବ, ତାକୁ ପରିବାରରେ ସ୍ଥାନ ଦେବା ଉଚିତ ନୁହେଁ । ଇଚ୍ଛା କଲେ ପରିବାରର ପ୍ରତ୍ୟେକେ ଗୃହକର୍ତ୍ତାଙ୍କୁ କୌଣସି ନା କୌଣସି ଦିଗରେ ସାହାଯ୍ୟ କରିପାରିବେ । ସ୍ତ୍ରୀଲୋକମାନେ ସୂତାକଟା, ସିଲେଇ ଓ ବୁଣାବୁଣି କରି ପରିବାରକୁ ବସ୍ତ୍ର ଯୋଗାଇପାରନ୍ତି; ରନ୍ଧାରନ୍ଧି ଓ ଘରର ଅନ୍ୟ କାମ କରି ଅନେକ ଖର୍ଚ୍ଚ କମେଇପାରନ୍ତି । ଛୋଟ ଛୋଟ ପିଲାଙ୍କୁ ବରାବର ଦୈହିକ ପରିଶ୍ରମ ପଡୁଥିବା କାମ ଦେବା ଉଚିତ, ତଦ୍ୱାରା ସେମାନେ ପରିବାରକୁ ସାହାଯ୍ୟ କରିବେ ଏବଂ ଭବିଷ୍ୟତରେ ଦରକାରବେଳେ ଶାରୀରିକ ଶ୍ରମ କରିବାକୁ ଲଜ୍ଜା ବୋଧ କରିବେ ନାହିଁ । ପ୍ରତ୍ୟେକ ପୁଅ ଓ ଝିଅର ଦେଖିବା ଉଚିତ ଯେ, ସେମାନେ ନିଜ ସୁଖ-ସୁବିଧାପାଇଁ ଯେପରି ବାପାଙ୍କୁ ହଇରାଣ ନ କରନ୍ତି । ବାପାଙ୍କର ଅର୍ଥାଭାବ ଦେଖିଲେ, ହୋଲନ୍ ପରି ସେମାନଙ୍କର ନିଜର ବାଟ ନିଜେ ଦେଖିବା ଉଚିତ । ବାପାଙ୍କୁ ହଇରାଣ କରି, ଜମି ବିକେଇ ପାଠ ପଢ଼ିବା ଅପେକ୍ଷା ମୂଲ ଲାଗି ବାପାଙ୍କୁ ସାହାଯ୍ୟ ଦେବା ମନୁଷ୍ୟୋଚିତ କର୍ମ ହେବ । ବାପାଙ୍କର ଅର୍ଥର ପ୍ରାଚୁର୍ଯ୍ୟ ଥିଲେ ମଧ୍ୟ ପୁଅଝିଅଙ୍କର ମନେକରିବା ଉଚିତ, ସେ ବାପାଙ୍କ ସମ୍ପତ୍ତି– ତାକୁ ଖର୍ଚ୍ଚ କରିବାର ଅଧିକାର ସେମାନଙ୍କର ନାହିଁ । ୟୁରୋପରେ କୋଟିପତିମାନଙ୍କ ପୁଅମାନେ ସେମାନଙ୍କ

ବାପାଙ୍କ କାରଖାନାରେ ମୂଲିଆ ଭାବରେ କାମ ଆରମ୍ଭ କରନ୍ତି ଓ ସାଧାରଣ ମୂଲିଆ ପରି ମଜୁରୀ ପାଇ ସେଥିରେ ଚଳନ୍ତି । ମୂଲିଆରୁ କ୍ରମେ କ୍ରମେ ଉଠି ସେମାନେ ଉପରକୁ ଯାନ୍ତି । ଏହାଦ୍ୱାରା ସେମାନଙ୍କର ଚରିତ୍ର ଗଠିତ ହୁଏ । ସେମାନେ ମନେକରନ୍ତି ଯେ, ସେମାନେ ନିଜ ଶ୍ରମରେ ବଡ଼ହେଲେ– ବାପାଙ୍କ ଟଙ୍କାବଳରେ ସେମାନେ ବଡ଼ ହୋଇ ନାହାନ୍ତି । ଆମ ଦେଶରେ ମଧ୍ୟ ଯେଉଁ ପରିବାରର ବ୍ୟବସ୍ଥା ସ୍ୱଚ୍ଛଳ, ସେଠି ପୁଅମାନେ ଏହି ଭାବ ଧରି କାର୍ଯ୍ୟ କରିବା ଉଚିତ । ନିଜ ରୋଜଗାର ଧନ ବାପାଙ୍କ ଅର୍ଜିତ ଧନରେ ମିଶେଇପାରିଲେ ଗୌରବର କଥା । କିନ୍ତୁ ଅକର୍ମା ହୋଇ ତାକୁ ଉଡ଼େଇଦେଲେ କି ପୌରୁଷ ?

ଆର୍ଥିକ ସ୍ୱାବଲମ୍ବନ ପରି ଜୀବନର ଅନ୍ୟ ବିଭାଗମାନଙ୍କରେ ମଧ୍ୟ ସ୍ୱାବଲମ୍ବନ ଆଚରଣ କରିବା ଉଚିତ । ଦୈନନ୍ଦିନ ଜୀବନରେ ଆମ୍ଭେମାନେ ଅନେକଭାବରେ ପରଉପରେ ନିର୍ଭର କରୁଁ । ଗାଧୋଇସାରି ପାଲଟା ଲୁଗାଟି ଅନ୍ୟଦ୍ୱାରା ଧୁଆହେବାପାଇଁ ଛାଡ଼ି ଆସିବା, ନିଜର ବୋହିପାରିବା ଗଣ୍ଠିଲାପାଇଁ ବୋଝିଆ ଦରକାର କରିବା, ଯାହା ଯାହା ନିଜେ କରିପାରିବେ ସେଥିପାଇଁ ଅନ୍ୟ ଜଣକୁ, ସେ ଘରର ଭୃତ୍ୟ ହେଲେ ମଧ୍ୟ– କହିବା, ଏ ସମସ୍ତ ପରନିର୍ଭରତାର ଦୃଷ୍ଟାନ୍ତ । ନିଜର ଅଭାବ ନିଜେ ଯେତେ ପୂରଣ କରିବ, ନିଜ ପକ୍ଷରେ ସେତେ ମଙ୍ଗଳ ।

## ତ୍ୟାଗ

ଅନେକଙ୍କର ଧାରଣା ଯେ, ଏହି ପୃଥିବୀ ଏକ ବିରାଟ ସଂଗ୍ରାମଭୂମି । ଏହାର ବକ୍ଷ ଉପରେ ଅହରହ ଜୀବନ-ଯୁଦ୍ଧ ଅବିରାମଭାବରେ ଚାଲିଛି । ଏହି ଯୁଦ୍ଧର ବୀଜମନ୍ତ୍ର ହେଉଛି ସ୍ୱାର୍ଥ । ଅର୍ଥାତ୍ ଯୁଦ୍ଧଭୂମିରେ ଯେ ନିଜର ବଳ ଓ କୌଶଳ ପ୍ରୟୋଗ-ପୂର୍ବକ ଅନ୍ୟମାନଙ୍କର ବିନାଶ ସାଧନ କରି ସେହି ବିନାଶ-ଉପରେ ନିଜର ବିଜୟ-ସୌଧ ତୋଳିପାରିଲା, ଜଗତରେ ସେହିହିଁ କୃତାର୍ଥତା ଲାଭ କରେ । ଯେଉଁମାନେ ଦୁର୍ବଳ, ଦରିଦ୍ର, ହୀନ, ସେମାନଙ୍କ ଲାଗି ଜଗତରେ ସ୍ଥାନ ନାହିଁ ।

ଜଗତରେ ଦୈନନ୍ଦିନ ଜୀବନକ୍ରିୟାରେ ଏହି ମତ ସମ୍ୟକ୍‌ଭାବରେ ପ୍ରତିଫଳିତ ହୋଇଥିଲେହେଁ ସୃଷ୍ଟିର ନିୟମଚୟକୁ ବ୍ୟାପକ ଭାବରେ ଦେଖିବାକୁ ଗଲେ ଏକ ବିପରୀତ ଓ ମହନୀୟ ଦୃଶ୍ୟ ଆମ୍ଭମାନଙ୍କ ଦୃଷ୍ଟିରେ ପଡ଼େ । ସୃଷ୍ଟିପ୍ରକ୍ରିୟାକୁ ସୂକ୍ଷ୍ମଭାବରେ ଦେଖିଲେ ଏହା ସ୍ପଷ୍ଟ ପ୍ରତୀୟମାନ ହେବ ଯେ, ସ୍ୱାର୍ଥଲାଗି ଅପରର ବିନାଶ ସାଧନ କରିବା ଜୀବମାନଙ୍କର ଏକମାତ୍ର ପ୍ରବୃତ୍ତି ନୁହେଁ । ଜୀବ ହୃଦୟରେ ଏପରି ଅନେକ

ପୁଣ୍ୟ ପ୍ରବୃତ୍ତି ଅଛି, ଯାହା ଘେନି ଜୀବଗ୍ରାମ ପାରସ୍ପରିକ ଯୁଦ୍ଧରେ ଧ୍ୱଂସପ୍ରାପ୍ତ ନ ହୋଇ ଏ ସଂସାରରେ ବଞ୍ଚିରହିଛି ଏବଂ ଯାହା ଘେନି ଦୁର୍ବଳ, ହୀନ ଓ ଦରିଦ୍ର ମଧ୍ୟ ଜଗତରେ ସ୍ୱାଚ୍ଛନ୍ଦ୍ୟରେ ଜୀବନ ଯାପନ କରିପାରୁଛି ।

ଶେଷୋକ୍ତ ପ୍ରବୃତ୍ତିମାନଙ୍କମଧ୍ୟରୁ ଗୋଟିଏ ଏହି ଯେ, ମନୁଷ୍ୟ ନିଜର ସ୍ୱାଚ୍ଛନ୍ଦ୍ୟ ଲାଗି ଯେପରି ଅପରର ସ୍ୱାର୍ଥ ଉପରେ ପଦ ଦେବାକୁ କୁଣ୍ଠିତ ହୁଏ ନାହିଁ, ଅପରର ସ୍ୱାଚ୍ଛନ୍ଦ୍ୟ ଲାଗି ନିଜ ସ୍ୱାର୍ଥକୁ ମଧ୍ୟ ସେହିପରି ବଳି ଦେଇପାରେ । ଅପରର ସୁଖ, ସୁବିଧା ବା ଉନ୍ନତି ଲାଗି ମନୁଷ୍ୟ ଯେ ନିଜର ସବୁ ଦେଇପାରେ, ସମସ୍ତ ସ୍ୱାର୍ଥକୁ ଭୁଲିଯାଇପାରେ, ଏହାର ଦୃଷ୍ଟାନ୍ତ ମାନବ-ଇତିହାସରେ ପ୍ରଚୁର ଏବଂ ସେହି ଜାତି ଜଗତରେ ସଭ୍ୟ ଓ ମହତ୍, ଯେଉଁ ଜାତିରେ ଏପରି ଲୋକମାନଙ୍କର ପ୍ରାଚୁର୍ଯ୍ୟ ଅଛି ।

ହୃଦୟର ଏହି ଭାବକୁ ତ୍ୟାଗ କୁହାଯାଏ । ତ୍ୟାଗ କହିଲେ ଲୋକେ ସାଧାରଣତଃ ଧନସମ୍ପଦର ଦାନ ବୁଝନ୍ତି; କିନ୍ତୁ ତାହା ଭ୍ରାନ୍ତ ଧାରଣା । ଧନସମ୍ପଦ କିଛି ନ ଦେଇ ମଧ୍ୟ ଲୋକ ତ୍ୟାଗ କରିପାରେ । ଗୋଟିଏ ଅଶ୍ରୁବିନ୍ଦୁଠାରୁ ଆରମ୍ଭ କରି ଅତି-ପ୍ରିୟ ପ୍ରାଣ ପର୍ଯ୍ୟନ୍ତ ମନୁଷ୍ୟର ଅନେକ ଉପାଦାନ ତ୍ୟାଗଧର୍ମଲାଗି ନିୟୋଜିତ ହୋଇପାରେ । ଧନସମ୍ପଦ ସେଭଳି ଉପାଦାନମାନଙ୍କ ମଧ୍ୟରେ ବିଶିଷ୍ଟ ନୁହେଁ ।

ଚିନ୍ତା କରି ଦେଖିଲେ ସହଜରେ ବୁଝି ହେବ ଯେ, ସୃଷ୍ଟି-ପ୍ରକ୍ରିୟାହିଁ ତ୍ୟାଗନୀତି ଉପରେ ପ୍ରତିଷ୍ଠିତ । ମନୁଷ୍ୟ ବା ଅନ୍ୟ ଜୀବମାନଙ୍କର ସ୍ୱାଚ୍ଛନ୍ଦ୍ୟ ଲାଗି ପ୍ରକୃତିର ଅଜସ୍ର ଦାନ କିଏ ଅସ୍ୱୀକାର କରିବ ? ଜୀବର ତୃଷା ନିବାରଣ ଲାଗି ପର୍ବତ-ଗାତ୍ରରୁ କରୁଣାରୂପିଣୀ ନିର୍ଝରିଣୀ ବହିର୍ଗତ ହୁଏ; କ୍ଷୁନ୍ନିବୃତ୍ତିପାଇଁ ଏହି 'ସର୍ବଂପୋଷ୍ୟ ବସୁନ୍ଧରା' ଯଥାକାଳରେ ଶସ୍ୟ ଦାନ କରେ; ଜୀବର ପରିବର୍ଦ୍ଧନପାଇଁ ସୂର୍ଯ୍ୟ ଆଲୋକ ଦାନ କରେ ଓ ଏହିପରି ନାନା ଭାବରେ ପ୍ରକୃତି ପ୍ରାଣୀମାନଙ୍କ ସେବାରେ ନିଜକୁ ନିୟୋଜିତ କରେ । ଜୀବ ଭୂମିଷ୍ଠ ହେଲାଠାରୁ ଇହଜଗତ୍ ପରିତ୍ୟାଗ କଲା ଯାଏ ଅନ୍ୟମାନଙ୍କ ତ୍ୟାଗରେହିଁ ବଞ୍ଚି ରହେ । ଜନ୍ମ ହେଲାକ୍ଷଣି ଦୟାବତାରରୂପିଣୀ ଜନନୀର ବକ୍ଷଃସୁଧା ତା'ର ଜୀବନ ରକ୍ଷା କରେ । ତା'ପରେ ଅପରର ସ୍ନେହ, ଶ୍ରଦ୍ଧା, ସେବା ଓ ପାଳନ ଉପରେ ତା'ର ବଞ୍ଚିବା ଓ ବଞ୍ଚିବାରେ ସୁଖସ୍ୱାଚ୍ଛନ୍ଦ୍ୟ ନିର୍ଭରେ କରେ; କିନ୍ତୁ ତାହା କେହି ଭାବନ୍ତି କି ? ମନୁଷ୍ୟ ତ କେବଳ ନିଜ ଜାତୀୟ ଜୀବର ତ୍ୟାଗରେ ସନ୍ତୁଷ୍ଟ ରହି ନାହିଁ, ସେ ଅନ୍ୟାନ୍ୟ ପଶୁପକ୍ଷୀଙ୍କୁ ଏବଂ ସ୍ୱୟଂ ପ୍ରକୃତିକୁ ମଧ୍ୟ ନିଜ ସେବାରେ ନିୟୋଜିତ କରୁଅଛି । ଏସବୁ ଦେଖିଲେ ପୃଥିବୀ ଯେ କେବଳ ସଂଗ୍ରାମଭୂମି ତାହା ଭାବିବା ଭ୍ରମ ବୋଲି ପ୍ରତୀତ ହୁଏ । ଜଡ଼ ଓ ଜୀବ ଏବଂ ଜୀବ ଓ ଜୀବ ମଧ୍ୟରେ

ଏହି ଯେ ପାରସ୍ପରିକ ତ୍ୟାଗ, ଏହି ଯେ ଅନ୍ୟୋଽନ୍ୟର ସେବା, ଏହାହିଁ ସୃଷ୍ଟି ଓ ତା'ର ରକ୍ଷଣର ମୂଳମନ୍ତ୍ର ।

ସୃଷ୍ଟିର ଏହି ତ୍ୟାଗଧର୍ମ ଆମ୍ଭମାନଙ୍କ ଜୀବନରେ ପ୍ରତିଫଳିତ ହେବା ଉଚିତ । ସାଧାରଣତଃ ଲୋକେ ସ୍ୱାର୍ଥପୋଷଣହିଁ ଜୀବନର ଚରିତାର୍ଥତା ବୋଲି ମନେକରନ୍ତି; କିନ୍ତୁ ସୃଷ୍ଟି ନିୟମ ବୁଝିବସିଲେ ତାହା ଜୀବନଧର୍ମର ବ୍ୟଭିଚାର ମାତ୍ର । ସାମାନ୍ୟ କୀଟଠାରୁ ପ୍ରବଳତମ ସମ୍ରାଟ୍ ପର୍ଯ୍ୟନ୍ତ କେହି ଅନ୍ୟର ତ୍ୟାଗ ଓ ସେବା ଛଡ଼ା ତିଷ୍ଠି ପାରିବେ ନାହିଁ ଏବଂ ଆମ୍ଭେମାନେ ପ୍ରତ୍ୟେକେ ଅନ୍ୟଠାରୁ ଯେଉଁ ସେବା ଗ୍ରହଣ କରୁଁ, ତାହା ଅପରକୁ ପ୍ରତ୍ୟର୍ପଣ କରିବା ଆମ୍ଭମାନଙ୍କର ସର୍ବାଦୌ ଉଚିତ । ଯଦି ନ କରୁଁ, ତେବେ ତାହା ସୃଷ୍ଟି ନିୟମର ଅନାଚାର ବୋଲି ଧରିବାକୁ ହେବ । ଏହି ଅନାଚାର ଫଳରେ ଯୁଗେଯୁଗେ ପୃଥିବୀ ପୃଷ୍ଠରେ ଅଶାନ୍ତି ଲାଗିରହିଛି । ପ୍ରତ୍ୟେକେ ପ୍ରତ୍ୟେକର ସ୍ୱାର୍ଥପୋଷଣରେ ଲାଗିରହିବାରୁ ସ୍ୱାର୍ଥର ସଂଘର୍ଷ ହୁଏ ଓ ସଂଘର୍ଷରୁ କଳହ ଜାତ ହୁଏ । ସେହି କଳହ ଫଳରେ ବାରମ୍ବାର ବସୁନ୍ଧରାର ପୁଣ୍ୟ ଦେହ ଜୀବରକ୍ତରେ ରଞ୍ଜିତ ହୋଇଅଛି ।

ଜଗତର ସବୁ ଧର୍ମରେ ତ୍ୟାଗର ମହିମା ବିଘୋଷିତ ହୋଇଅଛି । ପରର କଲ୍ୟାଣ ଲାଗି ଯୁଗେ ଯୁଗେ ମହାମାନବଗଣ ଆପଣାର ସର୍ବସ୍ୱ ଦାନ କରି ଯାଇଅଛନ୍ତି । ମାନବର ମଙ୍ଗଳ ଲାଗି ମହାପୁରୁଷ ଯୀଶୁ କ୍ରୁଶରେ ଆପଣାକୁ ବଳି ଦେଇଅଛନ୍ତି ଏବଂ ଗୌତମ ବୁଦ୍ଧ ରାଜପ୍ରାସାଦର ଭୋଗବିଳାସ ତ୍ୟାଗ କରି ଚୀରସମ୍ବଳ ସନ୍ନ୍ୟାସୀ ହୋଇଛନ୍ତି । ଖ୍ରୀଷ୍ଟୀୟ ଧର୍ମାଚାର୍ଯ୍ୟଗଣ ନିଜ ଦେଶ ଓ ଜାତିଠାରୁ ସହସ୍ର ସହସ୍ର କ୍ରୋଶ ଦୂରରେ ରହି ବନ୍ୟ ଅସଭ୍ୟ ସମାଜମାନଙ୍କ ପାଇଁ ଯେପରି ଭାବରେ ଜୀବନପାତ କରନ୍ତି, ତାହା ଖ୍ରୀଷ୍ଟଧର୍ମର ତ୍ୟାଗ ମହିମା ଜଗତ୍ ସମକ୍ଷରେ ଘୋଷଣା କରୁଅଛି । ୟୁରୋପୀୟ ଜାତିମାନଙ୍କ ମଧ୍ୟରେ ଆଜିକାଲି ଏହି ତ୍ୟାଗଧର୍ମ ଅତ୍ୟନ୍ତ ପ୍ରବଳ । ଦେଶ ଲାଗି, ଜାତି ଲାଗି, ଧର୍ମ ଲାଗି ଓ ଦୀନ-ଦୁର୍ବଳ ଲାଗି ସେମାନେ ଯେପରି ଅକାତରରେ ପ୍ରାଣ ଦାନ କରନ୍ତି, ତାହା ଅନ୍ୟ ଜାତି ପକ୍ଷରେ ସମ୍ଭବପର ନୁହେଁ ।

ଥରେ ବାରକେନ୍‌ହେଡ୍ ନାମକ ଏକ ଜାହାଜ ପ୍ରାଚ୍ୟଦେଶରୁ ୟୁରୋପକୁ ଫେରୁଥିଲା । ଜାହାଜରେ ନାରୀ, ପୁରୁଷ, ବାଳକ ଓ ବାଳିକା ସମସ୍ତେ ଥିଲେ । ପୁରୁଷମାନଙ୍କ ମଧ୍ୟରୁ ଅଧିକାଂଶ ସୈନିକ ଓ ଜାହାଜର କର୍ମଚାରୀ । ଦୁର୍ବିପାକବଶତଃ ଜାହଜଟି ଆଫ୍ରିକା ଉପକୂଳରେ ଗୋଟିଏ ଜଳମଗ୍ନ ପାହାଡ଼ରେ ବାଜି ହଠାତ୍ ବୁଡ଼ିବାକୁ ଆରମ୍ଭ କଲା । ଜାହାଜରେ ଯେତେ ଖଣ୍ଡି ଜୀବନତରୀ ଥିଲା, ସେଥିରେ ସମସ୍ତ

ଆରୋହୀଙ୍କ ଲାଗି ସ୍ଥାନ କରିବା ଅସମ୍ଭବ । ତେଣୁ ପୋତାଧ୍ୟକ୍ଷଙ୍କ ଆଦେଶରେ କେବଳ ନାରୀ ଓ ଶିଶୁମାନଙ୍କୁ ସେଥିରେ ଚଢ଼ାଇ ଦିଆଯାଇ ସୈନ୍ୟ ଓ କର୍ମଚାରୀମାନଙ୍କୁ ଧୀରଭାବରେ ଶ୍ରେଣୀବଦ୍ଧ ଆକାରରେ ଠିଆହୋଇ ମୃତ୍ୟୁକୁ ଅପେକ୍ଷା କରିବାକୁ ଆଦେଶ ଦିଆଗଲା । ତାହାହିଁ ହେଲା । ସୈନିକ ଓ କର୍ମଚାରୀମାନେ ଡେକ୍ ଉପରେ ନିସ୍ପନ୍ଦଭାବରେ ଦଣ୍ଡାୟମାନ ରହି ଅତଳ ଜଳରେ ଭୀଷଣ ଜଳଜନ୍ତୁମାନଙ୍କର ଆହାର ହେବାପାଇଁ ପ୍ରସ୍ତୁତ ରହିଲେ । ଜାହାଜ ଧୀରେ ଧୀରେ ବୁଡ଼ିବାକୁ ଲାଗିଲା ଏବଂ ଜୀବନପୋତର ଆରୋହୀ ସେ ଦୃଶ୍ୟ ସହ୍ୟକରିନପାରି ଚକ୍ଷୁ ମୁଦ୍ରିତ କଲେ ।

ଜାହାଜ ଜଳମଗ୍ନ ହେବା ପୂର୍ବରୁ ପୋତାଧ୍ୟକ୍ଷ କୌଣସି ଏକ ଜୀବନତରୀରେ ଆଲେକ୍‌ଜାଣ୍ଡାର୍ ନାମକ ବାଳକକୁ, ନୌକାଟି କୂଳରେ ଲାଗିବାଯାଏ, ନୌକାର ଅଧିନାୟକ କରିଦେଇଥିଲେ । ବାଳକଟି ଶାନ୍ତ ଓ ଗମ୍ଭୀରଭାବରେ ନୌକାର ପଛ ଭାଗରେ ଠିଆହୋଇ ଏହି କରୁଣ ଦୃଶ୍ୟ ଅବଲୋକନ କରୁଥାଏ । ଜାହାଜ ଜଳମଗ୍ନ ହେବାର କିଛି ସମୟ ପରେ 'ମତେ ନେଇଯାଅ' ଏହି କରୁଣ ଚିତ୍କାର ସେହି ନୌକା ନିକଟରେ ଶୁଣାଗଲା । ଦେଖାଗଲା, ଜଣେ ସୈନିକ ଦୁଇ ହାତ ଊର୍ଦ୍ଧ୍ୱକୁ ଟେକି କରୁଣଭାବରେ ଏହି ପ୍ରାର୍ଥନା କରୁଅଛି । ସୈନିକର କରୁଣ ପ୍ରାର୍ଥନା ସମସ୍ତଙ୍କ ମର୍ମସ୍ଥଳ ବିଦ୍ଧକଲା, କିନ୍ତୁ ସ୍ଥାନ ଯେ ନାହିଁ ! ସୈନିକକୁ ନୌକାକୁ ଟୋଳିଆଣିବା ଓ ନୌକାଟିକୁ ବୁଡ଼ାଇଦେବା ଏକା କଥା । ଏହି ସମୟରେ ଗୋଟିଏ ସସନ୍ତାନା ରମଣୀ ପାଗଳପ୍ରାୟ ନୌକାମଧ୍ୟରୁ ଚିତ୍କାର କରିଉଠିଲା, "ତାଙ୍କୁ ରକ୍ଷାକର; ସେ ଯେ ମୋର ସ୍ୱାମୀ ।" ଆଲେକ୍‌ଜାଣ୍ଡାର୍ ଦେଖିଲା, କିଛି ମାତ୍ର ବିଳମ୍ବ କଲେ ସୈନିକଟିକୁ ବୁଭୁକ୍ଷୁ ଜଳଜନ୍ତୁ ନିକାଶ କରିଦେବେ । ସେ କାଳ ବିଳମ୍ବ ନ କରି 'ଈଶ୍ୱର ତୁମକୁ ରକ୍ଷାକରନ୍ତୁ' ଏହା କହି ଗଭୀର ସମୁଦ୍ରରେ ଲମ୍ଫ ପ୍ରଦାନ କଲା ଓ ସୈନିକଟିକୁ ଉପରକୁ ଟେକିଦେଇ ଦୂରକୁ ପଳାଇଗଲା । ନୌଯାତ୍ରୀମାନେ ତା'ର ଏହି ମହାନୁଭବତାରେ ଉନ୍ମତ୍ତ ହୋଇ ଏକସ୍ୱରରେ ଗାଇଉଠିଲେ, "ଈଶ୍ୱର ତୁମକୁ ଆଶୀର୍ବାଦ କରନ୍ତୁ ।" କିଛି କ୍ଷଣ ପରେ ବାଳକର ଆଉ କୌଣସି ଚିହ୍ନ ଦେଖାଗଲା ନାହିଁ ।

## ମହମ୍ମଦ ଓ ଇସଲାମ୍

ଜନହୀନ ଜଳହୀନ ଦିଗ୍‌ବଳୟ ବ୍ୟାପୀ ବିରାଟ ମରୁଭୂମି ଓ ବୃକ୍ଷପତ୍ରହୀନ ଶୁଷ୍କ କଠୋର ଗିରିମାଳା ମଧ୍ୟରେ ସ୍ଥାନେ ସ୍ଥାନେ ଜନବସତି, ଶ୍ୟାମକାନ୍ତ ଉପତ୍ୟକା–

ଏହାହିଁ ଆରବ ମରୁଭୂମି । ଆଶ୍ରୟହୀନ ନିର୍ମମ ମରୁଭୂମି ମଧ୍ୟରୁ ଯେଉଁଠାରେ ବିଧାତାର କରୁଣାରୂପିଣୀ ଜଳଧାରା ଉତ୍ସରିତ ହୋଇଅଛି, ସେଠାରେ ସୁନ୍ଦରୀ ପ୍ରକୃତିର ଶ୍ୟାମଶାଟୀ ଚିରବିସ୍ତୃତ ରହିଅଛି ଓ ସେହି ସ୍ଥାନରୁ ରାଜସପ୍ରକୃତିକ ଆରବ ତା'ର ସମସ୍ତ ଉପଭୋଗ କାଢ଼ିପାରିଅଛି । ଦିବାକାଳରେ ପ୍ରଚଣ୍ଡ ସୂର୍ଯ୍ୟରଶ୍ମି ଏହି ବିରାଟ ବାଲୁକାବିସ୍ତାରକୁ ଉତ୍ତପ୍ତ କରିଦିଏ, ନିଶାକାଳରେ ମେଘମୁକ୍ତ ନିର୍ମଳ ଆକାଶରେ ଅଗଣିତ ତାରକା ହୀରକପ୍ରଦୀପ ପରି ଏହାର ଊର୍ଦ୍ଧ୍ୱରେ ଜଳିଉଠନ୍ତି । ପ୍ରକୃତିର ଏହି ବିଷମ ଓ ବିଚିତ୍ର ଲୀଳା ଏହି ଭୂଖଣ୍ଡର ଅଧିବାସୀମାନଙ୍କୁ ଏକ ବିଚିତ୍ର ଆଦର୍ଶରେ ଗଢ଼ିପକାଇଅଛି । ଆରବୀ ଭାବପ୍ରବଣ, ଉଷ୍ଣରକ୍ତ ଓ କ୍ଷିପ୍ରହସ୍ତ । ମରୁଚାରୀ ବେଦୁଇନ୍ ଘୋର ଶତ୍ରୁକୁ ମଧ୍ୟ ତା'ର ଶିବିରକୁ ଅତିଥିଭାବରେ ନିମନ୍ତ୍ରଣ କରି, ସତ୍କାରପାଇଁ ତା'ର ପ୍ରିୟତମ ଅଶ୍ୱ-ଶାବକକୁ ହତ୍ୟାକରିପାରେ । ସେମାନେ ସାଧାରଣତଃ ବାକ୍‌ପ୍ରିୟ ନୁହନ୍ତି; କିନ୍ତୁ ଉତ୍ତେଜିତ ହେଲେ ଅତ୍ୟନ୍ତ ବାଗ୍ମିତାସହ ବାକ୍‌ପ୍ରୟୋଗ କରିପାରନ୍ତି । ସତ୍ୟବାଦୀ, ବିଶ୍ୱସ୍ତ, ଭାବୁକ ଓ ଭାବପ୍ରବଣତା, ସ୍ଥିରପ୍ରତିଜ୍ଞ ଓ କର୍ମଠ– ଏହିପରି ଯେ ଆରବୀ ଜାତି, ସେହିମାନଙ୍କ ମଧ୍ୟରେ ମହାପୁରୁଷ ମହମ୍ମଦ ଉପଯୁକ୍ତ ଜାତିର ଉପଯୁକ୍ତ କର୍ଣ୍ଣଧାରରୂପେ ଅବତୀର୍ଣ୍ଣ ହୋଇ, ଏହି ବିଶିଷ୍ଟ ଜାତିର ଉଦାର ଗୁଣାବଳିକୁ କାର୍ଯ୍ୟରେ ଲଗାଇପାରି ପୃଥିବୀରେ ଏକ ମହାନ୍ ଧର୍ମ ପ୍ରତିଷ୍ଠିତ କରିପାରିଲେ ।

ଅପରାପର ପ୍ରାଚ୍ୟ ଜାତି ପରି ଆରବୀମାନେ ମଧ୍ୟ ଅତ୍ୟନ୍ତ ଧର୍ମାନୁରକ୍ତ । ସେକାଳରେ ଏହି ସମଗ୍ର ଆରବୀ ଜାତିର ଆରାଧନାର ବସ୍ତୁ ଥିଲା ଖଣ୍ଡିଏ କୃଷ୍ଣପ୍ରସ୍ତର, ଯାହା କାବା ମନ୍ଦିରରେ ସୁରକ୍ଷିତ ଥିଲା ଓ ଯେଉଁଠାକୁ ଆରବର ସକଳ ପ୍ରାନ୍ତରୁ ନରନାରୀମାନେ ସମାଗତ ହୋଇ ମୁକ୍ତିଲାଭର ଚେଷ୍ଟା କରୁଥିଲେ । ଯାତ୍ରି ସମାଗମ ଫଳରେ ଏହି କାବାକୁ କେନ୍ଦ୍ରକରି କାଳକ୍ରମେ ଏକ ନଗର ପ୍ରତିଷ୍ଠିତ ହୋଇପାରିଥିଲା । ଏହି ନଗରର ନାମ ମକ୍‌କା । ଭିନ୍ନ ଭିନ୍ନ ବଂଶ ଭିନ୍ନ ଭିନ୍ନ କାଳରେ ମକ୍‌କାର ଶାସକ ଓ କାବା ମନ୍ଦିରର ରକ୍ଷକ ନିର୍ବାଚିତ ହେଉଥିଲେ । ମହମ୍ମଦଙ୍କ ଜନ୍ମକାଳରେ କୋରେସ୍ ବଂଶ ମକ୍‌କାର ଶାସକ ଥିଲେ ଓ ସ୍ୱୟଂ ମହମ୍ମଦ ଏହି ବଂଶୀୟ ଥିଲେ । ମକ୍‌କାର ବାହାର ବିରାଟ ମରୁଭୂମିର ସ୍ଥାନେ ସ୍ଥାନେ ଅସଂଖ୍ୟ ଆରବୀ ଗୋଷ୍ଠୀ ଭିନ୍ନ ଭିନ୍ନ ବ୍ୟବସାୟ ଓ ନିରବଚ୍ଛିନ୍ନ ଅନ୍ତର୍ଯୁଦ୍ଧରେ ରତ ଥିଲେ । ଉଚ୍ଚ ବା ଉଦାର ଚିନ୍ତା ସେମାନଙ୍କର ଅଜ୍ଞାତ ଥିଲା ।

ଖ୍ରୀଷ୍ଟ ଜନ୍ମ ହେବାର ୫୭୦ ବର୍ଷ ପରେ ମହମ୍ମଦ ଏହି ମକ୍‌କା ନଗରୀରେ ଜନ୍ମଗ୍ରହଣ କରିଥିଲେ । ଜନ୍ମ ହେବାର ଅଳ୍ପ କାଳ ପରେ ପିତା ଅବଦୁଲ୍ଲା ପ୍ରାଣତ୍ୟାଗ କଲେ ଏବଂ ତାଙ୍କର ଛଅ ବର୍ଷ ବୟସବେଳେ ମାତା ମଧ୍ୟ ଇହଲୀଳା ସାଙ୍ଗ

କଲେ । ତହୁଁ ଶିଶୁ ମହମ୍ମଦଙ୍କ ଲାଳନପାଳନ ଭାର ପ୍ରଥମେ ପିତାମହ ଓ ପିତାମହଙ୍କ ମୃତ୍ୟୁ ପରେ ପିତୃବ୍ୟ ଆବୁଥାଲେବ୍‌ଙ୍କ ଉପରେ ପଡ଼ିଲା ।

ଆବୁଥାଲେବ୍ ବାଣିଜ୍ୟବ୍ୟବସାୟ କରୁଥିଲେ । ବାଣିଜ୍ୟ ବ୍ୟପଦେଶରେ ତାଙ୍କୁ ଅନେକ ଦେଶ ଭ୍ରମଣ କରିବାକୁ ହେଉଥିଲା । ଏହି ଭ୍ରମଣମାନଙ୍କରେ ତରୁଣ ମହମ୍ମଦ ଅନେକ ସମୟରେ ପିତୃବ୍ୟଙ୍କର ସାଥୀ ଥିଲେ । ତାଙ୍କର ଅଷ୍ଟାଦଶ ବର୍ଷରେ ପିତୃବ୍ୟଙ୍କ ସହ ଏହିପରି ଏକ ଯାତ୍ରାରେ ଥରେ ସେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୋଇଥିଲେ । ସେହି ତରୁଣ ବୟସରେ ମଧ୍ୟ ଏପରି ଏକ ଘଟନା ଘଟିଲା, ଯାହା ତାଙ୍କ ଜୀବନର ସମସ୍ତ ଭବିଷ୍ୟତକୁ ନିୟନ୍ତ୍ରିତ କଲା । ସେହି ସମୟରେ ସେ ପିତୃବ୍ୟଙ୍କ ସହ ସିରିୟାର କୌଣସି ବାଣିଜ୍ୟବସତିକୁ ଯାଇ କୌଣସି ସୁପ୍ରସିଦ୍ଧ ଖ୍ରୀଷ୍ଟୀୟ ଧର୍ମଯାଜକଙ୍କ ସହ ଏକ ସ୍ଥାନରେ ବସବାସ କରିବାର ସୁବିଧା ପାଇଲେ । ଖ୍ରୀଷ୍ଟଧର୍ମସହ ଏହି ପରିଚୟ ମହମ୍ମଦଙ୍କ ଧର୍ମଜୀବନକୁ ପ୍ରସ୍ଫୁଟିତ କରିଦେଲା । ଏହା ଜାଣିବାର କଥା ଯେ, ମହମ୍ମଦ ନିରକ୍ଷର ଥିଲେ । କୌଣସି କାଳରେ ତାଙ୍କୁ କେହି ଲିଖନପଠନ ଶିକ୍ଷା ଦେଇନଥିଲେ । ତେଣୁ ଯେଉଁ ପ୍ରଜ୍ଞାଦ୍ୱାରା ସେ ଏକ ବିରାଟ ଧର୍ମ ପ୍ରତିଷ୍ଠା କରିପାରିଥିଲେ, ତାହା ପୂର୍ବବର୍ତ୍ତୀ ଆଚାର୍ଯ୍ୟମାନଙ୍କର ଶାସ୍ତ୍ରାନୁଶୀଳନଦ୍ୱାରା ନୁହେଁ, କେବଳ ସ୍ୱୀୟ ପ୍ରତିଭାର ବାତାୟନ ଦେଇ ବିଶ୍ୱଜଗତର ଯେଉଁ ପ୍ରତ୍ୟକ୍ଷ-ଲବ୍ଧ ଜ୍ଞାନ ସେ ଆହରଣ କରିପାରିଥିଲେ ତାହାରିଦ୍ୱାରା ।

ତରୁଣ ବୟସରୁ ସେ ଅତ୍ୟନ୍ତ ଚିନ୍ତାଶୀଳ ବୋଲି ଜଣାପଡ଼ିଥିଲେ । ତାଙ୍କର ସଙ୍ଗୀମାନେ ତାଙ୍କୁ 'ଆଲ୍ ଅମୀନ୍' ବା 'ବିଶ୍ୱାସୀ' ବୋଲି ନାମ ଦେଇଥିଲେ । ସଙ୍ଗୀମାନଙ୍କ ମଧ୍ୟରେ ବାକ୍ୟ ଓ କାର୍ଯ୍ୟରେ ସତ୍ୟ ରକ୍ଷା ଲାଗି ସେ ପ୍ରସିଦ୍ଧ ଥିଲେ ଏବଂ ସେମାନେ ଭାବୁଥିଲେ ଯେ, ଏହି ଚରିତ୍ରବାନ୍, ପରୋପକାରୀ, ସତ୍ୟବାଦୀ, ଖାଣ୍ଟି ଲୋକଟି ଦିନେ କିଛି ନା କିଛି ମହତ୍ କାର୍ଯ୍ୟ କରିପାରିବ । ଏହି ଚରିତ୍ରମାଧୁର୍ଯ୍ୟ ସଙ୍ଗେ ରୂପସୌଷ୍ଠବ ଯୁକ୍ତ ହୋଇ ମହମ୍ମଦଙ୍କୁ ସମାଜରେ ଖ୍ୟାତ ଓ ପ୍ରିୟ କରିପକାଇଥିଲା ।

ଏହି ସମସ୍ତ ଗୁଣ ଯୋଗୁ ମକ୍‌କାନଗର-ଅଧିବାସିନୀ ଖାଦିଜା ନାମ୍ନୀ ଏକ ସମ୍ପତ୍ତିବତୀ ବିଧବା ମହମ୍ମଦଙ୍କୁ ନିଜର ସମ୍ପତ୍ତି ପରିଚାଳନାଲାଗି ନିୟୋଜିତ କଲେ । ଖାଦିଜା ଅତ୍ୟନ୍ତ ସୁନ୍ଦରୀ ଥିବାରୁ ମକ୍‌କାର ଅନେକ ସମ୍ଭ୍ରାନ୍ତ ପୁରୁଷ ତାଙ୍କର ପାଣିପୀଡ଼ନଲାଗି ପ୍ରାର୍ଥୀ ହୋଇଥିଲେ; କିନ୍ତୁ ସେ ସେମାନଙ୍କୁ ପ୍ରତ୍ୟାଖ୍ୟାନ କରି ଶୁଦ୍ଧ ବୈଧବ୍ୟରେ କାଳାତିପାତ କରୁଥିଲେ । ମହମ୍ମଦ କିଛି କାଳ ତାଙ୍କ ଅଧୀନରେ କାର୍ଯ୍ୟ କଲାପରେ ସେ ତାଙ୍କ କର୍ମକୁଶଳତା, ନ୍ୟାୟନିଷ୍ଠତା, ସତ୍ୟବାଦିତା ପ୍ରଭୃତି

ଗୁଣରେ ମୁଗ୍ଧ ହେବାକୁ ଲାଗିଲେ । ପରିତୋଷ କ୍ରମେ ପ୍ରଣୟରେ ପରିଣତ ହେଲା ଏବଂ ଖାଦିଜା ମହମ୍ମଦଙ୍କୁ ସ୍ୱାମୀରୂପେ ବରଣ କରି ତାଙ୍କୁ ବିବାହ କଲେ । ସେତେବେଳକୁ ମହମ୍ମଦଙ୍କର ବୟସ ପଚିଶ ବର୍ଷ ।

ମହମ୍ମଦଙ୍କ ଚତ୍ୱାରିଂଶତ୍ ବର୍ଷ ବୟସ ବେଳେ ଖାଦିଜା ପରଲୋକପ୍ରାପ୍ତ ହେଲେ । ଏହି ପଞ୍ଚଦଶବର୍ଷବ୍ୟାପୀ ଦାମ୍ପତ୍ୟ-ଜୀବନ ମହମ୍ମଦଙ୍କର ଅତ୍ୟନ୍ତ ସୁଖ ଓ ଶାନ୍ତିରେ ଅତିବାହିତ ହୋଇଥିଲା । କିନ୍ତୁ ଏହି ଶାନ୍ତିମୟ ଦାମ୍ପତ୍ୟଜୀବନ ମଧ୍ୟରେ ମହମ୍ମଦଙ୍କ ଆତ୍ମା, ଯେଉଁ ସବୁ ଜିଜ୍ଞାସା ଉପରେ ପ୍ରତ୍ୟେକ ଧର୍ମ ପ୍ରତିଷ୍ଠିତ, ସେହିସବୁ ନେଇ ବ୍ୟାପୃତ ଥିଲା । 'ମୁଁ କିଏ ? କେଉଁଠାରୁ ଆସିଲି ? କାହିଁ ବା ଯିବି ? ଭଗବାନ୍ କାହାନ୍ତି ? ଏହି ମୂର୍ତ୍ତିସବୁ କ'ଣ ଈଶ୍ୱର ?' ଏହି ପ୍ରକାର ପ୍ରଶ୍ନମାନ ମହମ୍ମଦଙ୍କ ଅନ୍ତରରେ ଉଠି ଲୀନ ହେବାକୁ ଲାଗିଲା । ସେସବୁର ଉତ୍ତର ଦେବାକୁ ତାଙ୍କ ଗୋଷ୍ଠୀରେ କେହି ନଥିଲେ । ଏହି ଚିରନ୍ତନ ପ୍ରଶ୍ନମାନଙ୍କର ସମାଧାନ ଲାଗି ସେ ପ୍ରତିବର୍ଷ ରମଜାନ୍ ମାସରେ ନିକଟବର୍ତ୍ତୀ ହାରା ପର୍ବତର ଏକ ଗହ୍ୱରକୁ ପ୍ରୟାଣ କରି, ସେହିଠାରେ ନିର୍ଜନ ପର୍ବତର ନୀରବ ଶାନ୍ତି ମଧ୍ୟରେ ଧ୍ୟାନ ଓ ମନନ କରୁଥିଲେ । ବହୁ ବର୍ଷର ପ୍ରାର୍ଥନା, ଧ୍ୟାନ ଓ ମନନ ପରେ ତାଙ୍କର ଚତ୍ୱାରିଂଶତ୍ ବର୍ଷ ବୟଃକ୍ରମବେଳେ, ସେ ସେହି ବର୍ଷର ରମଜାନ୍ ପରେ ଗୃହକୁ ଫେରି ଖାଦିଜାଙ୍କୁ କହିଲେ ଯେ, ଭଗବାନଙ୍କ ବିଶେଷ କରୁଣା ଫଳରେ ତାଙ୍କର ସମସ୍ତ ଅନ୍ଧକାର ଦୂରୀଭୂତ ହୋଇଅଛି । ସେ ଜାଣିବାକୁ ପାଇଛନ୍ତି ଯେ, ଏହି ମୂର୍ତ୍ତି, ବିଗ୍ରହ ଓ ମନ୍ତ୍ରତନ୍ତ୍ର ସକଳ ମିଥ୍ୟା । ଏକ ପରମେଶ୍ୱର ପ୍ରତ୍ୟେକର ଅନ୍ତର ଓ ବାହାରରେ ବ୍ୟାପି ରହିଅଛନ୍ତି; ଏହି ବିଗ୍ରହସବୁ ପରିତ୍ୟାଗ କରି ତାଙ୍କୁ ହିଁ ଆରାଧନା କରିବା ସମସ୍ତଙ୍କର ଉଚିତ । ସେହି ଈଶ୍ୱରହିଁ ବିଶ୍ୱଜଗତରେ ଶ୍ରେଷ୍ଠ ଓ ପରମ; ତାଙ୍କଠାରୁ ଶ୍ରେଷ୍ଠତର ଆଉ କିଛି ନାହିଁ । 'ଆଲ୍ଲା ହୋ ଆକବର'– 'ଭଗବାନ୍‌ହିଁ ଶ୍ରେଷ୍ଠ' ଏବଂ 'ଇସ୍‌ଲାମ୍'– ଅର୍ଥାତ୍ ଆମ୍ଭେମାନେ ତାଙ୍କ ନିକଟରେ ଆପଣାକୁ ସମର୍ପଣ କରିବା । ଏହି ଦୁଇ ମହାବାଣୀ ମହମ୍ମଦଙ୍କ ଆବିଷ୍କୃତ ସତ୍ୟମାନଙ୍କର ମୂଳମନ୍ତ୍ର ଏବଂ ଭଗବାନଙ୍କଠାରେ ଆତ୍ମସମର୍ପଣ ଏହି ସତ୍ୟର ଆଦର୍ଶ ହେବାରୁ ଏହି ଧର୍ମର ନାମ 'ଇସ୍‌ଲାମ୍' ।

ପତିପ୍ରାଣା ଖାଦିଜା ମହମ୍ମଦଙ୍କ ଏହି ନୂତନ ବାଣୀକୁ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଶ୍ରବଣ କଲେ ଓ ଶେଷରେ ବିଶ୍ୱାସ କଲେ ଯେ, ଏହାହିଁ ସତ୍ୟ । ଏଥିରେ ମହମ୍ମଦଙ୍କର ଉତ୍ସାହ ବହୁଗୁଣିତ ହୋଇଗଲା । କାରଣ ତାଙ୍କର ନବାବିଷ୍କୃତ ସତ୍ୟକୁ ସମର୍ଥନ କରିବାକୁ ସମସ୍ତ ଜଗତରେ ଦ୍ୱିତୀୟ ବ୍ୟକ୍ତି ନ ଥିଲେ । କିଛି କାଳ ପରେ ତାଙ୍କର ଭୃତ୍ୟ ସୈୟଦ୍ ଓ ପିତୃବ୍ୟ ଆବୁଥାଲେବ୍‌ଙ୍କ ପୁତ୍ର ଆଲି ମଧ୍ୟ ଏହି ସତ୍ୟରେ

ବିଶ୍ୱାସକଲେ ଏବଂ ଖାଦିଜାଙ୍କ ସହ ମହମ୍ମଦଙ୍କ ନୂତନ ଧର୍ମ ଗ୍ରହଣ କଲେ ।

ତତ୍ପରେ ମହମ୍ମଦ ବ୍ୟକ୍ତିଗତଭାବରେ ଏହି ସତ୍ୟ ସମ୍ବନ୍ଧରେ ଭିନ୍ନ ଭିନ୍ନ ଲୋକଙ୍କ ସହ କଥାବାର୍ତ୍ତା କରିବାକୁ ଲାଗିଲେ; କିନ୍ତୁ ସମସ୍ତେ ତାଙ୍କ କଥାକୁ ଉପହାସ କଲେ । ଅନୁତ୍ସାହ ଓ ଉପହାସ ମଧ୍ୟରେ ମହମ୍ମଦ ଅଟଳ ରହି, ଧୀର ଅଥଚ ସ୍ଥିର ଗତିରେ ଚାଲିବାକୁ ଲାଗିଲେ । ତିନି ବର୍ଷର ଅନୁତ୍ତମ ସଫଳତା ପରେ, ସେ ଦିନେ ତାଙ୍କର କେତେକ ଜ୍ଞାତିଙ୍କୁ ଗୋଟିଏ ଭୋଜିକୁ ନିମନ୍ତ୍ରଣ କରି, ସମବେତ ଅତିଥିମାନଙ୍କ ସମକ୍ଷରେ ନିଜର ନବାବିଷ୍କୃତ ସତ୍ୟ ପ୍ରଖ୍ୟାପନ କଲେ ଏବଂ ପ୍ରଶ୍ନ କଲେ, "କିଏ ମତେ ଏଥିରେ ସମର୍ଥନ କରିବ ?" ଅତିଥିମାନେ ବିସ୍ମୟରେ ନୀରବ ରହିଲେ । କେବଳ ଷୋଡ଼ଶବର୍ଷବୟସ୍କ ତରୁଣ ଆଲି ଦଣ୍ଡାୟମାନ ହୋଇ ଏହି ସତ୍ୟ ସେ ସମର୍ଥନ କରୁଛି ବୋଲି ପ୍ରକାଶକଲା । ସ୍ୱୟଂ ଆବୁଥାଲେବ୍ ଉପସ୍ଥିତ ଥିବାରୁ ମହମ୍ମଦଙ୍କର କୌଣସି ଅନିଷ୍ଟ ଘଟିଲା ନାହିଁ । ଅତିଥିମାନେ କେବଳ ଉପହାସ କରି ସ୍ୱଗୃହକୁ ଫେରିଗଲେ ।

କାବା ମନ୍ଦିରର ରକ୍ଷକ ଓ ମକ୍କାର ଅଧିନାୟକ କୋରେସ୍ ବଂଶୀୟଗଣ ସ୍ୱତଃ ମହମ୍ମଦଙ୍କ ବିରୁଦ୍ଧରେ କ୍ରୁଦ୍ଧ ହୋଇଉଠିଲେ, କାରଣ ଏହି ନୂତନ ଧର୍ମ ସେମାନଙ୍କ ପ୍ରତିପତ୍ତି ମୂଳରେ କୁଠାରାଘାତ କରିବାକୁ ବସିଲା । ସେମାନେ ବିଚାରିଲେ, ଏ ଅର୍ବାଚୀନ କିଏ, ଯେ କି ନିଜକୁ ଅନ୍ୟ ସମସ୍ତଙ୍କ ଅପେକ୍ଷା ଜ୍ଞାନୀ ବୋଲି ମନେକରୁଛି ଓ ଆମ୍ଭମାନଙ୍କୁ କାଠଖଣ୍ଡର ଉପାସକ ବୋଲି ଉପହାସ କରୁଛି ? କ୍ରମେ ମହମ୍ମଦଙ୍କ ବିପ୍ଲବୀ ଧର୍ମ ଚାରିଆଡ଼େ ପ୍ରଚାରିତ ହେଲା ଏବଂ କେବଳ କୋରେସ୍ ନୁହେଁ, ଅନ୍ୟ ଗୋଷ୍ଠୀମାନଙ୍କର ମଧ୍ୟ ବିରକ୍ତିକୁ ସେ ଉତ୍ତେଜିତ କଲେ । ଦିନେ ସ୍ନେହଶୀଳ ପିତୃବ୍ୟ ଆବୁଥାଲେବ୍ ତାଙ୍କୁ କହିଲେ, "ମହମ୍ମଦ, ଏତେ ଲୋକଙ୍କର ବିରାଗଭାଜନ ହୋଇ ଲାଭ କ'ଣ ? ତୁମେ ତୁମର ସତ୍ୟକୁ ନିଜେ ନିଜେ ବିଶ୍ୱାସ କର – ଚାରିଆଡ଼େ ପ୍ରଚାର ନ କଲେ କ'ଣ ହୁଅନ୍ତା ନାହିଁ ?" ମହମ୍ମଦ ଉତ୍ତର ଦେଲେ, "ଯଦି ମୋତେ ଏକ ଦିଗରେ ସୂର୍ଯ୍ୟ ଓ ଅନ୍ୟ ଦିଗରେ ଚନ୍ଦ୍ର ଆସି ଏ ବାଣୀ ପ୍ରଚାର ନ କରିବାକୁ କହନ୍ତି, ତେବେ ମଧ୍ୟ ମୁଁ ବନ୍ଦ ରହିବି ନାହିଁ ।" – ଏହା କହି ଉତ୍ତେଜନାବଶତଃ ମହମ୍ମଦ ଅଶ୍ରୁ ତ୍ୟାଗ କରିପକାଇଲେ ।

କ୍ରମେ ମହମ୍ମଦ କାବା-ସମାଗତ ଯାତ୍ରୀମାନଙ୍କ ଆଗରେ ନିଜର ଧର୍ମ ପ୍ରଚାର କରିବାକୁ ଲାଗିଲେ ଏବଂ କିଛି ଅଂଶରେ ସିଦ୍ଧି ମଧ୍ୟ ଲାଭ କଲେ । କିନ୍ତୁ କ୍ରମେ ବିରୋଧ ଓ ବିପଦ ଘନୀଭୂତ ହେବାକୁ ଲାଗିଲା । କୋରେସ୍‌ମାନେ ଅତ୍ୟନ୍ତ କ୍ରୁଦ୍ଧ ହୋଇପଡ଼ିଲେ ଏବଂ ମହମ୍ମଦଙ୍କ ପ୍ରାଣନାଶ ଲାଗି ଶପଥ କରିବାକୁ ଲାଗିଲେ ।

ସେତେବେଳକୁ ଆବୁଥାଲେବ୍ ପ୍ରାଣତ୍ୟାଗ କଲେଣି । ପତିପ୍ରାଣା ଖାଦିଜା ଆଉ ନାହାନ୍ତି, ମହମ୍ମଦ ଘନୀଭୂତ ବିପଜ୍ଜାଲମଧ୍ୟରେ ଏକାକୀ । ଶତ୍ରୁହସ୍ତରୁ ରକ୍ଷା ପାଇବା ଲାଗି ତାଙ୍କୁ କେତେବେଳେ ପର୍ବତଗହ୍ୱରରେ ଲୁଚି ରହିବାକୁ, କେତେବେଳେ ବା ଛଦ୍ମବେଶରେ ଏଣେତେଣେ ପଳାୟନ କରିବାକୁ ହେଉଥିଲା । ଅନେକ ସମୟରେ ମହମ୍ମଦ ଓ ତାଙ୍କ ଧର୍ମ୍ମ ଶେଷ ହେଲା ବୋଲି ଲୋକେ ଭାବୁଥିଲେ; କିନ୍ତୁ ବିଧାତାର ମହାନ୍ ନିର୍ଦ୍ଦେଶ ଘେନି ସେ ସମସ୍ତ ବିପଦରୁ ଆଶ୍ଚର୍ଯ୍ୟଜନକ ଭାବରେ ଉଦ୍ଧାର ପାଇପାରିଥିଲେ ।

ପରିଶେଷରେ ଅବସ୍ଥା ସାଂଘାତିକ ହୋଇଉଠିଲା । ମହମ୍ମଦ ତାଙ୍କର ସ୍ୱଳ୍ପସଂଖ୍ୟକ ଶିଷ୍ୟଙ୍କୁ ନିରାପଦରେ ରହିବାଲାଗି ଆବିସିନିଆକୁ ପ୍ରେରଣ କରିଦେଲେ ଏବଂ ଯେତେବେଳେ ଜାଣିଲେ ଯେ, ଚାଳିଶଟି ଗୋଷ୍ଠୀର ଚାଳିଶଟି ଲୋକ ତାଙ୍କର ଜୀବନ ନେବାଲାଗି ଗୋପନ ସ୍ଥାନମାନଙ୍କରେ ଜଗିବସିଛନ୍ତି, ସେତେବେଳେ ସେ ମକ୍କାରେ ରହିବା ଆଉ ଉଚିତ ଓ ସମ୍ଭବପର ମନେ କଲେ ନାହିଁ । ମକ୍କାରୁ ଦୁଇ ଶତ ମାଇଲ ଦୂରରେ ୟାଥ୍ରେବ ନାମକ ସ୍ଥାନରେ ତାଙ୍କର କେତେକ ଶିଷ୍ୟ ଥିଲେ । ସେ ସେହି ସ୍ଥାନକୁ ସତ୍ୟାବିଷ୍କାରର ତ୍ରୟୋଦଶ ବର୍ଷରେ, ତ୍ରିପଞ୍ଚାଶତ୍ ବର୍ଷ ବୟସରେ ପଳାୟନ କଲେ । ସେହି ସ୍ଥାନ ମଦିନା ଅର୍ଥାତ୍ ଧର୍ମପ୍ରବର୍ତ୍ତକଙ୍କ ନଗର ବୋଲି ପରିଚିତ ଏବଂ ମହମ୍ମଦ୍‌ଙ୍କ ପଳାୟନକାଳଠାରୁ ମୁସଲମାନ ସମ୍ୱତ୍ ହେଜିରା ଗଣତି ହୁଏ ।

ମଦିନାକୁ ପଳାୟନ କଲାପରେ ମହମ୍ମଦଙ୍କ ପ୍ରଚାର ପ୍ରଣାଳୀରେ ଏକ ନୂତନ ପନ୍ଥାର ଆରମ୍ଭ ହେଲା । ସେହି ପନ୍ଥାର ଅବଲମ୍ବନ ଯୋଗୁ ମହମ୍ମଦ ଅନ୍ୟମାନଙ୍କଦ୍ୱାରା ଉପହସିତ ଓ ନିନ୍ଦିତ ହେଲେହେଁ ଇସ୍‌ଲାମ୍‌ର ଇତିହାସ ତାହାରି ଉପରେ ହିଁ ନିର୍ଭର କରେ । ଏଯାବତ୍ ମହମ୍ମଦ ଅନୁରୋଧ, ଉପଦେଶ, ପ୍ରଖ୍ୟାପନ ପ୍ରଭୃତିଦ୍ୱାରାହିଁ ଧର୍ମ ପ୍ରଚାର କରୁଥିଲେ; କିନ୍ତୁ କୋରେସ୍‌ମାନଙ୍କ ଆଚରଣରେ ତାହାଙ୍କର ମତି ପରିବର୍ତ୍ତନ ହେଲା । ସେ ଭାବିଲେ– ଯେଉଁ ଦୁର୍ଦ୍ଦାନ୍ତମାନେ ଏହି ସନାତନ ସତ୍ୟକୁ ନିଜର ପଶୁବଳରେ ପଦଦଳିତ କରିବାକୁ ବସିଛନ୍ତି, ସେମାନଙ୍କୁ ପଶୁବଳରେହିଁ ପରାଜିତ କରିବାକୁ ହେବ । ତାଙ୍କ ଧର୍ମରେ ଯଦି ସତ୍ୟ ଥାଏ, ତେବେ ସେ ନିଶ୍ଚୟ ଜୟଯୁକ୍ତ ହେବେ ।

ଜୀବନର ଅବଶିଷ୍ଟ କାଳ ମହମ୍ମଦ ଏହି ନୀତିରେ ନୂତନ ସତ୍ୟକୁ ଲୋକ-ସମାଜରେ ପ୍ରଚାର କଲେ । ଶିଷ୍ୟ ଓ ଅନୁଚରମାନଙ୍କୁ ଘେନି ସେ କିଛିକାଳ ପରେ ମକ୍କା ଅଭିଯାନ କଲେ ଏବଂ ନିଜର ଅନୁପମ ସାହସ ଓ ଧୈର୍ଯ୍ୟ ବଳରେ

କୋରେସ୍ ବଂଶୀୟମାନଙ୍କୁ ପରାଭୂତ କରି 'ଈଶ୍ୱର ଏକ ଓ ମହାନ୍ ଏବଂ ମହମ୍ମଦ ତାଙ୍କର ଦୂତ' – ଏହି ବାଣୀ ପ୍ରଚାର କରି କାବା ମନ୍ଦିରରେ ପ୍ରବେଶକଲେ । କ୍ରମେ ମହମ୍ମଦଙ୍କ ବାଣୀ ମକ୍କାର ଜନସାଧାରଣରେ ଗୃହୀତ ହୋଇ ସେହିଠାରୁ ଭିନ୍ନ ଭିନ୍ନ ଦିଗରେ ପ୍ରସାରିତ ହେଲା । ଅଳ୍ପ କାଳ ମଧ୍ୟରେ ବହୁଧା-ବିଭକ୍ତ ଓ ପରସ୍ପର ବିବଦମାନ ଆରବୀ ଜାତି, ପୟଗମ୍ବରଙ୍କ ଐକ୍ୟବିଧାୟକ ବାଣୀରେ ଏକ ଗରୀୟାନ୍ ଜାତିରେ ପରିଣତ ହେଲା ଏବଂ ମହମ୍ମଦ ଏହି ନବଜାଗ୍ରତ ଜାତିର ମୁକୁଟହୀନ ସମ୍ରାଟ୍ ହୋଇପଡ଼ିଲେ । କିନ୍ତୁ କେବଳ ଯେ ଅସିମୁନରେ ମହମ୍ମଦ ଧର୍ମ ପ୍ରତିଷ୍ଠା କରିପାରିଥିଲେ, ଏହା ଭାବିବା ଭ୍ରମ । ପ୍ରତ୍ୟେକ ଧର୍ମାଚାର୍ଯ୍ୟଙ୍କ ପରି ମହମ୍ମଦଙ୍କର ମଧ୍ୟ ପବିତ୍ର ଓ ବିରାଟ ବ୍ୟକ୍ତିତ୍ୱ ଥିଲା; ସେହି ବ୍ୟକ୍ତିତ୍ୱର ପ୍ରଭାବ ଯୋଗୁ ସେ ଜନତାକୁ ମୁଗ୍ଧ କରିପାରୁଥିଲେ । ସମସ୍ତ ଆରବର ମୁକୁଟ ତାଙ୍କ ପଦତଳେ ଅର୍ପିତ ହୋଇଥିଲେହେଁ ସେ ତାହା ପ୍ରତ୍ୟାଖ୍ୟାନ କରି ସୀବନ କର୍ମଦ୍ୱାରା ଜୀବନ ଯାପନ କରୁଥିଲେ । ଅନୁଚର, ପାର୍ଶ୍ୱଚର ବା ଅପର ଲୋକ ପ୍ରତି ତାଙ୍କର ଦୟା ଓ ତୀକ୍ଷ୍ଣ ଦୃଷ୍ଟିର ସୀମା ନ ଥିଲା । ତାଙ୍କ ସେବକ ସୈୟଦ୍ ଥରେ ପ୍ରକାଶ କଲା ଯେ, ତା'ର ସେବାକାଳ ମଧ୍ୟରେ ସେ ମହମ୍ମଦଙ୍କୁ ସେବା କରି ନାହିଁ; ବରଂ ମହମ୍ମଦ ତା'ର ସେବା କରିଛନ୍ତି । ଏହି ସୈୟଦ୍ ଯେତେବେଳେ ଟୋକକ୍-ସମରରେ ନିହତ ହେଲା, ସେତେବେଳେ ମହମ୍ମଦ ନିର୍ବିକାରଭାବରେ କହିଲେ, ''ବେଶ୍ ହେଲା, ସୈୟଦ୍ ପ୍ରଭୁଙ୍କର କର୍ମ ସମ୍ପାଦନକରି ଏବେ ପ୍ରଭୁଙ୍କ ନିକଟକୁ ଗଲା ।'' କିନ୍ତୁ କିଛି କ୍ଷଣ ପରେ ଯେତେବେଳେ ସୈୟଦ୍-କନ୍ୟା ଶୁକ୍ଳକେଶ ମହମ୍ମଦଙ୍କୁ ସୈୟଦ୍‌ର ଶବ ପାଖରେ ବସି କ୍ରନ୍ଦନ କରିବାର ଦେଖି ପଚାରିଲା, ''ଏ କ'ଣ ?'' ମହମ୍ମଦ ଉତ୍ତର ଦେଲେ, ''ଆଉ କ'ଣ ? ଜଣେ ବନ୍ଧୁ ତା'ର ବନ୍ଧୁଙ୍କ ପାଇଁ ଅଶ୍ରୁ ବର୍ଷଣ କରୁଛି ମାତ୍ର ।''

ମୃତ୍ୟୁର ଦୁଇ ଦିନ ପୂର୍ବରୁ ସେ ମସଜିଦ୍‌କୁ ଯାଇ ସମବେତ ଶିଷ୍ୟମାନଙ୍କୁ ଜିଜ୍ଞାସା କଲେ, ''ମୁଁ କାହାରି କିଛି କ୍ଷତି କରିଛି କି ? ଯଦି କରିଥାଏଁ, ତେବେ ମୁଁ ମୋ' ପୃଷ୍ଠଦେଶରେ ଶାସ୍ତିସ୍ୱରୂପ ବେତ୍ରାଘାତ ସହ୍ୟକରିବି । ମୁଁ କାହାଠାରୁ କିଛି ଧାରିଛି କି ?'' ଜଣେ ଉତ୍ତର ଦେଲା, ''ହଁ, ଅମୁକ ଦିନ ତିନି ମୁଦ୍ରା ମୋ'ଠାରୁ ଗ୍ରହଣ କରିଥିଲ ।'' ମହମ୍ମଦ ସଙ୍ଗେ ସଙ୍ଗେ ତାହାର ପରିଶୋଧର ବ୍ୟବସ୍ଥା କରି କହିଲେ, ''ଈଶ୍ୱରଙ୍କ ସମୀପରେ ଲଜ୍ଜିତ ହେବା ଅପେକ୍ଷା ଏଠି ଲଜ୍ଜିତ ହେବା ବହୁ ଗୁଣରେ ଶ୍ରେୟସ୍କର ।''

ଅସି-ଧାର ଅପେକ୍ଷା ଚରିତ୍ରର ଏହି ବିମଳ ମାଧୁରୀ ଯେ ଲୋକଚିତ୍ତରେ ଅଧିକ

କାର୍ଯ୍ୟକାରୀ ହୋଇଥିବ, ଏହା କାହାରିକୁ ବୁଝାଇଦେବାକୁ ହେଲା ନାହିଁ । କୌଣସି ସତ୍ୟ କେବଳ ପଶୁବଳରେ ପ୍ରଚାରିତ ଓ ଗୃହୀତ ହୋଇନାହିଁ । ମହମ୍ମଦଙ୍କ ଧର୍ମର ପ୍ରଚାର ଓ ଗ୍ରହଣର ମୂଳରେ ମହମ୍ମଦଙ୍କ ବ୍ୟକ୍ତିତ୍ୱ ଓ ତାଙ୍କ ଆବିଷ୍କୃତ ସତ୍ୟର ମହିମା । ସେହି ମହିମା ଗୁଣରେ ଅବଜ୍ଞାତ ଆରବୀ ଜାତି କେବଳ ଯେ ସଭ୍ୟ ଓ ଗରୀୟାନ୍ ହୋଇଉଠିଲା ତାହା ନୁହେଁ, ମହମ୍ମଦଙ୍କ ମୃତ୍ୟୁର ଶହେ ବର୍ଷ ମଧ୍ୟରେ ତାଙ୍କ ଧର୍ମ ଦିଲ୍ଲୀଠାରୁ ମରକ୍‌କୋ ପର୍ଯ୍ୟନ୍ତ ବିରାଟ ଭୂଖଣ୍ଡରେ ପରିବ୍ୟାପ୍ତ ହୋଇପଡ଼ିଲା । ଇସ୍‌ଲାମ୍‌ର ଅଭ୍ୟୁତ୍‌ଥାନ ଓ ପ୍ରସାର ମାନବ-ଇତିହାସରେ ଏକ ଆଶ୍ଚର୍ଯ୍ୟକର ଘଟନା ।

## ଅହିଂସା-ପ୍ରଚାର

ଅକାରଣେ ପ୍ରାଣୀମାନଙ୍କୁ କଷ୍ଟଦେବା ବା ଆମ୍ଭମାନଙ୍କ ଉଦରପୂରଣ ଲାଗି ସେମାନଙ୍କୁ ହତ୍ୟା କରିବା ବଡ଼ ନିଷ୍ଠୁର କର୍ମ । ବୁଦ୍ଧଦେବ ମୂକ-ପ୍ରାଣୀମାନଙ୍କର କଷ୍ଟ ଦେଖି ସେମାନଙ୍କୁ ନିର୍ମମ ସ୍ୱାର୍ଥପର ମନୁଷ୍ୟ ହସ୍ତରୁ ରକ୍ଷା କରିବାପାଇଁ ପ୍ରଥମେ ଅହିଂସାଧର୍ମ ପ୍ରଚାର କରିଥିଲେ । ସେ ଲୋକମାନଙ୍କୁ ଉପଦେଶ ଦେଉଥିଲେ ଯେ, ମୂକ ପ୍ରାଣୀ ଓ ମନୁଷ୍ୟ ମଧ୍ୟରେ ଏକ ଜୀବନ-ସ୍ରୋତ ପ୍ରବାହିତ । ଆମ୍ଭେମାନେ ସମସ୍ତେ ଭାଇ ଭାଇ ପରି ଚଳିବା ବାଞ୍ଛନୀୟ । ଅନ୍ୟ ଜୀବ ଦେହରେ ଛୁରୀ ଚଳାଇଲାବେଳେ ଆମ୍ଭମାନଙ୍କର ମନେରଖିବା ଉଚିତ ଯେ, ସେହି ଛୁରୀ ଆମ ଦେହରେ ଚଳାଇଲେ ଆମକୁ ଯେପରି ଘୋର ଯନ୍ତ୍ରଣା ହୁଅନ୍ତା, ଉକ୍ତ ଜୀବକୁ ମଧ୍ୟ ସେହିପରି ହେବ ।

ଜାପାନରେ ବୁଦ୍ଧଦେବଙ୍କର ଏହି କରୁଣାମୟ ଧର୍ମ ବହୁ କାଳରୁ ପ୍ରଚଳିତ । ସେଠି ଅଧିକାଂଶ ଲୋକ ବୌଦ୍ଧ । କିନ୍ତୁ ଅନେକ ଜାପାନୀ ଅଛନ୍ତି, ଯେଉଁମାନେ ସେମାନଙ୍କ ନିଜ ଧର୍ମ ଏପର୍ଯ୍ୟନ୍ତ ଛାଡ଼ିନାହାନ୍ତି ।

ଜାପାନରେ ବୁଦ୍ଧଦେବଙ୍କର ଏହି କରୁଣାମୟ ଧର୍ମ ବହୁ କାଳରୁ ପ୍ରଚଳିତ । ସେଠି ଅଧିକାଂଶ ଲୋକ ବୌଦ୍ଧ । କିନ୍ତୁ ଅନେକ ଜାପାନୀ ଅଛନ୍ତି, ଯେଉଁମାନେ ସେମାନଙ୍କ ନିଜ ଧର୍ମ ଏପର୍ଯ୍ୟନ୍ତ ଛାଡ଼ି ନାହାନ୍ତି ।

ଜାପାନର କୌଣସି ସ୍ଥାନରେ ଜଣେ ପ୍ରସିଦ୍ଧ ଶିକାରୀ ଥିଲେ । ଜୀବହତ୍ୟା କରି କରି ତାଙ୍କର ହୃଦୟ ପଥର ପରି ନିଷ୍ଠୁର ହୋଇଯାଇଥିଲା । ସେ ପକ୍ଷୀ, ଚତୁଷ୍ପଦ ଓ ସରୀସୃପ ଯାହାକୁ ପାଆନ୍ତି ତାକୁ ନିର୍ମମଭାବରେ ମାରିପକାନ୍ତି । ମାରି ମାରି ସେ

ଏପରି ସିଦ୍ଧହସ୍ତ ହୋଇଯାଇଥିଲେ ଯେ, ରାତ୍ରିର ଅନ୍ଧକାରରେ ମଧ୍ୟ ସେ ଧନୁର୍ବାଣ ସାହାଯ୍ୟରେ ପକ୍ଷୀ ଶିକାର କରିପାରୁଥିଲେ ।

ଶିକାରୀର ଦୁଇଟି କନ୍ୟା ଥାନ୍ତି । ଗ୍ରାମର ବୌଦ୍ଧ ମନ୍ଦିରକୁ ଯାତାୟାତ କରି ଏବଂ ବୌଦ୍ଧଧର୍ମାବଲମ୍ବୀ ଅନ୍ୟ ଗ୍ରାମବାସୀଙ୍କ ସହିତ ମିଳିମିଶି ଭଗିନୀ ଦୁଇଟି ବୁଦ୍ଧଙ୍କ ବିଶ୍ୱମୈତ୍ରୀୟ ଧର୍ମପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇଥିଲେ । ଏଣେ ପିତାଙ୍କର ଦୈନନ୍ଦିନ କ୍ରୂର ହତ୍ୟାକର୍ମ ଦେଖି ସେମାନଙ୍କ ହୃଦୟ ପ୍ରତ୍ୟହ ବ୍ୟଥିତ ହେଉଥିଲା । ସେମାନେ ବାପାଙ୍କୁ ଅନେକ ଥର ବାରଣ କଲେ ମଧ୍ୟ ଜୀବହତ୍ୟାରେ ଅଭ୍ୟସ୍ତ ପିତା କୌଣସିମତେ ତହିଁରୁ ବିରତ ହେଲେ ନାହିଁ ।

ଦିନେ ଶିକାରୀଙ୍କର ଜଣେ ବନ୍ଧୁ ଆସି ଖବର ଦେଲେ ଯେ, ତାଙ୍କ ପୋଖରୀ ନିକଟକୁ ଦୁଇଟି ପକ୍ଷୀ ବରାବର ରାତିରେ ଆସୁଛନ୍ତି, ଯେତେ ଚେଷ୍ଟା କଲେ ମଧ୍ୟ ସେ ତାଙ୍କୁ ମାରିପାରୁନାହାନ୍ତି । ଶିକାରୀ ଏହା ଶୁଣି ସେଦିନ ରାତିରେ ନିଜେ ଧନୁର୍ବାଣ ଧରି ଜଗିବାକୁ କଥା ଦେଲେ । ଶିକାରୀଙ୍କ ଦୁଇ କନ୍ୟା ଏ କଥା ଘରଭିତରୁ ଶୁଣିବାକୁ ପାଇଲେ ।

ରାତି ଆସିଲା; ଶିକାରୀ ଧନୁର୍ବାଣ ଧରି ପୋଖରୀକୂଳରେ ଜଗିରହିଲେ । କିଛି କାଳ କଟିଲା ପରେ ପୋଖରୀ ଆରପଟରେ ଉପବନର ଅନ୍ଧାରିତ ବୃକ୍ଷାନ୍ତରାଳରୁ ପତ୍ରର ଖସ୍‌ଖସ୍ ଶବ୍ଦ ଶୁଣାଗଲା । ଶିକାରୀଙ୍କ ବନ୍ଧୁ କହିଉଠିଲେ, ''ଏଇ ଆସିଲେ; ଜଲଦି ଲାଖ କର । ପକ୍ଷୀ ଦି'ଟା ଭାରି ତରକା । ଟିକିଏ ଶବ୍ଦ ହେଲେ ଉଡ଼ିପଳାଇବେ, ଶୀଘ୍ର ମାର ।''

ଶିକାରୀ ପୋଖରୀ ଆରପଟରେ ଅସ୍ପଷ୍ଟ ଦିଶୁଥିବା ଦୁଇଟି ଛାୟାକୁ ଲକ୍ଷ୍ୟ କରି ବାଣ ଛାଡ଼ିଲେ । ଆର କୂଳରୁ ଚିତ୍କାର ଶୁଣିପାରି, ବାଣ ବାଜିଛି ଜାଣି, ମହାନନ୍ଦରେ ଶିକାରୀ ଓ ତାଙ୍କ ବନ୍ଧୁ ମଶାଲ ଧରି ମୃତପକ୍ଷୀଯୁଗଳକୁ ଗୋଟାଇ ଆଣିବାକୁ ବାହାରିଲେ । କିନ୍ତୁ ଯେତେବେଳେ ମଶାଲ ଟେକି ସେମାନେ ଶବ ମୁଖକୁ ଅନାଇଲେ, ତାଙ୍କ ହାତରୁ ଧନୁଶର ଖସିପଡ଼ିଲା ଏବଂ ମୁହଁ ଫିକାପଡ଼ିଗଲା । କାରଣ ପକ୍ଷୀ ଦୁଇଟି ବୋଲି ଯାହାକୁ ସେ ନିଜ ବାଣରେ ମାରିଲେ, ସେ ଦୁହେଁ ତାଙ୍କର ରମ୍ୟକାନ୍ତି କୋମଳପ୍ରାଣା ଦୁଇ କନ୍ୟା । ଏତେ ଦିନକେ ଶିକାରୀଙ୍କ ନିର୍ମମ ହୃଦୟରେ କୋମଳଭାବର ସଞ୍ଚାର ହେଲା । ବାଳିକା ଦୁଇଟିର ଆତ୍ମସମର୍ପଣ ଫଳରେ ତାଙ୍କର ନବଜୀବନ ଲାଭ ହେଲା । ସେହି ଦିନଠାରୁ ସେ ପ୍ରାଣୀହତ୍ୟାରୂପ ମହାପାପ ବର୍ଜନ କଲେ ।

# ଅପଦେବତାର ପରାଭବ

ପ୍ରଶାନ୍ତ ମହାସାଗରରେ ଅବସ୍ଥିତ ହାଓୟାର ଦ୍ୱୀପମାଳା ପରି ସୁନ୍ଦର ଭୂମି ପୃଥିବୀରେ ବିରଳ । ସାଣ୍ଡବିଚ୍ ଦ୍ୱୀପପୁଞ୍ଜ ଏହି ଦ୍ୱୀପମାଳାର ଅନ୍ତର୍ଗତ । ଏହି ଦ୍ୱୀପପୁଞ୍ଜ ଆଡ଼କୁ ଗତି କଲେ ଦର୍ଶକର ଚକ୍ଷୁକୁ ଦୁଇଟି ଅଭ୍ରଂକଷ ଗିରିଶୃଙ୍ଗ ବହୁଦୂରରୁ ଆକର୍ଷଣ କରେ । ଗୋଟିଏ ଚିରତୁଷାର-ପରିଚ୍ଛଦରେ ଶୁକ୍ଳବର୍ଣ୍ଣ, ଅନ୍ୟଟି ଲାଭା ଓ ଅଙ୍ଗାରର ଆବରଣଯୋଗୁ କୃଷ୍ଣବର୍ଣ୍ଣ ଦେଖାଯାଏ । ଶୁକ୍ଳଶୃଙ୍ଗଟି ଗୋଟିଏ ମୃତ ଆଗ୍ନେୟଗିରି; କୃଷ୍ଣଟି ପୃଥିବୀର ସବୁଠାରୁ ଜାଗ୍ରତ ଓ ଭୟଙ୍କର ଆଗ୍ନେୟଗିରି, ଏହାର ନାମ କିଲାଉୟା । ଏହାର ଉଚ୍ଚତା ପ୍ରାୟ ଅଢ଼େଇ ମାଇଲ ହେଲେହେଁ ଆଭ୍ୟନ୍ତରୀଣ ଅଗ୍ନିର ଉତ୍ତାପଯୋଗୁ ଏଥିରେ ତୁଷାର ପଡ଼ିପାରେ ନାହିଁ । ଏହାର ମୁଖଗହ୍ୱର ପ୍ରାୟ ନଅମାଇଲ୍‌ବ୍ୟାପୀ ତରଳାଗ୍ନିର ଗୋଟିଏ ହ୍ରଦ । ଏହି ଅଗ୍ନିହ୍ରଦର ଊର୍ଦ୍ଧ୍ୱରେ ସବୁବେଳେ ଉଦ୍‌ଗତ ବାଷ୍ପରାଶି ଲମ୍ୱମାନ ରହିଥାଏ । ଦିବାଭାଗରେ ଏହା ଶୁକ୍ଳମେଘ ପରି; କିନ୍ତୁ ରାତ୍ରିରେ ବହୁ-ବିସ୍ତୃତ ବନାଗ୍ନି ପରି ଦେଖାଯାଏ । ସାଧାରଣ ସମୟରେ ତ ଏହି ଦୃଶ୍ୟ ଭୀତିପଦ, କିଲାଉୟା ଯେତେବେଳେ କର୍ମଶୀଳ ହୋଇଉଠେ, ସେ ଦୃଶ୍ୟର ଭୟଙ୍କରତା ଅବର୍ଣ୍ଣନୀୟ । ଘୋର ଉତ୍ତାପରେ ରକ୍ତବର୍ଣ୍ଣ, ଫୁଟନ୍ତା ଲାଭା-ସ୍ରୋତ ସ୍ରୋତସ୍ୱିନୀ ନଦୀ ଆକାରରେ ପର୍ବତରେ ପାର୍ଶ୍ୱଦେଶକୁ ଆଚ୍ଛାଦନ କରି ବୋହିଯାନ୍ତି ଏବଂ ତଳଭୂମିରେ ସୃଷ୍ଟିକୁ ପ୍ରଳୟରେ ପରିଣତ କରନ୍ତି ।

ହାଓୟାନ୍‌ମାନେ ଆଦିମ ଅବସ୍ଥାରେ ଥିଲାବେଳେ ଏପରି ରୋମାଞ୍ଚକର ଓ ଭୟଙ୍କର ପ୍ରାକୃତିକ ଲୀଳାକୁ ଏକ ଅପଦେବତାର କାଣ୍ଡ ବୋଲି ଯେ ସ୍ଥିରକରିଥିଲେ, ସେଥିରେ ଆଶ୍ଚର୍ଯ୍ୟର କଥା ନାହିଁ । ସେମାନେ ଏହି ଅପଦେବତାକୁ 'ପେଲେ' ନାମରେ ନାମିତ କରିଥିଲେ ଏବଂ କଳ୍ପନାରେ ତାହାକୁ ସ୍ତ୍ରୀତ୍ୱ ପ୍ରଦାନକରି କିଲାଉୟାର ଅଭ୍ୟନ୍ତରସ୍ଥ ଅଗ୍ନିହ୍ରଦକୁ ତାହାର ସ୍ନାନକୁଣ୍ଡ ଓ ଊର୍ଦ୍ଧ୍ୱସ୍ଥ ଜ୍ୱଳନ୍ତ ବାଷ୍ପପଟଳକୁ ତାହାର ଉଡ୍‌ଡୀୟମାନ ଉନ୍ମୁକ୍ତ କୁନ୍ତଳରାଶି ବୋଲି ଭାବୁଥିଲେ । ସେମାନଙ୍କର ଏକ ଅନ୍ଧବିଶ୍ୱାସ ଥିଲା ଯେ, ଦେବୀର ଅନେକପ୍ରକାର ଇଚ୍ଛା ଅଛି ଏବଂ ସେଗୁଡ଼ିକ ପାଳନ ନ କଲେ ସମଗ୍ର ଦ୍ୱୀପକୁ ଦେବୀ ଜାଳିପକାଇବ । ସେହି ଇଚ୍ଛାମାନଙ୍କ ମଧ୍ୟରୁ ଦୁଇଟି ହେଉଛି ଯେ, କୌଣସି ସ୍ତ୍ରୀଲୋକ ପର୍ବତର ଶିଖରଦେଶକୁ ସ୍ପର୍ଶ କରିବ ନାହିଁ ଏବଂ ପର୍ବତର ପାର୍ଶ୍ୱଦେଶମାନଙ୍କରେ ଫଳୁଥିବା ଗୋଟିଏ ପ୍ରକାର କୋଳିକୁ ତୋଳିବ ନାହିଁ । ହାଓୟାନ୍‌ମାନେ ଏହି କାଳ୍ପନିକ ଅପଦେବତାକୁ ଏପରି ବିଶ୍ୱାସ କରୁଥିଲେ ଯେ, ଭୟରେ କେହି କେବେ ଦେବୀର ଏହି କାଳ୍ପନିକ ଇଚ୍ଛା ବ୍ୟତିକ୍ରମ କରିବାର ଜଣାନଥିଲା ।

କାଳକ୍ରମେ ହାଓୟାଇ ଦ୍ୱୀପମାନଙ୍କରେ ଇଂଲଣ୍ଡରୁ ଖ୍ରୀଷ୍ଟାନ୍ ମିସନାରୀ ଆସି ଉପଗତ

ହେଲେ ଏବଂ ହାଓୟାନ୍‌ମାନଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ କଲେ । ସେମାନଙ୍କର ଆଦିମ ବହୁ ଦେବ-ଦେବୀଙ୍କଠାରୁ ବିଶ୍ୱାସ ଯାଇ ତାହା ସମଗ୍ର ବିଶ୍ୱର ଏକମାତ୍ର ସ୍ରଷ୍ଟା ଓ ଧାତା ଏକ ଈଶ୍ୱରଙ୍କ ନିକଟରେ ସମର୍ପିତ ହେଲା । ରାଜା-ରାଣୀଙ୍କଠାରୁ ଆରମ୍ଭ କରି ଦୀନତମ ପ୍ରଜା ପର୍ଯ୍ୟନ୍ତ ସମସ୍ତେ ଏହି ନବ ଧର୍ମରେ ଦୀକ୍ଷିତ ହେଲେ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ, କିଲାଉୟାର କାଳୀ ପେଲେକୁ ଉପେକ୍ଷା କରିବାର ମାନସିକ ସ୍ୱାଧୀନତା କ୍ୱଚିତ୍ ହାଓୟାନ୍‌ଠାରେ ଦେଖାଗଲା । ସେମାନଙ୍କର ବଦ୍ଧମୂଳ ବିଶ୍ୱାସ ଥିଲା ଯେ, କିଲାଉୟା ପେଲେର କ୍ରୀଡ଼ା – ଆଉ କିଛି ନାହିଁ ।

କାପିଓଲନୀ ଜଣେ ହାଓୟାନ୍ ରାଜମନ୍ତ୍ରୀଙ୍କର ସ୍ତ୍ରୀ । ତାଙ୍କର ଖ୍ରୀଷ୍ଟପ୍ରଚାରିତ ଧର୍ମରେ ଦୃଢ଼ ବିଶ୍ୱାସ । ଏହି ବୀରା ସ୍ତ୍ରୀ ତାଙ୍କ ଜାତି ଉପରେ କାଳ୍ପନିକ ପେଲେର ପ୍ରଭାବକୁ ଭାଙ୍ଗିବାପାଇଁ ସ୍ଥିରମନା ହୋଇ କିଲାଉୟାର ମୁଖଗହ୍ୱର ଶୀର୍ଷଦେଶ ସ୍ପର୍ଶ କରିବାକୁ ଏବଂ ନିଷିଦ୍ଧ କୋଳି ତୋଳିବାକୁ ପ୍ରତିଜ୍ଞା କଲେ । ଏଥିଲାଗି ଯେଉଁ ମାନସିକ ସାହସ ଦରକାର ତାହା ଅସାଧାରଣ; କାପିଓଲାନୀଙ୍କର ତାହା ଥିଲା । ସେ ଜାଣୁଥିଲେ ଯେ, ଆଦିକାଳରୁ ସମ୍ମାନିତ ଏକ ଲୋକମତ ବିରୁଦ୍ଧରେ ସେ ଯାଉଅଛନ୍ତି; ନିଷେଧାଜ୍ଞା ନ ମାନିଲେ କି ଭୀଷଣ ଫଳ ହେବ ତା' ସେ ଜାଣିଥିଲେ; ତଥାପି ସେ ପର୍ବତାରୋହଣ କରିବାପାଇଁ ବାହାରିଲେ । ଅଭ୍ରଂକଷ କିଲାଉୟା ଆରୋହଣ କରିବା କୋମଳଚରଣା ନାରୀ ପକ୍ଷରେ ଏକ ବିପୁଳ କ୍ଳେଶଦାୟକ କର୍ମ । ସେହି ପର୍ବତର ପାର୍ଶ୍ୱଦେଶସବୁ ଆଭ୍ୟନ୍ତରୀଣ ଉତ୍ତାପରେ ସବୁବେଳେ ଉତପ୍ତ; ଭିତରୁ ବେଳେ-ବେଳେ ଭୟଙ୍କର ଗର୍ଜନ ଶୁଣାଯାଏ; ରାଶୀକୃତ ଅଙ୍ଗାରରେ ଗୋଡ଼ ଖସିଯାଏ । କିନ୍ତୁ ଏ ସମସ୍ତକୁ ଖାତିର ନ କରି କାପିଓଲାନୀ ଦିନେ କିଲାଉୟା ଆରୋହଣ କରିବାକୁ ବାହାରିଲେ ।

ପେଲେର ଦଳେ ପୁରୋହିତ ଥାନ୍ତି । ସେମାନେ ଆସି କାପିଓଲାନୀଙ୍କର ପଥ ଓଗାଳିଲେ ଏବଂ ଦେବୀର ଇଚ୍ଛା ବିରୁଦ୍ଧରେ ଗଲେ ସମଗ୍ର ଦ୍ୱୀପ ଧ୍ୱଂସପ୍ରାପ୍ତ ହେବ ବୋଲି ଭୟ ଦେଖାଇଲେ । କାପିଓଲାନୀ ପାର୍ଶ୍ୱସ୍ଥ ନିଷିଦ୍ଧ ବୃକ୍ଷରୁ କୋଳି ତୋଳି ଆଣି ପାଦରେ ଦଳି ପୁରୋହିତମାନଙ୍କୁ ଉତ୍ତର ଦେଲେ, "ଦେଖ, ତୁମ ଦେଶର ନିଷିଦ୍ଧ କୋଳିକୁ ପାଦରେ ଦଳିଲିଣି ଏବଂ ପର୍ବତାଗ୍ରକୁ ଯାଇ ମୁଖଗହ୍ୱରକୁ ଦେଖିଆସିବି ।"

ଶେଷରେ କାପିଓଲାନୀ କିଲାଉୟାର ଶୀର୍ଷଦେଶରେ ପହଞ୍ଚି ତାହାର ବିରାଟ ମୁଖବିବରକୁ ଅନାଇଲେ ଏବଂ ଗିରିମୁଖର ଭିତରକୁ ଓହ୍ଲାଇ ତରଳ ଅଗ୍ନିହ୍ରଦର ଧାରପର୍ଯ୍ୟନ୍ତ ମଧ୍ୟ ଗଲେ । ସେଠାରୁ ଫେରି କିଲାଉୟାର ଶୀର୍ଷଦେଶରେ ଦଣ୍ଡାୟମାନ ହୋଇ ସେହି ପୁରୋହିତମାନଙ୍କୁ ଶୁଣାଇ କହିଲେ, "ପେଲେ ଯଦି ମତେ ବିନାଶ କରିପାରେ, ତେବେ ତାହାକୁ ବିଶ୍ୱାସ କର । କିନ୍ତୁ ତୁମ୍ଭେମାନେ ଦେଖିଲ ତ, ମୁଁ ଆଜି ତାହାର ଇଚ୍ଛାକୁ

କେବଳ ଯେ ଲଙ୍ଘନ କଲି ତାହା ନୁହେଁ, ତାହାର ନିଜ ବାସସ୍ଥାନକୁ ମଧ୍ୟ ଆକ୍ରମଣ କରି ଆସିଲି – ମୋର କି କ୍ଷତି ହୋଇଛି ? ଯେଉଁ ପରମେଶ୍ୱର ଏହି ବିରାଟ ସୃଷ୍ଟି କରିଛନ୍ତି, ସେହିହିଁ କିଲାଉୟାର ସ୍ରଷ୍ଟା । ତୁମ୍ଭେମାନେ ତାଙ୍କୁହିଁ ଭକ୍ତି କର ।''

କାପିଓଲାନୀ ତଳକୁ ଓହ୍ଲାଇ ଆସିଲେ । ପେଲେର ପୁରୋହିତଗଣ ଲଜ୍ଜା ଓ ଅପମାନରେ ମୁହଁ ଲୁଚାଇ ପଳାଇଗଲେ । ଜଣେ ବୀରା ରମଣୀର ଅସାଧାରଣ ଭକ୍ତି, ନିଷ୍ଠା ଓ ସାହସଯୋଗୁ ସମଗ୍ର ହାଓୟାନ୍ ଜାତିର ବହୁଯୁଗର ଅନ୍ଧବିଶ୍ୱାସ ଦୂରୀଭୂତ ହୋଇ ସତ୍ୟ ଓ ବିଶ୍ୱାସ ପ୍ରତିଷ୍ଠିତ ହେଲା ।

## ରବୀନ୍ଦ୍ରନାଥ ଠାକୁର

ବଙ୍ଗଦେଶରେ ଠାକୁରବଂଶ ପ୍ରସିଦ୍ଧ ଜମିଦାର । କଲିକତା ନଗରୀରେ ଏମାନଙ୍କର କୌଳିକ ପ୍ରାସାଦ ଅଛି । କିନ୍ତୁ କେବଳ ପ୍ରାସାଦ ବା ବିସ୍ତୃତ ଜମିଦାରୀ ହେତୁ ଏମାନଙ୍କର ପ୍ରସିଦ୍ଧି ଘଟିନାହିଁ । ଏହି ବଂଶ ଉପରେ ଲକ୍ଷ୍ମୀ ଓ ସରସ୍ୱତୀ ଉଭୟଙ୍କର ସମାନ ଆଶୀର୍ବାଦହିଁ ଏହାକୁ ଲୋକବିଖ୍ୟାତ କରିଅଛି ।

ଏହି ବଂଶର ଦ୍ୱାରିକାନାଥ ଠାକୁର ପ୍ରଥମେ ଇଂରେଜୀ ଶିକ୍ଷା ଲାଭକରି ଇଉରୋପ ଯାତ୍ରା କରିଥିଲେ ଓ ସେଠାରେ ଅନେକ ଦେଶ ଭ୍ରମଣ କରିଥିଲେ । ସେ ଅତ୍ୟନ୍ତ ବିଳାସୀ ଓ ମୁକ୍ତହସ୍ତ ଥିବାରୁ ଶେଷରେ ଋଣଗ୍ରସ୍ତ ହୋଇପଡ଼ିଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ର ଦେବେନ୍ଦ୍ରନାଥ ଠାକୁର ପିତୃଋଣ ପରିଶୋଧପାଇଁ ଆଇନ ଅନୁସାରେ ଦାୟୀ ନ ଥିଲେ ମଧ୍ୟ ଦାରିଦ୍ର୍ୟ ବରଣ କରି ପିତାଙ୍କର ସମସ୍ତ ଋଣ ପରିଶୋଧ କରିଦେଇଥିଲେ ଓ ଋଷିଜୀବନ ଯାପନ କରି ସମାଜରେ ମହର୍ଷି ବୋଲି ପରିଚିତ ହୋଇଥିଲେ । ଏହି ମହର୍ଷିଙ୍କର ପଞ୍ଚପାଣ୍ଡବ ପରି ପଞ୍ଚ ପୁତ୍ର ଜାତ ହୋଇଥିଲେ । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ ପ୍ରତିଭାବନ୍ତ ଓ ଦେଶବିଖ୍ୟାତ । କିନ୍ତୁ ସବୁଠାରୁ ଶ୍ରେଷ୍ଠ ପ୍ରତିଭାର ଅଧିକାରୀ ଓ ଅଧିକତମ ପ୍ରସିଦ୍ଧ ତାଙ୍କର କନିଷ୍ଠ ପୁତ୍ର ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ଠାକୁର ।

ଆଜି ରବୀନ୍ଦ୍ରନାଥ ଜଗତର ଶ୍ରେଷ୍ଠ କବି ବୋଲି ପରିଚିତ । ତାଙ୍କ କବିଯଶରେ ସମସ୍ତ ଧରଣୀ ପରିବ୍ୟାପ୍ତ ହୋଇଉଠିଛି ଏବଂ ତାଙ୍କ ଯୋଗୁ ଆମ ଦେଶ ଓ ଜାତି ଅନ୍ୟ ଦେଶ ଓ ଜାତି ନିକଟରେ ସମ୍ମାନିତ ହେଉଅଛି ।

ଆଶ୍ଚର୍ଯ୍ୟର ବିଷୟ ଯେ, ଏହି ମହାକବି ସ୍କୁଲରେ ଆଦୌ ବିଦ୍ୟାଶିକ୍ଷା କରି ନାହାନ୍ତି ଓ ବିଶ୍ୱବିଦ୍ୟାଳୟର କୌଣସି ଉପାଧି ଗ୍ରହଣ କରିନାହାନ୍ତି । ଶୈଶବରେ ଯେତେବେଳେ

ତାଙ୍କର ପିତା ତାଙ୍କୁ ବିଦ୍ୟାଳୟକୁ ପଠାନ୍ତି, ରବୀନ୍ଦ୍ରନାଥଙ୍କ କବି-ଚିତ୍ତ ବିଦ୍ୟାଳୟର ଶୁଷ୍କ ନିୟମାନୁବର୍ତ୍ତନ ବିରୁଦ୍ଧରେ ବିଦ୍ରୋହକଲା । ତାଙ୍କର ଉଦାରମନା ପିତା ପୁତ୍ରର ଏପରି ଅନିଚ୍ଛା ଜାଣିପାରି ତାଙ୍କୁ ସ୍କୁଲରୁ ଉଠାଇନେଇ ଘରେ ଅଧ୍ୟାପନାର ବନ୍ଦୋବସ୍ତ କଲେ । ରବୀନ୍ଦ୍ରନାଥ ଏହା ପରେ ଆଉ ସ୍କୁଲରେ ପଢ଼ି ନାହାନ୍ତି ଓ ତାଙ୍କ ଜୀବନର ସମସ୍ତ ଜ୍ଞାନ ନିଜ ଅଧ୍ୟୟନର ଫଳ । ତରୁଣ ବୟସରେ ରବୀନ୍ଦ୍ରନାଥ ଅଗ୍ରଜଙ୍କ ସହ ବିଲାତ ଯାତ୍ରା କରି ସେଠାରେ ଇଂରେଜୀ ଭାଷା ଅଧ୍ୟୟନ କରିଥିଲେ । ନିଜ ମାତୃଭାଷା ପରି ଇଂରେଜୀରେ ମଧ୍ୟ ତାଙ୍କର ବ୍ୟୁତ୍ପତ୍ତି ଅସାଧାରଣ ଥିଲା ।

ଅତ୍ୟନ୍ତ ବାଲ୍ୟକାଳରୁ ରବୀନ୍ଦ୍ରନାଥଙ୍କ କବିପ୍ରତିଭାର ଉନ୍ମେଷ ଘଟିଥିଲା । ମହର୍ଷିଙ୍କ ଗୃହ ସାରସ୍ୱତ ଆରାଧନାର ଉପଯୁକ୍ତ ମନ୍ଦିର ହୋଇଥିଲା । ରବୀନ୍ଦ୍ରଙ୍କ ଭ୍ରାତା ଓ ଭଗିନୀଗଣ ନିଜ ଚେଷ୍ଟାରେ ଗୋଟିଏ ସାହିତ୍ୟପତ୍ର ପରିଚାଳନା ଓ ପ୍ରକାଶ କରୁଥିଲେ । ମହର୍ଷି ନିଜେ ବ୍ରାହ୍ମଧର୍ମରେ ଦୀକ୍ଷିତ ଥିବାରୁ ଓ ବ୍ରାହ୍ମ ସମ୍ପ୍ରଦାୟର ଏକ ବିଶିଷ୍ଟ ନେତା ଥିବାରୁ ତାଙ୍କ ଗୃହ ତତ୍‌କାଳୀନ ଧର୍ମାନ୍ଦୋଳନର ମଧ୍ୟ ଏକ କେନ୍ଦ୍ର ଥିଲା । ଏକ କଥାରେ ଇଂରେଜୀ ଶିକ୍ଷାର ପ୍ରଥମ ଫଳସ୍ୱରୂପ ଏ ଦେଶରେ ଯେଉଁ ସଭ୍ୟତା ଓ ସାମାଜିକତା ଦେଖାଦେଇଥିଲା, ଦେବେନ୍ଦ୍ରନାଥଙ୍କ ଗୃହ ତାହାର ମୁକୁରସ୍ୱରୂପ ହୋଇଥିଲା । ରବୀନ୍ଦ୍ରନାଥ ଏହିପ୍ରକାର ଅନୁକୂଳ ପାରିପାର୍ଶ୍ୱିକ ଘଟନାମାନଙ୍କ ମଧ୍ୟରେ ବଢ଼ିବାର ସୁଯୋଗ ପାଇ ଅବାଧରେ ସରସ୍ୱତୀଙ୍କର ଆରାଧନା କରିପାରିଥିଲେ । ଅନେକ କ୍ଷେତ୍ରରେ ଦେଖାଯାଏ ଯେ, ବହୁ ଉଚ୍ଚକୋଟିର ପ୍ରତିଭା ଅର୍ଥ ଓ ଅନ୍ନଚିନ୍ତାରେ ମ୍ରିୟମାଣ ହୋଇପଡ଼େ । କିନ୍ତୁ ରବୀନ୍ଦ୍ରନାଥ ଲକ୍ଷ୍ମୀ ଓ ସରସ୍ୱତୀ ଉଭୟଙ୍କର ବରପୁତ୍ର ଥିଲେ । ରବୀନ୍ଦ୍ରନାଥ ସଙ୍ଗୀତ ରଚନା କରୁଥିବାର ଶୁଣିପାରି ଥରେ ତାଙ୍କର ପିତା ତାଙ୍କୁ କେତେଗୁଡ଼ିଏ ସଙ୍ଗୀତ ଗାଇବାକୁ କହିଲେ । ରବୀନ୍ଦ୍ରନାଥଙ୍କ ଗାନରେ ମହର୍ଷି ଏପରି ସନ୍ତୁଷ୍ଟ ହୋଇଥିଲେ ଯେ, ତତ୍‌କ୍ଷଣାତ୍ ତାଙ୍କୁ ପାଞ୍ଚଶତ ଟଙ୍କା ପୁରସ୍କାର ଦେଇପକାଇଲେ ।

ବୟସ ବୃଦ୍ଧି ସଙ୍ଗେ ରବୀନ୍ଦ୍ରନାଥଙ୍କ କବିଖ୍ୟାତି କ୍ରମେ ପ୍ରସାରିତ ହେଲା । ଅଠର ବର୍ଷ ବୟସ ବେଳକୁ ସେ ବଙ୍ଗଳାରେ ବିଖ୍ୟାତ କବି ହୋଇସାରିଥିଲେ ଏବଂ ବଙ୍ଗଳାର ବୃଦ୍ଧ ପ୍ରବୀଣ ସାହିତ୍ୟିକ ଓ ଜନନେତୃଗଣ ରବୀନ୍ଦ୍ରନାଥଙ୍କଦ୍ୱାରା ଯେ ବଙ୍ଗ ସାହିତ୍ୟ ସମୁନ୍ନତ ହୋଇଉଠିବ, ଏହାର ସୂଚନା ଦେଇଥିଲେ ।

ରବୀନ୍ଦ୍ରନାଥଙ୍କ କବିପ୍ରତିଭା ଅନନ୍ୟସାଧାରଣ । ସାହିତ୍ୟରେ ଏପରି କୌଣସି ବିଭାଗ ନାହିଁ, ଯାହା କି ତାଙ୍କ ପ୍ରତିଭାର ସ୍ୱର୍ଣ୍ଣ-ସ୍ପର୍ଶରେ ରଞ୍ଜିତ ହୋଇନାହିଁ । କବିତା, ଗୀତ, କାବ୍ୟ, ନାଟକ, ଉପନ୍ୟାସ, ଗଳ୍ପ, ପାଲା, ପ୍ରବନ୍ଧ, ନୀତିବାକ୍ୟ– ପ୍ରତ୍ୟେକ

ବିଭାଗରେ ସେ ହାତ ଦେଇଅଛନ୍ତି ଓ ପ୍ରତ୍ୟେକଟିରେ ଅସାଧାରଣ ପ୍ରତିଭା ପ୍ରଦର୍ଶନ କରିଅଛନ୍ତି । ତାଙ୍କ ରଚନାର ବିଶିଷ୍ଟ ଲକ୍ଷଣ ଏହି ଯେ, ତାହା ପାଠକଙ୍କୁ ଏକ ଅତୀନ୍ଦ୍ରିୟ ରାଜ୍ୟକୁ ଘେନିଯାଏ ଏବଂ ବିଶ୍ୱର ସକଳ ଦେଶର ଓ ସକଳ ଜାତିର ଲୋକଙ୍କୁ ମୁଗ୍ଧ କରେ । ବନ୍ଧୁମାନଙ୍କ ଅନୁରୋଧରେ ରବୀନ୍ଦ୍ରନାଥ ସ୍ୱୟଂ ତାଙ୍କର କେତେକ କବିତା ଇଂରେଜୀରେ ଅନୁବାଦ କରି ପ୍ରକାଶ କରନ୍ତେ ତାହା ଇଉରୋପୀୟ ସୁଧୀସମାଜରେ ଏକ ଚାଞ୍ଚଲ୍ୟ ସୃଷ୍ଟିକରିଥିଲା ଓ ଉଚ୍ଚ ପ୍ରତିଭାର ପୂଜାସ୍ୱରୂପ ୧୯୧୨ ଖ୍ରୀଷ୍ଟାବ୍ଦରେ ସେ ଗୌରବାବହ ନୋବେଲ ପୁରସ୍କାର ପ୍ରାପ୍ତ ହୋଇଥିଲେ । ନୋବେଲ ପୁରସ୍କାର ପାଇବା ପରେ ରବୀନ୍ଦ୍ରନାଥ ବିଶ୍ୱବିଖ୍ୟାତ ହୋଇଉଠିଲେ ଓ ତାଙ୍କ ରଚନାବଳି ପୃଥିବୀର ବହୁ ଭାଷାରେ ଅନୂଦିତ ହେଲା ।

ରବୀନ୍ଦ୍ରନାଥ ଯେ କେବଳ ବଡ଼ କବି ସେତିକି ନୁହେଁ, ସେ ଜଣେ ଅସାଧାରଣ ଚିନ୍ତାନାୟକ ମଧ୍ୟ । କେଉଁ ଉପାୟରେ ଦେଶର ଓ ଜାତିର ମଙ୍ଗଳ ହେବ ଏବଂ ପୃଥିବୀର ଭିନ୍ନ ଭିନ୍ନ ଜାତି-ମଧ୍ୟରେ ପ୍ରୀତି ସ୍ଥାପିତ ହେବ, ଏଥିଲାଗି ସେ ସବୁବେଳେ ଉଦ୍‌ବିଗ୍ନ । ସେହି ଉଦ୍ଦେଶ୍ୟରେ ସେ ବୋଲପୁର ନାମକ ସ୍ଥାନରେ ଶାନ୍ତିନିକେତନ ଆଶ୍ରମ ଓ ବିଶ୍ୱଭାରତୀ ନାମକ ଏକ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଯାଇଅଛନ୍ତି । ଏହି ସ୍ଥାନରେ ଆଦର୍ଶ ପ୍ରଣାଳୀରେ ଶିକ୍ଷାଦାନ ହୁଏ ଓ ପୃଥିବୀର ବହୁ ଜାତିର ଶିକ୍ଷକ, ଛାତ୍ର ଏକତ୍ର ମିଳିତ ହୋଇ ପରସ୍ପର ଭାବ ବିନିମୟ କରନ୍ତି ।

ନୋବେଲ ପୁରସ୍କାର ପାଇଲା ପରେ ରବୀନ୍ଦ୍ରନାଥ ଭିନ୍ନ ଭିନ୍ନ ଜାତି ଓ ଦେଶଦ୍ୱାରା ନିମନ୍ତ୍ରିତ ହୋଇ ସମଗ୍ର ପୃଥିବୀ ଭ୍ରମଣ କଲେ । ବିଭିନ୍ନ ଦେଶରେ ରବୀନ୍ଦ୍ରନାଥ ଯେପରି ସମ୍ବର୍ଦ୍ଧିତ ଓ ପୂଜିତ ହୋଇଛନ୍ତି, ତାହା ଜଗତର କୌଣସି କବିଙ୍କ ଭାଗ୍ୟରେ ଘଟିନାହିଁ ।

## ବିଚିତ୍ର ବିଶ୍ୱ

ସାଧାରଣତଃ ମନୁଷ୍ୟର ଚକ୍ଷୁ ତଳକୁ; ସେ କ୍ୱଚିତ୍ ଊର୍ଦ୍ଧ୍ୱସ୍ଥ ଅନନ୍ତ ଆକାଶକୁ ଚାହିଁଥାଏ । ତାହାର ଦୃଷ୍ଟିର ସୀମା ମଧ୍ୟ ବେଶି ଦୂରକୁ ଯାଇପାରେନାହିଁ; ମାତ୍ର କେତେ ଶତ ଗଜ ଆଗକୁ ସେ ସ୍ପଷ୍ଟ ଭାବରେ ଦେଖିପାରେ । ତେଣୁ ମନୁଷ୍ୟର ଅନ୍ତର୍ଦୃଷ୍ଟି ମଧ୍ୟ ବାହାରର ଦୃଷ୍ଟିପରି କ୍ଷୁଦ୍ର, ସୀମାବଦ୍ଧ । ସେଥିପାଇଁ ମନୁଷ୍ୟ ନିଜକୁ, ନିଜର ପରିବାର, ଜାତି, ନିଜର ଜମିବାଡ଼ି, ଗାଁ ବା ଦେଶଟିକୁ ସବୁଠୁ ବଡ଼ ମନେକରେ । ଭାଗବତରେ ଯାହା କୁହାଯାଇଛି, "ଯେ ପକ୍ଷୀ ଉଡ଼େ ଯେତେ ଦୂର, ସେ ଜାଣେ ତା'ର ସମାଚାର" ତାହା ନିତାନ୍ତ ସତ୍ୟ କଥା । କାରଣ ମନୁଷ୍ୟ ଯେତିକି ଦେଖିପାରେ, ସେ ଭାବେ ଯେ ସଂସାରଟା ସେତିକି ।

କିନ୍ତୁ ଗତ ତିନି ଶତ ବର୍ଷ ଭିତରେ ବିଜ୍ଞାନ ବଳରେ ମନୁଷ୍ୟ ଦୃଷ୍ଟିର ସୀମା ବହୁଦୂର ବଢ଼ିଯାଇଛି । ଦୂରବୀକ୍ଷଣ ଓ ଅଣୁବୀକ୍ଷଣ ଯନ୍ତ୍ରମାନଙ୍କ ସାହାଯ୍ୟରେ ମନୁଷ୍ୟ ବିରାଟରୁ ବିରାଟତର ଓ କ୍ଷୁଦ୍ରରୁ କ୍ଷୁଦ୍ରତର ସଂସାରମାନଙ୍କର ଯେଉଁସବୁ ସନ୍ଧାନ ପାଇଅଛି, ତାହା ପ୍ରାଣକୁ ବିସ୍ମୟରେ ଅଭିଭୂତ କରିଦିଏ ଏବଂ ନିଜର ଅହଙ୍କାରକୁ ସେ ନିଜେ ଧିକ୍‌କାର କରେ । ବିଧାତାର ଏହି ସଂସାରରେ କାଳ ଓ ସ୍ଥାନର ଅସୀମତାକୁ ଅବଧାରଣା କରିବାକୁ ଗଲେ ମନୁଷ୍ୟ ଜୀବନ ଅତି ଅକିଞ୍ଚିତ୍‌କର ବୋଧହୁଏ ।

ଆମ୍ଭେମାନେ ମନେକରୁ ଯେ, ଜୀବଜଗତର ବାସଭୂମି ଏହି ପୃଥିବୀ ଆଦ୍ୟରୁ ଏପର୍ଯ୍ୟନ୍ତ ଏହିପରି ହୋଇଅଛି । କିନ୍ତୁ ବୈଜ୍ଞାନିକମାନେ ମୃତ୍ତିକାର ସ୍ତରସବୁ ପରୀକ୍ଷା କରି ପ୍ରମାଣ କରିଅଛନ୍ତି ଯେ, ଏହି ପୃଥିବୀର ବୟସ ଅନ୍ତତଃ ପକ୍ଷରେ ୨୦୦୦କୋଟି ବର୍ଷରୁ କମ୍ ନୁହେଁ ଏବଂ ପୃଥିବୀରେ ମନୁଷ୍ୟାଗମର କାଳ ଶତ ଶତ କୋଟି ବର୍ଷବ୍ୟାପୀ । କୋଟି କୋଟି ବର୍ଷଯାଏ ପୃଥିବୀ ସୂର୍ଯ୍ୟପରି କେବଳ ଗୋଟିଏ ଅଗ୍ନିମୟ ପିଣ୍ଡ ହୋଇ ରହିଥିଲା । ଏହି ଅଗ୍ନିପିଣ୍ଡ ଶୀତଳ ହେବାରୁ ସେଥିରେ ଜୀବାଗମ ଏବଂ ପରେ ମନୁଷ୍ୟାଗମ ହେଉ ହେଉ ଆହୁରି ବହୁ କୋଟି ବର୍ଷ ବିତିଯାଇଅଛି । ମନୁଷ୍ୟ ପ୍ରଥମେ ଅନ୍ୟାନ୍ୟ ପ୍ରାଣୀଙ୍କଠାରୁ ଭିନ୍ନ ନଥିଲା । ତା'ର ମସ୍ତିଷ୍କର ବିକାଶ ହେବା ଫଳରେ ସେ ଏକ ବୁଦ୍ଧିମାନ୍ ଚିନ୍ତାଶୀଳ ଜୀବ ହେଉ ହେଉ ପୁଣି ବହୁ ଲକ୍ଷ ବର୍ଷ କଟିଗଲା ।

ବୁଦ୍ଧିମାନ୍ ମନୁଷ୍ୟ ବହୁ କାଳ ଧରି ଭାବୁଥିଲା ଯେ, ଆମର ଏହି ପୃଥିବୀ ବିଶ୍ୱର କେନ୍ଦ୍ର ଏବଂ ସମଗ୍ର ସୃଷ୍ଟି ମଧ୍ୟରେ ଏହାହିଁ ସର୍ବଶ୍ରେଷ୍ଠ ସ୍ଥାନ । ଅନେକ ଜ୍ୟୋତିଷୀ ସୂର୍ଯ୍ୟ ଓ ଅନ୍ୟାନ୍ୟ ଜ୍ୟୋତିଷ୍କ ପୃଥିବୀକୁ କେନ୍ଦ୍ର କରି ବ୍ୟୋମଦେଶରେ ଘୂରୁଥିବାର ପ୍ରମାଣ କରିଯାଇଅଛନ୍ତି । କିନ୍ତୁ ଗତ କେତେ ବର୍ଷ ଭିତରେ ଏହି ଭ୍ରାନ୍ତ ମତସବୁ ବିଦୂରିତ ହୋଇଯାଇଅଛି । ବର୍ତ୍ତମାନ ଜ୍ୟୋତିର୍ବିଦ୍‌ଗଣ ଯାହା ପ୍ରମାଣ କରୁଛନ୍ତି, ତାହା ମନୁଷ୍ୟର ଅହଙ୍କାରକୁ ଚୂର୍ଣ୍ଣ କରୁଛି, ମାତ୍ର ତାହା ନିଷ୍ଠୁର ସତ୍ୟ । ସେମାନଙ୍କ ପରୀକ୍ଷିତ ମତ ଏହି ଯେ, ଆମର ପୃଥିବୀ-ଜନନୀ ଅନ୍ୟାନ୍ୟ ଆଠଟି ଗ୍ରହ ଓ ସେମାନଙ୍କର ବହୁ ଉପଗ୍ରହସହ ନିରନ୍ତର ଶୂନ୍ୟପଥରେ ସୂର୍ଯ୍ୟ ଚାରିପାଖେ ଘୂରୁଛି । ପୃଥିବୀ ବିଶ୍ୱର ଶ୍ରେଷ୍ଠ ସ୍ଥାନ ହେବା ଦୂରେଥାଉ, ସୂର୍ଯ୍ୟର ଅନ୍ୟାନ୍ୟ ଗ୍ରହ ମଧ୍ୟରେ ଏହାର ସ୍ଥାନ ବହୁ ତଳେ । ଆହୁରି ଆଶ୍ଚର୍ଯ୍ୟର କଥା ଏହି ଯେ, ଆମ ସୂର୍ଯ୍ୟଟି ବ୍ୟୋମଦେଶରେ ଏକମାତ୍ର ସୂର୍ଯ୍ୟ ନୁହେଁ; ଏହାପରି କୋଟି କୋଟି ଗ୍ରହ-ଉପଗ୍ରହ-ବେଷ୍ଟିତ ବିରାଟ ବିରାଟ ସୂର୍ଯ୍ୟ ଅନ୍ତରୀକ୍ଷରେ ଘୂରୁଛନ୍ତି ଏବଂ ଆମ ସୂର୍ଯ୍ୟ ଓ ତାହାର ପରିବାରଟି ଅନ୍ୟାନ୍ୟ ସୂର୍ଯ୍ୟ ଓ ସେମାନଙ୍କ ପରିବାରମାନଙ୍କ ତୁଳନାରେ

ଅତି ନିକୃଷ୍ଟ ।

ସୂର୍ଯ୍ୟ ଅସ୍ତ ହେବା ପରେ ଯଦି ଚନ୍ଦ୍ର ନଥାଏ ଏବଂ ଆକାଶ ମେଘାବୃତ ନ ଥାଏ, ତେବେ ଆମ୍ଭେମାନେ ଉର୍ଦ୍ଧ୍ୱକୁ ଦୃଷ୍ଟି ଉଠାଇଲେ ଦେଖିବା ଯେ, ଚକ୍ରବାଳରୁ ଚକ୍ରବାଳଯାଏ ସମଗ୍ର ଗଗନମଣ୍ଡଳ ନକ୍ଷତ୍ରମାନଙ୍କଦ୍ୱାରା ପରିପୂର୍ଣ୍ଣ ହୋଇପଡ଼ିଛି । ସେଗୁଡ଼ିକ ଦେଖିବାକୁ ଆକୃତିରେ ଛୋଟ ଛୋଟ । ସେମାନେ ପ୍ରତି ରାତ୍ରିରେ ଏକ ସ୍ଥାନରେ ଦେଖାଯାନ୍ତି ଏବଂ ବେଳେ ବେଳେ ଜଣାଯାଏ, ଯେପରି ପୃଥିବୀର ମେଘମାଳ ସଙ୍ଗେ ସେମାନେ ଲୁଚକାଳି ଖେଳୁଛନ୍ତି । କିନ୍ତୁ ଏସବୁ ଆମ ଦୃଷ୍ଟିର ଭ୍ରମ ।

ପୃଥିବୀର ମେଘ ଏକ ମାଇଲରୁ ଉପରକୁ ଉଠେ ନାହିଁ, କିନ୍ତୁ ନକ୍ଷତ୍ରସବୁ କୋଟି କୋଟି ମାଇଲ ଦୂରରେ ଥାନ୍ତି । ଆକୃତିରେ ଛୋଟ ଦେଖାଗଲେହେଁ ସେଥିରୁ ଗୋଟିଏ ଗୋଟିଏ ଏଡ଼େ ପ୍ରକାଣ୍ଡ ଯେ, ଆମର ସୌର ପରିବାରପରି ଶତ ଶତ ସେଥିରେ ଲୁଚିଯିବେ । ଏହି ବିପୁଳତା ମନୁଷ୍ୟ-କଳ୍ପନାର ବାହାରେ । କାରଣ ତେର-ଲକ୍ଷ ବତିଶ ହଜାର ସଂଖ୍ୟକ ପୃଥିବୀ ଏକାଠି କଲେ ଗୋଟିଏ ସୂର୍ଯ୍ୟ ହେବ । ଏହି ବିରାଟ ସୂର୍ଯ୍ୟ ଓ ତାହାର ବିରାଟ ନଅଟି ଗ୍ରହ, ଗ୍ରହମାନଙ୍କର ପୁଣି ଉପଗ୍ରହସମୂହ– ଏହି ବିପୁଳ ସମଷ୍ଟିର ଶତ ଶତ ଗୋଟିଏ ନକ୍ଷତ୍ରକୁ ସମାନ ହେବେ ନାହିଁ ।

କଳ୍ପନାତୀତ ବିପୁଳତା ସତ୍ତ୍ୱେ ନକ୍ଷତ୍ରଗୁଡ଼ିକ ଯେ କ୍ଷୁଦ୍ର ଦେଖାଯାନ୍ତି, ତାହା କେବଳ ଦୂରତା ଯୋଗୁ । ସେ ଦୂରତା ଏତେ ଯେ, ଆମ ଗଣିତଶାସ୍ତ୍ରର ସଂଖ୍ୟାରେ ତାହା ପ୍ରକାଶ କରି ହେବ ନାହିଁ । ବୈଜ୍ଞାନିକମାନେ ଆଲୋକ-ବର୍ଷଦ୍ୱାରା ସେହି ଦୂରତା ନିର୍ଣ୍ଣୟ କରନ୍ତି । ଆଲୋକର ଗତି ଜଗତରେ ସବୁଠାରୁ ଦ୍ରୁତତମ । ଆଲୋକ ପ୍ରତି ସେକେଣ୍ଡରେ ଏକ ଲକ୍ଷ ଛୟାଅଶୀ ହଜାର ମାଇଲ ଗତି କରେ । ସୂର୍ଯ୍ୟର ଆଲୋକ ଆମ ପାଖକୁ ଆସିବାକୁ ଆଠ ମିନିଟ ନିଏ । କିନ୍ତୁ ଆମର ନିକଟତମ ନକ୍ଷତ୍ରର ଦୂରତା ଏତେ ବେଶି ଯେ, ଆଲୋକ ପ୍ରତି ସେକେଣ୍ଡରେ ଏକ ଲକ୍ଷ ଛୟାଅଶୀ ହଜାର ମାଇଲ ଗତି କରି ମଧ୍ୟ ତା’ ପାଖରୁ ଆଲୋକ ଆମ ପୃଥିବୀକୁ ଆସିବାକୁ ଚାରି ବର୍ଷ ତିନି ମାସ ନିଏ । କିନ୍ତୁ ଏ ତ ଅତି ନିକଟ । ଗୋଟିଏ ତାରାପୁଞ୍ଜର ଦୂରତା ୧,୦୮୬୦୦ ଆଲୋକ ବର୍ଷ । କ୍ଷୁଦ୍ର ମନୁଷ୍ୟ, ଯେ କି ଅଧମାଇଲରୁ ଅଧିକ ଦୂରକୁ ସ୍ପଷ୍ଟ ଦେଖିପାରେନାହିଁ, ସେ ଏ ଦୂରତାସବୁ କଳ୍ପନାକୁ ଆଣିବା ସମ୍ଭବ ନୁହେଁ ।

କିନ୍ତୁ ବିରାଟ ଏହି ବ୍ୟୋମମଣ୍ଡଳର ରହସ୍ୟ ଆହୁରି କଳ୍ପନାତୀତ । ଏହି ଅନନ୍ତ ବ୍ୟୋମଦେଶ ଏଡ଼େ ପ୍ରକାଣ୍ଡ ଯେ, ତାହା ମଧ୍ୟରେ କୋଟି କୋଟି ବିପୁଳ ବ୍ରହ୍ମାଣ୍ଡ ସ୍ୱଚ୍ଛନ୍ଦରେ ନିଜନିଜର ବିପୁଳ ପରିସରମଧ୍ୟରେ ବିହାର କରୁଅଛନ୍ତି । ଆହୁରି ବିସ୍ମୟର

ବ୍ୟାପାର ଏହି ଯେ, ଯଦିଚ ନକ୍ଷତ୍ରସବୁ ବରାବର ସ୍ଥିର ଥିଲାପରି ଦେଖାଯାନ୍ତି ତଥାପି ସେସମସ୍ତେ କଳ୍ପନାତୀତ କ୍ଷିପ୍ର ବେଗରେ ଅନନ୍ତ ବ୍ୟୋମଦେଶରେ ନିରନ୍ତର ଧାବମାନ । ଆମ୍ଭମାନଙ୍କର ସୂର୍ଯ୍ୟ ମଧ୍ୟ ଅନ୍ୟ ସୂର୍ଯ୍ୟମାନଙ୍କ ପରି ତା'ର ଗ୍ରହସକଳ ଧରି ମହାବେଗରେ ବ୍ୟୋମଦେଶରେ ଅନବରତ ଧାଇଁଛି । ଏହି ଅଗଣନ ବିରାଟ ସୂର୍ଯ୍ୟ-ସଂଘ ଅନନ୍ତ ବ୍ୟୋମପଥରେ ମହାବେଗରେ କୁଆଡ଼େ ଧାଇଁଛନ୍ତି ? କାହିଁକି ? ସେ ଉତ୍ତର ବୈଜ୍ଞାନିକମାନେ ଦେଇ ପାରୁନାହାନ୍ତି । ଏହି ବିରାଟ ବିଶ୍ୱର ଯିଏ ସ୍ରଷ୍ଟା, ସେହି କେବଳ ତାହାର ଉତ୍ତର ଜାଣନ୍ତି ।

ପୃଥିବୀରେ ଆମ୍ଭେମାନେ ଦେଖୁଁ, ପ୍ରତ୍ୟେକ ଜୀବ ବା ବସ୍ତୁର ଜନ୍ମ, ଜୀବନ ଓ ମରଣ ଅଛି । ବ୍ୟୋମଦେଶରେ ସୂର୍ଯ୍ୟମାନଙ୍କର ମଧ୍ୟ ଠିକ୍ ସେହିପରି ଜନ୍ମ, ଜୀବନ ଓ ମରଣ ଅଛି । ବୈଜ୍ଞାନିକମାନେ କେତୋଟି ମୃତସୂର୍ଯ୍ୟ ଦେଖିବାକୁ ପାଆନ୍ତି । ସେଗୁଡ଼ିକ ସେମାନଙ୍କର ପୂର୍ବ ଜ୍ୟୋତି ହରାଇ ବର୍ତ୍ତମାନ ଘୋର କୃଷ୍ଣବର୍ଣ୍ଣ ଦେଖାଯାନ୍ତି । ଆମ୍ଭମାନଙ୍କ ସୂର୍ଯ୍ୟ ପ୍ରତିକ୍ଷଣରେ ସେହିପରି ମୃତ୍ୟୁ ଆଡ଼କୁ ଯାଉଛି । ଏହା ମଧ୍ୟ ଦିନେ ତା'ର ଆଲୋକ ଓ ଉତ୍ତାପ ହରାଇ ମୃତପିଣ୍ଡ ହୋଇପଡ଼ିବ । କିନ୍ତୁ ତାହା ହେବାକୁ ଆହୁରି ଲକ୍ଷ ଲକ୍ଷ ବର୍ଷ ବାକୀ ଅଛି । ମୃତ୍ୟୁ ପରି ସୂର୍ଯ୍ୟମାନଙ୍କର ଜନ୍ମ ମଧ୍ୟ ହେଉଛି । ଆମ୍ଭେମାନେ ଅନ୍ଧକାରମୟ ଆକାଶରେ ଦକ୍ଷିଣ-ପଶ୍ଚିମରୁ ଉତ୍ତର-ପୂର୍ବକୁ ଆବୃତ କରିଥିବା ଦୀର୍ଘ ସୂକ୍ଷ୍ମ ମେଘଖଣ୍ଡବତ୍ ପ୍ରତୀୟମାନ ଛାୟାପଥକୁ ଦେଖିପାରିବା । ଏହି ଛାୟାପଥରେ କୋଟି କୋଟି ସୂର୍ଯ୍ୟମଣ୍ଡଳର ଲୀଳା ଚାଲିଛି । ତା'ଛଡ଼ା ନେବ୍ୟୁଲି ନାମକ ସୃଷ୍ଟିକାରକ ବାଷ୍ପ ନିରନ୍ତର ଘନୀଭୂତ ହୋଇ ନବ ନବ ଜ୍ୟୋତିଷ୍କମଣ୍ଡଳୀର ଜନନକ୍ରିୟା ଦେଖାଇ ଦେଉଛି ।

ଦୂରବୀକ୍ଷଣ ଯନ୍ତ୍ରରେ ସୂର୍ଯ୍ୟମାନଙ୍କ ରଶ୍ମିର ଭିନ୍ନ ଭିନ୍ନ ବର୍ଣ୍ଣ ଦେଖାଯାଏ । କେଉଁ ସୂର୍ଯ୍ୟର ରଶ୍ମି ପୀତ, କାହାର ନୀଳ, କାହାର ଲୋହିତ, କାହାର ବା ପାଟଳ । ଅନ୍ୟ ସୂର୍ଯ୍ୟମାନେ ଆମ ସୂର୍ଯ୍ୟପରି ନିଃସଙ୍ଗ ନୁହନ୍ତି । ଯୋଡ଼ି ଯୋଡ଼ି ହୋଇ ଅଥବା ତିନି, ଚାରି ବା ତତୋଽଧିକ ସୂର୍ଯ୍ୟ ସାଙ୍ଗ ହୋଇ ପରସ୍ପରକୁ ପ୍ରଦକ୍ଷିଣ କରି ଅନନ୍ତ ବ୍ୟୋମରେ କ୍ଷିପ୍ରବେଗରେ ଧାଇଁଥିବାର ଦେଖାଯାଆନ୍ତି ।

ଏହି ବିଚିତ୍ର ବିଶ୍ୱ ତୁଳନାରେ ଆମ୍ଭମାନଙ୍କ ପୃଥିବୀ କି ନଗଣ୍ୟ ! ପୃଥିବୀପୃଷ୍ଠରେ ଯେତେ ବାଲିକଣା ଅଛି, ହୁଏତ ବ୍ୟୋମଦେଶରେ ସେହି ସଂଖ୍ୟକ ନକ୍ଷତ୍ର ଅଛନ୍ତି ବୋଲି ଜଣେ ବୈଜ୍ଞାନିକ କହନ୍ତି । ଏହି ନକ୍ଷତ୍ରମାନଙ୍କରୁ ପ୍ରତ୍ୟେକଟି ଗୋଟିଏ ଗୋଟିଏ ଗ୍ରହୋପଗ୍ରହବେଷ୍ଟିତ ବିରାଟ ସୂର୍ଯ୍ୟ । ଏହିପରି ଅଗଣନ ସୂର୍ଯ୍ୟ ପରିବାର ମହାବ୍ୟୋମରେ ଘୂରୁଛନ୍ତି ଓ ଧାଇଁଛନ୍ତି । ଏସବୁ ମନରେ ଧାରଣା କଲେ ଏସବୁର

ସ୍ରଷ୍ଟା ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ମସ୍ତକ ସ୍ୱତଃ ନଇଁଆସେ । ''ବ୍ରହ୍ମାଣ୍ଡ ମାଳ ମାଳ ହୋଇ ତୋ' ଲୋମକୂପେ ବିରାଜଇ ।'' ଏହି ଭାଗବତ ବାଣୀ କିପରି ସତ୍ୟ ।

ବିରାଟ ସଂସାରର ତୁଳନାରେ ଆମର ଏହି ପୃଥିବୀ ଆମ ପାଦତଳର ଗୋଟିଏ କ୍ଷୁଦ୍ରାଦପିକ୍ଷୁଦ୍ର ଧୂଳିକଣା ସଙ୍ଗେ ମଧ୍ୟ ସମାନ ନୁହେଁ । କିନ୍ତୁ ସେହି ନଗଣ୍ୟ ପୃଥିବୀରେ ଆମ ପରି ନଗଣ୍ୟମାନଙ୍କର ଏପରି ଅହଙ୍କାର ଯେ, ବେଳେ ବେଳେ ଘୋର ମୂର୍ଖତାରୁ ଆମେ ମନେକରୁଁ 'ଆମଠୁଁ ବଳି ଆଉ କେହି ନାହିଁ ।''

## ଅଣୁସୃଷ୍ଟି

ଜଗତଟା କେଉଁଥିରେ ତିଆରି ?

ପ୍ରଶ୍ନର ଉତ୍ତର କ'ଣ ? ଚୌକି ବେଞ୍ଚ କେଉଁଥିରେ ତିଆରି ପଚାରିଲେ ଆମେ ଉତ୍ତର ଦେବା, ସେଗୁଡ଼ିକ କାଠରେ ତିଆରି । ଦା, କୋଡ଼ି, ବନ୍ଧୁକ– ଏଗୁଡ଼ିକ ଲୁହାରେ ତିଆରି । କିନ୍ତୁ କାଠ ବା ଲୁହା କେଉଁଥିରେ ତିଆରି ? ସୁନା, ରୂପା, ଗଛ, ମାଛ, ମଣିଷ, କୀଟ, ପତଙ୍ଗାଦି ଜଗତର ଯାବତୀୟ ଜଡ଼ ବା ଜୀବନ୍ତ ବସ୍ତୁ କି ପଦାର୍ଥରେ ତିଆରି ?

ବୈଜ୍ଞାନିକମାନେ ବହୁ ପରୀକ୍ଷା ପରେ ସ୍ଥିର କରିଛନ୍ତି ଯେ, ଜଗତର ଯାବତୀୟ ବସ୍ତୁ ଅଣୁ-ସଂଘଟିତ; ଅର୍ଥାତ୍ ଆମ୍ଭେମାନେ ଜଡ଼ ବା ଚେତନ ଯାହା କିଛି ଦେଖୁଁ, ସେଗୁଡ଼ିକର ଶରୀର କୋଟି କୋଟି ଅଣୁର ସମାହାରରେ ଗଠିତ । ଏହି ଅଣୁଗୁଡ଼ିକ ଏତେ କ୍ଷୁଦ୍ର ଯେ, ତାହା ଆମ୍ଭେମାନେ ଚର୍ମଚକ୍ଷୁରେ ଦେଖିପାରିବା ନାହିଁ । ଜଣେ ବୈଜ୍ଞାନିକ କହିଛନ୍ତି ଯେ, ଟିପେ ହେବ ଅଣୁସମଷ୍ଟିକୁ ଗଣି ଶେଷ କରିବାକୁ, ପୃଥିବୀର ଆବାଳବୃଦ୍ଧଜନତା ପ୍ରତ୍ୟହ ବାର ଘଣ୍ଟା କରି ଗଣି ବସିଲେ, ଶହେ ବର୍ଷ ଲାଗିବ । ତେଣୁ ଗୋଟିଏ ପୂର୍ଣ୍ଣବୟସ୍କ ମନୁଷ୍ୟ ଶରୀର ବା ସମୃଦ୍ଧ ବଟବୃକ୍ଷ ବା ଗୋଟିଏ ତିମି ଦେହରେ କେତେ କୋଟି ଅଣୁ ଥିବ, ତାହା ବେଶ୍ କଳ୍ପନା କରାଯାଇପାରେ !

ବହୁ ବର୍ଷ ପର୍ଯ୍ୟନ୍ତ ବୈଜ୍ଞାନିକମାନେ ଭାବିଥିଲେ ଯେ, ଅଣୁ ହେଉଛି ଜଗତର ଅବିଭାଜ୍ୟ ବସ୍ତୁ-କଣା । ଅର୍ଥାତ୍ କାଠ, ପଥର ବା ଲୌହଖଣ୍ଡକୁ ବିଭାଗ କରି କରି ବୈଜ୍ଞାନିକମାନେ ଶେଷରେ ଏପରି ଏକ ବସ୍ତୁ-କଣିକା ପାଇଲେ ଯାହାକୁ ଆଉ ବିଭାଗ କରି ହେଲା ନାହିଁ । ସେହି ଅବିଭାଜ୍ୟ ବସ୍ତୁକଣିକା ହେଉଛି ଅଣୁ ବା ଏଟମ୍ । ପକ୍କା ଘର ଯେପରି ଇଟାରେ ତିଆରି, ଆମ ଦେହ, ଗଛ, ମାଟି, ପଥର, ଲୌହାଦି ସକଳ ବସ୍ତୁ ସେହିପରି ଅଣୁମାନଙ୍କ ସମାବେଶରେ ତିଆରି ।

ଅଳ୍ପ କେତେ ବର୍ଷ ହେଲା ବୈଜ୍ଞାନିକମାନେ ଆବିଷ୍କାର କରିଛନ୍ତି ଯେ, ଅଣୁ

ସୃଷ୍ଟିର ଏକକ ହେଲେହେଁ ତାହା ବିଭାଜ୍ୟ; ଅର୍ଥାତ୍ ବୃହତ୍ ବସ୍ତୁମାନଙ୍କୁ ଯେପରି ଫିଟେଇ ଅଲଗା ଅଲଗା କରାଯାଇପାରେ, ଅଣୁକୁ ମଧ୍ୟ ସେହିପରି କରାଯାଇପାରେ । କିନ୍ତୁ ପ୍ରଭେଦ ଏତିକି ଯେ, ଅଣୁବିଭାଗଗୁଡ଼ିକ ଅଣୁର ଅପରିହାର୍ଯ୍ୟ ଅବୟବ । ସେଗୁଡ଼ିକର ସ୍ୱତନ୍ତ୍ର ସତ୍ତା ନାହିଁ, ଯେପରିକି ମନୁଷ୍ୟ-ଦେହର ଇନ୍ଦ୍ରିୟଗୁଡ଼ିକର ସ୍ୱତନ୍ତ୍ର ସତ୍ତା ନାହିଁ ।

କିନ୍ତୁ ଅଣୁକୁ ଭାଙ୍ଗିଲେ କ'ଣ ମିଳେ ? ବୈଜ୍ଞାନିକମାନେ ଦେଖୁଛନ୍ତି ଯେ, ପ୍ରତ୍ୟେକ ଅଣୁ କେତେଗୁଡ଼ିଏ ବିଦ୍ୟୁତ୍‌କଣାର ସମଷ୍ଟି । ଏହି ବିଦ୍ୟୁତ୍‌କଣାଗୁଡ଼ିକ ଗୁଣାନୁଯାୟୀ ଇଲେକ୍‌ଟ୍ରନ୍ ଓ ପ୍ରୋଟନ୍ ନାମକ ଦୁଇ ଭାଗରେ ବିଭକ୍ତ । ପ୍ରୋଟନ୍ ସ୍ଥିର ବିଦ୍ୟୁତ୍‌କଣା, ଇଲେକ୍‌ଟ୍ରନ୍ ଚିରଚଞ୍ଚଳ; ପ୍ରୋଟନ୍‌କୁ ବେଷ୍ଟନ କରି ଏଗୁଡ଼ିକ ମହାବେଗରେ ଘୂରୁଥାନ୍ତି । ବିରାଟ ସୌର ଜଗତରେ ସୂର୍ଯ୍ୟକୁ କେନ୍ଦ୍ର କରି ଗ୍ରହ-ଉପଗ୍ରହ ଯେପରି କୋଟି କୋଟି ଯୁଗ ଧରି ଅନନ୍ତ ବ୍ୟୋମରେ ଘୂରି ବୁଲୁଛନ୍ତି, ଗୋଟିଏ କ୍ଷୁଦ୍ର ଅଣୁରେ ସୌର ଜଗତର ସେହି ଲୀଳା ପୁନରଭିନୀତ ହେଉଛି । ବିଧାତା ଦେଖାଇ ଦେଉଛନ୍ତି ଯେ, ସୂର୍ଯ୍ୟ ଓ ଅଣୁ ଯେପରି ଏକ ନିୟମରେ ବନ୍ଧା; କାରଣ ଏକ ପରମେଶ୍ୱର ଦୁହିଁଙ୍କର କର୍ତ୍ତା ।

ଆମ୍ଭେମାନେ ଜଗତର ଯେତେ ବିଭିନ୍ନ ବସ୍ତୁ ଦେଖୁଁ, ସେ ସମସ୍ତରେ ବିଭିନ୍ନ ପ୍ରକାରର ଅଣୁ ଅଛି । ଲୌହର ଅଣୁ ସ୍ୱର୍ଣ୍ଣ-ଅଣୁଠାରୁ ପୃଥକ୍ । ସ୍ୱର୍ଣ୍ଣ-ଅଣୁ ମାନବ ଦେହର ଅଣୁଠାରୁ ଭିନ୍ନ । ଏହି ଭିନ୍ନତାର ମୂଳରେ ଅଛି ଇଲେକ୍‌ଟ୍ରନ୍ । ଗୋଟିଏ ଅଣୁରେ ଇଲେକ୍‌ଟ୍ରନ୍‌ର ସଂଖ୍ୟାନୁସାରେ ତାହା ଅନ୍ୟ ଅଣୁଠାରୁ ଭିନ୍ନ ହୋଇପଡ଼େ । ପ୍ରତ୍ୟେକ ଅଣୁରେ ଗୋଟିଏ ନିର୍ଦ୍ଦିଷ୍ଟ ସଂଖ୍ୟାରେ ଇଲେକ୍‌ଟ୍ରନ୍ ଦେଖାଯାଏ । ଏହି ସଂଖ୍ୟାରେ କେବେହେଲେ ପରିବର୍ତ୍ତନ ହୁଏ ନାହିଁ । ଅର୍ଥାତ୍ ଗୋଟିଏ ସ୍ୱର୍ଣ୍ଣାଣୁରେ ଯେତୋଟି ଇଲେକ୍‌ଟ୍ରନ୍ ଅଛି, ସହସ୍ର ସହସ୍ର ସ୍ୱର୍ଣ୍ଣାଣୁରେ ବରାବର ସେତିକିଟି ଇଲେକ୍‌ଟ୍ରନ୍ ମିଳିବ । ସେହିପରି ଗୋଟିଏ ଲୌହାଣୁର ଇଲେକ୍‌ଟ୍ରନ୍ ସଂଖ୍ୟା ମଧ୍ୟ ପ୍ରକୃତିଦ୍ୱାରା ଚିରନିର୍ଦ୍ଦିଷ୍ଟ । ପ୍ରୋଟନ୍‌ର ନ୍ୟୂନାଧିକ୍ୟରେ କିଛି ଯାଏ ଆସେ ନାହିଁ । ତେଣୁ ବୁଝିବାକୁ ହେବ ଯେ, ଇଲେକ୍‌ଟ୍ରନ୍‌ହିଁ ଜଗତକୁ ବୈଚିତ୍ର୍ୟମୟ କରାଉଅଛି ।

ବର୍ତ୍ତମାନ ବୈଜ୍ଞାନିକମାନେ ଦୁଇଟି କାରଣରୁ ଅଣୁ ସଙ୍ଗେ ସଂଗ୍ରାମ ଚଳେଇଛନ୍ତି । ସେମାନେ ଅଣୁକୁ ନିଜ ଇଚ୍ଛାନୁସାରେ କାମରେ ଲଗାଇବାକୁ ଇଚ୍ଛାକରନ୍ତି । କାରଣ ସେମାନେ ଭାବୁଛନ୍ତି, ଅଣୁଦ୍ୱାରା ଏପରି ଅଦ୍ଭୁତ କର୍ମମାନ ସମ୍ପାଦିତ ହୋଇପାରିବ, ଯାହା ଜଗତ୍ ଏପର୍ଯ୍ୟନ୍ତ ଦେଖି ନାହିଁ ବା ଶୁଣି ନାହିଁ ।

ବିଦ୍ୟୁତ୍‌ପ୍ରବାହ ଇଲେକ୍‌ଟ୍ରନ୍ ଓ ପ୍ରୋଟନ୍‌କୁ ଏକାଠି ଯୋଡ଼ି ରହିଛି । ବୈଜ୍ଞାନିକମାନେ ଅଣୁକୁ ଫୁଟେଇ ଏହି ବିଦ୍ୟୁତ୍-ପ୍ରବାହକୁ କାମରେ ଲଗାଇବାପାଇଁ ଚେଷ୍ଟା କରୁଛନ୍ତି – ଜଣେ ଦୁଇ ଜଣ କୃତକାର୍ଯ୍ୟ ହେଲେଣି । କିନ୍ତୁ ଗୋଟିଏ ଅଣୁକୁ

ଫଟେଇବାରେ ଯେତେ ଶକ୍ତି ଖର୍ଚ୍ଚ ହୋଇଛି, ସେଥିରୁ ଏପର୍ଯ୍ୟନ୍ତ ସେତେ ଶକ୍ତି ମିଳୁ ନାହିଁ । ତଥାପି ଏ ଦିଗରେ ବୈଜ୍ଞାନିକମାନଙ୍କ ଆଶା ସଫଳ ହୋଇ ଉକ୍ତ ଶକ୍ତି ଆଣବିକ ବୋମାରେ ବ୍ୟବହୃତ ହୋଇସାରିଲାଣି ।

ଇଲେକ୍‌ଟ୍ରନ୍‌କୁ ଜବତ କରିବା ବୈଜ୍ଞାନିକମାନଙ୍କର ଆଉ ଏକ ସ୍ୱପ୍ନ । ପ୍ରତ୍ୟେକ ଅଣୁର ଇଲେକ୍‌ଟ୍ରନ୍ ସଂଖ୍ୟା ପ୍ରକୃତି-ନିର୍ଦ୍ଦିଷ୍ଟ । ଯଦି ସେଗୁଡ଼ିକୁ ଭାଙ୍ଗି ନିଜ ଇଚ୍ଛା ଅନୁସାରେ ମିଶା-ଫେଡ଼ା କରାଯାଇପାରନ୍ତା, ତେବେ ସୀସାର ପ୍ରୋଟନ୍ ସଙ୍ଗେ ନିର୍ଦ୍ଦିଷ୍ଟ ସଂଖ୍ୟକ ଇଲେକ୍‌ଟ୍ରନ୍ ମିଶାଇ ପାରିଲେ ସୀସାଣୁ ସ୍ୱର୍ଣ୍ଣାଣୁରେ ପରିଣତ ହୁଅନ୍ତା ଏବଂ ଜଗତର ସୀସା ସ୍ୱର୍ଣ୍ଣ ପାଲଟି-ଯାଆନ୍ତା ! ଏ ଦିଗରେ କୌଣସି କୌଣସି ବୈଜ୍ଞାନିକ କିଞ୍ଚିତ୍ କୃତକାର୍ଯ୍ୟ ହୋଇଛନ୍ତି । ବୈଜ୍ଞାନିକମାନେ ଦିନେ ହୁଏତ ସେମାନଙ୍କ ଇଚ୍ଛାନୁଯାୟୀ ଅଣୁକୁ ବ୍ୟବହାର କରିପାରିବେ– କାରଣ ଜ୍ଞାନହିଁ ଜଗତର ଶ୍ରେଷ୍ଠ ଶକ୍ତି ।

## ଗୈରିକ ପତାକା

ଆଜିକି ଚାରିଶହ ବର୍ଷ ତଳେ ଭାରତବର୍ଷର ପଶ୍ଚିମ ପ୍ରାନ୍ତରେ ମରହଟ୍ଟା ଜାତି ଅତ୍ୟନ୍ତ ଶକ୍ତିଶାଳୀ ଓ ଯୁଦ୍ଧନିପୁଣ ହୋଇ ଏକ ବିରାଟ ସାମ୍ରାଜ୍ୟ ସ୍ଥାପନ କରିପାରିଥିଲା । ବୀର ପୁରୁଷ ଶିବାଜୀ ସୁପ୍ତ ମରହଟ୍ଟା ଜାତିକୁ ଜାଗ୍ରତ୍ କରାଇଥିଲେ । ସେ ନିଜର ବୁଦ୍ଧି ଓ ସାମରିକ କୌଶଳ ଯୋଗୁ ଗୋଟିଏ ଅଜ୍ଞାତ ଜାତିକୁ ବିରାଟ ସାମ୍ରାଜ୍ୟର ଅଧିକାରୀ କରାଇପାରିଥିଲେ ।

ଏହି ଶିବାଜୀ ଏକପ୍ରକାର ନିରକ୍ଷର ଥିଲେ । ତାଙ୍କର କୌଣସି ପ୍ରକାର ପୁସ୍ତକସମ୍ବନ୍ଧୀୟ ବିଦ୍ୟାଚର୍ଚ୍ଚା ନ ଥିଲା । କିନ୍ତୁ ସେନାପତି, ରାଜା, ଶାସକ, ପାଳକ, ବିଚାରକ ଓ ବୀରଭାବରେ ସେ ଅସାଧାରଣ ମେଧା ଦେଖାଇପାରିଥିଲେ । ସନ୍ନ୍ୟାସୀ ରାମଦାସ ଶିବାଜୀଙ୍କର ଗୁରୁ ଥିଲେ । ବିରାଟ ସାମ୍ରାଜ୍ୟର ଅଧିକାରୀ ଶିବାଜୀ ନିଃସ୍ୱ ରାମଦାସଙ୍କ ପଦତଳେ ପ୍ରଣତ ହୋଇ ତାଙ୍କ ଆଜ୍ଞାକୁ ଶାସ୍ତ୍ରବାକ୍ୟଭାବେ ମାନୁଥିଲେ ।

ଦିନେ ଛତ୍ରପତି ଶିବାଜୀ ରାଜାସନରେ ବସି ରାଜକାର୍ଯ୍ୟ ବୁଝୁଛନ୍ତି, ଏପରି ସମୟରେ ବାତାୟନ-ପଥରେ ଦେଖିପାରିଲେ ଯେ, ଗୁରୁ ରାମଦାସ ରାଜପଥରେ ଭିକ୍ଷା କରି କରି ଆସୁଅଛନ୍ତି । ଏ ଦୃଶ୍ୟରେ ଶିବାଜୀଙ୍କ ଚିତ୍ତ ବିଚଳିତ ହୋଇପଡ଼ିଲା । ସେ ମନ୍ତ୍ରୀଙ୍କୁ ଡାକି କହିଲେ, ''ଗୁରୁଦେବ ଯେତେବେଳେ ମୋର ଦୁର୍ଗ ସମ୍ମୁଖରେ ଆସି ଭିକ୍ଷା କରିବେ, ତେତେବେଳେ ତାଙ୍କୁ ମୋର ଏହି ଲେଖାଟି ବଢ଼ାଇଦେବ ।'' ଏହା କହି ମନ୍ତ୍ରୀଙ୍କ ହାତରେ ଗୋଟିଏ ଛୋଟ ଲେଖା ଦେଲେ । ରାମଦାସ ଯେତେବେଳେ ଦୁର୍ଗ ସମ୍ମୁଖରେ ଉପସ୍ଥିତ ହେଲେ, ଭିକ୍ଷା ପରିବର୍ତ୍ତରେ ମନ୍ତ୍ରୀ ଶିବାଜୀଙ୍କ ଲେଖାଟି ପ୍ରଦାନ କଲେ । ସେ ଲେଖାଟି ଏହିପରି ଥିଲା– ''ମୋର ରାଜ୍ୟ ଓ ସମ୍ପଦ ଆପଣଙ୍କ ପଦତଳେ ଭିକ୍ଷାରୂପେ ସମର୍ପଣ କଲି ।'' ରାମଦାସ ଏହା ପଢ଼ି

ଦୁର୍ଗ ଭିତରକୁ ପ୍ରବେଶକଲେ ଏବଂ ଶିବାଜୀଙ୍କ ନିକଟରେ ଉପସ୍ଥିତ ହୋଇ ତାଙ୍କୁ ପ୍ରଶ୍ନ କଲେ, ''ଶିବାଜୀ, ମୋତେ ଯଦି ତୁମର ରାଜ୍ୟ ଦେଇଦେଲ, ତେବେ ତୁମେ ଆଉ କ'ଣ କରିବ ?'' ଶିବାଜୀ ଉତ୍ତର କଲେ, ''ମୁଁ ବର୍ତ୍ତମାନ ଆପଣଙ୍କର ଦାସ । ଆପଣ ଯାହା ଆଜ୍ଞା କରିବେ ତାହାହିଁ ମୋର କର୍ତ୍ତବ୍ୟ ।'' ରାମଦାସ ଆଦେଶ କଲେ, ''ତାହାହେଲେ ରାଜାସନ ପରିତ୍ୟାଗ କରି ଏହି ଭିକ୍ଷାଝୁଲି ଧରି ମୋ'ପାଇଁ ରାଜପଥରେ ଭିକ୍ଷା କର ।''

ବାକ୍ୟବ୍ୟୟ ନ କରି ଶିବାଜୀ ଗୁରୁଙ୍କର ଭିକ୍ଷାଥଳି ଧରି ବାହାରିପଡ଼ିଲେ ଏବଂ ନିଜ ଗଡ଼ରେ ପ୍ରଜାଙ୍କ ଦ୍ୱାରେ ଦ୍ୱାରେ ଭିକ୍ଷା ମାଗିଲେ । ଗଡ଼ର ସ୍ତ୍ରୀ ପୁରୁଷମାନେ ସ୍ତବ୍ଧ ହୋଇ ଏହି ଅପୂର୍ବ ଦୃଶ୍ୟ ଦେଖୁଥାନ୍ତି । କିନ୍ତୁ ଶିବାଜୀ କାହା ଆଡ଼କୁ ନ ଅନାଇ ଗୁରୁଙ୍କ ପଛେ ପଛେ ଚାଲି ଭିକ ମାଗୁଥାନ୍ତି । ଭିକ୍ଷା ସଂଗ୍ରହ କରୁ କରୁ କ୍ରମେ ସନ୍ଧ୍ୟା ହୋଇଆସିଲା । ଗୁରୁ ଓ ଶିଷ୍ୟ ଦୁର୍ଗର ବାହାରକୁ ଯାଇ ଗୋଟିଏ ନଦୀକୂଳରେ ରାତ୍ରଭୋଜନ ଓ ବିଶ୍ରାମର ବ୍ୟବସ୍ଥା କଲେ । ଶିବାଜୀ ଭୋଜନ ପ୍ରସ୍ତୁତ କରି ଗୁରୁଙ୍କୁ ସନ୍ତୋଷଭାବରେ ଖୁଆଇ ତାଙ୍କ ଆଦେଶାନୁସାରେ ଯାହା ବଳିଲା ତହିଁରେ କ୍ଷୁଧା ନିବୃତ୍ତ କଲେ ।

ସନ୍ନ୍ୟାସୀ ରାମଦାସ ଭୋଜନାନ୍ତେ ଶିବାଜୀଙ୍କୁ ଡ଼ାକି କହିଲେ, ''ଶିବାଜୀ, ତୁମର କର୍ତ୍ତବ୍ୟଜ୍ଞାନ, ବୁଦ୍ଧି ଓ ନିରଭିମାନତାରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଅଛି । ତୁମେହିଁ ରାଜପଦପାଇଁ ଉପଯୁକ୍ତ ବ୍ୟକ୍ତି । ତୁମେ ମୋତେ ତୁମର ସମସ୍ତ ରାଜ୍ୟ ଅର୍ପଣ କରିଦେଇଅଛ – ଏବେ ଫେରିଯାଅ ଏବଂ ମୋର ପ୍ରତିଭୂ ହୋଇ ରାଜ୍ୟ ଶାସନକର । ସବୁବେଳେ ମନେକରିବ ଯେ, ଏ ରାଜ୍ୟ ଜଣେ ସନ୍ନ୍ୟାସୀର ଏବଂ ତୁମେ ତାହାର ସାମାନ୍ୟ ପ୍ରତିନିଧି ମାତ୍ର । ମୋ' ଆଦେଶର ସ୍ମାରକସ୍ୱରୂପ ମୁଁ ତୁମକୁ ଆଜି ଏହି ମୋର ଗୈରିକ ବସ୍ତ୍ରରୁ ଖଣ୍ଡେ ଦେଲି । ଏହାକୁ ନେଇ ଏହାରି ଦ୍ୱାରା ତୁମର ଜୈତ୍ର-କେତନ ପ୍ରସ୍ତୁତ କର ।''

ଶିବାଜୀ ଗୁରୁଙ୍କ ପଦତଳେ ପଡ଼ି ଗୈରିକ ବସ୍ତ୍ର ଖଣ୍ଡି ଗ୍ରହଣକଲେ ଏବଂ ସେହି ଦିନୁଁ ତାଙ୍କ ଆଦେଶରେ ଗୈରିକ ପତାକା ମରହଟ୍ଟା ଜାତିର ନିଦର୍ଶନ ହେଲା

## ଗାନ୍ଧିଜୀ

୧୮୯୩ ଖ୍ରୀଷ୍ଟାବ୍ଦରେ ଜଣେ ତରୁଣ ଗୁଜରାଟୀ ବାରିଷ୍ଟର ପ୍ରଥମ କରି ଦକ୍ଷିଣ-ଆଫ୍ରିକା ଗଲେ । ତାଙ୍କର ବୟସ ସେତେବେଳକୁ ମୋଟେ ପଚିଶ ବର୍ଷ । ଦକ୍ଷିଣ-ଆଫ୍ରିକାରେ ବ୍ୟବସାୟ କରୁଥିବା କୌଣସି ଗୁଜରାଟୀ ମୁସଲମାନଙ୍କ କାରବାର ସମ୍ପର୍କରେ ପରାମର୍ଶ ଦେବାକୁ ଡକରା ପାଇ ଏହି ତରୁଣ ବାରିଷ୍ଟର ସେ ଦେଶର ପ୍ରିଟୋରିଆ ସହରକୁ ଯାଉଥାନ୍ତି । ଇଂଲଣ୍ଡରୁ ବର୍ଷେ ହେବ ସେ ବାରିଷ୍ଟରୀ ପାସ

କରି ଫେରିଥାନ୍ତି । ତାଙ୍କର ଚାଲିଚଳନ ସାହେବୀ କାଇଦାରେ । ତରୁଣ ବାରିଷ୍ଟର ସଂସାର ସମ୍ବନ୍ଧରେ, ବିଶେଷତଃ ଯେଉଁ ଦେଶକୁ ଯାଉଥିଲେ, ସେ ଦେଶ ସମ୍ବନ୍ଧରେ ପ୍ରାୟ ଅନଭିଜ୍ଞ ଥିଲେ କହିଲେ ଚଳେ ।

ଦକ୍ଷିଣ-ଆଫ୍ରିକା ଇଂରେଜ ସାମ୍ରାଜ୍ୟର ଅଂଶ । ପୂର୍ବେ ଏହା ଏକ ଅସଭ୍ୟ ଦେଶ ଥିଲା । ଇଂରେଜମାନେ ତାହାକୁ ଅଧିକାର କରିବା ପରେ ସେ ଦେଶରେ ହୀରା ଓ ସୁନାର ଖଣିସବୁ ଆବିଷ୍କୃତ ହେଲା ଏବଂ ଦେଖାଗଲା ଯେ, ସେ ଦେଶର ମାଟି ସବୁପ୍ରକାର କୃଷିକର୍ମ ପାଇଁ ଏକାନ୍ତ ଉପଯୋଗୀ । ଚାଷ ଓ ଖଣିଖନନ ପାଇଁ ସହସ୍ର ସହସ୍ର ଅଭିଜ୍ଞ ଓ ପରିଶ୍ରମୀ ଶ୍ରମିକ ଦରକାର । ଇଂରେଜମାନେ ଭାରତବର୍ଷୀୟ ଶ୍ରମିକମାନଙ୍କୁ ଏଥିପାଇଁ ସର୍ବୋତ୍କୃଷ୍ଟ ମନେକରି ଏ ଦେଶରୁ ଲକ୍ଷ ଲକ୍ଷ କୁଲିଙ୍କୁ ଏକପ୍ରକାର ରାଜିନାମାରେ ସ୍ୱୀକୃତ କରାଇ ନେଇଗଲେ । ଏମାନଙ୍କ ଶ୍ରମ ଓ ସ୍ୱେଦରେ ଦକ୍ଷିଣ-ଆଫ୍ରିକା ଏକ ଲାଭଜନକ ରମଣୀୟ ଉଦ୍ୟାନରେ ପରିଣତ ହେଲା ଏବଂ ଇଂରେଜ ଧନପତିମାନେ କୋଟି କୋଟି ଟଙ୍କା ଲାଭ କଲେ । କିନ୍ତୁ ସେମାନେ ନିରକ୍ଷର ଦରିଦ୍ର ଭାରତୀୟ କୁଲିଙ୍କ ଭିତରେ ଏକ ନୂତନ ବିପଦ ଦେଖିପାରି କ୍ରମେ ଆତଙ୍କିତ ହେଲେ ।

ଭାରତୀୟମାନେ ପ୍ରଥମେ କେବଳ କୁଲି ହୋଇ ଯାଇଥିଲେ ସତ, କିନ୍ତୁ ପଛେ ପଛେ ଭରତୀୟ ବ୍ୟବସାୟୀମାନେ ଯାଇ ପହଞ୍ଚିଲେ । ପରେ ରାଜିନାମାରୁ ନିଷ୍କୃତି ପାଇ ଅନେକ କୁଲି ସେଇଠାରେ ଜମି ନେଇ ଚାଷବାସ ମଧ୍ୟ କରିବାକୁ ଲାଗିଲେ; ଦେଶକୁ ଫେରିଲେ ନାହିଁ । ଏହି ଭାରତୀୟ ଚାଷୀ ଓ ବ୍ୟବସାୟୀଗଣ ଗୋରାମାନଙ୍କ ଧନାଗମରେ ପ୍ରତିଦ୍ୱନ୍ଦ୍ୱୀସ୍ୱରୂପ ହେବାରୁ ଭାରତୀୟମାନଙ୍କ ଉପରେ ପ୍ରତ୍ୟକ୍ଷ ଓ ପରୋକ୍ଷଭାବରେ ନାନା ଅତ୍ୟାଚାର ଆରମ୍ଭହେଲା, ଯେପରିକି ସେମାନେ ସେ ଦେଶ ଛାଡ଼ି ପଳାଇଆସିବେ । ଆଜି ଭାରତବର୍ଷ ସ୍ୱାଧୀନ, କିନ୍ତୁ ସେତେବେଳେ ନିଜ ଦେଶରେ ଭାରତୀୟମାନେ ଇଂରେଜ ରାଜାର ବଶୀଭୂତ ପ୍ରଜା-ମାତ୍ର ଏବଂ ନାନାଭାବରେ ଲାଞ୍ଛିତ । ନିଜ ଦେଶରେ, ନିଜ ଘରେ ଯାହାର ଏ ଅବସ୍ଥା, ବିଦେଶରେ ତା'ର ସମ୍ମାନ କାହିଁ ? ସେତେବେଳେ ଧନୀ-ଦରିଦ୍ର, ଶିକ୍ଷିତ-ମୂର୍ଖ, ପ୍ରତ୍ୟେକ ଭାରତୀୟ ଦକ୍ଷିଣ-ଆଫ୍ରିକାର ଗୋରାମାନଙ୍କ ଆଖିରେ 'କୁଲି' ମାତ୍ର ।

ଏ ସମସ୍ତ କଥା ତରୁଣ ଗୁଜରାଟୀ ବାରିଷ୍ଟର ଆଦୌ ଜାଣିନଥିଲେ; କିନ୍ତୁ ଜାଣିବାକୁ ବେଶି କାଳ ଅପେକ୍ଷା କରିବାକୁ ପଡ଼ିନଥିଲା । ଯିବା ବାଟରେ ହିଁ ତାଙ୍କୁ ଅଙ୍ଗେ ନିଭାଇ ଶିଖିବାକୁ ହେଲା ଯେ, ସାହେବୀ ପୋଷାକ, ବାରିଷ୍ଟରୀ ପାସ୍ ସତ୍ତ୍ୱେ ସେ କୁଲି-ଜାତିର ଲୋକ, କୌଣସି ଶ୍ୱେତାଙ୍ଗ ସଙ୍ଗେ ସମାନ ହେବାର ଆସ୍ପର୍ଦ୍ଧା ସେ ରଖି ନ ପାରନ୍ତି ।

ପ୍ରିଟୋରିଆ ଯିବାକୁ ହେଲେ ସେକାଳରେ ଜର୍ଜଟାଉନ୍‌ରୁ ଜୋହାନ୍‌ସ୍‌ବର୍ଗ ପର୍ଯ୍ୟନ୍ତ ଘୋଡ଼ାଗାଡ଼ିରେ ଯିବାକୁ ହେଉଥିଲା । ପୂର୍ବକଥିତ ତରୁଣ ବାରିଷ୍ଟର ଆଗରୁ ଗୋଟିଏ

ଟିକେଟ କିଣି ରଖିଥିଲେ । ସଙ୍ଗରେ ଥିବା ଅନ୍ୟମାନେ ସମସ୍ତେ ଗୋରାଯାତ୍ରୀ । ଟିକେଟ ଥିବା ସତ୍ତ୍ୱେ ଭାରତୀୟ ବାରିଷ୍ଟରଙ୍କୁ ବାହାରେ ଗାଡ଼ୁଆନ ପାଖେ ବସିବାକୁ କହି, ଶାକଟିକ, ଅନ୍ୟ ସମସ୍ତଙ୍କୁ ଭିତରେ ବସିବାର ବନ୍ଦୋବସ୍ତ କରିଦେଲା । ଶୀତକାଳ । ପ୍ରଚଣ୍ଡ ଶୀତ ହେଉଛି । ତଥାପି ସମ୍ଭ୍ରାନ୍ତବଂଶୀୟ ତରୁଣ ଭାରତୀୟ ବାରିଷ୍ଟର ଗାଡ଼ିଉପରେ ଗାଡ଼ୁଆନ ପାଖରେ ବିନା ଆପତ୍ତିରେ ବସିଲେ; କାରଣ, ଯେକୌଣସିମତେ ତାଙ୍କୁ ପ୍ରିଟୋରିଆରେ ପହଞ୍ଚିବାକୁ ହେବ ।

କିନ୍ତୁ ପଥ ମଧ୍ୟରେ ଗାଡ଼ି କୌଣସିଠାରେ ବନ୍ଦ ରହନ୍ତେ, ଗାଡ଼ିଭିତରେ ଥିବା ଜଣେ ଉଦ୍ଧତ ଗୋରାର ଖିଆଲ ହେଲା ଯେ, ସେ ଗାଡ଼ିଉପରେ ବସି ଫିକା ଟାଣିବ । ତହୁଁ ସେ ବାହାରକୁ ଆସି ଉକ୍ତ ତରୁଣ ବାରିଷ୍ଟରଙ୍କୁ ତାଙ୍କ ଆସନ ଛାଡ଼ି ତା'ର ପାଦତଳେ ଏକ ପଟାଉପରେ ବସିବାକୁ କହିଲା । ବାରିଷ୍ଟର କିନ୍ତୁ ଆପତ୍ତି କରି କହିଲେ, ''ମୋତେ ତ ମୋର ଟିକେଟ ସତ୍ତ୍ୱେ ଗାଡ଼ିଭିତରେ ଜାଗା ମିଳିଲା ନାହିଁ, କୌଣସିମତେ ଏ ଜାଗା ଖଣ୍ଡିକ ପାଇଛି । ମୁଁ ତୁମରିପରି ପଇସା ଦେଇ ଯାତ୍ରା କରୁଛି; ମୁଁ ଏ ଜାଗା ଛାଡ଼ିବି ନାହିଁ ।''

ଜଣେ 'କୁଲି' ଲୋକର ଏ ପ୍ରତିବାଦ ଗୋରାଲୋକକୁ କ୍ରୋଧୋନ୍ମତ୍ତ କରି-ପକାଇଲା । ସେ ଅଶ୍ଳୀଳ ଭାଷାରେ ଗାଳି ଆରମ୍ଭ କରି ଦୁର୍ବଳ ନିରପରାଧ ତରୁଣ ବାରିଷ୍ଟରଙ୍କ ଉପରେ ବିଧା, ଚାପୁଡ଼ା ଆଦି ବୃଷ୍ଟି କରିଦେଲା । ଦୁର୍ବଳ ବାରିଷ୍ଟର ପାଖରେ ଥିବା ଏକ ପିତଳ ବାଡ଼କୁ ଭିଡ଼ିଧରି ନୀରବରେ ସମସ୍ତ ନିଷ୍ଠୁର ମାଡ଼ ସହ୍ୟ-କରି ନିଜକୁ ସେହି ଆସନରେ କୌଣସିମତେ ରକ୍ଷା କରିଥାନ୍ତି । ଦୁର୍ଦ୍ଦାନ୍ତ ଗୋରା ଲୋକଟା ବାରିଷ୍ଟରଙ୍କର କୋମଳ ଅଙ୍ଗୁଳିଗୁଡ଼ିକୁ ବାରମ୍ବାର ଆଘାତ କରିବାକୁ ଲାଗିଲା । ବାରିଷ୍ଟରେ କିନ୍ତୁ ଦୃଢ଼ପ୍ରତିଜ୍ଞ – ତାଙ୍କର ହାତ ଛିଣ୍ଡିଯିବ ପଛେ ସେ ନିଜର ଆସନ ଛାଡ଼ିବେ ନାହିଁ, ଏଇ ତାଙ୍କର ପଣ । ନିରପରାଧ ଲୋକ ଉପରେ ଏପରି ଅମାନୁଷିକ ଅତ୍ୟାଚାର ଦେଖି ଗାଡ଼ିରେ ବସିଥିବା ଅନ୍ୟ ଗୋରାମାନଙ୍କର ମଧ୍ୟ ହୃଦୟ ତରଳିଲା । ସେମାନେ ପ୍ରତିବାଦରେ ଚିତ୍କାର କରିଉଠିଲେ । ଜଣେ ଗାଡ଼ିଭିତରୁ ବାହାରିଆସି ଆକ୍ରମଣକାରୀ ହସ୍ତରୁ ବାରିଷ୍ଟରଙ୍କୁ ରକ୍ଷା କରିବାକୁ ଚେଷ୍ଟାକଲା । ଆକ୍ରମଣକାରୀ ଶେଷରେ ନିରସ୍ତ ହୋଇ ମାରିବା ବନ୍ଦ କଲା ସତ, କିନ୍ତୁ ଗାଡ଼ୁଆନର ଆରପାଖେ ବସି ସେ ବାଟଯାକ ପ୍ରହାରଜର୍ଜରିତ ବାରିଷ୍ଟରଙ୍କୁ ଚଦୁଥାଏ – ରହ, ତତେ ଦେଖିଦେଉଛି ବାଟରେ । ତରୁଣ ବାରିଷ୍ଟର ନୀରବରେ କେବଳ ଭଗବାନଙ୍କ ନାମ ଉଚ୍ଚାରଣ କରୁଥାନ୍ତି ।

ସେହି ଦିନଠାରୁ ସତ୍ୟ ଓ ନ୍ୟାୟପାଇଁ ସକଳପ୍ରକାର କଷ୍ଟକୁ ବରଣ କରିନେବା ଏଇ ବାରିଷ୍ଟରଙ୍କ ଜୀବନରେ ପ୍ରାତ୍ୟହିକ ଘଟନା ହୋଇପଡ଼ିଲା । ତାଙ୍କର କୋମଳା-ଙ୍ଗରେ ବର୍ବରର ମୁଷ୍ଟ୍ୟାଘାତ ଓ ଚପେଟାଘାତ ଯୀଶୁଙ୍କ ଶରୀରରେ ଶତ୍ରୁମାନଙ୍କର କଣ୍ଟାଛାଟର କଥା ସ୍ମରଣ କରାଏ ଏବଂ ଆମ୍ଭମାନଙ୍କ ଚକ୍ଷୁକୁ ଲୋତକାପ୍ଲୁତ କରାଏ ।

ଉପରିବର୍ଣ୍ଣିତ ଘଟନାଟି ଏଇ ବାରିଷ୍ଟରଙ୍କର ସମଗ୍ର ଜୀବନର ପ୍ରତୀକସ୍ୱରୂପ ।

ଏହି ତରୁଣ ଗୁଜରାଟୀ ବାରିଷ୍ଟରଙ୍କର ନାମ ମୋହନ ଦାସ କରମଚାନ୍ଦ ଗାନ୍ଧି । ସେଦିନ ସେ ଅଜ୍ଞାତ ଥିଲେ । ଓକିଲାତିରେ ନିଜ ଦେଶରେ ଆଶାଜନକ ରୋଜଗାର କରି ନ ପାରିବାରୁ ଦକ୍ଷିଣ-ଆଫ୍ରିକାରେ ବ୍ୟବସାୟର ଉନ୍ନତି ହେବାର ଆଶା କରି ସେଠାକୁ ଯାଇଥିଲେ । ତାଙ୍କର ଏ ଯାତ୍ରା ଯେପରି ବିଧି-ନିର୍ଦ୍ଦିଷ୍ଟ – କାରଣ ସେଠାରେ ମନୁଷ୍ୟର ଅମାନୁଷିକ ବ୍ୟବହାର ଦେଖି ଏଇ ତରୁଣ ଓକିଲଙ୍କର ବ୍ୟବସାୟିକ ଉନ୍ନତିର ସ୍ୱପ୍ନ କୁଆଡ଼େ ଉଭେଇଗଲା ଏବଂ ସେ ପତିତ ଓ ଦଳିତର ସେବାପାଇଁ ନିଜକୁ ଗଢ଼ିବାକୁ ଆରମ୍ଭ କଲେ । ଫଳରେ ସେ ଆଜି ମହାତ୍ମା । କେବଳ ଭାରତବର୍ଷରେ ନୁହେଁ, ପୃଥିବୀର ସକଳ ପ୍ରାନ୍ତରେ କୋଟି କୋଟି ଲୋକ ଏଇ ନାମକୁ ସସମ୍ମାନ ଉଚ୍ଚାରଣ କରନ୍ତି ଏବଂ ସବୁ ଦେଶର ଶ୍ରେଷ୍ଠ କବି, ବୈଜ୍ଞାନିକ, ନେତା ଏବଂ ନଟନଟୀ ମଧ୍ୟ ତାଙ୍କ ଜୀବନ ଓ ବଚନରେ ଦେବତ୍ୱର ଗଭୀର ସ୍ପର୍ଶ ଦେଖି ତାଙ୍କୁ ଏ ଯୁଗର ସର୍ବଶ୍ରେଷ୍ଠ ମାନବ ବୋଲି ବାରମ୍ବାର ଅଭିବାଦନ ଜଣାଉଛନ୍ତି ।

ଗାନ୍ଧିଜୀଙ୍କ ଜନ୍ମାବଧି ତାଙ୍କ ଜୀବନର ପ୍ରଧାନ ପ୍ରଧାନ ଘଟନା ଆଜି ସର୍ବଜନ-ବିଦିତ । ଜଗତର କୌଣସି ମହାପୁରୁଷଙ୍କ ଜୀବନକାଳ-ଭିତରେ ତାଙ୍କ ଜୀବନଚରିତ ଏପରି ବହୁଳଭାବରେ ପ୍ରଚାରିତ ହୋଇନାହିଁ । ତାଙ୍କ ନିଜ ଲିଖିତ ଆତ୍ମଚରିତ ପୃଥିବୀର ପ୍ରାୟ ସବୁ ଭାଷାରେ ଅନୂଦିତ ହୋଇଅଛି । ସର୍ବଜନବିଦିତ ସନ ଓ ତାରିଖଗୁଡ଼ିକର ପୁନରାବୃତ୍ତି ନ କରି କେବଳ ଗାନ୍ଧିଜୀଙ୍କ ଜୀବନର ମୂଳତତ୍ତ୍ୱ ସମ୍ବନ୍ଧରେ ଏଠାରେ କିଛି କୁହାଯାଉଅଛି ।

ଏହି ପୁସ୍ତକର ଆରମ୍ଭରେ ଗୌତମ ବୁଦ୍ଧଙ୍କ ଚରିତ ଦିଆଯାଇଅଛି । ବୁଦ୍ଧ ଜଗତର ପ୍ରଥମ ଓ ସର୍ବଶ୍ରେଷ୍ଠ ଧର୍ମପ୍ରଚାରକ । ତାଙ୍କରି ଯୋଗୁ ଭାରତର ମାଟି କୋଟି କୋଟି ବୈଦେଶିକଙ୍କ ଆଖିରେ ପବିତ୍ର ଭୂମି । ବୌଦ୍ଧଧର୍ମର ସ୍ରୋତ ସଙ୍ଗେହିଁ ଭାରତୀୟ କୃଷ୍ଟି ସମଗ୍ର ଏସିଆରେ ବିଚ୍ଛୁରିତ ହୋଇ ସହସ୍ର ସହସ୍ର ବର୍ଷ ଧରି ନାନା ଜାତିର ଅନ୍ତରାତ୍ମାକୁ ଆନନ୍ଦ ଓ ଆଲୋକ ଦାନକରୁଅଛି । ସେହି ଭାରତ-ଭୂମିରେ ଗାନ୍ଧିଜୀ ଦ୍ୱିତୀୟ ବୁଦ୍ଧରୂପେ ଅବତୀର୍ଣ୍ଣ । ଅନେକ ବିଜ୍ଞ ବୈଦେଶିକ ଗାନ୍ଧିଜୀଙ୍କୁ ଦ୍ୱିତୀୟ ବୁଦ୍ଧ ବା ଦ୍ୱିତୀୟ ଖ୍ରୀଷ୍ଟ ବୋଲି କହିଥାନ୍ତି । କାରଣ, ତାଙ୍କ ଜୀବନର ମୌଳିକ ତତ୍ତ୍ୱଗୁଡ଼ିକ ପୂର୍ବବର୍ତ୍ତୀ ମହାପୁରୁଷଦ୍ୱୟଙ୍କ ଜୀବନ-ଧାରା ସଙ୍ଗେ ଅଧିକାଂଶରେ ସମାନ ।

ଭଗବଦ୍‌ଗୀତାରେ ଏହା କଥିତ ଅଛି ଯେ, 'ଧର୍ମର ବିପର୍ଯ୍ୟୟବେଳେ ଭଗବାନ୍ ଏ ପୃଥିବୀରେ ଅବତୀର୍ଣ୍ଣ ହୋଇ ଅଧର୍ମର ନିପାତ ଓ ଧର୍ମର ସଂସ୍ଥାପନା କରିଥାନ୍ତି ।' ଏହା ସମସ୍ତେ ଗ୍ରହଣ କରନ୍ତୁ ବା ନ କରନ୍ତୁ, ଇଦାନୀନ୍ତନ ବିଶ୍ୱରେ ଏକ ନୈତିକ ଓ ଆଧ୍ୟାତ୍ମିକ ଚେତନା ଆଣିବାପାଇଁ ଗାନ୍ଧିଜୀଙ୍କ ଆବିର୍ଭାବର ଯେ ଆବଶ୍ୟକତା

ଥିଲା ଏଥିରେ ସନ୍ଦେହ ନାହିଁ । ଗତ ଏକଶତ ବର୍ଷ ଧରି ଇଉରୋପହିଁ ପୃଥିବୀରେ ସଭ୍ୟତାର ଆଦର୍ଶ ହୋଇଆସିଛି । ବିଜ୍ଞାନ ଏହି ସଭ୍ୟତାର ମେରୁଦଣ୍ଡ ଏବଂ ଏହାର ଲକ୍ଷ୍ୟ ପାର୍ଥିବ ସ୍ୱାଚ୍ଛନ୍ଦ୍ୟ । ଡାରବିନ୍ ପ୍ରଭୃତି ଇଉରୋପୀୟ ବୈଜ୍ଞାନିକମାନଙ୍କ ଆବିଷ୍କାର ଫଳରେ ଏଇ ଭ୍ରାନ୍ତ ମତ ଜଗତରେ ପ୍ରଚାର ଲାଭ କଲା ଯେ, ସୃଷ୍ଟି କେବଳ ଏକ ସଂଗ୍ରାମଭୂମି ଏବଂ ଏଠି ଯିଏ ଅନ୍ୟକୁ ମାରି ଦଳିପାରିଲା, ସେହିହିଁ ବଞ୍ଚିରହିବ । ଶ୍ୱେତାଙ୍ଗ ଧନପତିମାନେ ଧନ ବଳରେ ବୈଜ୍ଞାନିକ ଯନ୍ତ୍ରକୁ କାମରେ ଲଗାଇ, ବେକାର ସମସ୍ୟା ଓ ଶ୍ରମିକମାନଙ୍କର ଅବସ୍ଥାକୁ ଆଖି ନ ଦେଇ, କେବଳ ଧନୋପାର୍ଜନ କରିବାରେ ଲାଗିଲେ । ଇଉରୋପୀୟ ରାଷ୍ଟ୍ରସମୂହ ଧନାଗମର ସୁବିଧାପାଇଁ ଏସିଆ ଓ ଆଫ୍ରିକାର ଅ-ଶ୍ୱେତ ଜାତିମାନଙ୍କୁ ନିଜନିଜର ପୈତୃକ ସମ୍ପତ୍ତି ପରି ବ୍ୟବହାର କରିବାକୁ ଲାଗିଲେ ଏବଂ ସେଥିପାଇଁ ଗତ କୋଡ଼ିଏ ବର୍ଷ ଭିତରେ ଦୁଇଟି ମହାଯୁଦ୍ଧ ଘଟି ପୃଥିବୀକୁ ନାନା ଯନ୍ତ୍ରଣାରେ ଜର୍ଜରିତ କରିଦେଇଛି । ବିଜ୍ଞାନକୁ ଆଶ୍ରୟ କରି ପ୍ରତ୍ୟେକ ରାଷ୍ଟ୍ର ଅଧିକରୁ ଅଧିକତର ଭୀଷଣ ମାରଣାସ୍ତ୍ର ଉଦ୍‌ଭାବନ କରିବାରେ ଲାଗିପଡ଼ିଛନ୍ତି । ଆଣବିକ ବୋମାର ବିଭୀଷିକା ମାନବସ୍ମୃତିରୁ ନ ଲିଭୁଣୁ, ତାହାଠାରୁ ଅଧିକତର ପ୍ରଳୟଙ୍କର ଅସ୍ତ୍ର ନିର୍ମିତ ହେଉଥିବାର ଜନରବ ବ୍ୟାପିଲାଣି । ଏହାର ପରିଣତି କେଉଁଠି, କେହି କଳ୍ପନା ସୁଦ୍ଧା କରିପାରୁନାହାନ୍ତି । ଅନେକେ ଭାବୁଛନ୍ତି, ପୁରାଣୋକ୍ତ ପ୍ରଳୟର କାଳ ବୋଧହୁଏ ନିକଟ ହୋଇଆସିଲାଣି । ଏଣେ କୋଟି କୋଟି ଲୋକ ଖାଦ୍ୟ ଓ ବସ୍ତ୍ର ଅଭାବରେ ଅକଥନୀୟ କଷ୍ଟ ଭୋଗିଲାବେଳେ, ତେଣେ ଲୋକଙ୍କୁ ଓ ମାନବର ସଭ୍ୟତାକୁ ସହଜରେ କିପରି ଧ୍ୱଂସ କରାଯିବ ତା'ପାଇଁ କୋଟି କୋଟି ଅର୍ଥ ବ୍ୟୟ ହେଉଥିଲାବେଳେ କିଏ କହିବ ଯେ ମନୁଷ୍ୟଠି ଆଉ ବିଚାର ବୁଦ୍ଧି ଅଛି ଏବଂ ଧ୍ୱଂସ ଆସନ୍ନ ନୁହେଁ ?

ଏହି ପ୍ରକାର ଆଡ଼ମ୍ବରସାର ଇଉରୋପୀୟ ସଭ୍ୟତାର ମାୟାଚ୍ଛନ୍ନ ପୃଥିବୀରେ ଦରିଦ୍ର, ଚୀରବାସ ଗାନ୍ଧିଜୀ ମାନବଜାତିକୁ ଧ୍ୱଂସମୁଖରୁ ରକ୍ଷାକରିବାପାଇଁ ଅହିଂସାର ବାଣୀ ପ୍ରଚାର କରିଯାଇଅଛନ୍ତି । ତାଙ୍କ ମତରେ ପ୍ରେମହିଁ ସୃଷ୍ଟିର ମୂଳମନ୍ତ୍ର– ହିଂସା ବା ସଂଗ୍ରାମ ନୁହେଁ । ମାତୃଜାତିର ସ୍ନେହ ପାଇ ମନୁଷ୍ୟ ଓ ସକଳ ପ୍ରାଣୀ ବର୍ଦ୍ଧିତ । ସମାଜ ଓ ସଭ୍ୟତା ସେହି ସ୍ନେହ ଉପରେହିଁ ପ୍ରତିଷ୍ଠିତ ହୋଇପାରେ– ହିଂସା, ଅନ୍ୟାୟ ବା ବଳପ୍ରୟୋଗ ଉପରେ ନୁହେଁ । ମନୁଷ୍ୟ ପଶୁ ନୁହେଁ, ତେଣୁ ପଶୁଜୀବନର ନିୟମମାନଙ୍କଦ୍ୱାରା ମନୁଷ୍ୟସମାଜକୁ ପରିଚାଳିତ କରିବାକୁ ଯିବା ବିଡ଼ମ୍ବନା । ମନୁଷ୍ୟ-ଜୀବନର ଲକ୍ଷ୍ୟ ସ୍ୱାଚ୍ଛନ୍ଦ୍ୟ ନୁହେଁ, ସେବା । ସମସ୍ତ ମନୁଷ୍ୟ ସମାନ; ଉଚ୍ଚ ବା ନୀଚ କେହି ନୁହେଁ । କେହି କାହାକୁ ଶୋଷଣ କରି ବଞ୍ଚିବାକୁ ଚେଷ୍ଟା କରିବା ନିତାନ୍ତ ଅନ୍ୟାୟ । ପ୍ରତ୍ୟେକ ଲୋକର ପ୍ରତ୍ୟହ କିଛି ଶାରୀରିକ ପରିଶ୍ରମ କରିବା ଏକାନ୍ତ ବିଧେୟ । ଏହାଦ୍ୱାରା ସମାଜରେ ଉଚ୍ଚନୀଚର ଭାବ ଆପେ କଟିଯିବ । ଉଚ୍ଚ ଜାତି, ନୀଚ ଜାତିର କଥା ଦୂରେ ଥାଉ, ସ୍ୱାମୀର ସ୍ତ୍ରୀ ଉପରେ ବା ପିତାର ପୁତ୍ର-କନ୍ୟାପ୍ରତି

ବଳପ୍ରୟୋଗ ମଧ୍ୟ ନିନ୍ଦନୀୟ । ଯଦି ଅନ୍ୟକୁ ନିଜ ମତକୁ ଆଣିବା ଦରକାର ପଡ଼େ, ତେବେ ତାହା ସ୍ନେହ, ବିଶ୍ୱାସ, ତ୍ୟାଗ ଓ ଯୁକ୍ତି ଦେଇ କରିବାହିଁ ପ୍ରକୃଷ୍ଟ ଉପାୟ । ହିଂସାର ପ୍ରତିକ୍ରିୟା କେବଳ ହିଂସା– ତା'ର ଶେଷ କେବଳ ପରସ୍ପରର ଧ୍ୱଂସ ।

ଗାନ୍ଧିଜୀ କେବଳ ଏଇ ସତ୍ୟସବୁ ପ୍ରଚାର କରିନାହାନ୍ତି; ତାଙ୍କର ବିଶେଷତ୍ୱ ଏହି ଯେ, ସେ ଯାହା କିଛି ପ୍ରଚାର କରନ୍ତି ତାହା ତାଙ୍କ ନିଜ ଜୀବନରେ ବହୁ ଆଗରୁ ପ୍ରୟୋଗ କରି ଫଳଲାଭ କରିଥାନ୍ତି । ତ୍ୟାଗ ଓ ସେବା ଭାବରେ ପ୍ରଣୋଦିତ ହୋଇ ସେ ନିଜର ସୁଖମୟ ଜୀବନ ଓ ସମସ୍ତ ଅର୍ଜିତ ସମ୍ପତ୍ତି ବର୍ଜନ କରି, ଦରିଦ୍ର ଭାରତୀୟ କୃଷକ ପରି ଦିନ କାଟୁଥିଲେ । ନିଜର ପରିଧେୟ ବସ୍ତ୍ରପାଇଁ ପ୍ରତ୍ୟହ ସୂତା କାଟିବା ତାଙ୍କର ବହୁବର୍ଷର ଅଭ୍ୟାସ । ହିନ୍ଦୁ ସମାଜର ଅସ୍ପୃଶ୍ୟ ଜାତିମାନଙ୍କୁ ମାନବିକ ଅଧିକାର ଦେବାଲାଗି ସେ ନିଜ ଜୀବନକୁ ବାରମ୍ବାର ବିପନ୍ନ କରିଛନ୍ତି । ସ୍ୱୀୟ ପ୍ରତିଷ୍ଠିତ ଆଶ୍ରମମାନଙ୍କରେ ସାଧାରଣ ପାଇଖାନା ସଫା କରିବା ଏହି ମହାମାନବଙ୍କ ନିକଟରେ ଏକ ଆନନ୍ଦଦାୟକ କର୍ମ ଥିଲା । ଜୀବନରେ ସହସ୍ର ସହସ୍ର ରୋଗୀଙ୍କର ସେ ସେବା କରିଛନ୍ତି । ବହୁ ବର୍ଷ ତଳେ କଟକର କୁଷ୍ଠାଶ୍ରମ ପରିଦର୍ଶନ କଲାବେଳେ କୁଷ୍ଠୀମାନେ ଗାନ୍ଧିଜୀଙ୍କୁ ସ୍ପର୍ଶ କରିବାକୁ ଇଚ୍ଛା ପ୍ରକାଶ କରିବାରୁ, ସେ ଜାଣିପାରି, ଅକୁଣ୍ଠିତ ଚିତ୍ତରେ ନିଜର ହସ୍ତ ପ୍ରସାରିତ କରିଦେଇଥିଲେ ଏବଂ ସେହି ହସ୍ତ ବହୁ କ୍ଷଣ ଧରି କ୍ଷତ-ବୀଭତ୍ସ ଅଙ୍ଗୁଳିମାନଙ୍କଦ୍ୱାରା ସ୍ପୃଷ୍ଟ ଓ ନିପୀଡ଼ିତ ହେବାକୁ ଲାଗିଲା । ଏହିସବୁ କାରଣରୁ ଜନସାଧାରଣ ଗାନ୍ଧିଜୀଙ୍କୁ 'ଦରିଦ୍ରନାରାୟଣ' ଓ 'ପତିତପାବନ' ଆଦି ବିଶେଷଣ ପ୍ରୟୋଗ କରିଥାନ୍ତି ।

ଏ ତ ଗଲା ଗାନ୍ଧିଜୀଙ୍କ ବ୍ୟକ୍ତିଗତ ଜୀବନର ମହତ୍ତ୍ୱ । ପୁଣି ତାଙ୍କର ଐତିହାସିକ ବିଶେଷତ୍ୱ ଏହି ଯେ, ଅହିଂସା ବା ପ୍ରେମ କେବଳ ବ୍ୟକ୍ତିଗତ ଜୀବନରେ ପାଳନୀୟ ନୁହେଁ, ଏହାଦ୍ୱାରା ସମାଜ ଓ ରାଷ୍ଟ୍ରର ଅନ୍ୟାୟସବୁ ମଧ୍ୟ ବିଦୂରିତ କରାଯାଇପାରିବ । ଏହି ନବ ପନ୍ଥାର ନାମ 'ସତ୍ୟାଗ୍ରହ' । ଏହାର ମୂଳତତ୍ତ୍ୱ ଏହି ଯେ, ଆମ୍ଭେମାନେ ସମାଜ ବା ରାଷ୍ଟ୍ରରୁ କୌଣସି ଅନ୍ୟାୟ ଦୂର କରିବାକୁ ଇଚ୍ଛା କଲେ, ସର୍ବଦା ମନେରଖିବାକୁ ହେବ ଯେ, ଅନ୍ୟାୟ ଘୃଣ୍ୟ– ଅନ୍ୟାୟକାରୀ ନୁହେଁ । ପାପ ବା ଅନାଚାର ଅନେକ ସମୟରେ କେବଳ ପାରିପାର୍ଶ୍ୱିକ ଘଟନାଚକ୍ରର ଫଳ । ଆମ୍ଭେମାନେ ସେହି ଘଟନାଚକ୍ରରେ ପଡ଼ିଥିଲେ ସେହିପରି ଅନ୍ୟାୟ ହୁଏତ କରିଥାନ୍ତେ । ତେଣୁ ଅନ୍ୟାୟକାରୀ ଆମର ଶରବ୍ୟ ହେବା ଉଚିତ ନୁହେଁ, ଆମର ଲକ୍ଷ୍ୟସ୍ଥଳ ଅନ୍ୟାୟ । ଆମର ଉଦ୍ଦେଶ୍ୟ ରୋଗୀକୁ ମାରିବା ନୁହେଁ, ରୋଗକୁ ମାରିବା ।

ତେବେ ଅନ୍ୟାୟ ବା ପାପକୁ ମରାଯିବ କିପରି ? ହିଂସା ବା ବଳପ୍ରୟୋଗଦ୍ୱାରା କ'ଣ ଫଳ ହେବ, ତା' ପୂର୍ବେ କୁହାଯାଇଛି । ଗାନ୍ଧିଜୀ କହନ୍ତି, ଆମ୍ଭେମାନେ ଅନ୍ୟାୟକାରୀକୁ ନ ମାରି, ତା'ର ହୃଦୟ ପରିବର୍ତ୍ତନ କରିପାରିଲେ ଅନ୍ୟାୟ ତ ଯିବ, ଅନ୍ୟାୟୀର ମଧ୍ୟ ରୂପାନ୍ତର ହେବ । ଏହି ହୃଦୟପରିବର୍ତ୍ତନ ପାଇଁ ଆମ୍ଭମାନଙ୍କୁ

ଅନ୍ୟାୟର ହିଂସାତ୍ମକ ବିରୋଧ ନ କରି ସେଥିନିମିତ୍ତ ସମସ୍ତପ୍ରକାର କଷ୍ଟକୁ ବରଣ କରିବାକୁ ହେବ । ସତ୍ୟାଗ୍ରହୀର ସ୍ୱେଚ୍ଛାବରିତ ଏଇ କଷ୍ଟଭୋଗ ଅନ୍ୟାୟୀର ହୃଦୟକୁ ନିଶ୍ଚେ ତରଳାଇଦେବ । ସେହି ହେବ ପ୍ରେମର ଜୟ ଓ ପୁରସ୍କାର ।

ଗାନ୍ଧିଜୀ ଏହି ନୀତିର ପ୍ରୟୋଗଦ୍ୱାରା ଦକ୍ଷିଣ-ଆଫ୍ରିକା ଓ ଭାରତବର୍ଷରେ ବହୁବାର ସତ୍ୟାଗ୍ରହ ଆନ୍ଦୋଳନ ଆରମ୍ଭ କରି ଜୟଯୁକ୍ତ ହୋଇଛନ୍ତି । ତାଙ୍କର ଆହ୍ୱାନରେ ଶିକ୍ଷିତ ଲୋକଙ୍କ କଥା ଛାଡ଼ିଦିଅ, ପଲ୍ଲୀମାଳର ନିରକ୍ଷର କୃଷକଦମ୍ପତି ସହସ୍ର ସହସ୍ର ସଂଖ୍ୟାରେ ନିଜନିଜର ଘର ଓ ସମ୍ପତ୍ତି ଛାଡ଼ି ବ୍ରିଟିଶ-ଶକ୍ତି ବିରୁଦ୍ଧରେ ଯୁଦ୍ଧଘୋଷଣା କରି କାରା ଓ ଅଶେଷ କଷ୍ଟ ବରଣ କରିଛନ୍ତି । ଭାରତର ଜନତା ଶତକରା ମାତ୍ର ଆଠ ଶିକ୍ଷିତ । ଏଇ ବିରାଟ ନିରକ୍ଷର ଦରିଦ୍ର ଜନତାକୁ ଜାଗରିତ କରାଇବାହିଁ ଗାନ୍ଧିଜୀଙ୍କ ଆଧ୍ୟାତ୍ମିକ ଶକ୍ତିର ପ୍ରକୃଷ୍ଟ ପ୍ରମାଣ । ଆଜି ଭାରତବର୍ଷ ଯେ ସ୍ୱାଧୀନ, ତାହାର ପ୍ରଧାନ କର୍ତ୍ତା ଗାନ୍ଧିଜୀ ଓ ପ୍ରଧାନ ପନ୍ଥା କ୍ଳେଶ-ପିଚ୍ଛିଳ ସତ୍ୟାଗ୍ରହ । ଏହାରି ଫଳରେହିଁ ଗାନ୍ଧିଜୀଙ୍କର ଜୟ ହିଂସା-ଜର୍ଜ୍ଜର ପୃଥିବୀର ଚତୁର୍ଦ୍ଦିଗରେ ବିଘୋଷିତ ହୋଇଅଛି । ଏହାର ଫଳରେ, ଯେଉଁ ଇଂରେଜମାନଙ୍କ ସାମ୍ରାଜ୍ୟର ଚେରକୁ ସେ ଭାରତବର୍ଷରୁ ଉପାଡ଼ି-ଦେଲେ, ସେହି ଇଂରେଜମାନେହିଁ ତାଙ୍କୁ ଗଭୀର ସମ୍ମାନ କରନ୍ତି ।

ଗାନ୍ଧିଙ୍କ ମତରେ, ଯେ ସମାଜ ବା ମାନବର ସେବା କରିବାକୁ ଇଚ୍ଛା କରିବ, ତାହାର ପ୍ରଥମେ ଆତ୍ମଶୁଦ୍ଧି ନିତାନ୍ତ ଦରକାର । ସତ୍ୟାଗ୍ରହୀକୁ କାମ ଓ କାଞ୍ଚନର ମାୟା ଜୟ କରିବାକୁ ହେବ । ତାକୁ ଅପରିଗ୍ରହ ମନ୍ତ୍ର ଗ୍ରହଣ କରିବାକୁ ହେବ; ଅର୍ଥାତ୍ ତା'ର ନିଜର ବୋଲି କିଛି ସମ୍ପତ୍ତି ରହିବ ନାହିଁ । ସେ ନିଜର ବିଚାର ଅନୁସାରେ ଯାହା ସତ୍ୟ ବୋଲି ବୁଝିବ, ତାହା କାୟ, ମନ ଓ ବାକ୍ୟରେ ନିଷ୍ଠୟ ପାଳନ କରିବ ।

ଗାନ୍ଧିଜୀ ନିଜ ଜୀବନରେ ଏଇ ନୀତିଗୁଡ଼ିକ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ଆମ୍ଭେମାନେ ଚର୍ଚ୍ଚିଲ୍, ରୁଜ୍‌ଭେଲ୍‌ଟ ଓ ଚ୍ୟାଙ୍ଗ୍‌କାଇସେକ୍ ପ୍ରଭୃତି ଅନେକ ଦେଶର ବଡ଼ ବଡ଼ ଜନନାୟକଙ୍କ ନାମ ଶୁଣୁଁ । କିନ୍ତୁ ଏ ସମସ୍ତଙ୍କ ପଛରେ ଅଛି ବିଶାଳ ସମ୍ପତ୍ତିର ଅଭିଭାବକତ୍ୱ । ଗାନ୍ଧିଜୀ ହେଉଛନ୍ତି ଏକମାତ୍ର ଜନନାୟକ, ଯାହାଙ୍କର ନିଜର ବୋଲି ପଇସାଟିଏ କେଉଁଠି ଜମାନଥିଲା ଏବଂ ଯାହାଙ୍କର ସମ୍ପତ୍ତି ଥିଲା ତାଙ୍କର ପିନ୍ଧିଲା ଲୁଗା, କେତେ ଖଣ୍ଡ ବହି ଓ ଚରଖା ଖଣ୍ଡିଏ । ଗାନ୍ଧିଜୀ ଇଚ୍ଛା କଲେ ସମସ୍ତ ସୁଖସ୍ୱାଚ୍ଛନ୍ଦ୍ୟ ଭୋଗ କରିପାରିଥାନ୍ତେ; କିନ୍ତୁ ଭାରତର ଦରିଦ୍ର ଜନସାଧାରଣଙ୍କ ପରି ଚଳିବାପାଇଁ ସେ ରେଳ-ବାଇରେ ବରାବର ତୃତୀୟ ଶ୍ରେଣୀରେ ଯାତ୍ରା କରୁଥିଲେ ।

ଯେଉଁ କଳକାରଖାନାଦ୍ୱାରା ମନୁଷ୍ୟ ବେକାର ହୁଏ ଓ ଗ୍ରାମଗହଳ ଜନଶୂନ୍ୟ ହୁଏ, ଗାନ୍ଧିଜୀ ତାକୁ ଘୃଣା କରୁଥିଲେ । ତାଙ୍କ ମତରେ ପ୍ରତ୍ୟେକ ଗ୍ରାମର ସମସ୍ତ

ପ୍ରୟୋଜନୀୟ ଦ୍ରବ୍ୟ ସେଇ ଗ୍ରାମରେ ଉତ୍ପାଦିତ ହେବା ଉଚିତ । ଇଂରେଜ ଶାସନ ଓ କଳକାରଖାନାର ବ୍ୟାପ୍ତିଯୋଗୁ ଭାରତବର୍ଷର ପଲ୍ଲୀ ଶ୍ରୀହୀନ ଓ ଶକ୍ତିହୀନ ହୋଇପଡ଼ିଛି । ଗାନ୍ଧିଜୀଙ୍କ ମତରେ ପଲ୍ଲୀରେ ହିଁ ପ୍ରକୃତ ଭାରତବର୍ଷର ଆସ୍ଥାନ ଏବଂ ସ୍ୱରାଜର ଅର୍ଥ ଏହି ପଲ୍ଲୀଗୁଡ଼ିକୁ ପୁନର୍ବାର ସ୍ୱାବଲମ୍ୱୀ ଓ ଶ୍ରୀସମ୍ପନ୍ନ କରିବା ।

ଗାନ୍ଧିଜୀଙ୍କର ଖାଦ୍ୟ ଥିଲା କିଛି ଫଳ ଓ ଟିକିଏ ଦୁଧ । ଏଇ ସାମାନ୍ୟ ଖାଦ୍ୟରେ ଜଣେ ଲୋକ ଏପରି କଠୋର ଶ୍ରମ କିପରି କରିପାରେ, ତାହା ଭାବି ଅନେକେ ଆଶ୍ଚର୍ଯ୍ୟ ହେଉଥିଲେ । ପୁଣି ଅନ୍ୟର ଦୁରାଚାରର ପ୍ରାୟଶ୍ଚିତ୍ତ ପାଇଁ ଏହି ଦୁର୍ବଳ ସ୍ୱଳ୍ପଭୋଜୀ ବୃଦ୍ଧ ମଝିରେ ମଝିରେ ଦୀର୍ଘ ଏକୋଇଶ ଦିନବ୍ୟାପୀ ଉପବାସ କରି ଜଗତକୁ ସ୍ତବ୍ଧ କରିବା ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ଶକ୍ତିର ବିଜୟ-କେତନ ଉଡ଼ାଇଥିଲେ । ସେ ଯାଦୁବିଦ୍ୟା ନ ଜାଣିଲେ ମଧ୍ୟ ଯାଦୁକର । ଏଇ ସେଦିନ ସେ ପରସ୍ପର ହନ୍ୟମାନ, ହିଂସାଜର୍ଜ୍ଜର, ଶାନ୍ତିହୀନ ଓ ବିଭୀଷିକାମୟ କଲିକତା ନଗରୀରେ ନିଜ ପ୍ରାଣକୁ ବିପନ୍ନ କରି କେବଳ ପ୍ରେମ ଓ ଭଗବଦ୍‌ବିଶ୍ୱାସ ବଳରେ ଯେପରି ଏକା ରାତିରେ ହିନ୍ଦୁ-ମୁସଲମାନ ଦୁଇ ସଂପ୍ରଦାୟ ଭିତରେ ଭ୍ରାତୃଭାବ ଫେରାଇ ଆଣି ରୂପାନ୍ତରିତ କରିପାରିଲେ, ତାହାଠାରୁ ବଡ଼ ଯାଦୁକ୍ରିୟା ଆଉ କ'ଣ ହୋଇପାରେ ?

ସ୍ୱାଧୀନ ଭାରତର ସ୍ରଷ୍ଟା ବିଶ୍ୱପୂଜ୍ୟ ମହାମାନବ ଆମର କୋଟିପ୍ରାଣର ପରମପ୍ରିୟ ବାପୁଜୀ ଆଉ ନାହାନ୍ତି । ଜୀବନ ପରି ତାଙ୍କର ମୃତ୍ୟୁ ମଧ୍ୟ ହେଲା ଏକ ମହାନ୍ ଯଜ୍ଞ । ସେ ଜୀବନରେ ଥିଲେ ସମଗ୍ର ମାନବଜାତିର ପ୍ରିୟ; ମୃତ୍ୟୁରେ ହେଲେ ପ୍ରିୟତର ଓ ମହତ୍ତର । କେତେକ ଶ୍ରେଣୀୟ ହିନ୍ଦୁ ଭାରତ ଦ୍ୱିଖଣ୍ଡିତ ହେଲା ପରେ ମୁସଲମାନମାନଙ୍କ ପ୍ରତି ତୀବ୍ର ବୈରଭାବ ପୋଷଣ କଲେ ଏବଂ ବାପୁଜୀ ମୁସଲମାନ ଭାଇମାନଙ୍କୁ ସନ୍ତୁଷ୍ଟ କରିବାକୁ ଯାଇ ହିନ୍ଦୁ ସମାଜର କ୍ଷତି କରୁଛନ୍ତି, ଏହି ବୃଥା ଆଶଙ୍କା କରି ଜଣେ ଉଗ୍ରପନ୍ଥୀ ମରହଟ୍ଟା ଯୁବକ ୧୯୪୮ ଜାନୁୟାରୀ ୩୦ ତାରିଖ ଦିନ ଦିଲ୍ଲୀର ବିର୍ଲା ଭବନର ଉଦ୍ୟାନରେ ଅପରାହ୍ଣିକ ପ୍ରାର୍ଥନାକୁ ଗଲାବେଳେ ବାପୁଜୀଙ୍କୁ ଗୁଳି କରି ମାରିପକାଇଲା ।

ବାପୁଜୀଙ୍କ ମୃତ୍ୟୁ ସମ୍ୱାଦ ସମଗ୍ର ବିଶ୍ୱରେ ଶୋକର କରୁଣ ଲହରୀ ସୃଷ୍ଟି କଲା । ଏଇ କ୍ଷଣଜନ୍ମା ମହାପୁରୁଷଙ୍କ ପାଇଁ ସମଗ୍ର ବିଶ୍ୱର କୋଟି କୋଟି ନରନାରୀ ଅଶ୍ରୁ ତ୍ୟାଗ କରିଛନ୍ତି । ଜଗତର କୌଣସି ମହାପୁରୁଷ ଏପରି ବିସ୍ତୃତ ଓ ଗଭୀରଭାବରେ ସମଗ୍ର ମାନବଜାତିଦ୍ୱାରା କେବେ ସମ୍ମାନିତ ହୋଇନଥିଲେ ।

ଯେଉଁ ମହାପୁରୁଷ ଆମର କଲ୍ୟାଣପାଇଁ ନିଜକୁ ବତି ପରି ପୋଡ଼ିଦେଇ ଗଲେ, ତାଙ୍କପ୍ରତି ଆମର ଦାୟିତ୍ୱ ହେଉଛି ତାଙ୍କର ଉପଦେଶକୁ ଜୀବନରେ କିଛି ନା କିଛି ପାଳନ କରିବା । ଆମେ ସମସ୍ତେ ସତ୍ୟନିଷ୍ଠ ଜୀବନଯାପନ କରିବା, ଜୀବନରେ ମିଥ୍ୟାଚାରକୁ ପ୍ରଶ୍ରୟ ଦେବା ନାହିଁ ଏବଂ ସ୍ୱାର୍ଥ ଅପେକ୍ଷା ଦେଶ ଓ ଜାତିକୁ ବଡ଼ ବୋଲି ବରାବର ମନେରଖିବା । ତାହାହିଁ ଯଥାର୍ଥ 'ମହାତ୍ମା ଗାନ୍ଧିଜି ଜୟ ।'

—

# ମୁଁ କାହିଁକି ଲେଖେ ?

କୌଣସି ଲେଖକକୁ ସେ କାହିଁକି ଲେଖନ୍ତି ଏହା ପଚାରିବାରେ ପ୍ରଚ୍ଛନ୍ନ ଉପହାସ ଥାଇପାରେ । ଅର୍ଥାତ୍, ତାଙ୍କ ଲେଖାରେ ତ କୌଣସି ମୂଲ୍ୟ ନାହିଁ, ସେ ଲେଖନ୍ତି ମିଛରେ କାହିଁକି ? ଏ କ୍ଷେତ୍ରରେ ଉତ୍ତର ଦେବା ଯେପରି ଅସହଜ, ଯଦି ଲେଖକ ପ୍ରକୃତରେ ରସସ୍ରଷ୍ଟା ହୋଇଥାନ୍ତି, ତାଙ୍କୁ ଏ ପ୍ରଶ୍ନର ଉତ୍ତର ଦେବା ସେହିପରି ଅଡୁଆ । ଈଶ୍ୱର ଅଛନ୍ତି କି ନାହିଁ, ସେ ପ୍ରଶ୍ନର ଉତ୍ତର, ଜଣେ କବି କାହିଁକି ଲେଖେ, ଏ ପ୍ରଶ୍ନର ଉତ୍ତର ଠାରୁ ବରଂ ସହଜତର । ଚନ୍ଦ୍ରର ଜ୍ୟୋତ୍ସ୍ନା ପରି, ଜଳର ଗତି ପରି, ପୁଷ୍ପର ସୌରଭ ପରି, ରସସ୍ରଷ୍ଟା ତ ରସସୃଷ୍ଟି ଓ ବିତରଣ କରିଯାଏ, ସେଠି 'କାହିଁକି'ର ସ୍ଥାନ କାହିଁ ?

କିନ୍ତୁ ମୋ ପରି ମନ୍ଦଃ କବି ଯଶଃ ପ୍ରାର୍ଥୀଙ୍କ ପ୍ରତି ଏ ପ୍ରକାର ପ୍ରଶ୍ନ ହୁଏତ ଏକାନ୍ତ ବାଞ୍ଛନୀୟ । ମୁଁ ବା ମୋ ପରି ସାରସ୍ୱତ ପୀଠରେ ଅନଧିକାର ପ୍ରବେଶକାରୀମାନେ ଯଦି ନିଜକୁ ନିଜେ ଏହି ପ୍ରଶ୍ନ ପଚାରନ୍ତେ ବା ପଚାରି ଆସୁଥାନ୍ତେ, ତେବେ ସାହିତ୍ୟ ବହୁ ଆବର୍ଜନାର ଅନାକାଂକ୍ଷିତ ପୂତିଗନ୍ଧ ଓ ଧୂଳିମଳିରୁ ରକ୍ଷାପା'ନ୍ତା । ସେକ୍‌ସପିୟର, ରବୀନ୍ଦ୍ରନାଥ ସିନା ଲେଖିବେ, ଆମର ସେହି ନିଷିଦ୍ଧ, ମହାଜନ ସ୍ଥଳୀରେ ନିର୍ଭିକ ପାଦଚାରଣା କରିବା କି ଦରକାର ? କି ବା ଫଳ ? ସେ ଯାଦୁକରୀ ଲେଖନୀ କ'ଣ ଆମର ଅଛି ? ରବୀନ୍ଦ୍ରନାଥ ବା କାଳିଦାସଙ୍କ ସୃଷ୍ଟିର ସୌରଭ ଓ ମାଧୁର୍ଯ୍ୟର କଥା ଭାବିଲେ ମନରେ ଏପରି ନୈରାଶ୍ୟ ଆସେ ଯେ, ସେମାନଙ୍କର ଉପସ୍ଥିତିରେ ନିଜକୁ ଲେଖକ ଶ୍ରେଣୀରେ ଗଣନା କରିବାକୁ ଲଜ୍ଜାହୁଏ ଏବଂ ଯାହା ଲେଖିଛି ତାର ଅପଦାର୍ଥତା ପାଇଁ ଚିତ୍ତ ତିକ୍ତ ହୋଇଉଠେ ।

ତେବେ ଲେଖେ କାହିଁକି ? ଅଲ ଇଣ୍ଡିଆ ରେଡ଼ିଓ ଏ ପ୍ରଶ୍ନ ନ ଉଠେଇଥିଲେ, ମୁଁ ନିଜକୁ ଏ ପ୍ରଶ୍ନ କେବେହେଲେ ପଚାରିନଥାନ୍ତି ।

ବର୍ତ୍ତମାନ ବିଶ୍ଳେଷଣ ପ୍ରୟାସରେ ମୋର ଲେଖକ ଜୀବନର ସମଗ୍ର ଅତୀତକୁ ଚାହିଁବାକୁ ପଡୁଛି । ମୁଁ ସେହି ଦୀର୍ଘ ପଥର ଆରମ୍ଭ ପର୍ଯ୍ୟନ୍ତ ପଳାଇ ଦେଖୁଛି ଯେ, ସେହି ସ୍ଥାନ ବା ଗୋଷ୍ଠୀରେ ମୋର ଜନ୍ମ ବା ବାଲ୍ୟକାଳ କଟିଯାଇଛି, ସେଠି ଲେଖକର ସ୍ଥାନ ନଥିଲା କି ଲେଖକ ହେବାକୁ ମୋତେ କେହି ଉତ୍ସାହିତ ବା ପ୍ରଣୋଦିତ କରିବାର ଲୋକ ନ ଥିଲା । ଏ ପର୍ଯ୍ୟନ୍ତ ବି ମୋର ଗାଁର ଦାଦା, ଖୁଡ଼ୀ, ଭାଇବନ୍ଧୁମାନେ ଜାଣନ୍ତି ନାହିଁ ଯେ ମୁଁ ଏକ ତଥାକଥିତ ଲେଖକ । ଅସ୍ପଷ୍ଟ ଭାବରେ

ଲେଖକ ବୋଲି କିଛି ଗୋଟାଏ ଶୁଣାଶୁଣିରୁ ଧାରଣା ଥିଲେ ମଧ୍ୟ, ମୁଁ କ'ଣ ଲେଖେ ସେ ସଂପର୍କରେ ସେମାନେ ଏକାବେଳକେ ଅଜ୍ଞ । କିନ୍ତୁ ଏଥିରେ ସେମାନଙ୍କ ଅପେକ୍ଷା ମୋର ଲଜ୍ଜାହିଁ ଅନେକ । ମୁଁ କ'ଣ କିପରି କବି ବା ଲେଖକ ହୋଇଛି ଅଥଚ ମୋର କୁଟୁମ୍ବ ବା ଗ୍ରାମବାସୀ ମୋର ପୁସ୍ତକ ପଢ଼ି ଆନନ୍ଦ ଲାଭକରି ପାରିଲେ ନାହିଁ, ଏହାଠାରୁ ମୋର ଲେଖକ ଜୀବନର ଅଧିକ ବ୍ୟର୍ଥତା, ଅଧିକ ସରମ ଥାଇପାରେ କି ? ମୁଁ ଅନେକ ବେଳେ ଏହି ଚିନ୍ତାରେ ମଧ୍ୟ ମୁହ୍ୟମାନ ହୁଏ ଏବଂ ନିଜକୁ ଧିକ୍‌କାର କରେ । ତଥାପି ଲେଖେ କାହିଁକି ?

ସୁଦୂର ବାଲ୍ୟକାଳର କଥା ଆଜି ମନେପଡୁଛି । ସନ ତାରିଖ ମନେନାହିଁ– କିନ୍ତୁ ଘଟଣାଟା ହୁଏତ ସେ କାଳର ଭାରତେଶ୍ୱର ସପ୍ତମ ଏଡ଼ୱାର୍ଡ଼ଙ୍କର ସିଂହାସନ ଆରୋହଣ ବା ସେହିପରି କିଛି । ସେଥିପାଇଁ ଆମେ ପିଲେ ବଡ଼ଙ୍କର ଗ୍ରାହ୍ୟତାକୁ ଆସିଥିଲୁ ଏବଂ ଆମକୁ ମିଷ୍ଟାନ ବଣ୍ଟନର ଐତିହାସିକ ଆବଶ୍ୟକତା ସ୍ୱୀକୃତ ହୋଇଥିଲା । ସେକାଳରେ ପାରିକୁଦ ଗଡ଼ରେ ଯେଉଁ ମାଇନର ସ୍କୁଲ ଥିଲା ସେଇଠି ପଢ଼ିବା ପାଇଁ ଆମର ଅଭିଭାବକମାନେ ମତେ ଓ ମୋର ଏକ ଦାଦିପୁଅ ଭାଇକୁ ଗ୍ରାମ୍ୟ ଜୀବନରୁ ନିକଟରେ କାଢ଼ି ଆଣିଥିଲେ । ସ୍କୁଲର ଉନ୍ମୁକ୍ତ ପ୍ରାଙ୍ଗଣରେ ଏକ ସଭାର ଯୋଗାଡ଼ ହେଲା । ଶିକ୍ଷକମାନେ, ସେଠାର ଭଦ୍ରବ୍ୟକ୍ତିମାନେ ଉପସ୍ଥିତ ଥିଲେ । ସେମାନଙ୍କ ଭିତରେ ଥିଲେ ମୋର ସା'ନ୍ତ ବାପା, ମୋର ଅଭିଭାବକ, ଇଷ୍ଟେଟର ସେ କାଳର ଉଚ୍ଚତମ କର୍ମଚାରୀ । ପିଲାମାନେ ସମସ୍ତେ କ୍ରୀଡ଼ାରତ । ମୁଁ କିନ୍ତୁ ଖେଳ ଛାଡ଼ି ସଭାରେ କଥା ଶୁଣିବାକୁ ବସିଥାଏ । ବୋଧହୁଏ ଭାରତେଶ୍ୱରଙ୍କ ସମ୍ବନ୍ଧରେ ତାଙ୍କର କୁଶଳକାମନା କରି ବା ସେହିପରି ପ୍ରାସଙ୍ଗିକ କଥା ସବୁ କୁହାକୁହି ହୋଇଥିବ– ସେ ସବୁ ମୋର କିଛି ହିଁ ମନେନାହିଁ । କିନ୍ତୁ ଏଇ କଥାଟି ମୋର ସ୍ପଷ୍ଟ ମନେପଡ଼େ ଯେ ସେହି ଗଣ୍ୟମାନ ବଡ଼ଙ୍କ ସଭାରେ ମୁଁ ଇଂଲଣ୍ଡେଶ୍ୱରଙ୍କ ସଂବନ୍ଧରେ ଏକ ପତ୍ର ଯାହା ଗାରେଇଥିଲି ତାହା ପଢ଼ିଥିଲି । ଇଂଲଣ୍ଡର ରାଜବଂଶ ସମ୍ବନ୍ଧରେ ମୋର ଜ୍ଞାନ ସ୍କୁଲର ପାଠ୍ୟପୁସ୍ତକର ସୀମାକୁ ଟପିଯିବ, ସେ କାଳରେ ତ ଆଶାହିଁ ନଥିଲା । କିଛି ନୂତନ ଶୁଣାଇବାର ଆଶା ହିଁ ବିଡ଼ମ୍ବନା । ନୂତନତ୍ୱର ଏକମାତ୍ର ଚମକ ହିଁ ହେଉଛି ଗୋଟିଏ ବଡ଼ଙ୍କ ସଭାରେ ଅନାହୂତ ଏକ ବାଳକର ଅଯାଚିତ ଭାବରେ ପ୍ରବନ୍ଧ ପାଠ । ସେ ପ୍ରବନ୍ଧ ଏପରି ସାରହୀନ ଯେ ତାର ବିନାଶ ଓ ବିଳୟ ପାଇଁ କାଳର ଦନ୍ତ ଦରକାର ନଥିଲା । ମୋର ଚାରିପାଖେ ମୁଁ ଯେଉଁ ଆବର୍ଜ୍ଜନା ସ୍ତୂପ ସୃଷ୍ଟିକରେ ସେଇଥିରେ ହିଁ ଜୀବନର ସମଶ୍ରେଣୀକ ଅନ୍ୟ ପଦାର୍ଥମାନଙ୍କ ପରି ତାହା ନିକ୍ଷିପ୍ତ ଓ ବିଲୀନ ହୋଇଯାଇଛି । କିନ୍ତୁ ମୋର ଏତିକି ସ୍ମରଣ ହେଉଛି

ଯେ, ଏହି ରାଜପ୍ରଶସ୍ତି ପାଇଁ ମତେ ସେଦିନ କେହି ଅନୁରୋଧ ବା ଉତ୍ସାହିତ କରିନଥିଲେ । ମୁଁ କାହିଁକି ଲେଖିଲି, କିପରି ବା ସାହସ କଲି, ବଡ଼ଙ୍କର ସଭାରେ ତାକୁ ପଢ଼ିଲି, ତାର ଉତ୍ତର କେବଳ ମନସ୍ତାତ୍ତ୍ୱିକ ଦେବେ । ହୁଏତ ଏହାହିଁ ମୋ ଜୀବନର ପ୍ରଥମ ଲେଖା – ଗଦ୍ୟରେ ଆରମ୍ଭ – ଏକ ଦୈବୀ ସୂଚନା ଯେ ଜୀବନଟା ନିରାଟ ଗଦ୍ୟମୟ ହେବ – ଯାହାହିଁ ହୋଇଛି ।

ଏଇ କାଳରେ ଆଉ ଏକ ଘଟଣା ଘଟିଥିଲା, ଯାହାକୁ ଏହି ମାନସିକ ବିଶ୍ଳେଷଣ ପାଇଁ ମତେ ଆଜି ପଦାରେ ପକାଇବାକୁ ପଡୁଛି । ଏବେ ମୁଁ ବହୁକାଳ ଧରି ଅପୌତ୍ତଳିକ । ହିନ୍ଦୁ ଦେବଦେବୀଙ୍କର ପ୍ରତିମାକୁ ମୁଁ ନମସ୍କାର କରେନା । ମୋର ବର୍ତ୍ତମାନ ବଦ୍ଧ ଧାରଣା ଯେ ଏହି ପୌତ୍ତଳିକତା ଓ ବ୍ରାହ୍ମଣ ନିର୍ଭର ସାମାଜିକ ଜୀବନ ପରିତ୍ୟାଗ ନ କଲେ ସାମଗ୍ରିକ ଭାବରେ ହିନ୍ଦୁ ସମାଜ କେବେହେଲେ ସଭ୍ୟ ବା ଉନ୍ନତ ହୋଇପାରିବନାହିଁ । କିନ୍ତୁ ସେହି ସୁଦୂର ବାଲ୍ୟ ଜୀବନରେ ମୁଁ ଦେବଦେବୀଙ୍କର ଏକାନ୍ତ ଭକ୍ତ ଥିଲି । ଗଣେଶ ଓ ସରସ୍ୱତୀଙ୍କ ସ୍ତୋତ୍ର ମୁଖସ୍ଥ କରି ପ୍ରତ୍ୟହ ପାରାୟଣ କରୁଥିଲି । ଭିନ୍ନ ଭିନ୍ନ ଦେବଦେବୀଙ୍କୁ ତାଙ୍କର ମନ୍ଦିରେ ମନ୍ଦିରେ ଘୂରି ନିଜର ସେକାଳର ଛୋଟ ଛୋଟ ଦୁଃଖ କହିଆସୁଥିଲି, ଯଦି ବା ମୋର ଦରଖାସ୍ତ ବରାବର ନାମଞ୍ଜୁର ହେଉଥାଏ ।

ସେ ଯାହାହେଉ, ମୁଁ ଦିନେ ସ୍ୱୟଂ ସରସ୍ୱତୀଙ୍କୁ ସ୍ୱପ୍ନରେ ଭେଟିଲି । ଦେଖିଲି କୌଣସି ମନ୍ଦିରକୁ ଯାଉଛି । ମନ୍ଦିରର କୌଣସି ଦ୍ୱାରଦେଇ, କୌଣସି କକ୍ଷ ଭିତରେ ପଶିଲା କ୍ଷଣି ଦେବୀ ସରସ୍ୱତୀ ମୋର ଛୋଟ ବାଲ୍ୟ ଦେହକୁ ନେଇ କୋଳରେ ରଖିଲେ । ତାଙ୍କର ମସ୍ତକରେ ଜାଜ୍ୱଲ୍ୟମାନ ମୁକୁଟ । ମୁଖରେ କଲ୍ୟାଣୀୟ ସ୍ମିତ । ମତେ ସସ୍ନେହରେ ଆଉଁସିଲେ ଏବଂ କିଛି କହିଲେ, ଯାହାକି ମୋର ଆଜି ମନେନାହିଁ । ତାଙ୍କରି କୋଳରେ ହିଁ ମୋର ନିଦ୍ରାଭଙ୍ଗହେଲା ।

ଏଇଟା କେବଳ ସ୍ୱପ୍ନ ହୋଇଥିଲେ ଏଠାରେ ମୁଁ ଉଲ୍ଲେଖ କରିନଥା'ନ୍ତି– କିନ୍ତୁ ଯା ସଙ୍ଗେ ମୋର ଲେଖକ ଜୀବନର ନଗଣ୍ୟ ଇତିହାସ ଜଡ଼ିତ । କାରଣ ବ୍ୟାଧ ଶରାହତ କ୍ରୌଞ୍ଚର କାରୁଣ୍ୟ ଯେପରି ବାଲ୍ମୀକିଙ୍କୁ କବିତାର ପ୍ରଥମ ପ୍ରେରଣା ଯୋଗାଇଥିଲା, ଏହି ସ୍ୱପ୍ନ ହିଁ ହେଲା ମୋର ପ୍ରଥମ କବିତାର ଉପାଦାନ । ସେଦିନର ସମଗ୍ର ସକାଳ, ମୋର ଚିତ୍ତ ସେହି ସ୍ୱପ୍ନରେ ଦୈବାତ୍ ମାଧୁର୍ଯ୍ୟରେ ପରିପୂରିତ ହୋଇ ରହିଥିଲା । ମୁଁ ମାନସିକ ବିରାମ ବା ଆମୋଦ ପାଇଁ ଘଟଣାଟିକୁ ଲେଖିବସିଲି । ମୋର ସାଆନ୍ତ ବାପା ସେକାଳର 'ଉତ୍କଳ ସାହିତ୍ୟ' ଓ 'ଉତ୍କଳ ଦୀପିକା' ଆଦି ମଗାଇ ପଢୁଥିଲେ । ଘରେ ସେଦିନ ସକାଳେ ଖଣ୍ଡେ ପୁରୁଣା ଉତ୍କଳ-ସାହିତ୍ୟ

ପାଇଲି । ସେଥିରେ ଆର୍ଟ କାଗଜରେ ଏକ ଛବି ଥିଲା– ଯାର ପଛ ପାଖଟା ଥିଲା ଫାଙ୍କା । ମୋର ମନେଅଛି – ସେହି ଫାଙ୍କା ସ୍ଥାନରେ ଆରମ୍ଭକରିଦେଲି ଏକ ପେନ୍‌ସିଲ ସାହାଯ୍ୟରେ ମୋର ସରସ୍ୱତୀ ଦର୍ଶନ ବର୍ଣ୍ଣନା – ସେ ପୁଣି ଅମିତ୍ରାକ୍ଷରରେ । ଏ ବି ଏକ ଦୈବୀ ସୂଚନା – କାରଣ ଅକ୍ଷର ଚର୍ଚ୍ଚା ଯୋଗୁ ଉତ୍କଳରେ ମିତ୍ର ଅପେକ୍ଷା ଅଧିକ ଅମିତ୍ର ହିଁ ପ୍ରାପ୍ତ ହୋଇଆସିଛି । ଜୀବନ ବି ହୋଇଛି ଯତିହୀନ । ଛପା ବହିରେ କାହିଁକି ପେନ୍‌ସିଲ ଗାରାଉଛି କହି ଜଣେ ଦାଦି ମୋତେ ସେହି ମୁହୂର୍ତ୍ତରେ ହିଁ ଗାଳିଦେଇଥିଲେ । ଲେଖିସାରିଲାପରେ କବିତାର ଖବର ଭୁଲିଯିବା ଏବେ ବି ମୋର ସ୍ୱାଭାବିକ ଅଭ୍ୟାସ । ତେଣୁ ମୋର ସେହି ଆଦି କବିତାଟି କୁଆଡ଼େ ଗଲା, ମୁଁ କହିପାରିବିନି – କିନ୍ତୁ ସଦ୍ୟ ପ୍ରାପ୍ତ ପୁରସ୍କାରଟା ମନେଅଛି । ଲେଖକ ପାଇଁ ସେହି ଶ୍ରେଣୀକ ପୁରସ୍କାର ହିଁ ମୁଁ ବିଶେଷ ଭାବରେ ପାଇଆସୁଛି ।

ଆଜି ମନସ୍ତତ୍ତ୍ୱ ଦେଇ ବିଚାର କରି ଦେଖୁଛି, ସ୍ୱପ୍ନରେ ସେହି ସରସ୍ୱତୀ ଦର୍ଶନର କୌଣସି ଅର୍ଥ ନାହିଁ । କିନ୍ତୁ ମୁଁ ଆଜି ନିଜକୁ ପଚାରୁଛି, ସେହି ଘଟଣାକୁ ମୁଁ ଲେଖିବାକୁ ଗଲି କାହିଁକି ? ତାକୁ ବା ଛନ୍ଦରେ ଲେଖିବାକୁ ଗଲି କାହିଁକି – ହେଉ ବା ସେ ଅମିତ୍ରାକ୍ଷର । ମୁଁ ନିଜେ ସେ ପ୍ରଶ୍ନର ଉତ୍ତର ଜାଣେନା ।

ଏଇ ଶତାବ୍ଦୀର ଫ୍ରୟେଡ଼୍, ୟୁଙ୍ଗ ପ୍ରଭୃତି ମନସ୍ତାତ୍ତ୍ୱିକ ପଣ୍ଡିତମାନେ ମନୁଷ୍ୟ ମନର ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ କରି ଦେଖିବାକୁ ଚେଷ୍ଟାକରିଛନ୍ତି ଯେ ମନୁଷ୍ୟର ସମଗ୍ର ପାର୍ଥିବ ଜୀବନର ମୂଳ ପ୍ରେରଣା କେଉଁଠୁ ଆସେ । ଫ୍ରୟେଡ଼୍ କହନ୍ତି ଯେ ଜଠର କ୍ଷୁଧା ଓ ଯୌନ କ୍ଷୁଧାରେ ମନୁଷ୍ୟର ପ୍ରବଳତମ ପ୍ରବୃତ୍ତି । ତାଜମହଲଠାରୁ କୁଟୀର ରଚନା ଯାଏ ମନୁଷ୍ୟର ସକଳ ଛୋଟବଡ଼ କର୍ମର ତଳେ ଏଇ ଦୁଇ ପ୍ରବୃତ୍ତି ପ୍ରଚ୍ଛନ୍ନ ରହିଛି । ୟୁଙ୍ଗ୍ ଏକ ତୃତୀୟ ପ୍ରବୃତ୍ତି ଯୋଗକରିଛନ୍ତି – ଯାର ଓଡ଼ିଆରେ ନାମ ହୋଇପାରେ 'ଆତ୍ମପ୍ରାଧାନ୍ୟ' ଅର୍ଥାତ୍ ପ୍ରତ୍ୟେକ ବ୍ୟକ୍ତି – ନାରୀ ହେଉ ବା ପୁରୁଷ ହେଉ – ଏକ ପ୍ରଚ୍ଛନ୍ନ କିନ୍ତୁ ଗଭୀର ଅଭିଳାଷ ରହିଛି ସମାଜରେ ଦଶଜଣଙ୍କଠାରୁ ସେ ଧନରେ, ମାନରେ ବା ବୁଦ୍ଧିରେ କୌଣସିଥିରେ ହେଲେ ବଡ଼ବୋଲି ଧରାଯା'ନ୍ତୁ ଓ ସେଥିପାଇଁ ଅନ୍ୟଙ୍କଠାରୁ ଆଦର ଓ ସମ୍ମାନ ପାଆନ୍ତୁ । ମୁସୋଲିନ୍‌ର ଦିଗ୍‌ବିଜୟର ସ୍ୱପ୍ନ ଠାରୁ ଗାଁ ମହାଜନର ନିର୍ମ୍ମମତା ପର୍ଯ୍ୟନ୍ତ ଯେତେ ସବୁ ଅମାନୁଷିକ ସ୍ୱାର୍ଥକୈନ୍ଦ୍ରିକ କର୍ମ ଆମେ ଜଗତରେ ଦେଖିବାକୁ ପାଉଁ, ସେ ସବୁର ମୂଳରେ ଏହି ଆତ୍ମପ୍ରାଧାନ୍ୟର ପ୍ରେରଣା ।

ଜଣେ ଲେଖକ କାହିଁକି ଲେଖେ ତା'ର ଉତ୍ତର ହୁଏତ ମନୁଷ୍ୟର ଏଇ ତିନି ପ୍ରଧାନ ପ୍ରବୃତ୍ତିରେ ଓତପ୍ରୋତ ଜଡ଼ିତ ରହିଛି । ହୁଏତ ଲେଖକ କ୍ଷୁଧାର ତାଡ଼ନାରୁ ରକ୍ଷା ପାଇବା ପାଇଁ ଅର୍ଥାତ୍ ଜୀବିକାର ଉପାୟ ରୂପେ ଲେଖୁଥାଇପାରେ । ପୂର୍ବେ

ରାଜାମାନେ ସ୍ତୁତିକାରକ କବିମାନଙ୍କର ଭରଣପୋଷଣର ଭାର ନେଉଥିଲେ । ଆମର ପରମ ବରେଣ୍ୟ କାଳିଦାସ ହୁଏତ ଏଇ କାରଣରୁ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ଦରବାରର ଆଶ୍ରୟ ନେଇଥିଲେ । ସେହି ମହାକବିଙ୍କୁ ଆତ୍ମ-ପ୍ରାଧାନ୍ୟ ମଧ୍ୟ ଯେ ପ୍ରଭାବିତ କରିଥିବ, ଏହା ସ୍ୱାଭାବିକ । ନବରତ୍ନଙ୍କ ମଧ୍ୟରେ ଶ୍ରେଷ୍ଠତମ ରତ୍ନ ହେବାର ଆତ୍ମପ୍ରସାଦ ଅନୁଭବ ନ କରିବାରେ ହିଁ କୌଣସି ମନୁଷ୍ୟ ପକ୍ଷରେ ଅସ୍ୱାଭାବିକ । ମହାକବିଙ୍କ ରଚନାରେ ଯୌନକ୍ଷୁଧା ଯେ ମଧୁର ଓ ମହିମାମୟ ଆତ୍ମପ୍ରକାଶ କରିଛି, ତାହା ଆଉ କାହାକୁ ବୁଝାଇ ଦେବାକୁ ହେବ ନାହିଁ । ମେଘଦୂତରେ ସେହି ପ୍ରଣୟଦଗ୍ଧ କବିଙ୍କର ନିଜର ନିବିଡ଼ ବିରହ-ବେଦନା ହିଁ ଯେ ଜବାପୁଷ୍ପ ପରି ପ୍ରାଣର ରକ୍ତରେ ରକ୍ତାଭ ହୋଇ ଫୁଟିବାହାରିଛି, ଏଥିରେ ସନ୍ଦେହ ନାହିଁ ।

ଉତ୍କଳ ଦେଶରେ ଜୀବିକାର ଉପାୟ ରୂପେ ସାହିତ୍ୟକୁ ଆଶ୍ରୟ କରିବାର ଯୁଗ ଏ ଯାଏଁ ଆସିନାହିଁ । ସାହିତ୍ୟର ବ୍ୟବସାୟୀ ନିଶରେ ହାତ ପକାଇ ବୁଲିବାର ଦେଖୁ, କିନ୍ତୁ ଅସଲ ସାହିତ୍ୟିକ ସେହି ପୂର୍ବପରି ଦରମଲା, ଗୃହହୀନ, ବୁଭୁକ୍ଷୁ । ମୁଁ ପାନ, ସିଗାରେଟ ଆଦି ବ୍ୟବହାର କରେନା, ଯଦି କରୁଥାନ୍ତି ତେବେ ଏ ଯାବତ୍ ମୋର କିତାବମାଳାରୁ ମୁଁ ଯାହା ପାଇଛି ତାହା ସେହି ପାନ ସିଗାରେଟ ପାଇଁ ମଧ୍ୟ ଅକୁଳାନ ହୁଅନ୍ତା । ମୋତେ ଯଦି କେବଳ ମୋର ବହିର ବିକ୍ରୟ ଲବ୍ଧ ଅର୍ଥ ଉପରେ ନିର୍ଭର କରିବାକୁ ପଡୁଥାନ୍ତା, ତେବେ ମୁଁ ଏ ଯାକେ ବଞ୍ଚିଥାନ୍ତି କି ନା ସନ୍ଦେହ । ଆମ ଅଭିଧାନରେ ଅର୍ଥ ଶବ୍ଦର ଦୁଇଟି ଅର୍ଥ ଅଛି ଯାହାକି ପରସ୍ପର ବିରୋଧୀ । ଯେଉଁ ଅର୍ଥ ଯୋଗୁଁ ସାହିତ୍ୟ ସମାଜରେ ଆଦରଣୀୟ ବସ୍ତୁ ସେହି ସୂକ୍ଷ୍ମ ଅବାସ୍ତବ ପଦାର୍ଥଟି କେବଳ ସାହିତ୍ୟିକ ପାଏ, କିନ୍ତୁ ଯେଉଁ ଅର୍ଥରେ ମନୁଷ୍ୟ ସୁଖ ସ୍ୱାଚ୍ଛନ୍ଦ୍ୟରେ କୋଠା ଉପରେ ଚକା ପକେଇ ବସେ, ତାହା ପାଏ ସାହିତ୍ୟ ବ୍ୟବସାୟୀ ।

ଏ ତ ଗଲା ଅର୍ଥ ଜୀବିକା ପାଇଁ ମୋର ସାହିତ୍ୟସେବା । ତେବେ, ମୁଁ ନିରାସକ୍ତ ସନ୍ନ୍ୟାସୀ ନୁହେଁ । ବହିରୁ ଯଦୃଚ୍ଛା କ୍ରମେ ଯେଉଁ ଦି'ପଇସା ଆସିଥାଏ, ବେଳେବେଳେ ତାକୁ ଯେ ମୁଁ ଅନାଇ ରହିଥାଏ, ଏହା କହିବାରେ ଲଜ୍ଜା କିଛି ନାହିଁ । ଅର୍ଥ ପ୍ରତି ସେ ଲୋଲୁପତା ନ ଥିଲେ ଅଲ ଇଣ୍ଡିଆ ରେଡ଼ିଓର ନିମନ୍ତ୍ରଣ ରକ୍ଷାକରି ମୁଁ ମୋର ନିଜର ଆତ୍ମା ଉପରେ ଅସ୍ତ୍ର ପ୍ରୟୋଗ କରୁନଥାନ୍ତି, ଯାହାକି ବର୍ତ୍ତମାନ କରୁଛି ।

ଯାହା ଯୌନକ୍ଷୁଧା, ମାନବ ସମାଜରେ ତାହା ପ୍ରେମ । ଯାହା ଇତର ପ୍ରାଣୀଙ୍କ ନିକଟରେ କେବଳ ପ୍ରଜନନର ଉପାୟ ମାତ୍ର, ମନୁଷ୍ୟ ନିକଟରେ ତାହାହିଁ ହେଉଛି ସଙ୍ଗୀତ, ସାହିତ୍ୟ, କଳା, ଶିଳ୍ପ, ନୃତ୍ୟର ଜନନୀ । ଯୌବନର ପ୍ରାତଃକାଳରେ

ନାରୀ ପୁରୁଷ ଭିତରେ ଯେଉଁ ହୃଦୟ ମନ୍ଥନ ସୃଷ୍ଟି କରେ ସେଇଥିରୁ ଆବିର୍ଭୂତ ହୁଏ ପ୍ରାଣସ୍ପର୍ଶୀ କବିତା, ଅନୁପମ ଚିତ୍ର ସଂପଦ, ଅମୂଲ୍ୟ ଶିଳ୍ପ । ଜୀବନର ପ୍ରଥମ ପାଦରେ ମୋ ଭିତରେ ଅନଭିଜ୍ଞ ସରଳ କବି ବିଚାରୀର ହୃଦୟଟି ଏହିପରି ଭାବରେ ବାରମ୍ବାର ଅଭିଭୂତ ହୋଇଛି ଏବଂ ସେହି ତୀବ୍ର ଅନୁଭୂତିର ତାଡ଼ନାରେ ତା'ଠାରୁ ଯେ କିଛି କାବ୍ୟ କବିତା ବାହାରିଛି, ଏହା ଏ ଦେଶର ପାଠକମାନଙ୍କ ନିକଟରେ ବୋଧହୁଏ ଜଣାଶୁଣା କଥା । କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ନାରୀ ବା ପୁରୁଷ ଯେ ମୋର ସାହିତ୍ୟିକ ଜୀବନର ମୂଳଉତ୍ସ, ଏକଥା ସ୍ୱୀକାର କରିବାର କୌଣସି କାରଣ ମୁଁ ଦେଖୁନାହିଁ । ଜୀବନ ପଥର ବହୁ ଅଭିଜ୍ଞତା ଭିତରେ ସେମାନଙ୍କ ସହିତ ଦେଖାଦେଖି ଓ ଚିହ୍ନାଚିହ୍ନି, ସେହି ସ୍ଥାନ ଓ ସେହି କାଳର ସେହି ଅବସ୍ଥାରେ ଅନ୍ୟ କେହି ଆସିଥିଲେ ମଧ୍ୟ ହୁଏତ, ସେହି ଆତ୍ମିକ ଆଲୋଡ଼ନ ଘଟିଥାଏ । ଗୋଲାପ ଓ ପଦ୍ମ ତୋଳିବାକୁ ଗଲେ ରୂପ ଓ ସୌରଭ ଭୋଗ ସଙ୍ଗେ କିଛି ପଙ୍କ ଲେପନ ଓ କଣ୍ଟକାଘାତ ଯେପରି ସହିବାର ହିଁ କଥା, ମୋ ଭାଗ୍ୟରେ ତାହାହିଁ ଘଟିଥିବାରୁ ଜଗତର ପ୍ରତ୍ୟେକ ଜିନିଷକୁ ଆଲୋକ ଅନ୍ଧକାରର ମିଶ୍ରଣ ବୋଲି ଦେଖିବାକୁ ଶିଖିଛି । କବିର ମଧ୍ୟ ଜ୍ଞାନଦାନ୍ତ ଦିନେ ଉଠେ ।

ବାକୀ ରହିଲା ଆତ୍ମପ୍ରତିଷ୍ଠା । ମୋର ମନେହେଉଛି ଏଇ ପ୍ରବୃତ୍ତି ହୁଏତ ମୋର ସାହିତ୍ୟିକ ଜୀବନର ପ୍ରଚ୍ଛନ୍ନ ପ୍ରେରଣା । ମୁଁ ଯେ ସବୁମନ୍ତେ କେଡ଼େ ଅପଦାର୍ଥ ତାହା ସହଜରେ ଅନ୍ୟ ଜଣକୁ ବୁଝେଇହେବନି । ଯେତେବେଳେ ଏକାକୀ ବସି ଆତ୍ମସ୍ଥ ହଏ, ମୋ ଚିତ୍ତରେ ପ୍ରଧାନତତମ ଆତ୍ମ ପ୍ରଶ୍ନ ହେଉଛି, 'ବିଧାତା, ତମେ ମତେ ଜନ୍ମ ଦେଇଥିଲ କାହିଁକି ? ମୁଁ କେଉଁ କାମକୁ ଉପଯୁକ୍ତ ? ଏପରି ଏକ ଅକର୍ମଣ୍ୟ ଜୀବନ ସଂସାରକୁ ପଠାଇବାକୁ କି ଦରକାର ଥିଲା ? ଅକର୍ମଣ୍ୟତାର ଏହି ଅସହ୍ୟ ଅଭିଶାପରୁ ନିଜକୁ ବଞ୍ଚେଇ ରଖିବା ପାଇଁ ନିଜର ଏଇ ପାର୍ଥିବ ଜୀବନଟାର କିଞ୍ଚିତ୍ ହେଲେ ଯଥାର୍ଥତା ଅନ୍ତତଃ ଦଶଜଣଙ୍କ ଆଗରେ ଉପସ୍ଥାପିତ କରିବା ପାଇଁ ମୁଁ ହୁଏତ ସାହିତ୍ୟର ଆଶ୍ରୟ ନେଉଛି ।

କିନ୍ତୁ ଜୀବନର ଅନ୍ୟ ସମସ୍ତ ବିଭାଗରେ 'ସଂଜ୍ଞ' ଚେଷ୍ଟା, ଶ୍ରୀବୃଦ୍ଧିର ପ୍ରଥମ ଆବଶ୍ୟକତା ଥିଲାବେଳେ, କବି ଜୀବନରେ ତାହା ମାରାତ୍ମକ ବୋଲି ମୋର ମତ । ଚେଷ୍ଟା କରି ଉତ୍କୃଷ୍ଟ କବିତା ସୃଷ୍ଟିକରିବା, ଘାସରୁ ଅତର ବାହାର କରିବା ସମ୍ଭବ ପରି ଅସମ୍ଭବ । ତେଣୁ ମୋର ସାହିତ୍ୟସେବା ଯଦୃଚ୍ଛା ଲାଭ ସନ୍ତୁଷ୍ଟ । ଏହାର କୌଣସି ଲକ୍ଷ୍ୟନାହିଁ । ଏଇଥିପାଇଁ କୌଣସି ସାଧନା ମୁଁ କରିନାହିଁ । ଏକମାତ୍ର କୃଚ୍ଛ ଭୋଗ ଏହି ଯେ ଯେତେବେଳେ କୌଣସି କବିତା ବା କାବ୍ୟ ବା ରଚନା ଆରମ୍ଭ

ହୋଇପଡ଼େ ତ ସାରିବା ପାଇଁ ମତେ ଅନେକବେଳେ ମଧ୍ୟରାତ୍ରିର ତେଲ ଜାଳିବାକୁ ପଡ଼େ, ଯାହାକି ମୁଁ ଛାତ୍ରଜୀବନରେ କୌଣସି ହେଲେ ପରୀକ୍ଷା ପାଇଁ କେବେହେଲେ କରିନାହିଁ । ଆରମ୍ଭ କରି ନ ସାରିଲା ଯାଏ ମନରେ ଶାନ୍ତି ନଥାଏ ।

ଜୀବନରେ ସମସ୍ତ ଅକର୍ମଣ୍ୟତାଠାରେ ଜୀବନରେ ଯାହା ମହତ୍, ଯାହା ସୁନ୍ଦର, ଯାହା ସତ୍ୟ ମୁଁ କିନ୍ତୁ ରହିଆସିଛି କେବଳ ତାହାର ହିଁ ଉପାସକ ଓ ଭକ୍ତ । କୌଣସି ଗୋଷ୍ଠୀ, ଦଳ ବା 'ଇଜମ୍'ର ପ୍ରଚାରକ ରୂପେ ଠିଆହେବା ମୋର ସ୍ୱଭାବବିରୁଦ୍ଧ । ମୁଁ ମୋର 'କମଳାୟନ' କାବ୍ୟରେ ଏହାହିଁ ଦେଖେଇବାକୁ ଯାଇଛି ଯେ ଦଳ ଓ ଦେଶ ଅପେକ୍ଷା ବ୍ୟକ୍ତି ଓ ମାନବ ବଡ଼ । ସେଥିପାଇଁ କମଳ ତାର ରାଜନୈତିକ ଦଳ ଛାଡ଼ି ବିରାଟ ମାନବ ଜାତିର ସେବାରେ ବାହାରିପଡ଼ିଛି । କୌଣସି ସ୍ଳୋଗାନ ମନୁଷ୍ୟର କଲ୍ୟାଣ ଆଣି ପାରିବ ନାହିଁ, ଯେପରି ଆଣିବ ବ୍ୟକ୍ତିର ଚାରିତ୍ରିକ ଶୁଦ୍ଧତା, ନିଃସ୍ୱାର୍ଥପରତା, ସତ୍ୟପ୍ରତି ବିଶୁଦ୍ଧ ଅନୁରାଗ । କବି ଓ ସାହିତ୍ୟିକ ଗୋଷ୍ଠୀ ଭାବରେ ଓ ବ୍ୟକ୍ତିଗତ ଜୀବନରେ ନିଃସ୍ୱାର୍ଥ ବିଶୁଦ୍ଧତା ପ୍ରଚାର କରିବା ଏକାନ୍ତ କର୍ତ୍ତବ୍ୟ । ଯେ ପର୍ଯ୍ୟନ୍ତ ମୁଁ ସ୍ୱାର୍ଥର ଉପରକୁ ସାମାଜିକ ଓ ବ୍ୟକ୍ତିଗତ ଜୀବନର ନାନା କ୍ଷୁଦ୍ର ଲାଳସାର ଉପରକୁ ଉଠିପାରିନାହିଁ, ସେ ପର୍ଯ୍ୟନ୍ତ କୌଣସି ସ୍ଳୋଗାନ ଗାଇ, କୌଣସି 'ଇଜମ୍'ର ପଣ୍ଡା ହୋଇ ଜନସାଧାରଣଙ୍କୁ ସେହି ଲମ୍ଫରେ ମତାଇବା ଏକାନ୍ତ ଗର୍ହିତ କର୍ମ ବୋଲି ମୋର ମତ । ବ୍ୟକ୍ତିର ସମାଜକୁ ପ୍ରଧାନତମ ଦାନ ହେଉଛି ତାର ଅକଳୁଷ ଚରିତ୍ର, ଅନିନ୍ଦ୍ୟ ସାଧୁତା ଓ ସ୍ୱାର୍ଥଲେଶହୀନ ଉପଚିକିର୍ଷା । ଯେତେ 'ଇଜିମ୍', ଯେତେ ସ୍ଳୋଗାନ ତାହା ସବୁ ଏ ପ୍ରକାର ଶୁଭ୍ର ନିଷ୍କଳଙ୍କ ବ୍ୟକ୍ତିତ୍ୱର ପଛକୁ; ତେଣୁ ହିଁ ମୁଁ ଗାନ୍ଧି, ଗୋପବନ୍ଧୁଙ୍କର ସ୍ତାବକ । ମୁଁ ସେମାନଙ୍କ ଦଳର ନୁହେଁ ବା ସେମାନଙ୍କର କର୍ମ ବା ଚିନ୍ତାର ଧାରା ସମ୍ବନ୍ଧରେ ମୋର କୌଣସି ମତାନ୍ଧତା ନାହିଁ । ଦରକାର ବେଳେ ସେମାନଙ୍କର କର୍ମ ଚିନ୍ତାଧାରାର ସମାଲୋଚନା କରିଛି ଓ କରିପାରେ, କିନ୍ତୁ ତାଙ୍କ ବ୍ୟକ୍ତିତ୍ୱ ନିକଟରେ ମୁଁ ନତମସ୍ତକ, କାରଣ ସେହି ବ୍ୟକ୍ତିତ୍ୱ ଭିତରେ ହିଁ ମୁଁ ସତ୍ୟ ଶିବ ସୁନ୍ଦରର ବିକଚ ବିକାଶ ଦେଖିବାକୁ ପାଏ ।

ହୁଏତ, 'ମୁଁ କାହିଁକି ଲେଖେ', ମୁଁ ଏହାର ସ୍ପଷ୍ଟ ଉତ୍ତର ଦେଇପାରିଲିନାହିଁ, ପାରିବି ମଧ୍ୟ ନାହିଁ । କିନ୍ତୁ ଅତୀତକୁ ଚାହିଁ ଅନୁଭବ କରୁଛି ଯେ, ଏ ପ୍ରଶ୍ନ ମୋର ମୂଳରୁ ନିଜକୁ ପଚାରିବାର ଥିଲା । ୟୁରୋପରେ ବିବର୍ତ୍ତନବାଦ କେବଳ ବାହ୍ୟ-ପ୍ରକୃତିରେ ଘଟେ ବୋଲି ପ୍ରଚାରିତ ହୋଇଆସିଛି । ଭାରତ କିନ୍ତୁ ତା'ର 'ଧର୍ମ' ଦେଇ ବିବର୍ତ୍ତନବାଦକୁ ମନୁଷ୍ୟର ଆତ୍ମିକ ବିକାଶରେ ନିୟୋଜିତ କରିଛି । ବେଦାନ୍ତର କର୍ମ, ଜ୍ଞାନ ଓ ଭକ୍ତି ଯୋଗ କେବଳ ସଂଜ୍ଞ ବିବର୍ତ୍ତନ ବାଦ ଛଡ଼ା ଅନ୍ୟ କିଛି

ନୁହେଁ । ଅର୍ଥାତ୍ ଏଥିରୁ ଯେ କୌଣସି ଗୋଟିକର ଆଶ୍ରୟ ନେଲେ ମନୁଷ୍ୟ ଅନ୍ଧକାରରୁ ଆଲୋକକୁ, ସ୍ଥୁଳରୁ ସୂକ୍ଷ୍ମକୁ, ମୃତ୍ୟୁରୁ ଅମୃତକୁ, ପଶୁରୁ ଦେବତ୍ୱକୁ ଉନ୍ନୀତ ହେବ। ଭାରତୀୟ ଧର୍ମର ନିର୍ଦ୍ଦେଶ ଏହି ଯେ ରାଜାଠାରୁ ପାରିଆ ପର୍ଯ୍ୟନ୍ତ ପ୍ରତ୍ୟେକେ ନିଜ ନିଜର ସାମାଜିକ କର୍ତ୍ତବ୍ୟ ମଧ ଦେଇ ହିଁ ବିବର୍ତ୍ତିତ ହେବାର ପୂର୍ଣ୍ଣ ସୁଯୋଗ ଅଛି । ମୁଁ ମନେକରେ କବି ଓ ଲେଖକ ପକ୍ଷରେ ସାହିତ୍ୟ ଓ କବିତା ଏହି ଆତ୍ମ ଉନ୍ନୟନର ଏକ ପରିମ ଉପାୟ । କବି ଓ ତାର ସୃଷ୍ଟି, ନିଜକୁ ଓ ତାର ଜାତିକୁ ବିବର୍ତ୍ତନର ବାହନ ରୂପେ ବ୍ୟବହାର କରିପାରେ ଓ କରିବା ଉଚିତ୍ । ସାହିତ୍ୟ କେବଳ ଜୀବିକାର ବା ଚାଟୂକ୍ତିର ବା ଶସ୍ତା ନାମର ଉପାୟ ରୂପେ ବ୍ୟବହୃତ ହେବା, ରେଶମର ରସିକୁ ମହିଁଷିର ବେକରେ ପଘା ରୂପେ ବ୍ୟବହାର କରିବା ଠାରୁ ମଧ ନୀଚତର କର୍ମ । ମୋ ନିକଟରେ ସାହିତ୍ୟର ଏହି ଆଦର୍ଶ କିନ୍ତୁ ନିକଟ ଅତୀତରେ ହିଁ ଧୀରେ ଧୀରେ ପ୍ରକଟିତ ହୋଇଛି । ଏ ଯାବତ୍, ମଧୁର ମାନବିକ ବ୍ୟକ୍ତିର, ମନୁଷ୍ୟ ହୃଦୟର ଆଲୋଡ଼ନ, ସତ୍ୟର ମହିମା ଏବଂ ପ୍ରକୃତି ଓ ମନୁଷ୍ୟର ରୂପ ଯେତେବେଳେ ଯେପରି ଭାବରେ ମୋତେ ପ୍ରଭାବିତ କରିଛନ୍ତି ମୁଁ ସେହିପରି ଲେଖିଆସିଛି । ସେହି ଆକସ୍ମିକ ପ୍ରେରଣାରେ ହିଁ ''ମୁଁ କାହିଁକି ଲେଖେ''ର ଉତ୍ତର । ମୋ ରଚନାରେ ମୋ ଆଦର୍ଶ କେତେଦୂର ପ୍ରତିଫଳିତ ତାହା ପାଠକମାନଙ୍କର କହିବାର କଥା ।

——

## ଗଙ୍ଗାଧରଙ୍କ ମହତ୍ତ୍ୱ

ରଙ୍ଗାଜୀବ ଗଙ୍ଗାଧର – ଯାହା ସେ ହାତକୁ ନେଇଛନ୍ତି, ନିଜ ତୂଳିକାର ବର୍ଣ୍ଣବୈଭବରେ ତାକୁ ମହିମାନ୍ୱିତ, ମାଧୁର୍ଯ୍ୟମଣ୍ଡିତ କରି ରଖିଯାଇଛନ୍ତି । ସେ ପ୍ରକୃତରେ ବାଣୀ-ପଦ-ପଦ୍ମ-ବିସ-ଜୀବୀ-ରାଜହଂସ । ଦାରିଦ୍ର୍ୟର ପଙ୍କିଳ ପଲ୍ୱଳ ତାଙ୍କୁ ଆଶ୍ରା କରିବାକୁ ପଡ଼ିଥିଲେହେଁ ତାଙ୍କର ସ୍ୱର୍ଗୀୟ, ନିଷ୍ପାପ, ଅକଳଙ୍କ ଶୁଭ୍ରତା ସେ କେବେ ହେଲେ ହରାଇନାହାନ୍ତି ଓ ତାଙ୍କ ସୃଷ୍ଟିରେ ମଧ୍ୟ ଆମେ ପାଉଁ ବାଣୀପଦ କମଳଦଳର ବର୍ଣ୍ଣ ଓ ସୌରଭ, ଯାହା ଏକାଧାରରେ ପୂତ ଓ ମନୋହର । ଦୀନ ସାଂସାରିକ ଜୀବନର ସକଳ ଜଞ୍ଜାଳ, ସକଳ ଲାଞ୍ଛନା, ଝଡ଼ଝଞ୍ଜା ମଧ୍ୟରେ ସେହି ସୁଧାସ୍ୱାଦୀ ସ୍ୱର୍ଗଚ୍ୟୁତ ଅମୃତସନ୍ତାନ, ଚାକ୍ଷୁଷ ଜଗତର ଅନ୍ତରାଳରେ ଯେଉଁ ସାର୍ବଭୌମ ଆନନ୍ଦର ମହିମାମୟ ପରିବେଶ, ଯୁଗେ ଯୁଗେ ଋଷି, ସାଧକ, କବି ଓ ବିଜ୍ଞାନୀବୃନ୍ଦ ଯାହାର ସନ୍ଧାନ ପାଇଛନ୍ତି, ତା'ର ପ୍ରାକ୍ ଜନ୍ମର ପରିଚୟ ସେ କେବେହେଲେ ଭୁଲିଯାଇ ନ ଥିଲେ । ସେଥିପାଇଁ ସିନା ଦାରିଦ୍ର୍ୟନିଷ୍ପେଷିତ କବି ଜୀବିକାର୍ଜନଜନିତ ଶ୍ରମରେ ବ୍ୟସ୍ତ ଥାଇ ସୁଦ୍ଧା ଉଦାତ୍ତକଣ୍ଠରେ ଗାଇଛନ୍ତି –

''ବିଶ୍ୱ ଦେଖ ମଧୁ- ମୟରେ ଜୀବନ
ବିଶ୍ୱ ଦେଖ ମଧୁମୟ,
ମଧୁର ଝରଣ କରିବ ହରଣ
ତୋ ପାପ ମରଣ ଭୟରେ, ଜୀବନ ।

× × ×

ବିଶ୍ୱନାଥଙ୍କର କରୁଣା କନ୍ଦର
ମଧୁ ଝର ଜନ୍ମସ୍ଥଳ,
ଚାହିଁ ଝର ପ୍ରତି ଉଚ୍ଚେ କଲେ ଗତି
ପାଇବୁ କରୁଣାଚଳ ରେ, ଜୀବନ ।
ହେଲେହେଁ ତୁ ସାନ କରୁଣା ନିଧାନ
ଲାଭେ ନ ହେବୁ ନିରାଶ ରେ, ଜୀବନ ।''

ସମଗ୍ର ଓଡ଼ିଆ ସାହିତ୍ୟରେ ପାରିପାର୍ଶ୍ୱିକ କ୍ଷୁଦ୍ରତା ଓ ଦୀନତାକୁ ସମ୍ପୂର୍ଣ୍ଣ ରୂପେ ପାସୋରିଦେଇ ବା ଉପେକ୍ଷା କରି କେଉଁ ଅମୃତସଂଧାନୀ କବି ଏପରି ଆନନ୍ଦ

ମହିମାର ସଂବାଦ ପ୍ରଚାର କରୁଛି ? ଆମର ଅଧିକାଂଶଙ୍କର ଜନ୍ମସ୍ଥଳ ଦାରିଦ୍ର୍ୟର ପଙ୍କମାଟି; କିନ୍ତୁ କିଏ ଏପରି ନିଜ ଆତ୍ମାରେ ପଙ୍କର କୌଣସି ହେଲେ ଚିହ୍ନ ନ ରଖି ପ୍ରସ୍ଫୁଟିତ, ଦିବ୍ୟସୁନ୍ଦର ପଙ୍କଜ ଉଜ୍ଜ୍ୱଳ ସୌରଲୋକ ଆଡ଼କୁ ଚାହିଁଲା ପରି ଦିବ୍ୟସୃଷ୍ଟିର ମୁକୁଟ ଘେନି ବିକଶିତ ହୋଇପାରିଛି ?

କିନ୍ତୁ ସେହି ଦିବ୍ୟଦର୍ଶନ କବି ଏଣେ ପୁଣି ଦେଶବାସୀଙ୍କୁ ଦୈନନ୍ଦିନ ଜୀବନରେ, ଗ୍ରାମରେ ଓ ନଗରରେ ପଞ୍ଚାୟତଶାସନର ଉପକାର ବୁଝାଇ କି ସୁନ୍ଦର ଉପଦେଶ ଦେଉଛନ୍ତି –

''ବାଛି ବାଛି ସୁଧାର୍ମିକ ପାପଭୀରୁ ଜନ
ହେବ ଯଦି ପଞ୍ଚାୟତ ଗଠନ, ସୁଜନ,
ଶିକ୍ଷା ଦିଆଯାଉଥିବ ବିଚାରବିଧାନ
କରାଯାଉଥିବ ବାରବାର ସାବଧାନ ।
ପଞ୍ଚହସ୍ତେ ନ୍ୟସ୍ତ ହେଲେ ଲଘୁ ଅଧିକାର
ଅବଶ୍ୟ ଦେଶର ହେବ ବହୁ ଉପକାର ।
ବହୁ ଅର୍ଥ ପ୍ରଜାଙ୍କର ଗୃହେ ଯିବ ରହି
ନ ପାରିବ ଜାଲିଆଙ୍କ କୋପାନଳ ଦହି ।
× × ×
ଯେଉଁ ରାଜ୍ୟେ ଧରମର ପ୍ରଭା ହୁଏ ନାଶ
ପାପ-ଅନ୍ଧକାର ତାକୁ କରିଦିଏ ଗ୍ରାସ ।
× × ×
ଯହିଁ ଧର୍ମ ତହୁଁ କରେ ଲୋଭ ପଳାୟନ
ଲୋଭ ନାଶେ ସୁନିପୁଣ ଧର୍ମପରାୟଣ ।
× × ×
ଲୋଭର ଜନକ ଧନ, ଧନକୁ ଯେ ଛାର
ମଣନ୍ତି, ସେ କରିଥାନ୍ତି ନିର୍ମଳ ବିଚାର ।''

(ପଞ୍ଚାୟତ – ଅର୍ଘ୍ୟଥାଳୀ)

ମନେପଡ଼େ ଇଂରେଜ କବି ୱାର୍ଡ଼ସ୍ ୱାର୍ଥଙ୍କ ଏକ ଉପମା । କବି ଗଙ୍ଗାଧର ଇଂରେଜ କବିଙ୍କର ଭରତପକ୍ଷୀ ପରି ସ୍ୱର୍ଗ ଓ ସଦ୍ମ ଏହି ଉଭୟ ସମଧର୍ମୀ ବିନ୍ଦୁ ସଙ୍ଗେ ଯେପରି ମଧୁର ସମ୍ପର୍କ ରଖିପାରିଥିଲେ । ଅବଶ୍ୟ ସ୍ୱର୍ଗ ଓ ସମଧର୍ମୀ ସେହିମାନଙ୍କ ନିକଟରେ, ଯେଉଁମାନେ ସ୍କାଇଲାର୍କ ପରି ଭୂଇଁରେ ବସା ବାନ୍ଧିଥିଲେ ମଧ ଇଚ୍ଛାମାତ୍ରେ

ଉପରକୁ ଉଡ଼ିଯାଇପାରନ୍ତି – ଅଦୃଶ୍ୟ ଅନ୍ତରୀକ୍ଷର ଶାନ୍ତ, ବିଶୁଦ୍ଧ ନୀଳିମାମୟ ଜଗତକୁ ଏବଂ ପୁଣି ଫେରିଆସିପାରନ୍ତି ଗୃହସଂସାରର ସ୍ଥୂଳତାକୁ । ଗଙ୍ଗାଧର ସାମାଜିକ ମନୁଷ୍ୟ ଭାବରେ ଦୀନ, ଅର୍ଦ୍ଧଶିକ୍ଷିତ ତନ୍ତୁବାୟ ଥିଲେହେଁ ଆତ୍ମାରେ ଥିଲେ ସୂକ୍ଷ୍ମଗଗନବିହାରୀ । ସେଥିପାଇଁ ତାଙ୍କ ରଚନାରେ ଆମେ ତାଙ୍କ ଆର୍ଥିକ ଦାରିଦ୍ର୍ୟର କୌଣସି ଚିହ୍ନ ହିଁ ଦେଖିବାକୁ ପାଉନା । ତାହା ଦର୍ଶନ ଓ ଅନୁମାନର ସୌନ୍ଦର୍ଯ୍ୟ ସମ୍ପଦରେ ଋଦ୍ଧିମନ୍ତ, ବାଣୀଙ୍କର ଅଶ୍ରୁତ ବୀଣାଝଙ୍କାରର ରସମାଧୁର୍ଯ୍ୟରେ ତାହା ଏଡ଼େ ଶ୍ରବଣ-ସୁଖଦାୟୀ ।

ମେହେର କବି ରାଧାନାଥଙ୍କ ପ୍ରତିପତ୍ତିକାଳ ଭିତରେ ଜନ୍ମ ହୋଇଥିଲେ ବୋଲି ଅନ୍ୟମାନଙ୍କ ପରି ତାଙ୍କୁ ମଧ୍ୟ ରାଧାନାଥଙ୍କର ଉପଗ୍ରହ ମାତ୍ର କହିବା ଏକାନ୍ତ ଅଯୌକ୍ତିକ । ରାଧାନାଥ ଓ ଗଙ୍ଗାଧରଙ୍କ ରଚନା ମଧ୍ୟରେ ସାମ୍ୟ ଯତ୍‌କିଞ୍ଚିତ୍, କିନ୍ତୁ ଭିନ୍ନତା ପ୍ରଚୁର । ଦୁଇ କବି-ପ୍ରତିଭାର ଉପାଦାନ ଭିନ୍ନ ଏବଂ ତେଣୁ ବିକାଶ ମଧ୍ୟ ଭିନ୍ନ । ରାଧାନାଥ ଯଦି ଏକ ସୁଦୃଶ୍ୟ ପର୍ବତ ବୋଲି ଧରାଯାନ୍ତି, ଗଙ୍ଗାଧରଙ୍କୁ ପାହାଡ଼ତଳକୁ ହ୍ରଦ ଜଳରେ ସେହି ପାହାଡ଼ର ପ୍ରତିବିମ୍ବ ବୋଲି ଧରାଯାଇ ନ ପାରେ । ଗଙ୍ଗାଧର ଛୋଟ ହେଉନ୍ତୁ ବରଂ, ରାଧାନାଥଙ୍କ ପରି ଆଉ ଏକ ସୁଦୃଶ୍ୟ ପର୍ବତ । ବରଂ କମନୀୟତାରେ ଏହି ପର୍ବତ ବହୁ ବୃହତ୍ତମ ପର୍ବତଠାରୁ ଅଧିକ ଚିତ୍ତହାରକ ।

ସାହିତ୍ୟର ଇତିହାସରେ ଦେଖାଯାଇଛି ଯେ ଅପେକ୍ଷାକୃତ ନ୍ୟୂନ ପ୍ରତିଭା ଦ୍ୱାରା ନୂତନ ସାହିତ୍ୟକ ଯୁଗମାନଙ୍କର ପ୍ରବର୍ତ୍ତନ ହୋଇଛି; ଅଥଚ ଉଚ୍ଚତର ମୌଳିକ ପ୍ରତିଭା ପୁରୋଗାମୀମାନଙ୍କର ଅନୁକରଣ ଭିତରେ ହିଁ ଫୁଟିଉଠିଛି । ସେକ୍‌ସ୍‌ପିୟରଙ୍କର କୌଣସି ଶୈଳୀ ତାଙ୍କର ନିଜସ୍ୱ ନୁହେଁ । ସେ ଯାହା ଲେଖିଛନ୍ତି, ତାଙ୍କର ଠିକ୍ ପୂର୍ବରୁ ଅନ୍ୟମାନେ ପ୍ରଥମ କରି ସେସବୁ ଇଂରାଜୀ ସାହିତ୍ୟରେ ପ୍ରବର୍ତ୍ତନ କରି-ଯାଇଥିଲେ । ଅସାଧାରଣ ପ୍ରତିଭା ଫଳରେ ସେକ୍‌ସ୍‌ପିୟର କିନ୍ତୁ ଯେଉଁଥିରେ ହାତଦେଲେ, ତା'ର ଉତ୍କର୍ଷ ଅନ୍ୟ ସମସ୍ତଙ୍କଠାରୁ ବଳିଯାଇଛି । ମାର୍ଲୋ ଓ ୱାଟ୍ ନବ ପ୍ରବର୍ତ୍ତକ ସତ, କିନ୍ତୁ ପ୍ରତିଭା ହିସାବରେ ସେକ୍‌ସ୍‌ପିୟରଙ୍କଠାରୁ ଢେର୍ ନ୍ୟୂନ ।

ରାଧାନାଥ ଓଡ଼ିଆ କାବ୍ୟ-ସାହିତ୍ୟରେ ନବଯୁଗର ପ୍ରବର୍ତ୍ତକ ହେଲେହେଁ ମୁଁ ମନେକରେ ଯେ ପ୍ରତିଭାର ନିଛକ୍ ମୌଳିକତାର ବିଚାରରେ ଗଙ୍ଗାଧର ଉଚ୍ଚତର ଆସନର ଯୋଗ୍ୟ । ସେ ପ୍ରତିଭା ତା'ର ପ୍ରକୃଷ୍ଟ ବିକାଶ ପାଇଁ ଅବକାଶ ପାଇ-ପାରିଲାନି, ତେଣୁ ତାର ସିଦ୍ଧି ଏତେ ଅଳ୍ପ । କିନ୍ତୁ ସେଇ ସ୍ୱଳ୍ପ କୃତି ଭିତରେ ଆମ୍ଭେମାନେ ଉଜ୍ଜ୍ୱଳ ମୌଳିକତାର ଯେଉଁ ପରିଚୟ ପାଉଁ, ସେଥିରେ ସ୍ତବ୍‌ଧ ହୋଇ ଏହା ହିଁ ବିଚାରୁ, "ଉପଯୁକ୍ତ ଭାବରେ ବର୍ଦ୍ଧିତ ହୋଇଥିଲେ ଏ ବୃକ୍ଷ ନ ଜାଣୁ

କି ଫଳ ପ୍ରସବ କରିପାରିଥାନ୍ତା !''

ରାଧାନାଥ, ମଧୁସୂଦନ, ନନ୍ଦକିଶୋର ପ୍ରଭୃତି ଗଙ୍ଗାଧରଙ୍କ ସମସାମୟିକ ଲବ୍‌ଧପ୍ରତିଷ୍ଠ ସାହିତ୍ୟିକମାନେ ନାନା ଭାଷା, ବିଶେଷତଃ ଇଂରାଜୀ ଭାଷାରେ ସୁପଣ୍ଡିତ ଥିଲେ । ସମସ୍ତଙ୍କ ଭିତରେ ଗଙ୍ଗାଧର ଶିକ୍ଷାରେ ଓ ଧନରେ ନ୍ୟୂନତମ । ଜୀବିକା ପାଇଁ ତନ୍ତ-ଚର୍ଚ୍ଚା ଦିନଯାକ କରି ଗ୍ରନ୍ଥଚର୍ଚ୍ଚା ପାଇଁ କେତେ ଅବସର ବା ମିଳନ୍ତା ? ପ୍ରତିଭାର ଅଭିଶାପଭୂମି ଓଡ଼ିଶାରେ ଗଙ୍ଗାଧରଙ୍କ ପ୍ରତିଭା ସବୁଠାରୁ ଅଭିଶପ୍ତତମ ।

ଓଡ଼ିଆ ଭାଷାରେ ଯାହା କିଛି ପ୍ରାଚୀନ ବା ନବୀନ କାବ୍ୟକବିତା, ତାହା ହିଁ ଥିଲା ଗଙ୍ଗାଧରଙ୍କ ମାନସିକ କ୍ଷୁଧାର ପ୍ରଧାନ ଖାଦ୍ୟ । ଭଞ୍ଜ, ଅଭିମନ୍ୟୁଙ୍କ ସଙ୍ଗେ ରାଧାନାଥ ଓ ମଧୁସୂଦନଙ୍କଠାରୁ ରସ ସଂଗ୍ରହ କରି ହିଁ ତାଙ୍କର ଯାହା କିଛି ମାନସିକ ଅଭିବୃଦ୍ଧି ଘଟିଥିଲା । ତେଣୁ ତାଙ୍କର ପ୍ରତିଭା ଯାହା କିଛି ଦେଇପାରିଛି, ତାହା କେବଳ ଏହି ସଂକୀର୍ଣ୍ଣ ସୀମା ଭିତରେ ହିଁ ଆବଦ୍ଧ । ସେ ଯଦି ଉଚ୍ଚତର ଆକାଶକୁ ଉଡ଼ିବାର ଅବକାଶ ପାଇଥାନ୍ତେ, ଓଡ଼ିଶା ସାହିତ୍ୟ ଆହୁରି ବହୁଭାବରେ ତାଙ୍କଠାରେ ଋଣୀ ହୋଇଥାନ୍ତା ।

ସିଦ୍ଧି ସ୍ୱଳ୍ପ ହେଲେହେଁ, ପରିସର ସଂକୀର୍ଣ୍ଣ ହେଲେହେଁ, ଗଙ୍ଗାଧରଙ୍କ ପ୍ରତିଭାର ମୌଳିକତା ଫଳରେ ସେଥିରେ ଆମ୍ଭେମାନେ ଦେଖିବାକୁ ପାଉଁ ଓଡ଼ିଆ ସାହିତ୍ୟର ପ୍ରାଚୀନ ଓ ନବୀନ ଯୁଗର ଅପୂର୍ବ ସମନ୍ୱୟ । ରାଧାନାଥଙ୍କର ଅର୍ଥର ପ୍ରାଞ୍ଜଳତା ସଙ୍ଗେ ଭଞ୍ଜୀୟ ଛାନ୍ଦମାଧୁର୍ଯ୍ୟର ମଧୁର ମିଳନ ଘଟିଛି ମେହେରଙ୍କ ଲେଖନୀରେ । ଶବ୍ଦଚାତୁର୍ଯ୍ୟ ଅଛି, ଅଥଚ ଅକାରଣ ଶବ୍ଦାଡ଼ମ୍ବର ନାହିଁ; ଉପମା ଉପମାନର ପ୍ରାଚୀନ ବାହୁଲ୍ୟ ଅଛି, ଅଥଚ ସେ ସମସ୍ତ ତାଙ୍କର ନିଜସ୍ୱ, ପ୍ରାଚୀନ ଲିଖନରୀତି ଭିତରେ ନବଯୁଗର ଆଦର୍ଶର ମନୋଜ୍ଞ ଚିତ୍ରଣ ଏବଂ ପ୍ରାଚୀନ ଆଦର୍ଶକୁ ନବଯୁଗର ରୁଚି ଅନୁକୂଳ କରି ପରିସ୍ଫୁଟନ, ଏ ସମସ୍ତ ଗଙ୍ଗାଧରଙ୍କ ମୌଳିକତାର ଚିହ୍ନ । ଏସବୁ ଦିଗରେ ସେ ନିଜେ ହିଁ ନିଜର ଗୁରୁ । ଗୁଣଗ୍ରାହୀ ରାଧାନାଥ ତେଣୁ 'କବିଗୁରୁ' ବୋଲି ସମ୍ମାନିତ ହେଉଥିଲେହେଁ ସମ୍ବଲପୁରୀ ତନ୍ତୀର ପ୍ରତିଭାକୁ ବାରମ୍ବାର ନମସ୍କାର ଜଣାଇଛନ୍ତି ।

ଗଙ୍ଗାଧରଙ୍କ ରଚନା ସଙ୍ଗୀତମୟ, ଶ୍ରୁତିସୁଖକର, ସୁଲଳିତ । ଏଇ ଗୁଣରେ ତାଙ୍କର କାବ୍ୟକବିତା ଉତ୍କଳ ଦେଶରେ ସୁପ୍ରଚାରିତ । ଏ ଗୁଣର ଆଲୋଚନା ପ୍ରାୟ ନିଷ୍ପ୍ରୟୋଜନ । କିନ୍ତୁ କବିର ପ୍ରକୃତ ନିକଷ ଦି'ଟା ମିଠା କଥା ଶୁଣେଇବାରେ ନୁହେଁ, ତା'ର ପ୍ରକୃତ ବିଚାର ଏହି ଯେ ତାଙ୍କର ସମଗ୍ର ରଚନା ଭିତରେ ଆମ୍ଭେମାନେ କି ପ୍ରକାର ବ୍ୟକ୍ତିତ୍ୱର ସମ୍ମୁଖୀନ ହେଉ ? ଜଗତଟାକୁ କବି ନିଜ ଆଖିରେ ଦେଖିବାକୁ

ଚେଷ୍ଟାକରିଛି, ନା କେବଳ ଶୁଣାକଥାର ଆବୃତ୍ତି ମାତ୍ର କରିଚାଲିଛି ? ନାନା ବାଧାବିପଦ ଭିତରେ ଗତି କରି ମଧ୍ୟ ଜୀବନରେ ସେ କିଛି ସତ୍ୟ, କିଛି ଚିରନ୍ତନ ସନ୍ଧାନ ପାଇଛି, ନା କେବଳ ଚିରପରିବର୍ତ୍ତମାନ କ୍ଷୟିଷ୍ଣୁ ଓ କ୍ଷଣସ୍ଥାୟୀ ଦୈନନ୍ଦିନ ଘଟଣାପ୍ରବାହରେ ସେ ଅନ୍ୟମାନଙ୍କ ପରି ମୁହ୍ୟମାନ ହୋଇପଡ଼ିଛି ? ସୌନ୍ଦର୍ଯ୍ୟ ଓ ମାଧୁର୍ଯ୍ୟ ଭିତର ଦେଇ କବି ସତ୍ୟର ସନ୍ଧାନ ଆମକୁ ଦେବାକୁ ଚେଷ୍ଟା କରିଛି ନା ନାହିଁ ?

ଶ୍ରବଣସୁଖଦାୟୀ ଶବ୍ଦ-ଶିଳ୍ପୀ ଭାବରେ ଗଙ୍ଗାଧରଙ୍କ ସ୍ଥାନ ତ ଅବିସମ୍ବାଦୀ, ଉଚ୍ଚାଦର୍ଶବାଦୀ, ସତ୍ୟଦ୍ରଷ୍ଟା, ଭାବୁକ ଭାବରେ ମଧ୍ୟ ତାଙ୍କର ସ୍ଥାନ ତାଙ୍କର ସମସ୍ତ ସମସାମୟିକମାନଙ୍କ ମଧ୍ୟରେ ଉଚ୍ଚତର । ତାଙ୍କର କାବ୍ୟାବଳି ଓ କବିତାବଳିକୁ ସମଗ୍ର ଭାବରେ ବିଚାର କରି ବସିଲେ ସେସବୁର ତଳେ ଆମ୍ଭେମାନେ ଏପରି ଏକ ଶୁଦ୍ଧ-ସଚେତନ ବ୍ୟକ୍ତିତ୍ୱର ପରିଚୟ ପାଉଁ, ଯାହା କି ଗଭୀର ସମ୍ମାନର ଯୋଗ୍ୟ । କବିଙ୍କ ଜୀବନୀ ଆମ୍ଭମାନଙ୍କୁ ଯତ୍‌କିଞ୍ଚିତ୍ ଜଣା । ସେଥିରେ ମଧ୍ୟ ଆମ୍ଭେମାନେ ଏହି ଭକ୍ତିଭାଜନ ବ୍ୟକ୍ତିତ୍ୱର ସ୍ପଷ୍ଟ ବିକାଶ ଦେଖିବାକୁ ପାଉଁ । ଦରିଦ୍ର ହେଲେହେଁ ଗଙ୍ଗାଧର କେବେହେଲେ କାହାର ଅନୁଗ୍ରହପ୍ରାର୍ଥୀ ହୋଇ ନ ଥିଲେ। ଅସାଧାରଣ ପ୍ରତିଭାର ଅଧିକାରୀ ହେଲେହେଁ ସେ ନିତାନ୍ତ ବିନୟୀ ଥିଲେ। ଘୋର ଅଭାବସତ୍ତ୍ୱେ ସେ ସୁଲଭ ଓ ସର୍ବବାଞ୍ଛିତ ନୀଚ ପ୍ରଲୋଭନସବୁକୁ ପଦାଘାତ କରିପାରିଥିଲେ । ନିଜ ରଚିତ ପୁସ୍ତକାବଳି ଲେଖାସରିଲା ପରେ ବର୍ଷ ବର୍ଷ ଧରି ଘରେ ପଡ଼ିରହିଥିଲେ ମଧ୍ୟ କେବେ କେଉଁ ରାଜା ବା ଧନିକର ମିଥ୍ୟା ପ୍ରଶସ୍ତି ଗାଇ ସେଗୁଡ଼ିକୁ ଛପେଇଦେବାର ଇତର ଅନୁରୋଧ ସେ କରି ନାହାନ୍ତି । ଦରିଦ୍ର ହେଲେହେଁ ସେ ସ୍ପଷ୍ଟବାକ୍, ଅକୁତୋଭୟ, ନିରନ୍ତର ଜାତି ଓ ଦେଶର ଉପଚିକୀର୍ଷୁ । ମାନବସମାଜର ବହୁବିଧ ବୀରଙ୍କ ଭିତରେ କାର୍ଲାଇଲ ସାହିତ୍ୟିକ-ବୀରର ମଧ୍ୟ ବର୍ଣ୍ଣନା କରିଛନ୍ତି । ଆମର ପ୍ରିୟକବି ଗଙ୍ଗାଧର ମେହେର ଦରିଦ୍ର ହେଲେହେଁ ସେହିପରି ଏକ ସାହିତ୍ୟିକ ବୀର । ଧନାଭାବ ଓ ଶିକ୍ଷାଭାବର ଜୀବନବ୍ୟାପୀ ଦ୍ୱିମୁଖୀ ସଂଗ୍ରାମ ଏହି ବୀରପୁରୁଷଙ୍କର ବ୍ୟକ୍ତିତ୍ୱକୁ ଚାପିଦେଇ ପାରି ନାହିଁ । ତାହା ତାଙ୍କର ସାମାଜିକ ଓ ସାହିତ୍ୟିକ ଉଭୟ ଜୀବନରେ ପରିବ୍ୟକ୍ତ ହୋଇଉଠିଚି ।

ଗଙ୍ଗାଧରଙ୍କ କାବ୍ୟ ସୃଷ୍ଟି ଭିତରେ ଆମେ ତାଙ୍କର ବ୍ୟକ୍ତିତ୍ୱର ସନ୍ଧାନ କେଉଁଠି ପାଉଁ ? ତାହା କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ ନାହିଁ । ତାହା ତାଙ୍କ କାବ୍ୟାବଳି ଓ କବିତାବଳିରେ ଓତପ୍ରୋତ ଭାବରେ ମିଶି ରହିଛି । ତାହା କାବ୍ୟ ଓ କବିତାର ବିଷୟବସ୍ତୁରେ ନାହିଁ, ଅଛି କବିଙ୍କ ଲେଖନୀରେ, ସେସବୁର ଅନ୍ୟଠାରୁ ବିଭିନ୍ନତା

ଚିତ୍ରଣରେ, ସେସବୁକୁ କବି କି ଭାବରେ ତାଙ୍କର ନିଜ ଦୃଷ୍ଟିକୋଣରୁ ଦେଖିପାରିଛନ୍ତି ତାହା ଜାଣିବାରେ ।

ତାଙ୍କ କାବ୍ୟ-କବିତାବଳିର ସମଗ୍ର ବିଚାରକରି ଦେଖୁଁ ଯେ ଗଙ୍ଗାଧର ବିଦଗ୍ଧ ଶବ୍ଦ ଚିତ୍ରକର ତ ଥିଲେ, ତାହା ଛଡ଼ା ସେ ଥିଲେ ବିଚାରବନ୍ତ, ଦେଶପ୍ରେମୀ, ସମାଜର ସ୍ପଷ୍ଟ ସମାଲୋଚକ, ଉଚ୍ଚକୋଟୀର ନୈତିକ ଆଦର୍ଶବାଦୀ, ସାର୍ବଜନୀନ ମାନବ, ପ୍ରଗତିଶୀଳ ନାଗରିକ ଓ ଈଶ୍ୱରଙ୍କ ବିନୀତ ଭକ୍ତ । ସର୍ବକ୍ଷେତ୍ରରେ ତାଙ୍କର ଲେଖନୀ ସଂଯତ, ସ୍ଥିତପ୍ରଜ୍ଞ । ଯାହା ଯେତିକି ଦରକାର ସେତିକି କହେ, ସତ୍ୟ କଥାଟି କହେ, ଅଥଚ ସୁନ୍ଦର କରି କହେ ।

କବି ନିଜ ଜନ୍ମଭୂମି ଓଡ଼ିଶାକୁ ଯେ କିପରି ଭଲପାଉଥିଲେ, ତାହା 'ଉତ୍କଳ-ଲକ୍ଷ୍ମୀ'ରେ ପରିସ୍ଫୁଟ । ତାହ ଏକ କାଞ୍ଚନିକ କାବ୍ୟ । କଳ୍ପ-ଜଗତରେ କବିଙ୍କ ଆଖିକୁ ଉତ୍କଳ ସର୍ବ-ସୁନ୍ଦର ଦିଶିଲେହେଁ ଓଡ଼ିଆ ଜାତି କେଉଁ ନିମ୍ନସ୍ତରରେ ପଡ଼ିରହିଥିଲା, କବି ତାହା ଜାଣିଥିଲେ ଓ ଅନେକ କବିତାରେ ଦେଶବାସୀଙ୍କୁ ତାଙ୍କର ଦୋଷ ଦେଖାଇବାକୁ ଛାଡ଼ିନାହାନ୍ତି । 'ଉଦ୍‌ବୋଧନ' କବିତାରେ ତେଣୁ କବି ଓଡ଼ିଆ ଜାତିକୁ ଲକ୍ଷ୍ୟକରି କହିଛନ୍ତି –

''ଉଚ୍ଚପଦ ପାଇଁ ଡାକିଲେ ରାଜନ,
କେତେ ଜଣ ଅଛ ତହିଁକି ଭାଜନ ?
ପ୍ରତିବେଶୀଙ୍କର ସହିତ ତୁଳନା
କରି କର ନିଜ ମଧ୍ୟରେ କଳନା ।
ତହିଁରୁ ବୁଝିବ ନିଜେ କେତେ ହୀନ,
କରିଅଛ ପୁଣି ମାତୃଭାଷା ହୀନ ।
ମାତୃଭାଷା ପୋଥି ଛୁଇଁବାକୁ କରେ,
ଅନ୍ୟ କେଉଁ ଜାତି ଲଜ୍ଜାବୋଧକରେ ?''

ଓଡ଼ିଆମାନଙ୍କର ବିଦ୍ୟାହୀନତା ଓ ଆଳସ୍ୟକୁ କବି ବାରମ୍ବାର ନାନା ସ୍ଥାନରେ ଲକ୍ଷ୍ୟ କରି ବାଣ ଛାଡ଼ିଛନ୍ତି –

''କର୍ମ-ବାଷ୍ପରଥ ଧାଇଁ ଶଙ୍ଖସ୍ୱନେ
ଆସି ଏବେ ଲାଗିଗଲାଣି ଷ୍ଟେସନେ,
ଚଢ଼ିବା ସମୟ ହେଲାଣି ନିକଟ
ଶୋଇପଡ଼ିଅଛ ନ କିଣି ଟିକଟ ?''

(ଉଦ୍‌ବୋଧନ, ଅର୍ଘ୍ୟଥାଳୀ)

ଅନ୍ୟ ସ୍ଥାନରେ –

"ଦେଖ ବହୁଛି ହେ ଈଶ୍ୱର ଆଶିଷଧାର
ଜ୍ଞାନ, କର୍ମ ଗଙ୍ଗା ଯମୁନା ପରାଏ
ଭବୁ କରିବାକୁ ପାର ।
ଦୁହିଁଙ୍କର ଯହିଁ ସଙ୍ଗମ ତହିଁରେ
ବାଞ୍ଛାବଟ ହୁଏ ଜାତ,
ମିଳଇ ସେ ବଟ- ତଳେ ବସି ଯାହା
ବାଞ୍ଛି ବଳାଇବ ହାତ ।
ସେ ଧାର ଯୁଗଳ ଉତ୍କଳ-ଭୂମିର
ବହୁ ଦୂରେ ଅଛି ରହି,
କୁଲ୍ୟା ଖୋଲିବାର ପ୍ରୟାସ ନ କଲେ
ଆସି ନ ପାରିବ ବହି ।" (ଅର୍ଘ୍ୟଥାଳୀ)

ଏ ଭାବର ଯଥାର୍ଥତା କେବଳ କବିଙ୍କ ସମୟରେ ସତ୍ୟ ନ ଥିଲା, ତାହା ସବୁଯୁଗରେ ହିଁ ସତ୍ୟ । ନବଜାଗ୍ରତ ଉତ୍କଳରେ କବିଙ୍କର ଜ୍ଞାନ ଓ କର୍ମର ମଧୁର ମିଳନର ସ୍ୱପ୍ନ ବାସ୍ତବକୁ ଆସିଲା ପରି ଲାଗୁଛି ।

କବିଙ୍କର ଏହି ଦେଶ-ପ୍ରୀତି ଦରକାର ବେଳେ କିପରି ସାର୍ବଜନୀନ ବିଶ୍ୱ-ପ୍ରୀତିରେ ରୂପାନ୍ତରିତ ହୋଇଯାଉଥିଲା, ତାହା ନିମ୍ନ କବିତାଂଶରେ ମଧୁରଭାବରେ ପ୍ରକାଶିତ ହୋଇଛି –

"ଜ୍ଞାନବଳେ ଯେବେ୍ ଜାଣେ ସମସ୍ତଙ୍କ
ଜନକ, ଜଗତପତି
ସହୋଦର ଜ୍ଞାନ କରେ ଅବନୀର
ମାନବସମାଜ ପ୍ରତି ।
ତେବେ ସେ ଜାଣଇ ଯେ କରଇ ଯେତେ
ଲୋକଙ୍କର ଉପକାର
ବିଶ୍ୱପତିଙ୍କର ବିଶ୍ୱଗୃହେ ଅଟେ
ସେ ତେତେ ଯୋଗ୍ୟ କୁମର ।"

(ମାତୃଭୂମି, ଅର୍ଘ୍ୟଥାଳୀ)

ଏପରି ଉଦାରମନା କବିଙ୍କ ଆଖିରେ ନିଜ ଦେଶ ଓ ଜାତିର ଅନ୍ୟାୟ ଅନାଚାର ମଧ୍ୟ ଯେ ଅସହ୍ୟ ହେବ, ଏଥିରେ ସନ୍ଦେହ କଅଣ ? କବି ସାମାଜିକ ଜୀବନରେ

ଅତ୍ୟନ୍ତ ବିନୟୀ ଓ ଅମାୟିକ ଥିଲେ ବୋଲି ଜାଣୁ । କିନ୍ତୁ ତା' ବୋଲି କେଉଁ କେଉଁ ଲୋକ ଭଣ୍ଡ-ପ୍ରାଧାନ୍ୟର ଆବରଣ ତଳେ ସମାଜର କଣ୍ଟକ ସ୍ୱରୂପ, ତାହା କି ସେ ଜାଣୁ ନ ଥିଲେ ? ଏବଂ ଜାଣି ମଧ୍ୟ ସେ କି ଚୁପ୍ ହୋଇ ରହିବା ଲୋକ ? 'ତାଙ୍କୁ ମଧ୍ୟ ବୋଲିଥାନ୍ତି ଧର୍ମ ଅବତାର' ଓ ଅନ୍ୟାନ୍ୟ କବିତାରେ ସମାଜର ଏହି ବ୍ୟାଧିଗୁଡ଼ିକ ପ୍ରତି କବି ତୀକ୍ଷ୍ଣ ବାଣ ପ୍ରୟୋଗ କରିଥିବାର ଆମେ ଦେଖୁଁ –

''ଜୀବନ ଯା ଲକ୍ଷ ଲକ୍ଷ ଲୋକଙ୍କର ଭାର,
ତାକୁ ମଧ୍ୟ ବୋଲିଥାନ୍ତି ଧର୍ମ-ଅବତାର ।''

ନିମ୍ନଲିଖିତ ଶ୍ଳୋକଟି ଠକ ଓ ଅତ୍ୟାଚାରୀ ସରକାରୀ କର୍ମଚାରୀମାନଙ୍କ ପ୍ରତି କିପରି ପ୍ରଯୁଜ୍ୟ ଦେଖନ୍ତୁ –

''ଭ୍ରମଣ ଖରଚ ପାଇଁ ପାଇଥାଏ ଭତ୍ତା
ଖାଇଥାଏ ମୋଡ଼ି ଏଣେ ଦରିଦ୍ରଙ୍କ ମଥା ।
କରୁଥାଏ କ୍ଷମତାର ଅପବ୍ୟବାହାର
ତାଙ୍କୁ ମଧ୍ୟ ବୋଲିଥାନ୍ତି ଧର୍ମ-ଅବତାର ।''

ଏ 'ଧର୍ମାବତାର' ଗୁଡ଼ିକ ସବୁ ଯୁଗରେ ଦେଖାଯାନ୍ତି; ତେଣୁ କବିଙ୍କର ବାକ୍ୟ-ବାଣର ମୂଲ୍ୟ ଚିରନ୍ତନ ।

କବି ପରାଧୀନ ଭାରତରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପ୍ରୌଢ଼ ବୟସ-ବେଳକୁ ଦେଶରେ ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହେଲା । କବି ତରୁଣ ଥିଲେ ହୁଏତ ସେ ଆନ୍ଦୋଳନରେ ଯୋଗଦେଇଥାନ୍ତି । କିନ୍ତୁ ଦାରିଦ୍ର୍ୟ ଭିତରେ, ପ୍ରୌଢ଼ ବୟସରେ, କୁଟୁମ୍ବର ଭାର ମୁଣ୍ଡରେ ନେଇ ଦେଶ ପାଇଁ ଅଧିକ ଦୁଃଖ ବରଣ କରିବା ତାଙ୍କ ପକ୍ଷରେ ସମ୍ଭବ ନ ଥିଲା । କିନ୍ତୁ ତାଙ୍କର ଜନ୍ମଭୂମିର ସ୍ୱାଧୀନତା-ସ୍ୱପ୍ନ ଓ ବିଦେଶୀ ରାଜା ପ୍ରତି ବିଦ୍ୱେଷ 'ଭାରତୀ-ଭାବନା'ରେ ପ୍ରଚ୍ଛନ୍ନ-ଭାବରେ ବର୍ଣ୍ଣିତ ହେଲେହେଁ ସୁସ୍ପଷ୍ଟ । ବ୍ରିଟିଶ ପୋଲିସ ଭୟରେ ଦରିଦ୍ର କବି ପ୍ରକାଶ୍ୟରେ ରାଜଦ୍ରୋହ କରିପାରିନାହାନ୍ତି । କିନ୍ତୁ କବିଙ୍କର ମର୍ମକଥା ଆଜି ଦେଶବାସୀଙ୍କ ନିକଟରେ ସୁସ୍ପଷ୍ଟ ।

(୧୧)

''ତୁମ୍ଭର ଆଗରେ ତୁମ୍ଭର ପରାଏ
ମୁସଲମାନ ଥିଲେ ଆସି
କୋପନ ସ୍ୱଭାବ ହେଲେହେଁ, ଆମ୍ଭର
ସମସ୍ତ ଥିଲେ ନାହିଁ ଗ୍ରାସି;

କରି ସେ ନ ଥିଲେ ବସନ ହରଣ
ଦୂର ପଦ ସୁତା ଚିନ୍ତି କାର ପାଶ
କରି ନ ଥିଲେ ସେ ପ୍ରେରଣ ।

(୧୨)

ଆମ୍ଭ କର ଧରି ଚାଲି ଚାଲି କ୍ରମେ
ତୁମ୍ଭ ପରାକ୍ରମ ବଢ଼ିଲା
ତୁମ୍ଭ ବିନା ଆମ୍ଭେ ଚଳି ନ ପାରିବୁଁ
କଥା ଶୁଣିବାକୁ ପଡ଼ିଲା,
ଜୀବନ ଜୀବିକା ତୁମ୍ଭରି ହାତରେ,
ଦେଇ ତୁମ୍ଭ ପଦ ଆଶାରେ ରହିଲୁଁ
କାନ୍ଦି ମରୁଅଛୁଁ କାତରେ ।''

(ଭାରତୀ-ଭାବନା)

ଏହି ପଦଗୁଡ଼ିକରେ ଇଂରେଜମାନଙ୍କର ଭାରତବର୍ଷରେ ସର୍ବଗ୍ରାସୀ ଆର୍ଥିକ ଶୋଷଣ କି ସୁନ୍ଦରଭାବରେ ବର୍ଣ୍ଣିତ ହୋଇଛି, ପାଠକେ ଦେଖନ୍ତୁ । ''ଜ୍ୟେଷ୍ଠ ଜାତିର ଅପକର୍ମର ପରିଣାମ'' କବିତାରେ ସାମ୍ରାଜ୍ୟବାଦର ନିନ୍ଦା କରି ଗଙ୍ଗାଧର ସମଗ୍ର ମାନବଜାତିର କବି ହୋଇଉଠିଛନ୍ତି ।

ମେହେର-ପ୍ରତିଭାର ଜାଗ୍ରତ ଚକ୍ଷୁ କେବଳ ଦେଶ ବା ସମାଜରେ ଆବଦ୍ଧ ନଥିଲା । ମନୁଷ୍ୟର ଦୃଷ୍ଟି ଯେତେ ଦୂର ଓ ଯେଉଁଆଡ଼େ ଯାଇପାରେ, ତାହା ସେ ସ୍ଥାନକୁ ଯାଇଥିଲା ଓ ସେ ସେ ସ୍ଥାନରୁ ତତ୍ତ୍ୱ ସଂଗ୍ରହ କରିବାକୁ ଚେଷ୍ଟାକରିଥିଲା । 'ତାରାସୂର୍ଯ୍ୟ', 'ମହାନ୍ଧକାର' ପ୍ରଭୃତି କବିତାମାନଙ୍କରେ କବିଙ୍କର ଦୃଷ୍ଟି ବିଜ୍ଞାନ-ପ୍ରକଟିତ ରହସ୍ୟମୟ ବିଶ୍ୱ ଉପରେ ପତିତ ହୋଇଥିବାର ଦେଖୁଁ । 'ତାରା-ସୂର୍ଯ୍ୟ' କବିତାରେ ତାରା ଓ ସୂର୍ଯ୍ୟର ତୁଳନା କରି କବି ଯେଉଁ ହାସ୍ୟରସର ସୃଷ୍ଟି କରିଛନ୍ତି, ତାହା ବଡ଼ ଉପଭୋଗ୍ୟ ।

''ତୁମ୍ଭ ରାଜ୍ୟେ ଦିଅ ତୁମ୍ଭେ ପ୍ରଚୁର କିରଣ,
ତେଣୁ ସେହିଠାରେ ଥିବ ତୁମ୍ଭ ରବିପଣ ।
ଆମ୍ଭ ରାଜ୍ୟେ ଆମ୍ଭ ରବି କରେ ତମ କ୍ଷୟ,
ଏଣୁ ଆମ୍ଭେ ଚାହୁଁଥାଉଁ ତାଙ୍କର ଉଦୟ ।
ତୁମ୍ଭେ ଯେତେ ବଡ଼ ହେଲେ ଆମ୍ଭର କି ଲାଭ ?

ଆମ୍ଭ ତମ ନାଶିବାକୁ ନାହିଁ ତ ପ୍ରଭାବ ?
ଯେ ଯାହାର ହିତ କରେ ନ ନେଲେ ତା' ନାମ,
ଆମ୍ଭ ଦେଶେ କହୁଁ ତାକୁ ନିମକହାରାମ ।'' (ଅର୍ଘ୍ୟଥାଳୀ)

ଗଙ୍ଗାଧରଙ୍କ ପ୍ରଥମ ଲେଖା ହେଉଛି 'ଅହଲ୍ୟାସ୍ତବ' । ଏଇ ଜୀବନ ଓ ଏ ବିଶ୍ୱର ପରମସ୍ରଷ୍ଟାଙ୍କ ନିକଟରେ ପ୍ରଣତ ହେବାର ବୀଜ ତାଙ୍କର ରକ୍ତଗତ । ପରେ ଅଭିଜ୍ଞତାର ବୃଦ୍ଧି ସଙ୍ଗେ କବି ଓ ଈଶ୍ୱରଙ୍କର ସମ୍ବନ୍ଧ ଏପରି ଏକ ସୂକ୍ଷ୍ମ ଅହୈତୁକ ଶ୍ରଦ୍ଧା, ବିନୟ ଓ ଭକ୍ତିର ସ୍ତରରେ ପହଞ୍ଚିଛି, ଯାର ମନୋରମ ପ୍ରକାଶ ଘଟିଛି 'ଭକ୍ତି' କବିତାରେ । ସମଗ୍ର ଓଡ଼ିଆ ସାହିତ୍ୟରେ ଏ କବିତାଟି ଗୋଟିଏ ବିଶିଷ୍ଟ ରତ୍ନ । ଏ କବିତାରେ ଆମେ କବିଙ୍କୁ ଈଶ୍ୱରଙ୍କର କେବଳ ଗତାନୁଗତିକ ସ୍ତୁତିକାରୀ ଭକ୍ତ-ଭାବରେ ଦେଖୁନା, ଆମେ ଦେଖୁଛୁ, କବି ଈଶ୍ୱର-ତତ୍ତ୍ୱରେ କେତେଦୂର ପରିଚିତ ବନ୍ଧା ଗତଗୁଡ଼ିକର ଉପରକୁ ଉଠିପାରିଥିଲେ । ନିରାକାରବାଦୀମାନେ ପୌତ୍ତଳିକତାକୁ ନିନ୍ଦାକରିବା ସଙ୍ଗେ ସଙ୍ଗେ ବ୍ରହ୍ମର 'ଚରଣ' ଭଜନ କରିବାର ଆତ୍ମ-ପ୍ରତାରଣା ଏଠି ନାହିଁ । ଗଙ୍ଗାଧରଙ୍କ ଈଶ୍ୱର ସାକାର ବି ନୁହେଁ, ନିରାକାର ବି ନୁହେଁ— ସେ ସାର୍ବଭୌମ । ବିଶ୍ୱର ବିରାଟ ସମଗ୍ରତା ହିଁ ତାଙ୍କର ରୂପ । କବି ତେଣୁ ଗତାନୁଗତିକ ଭାବରେ ଈଶ୍ୱରଙ୍କୁ 'କରୁଣାସିନ୍ଧୁ' କହିବାକୁ କୁଣ୍ଠିତ; କାରଣ ବିରାଟ ଈଶ୍ୱରଙ୍କ ନିକଟରେ ପୃଥିବୀର ସମୁଦ୍ରଟା ଏକ ଆଞ୍ଜୁଳା ପାଣି ମଧ୍ୟ ନୁହେଁ । ଭକ୍ତମାନେ କହନ୍ତି, ''ପ୍ରଭୁ ! ତୁମର ପଦଧୂଳି ମୋ ମଥାରେ ପଡୁ ।'' ମେହେର-ପ୍ରତିଭାର ଦିବ୍ୟଚକ୍ଷୁ କିନ୍ତୁ ବିଧାତାର ବିଶ୍ୱରୂପ ଦେଖିପାରିଛି । ତେଣୁ କବି ସେ ଧୂଳି ମାଗିବାକୁ ଆତଙ୍କିତ; କାରଣ ସେ ଧୂଳିରେ ଯେ କୋଟି କୋଟି ରବି ବିଲୁଣ୍ଠିତ, ତାକୁ ମୁଣ୍ଡରେ ନେବ କିଏ ? ଈଶ୍ୱରଙ୍କର ଏଇ ସାର୍ବଭୌମତ୍ୱ ସମୀପରେ କବି କେବଳ ଦେଖୁଛନ୍ତି ଯେ ନିଜର 'ମୁଁ-କାର' ବା 'ଅହଂକାର'ର କୌଣସି ଅର୍ଥ ନାହିଁ ଏବଂ କବିଙ୍କର ଏକମାତ୍ର ପ୍ରାର୍ଥନା ଯେ ଈଶ୍ୱର ତାଙ୍କଠାରୁ ସେଇତକ ନେଇଯାନ୍ତୁ, ବାକୀ ଯାହା କିଛି ସବୁ ତ ଈଶ୍ୱରଙ୍କର ଦାନ !

ଉଦାରତତ୍ତ୍ୱ ସଙ୍ଗେ ଗଭୀର ଭକ୍ତି ଓ ମଧୁର ସଙ୍ଗୀତର ତ୍ରିବେଣୀ ସଂଯୋଗରେ ଏଇ 'ଭକ୍ତି' କବିତାଟି ଏକ ଅମୂଲ୍ୟ ସମ୍ପଦ ହୋଇଉଠିଛି ।

ଗଭୀର ଆଧ୍ୟାତ୍ମିକତା ଯୋଗୁ ହିଁ ଜୀବନର ସମସ୍ତ ଅଭାବ, ଅଭିଶାପ ସତ୍ତ୍ୱେ କବି ନିଜକୁ ଅମୃତ-ସନ୍ତାନ ବୋଲି ମନେକରି ଆତ୍ମହରାପ୍ରାୟ ହୋଇପାରିଛନ୍ତି ।

''ମୁଁ ତ ଅମୃତ-ସାଗରବିନ୍ଦୁ
ନଭେ ଉଠିଥିଲି ତେଜି ସିନ୍ଧୁ ।

ଖସି ମିଶିଛି ଅମୃତ ଧାରେ
ଗତି କରୁଛି ସେ ଅକୂପାରେ ।
ପଥେ ଶୁଖିଗଲେ ତାପ ତାପରେ
ହୋଇ ଶିଶିର ଖସିବି ତା’ ପରେ
ଅମୃତରୟ ଅମୃତମୟ
ସହିତ ମିଶିବ ସାଗରେ ।”

ପ୍ରତିଭାର ଦିବ୍ୟ ପ୍ରଭାବରେ ନିଜ ଜୀବନର ସକଳ ଦୁଃଖ-ନିର୍ଯାତନା ଚେତନାର ପଛକୁ ଘୁଞ୍ଚିଯାଇ କବିଙ୍କ ଚକ୍ଷୁରେ ଜୀବନ ଓ ଜଗତ ଈଶ୍ୱରମୟ; ତେଣୁ ଅମୃତମୟ, ଆନନ୍ଦମୟ ବୋଧହୋଇପାରିଛି ।

ଏହା କେବଳ ଉଚ୍ଚକୋଟୀର ଜୀବ ପକ୍ଷରେ ସମ୍ଭବ ହୋଇଥାଏ । ଏସବୁ ଗଲା ଖଣ୍ଡ କବିତାର କଥା । ବର୍ତ୍ତମାନ ପ୍ରଶ୍ନ ହୋଇପାରେ, ଗଙ୍ଗାଧରଙ୍କ କାବ୍ୟାବଳୀରେ କ’ଣ ତାଙ୍କର ମହାନ୍ ବ୍ୟକ୍ତିତ୍ୱର ଏଇପରି ପରିଚୟ ମିଳିବ ? କାବ୍ୟ ପାଇଁ ତ ଗଙ୍ଗାଧର ପ୍ରସିଦ୍ଧ, ଖଣ୍ଡ କବିତା ପାଇଁ ନୁହେଁ ।

ଗଙ୍ଗାଧରଙ୍କ କାବ୍ୟାବଳୀର ସମସ୍ତ ଦିଗ ବିଚାର କରି ବସିଲେ ମଧ ଆମେ କେବଳ ଏକ ଉଚ୍ଚ ବ୍ୟକ୍ତିତ୍ୱର ପରିଚୟ ଯେ ପାଉଁ ତା’ ନୁହେଁ, ଆମେ ସେ ବ୍ୟକ୍ତିତ୍ୱର ଅଭିବୃଦ୍ଧିର ଇତିହାସ ମଧ ତହିଁରେ ପାଉ । ‘ମେଘଦୂତ’ର ଲେଖକ ରାଧାନାଥ ଓ ‘ପାର୍ବତୀ’ର ଲେଖକ ରାଧାନାଥ ଏକ, ଯଦିଓ ଦୁଇ ଲେଖା ଭିତରେ ବହୁବର୍ଷର ବ୍ୟବଧାନ । ରାଧାନାଥ ଆରମ୍ଭରୁ ସଂପୂର୍ଣ୍ଣ । କିନ୍ତୁ ‘କୀଚକବଧ’ର ଗଙ୍ଗାଧର, ‘ତପସ୍ୱିନୀ’ର ଗଙ୍ଗାଧର ସମାନ ନୁହନ୍ତି । ଦୁଇର ତୁଳନା କଲେ ଯେ କେହି ସ୍ପଷ୍ଟ ଦେଖିପାରିବ, ସମୟ ସଙ୍ଗେ କବିଙ୍କର କବିତ୍ୱର କିପରି ମନୋହର, ଉଦାର ଅଭିବୃଦ୍ଧି ଓ ସଂପ୍ରସାରଣ ଘଟିଛି । ବୃଦ୍ଧି, ଜୀବନ ଓ ଜାଗରଣର ଲକ୍ଷଣ ଏବଂ ଏହି ବୃଦ୍ଧିର ଇତିହାସ ଦେଖିଲେଇ ଆମ୍ଭମାନଙ୍କର ଚିତ୍ତ ନୈରାଶ୍ୟରେ ମଗ୍ନ ହୋଇପଡ଼େ ଏହା ଭାବି ଯେ, ଆହା ! କ୍ଷେତ୍ର ପାଇଥିଲେ ଏହି ବର୍ଦ୍ଧିଷ୍ଣୁ ପ୍ରତିଭା ଯେ କିପରି ବଢ଼ିଥାନ୍ତା କିଏ କହିବ !

ପୂର୍ବରୁ କହିଛି ଯେ ମେହେର-ପ୍ରତିଭାର ଖାଦ୍ୟ ଥିଲା ପ୍ରାଚୀନ ଓ ରାଧାନାଥୀ ଓଡ଼ିଆ କାବ୍ୟ କବିତା । କବି ଯେତେବେଳେ ଲେଖନୀ ଧାରଣ କରନ୍ତି, ଏହି ସବୁ ଥିଲା ତାଙ୍କର ଶ୍ରେଷ୍ଠ ଆଦର୍ଶ ! ଏଇ ଆଦର୍ଶ ଭିତରେ କିନ୍ତୁ ଅନେକ କିଛି ଆମେ ପାଉଁ, ଯାହା ଆଦୌ କବିତା ନୁହେଁ । ଆଭିଧାନିକ ଶବ୍ଦସଂଗ୍ରହକୁ ନେଇ ବଚନ-ଚାତୁରୀ ଗଢ଼ିବା ଏଇ ଆଦର୍ଶର ଏକ ଅଂଶ । ନଗର, ପ୍ରାସାଦ, ବଣ ଓ ଋତୁମାନଙ୍କର

ବର୍ଣ୍ଣନା ଏହି ଆଦର୍ଶରେ ଏକ ଗତାନୁଗତିକ ପନ୍ଥା ଧରିବାର ଆମେ ଦେଖୁଁ । ରାଧାନାଥ କବିତାକୁ ଏସବୁରୁ ଅନେକ ପରିମାଣରେ ମୁକ୍ତ କରି ଉତ୍କଳ ସରସ୍ୱତୀଙ୍କୁ ଅଳ୍ପାଭରଣା ସୁଷମା ଦେଇଗଲେ । କିନ୍ତୁ ଉତ୍କଳୀୟ ପାଠକମାନଙ୍କ ନିକଟରେ ପ୍ରାଚୀନ କାବ୍ୟମାନଙ୍କର ବଚନ-ବୈଦଗ୍ଧ୍ୟର ସମ୍ମୋହ କେବେହେଲେ ତୁଟିନି – ନବ-ଯୁଗରେ ମଧ୍ୟ ଗଙ୍ଗାଧରଙ୍କ କାବ୍ୟର ଜନପ୍ରିୟତା ଏହା ହିଁ ପ୍ରମାଣ କରୁଛି । କାରଣ ତାଙ୍କର କବିତାରେ ହିଁ ଆମେ ଭାଷାରେ ରାଧାନାଥୀୟ ପ୍ରସାଦଗୁଣ ସଙ୍ଗେ ସଙ୍ଗେ ପ୍ରାଚୀନ କାବ୍ୟର ବଚନ-ଚାତୁରୀ ମଧ୍ୟ ପାଉଁ ।

କିନ୍ତୁ ଗଙ୍ଗାଧରଙ୍କର ପ୍ରକୃଷ୍ଟ ବିକାଶ ଘଟିଛି ସେଇଠି ଓ ତାହା ହିଁ ତାଙ୍କର ଭାଷାକୁ ପ୍ରକୃତ ଦାନ, ଯେଉଁଠି ସେ ନିଜକୁ ଗତାନୁଗତିକତାରୁ ମୁକ୍ତ କରି ରଚନାରେ ନିଜର ସ୍ୱକୀୟ ଅଭିଜ୍ଞତା ଓ ପ୍ରତ୍ୟକ୍ଷ ଦର୍ଶନକୁ ପୂରେଇବାକୁ ଯାଇଛନ୍ତି । ପ୍ରଥମେ ପ୍ରଥମେ ହୁଏତ ନିଜର ଉପମାଟିଏ, କି ଯାହା ଦୈନନ୍ଦିନ ଘଟୁଛି ତା'ର ଚିତ୍ରଟିଏ କାବ୍ୟ ଭିତରେ ପୂରେଇବାକୁ କବି ସାହସ କରି ନ ଥିବେ । ଶୀତଳତାର ଉପମା ହିମ– ଏହା କାବ୍ୟପ୍ରତିଷ୍ଠିତ । କିନ୍ତୁ ଥଣ୍ଡାର ଉପମା ସ୍ୱରୂପ– "ଅନାବୃତ ସ୍ଥାନେ, ଥିଲେ ଯଥା– ଶୀତ-ନିଶାନ୍ତେ ଲୌହ ଶାବଳ ।" –କହିବା ଯଥେଷ୍ଟ ସାହସ ଦରକାର କରେ । ପରେ ରାଧାନାଥ ପ୍ରଭୃତି ରସଗ୍ରାହୀମାନଙ୍କ ମୁଖରୁ କବିଙ୍କର ଏହି ପ୍ରକାର ମୌଳିକ ଦାନମାନଙ୍କର ପ୍ରଶଂସା ହେବାରୁ କ୍ରମେ କ୍ରମେ କବିଙ୍କ କାବ୍ୟମାନଙ୍କର ଗତାନୁଗତିକତା କମିଛି ଓ ସ୍ୱକୀୟତା ବୃଦ୍ଧି ପାଇଛି ।

"ବିରାଟ ନଗର ମହୀ ମଧ୍ୟେ ମନୋହର
ବିଶ୍ୱମନୋରମା ରମା ଦେବୀ କେଳିଘର ।
ବିପଣୀ ସକଳ ଶୁଭ୍ର ସଉଧମାଳିନୀ ।
ରଜତ ପର୍ବତ ସମ ସୁଷମାଶାଳିନୀ ।"

ଏଇ ଭାବରେ 'କୀଚକବଧ' କାବ୍ୟର ଆରମ୍ଭ; କିନ୍ତୁ ଏପରି ଲେଖା ଅନ୍ୟ କବି ମଧ୍ୟ ଲେଖିପାରନ୍ତେ । ପ୍ରଥମ ଦୁଇ ଧାଡ଼ିରେ ରାଧାନାଥଙ୍କ ଚିଲିକାର ପ୍ରଥମ ଦୁଇ ପଂକ୍ତିର ସ୍ପଷ୍ଟ ଅନୁକରଣ । ପ୍ରକୃତ ଗଙ୍ଗାଧର ତେଣୁ ଲୁପ୍ତ; କିନ୍ତୁ କାବ୍ୟର ଗତି-କ୍ରମେ ମେହେର-ପ୍ରତିଭା କ୍ରମେ ଉପରକୁ ନିଜସ୍ୱ ବେଶରେ ଫୁଟି ବାହାରିଛି । ଚପଳା ଦାସୀର କୀଚକ ଓ ସୈରିନ୍ଧ୍ରୀ ସଙ୍ଗେ କଥୋପକଥନରେ, ସୈରିନ୍ଧ୍ରୀଙ୍କର କୀଚକ ନିକଟକୁ ମଦ୍ୟପାତ୍ର ଧରି ଯିବା ଓ କୀଚକଦ୍ୱାରା ଅନୁଗମିତା ହୋଇ ପଳାୟନ ପ୍ରଭୃତି ଯେପରି ଭାବରେ ବର୍ଣ୍ଣିତ, ତାହା ନିତାନ୍ତଭାବରେ ମେହେରୀୟ ରଚନା, ଅନ୍ୟ କା'ର ହୋଇ ନ ପାରେ । ଚପଳା କୀଚକକୁ ଯେତେବେଳେ କହୁଛି–

''କିନ୍ତୁ ଏ ପ୍ରସଙ୍ଗ ଲବ ମାତ୍ର ଜାଣି
ନ ପାରିବେ ସାଆନ୍ତାଣୀ
ତାଙ୍କ କର୍ଣ୍ଣେ ଏହା ପଡ଼ିଲେ ମୋହର
ଉଠିଯିବ ଦାନା ପାଣି ।
ଅଳଙ୍କାର କିଛି ନ ନେବି ଛାମୁର
ନ ପିନ୍ଧିବି ପାଟ ଶାଢ଼ୀ
ସାଆନ୍ତାଣୀ ଯଦି ସେ ବେଶ ଦେଖିବେ
ମୋ ମୁଣ୍ଡେ ପଡ଼ିବ ବାଡ଼ି ।''

କାବ୍ୟରେ ଏପରି ସ୍ୱାଭାବିକ ଚିତ୍ର ରାଧାନାଥ ଯୁଗରେ କେବଳ ମେହେର ଦେବାର ହିଁ ଆମେ ଜାଣୁ । ସୈରିନ୍ଧ୍ରୀ ନିକଟରୁ ବିଫଳମନୋରଥା ଚପଳା ଯେତେବେଳେ– ''କୃଷିରକ୍ଷୀ-ଲୋଷ୍ଟ୍ରେ ଶସ୍ୟଭକ୍ଷୀ ମୃଗ ପରାଏ ଗଲା ପଳାଇ ।'' ସେତେବେଳେ ଉପମାର ନୂତନତ୍ୱ ଓ ଚିତ୍ରର ପ୍ରାଞ୍ଜଳତାରେ ମେହେର-ପ୍ରତିଭାଠାରୁ ଆମେ କ'ଣ ଆଶା କରିପାରିବା, ତା'ର ସମ୍ୟକ୍ ଧାରଣା ହୁଏ ।

କବିଙ୍କର ସବୁ କାବ୍ୟ ମଧ୍ୟରେ 'ତପସ୍ୱିନୀ' ସବୁଠୁ ମୌଳିକ । ବିଷୟବସ୍ତୁ ନୂତନ ନୁହେଁ; କିନ୍ତୁ ପୁରୁଣା ଜିନିଷରେ ଅପୂର୍ବ କାବ୍ୟ ଗଠିତ ହୋଇପାରିଛି, ତାହା ହିଁ ନୂତନ । ଭବଭୂତିଙ୍କ ଉତ୍ତରରାମଚରିତ ନାଟକର ଛାୟା ଏଥିରେ ପଡ଼ିଥିଲା ପରି ମଧ୍ୟ ମନେହୁଏ; କିନ୍ତୁ ସମସ୍ତ ଧାରଉଧାର ଭିତରେ କବିଙ୍କର ସ୍ୱୋପାର୍ଜିତ ସମ୍ପଦ ଏତେ ବେଶୀ ଯେ, ଏହାକୁ ତାହାଙ୍କର ନିଜସ୍ୱ ରଚନା କହିବାରେ ଦ୍ୱିମତ ନ ଥାଇପାରେ । ମେହେର-ପ୍ରତିଭାର ସମସ୍ତ ଗୁଣ 'ତପସ୍ୱିନୀ'ରେ ଚରମୋତ୍କର୍ଷ ଲାଭକରିଛି । ଭାଷାର ସାବଲୀଳତା, ଚାତୁର୍ଯ୍ୟ ଓ ମାଧୁର୍ଯ୍ୟ, ଛନ୍ଦର ପାଟବ, ଚିନ୍ତା, କଳ୍ପନା ଓ ଆଦର୍ଶର ମଧୁର ସମ୍ମିଶ୍ରଣରେ ଏ କାବ୍ୟ ସମଗ୍ର ଉତ୍କଳ-ସାହିତ୍ୟରେ ଏକ ଅପୂର୍ବ ସାମଗ୍ରୀ – ଶ୍ରବଣ ଓ ମନନ, ଉଭୟର ପରମ ଉପଭୋଗ୍ୟ ।

ପୂର୍ବରୁ କହିଛି ଯେ ମେହେର-ଲେଖନୀ ସ୍ଥିତପ୍ରଜ୍ଞ । ତାହା କେବଳ ଯାହା ଚିରନ୍ତନ ଓ କଲ୍ୟାଣକର, ତାହା ହିଁ ଦେବାକୁ ଯାଇଛି ଏବଂ ତାହା ପରିବେଷିତ ହୋଇଛି ଶାନ୍ତ ସଂଯତ ଅଥଚ ସୁନ୍ଦର ଭାଷାରେ । ଭାବପ୍ରବଣତାରେ ତାହା ଗଣ-ମନୋରଞ୍ଜନର ଦି'ପଦ ଇତର କଥା କେବେହେଲେ କହିବାକୁ ଚେଷ୍ଟା କରିନାହିଁ । ଦେଶକୁ ଭଲପାଇଲେ ମଧ୍ୟ ତାହା କେବେ କହିବାକୁ ଯାଇନି ଯେ ଏ ଦେଶ ଓ ଏ ଜାତି ଜଗତରେ ଶ୍ରେଷ୍ଠ ବା ଆମର ଅନ୍ୟଠୁ କିଛି ଶିଖିବାର ନାହିଁ । ବରଂ ତାହା ଦେଶ ଓ ଜାତିର ଅଭାବ, ଦୁର୍ବଳତା ବରାବର ଦେଖାଇ ଜାତି-ପ୍ରଗତିର ଠିକ୍

ରାସ୍ତାକୁ ଅଙ୍ଗୁଳି ନିର୍ଦ୍ଦେଶ କରିଆସିଛି ।

ମେଘଦୂତଙ୍କ ସବୁ କାବ୍ୟର କେନ୍ଦ୍ରବସ୍ତୁ ପ୍ରେମ । କିନ୍ତୁ ସେ ପ୍ରେମ ସଂଯତ, ମହତ୍, ଉଚ୍ଚସ୍ତରାଶ୍ରିତ । ଯୌବନ ରୂପକ ମୋହଗ୍ରସ୍ତ ତଥାକଥିତ ପ୍ରେମର ଉନ୍ମତ୍ତତା ଏଥିରେ ନାହିଁ, କିନ୍ତୁ ଏଥିରେ ମାଧୁରୀ ଅଛି, ତ୍ୟାଗ ଅଛି, ଶକ୍ତି ଅଛି । ଏହା ନୈତିକତାର ଖଡ୍‌ଗଧାର ଉପରେ ଦଣ୍ଡାୟମାନ୍; ତେଣୁ ଅସାଧାରଣ ହେଲେହେଁ ମନୋହର, ନମସ୍ୟ, ବିସ୍ମୟକର । କବି ବରାବର ସେହିପରି କଥାବସ୍ତୁ ତାଙ୍କର କାବ୍ୟମାନଙ୍କ ପାଇଁ ବାଛିଛନ୍ତି, ଯେଉଁଥିରେ ପ୍ରେମର ଭୋଗ ଅପେକ୍ଷା ଦୁଃଖ ବେଶି, ମିଳନ ଅପେକ୍ଷା ବିରହ ବେଶି, ଯେଉଁଥିରେ ପ୍ରଣୟୀ ଓ ପ୍ରଣୟିନୀଙ୍କର କରୁଣ ହୃଦୟ-ମନ୍ଥନ ହିଁ କାବ୍ୟର ପ୍ରଧାନ ଚର୍ଚ୍ଚା ।

ଏହି ହୃଦୟ-ମନ୍ଥନ ରାମାୟଣର ଉତ୍ତରାକାଣ୍ଡରେ ଯେପରି ଆକସ୍ମିକ ଭାବରେ ଘଟି ସେ କାବ୍ୟକୁ କାରୁଣ୍ୟରସରେ ପ୍ଲାବିତ କରିଛି, ପୃଥିବୀ-ସାହିତ୍ୟରେ ତାହା ଖୋଜି ପାଇବା ଦୁଷ୍କର । ଯେଉଁ ପୁରୁଷୋତ୍ତମ ବନବାସକାଳରେ ପ୍ରାଣସଖୀ ଜାନକୀଙ୍କୁ ହରାଇ ସାଧାରଣ ଲୋକ ପରି ବିଳାପରେ ମୁହ୍ୟମାନ ହୋଇପଡୁଥିଲେ, ସେହି ରାମଚନ୍ଦ୍ର ଆଜି କଠୋର ରାଜକର୍ତ୍ତବ୍ୟ ଅନୁରୋଧରେ ଚିରକଣ୍ଠାଶ୍ଲେଷପ୍ରଣୟିନୀ ପ୍ରାଣସଙ୍ଗିନୀଙ୍କୁ ଜାଣି ଜାଣି ନିଜର ପାର୍ଶ୍ୱଦେଶରୁ ଉପାଡ଼ି ଦେଇ ଦୂରକୁ ଫିଙ୍ଗିଦେଲେ । ଏ ବିରହ ନିଜକୃତ । ରାମଚନ୍ଦ୍ର ଜାଣନ୍ତି, କୋମଳପ୍ରାଣା ରାମଗତହୃଦୟା ବୈଦେହୀଙ୍କର ମାନସିକ ଅବସ୍ଥା କିପରି ହେବ । ବାଲ୍ମୀକି ଆଶ୍ରମର ପର୍ଣ୍ଣକୁଟୀରରେ କୁଶଶଯ୍ୟାରେ ଶୋଇ ସେଦିନର ରାଜମହିଷୀ ବୈଦେହୀ ମଧ୍ୟ ଅଯୋଧ୍ୟା ରାଜପ୍ରାସାଦର ପ୍ରିୟସଙ୍ଗସୁଖର ମଧୁର ଛବିସବୁ ସ୍ମରଣ କରି କରି ଉଷ୍ଣ ଅଶ୍ରୁଧାରରେ ନିଜର ବାହୁ ସିକ୍ତ କଲାବେଳେ କ'ଣ ମନେକରୁନଥିବେ ଯେ, ଦୂରରେ ଅଯୋଧ୍ୟାରେ ମଧ୍ୟ ଆଉ ଜଣେ ତାଙ୍କ ପାଇଁ ସେହିପରି ଅଶ୍ରୁ ତ୍ୟାଗ କରୁଛି ? ସମୁଚ୍ଚ ନୈତିକ ଆଦର୍ଶ ଅନୁରୋଧରେ ସ୍ୱକୃତ ବିଚ୍ଛେଦ-ସାଗରର ଦୁଇ କୂଳରେ ପରସ୍ପରଠାରୁ ନିର୍ବାସିତ ରହି ଦୁଇ ପ୍ରଣୟୀ ଏପରି ମର୍ମଦାହୀ ହୃଦୟ-ମନ୍ଥନ ଭୋଗକରିବା ବିଶ୍ୱସାହିତ୍ୟରେ ଅନ୍ୟତ୍ର ନାହିଁ ।

ଦ୍ୱିତୀୟ ବିରହର ଏଇ ବାରଟି ବର୍ଷରେ ରାଜା ରାମଚନ୍ଦ୍ରଙ୍କ ଜୀବନରେ ବହୁ ଘଟଣା ଘଟିଥିଲେହେଁ ସୀତାଙ୍କ ଜୀବନର ଏହି ବାର ବର୍ଷ ଘଟଣାହୀନ, ନିରାନନ୍ଦ, ଶାନ୍ତ, ସରଳ । ତାଙ୍କ ଜୀବନରେ ଏହା ହିଁ ପ୍ରକୃତ ଅଗ୍ନି ପରୀକ୍ଷା । ଏହି ବାରଟି ବର୍ଷ ବୈଦେହୀଙ୍କର ଏକ ନିରାଡ଼ମ୍ବର ଅବିଚ୍ଛିନ୍ନ ଅଧ୍ୟାତ୍ମ-ଯଜ୍ଞ ।

କାବ୍ୟରେ ଏ ଜୀବନବର୍ଣ୍ଣନା ଅତ୍ୟନ୍ତ କଠିନ । ଭବଭୂତିଙ୍କ ନାଟକରେ ରାମଙ୍କ

ଅଶ୍ୱମେଧ ଯଜ୍ଞ କେନ୍ଦ୍ର-ଘଟଣା ଥିବାରୁ ତାହା ଘଟଣାବହୁଳ । ଗଙ୍ଗାଧରଙ୍କ ଚକ୍ଷୁରେ କିନ୍ତୁ ସୀତାଙ୍କ ତପସ୍ୟା ରାମଙ୍କ ଅଶ୍ୱମେଧ ଅପେକ୍ଷା ମହତ୍ତର ଓ ଅଧିକ ବିସ୍ମୟକର ବ୍ୟାପାର । ସେ ଘଟଣାର ବାହ୍ୟାଡ଼ମ୍ବର ସବୁକୁ ଭୁଲିଯାଇ ରାମ-ସୀତାଙ୍କ ହୃଦୟରେ ଜଳୁଥିବା ପ୍ରେମ-ଯଜ୍ଞକୁ ହିଁ ଚିତ୍ରିବାକୁ ଇଚ୍ଛାକରିଛନ୍ତି । ଏପରି ଦୁଷ୍କର କର୍ମ ଯେ ତାଙ୍କ ଲେଖନୀରେ ସୁସିଦ୍ଧ ହୋଇପାରିଛି, ତାହ ହିଁ ମେହେର-ପ୍ରତିଭାର ମହତ୍ତ୍ୱର ସୂଚକ ।

ସତୀ ସୀତାଙ୍କର ବାଲ୍ମୀକି ଆଶ୍ରମରେ ଯାପିତ ଏଇ ଦୀର୍ଘ, ତପୋକ୍ଲିଷ୍ଟ ଅଥଚ ମଧୁର ମହିମାମଣ୍ଡିତ ଶେଷ ଜୀବନ ଗଙ୍ଗାଧର 'ତପସ୍ୱିନୀ' କାବ୍ୟରେ ଏଗାରଟି ପରିଚ୍ଛେଦରେ କିପରି ବର୍ଣ୍ଣନା କରିଛନ୍ତି, ତାହା କାବ୍ୟଟି ନ ପଢ଼ିଲେ ଦୁଇ କଥାରେ କିପରି ବୁଝାଇହେବ ? କାବ୍ୟଟି ପଢୁ ପଢୁ ସୀତାଙ୍କର କାରୁଣ୍ୟରେ ଚକ୍ଷୁ ଅଶ୍ରୁସିକ୍ତ ହୋଇଆସେ, ପୁଣି ତାଙ୍କର ସତୀତ୍ୱ-ମହିମାରେ ପ୍ରାଣ ଉଲ୍ଲସିତ ହୋଇଉଠେ । ତୃତୀୟ ଅଧ୍ୟାୟରେ ରାମଚନ୍ଦ୍ରଙ୍କର ଅନୁଶୋଚନା, ଚତୁର୍ଥ ଅଧ୍ୟାୟରେ ବୈଦେହୀଙ୍କର ବାଲ୍ମୀକି ଆଶ୍ରମରେ ପ୍ରଥମ ପ୍ରଭାତର ବର୍ଣ୍ଣନା, ଷଷ୍ଠ ଓ ସପ୍ତମ ଅଧ୍ୟାୟରେ ସୀତାଙ୍କ ମୁଖରେ ପ୍ରାୟ ସମଗ୍ର ରାମଚରିତର ସଂଯତ, ମଧୁର, କରୁଣ ଚିତ୍ର, ଏକାଦଶ ବା ଶେଷ ଅଧ୍ୟାୟରେ ସୀତାଙ୍କର ସ୍ୱାମୀଙ୍କ ଅଶ୍ୱମେଧ ଯଜ୍ଞର ଖବର ପାଇବା ଓ ତା'ର ମାନସିକ ପ୍ରତିକ୍ରିୟାସବୁ ଯେପରି ଭାବରେ ବର୍ଣ୍ଣିତ ହୋଇଛି, ତାହ କେବଳ ପ୍ରଥମ ଶ୍ରେଣୀର କବିମାନେ ହିଁ ପାରନ୍ତି । ଉତ୍କଳ-ସାହିତ୍ୟ ଭଣ୍ଡାରରେ ଏଗୁଡ଼ିକ ଅମୂଲ୍ୟ ମଣିମାଣିକ୍ୟ ।

'ପ୍ରଣୟ-ବଲ୍ଲରୀ' ଏତିକି କହିଲେ ଯଥେଷ୍ଟ ହେବ ଯେ କାଳିଦାସଙ୍କ ଯାଦୁ-କ୍ରିୟାକୁ ମଧ୍ୟ ଯେ ଆହୁରି ମନୋହର କରିପାରିଛନ୍ତି, ସେ କବି ଆମର ବାର ବାର ନମସ୍ୟ । 'ପଦ୍ମିନୀ' କାବ୍ୟ ଆରବ୍ଧ ମାତ୍ର ହେଲେହେଁ, ଦୁଇ-ପତ୍ର ବେଲୁ ତୁଳସୀର ସୌରଭ ବିତରଣ ପରି ଏହି କ୍ଷୀଣ ଆରମ୍ଭ ଆମ୍ଭମାନଙ୍କ ଚିତ୍ତକୁ ରସପ୍ଲାବିତ କରିବା ସଙ୍ଗେ ସଙ୍ଗେ ଅପୂର୍ଣ୍ଣତାଜନିତ ନୈରାଶ୍ୟରେ ବୁଡ଼ାଇଦିଏ । 'କବିତା-କଲ୍ଲୋଳ' ଓ 'ଅର୍ଘ୍ୟଥାଳୀ'ର ଅଧିକାଂଶ କବିତା ଏପରି ମନୋଜ୍ଞ ହୋଇଛି ଯେ, ପ୍ରତ୍ୟେକଟିକୁ ମୁଖସ୍ଥ ଓ ଉଦ୍ଧାର କରିବାକୁ ଇଚ୍ଛା ହୁଏ ।

ଗଙ୍ଗାଧର କବି । କିନ୍ତୁ ପାଠକେ, ତାଙ୍କ କାବ୍ୟଗୁଡ଼ିକର ଗଦ୍ୟ-ଭୂମିକା-ସବୁକୁ ଲକ୍ଷ୍ୟ କରିଅଛନ୍ତି କି ? ଓଡ଼ିଆଭାଷାରେ ଗଦ୍ୟଶୈଳୀର ଏଗୁଡ଼ିକ ଗୋଟିଏ ଗୋଟିଏ ପୁଷ୍ପ-କୁଞ୍ଜ । ଏଗୁଡ଼ିକ ମୁଁ ଯେ କେତେ ଥର ମୁଗ୍ଧ ହୋଇ ପାଠକରିଛି, ତା'ର୍ ସଂଖ୍ୟା ନାହିଁ । ଗଙ୍ଗାଧର ଗଦ୍ୟରେ କୌଣସି ପୁସ୍ତକ ଲେଖିଯାଇନାହାନ୍ତି । ଏହା ଫଳରେ ଓଡ଼ିଆ-ସାହିତ୍ୟ ଦରିଦ୍ର ହିଁ ରହିଲା ।

ଆମେ ସମସ୍ତେ ଜାଣୁ ଯେ, ଗଙ୍ଗାଧର ଉତ୍କଳରେ ବେଶି ଜନପ୍ରିୟ ତାଙ୍କ କାବ୍ୟର ଛନ୍ଦମାଧୁର୍ଯ୍ୟ ଯୋଗୁଁ । ସେ ବିଷୟରେ ମୁଁ ବେଶି କିଛି କହୁ ନାହିଁ; କାରଣ ମୁଁ କହିଛି ଯେ, କାବ୍ୟକବିତାରେ ତାହା ଗୌଣ ଉପାଦାନ ଏବଂ ତା'ର ମାଧୁର୍ଯ୍ୟ ସମସ୍ତେ ଯେତେବେଳେ ଉପଲବ୍ଧି କରୁଛନ୍ତି, ଆଉ ଆଲୋଚନା କରି ଦେଖେଇ-ଦେବାର ଚେଷ୍ଟା କରିବା କି ପ୍ରୟୋଜନ ? ତେବେ ମେହେରଙ୍କ ଛନ୍ଦକୌଶଳ କିପରି ସହଜାତ ଥିଲା, ତାହା ତାଙ୍କର ସର୍ବପ୍ରଥମ ରଚନା 'ଅହଲ୍ୟାସ୍ତବ'ରୁ ଦୃଷ୍ଟାନ୍ତ ଦେଇ ପାଠକମାନଙ୍କଠାରୁ ବିଦାୟ ନିଏ । ଏ କାବ୍ୟଟି ଖାଣ୍ଟି ସଂସ୍କୃତ ଛନ୍ଦ (ଶାର୍ଦ୍ଦୂଳ-ବିକ୍ରୀଡ଼ିତ)ରେ ଲେଖା, ଅଥଚ ଭାଷା ଓଡ଼ିଆ । ପାଠକେ, ସଂସ୍କୃତ ଗୁରୁ ଲଘୁ ନିୟମ ଧରି ପଢ଼ିଲେ ଛନ୍ଦର ନିଖୁଣ ମାଧୁରୀ ଉପଲବ୍ଧି କରିବେ ।

''ପୃଥ୍ୱୀମଣ୍ଡନ ହେ ଜଗପତି ବିଭୋ
ଭକ୍ତଙ୍କ ମୁକ୍ତି ଖଣି,
ସଂସାରାର୍ଣ୍ଣବ ପାରକାରକୁ ପଟୁ
କୈବର୍ତ୍ତ ଚୂଡ଼ାମଣି ।
ସାଧୁ ପାଳନ ଦୁଷ୍ଟନାଶ କରଣେ
ସମ୍ଭୂତ ଏ ଭୂତଳେ
ତୁମ୍ଭ ଶ୍ରୀଚରଣା- ମ୍ବୁଜେ ରହୁ ସଦା
ଚିତ୍ତାଳି ମୋ ନିଶ୍ଚଳେ ।''

ତନ୍ତୀକୁଳଜାତ, ଦରିଦ୍ର, ସ୍ୱଳ୍ପଶିକ୍ଷିତ ଗଙ୍ଗାଧରଙ୍କୁ ଜାତି କିଛି ନ ଦେଇଥିଲେ ମଧ୍ୟ ସେ ଓଡ଼ିଆ ଜାତିକୁ ନାଶହୀନ ସମ୍ପଦ ଦେଇଯାଇଅଛନ୍ତି । ଯାହାହେଉ, ଏ ଓଡ଼ିଆ ଜାତି ଏବେ ଏ ମହତ୍‌ଦାନର ଋଣୀତ୍ୱରେ ସଚେତନ ପରି ବୋଧହେଉଛି ।

——

# ସହ-ବିତରକ ସାହୁଜୀ

ଯେଉଁମାନଙ୍କ ଜୀବନ ସର୍ବସାଧାରଣ ସଂପତ୍ତି ହେବାର ସାର୍ଥକତା ପାଇଥାଏ, ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁ ସେହିମାନଙ୍କ ଭିତରୁ ଜଣେ । ଏକାଗ୍ରତାର ଅଭାବରୁ ସେ ଜୀବନ ସ୍ଥାୟୀ ସିଦ୍ଧି କିଛି ରଖି ଯାଇପାରିଲା ନାହିଁ; ବହୁ-ଲକ୍ଷ୍ୟ ହୋଇ କୌଣସି ହେଲେ ଲକ୍ଷ୍ୟରେ ହୁଏତ ପହଞ୍ଚି ପାରିଲା ନାହିଁ; କିନ୍ତୁ ତାଙ୍କ ଜୀବନର ପରମତମ ସାର୍ଥକତା ଏହି ଯେ, ବହୁ ଅନ୍ୟକୁ ଲକ୍ଷ୍ୟ ସ୍ଥଳରେ ପହଞ୍ଚିଯିବାକୁ ଓ ସିଦ୍ଧି ଲାଭ କରିବାକୁ ସେ ଜୀବନ ଦୁର୍ଲଭ ସହାୟତା ଦେଇପାରିଛି । ଏହି ବହୁ କୃତଜ୍ଞତାର ଗାଥା, ବହୁ ସହଯୋଗର କାହାଣୀ ହିଁ ଭାରତ ସେବକ ବା ମାନବସେବକ ଲକ୍ଷ୍ମୀନାରାୟଣ ସାହୁ । ସେହି ତାଙ୍କର ଜୀବନ ଚରିତ ।

ଆମ ପୁରୁଷଟି ଦେଶ ଓ ଜାତି ସଂପର୍କରେ ଓ ସେହି ପରିପ୍ରେକ୍ଷିତରେ ନିଜକୁ କିପରି ଗଢ଼ିବାକୁ ହେବ, ସେ ସମ୍ବନ୍ଧରେ ସଚେତନ ହୋଇ ଆସିଲାବେଳକୁ ଓଡ଼ିଶାରେ ଏଥିପାଇଁ ଏକମାତ୍ର ନିର୍ଭରଯୋଗ୍ୟ ଅନୁଷ୍ଠାନ ସତ୍ୟବାଦୀ ସ୍କୁଲଟି ଉଭେଇଗଲା । ମିଃ ଦାସ ଏକ ଲିଜେଣ୍ଡ (କାହାଣୀ) ହୋଇ ଲୋକଲୋଚନ ଅଗୋଚରରେ ରହିଥାନ୍ତି ଏବଂ ଗୋପବନ୍ଧୁ ଏବଂ ତାଙ୍କର ସହଗାମୀ ଓ ଅନୁଗାମୀଗଣ ଜେଲ ବା ଅସହଯୋଗର ନୂତନ ସଂସାରରେ ବିଚରଣ କରୁଥାନ୍ତି । ତେଣୁ ଆମ ପୁରୁଷର କ୍ଷିପ୍ର ବର୍ଦ୍ଧିଷ୍ଣୁ ତରୁଣ ବୁଦ୍ଧିଜୀବୀ ସଂପ୍ରଦାୟଟି ବୌଦ୍ଧିକ ପ୍ରେରଣା ଦିଗରୁ ଏକପ୍ରକାର ବାପା ମା ଛେଉଣ୍ଡ ହୋଇ ବଢ଼ିଲା କହିଲେ ଚଳେ ।

ଚାରିଆଡ଼କୁ ଯୋଗସୂତ୍ର ଲମ୍ବାଇ ସେତେବେଳ ଜଣେ ମାତ୍ର ଜନସେବୀ ଓଡ଼ିଶାରେ ବୁଲୁଥାନ୍ତି – ତାଙ୍କର ନାମ ଲକ୍ଷ୍ମୀନାରାୟଣ ସାହୁ ।

ଏବେ ପ୍ରତି ମାଇନର୍ ସ୍କୁଲରେ ଛାତ୍ରସଙ୍ଘ ଓ ସେଥିରେ ପୁଣି କଂଗ୍ରେସ, ପ୍ରଜା-ସୋସାଲିଷ୍ଟ ଓ କମ୍ୟୁନିଷ୍ଟ ପ୍ରଭୃତି ନାନା ଦଳ, ଗୋଷ୍ଠୀର ଅଦୃଶ୍ୟ ପଶାପାଲିର ପ୍ରତିବିମ୍ବ ଦେଖାଯାଉଛି । ଯା'ଫଳରେ ପିଲାବେଲୁ ଆମେ ଆଗାମୀ ପୁରୁଷର ବ୍ୟକ୍ତିତ୍ୱଗୁଡ଼ିକୁ କିପରି ଛିନ୍ନଭିନ୍ନ, କୁଚୁକୁଚା କରିଚାଲିଛୁ ଓ କି ସାଂଘାତିକ ଭାବରେ ମାରାତ୍ମକ ଏହି ତଥାକଥିତ ରାଜନୀତି (ପ୍ରକୃତରେ ନେତୃନୀତି) ତାହା ପ୍ରତି ତ କାହାର ହିଁ ଖିଆଲ ନାହିଁ – ନାସ୍‌ନାଲ୍ ଇଣ୍ଟିଗ୍ରେସନ୍ ଚିତ୍‌କାର କଲେ ଆସିବ

* ଲକ୍ଷ୍ମୀନାରାୟଣ ସ୍ମରଣିକା, ସଂ. ସୁରେନ୍ଦ୍ର ମହାନ୍ତି, ଗୋପୀନାଥ ଦାଶ–୧୯୬୩ ।

କୁଆଡ଼ୁ ? ଆମେ ତ ଗଢ଼ାହେଲା ବେଳୁ ପିଲାଙ୍କୁ ଶିଖେଇଲୁ ଖଣ୍ଡଖଣ୍ଡ ରହିବାକୁ । ସେମାନେ ସମଗ୍ର ଜାତିକୁ ଏକକ ଭାବରେ ଦେଖିବାକୁ ଶିଖିବାର ଅବସର ବା ଅବକାଶ ପାଇଲେ କାହୁଁ – ସମାଜରେ, ଶାସନରେ ନା ସ୍କୁଲ-କଲେଜରେ ?

ଆମ ପିଲାବେଳ ଏପରି ଦୁର୍ଦ୍ଦଶାଗ୍ରସ୍ତ ନ ଥିଲା । ଆମେ ଦରିଦ୍ର ଥିଲୁ, ଅସହଯୋଗରେ ନମିଶିପାରି ତୁଚ୍ଛ ଓ ଅପାଂକ୍ତେୟ ମଧ୍ୟ ଥିଲୁ । କିନ୍ତୁ ଆମ ଚିତ୍ତରାଜ୍ୟର ସିଂହାସନ ମାଡ଼ିବସିଥିଲା କୌଣସି ପାର୍ଟି ବା ଗୋଷ୍ଠୀ ନୁହେଁ – ତାହା ସମଗ୍ର ଭାବରେ ଅଧିକୃତ ହୋଇଥିଲା ଦେଶ ଓ ଜାତିର ଅଖଣ୍ଡ, ଏକକ ବ୍ୟକ୍ତିତ୍ୱ ଦ୍ୱାରା ।

ଏବଂ ଏଇ ଭାବଟା ବଂଚାଇରଖିବାରେ ଶ୍ରୀ ସାହୁଙ୍କ ସଂସ୍ପର୍ଶ ବହୁ ସାହାଯ୍ୟ କରିଥିଲା । ସାହୁଜୀ ଥିଲେ ଆମ ପାଖରେ ପ୍ରଥମ ଓଡ଼ିଆ, ଯେ ସମସ୍ତ ଭାରତ ବୁଲିଥିଲେ ଓ ଭାରତୀୟ ଜନତାକୁ ନିଜର ଲୋକ ପରି ଭାବୁଥିଲେ, ପୁଣି ସେହି ସାହୁ ମଧ୍ୟ ଥିଲେ ଉଗ୍ର ଓଡ଼ିଆ । ଓଡ଼ିଶାର ସଂସ୍କୃତିର ଏପରି କୌଣସି ଅଂଶ ନ ଥିଲା ଯେଉଁଥିରେ ସାହୁଜୀ ଆଗ୍ରହୀ ନଥିଲେ । ସାହୁଜୀ ପ୍ରାକୃତିକ ଓଡ଼ିଶାକୁ ମଧ୍ୟ ଉତ୍ତମ ରୂପେ ଜାଣିଥିଲେ । କିନ୍ତୁ ଆମ ନିକଟରେ ସାହୁଜୀଙ୍କର ସଂସ୍ପର୍ଶ ମୂଲ୍ୟବାନ୍ ଥିଲା ଏହି କାରଣରୁ ଯେ, ସେ ଆମର ସେକାଳର ଛାତ୍ରସମାଜ ନିକଟରେ ଏକମାତ୍ର ଲୋକ ଯେ କି ତିଳକ, ଗୋଖଲେ, ମୋତିଲାଲ, ଲଜପତ୍‌ଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଆମ ଆଗରେ କହି ଆମକୁ ମନ୍ତ୍ରମୁଗ୍ଧ କରି ରଖି ପାରୁଥିଲେ କେବଳ ନୁହେଁ, ତା' ସାଥେ ସାଥେ ସେତେବେଳେ ଅବାଂଛନୀୟ ବୋଧହେଲେହେଁ ଅତ୍ୟନ୍ତ ଉଚିତ ଓ କଲ୍ୟାଣଜନକ କୌତୂହଳ ଦେଖାଉଥିଲେ, ଆମ ଭିତରୁ ଇଂରେଜି ବା ସଂସ୍କୃତ କିଏ ଭଲ ଲେଖି ପାରୁଛି ବା କହି ପାରୁଛି ତାହା ବରାବର ଖୋଜ ନେବାରେ ।

ସାହୁଜୀ ସ୍କୁଲମାଷ୍ଟର ହୋଇ ଜୀବନ ଆରମ୍ଭ କରିଥିଲେ । ଆମେ ଜାଣିଲାବେଳକୁ ସେ ସମଗ୍ର ଓଡ଼ିଶାର ଛାତ୍ରସମାଜର ଅନରାରୀ ଉପଦେଷ୍ଟା । ସାହୁଜୀ, ହଷ୍ଟେଲ୍‌ରେ କୌଣସି ରୁମ୍‌ରେ ପଶିଗଲେଇ ହୋଇଉଠିଲା ଏକ ଶ୍ଳୋକାନ୍ତ ପ୍ରତିଯୋଗିତା ବା ଇଂରେଜି ଡିବେଟ୍ ବା କବିତା କମ୍ପିଟେସନ୍ । କୌଣସି ହେଲେ ନେତା, ଛାତ୍ର-ସମାଜକୁ ଏପରି ଚିହ୍ନିନାହାନ୍ତି କି ଏପରି ଅନାବିଳ ବୌଦ୍ଧିକ ସଂପର୍କ ଦେଇ-ପାରିନାହାନ୍ତି, ଯେପରି ଚିହ୍ନିଥିଲେ ବା ଦେଇ ପାରିଥିଲେ ଲକ୍ଷ୍ମୀନାରାୟଣ ସାହୁ । ଓଡ଼ିଶାର ଚାରିଆଡ଼ର ଶତ ଶତ ଛାତ୍ରଙ୍କୁ ସାହୁଜୀ ବ୍ୟକ୍ତିଗତ ଭାବରେ ଜାଣିଥିଲେ ଓ ବହୁଙ୍କୁ ସେ ନିଜ ନିଜ ଜୀବନ ଗଢ଼ିବାରେ ସାହାଯ୍ୟ କରିଯାଇଛନ୍ତି ।

ଶ୍ରୀ ସାହୁଙ୍କ ସହିତ ମୋର ପ୍ରଥମ ପରିଚୟ ଘଟେ ଏପରି ଏକ ଛାତ୍ର ସମ୍ମିଳନୀରେ ପୁରୀରେ ।

ସେତେବେଳେ ସମଗ୍ର ପୁରୀ ଜିଲ୍ଲାରେ ମାତ୍ର ଦୁଇଟି ହାଇସ୍କୁଲ ଥିଲା– ସରକାରୀ ପୁରୀ ଜିଲ୍ଲାସ୍କୁଲ ଓ ବେସରକାରୀ ଖୋର୍ଦ୍ଧା ହାଇସ୍କୁଲ । ସତ୍ୟବାଦୀ ସ୍କୁଲଟି ବୁଦ୍‌ବୁଦ ପରି ଉଠି ପୁଣି ସେତେବେଳକୁ ଉଭେଇଗଲାଣି । ଛିନ୍ନଛତ୍ର ସେହି ଅନୁଷ୍ଠାନର ଅନେକ ଛାତ୍ର ଆମ ସାଥିରେ ଖୋର୍ଦ୍ଧାରେ ଆସି ପାଠର ଛିଣ୍ଡାସୂତାକୁ ଗଣ୍ଠେଇଗାଣ୍ଠେଇ ଲମ୍ବେଇ ରଖିବାକୁ ଚେଷ୍ଟା କରୁଥିଲେ ।

ଖୋର୍ଦ୍ଧାସ୍କୁଲର ପ୍ରତିନିଧି ଭାବରେ ଅନ୍ୟକେତେକ ପିଲାଙ୍କ ସାଥିରେ ମୁଁ ସାହୁଜୀଙ୍କ ସଂଗଠିତ ପୁରୀରେ ବସୁଥିବା ନିଖିଳ ଉତ୍କଳ ଛାତ୍ରସମ୍ମିଳନୀରେ ଯୋଗ ଦେବାକୁ ଯାଇଥିଲି । ସଭାପତି ବୋଧହୁଏ ଥିଲେ ବଙ୍ଗଳାରେ ଦେବ ପ୍ରସାଦ ସର୍ବାଧିକାରୀ ।

ସେହି ସମ୍ମିଳନୀରେ ପ୍ରବଂଧ ବା ବକ୍ତୃତା ପ୍ରତିଯୋଗିତାରେ କୌଣସି ପୁରସ୍କାର ପାଇବାରୁ ସାହୁଜୀ ମତେ ଭଲ କରି ଚିହ୍ନିଲେ । କହି ରଖେ ଯେ ସେହି ସମ୍ମିଳନୀର ବକ୍ତୃତା ପ୍ରତିଯୋଗିତା ଭିତରେ ହିଁ ଭାରତସେବକ ସମିତିର ଅନ୍ୟତମ ସଭ୍ୟ ମୋର ପିଲାବେଳର ବନ୍ଧୁ ଶ୍ରୀ ଶ୍ୟାମସୁନ୍ଦର ମିଶ୍ରଙ୍କୁ ମୁଁ ପ୍ରଥମ କରି ସେଇଠି ଦେଖିବାକୁ ପାଇଥିଲି ।

କେବେହେଲେ ସ୍ୱପ୍ନରେ ଭାବି ନ ଥିଲି ମୁଁ ଜୀବନରେ କଲେଜ ମାଡ଼ିବି । କାରଣ ଅଙ୍କରେ ଅସାଧାରଣ ଦୁର୍ବଳତା ଯୋଗୁଁ ଧରିନେଇଥିଲି ଯେ ମୁଁ ହୁଏତ ମାଟ୍ରିକୁଲେସନ୍ ପରୀକ୍ଷାରେ ଫେଲ୍ ହେବି ବା ପାଶ୍ କଲେ କୌଣସିମତେ ତୃତୀୟ ଶ୍ରେଣୀରେ ଓହଳି ପାଶ୍ କରିବି– ଯେଉଁ ଅବସ୍ଥାରୁ ସେକାଳର ରାଜାଡ଼ମ୍ବରମୟ ରେଭେନ୍‌ସାକୁ ଆସିବାର କଳ୍ପନା କେବଳ ପାଗଳ କରିପାରେ । କିନ୍ତୁ ଶେଷରେ ବାଧ୍ୟହେଲି କଲେଜରେ ଯୋଗଦେବାପାଇଁ । କାରଣ ଫେଲ୍ ନ ହୋଇ ବୃତ୍ତି ପାଇ ପାଶ୍ କଲି, ଅକଳ୍ପନୀୟ ଭାବରେ । ଆସିଲି କଟକ ନଗର । ବୃତ୍ତି ମିଳିବ ଯାଇ ୩।୪ ମାସ ପରେ । ନାମ ଲେଖା ହେବା ପାଇଁ ଯେତିକି ଅର୍ଥ ଦରକାର ସେତକ ବି ପକେଟ୍‌ରେ ନାହିଁ । କ'ଣ କରେ ? ଆସି' ପୁଣି କ'ଣ ଗାଁକୁ ଫେରିଯିବି ?

ସେତେବେଳ ସମଗ୍ର କଟକ ନଗରରେ ଜଣେ ମାତ୍ର ଲୋକକୁ ମୁଁ ଜାଣିଥାଏ । ତାଙ୍କ ନାମ ଲକ୍ଷ୍ମୀନାରାୟଣ ସାହୁ – ଉତ୍କଳର ଛାତ୍ର ସମାଜର ସେତେବେଳର ପରମତମ ମିତ୍ର ଓ ସହାୟକ ।

ଶେଷ ଚେଷ୍ଟା ଭାବରେ ଦିନେ ବାଟ ପଚାରି ପଚାରି ରେଭେନ୍‌ସାରୁ ଚାଲି ଚାଲି ଇଦ୍‌ଗା ପଡ଼ିଆରେ ପହଁଚିଲି । ସାହୁଜୀ ଥିଲେ । ମତେ ଦେଖି ଓ ବୃତ୍ତି ପାଇବା ଜାଣି (ସେ ଆଗରୁ ଜାଣି ମନେରଖିଥିଲେ) ଭାରି ଖୁସୀ ହେଲେ । ମନେହେଉଛି ଜଳଖିଆ ପ୍ରଭୃତି ବି ଦେଲେ । ତା'ପରେ ତାଙ୍କ ଘରୁ ବାହାରି ଟାଉନ୍

ଆଡ଼କୁ ଆସିଲୁ । କିନ୍ତୁ ଯେଉଁଥି ପାଇଁ ଏତେ ବାଟ ଯାଇଥିଲି, ତା' ଆଉ ମୁହଁ ଫିଟାଇ କହିପାରୁନଥାଏ ।

ସାହୁଜୀ ମୋ କାନ୍ଧରେ ହାତ ପକାଇ ଗପ କରି କରି ଚାଲୁଥାନ୍ତି । ଆମେ ଆସି ସେଲ୍‌ଟର ସ୍କୁଲ୍ ପାଖେ ହେଲା ବେଳକୁ ସେ ନିଜେ କଥା ପ୍ରସଙ୍ଗରେ ପଚାରିଲେ – 'ନାଁ ଲେଖାଇଲଣି ନା ?

ମୁଁ ଥିରି କହିଲି– 'ନା !' ସେ କହିଲେ– କାହିଁକି ? ଟଙ୍କା ନାହିଁ ? ମୁଁ ପୁଣି ଥିରି କହିଲି – ନାହିଁ ।

ସେ ବିସ୍ମିତହୋଇ କହିଲେ– ଓଃ, ସେଇଥିପାଇଁ ଆସିଥିଲ ? ମତେ ଏଯାଏଁ ନ କହିଛ କାହିଁକି ? ଆସ ତାହାହେଲେ ଘରକୁ ଫେରିଯିବା । ମୁଁ ତମକୁ ଟଙ୍କା ଦେଇଦେଉଛି ।

ପୁଣି ସାହୁଙ୍କ ଘରକୁ ଫେରିଲୁ । ଆଜି ହୁଏତ କେହି ବିଶ୍ୱାସ କରିପାରିବେ ନାହିଁ ଯେ, ସେଦିନ ସାହୁଙ୍କଠାରୁ ସେହି ପଚିଶିଟି ମୁଦ୍ରାର ସାହାଯ୍ୟ ନ ପାଇଥିଲେ, ହୁଏତ ଏ ଲୋକର ଉଚ୍ଚଶିକ୍ଷାର ପ୍ରାରବ୍ଧ ମାତ୍ର ଅଧ୍ୟାୟଟି ସେହିଠି ହିଁ ଶେଷ-ହୋଇଥାନ୍ତା ।

ବୃତ୍ତି ପାଇଲା ପରେ ସାହୁଜୀଙ୍କୁ ତାଙ୍କ ଟଙ୍କା ଫେରାଇଦେଲି । କିନ୍ତୁ ସେଦିନ ତାଙ୍କ ସାହାଯ୍ୟର ମୂଲ୍ୟ ତ ପଚିଶି ଟଙ୍କା ମାତ୍ର ନୁହେଁ – ତା'ର ମୂଲ୍ୟ ମୋର ସାରା ଜୀବନବ୍ୟାପୀ ତାଙ୍କ ନିକଟରେ କୃତଜ୍ଞତା । ଆଜି ସାହୁଜୀଙ୍କ ସ୍ମୃତି-ଦିବସରେ ସେହି କୃତଜ୍ଞତା ସର୍ବଜନସମକ୍ଷରେ ପ୍ରକାଶକରି ମୁଁ କିଂଚିତ୍ ଋଣ-ମୁକ୍ତ ବୋଧକରୁଛି ।

ଯା' ପରେ ସମଗ୍ର ଛାତ୍ରାବସ୍ଥାରେ ସାହୁଜୀ ମୋ ପ୍ରତି ସଶ୍ରଦ୍ଧ ସସ୍ନେହ ବ୍ୟବହାର ଦେଖାଇ ମୋତେ ବିଶେଷ ଗୌରବାନ୍ୱିତ କରିଥିଲେ । ରେଭେନ୍‌ସାର ପଶ୍ଚିମ-ଛାତ୍ରବାସକୁ ଆସିଲେ ସେ ବରାବର ମୋର ଅତିଥି ହେଉଥିଲେ । ବି.ଏ. ପଢ଼ିଲାବେଳକୁ ତାଙ୍କଠି ଦୁରାରୋଗ୍ୟ ସଂକ୍ରାମକ ବ୍ୟାଧି ଦେଖାଗଲା । ସାହୁଜୀ ମୁହଁ ସାରା ସେହି ବ୍ୟାଧିର ଚିହ୍ନମାନ ନିର୍ବିକାର ଭାବରେ ବହନକରି ପୂର୍ବପରି ଅସଙ୍କୋଚ ଭାବରେ ମିଳାମିଶା କରୁଥାନ୍ତି । ବୋଧହୁଏ ସହ ବିଚରଣ ଓ ଗ୍ରହଣ ସାହୁଜୀଙ୍କର ଦ୍ୱିତୀୟ ପ୍ରକୃତି ହୋଇଉଠୁଥିଲା । ଏବେ ସାହୁଜୀ ଆସିଲେ, ତାଂକ ସହିତ ପୂର୍ବ ପରି ଏକ ଖଲିରେ ମୁଁ ଜଳଖିଆ ଖାଉଥିଲି । କିନ୍ତୁ ଥରେଅଧେ ସେ ମୋର ଅତିଥି ହୋଇ ଦିବାଭାଗରେ ଅନ୍ନଭୋଜନ ମଧ୍ୟ କଲେ । ବର୍ତ୍ତମାନ ବ୍ୟବହୃତ ଥାଳି ସାଧାରଣ ମେସ୍‌ର ଥିବାରୁ, ସାଙ୍ଗପିଲେ ଆପତ୍ତି କରିବାକୁ ଲାଗିଲେ ଓ ମତେ କହିଲେ ସାହୁଜୀଙ୍କୁ ମଧ୍ୟ ଆସିବାକୁ ମନାକରିବାକୁ । ମୁଁ ଉତ୍ତର ଦେଲି – ''ମୁଁ ତା' କରିପାରିବିନାହିଁ –

ତମର ଆବଶ୍ୟକତା ଥିଲେ ତମେ କହ ।''

କଥା ୱାର୍ଡ୍ରେନ୍ ପରିଜାସାହେବଙ୍କ କାନକୁ ଗଲା । ସେ ପିଲାଙ୍କ ଆପତ୍ତି ଯଥାର୍ଥ ମନେ କଲେ ଓ ଥରେ ଉଦୁଉଦିଆ ଖରାବେଳଟାରେ ସାହୁଜୀ ମୋର ଅତିଥି ହୋଇ ଖାଇବାକୁ ଯିବାବେଳେ, ପିଲାଙ୍କ ପ୍ରତିନିଧିଗଣ ନିଷ୍ଠୁର ଭାବରେ ତାଙ୍କୁ ବାରଣକଲେ । ମୂଳରୁ ଶେଷଯାଏ ମୁଁ କେବଳ ନୀରବ ଓ ସ୍ତମ୍ଭୀଭୂତ ହୋଇ ରହିଥାଏ । ଶେଷରେ ବରେଣ୍ୟ ସାହୁଜୀ ଏହା କହି ମୋଠାରୁ ବିଦାୟ ନେଇଥିଲେ– 'ମାୟାଧର, ଦୁଃଖ କରିବ ନାହିଁ । ଦୋଷ ମୋର । ମୁଁ ବିଦାୟ ନେଉଛି ।'

ଏ କରୁଣ ଅଭିଜ୍ଞତା ମୋସ୍ମୃତିରେ ଏପର୍ଯ୍ୟନ୍ତ ଜୀବନ୍ତ ରହିଛି । ଏବେ ଜଣାପଡୁଛି ଯେ ସେ ରୋଗ ଯେପରି ସଂକ୍ରାମକ ଓ ଦୁରାରୋଗ୍ୟ ବୋଲି ଲୋକରେ ବିଶ୍ୱାସ ହେଉଥିଲା, ତାହା ଆଦୌନୁହେଁ । ଡକ୍ଟର ଆଇଜାକ୍ ସାନ୍ତାଙ୍କ ଚିକିତ୍ସାରେ ସାହୁଜୀ ସଂପୂର୍ଣ୍ଣ ରୋଗମୁକ୍ତ ହୋଇ ଯାଇଥିଲେ । ପରେ ଡକ୍ଟର ସାନ୍ତାଙ୍କ ସହିତ ସମ୍ବଲପୁରରେ ଘନିଷ୍ଠ ପରିଚୟ ହେଲା । ବକ୍ଷ୍ୟମାଣ ସମୟରେ ସାନ୍ତା ଥିଲେ ଦକ୍ଷିଣ ଭାରତର ଭେଲୋର ସହରରେ । ସାନ୍ତା କହୁଥିଲେ, ସାହୁଜୀଙ୍କୁ ସେ ଏକା ଘରେ ଖଟକୁ-ଖଟ-ଲଗାଇ ଶୁଆବସା କରି ଚିକିତ୍ସା କରାଇଥିଲେ ।

ଓଡ଼ିଆମାନଙ୍କର କୂପମଣ୍ଡୂକତାରୁ ଦୃଷ୍ଟାନ୍ତ ସ୍ୱରୂପ ସାହୁଜୀ କିନ୍ତୁ ଅନେକ ଥର ଆମକୁ କହୁଥିଲେ – ମୋ ବ୍ୟାଧି ନେଇ ତ ଏତେ ଲୋକ ସଚେତନ । ମୁଁ ଭେଲୋରରେ ରହି ଆସିଲି ଏତେ ମାସ। ଜଣେହେଲେ ତ ଓଡ଼ିଆ–ଛାତ୍ର ପଚାରୁନି, ମୁଁ ଭେଲୋରରେ କ'ଣ ଦେଖି ଆସିଲି ?

ଭେଲୋରର ଅଭିଜ୍ଞତା ଘେନି ସାହୁଜୀ ଚଉଦ୍ୱାରରେ କୁଷ୍ଠଚିକିତ୍ସାଳୟ ଖୋଲି ଦେଇଥିଲେ । କଲେଜର ଛାତ୍ର ଥିଲାବେଳେଇ ମୁଁ ତାଙ୍କ ସାଥିରେ ଚଉଦ୍ୱାର ଯାଇ ତାଙ୍କର କୁଷ୍ଠଚିକିତ୍ସା ଦେଖିଥିଲି । ସେ ନିଜେ ରୋଗୀମାନଙ୍କୁ ଇଂଜେକ୍‌ସନ୍ ଦେଉଥିଲେ ଓ ରୋଗୀ ନିଜେ ନିଜେ ଇଂଜେକ୍‌ସନ୍ କିପରି ନେଇପାରିବେ ତାହା ମଧ୍ୟ ବତାଇଦେଉଥିଲେ । ଏହା ସାନ୍ତାଙ୍କ ପଦ୍ଧତି । ସାହୁଜୀଙ୍କର ଚିକିତ୍ସାରେ ହିଁ ଚଉଦ୍ୱାର ଠାରେ ସଂପୂର୍ଣ୍ଣ ଆରୋଗ୍ୟପ୍ରାପ୍ତ ଲୋକ ମୁଁ ଦେଖିଥିଲି ।

ଏଇପରି କେତେ ଜୀବନର କେତେ ବିପଦ, କେତେ ସଙ୍କଟ ବେଳେ ସାହୁଜୀ ଦେଖାଦେଇ ଅତି ଆବଶ୍ୟକ ସାହାଯ୍ୟ ସହାନୁଭୂତି ବିତରଣ କରିଯାଇଛନ୍ତି – କିଏ ତା'ର ତାଲିକା କରିପାରିବ ? କେହି ବିଶ୍ୱାସ କରିବେ କି, କହିଲେ ଯେ ସୁଦୂର ଭବାନିପାଟଣାରେ ମୋର ପ୍ରଥମ ସନ୍ତାନର ଜନ୍ମ ହେଲାବେଳକୁ, ମୁଁ ଯେତେବେଳେ ବାହାର ବାରଣ୍ଡାରେ ବସି ମାତା ଓ ସନ୍ତାନର ନାନା କଳ୍ପିତ ବିପଦରେ ରୋରୁଦ୍ୟମାନ,

ସେତେବେଳେ ସାହୁଜୀ ସ୍ଥାନୀୟ ଡାକ୍ତରଙ୍କ ସହିତ ପ୍ରସୂତିର ଧାତ୍ରୀକାମରେ ନିଯୁକ୍ତ ଥିଲେ ?

ପରେ ସାହୁଜୀ ଓଡ଼ିଶା ସାହିତ୍ୟ ଏକାଡ଼େମିର ମୁଣ୍ଡଥାପନା ପ୍ରେସିଡେଣ୍ଟ ହେବା ମୁଁ ଆଦୌ ପସନ୍ଦ କରି ନ ଥିଲି ଓ ପ୍ରକାଶ୍ୟରେ ଏହା ତାଙ୍କୁ କହିଥିଲି । ଶେଷ ବୟସରେ ପଦ-ପଦବୀର ଲାଳସା ବୋଧହୁଏ ଉଗ୍ର ଭାବରେ ଦେଖାଦେଇଥାଏ । ଆମ ଦେଶରେ ବର୍ତ୍ତମାନ ମନୁଷ୍ୟଭାବରେ ମନୁଷ୍ୟର ବା ବ୍ୟକ୍ତି ଭାବରେ ବ୍ୟକ୍ତିତ୍ୱର ସମ୍ମାନ ଉଭେଇଗଲାଣି କହିଲେ ଚଳେ । ସ୍ୱାଧୀନତା ପରେ ଆମେ ଆମର ସକଳ ସମ୍ମାନ କୁର୍ଚି-ଚରଣ ତଳେ ହିଁ ଢାଳିବାକୁ ବ୍ୟଗ୍ର । ଲକ୍ଷ୍ମୀନାରାୟଣ ସାହୁ ଭାବରେ ଲକ୍ଷ୍ମୀନାରାୟଣ ସାହୁଙ୍କର ଏ ଦେଶରେ ସମ୍ମାନ ନାହିଁ – ଓଡ଼ିଶା ସାହିତ୍ୟ ଆକାଡ଼େମୀର ସଭାପତିର କୁର୍ଚି, ଲକ୍ଷ୍ମୀନାରାୟଣ ସାହୁଙ୍କଠାରୁ ଅଧିକ ସମ୍ମାନଜନକ । ସେ ଚୌକିରେ ବସିବାର ବିନିମୟରେ ବରେଣ୍ୟ ସାହୁ କିଭଳି ଲାଞ୍ଛିତ ଓ ନିର୍ଯାତିତ ହୋଇଛନ୍ତି ତାହା 'ଆମ କେତେକଙ୍କୁ ଉତ୍ତମରୂପେ ଜଣା । ତାହା ଥିଲା ଚୌକି ଚୌକିର ସଂଘର୍ଷ । ଏପ୍ରକାର କୁତ୍ସିତ ଇତରତାରେ ସାହୁଜୀ ପଶିବା ଉଚିତ ନ ଥିଲା ।

ଯାହାହେଉ ସେ ଅଧ୍ୟାୟର ତୁରନ୍ତ ସମାପ୍ତି ଘଟିଗଲା । ସାହୁଜୀ ବର୍ତ୍ତମାନ ଆମ ଆଗରେ ପଦ-ପଦବୀ-ନିର୍ବିଶେଷରେ ପୂର୍ବର ନିର୍ମଳ ଅକୁଣ୍ଠ-ସହ-ସହାୟତ୍ୱ-ବିତରଣକାରୀ ମାନବିକ ବ୍ୟକ୍ତିତ୍ୱ ନେଇ ଦଣ୍ଡାୟମାନ । ଜୀବନର ମୁଖ୍ୟ କାଳରେ ସାହୁଜୀ ଉତ୍କଳର ତରୁଣ ସମାଜରେ ଯେଉଁ ମୈତ୍ରୀ-ବନ୍ଧୁତାର ମହନୀୟ ଭୂମିକା ବହନ କରିଗଲେ, ତାହା ପ୍ରତି ପୁରୁଷ ହିଁ ଦରକାର କରେ । ତରୁଣ ପୁରୁଷ, ଜାତିର ଜୀବନର ସବୁ କେନ୍ଦ୍ରକୁ ଯୋଗକରୁଥିବା ଏକ ଅମାୟିକ ବ୍ୟକ୍ତିତ୍ୱର ସ୍ପର୍ଶ ଚାହେ । ଆମ କାଳରେ ଲକ୍ଷ୍ମୀନାରାୟଣ ସାହୁ ଆମ ନିକଟରେ ଏଇ ଭୂମିକାରେ ଆବିର୍ଭୂତ ହୋଇ ସମଗ୍ର ଉତ୍କଳର ସେବା କରିଯାଇଅଛନ୍ତି ।

ସାହୁଜୀଙ୍କର ସେହି ମହନୀୟ ଭୂମିକାକୁ ବାରମ୍ବାର ନମସ୍କାର କରେ ।

——

# ନମସ୍କରଣୀୟ ବିଶ୍ୱନାଥ

ସେ କାଳରେ ସ୍ୱର୍ଗତ ବିଶ୍ୱନାଥଙ୍କ ଉତ୍କଳ-ସାହିତ୍ୟରେ କୌଣସି ନୂତନ ଲେଖକର ଲେଖା ପ୍ରକାଶିତ ହେବା, ରାଜଦରବାରରେ ସମ୍ମାନ ପାଇବା ସଙ୍ଗେ ସମାନ ଥିଲା । ତାଙ୍କ ପରେ ଅନେକ ମାସିକ ପତ୍ରିକା ଦେଖିଲୁଣି, କିନ୍ତୁ କୌଣସି ସଂପାଦକ ନିଜ ବିଚାର ଓ ନିର୍ବାଚନକୁ ସେ ପ୍ରକାର ସମ୍ମାନାର୍ହ କରି ପାରି ନାହାନ୍ତି, ଯେପରି ଥିଲା ବିଶ୍ୱନାଥ କରଙ୍କର । ତାଙ୍କର ନିର୍ବାଚନର ପଛରେ ଥିଲା ପରିପୂର୍ଣ୍ଣ ଅପକ୍ଷପାତିତା ସଙ୍ଗେ ପୁଙ୍ଖାନୁପୁଙ୍ଖ ଅଧ୍ୟୟନ, ପୁଣି ବିଚାରରେ ଥିଲା ବିସ୍ତୃତ ଜ୍ଞାନର ଉଦାରତା ଓ ପ୍ରକୃତ ସାହିତ୍ୟିକର ପ୍ରାଣବନ୍ତ ସହାନୁଭୂତି । ସେହିଯୋଗୁଁ ପ୍ରତ୍ୟେକଟି ଉତ୍କଳ-ସାହିତ୍ୟର ସଂଖ୍ୟା ଗୋଟିଏ ସ୍ୱୟଂସମ୍ପୂର୍ଣ୍ଣ ସୁରଚିତ ପୁସ୍ତକ ପରି ଥିଲା ଏବଂ ଯାହାର ଲେଖା ସେଥିରେ ସ୍ଥାନ ପାଉଥିଲା, ଉତ୍ତମତମର ସଖ୍ୟ ଓ ସମାସନ ପାଇବାରେ ଯେଉଁ ସ୍ୱାଭାବିକ ଆନନ୍ଦ ଓ ଗୌରବ, ତାହା ସେ ପାଉଥିଲା । ଆଜି ଯେତେବେଳେ କପା, କର୍ପୂର ଏକ ବୋଲି ଧରାଯାଉଛନ୍ତି, କାରଣ ଦୁଇଟି ଯାକ ଧଳା, ସେତେବେଳେ ସେଦିନର ସେହି ଦୁର୍ଲଭ କିନ୍ତୁ ମହାର୍ହ ଆନନ୍ଦର କଥା କିଏ କାହିଁକି ବୁଝିବାକୁ ଚେଷ୍ଟା କରିବ ?

ଯେହେତୁ ବିଶ୍ୱନାଥ ସାହିତ୍ୟିକ ତରାଜୁର ଦଣ୍ଡ ଉପରେ ସବୁବେଳେ ଜାଗ୍ରତ ଦୃଷ୍ଟି ଦେଇଥିଲେ ଏବଂ ସେ ତରାଜୁ ଆଉ କାହା ହାତରେ ଦେଇ ନିଶ୍ଚିନ୍ତ ରହୁ ନ ଥିଲେ, ତେଣୁ ତାଙ୍କର ଦେଶବ୍ୟାପୀ ନିନ୍ଦା ଥିଲା ଯେ ସେ ଅନୁଦାର, ଅର୍ଥାତ୍ ସେ କେବଳ କେତୋଟି ବଛା, ବଛା, ଜଣାଶୁଣା ଲେଖକଙ୍କର ଲେଖାକୁ ନିଜ ପତ୍ରିକାରେ ସ୍ଥାନ ଦେଉଥିଲେ । ଅନ୍ୟ କଥାରେ ସେ ଧୂଆ ମୂଳାକୁ ଗ୍ରହଣ କରି, ଅଧୁଆମୂଳା ପାଇଁ କାହିଁକି ଗେଟ୍ ବନ୍ଦ କରି ଦେଉଥିଲେ, ଏଇ ହେଲା ତାଙ୍କର ବଡ଼ ଅପରାଧ । ବାସ୍ତବିକ୍ ଏବର ଏଇ ଭୋଟଚାଳିତ ଗଣପ୍ରାଧାନ୍ୟ କାଳରେ ବିଶ୍ୱନାଥଙ୍କର ସେ ପ୍ରକାର ଭଲମନ୍ଦ ବାଛିବାର ଅଭ୍ୟାସ ପ୍ରକୃତରେ ଅକ୍ଷମଣୀୟ ।

କିନ୍ତୁ ବିଶ୍ୱନାଥଙ୍କର ସେହି ବଦନାମ, ଅର୍ଥାତ୍ ସେ ଯେ କେବଳ ଜଣାଶୁଣା ବନ୍ଧୁବାନ୍ଧବ ନିଜ ଲୋକଙ୍କର ଲେଖାକୁ ପସନ୍ଦ କରି ଛପାଉଥିଲେ ଏହା ଏକାନ୍ତ ଅମୂଳକ । ତା'ର ପ୍ରମାଣ ଏଇ ଲେଖକ ନିଜେ । ମୋର ଲେଖା ଉତ୍କଳ ସାହିତ୍ୟରେ

---

* ଉତ୍କଳସାହିତ୍ୟ, ବୈଶାଖ ୧୩୬୩, ୧ମ ସଂଖ୍ୟା ।

ପ୍ରଥମ ପ୍ରକାଶିତ ହେଲାବେଳେ କେବଳ ନୁହେଁ, ତା'ର ବହୁ ବର୍ଷ ପର ଯାଏଁ ମଧ୍ୟ ବିଶ୍ୱନାଥଙ୍କ ସଙ୍ଗେ ମୋର କୌଣସି ପ୍ରତ୍ୟକ୍ଷ ପରିଚୟ ବା ବ୍ୟକ୍ତିଗତ ସମ୍ପର୍କ ନ ଥିଲା – ଅଥଚ ସେ ଓ ମୁଁ ଏକ କଟକ ସହରରେ ହିଁ ଥାଉଁ । ମୁଁ ତାଙ୍କୁ ବେଳେ ବେଳେ ଟାଉନ୍‌ହଲରେ, ଶ୍ରୀରାମଚନ୍ଦ୍ର ଭବନରେ ଦେଖେଁ, ତାଙ୍କ ବକ୍ତୃତା ଶୁଣେ, କିନ୍ତୁ କୌଣସି ଦିନ ତାଙ୍କ ସମ୍ମୁଖକୁ ଯାଇ ନିଜକୁ ତାଙ୍କ ନିକଟରେ ପରିଚିତ କରିବାର ସାହସ ମୁଁ କେବଳ ହେଲେ ଯୋଗାଡ଼ କରିପାରି ନ ଥିଲି ।

ତା'ପରେ ତାଙ୍କ ପତ୍ରିକାରେ ବହୁ ବର୍ଷ ଧରି ମଝିରେ ମଝିରେ କେଉଁଠି କିପରି ପ୍ରତ୍ୟକ୍ଷ ପରିଚୟ ହେଲା ମୋର ମନେନାହିଁ – କିନ୍ତୁ ସେ ପରିଚୟର କୌଣସି ଘନିଷ୍ଠ ଅର୍ଥ ହିଁ ନଥିଲା – ତାହା କେବଳ ମାମୁଲି ଏବଂ ହୁଏତ ସେତେବେଳକୁ ମୁଁ ଓ ମୋର ସ୍ୱର୍ଗତ ବନ୍ଧୁ ଭଗବତୀ ପାଣିଗ୍ରାହୀ ଠିକ୍ କଲୁଣି ଯେ ଦେଶଦ୍ରୋହୀ ବିଶ୍ୱନାଥ କରର ପତ୍ରିକା ସହିତ ଆଉ ନିଜକୁ ମିଶାଇ ନିଜକୁ କଳଙ୍କିତ କରିବୁ ନାହିଁ ଏବଂ ତାହାହିଁ କଲୁ । ବିଶ୍ୱନାଥ ଗାନ୍ଧିବାଦର ଓ କଂଗ୍ରେସର ନିନ୍ଦୁକ ହୋଇ 'ହିତବାର୍ତ୍ତା' ପ୍ରକାଶ କଲେ । ଦୂରରୁ ଦେଖି, ତାଙ୍କ ପ୍ରତି ସେଦିନ ଆମ୍ଭମାନଙ୍କର ତରୁଣଚିତ୍ତ ଘୃଣା ଓ କ୍ରୋଧରେ ପରିପୂର୍ଣ୍ଣ ହୋଇଉଠିଥିଲା । ସେଦିନ ଆମେ ଧରିନେଇଥିଲୁ ସେ ଏକ ଭଣ୍ଡ । ଆଜି କିନ୍ତୁ ବୁଝୁଛୁ ଯେ ଦୃଷ୍ଟିଭଙ୍ଗୀର ଦୋଷରୁ, ଅଭିଜ୍ଞତାର ଅପୂର୍ଣତା ଓ ଅପରିପକ୍ୱତା ଫଳରେ ସେକାଳର ସାମାଜିକ ଛବିଟା ଆମକୁ ଓଲଟା ଦିଶୁଥିଲା । ଆଜି ଦେଖୁଛୁ ଯେ ସେଦିନର ସ୍ୱର୍ଣପ୍ରତିମାଗୁଡ଼ିକ ଆମରି ପରି କେବଳ ମାଟିଗୋବରର ମୂର୍ତ୍ତି ଏବଂ ସ୍ୱମତରେ ଦୃଢ଼ବିଶ୍ୱାସ, ଅକୁତୋଭୟତା ଏବଂ ସ୍ପଷ୍ଟବାଦିତା ଯୋଗୁଁ ବିଶ୍ୱନାଥଙ୍କ ପ୍ରତି ଚିତ୍ତ ଆଜି ଗଭୀର ଶ୍ରଦ୍ଧାରେ ନଇଁ ଆସୁଛି ।

ବିଶ୍ୱନାଥ ସେହି ଯୁଗରେ ଜନ୍ମହୋଇଥିଲେ ଓ ବଢ଼ିଥିଲେ, ଯେତେବେଳେ ଜୀବନର ଲକ୍ଷ୍ୟକୁ ଓ ସାଧନାରେ ମାନଦଣ୍ଡକୁ ଉଚ୍ଚ ରଖିବା, ଦୈନନ୍ଦିନ ସଂସ୍କୃତିର ପ୍ରଧାନ ଓ ଅପରିହାର୍ଯ୍ୟ ଅଙ୍ଗ ଥିଲା । ସଂଖ୍ୟାଗରିଷ୍ଠର ଚାପରେ ଦୁର୍ବଳତା, ଦୀନତା, ଶ୍ରମକାତରତାକୁ ପ୍ରଶ୍ରୟ ଦେବାର ପ୍ରଶ୍ନ ସେତେବେଳେ ଅକଳ୍ପନୀୟ ଥିଲା । ଭୋଟ୍ ଭିତ୍ତିରେହିଁ ଜଣେ ଲୋକ ଦିନେ ସକାଳେ କୁଦା ମାରି ମନ୍ତ୍ରୀ-ଗାଦିରେ ବସିଯାଇ କୋଟି କୋଟି ଲୋକର ଭାଗ୍ୟନିୟନ୍ତ୍ରଣ ଏବଂ ପଦେ ପଦେ ବୁଦ୍ଧି ଓ ଅଭିଜ୍ଞତାର ପ୍ରତିଯୋଗିତାରେ ଉଠି ଉଠି ଆସିଥିବା ଜ୍ଞାନୀ ଓ ବିଚକ୍ଷଣ ଡିରେକ୍ଟର, ସେକ୍ରେଟାରୀ ମାନଙ୍କୁ ପରିଚାଳନା କରିବା ସେଦିନର ନାଗରିକର ଭାବନାର ବହୁ ଦୂରରେ ଥିଲା । ସେତେବେଳେ ସିଦ୍ଧି ଓ ସାଧନା ଘନିଷ୍ଠଭାବରେ ଅଙ୍ଗାଅଙ୍ଗୀ ଥିଲେ ଏବଂ କେବଳ ସେହି ସିଦ୍ଧି ଗୃହୀତ ହେଉଥିଲା, ଯାହା ଥିଲା ବିଚକ୍ଷଣତାର, ମୌଳିକତାର ଏବଂ

ଗଭୀର ସାଧନାର ଦ୍ୟୋତକ । ଏହି କାରଣରୁହିଁ ବିଶ୍ୱନାଥଙ୍କର ସେକାଳର ନିନ୍ଦା ଯେ, ସେ କେବଳ କେତୋଟି ଅଳ୍ପ ଲୋକର ଲେଖାହିଁ ଗ୍ରହଣ କରୁଥିଲେ । କିନ୍ତୁ ଠିକ୍ ସେହି କାରଣରୁହିଁ ଉତ୍କଳ-ସାହିତ୍ୟକୁ ସେ ଏପରି ଏକ ସମ୍ମାନର ଆସନ ଦେଇଯାଇଛନ୍ତି, ଯାହା ଆଧୁନିକ ଓଡ଼ିଆ ସାହିତ୍ୟର ସମଗ୍ର ଇତିହାସରେ ଅନ୍ୟ କୌଣସି ପତ୍ରିକା ପାଇବାର ଆଶା କରି ନ ପାରେ ଏବଂ ସେହି କାରଣରୁହିଁ କୌଣସି ଡିଗ୍ରି ନ ଥାଇ, କୌଣସି ଉଚ୍ଚପଦର ଅଧିକାରୀ ନ ଥାଇ ମଧ, ସେ ମୋ' ପରି ସେକାଳର ସବୁ ଲେଖକର ସମ୍ମାନ ଓ ସଂକୋଚର ପାତ୍ର ହୋଇପାରିଥିଲେ ଏବଂ ଯାହାଙ୍କର ପସନ୍ଦ ରାଜଦରବାର ପୁରସ୍କାର ସଙ୍ଗେ ସମାନ ମନେ କରାଯାଉଥିଲା । ଜଣେ ମାସିକପତ୍ରିକାର ସମ୍ପାଦକ ଯେ ଏପରି ଭୟ, ସମ୍ମାନ ଓ ସଙ୍କୋଚର ପାତ୍ର ହୋଇପାରେ, ଏହା ଆଜିକାଲି କେହି ବୋଧହୁଏ କଳ୍ପନା କରିପାରିବେନାହିଁ । କିନ୍ତୁ ଯେଉଁ ବିଶ୍ୱନାଥ ସମସାମୟିକ ଓଡ଼ିଆ ସାହିତ୍ୟର ରାଜା ଏବଂ ନିଜର ବନ୍ଧୁ ରାଧାନାଥ ରାୟଙ୍କ ତାଙ୍କ କବିତାରେ କେତେକ ଅଭାବ ଯୋଗୁଁ ସାହିତ୍ୟର ସମ୍ପାଦକୀୟ ସ୍ତମ୍ଭରେ ପ୍ରକାଶ୍ୟ ସମାଲୋଚନା କରି ପାରନ୍ତି, ସେ ସମ୍ମାନ ତାଙ୍କର ସ୍ୱାଭାବିକ ପ୍ରାପ୍ୟ ନୁହେଁ କି ?

ଦୋଷ ଓ ହୀନତାକୁ ସେ ସହ୍ୟ କରି ପାରୁ ନ ଥିଲେହେଁ, ବିଶ୍ୱନାଥ ଆଦୌ ଅନୁଦାର ନ ଥିଲେ – ଅନୁଦାର ଥିଲେ ବିଶ୍ୱନାଥ ଓଡ଼ିଶାର ଚାରି ପୁରୁଷର ସାହିତ୍ୟିକମାନଙ୍କର କେନ୍ଦ୍ର ସ୍ୱରୂପ ହୋଇନଥାନ୍ତେ । ରାଧାନାଥ, ଫକୀରମୋହନ, ମଧୁସୂଦନଙ୍କଠାରୁ ଆରମ୍ଭ କରି ଶଚୀ, ଗଡ଼ନାୟକ ପର୍ଯ୍ୟନ୍ତ, ଚାରି ପୁରୁଷର କବି ଓ ଲେଖକମାନଙ୍କର ବନ୍ଧୁ, ଆଶ୍ରୟଦାତା, ଉତ୍ସାହଦାତା, ଉପଦେଷ୍ଟା ଓ ସଂଶୋଧକ ହେବା ନୂତନ ଭାରତର ସମଗ୍ର ସାହିତ୍ୟରେ ଆଉ ଜଣେ ସଂପାଦକର ଭାଗ୍ୟରେ ଏପରି ଘଟିଥିବ କି ନାହିଁ ସନ୍ଦେହ । ଏହି ଚାରି ପୁରୁଷରେ ଓଡ଼ିଆ-ସାହିତ୍ୟ ସ୍ରୋତର ଜଳ କିପରି ବାରବାର ପରିବର୍ତ୍ତିତ ହୋଇଛି, ବିଜ୍ଞ ପାଠକେ ଜାଣନ୍ତି । କିନ୍ତୁ ଏକ ବିଶ୍ୱନାଥ ସବୁ ପ୍ରକାର ଜଳକୁ ନିଜ କୁମ୍ଭରେ ଭରି ନେଇ, ଉତ୍କଳ ସରସ୍ୱତୀଙ୍କର ପବିତ୍ର ପାଦୋଦକରେ ପରିଣତ କରିଦେଇଛନ୍ତି । ବ୍ରାହ୍ମ ହେଲେହେଁ ସେ ବ୍ରାହ୍ମଣ । ତାଙ୍କର ସ୍ପର୍ଶ ଥିଲା ପାବନ, ଚିତ୍ତ ଥିଲା ସର୍ବଦା ସୁନ୍ଦରର, ମହାନର ଅନୁସନ୍ଧାନୀ । ବୟସ ନିର୍ବିଶେଷରେ ସେ ଯେଉଁଠି ଯାହା କିଛି ଆଦରଣୀୟ ଦେଖୁଥିଲେ ତାକୁ ବରିନେଉଥିଲେ ।

ଏ ଲେଖକ ଯେତେବେଳେ ଗୋଟିଏ ମଫସଲ ହାଇସ୍କୁଲରୁ ଆସି କଟକ କଲେଜରେ ନାମ ଲେଖାଏ, ସେତେବେଳେ ସବୁଜମାନଙ୍କର ସ୍ୱର୍ଣ୍ଣଯୁଗ । ଶୁଭ୍ରକେଶ,

ଶୁଭ୍ର-ଶ୍ମଶ୍ରୁ ବିଶ୍ୱନାଥ କିନ୍ତୁ ସବୁଜମାନଙ୍କର ଏକମାତ୍ର ଓ ପରମବନ୍ଧୁ ଏବଂ ଏକମାତ୍ର କେନ୍ଦ୍ର ଓ ଆଶ୍ରୟ । ଖୋର୍ଦ୍ଧା ହାଇସ୍କୁଲରେ ଛାତ୍ର ଥିବା ବେଳୁ ଉତ୍କଳ-ସାହିତ୍ୟର ପୃଷ୍ଠାରେ ଅନ୍ନଦା-ବୈକୁଣ୍ଠ-କାଳିନ୍ଦୀ ପ୍ରଭୃତିଙ୍କର ନୂତନ ଧରଣର କବିତା, ଗଳ୍ପ, ପ୍ରବନ୍ଧ ଓ ଉପନ୍ୟାସ ସବୁ ପଢ଼ିବାକୁ ପାଇଥିଲୁଁ । ଅନେକାଂଶରେ ଆମର ଛୋଟ, ଅପକ୍ୱବୁଦ୍ଧିକି ସେ ସବୁ ଅବୋଧ ରହିଯାନ୍ତି, କିନ୍ତୁ ମୋଟ ଉପରେ ଗୋଟିଏ ନୂତନତ୍ୱର ଆଭାସ ମିଳୁଥାଏ – ବିଶେଷତଃ କବିତାରେ । କବିତାର ପୁଣି କି ପ୍ରାଚୁର୍ଯ୍ୟ ! ପ୍ରତି ସଂଖ୍ୟାରେ ଅନବଚ୍ଛିନ୍ନଭାବରେ ବୈକୁଣ୍ଠ-କାଳିନ୍ଦୀ-ଅନ୍ନଦାଶଙ୍କରଙ୍କର କବିତା ନିର୍ଝର-ବାରି ପରି ବୋଧହୁଏ । ବାସ୍ତବିକ୍ ଓଡ଼ିଆ ସାହିତ୍ୟରେ ସେ ଏକ ବସନ୍ତକାଳ । ପରେ ମୁଁ ବନ୍ଧୁ ଭଗବତୀଠାରୁ ଶୁଣିଛି ଯେ ବିଶ୍ୱନାଥ କାଳିନ୍ଦୀବାବୁଙ୍କ ନିକଟକୁ ଗଳ୍ପ ପାଇଁ ହିଁ ବାରମ୍ବାର ପତ୍ର ଲେଖୁଥିଲେ । ଅଭାବ ଥିଲା ଗଳ୍ପ ଓ ପ୍ରବନ୍ଧର, କବିତାର ନୁହେଁ । ସବୁଜ କବିତାର ସେହି ପ୍ରାବୃଟ-ପ୍ରାଚୁର୍ଯ୍ୟ ମଧ୍ୟରେ, ଏଇ ଲେଖକ ପରି ସେ କାଳରେ ଅନାମଧେୟ, ଅଜ୍ଞାତ, ଅପରିଚିତ, ଆତ୍ମଗ୍ଲାନିମୟ, ପ୍ରଥମବାର୍ଷିକ ଶ୍ରେଣୀର ଜଣେ ଛାତ୍ରର କବିତାକୁ ବିଶ୍ୱନାଥ ଯେ ତାଙ୍କ ପ୍ରସିଦ୍ଧ ପତ୍ରିକାରେ ସ୍ଥାନ ଦେଲେ ଏ ଲେଖକ ମନେକରେ ତା'ର ସାମାନ୍ୟ ସାହିତ୍ୟିକ ଜୀବନରେ ସେ ଏକ ବିଶିଷ୍ଟ ଘଟଣା । ଏହା ଭିତରେ ଏଇ ଲେଖକ ମଧ୍ୟ ଗୋଟିଏ ଯୋଡ଼ିଏ ସାହିତ୍ୟ ପତ୍ରିକାର ସଂପାଦନା କରିଛି । ସେଇ ଗୁରୁଭାର ବହନ କରିବାରେ ଏକମାତ୍ର ବିଶ୍ୱନାଥ ହିଁ ତା'ର ଆଦର୍ଶ ହୋଇ ରହି ଆସିଛନ୍ତି ଏବଂ ସମ୍ପାଦକ ଭାବରେ ବିଶ୍ୱନାଥ ତା' ପ୍ରତି ଯେପରି ବ୍ୟବହାର କରିଥିଲେ, ସେ ଚେଷ୍ଟା କରିଛି ସେହି ବ୍ୟବହାର ପରିଚୟ-ନିର୍ବିଶେଷରେ ପତ୍ରିକାରେ ପ୍ରକାଶିତ ହେବାପାଇଁ ଆସୁଥିବା ସବୁ ଲେଖା ପାଇଁକୁ ଜାଗ୍ରତ ରହିବା ।

ଆଉ ଏକ କଥା କହିଲେ ଅପ୍ରାସଙ୍ଗିକ ହେବ ନାହିଁ ବୋଲି ମନେକରେ । ଏ ଲେଖକର ପ୍ରଥମ ଲେଖା (ବାରବାଟୀ) ଉତ୍କଳ-ସାହିତ୍ୟରେ ପ୍ରକାଶ ହେଲା ପରେ ବାସ୍ତବିକ୍ ବନ୍ଧୁମାନେ ତାକୁ ଧନ୍ୟବାଦ ଦେବାକୁ ଲାଗିଲେ ଏବଂ ସମସାମୟିକ ଯେଉଁ ସାହିତ୍ୟିକ ବନ୍ଧୁମାନଙ୍କର ଲେଖା ଉତ୍କଳ-ସାହିତ୍ୟରେ ସେପର୍ଯ୍ୟନ୍ତ ବାହାରିପାରି-ନଥିଲା, ବାଟରେ ଦେଖାହେଲେ ସେମାନେ କହିଲେ 'ତମେ ଏଥର ଚକ୍ର ଭିତରକୁ ଚାଲିଗଲ !' – ଏପରି ଥିଲା ବିଶ୍ୱନାଥ ଓ ତାଙ୍କ ପତ୍ରିକାର ଖାତିର ସେତେବେଳେ । 'ଚକ୍ର' କ'ଣ ମୁଁ ତାହା କେବଳ ପ୍ରଥମ କରି ନିନ୍ଦୁକମାନଙ୍କଠାରୁ ଶୁଣିବାକୁ ପାଇଲି; କିନ୍ତୁ ସେ ଚକ୍ରର କୌଣସି ପ୍ରତ୍ୟକ୍ଷ ଅଭିଜ୍ଞତା ମୋର ହୋଇ ନାହିଁ, କାରଣ ବିଶ୍ୱନାଥ ଓ ସବୁଜଗଣ ସମସ୍ତଙ୍କଠାରୁ ହିଁ ମୁଁ ନିଜ ସଂକୋଚରେ ଦୂରେଇ ଦୂରେଇ ରହିଆସିଛି

ଏବଂ କୌଣସି ପ୍ରତ୍ୟକ୍ଷ ସମ୍ପର୍କ ନ ଥାଇ ମଧ୍ୟ ବିଶ୍ୱନାଥ ଯେ ଏ ଲେଖକର ସାମାନ୍ୟ ଲେଖାକୁ ତାଙ୍କ ପ୍ରସିଦ୍ଧ ପତ୍ରିକାରେ ଜାଗାଦେଇଥିଲେ, ସେଇଥିପାଇଁ ହିଁ ଆଜି ସେ ତାହା ନିକଟରେ ବ୍ୟକ୍ତିଭାବରେ ଓ ସଂପାଦକଭାବରେ ମାନନୀୟ ।

ବ୍ୟକ୍ତିଭାବରେ ବିଶ୍ୱନାଥ ପୁରୁଷ ପରି ପୁରୁଷ ଥିଲେ । ତାଙ୍କର ମୁଖମଣ୍ଡଳ ଥିଲା ତେଜୋଦୀପ୍ତ, ପରିଧାନ ସର୍ବଦା ପରିଷ୍କାର ପରିଚ୍ଛନ୍ନ ଓ ରୁଚିସମ୍ପନ୍ନ, ବଚନ ଥିଲା ଅନର୍ଗଳ, ଅଥଚ ସଂସ୍କୃତିସମ୍ପନ୍ନ ଓ ତେଜୋଦୀପ୍ତ । ତାଙ୍କର କର୍ମ, ବଚନ, ବ୍ୟବହାରରେ ସାମାନ୍ୟତମ ଇତରତା ନ ଥିଲା । ବ୍ରାହ୍ମଣ ହୋଇ ମଧ୍ୟ ବ୍ରାହ୍ମଣ୍ୟ ଧର୍ମର କୁତ୍ସିତତାକୁ ପଦାଘାତ କରିଥିଲେ । ସେ କୌଣସି କାଳେ କାହା ନିକଟରେ ନିଜ ମତ ବ୍ୟକ୍ତ କରିବାକୁ ଭୟକରିନଥିଲେ । ଏପରି ପୁଅ ଆଜି କାହିଁ ଏ ଦେଶରେ ?

ସେତେବେଳେ ଉତ୍କଳ-ସାହିତ୍ୟ ପ୍ରେସ୍ ଏବର କାଳୀଗଳି ଘରେ ନ ଥିଲା – ତାହା ଥିଲା କଟକ ଟ୍ରେଡ଼ିଂକମ୍ପାନୀ ଦୋକାନ ପାଖେ । ଅନେକ ସମୟରେ ସେଇବାଟେ ଯାଏ ଆସେ । ଅଧିକାଂଶ ସମୟରେ ମୁଁ ବିଶ୍ୱନାଥଙ୍କୁ ନିବିଷ୍ଟ ଚିତ୍ତରେ ଅଧ୍ୟୟନରତ ଥିବାର ଦେଖିଛି । ମୁଁ ଶୁଣିଛି, ଉତ୍କଳ-ସାହିତ୍ୟ ପ୍ରେସ୍‌ରୁ ଯାହା କିଛି ପ୍ରକାଶିତ ହେଉଥିଲା, ତା'ର ଶେଷ ପ୍ରୁଫ୍ ସେ ନିଜେ ନିଶ୍ଚେ ଦେଖୁଥିଲେ, ଆଉ ଉତ୍କଳ-ସାହିତ୍ୟର ପ୍ରୁଫ୍ ସେ ଏକାଧିକବାର ନିଜେ ଦେଖୁଥିଲେ । ସେଇଥିପାଇଁତ ସେ କାଳର ଉତ୍କଳ-ସାହିତ୍ୟ ଏପରି ନିର୍ଭୁଲ୍, ଏପରି ପରିପାଟୀ ମୁଦ୍ରଣରେ ପ୍ରକାଶିତ ହେଉଥିଲା । ଉତ୍କଳ-ସାହିତ୍ୟ ପ୍ରେସ୍‌ରୁ ସେକାଳରେ ପ୍ରକାଶିତ ଗଙ୍ଗାଧର ଓ ଚିନ୍ତାମଣିଙ୍କ ପୁସ୍ତକ ସବୁ ପାଠକେ ଦେଖିଛନ୍ତି କି ? ଓଡ଼ିଆ ଛାପାର ସେପରି ସୁନ୍ଦର ନିର୍ଭୁଲ୍ ପ୍ରକାଶ, ଓଡ଼ିଆ ପୁସ୍ତକର ସେପରି ରୁଚିସମ୍ପନ୍ନ ରୂପ, ଆଉ ଘଟି ନାହିଁ । ଅନେକ ତଥାକଥିତ ସାହିତ୍ୟିକ ଓ ସଂପାଦକ, ନାମ ଜାହିର ପାଇଁ ଖଣ୍ଡେ ଖଣ୍ଡେ ମ୍ୟାଗାଜିନ୍ ବାହାରକରି ଓ ତା'ରି ନାମକୁ ବିକେଇ ନିଜ ପ୍ରେସ୍ ଓ ପିଲାଙ୍କର ବହୁତ ଉନ୍ନତି କରିଛନ୍ତି ସତ୍ୟ, କିନ୍ତୁ ବିଶ୍ୱନାଥଙ୍କର ସେହି କଠୋର କର୍ତ୍ତବ୍ୟପରାୟଣତା, ସେହି ସାଧୁତା, ସେହି ରୁଚି କାହାଠି ଦେଖିଲୁ ନାହିଁ । ବିଶ୍ୱନାଥ ଶ୍ରମର, ସାଧନାର ଯେଉଁ ନିଷ୍କରୁଣ ମାନଦଣ୍ଡ ଅନ୍ୟମାନଙ୍କ ପ୍ରତି ପ୍ରୟୋଗ କରୁଥିଲେ, ଲୋକେ ଜାଣିବା ଉଚିତ, ସେହି ମାନଦଣ୍ଡ ସେ ନିଜ ପ୍ରତି ଅଧିକ କଠୋର ଭାବରେ ପ୍ରୟୋଗ କରୁଥିଲେ । ସେହି ଭାବରେହିଁ, ପୁରୁଷପୁଙ୍ଗବ ବିଶ୍ୱନାଥ ଓ ଶ୍ରେଷ୍ଠ ସଂପାଦକଙ୍କର ବରେଣ୍ୟ ବ୍ୟକ୍ତିତ୍ୱ ଗଢ଼ିଉଠିଥିଲା । ସେ ବ୍ୟକ୍ତିତ୍ୱ ଯେ, ଯାହା ଶସ୍ତା, ଯାହା ଇତର, ଯାହା ପ୍ରଚ୍ଛନ୍ନ ଚୋରି ବା ଅନୁକରଣ ମାତ୍ର, ତାହାକୁ ଗ୍ରହଣ କରି ପାରି ନାହିଁ – ଏଥିରେ ବିସ୍ମିତ ହେବାର କ'ଣ ଅଛି ? ସେଥିପାଇଁ ଆମପରି ସାମାନ୍ୟ ଲେଖକର

କଥା ଛାଡ଼ିଦିଅ, ସରସ୍ୱତୀ ଫକୀରମୋହନ ନିଜର ଅଦ୍ଭୁତ ବଙ୍କାଟଙ୍କା ଅକ୍ଷରରେ ଏକାଟାଣରେ ଗପ ବା କବିତା, ଲେଖି, ବିଶ୍ୱନାଥଙ୍କ ନିକଟକୁ ପଠାଇଦେଇ ବରାବର ଲେଖୁଥିଲେ "ବିଶ୍ୱନାଥବାବୁ, ମୁଁ ରାନ୍ଧି ଦେଇ ଯାଇଛି, ବାକି କାମତକ ତମର", ଏହା ମୁଁ ବିଶ୍ୱନାଥକରଙ୍କଠାରୁହିଁ ଶୁଣିଛି । ବିଶ୍ୱନାଥ କେବଳ ଫକୀରମୋହନଙ୍କ ଲେଖାର 'ବାକୀକାମ' ତକ କରୁନଥିଲେ, ସବୁ ଲେଖକମାନଙ୍କର କରୁଥିଲେ, କାରଣ ଏହି ଅଜ୍ଞାତନାମା ଲେଖକର ଏକାଧିକ ଲେଖା ସେ ସଂଶୋଧିତ କରି ମୁଦ୍ରିତ କରିବାର ମୋର ମନେପଡୁଛି ଏବଂ ସେହି ସଂଶୋଧନ ପାଇଁ ମୁଁ ଆଜି ବିଶ୍ୱନାଥଙ୍କୁ ନମସ୍କାର କରେଁ ।

ସଂପାଦକ ବିଶ୍ୱନାଥ କିପରି ଆଦର୍ଶବାଦୀ ଥିଲେ, ଏବଂ ଆଦର୍ଶ ପାଇଁ କିପରି ଅର୍ଥହାନି ଓ ଜନତାର ଅପ୍ରିୟତାକୁ ଅକୁଣ୍ଠଚିତ୍ତରେ ବରଣ କରୁଥିଲେ ତାହାର ଆଉ ଏକମାତ୍ର ଦୃଷ୍ଟାନ୍ତ ଦେଇ ଏ ପ୍ରବନ୍ଧ ସାଙ୍ଗ କରେଁ । ଗୋପୀନାଥ ନନ୍ଦଙ୍କ ସାରଳା ମହାଭାରତ ସମାଲୋଚନା ଆଜି ସାହିତ୍ୟର ଏକ ରତ୍ନ ବୋଲି ଗୃହୀତ ହେଉଛି ବା ହେବା ଉଚିତ । ତାହା ଦୀର୍ଘକାଳ ଉତ୍କଳ-ସାହିତ୍ୟରେ ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲା । କିନ୍ତୁ ଅଧିକାଂଶ ପାଠକ ଏ ପ୍ରବନ୍ଧ କାହିଁକି ବାହାରୁଛି ବୋଲି ବିରକ୍ତ ହେଉଥିଲେ । କିନ୍ତୁ ବିଶ୍ୱନାଥ ଜାଣିଥିଲେ ସେ ପ୍ରବନ୍ଧର ମୂଲ୍ୟ । ଲୋକେ ଯାହା କହନ୍ତୁ ସେ ସେଥିକି କର୍ଣ୍ଣପାତ କରି ନ ଥିଲେ ଏବଂ ପ୍ରବନ୍ଧ ଯେଉଁ ସଂଖ୍ୟାରେ ଶେଷହୋଇଛି, ସେଇ ସଂଖ୍ୟାର ସମ୍ପାଦକୀୟରେ ସେ ପଣ୍ଡିତ ନନ୍ଦଙ୍କ ରଚନାର ଉତ୍କର୍ଷ ସାହସର ସହିତ ପ୍ରତିପାଦନ କରିବାକୁ ଚେଷ୍ଟା କରିଛନ୍ତି । ଏପରି ସମ୍ପାଦକ ଆଜି କାହିଁ ? ଆଜି କୌଣସି ଅନୁଷ୍ଠାନ ଶତ ଶତ ନୂତନ ଲେଖକ ସୃଷ୍ଟିକରୁଥିବାର ଢ଼କ୍କା ପିଟିବାର ଦେଖୁଛୁ । କିନ୍ତୁ ଟିକିଏ ଆତ୍ମ-ପରୀକ୍ଷା ହେଉ– ବିଶ୍ୱନାଥ କର କ'ଣ ରଖିଯାଇଛନ୍ତି ତାହା ସଙ୍ଗେ ନିଜର ପସନ୍ଦକୁ ତୁଳନା କରି ଦେଖାଯାଉ ।

ନୂତନ ଓଡ଼ିଆ ସାହିତ୍ୟରେ ଦୁଇଟି ରଥୀହିଁ ସମ୍ପାଦକ ଭାବରେ ଓଡ଼ିଆ-ସାହିତ୍ୟକୁ ଗଢ଼ିବାରେ ସାହାଯ୍ୟ କରିଛନ୍ତି – ଜଣେ ହେଉଛନ୍ତି ସମ୍ବାଦ ପତ୍ର ସଂପାଦକ ନୀଳମଣି ବିଦ୍ୟାରତ୍ନ, ଆଉ ଜଣକ ମାସିକ-ପତ୍ର ସମ୍ପାଦକ ବିଶ୍ୱନାଥ କର । 'ଶଙ୍ଖ'ର ସମ୍ପାଦକଭାବରେ ବିଦ୍ୟାରତ୍ନଙ୍କୁ ନମସ୍କାର ଜଣାଇବାର ସୁଯୋଗ ଏ ଲେଖକ ପାଇଥିଲା । ଶ୍ରୀମାନ୍ ସୁନନ୍ଦଙ୍କ ଅନୁରୋଧରେ ମୁଁ ଆଜି ବିଶ୍ୱନାଥଙ୍କ ବ୍ୟକ୍ତିତ୍ୱ ପ୍ରତି ମୋର ଭକ୍ତିପୂର୍ଣ୍ଣ ନମସ୍କାର ଜଣାଇବାର ସୁଯୋଗ ପାଇ ଆନନ୍ଦିତ ।

––

# ତରୁଣ ଗବେଷକ ଚିତ୍ତରଞ୍ଜନ

ତରୁଣ ଶ୍ରୀମାନ୍ ଚିତ୍ତରଞ୍ଜନ ଦାସ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେତେ ପରିଚିତ ନୁହନ୍ତି– ବିଶେଷତଃ ଆଲୋଚନାର ଭୂମିରେ । ସେ ଏବେ ଡେନମାର୍କର ଲୋକ ବିଦ୍ୟାଳୟମାନଙ୍କର ଅଭିଜ୍ଞତା ନେଇ ଓଡ଼ିଶାକୁ ଫେରି ନୀରବରେ ଅନୁଗୁଳରେ ଏକ ବେସିକ୍ ବିଦ୍ୟାଳୟର ଅଧକ୍ଷତା ଓ ସେଇ ସୂତ୍ରରେ ଶୈକ୍ଷିକ ପରୀକ୍ଷା ନେଇ ବ୍ୟସ୍ତ । କିନ୍ତୁ ସେ ମତେ ତାଙ୍କର ଦୁଇଖଣ୍ଡ ବିରାଟ ଆଲୋଚନାତ୍ମକ ଓଡ଼ିଆ ବହି ଯାହା ଉପହାର ଦେଇଛନ୍ତି ତାକୁ ପଢ଼ିସାରିଲା ପରେ ମୁଁ ଚିତ୍ତରଞ୍ଜନଙ୍କୁ ବେସିକ୍ ସ୍କୁଲର ଶିକ୍ଷକ ଭାବରେ ଯଶୋବନ୍ତ ହେବାପାଇଁ ଆଶୀର୍ବାଦ କରିପାରୁନାହିଁ । ମୁଁ ଚାହେଁ ଏଇ ବୁଦ୍ଧିମାନ୍ ଓ ଜ୍ଞାନବାନ ତରୁଣ ସାହିତ୍ୟକ୍ଷେତ୍ରକୁ ଫେରିଆସନ୍ତୁ – ତାଙ୍କର ପ୍ରକୃତ କ୍ଷେତ୍ର ସେଇଠି । ପ୍ରକୃତି ତାଙ୍କୁ ଗଢ଼ିଛି ବୁଦ୍ଧିଜୀବୀ କରି । ଏଇ ଉଜ୍ଜ୍ୱଳ-ବୁଦ୍ଧି ତରୁଣ କେବଳ ଗଛକଟା, ଘର ଭିତରେ ବ୍ୟସ୍ତ ରହିଲେ ଦେଶ ବା ଚିତ୍ତରଞ୍ଜନଙ୍କର କାହାରି ହେଲେ ପ୍ରକୃତ ଶୁଭ ହେବ ବୋଲି ମୁଁ ମନେ କରୁନାହିଁ ।

ଚିତ୍ତରଞ୍ଜନ ଯେଉଁ ଦୁଇଖଣ୍ଡି ପୁସ୍ତକ ମତେ ପଢ଼ିବାକୁ ଦେଇଥିଲେ ତାହା ହେଉଛି, 'ଓଡ଼ିଶାରେ ମହିମାଧର୍ମ' ଓ 'ଅଚ୍ୟୁତାନନ୍ଦ ଓ ପଞ୍ଚସଖା-ଧର୍ମ'। ରାଧାନାଥ ଗ୍ରନ୍ଥାବଳୀ ସାଇଜରେ ଏ ଦୁଇଟି ମୋଟରେ ଛଅଶତ ପୃଷ୍ଠା । ଗୁଣର କଥା ପରେ କହିବା । ଏପରି ବିରାଟକାୟ ଆଲୋଚନାଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ନଥିଲା କହିଲେ ଚଳେ । ଆଲୋଚନାର ବିଶିଷ୍ଟ ରୀତି ଯୋଗୁ ଏ ବିରାଟ ଗ୍ରନ୍ଥ-ଯୁଗ୍ମ ସୁଖପାଠ୍ୟ ମଧ ହୋଇପାରିବ । ତଥାପି ଓଡ଼ିଆ ସାହିତ୍ୟର ପ୍ରତ୍ୟେକ ଶୁଭାକାଂକ୍ଷୀ ଏ ବହି ଦୁଇଟି ଉପରେ ଆଖି ବୁଲେଇ ନେବା ଉଚିତ୍ ।

ଚିତ୍ତରଞ୍ଜନ ଯେଉଁଥିରେ ହାତ ଦେଲେ, ଓଡ଼ିଆ ଭାଷାରେ ତାହା ଏକ ଉର୍ବର ଆଲୋଚନା କ୍ଷେତ୍ର । ଆଗରୁ କେହି ସାମଗ୍ରିକ ଭାବରେ ଏ କ୍ଷେତ୍ରରେ ପର୍ଯ୍ୟବେକ୍ଷଣ କରିନଥିଲେ । ତରୁଣ ଚିତ୍ତରଞ୍ଜନ, ତାରୁଣ୍ୟର ଉତ୍ସାହ ଓ ସାହସ ଘେନି ଓ ଶାନ୍ତିନିକେତନର ଜ୍ଞାନପୋଷକ ବାତାବରଣ ଯୋଗୁ ସେହି ଅଗମ୍ୟ ଓ ଦୁର୍ଗମ ଜଙ୍ଗଲ ପରିକ୍ରମା କରି ଚାଲିଆସିଛନ୍ତି ।

---

ଏହି ଆଲୋଚନା ଝଙ୍କାର ୭ମ ବର୍ଷ/୩ୟ ସଂଖ୍ୟା /୧୩୬୨ ସାଲରେ ପ୍ରକାଶିତ । ଶ୍ରୀ ମାନସିଂହଙ୍କ ଏହି ଆଲୋଚନାକୁ ଚିତରଂଜନଙ୍କ ଶିକ୍ଷକ ସାହିତ୍ୟିକ ବ୍ୟକ୍ତିତ୍ୱର ପ୍ରଥମ ନିରପେକ୍ଷ ଆକଳନ ଭାବ୍‌ରେ ଗ୍ରହଣ କରାଯାଇପାରେ ।

କିନ୍ତୁ ତାଙ୍କ ପରିକ୍ରମାର ସେ ଯେଉଁ ବିବରଣ ଏ ଗ୍ରନ୍ଥ-ଯୁଗ୍ମରେ ଦେଇଛନ୍ତି ତାହା ତାଙ୍କର ବହୁପାଠିତ୍ୱର ଉଜ୍ଜ୍ୱଳ ଦୃଷ୍ଟାନ୍ତ ଦେବା ସାଙ୍ଗେ ସାଙ୍ଗେ, ଛାପ ମଧ୍ୟ ରଖି-ଯାଇଛି ତାଙ୍କର ଅପକ୍ୱବିଚାରର, ଭୀରୁ ଜାତୀୟତାର ତରୁଣଜନୋଚିତ ପ୍ରଗଲ୍‌ଭତାର । ଶ୍ରୀମାନ୍ ଆଉ ପାଞ୍ଚବର୍ଷ ପରେ ଏଇ ବହି ଲେଖିଥିଲେ, ଏଇ ଦୁଇଗ୍ରନ୍ଥ ତାଙ୍କର ସାଂପ୍ରତିକ ସାଇଜ୍‌ର ଏକ-ତୃତୀୟାଂଶରେ ପ୍ରକଟିତ ହୋଇ ପାରିଥାନ୍ତା । ମୁଁ ମନେ-କରୁଛି ଯେ, ଶ୍ରୀମାନ୍ ନିଜେ ଏହା ବୋଧ କରିବାକୁ ଆରମ୍ଭ କରିବେଣି ।

ତେଣୁ ଶ୍ରୀମାନ୍ ଚିତ୍ତରଞ୍ଜନଙ୍କୁ ମୁଁ ଯେ ସମ୍ବର୍ଦ୍ଧନା ଜଣାଉଛି ତାହା ତାଙ୍କର ଏଇ ଗ୍ରନ୍ଥ ନିବିଷ୍ଟ ସିଦ୍ଧି ପାଇଁ ନୁହେଁ, ତାହା ହେଉଛି ଯେଉଁ ସମ୍ଭାବନା ମୁଁ ଦେଖିପାରୁଛି ତାଙ୍କ ଲେଖନୀରେ, ସେଥିପାଇଁ । ତାଙ୍କର ରଚନାଶୈଳୀ, ତାଙ୍କର ସଂପୂର୍ଣ୍ଣ ନିଜସ୍ୱ-ସାବଲୀଳ, ସହଜ ପ୍ରକାଶ; ବୁଦ୍ଧିରଞ୍ଜିତ, ପ୍ରବହମାନ, ସୁନ୍ଦର ଗଦ୍ୟ । ପଞ୍ଚସଖାଙ୍କ ଧର୍ମନୀତି, ସମାଜସଂସ୍କାର ବା ମହିମା ଗୋସାଇଁଙ୍କ ଜୀବନ ଚରିତ ଇତ୍ୟାଦି ଯାହା ଏଇ ଗ୍ରନ୍ଥ ଦୁଇଟିରେ ସେ ଆଲୋଚନା କରିଛନ୍ତି ତାହା ମୁଁ ସେତେ ଉପଭୋଗ କରିନି ଯେତେ କରିଛି ଚିତ୍ତରଞ୍ଜନଙ୍କ ଲିଖନ-ପାଟବ । ଏହି ଗଦ୍ୟଶୈଳୀହିଁ ତାଙ୍କର ଭବିଷ୍ୟତର ସୂଚକ । ତାଙ୍କର ସିଦ୍ଧାନ୍ତ ସବୁ ଠିକ୍ ବା ଭ୍ରାନ୍ତ ହୋଇପାରେ – ମୁଁ ତ ବୋଧକରୁଛି ଯେ ଅଧିକାଂଶ ଭ୍ରାନ୍ତ । କିନ୍ତୁ ତାଙ୍କ ତର୍କପ୍ରବଣତା ଓ ଲିଖନ-ଭଙ୍ଗୀର ସୌନ୍ଦର୍ଯ୍ୟରେ ତ କୌଣସି ଭ୍ରାନ୍ତିର ଅବକାଶ ନାହିଁ । ମୁଁ ସେଇଗୁଡ଼ିକ ହିଁ ବେଶ୍ ଉପଭୋଗ କରିଛି ।

ପଞ୍ଚସଖାଙ୍କ ଭିତରୁ ଚିତ୍ତରଞ୍ଜନ କେବଳ ଅଚ୍ୟୁତାନନ୍ଦ ଦାସଙ୍କର ହିଁ ବିସ୍ତୃତ ଆଲୋଚନା କରିଛନ୍ତି । ମହିମାଧର୍ମ ସମ୍ବନ୍ଧରେ ତାଙ୍କର ଗ୍ରନ୍ଥଟି ଏ ବିଷୟରେ ବିସ୍ତୃତ-ତମ ଆଲୋଚନା କହିଲେ ଚଳେ ।

ବର୍ତ୍ତମାନ ଚିତ୍ତରଞ୍ଜନଙ୍କ ପଞ୍ଚସଖାମାନଙ୍କ ସମ୍ବନ୍ଧରେ ଓ ମହିମାଧର୍ମ ଯାହା ସିଦ୍ଧାନ୍ତ, ତାରି ଉପରେ ମୋର ନିଜର ଯାହା ମତ ତାହାହିଁ କହି ରଖେ ।

ମୋଟ ଉପରେ ସେ ପ୍ରାମାଣ କରିବାକୁ ଯାଇଛନ୍ତି ଯେ ମହିମାଧର୍ମ ପ୍ରଚ୍ଛନ୍ନ ବୌଦ୍ଧଧର୍ମ ନୁହେଁ (ଯାହା ପ୍ରାଚ୍ୟବିଦ୍ୟାର୍ଣ୍ଣବ ନରେନ୍ଦ୍ରନାଥ ବସୁ ତାଙ୍କର ଇଂରାଜୀ ଗ୍ରନ୍ଥରେ କରିବାକୁ ଯାଇଛନ୍ତି, ପଞ୍ଚସଖା-ଧର୍ମ ସହିତ) ।

ଦ୍ୱିତୀୟରେ ପଞ୍ଚସଖା ଓଡ଼ିଶାରେ ଧର୍ମଜଗତରେ ବିରାଟ ସଂସ୍କାରକ ଗୋଷ୍ଠୀ, କାରଣ ସେମାନେ ତାତ୍କାଳିକ ସବୁ ମତର ଏକ ସମାଧାନ କରିବାକୁ ଚେଷ୍ଟାକରିଛନ୍ତି ।

ମୁଁ ଦୁଇଟି ଯାକରୁ କୌଣସିଟିରେ ଏକମତ ନୁହେଁ । ପ୍ରଥମେ ମହିମାଧର୍ମର କଥା ଦେଖାଯାଉ ।

ମହିମାଧର୍ମର ତଥାକଥିତ ପ୍ରବର୍ତ୍ତକ ଶ୍ରୀମହିମା ଗୋସାଇଁଙ୍କ ଜୀବନୀ ରହସ୍ୟମୟ । ଚିତ୍ତରଞ୍ଜନ ସେ ରହସ୍ୟ ଭେଦ କରିବାକୁ ଆଦୌ ଚେଷ୍ଟା କରିନାହାନ୍ତି – ସବୁକଥା ମାନି ନେଇଛନ୍ତି । ସେ ନିଶ୍ଚୟ ଜଣେ ଓଡ଼ିଆ ଥିଲେ, କିନ୍ତୁ ତାଙ୍କୁ ବର୍ଣ୍ଣିତ କରାଯାଇଛି ଯେ, ସେ ସ୍ୱୟଂ ଈଶ୍ୱର ଏବଂ ପ୍ରଥମେ ହିମାଳୟ ଓ କୈଳାସରେ ଅବତୀର୍ଣ୍ଣ ହୋଇ ୧୮୨୬ ଖ୍ରୀଷ୍ଟାବ୍ଦରେ ଆସି ପ୍ରଥମେ ଶିଷ୍ୟମାନଙ୍କୁ ପୁରୀରେ ଦର୍ଶନ ଦେଲେ । ମନେରଖିବାକୁ ହେବ ଯେ, ସେତେବେଳକୁ ଇଂରେଜମାନେ ଓଡ଼ିଶାକୁ ୧୨ ବର୍ଷ ଶାସନ କରିସାରିଲେଣି ଏବଂ ପ୍ରତିବେଶୀ ବଙ୍ଗ ଦେଶରେ ରାଜା ରାମମୋହନ ରାୟଙ୍କ ଅପୌତ୍ତଳିକ ଧର୍ମ ସଂସ୍କାର ସୁପ୍ରତିଷ୍ଠ ହୋଇ ସାରିଲାଣି । ସମଗ୍ର ଭାରତରେ ଖ୍ରୀଷ୍ଟାନ ମିସନାରୀ ଦଳ ଦଳ ହୋଇ ଭାରତବାସୀଙ୍କୁ ଅନ୍ଧାରରୁ ଆଲୋକକୁ ନେବାକୁ ବୁଲୁଥାନ୍ତି । କିନ୍ତୁ ତଥାପି ଧର୍ମର ସମୂହ ଗ୍ଲାନି ଘଟିଲା ଯେ ଭଗବାନ ମହିମା ଗୋସାଇଁ ରୂପରେ ଅବତୀର୍ଣ୍ଣ ହେଲେ, ପୁଣି 'ପୁରୀରେ । ପୁଣି ସେ ନିଜକୁ ବୁଦ୍ଧ ବା ପ୍ରବୁଦ୍ଧସ୍ୱାମୀ ରୂପରେ ପ୍ରଚାର ବା କଲେ କାହିଁକି, ପୁଣି ରାତିରେ ନ ଖାଇବା, ବ୍ରାହ୍ମଣ ଜାତିକୁ ଘୃଣା କରିବା ପ୍ରଭୃତିରେ କି ସତ୍ୟଧର୍ମ ବା ସଂସ୍ଥାପିତ ହେଲା ? ଏ ସବୁ ସ୍ପଷ୍ଟ ବୌଦ୍ଧଧର୍ମର ଲକ୍ଷଣ । ବୌଦ୍ଧଧର୍ମ ଓଡ଼ିଶାର ଗଡ଼ଜାତ ଅଞ୍ଚଳରେ ଏବେ ବି ବଞ୍ଚି ରହିଛି । ଖୁବ ସମ୍ଭବତଃ ତଥାକଥିତ ମହିମା ଗୋସାଇଁ ବୌଦ୍ଧ-ନିସେବିତ କୌଣସି ଗଡ଼ଜାତରେ ଜନ୍ମଗ୍ରହଣ କରିଥିଲେ । ପୌତ୍ତଳିକତା ଓ ପୌରୋହିତ୍ୟର ଅନ୍ୟାୟ ଅନାଚାର ବିରୁଦ୍ଧରେ ସେ ଯେଉଁ ସଂସ୍କାରମୂଳକ ପ୍ରଚାର ଆରମ୍ଭ କଲେ, ସେଥିରେ ବୌଦ୍ଧ ଓ ବ୍ରାହ୍ମଣ୍ୟ ଧର୍ମର ଏକ ବିଚାର ପ୍ରତିଷ୍ଠା ମିଶ୍ରଣ ସେ ଚେଷ୍ଟାକଲେ । ତାହାହିଁ ହେଉଛି ଅଲେଖ ଧର୍ମ ବା ମହିମା ଧର୍ମ । ଏହି ଧର୍ମକୁ ପ୍ରଚ୍ଛନ୍ନ ବୌଦ୍ଧ ପରି ପ୍ରଚ୍ଛନ୍ନ ବେଦାନ୍ତ ବୋଲି ମଧ୍ୟ ବର୍ଣ୍ଣନା କରାଯାଇପାରେ । କିନ୍ତୁ ଏ ଦେଶର ପରମ୍ପରାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ, ଏକ ସ୍ୱତନ୍ତ୍ର ଧର୍ମ ବୋଲି ଏହାକୁ ମନେକରିବାର କୌଣସି କାରଣ ମୁଁ ଦେଖୁନି, ଯଦିଓ ଏହି ଧର୍ମାବଲମ୍ବୀମାନଙ୍କର କଠୋର ନୈତିକତା, ସରଳ ନିରୀହ ଜୀବନ, ନିରାଡ଼ମ୍ବର ନିଷ୍ଠା ଏବଂ ଅପୌତ୍ତଳିକତା ଓ ବ୍ରାହ୍ମଣ-ବିରୋଧକୁ ଅନ୍ତରର ସହିତ ମୁଁ ସମ୍ମାନ କରେ । ବ୍ରାହ୍ମଣ ପୁରୋହିତ ପରିଚାଳିତ ସାଧାରଣ କୁସଂସ୍କାରମୟ ପୌତ୍ତଳିକ ତଥାକଥିତ ହିନ୍ଦୁଧର୍ମ ଠାରୁ ଏହି ମହିମାଧର୍ମ ଢେର ଉଚ୍ଚରେ, କିନ୍ତୁ ତା'ର ଅର୍ଥ ନୁହେଁ ଯେ ଏ ଧର୍ମ ବୈଜ୍ଞାନିକ ଆଲୋଚନାର ବାହାରେ । ପଣ୍ଡିତମାନେ ଯୀଶୁଖ୍ରୀଷ୍ଟ ଓ ବୁଦ୍ଧଙ୍କ ଅସ୍ତିତ୍ୱକୁ ସନ୍ଦେହ କରିବା ସ୍ଥଳେ ବହୁପାଠୀ, ବୁଦ୍ଧିମାନ ଚିତ୍ତରଞ୍ଜନ ମହିମାଧର୍ମ ଉପରେ ବିଶ୍ୱନାଥବାବା ଯାହା କହିଗଲେ ତାକୁଇ କେବଳ କିପରି ମାନି ନାହାନ୍ତି, ପରିପୋଷଣ

ମଧ୍ୟ କରିଛନ୍ତି, ମୁଁ ଦେଖି ଆଶ୍ଚର୍ଯ୍ୟ ହେଲି ।

ଏ ଦୃଷ୍ଟିକୋଣ ସତ୍ୟସନ୍ଧାନୀର ଉପଯୁକ୍ତ ନୁହେଁ । ଚିତ୍ତରଞ୍ଜନଙ୍କର ଏକମାତ୍ର ଲକ୍ଷ୍ୟ ହେବା ଉଚିତ୍ ଅନଳଂକୃତ, ନିଷ୍ଠୁର ନିରାଭରଣ ସତ୍ୟ ।

ପଞ୍ଚସଖାମାନଙ୍କ ସମ୍ବନ୍ଧରେ 'ଓଡ଼ିଶାରେ ମହିମାଧର୍ମ' ପୁସ୍ତକର ଶେଷାଂଶରେ ଯାହା କହିଛନ୍ତି ତାହା ସମଗ୍ର ଭାବରେ ଉଦ୍ଧାର କରିବାର ପ୍ରଲୋଭନ ମୁଁ ଏଡ଼ିପାରୁନି । କୌଣସି ଲେଖକ ପଞ୍ଚସଖାଙ୍କ କୃତିତ୍ୱକୁ ଏପରି ସଂକ୍ଷିପ୍ତ-ନିଟୋଳ ଭାବରେ ପ୍ରକାଶ କରିଥିବାର ମୋ ଆଖିରେ ଏଯାଏଁ ପଡ଼ିନି । ସେ କହିଛନ୍ତି –

"ପଞ୍ଚସଖାଙ୍କୁ କେବଳ ଶୂନ୍ୟବାଦୀ ବା କେବଳ ସଂକୀର୍ତ୍ତନ-ଲାଳସୀ ମତ୍ତ ଭକ୍ତ ବୋଲି କହିଲେ ଆମେ ସେମାନଙ୍କ ପ୍ରତି ଗୁରୁତର ଅନ୍ୟାୟ କରିବା । ତଦ୍ୱାରା କେବଳ ଆମର ଦୀନ ମନର ପରିଚୟ ମିଳିବ । ପଞ୍ଚସଖା-ଧର୍ମ ସେ ଯୁଗର ପ୍ରତ୍ୟେକ କ୍ଷେତ୍ରରେ ଆପଣାର ଆହ୍ୱାନକୁ ଅନୁଭୂତ କରାଇଛି, ଲୋକଜୀବନର ଗଣ୍ଡିକୁ ଚେର ସମେତ ନୂତନ ରସରେ ସମୃଦ୍ଧ କରାଇ ଆକାଶ ଅଭିମୁଖରେ ଶାଖା ପ୍ରସାରି ଦେବାର ସ୍ୱପ୍ନ ଦେଖିଛି । ପଞ୍ଚସଖାଙ୍କୁ ପ୍ରଥମତଃ ସାମାଜିକ ବିପ୍ଳବୀ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ସବୁ ଜାତି ସମାନ ବୋଲି କହି ସେମାନେ ଆପଣାକୁ ଭଗବାନଙ୍କର ଶ୍ରେଷ୍ଠସେବକ ଶୂଦ୍ର ବୋଲି ଘୋଷଣା କରିଛନ୍ତି । ସମାଜର ଅଧଃସ୍ତରରେ ପଡ଼ିଥିବା ଜାତିମାନଙ୍କୁ ଜାଗୃତ କରାଇବାର ଲକ୍ଷ୍ୟ ରଖି ସେମାନେ ଏକାଧିକ ଗ୍ରନ୍ଥ ଲେଖିଯାଇଛନ୍ତି । ଓଡ଼ିଶାର ଭାଷା ଓ ସାହିତ୍ୟକୁ ସଚଳ ଓ ସୁବୋଧ୍ୟ କରିବା ଦିଗରେ ସେମାନେ ଅମର କୀର୍ତ୍ତି ରଖିଯାଇଛନ୍ତି । ଆଗରୁ ଧର୍ମର ନିଗୂଢ଼ ତତ୍ତ୍ୱମାନ ସଂସ୍କୃତ ଭାଷାର ଅପ୍ରଶସ୍ତ ପେଟିକାରେ ମୁଦା ହୋଇ ରହିଥିଲା । ସମାଜର ମନକୁ ଧର୍ମଗତ କରିବାରେ ସାହାଯ୍ୟ କଲାଭଳି ଗ୍ରନ୍ଥମାନ ଲୋକବୋଧର ପରିଧିଠାରୁ ଦୂରଦୂରନ୍ତ ହୋଇପଡ଼ିଥିଲା । ଧର୍ମଜୀବନରେ ଯାହା କିଛି ଜାଣିବାକୁ ପଡ଼ିଲେ ମୁକ୍ତିମଣ୍ଡପକୁ ଯିବା ଛଡ଼ା ଗତ୍ୟନ୍ତର ନଥିଲା । ସଚଳଧର୍ମ ଏହିପରି ଆୟତନସିଦ୍ଧ ଆଚରଣ ଦ୍ୱାରା ଆପଣାର ଶାଳୀନତା ହରାଇ ବସିଥିଲା । ବ୍ୟାପ୍ତି ହେଉଛି ସାରବତ୍ତାର ପ୍ରଥମ ଗୁଣ । ତେଣୁ ଧର୍ମକୁ ସାରବାନ କରାଇବାକୁ ହେଲେ ଏହାକୁ ପରିବ୍ୟାପ୍ତ ଓ ସର୍ବଜନବୋଧ୍ୟ କରିବାକୁ ହେବ । ସମସ୍ତେ ଧର୍ମର ତତ୍ତ୍ୱ ବୁଝିବେ, ଆପଣା ବିବେକର ପରଖ ଦେଇ ସମସ୍ତେ ଧର୍ମକୁ ଗ୍ରହଣ କରିବେ, ଏପରି ଏକ ସୁଯୋଗର କ୍ଷେତ୍ର ପ୍ରସ୍ତୁତ କରିବାରେ ବ୍ରତୀ ହୋଇ ପଞ୍ଚସଖା ସେମାନଙ୍କର ଧର୍ମଜୀବନ ଆରମ୍ଭ କରିଥିଲେ । ଧର୍ମର ପ୍ରସିଦ୍ଧି ଲାଭ କରିଥିବା ଶାସ୍ତ୍ରମାନଙ୍କର ଓଡ଼ିଆ ଅନୁବାଦ ହେଲା । ସାରଳାଦାସ ମହାଭାରତକୁ ଓଡ଼ିଆରେ ଲେଖି ଆଗରୁ ବାଟ କଢ଼ାଇ ଯାଇଥିଲେ ।

ପଞ୍ଚସଖା ସେହି କାର୍ଯ୍ୟକୁ ବିଶେଷ ଭାବରେ ଆପଣାର ପ୍ରଥମ କର୍ତ୍ତବ୍ୟ ରୂପେ ଗ୍ରହଣ କଲେ । ବଳରାମ ଦାସ ଗୀତା ଓ ରାମାୟଣ ଲେଖିଲେ, ଅଚ୍ୟୁତାନନ୍ଦ ହରିବଂଶର ଅନୁବାଦ କଲେ, ଜଗନ୍ନାଥ ଦାସ ଭାଗବତ, ଗୀତା ଓ ମହାଭାରତକୁ ଓଡ଼ିଆ କଲେ । ଏଥିଲାଗି ସେମାନଙ୍କୁ ରାଜା ଓ ପଣ୍ଡିତଙ୍କର ସବର୍ଣ୍ଣହିନ୍ଦୁ ଓ ବ୍ରାହ୍ମଣଙ୍କର ତିକ୍ତ ଦୃଷ୍ଟିରେ ପଡ଼ିବାକୁ ହୋଇଥିଲା । କେତେଥର ପୁରୀଦାଣ୍ଡରେ ସେମାନେ ଟେକାମାଡ଼ ସହିଛନ୍ତି, କେତେଥର ରାଜାର ଆଦେଶରେ କାରଗାରରେ ବନ୍ଦୀ ହୋଇଛନ୍ତି, ତଥାପି ଶାସ୍ତ୍ରକୁ ସରଳ ଓ ଭାଷାନୁରୂପ କରି ସେଥିରେ ସମସ୍ତଙ୍କର ଅଧିକାର ପ୍ରତିଷ୍ଠା କରାଇବାର ଶପଥରୁ ସେମାନେ କଦାପି ନିବର୍ତ୍ତି ନାହାନ୍ତି ।'' (ପୃ. ୨୬୨-୬୩)

ଲେଖକ ଯାହା କହିଛନ୍ତି ତାହା ଅସତ୍ୟ ନୁହେଁ । ସମସାମୟିକ ଭାରତରେ ପ୍ରାୟ ପ୍ରତି ପ୍ରାଦେଶିକ ଭାଷାରେ ସଂସ୍କୃତକୁ ନ ଅନାଇ ନିଜର ରାସ୍ତା ନିଜେ କରିବାର ଯେ ଏକ ପ୍ରଯତ୍ନ ଘଟିଥିଲା, ତାହା ମଧ୍ୟ ଲେଖକ ପ୍ରକାଶ କରିଛନ୍ତି । ତେଣୁ ପଞ୍ଚସଖାଙ୍କ କୃତିତ୍ୱ କିଛି ଅନନ୍ୟସାଧାରଣ ନୁହେଁ । କିନ୍ତୁ ଧର୍ମ ଓ ସାହିତ୍ୟର ସେମାନେ ଯେଉଁ ଆଦର୍ଶ ଥୋଇ ଦେଇ ଯାଇଛନ୍ତି ତାହାର ପାଳନୀୟତା ଓ ସମ୍ମାନୀୟତାରେ ମୁଁ ଘୋର ସନ୍ଦିହାନ । ଯେଉଁମାନେ ନିଜକୁ ପୂର୍ବଜନ୍ମରେ ଶ୍ରୀକୃଷ୍ଣଙ୍କର ସୁଦାମା, ସୁବଳ, ମଧୁ ପ୍ରଭୃତି ସଖା ବୋଲି ପ୍ରଚାର କରି ଯାଇଛନ୍ତି, ପୁଣି ଏଣେ ନାକଚିପା ଓ ଷଡ଼ଚକ୍ର ଭେଦ ସହ ନାମୋଚ୍ଚାରଣର ମହାତ୍ମ୍ୟ ଗାନ କରି ଧର୍ମଜୀବନର ଏକ ଆବୁରୁଜାବୁରୁ ବାଡ଼ି ଥୋଇଛନ୍ତି, ଜାତି ଆଗରେ କି ମହାନ୍ ଆଦର୍ଶ ସେମାନେ ଥୋଇଗଲେ ମୁଁ ବୁଝିପାରୁନି । ପ୍ରାଚୀନଦୀ କୂଳରେ ପଞ୍ଚସଖା ଥରେ ଏକତ୍ର ହୋଇ ଧର୍ମର ଏକ ସର୍ବସମ୍ମତ ମାର୍ଗ ଆବିଷ୍କାର କରିବାର ଚେଷ୍ଟା କରିଥିଲେ ବୋଲି ପୋଥିରେ ନାନା ସ୍ଥାନରେ ଉଲ୍ଲେଖ ଅଛି । ଅଚ୍ୟୁତାନନ୍ଦଙ୍କ ଭାଷାରେ –

ଆଜ୍ଞାପାଇ ଆମ୍ଭେ ପାଞ୍ଚଜଣ ଯେ ଅଇଲୁ
ମନଯାନ ଚାଳିଲା ବହନ ପ୍ରବେଶିଲୁ ।
ଋଷୀ, ତପୀ, ସନ୍ନ୍ୟାସୀ, ନାମକ ବୀରସିଂହ
ଲୋହିଦାସ ବାଉଳି, ଯେତେ ସଙ୍ଗ ।
ସଭା ମଣ୍ଡାଇଣ ଯେ ବସିଲେ ସର୍ବେ ତପୀ ।
ପଚାରିଲେ ପ୍ରଭୁଙ୍କୁ କି ଆଜ୍ଞା ଛନ୍ତି ଥାପି ।
କହିଲେ ମୁଁ ଶୂନ୍ୟମନ୍ତ୍ର କରି ନ୍ୟାସ
ତପୀମାନେ ଜୟ ଜୟ କଲେ ଯେ ପ୍ରକାଶ ।

ଚିତ୍ତରଞ୍ଜନ କ'ଣ ସତରେ ବିଶ୍ୱାସ କରନ୍ତି ଯେ ଜଗନ୍ନାଥ, ବଳରାମ, ଯଶୋବନ୍ତ, ଅନନ୍ତ, ଅଚ୍ୟୁତ– ଏ ପାଞ୍ଚଜଣଯାକ ପୁରୀରୁ ପ୍ରାଚୀକୂଳକୁ ମନଯାନରେ ଯାଇ 'ବହନ' ପହଞ୍ଚିଲେ ? ଉପରୋକ୍ତ କେତୋଟି ପଂକ୍ତିରେ କି ବିରାଟ ନୂତନ ଦର୍ଶନ ବା ତତ୍ତ୍ୱର ବ୍ୟାଖ୍ୟା କରାଯାଇଛି ଯେ ତପୀ ଋଷୀମାନେ ଜୟ ଜୟ ଗାଇପକାଇଲେ ?

କେତେବର୍ଷ ତଳେ କେବଳ ସାହିତ୍ୟିକ ଓ ଧର୍ମୀୟ କୌତୂହଳ ମେଣ୍ଟାଇବା ପାଇଁ ମୁଁ ବି ଏଇ ପଞ୍ଚସଖା ସାହିତ୍ୟ କିଛି କିଛି ପଢ଼ିବାକୁ ଚେଷ୍ଟାକରିଥିଲି । ଦେଖିଲି, ପଞ୍ଚସଖା ଦର୍ଶନ ବା ତତ୍ତ୍ୱ ବା ଧର୍ମ ନାମରେ ଯେଉଁ ରଡ଼ି ଶୁଣିବାକୁ ମିଳେ ତାହା କେବଳ ଏକ ବିପୁଳ ଫାଁକା ଆବାଜ ଛଡ଼ା ଆଉ କିଛି ନୁହେଁ । ଗୋପୀ ଓ କୃଷ୍ଣଙ୍କ ରାସଲୀଳା, ଚୈତନ୍ୟଙ୍କ କୀର୍ତ୍ତନ ଆଉ ହ୍ଲାଁ, କ୍ଲିଁ, ଖ୍ଲିଁ, ମିଶି ଏକ ଦୁର୍ଗ୍ରାହୀ, ଅସ୍ୱାଦ୍ୟ, ଓ ଦୁଷ୍ପାଚ୍ୟ ଯାଉ, ଯାହାକୁ ଖାଇ ଓଡ଼ିଆ ଛଅଶ ବର୍ଷ ହେଲା ମାନସିକ ଓ ଆଧ୍ୟାତ୍ମିକ ଡ଼ିସପେପ୍‌ସିଆ ଭୋଗୁଛି । ଏପରି ଖେଚୁଡ଼ି ନକରି ଏମାନେ ଯଦି କେବଳ ଗୀତାର ଆଦର୍ଶକୁ ଜାତି ଆଗରେ ଧରି ରଖିବାକୁ ଚେଷ୍ଟା କରିଥାନ୍ତେ ତେବେ ମୁଁ ମନେକରେ ପଞ୍ଚସଖାଙ୍କ ପରେ ପରେ ଓଡ଼ିଆମାନେ ଯେ ସବୁକ୍ଷେତ୍ରରେ ଚିତ୍‌ପଟାଙ୍ଗ ଦେବାକୁ ଆରମ୍ଭକଲେ, ତା' ହୋଇନଥାନ୍ତା । ସମକାଳୀନ ମହାରାଷ୍ଟ୍ରୀୟ ସନ୍ଥମାନେ ତାହାହିଁ କରି ମରହଟ୍ଟାର ପ୍ରାଣରେ ଧର୍ମ-ଯୁଦ୍ଧର ଅଗ୍ନି ଅନିର୍ବାଣ ରଖି ପାରିଲେ । ତାହାଦ୍ୱାରା ସମଗ୍ର ଭାରତବର୍ଷ ଉପକୃତ ହେଲା । ଶିବାଜୀ ଓ ପେଶବାମାନେ ଯେ ବିରାଟ ମୋଗଲ ସାମ୍ରାଜ୍ୟକୁ କେତୋଟି ବର୍ଷ ଭିତରେ ନାମାବଶେଷ ମାତ୍ର କରିଦେଲେ, ସେ ପ୍ରେରଣାର ଉତ୍ସ କେଉଁଠି ? ଆଉ ଓଡ଼ିଆମାନଙ୍କର ଠିକ୍ ସେଇ ଯୁଗରେ ଏପରି ଅଧଃପତନ ହେଲା କାହିଁକି ?

ପଞ୍ଚସଖାଙ୍କ ସାହିତ୍ୟିକ ସୃଷ୍ଟିର ସ୍ତୁତି କରିବାକୁ ଯାଇ ଚିତ୍ତରଞ୍ଜନ ଭଞ୍ଜୀୟ; ରାଧାନାଥୀୟ ଓ ଆଧୁନିକ– ଏ ସବୁ ଯୁଗର ସାହିତ୍ୟକୁ ନିନ୍ଦା କରିବାକୁ ଛାଡ଼ି ନାହାନ୍ତି । ଏବେ ସମାଲୋଚନା କହିଲେଇ କାହାକୁ ନା କାହାକୁ ଗାଳି ଦେବା ହେଉଛି ରୀତି । କିନ୍ତୁ ଶ୍ରୀମାନ୍ ଚିତ୍ତରଞ୍ଜନଙ୍କ ପରି ବହୁ ପାଠୀ ତରୁଣ ବି ସେଇ ପ୍ରଲୋଭନ ଏଡ଼ିପାରିଲେନି ଦେଖି ମୁଁ ଦୁଃଖିତ ହେଉଛି । ଏହାଦ୍ୱାରା ସେ ନିଜର ସମାଲୋଚକର ଗୌରବାନ୍ୱିତ ଆସନକୁ ଶସ୍ତା ଜୟକାରର ଭାବପ୍ରବଣତାରେ ନ୍ୟୂନ କରିଦେଇଛନ୍ତି ।

ପ୍ରଥମ ପ୍ରଶ୍ନ ଏଇ ଯେ ପଞ୍ଚସଖାଙ୍କ ରଚନାସ୍ତୂତିର କେତେଅଂଶ ପ୍ରକୃତରେ ସାହିତ୍ୟ ପଦବାଚ୍ୟ ? କଅଣ, ଯାହା କିଛି ପଦ୍ୟରେ ଲେଖା ହେଇଚି ଓ ଯାର ବୟସ ଅନ୍ତତଃ ପଚାଶ ବର୍ଷରୁ ଅଧିକ ହୋଇଗଲା, ସେ ସବୁ ବିନା ବିଚାରରେ ସାହିତ୍ୟିକ ଗୌରବେ ପାଇଯିବେ ? ଏୟା କ'ଣ ବୋଧହୁଏ ସାହିତ୍ୟିକ ମାନଦଣ୍ଡ ?

ନଚେତ୍ ଚିତ୍ତରଞ୍ଜନ ତାଙ୍କର ସାରା ବହିଟିରେ ପଞ୍ଚସଖା ସାହିତ୍ୟ, ବିଶେଷତଃ ଅଚ୍ୟୁତାନନ୍ଦଙ୍କ ବହିମାନଙ୍କରୁ ଯେଉଁ ସବୁ ରାଶି ରାଶି ଉଦାହରଣ ଥୋଇଛନ୍ତି, ରସର ନିକଷରେ ଅଳଙ୍କାରର ପରିମାପରେ ସେଥିରୁ ଗୋଟିଏ ହେଲେ ସାହିତ୍ୟର ଗୌରବ ପାଇବାର ଯୋଗ୍ୟ ହେବେ କି ? କୌଣସି ଲେଖକ ଯଦି କୌଣସି ବ୍ୟକ୍ତି ବା ଗୋଷ୍ଠୀକୁ ବଡ଼ କରିବାପାଇଁ ସର୍ବସମ୍ମତ ମାନଦଣ୍ଡମାନଙ୍କର ପ୍ରଥମେ ମୁଣ୍ଡକାଟ କରେ, ତେବେ ଅବଶ୍ୟ ଆମର କିଛି କହିବାର ନାହିଁ । ତେବେ ମନେରଖିଲେ ଭଲ ହେବ ଯେ, ତାହାଦ୍ୱାରା କ୍ଷତି ହୁଏ ସମଗ୍ର ସାହିତ୍ୟର ଓ ଜାତିର ।

ଚିତ୍ତରଞ୍ଜନ କହିବାକୁ ଚାହାନ୍ତି ଯେ ପଞ୍ଚସଖାଙ୍କ ସାହିତ୍ୟ ହିଁ ଓଡ଼ିଶା ମାଟିର ପ୍ରକୃତ ସାହିତ୍ୟ – ବାକୀ ସବୁ ଅର୍ଥାତ୍ ଭଞ୍ଜୀୟ, ରାଧାନାଥୀୟ, ଆଧୁନିକ ସମସ୍ତେ ପରଦେଶୀ । ଏହା ଏତେ ଅସତ୍ୟ, ଅଯୌକ୍ତିକ ଓ ଅବାସ୍ତବ ଯେ, ଯାର ଆଲୋଚନା ବା କ'ଣ କରିବି ? ପଞ୍ଚସଖାଙ୍କ 'ବଙ୍କୁନାଡ଼' ଓ ହ୍ଲାଁ, କ୍ଲିଁ, ଖ୍ଲିଁ ହେଲା ଓଡ଼ିଆ ମାଟିର ପ୍ରାଣ ଆଉ ଗୋପାଳକୃଷ୍ଣଙ୍କ ଗୀତ, ରାଧାନାଥଙ୍କ ଉଷା ଓ ଚିଲିକା, ନନ୍ଦକିଶୋରଙ୍କ ନାନା ବାୟାଗୀତ, ବୈଷ୍ଣବ ପାଣିଙ୍କ ଯାତ୍ରା– ଏ ସବୁରେ ଓଡ଼ିଆ ଜାତିର ପ୍ରାଣର ସ୍ପର୍ଶ ନାହିଁ ? ଏପରି କହିବାର ଯୁକ୍ତି କ'ଣ ମୁଁ ବୁଝି ପାରୁନି । ଏ ପ୍ରସଙ୍ଗରେ ମୁଁ ଅଧିକ ବାଦାନୁବାଦ କରିବାକୁ ଚାହେନା । ଏହିପରି ମୁଁ ଚିତ୍ତରଞ୍ଜନଙ୍କ ଅଧିକାଂଶ ସିଦ୍ଧାନ୍ତ ସଙ୍ଗେ ଏକମତ ହୋଇପାରୁନି । ମୁଁ ମନେକରୁଛି ଯେ ସେସବୁ ଅପରିପକ୍ୱ ତାରୁଣ୍ୟ ଫଳ । କିନ୍ତୁ ସିଦ୍ଧାନ୍ତ ପଛେ ଭ୍ରାନ୍ତ ହେଉ, ତାଙ୍କ ସାଧନାର ବଳିଷ୍ଠତା ଓ ସମ୍ଭାବନାରେ ମୁଁ ମୁଗଧ୍ । ମୁଁ ଆଶା କରୁଛି ଯେ, ସେ ବ୍ରତୀ ହେଲେ ଓଡ଼ିଆ ସାହିତ୍ୟକୁ କିଛି ମୂଲ୍ୟବାନ୍ ଦ୍ରବ୍ୟ ଦେଇ ଯାଇ ପାରିବେ । କେବଳ ସେଇ ଆଶାରେ ହିଁ ମୁଁ ଶ୍ରୀମାନଙ୍କର ବହି ଦୁଇଟିର ଦୋଷ ଦେଖାଇବାରେ ଏତେ ଚେଷ୍ଟା କରିଛି । ଏହା ଶ୍ରଦ୍ଧା-ପ୍ରସୂତ । ଭୁଲ ଦେଖାଇ ମଧ୍ୟ ତରୁଣ ପଣ୍ଡିତଙ୍କୁ ମୁଁ ଉତ୍କଳର ସାରସ୍ୱତ ମନ୍ଦିର ପ୍ରାଙ୍ଗଣକୁ ସାଦର ଆହ୍ୱାନ ଜଣାଉଛି । କାରଣ ସାଧନା କରୁ କରୁ ଭୁଲଗୁଡ଼ିକ ଆପେ ଆପେ ଖସିଯିବ ଏବଂ ରହିଯିବ କିଛି ଖାଣ୍ଟି ରତ୍ନ ଯାହାପାଇଁ ହିଁ ଚିତ୍ତରଞ୍ଜନ ହୁଏତ ବୁଦ୍ଧିଜୀବୀ ଭାବରେ ଜନ୍ମ ହୋଇଛନ୍ତି ।

––

(ଏହି ଆଲୋଚନା ଝଙ୍କାର ୭ମ ବର୍ଷ / ୩ୟ ସଂଖ୍ୟା/ ୧୩୬୨ ସାଲରେ ପ୍ରକାଶିତ । ଶ୍ରୀ ମାୟାଧର ମାନସିଂହଙ୍କର ଏହି ଆଲୋଚନାକୁ ଚିତ୍ତରଂଜନଙ୍କ ଶିକ୍ଷକ-ସାହିତ୍ୟିକ ବ୍ୟକ୍ତିତ୍ୱର ପ୍ରଥମ ନିରପେକ୍ଷ ଆକଳନ ଭାବରେ ଗ୍ରହଣ କରାଯାଇପାରେ ।)

## ଉତ୍କଳର ଜଣେ ଅଜ୍ଞାତ କବି

ପୁରୀଜିଲ୍ଲାର ଲୋକମଙ୍ଗଳ ଅଫିସର ଥିଲାବେଳେ ଔପନ୍ୟାସିକ ଶ୍ରୀ ଗୋପୀନାଥ ମହାନ୍ତି ମହାଶୟଙ୍କୁ ମୁଁ ଆମ ଗାଁରେ ଗୋଟିଏ ପୋଖରୀ ଖୋଳେଇ ଦେବା ପାଇଁ ଚିଠି ଦେଇଥିଲି । ତାଙ୍କଠାରୁ ସେ ସମ୍ପର୍କରେ କୌଣସି ଉତ୍ତର ପାଇ ନ ଥିଲି । କିନ୍ତୁ ୧୯୫୬ ମସିହାର ଗ୍ରୀଷ୍ମକାଳରେ ଅନେକ ଦିନ ପରେ ଗାଁକୁ ଯାଇ ଦେଖେ ଯେ, ଶ୍ରୀ ମହାନ୍ତି ମୋ ପୂର୍ବରୁ ଆମ ଗାଁକୁ ନିକଟ-ଅତୀତରେ ଆସି ପୋଖରୀ ଖୋଳାରେ ଲୋକଙ୍କୁ ନିରାଶକରି, ଅନ୍ୟ ଏକ ଖନନ କରି ଯାଇଛନ୍ତି । ତାଙ୍କର ଏଇ ଅପ୍ରତ୍ୟାଶିତ ନୂତନ ଖନନ କର୍ମ ଫଳରେ ଆମ ଗାଁ ଓ ଆଖପାଖରେ ଲୋକେ ପ୍ରଥମଥର ପାଇଁ ହିଁ ଜାଣିପାରିଛନ୍ତି ଯେ ମୁଁ 'କବି' କରେ ଏବଂ ନିଜେ ମୁଁ ଜାଣିବାକୁ ପାଇଲି ଯେ ମୋର ଗୋସେଇଁବାପ ସତ୍ୟବାଦୀ ନାୟକ ଜଣେ କବି ଥିଲେ । ମହାନ୍ତିଙ୍କ ଏଇ ଦ୍ୱିତୀୟ ଆବିଷ୍କାରରେ ମୁଁ ଯେତିକି ଲଜ୍ଜିତ ସେତିକି ବିହ୍ୱଳ ବୋଧ କଲି । ଶ୍ରୀ ମହାନ୍ତି ଗ୍ରାମ ଲୋକଙ୍କ ଆଗରେ କବି ସତ୍ୟବାଦୀଙ୍କ ସମ୍ବନ୍ଧରେ ମୁଁ ଏ ପର୍ଯ୍ୟନ୍ତ କିଛି ଲେଖିନାହିଁ ବୋଲି ଯେଉଁ ଅନୁରଞ୍ଜିତ ତିରସ୍କାର କରିଯାଇଛନ୍ତି ତାହା ମୁଁ ଚନ୍ଦନରୂପେ କପାଳରେ ଲେପନକରୁଛି । ଏହାର କାରଣ ନୁହେଁ ଯେ କବି ସତ୍ୟବାଦୀ ମୋର ଗୋସେଇଁ ବାପା । ପ୍ରକୃତ କାରଣ ଏଇ ଯେ, ମୁଁ ତାଙ୍କର ଗ୍ରନ୍ଥଟି ପୂରାପୂରି ପାଠ କରି ଦେଖିଲି, ସେ ଜଣେ ପ୍ରକୃତ କବି । ତାଙ୍କୁ ମୋର ବହୁ ଆଗରୁ ଜାଣିବାର ଓ ଶ୍ରଦ୍ଧାଞ୍ଜଳି ଦେବାର ଥିଲା । ପୂଜ୍ୟ-ପୂଜାବ୍ୟତିକ୍ରମଜନିତ ଘୋର ଅପରାଧରେ ମୁଁ ନିଜକୁ ଅପରାଧୀ ମନେକଲି ।

କିନ୍ତୁ ଏହା କିପରି ଘଟିଲା ତା'ର ଏକ କୈଫିୟତ୍ ମୁଁ ଦେଇପାରେ । ଏଥିପାଇଁ ପାଠକମାନଙ୍କୁ ମୋର ପିଲାଦିନର ପାରିକୁଦ ଓ ଆମ ଗ୍ରାମ ଏବଂ ଘରର ସାମାନ୍ୟ ପରିଚୟ ଦେବା ଦରକାର ବୋଧକରେ ।

ପାରିକୁଦ-ମାଲୁଦ ବର୍ତ୍ତମାନ ମଧ୍ୟ ଘୋର ଅନୁନ୍ନତ ଅଞ୍ଚଳ । ଏ ଅଞ୍ଚଳକୁ ପାନୀୟ-ଜଳହୀନ, ଚିରଦୁର୍ଭିକ୍ଷଗ୍ରସ୍ତ, ପଥହୀନ ଏକ ମରୁଦେଶ କହିଲେ ଅତ୍ୟୁକ୍ତି ହେବନାହିଁ । କିନ୍ତୁ ଆଜି ପଛକୁ ଅନାଇଁ ମୁଁ ବିସ୍ମୟରେ ଅଭିଭୂତ ହେବାକୁ ବାଧ ହେଉଛି ଯେ, ଏହି ଈଶ୍ୱର ପରିତ୍ୟକ୍ତ ଭୂମିରେ ମଧ୍ୟ ଆଧୁନିକତାର ଅରୁଣାଲୋକ ଯେତେବେଳେ ସେଠି ଦେଖାଯାଇ ନଥିଲା, ସେଠି ଏକ ସାଂସ୍କୃତିକ ବାତାବରଣ ଥିଲା । ଆମର ସେଇ ଛୋଟ ଗ୍ରାମରେ ବାହାରେ ବୟସ୍କମାନେ ଛାନ୍ଦ-ଚଉପଦୀର ଚର୍ଚ୍ଚା, ପାଇକ ସାଧନ ଓ

ଗାଣିତିକ ଚାତୁର୍ଯ୍ୟରେ ମତ୍ତ ଥିଲାବେଳେ, ଘର ଭିତରେ 'କାଣ୍ଡଶର ଅପା' (କାଣ୍ଡଶର ନାମକ ଗ୍ରାମରେ ବୋହୂ ହୋଇଥିବାରୁ ସମସ୍ତେ ତାଙ୍କୁ ସେଇ ନାମରେ ଡାକୁ ଥିଲେ ।) ସୂତା-ଗୁନ୍ଥା ଟିଣ-ଚଷମା ନାସିକାଗ୍ରରେ ଦେଇ ଅତି-ଯତ୍ନ-ରକ୍ଷିତ ରସକଲ୍ଲୋଳ ଓ ବିଦଗ୍ଧ ଚିନ୍ତାମଣି ଦୁଇଟି ଗ୍ରନ୍ଥକୁ ଗୁଣୁଗୁଣୁ ବୋଲି ଗୃହ ସୀମନ୍ତିନୀମାନଙ୍କୁ 'ମହାପୁରୁ'ଙ୍କ କଥା ବୁଝାଉଥାଏ । ସେକାଳରେ ସାର୍ଟିଫିକେଟର ଦୌରାତ୍ମ୍ୟରେ ବିଦ୍ୟା ଦେଶବାସୀର ଦୈନନ୍ଦିନ ଜୀବନରୁ ଏବପରି ପଳାୟନ କରିନଥିଲା । ଲୋକେ ବିଦ୍ୟାପାଇଁ ବିଦ୍ୟାର୍ଜନ କରୁଥିଲେ ଏବଂ ଯେ ଯେତେଟିକେ ପାଉଥିଲା ତାକୁଇ ସେ ଜୀବନର ସକଳ ପ୍ରୟୋଜନର କାମଧେନୁ ପରି ବ୍ୟବହାର କରୁଥିଲା । ପୁଣି ଏହି ବିଦ୍ୟା, ବିନା ଅକ୍ଷର-ଜ୍ଞାନରେ ମଧ୍ୟ ଲବ୍ଧ ହୋଇପାରୁଥିଲା । ପାରିକୁଦର ନିରକ୍ଷର, ପ୍ରସାଦ୍ ତରାଇ ମୁହେଁ ମୁହେଁ 'ମଣିମା, ପାରିକୁଦ ନରେଶ'ରୁ ଆରମ୍ଭ କରି ମାଲ୍ ମାଲ୍ ଶ୍ଳୋକ ଅବଲୀଳା କ୍ରମେ ବୋଲିଯାଉଥିଲା ପାରିକୁଦ ରାଜାଙ୍କ ପାଟ ଅଗଣାରେ ଢଳି ଢଳି । ପ୍ରସାଦ ତରାଇ ଆଉ ନାହିଁ । ତା'ର କବିତା ସବୁ ଡାକ୍ତର ରାଧାଚରଣ ପଣ୍ଡା ସଂଗ୍ରହ କରି ରଖିଥିଲେ ବୋଲି ମୋର ଧାରଣା ।

ଏଇ ହେଲା ଆମ ପିଲାଦିନର ପାରିକୁଦର ମୋଟାମୋଟି ସାଂସ୍କୃତିକ ଚିତ୍ର । ଆମ ଗାଁର ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଜୀବନ ଆମ ପରିବାରକୁ କେନ୍ଦ୍ର କରି ଗଢ଼ିଉଠିଥିଲା । ଆମ ପରିବାରର ବିଶେଷତ୍ୱ ଏଇୟା ଥିଲା ଯେ ଅନ୍ୟ ଗ୍ରାମବାସୀ-ମାନଙ୍କ ପରି ଚାଷବାସ କରୁଥିଲେ ହେଁ, ଏମାନେ ପାରିକୁଦ ରାଜଦରବାରରେ ସାତପୁରୁଷ ଧରି ଚାକିରୀ କରି ଆସୁଥିଲେ । ସମଗ୍ର ପାରିକୁଦରେ ଆମ ବଂଶର ପ୍ରତିପତ୍ତିର ଏକ ପ୍ରଧାନ କାରଣ ବୋଧହୁଏ ଏହାହିଁ ଥିଲା । ମୋଠାରୁ ହିଁ ଏହି ସ୍ଥାନୀୟ ପ୍ରତିପତ୍ତିର ଶେଷହୋଇଛି ।

କବି ସତ୍ୟବାଦୀ ନାୟକ ପାରିକୁଦ ରାଜଦରବାରରେ ଅମିନ ଥିଲେ । ଏବେ ବି ଲୋକେ ତାଙ୍କୁ ଅମିନ ବୋଲି କହିଥାନ୍ତି । କବି ଅଳ୍ପ ବୟସରେ ପ୍ରାଣ୍ୟତ୍ୟାଗ କରିଥିଲେ – କେତେ ବର୍ଷରେ ଠିକ୍ କହିପାରୁନାହିଁ । ତଥାପି ପିଲାପିଲିଙ୍କ ପାଇଁ ଯଥେଷ୍ଟ ଭୂସମ୍ପତ୍ତି ଛାଡ଼ିଯାଇଥିଲେ । ମୁଁ ମନେକରୁ ନାହିଁ ଯେ ଏ ସମସ୍ତ ସମ୍ପତ୍ତି ସେ କେବଳ ଅମିନଗିରିକରି କମେଇଥିଲେ । ତାଙ୍କର ଆବିଷ୍କୃତ ଗ୍ରନ୍ଥଟି ପାରିକୁଦ ରାଜା– ତାଙ୍କର ସେ କାଳର ମୁନିବ ଶ୍ରୀ ଗୌରଚନ୍ଦ୍ର ମାନସିଂହଙ୍କ ନାମରେ ଭଣିତ । ମୋର ଅନୁମାନ ଯେ ସତ୍ୟବାଦୀ କେବଳ ଅମିନ ଭାବରେ ନୁହେଁ, କବି ଭାବରେ ମଧ୍ୟ ରାଜଦରବାରରେ ସମ୍ମାନିତ ଓ ପୁରସ୍କୃତ ହୋଇଥିଲେ ।

କବିଙ୍କର ପାଞ୍ଚ ପୁଅ ଓ ଏକ କନ୍ୟା । ସେମାନଙ୍କ ମଧ୍ୟରୁ କେବଳ କନିଷ୍ଠ

ପୁତ୍ର ଶ୍ରୀ ବାଞ୍ଛାନିଧି ନାୟକ, ମୋର ସାନ ଦଦା, ବର୍ତ୍ତମାନ ମଧ ଜୀବିତ । ତାଙ୍କର ବୟସ ବର୍ତ୍ତମାନ ଅଶୀ ପ୍ରାୟ । ଏଇ ସାନଦଦାଙ୍କ ମୁଖରୁ ମୁଁ ପିଲାଦିନେ ଥରେ ଦୁଇଥର 'ବାପାଙ୍କ ଗୀତ' ବୋଲି ଗୋଟିଏ ଦୁଇଟି ଗୀତ ଶୁଣିଥିଲି । କିନ୍ତୁ ମୁଁ ସେଥିପ୍ରତି ବିଶେଷ ଧ୍ୟାନ ଦେଇ ନଥିଲି – ତା'ର କାରଣ ହେଉଛି ଦୁଇଗୋଟି – ଦଦା ଯେଉଁ ଗୋଟିଏ ଦୁଇଟି ଗୀତ ବୋଲିଥାନ୍ତି ତାହା ବଙ୍ଗାଳିଆ କୃଷ୍ଣକୀର୍ତ୍ତନ ପରି ଶୁଣାଯାଉଥିଲା– ଯାହାକୁ କି ମୁଁ ପିଲାଦିନରୁ ଘୃଣା କରେ । ଦ୍ୱିତୀୟତଃ ସ୍ୱଭାବକବି ପ୍ରସାଦ ତରାଇକି ମୁଁ ଭୁଲିପାରିନି । ମନେକରିଥିଲି ଗାଁର କୃଷ୍ଣଲୀଳା ହେଉଥିଲାବେଳେ ପ୍ରସାଦ ତରାଇ ପରି ଗୋସେଇଁ ବାପା ମଧ୍ୟ ଗୋଟେ ଦି'ଟା ଗୀତ ମିଶେଇଦେଇଥିବେ – ଏଥିରେ ବିଶିଷ୍ଟତା କ'ଣ ଅଛି ? ମତେ ଆଦୌ ଜଣା ନ ଥିଲା, ସତ୍ୟବାଦୀ ଏକ ପୂରା କାବ୍ୟ ଲେଖିଯାଇଛନ୍ତି ।

ବସ୍ତୁତଃ ସାନଦଦା ଏଇ କାବ୍ୟଟିକି ଏ ପର୍ଯ୍ୟନ୍ତ ଲୁଚାଇ ରଖିଥିଲେ । ସେ ନିଜେ କୀର୍ତ୍ତନରେ ଠିଆହୋଇ ମନୋହର କଣ୍ଠରେ ପୂର୍ବେ ଗାଉଥିଲେ ଏବଂ ଗାଉଥିଲେ ତାଙ୍କ ବାପାଙ୍କ ଗୀତ । ଅନ୍ୟ କେହି ସେ ଗୀତ ଯେପରି ଶିଖି ନ ଯିବେ, ସେଥିପାଇଁ ଗୀତ-ଖେଦାଟି କାହାରିକୁ ଦେଉନଥିଲେ ।

ଏବେ ଆମ ଗାଁର ଭଣ୍ଡାରିପୁଅ ଦଣ୍ଡିଆ ଗାଁର ବଡ଼ ଗାୟକ ହୋଇଉଠିଛି । ସେ ନୂତନ ଗୀତ ପାଇଁ ଦଦାଙ୍କ ଶରଣାର୍ଥୀ ହେବାରୁ– ସାନଦଦା ନିଜର ଶେଷକାଳ ଆସି ଯାଉଥିବାରୁ– ଜୀବନର ସାୟାହ୍ନରେ ଖେଦାଟିକୁ ଦଣ୍ଡିଆ ବାରିକକୁ ବଢ଼ାଇଦେଲେ । ବର୍ତ୍ତମାନ ସତ୍ୟବାଦୀଙ୍କ କାବ୍ୟ ଆମ ଗାଁର ଦଣ୍ଡିଆ ବାରିକର ଗର୍ବର ସମ୍ପତ୍ତି । ଔପନ୍ୟାସିକ ମହାନ୍ତି ଆମର ପ୍ରତିବେଶୀ ଗ୍ରାମ ବ୍ରାହ୍ମଣଦେଉରେ ଅବସ୍ଥାନ କଲାବେଳ ଏଇ ଦଣ୍ଡିଆ ମୁହଁରୁ ସତ୍ୟବାଦୀଙ୍କ ସଙ୍ଗୀତର ଆବୃତ୍ତି ଶୁଣି ଟିପି ନେଇ ଯାଇଥିଲେ । ଏଇ ସବୁ କଥା ଶୁଣିଲା ପରେ ଗାଁରେ ଥିଲାବେଳେ ମୋର ଦ୍ୱିତୀୟ ପୁତ୍ର ଲଳିତେନ୍ଦୁଦ୍ୱାରା ଦଣ୍ଡିଆର ଆବୃତ୍ତି ଅନୁଯାୟୀ ସମଗ୍ର କାବ୍ୟଟି ମୁଁ ଲେଖାଇ ନେଇ ଆସି ରଖିଥିଲି – କଟକରେଇ ପୂରା ପଢ଼ିଲି ।

(୨)

ସତ୍ୟବାଦୀଙ୍କ କାବ୍ୟର ନାମ 'ବ୍ରଜ-ମାଥୁରୀ' । ଏହା ଭକ୍ତଚରଣଙ୍କ ମଥୁରା-ମଙ୍ଗଳର ସଂପୂର୍ଣ୍ଣ ସମଧର୍ମୀ – କୃତିଦ୍ୱର ବୈଶିଷ୍ଟ୍ୟ କେବଳ ପ୍ରକାଶଭଙ୍ଗୀ ଓ ଦୃଷ୍ଟି-କୋଣର ।

---

'ଗ୍ରନ୍ଥମନ୍ଦିର', କଟକ, ଏହି 'ବ୍ରଜ-ମାଥୁରୀ' ବହିଟି ୧୯୬୨ରେ ପ୍ରକାଶ କରିଥିଲେ ।

ବୈରାଗୀ ପଟ୍ଟନାୟକ ଭକ୍ତହୋଇ ଭକ୍ତଚରଣ ଦାସ ରୂପେ ଆମ ନିକଟରେ ଆଜି ପରିଚିତ । 'ମଥୁରାମଙ୍ଗଳ', ସେ ତାଙ୍କରି ଆତ୍ମାର ମଙ୍ଗଳ ପାଇଁହିଁ ଯେ ଲେଖିଛନ୍ତି – ଏକଥା କାବ୍ୟାରମ୍ଭରେ ସେ ସ୍ପଷ୍ଟ କହିଛନ୍ତି । ପୁଣି ଭକ୍ତିମନ୍ତ କବି ନିଜର ଦେବତାକୁ ମଣ୍ଡିବାକୁ ଯାଇ ଛନ୍ଦ, ଭାଷା ଓ ଅଳଙ୍କାରରେ ଏପରି ଘୋଡ଼େଇ ପକାଇଛନ୍ତି ଯେ, ଆମେ ସରଳ, ସ୍ୱାଭାବିକ ଗୋପାଳନନ୍ଦନ ଶ୍ରୀକୃଷ୍ଣଙ୍କୁ ହରାଇ ପାଉ ଏକ କାବ୍ୟ-ନାୟକ ଓ ଦେବତା ।

ସତ୍ୟବାଦୀଙ୍କ 'ବ୍ରଜ-ମାଧୁରୀ' କିନ୍ତୁ ଭକ୍ତର ଲେଖା ନୁହେଁ । ଏହା କାବ୍ୟ ନୁହେଁ, ଗାଥା । ଏହା ଚର୍ଚ୍ଚା ପାଇଁ ରଚିତ ନୁହେଁ । ଜନସମାଜରେ, ମୁକ୍ତ ଆକାଶତଳେ ଆବୃତ୍ତ ହେବା ପାଇଁ ଲିଖିତ । ଏଥିରେ ଭାଗବତର ଗଳ୍ପଟିମାତ୍ର ନିଆଯାଇଛି, ଭଗବାନ୍‌ଙ୍କୁ ଯଥାସମ୍ଭବ ବାଦ୍ ଦେଇ । କାବ୍ୟଟି ପଢ଼ି ଶେଷ କଲେ ମନେହେବ ଏହା ସେହିପରି ଏକ ଗପ, ଯାହା ପ୍ରାଚ୍ୟ-ପାଶ୍ଚାତ୍ୟ ଅନେକ ରୂପ-କଥାରେ ଦେଖାଯାଏ, ଯଥା :- ଜଣେ ଦୁଷ୍ଟ ରାଜା ଜାଣିପାରିଲା ଯେ ତା'ର ଭଉଣୀ ବା ଭାଇ ବା ନିଜର କୌଣସି ଭାର୍ଯ୍ୟାର ପୁତ୍ର ଦିନେ ତା'ର କଣ୍ଟକ ହେବ । ତେଣୁ ସେ ସେଇ ନବଜାତ ଶିଶୁକୁ ନଷ୍ଟକରିବାକୁ ଓ ତା'ର ପିତାମାତାକୁ ବନ୍ଦୀ କରି ରଖିବାକୁ ବସିଛି । ଭବିଷ୍ୟତ୍ ବାଣୀରେ ଶିଶୁ ଦୈବୀଶକ୍ତି ବଳରେ ରକ୍ଷା ପାଏ । ଅନ୍ୟତ୍ର ଅନ୍ୟ ପିତାମାତାଙ୍କୁ ନିଜର ପିତାମାତା ବୋଲି ମନେକରି ବଢ଼େ । ପରେ ବୟସ ହେଲେ ସବୁ ଜାଣିପାରେ ଓ ପିତୃହନ୍ତା ବା ପିତୃକ୍ଲେଶଦାୟୀ ଦୁଷ୍ଟକୁ ହତ୍ୟା କରି ପ୍ରତିଶୋଧ ନିଏ ବା ପିତାମାତାଙ୍କୁ ମୁକ୍ତିଦାନକରେ ଓ ପୂର୍ବ ପିତାମାତାଙ୍କୁ ପରିତ୍ୟାଗ କରେ । କୃଷ୍ଣ-କଂସ ଉପାଖ୍ୟାନ ବିଶ୍ୱ-ବିଦିତ ଏଇ ଶ୍ରେଣୀୟ ଏକ ରୂପ କଥା ଛଡ଼ା ଅନ୍ୟ କିଛି ବୋଲି ମୁଁ ମନେ-କରେନା । କୃଷ୍ଣ, 'ଅବତାର' ରୂପେ ପ୍ରଚାରିତ ହେବା ପରେ ଗଳ୍ପଟି ଘୋର କାବ୍ୟରଙ୍ଗରେ ରଂଜିତ ହୋଇଉଠିଛି ।

ସତ୍ୟବାଦୀଙ୍କ କାବ୍ୟରେ କୃଷ୍ଣ ଭୂଭାର ହରଣ ପାଇଁ ଜନ୍ମହୋଇଥିବାର କୌଣସି ଉଲ୍ଲେଖ ନାହିଁ । ଅବଶ୍ୟ ତାଙ୍କର କୃଷ୍ଣ ଯେ ଦେବତା ଏଥିରେ ସନ୍ଦେହ ନାହିଁ । କିନ୍ତୁ କାବ୍ୟଟିର ବର୍ଣ୍ଣନାଶୈଳୀ ଏପରି ହୋଇଛି ଯେ ଦେବତା ଅସ୍ପଷ୍ଟ; କିନ୍ତୁ ମନୁଷ୍ୟ ସ୍ପଷ୍ଟ । ଜଣେ ଦୁଷ୍ଟ ସମ୍ରାଟ ନିକଟବର୍ତ୍ତୀ ଏକ ସାମନ୍ତ ରାଜାର ଦୁର୍ବିନୀତ ପୁଅମାନଙ୍କୁ ଶାସନ କରି ନ ପାରି ଶେଷରେ ମାରିଦେବାକୁ ବସିଛି । ପୁଅମାନଙ୍କୁ ଛଳନାରେ ଅଣାଯାଇଛି । କିନ୍ତୁ ସେଇ ପୁଅମାନେ ତାକୁ ମାରି ତା'ରି ସିଂହାସନରେ ବାପକୁ ବସାଇଛନ୍ତି– ଏଇଟିହିଁ କାବ୍ୟର ରେଖା-ଚିତ୍ର । ଏଥିରେ ନାହିଁ ଉଦ୍ଧବ-ଗୋପୀଙ୍କର ଦର୍ଶନତତ୍ତ୍ୱ, ନାହିଁ ଗୋପବାଳାମାନଙ୍କର ଆଳଙ୍କାରିକ ବିରହ-ବର୍ଣ୍ଣନା ଓ ବିଳାପ,

ବା କବିଙ୍କର କାବ୍ୟ-ନାୟକକୁ ଅବତାର ଜ୍ଞାନରେ ସ୍ତୁତି । ଯାହା ଅଛି ତାହା ପଲ୍ଲୀ-ପରିଚିତ ଘଟଣାବଳି; ସାଧାରଣ ନରନାରୀର ସ୍ୱାଭାବିକ ଅନୁଭୂତି, କବିଙ୍କର ପ୍ରତ୍ୟକ୍ଷୀଭୂତ ଦୃଶ୍ୟରାଜି ।

ସତ୍ୟବାଦୀଙ୍କର ଏହି ପ୍ରାଞ୍ଜଳ ସରଳତା ଓ ବାସ୍ତବତା ହିଁ ତାଙ୍କର ଏଇ କ୍ଷୁଦ୍ର କାବ୍ୟଟିକୁ ଏକ ମଧୁର ବିଶିଷ୍ଟତା ଦାନକରିଛି ।

ଭକ୍ତଚରଣଙ୍କ ଅକ୍ରୂର ଏକ ବିଶ୍ୱାସଘାତକ ଦୂତ । ସେ ନନ୍ଦରାଜାଙ୍କୁ ଭେଟିବା ପୂର୍ବରୁ ଗାଈ-ଗୋଠରେ ତରୁଣ ଶ୍ରୀକୃଷ୍ଣ ପାଦତଳେ ପଡ଼ି, ତା' ନିଜ ମୁନିବର ସକଳ ଗୋପନ କଥା କହିଯାଇଛି । ଏ କେବଳ ଲୌକିକ ଅପରାଧ ନୁହେଁ, ଘୋର କାବ୍ୟିକ ଦୋଷ ମଧ୍ୟ । କଳ୍ପନାଶ୍ରୟୀ ହେଲେ ମଧ୍ୟ କାବ୍ୟ-କବିତା ଅଯୌକ୍ତିକ ହେବା ଉଚିତ ନୁହେଁ । ପୁଣି ଅକ୍ରୂର ପରି ଏକ ସାଧୁ ବ୍ୟକ୍ତିଠାରେ ବିଶ୍ୱାସଘାତକତା ରୂପକ ଏକ ବୀଭତ୍ସ ସାମାଜିକ ଅପରାଧ ସାଜିବ କିପରି ? ଅଥଚ କଂସର ବିଶ୍ୱସ୍ତ ଦୂତ ହୋଇ ଶ୍ରୀକୃଷ୍ଣଙ୍କ ସଙ୍ଗେ ପ୍ରଥମ ଦର୍ଶନରେ ହିଁ ସେ କହିପକାଇଛନ୍ତି –

ପେଷିଛି ନୃପ, ତୋ ଠାରେ କୋପ, କରି ବହୁତ ବାଗେ,
ଧରାଇ ନେଇ ମାରିବା ପାଇଁ ପତ୍ର ଲେଖିଛି ରାଗେ ।

କିନ୍ତୁ ରାଜକର୍ମଚାରୀ ସତ୍ୟବାଦୀଙ୍କ ଅକ୍ରୂର ପ୍ରକୃତରେ ଗୂଢ଼ବାକ୍ ରାଜଦୂତ ରୂପେ ଚିତ୍ରିତ । ତାଙ୍କ କାବ୍ୟରେ କୃଷ୍ଣାକ୍ରୂର ସମ୍ବାଦ ଅତି ସଂକ୍ଷେପ; କିନ୍ତୁ ଯଥାଯୁକ୍ତ –

କି କାରଣେ ଏଥେ ଆସ  କହ ଏଥର ସନ୍ଦେଶ
ଶୁଣି ମନ ହୋଇବ ତୃପତ,
ବାଣୀ ଶୁଣି ସେ ଅକ୍ରୂର  କହେ ଯୋଡ଼ି ବେନି କର
ତୁ କିସ ନ ଜାଣୁ ଗୋପୀନାଥ ।
ସର୍ବ ଜୀବେ ଯାର ବାସ ।
ତାକୁ ଜଣାଇବି କିସ ।
ନାରଦଙ୍କ ଠାରୁ ଶୁଣି  ତୋର ଜନ୍ମ କର୍ମ ବାଣୀ
ବସୁଦେବଙ୍କୁ ଯେ ହାଣୁଥିଲା,
ଚରଣେ ଶାଙ୍କୁଳି ଦେଇ  କେଉଁ ସୁଭାଗ୍ୟରୁ ନେଇ
ବନ୍ଦୀମନ୍ଦିରେ ରଖାଇଲା ।
କୂଟ କରିଅଛି ଯେତେ
ତୁମେ କି ନ ଜାଣ ସତେ ।
ପେଷି ଅଛି ନର ସାଇଁ  ତୁମକୁ ନେବାର ପାଇଁ

ଶୁଣି ତା' କହନ୍ତି ଜଗଜ୍ଜିତା,
ନରପତିଙ୍କର ଆଜ୍ଞା  ସ୍ନେହେଁ ନ କର ଅବଜ୍ଞା
ନ କହିବ ବହିଣ ଉଷ୍ମତା ।
ଯାଅ ହେ ଗୋପ ଭବନ
କହ ନନ୍ଦ ସନ୍ନିଧାନ ।

କିନ୍ତୁ ଶ୍ରୀକୃଷ୍ଣଙ୍କ ଅନୁରୋଧ ସତ୍ତ୍ୱେ ରାଜ-ଦୂତ ଅକ୍ରୂର 'ଉଷ୍ମତା' ଦେଖାଇବାକୁ ଭୁଲିନାହାନ୍ତି । ନନ୍ଦରାଜା, ରାମ-କୃଷ୍ଣ ଓ ଅନ୍ୟାନ୍ୟ ବ୍ରଜବାସୀ ବାହାରୁ ବାହାରୁ କ୍ରମେ ଡେରିହେଉ଼ଛି । ଅକ୍ରୂର ଥରେ ଦି'ଥର ସାବଧାନ କରାଇ ସାରିଲା ପରେ –

ଅକ୍ରୂର ରଥ ସଜାଡ଼ି  ଦାଣ୍ଡେ ଆରୋହଣ କରି
ଡାକେ ସର୍ବେ ଆସ ହେ ସତ୍ୱର,
ଗହଳ ଧନ୍ଦଳେ ତହିଁ  ନ ଶୁଣଇ ବାଣୀ କେହି
ଡାକି ଡାକି ହୁଏ କ୍ରୋଧଭର ।
ଶ୍ରୀ ହରିଚନ୍ଦନ ଭଣି ଅକ୍ରୂର କହଇ ବାଣୀ ।
ହଇରେ ହଇରେ ବ୍ରଜ ସାଇଁ ତୋର ଚିତ୍ତେ ଭୟ କିଞ୍ଚିତେ ନାହିଁ ।
ଦେଖ ନିଶି ଗଲା ପାହି ସଦନୁ ନ ଆସୁ କିପାଇଁ ।
କଂସର ମହିମା ଯେହି ଶ୍ରୁତି ପଥେ ଶୁଣା କି ନାହିଁ ।
ଆଜ୍ଞା ଧୃଷ୍ଟ କରୁ ତୁହି ଗୋପପୁରୁ ଯିବୁ ପଳାଇ ।
ଶ୍ମଶାନେ ଶିର ଛେଦାଇ ଦେବଟି ଶୂଳେ ବସାଇ ।
ତେତେବେଳେ କର ଦେଇ ରଖିବେ କି ତୋ ରାମ-କହ୍ନାଇ ।
ସୁତଙ୍କୁ ସମର୍ପି ଦେଇ ଥାଅରେ ତୁ ନିଶ୍ଚନ୍ତ ହୋଇ ।
ରଥ ନେବି ବାହୁଡ଼ାଇ ପାରିକୁଦ ଅଧୀପ କହି ।

ଦୌତ୍ୟ-କର୍ମର ଏ ଯେ ଏକ ପ୍ରତ୍ୟକ୍ଷ, ଜୀବନ୍ତ ଚିତ୍ର ଏଥିରେ କୌଣସି ସନ୍ଦେହ ନାହିଁ । ଭକ୍ତ-କବି ଭକ୍ତଚରଣ ଅକ୍ରୂର ମୁଖରେ ଏ ପ୍ରକାର ସାଧାରଣ ଦୂତୋଚିତ ଉଷ୍ମତା, ଏ ପ୍ରକାର ଇତର ଲୌକିକ ବ୍ୟବହାର ପ୍ରକାଶ କରିବାକୁ ସାହସ ନ କରି, ନିଜର ବରେଣ୍ୟ ଗ୍ରନ୍ଥର ଅଙ୍ଗ ହାନି କରି ନାହାନ୍ତି କି ?

ବର୍ତ୍ତମାନ ପଟ ଉତ୍ତୋଳନ ହେଲା ମଥୁରାରେ । ଇତି ମଧ୍ୟରେ ଯଶୋଦା-ରୋହିଣୀ-ଗୋପବାଳାଗଣ ଓ ରାମକୃଷ୍ଣଙ୍କ ଭିତରେ ବିଳାପର ଆଦାନପ୍ରଦାନ ସତ୍ୟବାଦୀଙ୍କ କାବ୍ୟରେ ଠିକ୍ ମଥୁରାମଙ୍ଗଳ ପରି ହୋଇଛି; କିନ୍ତୁ ମଥୁରାମଙ୍ଗଳଠାରୁ କମ୍ କାବ୍ୟିକ ଓ ଆଳଙ୍କାରିକ ଏବଂ ଅଧିକ ସରଳ, ସ୍ୱଷ୍ଟ, ସ୍ୱାଭାବିକ ଓ ସଂକ୍ଷିପ୍ତ ।

ଆତିଶଯ୍ୟ ଭୟରେ ଦୃଷ୍ଟାନ୍ତ ଦେବାକୁ ସାହସ କରୁନାହିଁ ।

ତରୁଣ, ସୁନ୍ଦର ରାମ ଓ କୃଷ୍ଣ ଯେତେବେଳେ ମଥୁରା ଦାଣ୍ଡରେ ପ୍ରଥମ କରି ଦେଖାଦେଲେ, ସେତେବେଳେ ମଥୁରାର ପୁରବାସୀ ଓ ପୁରବାସିନୀମାନଙ୍କ ଭିତରେ ଚହଳ ପଡ଼ିଯାଇଥିଲା । ଏହି ବିସ୍ମୟାନନ୍ଦ ମିଶ୍ର ନାଟକୀୟ ଘଟଣାଟିକି ଭକ୍ତଚରଣ ତାଙ୍କ କାବ୍ୟର ସମଗ୍ର ଚତୁର୍ଦ୍ଦଶ ଛାନ୍ଦଟିରେ କେବଳ ପୁରକାମିନୀମାନଙ୍କର ଗୁଡ଼ିଏ କୃତ୍ରିମ ଗତାନୁଗତିକ ବିଭ୍ରମର ବର୍ଣ୍ଣନା ଦେଇ ଅସାର କରିପକାଇଲେ ।

ସତ୍ୟବାଦୀ ଏଇ ଆଲଙ୍କାରିକ ବିଭ୍ରମକୁ ଛାଡ଼ିନାହାନ୍ତି କିନ୍ତୁ ଅପରିଚିତ ସୁନ୍ଦର ପୁରୁଷ ବା ସ୍ତ୍ରୀ ଦର୍ଶନରେ ଦେଖଣାହାରୀମାନଙ୍କ ଭିତରେ ଯେଉଁ ସ୍ୱାଭାବିକ ଜିଜ୍ଞାସା ଉଠିଥାଏ – ବାଃ, ଏ କିଏ ! – ଭକ୍ତଚରଣ ତା'ର ଉପଯୋଗ କରିନାହାନ୍ତି; କିନ୍ତୁ ସତ୍ୟବାଦୀ କରିଛନ୍ତି ଚମତ୍କାର ଭାବରେ ।

ଆଶ୍ଚର୍ଯ୍ୟ ରୂପ ଦେଖିଣ ପୁଚ୍ଛାପୁଚ୍ଛି ହୋନ୍ତି ଜନ
କେହୁ ବୋଲେ ଏହୁ ଥିଲେ କାହିଁ,
ଚାହୁଁଣ ଦେଲେ ବଦନ ହୃଦ ଦହଇ ମଦନ
ନୃପ ଶ୍ରୀ ଗଉରଚନ୍ଦ୍ର କହି ।
ଶ୍ରୀକୃଷ୍ଣ ରୂପକୁ ଦେଖି ପଚାରଇ କେହି ସଖୀ ।
ମିତ କହ ସତ,
କାଇଁଚ ମାଳିଆ ପୀତ ଦୁକୂଳିଆ ଚିକ୍‌କଣ କାଳିଆ ଏ କାହା ସୁତ ।
କି ରଙ୍ଗେ ନାଚଇ ମୂରଲୀ ବଜାଇ ଦେଲେ ଚାହିଁ ହୋଏ ମୋହି ଚିତ୍ତ ।
– ଇତ୍ୟାଦି

ଏ ଗୀତଟି ଅତ୍ୟନ୍ତ ଶ୍ରୁତିରସାୟନ । ଶେଷ ପଦରେ –

ଏହିପରି ମଧୁ-ପୁର ନରନାରୀ କୃଷ୍ଣ ରୂପ ଦେଖି ବିଭୋଳିତ
ଜାଣିଥିଲେ କେହି ଦିଅନ୍ତୁ ଚିହ୍ନାଇ କହିଲେ ପାରିକୁଦ ନରନାଥ ।

ତା'ପରେ ପରଗୀତଟିରେ ଜଣେ ଜାଣିବା ପୁରନାରୀ ଅନ୍ୟମାନଙ୍କୁ ଚିହ୍ନାଇ ଦେଇଛି –

ଏହିଟି ବସୁଦେବ ସୁତ ଶୁଣାଥିଲା ଗୋ ଛଇଳା, ଏବେ ଦେଖ ସାକ୍ଷାତ ।
– ଇତ୍ୟାଦି

ମଥୁରା ରାଜପଥର ଅନ୍ତରାଳରେ, ବାତାୟନରାଜିର ଆରପଟେ ଏଇ ଯେଉଁ ସ୍ୱାଭାବିକ ନାଟକୀୟ ପ୍ରଶ୍ନୋତ୍ତର ଘଟି ଯାଇଥିଲା, ତାକୁ ଭକ୍ତଚରଣ ଭୁଲି ଯାଇଛନ୍ତି । କିନ୍ତୁ ମନୋରମ ରୂପ ଦାନ କରିଗଲେ ସତ୍ୟବାଦୀ । କାରଣ, ଭକ୍ତଚରଣ ମଠବାସୀ

ଭକ୍ତଥିଲେ । ସେ ଥିଲେ ଦାର୍ଶନିକ, ତାତ୍ତ୍ୱିକ, ପଣ୍ଡିତ । ସେ ଥିଲେ, ଚିନ୍ତାଲୋକଚାରୀ । କିନ୍ତୁ ସତ୍ୟବାଦୀ ଥିଲେ ଏକ ଧୂଳିମଳିନପଦ, ନିତ୍ୟାଲୋକସମ୍ପର୍କବେଷ୍ଟିତ, ପ୍ରତ୍ୟକ୍ଷ-ଦ୍ରଷ୍ଟା, ପ୍ରତ୍ୟକ୍ଷାନୁଭବୀ ଏକ ରାଜକର୍ମଚାରୀ । ସେ ଦେଖିଥିଲେ ତାଙ୍କ ରାଜା କୌଣସି ଗାଁର ପଧାନ ଉପରେ ବିରକ୍ତ ହୋଇ କିପରି ଡକାଉଥିଲେ, ହୁଏତ ସେହି ଦୌତ୍ୟ ସେ ନିଜେ କରିଥିବେ । ପଲ୍ଲୀଗ୍ରାମରୁ ଜଣାଶୁଣା ଏକ ବିଶିଷ୍ଟ ବ୍ୟକ୍ତି ପ୍ରଥମଥର ପାଇଁ ଗଡ଼କୁ ଆସିଲେ ଗଡ଼ଲୋକଙ୍କ ଭିତରେ କିପରି ଚହଳ ପଡ଼େ ଓ କଥାବାର୍ତ୍ତା ହୁଏ ତାହା ସେ ନିଜେ ଦେଖିଥିବେ– କବି ସେହି ନିଜ ଅଙ୍ଗ ନିଭେଇବା ଅନୁଭବ ଗୁଡ଼ିକୁ ହିଁ ବ୍ରଜ ଓ ମଥୁରାକୁ ଆରୋପ କରି ଯାଇଛନ୍ତି । ସେଇଥିପାଇଁ ହିଁ ତାଙ୍କର ବର୍ଣ୍ଣନା ଏପରି ସହଜ ଓ ସ୍ୱାଭାବିକ ହୋଇଉଠିଛି । ମଥୁରାମଙ୍ଗଳରେ ରାମ କୃଷ୍ଣଙ୍କର ଚାଣୁର-ମୁଷ୍ଟିକ ଯୁଦ୍ଧ ମଧ ରବୀନ୍ଦ୍ରନାଥଙ୍କ 'ତାସେର ଘର'ର ଯୁଦ୍ଧ ପରି ହୋଇପଡ଼ିଛି– ମଲ୍ଲଯୁଦ୍ଧର ପ୍ରତ୍ୟକ୍ଷ ଅଭିଜ୍ଞତାର ଅଭାବରୁ, ପୁଣି ସର୍ବଦା କାବ୍ୟର ନାୟକଙ୍କୁ ଭଗବାନ ରୂପେ ଥୋଇବାର ଦୁର୍ବଳ, ଅସାହିତ୍ୟିକ ଅଭ୍ୟାସରୁ । ଯୁଦ୍ଧ ଆରମ୍ଭରୁ କଂସର ଦୁଇ ଶ୍ରେଷ୍ଠ ମଲ୍ଲ–

କୃଷ୍ଣ ବଳବୀର୍ଯ୍ୟ ଜାଣି ନିଶାଚର ବିଚାରେ ମରଣ ହୋଇଲା,
କାହିଁକି, କଲିଟି ରାଜନ-ବଚନ
ହରି-କୋପାନଳ ଅତିହିଁ ପ୍ରବଳ ଦହିବ ମୋ ତୃଣ-ଜୀବନ !

ଏ କି ପ୍ରକାର ମଲ୍ଲ ? ତା'ପରେ ଯୁଦ୍ଧ ନାଁରେ କେବଳ ବାହାନା ହିଁ ଚାଲିଲା–

ଏତେବେଳେ ଯେବେ ନିସତ ହୋଇବି
ନିନ୍ଦା କରିବେ ରାଜାମାନେ
ସମରେ ଜୀବନ ହୋଇଲେ ନିଧନ
ସୁଖେ ବସିବି ସ୍ୱର୍ଗ ସ୍ଥାନେ,
ଏମନ୍ତ ଭାଳି କରେ ଗାଢ଼ ସମର
ମୁଷ୍ଟିକି ମୁଷ୍ଟି ପଡ଼ି ତାଳ ପଡ଼ନ୍ତେ
ଶବଦେ କମ୍ପେ ତିନିପୁର ।

ସତ୍ୟବାଦୀଙ୍କ ଲେଖାରେ ଯେଉଁ ମଲ୍ଲ-ଯୁଦ୍ଧ ଘଟିଛି ସେଥିରେ 'ତିନିପୁର' ଅବଶ୍ୟ କମ୍ପିନାହିଁ; କିନ୍ତୁ ଆମେ ଦୁଇଟି ସତ ମାଲର ପ୍ରକୃତ, ଧୂଳିଧୂସର, ଘର୍ମାକ୍ତ ଓ ମର୍ମାକ୍ତ ଲଢେଇ ଦେଖିବାକୁ ପାଉଛୁ –

କରନ୍ତି, ଯୁଦ୍ଧ ଘୋର  ଶ୍ରୀକୃଷ୍ଣ, ହଳଧର
ଚାଣୁର, ମୁଷ୍ଟିକର ସଙ୍ଗରେ
ଠାଣମାଣରେ ରହି  ମରଣକୁ ସେ ଚାହିଁ

ମୁଥ ପ୍ରହାର କରେ ଅଙ୍ଗରେ ।
କେହି କାହାକୁ ବଳେ ମାଡ଼ି ବସନ୍ତି ତଳେ
କୋପେ ମାରନ୍ତି ମୁଣ୍ଡ ମୁଣ୍ଡରେ
କେହି ବିଧା, ଗୋଡ଼ୁଦା କେହୁ ମାରନ୍ତି ଖୁନ୍ଦା
ନାନା ଭର୍ତ୍ସନା ଦେଇ ତୁଣ୍ଡରେ ।
କେହୁ ମାରଇ ନାତ କେ ଧରେ କା'ର ହାତ
ଯେସନେ ଲାଗେ ଷଣ୍ଢ ଷଣ୍ଢରେ ।
ହୁଅନ୍ତି ଗଡ଼ାଗଡ଼ି ମହୀ ଉପରେ ପଡ଼ି
ହୁଅନ୍ତି ଛଡ଼ାଛଡ଼ି ଚାଣ୍ଡରେ ।
ପାଦକୁ ପାଦ ଛନ୍ଦି ଭୁଜ ଯୁଗଳ ବାନ୍ଧି
ମିଶାମିଶି ହୁଅନ୍ତି ପିଣ୍ଡରେ
କହିଲେ ଶ୍ରୀ ଗଉର- ଚନ୍ଦ୍ର ମାତା-ପିୟର
ରୋଦନ୍ତି କର ଦେଇ ଗଣ୍ଡରେ ।

ମୋର ମନେହୁଏ ସମଗ୍ର ଓଡ଼ିଆ ସାହିତ୍ୟରେ ସାରଳା ମହାଭାରତକୁ ଛାଡ଼ି ଦେଲେ ମଲ୍ଲଯୁଦ୍ଧର ଏପରି ଏକ ଜୀବନ୍ତ ବର୍ଣ୍ଣନା ଆଉ ନାହିଁ ।

ବର୍ତ୍ତମାନ ଯୁଦ୍ଧ ଶେଷ । କଂସ ନିହତ । ଉଗ୍ରସେନ ମଥୁରା ସିଂହାସନରେ ପୁଣି ବସିଲେ । ଏଇ ହେଲା ମଥୁରାର ମଙ୍ଗଳ । ଭକ୍ତଚରଣଙ୍କ କାବ୍ୟ ଏଇଠାରେ ଶେଷ ହେବାର କଥା; କିନ୍ତୁ ଯାପରେ ଭକ୍ତଚରଣ ଆଉରି ଛ'ଟି ଛାନ୍ଦ ଲେଖିଛନ୍ତି ଏବଂ ଘଟଣାବଳି ଅତି ଅବାନ୍ତର ହେଲେହେଁ ଏଇ କେତୋଟି ଛାନ୍ଦ ଭାବ, ଭାଷା,ପରିବେଶ ଦୃଷ୍ଟିରୁ ପୁସ୍ତକର ମୁକୁଟ ସ୍ୱରୂପ ବିରାଜିତ । ଅତ୍ୟନ୍ତ ସରଳ, କୋମଳ, ଲୌକିକ ଭାଷାରେ ଆମେ ଏଠି କବିଙ୍କଠାରୁ ଉଚ୍ଚ ଦର୍ଶନର ସ୍ୱାଦ ପାଉଁ । ଏଇଠି ହିଁ ପ୍ରକୃତରେ ଆମେ ଖାଣ୍ଟି ଭକ୍ତଚରଣଙ୍କୁ ପ୍ରଥମ କରି ପାଉ । ସେ ଯେପରି ସମଗ୍ର କାବ୍ୟକୁମ୍ଭଟି କା'ଠୁ ଧାର ନେଇ ଆସିଛନ୍ତି, ନିଜର ଏଇତକ ପ୍ରାଣର କଥା ଓ ଜୀବନ-ବାଣୀ ସେଥିରେ ସାଇତି ଯିବା ପାଇଁ । ସେଇତକ ଦାନରେ ଓଡ଼ିଆ ସାହିତ୍ୟ ସମୃଦ୍ଧ ।

କିନ୍ତୁ ଏଠି ମଧ ମେଘରେ ବିହାରକରି କବି ମାଟିକି ଭୁଲି ଯାଇଛନ୍ତି ।

ଉଗ୍ରସେନ, ବସୁଦେବତ ରାଜ୍ୟ ଫେରିପାଇଲେ, କଂସର ମୃତ୍ୟୁରେ ମଥୁରାର ମଙ୍ଗଳ ହେଲା; କିନ୍ତୁ ନନ୍ଦ ଯଶୋଦା ଗଲେ କୁଆଡ଼େ ? କିପରି ସେମାନେ ବିଦାୟ-ନେଲେ ମଥୁରାରୁ ? ସେମାନେ ଓ ରାମ-କୃଷ୍ଣଙ୍କର ମଥୁରୋତ୍ତର ସମ୍ବନ୍ଧ କି ପ୍ରକାର ଧଇଲା ?

ମଥୁରାମଙ୍ଗଳର ପଞ୍ଚବିଂଶ ଛାନ୍ଦରେ ଯଶୋଦା ଉଦ୍ଧବଙ୍କୁ କହୁଛନ୍ତି –

ସାକ୍ଷାତେ ଜଠରୁ ଜନମ କରିଛି ଏ ଗଲା ମିଛକୁ
ବ୍ରହ୍ମ ବୋଲି କେତେ ଉଚ୍ଚ କରୁଅଛ ମୋହର ବସ୍ତକୁ ।

ଏହା ମିଥ୍ୟା କଥା । ଶ୍ରୀକୃଷ୍ଣ ଯେ ଯଶୋଦାଙ୍କ ପାଳିତପୁତ୍ର ମାତ୍ର, ଏହା ମଥୁରାମଙ୍ଗଳର କବି କାବ୍ୟର ଆଦ୍ୟରେହିଁ ଶ୍ରୀକୃଷ୍ଣଙ୍କ ମୁଖରେ କୁହାଇ ସାରିଛନ୍ତି । ଅଥଚ ଯଶୋଦା କିପରି ମିଥ୍ୟା କଥା କହିବେ ଯେ ମୁଁ କୃଷ୍ଣକୁ ଜନ୍ମଦେଇଛି, ମଥୁରାରେ ଦେବକୀ ଥାଉ ଥାଉ – ଯେଉଁ ଦେବକୀକି ପାଇ କୃଷ୍ଣ ଆଉ ଯଶୋଦାର ମୁହଁ ଚାହିଁ ନାହାନ୍ତି, ଯାହାକି ନିତାନ୍ତ ସ୍ୱାଭାବିକ । ଯଶୋଦା ପୁଣି ସେଇ ପ୍ରସଙ୍ଗରେ କହୁଛନ୍ତି–

ଦେଖିବକି ଏଇକ୍ଷଣି ମଥୁରାକୁ ଯିବଇଁ ବହନ
କାଖରେ ବସାଇ ଘେନି ଆସିବିକି ମଦନ ମୋହନ ।

ଉତ୍ତମ କଥା; ତେବେ ସେ ଯାଉନାହାନ୍ତି କାହିଁକି ? ବୃନ୍ଦାବନରୁ ମଥୁରା ମୋଟେ ଅଢ଼େଇ କୋଶ, ସିଧା ଶୁଖିଲା ରାସ୍ତା ପଡ଼ିଛି । ପୁଣି ବ୍ରଜର ଗଉଡୁଣୀମାନେ ପ୍ରତ୍ୟହ ମଥୁରାକୁ ଦୁଧ ଦହି ବିକିବାକୁ ଯାନ୍ତି । ଅଥଚ ଯଶୋଦା ଉଦ୍ଧବକୁ ପରେ ପରେ କାକୁତି ମିନତି ହୋଇ କହୁଛନ୍ତି, ''ମୋ କୃଷ୍ଣକୁ ଟିକିଏ ଆଣ ତ'' ଏବଂ ସମ୍ଭାବନା ନ ଦେଖି ଶୋକରେ ତଳେ ଗଡ଼ିଯାଉଛନ୍ତି । ସେଥିପାଇଁ ପୂର୍ବେ କହିଛି, ଭକ୍ତଚରଣଙ୍କ କାବ୍ୟରେ ଏଇ ଘଟଣାଗୁଡ଼ିକ ନିତାନ୍ତ ଅବାନ୍ତର ବୋଧହେଉଛି । ଏଇ ବିଡ଼ମ୍ବନାକୁ ପୋଛି ଦେଇ ପାରୁଛି ଆମ୍ଭମାନଙ୍କର ଦୃଷ୍ଟିରୁ, କେବଳ କବିଙ୍କ ଦାର୍ଶନିକ କବିତ୍ୱ ।

କିନ୍ତୁ ଗ୍ରାମବାସୀ, ଅଦାର୍ଶନିକ, ଅପଣ୍ଡିତ କବି ସତ୍ୟବାଦୀ ଏଇ ଅଂଶର ଏକ ସଂଗତ, ସ୍ୱାଭାବିକ ଓ କରୁଣରସମୟ ଚିତ୍ର ଦେଇପାରିଛନ୍ତି ।

କୃଷ୍ଣ ତାଙ୍କ ନିଜ ବାପମାଙ୍କୁ ଫେରିପାଇଲେ । ସେମାନେ ପୁଣି ହେଲେ ରାଜାରାଣୀ । ଗୋପାଳ କୃଷ୍ଣ ବର୍ତ୍ତମାନ କଂସର ପରିତ୍ୟକ୍ତ ପ୍ରାସାଦରେ ଆନନ୍ଦରେ ରହିବେ। ତାଙ୍କୁ ଆଉ ଗାଈ ଚରାଇବାକୁ ହେବନାହିଁ । ନନ୍ଦ-ଯଶୋଦା ଗଉଡ଼-ଗଉଡୁଣୀଙ୍କି ଆଉ ସେ ବାପା ମା' ବୋଲି ମାନିବେ ନା ? ଆଉ ଗୋପପୁରକୁ ଫେରିବେ ନା ?

ଏ କ୍ଷେତ୍ରରେ ନନ୍ଦ-ଯଶୋଦାଙ୍କର କି ରୁକ୍ଷ କରୁଣ ଅନୁଭୂତି, ତାହା ସହଜରେ ଅନୁମେୟ । ବୃଦ୍ଧ ବୟସରେ ସେମାନେ ପୁଣି ନିଃସନ୍ତାନ ଗୃହକୁ ଫେରି ଯାଉଛନ୍ତି । ଯାହାଙ୍କୁ ନିଜର ପୁଅ ବୋଲି ମନେକରି ପାଳି ଆଣିଥିଲେ, ତାଙ୍କୁ ଅନ୍ୟ ପ୍ରତି ଆଉଜି ଯିବାର କଠୋର ଦୃଶ୍ୟ ଦେଖିବାକୁ ହେଲା । ଅନ୍ୟ ବୈଷ୍ଣବ କବିମାନେ ଏଇ ସ୍ଥାନରେ ଆମ୍ଭମାନଙ୍କୁ ଗୋପିନୀମାନଙ୍କର ବିଳାପ ଓ ତେଣେ ତରୁଣ କୃଷ୍ଣଙ୍କର ନବଯୌବନପ୍ରାପ୍ତା କୁବ୍‌ଜା-ଗୃହାଭିଯାନ ଶୁଣାଇଛନ୍ତି । କିନ୍ତୁ ସ୍ୱଭାବ କବି ସତ୍ୟବାଦୀ

ସେଇ ସ୍ଥାନରେ ନନ୍ଦ ଯଶୋଦାଙ୍କର ହୃଦୟ-ଫଟା ଦୁଃଖ, କୃଷ୍ଣଙ୍କର ନିର୍ମମତା ଓ ସଂସାରର ସ୍ୱାର୍ଥପର ନୀତିର ବର୍ଣ୍ଣନା କରି ଏଇ ବ୍ରଜ-ମାଥୁରୀ କାବ୍ୟର ଏକ ପ୍ରାଣସ୍ପର୍ଶୀ ସମାପ୍ତି କରିଛନ୍ତି । ଯଶୋଦାଙ୍କର ମର୍ମ-ବିଦାରୀ ବିଳାପ ଶୁଣନ୍ତୁ –

ସତ କହରେ ବାପ, ଯିବ କେତେ ଦିନେ,
ତୁମ୍ଭ ମୁଖ ନ ଦେଖିଣ ବଞ୍ଚିବି କେସନେ ।
ବଚ୍ଛା ଘେନି ଗଲେ ବନ, ଉଡୁଥାଏ ମୋର ପ୍ରାଣ
ଥୟ ନାହିଁ ରହେ ମନ, ଦେଖିବି ସଦନେ ।
କାହାପାଇଁ ସରଲନୀ, ରଖିବିରେ ନୀଳମଣି
କହନା ତୁ ଚାଟୁବାଣୀ 'ଯିବଇଁ, ବହନେ ।
ଛାଟେ କରି ପ୍ରହାରଣ, ରଜ୍ଜୁରେ କଲି ବନ୍ଧନ
ଏଥେ ରହୁଛୁକି ଧନ, ସେହି ଅଭିମାନେ ।
ମୋ ମନ୍ଦ କପାଳେ ବିହି, ଏହା ଥିଲା ଧନ ଲିହି,
ପୋଷିବା ସୁତକୁ ମୁହିଁ ଦେଇଗଲି ଆନେ ।
ପାଇଲ ମାତା-ପିୟର, ସୁଖ ଭୋଗ କରି ଢ଼ୁର
ଆଉ ଯିବ ଗୋପପୁର, ପଡ଼ିବ କି ମନେ ।
ଦୁଃଖ ପାଇ ବନେ ଗାଈ କିମ୍ପା ଚରାଇବ ଯାଇଁ,
ମୋର ଗଳେ ଖୁର ଦେଇ ରହିଲ ଏ ସ୍ଥାନେ ।
ଏତେ କହି ନନ୍ଦରାଣୀ, ସୁତକୃତ୍ୟ ଗୁଣି ଗୁଣି
ନେତ୍ରୁ ଅଶ୍ରୁ ବହେ, ଭଣି ଶ୍ରୀ ହରିଚନ୍ଦନ ।

ସତ୍ୟବାଦୀ ନାୟକ ପ୍ରକୃତରେ ଏକ ଗ୍ରାମ୍ୟକବି ଏବଂ ଏକାନ୍ତ ଭାବରେ ଅଜ୍ଞାତ । ହୁଏତ ତାଙ୍କ ସମସାମୟିକ ଲୋକେ ତାଙ୍କୁ କବି ବୋଲି ଜାଣିଥିବେ; କିନ୍ତୁ ଅଧିକାଂଶଙ୍କ ନିକଟରେ ସେ କେବଳ ଥିଲେ 'ଅମିନ' । ବୋଧହୁଏ ଗୌରଚନ୍ଦ୍ର ମାନସିଂହଙ୍କୁ ଖୁସି କରେଇବା ପାଇଁ ରାଜାଙ୍କ ଭଣିତାରେ ସେ ଏ କାବ୍ୟ ଲେଖିଥିଲେ । ହୁଏତ ରାଜଦରବାରରେ ସେ ନିଜେ ଏହା ଆବୃତ୍ତି କରିପାରିଥାନ୍ତି ଏବଂ ନିଜର ସୁକଣ୍ଠ ଯୋଗୁଁ ରାଜାଙ୍କୁ ମୁଗ୍ଧ କରି ଥାଇ ପାରନ୍ତି । ତାଙ୍କର ଏଇ ଗୁଣ ତାଙ୍କର ଅନ୍ତତଃ ଦୁଇଟି ପୁଅଙ୍କଠାରେ ଦେଖାଦେଇଛି । ତାଙ୍କର ତୃତୀୟ ପୁତ୍ର ଯୁଗଳ ନାୟକଙ୍କୁ ଆମର ସମଗ୍ର ଅଞ୍ଚଳରେ ଲୋକେ 'ଗାହାକ' ବୋଲି ହିଁ ଜାଣନ୍ତି । ପିଲାଦିନେ ମୁଁ ଦେଖିଛି 'ଗାହାକଦା' ସାରା ରାତି ଗାଁରେ କୃଷ୍ଣଲୀଳାର ପ୍ରଧାନ ଗାୟକ ରୂପେ ଏକ ସ୍ଥାନରେ ଠିଆହୋଇ ଛାନ୍ଦକୁ ଛାନ୍ଦ ଗାଇଚାଲିଥାନ୍ତି । ତାଙ୍କର କଣ୍ଠ ଉଦାତ୍ତ-ମଧୁର

ଥିଲା– ପ୍ରାଚୀନ ଛାନ୍ଦ ଚୌପଦୀ ପାଇଁ ଏକାନ୍ତ ଉପଯୁକ୍ତ । ପୂର୍ବରୁ ମଧ କହିଛି ଯେ, ସାନଦଦାଙ୍କ କଣ୍ଠ ମଧ ପ୍ରାଚୀନ ଗାନ ଓ କୀର୍ତ୍ତନାଦି ପାଇଁ ବେଶ୍ ସୁନ୍ଦର ଓ ଶକ୍ତିମନ୍ତ ଥିଲା । ସତ୍ୟବାଦୀଙ୍କ ଏଇ ଗୁଣରେ ହୁଏତ ମୁନିବ ରାଜା ସନ୍ତୁଷ୍ଟ ହୋଇଥିବେ ଓ ପାରିତୋଷିକ ଦେଇଥିବେ । କିନ୍ତୁ ମୋର ମନେହେଉନି ତାଙ୍କର ଏ କାବ୍ୟ ସାଧାରଣରେ ଅଭିନୀତ ବା ପ୍ରଚାରିତ ହୋଇଥିଲା । ଆମ ନିଜ ଗାଁରେ ପୂର୍ବେ ଯେଉଁ କୃଷ୍ଣଲୀଳା ହେଉଥିଲା, ତାହା ଅନ୍ୟ ଜଣେ କବିଙ୍କର । ଏହି ଗ୍ରନ୍ଥର ସମ୍ବାଦ ପାଖ ଗାଁ ଲୋକେ ବି ଜାଣିନଥିଲେ । କବି ସତ୍ୟାବାଦୀ ପ୍ରକୃତରେ ଏକ ଅଜ୍ଞାତ କବି।

ଶୁଣିଛି ବ୍ୟକ୍ତିଗତ ଜୀବନରେ କବି ଏକ କଠୋର ସାଧୁ ପ୍ରକୃତିର ଲୋକ ଥିଲେ । ଗୋଟିଏ ମେଲା ଘରେ ବଡ଼ ପିଢ଼ାଟାଏ କାନ୍ଥକୁ ଆଉଜାଇ, ତାରି ଉପରେ ଢିରା ଦେଇ ବସିଥାନ୍ତି – ରାଜ୍ୟର ଲୋକେ ତାଙ୍କ ପାଖକୁ ଆସନ୍ତି ନିଶାପ କରିବା ପାଇଁ । ଗଳ୍ପ ଅଛି ଯେ ଥରେ କୌଣସି ଧନୀ ବ୍ୟକ୍ତି ଗୋଟିଏ ଥାଳିରେ ଟଙ୍କା ଭର୍ତ୍ତି କରି ତାଙ୍କୁ ଲାଞ୍ଚ ଦେବା ପାଇଁ ଗୋପନରେ ଆସି ତାଙ୍କ ସହିତ ସାକ୍ଷାତ୍ କଲା । ସେ ତାହା ଦେଖି ଲେକଟିକୁ କୌଣସି ଭର୍ତ୍ସନା ନ କରି; ନାକରେ ଗାମୁଛା ଦେଇ ହାତ ଛିଞ୍ଚାଡ଼ି ନିର୍ଦ୍ଦେଶ ଦେଲେ ସେହି ଦୁର୍ଗନ୍ଧ ଆବର୍ଜନା ସେଠୁ ଉଠାଇନେବାକୁ ।

କବି ନିଜର ଏଇ ସ୍ୱର୍ଣ୍ଣ-ସାଧୁତାର ପୁରସ୍କାର ପାଇଥିଲେ । ଜୀବନ କାଳରେ ଧନଜନଗୋପଲକ୍ଷ୍ମୀ କୌଣସିଟିରେ ତାଙ୍କର ଅଭାବ ନଥିଲା ।

ତାଙ୍କୁ ମୁଁ ଅବଶ୍ୟ ଦେଖି ନାହିଁ– ଶୁଣିଛି ସେ ଥିଲେ କୃଷ୍ଣକାୟ । ତାଙ୍କର ପତ୍ନୀ, ଆମର ଗୋସେଇଁମା’ କିନ୍ତୁ ସ୍ୱାମୀ-ମୃତ୍ୟୁର ବହୁ ବର୍ଷ ପରଯାଏଁ ବଞ୍ଚିଥିଲେ । ସେ ଥିଲେ ତପ୍ତକାଞ୍ଚନବର୍ଣ୍ଣା ଓ ଅତ୍ୟନ୍ତ ନିରୀହ ପ୍ରାଣୀ । ମୁଁ ବି. ଏ. ପଢୁଥିଲା-ବେଳେ ସେ ଇହଧାମ ତ୍ୟାଗ କଲେ । ସେ ଥିଲେ ସମ୍ପୂର୍ଣ୍ଣ ନିରକ୍ଷରା । ତାଙ୍କ ନିକଟରେ ସତ୍ୟବାଦୀ କେବଳ ସ୍ୱାମୀ ମାତ୍ର ଥିଲେ ବୋଲି ମୁଁ ମନେକରେ । କାରଣ ଗୋସେଇଁବାପା ଯେ ଏପରି ଏକ ଗୁଣୀଲୋକ ଥିଲେ ସେ ସମ୍ପର୍କରେ ଗୋସେଇଁମାଙ୍କ ମୁହଁରୁ ମୁଁ ଦିନେ ହେଲେ ପଦେ କଥା ଶୁଣିନାହିଁ ।

ଏଇ ହେଲା ସତ୍ୟବାଦୀ ନାୟକଙ୍କ ସାମାନ୍ୟ ପରିଚୟ, ଏଇ ହେଲା ତାଙ୍କର କାବ୍ୟ । ମୁଁ ଏପର୍ଯ୍ୟନ୍ତ ଜାଣେନା ସେ ଆଉ କ’ଣ କିଛି ଲେଖିଛନ୍ତି କି ନାହିଁ । କିନ୍ତୁ ଯେତିକି ଦେଖିବାକୁ ପାଇଲି ସେଥିରେ ବୈଶିଷ୍ଟ୍ୟ ଥିବାର ଅନୁଭବ କରିବାରୁ ହିଁ ଏହି ଅଜ୍ଞାତ କବିଙ୍କୁ ଲୋକଲୋଚନ ଗୋଚରକୁ ଆଣିବାକୁ ସ୍ଥିର କଲି । ଦେଶର କବିମଣ୍ଡଳୀରେ ଏ ଗୃହୀତ ହେବେ କି ନାହିଁ, ତାହା ବର୍ତ୍ତମାନ ଦେଶର ପଣ୍ଡିତ, ସାହିତ୍ୟିକମାନେହିଁ ବିଚାରକରିବେ । କିନ୍ତୁ ଅଧମ ନାତି ଯୋଗୁଁ ଗୁଣୀ ଜେଜେ’ପା ଯେପରି ଅନୁପଯୁକ୍ତ ବିଚାର ନପାଆନ୍ତି ।

## ହୀରାଖଣ୍ଡ ମୋହନ–ବ୍ରଜମୋହନ

ସ୍ୱର୍ଗତ ବ୍ରଜମୋହନ ପଣ୍ଡାଙ୍କର ଐତିହାସିକ 'ଉତ୍କଳ ସାହିତ୍ୟ ସମାଜ'ର ଭିତ୍ତିରେ ଚିତ୍ରୋନ୍ମୋଚନ ସହିତ ମତେ ସଂପୃକ୍ତ କରିଥିବାରୁ ସମାଜର ସାଂପ୍ରତିକ କର୍ତ୍ତୃପକ୍ଷଂକୁ ଧନ୍ୟବାଦ ଦେଉଛି । କାରଣ, ସ୍ୱର୍ଗତ ପଣ୍ଡାଙ୍କର ଓଡ଼ିଶାର ଜାତୀୟ ଜୀବନକୁ ଲକ୍ଷଣୀୟ ଦାନ ସହିତ ମୋ ନିଜ ପ୍ରତି ତାଙ୍କର ଶ୍ରଦ୍ଧାମୟ ସହଯୋଗିତା ଦିନେ ଯେପରି ଫଳପୂର୍ଣ୍ଣ ହୋଇଉଠିଥିଲା, ତାହା ତ ବିସ୍ମୃତ ହେବାର ନୁହେଁ – ବରଂ ଦାବିକରେ ପ୍ରକାଶ୍ୟ ଘୋଷଣା ।

ଆମ୍ଭେମାନେ କେହି ଜାଣିନଥିଲୁ ଯେ ଶ୍ରୀ ବ୍ରଜମୋହନ ପଣ୍ଡା ନିଜେ ଥିଲେ ଜଣେ ଦରଦୀ ଓ ପ୍ରଚଣ୍ଡ ଓଡ଼ିଆ– ଜାତୀୟବାଦୀ କବି । ଜଣେ ଶିକ୍ଷାନୁରାଗୀ ଓ ଶିକ୍ଷାବିତ୍ ବୋଲି ମଧ୍ୟ ବ୍ରଜମୋହନ ବାବୁଙ୍କୁ କ୍ୱଚିତ୍ କେହି ଜାଣନ୍ତି । ରାଜ୍ୟରେ କ୍ୱଚିତ୍ କେହି ମଧ୍ୟ ଜାଣନ୍ତି ଯେ ସେ ଥିଲେ ଏକ ଆଦର୍ଶ କୃଷକ ଓ ଅତ୍ୟନ୍ତ ଧର୍ମପ୍ରାଣ ବ୍ୟକ୍ତି । ମେହେର-ମିହିରର ଆଲୋକରେ ଉଦ୍‌ଭାସିତ ବ୍ରଜମୋହନଙ୍କୁ ହିଁ ଆମେ ସମସ୍ତେ ଜାଣୁ ଏବଂ ତାହା ଯେ ଏକ ଗୌରବମୟ ପରିଚୟ ଏଥିରେ କୌଣସି ସଂଦେହ ନାହିଁ । ସେ ଗୌରବ ଏକାନ୍ତରେ ବ୍ରଜମୋହନଙ୍କର । କାରଣ ମେହେର-ମିହିରର ଆଲୋକପାତ ସମସ୍ତଙ୍କ ପାଇଁ ସମାନ ଥିଲା । କିନ୍ତୁ ନିଜର ସମଗ୍ର ବ୍ୟକ୍ତିତ୍ୱକୁ ସଂପୂର୍ଣ୍ଣ ଭାବରେ ବିଲୁପ୍ତ କରିଦେଇ କେବଳ ମେହେର-ମିହିର ଆଲୋକରେ ହିଁ ନିଜକୁ ବର୍ଣ୍ଣାଢ୍ୟ କରିବାର ଆନ୍ତରିକ ଶ୍ରଦ୍ଧା ଓ ସାଧନା, ସମଗ୍ର ଉତ୍କଳ ବା ସମଗ୍ର ସମ୍ବଲପୁରରେ କେବଳ ଅଭିଜାତ, ଧନିକ ଓ ସୁଶିକ୍ଷିତ ବ୍ରଜମୋହନଙ୍କଠାରେ ହିଁ ସମ୍ଭବ ହୋଇଥିଲା । ଏ ପ୍ରକାର ନିଷ୍ଠାବନ୍ତ ପ୍ରତିଭାପୂଜାର ଦୃଷ୍ଟାନ୍ତ ଅନ୍ତତଃ ଓଡ଼ିଶାରେ ଦ୍ୱିତୀୟ ନାହିଁ । ରେଭେନ୍‌ସା କଲେଜିଏଟ୍ ସ୍କୁଲର କିଶୋର ଛାତ୍ର ବ୍ରଜମୋହନ ରାଧାନାଥଙ୍କ ପ୍ରଥମ ଶ୍ରାଦ୍ଧବାସରରେ, ସମବେତ ଭକ୍ତ-ମାନଙ୍କର ସତୀଚଉରାରୁ ଫେରିବା ଅବସରରେ କବିଗୁରୁ ରାଧାନାଥଙ୍କ ସ୍ଥାନ ଆଉ କିଏ ପୂରଣ କରିବ ଏହି ପ୍ରଶ୍ନର ଉତ୍ତରରେ ସ୍ୱୟଂ ଭକ୍ତକବି ମଧୁସୂଦନଙ୍କ ମୁଖରୁହିଁ ଶୁଣିଲେ ଯେ, ସେ ଶୂନ୍ୟ ଆସନ ନିଶ୍ଚିନ୍ତଭାବରେ ସମ୍ବଲପୁରର ଗଙ୍ଗାଧର ମେହେରଙ୍କର । ସେଥିରେ ସମ୍ବଲପୁରପ୍ରାଣ କିଶୋର ବ୍ରଜମୋହନଙ୍କର ଛାତି ଫୁଲି ଉଠିବା ସ୍ୱାଭାବିକ । ସେହି ମୂହୁର୍ତ୍ତରୁ ସେ ଭାବିଲାଗିଲେ କିପରି ନିଜ ଜିଲ୍ଲାର ସେହି ମହାନ୍ ପ୍ରତିଭା ସେହି ଗଙ୍ଗାଧରଙ୍କ ସହିତ ପ୍ରତ୍ୟକ୍ଷ ପରିଚୟ କରିବେ । ଗଙ୍ଗାଧର ମେହେର ସେତେବେଳେ ବୋଧହୁଏ ମାସିକ ପାଞ୍ଚଟଙ୍କା

(ତା.୨୦।୧୨।୭୨ରେ ଉତ୍କଳ ସାହିତ୍ୟସମାଜ ଅନୁଷ୍ଠାନରେ ଶ୍ରୀରାମଚନ୍ଦ୍ର ଭବନରେ ପଠିତ ।)

ଦରମାରେ ଏକ ଅମିନ୍, ବୋଡ଼ାସମ୍ବର ଜମିଦାରିରେ । ଅଥଚ ବ୍ରଜମୋହନ ଥିଲେ ଅତୁଳ ସଂପଦର ଉତ୍ତରାଧିକାରୀ । ତଥାପି ନାନା ଭୟ, ନାନା ଆଶଙ୍କାରେ ଆନ୍ଦୋଳିତ ହୋଇ ଏହି ଧନିକ-ସନ୍ତାନ ସେହି ଦରିଦ୍ର ଅଥଚ ଅସାଧାରଣ ପ୍ରତିଭାବନ୍ତ ତନ୍ତୁବାୟଙ୍କୁ ଖଣ୍ଡିଏ ଚିଠି ଦେବା ପାଇଁ ନେଇଥିଲା ପ୍ରାୟ ବର୍ଷାଧିକ କାଳ । ଉଦାରପ୍ରାଣ ମେହେରଙ୍କ ପ୍ରାଣୋଲ୍ଲାସମୟ ଉତ୍ତର ହିଁ ଭୟାତୁର ବ୍ରଜମୋହନଙ୍କ ପ୍ରାଣର ସକଳ ଆଶଙ୍କା ଓ ଦ୍ୱିଧା ପୋଛିନେଇଗଲା ଏବଂ ଖୋଲି ହୋଇଗଲା ହୀରାଖଣ୍ଡର ଦୁଇଟି ମାନବିକ ହୀରାର ହୃଦ୍ୟତା ଓ ଆରାଧନାର ରାଜପଥ । ଯେବେ ମେହେର କବିଙ୍କର ଯଥାଯଥ ଜୀବନୀ ଲେଖାହେବ ସେତେବେଳେ ତା'ର ମେରୁଦଣ୍ଡ ହେବ କବି ମେହେର ଓ ଭକ୍ତ ବ୍ରଜମୋହନଙ୍କ ମଧ୍ୟରେ ଜୀବନବ୍ୟାପୀ ଚାଲିଥିବା ପତ୍ରାଳାପ । ଶ୍ରୀ ଶିବପ୍ରସାଦ ଦାଶ ଓ ଶ୍ରୀ ଅସିତ କବିଙ୍କ ସମ୍ପାଦନାରେ ଏହି ପତ୍ରସବୁର ଅଧିକାଂଶ ପ୍ରକାଶିତ ହୋଇପାରିଥିବାରୁ ସମଗ୍ର ଓଡ଼ିଆ ଜାତି ସେମାନଙ୍କଠାରେ ଋଣୀ । ସେହି ପତ୍ର ସବୁ ଆମକୁ ଜଣାଇଦେଉଛନ୍ତି ଯେ, ବ୍ରଜମୋହନ ମେହେର କବିଙ୍କର 'କୀଚକବଧ' ପରେ ଲିଖିତ ଅଧିକାଂଶ କାବ୍ୟ-ଗ୍ରନ୍ଥର ପ୍ରେରଣାଦାୟକ, ଉପାଦାନ-ସଂଗ୍ରାହକ ଓ ପ୍ରକାଶକ ବା ପ୍ରକାଶିତ ହେବାରେ ପ୍ରଧାନ ଉଦ୍‌ଯୋଗୀ । କେବଳ ସେତିକି ନୁହେଁ, ବ୍ରଜମୋହନ କବିଙ୍କୁ ତାଙ୍କର ସକଳ ଆର୍ଥିକ ଦୁରବସ୍ଥାରୁ ଉପରକୁ ନେଇଯିବା ପାଇଁ ବାରମ୍ବାର ଇଚ୍ଛା ପ୍ରକାଶ କରିଛନ୍ତି, ଯଦିଓ କବି ତାହା ପ୍ରତ୍ୟାଖ୍ୟାନ କରିଛନ୍ତି ବାରମ୍ବାର । କବିଙ୍କୁ ନେଇ ନିଜର ଲରମ୍ବା ଗ୍ରାମରେ ସୁଖସୁବିଧାରେ ରଖାଇବାର ଭାବନା ଓ ଯୋଜନା ମଧ୍ୟ ବ୍ରଜମୋହନ କରିଥିଲେ, କିନ୍ତୁ ମେହେର ନିଜର ଜନ୍ମମାଟି ଓ ଜନ୍ମକୁଟୀର ଛାଡ଼ି ଅନ୍ୟତ୍ର କେଉଁଠିକି ଯିବାକୁ ଉତ୍ସୁକ ନଥିବାରୁ, ତାହା ମଧ୍ୟ କାର୍ଯ୍ୟକାରୀ ହୋଇପାରିନଥିଲା ।

ପତ୍ରାବଳୀରୁ ଏହା ମଧ୍ୟ ଜଣାପଡୁଛି ଯେ, ବ୍ରଜମୋହନ ଫକୀରମୋହନଙ୍କର 'ପୂଜାଫୁଲ' କାବ୍ୟଟିକୁ ମଧ୍ୟ ନିଜ ବ୍ୟୟରେ ପ୍ରକାଶିତ କରିଥିଲେ ।

ଛାତ୍ରାବସ୍ଥାରେ ବ୍ରଜମୋହନ କିଛି କିଛି କବିତା ଲେଖୁଥିଲେ । ବିଶ୍ୱନାଥକର ସେଗୁଡ଼ିକ ଆଦରର ସହିତ ''ଉତ୍କଳ-ସାହିତ୍ୟ'' ରେ ପ୍ରକାଶ କରୁଥିଲେ । ସେ ସବୁ ବୋଧହୁଏ ସେହି କାଳରେ ବାହାରିଯାଇଥିଲା, ଯେତେବେଳେ ଆମେ 'ଉତ୍କଳ-ସାହିତ୍ୟ'ର ପାଠକ ହେବା ଅବସ୍ଥାକୁ ଆସିନଥିଲୁ । ତେଣୁ ବ୍ରଜମୋହନଙ୍କୁ କବି ମନେକରିବାର ଅନ୍ତତଃ ମୋ ପକ୍ଷରେ କୌଣସି ଚାକ୍ଷୁଷ ଉପାଦାନ ନଥିଲା । ଖୁବ୍ ସମ୍ଭବତଃ, ବ୍ରଜମୋହନ ମେହେର-ପ୍ରତିଭାର ନିକଟ-ସଂପର୍କରେ ଆସିବା ପରେ ପରେ, ନିଜର କବି-ସତ୍ତାକୁ ଆପେ ଆପେ ନିର୍ବାପିତ କରିଦେଇଥିଲେ । ମେହେରଙ୍କ ପାଖେ ଠିଆହୋଇ ସେ କି କବି-କ୍ଷମତା ଆଶା କରିପାରନ୍ତେ ? ଫଳରେ ମେହେର

କଲେଜ ଛାଡ଼ିବା ପରେ ଯାଇ, ଶ୍ରୀ ଅସିତ କବି ସଙ୍କଳିତ ବ୍ରଜମୋହନଙ୍କର 'ଯୌବନଗାଥା' ଦେଖିବାକୁ ପାଆନ୍ତେ ମୁଁ ବିସ୍ମୟରେ ଅଭିଭୂତ ହୋଇପଡ଼ିଥିଲି । ବାରମ୍ବାର ନିଜକୁ ପଚାରିଲି – ବ୍ରଜମୋହନ ପଣ୍ଡା ପୁଣି ଏକ କବି! ଅଥଚ କବିତାଗୁଡ଼ିକ ପଢ଼ି ବୁଝିଲି ଯେ, ସେ ଏକ ଲାଭା-ସ୍ରୋତ, ଯାହା ଛାଡ଼ିଯାଇଛି ଏକ ଆଜିର ନିର୍ବାପିତ-ଆଗ୍ନେୟଗିରି, ଯାହା କିନ୍ତୁ ଦିନେ ଥିଲା ପ୍ରଚଣ୍ଡଭାବରେ ଅଗ୍ନିଗର୍ଭ । ଗୋଟିଏ ଦୃଷ୍ଟାନ୍ତ ଦିଏ । ବ୍ରଜମୋହନ କଲିକତା ପ୍ରେସିଡେନ୍‌ସି କଲେଜରେ ପଢ଼ିଲା-ବେଳେ, ସେକାଳର ଅଧିକାଂଶ ଜଣାଶୁଣା ଓଡ଼ିଆ ସେହି କଲିକତାରେ ପଢୁଥିଲେ । କିନ୍ତୁ ଓଡ଼ିଶା-ଇତିହାସରେ ଉଦ୍‌ବୁଦ୍ଧ ହୋଇ ସେତେବେଳର କଲିକତାର କୌଣସି ଓଡ଼ିଆ ଯୁବକ, କଲିକତାରୁ ଖର୍ଚ୍ଚ ଓ ପରିଶ୍ରମ କରି ଯାଇନି ଓଡ଼ିଆକୀର୍ତ୍ତି ତ୍ରିବେଣୀଘାଟ ଦେଖିଆସିବାକୁ ଏବଂ ଦେଖି ଲେଖିନି ପ୍ରାଣପୂର୍ଣ୍ଣ ଏକ ଜାତୀୟବାଦୀ କବିତା, ନିଜ ଜାତିର ସାଂପ୍ରତିକ ଦୁର୍ଦ୍ଦଶା ସ୍ମରଣ କରି କରି । କର୍ମବୀର ବ୍ରଜମୋହନଙ୍କ ଆପାତ-କଠୋର ବ୍ୟକ୍ତିତ୍ୱ ତଳେ ଯେ କିପରି ଏକ ପେଲବ ମର୍ମ ଲୁଚି ରହିଥିଲା, ତାହା ଯୌବନଗାଥାରେ ତ୍ରିବେଣୀର ସ୍ୱପ୍ନ ସହିତ ତାଙ୍କର ପୁତ୍ରଶୋକ ଜନିତ କରୁଣ ବିଳାପରେ ଜଳଜଳ । ଯଦିଓ ବ୍ରଜମୋହନ ନିଜକୁ ମେହେର ବ୍ୟକ୍ତିତ୍ୱ ସହିତ ସଂପୂର୍ଣ୍ଣ ମିଶାଇ ଦେଇଥିଲେ, କିନ୍ତୁ ଆମେ ଦେଖୁଛୁ ଯେ, ଯୌବନଗାଥାର କବିର ସ୍ୱତନ୍ତ୍ର କବି-ସତ୍ତା ଅନସ୍ୱୀକାର୍ଯ୍ୟ । ଓଡ଼ିଆ ସାହିତ୍ୟରେ ବ୍ରଜମୋହନଙ୍କ ଆସନ ତାଙ୍କ ନିଜ ମର୍ଯ୍ୟାଦାର ହିଁ ସ୍ୱତନ୍ତ୍ର ବ୍ୟବସ୍ଥା ।

ଜାତୀୟତାବାଦୀ ବ୍ରଜମୋହନ ଗାଂଧି-ଆନ୍ଦୋଳନରେ ମିଶି ମଧ୍ୟ, ଉତ୍କଳୀୟ ସାମଗ୍ରିକ ଜାତି ଚେତନାରେ ନେତୃତ୍ୱ ନେଇପାରିଲେନି, ତା'ର କାରଣ ବୋଧହୁଏ ଏହି ଯେ, ସେ ଦୂର କର୍ତ୍ତବ୍ୟ ପାଇଁ ନିକଟର କର୍ତ୍ତବ୍ୟକୁ ଛାଡ଼ିପାରିନଥିଲେ । ସେ ବଦ୍ଧପରିକର ହେଲେ, ଆଗ ଜନ୍ମମାଟି, ଅନଗ୍ରସର ସମ୍ବଲପୁରର କିପରି ସେବା କରିବେ । ପୁଣି ପିତାଙ୍କ ବିୟୋଗ ପରେ ତାଙ୍କୁ ବିସ୍ତୀର୍ଣ୍ଣ ସଂପତ୍ତିର ବୁଝାମଣା କରିବାକୁ ପଡ଼ିଲା । ସେ ଜଣେ ଅଗ୍ରଗାମୀ କୃଷକ ଥିଲେ । ଶୁଣିଛି କେବଳ ଚୀନାବାଦାମରୁ ସେ ପ୍ରତିବର୍ଷ ପାଉଥିଲେ ୩୦/୪୦ ହଜାର ଟଙ୍କା । କିନ୍ତୁ ଭାଗ୍ୟଦତ୍ତ ଏହି ସଂପତ୍ତିକୁ ସେ ସମାଜସେବାରେ ଲଗାଇବାକୁ ଭୁଲିଯାଇ ନଥିଲେ । ନିଜ ଗ୍ରାମ ଲରମ୍ବାରେ ଛାତ୍ରାବାସରେ ନିଜ ଜଳଖିଆ ଟଙ୍କାରୁ ସେ ଯେଉଁ ଚାଟଶାଳୀ ଆରମ୍ଭ କରାଇଥିଲେ, ତାହା ଏବେ ଏକ ହାଇସ୍କୁଲ ଓ କଲେଜ ହୋଇ ଦଣ୍ଡାୟମାନ ଏବଂ ଗଙ୍ଗାଧର ମେହେର କଲେଜ ଠିଆକରେଇବାରେ ତାଙ୍କର ଭୂମିକା ମଧ୍ୟ ବିଶିଷ୍ଟ ପ୍ରଚୁର ସମ୍ମାନ ଦାବି କରେ । ଏହି କଲେଜର ପ୍ରିନ୍‌ସପାଇ ଭାବରେ ହିଁ ବ୍ରଜମୋହନ ପଣ୍ଡାଙ୍କ ସହିତ ମୋର ପ୍ରଥମ ସାକ୍ଷାତ୍ ପରିଚୟ ।

ଯଦି ଆପଣମାନେ କେହି ଶୁଣିଥାନ୍ତି ଯେ, ମୁଁ ଗଙ୍ଗାଧର ମେହେର କଲେଜରେ କିଛି କରିଥିଲି, ତେବେ ଏଠାରେ କହିରଖେ ଯେ, ତା'ର ପଛରେ ପ୍ରଧାନ ସହାୟକ ଥିଲେ ଦୁଇଟି ଲୋକ – ଏଇ ଲୋକର ଭୂମିକା କେବଳ 'ନିମିତ୍ତ ମାତ୍ରଂ ଭବ ସବ୍ୟସାଚି' । ସେ ସହାୟକ ଦୁହେଁ ହେଲେ ମିଃ ବି. ଶିବରମଣ, ଆଉ ବ୍ରଜମୋହନ ପଣ୍ଡା । ଦୁହିଁଙ୍କ ଭୂମିକା ଓତଃପ୍ରୋତଭାବରେ ଜଡ଼ିତ ଥିବାରୁ ଚୁମ୍ବକରେ ସମଗ୍ର ବ୍ୟାପାରଟି ବଖାଣିବାକୁ ହେବ ।

ଛାତ୍ର ଭାବରେ ରେଭେନ୍‌ସା କଲେଜ ଛାଡ଼ିଲାପରେ, ପାଟନା କଲେଜ, ତା'ପରେ ଏଡ଼ିନ୍‌ବରା, ଡରହାମ, ଅକ୍‌ସଫୋର୍ଡ଼ କେମ୍ବ୍ରିଜ ଇତ୍ୟାଦିର କଲେଜସବୁ ଦେଖି ଦେଖି 'କଲେଜ' କହିଲେ କ'ଣ ବୁଝାଏ, ମୋର ସେ ସମ୍ପର୍କରେ ଏକ ସ୍ଥିର ଧାରଣା ରହି ଯାଇଥିଲା । ତା'ପରେ ସ୍କୁଲ ମାଷ୍ଟର, ଇନସ୍‌ପେକ୍‌ଟର ଓ ଏଡୁକେଶନାଲ ଆଡ଼ଭାଇଜର ଭାବରେ ହୁଏତ କୋଡ଼ିଏ ବର୍ଷ ଖଣ୍ଡେ କଟିଯାଇଛି, ଯେଉଁ ସମୟରେ ଏଇ ଲୋକର କଲେଜ ସହିତ କିଛି ସମ୍ପର୍କ ହିଁ ନଥିଲା । ହଠାତ୍ ଗଙ୍ଗାଧର ମେହେର କଲେଜର ଦାୟିତ୍ୱନେଇ, ଯାହା କିନ୍ତୁ ଦେଖିଲି, ସେଥିରେ ନିଜକୁ ବାରମ୍ବାର ପଚାରିଲି– ଇଏ ପୁଣି କି ପ୍ରକାର କଲେଜ ? ତଥାକଥିତ ପ୍ରଫେସରମାନେ ରହୁଛନ୍ତି କଟକ ରିକ୍‌ସାବାଲାଙ୍କ ଉପଯୋଗୀ ଝୁଁପୁରୀମାନଙ୍କରେ । ସକାଳଯାକ ହଷ୍ଟେଲର ପିଲେ ଲୁଙ୍ଗିପିନ୍ଧି ଖାଲି ବୁଲୁଛନ୍ତି ବା ଷ୍ଟେସନକୁ ଯାଉଛନ୍ତି ଚା' ଖାଇବାକୁ । ଦିନେ ସେମାନଙ୍କ ମେସ୍‌ରେ ଖାଇବାକୁ ଗଲି । ଦେଖିଲି– ସେମାନେ କୁଲିର ପରିବେଶରେ ଅଥଚ ଏପରି ଖାଦ୍ୟ ଖାଉଛନ୍ତି, ଯାହା କୁଲି ବି ଖାଇବେନି । ସମଗ୍ର କଲେଜଟାରେ ପ୍ରଥମ ଶ୍ରେଣୀର ପିଲା ଜଣେ ହେଲେ ନଥିଲେ । ସେହିବର୍ଷ ମେହେର କଲେଜର ପରୀକ୍ଷାଫଳ ଯେ ସମଗ୍ର ଉତ୍କଳ ବିଶ୍ୱବିଦ୍ୟାଳୟରେ ଥିଲା ନିମ୍ନତମ, ଏଥିରେ ଅସ୍ୱାଭାବିକତା କିଛି ନଥିଲା । ମୁଁ ମନେ ମନେ ସ୍ଥିରକଲି ଯେ ଏ ସବୁରେ ଯଦି କିଛି ଉନ୍ନତି ନ ଆଣିପାରେ, ତେବେ ମୋର ଏଠି ରହିବା ଅଯଥାର୍ଥ । କ'ଣ କରାଯିବ ?

କିନ୍ତୁ ହଠାତ୍ ଅଫିସ୍‌ରେ ଲକ୍ଷ୍ୟ କଲି ଯେ, ପ୍ରିନ୍‌ସପାଲ ଭାବରେ ଟ୍ରଷ୍ଟ-ଫଣ୍ଡ ନାମକ ଏକ ସଂସ୍ଥାର ବ୍ୟାଙ୍କ ଚେକ୍ ସବୁ ମତେ ଦସ୍ତଖତ କରିବାକୁ ପଡୁଛି । ହେଡ୍ କିରାଣୀଂକି ପଚାରିଲି– ଇଏ କି ବ୍ୟାପାର ? ୟାର କିଛି କାଗଜପତ୍ର ଅଛି ? ଆଣତ ।

ବର୍ତ୍ତମାନ ଟ୍ରଷ୍ଟ-ଡିଡ୍ ପଢ଼ିଲି । ଗତ ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ବଙ୍ଗଳାର ଦୁର୍ଭିକ୍ଷ ପାଇଁ ଓଡ଼ିଶା ଓ ବିଶେଷ କରି ସମ୍ବଲପୁର ଚାଉଳ ଯୋଗାଉଥିଲା । ବ୍ରଜମୋହନ ପଣ୍ଡାଙ୍କ ଅଗ୍ରଗଣ୍ୟତାରେ ସମ୍ବଲପୁର କଲେଜ ପାଇଁ ପ୍ରତି ଚାଉଳବସ୍ତାରେ ଏକ ନିର୍ଦ୍ଦିଷ୍ଟ ପାଉଣା ରଖାଗଲା । କେତେ କୁଆଡ଼େ ଗଲା, କିନ୍ତୁ ମେହେର କଲେଜ ପାଇଁ ରଖାଗଲା ସାତଲକ୍ଷ୍ୟ ଟଙ୍କା । ମୁଁ ଦେଖିଲାବେଳକୁ ସାତଲକ୍ଷ ବଢ଼ିବଢ଼ି ହେଲାଣି ଦଶଲକ୍ଷ ଉପରେ ।

ଟ୍ରଷ୍ଟ-ଡୀଡ୍‌ରେ ଲେଖାଅଛି ଯେ ଏ ଟଙ୍କା କଲେଜର ବିଲଡ଼ିଂ ଆଦିରେ ବ୍ୟୟିତ ହେବ– ଅଥଚ କଲେଜର ଏପ୍ରକାର ଦୟନୀୟ ଅବସ୍ଥା କାହିଁକି ? କିରାଣୀ କହିଲେ, ଆଜ୍ଞା, କୌଣସି ପ୍ରିନ୍‌ସପାଲ ଆଗ୍ରହ ନେଇନାହାନ୍ତି । ଟଙ୍କା ସେଇମିତି ଗଚ୍ଛିତ ।

ସ୍ଥିର କଲି ଯେ, ଏ ଟଙ୍କା ଅଭିପ୍ରେତ କର୍ମରେ ତୁରନ୍ତ ଲଗାଯିବା ଉଚିତ । ସେତେବେଳେ ମିଃ ଶିବରମଣ ସେ ଅଞ୍ଚଳର କମିସନର । ମୋର ତାଙ୍କ ସହିତ ଆଦୌ ପରିଚୟ ନଥାଏ । କିନ୍ତୁ ତାଙ୍କୁ ମୁଁ ଏକ ଚିଠି ଲେଖିଲି ଯେ, ଯେହେତୁ ଆପଣ ଏ ଅଞ୍ଚଳର ଉଚ୍ଚତମ ଏକ୍‌ଜିକ୍ୟୁଟିଭ୍ ଅଫିସର, ଏ ଅଞ୍ଚଳର ଏହି ନିର୍ମୀୟମାନ ଶିଶୁ କଲେଜ ସହିତ ଆପଣଙ୍କର ସଂପୃକ୍ତି ରହିବା ଉଚିତ । ପୁଣି ଏହାର ଦଶଲକ୍ଷ ଟଙ୍କା ଗଚ୍ଛିତ ଅଛି – ଅଥଚ ଏହାର ନିଜର ଘର ନାହିଁ । ଆପଣ ଆସନ୍ତୁ, ସାହାଯ୍ୟ କରନ୍ତୁ ଆମକୁ ।

କର୍ମୀପୁରୁଷ ଶିବରମଣ ସାଙ୍ଗେ ସାଙ୍ଗେ କଲେଜକୁ କେବଳ ଆସିଲେ ନାହିଁ, ସେ କଲେଜର ଘର ତିଆରି ଆଦି ପାଇଁ ଏକ ନୂଆ ଡିପାର୍ଟମେଣ୍ଟ ଖୋଲିଦେଲେ । ଜଣେ ଆଇ.ଏ.ଏସ୍. ଅଫିସର (ଏବର କମିସନର ଶ୍ରୀ ଗୋପାଳ ଦାସ, ସେତେବେଳେ ସେଠାରେ (ପ୍ରୋବେଶନର୍) ତାଙ୍କ ତଳକୁ ଜଣେ ଓ ଏ.ଏସ୍, ଜଣେ ଏକ୍‌ଜିକ୍ୟୁଟିଭ୍ ଇଂଜିନିୟର, ଦି'ଜଣ ଓ୍ୟାର୍କ ସରକାର– ଏଇମାନେ ଦିନରାତି ଲାଗି କାମ କଲେ । ମୁଁ ଆସିଲା ପର୍ଯ୍ୟନ୍ତ ଓ ପରେ ଯାହା ସବୁ ମେହେର କଲେଜରେ ମୁଣ୍ଡ ଟେକି ଠିଆ-ହୋଇଛନ୍ତି, ସେ ସମସ୍ତର ଯୋଜନା ଆମେମାନେ ସେତିକିବେଳେ କରିଥିଲୁ । କିନ୍ତୁ ବ୍ରଜମୋହନବାବୁ ସବୁଥିରେ ଛାୟାପରି ଥାନ୍ତି । ସେ ବରାବର ଲକ୍ଷ୍ୟ ରଖିଥିଲେ, କଷ୍ଟାର୍ଜିତ ଟ୍ରଷ୍ଟ ଟଙ୍କା କେଉଁବାଟେ ହେଲେ ବରବାଦ ହୋଇଯାଉନାହିଁ ତ ? ଯାହା ହେଉ, ଦେଖୁ ଦେଖୁ ବ୍ରଜମୋହନଙ୍କ ଟ୍ରଷ୍ଟ ପାଣ୍ଠି ବୁଢ଼ାରଜା ପାହାଡ଼ ତଳେ ଥିବା ଝୁଂପୁରିମେଳାକୁ ପରିଣତ କରାଇଦେଲା ସୁଦୃଶ୍ୟ ଓ ସୁବାସ୍ୟ ପ୍ରାସାଦବଳୀରେ, ଯେଉଁପ୍ରକାର ପ୍ରଫେସର ବସତି ଓଡ଼ିଶାର ଅନ୍ୟ କୌଣସି କଲେଜରେ ନାହିଁ ।

ବର୍ତ୍ତମାନ ହଷ୍ଟେଲକୁ ସୁଗଠିତ କରିବାର କଥା । ହାଇସ୍କୁଲ୍ ଓ କଲେଜ-ପଢ଼ା ସମୟଟା ହିଁ ଆମ ଛାତ୍ର-ଛାତ୍ରୀମାନଙ୍କର ଦେହ ମନର ବଢ଼ିବା ସମୟ । ଏହି କାଳରେ ସେମାନଙ୍କର ପ୍ରଥମ ଆବଶ୍ୟକତା ପ୍ରଚୁର ସୁଷମ ଖାଦ୍ୟ ଏବଂ ସନ୍ତୋଷ-ଉଲ୍ଲାସଜନକ ବାତାବରଣ, ଯେଉଁଥିରେ କି ସେମାନେ କଠିନ ମାନସିକ ଓ ଦୈହିକ ଶ୍ରମ କରିବା ପାଇଁ ଉତ୍ସାହୀ ହେବେ । ପ୍ରତ୍ୟେକ ପ୍ରିନ୍‌ସପାଲ ବା ହେଡ୍‌ମାଷ୍ଟରଙ୍କର ତେଣୁ ପ୍ରଥମ ଜାହିର ହେବା ଉଚିତ, ଯେପରି ଏଇ ବେଳର ପିଲାମାନଙ୍କର କ୍ଷିପ୍ର-ବର୍ଦ୍ଧିଷ୍ଣୁ, ଶରୀର ଓ ମନ ଯଥେଷ୍ଟ ସୁଷମ ଖାଦ୍ୟ ପାଉଛି । ପୁଣି ଯେଉଁମାନେ ସ୍କୁଲ-କଲେଜକୁ ଆସିବେ, ସେମାନେ ଯଦି ଯେମିତିକା ସାଁବାଳୁଆ ପୋକ ହୋଇ ଆସିଥିଲେ ସେଇମିତି ସାଁବାଳୁଆ ପୋକ ରହି ସମାଜକୁ ଫେରିଯାନ୍ତି, ତେବେ

ସ୍କୁଲ-କଲେଜର କୌଣସି ଯଥାର୍ଥତା ନାହିଁ ବୋଲିବାକୁ ହେବ । ସେମାନେ ଫେରିବା ଉଚିତ ପ୍ରଜାପତି ହୋଇ । ଘରେ ଯାହା ନାହିଁ, ସେମାନେ ସ୍କୁଲ-କଲେଜରେ ତାହା ପାଇବା ଉଚିତ୍ । ସ୍କୁଲ-କଲେଜରେ ପିଲେ ସଂଘବଦ୍ଧଭାବରେ ଓ ସଭ୍ୟ ସୁନ୍ଦର ଭାବରେ ବଞ୍ଚି ଶିଖିବା ଏକାନ୍ତ ଉଚିତ । ତାହାହିଁ ସୁନାଗରିକର ସର୍ବାଦ୍ୟ ପ୍ରସ୍ତୁତି ।

ଏହି କଳ୍ପନାନୁଯାୟୀ ମୁଁ ସ୍ଥିର କଲି ଯେ, କଲେଜ-କ୍ୟାମ୍ପସ୍‌ରୁ ମୋ ଛାତ୍ରମାନେ କୌଣସି ହେଲେ ଆବଶ୍ୟକତା ପାଇଁ ବାହାରକୁ ଯିବା ଉଚିତ୍ ନୁହେଁ । ସେମାନଙ୍କୁ ସଭ୍ୟ ସୁନ୍ଦର ଭାବରେ ଟେବୁଲ ଚୌକିରେ ସୁଷମାନ୍ନ ଖାଇବାକୁ ଦିଆଯିବ । ସେମାନଙ୍କ ପାଇଁ ପ୍ରତ୍ୟହ ଦୁଗ୍ଧପାନର ବ୍ୟବସ୍ଥା ଏଇଠି କରିବାକୁ ହେବ । ପିଲାମାନଙ୍କର ଦୈନନ୍ଦିନ ତେଲ-ଟୁଥ୍‌ବ୍ରଶ୍ ଖାତା-କାଗଜ ଇତ୍ୟାଦି ପାଇଁ ମଧ୍ୟ ଏଇଠି ବ୍ୟବସ୍ଥା କରିବାକୁ ହେବ । ଘରୁ ଆଣିଥିବା ହେୟ ଦାରିଦ୍ର୍ୟର ପ୍ରତୀକରୂପୀ ବଙ୍କା ଠୋଲା ଆଲ୍‌ମୁନିୟମ୍ ଥାଳି ପରିବର୍ତ୍ତରେ, ସେମାନଙ୍କୁ କଂସାର ଥାଳି-ଗିନା-ଗ୍ଲାସ୍ ଇତ୍ୟାଦିର ଏକ ଏକ ସେଟ୍ ଯୋଗାଇଦିଆଯିବ । ଅଳ୍ପ ଖର୍ଚ୍ଚରେ ସେମାନଙ୍କୁ ଯଥେଷ୍ଟ ଖାଦ୍ୟ ଯୋଗାଇ ଦିଆଯିବ ।

କିନ୍ତୁ ଏସବୁ ପାଇଁ ତ ଟଙ୍କା ଆବଶ୍ୟକ । ପଶୁଶାଳା ପାଇଁ ଟଙ୍କା, ଶତଶତ ବାସନ ସେଟ୍ ପାଇଁ ଟଙ୍କା, ଟେବୁଲ, ବେଞ୍ଚ ପାଇଁ ଟଙ୍କା, ଷ୍ଟୋର ପାଇଁ ଟଙ୍କା, ମେସ୍ ସଂସ୍କାର ପାଇଁ ଟଙ୍କା – ମୋଟରେ ପ୍ରାୟ ପନ୍ଦର କୋଡ଼ିଏ ହଜାର ଟଙ୍କା ଆବଶ୍ୟକ । ସରକାର ତ ଏ ବାବଦରେ ଟଙ୍କା ଦେବେନି । ଟ୍ରଷ୍ଟ-ଡୀଡ୍‌ରେ ମଧ୍ୟ ଏସବୁ ବ୍ୟବସ୍ଥା ପାଇଁ ଅର୍ଥବିନିଯୋଗ ନିର୍ଦ୍ଦେଶ ନଥିଲା । ମୁଁ ତେଣୁ ଗଭର୍ଣ୍ଣିଂ ବଡ଼ି ଆଗରେ ଟ୍ରଷ୍ଟ ଫଣ୍ଡ୍‌ରୁ ଏ ଟଙ୍କା ଧାର ସ୍ୱରୂପ ଦେବାକୁ ପ୍ରସ୍ତାବ ଦେଲି ।

ସେତେବେଳେ ଗଭର୍ଣ୍ଣିଂବଡ଼ିର ପ୍ରେସିଡ଼େଣ୍ଟ ଥା'ନ୍ତି ସ୍ୱର୍ଗତ ବୋଧରାମ ଦୁବେ । ମେମ୍ବର ଥା'ନ୍ତି ତ୍ରିବିକ୍ରମ ପୂଜାରୀ ଓ ଭରତନାୟକ ପ୍ରଭୃତି ଉତ୍କଳର ସୁବିଦିତ ଭଦ୍ରଜନମାନେ । କିନ୍ତୁ ଏ ସମସ୍ତେ ମୋର ଅଦ୍‌ଭୁତ ପ୍ରସ୍ତାବମାନ ଦେଖି ସ୍ତବ୍ଧ ରହିଲେ । ପାଟି ଫିଟାଇଲେ କେବଳ ବ୍ରଜମୋହନବାବୁ । ସେ କହିଲେ "ଧାର ଆମେ କାହାକୁ ଦେବୁ ?" ମୁଁ କହିଲି, "ଆପଣମାନେ ପ୍ରିନ୍‌ସପାଲଙ୍କୁ ଧାର ଦେବେ ।" ବ୍ରଜମୋହନବାବୁ କହିଲେ, "ଆମେ ସରକାରୀ ପ୍ରିନ୍‌ସପାଲଙ୍କୁ ମଧ୍ୟ ବିଶ୍ୱାସ କରି ଏତେ ଟଙ୍କା ଦେଇପାରିବୁ ନାହିଁ । ଆମେ ଦେଇପାରିବୁ କେବଳ ଡକ୍ଟର ମାୟାଧର ମାନସିଂହଙ୍କୁ । ତାଙ୍କର ବ୍ୟକ୍ତିଗତ ସିକ୍ୟୁରିଟି ହିଁ ଆମ ପାଇଁ ନିରାପଦ ।"

ବ୍ରଜମୋହନ ବାବୁଙ୍କ ସେହି ପଦକ କଥା ମୋର ସକଳ ଯୋଜନା ପାଇଁ ବାଟ ଫିଟାଇ ଦେଇଥିଲା । ମୋର ବିଶ୍ୱାସ, କୋଡ଼ିଏ ବର୍ଷ ତଳେ କିଣାଇ ଦେଇଥିବା ଶତ ଶତ ଡିନରସେଟ୍ ଏପର୍ଯ୍ୟନ୍ତ ମେହେର କଲେଜର ଅନ୍ତେବାସୀମାନଙ୍କର

ସେବାକରୁଥିବେ । କିନ୍ତୁ ଆଜି ଶୁଣାଇ ଦେଉଛି ଯେ, ସେହି ପ୍ରତ୍ୟେକଟି ବାସନରେ ରହିଛି ସମ୍ବଲପୁରର ଜାତିପ୍ରାଣ ଓ ଉତ୍ସାହୀ ଶିକ୍ଷାନୁରାଗୀ ଶ୍ରୀ ବ୍ରଜମୋହନ ପଣ୍ଡାଙ୍କର ମାର୍ମିକ ଶୁଭେଚ୍ଛା ଓ ସତ୍‌ସାହସ । ସେତକ ସେଠି ନ ଥିଲେ ମେହେର କଲେଜରେ କୌଣସି କଲ୍ୟାଣକର ଯୋଜନା ସମ୍ଭବ ହୋଇପାରି ନଥାନ୍ତା ।

ଯୌବନକାଳୀନ ସୂଚନାନୁଯାୟୀ ବ୍ରଜମୋହନ ଅବଶ୍ୟ ଓଡ଼ିଆ ଜାତି ଓ ସାହିତ୍ୟକୁ ଯେତେ ଦେବାର କଥା ସେତେ ଦେଇପାରିନାହାନ୍ତି । କିନ୍ତୁ ତାଙ୍କର 'ଯୌବନଗାଥା' ଓ 'ପତ୍ରାବଳି' ସଙ୍କଳନ ସମସାମୟିକ ଉତ୍କଳର ଚିନ୍ତାରାଜ୍ୟର ଯେ ଏକ ଏକ ଉତ୍ତମ ସମ୍ବାଦବାହିକା ଏଥିରେ କୌଣସି ସଂଦେହନାହିଁ । ସମକାଳୀନ ଉତ୍କଳର ଏତେ ଜଣାଶୁଣା ବୁଦ୍ଧିଜୀବୀଙ୍କଠାକୁ ପତ୍ର ଲେଖିବା ଓ ସେମାନଙ୍କଠାରୁ ସଶ୍ରଦ୍ଧ ଉତ୍ତର ପାଇବା, ସେକାଳର ଅନ୍ୟ କୌଣସି ଓଡ଼ିଆଠାରେ ଘଟିଥିବାର ଆମେ ଦେଖୁନା, ଯେପରି ଘଟିଛି ବ୍ରଜମୋହନଙ୍କ ସମ୍ପର୍କରେ । ବିଶେଷତଃ, ପୂତଚେତନ, ମହିମାମୟ ପ୍ରତିଭାଧର କବି ଗଙ୍ଗାଧରଙ୍କର ବ୍ରଜମୋହନଙ୍କର ମହତାଶୟ, ଉଦାର ବ୍ୟକ୍ତିତ୍ୱ ପ୍ରତି ସଶ୍ରଦ୍ଧ କୃତଜ୍ଞତାଜ୍ଞାପନ ଓ ଆଶୀର୍ବର୍ଷଣ, ଏକ ଅନୁପମ ଗୌରବ । ବ୍ରଜମୋହନ ମେହେର ପ୍ରତିଭା ଦ୍ୱାରା ଅଭିଷିକ୍ତ ଓ ଅଭିନନ୍ଦିତ ହୋଇସାରିଥିଲାବେଳେ, ତାଙ୍କ ପାଇଁ ଆମ ପରି ଶଫରୀଙ୍କ ସ୍ତୁତିର କୌଣସି ଆବଶ୍ୟକତା ଅଛି ବୋଲି ମନେ ହେଉ ନାହିଁ । ପୁଣି ବ୍ରଜମୋହନଙ୍କ 'ଯୌବନଗାଥା' ଗତ ଶତାବ୍ଦୀର ଛିନ୍ନଭିନ୍ନ ଓଡ଼ିଶା ପାଇଁ ଏକ ମାତୃଗତ ପ୍ରାଣ ଓଡ଼ିଆ ଯୁବକ ପ୍ରାଣର ଅଶ୍ରୁସିକ୍ତ ଗ୍ଲାନି, ବେଦନା ଓ ଉତ୍ସାହର ଚିରକାଳ ଯେ ଏକ ମନୋଜ୍ଞ ପ୍ରତୀକହୋଇରହିବ, ଏଥିରେ ମଧ୍ୟ ଦ୍ୱିମତ ନାହିଁ । ମେହେରଙ୍କର 'ଉତ୍କଳ-ଲକ୍ଷ୍ମୀ'ର କଳ୍ପନା ଓ ବର୍ଣ୍ଣନା ପରମ ମନୋଜ୍ଞ ଓ ଅନୁପମ । ତା'ର ପାଖେ ପାଖେ ରହିବାର ଯୋଗ୍ୟ ବ୍ରଜମୋହନଙ୍କ 'ଯୌବନ-ଗାଥା' । ଆଜି ପଶ୍ଚିମ ଓଡ଼ିଶା ଅଲଗା ହୋଇଯିବାର ସ୍ୱର ଉଠିଲାବେଳେ ମୋର ପ୍ରିୟ ସମ୍ବଲପୁର ଭାଇଭଉଣୀମାନେ ଯେପରି ମନେରଖନ୍ତି ଯେ, ଉତ୍କଳମାତା ପାଇଁ ବା ଏକୀଭୂତ ଉତ୍କଳ ପାଇଁ ବୈକୁଂଠନାଥ ପୂଜାରୀ, ଶ୍ରୀପତି ମିଶ୍ର, ଚନ୍ଦ୍ରଶେଖର ବେହେରାଦି ରାଜନୀତି କ୍ଷେତ୍ରରେ ଏବଂ ମେହେର ଓ ବ୍ରଜମୋହନ କାବ୍ୟ ଜଗତରେ ଯେପରି ସ୍ୱପ୍ନ ଦେଖିଛନ୍ତି, ଯେପରି ପ୍ରାଣ ଢାଳିଦେଇଛନ୍ତି, ସେପରି ଘଟିନି ତଥାକଥିତ ସଭ୍ୟତର ଉତ୍ତରାଞ୍ଚଳରେ । ମୋର ଗଭୀର ଆଶା, ମେହେର ବ୍ରଜମୋହନଙ୍କର ଏକୀଭୂତ ବ୍ୟକ୍ତିତ୍ୱ ଚିରକାଳ ଅକ୍ଷୁଣ୍ଣ ମହିମାରେ ବିରାଜିତ ଥିବେ । ଉତ୍କଳ ଭକ୍ତ ଦେଶସେବକ ଓ ଆଲୋକ-ବିତରକ ବ୍ରଜମୋହନଙ୍କୁ ଆପଣମାନେ ଥରେ ଚାହିଁ ନମସ୍କାର କରନ୍ତୁ ।

––

# ସାହିତ୍ୟ ସାଧକ ଆର୍ତ୍ତବଲ୍ଲଭ

ଜାତି ଓ ସମାଜ ଦୁଇଟି ଉପାଦାନରେ ସମୃଦ୍ଧ ହୋଇଥାଏ । ଗୋଟିଏ ହେଉଛି ପ୍ରତିଭା, ଅନ୍ୟଟି ସାଧନା । କୌଣସି ଦେଶରେ ପ୍ରତିଭା ଉପରେ ମନୁଷ୍ୟର ଅକ୍ତିୟାର ନାହିଁ । ଯେତେବେଳେ ସେକ୍ସପିଅର୍ ତାଙ୍କର ମୃତ୍ୟୁହୀନ, ଚିରଞ୍ଜୀବନ୍ତ ନାଟକାବଳୀ ଲେଖିଗଲେ ସେତେବେଳେ ଇଂଲଣ୍ଡର ସାମ୍ରାଜ୍ୟ ନଥିଲା କେବଳ ନୁହେଁ, ୟୁରୋପରେ ଇଂଲଣ୍ଡ ସେତେବେଳେ ଏକ ନଗଣ୍ୟ ଦ୍ୱୀପରାଜ୍ୟ ମାତ୍ର ଥିଲା । ସେହି କୁଦବାସୀ ଇଂରେଜଙ୍କୁ ଏକ ସଭ୍ୟ ଜାତି ବୋଲି ଗଣିବାକୁ ଆହୁରି ଦୁଇଶ' ବର୍ଷ ଲାଗି-ଯାଇଥିଲା । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗ ଆଡ଼କୁ ପଳାତକ ଭଲ୍‌ତେୟାର ଲଣ୍ଡନରେ ଆଶ୍ରୟ ନେଲା ଅବସରରେ, ସେକ୍‌ସପିଅରଙ୍କ ନାଟକାବଳୀ ଅଭିନୀତ ହେବାର ଦେଖିଲେ ଓ ଇଂରେଜ ସାହିତ୍ୟ ସହିତ ପରିଚିତ ହେଲେ । ଇଂରେଜମାନଙ୍କ ସମ୍ବନ୍ଧରେ ତାଙ୍କର ଆଖି ଖୋଲିଲା । ସେ ଫ୍ରାନ୍‌ସକୁ ଫେରିଯାଇ କହିଲେ– ''ଏ, ଏଇ ଦ୍ୱୀପବାସୀ ଇଂରେଜମାନଙ୍କର ଏକ ସାହିତ୍ୟ ଅଛି ହେ ।'' ସେକ୍‌ସପିଅରଙ୍କ ବେଳେ, ଅର୍ଥାତ୍ ଭଲତେୟାରଙ୍କ ଦୁଇଟି ବର୍ଷ ପଛକୁ, ୟୁରୋପୀୟ ରାଜନୀତିରେ ଅଗ୍ରଗଣ୍ୟ ଥିଲେ ସ୍ପେନ୍ ଓ ଫ୍ରାନ୍‌ସ ଏବଂ ସଭ୍ୟତାର କେନ୍ଦ୍ର ଥିଲା, ବହୁଧା-ବିଭକ୍ତ ଇଟାଲୀ । ଇଂଲଣ୍ଡ ଏକ ଅପାଂକ୍ତେୟ ଟାପୁ ମାତ୍ର ଥିଲା ।

କିନ୍ତୁ ସେହି ଅପାଂକ୍ତେୟ ଟାପୁରେ ସେକ୍‌ସପିଅର ଜନ୍ମ ହେଲେ । ତା'ର ତିନିଶ ବର୍ଷ ଭିତରେ ଆଂଗ୍ଲୋସାକ୍‌ସନ ଜାତି ସାରା ପୃଥିବୀ ଖେଦିଗଲେ ଓ ମାନବ-ଇତିହାସରେ ବୃହତ୍ତମ ସାମ୍ରାଜ୍ୟ ସ୍ଥାପନ କଲେ । ସେମାନଙ୍କର ସେଦିନର ନଗଣ୍ୟ, ଅବିଚାର୍ଯ୍ୟ ଭାଷା ବିଶ୍ୱ-ଭାଷାରେ ପରିଣତ ହେଲା; କିନ୍ତୁ ଏ ସାମ୍ରାଜ୍ୟ, ଏ ବିଭବ, ଏ ପ୍ରଭାବ-ପ୍ରତିପତ୍ତି ଆଉ ଗୋଟାଏ ସେକ୍‌ସପିଅର ସୃଷ୍ଟି କରିପାରିଲା କି ?

ତେଣୁ, ଧରିନେବାକୁ ହେବ ଯେ ପ୍ରତିଭା ନରାୟତ୍ତର ବାହାରେ । ସେ ତା'ର ଖାମ୍‌ଖିଆଲ୍‌ରେ ଆସେ, କଷ୍ଟ ପାଏ, ଲାଞ୍ଛିତ ହୁଏ, ନିର୍ଯ୍ୟାତିତ ହୁଏ; କିନ୍ତୁ ଦେଇଯାଏ ଅଜ୍ଞାନମୂଢ଼ ଜନତାକୁ ଆଲୋକ, ଆନନ୍ଦ, ଆଶା ଓ ଉତ୍ସାହ । ଖଣ୍ଡପଡ଼ାର ଜଙ୍ଗଲରେ ଚନ୍ଦ୍ରଶେଖରଙ୍କ ଜନ୍ମ, ଉତ୍କଳ ଦେଶରେ ଏହି ବିସ୍ମୟକର ପ୍ରାକୃତିକ ବ୍ୟବହାରର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ।

---

* ଆର୍ତ୍ତବଲ୍ଲଭ ସ୍ମରଣିକା, ୧୯୬୩ ।

କିନ୍ତୁ ଯାହା ଆମର ଆୟତ୍ତ ନୁହେଁ, ଆମର ଉନ୍ନତିପାଇଁ, ଆମେ କ'ଣ ତାକୁ ଇ ଅନାଇ ରହିବା ?

ପ୍ରତିଭା, ମନୁଷ୍ୟ ଭିତରେ ଥିବା ଅକଳ୍ପନୀୟ ସମ୍ଭାବନାର ହିଁ ସୂଚନା ଦିଏ । ଆମେ ସାଧାରଣ ମନୁଷ୍ୟ କେତେଦୂର ଯାଇପାରିବା, ସେଥିପାଇଁ ଭାବିତ ହେବାକୁ ପଡ଼ିବ ନାହିଁ । ସେକ୍‌ସପିଅର, ନିଉଟନ, ଆଇନ୍‌ଷ୍ଟାଇନ୍, ଟାଗୋର, ଗାନ୍ଧିଙ୍କ ଆଡ଼କୁ ଅନାଇଲେହିଁ ଆମେ ଜାଣିପାରିବା, ଆମର ସମ୍ଭାବନା କେତେ ଉଚ୍ଚତାକୁ ଯାଇପାରେ ।

ସେ ଉଚ୍ଚତାକୁ ଆରୋହଣ କରିବାକୁ ହେଲେ ଆମକୁ ଅଣ୍ଟାଭିଡ଼ି, ବାଡ଼ିଧରି, ପଥରକୁ ପଥର, ଛୋଟ ପାହାଡ଼ରୁ ବଡ଼ ପାହାଡ଼ ଡେଇଁ ଡେଇଁ ଯିବାକୁ ହେବ । ପର୍ବତର ପାଦମୂଳରେ ଠିଆହୋଇ ନଭଶ୍ଚୁମ୍ବୀ ଶୃଙ୍ଗ ଆଡ଼କୁ ସତୃଷ୍ଣ ଭାବରେ ଅନାଇ ରହିଲେ, ଶୃଙ୍ଗାରୋହଣର ଗୌରବ ଓ ଆନନ୍ଦ ମିଳିଯିବ ନାହିଁ । ଉପରକୁ ଉଠିବାର ଚେଷ୍ଟାର ଅନ୍ୟ ନାମ ହିଁ ସାଧନା ।

ଜାତି ପ୍ରତିଭା ଦ୍ୱାରା ପ୍ରକୃତରେ ସମୃଦ୍ଧ ହୁଏ ନାହିଁ । ଗୌରବାନ୍ୱିତ ହୁଏ, ଆଲୋକିତ ହୁଏ, ଜାତି ଗଢ଼ିଉଠେ ପ୍ରକୃତରେ ସାଧନାଦ୍ୱାରା । ଟାଗୋର ଓ ରମନ୍ ଆମକୁ ଗୌରବ ଆଣିଦେଇଛନ୍ତି; କିନ୍ତୁ ଆମେ ଆଜି ଯାହା, ତାହା ଗାନ୍ଧିର ତପସ୍ୟାର ଫଳହିଁ ବୋଲି ଆମେ ଅକୁଣ୍ଠ ଚିତ୍ତରେ କହିବା। ଗାନ୍ଧିର ପ୍ରତିଭା ନ ଥିଲା– ଥିଲା ତପସ୍ୟା । ସେହି ତପସ୍ୟା ଆମକୁ ଦେଇଗଲା ସ୍ୱାଧୀନତାର ପରମ ସମୃଦ୍ଧି । ଦଶଦଶଟା ଟାଗୋର ବା ରମନ୍ ତାହା ଆମକୁ ଦେଇପାରିନଥାନ୍ତେ । ତାଙ୍କର କାମ ସେ ନୁହେଁ – ତାଙ୍କୁ ଦୋଷ ଦେଇ ଲାଭ ନାହିଁ ।

(୨)

ପଣ୍ଡିତ ଆର୍ତ୍ତବଲ୍ଲଭ କୌଣସି ଦିନ ପ୍ରତିଭାର ଅହଙ୍କାର କରି ନ ଥିଲେ । ଏହା ଜଣା କଥା ଯେ ସେ କୌଣସି ନୂତନ ସତ୍ୟ ବା ତଥ୍ୟ ଦେଖାଇଯାଇନାହାନ୍ତି । ସେ ଅନେକାଂଶରେ ସାଧାରଣ ଥିଲେ; କିନ୍ତୁ ସେହି ସାଧାରଣ ଲୋକ ଓ ଅଧ୍ୟାପକଟି, ଆଜି ସମଗ୍ର ଜାତି ଆଗରେ ଅନନ୍ୟ ଓ ଅସାଧାରଣ ହୋଇ ଠିଆହୋଇଛନ୍ତି, ନିଜର ଜୀବନବ୍ୟାପୀ ସାଧନାର ଗୌରବରେ– ସେହି ସାଧନା, ଯାହା ଯୋଗୁଁ ସାଧାରଣ ବାରିଷ୍ଟର୍ ଗାନ୍ଧି ହେଲେ ମହାତ୍ମା ଓ ହେଲେ ଭାରତର ମୁକ୍ତିଦାତା । ସେହି ସାଧନା ବଳରେ ହିଁ ତିନିଶ ବର୍ଷ ତଳର ଅପାଂକ୍ତେୟ ଇଂରେଜ ପୃଥିବୀର ବୃହତ୍ତମ ସାମ୍ରାଜ୍ୟ ସ୍ଥାପନ କରିପାରିଲେ ।

ଆମେ ଓଡ଼ିଆମାନେ ଏତେ ଅଳ୍ପରେ ତୁଷ୍ଟ ଯେ, ଆମକୁ ସାଧନା କ'ଣ ତାହା ବି ବୁଝେଇବାକୁ ଓ ବୁଝିବାକୁ ହେବ । ଆଜି ଯେତେବେଳେ ଧରାଧରିଦ୍ୱାରା, ବିନା ଜ୍ଞାନ, ବିନା କ୍ଳେଶରେ ଗୋଲ୍ଡ଼ ମେଡ଼ାଲ ଓ ଡକ୍‌ଟରେଟ୍ ବି ମିଳିଯିବାର ଗଳ୍ପ ଶୁଣାଗଲାଣି, ସେତେବେଳେ ସାଧନା କରିବାକୁ ଯିବ କିଏ, ବା ତା'ର ତତ୍ତ୍ୱ ବୁଝି ଲାଭ କ'ଣ ? କିନ୍ତୁ ଆପାଂକ୍ତେୟ ଇଂରେଜ ଯେ ତିନିଶ ବର୍ଷ ଭିତରେ ନିଜ ଭାଷାକୁ ବିଶ୍ୱ-ଭାଷା କରେଇପାରିଲା ଓ ପୃଥିବୀର ବୃହତ୍ତମ ସାମ୍ରାଜ୍ୟ ଗଢ଼ିପାରିଲା– ତା' ପଛରେ ଯେ କେତେ କେତେ ଇଂରେଜର ଆମରଣ ସାଧନାର ଗୌରବମୟ ଇତିହାସ ରହିଛି, ତାହା ଓଡ଼ିଆମାନେ ସଂଧାନ କରିବାକୁ ଚେଷ୍ଟା କରିବାକୁ ଚେଷ୍ଟା-କରନ୍ତୁ । କୌଣସି ଜାତି ଧରାଧରି ଦ୍ୱାରା ଏମ୍.ଏ, ପିଏଚ୍. ଡ଼ି. ଇତ୍ୟାଦି ଯୋଗାଡ଼ କରି ସମୃଦ୍ଧ ହୋଇପାରେନା– ବ୍ୟକ୍ତି ବି ନୁହେଁ, ଗୋଷ୍ଠୀ ବି ନୁହେଁ । ଏହା ଉଭୟର ଅଧୋଗମନର ପ୍ରଶସ୍ତ ସରଣୀ ମାତ୍ର । ଯଦି ସୁବିଧାଭୋଗ ସେଥିରୁ କିଛି ଜୁଟେ ତାହା ଏକାନ୍ତ କ୍ଷଣିକ । ଶାଶ୍ୱତ ନିଜ ଭିତରେ । ବାହାରର ସାହାଯ୍ୟ ନେଇ କେହି ଚିରନ୍ତନତା ଯୋଗାଡ଼ କରିପାରେନା ।

ସାଧକ ଆର୍ତ୍ତବଲ୍ଲଭ ସାଧାରଣ ହେଲେହେଁ ନିଜର ଅନ୍ତର୍ନିହିତ ଶକ୍ତିରେ ତାଙ୍କର ଅସାଧାରଣ ବିଶ୍ୱାସ ଥିଲା । ତରୁଣ ବୟସରେ ସେ ଯେତେବେଳେ ନିଜସ୍ୱ ତପସ୍ୟା ଆରମ୍ଭ କଲେ, ସେତେବେଳେ ଦେଶବାସୀ ପାଶ୍ଚାତ୍ୟ ଜ୍ଞାନ-ବିଜ୍ଞାନ ନେଇ ଉନ୍ମତ୍ତ । ଭାରତୀୟମାତ୍ରେ ଇଂରେଜର ଛାୟା ହୋଇପାରିଲେ କୃତକୃତ୍ୟ ଅନୁଭବ କରୁଥିଲେ । ଉତ୍ତମ ଇଂରେଜୀ କହିବା ଓ ଇଂରେଜ ପରି ବେଶବାସ ହେବା, ସେଦିନ ଥିଲା, ଆମ ଶିକ୍ଷିତ ସଂପ୍ରଦାୟର ମହାର୍ଘ ଅଭିଳାଷ । ଶିକ୍ଷିତଙ୍କ ଭିତରେ ଯାହାକୁ ଶ୍ରେଷ୍ଠ ଧରାଯାଉଥିଲା, ତାଙ୍କୁ ଆମେ ସସମ୍ମାନେ କହୁଥିଲୁ 'ସାହେବ' । – ଯଦିଓ ପ୍ରକୃତରେ ସାହେବଙ୍କ ଆଖିରେ ଏହି ଆମ-କଳ୍ପନାର-ସାହେବଗୁଡ଼ିକ ଥିଲେ ନେଟିଭ୍‌ମାନଙ୍କ ଭିତରେ ନେଟିଭ୍ ।

ଏ ପରିସ୍ଥିତିରେ ତରୁଣ ଆର୍ତ୍ତବଲ୍ଲଭ ପାଶ୍ଚାତ୍ୟ ମୋହ କଟାଇ, ମନୋନିବେଶ କଲେ ନିଜ ଘରେ ସାତପୁରୁଷ ସାଇତା ତାଳପତ୍ର ପୋଥିଗାଦି ଘାଣ୍ଟିବାରେ । ତାଙ୍କର ଛାତ୍ରଜୀବନ କଟିଥିଲା ଖେଳ-ଫୂର୍ତ୍ତି-ମଉଜରେ । ପ୍ରାଚୀନ ଜମିଦାର ବଂଶର ପିଲା – ଅଭାବ ନ ଥାଏ । ଟଙ୍କା ଥିଲା ସହଜଲଭ୍ୟ । ତେଣୁ ତରୁଣ ବୟସରେ ସାଙ୍ଗ-ସୁଖ ଓ ମଉଜ ଅତ୍ୟନ୍ତ ସ୍ୱାଭାବିକ । ତେଣୁ ବୋଧହୁଏ, ଆର୍ତ୍ତବଲ୍ଲଭ ତାଙ୍କର ସାରା ଛାତ୍ରଜୀବନ ଭିତରେ ନିଜ ସାହିତ୍ୟ ଓ ସଂସ୍କୃତିକୁ ମଧ୍ୟ ଭଲଭାବରେ ଜାଣି-ପାରିନଥିଲେ । କେଉଁ ଘଟଣାଚକ୍ରରେ ମଉଜୀ ଖେଳୁଆଡ଼ ତରୁଣ ଆର୍ତ୍ତବଲ୍ଲଭଙ୍କର

ପୁରୁଣା ପୋଥିଗାଦି ପ୍ରତି ଧ୍ୟାନ ପ୍ରଚଳିତ ହେଲା ତାହା ମତେ ଜଣା ନାହିଁ; କିନ୍ତୁ ପୋଥି ଫିଟାଇ ଫୁଟବଲଖେଳାଳି ଆର୍ତ୍ତବଲ୍ଲଭ ଯାହା ଦେଖିଲେ, ସେଥିରେ ତାଙ୍କର ସେହି ଅଭିଜ୍ଞତା ବୋଧହୁଏ ହେଲା, ଯାହା ହୋଇଥିଲା ତରୁଣ କୀଟସ୍‌ଙ୍କର ହୋମର-କାବ୍ୟ ପ୍ରଥମେ ପଢ଼ି (ଅନ୍ ରିଡ଼ିଂ ଚାପ୍‌ମାନସ୍ ହୋମର) । କୀଟସ୍ ନିଜ ଅଭିଜ୍ଞତାକୁ ପୁଣି ତୁଳନା କରିଛନ୍ତି ସ୍ପାନିଶ୍ ସୈନିକ-ନାବିକ, ପାନାମା ଯୋଜକର ଏକ ଉଚ୍ଚା-ଗଛରୁ ବିରାଟ ପ୍ରଶାନ୍ତ ମହାସାଗରକୁ ପ୍ରଥମ ଥର ଦେଖିଲାବେଳେ ଯେପରି ଅନୁଭବ କରିଥିଲେ, ତା' ସହିତ । ନିଜ ଘରର ପୋଥିଗାଦି ଫିଟାଇ ଖେଳୁଆଡ଼ ଆର୍ତ୍ତବଲ୍ଲଭଙ୍କର ହୁଏତ ସେହି ପ୍ରକାର ଅନୁଭବ ହୋଇଥିଲା– ନଚେତ୍ ଗୋଟାଏ ସମଗ୍ର ଜୀବନ ପୁରୁଣା ତାଳପତ୍ର ପୋଥିରେ ମିଶିଯାଇ ନ ଥାନ୍ତା । ସେ ଯେତେବେଳେ ସାଧନା ଆରମ୍ଭ କଲେ ସେତେବେଳେ ତାଙ୍କର କଳ୍ପନାକୁ ମଧ୍ୟ ସ୍ପର୍ଶ କରିନଥିଲା ଯେ ସେ ଦିନେ ସେଥିପାଇଁ ସମ୍ମାନିତ ହେବେ, ଡକ୍‌ଟରେଟ୍ ପାଇବେ । ସେ ସାଧନାରେ ଝାସଦେଲେ ଅବଗାହନର ଆନନ୍ଦପାଇଁ, ତାଙ୍କ ଫୁଟବଲ ଖେଳଜନିତ ଆନନ୍ଦର ଆଉ ଏକ ସମାନ୍ତରାଳ ଆନନ୍ଦପାଇଁ । ଅବଗାହନର ଆନନ୍ଦ ଭିତରୁ ହିଁ ଶକ୍ତି-ଉତ୍ତୋଳନ ସମ୍ଭବ ହେଲା । ଖେଳୁଆଡ଼ ତା'ର ପୁରୁଣା ଅଭ୍ୟାସ ଯୋଗୁ ଗୋଲ୍ ପୋଷ୍ଟରେ କିକ୍‌ମାରି ପୋଷ୍ଟରେ ବଲ୍ ପୂରେଇ ପାରିଲା । ଧରାଧରି ବା ଇନ୍‌କ୍ରିମେଣ୍ଟ ଲାଭାଶାଜନିତ ଡକ୍‌ଟରେଟ୍‌ରେ ଏ ଅବଗାହନର ବା ଖେଳୁଆଡ଼ର ଆନନ୍ଦ କାହିଁ, ତେଣୁ ଶକ୍ତି-ଉତ୍ତୋଳନ ବା ଗୋଲ୍-ଟପିବାର ସୌଭାଗ୍ୟ କାହିଁ ? ନଚେତ୍ ଇନ୍‌କ୍ରିମେଣ୍ଟ ପାଇଗଲା ପରେ ଆଉ ରିସର୍ଚ୍ଚର ନାମୋଚ୍ଚାରଣ ଦେଖୁନୁ କାହିଁକି ? ଆର୍ତ୍ତବଲ୍ଲଭ ଇନ୍‌କ୍ରିମେଣ୍ଟ ଆଶା କରି ନ ଥିଲେ । ସେ ଆପଣାକୁ ଯଜ୍ଞରେ ପରିଣତ କରିବାକୁ ଗଲେ ଏବଂ ସେହି ଯଜ୍ଞର ଫଳ ଜାତିକି ଦେଇଗଲେ । ଜାତି ସମ୍ମାନ ଦିଏ କେବଳ ଯଜ୍ଞ ଓ ତପସ୍ୟାକୁ ।

ଆର୍ତ୍ତବଲ୍ଲଭ କାବ୍ୟ-ଲେଖକ ନୁହନ୍ତି । ଉତ୍କଳ-ସରସ୍ୱତୀ ସେ ଭାର ଦେଇଥିଲେ ବରପାଲିର ତନ୍ତୁବାୟ ଗଙ୍ଗାଧରଙ୍କୁ; କିନ୍ତୁ ଆର୍ତ୍ତବଲ୍ଲଭ ଆଜି ଆମ ଆଖିରେ ବରପାଲିର ବରେଣ୍ୟ ତନ୍ତୁବାୟ ପରି ଏକାଧାରରେ ନମସ୍ୟ, କାରଣ କାବ୍ୟ-ଲେଖକ ନ ହେଲେ ହେଁ, ଆର୍ତ୍ତବଲ୍ଲଭ ହେଲେ କାବ୍ୟ-ଆବିଷ୍କାରକ । ସେ ଆମକୁ ନୂଆ ତଥ୍ୟ ଦେଇଯାଇ-ନାହାନ୍ତି; କିନ୍ତୁ ପରିଚିତ କରାଇଗଲେ ନୂଆ କବି ଓ କାବ୍ୟ ସହିତ, ଯେଉଁ ପରିଚୟ ଘଟି ନ ଥିଲେ ଆମେ ବୌଦ୍ଧିକ ଭାବରେ ଆଜି ଅତ୍ୟନ୍ତ ଶ୍ରୀହୀନ ଓ ଅପୂର୍ଣ୍ଣ ବୋଧକରୁଥାନ୍ତୁ । ସ୍ତୁତିଚିନ୍ତାମଣି ଓ ରହସ୍ୟମଞ୍ଜରୀ ନ ଜାଣିଥିଲେ, ଓଡ଼ିଆ ସାହିତ୍ୟକୁ ଆମର ଜାଣିବା କି ବିକୃତ ଖଣ୍ଡିତ ହୋଇ ରହିଥାନ୍ତା କଳ୍ପନା କରାଯାଉ । ଆର୍ତ୍ତବଲ୍ଲଭଙ୍କ

ସାଧନା ଆମର ଆମ ନିଜ ସମ୍ବନ୍ଧୀୟ ଜ୍ଞାନକୁ ପରିପୂର୍ଣ୍ଣତା ଆଣିଦେଇଛି ଓ ପ୍ରସାରିତ କରିଛି । ତାଙ୍କର ସାଧନା ଆମକୁ ନିଜକୁ ନିଜେ ଚିହ୍ନିବାକୁ ଦେଇଛି ଓ ଦେଇଛି ଆମର ନିଜ ଗନ୍ତାଘରର ମଣି ପ୍ରବାଳକୁ, ଆମ ନିଜର ପୈତୃକ ଉତ୍ତରାଧିକାରକୁ ।

ସେହି ଯୋଗୁଁ ହିଁ, ଆର୍ତ୍ତବଲ୍ଲଭ ସାଧାରଣ ହୋଇ ମଧ୍ୟ ଜାତିଆଗରେ ଆଜି ଅସାଧାରଣ । ପ୍ରତିଭା ନଥାଇ ମଧ୍ୟ ଆର୍ତ୍ତବଲ୍ଲଭ ଆଜି ପ୍ରତିଭାର ସମ୍ମାନଭାଜନ । କାରଣ, ସେ ପ୍ରତିଭାର ଆବିଷ୍କାରକ ଓ ପ୍ରଚାରକ । ତାଙ୍କର ସାଧନାମୟ ଜୀବନ ପ୍ରମାଣ କରିଦେଇ ଗଲା ଯେ ଅକିଞ୍ଚନ ବି ଜାତିକି, ଇଚ୍ଛା କଲେ, ମଣି-କାଞ୍ଚନ ଉପହାର ଦେଇଯାଇପାରେ । ଆର୍ତ୍ତବଲ୍ଲଭଙ୍କ ସେହି ସାଧନାର ଦୀପଶିଖା ଉତ୍କଳ-ଦେଶରେ ଅନିର୍ବାଣ ରହି ସମଗ୍ର ଜାତିକୁ କାଳ କାଳ ଆଶା ଓ ଉତ୍ସାହ ଯୋଗାଉଥାଉ ଓ ଓଡ଼ିଆଜାତି ପଣ୍ଡିତ, ସାଧକ ଆର୍ତ୍ତବଲ୍ଲଭଙ୍କ ଏହି ଅସାମାନ୍ୟତା ସ୍ମରଣ କରୁଥାଉ । ଆମପରି ସହସ୍ର ସହସ୍ର ସାମାନ୍ୟ ଓ ଅକିଞ୍ଚିତ୍କରମାନଙ୍କ ଚିତ୍ତରେ ତାଙ୍କ ସାଧନା ଓ ସିଦ୍ଧି ଆଶାର ଦିହୁଡ଼ୀ ହୋଇ ଜଳିରହୁ – ସେହି ତ ପ୍ରକୃତ ଶିକ୍ଷକର ଯଥାର୍ଥତା । ଆର୍ତ୍ତବଲ୍ଲଭ ରେଭେନ୍ସା କଲେଜର ଶିକ୍ଷକଭାବରେ ଜୀବନ କଟାଇଗଲେ ସତ; କିନ୍ତୁ ତାଙ୍କ ସାଧନା ତାଙ୍କୁ ଠିଆକରାଇଛି ଆଜି ସମଗ୍ର ଓଡ଼ିଆ ଜାତିର ଗୁରୁଭାବରେ । ସେହି ଗୁରୁଙ୍କୁ ଆମେ ନମସ୍କାର କରୁଁ, ତାଙ୍କର ଆଶିଷ ଓ ଅନୁଗ୍ରହ ପାଇଁ, ଯେପରି ଆମମାନଙ୍କର କର୍ମ ମଧ୍ୟ ଯଜ୍ଞରେ ପରିଣତ ହୁଏ ଓ ସାମାନ୍ୟ ଆମେ, ଆମ ଜାତି-ଜନନୀ ଚରଣତଳେ କିଛି ମୂଲ୍ୟବାନ୍ ନିବେଦନ କରିଯାଉଁ ।

––

# ପାଣ୍ଡେ ଓ ମେହେର

ଗଡ଼ଜାତର ଏଜୁକେଶନାଲ୍ ଓ ଆଡ଼ଭାଇଜର୍ ଥିଲାବେଳେ ମଧ୍ୟପ୍ରଦେଶର ରାୟଗଡ଼ଠାରେ ହିନ୍ଦି ଐତିହାସିକ ଲେଖକ ସ୍ୱର୍ଗତ ଲୋଚନ ପ୍ରସାଦ ପାଣ୍ଡେଙ୍କ ସହିତ ପରିଚିତ ହୁଏ । କଥାପ୍ରସଙ୍ଗରେ ତାଙ୍କଠାରୁ ଏକାଧିକବାର ଗଙ୍ଗାଧର ମେହେରଙ୍କର ଉଚ୍ଛ୍ୱସିତ ପ୍ରଶଂସା ଶୁଣି ଭାରି ଗୌରବାନ୍ୱିତ ବୋଧକରୁଥିଲି । ଗଙ୍ଗାଧର ମେହେର କଲେଜରେ ଥିଲାବେଳେ ମୁଁ ଭାବୁଥିଲି ଗଙ୍ଗାଧରଙ୍କର ବିସ୍ତୃତ ଜୀବନୀ ଲେଖିବି ବୋଲି । ସେଥିପାଇଁ ଲୋଚନ ପ୍ରସାଦ ପାଣ୍ଡେଙ୍କୁ ଲେଖି ଅନୁରୋଧ କରିଥିଲି, ସେ ମେହେରଙ୍କ ସମ୍ବନ୍ଧରେ ଯାହା ଜାଣିଥିଲେ ତାହା ମୋତେ ଲେଖିକରି ଦେବାକୁ । ସେ ଇଂରାଜୀରେ ଯାହା ଲେଖି ଦେଇଥିଲେ, କବିବରଙ୍କ ଶତବାର୍ଷିକ ଉତ୍ସବରେ ତାହା ପ୍ରକାଶ କରିଦେଇଛି । ( ମା. ମା. )

## ।। ଏକ ।।

୧୯୦୬ ଜୁଲାଇ ମାସ । ମୁଁ ପ୍ରଥମ ଥର ପାଇଁ କବି ଗଙ୍ଗାଧରଙ୍କୁ ସମ୍ବଲପୁରରେ ଦର୍ଶନ କଲି । ସେତେବେଳେ ସେ ମହାନଦୀକୂଳରେ ଥିବା ଭିକ୍ଟୋରିଆ ଟାଓ୍ୱାର ନିକଟସ୍ଥ ସୋମନାଥ ମନ୍ଦିରକୁ ଲାଗି ରହିଥିବା ଧର୍ମଶାଳାରେ ରହୁଥିଲେ । ମୁଁ ସେହି ବର୍ଷ ସମ୍ବଲପୁର ଜିଲ୍ଲାସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ପାଶ୍‌କରି ସେଣ୍ଟ୍ରାଲ୍ ହିନ୍ଦୁ କଲେଜ ବାରାଣସୀରେ ଯୋଗଦେବାକୁ ଇଚ୍ଛା କରୁଥାଏ ଏବଂ ବାରାଣସୀ ଯିବାକୁ ଇଚ୍ଛୁକଥିବା ସମ୍ବଲପୁରର ଅନ୍ୟାନ୍ୟ ବନ୍ଧୁଙ୍କ ସହ ଦେଖା ସାକ୍ଷାତ୍ କରିବାରେ ବ୍ୟସ୍ତ ଥାଏ । କବି ଗଙ୍ଗାଧର ନିଜ ଜନ୍ମସ୍ଥାନ ବରପାଲିରୁ କୌଣସି ଏକ କାର୍ଯ୍ୟରେ ସମ୍ବଲପୁର ଆସିଥାନ୍ତି । ମୁଁ ତାଙ୍କୁ ଦେଖା କରିବାକ୍ଷଣି ସେ ମୋତେ ଅତି ଆଦରରେ ସ୍ୱାଗତକଲେ । ଆମେମାନେ ହିନ୍ଦିରେ କଥାବାର୍ତ୍ତା କଲୁ । ମେହେର କବି ବେଶ୍ ଭଲଭାବରେ ହିନ୍ଦିରେ କଥାବାର୍ତ୍ତା କରିପାରୁଥିଲେ । ସେ ଶାନ୍ତ, ସୌମ୍ୟ ଏବଂ ନିରାଡ଼ମ୍ବର, ଭଦ୍ର ଓ କର୍ତ୍ତବ୍ୟନିଷ୍ଠ ଥିଲେ । ତାଙ୍କର ସେତେବେଳେ 'କୀଚକବଧ' କାବ୍ୟ ପ୍ରଥମକରି ପ୍ରକାଶିତ ହୋଇଥିଲା ଏବଂ ସେ ଆଦର ସହକାରେ ତହିଁରୁ ମୋତେ ଖଣ୍ଡେ ବହି ଉପହାର ଦେଲେ । ସେତେବେଳଯାଏ ମୁଁ ଓଡ଼ିଆ ଛପା ବହି କେବଳ ପଢ଼ିବାକୁ ଚେଷ୍ଟା କରୁଥାଏ, କିନ୍ତୁ ଓଡ଼ିଆ-କବିତା ଲେଖିବାକୁ କି ଓଡ଼ିଆ ସାହିତ୍ୟ ପଢ଼ି ହୃଦୟଙ୍ଗମ କରିବାକୁ ଆରମ୍ଭ କରିନଥାଏ । କାଳକ୍ରମେ ମୁଁ ମେହେରଙ୍କର ଏହି

ସୁନ୍ଦର କାବ୍ୟ 'କୀଚକବଧ' ପଢ଼ିଲି ଓ ତାହାର କେତେକାଂଶ ହିନ୍ଦିରେ ଅନୁବାଦ କରିବା ପାଇଁ ଉତ୍ସାହିତ ହୋଇପଡ଼ିଲି । ବିହାର ପ୍ରଦେଶର ଆରା ଜିଲ୍ଲାରୁ ପ୍ରକାଶିତ ଏକ ହିନ୍ଦି ପତ୍ରିକାରେ ତା'ର କିୟଦଂଶ କେତେକ ବର୍ଷ ପରେ ପ୍ରକାଶିତ ହେଲା । ମୋର ଅନୁବାଦ ପଢ଼ିସାରି ମୋର କେତେକ ବନ୍ଧୁ ସେ ବହିଟିକୁ ପୂରାପୂରିଭାବେ ହିନ୍ଦିରେ ଅନୁବାଦ କରିବା ପାଇଁ ଅନୁରୋଧ କରିଥିଲେ, ମୁଁ ଦୁଃଖିତ– ମୁଁ ଏହା କହିପାରିନଥିଲି ।

ପ୍ରାୟ ୧୯୦୯-୧୦ ବେଳେ ଏହି ଦୟାର୍ଦ୍ର, ହୃଦୟବାନ୍ ଗଙ୍ଗାଧର ତାଙ୍କର ବହୁମୂଲ୍ୟ ସମୟ ବ୍ୟୟକରି ମୋର କେତେକ ତରବରିଆ ଲେଖା କବିତାର ସଂଶୋଧନ ଓ ପରିମାର୍ଜ୍ଜନ କରିଥିଲେ । ସେଗୁଡ଼ିକ ମୋର ଏକ ଓଡ଼ିଆ କବିତା ସଂକଳନ 'କବିତା କୁସୁମ'ରେ ପ୍ରକାଶପାଇଥିଲା – ଯାହାର ଛାପା ଆଉ ନାହିଁ । ମୋର ଭଲଭାବେ ମନେଅଛି କଲିକତା ହାଇକୋର୍ଟର ଜଷ୍ଟିସ୍ ସ୍ୱର୍ଗତ ଶାରଦା ଚରଣ ମିତ୍ରଙ୍କ ଦ୍ୱାରା ସ୍ଥାପିତ ଏକ ଲିପିବିସ୍ତାର-ପରିଷଦ, କଲିକତାର ଏକ ବହୁଭାଷାସମ୍ବଳିତ ପତ୍ରିକା 'ଦେବନାଗର'ରେ ମୋର ଯେଉଁ 'ହିନ୍ଦିର ବିନୟ' ନାମକ ଏକ କବିତା ପ୍ରଥମ ପ୍ରକାଶ ପାଇଥିଲା, ତହିଁରେ ଏହି କେତୋଟି ଧାଡ଼ି ଯୋଗ କରି ଦେଇଥିଲେ–

କହୁନାହିଁ କର ଏକା ମୋ ପୂଜନ
କରି ନିଜ ମାତୃଭାଷା ବିସର୍ଜ୍ଜନ,
ଗୃହେ ଜନ୍ମଦାତ୍ରୀ ମାତା ଥାଉଁ ଥାଉଁ
ରାଣୀଙ୍କି କି ଲୋକେ ନ ମାନନ୍ତି ଆଉ ?

ଜାତୀୟ ଭାଷା ହିନ୍ଦିକୁ ରାଣୀ ଓ ପ୍ରାଦେଶିକ ଭାଷାକୁ ମାତାରୂପେ ଏହା ନିର୍ଦ୍ଦେଶ କରୁଛି । କହିବା ଅନାବଶ୍ୟକ ସେ ଏହି ଦୁଇଧାଡ଼ି ମୋର ଅପରିପକ୍ୱ କବିତାକୁ ନୂତନ ଗୌରବରେ ଭୂଷିତ କଲା ଓ ହିନ୍ଦି ଏକ ପ୍ରଶାସନିକ ଭାଷାରୂପେ ଗୃହୀତ ହେବାଲାଗି ଇଙ୍ଗିତ ଦେଲା ।

ମୋର ପ୍ରିୟ ବଂଧୁ ଶ୍ରୀ ପ୍ରସନ୍ନକୁମାର ପୂଜାରୀଙ୍କ ଯୋଗୁହିଁ ମୋର ଏହି ଓଡ଼ିଆ କବିତାଂଶ (ଜଣେ ଅଣଓଡ଼ିଆ ଦ୍ୱାରା ଲିଖିତ) କେବଳ ସମ୍ବଲପୁର କାହିଁକି ବିଶାଳ ଓଡ଼ିଶାର ସ୍ୱନାମଧନ୍ୟ କବିଙ୍କ ଦ୍ୱାରା ସଂଶୋଧିତ ଓ ପରିମାର୍ଜ୍ଜିତ ହେବା ସମ୍ଭବ ହୋଇପାରିଥିଲା ।

ସମ୍ବଲପୁରରେ 'ଉତ୍କଳ ସମ୍ମିଳନୀ'ର ଅଧିବେଶନ ହେଉଥିବାବେଳେ (୧୯୧୨ ମସିହା) କବି ଗଙ୍ଗାଧରଙ୍କୁ ବାବୁ ରାମନାରାୟଣ ମିଶ୍ର ଏମ୍.ଏ,ବି.ଏଲ୍,

ଆଡ଼ଭୋକେଟ୍‌ଙ୍କ ଏକ ବିଶାଳ ପ୍ରାଙ୍ଗଣରେ ଦେଖିବାର ସୌଭାଗ୍ୟ ମିଳିଥିଲା । ମୁଁ ଯେତେବେଳେ ସେ ପ୍ରାଙ୍ଗଣ ଭିତରକୁ ପଶିଯାଇଥିଲି, ସେତେବେଳେ ଓଡ଼ିଶାର ଦୁଇ ବିଖ୍ୟାତ କବି ପରସ୍ପର କଥାବାର୍ତ୍ତା ହେଉଥିବାର ଦେଖିଥିଲି । ସେମାନଙ୍କ ମଧ୍ୟରୁ ଜଣେହେଲେ ବାଲେଶ୍ୱରର ବୟୋବୃଦ୍ଧ ଓଡ଼ିଆ-କବି ଫକୀରମୋହନ ସେନାପତି ଓ ଅନ୍ୟଜଣକ ହେଲେ ସମ୍ବଲପୁରର କବୀର (ହିନ୍ଦିର ସନ୍ଥ ଓ କବି କବୀର ଜଣେ ତନ୍ତି ଥିଲେ ଏବଂ ତାଙ୍କରି ପରି କବି ଗଙ୍ଗାଧର । 'ମେହେର' ଶବ୍ଦର ଅର୍ଥ ତନ୍ତୀ ଗୋଷ୍ଠୀର ନେତା) ବା କହିବି, ଓଡ଼ିଶାର ମେହେର-କବି-ଗଙ୍ଗାଧର । କବି ସେନାପତିଙ୍କୁ ଯଦିଓ ଆଗରୁ କେବେ ଦେଖି ନ ଥିଲି କି ଭେଟି ନଥିଲି ତଥାପି ଆମ୍ଭମାନଙ୍କର ଚିଠିପତ୍ର ଓ ଲେଖା ପ୍ରଭୃତିରେ ପରିଚୟ ଥିଲା । କବି ସେନାପତିଙ୍କ କବିତା ଅଳଂକୃତ କରୁଥିଲା କଲିକତାର ବହୁଭାଷାସମ୍ବଳିତ ପତ୍ରିକା 'ଦେବନାଗର' ଯାହାକୁ ମୁଁ ମଧ୍ୟ ହିନ୍ଦି ଓ ଓଡ଼ିଆରେ ଲେଖା ପଠାଉଥିଲି । ସେତେବେଳେ ମୋର ସାନଭାଇ ମାନଙ୍କର (ମୂରଲୀଧର ଓ ମୁକୁଟଧର ପାଣ୍ଡେ) 'ଲଛମା' ଉପନ୍ୟାସର ହିନ୍ଦି ଅନୁବାଦ ''ଓଡ଼ିଶାରେ ଭୋନ୍‌ସଲା ସେନାପତି ଭାସ୍କର ପଣ୍ଡିତ'' ନାମରେ ପ୍ରକାଶ ପାଇସାରିଥିଲା । କବି ସେନାପତି ଅତି ଆଦରର ସହିତ ଏହି ଓଡ଼ିଆ ଉପନ୍ୟାସକୁ ହିନ୍ଦିରେ ଅନୁବାଦ କରିବାଲାଗି ଅନୁମତି ଦେଇଥିଲେ । ମୋର ପ୍ରସ୍ତାବରେ ମୋର ସାନଭାଇମାନେ ବହିର ପ୍ରଥମ ଦୁଇ ଅଧ୍ୟାୟ ଅଦଳବଦଳ କରିଥିଲେ ଏବଂ ଲେଖକ ମହୋଦୟ ମୋର ଏପରି ପ୍ରସ୍ତାବକୁ ଭାରି ପସନ୍ଦ କରି କହିଥିଲେ ଯେ ସେ ପ୍ରଥମେ ବହିଟିକି ଠିକ୍ ଏହିପରି କରିଥିଲେ ।

ମୋର ଏକ ଛୋଟ ହିନ୍ଦି କବିତାକୁ ମୁଁ ଯେତେବେଳେ ସଂସ୍କୃତ ଛନ୍ଦରେ ଆବୃତ୍ତି କଲି, ଓଡ଼ିଶାର ଏହି ଦୁଇ ବିରାଟ ସନ୍ତାନ ଯେଉଁମାନେ କି ହିନ୍ଦି ଜାଣନ୍ତି ଓ ବୁଝନ୍ତି, ଭାରି ପସନ୍ଦ କରିଥିଲେ । ସେ କବିତାଟି ଭଗବାନ୍‌ଙ୍କୁ ପ୍ରାର୍ଥନା ଏବଂ ତହିଁରେ ଗଙ୍ଗାଧର, ରାଧାନାଥ, ମଧୁସୂଦନ ଓ ଚିନ୍ତାମଣିଙ୍କ ନାମ ଉଲ୍ଲେଖଥିଲା ।

ଗଙ୍ଗାଧର ଥିଲେ ପ୍ରକୃତିର କବି, ଉଚ୍ଚ ମାନବିକତାର କବି, ଦୁସ୍ଥ ଜାତିର କବି । ସେ ଆମ୍ଭମାନଙ୍କ ଆଗରେ ଥୋଇଥିଲେ ଆଦର୍ଶ, ଯେଉଁ ଆଦର୍ଶ ମନୁଷ୍ୟ-ଜାତିକୁ ଗୌରବାନ୍ୱିତ କରିବ ଏବଂ ସର୍ବୋପରି ସେ ଥିଲେ ନିଃସ୍ୱାର୍ଥପର ଦେଶସେବକ ଓ ମନୀଷୀ । ତାଙ୍କର ଜୀବନ ଥିଲା ଜନସେବା ପାଇଁ ଉତ୍ସୃଷ୍ଟ ଏବଂ କର୍ମନିଷ୍ଠାରେ ଉତ୍‌ଫୁଲ୍ଲ, ଉଚ୍ଚଚିନ୍ତା ଓ ନିରାଡ଼ମ୍ବର ଜୀବନ ନିର୍ବାହର ପ୍ରତୀକ । ସଂକ୍ଷେପରେ ଶେଷକରିବାକୁ ଯାଇ ଏତିକିମାତ୍ର ଉଲ୍ଲେଖ କରେ –

''ଆଇଲା ଭାଷା-ଯୋଷିତ କୁସୁମେ ହୋଇ ଶୋଭିତ
ଭ୍ରମର ଅଞ୍ଜନାଞ୍ଚିତ ପଦ୍ମନୟନା
ବିହଙ୍ଗ ସ୍ୱନ କିଙ୍କିଣୀ ନିକ୍ୱଣିଲା କିଣି କିଣି
ଜୀବଚିତ୍ତ ନେଲା କିଣି କୁନ୍ଦ୍ ଦଶନା,
ଅରୁଣ ଚରଣ ସୁନ୍ଦର,
ପ୍ରଭାତି ତାରକା ମଥାମଣି ଭାସ୍ୱର ।

ସ୍ୱର୍ଗତ ପାଣ୍ଡେଜୀ ମେହେରଙ୍କ ସହିତ ଆଉ ଏକ ସାକ୍ଷାତ୍କାର କଥା କହିଥିଲେ, ଯାହାକି ସେ ଏ ଚିଠିରେ ଲେଖିବାକୁ ଭୁଲିଯାଇଥିଲେ ।

ସେ କହିଥିଲେ, ସେ ମେହେରଙ୍କୁ ଥରେ ସମ୍ବଲପୁର ଟାଉନର କୌଣସି ଗଳିରେ ଥିବା ଏକ ବସାଘରେ ଭେଟିଥିଲେ । ବରେଣ୍ୟ କବି ବିନୟ ଓ ଭଦ୍ରତାର ଅବତାର ଥିଲେ । ସେ ଦର୍ଶନାର୍ଥୀ ପାଣ୍ଡେଙ୍କ ପାଇଁ ଆପେ ପଟି ଆଣି ବାରଣ୍ଡାରେ ବିଛାଇଦେଲେ ଓ ଆଦରର ସହିତ କଥାଭାଷା କଲେ । ସେତେବେଳେ ଗ୍ରୀଷ୍ମକାଳ । ମେହେର ଖାଲି ଦେହରେ ଥିଲେ । ମେହେର ଦେଖିବାକୁ ମୋଟା ଲୋକ ଥିଲେ, କିନ୍ତୁ ତାଙ୍କର ମୁଖମଣ୍ଡଳ ସର୍ବଦା ପ୍ରସନ୍ନ ଓ ହାସ୍ୟମୟ ଥିଲା ଓ ତାଙ୍କର ବ୍ୟବହାର ଅତ୍ୟନ୍ତ ସ୍ନେହପୂର୍ଣ୍ଣ ଥିଲା ।

ପାଣ୍ଡେଜୀ ମେହେରଙ୍କ 'କୀଚକବଧ'ର ଉଦ୍ଧୃତାଂଶ ସହିତ, ଆଉ ଅନେକ କବିତାଂଶ ମୋ ଆଗରେ ଗାଇ ମତେ ଚମତ୍କୃତ କରିଥିଲେ । ସେ ଓଡ଼ିଆ ଉତ୍ତମ ଜାଣିଥିଲେ । ସେ କହୁଥିଲେ ଯମକ-ଅନୁପ୍ରାସ ସମ୍ବଳିତ ଲେଖା ହିନ୍ଦିରେ ସହଜ ନୁହେଁ, ଯେପରି ସହଜ ଓଡ଼ିଆରେ । ତାଙ୍କର ଭାଇ ମୂରଲୀଧର ପାଣ୍ଡେ 'ମଥୁରାମଙ୍ଗଳ' କାବ୍ୟକୁ ହିନ୍ଦିରେ ଅନୁବାଦ କରିବାକୁ ଚେଷ୍ଟା କରିଥିଲେ, କିନ୍ତୁ ସେ ଦେଖିଲେ ଯେ ଓଡ଼ିଆ କାବ୍ୟର ସେ ସଙ୍ଗୀତମୟ ଝଙ୍କାର ହିନ୍ଦିରେ ଅବତାରିତ କରିବା ଅସମ୍ଭବ, ତେଣୁ ସେ ଅଳ୍ପ ଅନୁବାଦ କରି ଛାଡ଼ିଦେଲେ । (ମା. ମା.)

——

[ଝଙ୍କାର, ୧୪ଶ ବର୍ଷ, ସପ୍ତମସଂଖ୍ୟା, ଅକ୍ଟୋବର ୧୯୬୨, ପୃ. ୬୯୬-୬୯୮ ।]

## ଦରଦୀକବି ଲକ୍ଷ୍ମୀକାନ୍ତ

ବାଲେଶ୍ୱର ଜିଲ୍ଲାର ଏକ ବୁନିୟାଦି ବଂଶଜାତ ଏବଂ ଯୌବନରେ ଗ୍ରୀକ୍-ଦେବତାମାନଙ୍କ ପରି ସୁନ୍ଦର ଥିବା ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ଜୀବନ କାହାଣୀ ଏକ ଅକରୁଣ ଭାଗ୍ୟ ବିରୁଦ୍ଧରେ ନିରବଚ୍ଛିନ୍ନ ସଂଗ୍ରାମର ଗାଥା କହିଲେ ଚଳେ । ଏହି ରୂପକଥାର ରାଜପୁତ୍ର ଯୌବନରେ ହିଁ ଏକ କୁତ୍ସିତ ବ୍ୟାଧିରେ ଆକ୍ରାନ୍ତ ହୋଇପଡ଼ି ବାକୀ ସମଗ୍ର ଜୀବନ ପାଇଁ ପୂରା ପଂଗୁ ହୋଇଗଲେ କେବଳ ନୁହେଁ, ତାଙ୍କର ସୁନ୍ଦର ଅଙ୍ଗୁଳିଗୁଡ଼ିକ ସୃଷ୍ଟିର ବାହକ ଲେଖନୀଟିକୁ ଧରିବାର କ୍ଷମତାଟିକକ ମଧ୍ୟ ହରାଇ ବସିଲେ । ଏ ପ୍ରକାର ଦୁର୍ବିପାକରେ ଯେକୌଣସି ମନୁଷ୍ୟର ବ୍ୟର୍ଥମନସ୍କତା କଳ୍ପନା କରାଯାଇପାରେ । କିନ୍ତୁ ଲକ୍ଷ୍ମୀକାନ୍ତଙ୍କର ବୀରୋଚିତ ଆତ୍ମା କ୍ଷଣକ ପାଇଁ ହେଲେ ନିଜକୁ ଅବସାଦଗ୍ରସ୍ତ ହେବାକୁ ବା ତାଙ୍କର ବନ୍ଧୁ ବା ପରିବାରବର୍ଗ ତାଙ୍କ ପ୍ରତି କାର୍ପଣ୍ୟାନ୍ୱିତ ହେବାକୁ ସେ ଦେଇନଥିଲେ । ବରଂ ଏବେ ନବପ୍ରକାଶିତ ''ଲକ୍ଷ୍ମୀକାନ୍ତ ଗ୍ରନ୍ଥାବଳୀ''ରେ ସନ୍ନିବେଶିତ ତାଙ୍କ ଜୀବନକଥାରୁ ଜାଣୁଛୁ ଯେ, କବିଙ୍କର ମୂର୍ଖ-ପାଷଣ୍ଡ ଜ୍ଞାତିବର୍ଗ ତାଙ୍କର ସେହି ବ୍ୟାଧିଗ୍ରସ୍ତତାର ସୁବିଧା ନେଇ ସାରା ଜୀବନ ତାଙ୍କୁ ବିଷୟ-ସମ୍ପତ୍ତି ବାବତରେ ଜଞ୍ଜାଳରେ ଅସ୍ଥିର କରି ପକାଇଥିଲେ । କିନ୍ତୁ ପ୍ରକୃତ-କବି-ପ୍ରାଣ ଲକ୍ଷ୍ମୀକାନ୍ତ କୌଣସି ଜଞ୍ଜାଳ ଦ୍ୱାରା ଆତ୍ମାକୁ ସଙ୍କୁଚିତ କରିବାକୁ ନଦେଇ, ହସୁଥିଲେ, ହସାଉଥିଲେ, ନାଚୁଥିଲେ, ଗାଉଥିଲେ ଏବଂ ଶୁଣି ଖୁସୀ ହେଉଥିଲେ ଯେ ସମଗ୍ର ଓଡ଼ିଆଜାତି ତାଙ୍କ ପ୍ରାଣୋତ୍ସାରିତ ଗାନ ସବୁକୁ ବିମୁଗ୍ଧ ଚିତ୍ତରେ ଗାଉଛି ।

ଲକ୍ଷ୍ମୀକାନ୍ତ କୌଣସି ବୃହତ୍ ସାହିତ୍ୟିକ ଯୋଜନା ଆରମ୍ଭ କରିନଥିଲେ – ସେପରି କରିବା ତାଙ୍କ ଅବସ୍ଥାରେ ସମ୍ଭବ ନଥିଲା । ସେ ଦେହ ଓ ମନରେ ଥିଲେ ଗୀତ-ଧର୍ମୀ – ଜୀବନର ପଳାୟମାନ କ୍ଷଣଗୁଡ଼ିକୁ ସହ୍ୟ, ସୁନ୍ଦର କରିବା ହିଁ ଥିଲା ତାଙ୍କର ପ୍ରତିଭା । ତେଣୁ ତାଙ୍କର ରଚନାବଳୀ ଗୀତ, ଥଟ୍ଟା, ଲାଳିକା ଇତ୍ୟାଦି ନାନା ଛୋଟ ଛୋଟ ସୃଷ୍ଟିର ସମାହାର ମାତ୍ର । ସେ ସବୁଥିରେ ଆମେ କୌଣସି ମୌଳିକତ୍ୱ ବା ମହାନତ୍ୱ ଦେଖି ନ ପାରିଲେ ମଧ୍ୟ, ଓତପ୍ରୋତ ଭାବରେ ବ୍ୟାପ୍ତ ଏକ ଦରଦୀ ପ୍ରାଣର ଉଷ୍ମ ସ୍ପର୍ଶ ପାଇଥାଉଁ । ଗଦ୍ୟ ଓ ପଦ୍ୟର ସାଟାୟାର ଗୁଡ଼ିକ ଏପରି ଏକାନ୍ତ ସମସାମୟିକତା– ଦୋଷ ଦୁଷ୍ଟ 'ଯେ, ମାତ୍ର କେତେଟା ବର୍ଷ ଭିତରେ ସେ ସବୁ

ନିଜର ସାର୍ଥକତା ହରାଇ ବସିଲେଣି, ଅପାଠ୍ୟ ହୋଇପଡ଼ିଲେଣି । ବୋଧହୁଏ ଖଳତା-ପ୍ରଯୁକ୍ତ ହେତୁ, ଗୋଦାବରୀଶ ମହାପାତ୍ରଙ୍କ କଲମ, ସାଟାୟାରକୁ ଯେପରି ତୀବ୍ର-ବିଷ ଓ ତୀକ୍ଷ୍ଣ କଣ୍ଟା ଯୋଗାଇପାରୁଥିଲା, ଲକ୍ଷ୍ମୀକାନ୍ତଙ୍କ ଭଦ୍ର-ସୁଜନ ଦରଦୀ-ପ୍ରାଣ-ନିଃସୃତ ସମଶ୍ରେଣୀକ ରଚନାରେ ଆମେ ତା ନ ପାଇ, ଟିକିଏ ନିରାଶ ଯେ ନ ହେଉଛୁ ତା' ନୁହେଁ । ଲକ୍ଷ୍ମୀକାନ୍ତଙ୍କ ସାଟାୟାର କେବଳ ସାମାଜିକ ଥଟ୍ଟା-ନକଲ ଶ୍ରେଣୀର । ସେଗୁଡ଼ିକ ପୁଣି ସମକାଳୀନ ଗୋଦାବରୀଶ—ନୀଳକଣ୍ଠ ଇତ୍ୟାଦି ଉତ୍କଳ-ରାଜନୀତିର ନାୟକ-ପୁରୋଧାମାନଙ୍କୁ କେନ୍ଦ୍ରକରି ରଚିତ ହୋଇଥିବାରୁ ହିଁ ସେମାନଙ୍କ ଅବସାନର ବହୁ ପୂର୍ବରୁ ସେଗୁଡ଼ିକର କ୍ଷଣିକ ମୂଲ୍ୟ ହରାଇବସିଲେ । ସେସବୁ ଭିତରେ ଚିରକାଳୀନତା ବୋଧହୁଏ ପାଇଗଲା, ''ଅସହଯୋଗୀର ଆତ୍ମକଥା'', କାରଣ ଏହା କୌଣସି ବ୍ୟକ୍ତିକୁ କେନ୍ଦ୍ରକରି ଲିଖିତ ନହୋଇ, ହୋଇଛି ଏକ ଆନ୍ଦୋଳନ, ଏକ ତତ୍ତ୍ୱକୁ କେନ୍ଦ୍ରକରି । 'ଅସହଯୋଗ', ଅହିଂସା', 'ସତ୍ୟାଗ୍ରହ' ପ୍ରଭୃତି ମହାତ୍ମାର ପବିତ୍ର ପତାକା ବହନ କରି ଦଳେ ଲୋକ ଏ ଦେଶକୁ ଆଜି ଯେପରି ଅନାଚାର ବୀଭତ୍ସ କରି ଠିଆକରିଛନ୍ତି, ସେମାନେ ଏହି ଉପମହାଦେଶର ପ୍ରତ୍ୟେକ ପ୍ରାନ୍ତର ବୁଦ୍ଧିଜୀବୀଙ୍କଠାରୁ ନିରବଚ୍ଛିନ୍ନ ଭାବରେ ଚାବୁକ ପାଇବା କଥା । ମନେହେଉଛି, ସମଗ୍ର ଭାରତୀୟ ସାହିତ୍ୟରେ କେବଳ ଲକ୍ଷ୍ମୀକାନ୍ତହିଁ ଏ ଦିଗରେ ପ୍ରଥମ ଓ ସିଦ୍ଧାର୍ଥ ସତ୍‌ସାହସିକ ପଦକ୍ଷେପ କରି ଯାଇଛନ୍ତି ତାଙ୍କରି ଏହି ''ଅସହଯୋଗୀର ଆତ୍ମ-କଥା''ରେ ।

ଲକ୍ଷ୍ମୀକାନ୍ତଙ୍କ ଗଳ୍ପଗୁଡ଼ିକୁ 'କେବଳ' 'ଇଂଟରେସ୍‌ଟିଂ' ବା କୌତୁକପ୍ରଦ କୁହାଯିବ । ତାଠୁ ବେଶୀ ଆସ୍ପର୍ଦ୍ଧା ବୋଧହୁଏ ସେମାନଙ୍କର ନଥିଲା । ସେଗୁଡ଼ିକ ସୁଗଠିତ, ନାଟକୀୟ ଓ ସାମାଜିକ ଅଥଚ କୌଣସି ଗହୀରି ଅନ୍ଧାରକୁ ଯିବାକୁ ନାରାଜ । ବଡ଼ ଉପନ୍ୟାସ ଭାବରେ ଲେଖା ହେବାକୁ ଯାଇଥିବା, କିନ୍ତୁ ଅସମାପ୍ତ 'କଣାମାମୁଁ' ମଧ୍ୟ କୌଣସି ବିରାଟ ଆଶାର ଉଦ୍ରେକ କରୁନାହିଁ । ତାହା ରହିଯାଇଛି, ପିଲାଙ୍କ 'ଆଡ଼ଭେଞ୍ଚର୍' ବା ଦୁଃସାହସିକ ଗଳ୍ପ-ଶ୍ରେଣୀରେ । ତା'ଉପରକୁ ଉଠି ଆସିପାରିନି କୌଣସିଠାରେ । ଓଡ଼ିଶୀ ରୂପ କଥାର ନେଉଳୀ ଭାଇ ବା ହିତୋପଦେଶର ମୂଷିକରାଜ ହିରଣ୍ୟକ, ଠିକ୍ ସଂକଟବେଳେ ଆସି ବନ୍ଧୁମାନଙ୍କୁ ବିପଦରୁ ଉଦ୍ଧାର କରିଯାଆନ୍ତି ଯେପରି, କଣାମାମୁ ସେହିପରି । ପାଶ୍ଚାତ୍ୟ ଓ ଭାରତୀୟ ଉଭୟ ସାହିତ୍ୟରେ ଫୁଲ୍ (Fool) ଓ ବିଦୂଷକ ଭାବରେ, ଏକ ଆପାତମୂର୍ଖ, ନିର୍ଘାତ-ଅପାଠୁଆ, ନିର୍ଘାତ୍-ବୋକା ଲୋକକୁ ପ୍ରକୃତରେ ପ୍ରଖର ବିଚାରବୁଦ୍ଧିର ଆଧାର ବୋଲି ଠିଆକରେଇବା ଏକ ପରିଚିତ ଘଟଣା । ବିଶ୍ୱବିଖ୍ୟାତ ସ୍ପାନିଶ୍ ଉପନ୍ୟାସ

''ଡନ୍-କୁଇକ୍‌ଜୋଟ୍'ରେ ସାଂକୋପାଜା ଏହିପରି ଏକ ବିଖ୍ୟାତ ନାୟକ । ଆମ ସାହିତ୍ୟରେ ପ୍ରହରାଜଙ୍କ ବାଇମହାନ୍ତି ଏ ମଧ୍ୟ ଏହି ଶ୍ରେଣୀର ଏକ ଅପୂର୍ବ ଭାବରେ ଉପଭୋଗ୍ୟ ସୃଷ୍ଟି । ଲକ୍ଷ୍ମୀକାନ୍ତ, 'କଣାମାମୁଁ'ଙ୍କୁ ଏହି ଭାବରେ ଠିଆକରାଇଥିଲେ, ପୁସ୍ତକର ମାନ-ମହତ୍ ବଢ଼ିଥାନ୍ତା ।

କିନ୍ତୁ ଅଧିକ ମନ ଦେଇଥିଲେ ଲକ୍ଷ୍ମୀକାନ୍ତ ଓଡ଼ିଆ ସାହିତ୍ୟରେ ହୁଏତ ଉତ୍ତମ ପ୍ରାବନ୍ଧିକ ଭାବରେ କୀର୍ତ୍ତିମାନ ହୋଇରହିଥାନ୍ତେ । ଯେଉଁ କେତୋଟି ପ୍ରବନ୍ଧ ଛାଡ଼ି-ଯାଇଛନ୍ତି, ସେଗୁଡ଼ିକ ବଡ଼ ଆଶାପ୍ରଦ । ଓଡ଼ିଶୀ ସଙ୍ଗୀତର ପ୍ରକାର ଓ ଇଦାନୀନ୍ତନ ଅବସ୍ଥା ଉପରେ ତାଙ୍କର ପ୍ରବନ୍ଧଟି ଏବେ ବି ଅନୁଧ୍ୟେୟ । ତାଙ୍କର ''ଶରୀରମାଦ୍ୟଂ'' ପୁସ୍ତକଟି ଏଠି ସେଠି ପରିବର୍ତ୍ତନ କରି ପାଠ୍ୟପୁସ୍ତକ ଭାବରେ ସାରା ଓଡ଼ିଶାରେ ପ୍ରଚଳିତ କରାଇଲେ ଜାତିର ଉପକାର ହୁଅନ୍ତା । ଚିରବ୍ୟାଧିଗ୍ରସ୍ତ କବି, ନିଜ ଜାତିକୁ ସୁସ୍ଥ ସବଳ ଦେଖିବାର ଆନ୍ତରିକ ବାସନାରୁହିଁ ଏହା ଲେଖିଯାଇଛନ୍ତି । ଶାଳିନ୍ଦୀ–ତୀରାଧିବାସୀ କବି, 'ନିଦାଘେ ଶାଳିଂଦୀ', 'ଶ୍ରାବଣେ ଶାଳିନ୍ଦୀ' ଓ 'ଶରତେ ଶାଳିନ୍ଦୀ' ପ୍ରଭୃତି ନିବନ୍ଧ ଗୁଡ଼ିକରେ ସମଗ୍ର ବିଶ୍ୱପ୍ରକୃତିର ପ୍ରତୀକରୂପୀ ସେହି ସ୍ରୋତସ୍ୱିନୀଟି ପ୍ରତି ଏକ କବିପ୍ରାଣର କି ଅକଳୁଷ ଅନୁରାଗ ଢାଳିଦେଇ ଯାଇ ନାହାଁନ୍ତି । 'ଶ୍ରାବଣେ ଶାଳିନ୍ଦୀରେ' ଦୁଃଖଦଗ୍ଧ କବିପ୍ରାଣର ନିମ୍ନଲିଖିତ ଚିତ୍କାର କି କରୁଣ !

''ସଂସାରଯାକ ଖୋଜି ଆସିଲି, କିନ୍ତୁ ମୋର ଅନ୍ତରର କବାଟ କାହାପାଖରେ ଖୋଲିବି, ଜାଣିନାହିଁ । ଏତେଦିନେ ତୋତେ ପାଇଛି । ତୋହରି ଆଗରେ ସବୁ କହିବି । ତୁହିଁ ଏକା ମୋ କଥା ବୁଝିବୁ । × × ତୁ ନ ଶୁଣିଲେ ଆଉ ଶୁଣିବ କିଏ ? ତୁ ନ ବୁଝିଲେ ଆଉ ବୁଝିବ କିଏ ? ସତେ କ'ଣ ତୁ ବୁଝିବୁ ? ସତେ କ'ଣ ତୁ ମୋ ପ୍ରାଣ ସହିତରେ ପ୍ରାଣ ମିଶାଇ, ହୃଦୟ ସହିତରେ ହୃଦୟ ବାନ୍ଧି, ମୋ' ହୃଦୟର କରୁଣ ଗୀତି ଅନୁଭବ କରିବୁ ? ତୋର ଛାତି ଫାଟିଯିବ ନାହିଁ ? ମୋର ଦୁଃଖକାହାଣୀ ଶୁଣି ତୋର ବକ୍ଷ ବିଦୀର୍ଣ୍ଣ ହୋଇଯିବ ନାହିଁ ? ତେବେ ଶୁଣ୍ । ଘଡ଼ିକ ଲାଗି ତୋର ଉତ୍ତାଳ ତରଙ୍ଗମାଳା ବନ୍ଦକରିଦେ । କ୍ଷଣକ ପାଇଁ ତୋର କ୍ଷିପ୍ର ଗତି ରୋଧକରିଦେ । ଏହି ବରଗଛ ମୂଳେ ମୁଁ ବସିଛି । ମୋହରି ପାଖରେ ଟିକିଏ ଛିଡ଼ାହୋ । ମୁଁ ତୋର କାନରେ ମୋର ଜୀବନ କାହାଣୀ ଢାଳିଦେବି । ତୁ ସବୁ ସହୁଛୁ । ସମଗ୍ର ଜଞ୍ଜାଳ ହୃଦୟରେ ଧାରଣକରୁଛୁ । ତେବେ ବି ତୋର ସ୍ନେହ ତୁଟୁ ନାହିଁ । ମା, ମୋର ଏହି ବୋଝଟା ମଧ୍ୟ ନେଇ ଯା । ନେଇନଗଲେ, ଏହି ବୋଝ ବହନକରି ତୋହରି ସାଙ୍ଗରେ ଦଉଡ଼ିବି । ମୋର ଭୟ କଣ ? ମା ସାଙ୍ଗରେ ଆଉ ଡର କିସ ? ମୁଁ ଯିବି, ନିଶ୍ଚୟ ଯିବି । ତୁ ଯେଉଁଆଡ଼େ ଯିବୁ ତୋହରି ସଙ୍ଗେ ସଙ୍ଗେ

ଧାଇଁବି । ଧାଇଁ ଧାଇଁ କଣ୍ଠ ଶୁଖିଗଲେ, ଛାତି ଫାଟିଗଲେ, ତୋତେ ଲଗା– ମୋର ସେଥିପାଇଁ ଲୋଡ଼ା କିସ ? 'ହା ହୁତାଶ' ଡକା ପାରି ପାରି କଣ୍ଠ ତ ଶୁଖି-ଗଲାଣି । ଦାରୁଣ ଯନ୍ତ୍ରଣାରେ ଜର୍ଜ୍ଜରିତ ହୋଇ ଛାତିତ ଫାଟ ଫାଟ ହେଲାଣି । ଆଉ ମୁଁ ସହିପାରିବିନାହିଁ। ଛାତି ଫାଟିଯାଉ– ତେବେ ଯାଇ ମୋର ନିସ୍ତାର, ତେବେ ମୋର ଶାନ୍ତି । × ×

ଚିର ଦୁଃଖଦଗ୍ଧ କବିପ୍ରାଣର ସେହି କାରୁଣ୍ୟମୟ ଅଗ୍ନିଶିଖା ସମଗ୍ର ଓଡ଼ିଆ ଜାତି ଦେଖିପାରୁଛି, ପୁଣି ନିମ୍ନର ଗାନ କବିତାରେ –

"ଭେଳା ମୋ ଯାଉଛି ବୁଡ଼ି
ରଖ ହେ ଜଗତ ସାଇଁ,
ଆହୁଲା ଦେଲିଣି ଛାଡ଼ି, ଭରସା ତ ଦିଶୁ ନାହିଁ ।"

ପୁସ୍ତକାକାରରେ ପ୍ରଥମ କରି ଦେଖି ମନେ ହେଉଛି, ଲକ୍ଷ୍ମୀକାନ୍ତଙ୍କ 'ଜୀବନ ସଂଗୀତ'ର ଗୀତଗୁଡ଼ିକ ଉତ୍କଳ ଦେଶରେ ଯେପରି ପ୍ରଚାରିତ ହେବାର କଥା ସେପରି ବୋଧହୁଏ ହୋଇନାହିଁ । ଏ ଦେଶଟା ହେଲା ଗତାନୁଗତିକତାର ଦେଶ । ଯେଉଁ ଗୋଟିଏ ଦୁଇଟି ଗୀତ ପଚାଶବର୍ଷ ତଳେ ଜନସମାଜରେ ପ୍ରଚାରିତ ହୋଇଥିଲା, ତାକୁଇ ଆଜିବି ଘୋରିସାରି ବୋଲାଚାଲିଛି । ନୂତନ ଗାୟକମାନେ ନୂତନ ନୂତନ ଗୀତ ପରଖିବାକୁ ଚେଷ୍ଟା କରୁନାହାନ୍ତି କାହିଁକି ? ଏହା କେବଳ ଲକ୍ଷ୍ମୀକାନ୍ତଙ୍କର ନୁହେଁ, ଓଡିଆ ସାହିତ୍ୟରେ ଦେଖାଯାଇଥିବା ଗୀତକାରଙ୍କ ଦୁର୍ଭାଗ୍ୟ ସହିତ ଦେଶର ଦୁର୍ଭାଗ୍ୟ କହିବାକୁ ହେବ ।

ଦୁଃଖର କଥା ଯେ, ଲକ୍ଷ୍ମୀକାନ୍ତଙ୍କ ରଚନାରେ ଖାଣ୍ଟି ଓଡିଆ ବଚନ ସହିତ ମଝିରେ ମଝିରେ ବିଶୁଦ୍ଧ ବା ବିକୃତ ଅବାଧରେ ବିରାଜିତ । ତାହା ଦୃଷ୍ଟିକଟୁ ବା ଶ୍ରୁତିକଟୁ ହେବା ସାଥେ ସାଥେ ଲଜ୍ଜାଜନକ ଓ ଅପମାନଜନକ ଲାଗୁଛି । ଦୃଷ୍ଟାନ୍ତ ସ୍ୱରୂପ ଯଦି ଲକ୍ଷ୍ମୀକାନ୍ତଙ୍କ ରଚନାରେ ମଧ୍ୟ ଆମେ 'କହିବ' ଅର୍ଥରେ ବାରମ୍ବାର 'ବକିବାକୁ' ଦେଖିବାକୁ ପାଉ, ତେବେ ଆମେ ସମଗ୍ର ବିଶ୍ୱର ବକା-ଖାଇବା କଥା । ଲକ୍ଷ୍ମୀକାନ୍ତଙ୍କର ଗୀତଗୁଡ଼ିକରେ ସ୍ଥାନେ ସ୍ଥାନେ ଛନ୍ଦଦୋଷ ମଧ୍ୟ ରହିଯାଉଛି । 'ଗ୍ରନ୍ଥାବଳୀ' ପ୍ରକାଶ କଲାବେଳେ, ସମ୍ପାଦକ ଟିକିଏ ଆଖି ବୁଲେଇ ନେଇଥିଲେ, ସମଗ୍ର ଜିନିଷଟିକୁ ଅନେକ ପରିମାଣରେ ନିର୍ଦ୍ଦୋଷ ହୋଇପାରିଥାନ୍ତା ।

—

# ଗଡ଼ନାୟକଙ୍କ ଷଷ୍ଟି-ପୂର୍ତ୍ତି

ଜରା-ବ୍ୟବସ୍ଥିତ ଏକ ରୋଗଶଯ୍ୟାରେ ହିଁ ପତ୍ର ପାଇ ଜାଣିଲି ଯେ, ଆମର ତାରୁଣ୍ୟ-ପ୍ରତୀକ – କବି ଗଡ଼ନାୟକ ମଧ୍ୟ ଷାଠିଏର ରେଖା ପାର ହୋଇଗଲେଣି । ବଡ଼ ବିସ୍ମୟ ଲାଗିଲା । କାରଣ ଗଡ଼ନାୟକଙ୍କୁ ବାର୍ଦ୍ଧକ୍ୟର ରୌପ୍ୟ-ମୁକୁଟ-ପରିହିତ ବେଶରେ କେବେ ଦେଖିବାର କଳ୍ପନାହିଁ ମୋ ଚିତ୍ତରେ ଉଦିତ ହୋଇନଥିଲା । ଗଡ଼ନାୟକେ ଏକ ସାର୍ଥକନାମା ବ୍ୟକ୍ତି । ଯଥାର୍ଥରେ ଆମେ ତାଙ୍କୁ ଆମ ଓଡ଼ିଆ ସାହିତ୍ୟର ଏକ ଅଭିଜ୍ଞ ଓ ପରାକ୍ରମଶାଳୀ ଗଡ଼ନାୟକ କହିଲେ ଆଦୌ ଅତ୍ୟୁକ୍ତି ହେବନାହିଁ । ସାଂପ୍ରତିକ ଓଡ଼ିଆ ସାହିତ୍ୟିକ ବଂଧୁମାନଙ୍କ ଭିତରେ ଗଡ଼ନାୟକେ ହେଉଛନ୍ତି ଏକମାତ୍ର ବ୍ୟକ୍ତି, ଯାହାଙ୍କୁ ଦେଖିଲା ମାତ୍ରେ ତାଙ୍କ ସହିତ ଥଟା-ତାମସା କରିବା ପାଇଁ, ଭଞ୍ଜ ବା କବିସୂର୍ଯ୍ୟ ବା ସାମନ୍ତସିଂହାର ବା କାଳିଦାସଙ୍କ ରଚନାର କୌଣସି କୌଣସି ଅଂଶ ଆପେ ଆପେ ପାଟିରୁ ବାହାରିପଡ଼େ । କାରଣ, ଗଡ଼ନାୟକେ ଆମର କ୍ଲାସିକାଲ୍ ଲିଟରେଚର୍‌ରେ ଯେ ପରିମାଣରେ ଅବଗାହୀ ଓ ଭାବଗ୍ରାହୀ, ମୁଁ ସେପରି ଅନ୍ୟ କାହାକୁ ଭେଟି ନାହିଁ । ଅଥଚ ଏପ୍ରକାର ରସ-ସାଗର ସନ୍ତରଣର ଅନନ୍ୟ ଅନୁଭବ, ଗଡ଼ନାୟକେ ନିଜର ଦୂରଦୂରାନ୍ତ ଏକ ପଲ୍ଲୀଗ୍ରାମରେ ଧାନ ବିରି-କୋଳଥ ସବୁର ଅମଳ ଭିତରେ ହିଁ ପାଇପାରିଛନ୍ତି । ଗଡ଼ନାୟକେ ମୁଖ୍ୟତଃ ଏକ ମାଟିର ମଣିଷ । ପ୍ରତିବର୍ଷ ଧରାର ମାଟିରୁ ସୁନାର ଫସଲ ଆଦାୟ କରିଥାନ୍ତି । ତାଙ୍କର ସାହିତ୍ୟିକ କୀର୍ତ୍ତି ମଧ ସେହି ନିଜ ମାଟିରୁ ଉଦ୍‌ଭୂତ, ସୁନା ମଣି ହୀରାର ସଂସାର । ତାଙ୍କର ଆମଦାନୀ ଓ ରପ୍ତାନି ଉଭୟ ହିଁ କେବଳ ମଣିମାଣିକ୍ୟର କାରବାର । ସେ ଏକାଧାରରେ କ୍ଷତ୍ରିୟ, କୃଷକ, ରାଜନୀତିକ, ପଣ୍ଡିତ, କବି, ଛାନ୍ଦରସିକ, ବକ୍ତା ଓ ସମାଲୋଚକ । ଯେଉଁଠି ଗଡ଼ନାୟକେ ବିଜେକରିଥିବେ, ସେ ମିଳନୀ ଜୀବନ୍ତ ନହୋଇ ରହିନପାରେ । ଆଧୁନିକ ଓଡ଼ିଆ ସାହିତ୍ୟ ଜଗତରେ, ଗଡ଼ନାୟକଙ୍କ ପରି ବହୁ ଗଣପଲ୍ଲବିତ ବ୍ୟକ୍ତିତ୍ୱ, ସତ୍ୟରେ ଆଉ ଦ୍ୱିତୀୟ ନାହିଁ । କଥାପ୍ରସଙ୍ଗରେହିଁ, ଗଡ଼ନାୟକେ ହେଉଛନ୍ତି ଏକମାତ୍ର ଓଡ଼ିଆ ସାହିତ୍ୟିକ, ଯାହାଙ୍କଠାରୁ ମୁଁ ନିଜେ ଅପ୍ରତ୍ୟାଶିତ ଭାବରେ, କାବ୍ୟ-କଳା-ରାଜ୍ୟର ନୂତନ ନୂତନ ପଥ, ପଥ୍ୟ ଓ ଅନୁପାନ ବରାବର ପାଇଥାଏ । ତାଙ୍କର ଆଲୋଚନା, ସବୁବେଳେ ସୁଲୋଚନା ନ ଥାଇ ମଧ ବରଣୀୟ, କାରଣ ତା'ର ଭରଣୀୟତା ଆସିଥାଏ ତାଙ୍କର ଭୂୟୋପଠନ

ଓ ନିଦିଧ୍ୟାସନରୁ । ଗଡ଼ନାୟକେ କୌଣସି ପୋଥିର କୋଟେସନ୍ ମାତ୍ର ନୁହନ୍ତି – ତାଙ୍କର ସାହିତ୍ୟିକ ଚେତନା ସ୍ୱକୀୟ ଜୀବନ୍ତତାରେ ଗରୀୟାନ୍ ।

ଏପରି ଯେ ଗଡ଼ନାୟକେ ସେ ଆଜି ଷଷ୍ଟିତମ ଯୌବନରେ ହିଁ ପଦାର୍ପଣ କଲେ ବୋଲି କହିବାକୁ ହେବ । କାଳିଦାସ "ବୃଦ୍ଧତ୍ୱଂ ଜରସା ବିନା"ର ଯେଉଁ ଅପୂର୍ବ କଳ୍ପନା ଦେଇଯାଇଛନ୍ତି; ଗଡ଼ନାୟକଙ୍କ ପ୍ରତି ତାହା ଉତ୍ତମ ପ୍ରଯୁକ୍ତ ହେବାର କଥା । "ବୟସ"– ଗଡ଼ନାୟକଙ୍କୁ ପ୍ରବୃଦ୍ଧ କରିବା ସ୍ୱାଭାବିକ; କିନ୍ତୁ ହୁଏତ ତାଙ୍କୁ ଜରାଗ୍ରସ୍ତ କରେଇବାରେ ସଂପୂର୍ଣ୍ଣ ବିଫଳ ହେବ । କାରଣ ଗଡ଼ନାୟକଙ୍କ ଜୀବନଧାରା ଯାହା ନିରବଚ୍ଛିନ୍ନ ପ୍ରତିକୂଳ ପରିସ୍ଥିତି ଭିତର ଦେଇ ହିଁ ନାନା ଭାବରେ ପୁଷ୍ପଫଳ ପ୍ରସବ କରି ଆସିଛି ତାହା କୌଣସି ମତେ ଶୁଖିଯିବାର ନୁହେଁ । ପୁଣି ଏହି ଲେଖକର ଅଭିଜ୍ଞତା ମଧ୍ୟ ଏହି ଯେ, ଏହି ବାର୍ଦ୍ଧକ୍ୟ ହିଁ ମନୁଷ୍ୟର ପ୍ରକୃତ ଶିକ୍ଷକ । ଦୀର୍ଘ ଭ୍ରମଣ ପରେ, ବାର୍ଦ୍ଧକ୍ୟ ହିଁ ମନୁଷ୍ୟକୁ ଜୀବନର ସତ୍ୟ-ମିଥ୍ୟା ଦେଖାଇଦେବାକୁ ସମର୍ଥ ହୁଏ, ତେଣୁ କବି ବ୍ରାଉନିଂଙ୍କ ପରି ଗଡ଼ନାୟକେ ମଧ୍ୟ ଗାଇବା ସ୍ୱାଭାବିକ–

Grow old along with me !
The best is yet to be
The best of life,
for which the first was made !

ଆମେ ଏଇ ପ୍ରକାର ନୂତନ ପଥ ଓ ନୂତନ ଯୌବନର ଦ୍ୱାରଦେଶରେ ଗଡ଼ନାୟକଙ୍କୁ ସମ୍ବର୍ଦ୍ଧନା ଜଣାଇ କହିବା ଯେ ସେ ଆମର ସାହିତ୍ୟକ ଗଡ଼କୁ ଅଧିକ ଗୌରବାନ୍ୱିତ କରି ତାଙ୍କର ନାୟକତ୍ୱକୁ ଦୃଢ଼ତର ଭାବରେ ସୁପ୍ରତିଷ୍ଠିତ କରିଯାଆନ୍ତୁ ।

––

[ ଗଡ଼ନାୟକ ଅଭିନନ୍ଦନ ଗ୍ରନ୍ଥ– ସଂ. ଲକ୍ଷ୍ମୀଧର ନାୟକ, ୧୯୭୧, ପୃ. ୧୦.୧୨ ]

# ବିଦ୍ୟୁତ୍‌ପ୍ରଭା

ସେ ପ୍ରାୟ ତିରିଶି ବର୍ଷ ତଳର ଘଟଣା ହେବ । ବୋଧହୁଏ ମୁଁ ଏହି କଟକରେ ସେତେବେଳେ ଉତ୍ତର ଓଡ଼ିଶାର ଇନ୍‌ସ୍ପେକ୍ଟର-ଅବ୍‌-ସ୍କୁଲ୍‌ଜ ହୋଇ ଅବସ୍ଥାପିତ ଥିଲି । ହୁଏତ, ଅଫିସ ପରେ ଘରକୁ ଫେରୁଥିଲି– ଚାଲି ଚାଲି । ପଥ ମଧ୍ୟରେ, ବିପରୀତ ଦିଗରୁ ଆସି ଦେଖାଦେଲେ ''ଓ୍ୱାର୍ଡ଼-ବୁକ୍‌'' ଇତ୍ୟାଦିର ଲେଖକ ନିମାଇ ଚରଣ ଦାସ । ସାମାନ୍ୟ ଏଣୁତେଣୁ କଥୋପକଥନ ପରେ, ଦାସେ କହିଲେ ''ଆଜ୍ଞା, ଗରିବର କୁଡ଼ିଆରେ ଟିକିଏ ପାଦ ପଡ଼ନ୍ତାନି ।'' ମୁଁ କହିଲି ''ହଁ, ଯିବାରେ ମୋର କୌଣସି ଆପତ୍ତି ନାହିଁ । ତେବେ କୌଣସି ବିଶେଷ ଆବଶ୍ୟକତା ପଡୁ, ତେବେ ଯିବା ।'' ସେ ମୁହଁ ତଳକୁ କରି କହିଲେ, ''ଆଜ୍ଞା, ମୋର ଗୋଟିଏ ଝିଅ କବିତା ଲେଖୁଛି । ଆପଣ କିପରି ଦେଖି କହନ୍ତେ, ସେ କିପରି ଲେଖୁଛି !''

''ଏଁ! ତମ ଝିଅ କବିତା ଲେଖୁଛି। ତେବେ ଚାଲ,ଚାଲ। ଏଇକ୍ଷଣି ହିଁ ଚାଲ !''

ଦାସଙ୍କ ଘରକୁ ପ୍ରଥମ ଗଲି ଏବଂ ସାମାନ୍ୟ ଆତିଥ୍ୟ ଭିତରେହିଁ କହିଲି, ''ତମ ଝିଅକୁ ଡାକ, ସେ ତାଙ୍କର କବିତା ସବୁ ପଢ଼ି ଶୁଣାନ୍ତୁ !''

ଏକ କିଶୋରୀ ବାଳିକା ଘରଭିତରୁ ଖାତାଟିଏ ଧରି ବାହାରି ଆସିଲେ ଏବଂ ସଲଜ୍ଜ ଭାବରେ ଆମ ଆଗରେ ଠିଆହେଲେ । ମୁଁ କହିଲି ''କିଛି ଲାଜ ନକରି ଯାହା ଲେଖିଛ ପଢ଼ିଯାଅ ପାଟିକରି ।''

ସେ ଏକାଦିକ୍ରମେ ତିନି-ଚାରିଟି କବିତା ପଢ଼ିଗଲେ । ମୁଁ ମନ୍ତ୍ରମୁଗ୍‌ଧ ହୋଇ ଶୁଣୁଥାଏ । ବର୍ତ୍ତମାନ ତାଙ୍କ ପଢ଼ା ବନ୍ଦ କରି, ଦାସଙ୍କୁ କହିଲି ''ଦାସେ, ତମ ଝିଅର ଲେଖନୀରେ ଅପୂର୍ବ ସମ୍ଭାବନା ରହିଛି । ଅନଭିଜ୍ଞତା-ବଶତଃ ଛନ୍ଦରେ କେତୋଟି ପ୍ରମାଦ ରହି ଯାଇଛି ଅବଶ୍ୟ; କିନ୍ତୁ ରଚନା ଅନବଦ୍ୟ ଭାବରେ ପ୍ରାଞ୍ଜଳ ଓ ମଧୁର । ଏ ଶକ୍ତି ଯାହାଠି-ତାହାଠି ସମ୍ଭବ ହୁଏନା । ପୁଣି ଏ ଶକ୍ତିର ପ୍ରକୃଷ୍ଟ ଶସ୍ୟୋତ୍‌ପାଦନ ପାଇଁ ଯାଙ୍କୁ ଘରେ ଆବଦ୍ଧ ନକରି ଆହୁରି ପଢ଼ାଅ । ଯେ ଅନ୍ତତଃ ବି.ଏ. ପର୍ଯ୍ୟନ୍ତ ପଢ଼ି, ସଂସ୍କୃତ ଓ ଇଂରାଜୀ ସାହିତ୍ୟ ସହିତ ଉତ୍ତମ ଭାବରେ ପରିଚିତ ହେଲେ, ସେ ଜାତିକି କ'ଣ ଦେବେ, ତା' ସେ ନିଜେ ଠିକ୍‌ କରିବେ । ଦାସେ, ତମେ ଏ ପ୍ରତିଭାର ଅପବ୍ୟବହାର କରନି ।''

---

* ଏଇ ରଚନାଟି ସମ୍ଭବତଃ ଡକ୍ଟର ମାନସିଂହଙ୍କର ସର୍ବଶେଷ ରଚନା, ଯାହାକୁ ଛପା ଅକ୍ଷରରେ ଆମେ ତାଙ୍କୁ ଦେଖାଇବା ପୂର୍ବରୁ ସେ ଇହଧାମ ତ୍ୟାଗକରି ଚାଲି ଯାଇଛନ୍ତି । (ନବରବି)

ତା'ପରେ, କିଶୋରୀ ବିଦ୍ୟୁତ୍‌ପ୍ରଭାଙ୍କୁ ମାତ୍ରାବୃତ୍ତ ଓ ଅକ୍ଷରବୃତ୍ତର ପ୍ରଭେଦ ବୁଝାଇ ଦେଲି, ଯେପରିକି ସେ ଏକ କବିତାରେ ଦି'ଟା ଯାକୁ ମିଶାଇ ଛନ୍ଦ-ଦୋଷ ସୃଷ୍ଟି ନକରନ୍ତି ।

ବେଶ୍ ସେତିକି – ବିଦ୍ୟୁତ୍‌ପ୍ରଭାଙ୍କର ସହଜାତ ପ୍ରତିଭା, ସେଇ ସାମାନ୍ୟ ନିର୍ଦ୍ଦେଶରୁ ଅଧିକା ଆଉ କିଛି ଦରକାର କରୁନଥିଲା । ଫଳରେ ଆଜି ବିଦ୍ୟୁତ୍‌ପ୍ରଭାଙ୍କ କବିତାବଳୀ ଅନବଦ୍ୟ ଛାନ୍ଦସିକ ମନୋଜ୍ଞତା ପାଇଁ ଉତ୍କଳରେ ସର୍ବତ୍ର ଜନପ୍ରିୟ । ନିଖୁଣ ଛନ୍ଦ-ରୀତି ଭିତରେହିଁ ତାଙ୍କର ଉତ୍କଳୀୟ ସମାଜର ନାନା ଅବସ୍ଥା ଓ ଚରିତ୍ରର ବର୍ଣ୍ଣନା, ଏକାନ୍ତ ଅନନ୍ୟ କହିଲେ ଚଳେ ।

କିନ୍ତୁ ପିତା ନିମାଇ ଦାସେ, ପ୍ରତିଭାବତୀ କନ୍ୟାକୁ ଜ୍ଞାନ ଚର୍ଚ୍ଚାର ଅଧିକ ସୁଯୋଗ ଦେବା ପରିବର୍ତ୍ତେ, ତାଙ୍କୁ ଶୀଘ୍ର ପରିଣୀତା କରେଇ ନେବା ପାଇଁ ଯେ ଅଧିକ ଉତ୍ସାହୀ ହୋଇ ଉଠିଲେ, ସେଥିପାଇଁ ଦାସେ ସେତେ ନୁହେଁ, ଯେତେ ଦାୟୀ ଆମର ସମାଜ ।

ଯାହାହେଉ, ବିଦ୍ୟୁତ୍‌ପ୍ରଭା ପରିଣୀତା ହେଲେ ଏବଂ ପୁତ୍ରକନ୍ୟା ସତ୍ତ୍ୱେ କବିତାବି ଲେଖିଚାଲିଲେ । କିନ୍ତୁ ଦୂରପ୍ରସାରୀ ଅଭିଜ୍ଞତା ଅଭାବରୁ, ସହଜାତ ଘରୋଇ ଶକ୍ତି ତାଙ୍କୁ ଯେଉଁ ସ୍ତରରେ ଆଣି ପହଞ୍ଚେଇଦେଇଥିଲା, ସେ ପ୍ରାୟ ସେହି ସ୍ତରରେହିଁ ରହିଗଲେ । ଏହାଦ୍ୱାରା ଓଡ଼ିଆ ସାହିତ୍ୟ ବିଶେଷ କିଛି ହରେଇ ବସିଲା ବୋଲି ମୋର ଆଶଙ୍କା ।

ଏଇ ଭିତରେ ବହୁବର୍ଷ ବୋହିଯାଇଛି, କିନ୍ତୁ ବିଦ୍ୟୁତ୍‌ପ୍ରଭାଙ୍କ ସହିତ ଆଉ ସାକ୍ଷାତ୍ ହୋଇ ନାହିଁ କହିଲେ ଚଳେ ।

କିଛି କାଳ ପୂର୍ବେ ଉତ୍କଳର ସୁବିଦିତ ଅଧ୍ୟାପକ ଓ ଗାଳ୍ପିକ ମହାପାତ୍ର ନୀଳମଣି ସାହୁଙ୍କ ଘରେ ନାନା କଥା ହେଉ ହେଉ ସେ ବିଦ୍ୟୁତ୍‌ପ୍ରଭାଙ୍କ ନାମୋଚ୍ଚାରଣ କଲେ । ମୁଁ ବିସ୍ମିତ ହୋଇ ପଚାରିଲି, ''ତମେ ବିଦ୍ୟୁତ୍‌ପ୍ରଭାଙ୍କୁ ଜାଣ ? କିପରି ଜାଣିଲ ?''

ବର୍ତ୍ତମାନ ପ୍ରଚଣ୍ଡ ଭାବରେ ଶ୍ରୀଅରବିନ୍ଦପନ୍ଥୀ ହୋଇଯାଇଥିବା ମହାପାତ୍ର ନୀଳମଣି କହିଲେ ''ଆପଣ ଜାଣନ୍ତି ନାହିଁ କି ଯେ, ବିଦ୍ୟୁତ୍‌ପ୍ରଭା ବର୍ତ୍ତମାନ ଓଡ଼ିଶାରେ ଶ୍ରୀ ଅରବିନ୍ଦ-ସାଧନା ଓ ଦର୍ଶନର ଉତ୍କଳର ପୁରବାଳାମାନଙ୍କ ମଧ୍ୟରେ ପ୍ରଧାନ ପ୍ରଚାରିକା ?''

''ଆଶ୍ଚର୍ଯ୍ୟ ! ସେ କିପରି ଏ ପନ୍ଥା ଧରିଲା ? କେବଠୁ ଓ କେଉଁ କାରଣରୁ ?''

''ସେ ଏକ ଦୀର୍ଘ ଗଳ୍ପ । ଏତିକି କହିରଖେ ଯେ, ଏପରି ଏକ ଅବସ୍ଥାରେ ସେ ଆସି ଉପଗତ ହେଲେ, ଯାହାର ପ୍ରତିକ୍ରିୟାରେ ସେ ବିନ୍ଦୁସାଗରରେ ଝାସ ଦେଇ ଆତ୍ମ-ହତ୍ୟା କରିବାକୁ ଯାଉଥିଲେ । ତାଙ୍କର ବିଶ୍ୱାସ, ଶ୍ରୀମା ତାଙ୍କୁ ଅଚେତନ

ଅବସ୍ଥାରେ କୂଳକୁ ଓଟାରି ଆଣିଲେ । ଅପରିଚିତ ଲୋକେ ତାଙ୍କୁ ଘରେ ପହଞ୍ଚାଇ ଦେଲେ । କିନ୍ତୁ ସେ କିଛି ଜାଣିନାହାନ୍ତି । ତା' ପରଠାରୁ ସେ ପୂରାପୂରି ଶ୍ରୀମାଙ୍କ ଭକ୍ତ ଓ ନିଷ୍ପାପର ପ୍ରଚାରିକା । ସେ କିନ୍ତୁ ଅନେକ ସମୟରେ ଆପଣଙ୍କ କଥା ଶ୍ରଦ୍ଧା ଓ କୃତଜ୍ଞତାର ସହିତ କହିଥାନ୍ତି ।''

''ଦେଖ, ନୀଳମଣି, ମୁଁ ବିଦ୍ୟୁତ୍‌ପ୍ରଭାକୁ ବହୁବର୍ଷ ହେଲା ଦେଖି ନାହିଁ । ତା'ର ଏ ବିସ୍ମୟକର ବିବର୍ତ୍ତନର ଗାଥା ମୁଁ ତା'ରି ମୁହଁରୁ ଶୁଣିବାକୁ ଚାହେଁ । ତମେ ଟିକିଏ ଖବର ଦେବ, ସେ ଆସି ଦେଖାକରିବ ?''

କର୍ମବ୍ୟସ୍ତ ନୀଳମଣି ଖବର ଦେଲେ କି ନାହିଁ ମୁଁ ଜାଣେନା– କିନ୍ତୁ ବିଦ୍ୟୁତ୍ ପ୍ରଭାଙ୍କର ଦର୍ଶନ ନାହିଁ । ମୁଁ ଭାବିନେଇଥିଲି ଯେ ସେ ବାନପ୍ରସ୍ଥିନୀ ବର୍ତ୍ତମାନ, ତେଣୁ ଲୋକାଳୟ ଓ ଲୋକସଂପର୍କ ହୁଏତ ସେ ଆଉ ଚାହୁଁନଥିବେ ।

ଏକ ସଂଧ୍ୟାରେ ଶ୍ରୀରାମଚନ୍ଦ୍ର ଭବନରେ ଏକ ସାହିତ୍ୟୋତ୍ସବ । ପ୍ରଥମଧାଡ଼ିରେ ବସିଥିଲି । ପଛରୁ ମୋର କନିଷ୍ଠା କନ୍ୟା ସଂଘମିତ୍ରା ଡାକିଲା ''ବାପା, ବିଦ୍ୟୁତ୍‌ପ୍ରଭା ତମକୁ ଖୋଜୁଛନ୍ତି ।''

ପଛକୁ ମୁଖ ଫେରାଇ ଦେଖିଲି, ବିଦ୍ୟୁତ୍‌ପ୍ରଭା ସଶ୍ରଦ୍ଧା ଦଣ୍ଡାୟମାନ । ଏ ଭିତରେ ସେ ବହୁତ କ୍ଷୀଣ ହୋଇଯାଇଛନ୍ତି – ହୁଏତ, ତପୋକ୍ଲିଷ୍ଟ ଜୀବନ ଯୋଗୁଁ । କିନ୍ତୁ ସେହିପରି ଜ୍ୟୋତିର୍ମୟ ଅଛି ଚକ୍ଷୁଦ୍ୱୟ ଓ ସେହିପରି ସରଳ ଓ ନିଷ୍ପାପ ରହିଛି ସୁବିନ୍ୟସ୍ତ ଦନ୍ତପନ୍ତିର ସ୍ମିତହାସ୍ୟ । ମୁଁ ପଚାରିଲି ''ମହାପାତ୍ର ନୀଳମଣି ଖବର ଦେଇ ନଥିଲେ କି ଯେ, ତମକୁ ମୁଁ ଦେଖିବାକୁ ଚାହୁଁଥିଲି ? କାଇଁ, ଆସିଲନି ତ !''

''ନାହିଁ ଆଜ୍ଞା । ଆପଣଙ୍କୁ ବହୁ ବର୍ଷ ହେଲା ଦେଖିନି । ଥରେ ସାକ୍ଷାତ ପାଇଁ ଭାରି ଇଚ୍ଛା । ମତେ କେହି ଆପଣଙ୍କର ଖବର ଦେଇ ନାହାନ୍ତି ।''

''ଆଚ୍ଛା, ବସିଯାଅ । ଘରକୁ ଆସିବ – କଥା ହେବା ।''

ଅଳ୍ପକାଳ ପରେ ବିଦ୍ୟୁତ୍‌ପ୍ରଭା ଏକ ଭଉଣୀ ଓ ଏକ ପୁତୁରାକୁ ନେଇ ଆମ ଘରକୁ ଆସିଲେ । ଶୁଣିଲି, ପୂର୍ବ ଦିନ ଆସି, ସେ ମୋର ଦେଖା ନପାଇ ଫେରିଯାଇଥିଲେ ।

ପ୍ରାୟ ଦୁଇଘଣ୍ଟା ଧରି ତାଙ୍କଠାରୁ ତାଙ୍କ ଜୀବନର ନୂତନ ପ୍ରସ୍ଥର ସମଗ୍ର ଇତିବୃତ୍ତ ଶୁଣିଲି । ତାଙ୍କର ବିନ୍ଦୁସାଗରରେ ଆତ୍ମ-ହତ୍ୟା ପାଇଁ ଚେଷ୍ଟା ସଂପୂର୍ଣ୍ଣ ସତ୍ୟ । ନମରି ସେ କିପରି ଉପରକୁ ଆସି ବଁଚିଲେ, ତାହା ସେ ଜାଣନ୍ତି ନାହିଁ । ସେ ଥିଲେ ସଂପୂର୍ଣ୍ଣ ଅଚେତନ ।

କୌତୂହଳବଶତଃ କଥୋପକଥନ ଭିତରେ ପଚାରିଲି ''ତମର ଏଇ ଯେ

ଧର୍ମାଭିଯାନ, ଏହା କ'ଣ କୌଣସି ପାରିବାରିକ ଅଶାନ୍ତି ହେତୁ ? ତମର ବିବାହ ଜୀବନ ସୁଖୀ ତ ?''

''ଆଜ୍ଞା, ମୋର ବୈବାହିକ ଜୀବନ ପରମ ସୁଖମୟ । କିନ୍ତୁ ପରିବାରରେ ଏପରି କୌଣସି ବ୍ୟାପାର ଘଟିଲା ଯାହାଫଳରେ ମୋର ମନୁଷ୍ୟଠାରେ ଯେଉଁ ପୂର୍ବତନ ଗଭୀର ବିଶ୍ୱାସ ଥିଲା ତାହା ହଠାତ୍ ଭୁଶୁଡି ପଡିଲା । ଚୈତ୍ତିକ ବିକାରରୁ ଉପଜାତ ହେଲା ଶାରୀରିକ ବ୍ୟାଧି, ଯାହାର କୌଣସି ଚିକିତ୍ସା ନାହିଁ । ତେଣୁ ଆଲୋପାଥି, ହୋମିଓପାଥି ଓ କବିରାଜୀ କୌଣସି ପାଥି ମୋର ରୋଗକୁ ଦୂରୀଭୂତ କରି ପାରିଲେ ନାହିଁ । ସେହି ବ୍ୟାଧିର ନିର୍ଯ୍ୟାତନାରେ ହିଁ ମୁଁ ଆତ୍ମହତ୍ୟା କରିବାକୁ ଯାଉଥିଲି । ମୋର ମନେହେଲା, ମତେ ପଣ୍ଡିଚେରୀର ଶ୍ରୀମାହିଁ ରକ୍ଷାକଲେ ସଲିଳ-ସମାଧିରୁ । ମୁଁ ତେଣୁ ସିଧା ଗଲି ପଣ୍ଡିଚେରୀ ଆଶ୍ରମକୁ । ସେଇଠି ପ୍ରାକୃତିକ ଚିକିତ୍ସାରେ ମୁଁ ଫେରିପାଇଲି ମୋର ଶରୀର ଓ ମନର ପୂର୍ବ ସ୍ୱାସ୍ଥ୍ୟ । ମୁଁ ଆଉ ପୂର୍ବର ସଂସାରକୁ ଫେରିବାକୁ ଚାହିଁଲି ନାହିଁ । ମୁଁ ସମଗ୍ର ଭାବରେ ସମର୍ପଣ କଲି ନିଜକୁ ଶ୍ରୀମାଙ୍କ ଚରଣତଳେ । ବର୍ତ୍ତମାନ ସେ ଯେପରି କହିବେ ମୁଁ ସେହିପରି ଚଳୁଛି ।''

''ତମ ପିଲାପିଲିଂକି ତେବେ କିଏ ଦେଖୁଛି ?''

''ସେମାନେ ସମସ୍ତେ ଏବେ ଅରବିନ୍ଦ-ଆଶ୍ରମରେ । ମୁଁ ଚିନ୍ତାହୀନ ଭାବରେ ବୁଲୁଛି ।''

ସତକୁ ସତ, ବିଦ୍ୟୁତ୍‌ପ୍ରଭାଙ୍କର ସୌମ୍ୟଦର୍ଶନ ସ୍ୱାମୀ ଶ୍ରୀ ପଞ୍ଚାନନ ଆସି ପହଞ୍ଚିଗଲେ । ସ୍ୱାମୀ-ସ୍ତ୍ରୀ କିଛି କଥା ହୋଇ ସେ ଫେରିଗଲେ । ତାଙ୍କର ମସ୍ତକର କେଶ-ରାଶି ଶୁକ୍ଳ ହୋଇ ଆସିଥିଲେହେଁ, ବଦନମଣ୍ଡଳରୁ ଯୌବନର ଲାବଣ୍ୟ ଏପର୍ଯ୍ୟନ୍ତ ମଧ୍ୟ ପୁରା ଚାଲିଯାଇନି । ଉଭୟେ ଉଭୟ ପ୍ରତି ଅପେକ୍ଷମାଣ ।

ଆଉ କିଛି ବେଳ କଥାଭାଷା ହେଲୁ । ତାଙ୍କର ପ୍ରଚାର-ଯୋଜନାର ପ୍ରକାର ଇତ୍ୟାଦି ବୁଝିଲି । ତା'ପରେ ବିଦ୍ୟୁତ୍‌ପ୍ରଭା ମଧ୍ୟ ଚାଲିଗଲେ ।

ତମେ ଚାଲିଯାଇଛ ବିଦ୍ୟୁତ୍‌ପ୍ରଭା । ମୁଁ ତମର ସ୍ଥାନ-କାଳ ଜାଣେନା । ଆଉ ତମୁକୁ କେବେ ଦେଖିବି ଜାଣେନା । କିନ୍ତୁ ତମେ ହୁଏତ ଜାଣିନ ଯେ, ତମେ କେତେ ଭାବନା ଭର୍ତ୍ତିକରିଗଲ ମୋ ମନ ଭିତରେ । ତମୁକୁ ସେଦିନ ସାମାନ୍ୟ କବିଯଶ ଅଭିଳାଷିଣୀ କିଶୋରୀ ଭାବରେ ଦେଖିଥିଲି । ଆଜି ଯେ ତମେ କିନ୍ତୁ ଦେବଯାନୀ । ସେଦିନର ସାମାନ୍ୟ ପଦ୍ୟ-ବିତରଣ ପରିବର୍ତ୍ତରେ ତମେ ଆଜି କରିଚାଲିଛ ସହସ୍ର ପ୍ରାଣରେ ସତ୍ୟ ଓ ଆଶାର ବିତରଣ । ତମେ ଆଜି ମହା-ଜୀବନର ବାର୍ତ୍ତାବହ । ସହସ୍ରର ଚିତ୍ତ ଭୂମିରେ ତମେ ଆଜି ଏକ ନବଯୁଗର ଉଷା ।

ତମେ ଅସାଧ୍ୟ ସାଧନ କରିଛ, ପତି-ବ୍ରତ ଓ ଯତି-ବ୍ରତକୁ ଏକ ମୁଠାରେ ଆୟତ୍ତ କରି । ତମେ ଘର-ଯମୁନା ଓ ନୀପମୂଳକୁ ସମଭାବରେ ଉପଭୋଗ କରି ପାରିଛ । ତମେ ରାଧା ପରି ମାଠିଆ ଭସେଇଦେଇ ଘରେ ଆସି ଶାଶୁ-ନଣନ୍ଦଠାରୁ ଗାଳି ଖାଇନ । ତମେ ରନ୍ଧାଘର ପାଇଁ ପୂରା କଳସୀରେ ଯମୁନାର ଜଳ ଆଣିଛ ଓ ବାଟରେ ଠିଆ ହୋଇ ନୀପମୂଳସ୍ଥ ସୁନ୍ଦର ଶ୍ରୀକୃଷ୍ଣଙ୍କର ବଂଶୀବାଦନ ମଧ୍ୟ ଶୁଣି ଆସିଛ । ଘର ଓ ବାହାରକୁ, ମାଟି ଓ ଜ୍ୟୋତ୍ସ୍ନାକୁ, ରୋଷେଇଘର ଚୁଲିର ଧୂଆଁ ଓ ନବକିଶଳୟ ସୌରଭବାହୀ ପ୍ରଥମ ଦକ୍ଷିଣାକୁ, ଏପରି ଏକାଧାରରେ ଭୋଗକରିବାର ସୌଭାଗ୍ୟ ତ ଅକଳ୍ପନୀୟ । ଆମ ଭାଗ୍ୟରେ ନୀପମୂଳସ୍ଥ ସୁନ୍ଦର ଶ୍ରୀକୃଷ୍ଣଙ୍କୁ ଦେଖିବାର ବା କଳସୀ-ଭରା ଯମୁନା ଜଳ ଆଣିବାର ସୌଭାଗ୍ୟ କାହିଁ ? ଯମୁନାଜଳ ସଂଗ୍ରହ ପାଇଁ କଳସୀ ବା କାହିଁ ଆମ ପାଖରେ ? ଯାଅ, ଯାଅ ବିଦ୍ୟୁତ୍‌ପ୍ରଭା, ସହସ୍ର ତୃଷାର୍ତ୍ତ କଣ୍ଠରେ ସେହି ଯମୁନା ଜଳ ଢ଼ାଳିଯାଅ । ସହସ୍ର ଶ୍ରବଣରେ ଆଲୋକମୟ ସଂସାରର ମହାନ୍ ବାର୍ତ୍ତା ଶୁଣାଇଯାଅ । ତମର ଏହି ସୁଧାବିତରକ ଦେବଯାନୀ ଅଭିଯାନ ସର୍ବଥା ଜୟଯୁକ୍ତ ହେଉ । ତମର ଏହି ପ୍ରକାର ସାଧନା ପ୍ରଚୁର ପୁଷ୍ପଫଳବତୀ ହେଉ – ଏହାହିଁ ଆଶୀର୍ବାଦ କରି ରହିଲି ।

——

# (୨)

## ଐତିହ୍ୟ ଓ ସମସାମୟିକତା*

ଇତିହାସ ସଭ୍ୟ ମନୁଷ୍ୟକୁ ପ୍ରେରଣା ଦେବାର କଥା । ତାହା ନହେଲେ, ଅତୀତର ଘଟଣା ପ୍ରବାହର ଜଟିଳ ତାଲିକାଦ୍ୱାରା ମସ୍ତିଷ୍କକୁ ଭାରାକ୍ରାନ୍ତ କରିବାର କୌଣସି ଅର୍ଥ ନାହିଁ । ଆମ ଦେଶରେ ସ୍କୁଲ-କଲେଜରେ ଇତିହାସ ଯେପରି ପଢାଯାଏ, ତାହା ଏହିପରି ଏକ ମାନସିକ ଜଞ୍ଜାଳ ଛଡ଼ା ଆଉ କିଛି ନୁହେଁ । ପୁଣି ଦେଖାଯାଉଛି ଯେ ଦେଶଦେଶାନ୍ତରରେ ଜାତି ଜାତି ମଧ୍ୟରେ ବିଦ୍ୱେଷ ବଞ୍ଚିରହୁଛି ହୁଏତ କେବଳ ଏଇ ଇତିହାସ ଯୋଗୁଁ । ୧୮୦୬ରେ ନେପୋଲିୟନ୍ ପ୍ରୁସିଆ ଜୟକଲେ । ୧୮୧୫ ଓ ୧୮୭୦ରେ ପ୍ରୁସିଆ ତା'ର ପ୍ରତିଶୋଧ ନେଲା । ୧୯୧୯ରେ ଏ ଅପମାନର ପ୍ରତିଶୋଧ ନେଲା ଫ୍ରାନ୍ସ । ୧୯୪୦ରେ ହିଟଲର୍ ଜର୍ମାନ୍ ଜାତି ପ୍ରତି ଘୋର ଅପମାନ ଜନକ ଭର୍ସାଇଲ୍ ସନ୍ଧିର ଜବାବ୍ ଦେଲେ ଫ୍ରାନ୍ସ ଅଧିକାର କରି । ଏହାର ଶେଷ ନିଷ୍ପତ୍ତିର ଆଶା ଏପର୍ଯ୍ୟନ୍ତ ଦେଖାଦେଲାଣି ବୋଲି ମନେ ହେଉନି । ବରଂ ଫ୍ରାନ୍ସ-ଜର୍ମାନୀର ବିବାଦ ବର୍ତ୍ତମାନ ଋଷିଆ-ଆମେରିକାର ବିବାଦରେ ପରିଣତ ହୋଇ, ସମଗ୍ର ବିଶ୍ୱର ଆତଙ୍କର କାରଣ ହେଲାଣି ।

ପୃଥିବୀର ସକଳ ସଭ୍ୟ ଜାତିମାନଙ୍କ ଭିତରେ, କେବଳ ଭାରତବର୍ଷରେ ହିଁ ଇତିହାସ ପ୍ରତି ଶ୍ରଦ୍ଧା ଦେଖାଦେଇନାହିଁ । ସମଗ୍ର ଭାରତୀୟ ଜୀବନ-ଦର୍ଶନ ସହିତ ଏ ଅଶ୍ରଦ୍ଧା ସୁନ୍ଦର ମିଳିଯାଉଛି । ଯେଉଁ ଜୀବନ-ଦର୍ଶନ ବରାବର ଦୃଷ୍ଟି ରଖିଥିଲା ଶାଶ୍ୱତ ଓ ଚିରନ୍ତନ ଉପରେ, ସେଥିରେ କ୍ଷଣସ୍ଥାୟୀ ରାଜା-ମନ୍ତ୍ରୀଙ୍କ କାହାଣୀର ମୂଲ୍ୟ କ'ଣ ? ଆଜି ଯେ ବଙ୍ଗାଳୀ, ଓଡ଼ିଆ ବା ତେଲୁଗୁ-ତାମିଲ ବିଦ୍ୱେଷ ଓ ସଂଘର୍ଷ ଭାରତବର୍ଷରେ ଦେଖାଦେଇଛି, ତାହା ଭାରତୀୟ ଚିନ୍ତାଧାରାର ଫଳ ନୁହେଁ, ତାହା ବ୍ରିଟିଶ୍ ଶାସନର ପ୍ରଚାର ଓ ବ୍ରିଟିଶ୍ ସ୍କୁଲ୍‌ମାନଙ୍କରେ ଇତିହାସ ପଠନର ହିଁ ଫଳ ।

କିନ୍ତୁ ଏ ଦେଶରେ ଇତିହାସ ନଥିଲେ ହେଁ, ତା'ଠାରୁ ଅଧିକ ମାରାତ୍ମକ ଏକ ଅନୁଷ୍ଠାନ ସମଗ୍ର ଜାତି ଓ ଜନତାକୁ ସହସ୍ର ସହସ୍ର ବର୍ଷ ଧରି ପଙ୍ଗୁ କରି ରଖିଥିଲା ଓ ଏବେବି ଅନେକ ପରିମାଣରେ ରଖିଛି – ତାହା ହେଉଛି ଐତିହ୍ୟ ବା ପରମ୍ପରା । ଅନ୍ୟାନ୍ୟ ଅନେକ ଦେଶପରି, ଶହେ ବର୍ଷ ପୂର୍ବ ପର୍ଯ୍ୟନ୍ତ ଏ ଦେଶରେ ମଧ୍ୟ ବରାବର ଅଧିକାଂଶ ଲୋକ ଅଜ୍ଞ ଓ ନିରକ୍ଷର ଥିଲେ । ସେମାନଙ୍କର ବୁଦ୍ଧି, ବିବେକ, ବିଚାର ଓ ଆଚାର ସବୁର ଡ଼ୋରି ଯାଇ ରହିଥିଲା ପୁରୋହିତମାନଙ୍କ ଲିଖିତ ଶାସ୍ତ୍ରରେ ।

---

* ରଚନା କାଳ ୧୦।୫।୧୯୬୨ ।

ଭାରତ ପରି ସବୁ ଦେଶରେ ଦିନେ ଏୟାହିଁ ଥିଲା ସାମାଜିକ ଅବସ୍ଥା । ଶାସ୍ତ୍ର ଓ ଶାସ୍ତ୍ରକାର ଏକ । ନିରକ୍ଷର ନାଗରିକ ଯେ କି ଶାସ୍ତ୍ର-ପୋଥି ପଢ଼ିବା କଥା ଦୂରେ ଥାଉ, ଆଖିରେ ବି ଦେଖିବାକୁ ପାଉନଥିଲା, ତା' ଆଖିରେ ଶାସ୍ତ୍ର-ଲେଖକ ବା ଶାସ୍ତ୍ରାଧ୍ୟାୟୀ ପୁରୋହିତହିଁ ରହିଲା ସକଳ ଜ୍ଞାନର ଅବତାର ରୂପେ । ସେଇମାନଙ୍କ ବଚନହିଁ ହେଲା ଜନତାର ବେଦ ଓ ସେହି ହେଲା ଅଲଂଘନୀୟ ପରମ୍ପରା । ଏଇ ପରମ୍ପରା ଏଇ ସେଦିନ ଯାଏଁ ସହସ୍ର-ସହସ୍ର ବର୍ଷ ଧରି ଏ ଦେଶର ଦଶକୋଟି ସୁସ୍ଥ, ସୁନ୍ଦର, ସାଧୁ, ଶ୍ରମୀ ଓ ଉତ୍ପାଦନଶୀଳ ନାରୀ-ପୁରୁଷଙ୍କୁ ଅସ୍ପୃଶ୍ୟ ଓ ଅପାଂକ୍ତେୟ କରି ରଖିଥିଲା । ଏଇ ପରମ୍ପରା ସହସ୍ର ସହସ୍ର ଅବଳାମାନଙ୍କୁ ଜୀଅନ୍ତା ପୋଡ଼ି ମରାଇଛି । ଏଇ ପରମ୍ପରା ଉପନିଷଦର ପରମ ସାତ୍ତ୍ୱିକ ଚିନ୍ତାଧାରାର ଜନକ ଏଇ ଭୂମିକୁ ଧର୍ମ ଓ ଦେବତା ନାମରେ ତାନ୍ତ୍ରିକ ବ୍ୟଭିଚାର ଓ ଈଶ୍ୱରର କ୍ଷୁଧା ନିବୃତ୍ତି ନାମରେ ନର ଓ ଜୀବ ବଳିରେ ଏବେବି କଳୁଷିତ କରିରଖିଛି । ଅନେକ ପାଶ୍ଚାତ୍ୟ ସମାଲୋଚକ ଭାରତୀୟମାନଙ୍କର ରଚନା, ଗବେଷଣା ଓ ସାମାଜିକ ଆୟୋଜନରେ ମୌଳିକତାର ଏକାନ୍ତ ଅଭାବ ଲକ୍ଷ୍ୟ କରି ଆକ୍ଷେପ କରିଥାନ୍ତି । ଯେଉଁଠି ବ୍ୟକ୍ତି ଓ ସମାଜର ସକଳ ଦୈନନ୍ଦିନ କର୍ମ ଓ ଚିନ୍ତାଧାରାକୁ ପରମ୍ପରାହିଁ ନିୟନ୍ତ୍ରଣ କରେ, ସେଠି ମୌଳିକତାର ବିକାଶ ସହଜ ନୁହେଁ । ସେଠାରେ ଗତାନୁଗତିକତା ହିଁ ସାଧାରଣ ଦୃଶ୍ୟ ହେବାର କଥା । ଭାରତବର୍ଷରେ ଅନେକାଂଶରେ ତାହାହିଁ ଘଟିଛି । ବିଶ୍ୱସଂସ୍କୃତିକୁ ଭାରତର ଧର୍ମ, ସାହିତ୍ୟ, କଳା ଓ ଦର୍ଶନ ଦେଇ ଅତୁଳନୀୟ ଦାନ ଥିଲେ ହେଁ, ମନୁଷ୍ୟର ପାର୍ଥିବ ଜୀବନକୁ ସୁଖ-ସ୍ୱାଚ୍ଛନ୍ଦ୍ୟମୟ କରିବା ପାଇଁ ଅନ୍ୟ ଜାତିମାନଙ୍କ ତୁଳନାରେ ଭାରତବର୍ଷର ଦାନ ସାମାନ୍ୟ । ସକାଳୁ ଉଠି ରାତିରେ ଶୋଇବାକୁ ଗଲାଯାଏଁ ଆମର ଦୈନନ୍ଦିନ ଜୀବନ ସଂପୃକ୍ତ ଭିନ୍ନଭିନ୍ନ ଦ୍ରବ୍ୟର ଆଲୋଚନା କଲେ ଏହା ସ୍ପଷ୍ଟ ହୋଇଉଠିବ । ସାନିଟାରୀ-ଲାଟ୍ରିନ୍, ଟାପ୍‌ଜଳ, ଦୈନିକ କାଗଜ, ମୁଦ୍ରାଯନ୍ତ୍ର, ଚା' ବା କଫି ଓ ଚାଇନା-ଗିନା-ଥାଳିଆ, ରିକ୍ସା ବା ମୋଟର, ରେଳଗାଡି, ଏରୋପ୍ଲେନ୍, ଇଲେକ୍ଟ୍ରିକ୍ ପଙ୍ଖା ଓ ଆଲୁଅ, ପୁଣି ଓ୍ୟାଚ୍ ଓ ଘଣ୍ଟା– କହତ, ଏଥିରୁ କେଉଁଟି ଭାରତବର୍ଷର ନିଜସ୍ୱ ଉଦ୍ଭାବନ ? ଆମେ ଆମ ସଭ୍ୟତା ଓ ସଂସ୍କୃତି ନାମରେ ଲମ୍ଫ-ଝମ୍ପ ଦେଇପାରୁ । କିନ୍ତୁ ଯେଉଁ ସଂସ୍କୃତିର ଐତିହ୍ୟ ଆମର ବର୍ତ୍ତମାନକୁ ସୁନ୍ଦର ଓ ସ୍ୱଚ୍ଛନ୍ଦ କରିବାକୁ ଶିଖାଏନା ବା ସାହାଯ୍ୟ କରେନା କେବଳ ନୁହେଁ, ତାହା ସଭ୍ୟ ମନୁଷ୍ୟର ଏକ କର୍ତ୍ତବ୍ୟ ବୋଲି ମଧ୍ୟ କେବେ ହେଲେ ପ୍ରେରଣା ଦେଇନି, ସମସାମୟିକ ପ୍ରୟୋଜନ ଦୃଷ୍ଟିରୁ ତାହାର ମୂଲ୍ୟ କମିଯିବାର କଥା । ଆମର ଏଠି ମାଲେରିଆ ଓ କୁଷ୍ଠରୋଗ ଦେଖାଦେବ, ଆମେ ତାକୁ ଦୈବ ଅଭିଶାପ ଓ କର୍ମଫଳ ବୋଲି ଧରିନେଇ ନୀରବରେ ସକଳ ଦୁର୍ଦ୍ଦଶା ଭୋଗ କରିବା । କିନ୍ତୁ ଯେଉଁଠି

ମାଲେରିଆ ବା କୁଷ୍ଠର ଦର୍ଶନ ମିଳେ ନାହିଁ ସେହି ଭାଗ୍ୟବାନ୍ ଦେଶର ଲୋକେ ଆମ ପ୍ରତି ସହାନୁଭୂତିପରବଶ ହୋଇ ସେହି ଦୁରାରୋଗ୍ୟ ବ୍ୟାଧିଗୁଡ଼ିକର ପ୍ରତିକାର ଆବିଷ୍କାର କରିବେ, ନିରବଚ୍ଛିନ୍ନ କଠୋର ସାଧନା ଦେଇ । ଆଉ ଆମର ସଭ୍ୟ-ପରମ୍ପରା ତାଙ୍କୁ ମ୍ଳେଚ୍ଛ ବୋଲି ଗାଳିଦେଇ ଯଥେଷ୍ଟ ଆତ୍ମସନ୍ତୋଷ ଲାଭକରିବାରେ କୌଣସି ଲଜ୍ଜା ବୋଧ କରେନାହିଁ ।

ଇତିହାସ ଓ ପରମ୍ପରା ଦୁଇଟିଯାକ ସ୍ୱାଧୀନ-ମାନବିକ ବିଚାରଧାରା ପକ୍ଷରେ ଭୀଷଣ ଭାବରେ ମାରାତ୍ମକ । ଭାରତବର୍ଷରେ ଗୋଟାଏ ଥିଲା, ଗୋଟାଏ ନଥିଲା । ଏବେ ଦୁଇଟିଯାକ ଆମ ସାମାଜିକ ଓ ବ୍ୟକ୍ତିଗତ ଚିନ୍ତାରାଜ୍ୟରେ ଆଶ୍ରୟ ନେଇ ସେମାନଙ୍କର ଧ୍ୱଂସାତ୍ମକ ଲକ୍ଷ୍ୟରେ ସକ୍ରିୟ ହୋଇଉଠିଛନ୍ତି ବୋଲି ମୋର ଆଶଙ୍କା । ନୂତନ ଐତିହାସିକ ସଚେତନତା ଫଳରେ ହିନ୍ଦୁ ଆଜି ଆଉ ହିନ୍ଦୁ ହୋଇ ନାହିଁ, ସେ ବର୍ତ୍ତମାନ କେବଳ ମରାଠୀ, ଗୁଜରାଟୀ, ବଙ୍ଗାଳୀ ବା ଆସାମୀ ଓ ପରସ୍ପର ସଂଘର୍ଷଶୀଳ । ସମଗ୍ର ଭାରତର ସହସ୍ର ସହସ୍ର ବର୍ଷଧରି ପରମ ଐକ୍ୟ-ବିଧାୟକ ସକଳ ଭାରତୀୟ ଭାଷାର ଜନନୀ ମହିମାମୟୀ ସଂସ୍କୃତଭାଷାକୁ ପଛକୁ ଠେଲିଦେଇ, ଆଜି ହିନ୍ଦୀ, ବଙ୍ଗାଳୀ, ଆସାମୀ ପ୍ରଭୃତି ପ୍ରାକୃତଭାଷା ପରସ୍ପର ବିବଦମାନ ଅବସ୍ଥାରେ ଦଣ୍ଡାୟମାନ । ଏଣେ ପରମ୍ପରାର ପ୍ରଚୋଦନାରେ ଯେଉଁ ଅଖଣ୍ଡ ଭାରତୀୟ ଜାତିକୁ 'ବନ୍ଦେ ମାତରମ୍' କହି ସେଦିନ ପ୍ରତ୍ୟେକ ଭାରତୀୟ ଉନ୍ମାଦିତ ହେଉଥିଲା, ତାକୁ ସେ ଆଜି ଅଖଣ୍ଡ ମହିମାରେ ଦେଖିବାକୁ ପାଶୋରିଯାଇ ଦେଖୁଛି ବ୍ରାହ୍ମଣ, କାୟସ୍ଥ, ଚଷା, ଗୋପାଳ ପ୍ରଭୃତି ବ୍ୟବସାୟଗତ କ୍ଷୁଦ୍ର କ୍ଷୁଦ୍ର ଗୋଷ୍ଠୀର ସହସ୍ରଧା ବିଭକ୍ତ ଦର୍ପଣ ଦେଇ । ଏଇ ଆମର ଆଜି ଲଜ୍ଜାକର ଓ ବିପଜ୍ଜନକ ପରିସ୍ଥିତି ।

ବର୍ତ୍ତମାନ ପ୍ରଶ୍ନ ଏହିଯେ, କିପରି ଆମେ ଏହି ପଙ୍କ-ନିମଜ୍ଜନରୁ ଦେଶ ଓ ଜାତିକୁ ରକ୍ଷାକରିବା ? ଏହାର ସିଧା ସହଜ ଉତ୍ତର ଏହାନୁହେଁଯେ ପରମ୍ପରାକୁ ଏକାବେଳେକେ ପରିତ୍ୟାଗ କର । ଆମ ପରମ୍ପରାରେ କିଛି ପରିପୋଷକ ଓ ଜୀବନଦାୟକ ଅଂଶ ନଥିଲେ, ଆମେ ଏପର୍ଯ୍ୟନ୍ତ ଜାତିଭାବରେ ତିଷ୍ଠି ପାରିନଥାନ୍ତେ । ଆମକୁ ନିବିଡ ଭାବରେ ତେଣୁ ପରୀକ୍ଷା ଓ ବିଶ୍ଳେଷଣ ଆରମ୍ଭ କରିଦେବାକୁ ହେବ ଯେ, ଆମ ପରମ୍ପରାର ମାରାତ୍ମକ ବା ଅପକାରକ ଅଂଶ କ'ଣ ଓ ପରିପୋଷକ ଅଂଶ କ'ଣ । ପ୍ରତ୍ୟେକର ଈଶ୍ୱରଦତ୍ତ ବିଚାରଶକ୍ତି ନିରଙ୍କୁଶ ଭାବରେ ପ୍ରୟୋଗ କରାଗଲେ; ଏହାର ସତ୍ୟୋପଲବ୍ଧି ଆଦୌ କଠିନ ବ୍ୟାପାର ହେବନାହିଁ। ଏବଂ ନବାବିଷ୍କୃତ ସତ୍ୟ ଅନୁଯାୟୀ କାମ କରିବା ପାଇଁ ଏ ଦେଶରେ ଆଦର୍ଶର ମଧ୍ୟ ଅଭାବ ନାହିଁ । ମହାମାନବ ବୁଦ୍ଧଙ୍କ କଥା ଛାଡ଼ିଦିଅ, ସଂପୂର୍ଣ୍ଣ ଇଂରାଜୀ-ଅନଭିଜ୍ଞ ଦୟାନନ୍ଦ ସରସ୍ୱତୀ ଓ ଆମ ଓଡ଼ିଶାର ଅନ୍ଧ-କନ୍ଧ-ନିରକ୍ଷର ଭୀମଭୋଇ ପରମ୍ପରାର ବିରୋଧରେ ଯାଇହିଁ ଆମ ଚେତନାରେ ଆଜି ବରେଣ୍ୟର

ଆସନ ପାଇଛନ୍ତି । ମାନବ ଇତିହାସରେ କେବଳ ସେହି ଲୋକ କିଛି ନା କିଛି ଛାପ ପକାଇ ଯାଇଛି, ଯିଏ ଗତାନୁଗତିକତାକୁ ପରିତ୍ୟାଗ କରି ପରମ୍ପରାର ବିପରୀତରେ କାମ କରିବାକୁ ସାହସ କରିଛି । ସେହିମାନେ ହିଁ ହୋଇଛନ୍ତି ବୁଦ୍ଧ, ଖ୍ରୀଷ୍ଟ, ମହମ୍ମଦ, କୋପର୍ନିକସ୍ ଓ ଗାଲିଲିଓ। ପରମ୍ପରାର ବିରୁଦ୍ଧରେ ଯାଇଥିବାରୁ ଏ ପ୍ରତ୍ୟେକଙ୍କୁ ସମସାମୟିକ କାଳ ଯଥେଷ୍ଟ ନିର୍ଯ୍ୟାତନା ଦେଇଛି, କିନ୍ତୁ ସେହିମାନଙ୍କର ଜୀବନ ଓ ସ୍ୱାଧୀନ ଚିନ୍ତାକୁ କେନ୍ଦ୍ରକରିହିଁ ଗଢ଼ିଉଠିଛି ସଭ୍ୟତା ଓ ସଂସ୍କୃତିର ନବ ନବ ଯୁଗ ଓ ସାମ୍ରାଜ୍ୟ।

ମନୁଷ୍ୟ ଏକାନ୍ତ ଭାବରେ ବର୍ତ୍ତମାନର ପ୍ରାଣୀ । ପୂର୍ବେ ତା'ର ପୂର୍ବପୁରୁଷେ କି ଅବସ୍ଥାରେ କି ବ୍ୟବସ୍ଥା କରିଥିଲେ, ସେଥିରେ ବର୍ତ୍ତମାନର ଆମେ ନିଜକୁ କାହିଁକି ବାନ୍ଧି ରଖିବା ? ଆମ ପୂର୍ବପୁରୁଷେ ଯେପରି ତାଙ୍କ ଅବସ୍ଥାନୁଯାୟୀ ତାଙ୍କ ସମାଜ ଓ ଆଚାରକୁ ବ୍ୟବସ୍ଥିତ କରିଥିଲେ, ଆମେ ଆମ କାଳକୁ, ଆମ ଅବସ୍ଥାକୁ ଖାପ ଖୋଇଲା ଭଳି ବ୍ୟବସ୍ଥା କରିବାର ଅଧିକାର ଆମଠାରୁ କାଢିନେବ କିଏ ? ଗୀତାରେ ଶ୍ରୀକୃଷ୍ଣ ଯାଗଯଜ୍ଞ-ପରାୟଣ ବୈଦିକ ପରମ୍ପରାକୁ ସମୂଳ ଉତ୍ପାଟିତ କରି ଏକ ନୂତନ ଆତ୍ମ-ପ୍ରତିଷ୍ଠ ସହଜ, ସରଳ ଆଧ୍ୟାତ୍ମିକ ଧାରାର ଯେ ପ୍ରବର୍ତ୍ତନ କରିବାକୁ ଯାଇଛନ୍ତି, ଏହା ସେ ଗ୍ରନ୍ଥର ଯେ କୌଣସି ବୁଦ୍ଧିମାନ ପାଠକ ଦେଖିପାରିବ । ଆମର ଧର୍ମଜୀବନର ଏହି ପ୍ରଧାନ ଦିଗ୍‌ଦର୍ଶକ ଶ୍ରୀକୃଷ୍ଣ ସ୍ୱୟଂ ଯଦି ପରମ୍ପରା ଘାତକ, ଆମର ନୂତନକାଳ ଓ ନୂତନ ପରିସ୍ଥିତି ଅନୁଯାୟୀ ପ୍ରାଚୀନ ପରମ୍ପରାକୁ ଯଥୋପଯୁକ୍ତ ଭାବରେ ପରିତ୍ୟାଗ କରିବାରେ ଅପରାଧ କ'ଣ ? ବରଂ ଆଜିର ସ୍ୱାଧୀନ ଭାରତରେ, ପରମ୍ପରାର ଯାହା କିଛି ଅଂଶ ଏ ଦେଶର ତରୁଣ ଓ ତରୁଣୀର ସର୍ବାଙ୍ଗୀନ ବିକାଶରେ ବାଧାଦେଉଛି, ସେ ବାଧା ତୁରନ୍ତ ଦୂର କରି, ସେମାନଙ୍କର ନିଜ ନିଜର ସ୍ୱ-ଧର୍ମ ଅର୍ଥାତ୍ ଜନ୍ମଗତ ସାମର୍ଥ୍ୟ ବା ରୁଚିର ପୂର୍ଣ୍ଣତମ ବିକାଶର ସକଳ ବ୍ୟବସ୍ଥା କରିନେବା ଏକାନ୍ତ ଉଚିତ ।

କିନ୍ତୁ ଏହି ବିଦ୍ରୋହ ଭିତରେ ମଧ୍ୟ ଗୋଟାଏ କଥା ବରାବର ମନେ ରଖିବାକୁ ହେବ। କ୍ଷୀଣଜୀବୀ ହେଲେହେଁ, ଧରାପୃଷ୍ଠରେ ମନୁଷ୍ୟ ହେଉଛି ଏକମାତ୍ର ଜୀବ, ଯିଏ ଶାଶ୍ୱତର କେବଳ ଧାରଣା କରିପାରେ ନୁହେଁ, ତା'ର ଦୈନନ୍ଦିନ ଜୀବନର ପ୍ରତି ମୁହୂର୍ତ୍ତରେ, ସେ ଶାଶ୍ୱତର ସ୍ପର୍ଶ ନପାଇଲେ, ଏଇ କ୍ଷୀଣଜୀବୀ ପ୍ରାଣୀ ପକ୍ଷରେ ସୁସ୍ଥ, ସନ୍ତୁଷ୍ଟ, ଜୀବନ ଯାପନ କରିବା ଅସମ୍ଭବ ହୋଇଉଠେ । ମନୁଷ୍ୟର ଏଇ ଦୁର୍ବଳତାରୁ ହିଁ ପୃଥିବୀରେ ସକଳ ଧର୍ମମାନଙ୍କ ଆବିର୍ଭାବ । ଧର୍ମ ତାକୁ ଇହଜନ୍ମର ଆରପଟେ ସୁଦୂର ଭବିଷ୍ୟତ ସହିତ ସଂଶ୍ଳିଷ୍ଟ କରାଏ, ଆଉ ପରମ୍ପରା ତାକୁ ଯୋଗକରିଦିଏ ସୁଦୂର ଅତୀତ ସାଥିରେ । ଜଗତର ସକଳ ଧର୍ମ ପ୍ରବର୍ତ୍ତକ ମନୁଷ୍ୟର ଏଇ ଆଗ ଓ ପଛର ଯୋଗ-ସୂତ୍ରମାନଙ୍କରେ ଜମିଥିବା ଧୂଳି ଝାଡ଼ି ଯାଇଛନ୍ତି ବି । ସେଗୁଡ଼ିକର ଜୀର୍ଣ୍ଣ ସଂସ୍କାର କରି ସେଗୁଡ଼ିକୁ ନୂତନ ସୂତା ଦେଇ ନୂତନ ଭାବରେ

ତୋଳିବାକୁ ଚେଷ୍ଟା କରିଛନ୍ତି । ସେମାନେ ମନୁଷ୍ୟକୁ କେବେହେଲେ ଏକାନ୍ତ ଭାବରେ ବର୍ତ୍ତମାନ ସର୍ବସ୍ୱ କରିବାକୁ ଦେଇନାହାନ୍ତି । ଆମେ ତେଣୁ ପରମ୍ପରାର ବିରୋଧ ନାମରେ ଶାଶ୍ୱତକୁ ଭୁଲି ପଶୁ-ପକ୍ଷୀ ପରି ଯେପରି କେବଳ ବର୍ତ୍ତମାନ ସର୍ବସ୍ୱ ନହେଉ । ତା' ହେଲେ, ହୁଏତ ଆମର ବର୍ତ୍ତମାନ ହୋଇପାରେ କ୍ଷଣିକ ସନ୍ତୋଷଦାୟକ; କିନ୍ତୁ ପରିଣାମରେ ଆମେ ଆମର ମନୁଷ୍ୟତ୍ୱ ହରାଇ, ଆମେ ଗୋ-ଛାଗଳର ସ୍ତରକୁ ଖସିବା । କାରଣ ଗୋ-ଛାଗଳର ନାହିଁ ପରମ୍ପରା, ନାହିଁ ଭବିଷ୍ୟତ ଯୋଜନା । ସମଗ୍ର ଜୀବ-ଜଗତରେ କେବଳ ଶାଶ୍ୱତ-ଚେତନ ମନୁଷ୍ୟରହିଁ ଏହି ପୁଣ୍ୟ ଅଧିକାର ଅଛି । ଆମେ ବର୍ତ୍ତମାନକୁ ଅଧିକ ସୁନ୍ଦର ଓ ମହାନ କରିବା ପାଇଁ ଯଦି ପରମ୍ପରାକୁ କୌଣସିଠାରେ ପରିତ୍ୟାଗ କରିବା ବା ଆଘାତ ଦେବା ଦର୍କାର ପଡେ, ତାହା କରିବାକୁ କୁଣ୍ଠିତ ହେବାନି । କିନ୍ତୁ କେବଳ ପରମ୍ପରା-ପରାୟଣ ହେବା ବିଚାରଶୀଳ ମନୁଷ୍ୟ ପକ୍ଷରେ ଯେପରି ମାରାତ୍ମକ, ତାହାଠାରୁ ତା'ପକ୍ଷରେ ଅଧିକ ମାରାତ୍ମକ ସମ୍ପୂର୍ଣ୍ଣଭାବରେ ବର୍ତ୍ତମାନ-ସର୍ବସ୍ୱ ହେବା ।

ବର୍ତ୍ତମାନ ଗୋଟାଏ ଛୋଟ ଘଟଣା ବର୍ଣ୍ଣନା କରି ମୋର ବକ୍ତବ୍ୟ ଶେଷକରେଁ ।

ପ୍ରାଚୀନ ନୈଷ୍ଠିକ ହିନ୍ଦୁ ବ୍ରାହ୍ମଣ ପରିବାରର ସନ୍ତାନ ଗୁରୁଦାସ ବାନାର୍ଜି ମ୍ଳେଚ୍ଛଭାଷା ଶିକ୍ଷା କରି ଓ ସେଥିରେ ଅସାଧାରଣ ବିଚକ୍ଷଣତା ଦେଖାଇ, ସେ କାଳରେ ହାଇକୋର୍ଟ ଜଜ୍ ଓ ଭାଇସରାୟଙ୍କ କାଉନ୍‌ସିଲର ସଭ୍ୟ ହୋଇଥିଲେ । ଏଇ ଭାବରେ ସେ ପରମ୍ପରାକୁ ପ୍ରତ୍ୟାଖ୍ୟାନ କରିଥିଲେ । କିନ୍ତୁ ଭାରତର ବଡ଼ଲାଟ ଲର୍ଡ଼ କର୍ଜନ୍‌ଙ୍କ ସ୍ପେଶାଲ୍ ଟ୍ରେନ୍ ଏଇ ଚାଲିଛି । ସେଥିରେ ସର୍ ଗୁରୁଦାସ ବାନର୍ଜି ମଧ୍ୟ ଅଛନ୍ତି । ବନାରସ୍‌ଠାରେ ସ୍ପେଶାଲ୍ ଟ୍ରେନ୍ ଠିଆ ରହିଛି, କାରଣ ଏଟା ବଡ଼ଲାଟଙ୍କ ଲଞ୍ଚ୍-ବେଳ । ଲଞ୍ଚ୍ ସରିଲା । ବଡ଼ଲାଟ ଆଦେଶ ଦେଲେ ଗାଡ଼ି ଛାଡ଼ । କିନ୍ତୁ ସେକ୍ରେଟାରୀ ଆସି ଜଣାଇଲା ଯେ ସର୍ ଗୁରୁଦାସ ଫେରିନାହାନ୍ତି । ଲର୍ଡ଼କର୍ଜନ୍ ପଚାରି ବୁଝିଲେ ଯେ, ହାଇକୋର୍ଟ ଜଜ୍ ଗୁରୁଦାସ ବାନର୍ଜି, ସ୍ୱପାକ ଛଡ଼ା ଅନ୍ୟତ୍ର ଖା'ନ୍ତିନି, ତେଣୁ ସେ ବର୍ତ୍ତମାନ ଗଙ୍ଗାବାଲିରେ ଭାତଡ଼ାଲି ବସାଇଛନ୍ତି । ଗୁଣଗ୍ରାହୀ ଲର୍ଡ଼ କର୍ଜନ୍ ଆଦେଶ ଦେଲେ, ସର୍ ଗୁରୁଦାସ ନିଜ ସୁବିଧା ଅନୁସାରେ ଯେତେବେଳେ ସ୍ପେଶାଲ୍ ଟ୍ରେନ୍‌କୁ ଫେରିବେ ସେତିକିବେଳେ ଗାଡିଛାଡିବ। ସେଦିନ ଲର୍ଡ କର୍ଜନ୍ କାହାକୁ ସମ୍ମାନ ଦେଖାଇଥିଲେ ? ସହସ୍ର ସହସ୍ର ମୁଦ୍ରା ବ୍ୟୟରେ। ଭୋଜିଭାତ-ତାମାସା କରି ନିଜକୁ ଅନ୍ୟ ମନୁଷ୍ୟଠାରୁ ଉଚ୍ଚତର ବୋଲି ପରିଚିତ କରେଇବା ପାଇଁ ଯେଉଁ ଉପବୀତ ଗ୍ରହଣ କରାଯାଉଛି ତାକୁ, ନା ବ୍ରାହ୍ମଣ୍ୟ ନିଷ୍ଠା, ତେଜ ଓ ଅକୁତୋଭୟତାକୁ ? ଭାରତୀୟ ପରମ୍ପରାରେ ବାହ୍ୟ ଆଚାର ଉପବୀତର ପରମ୍ପରା ଅଛି, ପୁଣି ବ୍ରାହ୍ମଣର ଜ୍ଞାନ, ନିଷ୍ଠା ଓ ନିର୍ଭୀକତାର ପରମ୍ପରା ମଧ୍ୟ ଅଛି । କାହାକୁ ରଖିବା, କାହାକୁ ଛାଡ଼ିବା, ତାହା ଏକାନ୍ତ ଭାବରେ ତମର, ମୋର ଓ ସମସ୍ତଙ୍କର ବୌଦ୍ଧିକଦାୟିତ୍ୱ।

# ଆମର ଇତିହାସ ଓ ଅଗ୍ରଗତି*

ଆଗରୁ ଶ୍ରୀ ଚକ୍ରଧର ମହାପାତ୍ରଙ୍କର ଓଡ଼ିଶା ଇତିହାସର 'ଅଜ୍ଞାତ' ଅଧ୍ୟାୟଟି ପଢ଼ିଥିଲି । ମଟର୍ ଆକ୍‌ସିଡେଣ୍ଟରେ ହସ୍‌ପିଟାଲ୍‌ରେ ପଡି ପଡି ସମୟକୁ ହତ୍ୟା କରିବାର ଏକ ଉପାୟରୂପେ ହିଁ ଅନ୍ୟାନ୍ୟ ପୁସ୍ତକମାନଙ୍କ ଭିତରେ ଶ୍ରୀ ସୁରେନ୍ଦ୍ର ମହାନ୍ତିଙ୍କ 'ନୀଳଶୈଳ' ଉପନ୍ୟାସଟି ଓ ଶ୍ରୀ କେଦାରନାଥ ମହାପାତ୍ରଙ୍କ 'ଖୁରୁଧାର ଇତିହାସ' ମଧ୍ୟ ପଢ଼ିଲି ।

ଓଡ଼ିଆ ଜାତିର ଇତିହାସର ଗୋଟାଏ ସୀମିତଯୁଗ ଉପରେ ସମକାଳରେ ଓଡ଼ିଶାର ତିନିଜଣ ସୁବିଦିତ ବୁଦ୍ଧିଜୀବୀଙ୍କ ଲେଖନୀରୁ ପ୍ରାୟ ସମଧର୍ମୀ ତିନୋଟି ପୁସ୍ତକ ପ୍ରକାଶିତ ହେବାର ଦେଖିବାରେ ଓ ସେ ସବୁକୁ ପଢ଼ିବାରେ ସତରେ ଖୁବ୍ ମାନସିକ ସନ୍ତୋଷ ଲାଭକଲି । ମନେହେଲା ଯେପରିକି, ଓଡ଼ିଆ ଜାତୀୟତା ନେଇ ଓଡ଼ିଶାର ବୁଦ୍ଧିଜୀବୀ ଚେତନାରେ ଏକ ନୂତନ 'ଫରମେଣ୍ଟେସନ୍' ବା ଅନ୍ତଃ-କ୍ଷୋଭ ଆସିଛି । ଆମର ତଥାକଥିତ 'ନୂତନ' (ମଡ଼ର୍ଣ୍ଣ) କବିମାନେ ଆମର ଭଞ୍ଜ-ଅଭିମନ୍ୟୁ-ରାଧାନାଥଙ୍କଠାରେ କୌଣସି ମୂଲ୍ୟ ନଦେଖି, ସାତହଜାର ମାଇଲ୍ ଦୂରରେ ଥିବା ଏକ ବିଦେଶୀ ଜାତିର ଭାଷାର ପଳାୟମାନ ସାଂପ୍ରତିକ ଏକ ଫେସନକୁ ହିଁ ପରମ ସିଦ୍ଧି ମନେକରି ଛନ୍ଦ-ହୀନ, ଗନ୍ଧ-ହୀନ, ସ୍ପନ୍ଦ-ହୀନ ଅବୋଧ୍ୟତାଦେଇ ହିଁ 'ନାଶନାଲ' ନହେବା ଆଗରୁ 'ଇଣ୍ଟରନାଶନାଲ୍' ହେବାକୁ ଯାଉଥିଲାବେଳେ, ମହାନ୍ତି-ମହାପାତ୍ରଙ୍କ ପରି ସୁଧୀଜନମାନେ ନିଜ ମାଟିରେ ହିଁ ସୁନାର ପ୍ରତିମା-ଗଢ଼ିବାକୁ ଉତ୍ସାହୀ ହେବା ନିଶ୍ଚୟ ଅତ୍ୟନ୍ତ ଅଭିନନ୍ଦନୀୟ ଓ ଶ୍ଳାଘ୍ୟ ବ୍ୟାପାର ।

**ଖୁରୁଧା ଇତିହାସ –**

ଅବଶ୍ୟ ଶ୍ରୀ ମହାନ୍ତିଙ୍କ ପୁସ୍ତକ ଏକ ଉପନ୍ୟାସ । ଏହା ସୃଜନଧର୍ମୀ ସାହିତ୍ୟ । ଦୁଇ ମହାପାତ୍ରଙ୍କ ପୁସ୍ତକ 'ଇତିହାସ'; କିନ୍ତୁ ମହାପାତ୍ର ଚକ୍ରଧରଙ୍କ ପୁସ୍ତକକୁ ହିଷ୍ଟ୍ରି-

* ଏହି ଆଲୋଚନାଟି ଆଲୋଚ୍ୟମାନ ପୁସ୍ତକଗୁଡ଼ିକ ପ୍ରକାଶିତ ହେବାର ପ୍ରାୟ ପରେ ପରେ ହିଁ ବର୍ଷାଧିକ କାଳ ପୂର୍ବେ ଲେଖାହୋଇଯାଇଥିଲା; କିନ୍ତୁ ପରେ ପରେ ବର୍ଷାଧିକ କାଳ ବାରମ୍ବାର ଅପ୍ରତ୍ୟାଶିତ ବ୍ୟାଧି-ରୋଗ ଯୋଗୁ ଅନ୍ୟାନ୍ୟ ଅନେକ ଲେଖାପରି ଏହା ମଧ୍ୟ କେଉଁ ଅଜ୍ଞାତ-କୋଣରେ ଧୂଳିର ଚାଦର ଟାଣି ପଡ଼ିରହିଥିଲା । ଲେଖକଙ୍କର ସ୍ୱାସ୍ଥ୍ୟୋନ୍ନତି ସହିତ ଲେଖା ମଧ୍ୟ ସ୍ମୃତିରେ ଚେଇଁଉଠିବାରୁ, ବିଳମ୍ବରେ ହେଉ ମଧ୍ୟ ତାକୁ ପ୍ରକାଶିତ ହେବାର ସୁଯୋଗ ଦିଆଗଲା ।

*(ଝଙ୍କାର, ୨୩ ଶ ବର୍ଷ, ୧୧ ଶ ସଂଖ୍ୟା ।) – ଲେଖକ –

ବା ସୋସାଲ୍ ଷ୍ଟଡିଜ୍ କ'ଣ ଯେ କହିବାକୁ ହେବ, ତାହା ମଧ୍ୟ ବିଚାର୍ଯ୍ୟ । କେବଳ ମହାପାତ୍ର କେଦାରଙ୍କ ପୁସ୍ତକଟି ହିଁ ଖାଣ୍ଟି ମାଲ୍ ।

ତେଣୁ ମନେହୁଏ ଏ ତିନି ଭିତରେ ସମ୍ପୂର୍ଣ୍ଣ ଆସ୍ଫାଳନହୀନ କେଦାରନାଥଙ୍କ 'ଖୁରୁଧା-ଇତିହାସ' ହିଁ ବୋଧହୁଏ କାଳକ୍ରମେ ପ୍ରକୃତରେ ମୂଲ୍ୟବାନ୍ ଓ ସାରବାନ୍ ପୁସ୍ତକ ବୋଲି ବିବେଚିତ ହେବ। ଖୋର୍ଦ୍ଧା ହାଇସ୍କୁଲରେ ଛାତ୍ର ଥିଲାବେଳେ ଖୋର୍ଦ୍ଧା-ଇତିହାସ-ପ୍ରବନ୍ଧ-ପ୍ରତିଯୋଗିତାରେ, କେଦାରନାଥ ପୁରସ୍କାର ପାଇ ନ ଥିଲେ ସିନା, ଆଜି ମନେହେଉଛି, ତାଙ୍କର ଶେଷବୟସର ଏହି 'ଖୁରୁଧା-ଇତିହାସ' ପାଇଁ ସମଗ୍ର ଓଡ଼ିଆ ଜାତି ତାଙ୍କୁ ପୁରସ୍କାର ଦେବାର କଥା । ଓଡ଼ିଶାର ସଂସ୍କୃତ-ସାହିତ୍ୟ କାଟାଲଗ୍ ଓ ଏହି ଖୁରୁଧା-ଇତିହାସ କେଦାରଙ୍କର ଅବିନଶ୍ୱର କୀର୍ତ୍ତି ହୋଇ ରହିଲା ବୋଲି ସେ ଜାଣିବେ। ତୁରନ୍ତ ନାମ-ଯଶପାଇଁ ଚାରିଆଡେ ଆଜି ବୀଭତ୍ସ ବ୍ୟାକୁଳତା ଓ ପୁଣି ବୀଭତ୍ସତା ସୂତ୍ର-ଚାଳନା ଚାଲିଛି । ସେ ପରିପ୍ରେକ୍ଷିତରେ କେଦାରଙ୍କର ସାରା ଜୀବନ ଧୀର ମନ୍ଥର ଅଧ୍ୟବସାୟ-ପ୍ରସୂତ ଏହି ପୁସ୍ତକ ତାଙ୍କ ଜନ୍ମ-ଗ୍ରାମ ଭୁବନେଶ୍ୱରର ମନ୍ଦିରାବଳି ପରି ଏକ ଶାଶ୍ୱତ ମନ୍ୟୁମେଣ୍ଟାଲ୍ କୀର୍ତ୍ତି । ଏହା ଅନ୍ୟମାନଙ୍କୁ କିଛି ଶିକ୍ଷା ଦେବ ବୋଲି ଆଶାକରେ ।

କେବଳ ଅଧ୍ୟବସାୟ ଓ ଅନୁସନ୍ଧାନ ନୁହେଁ, କେଦାରଙ୍କ ଖୁରୁଧା-ଇତିହାସ ପ୍ରତିବିମ୍ବିତ କରୁଛି ମଧ୍ୟ ଐତିହାସିକର ନିରପେକ୍ଷ ନିକିତି-ତଉଲ। କେଦାର ସଂପୂର୍ଣ୍ଣ ଆସ୍ଫାଳନହୀନ ଓ ନିରାଡମ୍ବରଭାବରେ କେବଳ ଘଟଣାଗୁଡ଼ିକ ଲିପିବଦ୍ଧ କରିଯାଇଛନ୍ତି । ସୁରେନ୍ଦ୍ରଙ୍କ ପୁସ୍ତକ ତ ଜାଣି ଏକ ଉପନ୍ୟାସ; କିନ୍ତୁ ଚକ୍ରଧର ମହାପାତ୍ରଙ୍କ ପୁସ୍ତକଟି ଅକଚ୍ଛିତ ଡକ୍ୟୁମେଣ୍ଟ ମାନଙ୍କର ସହାୟକତା ସତ୍ତ୍ୱେ, ସ୍ୱକୀୟ ଉତ୍‌ପ୍ରେକ୍ଷାର ଅତି-ପ୍ରାଚୁର୍ଯ୍ୟ ଫଳରେ ହିଁ ଏକ 'ଐତିହାସିକ' ଗ୍ରନ୍ଥ ବୋଲାଇବାର ସମ୍ମାନ ବହୁ ପରିମାଣରେ ହରାଇଛି କହିବାକୁ ହେବ । ଏ ଦେଶରେ ଏବେ ବହି ମୋଟା କରିବାର ଏକ ଦୁର୍ବାର ପ୍ରେରଣା କେଉଁଠୁ ଆସିଛି ଜାଣି ହେଉନାହିଁ । ଉଭୟ ସୁରେନ୍ଦ୍ର ମହାନ୍ତି ଓ ଚକ୍ରଧର ମହାପାତ୍ରଙ୍କର ବହି ଦୁଇଟି ଆକାରରେ ଅଧା ହୋଇଥିଲେ ହୁଏତ ଅଧିକତର ସୁଖପାଠ୍ୟ ହୋଇଥାନ୍ତେ ଏବଂ ସେମାନଙ୍କର ଗୁଣାତ୍ମକ ମୂଲ୍ୟ ସେହି ଅନୁପାତରେ ବଢ଼ିଥାନ୍ତା ବୋଲି ଲେଖକର ବିଶ୍ୱାସ ।

### ସଂଶୋଧନ

ପୁଣି, ଯେହେତୁ ଏ ତିନୋଟି ଭିତରେ କେଦାରଙ୍କ ପୁସ୍ତକଟିହିଁ ସବୁଠାରୁ ଅଧିକ ପ୍ରମାଣିତ ବୋଲି ଧରାଯିବ, ଅନ୍ୟ ଦୁଇଟିର ଐତିହାସିକ ତଥ୍ୟ କେଦାରଙ୍କ ବହିଦ୍ୱାରାହିଁ ସଂଶୋଧିତ ହେବାର କଥା । ଦୃଷ୍ଟାନ୍ତସ୍ୱରୂପ ଚକ୍ରଧର ମହାପାତ୍ରେ ଉତ୍କଳ ଯବନୀରାଣୀ

ସଉରିଆଙ୍କୁ ମୁର୍ଶିଦ କୁଲୀଙ୍କ କନ୍ୟାରୂପେ ଠିଆକରାଇଛନ୍ତି ଏବଂ ପଳାୟିତ ମୁର୍ଶିଦଙ୍କ ପରିବାରଙ୍କୁ କଟକ ଦୁର୍ଗରୁ ନେଇ ଗଞ୍ଜାମ ଇଚ୍ଛାପୁରଠାରେ ପହଞ୍ଚାଇ ଦେବା ଭିତରେ ହିଁ ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କର ସେହି ମନୋହାରିଣୀ ସାହାଜାଦୀଙ୍କ ସଙ୍ଗେ ପରିଚୟ ଓ ପରିଚୟରୁ ପରିଣୟ ହେବାର ଦେଖାଇଛନ୍ତି।

ଏ ଏକ ଅତ୍ୟନ୍ତ ସମ୍ଭାବ୍ୟ ପ୍ରସ୍ତାବ; କିନ୍ତୁ କେଦାରଙ୍କ ଇତିହାସ ଅନୁସାରେ ଦୁଇଜଣ ମୁର୍ଶିଦକୁଲୀ ଖାଁ ଓଡ଼ିଶାରେ ଦେଖାଦେଇଛନ୍ତି । ପ୍ରଥମ ମୁର୍ଶିଦ ଓଡ଼ିଶାର ସୁବାଦାର ଥିଲେ ୧୭୧୪ରୁ ୧୭୨୭ ପର୍ଯ୍ୟନ୍ତ। ଏ ତେଣୁ ମୋଟାମୋଟି ଖୋର୍ଦ୍ଧା ଗଜପତି ହରେକୃଷ୍ଣଦେବଙ୍କ (୧୭୧୬-୧୭୨୦) ସମସାମୟିକ। ଦ୍ୱିତୀୟ ମୁର୍ଶିଦ କୁଲୀ ଓଡ଼ିଶାର ସୁବାଦାର ଥିଲେ ୧୭୩୫ରୁ ୧୭୪୧ ପର୍ଯ୍ୟନ୍ତ ଏବଂ ସେ ଖୋର୍ଦ୍ଧା-ଗଜପତି ବୀରକେଶରୀ ଦେବଙ୍କ ସମସାମୟିକ। ଏହି ମୁର୍ଶିଦହିଁ ପରାସ୍ତ ଓ ପଳାୟିତ ହୋଇଥିଲେ ଏବଂ ୟାଙ୍କରି ଜେନାନାକୁ ଓଡ଼ିଶାର ଉଦାର ଗଜପତି ବୀରକେଶରୀ ଦେବ କଟକ ଦୁର୍ଗରୁ ନିରାପଦରେ ଗଞ୍ଜାମ ନେଇ ଯାଇଥିଲେ, ଯେଉଁଠୁ କି ସେମାନେ ଜାହାଜରେ ମସଲିପଟମ୍ ଚାଲିଯାଇଥିଲେ। ଏହି ରୋମାଣ୍ଟିକ୍ ବ୍ୟାପାର ତେଣୁ ସତ୍ୟରେ ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ସମୟରେ ଘଟିନଥିଲା, ଯେପରି ବର୍ଣ୍ଣନା କରିଛନ୍ତି ଚକ୍ରଧର ମହାପାତ୍ରେ, ଘଟିଥିଲା ବୀରକେଶରୀ ଦେବଙ୍କ ସମୟରେ, କେଦାରଙ୍କ ଇତିହାସ ଅନୁସାରେ।

ଅପରନ୍ତୁ, ଶ୍ରୀ ମହାନ୍ତି ରାମଚନ୍ଦ୍ର ଦେବଙ୍କର ଯବନୀ-ଗ୍ରହଣକୁ ଏକ ଡିପ୍ଲୋମାଟିକ୍ ବିବାହରୂପେ ଥୋଇଛନ୍ତି । ଉପନ୍ୟାସରେ ଯାହା ଭଲ ଦିଶିଲା ତାହା କୁହାଯାଇପାରେ; କିନ୍ତୁ ଶ୍ରୀ ମହାନ୍ତିଙ୍କ ପ୍ରସ୍ତାବ ଆଦୌ ଯୁକ୍ତିଯୁକ୍ତ ବୋଧହେଉନି । ଯେଉଁ ରାମଚନ୍ଦ୍ରଙ୍କୁ ଛତ୍ରଗଡ଼ ଘାଟିରୁ କଟକ ପର୍ଯ୍ୟନ୍ତ ହାତୀ ଉପରେ ଏକ ଲୁହା-ପିଞ୍ଜରାରେ ବନ୍ଦ କରି ଅଣାହୋଇଥିଲା, ତାଙ୍କୁ ଜଣେ ମୋଗଲ ସୁବାଦାରର ଜାରଜ-କନ୍ୟା ମଧ୍ୟ ବିବାହ କରିବାକୁ କିପରି ମଙ୍ଗିବ ? ପୁଣି ୧୬୯୨ଖ୍ରୀ. ମେ ୧୬ ତାରିଖରେ ଦୁର୍ଦ୍ଦାନ୍ତ ଖାନ୍-ଇ ଦୁରାନ୍ ଜଗନ୍ନାଥ ମନ୍ଦିର କେବଳ ଲୁଣ୍ଠନ କରିସାରିଥିଲେ ଯେ ନୁହେଁ, ତା'ର ମୀର ସୟଦ୍ ମାହାମୁଦ୍ ନାମକ ଏକ ସେନାପତି, ସିଧା ମନ୍ଦିର ଭିତରକୁ ଯାଇ, ଜଗନ୍ନାଥଙ୍କ ରତ୍ନବେଦୀ ଉପରେ ଠିଆହୋଇ ସମଗ୍ର ହିନ୍ଦୁତ୍ୱକୁ ଚାଲେଞ୍ଜ୍ ଦେଇଥିଲା । ୟା'ପରେ ଜଗନ୍ନାଥ ମନ୍ଦିରକୁ ପ୍ରାୟ ୧୪ ବର୍ଷକାଳ ଶାସକମାନେ ତାଲାବନ୍ଦ କରି ରଖିଲେ। ରଥଯାତ୍ରା ସହିତ ଜଗନ୍ନାଥଙ୍କ ଯାନିଯାତ୍ରା ସବୁ ଏକା-ବେଳକେ ବନ୍ଦ ରହିଥିଲା ସେହି ୧୪ ବର୍ଷ କାଳ।

ତେଣୁ କ'ଣ ବାକୀ ଥିଲା ଯେ ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କ ପରି ପିଞ୍ଜରାରେ ପୂରାହୋଇ ଅଣାହୋଇଥିବା ଏକ ପରାସ୍ତ ଓ ଅସହାୟ ରାଜାକୁ ମୁସଲମାନ ଶାସକେ ସ୍ତ୍ରୀ-ପ୍ରଲୋଭନ ଦେଇ ମୁସଲମାନ କରାନ୍ତେ ?

**ପଣ୍ଡାମାନଙ୍କର ପରମ ସତ୍‌ସାହସ–**

ସେ ଯାହାହେଉ, ପ୍ରବଳପ୍ରତାପୀ ଏକ ମୁସଲମାନ ଶାସନ ମୁଣ୍ଡ ଉପରେ ବସିଥିଲେ ମଧ୍ୟ, ଏ ଦେଶର ବ୍ରାହ୍ମଣ ସମାଜ ଯେ ସ୍ତ୍ରୀ ଯୋଗୁଁ ଜାତି ହରେଇଥିବା ହେତୁ, ''ଲକ୍ଷେ ରଜାର ମଉଡ଼ମଣି'' ହେଲେ ହେଁ ସଂପୃକ୍ତ ଗଜପତିଙ୍କୁ ନିଜ ଜଗନ୍ନାଥ ମନ୍ଦିରରେ ପୂରାଇ ଦେଇ ନଥିଲେ ଏହା ଓଡ଼ିଆଜାତି ପକ୍ଷରେ ଏକ ପରମ ପ୍ରଶଂସନୀୟ ଘଟଣା । ଚକ୍ରଧର ମହାପାତ୍ରେ ନିଜ ପୂର୍ବପୁରୁଷ ପରମପଣ୍ଡିତ ରାଜଗୁରୁ ଏ କ୍ଷେତ୍ରରେ ଗଜପତିଙ୍କୁ ସମର୍ଥନ କରିଥିବାଟାକୁ ଯେପରି ଏକ ଚତୁର ଜାତୀୟତା ବୋଲି ପ୍ରମାଣିତ କରିବାକୁ ବସିଛନ୍ତି, ତାହା ଆଦୌ ସେପରି ହୋଇନପାରେ । ଆଜି ମଧ୍ୟ ଯେ ଜଗନ୍ନାଥ ମନ୍ଦିରରେ ଲକ୍ଷ୍ମୀଙ୍କ ରୋଷଘରେ ବିଲାତି-ଆଳୁ ଓ ମେଶିନ-ଚିନିକୁ ପଶିବାକୁ ଦିଆଯାଉନି, ତାହାପାଇଁ ଆମେ ସମସ୍ତେ ଗର୍ବିତ । ଏ ଦେଶର ମନୁଷ୍ୟର ବା ରାଜାର ବା ସମାଜର ଅଧୋଗତି ସହିତ, ଶାଶ୍ୱତ ଜଗନ୍ନାଥ ମଧ୍ୟ କ'ଣ ବଦଳି ବଦଳି ଚାଲିବେ ? ଏଇ କ'ଣ ସଭ୍ୟତା ? ଏ କ୍ଷେତ୍ରରେ ପରମପଣ୍ଡିତ ରାଜଗୁରୁ ଯଦି ଗଜପତିଙ୍କୁ ସମର୍ଥନ କରିନଥାନ୍ତେ, ତେବେ ସେ ବରଂ ମର୍ହଟ୍ଟା ଇତିହାସର ସ୍ପଷ୍ଟ-ବାକ୍ ବିଚାରପତି ଶ୍ୟାମ ଶାସ୍ତ୍ରୀ ପରି ଓଡ଼ିଶା ଇତିହାସର ଏକ ପରମ ପୁରୁଷ ହୋଇ ଠିଆହୋଇଥାନ୍ତେ। ସେ ରାଜସମର୍ଥନ ଯୋଗୁଁ ରାଜଗୁରୁ ପ୍ରଚୁର ଧନ-ସମ୍ପତ୍ତି ପାଇଲେ ସତ; କିନ୍ତୁ ତା'ର କି ଐତିହାସିକ ବା ମାନବିକ ମୂଲ୍ୟ ?

କିନ୍ତୁ ଧର୍ମାନ୍ତର ଗ୍ରହଣ, ସୁବାଦାରଙ୍କ ବିରାଦର ହେବା ଅଥବା ସୁପଣ୍ଡିତ ରାଜଗୁରୁଙ୍କ ଶାସ୍ତ୍ରୀୟ ସପକ୍ଷତା, କିଛିହିଁ ରାମଚନ୍ଦ୍ରଦେବଙ୍କୁ ରକ୍ଷା କରିପାରି ନଥିଲା। ସେ ନରସିଂହପୁରର ଏକ ଜଙ୍ଗଲ ଗ୍ରାମରେ ଶେଷରେ ଆତ୍ମହତ୍ୟା କରି ମଲେ । ରୂପସୀ ଜବନୀ ରାଣୀ ସଉରିଆ ସ୍ୱାମୀ ପ୍ରତି ଅନୁରକ୍ତା ରହି ସହମରଣ ବରଣ କରିଥିବା ଯଦି ସତ୍ୟ ହୋଇଥାଏ (ଯେପରି ଚକ୍ରଧର ମହାପାତ୍ରେ ବର୍ଣ୍ଣନା କରିଛନ୍ତି) ତେବେ ମନେକରିବାକୁ ହେବ ଯେ ସେହି ହତଭାଗ୍ୟ ଗଜପତିଙ୍କ ସମଗ୍ର ଜୀବନରେ ସେହି ବୋଧହୁଏ ଥିଲା ଏକମାତ୍ର ସ୍ପୃହଣୀୟ ସୌଭାଗ୍ୟ ।

**ନୀଳଶୈଳ–**

କିନ୍ତୁ ଏ ସମ୍ପର୍କରେ ଏହାକୁ ଶେଷକଥା ବୋଲି ମନେନକରି ସଂପୃକ୍ତ ସମସ୍ତେ ଆହୁରି ଅନୁସନ୍ଧାନ କରି ଏକ ଅଧିକ ନିର୍ଭରଯୋଗ୍ୟ ଗାଥା ଛାଡ଼ିଯିବାକୁ ଅନୁରୋଧ । ଆମେ କେତେଗୁଡ଼ିଏ ମିଥ୍ୟା ଉପରେ, ନାହିଁ ଇତିହାସ ବା ନାହିଁ ଉପନ୍ୟାସ ବା

କାବ୍ୟ-କବିତା, କିଛିହେଲେ ଠିଆକରି ପାରିବା ନାହିଁ ।

ଲେଖକର ପୁଣି ଆଶଙ୍କା, ଶ୍ରୀ ମହାନ୍ତିଙ୍କ 'ନୀଳଶୈଳ' ଉପନ୍ୟାସଟି ବହୁ ପରିମାଣରେ ତା'ର ଐତିହାସିକତା ମଧ୍ୟ ହରାଇଛି, କେବଳ ତା'ର ଭାଷା ଯୋଗୁଁ । ଦୁଇଶହ ବର୍ଷ ତଳକଥା ଛାଡ଼ିଦିଅ, ତିରିଶବର୍ଷ ତଳେ ମଧ୍ୟ ଇଂରାଜୀ ନଜାଣିଥିବା ଓଡ଼ିଆଏ ଏ ବହିରେ ଯେମିତି କଥାଭାଷା ହେଉଛନ୍ତି, ସେପରି ଆଦୌ ହେଉନଥିଲେ । ଏ ବହିର କଥୋପକଥନ, ଶ୍ରୀ ମହାନ୍ତିଙ୍କ ଡ୍ରଇଂରୁମ୍‌ରେ ବସି ଚା'ପାନ ଭିତରେ ଶ୍ରୀ ମହାନ୍ତି ଓ ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ କଥୋପକଥନ ଛଡ଼ା ଆଉ କିଛି ନୋହିପାରେ। ଫକୀରମୋହନଙ୍କ ମରାଠା ପ୍ରତିନିଧି ଶିଉଶଙ୍କର ମାଳବୀର ଓ ରାଇବଣିଆ ଦୁର୍ଗର ସଭାପଣ୍ଡିତ ବନମାଳୀ ବାଚସ୍ପତିଙ୍କ ଯୁକ୍ତିତର୍କ ପ୍ରତି ସୁପାଠକ ଶ୍ରୀ ମହାନ୍ତିଙ୍କ ଦୃଷ୍ଟି ଆକର୍ଷଣ କରେ । ଶ୍ରୀ ମହାନ୍ତିଙ୍କ 'ନୀଳଶୈଳ'ର ଐତିହାସିକ 'ର-ମେଟେରିଆଲ ବା କଞ୍ଚାମାଲ', ପ୍ରଚୁର । ତା' ତୁଳନାରେ ସମଗ୍ର 'ଲଛମା'ରେ କେବଳ ଭାସ୍କର ପଣ୍ଡିତ ଓ ଆଲିବର୍ଦ୍ଦୀ ଖାଁ ଏହି ଦୁଇଟି ନାଁ ଛଡ଼ା ଆଉ ଐତିହାସିକ ଉପାଦାନ କ'ଣ ଥିଲା ? ତେଣୁ ଲଛମାରେ ବାରମ୍ବାର ରଣବିଧ୍ୱସ୍ତ ଏକ ରାଜ୍ୟର ପ୍ରତୀକରୂପେ, ସୁବର୍ଣ୍ଣରେଖା-ପରବର୍ତ୍ତୀ ମଧୁମଲକାନ୍ଥୀ-ଗାଁର ବର୍ଣ୍ଣନା ଏବଂ ରଣବିଧ୍ୱସ୍ତ ଏକ ବିରାଟ ଜାତିର କରୁଣତର ପ୍ରତୀକରୂପେ ଜଗାଫତେ ସିଂ-ମା'ର ଚିତ୍ର ଆଗରେ ଆମେ ସ୍ତବ୍ଧ ହୋଇ ଠିଆ ହେବାକୁ ବାଧ୍ୟ ହେଉ । ଭାଷା, ଚରିତ୍ର, ସିଚୁଏସନ୍ ଓ ଘଟଣାବଳିର ଭୌଗୋଳିକ ପରିପ୍ରେକ୍ଷିତରେ, ପୁଙ୍ଖାନୁପୁଙ୍ଖ ଅବିକଳତା ଇତ୍ୟାଦି ନେଇ, 'ଲଛମା' ସତ୍ୟରେ ତେଣୁ ଇତିହାସର ଜୀବନ୍ତ ପୁନରାବର୍ତ୍ତନ ହୋଇଉଠିଛି । ପରାସ୍ତ-ପଳାୟିତ-ଅସହାୟ ବଙ୍ଗ-ସୁବାଦାର ଆଲୀବର୍ଦ୍ଦିଙ୍କର ଶିଶୁ-ନାତି ସିରାଜଉଦ୍ଦୌଲାଙ୍କୁ ଧରି ରାତ୍ରିର ଅନ୍ଧକାରରେ ଅବହେଳିତ ସେନାପତି ମୁସ୍ତାଫାର ଶିବିରକୁ ଅଣ୍ଡାଳି ଅଣ୍ଡାଳି ଯିବାର କରୁଣ-ମହନୀୟ ଦୃଶ୍ୟ ମଧ୍ୟ ସତ୍ୟରେ ଅବିସ୍ମରଣୀୟ । ଶ୍ରୀ ମହାନ୍ତିଙ୍କ 'ନୀଳଶୈଳ'ରେ ଏ ପ୍ରକାର ମାନବିକ ମହନୀୟତାର ଅବକାଶହିଁ ନାହିଁ ।

ଭାଷା ଓ ସିଚୁଏସନ୍ ପରି, ଭୂଗୋଳ ମଧ୍ୟ ଶ୍ରୀ ମହାନ୍ତିଙ୍କୁ ଭ୍ରମରେ ପକାଇଛି ବୋଲି ମନେହୁଏ । ସେ ଧରିନେଇଛନ୍ତି ଯେ, "ଝାଉଁ" ଏ ଦେଶର ଗଛ । ଅର୍ଥାତ୍ ଓଡ଼ିଶାର ସମୁଦ୍ର-ବେଳାରେ ଝାଉଁବନ ରାମଚନ୍ଦ୍ରଦେବଙ୍କ ସମୟରେ ମଧ୍ୟ ଏବ ପରି ବଂଶୀବାଦନ କରୁଥିଲା । ଝାଉଁ ଦକ୍ଷିଣ-ପଶ୍ଚିମ ଏସିଆରୁ ଇଂରେଜମାନେ ଏ ଦେଶକୁ ଆଣିଲେ। କୋଣାର୍କ ଆଉ ଯେପରି ବାଲିରେ ପୋତି ନ ହୁଏ ସେଥିପାଇଁ ତା' ଚାରିପାଖେ ଲର୍ଡ଼ କର୍ଜନଙ୍କ ସଜେଶନ୍‌ରେ କୋଣାର୍କ ବେଢ଼ା

ଚାରିପଟେ ଝାଉଁ-ବୀଥିକା ବିଗତ ଶତାବ୍ଦୀରେ ଠିଆକରାଗଲା । ଆମର ପ୍ରାଚୀନ ସାହିତ୍ୟରେ କୌଣସିଠାରେ ଝାଉଁର ଉଲ୍ଲେଖ ନାହିଁ । ଲେଖକର ଗାଁ-ଅଞ୍ଚଳରେ ଆମ ଜାଣତରେ ହିଁ ଝାଉଁ ତୋଟା ସବୁ ଏକ ଲାଭଜନକ କାଠ ଭାବରେ ଏବେ ଠିଆ ହୋଇଛନ୍ତି । ଏହାର ଦକ୍ଷିଣ-ପୂର୍ବ-ଏସିଆ ନାମରୁ ହିଁ ଏହା ଆମ ତୁଣ୍ଡରେ 'ଝାଉଁ' ହୋଇଉଠିଛି ଏବଂ ଝାଉଁଗଛ ପରି ଶ୍ରୀ ମହାନ୍ତିଙ୍କ ଉପନ୍ୟାସବର୍ଣ୍ଣିତ ଅନେକ ସ୍ଥାନ ମଧ୍ୟ ଏହି ଲେଖକର ଜନ୍ମାଞ୍ଚଳରେ । ତେଣୁ ଏ ଉପନ୍ୟାସରେ ବର୍ଣ୍ଣିତ ସ୍ଥାନଗୁଡ଼ିକ ସମ୍ବନ୍ଧରେ ସେ କିଛି କହିପାରେ । ମଞ୍ଜୁସା-ବ୍ରହ୍ମପୁର ଓ ରସକୁଦୀ ଏହି ଦୁଇ ଗାଁ କି ଏତେ ପାଖାପାଖି, ଯେପରି ସେ ବର୍ଣ୍ଣନା କରିଛନ୍ତି ? ମାଳୁଦ ନିକଟରେ କନ୍ଦାଖାଇ ବୋଲି ଚିଲିକାର ପୂର୍ବେ ଏକ ମୁହାଣ ଥିଲା । ସେ ମୁହାଣ ପୋତିହୋଇଯାଇଛି । ନିକଟକାଳ ପର୍ଯ୍ୟନ୍ତ ଶେଷ ଚିହ୍ନ ଥିଲା କନ୍ଦାଖାଇ ଗଣ୍ଡ। ତାହା ବି ଏବେ ପୋତିହୋଇଗଲାଣି। ତେବେ ରାମଚନ୍ଦ୍ର ଦେବଙ୍କ ସମୟରେ ତାହା ପାରହେବାକୁ ନାଆ ନିତାନ୍ତ ଆବଶ୍ୟକ ହେଉଥିବ। ଶ୍ରୀ ମହାନ୍ତି ଏହି ''କନ୍ଦାଖାଇ ଗଣ୍ଡକୁ'' 'କନ୍ଦା ନଈ' କହିଛନ୍ତି; କିନ୍ତୁ ସମଗ୍ର ପାରିକୁଦ ମାଳୁଦରେ ପ୍ରକୃତ ଅଞ୍ଚଳରେ କୌଣସି ହେଲେ ''ନଈ'' ନାହିଁ। ତାଙ୍କ ବର୍ଣ୍ଣିତ ମାଳକୁଦା ଗାଁଟି ଏବେ ଜନହୀନ; କିନ୍ତୁ ତାହା ଲେଖକର ଗାଁର ଅଦୂରରେ, ଚିଲିକା କୂଳରେ ଥିଲା, ତେଣୁ ଛତ୍ରଗଡ଼ରୁ ପୁରୀ ପଳାଇବାକୁ ବସିଥିବା ରାମଚନ୍ଦ୍ରଦେବ ସେ ମାଳକୁଦା ଗାଁକୁ ଯିବାର କୌଣସି ସମ୍ଭାବନା ନାହିଁ। ଗଞ୍ଜାମରେ ଅଶ୍ୱାରୋହୀ ରାମଚନ୍ଦ୍ର ଦେବ ପୁରୀ ପଳେଇବା ପାଇଁ ଡଙ୍ଗା ବା ଖୋଜିଲେ କାହିଁକି ଜଣାଯାଉ ନାହିଁ। ଋଷିକୁଲ୍ୟା ମୁହାଣ ସହିତ ଚିଲିକାକୁ ସଂଯୋଗ କରୁଥିବା କେନାଲ ଏବର ଘଟଣା। ତଥାପି ଗଞ୍ଜାମରୁ ପୁରୀ ଯିବାପାଇଁ ସମୁଦ୍ରବେଳାରେ ବେଳାରେ ଜଣେ ଲୋକ ଏବେ ବି ଶୁଖିଲା ଶୁଖିଲାରେ ପୁରୀରେ ଯାଇ ପହଞ୍ଚିବ– ଖାଲି ମାଣିକପାଟଣାଠି ଚିଲିକା ଡେଇଁଗଲେ ।

ରାମଚନ୍ଦ୍ରଦେବ ଅଶ୍ୱପୃଷ୍ଠରେ ରହି ସୁନ୍ଦରଭାବରେ ତାହା କରିପାରିଥାନ୍ତେ, ତାଙ୍କୁ ଛତ୍ରଗଡ଼ ଘାଟି ଆସି ଶତ୍ରୁ ହସ୍ତରେ ଧରା ଦେବାକୁ ଆଦୌ ପଡ଼ି ନଥାନ୍ତା । ଲେଖକର ଗ୍ରାମାଞ୍ଚଳରୁ ଏବେ ବି ଲୋକେ ଚାଉଳ ବା କାଠର ଶଗଡ଼ ନେଇ ଶୁଖିଲାଶୁଖିଲାରେ ଗଞ୍ଜାମ ବରହମପୁର, ଗୋପାଳପୁର ପର୍ଯ୍ୟନ୍ତ ଯାଆନ୍ତି ଓ ଆସନ୍ତି । ଅଶ୍ୱାରୋହୀ ରାମଚନ୍ଦ୍ରଦେବ ସୁନ୍ଦର ସେପରି କରି ପାରିଥାନ୍ତେ । ପୁଣି ଏଠି ପାରିବା ନ ପାରିବା କଥା ମଧ୍ୟ ଏକାନ୍ତ ଅପ୍ରାସଙ୍ଗିକ । କାରଣ ପୂର୍ବେ ଦକ୍ଷିଣ-ପଶ୍ଚିମ ଯାତ୍ରୀମାନଙ୍କପାଇଁ ପୁରୀ ଯିବାର ପ୍ରଧାନ ରାସ୍ତା ଥିଲା ଗଞ୍ଜାମଠାରୁ ଆରମ୍ଭହୋଇ ପୁରୀଠାରେ ଶେଷ ସମୁଦ୍ରତଣ୍ଡା । ସେତେବେଳେ ପ୍ରତି ଦଶ ମାଇଲରେ ସେଥିପାଇଁ ସମୁଦ୍ର ବେଳାରେ

ଢବା ଘର ସବୁ ଠିଆହୋଇଥିଲା । ସେ ସବୁର ଭଗ୍ନାବଶେଷ ଏବେ ବି ଅଛି । ଶ୍ରୀ ମହାନ୍ତି ବର୍ଣ୍ଣନା କରିଥିବା କାଞ୍ଚନୀ ନାମକ ଗଣିକାର ଏ କ୍ଷେତ୍ରରେ ବଦାନ୍ୟତା ଲେଖକର ଅଞ୍ଚଳରେ ସୁବିଦିତ । କାଞ୍ଚନୀ ଢବାସ୍ଥ କୂପଜଳର ସ୍ୱାଦ ବହୁ ଯାତ୍ରୀ ମୁଖରୁ ପିଲାଦିନୁ ଆମେ ଶୁଣିଆସିଛୁ । ତେଣୁ ଗଞ୍ଜାମରୁ ଅଶ୍ୱ ପୃଷ୍ଠରେ ହିଁ ପୁରୀ ପଳାଇବାପାଇଁ ଏ ପ୍ରକାର ପ୍ରଶସ୍ତ ତୈର୍ଥିକ ସୁବିଧା ଥିଲେହେଁ; ରାମଚନ୍ଦ୍ରଦେବ ସେଥିପାଇଁ ଗଞ୍ଜାମରେ ଡଙ୍ଗା ଖୋଜନ୍ତେ କିଆଁ, ବା ଛତ୍ରଗଡ଼ ଆସି ସେଠି ଲୁହା ପିଞ୍ଜରାରେ ଭର୍ତ୍ତି ହୁଅନ୍ତେ କିଆଁ ?

ଶ୍ରୀ ସୁରେନ୍ଦ୍ର ମହାନ୍ତି ଓ ଶ୍ରୀ ଚକ୍ରଧର ମହାପାତ୍ରଙ୍କର ଓଡ଼ିଆଜାତିପ୍ରତି ଗଭୀର ଶ୍ରଦ୍ଧା ସହିତ ସେ ଉଭୟଙ୍କର ଓଡ଼ିଆ ସାହିତ୍ୟକୁ ଅବିନଶ୍ୱର ମହତ୍ ଦାନପାଇଁ ଲେଖକ ସେମାନଙ୍କ ପ୍ରତି ଗଭୀରଭାବରେ ସଶ୍ରଦ୍ଧ । ଆଶାକରେ ଯେ ସେମାନେ ସେମାନଙ୍କର ଏକ ଉତ୍ତମ ସହୃଦୟ ପାଠକ-ଗ୍ରାହକର ଏଇ ସବୁ ଆଲୋଚନାକୁ ମୁକ୍ତ ଉଦାର ଚେତନାରେ ଗ୍ରହଣ କରିବେ । ଏହି ମୂର୍ଖ-ଅଧମ ଲେଖକ ନିଜର ଚରମ ଅଜ୍ଞତା ଓ ଅଦକ୍ଷତା ହେତୁ ତା'ର ଲେଖାଗୁଡ଼ିକୁ ବହୁଥର କଟାକଟି ଛାଟାଛଟି କରି କିପରି ସେଗୁଡ଼ିକ ପାଠକମାନଙ୍କ ନିକଟରେ ଅନ୍ତତଃ ଚଳନୀୟ ଭଦ୍ରତାର ସହିତ ଠିଆ-ହୋଇପାରିବେ, ତାହାର ଉତ୍କଟ ସାଧନା ଏ ପର୍ଯ୍ୟନ୍ତ କରିଆସିଛି; ଅଥଚ ମାସିକ ପତ୍ର ବା ଏନ୍‌ସାଇକ୍ଲୋପିଡ଼ିଆପାଇଁ ରଚନା ସବୁର ତତ୍ତ୍ୱାବଧାରଣ ଦାୟିତ୍ୱରେ ଥିଲାବେଳେ, ଯେଉଁମାନେ ଓଡ଼ିଆରେ ଲେଖା ଆରମ୍ଭ ମାତ୍ର କରିଛନ୍ତି, ସେମାନଙ୍କର ''ଆଜ୍ଞା, ଏ ପ୍ରବନ୍ଧରୁ ଗୋଟିଏ ଶବ୍ଦ ମଧ୍ୟ ଯେପରି ବାଦ ନ ଯାଏ''– ଏ ପ୍ରକାର ଦୃପ୍ତ ଅହମିକାନ୍ଧ ବାଣୀ ବହୁବାର ଶୁଣି ଏହି ଲେଖକ ମନେ ମନେ କେବଳ ସ୍ତମ୍ଭୀଭୂତ ହୋଇଥାଏ । ଶ୍ରୀ ମହାପାତ୍ର ଓ ଶ୍ରୀ ମହାନ୍ତି ଏହି ଲେଖକଠାରୁ ବିସ୍ତୃତତର ଜ୍ଞାନ, ମହତ୍ତର ଲେଖନୀର ଅଧିକାରୀ ଭାବରେ ହୁଏତ ସଂଶୋଧନ ବା ପରିବର୍ତ୍ତନରେ ହୁଏତ ଅଭ୍ୟସ୍ତ ନ ଥିବେ; କିନ୍ତୁ ଏହି ଲେଖକ ସେଥିରେ ବିଶ୍ୱାସୀ । ମନେରଖିବାକୁ ହେବ ଯେ ଟଲଷ୍ଟୟଙ୍କ ''ସମର ଓ ଶାନ୍ତି'' ନାମକ ବିରାଟ ଉପନ୍ୟାସଟି ଛପା ହେବା ପୂର୍ବରୁ ସାତଥର ସଂଶୋଧିତ ଓ ପରିବର୍ତ୍ତିତ ହୋଇଥିଲା । ଲେଖକର ବିଶ୍ୱାସ, ଶ୍ରୀ ମହାନ୍ତି ଓ ଶ୍ରୀ ମହାପାତ୍ରଙ୍କ ପୁସ୍ତକ, ଖାଣ୍ଟି ଐତିହାସିକ ସତ୍ୟ ଓ ଆଜି ୧୯୭୨ ଖ୍ରୀଷ୍ଟାବ୍ଦରେ ଯେତେବେଳେ ଅନ୍ୟ ଜାତି ଗ୍ରହ-ଉପଗ୍ରହରେ ଉପନିବେଶ ସ୍ଥାପନ କରିବାକୁ ବସିଲେଣି, ସେତେବେଳେ ସେମାନଙ୍କର ଏ ପ୍ରକାର ବହି ସବୁ କେଉଁ ଆଭିମୁଖ୍ୟ ଉପରେ ଆଖି ରଖି ଲେଖାହେବାର କଥା, ସେ ସବୁକୁ ବିଚାରକୁ ନେଇ, ଏମାନଙ୍କୁ ଯଥୋଚିତ ସଂଶୋଧିତ ଓ ପରିବର୍ତ୍ତିତ କରିନେଲେ, ସେଗୁଡ଼ିକର ମହତ୍ତ୍ୱ ବଢ଼ନ୍ତା ।

**ଅଜ୍ଞାତ ଥିଲା କି ?–**

ଦୃଷ୍ଟାନ୍ତ ସ୍ୱରୂପ, ଶ୍ରୀ ଚକ୍ରଧର ମହାପାତ୍ରେ ଓଡ଼ିଶା ଇତିହାସର ଯେଉଁ 'ଅଜ୍ଞାତ' ଅଧ୍ୟାୟ ପ୍ରଥମ କରି 'ଜ୍ଞାତ' କଲେ ବୋଲି ଧରାଯିବ, ତାହା ମଧ୍ୟ କାହାକୁ ତ 'ଅଜଣା' ନଥିଲା । ଅର୍ଥାତ୍ ଖୋର୍ଦ୍ଧାର ଦ୍ୱିତୀୟ ରାମଚନ୍ଦ୍ରଦେବ ଯବନୀ ବିବାହ କରି ଯବନ ନାମ ଗ୍ରହଣ କରି ମହତ୍ୱ-ମର୍ଯ୍ୟାଦା ହରାଇଥିବାଟା କୃପାସିନ୍ଧୁ ମିଶ୍ର ବା ଡକ୍ଟର ମହତାବ୍, ଉଭୟଙ୍କ ଓଡ଼ିଶା-ଇତିହାସରେ ଅଛି । ମାଦଳାପାଞ୍ଜିରେ ମଧ୍ୟ ଏକଥା ଉଲ୍ଲେଖ ଅଛି, ଯଦିବା, କେଦାରନାଥ ଏହି ଘଟଣାର ଐତିହାସିକତାରେ ଯଥାର୍ଥ ସନ୍ଦେହ ପ୍ରକାଶ କରିଛନ୍ତି । ମୋଟ ଉପରେ ଅବଶ୍ୟ ଘଟଣାଟି ଆଦୌ ଅବିଦିତ ନଥିଲା । କେବଳ ଅଜ୍ଞାତ ଥିଲା ଯେ ଚକ୍ରଧର ମହାପାତ୍ରେ ଓଡ଼ିଶାର ରାଜଗୁରୁ ବା ମୁଖ୍ୟମନ୍ତ୍ରୀଙ୍କ ବଂଶଧର । ଉତ୍ତମ କଥା; କିନ୍ତୁ ଏହି ଘଟଣା ସହିତ କୌଣସି ଜାତୀୟ ଗୌରବ ଜଡ଼ିତ ଥିଲେ ସିନା ଏହା ଜାତୀୟ ଇତିହାସରେ ଅଧ୍ୟାୟ ହେବା ଦାବୀ କରିପାରେ । ବହିଟାଯାକ କେବଳ ଶାସନୀ ବ୍ରାହ୍ମଣଙ୍କର ନିଜ ଆତ୍ମ-ବଡ଼ିମା ଓ ସ୍ୱାର୍ଥର ସଂକୀର୍ଣ୍ଣ-ପରିସର ଭିତରେ ଧସ୍ତାଧସ୍ତିର ବର୍ଣ୍ଣନା । 'ନୀଳଶୈଳ' ଓ 'ଅଜ୍ଞାତ ଅଧ୍ୟାୟ' ଉଭୟ ପୁସ୍ତକରୁ କୌଣସିଟିରେ ହେଲେ ମାନବୀୟ ମହନୀୟତାର ଆଦର୍ଶ ଦେଖିବାକୁ ମିଳେନା । ମହାପାତ୍ର ଚକ୍ରଧର ଓଡ଼ିଶାର ଅଧଃପତନ ପାଇଁ ବିଚାରା କାଶୀ ମିଶ୍ରଙ୍କୁ ଦାୟୀ କରିଛନ୍ତି; କିନ୍ତୁ ତାଙ୍କ ପୂର୍ବପୁରୁଷ ଜୀବଦେବ ପଣ୍ଡିତେ ତେବେ ଗଜପତିଙ୍କ କିପ୍ରକାର ମୁଖ୍ୟମନ୍ତ୍ରୀ ଥିଲେ ? ସେ ତ ମଧ୍ୟ ପ୍ରତାପରୁଦ୍ର ଦେବଙ୍କୁ ଯୁଦ୍ଧକ୍ଷେତ୍ରରେ ହିଁ 'ଭକ୍ତିଭାଗବତ' ଶୁଣାଉଥିଲେ ? ତେଣୁ ବିଚାରା କାଶୀମିଶ୍ର ତା' ତୁଳନାରେ କି ମନ୍ଦ କାମ କଲା ?

**ଜଗନ୍ନାଥ ଓ ଜାତୀୟ ଅଗ୍ରଗତି–**

ଜଗନ୍ନାଥ ମନ୍ଦିରଟା କୌଣସିମତେ ଯେ ରକ୍ଷାପାଇଯାଇଛି, ତାହା ଅବଶ୍ୟ ଓଡ଼ିଶା ଓ ଓଡ଼ିଆ ଜାତି ପକ୍ଷରେ ଆନନ୍ଦର କଥା; କିନ୍ତୁ ବାରମ୍ବାର ଲୁଣ୍ଠିତ, ପଳାୟିତ, ସ୍ଥାନାନ୍ତରିତ, ଲୁକ୍କାୟିତ ଓ ଅପମାନିତ ଏହି ଦେବତା ଘେନି ଆମର ସତ୍ୟରେ ଗର୍ବ କରିବାର କି କାରଣ ଅଛି ଲେଖକ ବୁଝିପାରୁ ନାହିଁ । ଶ୍ରୀ ମହାନ୍ତିଙ୍କ ପରି ଭୂୟୋପଠନ ଭୂୟୋଦର୍ଶନର ବୁଦ୍ଧିଜୀବୀ ଯାକୁ ଫେଣେଇ ଫେଣେଇ ବର୍ଣ୍ଣନା ପରିବର୍ତ୍ତେ ଯାଠୁ ବାସ୍ତବତର, ଆଧୁନିକତର ଓ ମହତ୍ତର କିଛି ଦେଇପାରିଥାନ୍ତେ ଓ ଦେବେ ବୋଲି ଲେଖକର ଦୃଢ଼ ବିଶ୍ୱାସ; ବରଂ ତାଙ୍କ କୋଟିର ବୁଦ୍ଧିଜୀବୀଙ୍କଠାରୁ ହିଁ ଲେଖକ ଆଶାକରିବ ଯେ ସେ ଜାତୀୟ ଅପମାନକୁ ଅପମାନ ବୋଲି ଜାତି ଆଗରେ ସାହସର ସହିତ ପରିବେଷିତ କରି, ତାରି ଦେଇ ଜାତିକି ଉଚିତ ମାର୍ଗ

ଦେଖାନ୍ତେ । ଯାତ୍ରୀ-ଟିକସ ବାବଦରେ ରେଭେନ୍ୟୁରୁ ବାର୍ଷିକ ୯ ଲକ୍ଷ ଟଙ୍କା ହରାଉ-ଥିବାରୁ, ସୁଶାସକ ଦ୍ୱିତୀୟ ମୁର୍ଶିଦ କୁଲୀଖାଁ, 'ନୀଳ-ଶୈଳ'ର ଅପନାୟକ ଦ୍ୱିତୀୟ ରାମଚନ୍ଦ୍ର ଦେବଙ୍କ ରାଜତ୍ୱର କାଳରେ ହିଁ, ଜଗନ୍ନାଥ ମନ୍ଦିର ଦୁଇବର୍ଷରୁ ଅଧିକ କାଳ ଜଗନ୍ନାଥ-ଶୂନ୍ୟ ହେବାପରେ, ମୁସଲମାନ ହୋଇ ମଧ୍ୟ ଆତ୍ମ-ଗୋପନକାରୀ ଜଗନ୍ନାଥଙ୍କୁ ଅଣାଇ ପୁରୀରେ ପୁନଃ ପ୍ରତିଷ୍ଠିତ କରାଇଥିଲେ । ଏହା ହିଁ କେଦାରଙ୍କ ପୁସ୍ତକର ଐତିହାସିକ ସତ୍ୟ; ତେଣୁ ହିନ୍ଦୁଧର୍ମର ବୀର କିଏ– ମୁର୍ଶିଦକୁଲୀ ନା ରାମଚନ୍ଦ୍ରଦେବ ?

ବରଂ ନୀଳ-ଶୈଳ ପୁସ୍ତକର ଏହି ନାମ ଶୁଣି, ଲେଖକ ଭାବିଥିଲା ଯେ ଶ୍ରୀ ମହାନ୍ତିଙ୍କ ପରି ଉଚ୍ଚକୋଟିର ବୁଦ୍ଧିଜୀବୀ, ଜଗନ୍ନାଥପୀଠକୁ କାହିଁକି ନୀଳାଦ୍ରି ବା ନୀଳଶୈଳ କୁହାଯାଉଛି ତା'ର କିଛି ତତ୍ତ୍ୱ ବ୍ୟାଖ୍ୟାନ କରିଥିବେ । କାରଣ, ପୁରୀରେ ନୀଳ କେବଳ ସମୁଦ୍ରରେ ଅଛି । ଜଗନ୍ନାଥ ମନ୍ଦିରରେ ନୀଳର କିଛି ନାହିଁ – ସେଠି ସବୁ ଧଳା । ନାହିଁ ମଧ୍ୟ ସେଠି କୌଣସି ଶୈଳ । ତେଣୁ ଜଗନ୍ନାଥଙ୍କର ନୀଳାଦ୍ରିବିହାରୀ ନାମ ଅତ୍ୟନ୍ତ ରହସ୍ୟମୟ; ଅଥଚ ଚିନ୍ତାଭାବରୁ ସମସ୍ତେ ତାହା ମାନିନେଉଛନ୍ତି, ଏକ ଗଡ୍‌ଡଳିକା ପ୍ରବାହରେ ।

ଜଗନ୍ନାଥଙ୍କ ଉପରେ ଲିଖିତ ଏକ ଇଂରାଜୀ ପ୍ରବନ୍ଧରେ ଏହି ଲେଖକ କିନ୍ତୁ ଏହି ଜିଜ୍ଞାସାର ସମ୍ମୁଖୀନ ହେବାକୁ ସାହସ କରିଛି ।

ସେ ଯାହାହେଉ, ମୋଟଉପରେ, ଅନ୍ୟ ମନୁଷ୍ୟମାନେ ଯେଉଁ କାଳରେ ମହାନ୍ତରୀକ୍ଷରେ ଗ୍ରହ-ନକ୍ଷତ୍ରମାନଙ୍କରେ ଉପନିବେଶ କରିବାକୁ ଉଡ୍‌ଡୀୟମାନ, ସେତେବେଳେ ଓଡ଼ିଆ ଜାତୀୟତା ନାମରେ ବଚ୍ଛସ ଗୋତ୍ର, ନାଗସ ଗୋତ୍ର ବା ଲୁପ୍ତ ଗୌରବ ବ୍ରାହ୍ମଣ ଶାସକମାନଙ୍କର ଦୀର୍ଘାଲୋଚନା ବା ଏକ ବାରମ୍ବାର ପରାଜିତ ରାଜାକୁ ହିନ୍ଦୁଧର୍ମର ବୀରପୁରୁଷ କରି ଠିଆ କରେଇବା, କେଉଁ ସ୍ତରରେ ଆମକୁ ରଖିବ, ତାହା ସମସ୍ତେ ଚିନ୍ତା କରିବା ଉଚିତ୍ ନୁହେଁ କି ? ଏବଂ ଯାହା ଜାତି ଭାବରେ ଆମକୁ ଆଜି ଆଗେଇନନେବ, ତାହା ପୁସ୍ତକ ହୋଇପାରେ, କିନ୍ତୁ ଉଚ୍ଚ-ସାହିତ୍ୟ ହେବ କି ନା ତାହା ଭାବିବାର କଥା ନୁହେଁ କି ?

——

# ଶ୍ରୀ ଅରବିନ୍ଦ ଓ ମୁଁ

ଜଣେ ଭାରତୀୟ ଓ ଜଣେ ହିନ୍ଦୁ ଭାବରେ ଏହା ପ୍ରକାଶ କରିବାକୁ ମୋର କୌଣସି ଲଜ୍ଜା-ସଂକୋଚ ନାହିଁ ଯେ, ମୋ' ଭିତରେ, ଏ ସଂସାରରେ ଯାହା ଗୂଢ଼ ଓ ରହସ୍ୟମୟ ଅଛି, ତା' ପ୍ରତି ରହିଛି ଏକ ସହଜାତ ଦୁର୍ବାର ଆସକ୍ତି । ଯାହା ପୂର୍ବେ ଥିଲା ଝାପ୍‌ସା ବା ଅନିର୍ଦ୍ଦିଷ୍ଟ, ବୟସର ବୃଦ୍ଧି ସଙ୍ଗେ ଆଜି ତାହା ହୋଇପଡ଼ିଛି ଦୃଢ଼ଭିତ୍ତିକ । କ୍ରମେ, ଲେଖକର ଚିତ୍ତରେ ଏହି ଧାରଣା ବଢ଼ିଚାଲିଛି ଯେ, ଗୂଢ଼ ଓ ରହସ୍ୟ ପ୍ରତି ଅନୁଧ୍ୟାନ କେବଳ ଯେ ମାନବିକ ବ୍ୟକ୍ତିତ୍ୱର ପରିପୂର୍ଣ୍ଣ ଅଭିବୃଦ୍ଧି ପାଇଁ ଅତ୍ୟାବଶ୍ୟକ ତାହା ନୁହେଁ, ଏହା ମଧ୍ୟ ଏକାନ୍ତ ଆବଶ୍ୟକ, ଆମ ସାଂସାରିକ ଦୈନନ୍ଦିନ ଜୀବନର ପରିଚ୍ଛନ୍ନ ଓ ଯୁକ୍ତିଯୁକ୍ତ ପରିଚାଳନା ପାଇଁ ।

ଏବଂ ଯାହାର ଚିତ୍ତରାଜ୍ୟରେ ଜୀବନର ଗୁପ୍ତ ଓ ରହସ୍ୟମୟ ଅଂଶ ପାଇଁ ଏପ୍ରକାର ଦୁର୍ବାର ଅଭିପ୍ସା ଜାଗ୍ରତ ରହିଛି, ସେ ଯେ ଶ୍ରୀ ଅରବିନ୍ଦଙ୍କର ଜୀବନ, ବ୍ୟକ୍ତିତ୍ୱ, ସାଧନା, ରଚନାବଳି ସହିତ ପରିଚିତ ହେବ, ଏଥିରେ ମଧ୍ୟ ବିସ୍ମୟର କାରଣ ନାହିଁ । କାରଣ ଶ୍ରୀ ଅରବିନ୍ଦହିଁ ଅତ୍ୟନ୍ତ ଦକ୍ଷତାର ସହିତ, ଭାରତର ରହସ୍ୟସନ୍ଧାନୀ ପ୍ରାଚୀନ ଯୋଗ-ବିଦ୍ୟାକୁ ବୈଜ୍ଞାନିକ ବିବର୍ତ୍ତନବାଦ ଦେଇ ଏ ଯୁଗର ମଣିଷର ଆବଶ୍ୟକତାନୁଯାୟୀ ନୂତନ କରି ଗଢ଼ି ଠିଆକରାଇଛନ୍ତି ଏବଂ ତାକୁ ଏକାଧାରରେ ସଂପୃକ୍ତ କରିଯାଇଛନ୍ତି ବିଂଶଶତାବ୍ଦୀର୍ ବିଜ୍ଞାନ ଓ ଆମର ସୁପ୍ରାଚୀନ ଐତିହ୍ୟ ଓ ପ୍ରଜ୍ଞାମାନଙ୍କ ସହିତ ।

ଭାରତୀୟ ଯୋଗ-ବିଜ୍ଞାନ କେବେହେଲେ ନିଜକୁ ରିଭଲେଶନ୍ ବା ଅପୌରୁ-ଷେୟ ଜ୍ଞାନ ବୋଲି ପ୍ରଚାର କରିନାହିଁ । ଏ ବିଜ୍ଞାନକୁ ସ୍ୱୟଂ ଈଶ୍ୱର କାହାକୁ ହଠାତ୍ ଶୁଣାଇ ଯାଇ ନାହାନ୍ତି । ନିଉଟନ୍‌ଙ୍କ ମାଧ୍ୟାକର୍ଷଣ ବା ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକବାଦ ଓ ସେହିପରି ଛୋଟ ବଡ଼ ସକଳ ବୈଜ୍ଞାନିକ ସତ୍ୟର ଆବିଷ୍କାର ପରି, ଯୋଗ ହୁଏତ କୌଣସି ପ୍ରାଗୈତିହାସିକ କାଳର ଅସାଧାରଣ ପ୍ରତିଭା ଭିତରେ ଏକ ବିଦ୍ୟୁତ୍-

---

* ଜାତୀୟ ସାହିତ୍ୟ ଆକାଡେମୀ ପକ୍ଷରୁ *Indian Literature* ବୋଲି ଏକ ମାଗାଜିନ୍ ପ୍ରକାଶିତ ହୁଏ । ଶ୍ରୀ ଅରବିନ୍ଦ ଶତବାର୍ଷିକୀ ବେଳେ ତା'ର ଏକ ଶ୍ରୀ ଅରବିନ୍ଦ-ସଂଖ୍ୟା ପ୍ରକାଶ ପାଇଥିଲା । ସଂପାଦକଙ୍କ ଅନୁରୋଧରେ ଲେଖକ ସେହି ସଂଖ୍ୟା ପାଇଁ ଯେଉଁ ଇଂରାଜୀ ପ୍ରବନ୍ଧ (ପ୍ରବନ୍ଧର ଟାଇଟ୍‌ଲ୍‌ଟି ସଂପାଦକଙ୍କର) ଦେଇଥିଲା, ତାରି ଭାବାନୁବାଦ ।

ଚଞ୍ଚଳ ଚୈତିକ ସ୍ଫୁରଣ । ସାତହଜାର ବର୍ଷରୁ-ଅଧିକ-ବୟସ ବୋଲି ଧରା ଯାଉଥିବା ମହେଞ୍ଜୋଦାର ସଭ୍ୟତାରେ ମଧ୍ୟ ଆମେ ଧ୍ୟାନମଗ୍ନ ଯୋଗୀଙ୍କୁ ଭେଟୁ । ତେଣୁ ଧରିନେବାକୁ ହେବ ଯେ, ଯୋଗ-ବିଜ୍ଞାନ ଏକାନ୍ତରେ ପ୍ରାକ୍-ବୈଦିକ। ଏବଂ ସେହିକାଳରୁ ଏ ପର୍ଯ୍ୟନ୍ତ ଏହି ଶତ ଶତ ଶତାବ୍ଦୀ ଧରି, ପୃଥିବୀର ସକଳ ଦେଶ ମଧ୍ୟରେ, ଏକା ଭାରତବର୍ଷ ନିରବଚ୍ଛିନ୍ନ ଭାବରେ, ପରୀକ୍ଷା ଚଳାଇ ଆସିଛି, କିପରି ସର୍ବବ୍ୟାପ୍ତ ଅନିତ୍ୟତା ଭିତରେହିଁ, ମନୁଷ୍ୟ ତା'ର ବ୍ୟକ୍ତିତ୍ୱକୁ ଉପଭୋଗ୍ୟ, ସୁନ୍ଦର ଓ ହେତୁମନ୍ତ ଭାବରେ ଗଢ଼ିପାରିବ । ଭାରତର ଏହି ବ୍ୟକ୍ତିତ୍ୱ-ଗଠନ ପ୍ରକ୍ରିୟାରେ ପ୍ରଧାନ ଉପାଦାନ ହେଲା ସମତା ଓ ସୁସଂଗତି, ଯାହା ଭାରତବର୍ଷର ସ୍ୱତନ୍ତ୍ର ବ୍ୟାୟାମ-ପଦ୍ଧତି, ତା'ର ସ୍ୱତନ୍ତ୍ର ଚିକିତ୍ସା-ଶାସ୍ତ୍ର, ତା'ର ଦୈନନ୍ଦିନ ଧର୍ମାଚରଣ ଏବଂ ତା'ର ସାହିତ୍ୟରେ ମଧ୍ୟ ବିଚ୍ଛୁରିତ ହୋଇ ରହିଛି । ଏପରିକି, ହିନ୍ଦୁର ମୃତେଷ୍ଟି ଆଚାର ଭିତରେ ମଧ୍ୟ ଯେଉଁ ବିଶ୍ୱବ୍ୟାପୀ ମହାପ୍ରାଣତା ଅନୁପମ ସୌନ୍ଦର୍ଯ୍ୟମୟ ବାକ୍ୟାବଳିରେ ଫୁଟି ଉଠେ, ତାହା ଖୁବ୍ କମ୍ ଲୋକେ ଅବବୋଧକୁ ଆଣିଥାନ୍ତି । ହିନ୍ଦୁ ଗୃହସ୍ଥ, ତା'ର ଆତ୍ମୀୟ ପ୍ରେତର ସନ୍ତୋଷ ପାଇଁ ଜଳାଞ୍ଜଳି ଢାଳିଲାବେଳେ, ଜାତି-ଧର୍ମ-ନିର୍ବିଶେଷରେ ଅନ୍ୟ ସକଳ ପ୍ରେତାତ୍ମାମାନଙ୍କର କେବଳ ନୁହେଁ, ଜଳ-ଆକାଶ-ପୃଥିବୀସ୍ଥ ସକଳ ପ୍ରକାର ଜୀବସଂଘର ଆତ୍ମିକ ସନ୍ତୋଷ ପାଇଁ ମଧ୍ୟ ସେ ମନ୍ତ୍ରୋଚ୍ଚାରଣ ପୂର୍ବକ ଜଳ ଢାଳିଥାଏ । ପୃଥିବୀର ସକଳ ସମାଜରେ ଯେତେପ୍ରକାର ମୃତଜନ ସତ୍କାରବିଧି ପ୍ରଚଳିତ ଅଛି, ସେସବୁ ଭିତରେ ହିନ୍ଦୁର ମୃତ ସତ୍କାରବିଧି ଯେ ଉଦାରତମ ଓ ସୁନ୍ଦରତମ, ଏଥିରେ ମତଭେଦ ନଥାଇପାରେ ।

କିନ୍ତୁ ହିନ୍ଦୁର ଏହିସବୁ ଉଦାର, ମହତ୍ ଆଚାର ମଧ୍ୟ, କୌଣସି ଈଶ୍ୱର ତଳକୁ ଓହ୍ଲାଇ ଆସି, କେବଳ ତାକୁଇ ବତେଇଦେଇ ଯାଇଛନ୍ତି ବୋଲି ସମଗ୍ର ଭାରତୀୟ ସାହିତ୍ୟରେ କୌଣସିଠାରେ ଦାବୀ କରାଯାଇନାହିଁ । ଏ ସବୁ ହେଲା ସ୍ମୃତିର ବିଷୟ । ଅର୍ଥାତ୍ ଦୈନନ୍ଦିନ ଜୀବନରେ ସେହିସବୁ ସ୍ମରଣୀୟ ଓ କରଣୀୟ ଆଚାର, ଯାହା କି ଯୁଗେ ଯୁଗେ, ପ୍ରତି ଯୁଗର ସାମାଜିକ ଆବଶ୍ୟକତାନୁଯାୟୀ, ଆମର ସମାଜ କଲ୍ୟାଣକାମୀ ମହାଜନମାନେ ବାରମ୍ବାର ବଦଳାଇଯାଇଛନ୍ତି । ପ୍ରାଗୈତିହାସିକ କାଳରେ ଏହା ମନୁଙ୍କଠାରୁ ଆରମ୍ଭ ହୋଇଥିଲା । କିନ୍ତୁ ସ୍ମୃତିମାନଙ୍କର ରଚନା ନିରବଚ୍ଛିନ୍ନ ଭାବରେ ଚାଲିଆସିଛି, ଆମର ଏହି ବିଂଶ ଶତାବ୍ଦି ପର୍ଯ୍ୟନ୍ତ । ପଶ୍ଚିମୀ ସଭ୍ୟତାର ସ୍ପର୍ଶରେ ଆସି, ଭାରତୀୟ ସାମାଜିକ ଜୀବନ ଏପରି ଅରାଜକତାରେ ଆସି ପହଞ୍ଚିଲା, ଯାହା ଘଟି ନଥିଲା ଇସ୍‌ଲାମର ନିର୍ମମ ଆଘାତରେ । ତେଣୁ ମନୁ-ପରାଶର-ଯାଜ୍ଞବଲ୍‌କ୍ୟ-ପରଂପରାରେ, ଆମ ପୁରୀର ମହାମହୋପାଧ୍ୟାୟ ପଣ୍ଡିତ

ସଦାଶିବ କାବ୍ୟକଣ୍ଠ ନୂତନ-ଯୁଗୋପଯୋଗୀ, ଏକ ନବ-ସ୍ମୃତି ଦେଇଯାଇଛନ୍ତି । ଯାହାର ସୁନ୍ଦର ନାମଟି ହେଲା– କଲ୍ୟାପଦ ଧର୍ମସର୍ବସ୍ୱଂ ।

ଏହି 'ସ୍ମୃତି'ମାନଙ୍କ ପରି ଭାରତୀୟ ଯୋଗ-ବିଦ୍ୟାକୁ ମଧ୍ୟ ଧରିନେବାକୁ ହେବ ଏକାନ୍ତରେ ଏକ କ୍ରମବିବର୍ତ୍ତିତ ବିଜ୍ଞାନ ବୋଲି । ହୁଏତ, ଯାହା ଗୁରୁ-ଶିଷ୍ୟ-ପରଂପରାରେ ଭାରତରେ ବହୁକାଳ ଧରି ଚାଲିଆସିଥିଲା, ଅସାଧାରଣ ମନୋବିଜ୍ଞାନୀ ପାତଞ୍ଜଳି ସେହି ସବୁକୁହିଁ ଦେଇଗଲେ ଏକ ସୁପରୀକ୍ଷିତ ଶାସ୍ତ୍ରୀୟ ନିର୍ଦ୍ଦିଷ୍ଟତା ଓ ଲିଖିତ ଗୌରବ । ଗୃହ-ନିଷ୍କ୍ରମଣର ଅବ୍ୟବହିତ ପରେ, ବୁଦ୍ଧ ଗୌତମ ବହୁକାଳ ଧରି ଯୌଗିକ କୃଚ୍ଛ୍ର-ସାଧନା କରିଥିବାର ଓ କରି ବିଫଳତା ଅନୁଭବ କରିଥିବାର କୁହାଯାଏ । ଖୁବ୍ ସମ୍ଭବତଃ ଯୋଗ-ବିଜ୍ଞାନ ବୁଦ୍ଧଙ୍କ ସମୟକୁ ଶାଣିତ ରୂପ-ରେଖ ନେଇନଥିଲା ; ଖୁବ୍ ସମ୍ଭବତଃ ବୁଦ୍ଧ-ପର କାଳରେହିଁ ପତଂଜଳି ଗଭୀର ମନନ ଓ ପରୀକ୍ଷା-ନିରୀକ୍ଷା ଦେଇ, ଯୋଗ-ଦର୍ଶନକୁ ଏବର ପରିଚିତ ରୂପ ଦେଇଯାଇଛନ୍ତି ।

'ଯୋଗ' ହେଲା ମୁଖ୍ୟତଃ ଆଧ୍ୟାତ୍ମିକ ସାଧନା । କିନ୍ତୁ କ୍ରମେ ବହୁତର ଲୋକ ଯୋଗ ପ୍ରତି ଆକୃଷ୍ଟ ହେଲେ, ଆଧ୍ୟାତ୍ମିକ ଅଧିଗମନ ପାଇଁ ଯେତେ ନୁହେଁ ଯେତେ ଯୋଗର କେତେକାଂଶର ଅଭ୍ୟାସ ଫଳରେ ଯେଉଁ ଆଧିଭୌତିକ ଶକ୍ତି ମିଳେ ତା'ରି ଲୋଭରେ । ଏହି 'ହଠଯୋଗ' ତେଣୁ ହୋଇଉଠିଲା ଏକ ଭୋଗ ଓ କ୍ଷମତାର ମାଧ୍ୟମ ଏବଂ ସେହି କ୍ରମେ ହୋଇଉଠିଲା ତତ୍-ସାଧନାର ଏକ ଅପରିହାର୍ଯ୍ୟ ଅଂଗ । ପରମହଂସ ରାମକୃଷ୍ଣ ତନ୍ତ୍ରର ଦିବ୍ୟ-ଭାଗୀୟ ସାଧନାରେ ହିଁ ସିଦ୍ଧିଲାଭ କରିଥିଲେ । ତଥାପି ପରେ ସେ ନିଜର ଶିଷ୍ୟମାନଙ୍କୁ ସେ ସବୁ ଭିତରେ ନ ପଶିବାକୁ ବାରଂବାର ସାବଧାନ କରିଯାଇଛନ୍ତି ଠିକ୍ ଯେପରି କରିଥିଲେ ଗୌତମ ବୁଦ୍ଧ, ଅଢ଼େଇ ହଜାର ବର୍ଷ ପୂର୍ବେ ।

କାରଣ, ଯୋଗର ତାତ୍ପର୍ଯ୍ୟ ଏହା ନୁହେଁ ଯେ, ମଣିଷ ତା' ମୁଣ୍ଡ ଉପରେ ଠିଆ ହୋଇପାରିବ ବା ଅବାଧରେ ନାଇଟ୍ରିକ୍ ଏସିଡ୍ ପିଇ ପାରିବ ବା ପାଣିରେ ଚାଲିପାରିବ । ଯୋଗ ଏକାନ୍ତରେ ଏକ ଆତ୍ମିକ-ଉନ୍ନୟନ-ସାଧନା ଯାହା ଫଳରେ କି ମନୁଷ୍ୟର ଚିତ୍ତ ବିଭ୍ରମକାରୀ ଇନ୍ଦ୍ରିୟଗୋଚରରୁ ମୁକ୍ତ ହୋଇ ସ୍ଥାନ ଓ କାଳର ସଂକୀର୍ଣ୍ଣ କାରାବାସରୁ ବାହାରି ଯାଇ ପାରିବ । ଯୋଗ ସ୍ଥାନ ଓ କାଳର ସଂକୀର୍ଣ୍ଣ ଚେତନାବଦ୍ଧତାରୁ ମନୁଷ୍ୟକୁ ଟେକିନେଇ ପାରେ ସ୍ଥାନକାଳାତୀତ ବିଶ୍ୱ-ଚେତନାକୁ, ଏବଂ କେବଳ ସେଇ ନେଇହିଁ ମନୁଷ୍ୟ ପାଇପାରେ ଦୁଃଖଜର୍ଜରିତ ସଂସାର-ଘୂର୍ଣ୍ଣନରୁ ତା'ର ଶେଷ ତ୍ରାଣ । ଯୋଗ ଏହିପରି ଭାବରେ କ୍ଷୁଦ୍ରକୁ ବିରାଟ ସାଥିରେ, ଅଳ୍ପକୁ ଭୂମା ସହିତ, ଅଂଶକୁ ପୂର୍ଣ୍ଣ ସହ, ବିନ୍ଦୁକୁ ସିନ୍ଧୁ ସହିତ ଯୁକ୍ତ କରିବାର ଉପାୟ-

ବୋଲିହିଁ, ତା'ର ନାମ ଯୋଗ । ସଭ୍ୟତାର ପ୍ରାରମ୍ଭରେ ମନୁଷ୍ୟର ଚିନ୍ତା କେବଳ ଯେ ଖୋଜୁଥିଲା ପାର୍ଥିବ ସୁଖ-ସମ୍ଭୋଗ ତା'ର ପ୍ରଚୁର ପ୍ରମାଣ ମିଳେ ଋଗ୍ ବେଦର ପ୍ରାର୍ଥନାବଳିରୁ । କିନ୍ତୁ ବହୁ ଶତାବ୍ଦୀର ଅଭିଜ୍ଞତା ଫଳରେ ସେହି ଭାରତୀୟ ଆତ୍ମା-ଚିତ୍କାର କରିଉଠିଲା– ପ୍ରକୃତ ସୁଖ ଅନୁଭୂତ ହେବ କେବଳ ସେତିକିବେଳେ ଯେତେବେଳେ ଅଳ୍ପ ମିଶିଯିବ ଭୂମାରେ, ଅନିତ୍ୟ ମିଶିଯିବ ଶାଶ୍ୱତରେ ।

ପାତଞ୍ଜଳିଙ୍କର ଆବିର୍ଭାବ ଭାରତୀୟ ସଭ୍ୟତାର ଇତିହାସରେ ପର-ବୌଦ୍ଧ ଘଟଣା ବୋଲି ଭାବିବାର ଅନ୍ୟ କାରଣ ହେଲା ପାତଂଜଳିଙ୍କ ଯୋଗ-ବିଦ୍ୟା ବୁଦ୍ଧଙ୍କ ସଦ୍ଧର୍ମ ପରି ଏକାନ୍ତରେ ହେତୁ ପ୍ରତିଷ୍ଠ । ଏଥିରେ କେବଳ ବିକଳ୍ପ-ପନ୍ଥା ଭାବରେ ହିଁ ସମଗ୍ର ଗ୍ରନ୍ଥରେ ଥରେ ବା ଦୁଇଥର ମାତ୍ର ଏକ ଐଶ୍ୱରିକ ସତ୍ତାକୁ ସ୍ୱୀକୃତି ଦିଆଯାଇଛି । ପାତଞ୍ଜଳିଙ୍କ ସମଗ୍ର ଦର୍ଶନ ହେଲା ଏକ ଶାରୀରିକ-ଚୈତ୍ତିକ ସାଧନା ଯାହାକି ବ୍ୟକ୍ତି-ଆତ୍ମାକୁ ପରମାତ୍ମାରେ ମିଶାଇ ଦେଇ ତାକୁ ସଂପୂର୍ଣ୍ଣ ଦୁଃଖ ମୁକ୍ତ କରିବ । ଏହାର ଶେଷ ଅବସ୍ଥା ହେଲା ସମାଧି, ଯେଉଁଠାରେ ଏହି ଆତ୍ମା ଓ ପରମାତ୍ମାର ମିଳନ ଅନୁଭୂତ ହୋଇଥାଏ । ଏ ଅବସ୍ଥାରେ ସାଧକ ନିଜ ଅଭ୍ୟନ୍ତରରେ ପ୍ରଚଣ୍ଡ ଭାବରେ ଜୀବନ୍ତ ଥିଲେ ହେଁ ସେ ହୋଇପଡ଼ନ୍ତି ବାହ୍ୟ ଜଗତ ପ୍ରତି ସଂପୂର୍ଣ୍ଣ ମୃତ ।

କିନ୍ତୁ, ଖୁବ୍ କମ ଭାରତୀୟ ଜାଣନ୍ତି ଯେ ଇତିହାସର ବହୁ ପ୍ରସିଦ୍ଧ ଅଣଭାରତୀୟ ବ୍ୟକ୍ତି 'ଯୋଗ' ଶବ୍ଦହିଁ ନଜାଣି, ଏ ପ୍ରକାର ବାହ୍ୟ-ଚେତନା-ହୀନ 'ସମାଧି' ଅବସ୍ଥା ଭୋଗିପାରିଛନ୍ତି । ଆମର ଚୈତନ୍ୟ ଓ ରାମକୃଷ୍ଣଙ୍କଠାରେ ଯଦି ଏହା ପ୍ରତ୍ୟହ ଦେଖାଦେଉଥିଲା, ଏହା ଦେଖାଦେଉଥିଲା ମଧ୍ୟ ସେହିପରି ମହମ୍ମଦଙ୍କଠାରେ । ଭାଷାର ସୌନ୍ଦର୍ଯ୍ୟ ଦିଗରୁ କୋରାନକୁ କୁହାଯାଏ ଶ୍ରେଷ୍ଠ ଆରବୀ ଗ୍ରନ୍ଥ – ଅଥଚ ସମଗ୍ର କୋରାନ ନିରକ୍ଷର ମହମ୍ମଦଙ୍କର ସମାଧି ଅବସ୍ଥାର ବାକ୍ୟାବଳି ମାତ୍ର । ଇଂରାଜୀ କବି ସେଲୀଙ୍କର ମଧ୍ୟ ଏପ୍ରକାର ସମାଧି-ଅବସ୍ଥା ବେଳେ ବେଳେ ଆସିଯାଉଥିଲା, ଯେପରି ମଧ୍ୟ ଆସୁଥିଲା ବେଳେ ବେଳେ ଅନ୍ୟ ଇଂରାଜୀ କବି ବ୍ଲେକ୍ ଓ ଓ୍ୱାଡ଼ସ୍‌ୱର୍ଥଙ୍କର ସାଧାରଣ ଜୀବନ ଭିତରକୁ ।

ଅପରନ୍ତୁ, ଭାରତୀୟ ଯୋଗୀମାନଙ୍କର ଏହି ସମାଧି-ଅବସ୍ଥାର ଅନୁଭବ ସର୍ବତ୍ର ସମାନ ବୋଲି ମଧ୍ୟ କୁହାଯାଇ ପାରିବ ନାହିଁ । ଏହା ଏପର୍ଯ୍ୟନ୍ତ ରହିଛି ରହସ୍ୟାବୃତ । ପ୍ରତିଭାବାନ୍ ଫରାସୀ, ରୋମାରୋଲାଁ ତାଙ୍କର ଅତ୍ୟୁତ୍କୃଷ୍ଟ ରାମକୃଷ୍ଣ-ଜୀବନୀରେ, ତେଣୁ ଏହି ପ୍ରଧାନ ପ୍ରଶ୍ନଟି ଉଠାଇଛନ୍ତି । ଦକ୍ଷିଣେଶ୍ୱରର ବରସାଧକ ବର୍ଷ ବର୍ଷ ଧରି ମନ୍ଦିରସ୍ଥ ମାଆଁକୁ 'ଦେଖିବାକୁ' ଚାହୁଁଥିଲେ । ଶେଷରେ ଯେଉଁ ଦୀର୍ଘ 'ସମାଧି'ରେ ବୁଡ଼ିରହିଥିଲେ, ସେଠି ସେ ନରଦେହଧାରିଣୀ କୌଣସି ମାଁଆକୁ ଦେଖିଥିଲେ କି ?

ସତ୍ୟବାକ୍ ରାମକୃଷ୍ଣ ପରେ କିନ୍ତୁ ବାରମ୍ବାର କହିଛନ୍ତି ଯେ, ସେ ସେହି ଦୀର୍ଘ-ସମାଧିରେ ନରଦେହଧାରିଣୀ କୌଣସି ମା'ଙ୍କୁ ନଦେଖି, ଏକ ଆଲୋକର ସମୁଦ୍ରରେ ଆନନ୍ଦରେ ଉବେଇ ଟୁବେଇ ହେଉଥିବାର ହିଁ ସେ ଅନୁଭବ କରିଥିଲେ ।

ପୁଣି ଅନ୍ୟ ଭାରତୀୟ ଯୋଗୀମାନଙ୍କର ଶେଷ ସମାଧିର ଅବସ୍ଥା ଆଦୌ ଠିକ୍ ରାମକୃଷ୍ଣଙ୍କର ପରି ମଧ୍ୟ ନୁହେଁ । ପୁଣି ଏହା ମଧ୍ୟ ଏବେ ଜଣାଗଲାଣି ଯେ, କେତେକ ଔଷଧ ବ୍ୟବହାର କଲେ ସମାଧିପରି ଚୈତ୍ତିକ ଅନୁଭୂତି ସବୁ ଦେଖାଦେବ । ପ୍ରସିଦ୍ଧ ଲେଖକ ଆଲଡୁସ୍ ହକ୍‌ସିଲି ଶେଷ ଜୀବନରେ ମେସ୍‌କାଲିନ୍ ନାମକ ବଟିକା ବ୍ୟବହାର କରି ଏହି ପ୍ରକାର ମାନସିକ ପରୀକ୍ଷାର ଫଳ ସବୁ ଛାଡ଼ିଯାଇଛନ୍ତି ।

ଅଥଚ ପାତଂଜଳ-ଯୋଗ-ନିର୍ଦ୍ଦିଷ୍ଟ ପ୍ରାଣାୟାମାଦିର ଅଭ୍ୟାସ ଫଳରେ ବହୁ ସାଧକର ଅଚିକିତ୍ସ୍ୟ ସ୍ୱାସ୍ଥ୍ୟ-ବିଭ୍ରାଟ ଯେ ଘଟିଥାଏ; ଏକଥା ଏ ଦେଶରେ ଯେତେ ପ୍ରଚାରିତ ହେବାର କଥା ତାହା ହୋଇ ନାହିଁ ।

ଶ୍ରୀ ଅରବିନ୍ଦ ଭାରତୀୟ ଯୋଗକୁ ଏହି ସମସ୍ତ ପ୍ରକାର ଅରାଜକତା ଓ ବିଭୀଷିକାରୁ ମୁକ୍ତ କରି ତାକୁ ସଂପୂର୍ଣ୍ଣ ଆଧୁନିକ ବୈଜ୍ଞାନିକ ପରିବେଶରେ ଠିଆ କରାଇ ଯାଇଛନ୍ତି । ଯେତେବେଳେ ଶ୍ରୀ ଅରବିନ୍ଦ ଭାରତୀୟ ରାଜନୀତିରେ ନବୋଦିତ ସୂର୍ଯ୍ୟ ପରି ଉଠିଆସୁଥିଲେ ଏବଂ ପୃଥିବୀର ବୃହତ୍ତମ ସାମ୍ରାଜ୍ୟର ମୂଳୋତ୍‌ପାଟନ ପାଇଁ ଦେଶବାସୀଙ୍କି ମୌଳିକ ଉପାୟ ସବୁ ବତାଇଚାଲିଥିଲେ, ଯେତେବେଳେ ତାଙ୍କ ପାଇଁ ଭାରତୀୟ ରାଜନୀତିର ସକଳ ଗୌରବର ଦ୍ୱାର ଆପେ ଆପେ ଖୋଲିଆସୁଥିଲା, ଠିକ ସେତିକିବେଳେ ସେ ସମସ୍ତ କ୍ରିୟା ଓ ପ୍ରଲୋଭନକୁ ପଛକୁ ପକାଇଦେଇ, ଏକ ନିଃସଙ୍ଗ ଏକାକୀ ଯୋଗୀର ଜୀବନକୁ ବରିନେଲେ । ଏହା ତାଙ୍କ ପକ୍ଷରେ ଓ ପରବର୍ତ୍ତୀ ଲକ୍ଷ ଲକ୍ଷ ଧର୍ମ-ସାଧକମାନଙ୍କ ପକ୍ଷରେ ଏକ ପରମ ଭାଗ୍ୟର ବିଷୟ । ପୁଣି ଶ୍ରୀ ଅରବିନ୍ଦ କେବଳ ଜଣେ ନାକଚିପା ପ୍ରାଣାୟମୀ ସାଧକ ମାତ୍ର ନୁହନ୍ତି । ସେ ଥିଲେ, ଅସାଧାରଣ ପ୍ରତିଭାବନ୍ତ ଏବଂ ପ୍ରାଚ୍ୟ ଓ ପ୍ରତୀଚ୍ୟ ଉଭୟ ସଂସ୍କୃତିର ପରମ ପଣ୍ଡିତ । ବୁଦ୍ଧଙ୍କ ପରି ସେ ହୁଏତ ନାକ ଚିପି କିଛି ଆଧିଭୌତିକ ଶକ୍ତି ପାଇଥିବାର କୁହାଯାଏ । କିନ୍ତୁ ବୁଦ୍ଧଙ୍କ ପରି, ପ୍ରତିଭାବାନ୍ ଶ୍ରୀ ଅରବିନ୍ଦଙ୍କ ପକ୍ଷରେ ହଠଯୋଗୀୟ ସିଦ୍ଧି କେବେ ହେଲେ ଯଥେଷ୍ଟ ବୋଧହୋଇନଥାନ୍ତା । ସେ ଖୋଜିଲେ ଆଧୁନିକ ଯୁଗୋପଯୋଗୀ ଏକ ବିଜ୍ଞାନାନୁମୋଦିତ ଆଧ୍ୟାତ୍ମିକ ଜୀବନ-ଦର୍ଶନ ସର୍ବ ମାନବ ପାଇଁ ଏବଂ ତାହାହିଁ ସେ ଦେଇଯାଇଛନ୍ତି ବିଶ୍ୱକୁ ତାଙ୍କର ଶ୍ରେଷ୍ଠ ଦାୟ ଭାବରେ ।

ଉନବିଂଶ ଶତାବ୍ଦୀରେ ଯେତେ ବୈଜ୍ଞାନିକ ତଥ୍ୟ ଆବିଷ୍କୃତ ହୋଇଥିଲା, ସେ ସମସ୍ତ ଭିତରେ ମୁଖ୍ୟତମ ହେଲା, 'ଇଭୋଲ୍ୟୁଶନ' ବା ବିବର୍ତ୍ତନବାଦ । ବାଇବଲର

ସନ୍ଦେଶ ଅନୁସାରେ, ଜଣେ ମନୁଷ୍ୟ-ଅବୟବଧାରୀ ଈଶ୍ୱରଙ୍କ ଆଦେଶରେ ଏହି ସୃଷ୍ଟି ଶୂନ୍ୟରୁ ଏବେ ଯେପରି ଅଛି ସେହିପରି ହଠାତ୍ ପ୍ରକଟିତ ହୋଇଉଠିଲା । ଇଂରେଜ ବୈଜ୍ଞାନିକ ଡାରୱଇନ୍, ଏହି ପିଲାଳିଆ ମତବାଦକୁ ଧୂଳିସାତ୍ କରି ପ୍ରମାଣ କଲେ ଯେ, ଏ ସଂସାର ବର୍ତ୍ତମାନ ଯେପରି ଅଛି ସେ ଅବସ୍ଥାକୁ ଆସିବାକୁ ତାକୁ କୋଟି କୋଟି ବର୍ଷର ଅମନ୍ଦଗତି ବିବର୍ତ୍ତନ ସୂତ୍ର ଦେଇ ଗତି କରିବାକୁ ହୋଇଛି ଏବଂ ଅତି ବିସ୍ମୟର କଥା ଏହି ଯେ, ଡାରୱଇନଙ୍କର ଏହି ଉନବିଂଶ ଶତାବ୍ଦୀୟ ମତବାଦ, ହିନ୍ଦୁମାନେ ଅତି ପ୍ରାଚୀନ କାଳରୁ ବିଶ୍ୱାସ କରିଆସିଥିବା ସୃଷ୍ଟିତତ୍ତ୍ୱ ସହିତ ସଂପୂର୍ଣ୍ଣ ମିଳିଗଲା । ହିନ୍ଦୁ କେବେହେଲେ ତା'ର ଇହଜୀବନକୁ ଏକ ଆଦ୍ୟନ୍ତ ସଂପର୍କହୀନ ଏକକ ବୋଲି ମନେ କରେ ନାହିଁ । ଜଡ଼, ଉଦ୍ଭିଦ ଓ ପ୍ରାଣୀ ଦେଇ, ଆତ୍ମିକ-କଣା କୋଟି କୋଟି ଜନ୍ମଜନ୍ମାନ୍ତରରେ ବିବିଧ ଅଭିଜ୍ଞତା ନେଇ, ଶେଷରେ ମନୁଷ୍ୟ ଶରୀର ଗ୍ରହଣ କରିଛି । କିନ୍ତୁ ଏହା ଶେଷ ନୁହେଁ । କର୍ମାନୁଯାୟୀ ମାନବିକ ବିବର୍ତ୍ତନର ଆହୁରି ଅଧିକ ଗୌରବମୟ ଅଂଶ ଭବିଷ୍ୟତର ରହସ୍ୟମୟ ଗର୍ଭରେ ଲୁକ୍କାୟିତ ରହିଛି । ଆମେ ପ୍ରତ୍ୟେକେ ସେହି ସୁଖ ଗୌରବମୟ ଉତ୍ତରାଧିକାରର ଦାୟାଦ ।

ଶ୍ରୀ ଅରବିନ୍ଦ ଏକ ସାଧାରଣ ଯୋଗୀ ନଥାଇ, ଥିଲେ, ଜାତ-ଜନନାୟକ ଓ ବିଶ୍ୱ-ଗୁରୁ । ତେଣୁ ସେ ପ୍ରଥମ କରି ଏହି ମହାନ୍ ଘୋଷଣା ପ୍ରଚାର କଲେ କି ଯେ, ଯେଉଁ ଯୋଗ ଏ ଯାବତ୍ କେବଳ ବ୍ୟକ୍ତିଗତ ବିବର୍ତ୍ତନର ଉପାୟ ଥିଲା, ତାହା ହୋଇପାରେ ମଧ୍ୟ ସମଷ୍ଟିଗତ ବିବର୍ତ୍ତନର ଉପାୟ, ଯାହା ଫଳରେ ଏହି ଦୁଃଖମୟ ପୃଥିବୀର ରୂପାନ୍ତର ଘଟି, ଏହି ମାଟିରେ ହିଁ ଠିଆହେବ ଭୂସ୍ୱର୍ଗ ।

ଜଡ଼, ଉଦ୍ଭିଦ ଓ ପ୍ରାଣୀମାନଙ୍କର ଅଭିଜ୍ଞତାରୁ ହିଁ ଉଦ୍‌ଗତ ହୋଇଛି ବୁଦ୍ଧିମାନ୍ ମନୁଷ୍ୟ । ନିମ୍ନସ୍ତରରେ ଯାହା କେବଳ ଥିଲା ପ୍ରାଣ-ଚେତନା, ମନୁଷ୍ୟଠାରେ ତାହା ଦେଖାଦେଇଛି ମନ ଓ ବୁଦ୍ଧି ଭାବରେ, ଯାହା ଦେଇ ମନୁଷ୍ୟ ସୃଷ୍ଟି କରିପାରିଛି ଏହି ବିରାଟ ବିଶ୍ୱ-ମାନବିକ ସଭ୍ୟତା । କିନ୍ତୁ ମନୁଷ୍ୟ ଚିତ୍ତର କୌଣସି ଭାରସାମ୍ୟିକ ଅଭାବରୁ ହିଁ, ପ୍ରମାଦପ୍ରବଣ ମନୁଷ୍ୟ ଯାହା ସୃଷ୍ଟି କରୁଛି ତାକୁ ପୁଣି ଧ୍ୱଂସ କରିଚାଲିଛି । ଫଳରେ ସବୁ ଥାଇ ମଧ୍ୟ ମନୁଷ୍ୟ ଭାଗ୍ୟରେ ସୁଖ ନାହିଁ । କ'ଣ ୟାର ପ୍ରତିକାର ?

ଶ୍ରୀ ଅରବିନ୍ଦଙ୍କ ମତରେ ମନୁଷ୍ୟ ଯେପରି ଜଡ଼ ଓ ଉଦ୍ଭିଦ ଓ ପ୍ରାଣୀରୁ ସଭ୍ୟତା ସୃଷ୍ଟିକାରୀ ମନୁଷ୍ୟ ହୋଇପାରିଛି, ଠିକ୍ ସେହି ରୀତିରେ ତାକୁ ତା'ର ପ୍ରମାଦପ୍ରବଣ ମନରୁ ଉଠିବାକୁ ହେବ ଅତି ମାନସ ସ୍ତରକୁ ଯେଉଁଠି ସେ ସତ୍ୟକୁ ଆଂଶିକ ଭାବରେ ନଦେଖି, ଦେଖିବ ପରିପୂର୍ଣ୍ଣ ଭାବରେ ଏବଂ ତେଣୁ ସେ ମୁକ୍ତ ହେବ ସକଳ ପ୍ରମାଦରୁ ଓ ଦୁଃଖରୁ । ଜଡ଼, ଉଦ୍ଭିଦ ଓ ପ୍ରାଣୀମାନଙ୍କର ଚେତନା କେବଳ

ପରିପାର୍ଶ୍ୱ ପ୍ରତି ପ୍ରତିକ୍ରିୟା କରି କରି ଚାଲିଥାଏ । ମନୁଷ୍ୟ କିନ୍ତୁ ବଞ୍ଚେ ନିଜର ସ୍ୱାଧୀନ କ୍ରିୟା ଯୋଗୁଁ । ତେଣୁ ମନୁଷ୍ୟ-ସ୍ତରରେ ବିବର୍ତ୍ତନିକ ଊର୍ଦ୍ଧ୍ୱଗତି ଏକାନ୍ତରେ ମନୁଷ୍ୟର ନିଜ ଦାୟିତ୍ୱ, ନିଜ କ୍ରିୟା । ତା'ର ଊର୍ଦ୍ଧ୍ୱଗମନ ବା ଅଧଃପତନ ପାଇଁ ମନୁଷ୍ୟ ଏକାନ୍ତରେ ନିଜେ ହିଁ ଦାୟୀ । ତେଣୁ ଅତିମାନସ ସ୍ତରକୁ ଉଠି ସଂପୂର୍ଣ୍ଣ ଦୁଃଖ ମୁକ୍ତ ଧରାସ୍ୱର୍ଗ-ସ୍ଥାପନ କେବଳ ମନୁଷ୍ୟର ନିଜ ଦାୟିତ୍ୱ – ଆଉ କିଏ ଆସି ତା' ପାଇଁ ଏହା ଗଢ଼ିଦେଇଯିବ ନାହିଁ ।

ଏଥିପାଇଁ ହିଁ ଶ୍ରୀ ଅରବିନ୍ଦ ଦେଇଯାଇଛନ୍ତି ପୂର୍ଣ୍ଣାଙ୍ଗ ଯୋଗର ସନ୍ଦେଶ, ଯାହା ମନୁଷ୍ୟକୁ ଦିନେ ଜରାମରଣଧ୍ୱଂସକାରୀ ମାନସିକ ଓ ଶାରୀରିକ ପୂର୍ଣ୍ଣତ୍ୱ ଦେଇ ପାରିବ । ପୁଣି ଏହି ବିପୁଳ ସମ୍ଭାବନାମୟ ପୂର୍ଣ୍ଣାଙ୍ଗ ଯୋଗକୁ ସେ ଥୋଇଯାଇଛନ୍ତି ବିସ୍ମୟକର ସରଳତା ଭିତରେ । ସହସ୍ର ସହସ୍ର ବର୍ଷ ଧରି ଯୋଗ-ସାଧନାର ଯେଉଁସବୁ ଆଂଗିକ ସବୁକୁ ଅପରିହାର୍ଯ୍ୟ ବୋଲି ଧରାଯାଉଥିଲା, ଶ୍ରୀ ଅରବିନ୍ଦଙ୍କର ବୈବର୍ତ୍ତନିକ ସାଧନା ସେ ସମସ୍ତରୁ ସଂପୂର୍ଣ୍ଣ ମୁକ୍ତ । ଏଥିରେ କାହାକୁ ଦୈନନ୍ଦିନ ଜୀବନକୁ ଛାଡ଼ି ସମାଜରୁ ଦୂରକୁ ପଳାଇଯିବାକୁ ହେବ ନାହିଁ । ଏହା ଏକ ମାତ୍ର ଭାରତୀୟ ଧର୍ମ-ସାଧନା, ଯେଉଁଥିରେ ନାହିଁ ଗୁରୁ-ଦୀକ୍ଷା ବା ବସ୍ତ୍ର-ପରିବର୍ତ୍ତନ; ଏଥିରେ ମଧ୍ୟ ନାହିଁ ବିପଦସଂକୁଳ ବାୟୁ-ନିୟନ୍ତ୍ରଣର ଆବଶ୍ୟକତା । ଏହା ସଂପୂର୍ଣ୍ଣ ଭାବରେ କେବଳ ଚୈତ୍ତିକ– ନିଜକୁ ଅହଂକାର-ଶୂନ୍ୟ କରି ଦୈବୀ ଶକ୍ତି ନିକଟରେ ସଂପୂର୍ଣ୍ଣ ଆତ୍ମସମର୍ପଣ ହିଁ ଶ୍ରୀ ଅରବିନ୍ଦଙ୍କ ଯୋଗ ଏବଂ ଯେ କୌଣସି ଧର୍ମର ନର ବା ନାରୀ ଜୀବନର ଯେ କୌଣସି ବିନ୍ଦୁରୁ ଏହାକୁ ଆରମ୍ଭ କରିପାରନ୍ତି ।

କିନ୍ତୁ ମନେରଖିବା ଉଚିତ ହେବ ଯେ, ଶ୍ରୀ ଅରବିନ୍ଦଙ୍କ ଏହି ପୂର୍ଣ୍ଣଯୋଗ ଆପାତତଃ ନିତାନ୍ତ ସରଳ ମନେହେଲେ ହେଁ, ସବୁଠାରୁ କଠିନ ସାଧନା । ନିଜର ଆତ୍ମିକ ଊର୍ଦ୍ଧ୍ୱଗତି ପାଇଁ ସଂପୂର୍ଣ୍ଣ ଅହଂଶୂନ୍ୟତାରେ ଈଶ୍ୱରଙ୍କ ପାଦ ତଳେ ନିଜକୁ ନିଃଶେଷ ଭାବରେ ଅଜାଡ଼ି ଦେବା, ଏକ ଅତି କଠିନ ମାନସିକ ସଂଗ୍ରାମ । ସେହି ଆତ୍ମା କେବଳ ମହାତ୍ମା ବୋଲାଇ ପାରେ, ଯାହା ସଂପୂର୍ଣ୍ଣ ରୂପେ ଅହଂ-ଶୂନ୍ୟ । ବୋଧହୁଏ ଭାରତର ନିକଟତମ ମହାତ୍ମାଙ୍କ ପଦତଳେ ଯେ କୋଟି ନରନାରୀ ଆପେ ଆପେ ମୁଣ୍ଡ ନୁଆଁଇଁ ଦେଉଥିଲେ, ତା'ର ଆତ୍ମିକ କାରଣ ହୁଏତ ଥିଲା ଏହି ସଂପୂର୍ଣ୍ଣ ଅହଂ-ଶୂନ୍ୟତାରେ, ଯେଉଁ ଶୂନ୍ୟସ୍ଥାନକୁ ପୂରଣ କରିବା ପାଇଁ ଉପରୁ ଅବତରି ଆସେ ଦୁର୍ବାର ଦୈବଶକ୍ତି । ବସ୍ତୁତଃ ଯେକୌଣସି ମନୁଷ୍ୟର ଉତ୍ତମତାର ବିଚାର ନିର୍ଭର କରେ ତା'ର ବ୍ୟକ୍ତିତ୍ୱ ଭିତରେ ଥିବା ଅହଂର ମାପରୁ । ମୁଁ ଥିଲା ପର୍ଯ୍ୟନ୍ତ ସେ ଆସିବେ କେଉଁ ଆବଶ୍ୟକତା ମେଣ୍ଟାଇବା ପାଇଁ ?

ଏହି ପ୍ରକାରର ନିରହଂକାର ଆତ୍ମ-ସମର୍ପଣ ଦେଇ ବ୍ୟକ୍ତି ପରି ମାନବ ଗୋଷ୍ଠୀ ମଧ୍ୟ ଯଦି ନିଜର ସାମୂହିକ ଆତ୍ମାକୁ ଉନ୍ମୁକ୍ତ ରଖେ ତେବେ ସେଠାରେ ଅତିମାନସର ଅବତରଣ ଓ ଅଧିବାସ ଫଳରେ ଶ୍ରୀ ଅରବିନ୍ଦଙ୍କ ମତରେ ପ୍ରମାଦପ୍ରବଣ ମନୁଷ୍ୟ ସତ୍ୟଦ୍ରଷ୍ଟା ଦେବତା ହୋଇଉଠିବାରେ କୌଣସି ସନ୍ଦେହ ନାହିଁ ।

ବହୁ ଶତ ବର୍ଷ ପୂର୍ବେ ଭାରତର ବୈଶେଷିକ ଦର୍ଶନ ଘୋଷଣା କରିଥିଲା– ଯତଃ ଅଭ୍ୟୁଦୟ ନିଃଶ୍ରେୟସଃ-ସିଦ୍ଧିଃ ସ ଧର୍ମଃ । ଅର୍ଥାତ୍ ସେହି କେବଳ ପ୍ରକୃତ ଧର୍ମ ଯାହା ଦେଇ ମନୁଷ୍ୟ ବୈକୁଣ୍ଠାନନ୍ଦ ଲାଭ କରିବା ସାଥେ ସାଥେ ପାର୍ଥିବ ଅଭ୍ୟୁଦୟ ମଧ୍ୟ ପାଇଥାଏ । କିନ୍ତୁ ହୁଏତ ପରେ-ପ୍ରବର୍ତ୍ତିତ ହିନ୍ଦୁ ଚତୁରାଶ୍ରମର ଶେଷ ଦୁଇ ଆଶ୍ରମ, ସନ୍ୟାସ-ଓ-ଯତିବ୍ରତ ଆଦର୍ଶର ପ୍ରତିକ୍ରିୟାରେ ଭାରତର ପାର୍ଥିବ ଜୀବନ ଧର୍ମ-ଜୀବନର ଶତ୍ରୁ ହୋଇଉଠିଲା । ପରେ ଶଂକରଂକ ମାୟାବାଦ ସମଗ୍ର ଭାରତୀୟ ଚେତନାରୁ କାଢ଼ିନେଲା ସକଳ ପ୍ରକାର କର୍ମପ୍ରବଣତା ଦେଇ ପାର୍ଥିବ ଜୀବନକୁ ସୁନ୍ଦର-ମଧୁର-ଉପଭୋଗ୍ୟ କରିବାର ସ୍ୱାଭାବିକ ପ୍ରଚେଷ୍ଟା । ଆମେ ହୋଇଗଲେ ଏକ ଅପରିଚ୍ଛନ୍ନ ଦୀନ-ହୀନ ସଦା-ପରାନୁଗ୍ରହ ଅପେକ୍ଷାକାରୀ କୁଢ଼ୀ ଜାତି ।

ଭାରତୀୟ ଦର୍ଶନ ସବୁ କେବଳ ଜୀବନକୁ ବ୍ୟାଖ୍ୟାକରିବା ଓ ସେଥିରୁ ତ୍ରାହି କିପରି ମିଳିବ ତା'ର ବାଟ ବତାଇବାରେ ବ୍ୟସ୍ତ । କେହି ଏହି ଅପୂର୍ଣ୍ଣ ଓ ଦୁଃଖମୟ ଜୀବନକୁ କିପରି ସୁନ୍ଦର-ମଧୁର-ଉପଭୋଗ୍ୟ କରାଯାଇପାରିବ, ସେଥିପ୍ରତି ଆଦୌ ଦୃଷ୍ଟି ଦେଇ ନହାନ୍ତି । ବୁଦ୍ଧ ଗୌତମ ମଧ୍ୟ-ପନ୍ଥୀ ଓ ସେବା-ସୌନ୍ଦର୍ଯ୍ୟ-ଶୀଳ ଜୀବନାଦର୍ଶ ପ୍ରଥମ କରି ମନୁଷ୍ୟ ଆଗରେ ଥୋଇଲେ । ଫଳରେ ଏହି ବିରାଟ ଉପମହାଦେଶ ସଂଘାରାମ ମନ୍ଦିର ଚିତ୍ରଶାଳା ଓ ଅପୂର୍ବ ଶିଳ୍ପ ଭାସ୍କର୍ଯ୍ୟରେ ପ୍ରଥମ ଥର ପାଇଁ ରୂପ-ବର୍ଣ୍ଣ-ଗନ୍ଧମୟ ହୋଇଉଠିଲା । ଏବର ହିନ୍ଦୁ ମନ୍ଦିର ଓ ଶିଳ୍ପ ଭାସ୍କର୍ଯ୍ୟ ସବୁ ବହୁ ପରର ଘଟଣା । ଏବଂ ଭାରତର ବୌଦ୍ଧ ଯୁଗ ପରି ଚୀନ କୋରିଆ ଜାପାନ ଇଣ୍ଡୋନେସିଆ ବର୍ମା ସିଂହଳ ଆଦି ଯେଉଁ ଯେଉଁ ଦେଶକୁ ବୌଦ୍ଧବାଣୀ ଯାଇଛି ସେଠି ମଧ୍ୟ ସେହି ପ୍ରତ୍ୟେକଟି ଦେଶର ବୌଦ୍ଧ ଯୁଗ ହେଉଛି ତା'ର ସାଂସ୍କୃତିକ ସ୍ୱର୍ଣ୍ଣଯୁଗ । ବର୍ତ୍ତମାନ ମଧ୍ୟ ବିଦେଶୀ ପର୍ଯ୍ୟଟକମାନେ ଦୁଃଖ-ଦାରିଦ୍ର୍ୟ-ସ୍ୱାର୍ଥପରତା-ପୂର୍ଣ୍ଣ ଭାରତର ଜାତୀୟ ଜୀବନ ସହିତ ସମଗ୍ର ବୌଦ୍ଧ ଦକ୍ଷିଣ-ପୂର୍ବ ଏସିଆର ଆନନ୍ଦମୁଖର ଜାତୀୟ ଜୀବନ ସହିତ ତୁଳନା କରି ଗଭୀର ବିସ୍ମୟ ପ୍ରକାଶ କରିଥାନ୍ତି ।

ଧର୍ମ-ସାଧନାର ଅପରିହାର୍ଯ୍ୟ ଅଙ୍ଗ ଭାବରେ ପାର୍ଥିବ ଜୀବନକୁ ସୁନ୍ଦର, ସୁଷମ ଓ ଯୁକ୍ତିଯୁକ୍ତ କରି ଗଢ଼ିବାର ଘୋଷଣା ଶୁଣାଇଗଲେ, ଭାରତର ସମଗ୍ର ଇତିହାସରେ ଦ୍ୱିତୀୟଥର ପାଇଁ, ଶ୍ରୀ ଅରବିନ୍ଦ । ତାଙ୍କର ଦୈବତ ଦୃଷ୍ଟି ପୁଣି, କେବଳ କେତେକ

ବ୍ୟକ୍ତି ବା କେବଳ ଭାରତବର୍ଷ ପାଇଁ ନୁହେଁ, ତାହା ପ୍ରସାରିତ ହୋଇଛି, ସମଗ୍ର ଧରାର ଭବିଷ୍ୟତ ପାଇଁ । ଆଗାମୀ ବିବର୍ତ୍ତିତ ମାନବ-ସମାଜର ଏକ ପ୍ରତୀକ ହିଁ ହେଉଛି ପଣ୍ଡିଚେରୀ ଆଶ୍ରମ, ଯାହାର ଜ୍ଞାନ-କର୍ମ-ସଂଯମ-ସୌନ୍ଦର୍ଯ୍ୟମୟ ଶୃଙ୍ଖଳିତ ପରିଚାଳନା, ଆଜିର ଚତୁର୍ଦ୍ଦିଗବିସ୍ତୃତ ଅରାଜକତା ଓ ବିଶୃଙ୍ଖଳା ଭିତରେ ସତରେ ଏକ ଚରମ ବିସ୍ମୟ । କିନ୍ତୁ ପୁଣି ଶ୍ରୀ ଅରବିନ୍ଦଙ୍କ ବିଶ୍ୱ-ଯୋଗ ସେଇଠି ଶେଷ ହୋଇ ଯାଇନାହିଁ । ଆଣବିକ ଶକ୍ତି ପ୍ରମତ୍ତ ରାଷ୍ଟ୍ର-ନାୟକମାନେ ଇଉ-ଏନ୍-ଓ ରେ ଫମ୍ପା ବକ୍ତୃତା ଦେଇ ଚାଲିଥିଲାବେଳେ ଶ୍ରୀମା ଭବିଷ୍ୟତ ମାନବଜାତିର ପ୍ରେମ-କର୍ମମୟ ସ୍ୱାଭାବିକ ସହାବସ୍ଥାନ ଏକ ଆଦର୍ଶ ପ୍ରତୀକ ରୂପେ ଗଢ଼ିଚାଲିଛନ୍ତି, ଅରୋଭିଲ୍ ନଗରୀ, ଯାହାର ପ୍ରକୃଷ୍ଟ ପ୍ରଭାବ ଭୋଗକରିବ ହୁଏତ ଏକବିଂଶ ଓ ତା'ର ଅନୁଗାମୀ ଶତାବ୍ଦୀ ସବୁ ।

ଏହି ବିନୀତ ଲେଖକ ପଣ୍ଡିଚେରୀ ଆଶ୍ରମ ସହିତ କୌଣସି ଭାବରେ ସମ୍ବନ୍ଧିତ ନୁହେଁ । କିନ୍ତୁ ଜୀବନ-ଦର୍ଶନର ଏକ ସାମାନ୍ୟ ଅନୁସନ୍ଧାନୀ ଭାବରେ ସେ ଶ୍ରୀଅରବିନ୍ଦଙ୍କ ନିକଟରେ ଗଭୀର ଭାବରେ କୃତଜ୍ଞ । କାରଣ, ଆଜିର ଜଞ୍ଜାଳ-ବିଚଳିତ ସାଧାରଣ ଜୀବନରେ ତାଙ୍କର ବାଣୀ ଏହି ଆଶ୍ୱାସନା ବହନକରି ଆସୁଛି ଯେ, ଏହି ଜଞ୍ଜାଳ ଭିତରେ ମଧ୍ୟ 'ସେ' ସୁପ୍ରାପ୍ୟ ହେବେ, ଯଦି ସେହିପରି ନିଷ୍ଠାର ସହିତ ଆମେ 'ତାଙ୍କୁ' ଖୋଜୁ । ଗୁରୁଦୀକ୍ଷା ପ୍ରଥା ଓ ନାକଚିପା ଆଦିକୁ ପ୍ରତ୍ୟାଖ୍ୟାନ କରି, ଶ୍ରୀ ଅରବିନ୍ଦଙ୍କ ସାଧନା-ପନ୍ଥା ସାଧାରଣ ଗୃହସ୍ଥ ପାଇଁ ଆଜି ଏକ ଚରମ ଆଶୀର୍ବାଦ ରୂପେ ଦଣ୍ଡାୟମାନ । ଯିଏ ଯେଉଁଠି ଯେଉଁ ଅବସ୍ଥାରେ ଥାଉନା କାହିଁକି, ସେ ସେହି ବିନ୍ଦୁରୁ ହିଁ ପୂର୍ଣ୍ଣାଙ୍ଗ ଯୋଗର ସାଧନା ଆରମ୍ଭ କରି ଦେଇପାରେ । ସର୍ବୋପରି, ମନୁଷ୍ୟର ବ୍ୟକ୍ତିଗତ ଧର୍ମ-ସାଧନାର ଅପରିହାର୍ଯ୍ୟ ଅଂଶ ଭାବରେ ହିଁ ପାର୍ଥିବ ଓ ପାରିପାର୍ଶ୍ୱିକ ଜୀବନକୁ ଉନ୍ନତତର, ସୁନ୍ଦରତର ଓ ମହତ୍ତର କରି ଗଢ଼ିବାର ଦାୟିତ୍ୱକୁ ମଧ୍ୟ ଯେ ସେ ଯୋଡ଼ିଯାଇଛନ୍ତି, ଏଥିପାଇଁ ଏହି ଲେଖକ ତାଙ୍କ ନିକଟରେ ବିଶେଷ ଭାବରେ କୃତଜ୍ଞ । ଯୋଗୀଶ୍ୱର ହେଲେ ହେଁ, ଏକଥା ଜଣାଶୁଣା ଯେ, ଶ୍ରୀ ଅରବିନ୍ଦ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଭାରତ ଓ ପୃଥିବୀର କ୍ରମପ୍ରବାହିତ ରାଜନୈତିକ ଘଟଣାମାନଙ୍କ ପ୍ରତି ଅତ୍ୟନ୍ତ ସଚେତନ ଥିଲେ ଏବଂ ସେହି ଦିବ୍ୟସୃଷ୍ଟିସଂପନ୍ନ ଧରା-ନାୟକର ଉପଦେଶ କଂଗ୍ରେସୀ ନେତାଏ ଶୁଣିଥିଲେ, ଏହି ପବିତ୍ର ଜମ୍ବୁଦ୍ୱୀପ ତ୍ରିଧା-ବିଭକ୍ତ ହୋଇ କୋଟି କୋଟି ନରନାରୀର ରକ୍ତ ଓ ଅଶ୍ରୁରେ ପ୍ଳାବିତ ହୋଇ-ନଥାନ୍ତା, କି ଚତୁର୍ଦ୍ଦିଗରେ ଶତ୍ରୁବେଷ୍ଟିତ ହୋଇ ଭାରତୀୟ ରିପବ୍ଲିକ୍ ଏବର ଦୟନୀୟ ଓ ଚିରଆତଂକିତ ଅବସ୍ଥାରେ ନଥାନ୍ତା ।*

# ମଲ୍ଲ ଓ ମୋଜେସ୍ ମଧୁସୂଦନ

ଜୀବନରେ ସେ ତ କାହାରି ଦାସତ୍ୱ ସ୍ୱୀକାର କରିନାହାନ୍ତି; ବରଂ ସେ ଯେଉଁଠି ଠିଆ ହୋଇଛନ୍ତି ସେଠି କରିଛନ୍ତି ସେ ଅକୁତୋଭୟ ସଂଗ୍ରାମ ଓ ସେଠୁ ଯାଇଛନ୍ତି ବିଜୟୀ ବୀର ଭାବରେ । ସେ ମୃତ୍ୟୁ ବରଣ କରିଛନ୍ତି ହାତରେ ତରବାରି ଧରି । ସେ ବଢ଼ିଛନ୍ତି, ବଞ୍ଚିଛନ୍ତି ଓ ମରିଛନ୍ତି ସୈନିକ ଓ ସେନାପତି ପରି । ତେଣୁ ତାଙ୍କର 'ଦାସ' ପରିଚୟ ତାଙ୍କର ନିଖିଳ ବ୍ୟକ୍ତିତ୍ୱ ପ୍ରତି ଅପମାନ ନୁହେଁ କି ? ସେ ନିଜେ ଜାଣିଥିଲେ ଯେ ନିଜର ଅଦମ୍ୟ ରଣୋନ୍ମାଦନା ଓ ବିଜୟ ପିପାସା ସେ ଉତ୍ତରାଧିକାର ସୂତ୍ରରେ ପାଇଥିଲେ, ଏକ ପକ୍ଷରେ ସେହି ବରେଣ୍ୟା ପ୍ରପିତାମହୀଙ୍କଠାରୁ ଯେ ବିବାହ ଦିବସର ବସନ ଭୂଷଣ ଓ ଆଡ଼ମ୍ବର ସହିତ ସତୀ ହୋଇ ପତିର ଚିତାନଳରେ ନିଜକୁ ସାଗ୍ରହେ ଭସ୍ମୀଭୂତ କରିଦେଇଥିଲେ ଓ ଅନ୍ୟ ପକ୍ଷରେ ତାଙ୍କର ପୂର୍ବ ପୁରୁଷଠାରୁ ଯେ 'ମଲ୍ଲ' ଓ 'ରଣସିଂହ'ର ଯୋଗ୍ୟ ବିଶେଷଣ ସହିତ ଦିନେ ଯୋଦ୍ଧା ଗୌରବରେ ହିଁ ବଞ୍ଚିଥିଲେ । ମଧୁସୂଦନ ନିଜେ କହୁଥିଲେ ଯେ ଐତିହାସିକ ଓଡ଼ିଶାର ଶେଷ ସେନାପତି ବକ୍‌ସି ଜଗବନ୍ଧୁ ତାଙ୍କର ଜ୍ଞାତିଜନ ଥିଲେ ଏବଂ ପାଇକ ବିଦ୍ରୋହରେ ଯେଉଁ କେତୋଟି ବୀର ଓଡ଼ିଆ ବ୍ରିଟିଶ୍ ରାଜାର କାରାଗାରରେ ଫାସି ଝୁଲିଥିଲେ, ସେଥିମଧ୍ୟରୁ କେତେକ ତାଙ୍କର କୌଟୁମ୍ବିକ ଲୋକ ଥିଲେ । ଖୋର୍ଦ୍ଧାମାଟିର ଅଦମନୀୟ କ୍ଷାତ୍ରତେଜ ରକ୍ତରେ ବହନ କରି ସେହି ପ୍ରାଚୀନ ମଲ୍ଲ ବଂଶ କଟକ ଜିଲ୍ଲାର ଆବର୍ତ୍ତକ ପ୍ରଗଣାରେ ଆସି ପରେ ନୂତନ ବସତି କଲେ । ବ୍ରିଟିଶ୍ ରାଜାର ଆନୁଗତ୍ୟ ସ୍ୱୀକାର କରି ଶେଷରେ ସେମାନେ ଜମିଦାର ମାତ୍ର ହେଲେ ଓ ଚାକିରୀ ବି କଲେ । ମଧୁସୂଦନଙ୍କ ପିତାଙ୍କର ବଡ଼ ସ୍ୱପ୍ନ ଥିଲା, ତାଙ୍କ ପୁଅଟି କଟକ କଲେକ୍ଟରେଟ୍‌ରେ କିପରି କିରାଣୀଟିଏ ହେବ । କିନ୍ତୁ ୧୮୧୮ର ନିଆଁଝୁଲ ଲିଭେ କେତେକେ ? ତେଣୁ ସେହି ଐତିହାସିକ ସାମରିକ ଅଗ୍ନିକଣା ପୁଣି ଶିଖାବାନ ହୋଇଉଠିଲା ମଧୁସୂଦନଙ୍କ ଜୀବନରେ ଓ 'ଦାସ' ଭିତର ଦେଇ ପୁଣି ଜାଗିଉଠିଲା ସେହି ଚିର ସଂଗ୍ରାମୀ 'ମଲ୍ଲ' । ସେ ଚାକିରି କରନ୍ତା କିପରି ? ସେ ଆଉ 'ଦାସ' କିପରି ହେବ କାହାର ? ଯା'ର ପୂର୍ବପୁରୁଷ ଘୋଡ଼ାରେ ବସି ସମଗ୍ର କରମଣ୍ଡଳ ବେଳାରେ ସ୍ୱାଧୀନ-ସ୍ୱଚ୍ଛନ୍ଦ ବିହାର କରୁଥିଲେ ସେହି ମାଟିରେ ସେ ଆଉ କାହା ଆଗେ ମୁଣ୍ଡ ନୋଇଁପାରେ କି ? ସେ ପୁଣି କାଉ ବା ଚଟିଆ ପରି ଛୋଟ ଚଢ଼େଇ ହୋଇଛି କି ଯେ, ଅଇଁଠା ଖୁମ୍ପି ଓ ଛୋଟ ବସା ବାନ୍ଧି ସନ୍ତୁଷ୍ଟ

---

ନବରବି, ୫ମ ବର୍ଷ ୨ୟ ସଂଖ୍ୟା, ଅଗଷ୍ଟ, ୧୯୨୪

ହୋଇଯିବ ? ସେ ପରା ପକ୍ଷୀରାଜ ଈଗଲ୍ । ଉଚ୍ଚତମ ବିହାୟସରେ ଭାସି ଭାସି ସେ ସମଗ୍ର ଧରାକୁ ଅବଲୋକନ କରିବାର ସୁଖ ଓ ମର୍ଯ୍ୟାଦା ଚାହେ । ମଧୁସୂଦନ ତାହାହିଁ କରିଗଲେ ଏବଂ ସେପରି କରିବାର ବିରାଟ ତାତ୍ପର୍ଯ୍ୟ ଏହି ଯେ ଆଜିର କ୍ଷୁଦ୍ର-ପ୍ରାଣ, କ୍ଷୁଦ୍ର-ସ୍ୱପ୍ନ, ସାମାନ୍ୟରେ ସନ୍ତୁଷ୍ଟ, ଦରିଦ୍ର ଦେୟ, ନିର୍ଯାତିତ ଓଡ଼ିଆମାନଙ୍କ ଭିତରେ ଜନ୍ମି ମଧ୍ୟ ସେ ନିଜ ଜୀବନରେ ଦେଖେଇଦେଲେ ଯେ, ଏ ଦେଶ କୁଆ ଚଟିଆଙ୍କ ଦେଶ ନୁହେ, ଏହା ପୂର୍ବପରି ପୁଣି ଈଗଲ୍‌ର ଦେଶ ହୋଇପାରେ ।

ମଧୁସୂଦନ ଏକ ସାଧାରଣ ଲୋକ ବା ଲୋକନାୟକ ନଥିଲେ । ତାଙ୍କର ଜୀବନୀ ପଢୁ ପଢୁ ମୋର ମନେହୋଇଛି ଯେପରି ଐତିହାସିକ ଓଡ଼ିଶାର ସେହି ଅନଙ୍ଗ, ନରସିଂହ, କପିଳେନ୍ଦ୍ରର ଏକ ଆଧୁନିକ ସଂସ୍କରଣ ଆମ ଆଗରେ ଚାଲିଯାଉଛି । ଐତିହାସିକ ଓଡ଼ିଶାର ସକଳ ମୁକୁଟମଣ୍ଡିତ ଶିର ସତରେ ତାଙ୍କ ପଦତଳେ ଲୁଣ୍ଠ-ହେଇଥିଲା । ଖ୍ରୀଷ୍ଟାନ ହୋଇ ମଧ୍ୟ ସେ ହୋଇଥିଲେ ଜଗନ୍ନାଥ ଓ ଗଜପତିଙ୍କ ଉଦ୍ଧାରକ । ଗଜପତିର ଗନ୍ତାଘର ପରି ସେ ନିଜର ସମୃଦ୍ଧ ଗନ୍ତାଘର ଠିଆକରାଇଥିଲେ, ପୁଣି ସେ ଗନ୍ତାଘରକୁ ଜାତି ପାଇଁ ଅକାତରରେ ନିଃଶେଷ କରି, ଅଶୋକ ପରି ଅଢ଼େଇଟି ଅଁଳା ଫଳରେ ଶେଷ ଜୀବନ କଟାଇଦେଲେ । ଆଜି ଚାରିଆଡ଼େ ଦୁର୍ନୀତି । ଏ ଦୁର୍ନୀତିର ପ୍ରଧାନ ପ୍ରକାର ହେଉଛି ସାଧାରଣ ପାଣ୍ଠିକୁ ନିଜ ଲାଭ ପାଇଁ ବ୍ୟୟ-କରିବା । ମଧୁସୂଦନ କିନ୍ତୁ ଏକ ଛଦାମ କାହାକୁ ମାଗିଯାଇନାହାନ୍ତି ଦେଶର କାମ ପାଇଁ । ଅଜସ୍ର ଅର୍ଥ ସେ ବ୍ୟୟକରିଯାଇଛନ୍ତି ନିଜର ଅଧଃପତିତ ଜାତିକୁ ଉଠେଇବା ପାଇଁ । ସେ ସମସ୍ତ ହିଁ ନିଜର କଷ୍ଟାର୍ଜିତ ଧନ । ଜାତି ପାଇଁ ଦାନ କରି କରି ଦରିଦ୍ର, ସର୍ବସ୍ୱାନ୍ତ ହୋଇ ମରିଛନ୍ତି ସେ । କିନ୍ତୁ ସେଥିପାଇଁ ଦିନେ ହେଲେ ଦୁଃଖ ଅଭିମାନ କରି ନାହାନ୍ତି କାହା ଆଗରେ ଏବଂ ରିକ୍ତ ହେଲେହେଁ ଶେଷ ନିଃଶ୍ୱାସ ଯାଏଁ ଉଚ୍ଚ ପ୍ରାଣ ମଧୁସୂଦନ କେବେହେଲେ କୌଣସି ଭିକ୍ଷାଶୀକୁ ନାସ୍ତିବାଣୀ ଶୁଣାଇ ନଥିଲେ ।

ଓଡ଼ିଶା କଥା ଛାଡ଼ିଦିଅ, ସମଗ୍ର ଭାରତରେ ଏ ତ୍ୟାଗ, ସାଧାରଣ ଜୀବନରେ ଏ ଶୁଦ୍ଧତା ଓ ମହନୀୟତାର ଦ୍ୱିତୀୟ ଦୃଷ୍ଟାନ୍ତ ପାଇବା ସହଜ ହେବ ନାହିଁ । 'ତ୍ୟାଗ' ଶବ୍ଦ ଏବେ ବଡ଼ ସହଜରେ ବ୍ୟବହୃତ ହେଉଛି । ଅନ୍ତତଃ ଓଡ଼ିଶାରେ ମଧୁସୂଦନଙ୍କ ଛଡ଼ା କାହାର ଥିଲା କ'ଣ ଯେ ସେ 'ତ୍ୟାଗ' କରିଗଲେ ବୋଲି ଡକ୍‌କା ପିଟିବା ? ବରଂ ସାଧାରଣ କ୍ଷେତ୍ରରେ କାମ କରି ଅନ୍ୟ ଯେଉଁ ସ୍ତୁତି ସମ୍ମାନ ପାଇଛନ୍ତି, ସେମାନେ ବ୍ୟକ୍ତିଗତ ଜୀବନରେ କେବେହେଲେ ତାହା ପାଇଥାନ୍ତେ କି ? ବରଂ ସର୍ବତ୍ୟାଗୀ ମଧୁସୂଦନ ତାହାର ଶତାଂଶ ମଧ୍ୟ ତା'ର ଜାତିଠାରୁ ଏପର୍ଯ୍ୟନ୍ତ ପାଇନାହିଁ ।

ବସ୍ତୁତଃ ମଧୁସୂଦନଙ୍କର କର୍ମ ଓ ବ୍ୟକ୍ତିତ୍ୱର ମୂଲ୍ୟ ଓଡ଼ିଆମାନେ ଏ ପର୍ଯ୍ୟନ୍ତ

ଉତ୍ତମରୂପେ ହୃଦୟଙ୍ଗମ କରିଛନ୍ତି ବୋଲି କୁହାଯାଇପାରିବନି । ମଧୁସୂଦନଙ୍କର ଜୀବନବ୍ୟାପୀ ଏକହସ୍ତା ସଂଗ୍ରାମ ଇତିହାସରେ ଘଟିନଥିଲେ, ଆମେ ଆଜି ଓଡ଼ିଆ ଭାଷା କହୁଥାନ୍ତୁ କି ? ମଧୁସୂଦନଙ୍କ ଆବିର୍ଭାବ ବିନା ଏହି ଐତିହାସିକ ରାଷ୍ଟ୍ରର ପୁନରୁତ୍‌ଥାନ ଅସମ୍ଭବ ହୋଇଥାନ୍ତା । ମଧୁସୂଦନ ଆଗରୁ କେବଳ କ୍ଷେତ୍ର ପ୍ରସ୍ତୁତ ନୁହେଁ, ସେ କ୍ଷେତ୍ରରେ ବିଜୟୀ ସମ୍ରାଟରୂପେ ଠିଆନହୋଇ ପାରିଥିଲେ, ଗୋପବନ୍ଧୁ ସମ୍ଭବ ହୋଇନଥାନ୍ତେ, କି ଦେଶ ମିଶ୍ରଣ ସମ୍ଭବ ହୋଇନଥାନ୍ତା । ମଧୁସୂଦନ-ପ୍ରଦର୍ଶିତ ମାର୍ଗରେ ହିଁ ଐତିହାସିକ ଓଡ଼ିଆ ଜାତି ଏକତ୍ର ବଞ୍ଚିବାର ସୁଯୋଗ ଶେଷରେ ପାଇଛି । ତାଙ୍କରି ପନ୍ଥାରେ ଗଲେହିଁ ଏ ଜାତି ପୁଣି ସମୃଦ୍ଧ ହୋଇଉଠିବ । ଷାଠିଏ ବର୍ଷ ତଳେ ମଧୁସୂଦନ ଓଡ଼ିଆଙ୍କୁ ଶିଳ୍ପାନୁରାଗୀ ହେବାକୁ ଚେତାଇଥିଲେ ଓ ଅଜସ୍ର ଅର୍ଥ ଓ ଶ୍ରମଦେଇ ଆଦର୍ଶ ବି ଦେଖେଇଥିଲେ । ଏବେ ଶ୍ରୀ ବିଜୁ ପଟ୍ଟନାୟକ ମଧୁସୂଦନଙ୍କର ଭୂପତିତ ଶିଳ୍ପ-ପତାକାକୁ ଗୋଟେଇ ନେଇ ଆମ ଆଗରେ ଠିଆ-କରେଇଛନ୍ତି ଓ ଉଚିତ୍ କାମ କରିଛନ୍ତି ।

ବନ୍ଦୀକୃତ, ନିର୍ଯ୍ୟାତିତ, ଅତ୍ୟାଚାରିତ ନିଜର ଇହୁଦୀ-ଗୋଷ୍ଠୀକୁ ମୁକ୍ତିଦାନ କରି ବିରାଟ ଜନ-ନାୟକ ମୋଜେସ୍ ସେମାନଙ୍କୁ ଇଜିପ୍‌ଟରୁ ନେଇ ଆସିଥିଲେ, ସେମାନଙ୍କର ପ୍ରାଚୀନ ରାଜ୍ୟ ପାଲେଷ୍ଟିନ୍‌ରେ ସେମାନଙ୍କର ବସତି କରେଇବା ପାଇଁ । କିନ୍ତୁ ପାଲେଷ୍ଟିନ୍‌ରେ ପହଞ୍ଚିବା ପୂର୍ବରୁ ମୋଜେସ୍ ପଥ ମଧ୍ୟରେ ପ୍ରାଣ-ତ୍ୟାଗ କଲେ । ମଧୁସୂଦନ ଓଡ଼ିଆ ଜାତିର ମୋଜେସ୍ । ସମସାମୟିକ କାଳରେ ପ୍ରସିଦ୍ଧ ଭାରତୀୟ ନେତା, ଯଥା ଗୋଖଲେ, ଜୀନ୍ନା, ସୁରେନ୍ଦ୍ର ନାଥ ବାନାର୍ଜି, ମଧୁସୂଦନଙ୍କର ସହକର୍ମୀ ଥିଲେ, ଅନେକ କ୍ଷେତ୍ରରେ । କିନ୍ତୁ ଜାତି-ଗଠନର ମହାନ୍ ଗୌରବ, ମୋଜେସୀୟ ମହିମା, ମଧୁସୂଦନଙ୍କ ଛଡ଼ା ଆଉ କାହାର ପ୍ରାପ୍ୟ ନୁହେଁ, ହୁଏତ ଜିନ୍ନା ଛଡ଼ା । ଗୋଟାଏ ବିଶିଷ୍ଟ ଐତିହାସିକ ଜାତିକୁ କେବଳ ଗୋଟାଏ ଲୋକ ସମ୍ପୂର୍ଣ୍ଣରୂପେ ନିଜ ପରିଶ୍ରମ ଓ ତ୍ୟାଗ ଦେଇ, ଅଧଃପତନରୁ ଉଠେଇ ଆଣିବାର ଓ ସେମାନଙ୍କୁ ନିଜର ଏକ ରାଷ୍ଟ୍ର ଦେଇଯିବାର ଗୌରବ କ'ଣ ଗୋଖଲେ, ବାନାର୍ଜିଙ୍କର ଅଛି ? ମଧୁସୂଦନ ଚାହିଥିଲେ ପ୍ରତି କ୍ଷେତ୍ରରେ ସର୍ବଭାରତୀୟ ଗୌରବ-ଅର୍ଜନ କରିଥାନ୍ତେ । ସେହି ସକଳ ପ୍ରଲୋଭନ ସେ ତ୍ୟାଗ କଲେ ନିଜର ଓଡ଼ିଆ-ଜାତିକୁ ଉଠେଇବାକୁ ଓ ଗଢ଼ିବାକୁ । ଏ ତ୍ୟାଗର ସତରେ ପଟାନ୍ତର ନାହିଁ । ଏ ତ୍ୟାଗର ମହିମା ଓଡ଼ିଆ ଏପର୍ଯ୍ୟନ୍ତ ବୁଝିନାହାନ୍ତି ।

ବିହାର-ଓଡ଼ିଶା ଲାଟ ସାର୍ ହେନ୍‌ରି ହୁଇଲର୍ ଲଣ୍ଡନରେ ଥରେ ବକ୍ତୃତାରେ କହିଲେ, "ମଧୁସୂଦନ ଦାସ ନାମରେ ମୋର ଜଣେ ମନ୍ତ୍ରୀ ଥିଲେ । ସେ ନୂତନ

ମ୍ୟୁନିସିପାଲ ଆକ୍ଟ ଓ ଲୋକାଲ୍‌-ସେଲ୍‌ଫ୍‌-ଗଭର୍ଣ୍ଣମେଣ୍ଟ୍‌ ଆକ୍ଟ ପ୍ରବର୍ତ୍ତିତ କରି ସେଥିରେ ଭାରତୀୟମାନଙ୍କୁ ଏପରି କ୍ଷମତା ଦେଲେ ଯାହା ଇଂଲାଣ୍ଡରେ ଲୋକେ ଏ ପର୍ଯ୍ୟନ୍ତ ପାଇ ନାହାନ୍ତି ।'' ମଧୁସୂଦନଙ୍କ ସେହି ଆକ୍ଟ ଏବେବି ପ୍ରଚଳିତ, ଉଭୟ ଓଡ଼ିଶା ଏ ବିହାରରେ । ଅନଙ୍ଗ ନରସିଂହଙ୍କ ପରି ମଧୁସୂଦନ କେବଳ ନିପୁଣ ସଂଗ୍ରାମୀ ନଥିଲେ, ସେ ନିଜକୁ ପ୍ରମାଣିତ କଲେ ମଧ୍ୟ ନିପୁଣ ଶାସକ ବୋଲି । ସେ ଥିଲେ ଅକୁତୋଭୟ ଜନନାୟକ, ବିଦଗ୍ଧ ବକ୍ତା, କୁଶାଗ୍ରବୁଦ୍ଧି ତାର୍କିକ ଓ ସର୍ବୋପରି ଜମିଦାରଙ୍କ ଓକିଲ । ମଧୁସୂଦନ ବେଙ୍ଗଲ କାଉନ୍‌ସିଲ୍‌ରେ ବିପ୍ଳବାତ୍ମକ ଭୂ-ସଂସ୍କାର ପ୍ରସ୍ତାବ ଆଣିଥିଲେ, ବିନା କ୍ଷତିପୂରଣରେ ଜମିଦାରୀ ପ୍ରଥା ଉଠେଇଦେବାକୁ । ସର୍ବଦା ଦରିଦ୍ର ଜନତାର ବନ୍ଧୁ ଥିଲେ ମଧୁସୂଦନ । ଉତ୍କଳ-ସମ୍ମିଳନୀର ଆଦ୍ୟତମ ଅଧିବେଶନରେ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କୁ ସେ ସଭାପତିତ୍ୱରେ ବରଣ କରିଥିଲେ । ସେଥିରେ ମୟୁରଭଞ୍ଜ ମହାରାଜାଂକଠୁ ଟଂକା ଖସେଇବା ଉଦ୍ଦେଶ୍ୟ ଥିଲା କି ? ଉତ୍କଳ ସମ୍ମିଳନୀର ଅଧିବେଶନମାନଙ୍କର ପ୍ରାୟ ସମସ୍ତ ଖର୍ଚ୍ଚ ମଧୁସୂଦନ ବର୍ଷ ବର୍ଷ ଧରି ନିଜେଇ ବହନ କରୁଥିଲେ । ସେ ତ୍ୟାଗର ହିସାବ ନାହିଁ ବୋଲି କ'ଣ ତା'ର ମୂଲ୍ୟ ଚାଲିଗଲା ? କିନ୍ତୁ ଜଣେ ମହାରାଜାଙ୍କୁ କାହିଁକି ସଭାପତି କଲେ ଯାର ଉତ୍ତରରେ ମଧୁସୂଦନ କହିଥିଲେ– ''ଓଡ଼ିଆ ଜନତାର ଏହି ସଭାରେ ଜଣେ ମହାରାଜାଂକୁ ସଭାପତି କରାଇଲି, କାହିଁକି ? କାରଣ, ମୟୁରଭଞ୍ଜ-ମହାରାଜା ଏଇଠି ଓଡ଼ିଆଜାତିକି 'ଭାଇ' ବୋଲି ସମ୍ବୋଧନ କରିବେ । ତାହାହିଁ ଏହି ସଭାର ପ୍ରଥମ ଓ ପ୍ରଧାନ ଲକ୍ଷ୍ୟ ।''

ମୁଁ ମନେକରେ ପ୍ରତ୍ୟେକ ଓଡ଼ିଆର ମାତୃଜାତ ଭାଇ ଥାନ୍ତୁ ବା ନଥାନ୍ତୁ, ସେ ଧରି ନେବା ଉଚିତ୍‌ ତା'ର ଜଣେ ଅଦୃଶ୍ୟ ବଡ଼ଭାଇ ସର୍ବଦା ତା'ର ପାଖେ ପାଖେ ଅଛି –ତା'ର ନାମ ମଧୁସୂଦନ ଦାସ । ତା'ର ସ୍ତ୍ରୀ ନଥିଲା, ପୁଅ ନଥିଲା । ସେ ବିଧର୍ମୀ ଥିଲା; କିନ୍ତୁ ତା'ର ସାରା ଜୀବନ, ତା'ର ସମସ୍ତ ଅର୍ଜନ, ସମସ୍ତ ଚିନ୍ତା ସେ ଦେଇଗଲା ତାର 'ଓଡ଼ିଆ ଭାଇ' କିମିତି ମଣିଷ ହେବେ । ପ୍ରତ୍ୟେକ ଓଡ଼ିଆ ତେଣୁ ଏହି ଗୌରବମୟ ବଡ଼ଭାଇର ଜୀବନରୁ ଶିକ୍ଷା ଗ୍ରହଣ କରୁ ।

---

(ସ୍ୱର୍ଗତଃ ମାନସିଂହଙ୍କ ଏହି ଅପ୍ରକାଶିତ ରଚନା କନ୍ୟା ସଂଘମିତ୍ରା ମାନସିଂହଙ୍କ ସୌଜନ୍ୟରୁ ପ୍ରାପ୍ତ ।)

## ପାଇକଖେଦା (ଏକ ଚାଲେଞ୍ଜ)

ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକ କେନ୍ଦ୍ର ସରକାରଙ୍କର ପ୍ରତିରକ୍ଷା ବିଭାଗର ଉପ-ମନ୍ତ୍ରୀ ହୁଅନ୍ତେ, କଟକ ଜନ-ସାଂସ୍କୃତିକ ସଂଘ ପକ୍ଷରୁ ବାରବାଟୀ ଷ୍ଟେଡିୟମଠାରେ ତାଙ୍କ ଉଦ୍ଦେଶ୍ୟରେ ଏକ ସମ୍ବର୍ଦ୍ଧନା-ସଭାର ଆୟୋଜନ ହୋଇଥିଲା ।

ସେଠାରେ ଏହି ଲେଖକ ଉପସ୍ଥିତ ଥିଲା ଏବଂ ଜାନକୀବାବୁଙ୍କୁ ସମ୍ବର୍ଦ୍ଧନା କରିବା ଉଦ୍ଦେଶ୍ୟରେ ସେ ଯେଉଁ ଦୁଇଟି ପ୍ରସ୍ତାବ ଉପସ୍ଥାପିତ କରିଥିଲା, ତାହାହେଲା –

(୧) ଆମେ ଓଡ଼ିଆମାନେ ତାଙ୍କ ମନ୍ତ୍ରୀତ୍ୱ ଭିତରେ ଦେଖିବୁ, ଯେପରିକି ଏକ ସ୍ୱତନ୍ତ୍ର ଓଡ଼ିଶା ରେଜିମେଣ୍ଟର ସୂତ୍ରପାତ ହୋଇଛି ।

(୨) ଓଡ଼ିଶାର ସାମରିକ ପରମ୍ପରା, ଓଡ଼ିଶାର ପର୍ବ-ପର୍ବାଣୀ, ଭାସ୍କର୍ଯ୍ୟ ଓ ସାହିତ୍ୟ ଭିତରେ ଯେପରି ଓତପ୍ରୋତ ଭାବରେ ଜଡ଼ିତ ରହିଛି, ସେପରି ଅନ୍ୟ ଅନେକ ଭାରତୀୟ ଅଞ୍ଚଳମାନଙ୍କରେ ନଥାଇପାରେ । ତେଣୁ ଓଡ଼ିଶା-ରେଜିମେଣ୍ଟ-ଗଠନ ସହିତ ଏହି ସାମରିକ-ପରମ୍ପରା କିପରି ରାଜ୍ୟମୟ ପୁନର୍ଜାଗ୍ରତ ହେବ, ତା'ର ସେ ବ୍ୟବସ୍ଥା କରିବେ । ଓଡ଼ିଆମାନଙ୍କର ''ନନ୍-ମାର୍ଶାଲ'' ବା 'ଅସାମରିକ' ଜାତି ବୋଲି ନିନ୍ଦନୀୟତା ଯେପରି କଟେ ତା'ର ବ୍ୟବସ୍ଥା ସେ କରିବେ ଏବଂ ଏ ଦିଗରେ ଏକ ନିଶ୍ଚିତ ପଦକ୍ଷେପ ଭାବରେ, ପଦ୍ମଶ୍ରୀ ପଣ୍ଡିତ ସଦାଶିବ ରଥ ଶର୍ମାଙ୍କ ଦ୍ୱାରା ଆବିଷ୍କୃତ-ସଂପାଦିତ-ପ୍ରକାଶିତ ସପ୍ତଦଶ ଶତାବ୍ଦୀର ''ପାଇକ-ଖେଦା'' ପୁସ୍ତକଟି ପ୍ରତିରକ୍ଷା ବିଭାଗ ଦ୍ୱାରା ଯେପରି ହିନ୍ଦୀ ଓ ଇଂରାଜୀରେ ଅନୂଦିତ ଓ ପ୍ରକାଶିତ ହୁଏ ତାହା ସେ ଯେପରି ଦେଖନ୍ତି । କାରଣ, ଏ ପୁସ୍ତକ ସେପରି ପ୍ରଚାରିତ ହେଲେ, ଓଡ଼ିଆ ଜାତିର ସାମରିକ-ଐତିହ୍ୟର ସମ୍ମାନ ବଢ଼ିବା ନିଶ୍ଚିତ ।

ଏ ଲେଖକର ପରେ ଶ୍ରୀ କୁଞ୍ଜବିହାରୀ ଦାଶ କହିବାକୁ ଗଲେ । କିନ୍ତୁ ଅତ୍ୟନ୍ତ ଲଜ୍ଜା ଓ ପରିତାପର କଥା ଏହି ଯେ, ଶ୍ରୀଦାଶ ଜାନକୀବାବୁଙ୍କୁ ସମ୍ବର୍ଦ୍ଧନା ଜଣାଇବା ଆଗରୁ ହିଁ, ପରମ ଅସୌଜନ୍ୟ ଓ ଅବାନ୍ତର ଭାବରେ– ''ପାଇକ ଖେଦା ଆଦୌ କୌଣସି କୌଣସି ଭାଷାକୁ ଅନୁବାଦ ହେବା ଉଚିତ୍ ନୁହେଁ । ଏହା ଏକ ଜାଲ୍ ଗ୍ରନ୍ଥ...'' ଇତ୍ୟାଦି ମାରାତ୍ମକ କଥା ସମଗ୍ର ସମବେତ ବିଦ୍ୱତ୍‌ଜନ ମଣ୍ଡଳୀ ଆଗରେ ଘୋଷଣା କରି ଚାଲିଲେ ।

ଏକ ଶୁଭ-ସମ୍ବର୍ଦ୍ଧନା-ସଭାରେ ବାଦାନୁବାଦ ନିଶ୍ଚୟ ଏକ ଅବାଞ୍ଛନୀୟ ଓ

---

'ନବରବି', ୩ୟ ବର୍ଷ , ୧୦ମ ସଂଖ୍ୟା ।

ଅବାନ୍ତର ପ୍ରସଙ୍ଗ ହୋଇଥାନ୍ତା । ତେଣୁ, ଏ ଲେଖକ ସେ ସବୁ ଶୁଣି, ସେଠାରେ ଚୁପ୍ ହିଁ ରହିଲା । କିନ୍ତୁ ସଭା-ଭଙ୍ଗ ପରେ ଶ୍ରୀ ଦାଶଙ୍କୁ ଭେଟି ଲେଖକ ଏକାନ୍ତରେ କହିଲା– ''ଉନ୍ମୁକ୍ତ ସଭାଟାରେ ଏପରି ଗୋଟାଏ ମାରାତ୍ମକ ଓ ଅପ୍ରମାଣିତ ଅଭିଯୋଗ କିପରି ତମେ ଆଣି ପାରିଲ କହତ ! ମୁଁ ଏ ଗ୍ରନ୍ଥ ବାରମ୍ବାର ପଢ଼ିଛି ଏବଂ ଯା ଉପରେ ସ୍ତୁତିବାଚକ ନିବନ୍ଧ ମୁଁ ଇଲଷ୍ଟ୍ରେଟେଡ୍ ଉଇକ୍‌ଲିରେ ଲେଖିଛି ଏବଂ ସମୁଚିତ ଟିପ୍‌ପଣୀ ମଧ୍ୟ ଖଞ୍ଜିଛି ମୋର History of Oriya Literatureରେ ଓ ନିକଟ-ପ୍ରକାଶିତ The Saga of the Land of Jagannathରେ । ମୁଁ ଏ ଗ୍ରନ୍ଥରେ କୌଣସି ପ୍ରକାର ହେଲେ ଜାଲ୍ ଦେଖି ନାହିଁ – ବରଂ ଏହା ଓଡ଼ିଆ ଜାତିର ଏକ ସମ୍ମାନସୂଚକ ଗ୍ରନ୍ଥ । ସେ ବିଷୟରେ ମୁଁ ଦୃଢ଼-ବିଶ୍ୱାସୀ ନଥିଲେ, ମୁଁ ଏହାର ଧନ୍ୟତାର ପ୍ରସାରରେ ଉତ୍ସାହୀ ହୋଇନଥାନ୍ତି । ମୁଁ ତେଣୁ ତମ ଅଭିଯୋଗର ନିଶ୍ଚୟ ପ୍ରତିବାଦ କରିବି । ଆଶା କରେ ତମେ ତା'ର ଯଥାଯଥ ଉତ୍ତର ଦେବ ।''

ଡକ୍ଟର କୁଞ୍ଜବିହାରୀ ଦାଶ ସେଦିନ ସେଠାରେ ପାଇକଖେଦା ଗ୍ରନ୍ଥଟି ଏକ 'ଫେକ୍' (Fake) ବୋଲି ଘୋଷଣା କଲେ । ତାଙ୍କର ସେହି ଇଂରାଜୀ ଶବ୍ଦଟିକୁ ହିଁ ମୁଁ 'ଜାଲ୍' ବୋଲି ବ୍ୟବହାର କରୁଛି । ଜାଲର ଅନ୍ୟ ପ୍ରତିଶବ୍ଦ ହେଲା, 'ନକଲି'– ଅର୍ଥାତ୍, ନକଲି ସୁନା, ରୁପା, ଘିଅ, ତୈଳ ଓ ଔଷଧ ପରି, ''ପାଇକ ଖେଦା'' ଗ୍ରନ୍ଥଟି ଖାଣ୍ଟି ଦ୍ରବ୍ୟ ନହୋଇ, ଦାଶ ମହାଶୟଙ୍କ ମତରେ ଏକ ''ନକଲ'' ଗ୍ରନ୍ଥ ମାତ୍ର ।

ତା'ହେଲେ ଆମେ ଧରିନେବା ଯେ, ଦାଶ ମହାଶୟଙ୍କ ନିକଟରେ ଗୋପନୀୟ ଭାବରେ ଏକ ଖାଣ୍ଟି ''ପାଇକ ଖେଦା'' ଗ୍ରନ୍ଥ ଅଛି ଏବଂ ଯାହା ରଥଶର୍ମା ପ୍ରକାଶିତ କରିଛନ୍ତି ତାହା ସେହି ଖାଣ୍ଟି ବା ମୌଳିକ ଗ୍ରନ୍ଥ ଆଦୌ ନୁହେଁ– ତାହା ତା'ର ଏକ ''ଜାଲ'' ମାତ୍ର । ସତ୍ୟହେଲେ ଏହା ଏକ ଅତି ଶୁଭସମ୍ବାଦ ବୋଲି ଧରିବାକୁ ହେବ । ଦାଶ ମହାଶୟଙ୍କ ନିକଟରେ ''ଖାଣ୍ଟି'' ପାଇକ ଖେଦା ଯଦି ଅଛି, ତେବେ ତାହା ପ୍ରକାଶିତ ହେଲେ ଆମେ ସମସ୍ତେ ଖୁସୀ ହେବୁ – ରଥଶର୍ମାଙ୍କ ପୁସ୍ତକ ଆପେ ଆପେ ଲୁପ୍ତ ହୋଇଯାନ୍ତା । ଏବଂ ସେ ପଦ୍ମଶ୍ରୀଭୂଷିତ ହେବା ପରେ, ଏକ ପ୍ରଚଣ୍ଡ ଜାଲିୟାତ୍ ବୋଲି ମୁକ୍ତ ସଭାରେ ଅବାନ୍ତର ଓ ଅସୌଜନ୍ୟପୂର୍ଣ୍ଣ ରୀତିରେ ଏବଂ ରଥଶର୍ମାଙ୍କ ଅନୁପସ୍ଥିତିରେ ଏପରି ନିଃସଙ୍କୋଚରେ ଘୋଷଣା କରିବାକୁ ପଡ଼ିନଥାନ୍ତା ।

ସେ ଯାହାହେଉ, ଏହି ଗ୍ରନ୍ଥଟି ଏହି ଲେଖକର ଦୃଷ୍ଟିଗୋଚର ହେଲା ଦିନୁ, ସେ ଅଯାଚିତ ଭାବରେ ଏହାର ଖୋଲାଖୋଲି ଆଲୋଚନା ଓ ପ୍ରଶଂସା କରିଆସିଛି । ସେ, ତା'ର History of Orlya Literatureରେ ଏ ଗ୍ରନ୍ଥର ସ୍ତୁତିବାଚକ ଆଲୋଚନା କରିଛି ଏବଂ ଇଲଷ୍ଟ୍ରେଟେଡ଼ ଉଇକ୍‌ଲି ପରି ସର୍ବଭାରତୀୟ ପତ୍ରିକାରେ

ତା' ଉପରେ ନିବନ୍ଧ ପ୍ରକାଶିତ କରିଛି । ଦାଶ ମହାଶୟ ଏପର୍ଯ୍ୟନ୍ତ ସରକାରୀ ଓଡ଼ିଆ-ବିଭାଗର ଜଣେ ଦିଗ୍‌ଗଜ ପ୍ରତିମ ବ୍ୟକ୍ତି ଥିଲେ ଏବଂ ଏବେ ଉତ୍କଳ ସାହିତ୍ୟ ସମାଜ ପରି ଐତିହାସିକ ଅନୁଷ୍ଠାନର ସଭାପତି ମଧ୍ୟ ଅଛନ୍ତି । ସେ ଯଦି 'ପାଇକ ଖେଦା' ଏକ ଜାଲ୍ ଗ୍ରନ୍ଥବୋଲି ଗତ କୋଡ଼ିଏ ବର୍ଷ ଭିତରେ କେବେ କୌଣସିଠାରେ ପ୍ରତିବାଦ ଜଣାଇଥାନ୍ତେ, ତେବେ ତାହା ତାଙ୍କ ପଦାଧିକାରର ଯୋଗ୍ୟ ବ୍ୟବହାର ହୋଇଥାନ୍ତା ଏବଂ ଏହି ଲେଖକ ଏଯାବତ୍ ଏକ ଭ୍ରାନ୍ତ ତଥ୍ୟ ପ୍ରଚାର ଅଯଥା କରି ଚାଲିନଥାନ୍ତା ।

କିନ୍ତୁ ଶ୍ରୀଦାଶ, 'ପାଇକ ଖେଦା' ବିଷୟରେ ପଦେହେଲେ କୌଣସିଠାରେ ଲେଖିଥିବା ଲେଖକର ଦୃଷ୍ଟିଗୋଚର ହୋଇନାହିଁ । କେବେ କଉଣସିଠାରେ, କିଛି ହେଲେ, ଏ ସଂପର୍କରେ ଆଲୋଚନା ନକରି, ହଠାତ୍ ଏକ ଉନ୍ମୁକ୍ତ ସଭାରେ ସଂପୃକ୍ତ ବିଶିଷ୍ଟ ବ୍ୟକ୍ତିଙ୍କର ଅନୁପସ୍ଥିତିରେ ତାଙ୍କ ବିରୁଦ୍ଧରେ ଜାଲିୟାତିର ଗୁରୁ ଅଭିଯୋଗ ଘୋଷଣା କରିବା, ତାଙ୍କ ପରି ପଦାଧିଷ୍ଟ ବ୍ୟକ୍ତିର ଉଚିତ କର୍ମ ହୋଇଛି କି ?

ଶ୍ରୀଦାଶଙ୍କ ଅବଗମ୍ୟତାରେ ଯଦି 'ଖାଣ୍ଟି' ପାଇକ ଖେଦା ଗ୍ରନ୍ଥ କେଉଁଠି ଅଛି, ସେ ତାହା ପ୍ରକାଶିତ, ଆଲୋଚିତ ବା ପ୍ରମାଣ କରନ୍ତୁ ବା ରଥଶର୍ମା ପ୍ରକାଶିତ ପାଇକ ଖେଦା ଯେ ଅନ୍ୟ କିଛିକୁ ଅପେକ୍ଷା ନକରି ମଧ୍ୟ, ଏକ ବିଶୁଦ୍ଧ ଜାଲ୍ ହିଁ ବୋଲି ପ୍ରମାଣିତ ହୋଇପାରେ, ତାହା ସେ ଆଲୋଚନା କରି ଦେଖାଇଦିଅନ୍ତୁ । ଏହାହିଁ ସାହିତ୍ୟ ଜଗତର ସମ୍ମାନନୀୟ ବ୍ୟବହାର ।

ପାଇକ ଖେଦା ଗ୍ରନ୍ଥଟି, ପୁରୀର ''ଜଗନ୍ନାଥ ଗବେଷଣା ସମିତି'' ତରଫରୁ ତା'ର ପ୍ରଥମ ପ୍ରକାଶନ ଭାବରେ ୧୯୫୩ ଖ୍ରୀ:ଅରେ ପ୍ରକାଶ ଲାଭ କରେ । ମୁଖବନ୍ଧରେ ଲେଖାଅଛି ଯେ, ଶ୍ରୀ କୁଞ୍ଜବିହାରୀ ଦାଶ ଯେଉଁଠି ବହୁବର୍ଷ କଟାଇ ଆସିଥିଲେ, ସେହି ''ବିଶ୍ୱଭାରତୀ ଗବେଷଣା ବିଭାଗ (ଶାନ୍ତି ନିକେତନ) ମଧ୍ୟ ଆମ୍ଭ-ମାନଙ୍କୁ ଏ ଦିଗରେ କମ୍ ଉତ୍ସାହ ଦେଇ ନାହାନ୍ତି । ତେଣୁ ସମିତି ତାଙ୍କ ନିକଟରେ ବାସ୍ତବରେ ଋଣୀ ।''

୧୯୫୩କୁ ଶ୍ରୀ ଦାଶ ଶାନ୍ତିନିକେତନରେ ଥିଲେତ ? ସେ ଯାହାହେଉ, ବିଶ୍ୱ-ଭାରତୀ ଭଳି ବିଶ୍ୱ-ପ୍ରସିଦ୍ଧ ବିଦ୍ୟାପୀଠର ''ଗବେଷଣା-ବିଭାଗ'' ଯେଉଁ ଗ୍ରନ୍ଥକୁ ପ୍ରକାଶିତ କରିବାରେ ଉତ୍ସାହ ଓ ସାହାଯ୍ୟ ପ୍ରଦାନ କରିଥିଲେ, ତାକୁ ସେଦିନର ବିଶ୍ୱ-ଭାରତୀର ଓଡ଼ିଆ ଅଧ୍ୟାପକ ଶ୍ରୀ ଦାଶ, ଆଜି ''ଜାଲ୍'' ଘୋଷଣା କରିବା ଆଗରୁ, ତାହାର ପ୍ରାମାଣିକ ଆଲୋଚନା ଦେଇ ବହୁ ଆଗରୁ ସାବ୍ୟସ୍ତ କରିବା ଉଚିତ୍ ଥିଲା – ତା' ତ ସେ କରି ନାହାନ୍ତି । ତେଣେ ନିଜ ଡିପାର୍ଟମେଣ୍ଟରେ ଗବେଷଣାର ଗୌରବ-ଭାବରେ ପାଇକ ଖେଦାକୁ ଗ୍ରହଣ, ଏଣେ ନିଜକୁ ବ୍ୟକ୍ତିଗତ ଭାବରେ ଏକ 'ସୁପର-

ଗବେଷକ' ପ୍ରମାଣିତ କରେଇବା ପାଇଁ ତାକୁ 'ଜାଲ୍‌' ବୋଲି ପ୍ରଚାର– ଅତ୍ୟନ୍ତ ବିଚିତ୍ର ବ୍ୟବହାର ମନେହେଉଛି ।

କେବଳ ସେତିକି ନୁହେଁ, ମୁଖବନ୍ଧରେ ପୁଣି କୁହାଯାଇଛି ଯେ, ''ଭାରତର ରାଷ୍ଟ୍ରପତି ଡକ୍ଟର ରାଜେନ୍ଦ୍ର ପ୍ରସାଦଙ୍କର ସାହାଯ୍ୟ ସହାନୁଭୂତି, ଭାରତର ସର୍ବୋଚ୍ଚ ସେନାପତି ଜେନେରାଲ୍‌ କାରିଅପ୍ପା, ଡକ୍ଟର ହରେକୃଷ୍ଣ ମହତାବ ପ୍ରଭୃତି ବିଶିଷ୍ଟ ବ୍ୟକ୍ତି ମାନଙ୍କର ଉତ୍ସାହ ମିଳି ନଥିଲେ ଏ ପୋଥିର ପ୍ରକାଶନ ସମ୍ଭବ ହୋଇପାରିନଥାନ୍ତା ।''

ଏତେଏତେ ବଡ଼ଲୋକ ଏକ ଦୃଶ୍ୟ 'ଜାଲ' ଦ୍ରବ୍ୟକୁ ଅକୁଣ୍ଠିତ ଚିତ୍ତରେ ଉତ୍ସାହ ଓ ପୃଷ୍ଠପୋଷକତା ଦେଇଚାଲିଲେ – ଅଥଚ ସୁପଣ୍ଡିତ ଅଧ୍ୟାପକ ଦାଶେ ଏପର୍ଯ୍ୟନ୍ତ ନୀରବ ଥିଲେ କିଆଁ ? ସେତେବେଳେ ପ୍ରତିବାଦ ଜଣାଇଥିଲେ ଏ ଭଣ୍ଡତାର ଜନ୍ମହିଁ ହୋଇନଥାନ୍ତା ଏବଂ ସମଗ୍ର ଜାତି ଏପ୍ରକାର ନିନ୍ଦନୀୟ ଭଣ୍ଡତାରୁ ରକ୍ଷାପାଇଥାନ୍ତା ।

ମୁଖବନ୍ଧରେ ପୁଣି ଲେଖାଅଛି ଯେ, ''ଏ ପୋଥିଟି ବୋଲଗଡ଼ ନିବାସୀ ଶ୍ରୀଯୁକ୍ତ ଗଙ୍ଗାଧର ବିଧାରଙ୍କ ସୌଜନ୍ୟରୁ ପ୍ରାପ୍ତ । ସେଥିପାଇଁ ସେ ମହାଶୟଙ୍କଠାରେ ମୁଁ ସମିତି ପକ୍ଷରୁ କୃତଜ୍ଞତା ଜ୍ଞାପନ କରୁଅଛି ।''

ତେବେ ପ୍ରକୃତ ଜାଲିଯାତ୍‌ କିଏ ବୋଲି ଧରାଯିବେ – ବୋଲଗଡ଼ର ଖଣ୍ଡାୟତ ଗଙ୍ଗାଧର ବିଧାରେ, ନାଁ ପୁରୀର ରଥଶର୍ମା ? –ଦାଶ ମହାଶୟ ଏହାର ଉତ୍ତର ଦିଅନ୍ତୁ । ରଥଶର୍ମା ଯାହା ଛାପିଛନ୍ତି ତାହାହିଁ ଯଦି ବିଧାରଙ୍କ ପୋଥି, ତେବେ ରଥଶର୍ମାଙ୍କର ଜାଲିଯାତି ଆଉ ରହିଲା କେଉଁଠି ?

ଚୂଡ଼ାମଣିପୁରର କ୍ଷେତ୍ରମୋହନ ପଟ୍ଟନାଏକେ ଏ ପୋଥି ସମ୍ବନ୍ଧରେ ରଥଶର୍ମାଙ୍କୁ ପ୍ରଥମେ ଖବର ଦିଅନ୍ତେ, ବହୁଶ୍ରମରେ ଗଙ୍ଗାଧର ବିଧାରଙ୍କ ପାଖରୁ ରଥଶର୍ମା ଏହାକୁ ସଂଗ୍ରହ କଲେ । ପରେ କୁହୁଡ଼ି ଗଡ଼ରୁ ମଧ୍ୟ ଶ୍ରୀ ରଥଶର୍ମା ଏ ପୋଥିର ଆଉ ଏକ କପି ଓ ବାଣପୁରର ପ୍ରତାପରୁ ମଧ୍ୟ ଆଉ ଏକ କପି ପାଇଛନ୍ତି ।

ଏହିପରି ବିଭିନ୍ନ ସ୍ଥାନ ଓ ବିଭିନ୍ନ ବ୍ୟକ୍ତିଙ୍କଠାରୁ ପ୍ରାପ୍ତ ଏକ ପ୍ରକାର ପୋଥି ଏକ ଜାଲ ଗ୍ରନ୍ଥ ମାତ୍ର ବୋଲି କେଉଁ ଯୁକ୍ତିରେ କୁହାଯିବ, ବୁଝି ହେଉ ନାହିଁ ।

ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଭଳି ଲୋକ ତେଣୁ ଏ ଗ୍ରନ୍ଥଟିକୁ ଶ୍ରୀ ରଥଶର୍ମାଙ୍କ ଜାଲ୍‌ ବୋଲି ଘୋଷଣା କରିବା ପୂର୍ବରୁ, ତା'ର ଉପରଲିଖିତ ଉତ୍ସ-ମାନଙ୍କଠାରେ ସର୍ବାଦୌ ଅନୁସନ୍ଧାନ କରିବା ଉଚିତ ଥିଲା । ଶ୍ରୀ ରଥଶର୍ମା ଏହି ଏହି ଭିନ୍ନ ସ୍ଥାନ ଓ ବ୍ୟକ୍ତିଙ୍କଠାରୁ ଏ ଗ୍ରନ୍ଥ ସଂଗ୍ରହ ନକରି, ନିଜେ ଘରେ ବସି ହିଁ ତାହା ଯେ ଲେଖିଦେଇଛନ୍ତି, କେବଳ ତାହାହିଁ ପ୍ରମାଣ କଲେ, ରଥଶର୍ମା ପ୍ରକାଶିତ ପାଇକ-ଖେଦା ଜାଲ୍‌ ପ୍ରମାଣିତ ହୋଇପାରେ – ନଚେତ୍‌ ନୁହେଁ ।

'ପାଇକ ଖେଦା' ପରି ଗ୍ରନ୍ଥ ଉତ୍କଳ ଦେଶରେ ଯେତେ ପ୍ରଚାରିତ ଓ ଆଲୋଚିତ ହେବାର କଥା ତାହା ହୋଇନାହିଁ । ପ୍ରତିଧ୍ୱନି-ସର୍ବସ୍ୱ ଓଡ଼ିଆ ଅଧ୍ୟାପକ-ଆଲୋଚକ ମାନେ ଏ ସଂପର୍କରେ ସଂପୂର୍ଣ୍ଣ ନୀରବ; କିନ୍ତୁ ସମଗ୍ର ଭାରତୀୟ ସାହିତ୍ୟରେ ଏହା ଏକ ଅସାଧାରଣ ଗ୍ରନ୍ଥ ଏବଂ ସେହି ଭାବରେ ଓଡ଼ିଆ ସାହିତ୍ୟର ଗୌରବବାହକ ମନେକରି ଏହି ଲେଖକ ଓଡ଼ିଶାରେ ଏକମାତ୍ର ବ୍ୟକ୍ତି, ଯେ କି ଗତ କୋଡ଼ିଏ ବର୍ଷ ଧରି ଏ ଗ୍ରନ୍ଥର ଆଲୋଚନା କରିଆସୁଛି ଏବଂ ସେଥିପାଇଁ, ଲେଖକ ଏହି ଗ୍ରନ୍ଥକୁ ବାରମ୍ବାର ପାଠ କଲେ ମଧ୍ୟ, ଗ୍ରନ୍ଥଟି ଏପରି ଓଡ଼ିଆ ମିଲିଟାରୀ ପରିଭାଷାରେ ଭର୍ତ୍ତି ଯେ, ତା'ର ଏକ ତୃତୀୟାଂଶ ଲେଖକ ପ୍ରତି ଏପର୍ଯ୍ୟନ୍ତ ଅବୋଧ୍ୟ ରହିଛି । ଗ୍ରନ୍ଥଟିର ମୁଖବନ୍ଧରେ ମଧ୍ୟ କୁହାଯାଇଛି ଯେ "ଗ୍ରନ୍ଥରେ ଅନେକ ଦୁର୍ବୋଧ୍ୟ ଅପ୍ରଚଳିତ ଶବ୍ଦ ରହିଅଛି । ସେଗୁଡ଼ିକ ମଧ୍ୟରୁ କେତେକ ଶବ୍ଦର ପ୍ରୟୋଗ ଅବଧି ଖଣ୍ଡାୟତ ଅଞ୍ଚଳରେ ପ୍ରଚଳିତ ହେବାର ଦେଖାଯାଏ । ଏହି ବିଭାଗୀୟ ଅବୋଧ୍ୟ ଶବ୍ଦମାନଙ୍କର ପ୍ରକୃତ ଅର୍ଥ ଜାଣିବା ନିମନ୍ତେ ସମିତିର କର୍ମୀବୃନ୍ଦ ଯଥେଷ୍ଟ ଅନୁସନ୍ଧାନ କରିଛନ୍ତି ଏବଂ ପ୍ରାପ୍ତ ଶବ୍ଦାର୍ଥ ଟିପ୍‌ପଣୀ ରୂପେ ବହିରେ ଦିଆଯାଇଛି ।"

କିନ୍ତୁ ତାହା ସତ୍ତ୍ୱେ, ବହିଟିର ଅନେକାଂଶ ସାଧାରଣ ପାଠକ ପ୍ରତି ଏବେ ବି ଦୁର୍ବୋଧ୍ୟ ରହିବ । ବହିଟି ସପ୍ତଦଶ ଶତାବ୍ଦୀର ଓଡ଼ିଆ ପାଇକ କହ୍ନେଇ ଚମ୍ପତିରାୟଙ୍କ ଦ୍ୱାରା ଜାତୀୟ ଉତ୍ସାହରେ ଲିଖିତ । କବି ବା ଲେଖକର ଯୋଗ୍ୟତା ଚମ୍ପତିରାୟଙ୍କର ଆଦୌ ନଥିଲା । ବହିଟି ସ୍ୱାଭାବିକ ଭାବରେ ପୂରାପୂରି ଏକ ଦରପାଠୁଆ 'ଜବାନ'ର ଅଶିଷ୍ଟ ଶବ୍ଦମାଳାରେ ହିଁ ପରିବେଷିତ । ମୁଖବନ୍ଧ ମଧ୍ୟ ମାନିଛି ଯେ "ପୋଥିର ସ୍ଥାନେ ସ୍ଥାନେ ଆକ୍ଷରିକ ପ୍ରମାଦ ଓ ଅସଂଯତ ଶୈଳୀ ପରିଲକ୍ଷିତ ହୁଏ । କିନ୍ତୁ ତାହା ମୂଳ ପାଣ୍ଡୁଲିପିର ମୌଳିକତା ଦୃଷ୍ଟିରୁ ଅବିକଳ ରଖାଯାଇଛି ।" ଗ୍ରନ୍ଥ ସମ୍ବନ୍ଧରେ ଓ ନିଜ ସମ୍ବନ୍ଧରେ କହ୍ନାଇ ଚମ୍ପତିରାୟ ମଧ୍ୟ ଏହିପରି କହିଛନ୍ତି—

ଅଣପାଠୁଆ ଗୋ ମାତ, କି ବର୍ଣ୍ଣିବି ମୁହିଁ
ଆସନ କରଣ ଯତି ଯେଉଁ ଗତି ପାଇ ।

× × ×

ତୋ'ର ନାମ ଧରି ମୁଁ ବର୍ଣ୍ଣିବି ମୂଳୁ ଧରି
ପାଇକ ବିଦିଆ ଘୋର, ନ ଜାଣେ ମୂରାରି,
କେସନେ ଯେ ଗଜପତି ସଇନ ହୋଇବ,
ତୋହରି ପ୍ରସାଦୁ ମାତ ସକଳ ଲିହିବ ।

× × ×

ଯାହା ପିତା-ପିତାହୁଁ ଶୁଣିଲି,
ଯାହା କୁଳ, ଶାହାସ୍ର ଦେଖିଲି ।
ଯାହା ମୋ' ଅଙ୍ଗ-ଲିଭା-ଭିଆଣ
ତାହା ଗୀତରେ ରଞ୍ଜିଲି ଜାଣ ।''

× × ×

ଏତ ଗହନ କାଳ ପଡ଼ିଲା
ଆମ କୁଳକୁ ବିପତ୍ତି ଦେଲା ।
ଚଉଖାନି କରିଣ ଆସିଣ
ସବୁ ଗ୍ରାସିଲାଣି ତ ପଠାଣ ।
ଆଉ ଟାଣତ ରହିବ ନାହିଁ,
ଏହି ଖେଦାରେ କହଇ ମୁହିଁ ।
ଆମ ଥଳ, କୁଳ, ମାନ ଯିବ,
କାଳେ କଥାମାନ ଥିବ ।''

ଏପରି ଛାନ୍ଦସିକ ଦୋଷପୂର୍ଣ୍ଣ, ରସଶୂନ୍ୟ ଶୁଷ୍କ, ଅଲଳିତ ଓ ଦୁର୍ବୋଧ୍ୟ ମଲିଟାରୀ ''ଟେକ୍‌ନିକାଲ'' ପରିଭାଷାରେ ଏପରି ଏକ ପ୍ରାଚୀନ ଗ୍ରନ୍ଥ ରଥଶର୍ମା ତାଙ୍କ ପୁରୀ-ଘରେ ବସି ବସି ଲେଖିପକାଇଲେ ବୋଲି ଯେଉଁମାନେ ବିଶ୍ୱାସ କରିପାରନ୍ତି, ସେମାନଙ୍କର ସାହିତ୍ୟ-ସୃଷ୍ଟି ବା ପଦ୍ୟ-ରଚନା ସଂପର୍କରେ କିଞ୍ଚିତ୍ କାଣ୍ଡ-ଜ୍ଞାନ ଅଛି ବୋଲିତ ମନେ ହେଉନି । ଯଦି ଦରପାଠୁଆ ରଥଶର୍ମା ଏପ୍ରକାର ଅଦ୍ଭୁତ ସାହିତ୍ୟିକ କ୍ରୀଡ଼ା ଦେଖାଇପାରନ୍ତି, ତେବେ ଶ୍ରୀ ଦାଶଙ୍କ ପରି ପାଠୁଆଏ ଫୁଲକା ଉପରକୁ ଡେଇଁପଡ଼ି ତା'ଠାରୁ ଅଧିକ ଅଦ୍ଭୁତତର କ୍ରୀଡ଼ା ଦେଖାଉ ନାହାନ୍ତି କାହିଁକି ? ଜଣେ ଯଦି ପାଇକଖେଦା ପରି ପୂରା ଏକ ଗ୍ରନ୍ଥକୁ ଖାଲି ଜାଲରେ ଲେଖି ଦେଇ ପାରେ, ତେବେ ଏ ପ୍ରକାର ଜାଲିଆତିର ସହଜ-ସମ୍ଭାବ୍ୟତାକୁ ନିଶ୍ଚିତ ଭାବରେ ପ୍ରମାଣିତ କରିବା ପାଇଁ ସୁପର ପାଠୁଆ ଅଧ୍ୟାପକ ବର୍ଗ ସମସ୍ତେ ହେଲେ ମିଶି, ଏପ୍ରକାର ଗ୍ରନ୍ଥର ପୃଷ୍ଠା ଏ ହେଲେ ଲେଖି ଦେଖାଇ ଦିଅନ୍ତୁ ବୋଲି, ଲେଖକର ବିନୀତ ଚାଲେଂଜ ।

କିନ୍ତୁ ଓଡ଼ିଆ ଭାଷାରେ ଗାଦିଏ ଗ୍ରନ୍ଥ ଲେଖିସାରିଥିଲେ ହେଁ, ନିଜେ ଏହି ଲେଖକ, କହ୍ନେଇ ଚମ୍ପତିରାୟଙ୍କ 'ଆର୍କେଇକ୍' ଭାଷାରେ ଦୁଇଟି ଧାଡ଼ି ମଧ୍ୟ ଲେଖି ପାରିବ ନାହିଁ ବୋଲି ଘୋଷଣା କରିବାରେ କୌଣସି ଲଜ୍ଜା ବୋଧ କରୁନାହିଁ– ଠିକ୍ ଯେପ୍ରିକି, ଗର୍କିଙ୍କଠାରୁ ମସ୍କୋ ଓ ଲେଲିନଗ୍ରାଡ଼ରେ କବି-ପ୍ରସୂତି-ସ୍କୁଲ ସବୁ ଥିବାର ପ୍ରଥମ କରି ଶୁଣି, ପରମ ବିସ୍ମୟରେ ଲେନିନ୍ କହିଥିଲେ– ''ଶିକ୍ଷା ପାଇ କି କବିତା

ଲେଖାଯାଇପାରେ ? ମତେ ତମେ ସିଧା ଛାଡି଼ ଦେଲେ ମଧ୍ୟ ତ ମୁଁ ଦି'ଲାଇନ୍ କବିତା ଲେଖିପାରିବିନି ।''

ଅନ୍ୟ ପକ୍ଷରେ, ଲେଖକର ଆଶଙ୍କା ଏହିକି ଯେ, ଯେହେତୁ ରଥଶର୍ମା ଶସ୍ତା-ଶସ୍ତା-ଏମ୍‌ଏ-ପି-ଏଇଚ୍-ଡି ଇତ୍ୟାଦି ସଂଗ୍ରହ କରି କୌଣସି ପଦପଦବୀର ଅଧିକାରୀ ହୋଇନାହାନ୍ତି, ସେ ଜଣେ ପୁରୀର ଦରପାଠୁଆ ସାମାନ୍ୟ ପଣ୍ଡା ମାତ୍ର, ତେଣୁ ତାଙ୍କୁ ଏ ରାଜ୍ୟର କେତେକ ଲୋକ ହୀନ ନିଷ୍ପନ୍ନ କରିବାକୁ ଅକୁଣ୍ଠ ଉତ୍ସାହୀ । କିନ୍ତୁ ଲେଖକର ମନେହୁଏକି ଯେ ଓଡ଼ିଶାର ସାଂପ୍ରତିକ କାଳର ସମଗ୍ର ଶିକ୍ଷକ-ଅଧ୍ୟାପକ ଶ୍ରେଣୀଙ୍କ ଅପେକ୍ଷା, ଦରିଦ୍ର ଓ ଦରପାଠୁଆ ପଦପଦବିହୀନ ସଦାଶିବ ରଥଶର୍ମା ଓଡ଼ିଆ ଜାତିର ଗୌରବ ପାଇଁ, ଅତୁଳନୀୟ ଭାବରେ ଅଧିକ ମହାର୍ଘ ସାମଗ୍ରୀ ସବୁ ଛାଡ଼ି-ଯାଉଛନ୍ତି ।

''ଶିଳ୍ପ ପ୍ରକାଶ'', 'କୋଣାର୍କ' ଓ ''ପାଇକଖେଦା'' ପରି ରତ୍ନମାନଙ୍କୁ ଯେଉଁ ଲୋକ ବିଶ୍ୱଲୋଚନକୁ ଆଣିପାରିଲେ, ତାଙ୍କୁ ଏକ ଜାଲିଆତ୍ ମାତ୍ର କହି ଉଡ଼େଇ-ଦେବାର ବୌଦ୍ଧିକ ସାମର୍ଥ୍ୟ, କେବଳ ଶ୍ରୀ ଦାଶଙ୍କର ନୁହେଁ, ତାଙ୍କର ସମଗ୍ର ଅଧ୍ୟାପକ ଶ୍ରେଣୀର ଏକୀଭୂତ ଶକ୍ତିରେ ବୋଧହୁଏ ନାହିଁ । ଶ୍ରୀରଥଶର୍ମା ବ୍ୟକ୍ତିଗତ ଜୀବନରେ ଦାଗୀ ବା ଜାଲିଆତ୍ ହୋଇପାରନ୍ତି । କିନ୍ତୁ ଏହି ଲେଖକ ତାଙ୍କର ଦେଶ-ମାତୃକା ପାଇଁ ପରମ ଉତ୍ସାହ ଓ ଦେଶ-ଗୌରବ-ବାହୀ ମଣି-ରତ୍ନକୁ ଅନ୍ଧକାରରୁ ଟାଣି ଆଣି ସମସ୍ତଙ୍କ ସମ୍ମୁଖରେ ଥୋଇବାର ସିଦ୍ଧିକୁ ସାଲ୍ୟୁଟ ଦେବାରେ କେବେହେଲେ କୌଣସି କୁଣ୍ଠାବୋଧ କରିନାହିଁ । ଲେଖକ ନିକଟରେ ପଦ-ପଦବୀ ବା ତାତ୍‌କାଳିକ ଆସନ କ୍ଷମତାର କୌଣସି ମୂଲ୍ୟ ନଥାଏ । ତେଣୁ ଶ୍ରୀ ରଥଶର୍ମାଙ୍କୁ ତାଙ୍କର ଏପ୍ରକାର ସହଜ-ଲବ୍ଧ ଆନୁସଙ୍ଗିକ ଔପାଧିକ ଗୁଣାଦି କିଛି ନଥିଲେ ହେଁ, ତାଙ୍କଠାରୁ କୌଣସି ପ୍ରତ୍ୟୁପକାରର ଆଶା ନଥାଇ ମଧ୍ୟ, ସେ ଦେଇ ଆସିଛି ସଶ୍ରଦ୍ଧ ସାଲ୍ୟୁଟ । ଅନ୍ତତଃ ଏଇ ''ପାଇକ ଖେଦା'' ଗ୍ରନ୍ଥଟିର ପ୍ରକାଶ ଯେକୌଣସି ପ୍ରଫେସର ପାଇଁ ଚିର ଗୌରବ ହୋଇଥାନ୍ତା । ଏଥିରେ ସାମାନ୍ୟତମ ଜାଲିଆତି ଲେଖକ ଦେଖି ପାରିନାହିଁ । ନିନ୍ଦୁକ ବନ୍ଧୁମାନଙ୍କୁ ତେଣୁ ଅନୁରୋଧ ସେମାନେ ଏହାର ଜାଲିଆତ୍ ପ୍ରମାଣିତ କରନ୍ତୁ । ଶ୍ରୀରଥଶର୍ମା ବା ଅନ୍ୟ ଯେକୌଣସି ବ୍ୟକ୍ତି ଅପେକ୍ଷା, ''ସତ୍ୟ'' ହିଁ ଏ ଲେଖକ ନିକଟରେ ପ୍ରିୟତର ଓ ଅଧିକ ସମ୍ମାନନୀୟ । 'ପାଇକ ଖେଦା' ଜାଲ ବୋଲି ପ୍ରମାଣିତ ହେଲେ, ସେହି ''ସତ୍ୟକୁ'' ସାଲ୍ୟୁଟ୍ ଦେବାକୁ ଲେଖକ ଆଦୌ କୁଣ୍ଠିତ ହେବ ନାହିଁ ।

--

# ଗର୍କିଙ୍କ ଗହଣରେ*

ଦୁଇଶହ ବର୍ଷ ଇଂରେଜ ଶାସକମାନେ ଆମକୁ ଶିଖେଇଚାଲିଥିଲେ ଯେ, ଭାରତବର୍ଷର ମାଟିରେ ପ୍ରଥମ ଯେଉଁ ଶ୍ୱେତାଙ୍ଗ ପାଦଦେଲେ, ସେ ହେଉଛନ୍ତି ପର୍ତ୍ତୁଗୀଜ୍ ନାବିକ ଭାସ୍କୋଡ଼ାଗାମା ।

ସେ ହେଲା ୧୪୯୮ ସାଲର ଘଟଣା, ଯେତେବେଳେ କି ଓଡ଼ିଶାରେ ସମ୍ରାଟ୍ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ ମାତ୍ର ଆରମ୍ଭ ହୋଇଥିଲା । କିନ୍ତୁ ଏବେ ଜଣାପଡ଼ୁଛି ଯେ ଭାରତବର୍ଷକୁ ପ୍ରଥମାଗତ ଇଉରୋପିଆନ୍ ହେଉଛନ୍ତି ଆଫ୍‌ନାସୀ ନିକିଟିନ୍ ନାମକ ଜଣେ ଋଷୀୟ ବଣିକ । ସେ ସମ୍ରାଟ କପିଳେନ୍ଦ୍ର ଦେବ ଓଡ଼ିଶାରେ ରାଜତ୍ୱ କରୁଥିବା ସମୟରେ ଇରାନ ବାଟେ ଆସି ଉତ୍ତର ଭାରତ କେବଳ ବୁଲିଯାଇଥିଲେ ନୁହେଁ, ସେ ଏଠୁ ଫେରି ''ତିନି ସମୁଦ୍ର ଆରପଟକୁ ଯାତ୍ରା'' ନାମକ ଅତି ମୂଲ୍ୟବାନ୍ ଭ୍ରମଣକାହାଣୀ ନିଜ ଭାଷାରେ ଛାଡ଼ିଯାଇଛନ୍ତି। ଭାରତୀୟ ଶିକ୍ଷିତ ସଂପ୍ରଦାୟର ଖୁବ୍ କମ୍ ଲୋକ ହୁଏତ ଜାଣିଥିବେ ଯେ, ଊନବିଂଶ ଶତାବ୍ଦୀରେ କଲିକତାରେ ପ୍ରଥମ ବଙ୍ଗାଳୀ ବା ପ୍ରଥମ ଆଧୁନିକ ଭାରତୀୟ ରଙ୍ଗମଞ୍ଚ ଠିଆକରାଇବା ଲୋକ ହେଉଛନ୍ତି, ଜେରାସିମ୍ ଲେବେଡେଡ୍ ନାମକ ଜଣେ ଋଷୀୟ ବୁଦ୍ଧିଜୀବୀ । ଗତ ଦୁଇଶହ ଅଢ଼େଇ ଶହ ବର୍ଷ ଧରି ଆମର ପଶ୍ଚିମ ଗୋଲାର୍ଦ୍ଧକୁ ଚାହିଁବା ଜାଣିବାର ଝରକା ଥିଲା ସାତହଜାର ମାଇଲ ଦୂରରେ ଦ୍ୱୀପରାଜ୍ୟ ଇଂଲାଣ୍ଡ । ଅଥଚ ଆମର ମାନଚିତ୍ର ବରାବର ସ୍ପଷ୍ଟ ସଂକେତ ଦେଇଆସିଛି ଯେ ଋଷିଆ ହିଁ ଆମର ନିକଟତମ ରାଷ୍ଟ୍ର, ଇଉରୋପୀୟ ପ୍ରତିବେଶୀ । ସେଇଥିପାଇଁ ପୂର୍ବତନ ଋଷ୍ ସୋଭିଏଟ୍ ପ୍ରଧାନମନ୍ତ୍ରୀ କ୍ରୁଶ୍ଚେଭ ଶ୍ରୀନଗରରେ କହିଥିଲେ ''ଆମେ ଏଇ ପାହାଡ଼ ଆରପଟେ ଅଛୁ – ବିପଦବେଳେ ପାହାଡ଼ ଉପରୁ ଖାଲି ଡାକଟାଏ ମାରିଦେଲେ ତମପାଖେ ଆମେ ଠିଆହୋଇଯିବୁ ।'' ବସ୍ତୁତଃ ସ୍ୱାଧୀନତା ପରେ ଭାରତବର୍ଷରେ ଭାରତଋଷୀୟ ରାଷ୍ଟ୍ରୀୟ ବନ୍ଧୁତା ହୁଏତ ଆମର ବୈଦେଶିକ ନୀତିର ଏକମାତ୍ର ସଫଳତା ବୋଲି ଧରାଯାଇ ପାରେ । ସର୍ବୋପରି, ବିଶ୍ୱବିଖ୍ୟାତ ଥିଓସୋଫିକାଲ୍ ସୋସାଇଟିର ପ୍ରତିଷ୍ଠାତ୍ରୀ ମହୀୟସୀ ଋଷୀୟ ମହିଳା ମାଦାମ୍ ବ୍ଲାଭାଟସ୍କିଙ୍କ ରଚନାବଳୀ ଦେଇ ଭାରତୀୟ ଆଧ୍ୟାତ୍ମିକ

*୨୭ ମାର୍ଚ୍ଚ, ୧୯୬୮, ଗର୍କିଙ୍କ ଜନ୍ମଶତବାର୍ଷିକୀର ସନ୍ଧ୍ୟାରେ ଉତ୍କଳ ସାହିତ୍ୟ-ସମାଜ ପକ୍ଷରୁ ଅନୁଷ୍ଠିତ ଗର୍କି-ଶ୍ରାଦ୍ଧ ସଭାରେ ପଠିତ ।

[ସୌଜନ୍ୟ: 'ଝଙ୍କାର', ୨୦ଶବର୍ଷ, ଚତୁର୍ଥସଂଖ୍ୟା, ଜୁଲାଇ ୧୯୬୮, ପୃ.୪୫୫-୪୬୦]

ଜ୍ଞାନ ଯେପରି ଭାବରେ ଗତ ଶତାବ୍ଦୀଠାରୁ ବିଶ୍ୱବ୍ୟାପ୍ତ ହୋଇପଡ଼ିଛି ଏବଂ ବିଶ୍ୱ-ବିଖ୍ୟାତ ଋଷୀୟ ଲେଖକ ଟଲଷ୍ଟୟ ଯେପରି ଭାବରେ ଗାନ୍ଧିଜୀଙ୍କ ଚିନ୍ତାଧାରାକୁ ପ୍ରଭାବିତ କରିଥିଲେ, ତାହା ମଧ୍ୟ ଭାରତ ଓ ଋଷୀୟା ଭିତରେ ପ୍ରକଟିତ ହୋଇ-ଆସିଥିବା ଘନିଷ୍ଠ ଆତ୍ମିକ ସମ୍ବନ୍ଧକୁ ଆମ ଚିତ୍ତରେ ଚିର ଜାଗ୍ରତ ରଖିବା ଉଚିତ ।

ଆଜି (୨୮ମାର୍ଚ୍ଚ, ୧୯୬୮ରେ), ଏହି ଧରଣର ସଞ୍ଚାଳଚର ସର୍ବହରା ପତିତ ଦଳିତମାନଙ୍କର ପ୍ରକୃତ ବାଣୀ ପ୍ରତିନିଧି, ଋଷିଆର ବରେଣ୍ୟ ସ୍ରଷ୍ଟା ଗର୍କିଙ୍କର ଜନ୍ମ-ଶତବାର୍ଷିକ ଦିବସରେ ଭାରତ-ଋଷିୟାର ଏହି ପ୍ରକାର ପାରସ୍ପରିକ ଆତ୍ମିକ ନିକଟତା ଆପେ ଆପେ ମନେପଡ଼ିଯାଉଛି । କାରଣ ଗର୍କିଙ୍କର ପ୍ରତିଭା, ଏକକ ମହିମାରେ ଯେତେ ଉଜ୍ଜ୍ୱଳ ନୁହେଁ, ତା'ଠାରୁ ବହୁ ଗୁଣରେ ଜାଜ୍ୱଲ୍ୟମାନ ତାଙ୍କର ମାନବିକତାମୟ ବ୍ୟକ୍ତିତ୍ୱ ଏବଂ ମାଦାମ୍ ବ୍ଲାଭାଟସ୍କି ବା ଟଲଷ୍ଟୟଙ୍କ ପ୍ରଭାବ ପରି ଗର୍କି ରଚନାବଳୀ ଏବଂ ଗର୍କି-ବ୍ୟକ୍ତିର ଭାରତୀୟ ଚେତନାରେ କମ୍ ଗଭୀର ରେଖାପାତ କରିଯାଇନାହିଁ । ପୁଣି ଟଲଷ୍ଟୟଙ୍କ ପରି ଗର୍କି ନିଜେ ମଧ୍ୟ ପ୍ରାଚୀନ ଭାରତୀୟ ସଂସ୍କୃତି ପ୍ରତି ଗଭୀର ଶ୍ରଦ୍ଧାବାନ ଥିଲେ । ଏହା ମଧ୍ୟ ନିଃସନ୍ଦେହ ଯେ, ଏହି ଶତାବ୍ଦୀର ଦ୍ୱିତୀୟ ପାଦରୁ ଆରମ୍ଭକରି ଏ ପର୍ଯ୍ୟନ୍ତ, ସର୍ବହରାର ବାଣୀ ବାହକ ଓ ଦଳିତମାନଙ୍କର ମର୍ମ୍ମବାଣୀ ଭାବରେ, ପୃଥିବୀର ସବୁ ଦେଶ ଓ ସବୁ ଜାତି ପରି ଭାରତବର୍ଷରେ ମଧ୍ୟ ଗର୍କି ହିଁ ଆଦର୍ଶ ପ୍ରତିମା ଭାବରେ ଦଣ୍ଡାୟମାନ ଏବଂ ସେ ଆଦର୍ଶ କୌଣସି ଯୋଜନା-ପ୍ରସୂତ ନୁହେଁ, ଯାହା ଅଧିକାଂଶ ତଥାକଥିତ ଗଣଲେଖକ ବା ଗଣ-କବିଙ୍କଠାରେ ଦେଖାଦେଇଥାଏ – ଗର୍କିଙ୍କ ନିକଟରେ ତାହା ହୋଇଉଠିଥିଲା ତାଙ୍କ ଜୀବନର ସ୍ୱାଭାବିକ ପ୍ରକାଶ । ସେ ଆଜି ପତିତ ଦଳିତର ମର୍ମ୍ମବାଣୀ ରୂପେ ସମଗ୍ର ବିଶ୍ୱ-ଆଗରେ ସ୍ୱର୍ଣ୍ଣ ମହିମାରେ ଦଣ୍ଡାୟମାନ । ଆମେ ଭୁଲିଯିବାନି ଯେ, ସେ ନିଜେ ହିଁ ଜନ୍ମ ନେଇଥିଲେ ସମାଜର ଦୟନୀୟତମ ପତିତ-ଦଳିତର ସ୍ତରରେ । ଘୋରତମ ଦୀନତା ଭିତରୁ ଏହି ବିରାଟ ସାରସ୍ୱତ ପ୍ରତିଭା ଓ ମହିମାମୟ ମାନବିକତା କିପରି ସଂପୂର୍ଣ୍ଣ ଅନ୍ୟ-ନିରପେକ୍ଷ ହୋଇ କେବଳ ଆତ୍ମ-ଚେଷ୍ଟାରେ ହିଁ ଆସ୍ତେ ଆସ୍ତେ ଉପରକୁ ଉଠି ଉଠି, ଶେଷରେ ବିଶ୍ୱ-ସମ୍ବର୍ଦ୍ଧନାର ଭାଜନ ହୋଇପାରିଛି, ତାହା ଭାବିଲେ ଗର୍କିଙ୍କର ଜୀବନଚରିତ ହିଁ ଏକ ପ୍ରେରଣାଦାୟୀ ମହାକାବ୍ୟ ବୋଲି ମନେହୁଏ । ଆମେ ଆଜି ସେହି ମହିମାମୟ ବ୍ୟକ୍ତିଙ୍କୁ ସଶ୍ରଦ୍ଧ ନମସ୍କାର ଜଣାଉଛୁ ।

କେବଳ ଗର୍କି ନୁହେଁ, ଚେକଭ, ଶୋଲୋକ୍‌ଭ ଆଦି ଅନ୍ୟାନ୍ୟ ବିଖ୍ୟାତ ଲେଖକମାନଙ୍କର ଉଭୟ ଜୀବନ ଓ ରଚନାର ଧାରା ଆଲୋଚନାକଲେ, ଆମେ ଭାରତୀୟ ଲେଖକମାନେ କିପରି ଘୋର ଆତ୍ମ-ପ୍ରତାରଣା ଭିତରେ ହିଁ ବଞ୍ଚି ଆସିଛୁ, ତାହାହିଁ ଏହି ଲେଖକ ନିକଟରେ ସ୍ପଷ୍ଟ ପ୍ରତୀୟମାନ ହୋଇଉଠେ । ରାଷ୍ଟ୍ରୀୟ ଋଷୀୟ

ସାହିତ୍ୟ ଯେଉଁ କାଳରେ ହଠାତ୍ ବିଶ୍ୱ ସାହିତ୍ୟ ହୋଇଉଠିଲା, ସେହି କାଳକୁ ଏବେ ''ସେଣ୍ଟପିଟସ୍‌ବର୍ଗ-ଯୁଗ'' (୧୭୦୨-୧୯୧୭) ବୋଲି କୁହାଯାଏ । ୧୯୧୭ ଠାରୁ ''ସୋଭିଏଟ ଯୁଗ'' ଆରମ୍ଭହୋଇଛି । ଗର୍କି ଏହି ଉଭୟ ଯୁଗର ସ୍ୱର୍ଣ୍ଣ ସେତୁ କହିଲେ ଚଳେ ଏବଂ ଏହି ଉଭୟ କାଳର ଋଷୀୟ କବି ଓ ଲେଖକମାନଙ୍କର ଜୀବନଧାରାରେ ଜୀବନକୁ ପୁଙ୍ଖାନୁପୁଙ୍ଖ ଭାବରେ ଜାଣିବାର ଅଦମ୍ୟ ଆଗ୍ରହ ଆମେ ଲକ୍ଷ୍ୟକରୁ । ଲେଖକ ଚେକଭଙ୍କ ଭିତରେ ଥିବା ଅପୂର୍ବ ମାନବିକତାମୟ ଡାକ୍ତର ଚେକଭ ସଂକ୍ରାମକ କଲେରାରୁ ଅସହାୟ ଜନତାକୁ ରକ୍ଷା କରିବା ପାଇଁ ସମଗ୍ର ଋଷିଆ ଅତିକ୍ରମ କରି ଯାଇ ପହଞ୍ଚିଛନ୍ତି କାମସ୍କଟକାରେ । ପୁଣି ସେ ସେଠୁ ଯାଇଛନ୍ତି ଅଦମ୍ୟ କୌତୂହଳ ନେଇ ସାଖାଲିନ୍ ଦ୍ୱୀପମାଳାକୁ, ଯାହା ସେତେବେଳେ ଥିଲା ଋଷିଆର ଆଣ୍ଡାମାନ । ସେଠାରେ ଋଷୀୟ ଅପରାଧୀମାନଙ୍କର ହୃଦୟବିଦାରକ ଅବସ୍ଥା ଦେଖି ଚେକଭ ଫେରିଆସି ''ସାଖାଲିନ୍ ଦ୍ୱୀପ'' ପ୍ରକାଶ କରନ୍ତେ ଋଷୀୟ ସରକାର, ଅପରାଧୀ-ଜୀବନ-ବ୍ୟବସ୍ଥାର ପରିବର୍ତ୍ତନ କରିବାକୁ ବାଧ୍ୟହେଲେ । ପିତୃମାତୃହୀନ ଦରିଦ୍ର ଗର୍କିଙ୍କୁ ଆଠବର୍ଷ ବୟସରୁ ନିଜର ଅନ୍ନ ପାଇଁ ନିଜ ହାତର ଶ୍ରମ ଉପରେ ନିର୍ଭର କରିବାକୁ ହୋଇଥିଲା । ଦଶବର୍ଷ ବୟସରେ ସେ ସେତେବେଳେ ଅନ୍ନସଂସ୍ଥାନର ଏକମାତ୍ର ଆଶ୍ରୟ ଏକ ମୋଚି ଦୋକାନରୁ ପଳେଇଲେ ଏବଂ ପାଦରେ ଚାଲିଚାଲି ପ୍ରକୃତ ସର୍ବହରା ଭିକାରୀ ଭାବରେ ସମଗ୍ର ଋଷିଆ ଦେଖି ଦେଖି ଗଲେ । ସେହି ଦାରିଦ୍ର୍ୟାଳଂକୃତ, ନିତ୍ୟ ଅପମାନିତ, ଯାଯାବର ଜୀବନ ଭିତରେ ତରୁଣ ଗର୍କି ଯେଉଁ ଋଷୀୟ ଜୀବନକୁ ଭେଟିଥିଲେ, ତାହାହିଁ ହେଲା. ତାଙ୍କର ପର-ସମୟର ଲେଖକ ଜୀବନର ପରମ ଉତ୍ସ ଓ ପରମ ସମ୍ବଳ । ତାହାହିଁ ତାଙ୍କୁ କଲା ବିଶ୍ୱର ବରେଣ୍ୟତମ ସର୍ବହରାର ମର୍ମ୍ମବାହକ ।

ଜୀବନର ପ୍ରତ୍ୟକ୍ଷ-ଦର୍ଶନ ଓ ଅବିମିଶ୍ର-ପ୍ରକଟନ ଭାବରେ ପଶ୍ଚିମ ଦେଶ-ମାନଙ୍କରେ ସିନେମା ଓ ସାହିତ୍ୟରେ ଆଜି ବୀଭତ୍ସ ଯୌନ ନଗ୍ନତା ଓ ହତ୍ୟାକାଣ୍ଡ ହିଁ ପ୍ରଚାରିତ ହୋଇଚାଲିଛି । ସେ ସବୁର କୁପ୍ରଭାବ ଭାରତର ତରୁଣ ସମାଜରେ ଆଜି ସ୍ପଷ୍ଟ ପ୍ରତିଫଳିତ ହୋଇସାରିଲାଣି । କିନ୍ତୁ ଋଷୀୟ କଳା ଓ ସାହିତ୍ୟର ପ୍ରସିଦ୍ଧ ''ସାମାଜିକ-ବାସ୍ତବବାଦ'' ଏ ପ୍ରକାର ମାରାତ୍ମକ ବୀଭତ୍ସତାକୁ ଯେ ପ୍ରଶ୍ରୟ ଦିଏ-ନାହିଁ ଏହା ଆମ ଦେଶର ଅଧିକାଂଶ ତଥାକଥିତ ପ୍ରଗତିବାଦୀ ଲେଖକ ମଧ୍ୟ ଭୁଲିଯା'ନ୍ତି । ଏବଂ ଭୁଲି ମଧ୍ୟ ଯା'ନ୍ତି ଯେ, ''ଉଠ, ହାଣ, ମାର,'' ଇତ୍ୟାଦି ମବ୍-ଚିତ୍କାରର, ଋଷୀୟ ବାସ୍ତବବାଦ ସହିତ କୌଣସି ଘନିଷ୍ଠ ଆତ୍ମୀୟତା ନାହିଁ । ୧୯୧୭ର ଅକ୍ଟୋବର-ବିପ୍ଳବ ସହିତ ଏହାର ମଧ୍ୟ କୌଣସି ଐତିହାସିକ ସଂପର୍କ ନାହିଁ; ବସ୍ତୁତଃ ବିପ୍ଳବର ପ୍ରାୟ ୬୦ ବର୍ଷ ପୂର୍ବରୁ ଋଷୀୟ ସାହିତ୍ୟ କ୍ଷେତ୍ରରେ

ରୋମାଣ୍ଟିସିଜିମ୍ ଓ ରିଅଲିଜିମ୍‌କୁ କେନ୍ଦ୍ରକରି ଚାଲିଥିବା ଦୀର୍ଘ ବାଦାନୁବାଦର ଶେଷରେ, ପ୍ରସିଦ୍ଧ ଋଷୀୟ ସମାଲୋଚକ ଭିସାରିଓ ବେଲିସ୍କିଙ୍କ ବଳିଷ୍ଠ ମତହିଁ "ପ୍ରାକୃତିକବାଦ" ବା 'ବାସ୍ତବବାଦ'କୁ ଋଷୀୟ ସାହିତ୍ୟର ଆଦର୍ଶ ରୂପେ ପ୍ରତିଷ୍ଠିତ କରିସାରିଥିଲା । ଏହାର ସଦ୍ୟ ପ୍ରତିକ୍ରିୟା ରୂପେ ଆମେ ଗଗଲଙ୍କ ପ୍ରାଣସ୍ପର୍ଶୀ ବାସ୍ତବତାମୟ ଗଳ୍ପସବୁ କେବଳ ପାଉନା, ଯାହାଙ୍କର ଜୀବନ ଓ କାବ୍ୟ ଅପୂର୍ବ ରୋମାଣ୍ଟିକ ବର୍ଣ୍ଣ-ସୌରଭ-ମଣ୍ଡିତ, ସେହି ପ୍ରସିଦ୍ଧ ଋଷୀୟ କବି ପୁଷ୍କିନ୍‌ଙ୍କ ରଚନାବଳୀରେ ମଧ୍ୟ ଆମେ ଏହାର ମନୋଜ୍ଞ ମିଶ୍ରିତ ଚିତ୍ର ପାଉ । ପରେ ପରେ ତୁର୍ଗେନିଭ୍, ଟଲଷ୍ଟୟ, ଦସ୍ତଭୟୋସ୍କି, ପ୍ରଭୃତି ବିଶ୍ୱସାହିତ୍ୟ ପ୍ରାଙ୍ଗଣରେ ଆବିର୍ଭୂତ ଓ ସମ୍ମାନିତ ଋଷୀୟ ସ୍ରଷ୍ଟାଗଣ ବିଶ୍ୱ-ସାହିତ୍ୟରେ ସଭ୍ୟ, ଶୁଚିମନ୍ତ, ସୌଷ୍ଠବମୟ ବାସ୍ତବବାଦର ବିରାଟ, ଅନବଦ୍ୟ ପ୍ରତୀକ ରୂପେ ଏ ପର୍ଯ୍ୟନ୍ତ ମହାମହିମାରେ ଦଣ୍ଡାୟମାନ । ଗର୍କି ସେହି ଋଷୀୟ ସାରସ୍ୱତ ଆଦର୍ଶର ଆଉ ଏକ ବରେଣ୍ୟ ପ୍ରତୀକ କେବଳ ନୁହନ୍ତି, ତାଙ୍କର ସମଗ୍ର ଜୀବନ ଓ ରଚନା ମୁଖ୍ୟତଃ କେବଳ ଏହି ମତବାଦର ପ୍ରତୀକ ହୋଇ ଉଠନ୍ତେ, ତାଙ୍କରି ବ୍ୟକ୍ତିତ୍ୱକୁ କେନ୍ଦ୍ରକରିହିଁ ସୋଭିଏଟ୍ ଯୁଗର ବିଶ୍ୱପ୍ରସିଦ୍ଧ "ସୋସାଲିଷ୍ଟିକ୍ ରିଆଲିଜମ୍" ବା "ସାମାଜିକ ବାସ୍ତବବାଦ" ଯେ ଆଜି ଦୃଢ଼ ପ୍ରତିଷ୍ଠିତ, ଏଥିରେ ସନ୍ଦେହ ନାହିଁ ।

କିନ୍ତୁ ଅଧିକାଂଶ, ପାଶ୍ଚାତ୍ୟର ବୁର୍ଜୁଆ-ଧର୍ମୀ ନଗ୍ନ-ଯୌନ-ବିଳାସକୁ ଋଷିଆ ସାହିତ୍ୟର ବାସ୍ତବବାଦ ବୋଲି ଧରିନେଇ "ସୋସାଲିଷ୍ଟ ରିୟଲିଜମ୍"ର ଉଦାର ମାନବିକ ମର୍ମକଥାଟାକୁ ହିଁ ଭୁଲିଯାନ୍ତି । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗରେ ବିପ୍ଳବର ବହୁ ପୂର୍ବରୁ, ସମାଲୋଚକ ବେଲିସ୍କି ହିଁ ଏହା ସ୍ପଷ୍ଟ ସୂଚୀତ କରିଯାଇଥିଲେ ଏବଂ ପରେ ପରେ ଋଷୀୟ ଲୋକମାନେ ମୋଟାମୋଟି ଏହାହିଁ ମାନିଆସିଥିବାରୁ ଋଷୀୟ ସାହିତ୍ୟ ଓ ଋଷୀୟ ଜୀବନଧାରା ନାନା ପରିବର୍ତ୍ତନ ମଧ୍ୟରେ ମଧ୍ୟ, ଏକା ତାଳରେ ପାଦ ପକେଇ ଚାଲିଆସୁଥିବାର ଆମେ ଦେଖୁଛୁ, ଯାହାକି ଅନ୍ତତଃ ଆମର ଭାରତୀୟ ସାହିତ୍ୟରେ ଏକାନ୍ତ ସ୍ପଷ୍ଟ ନୁହେଁ । ଅର୍ଥାତ୍ ଆମର ଜୀବନ ଓ ଆମର ସାହିତ୍ୟ ଅଙ୍ଗାଙ୍ଗୀ ନୁହନ୍ତି, ଯେପରି ସେମାନେ ହୋଇଆସିଛନ୍ତି ଋଷିଆରେ । ବେଲିସ୍କି, ସ୍ପଷ୍ଟ-ଭାବରେ, ସାହିତ୍ୟ କେବଳ ବିନୋଦନ ହୋଇ ନ ପାରେ ବୋଲି ମନାକରି ଦେଇଥିଲେ । ଅର୍ଥାତ୍ କେବଳ ପାଠକପାଠିକାଙ୍କ ଚିତ୍ତ ହରଣାର୍ଥେ, ଅବାସ୍ତବ ପ୍ଲଟ, ଘଟଣାରାଜି ବା ଚିନ୍ତାଧାରା ସାହିତ୍ୟ ନାମ ବହନ କରିନପାରେ । ସାହିତ୍ୟ ପ୍ରକୃତରେ ଟୀରିଆଡ଼ର ଜୀବନ ସହିତ 'ସାହିତ୍ୟ' ବା ସହିତତା ରକ୍ଷାକରି ଚାଲିବା ଉଚିତ । କିନ୍ତୁ ଯେହେତୁ ସାହିତ୍ୟର ଜାତୀୟ ଓ ମାନବିକ ଚରିତ୍ର ଉପରେ ଏବଂ ବ୍ୟକ୍ତିର ଗଠନ କରିବାରେ ପ୍ରଭାବ ଅତ୍ୟନ୍ତ ବ୍ୟାପକ ଓ ଗଭୀର, ବାସ୍ତବତା ନାମରେ ଜୀବନର

କେବଳ ମାରାତ୍ମକ ନଗ୍ନ ବୀଭତ୍ସତା ସବୁକୁ ପ୍ରଶ୍ରୟ ଦେଇ ନପାରେ । ବେଲିନ୍ସ୍କି ସ୍ପଷ୍ଟ ନିର୍ଦ୍ଦେଶ ଦେଲେ ଯେ, ସାହିତ୍ୟ ବରାବର ଦେଖିବ ଯେପରିକି ସାହିତ୍ୟରେ ଜୀବନ ଓ ପ୍ରକୃତିର ବାସ୍ତବତା ସବୁପ୍ରକାର କୁତ୍ସିତତା, ରୁଗ୍ଣତା ଓ ମାରାତ୍ମକତା ହରାଇ ସୁସ୍ଥତର ଓ ସୁନ୍ଦରତର ଓ ଅଧିକ କଲ୍ୟାଣକର ରୂପରେ ଦେଖାଦେବ । ସୋଭିଏଟ୍ ସାହିତ୍ୟର ''ସୋସାଲିଷ୍ଟ ରିୟଲିଜମ୍'' ଏହି ଉଦାର ଓ ଶୁଭଙ୍କର ମାନବିକ ଆଦର୍ଶବାଦ ଉପରେହିଁ ଦଣ୍ଡାୟମାନ ଏବଂ ଏହା ଯେ ଖାଣ୍ଟି ଭାରତୀୟ ସାହିତ୍ୟିକ ଆଦର୍ଶଠାରୁ ଅଭିନ୍ନ, ଏହା ମଧ୍ୟ ଆମର ଜାଣି ରଖିବା ଉଚିତ । କାରଣ, ଆମେ 'ପ୍ରୋଗ୍ରେସ' (ପ୍ରଗତି) ଓ 'ମଡ଼ର୍ଣ୍ଣିଟି' (ଆଧୁନିକତା) ବା 'ରିଭୋଲ୍ୟୁସନ' (ବିପ୍ଳବ) ନାମରେ ଅନେକ କିଛି ପ୍ରଚାର କରି ଚାଲିଛୁ ଯାହା ଏକାଧାରରେ ମାନବିକତାଶୂନ୍ୟ ଓ ଭାରତୀୟତା-ଶୂନ୍ୟ । ଭାରତୀୟ ଆଲଙ୍କାରିକମାନେ ବରାବର ଜୀବନ ଓ ସାହିତ୍ୟକୁ ଏକାନ୍ତ ଭାବରେ ଅଭିନ୍ନ ଓ ଅଙ୍ଗାଙ୍ଗୀ ବୋଲି ଧରିନେଇଥିଲେ । ତେଣୁ ଜୀବନ ପରି ସାହିତ୍ୟର ଲକ୍ଷ୍ୟକୁ ମଧ୍ୟ ଚତୁର୍ବର୍ଗ ଅର୍ଥାତ୍ କାମ, ଅର୍ଥ, ଧର୍ମ ଓ ମୋକ୍ଷ ବୋଲି ସେମାନେ ରଖିଥିଲେ । ଏ ଆଦର୍ଶ ରାଜନୈତିକ ଅର୍ଥରେ ବିପ୍ଳବାତ୍ମକ ନିଶ୍ଚୟ ନୁହେଁ । କିନ୍ତୁ ମନେରଖିବାକୁ ହେବ ଯେ, ଏ ଲକ୍ଷ୍ୟ ନିର୍ଦ୍ଧାରିତ ହୋଇଥିଲା, ହୁଏତ ତିନି ହଜାର ବର୍ଷତଳେ, ଯେତେବେଳେ କି ଆଜିର ରାଜନୈତିକ-ଅର୍ଥନୈତିକ ବିପ୍ଳବ ମାନବିକ ଚିନ୍ତାରେ କୌଣସି ହେଲେ ଦେଶରେ ସ୍ଥାନ ପାଇ ନଥିଲା ନୁହେଁ, ଶହେ ବର୍ଷ ତଳ ପର୍ଯ୍ୟନ୍ତ ଋଷୀୟ ଚିନ୍ତା ଜଗତରେ ମଧ୍ୟ ଦେଖାଦେଇନଥିଲା । ତେବେ ଭାରତର ଆଦର୍ଶ ତଳେ ଯାହା ଓତଃପ୍ରୋତ, ସେ ହେଲା 'ଧର୍ମ'; ଏବଂ ପ୍ରଚଳିତ ହିନ୍ଦୁ ଧର୍ମ, ପ୍ରଚଳିତ ଖ୍ରୀଷ୍ଟାନ୍ ବା ଇସ୍‌ଲାମ ଧର୍ମ, ଲେନିନ୍‌ଙ୍କ ଭାଷାରେ ସତ୍ୟରେ ଜନତାର ଅହିଫେନ ହେଲେହେଁ, ଭାରତର ବୁଦ୍ଧବାଣୀ ବା ଉପନିଷଦର ଦ୍ରଷ୍ଟା-ମାନଙ୍କରେ ଯେଉଁ ଧର୍ମ ବ୍ୟାଖ୍ୟାତ ତାହାହିଁ ଭାରତର ପ୍ରକୃତ ମର୍ମକଥା ବୋଲି ଧରିବାକୁ ହେବ ଏବଂ ସେ ଧର୍ମ ପ୍ରକୃତରେ ବିପ୍ଳବାତ୍ମକ, କାରଣ ସେ ଧର୍ମ ଜନ୍ତୁ-ମନୁଷ୍ୟକୁ ଦେବ-ମନୁଷ୍ୟରେ ପରିଣତ କରିବାର ଆଶା କରେ – ଯାହାହିଁ ବ୍ୟାପକ ଭାବରେ ଋଷୀୟ ''ସୋସାଲିଷ୍ଟ ରିଅଲିଜମ୍''ର ମଧ୍ୟ ଲକ୍ଷ୍ୟ, ଅର୍ଥାତ୍ ସମୂହ ଭାବରେ ଉତ୍ତମତର ଜୀବନ । ଗର୍କି ବିଶ୍ୱ ସାହିତ୍ୟରେ ସେହି ବିପ୍ଳବ ବା ଉତ୍ତମତର ଜୀବନର ଆଜି ପରମ ପ୍ରତୀକ ଭାବରେ ଦଣ୍ଡାୟମାନ । ଆଗାମୀ କାଲିର ସମାଜ ପାଇଁ ସୋସାଲିଷ୍ଟିକ୍ ରିଅଲିଜମ୍ ବା ସାମାଜିକ ବାସ୍ତବବାଦ ନାମରେ ଗର୍କି କୌଣସିଠାରେ ନଗ୍ନ କୁତ୍ସିତତା ବା ଯୌନ ଜାନ୍ତବତାକୁ ସ୍ଥାନ ଦେଇନାହାନ୍ତି । ବରଂ ବହୁବର୍ଷ ତଳେ ଗର୍କିଙ୍କ କୌଣସି ରଚନାରେ ପାଠକ କରିଥିବା ନାରୀ ଉଦ୍‌ବୋଧନ– ହେ ପୃଥିବୀର ନାରୀଗଣ, ମନେରଖ ଯେ ତମର ଗର୍ଭଦେଇ ଜରାଥୁଷ୍ଟ, ବୁଦ୍ଧ ଓ ଯୀଶୁଖ୍ରୀଷ୍ଟ ଏ ଧରାରେ ଅବତୀର୍ଣ୍ଣ

ହୋଇଛନ୍ତି । ଭବିଷ୍ୟତରେ ସୁପରମ୍ୟାନ୍ ତମରି ଗର୍ଭ ଦେଇ ଯେ ଆସିବ, ତାହା ଭୁଲିଯାଅନାହିଁ– ଏହି ମହତ୍ ଉଦାରବଣୀ ଏ ଯାବତ୍ ଏହି ଲେଖକର କର୍ଣ୍ଣରେ ପ୍ରତିଧ୍ୱନି ସୃଷ୍ଟି କରି ଚାଲିଛି । ପତିତ ଦଳିତର ବା ସାଧାରଣ ମାନବ ପାଇଁ ଏହି ବିପ୍ଳବ ବା କାଲିର ଉତ୍ତମତର ଜୀବନର ଓ ମାନବିକ ମର୍ଯ୍ୟାଦାର ବରେଣ୍ୟ ପ୍ରତୀକ ଗର୍କି, ତେଣୁ ଆମ ସମସ୍ତଙ୍କର ସଶ୍ରଦ୍ଧ ପ୍ରଣତି ଦାବିକରନ୍ତି ।

ଗର୍କି, ସାଧାରଣ ଶ୍ରମିକ, କୃଷକ ବା ପ୍ରଜାର ଉନ୍ନତତର ଜୀବନ ପାଇଁ କେବଳ କାଗଜ-ସ୍ୱପ୍ନ ଦେଖି ନଥିଲେ । ସେ ସେହି ଲକ୍ଷ୍ୟରେ ତାଙ୍କର ସମଗ୍ର ଜୀବନ ଧରି ସକ୍ରିୟ ପଦକ୍ଷେପ ମଧ୍ୟ କରିଥିଲେ । ଏହି ଶତାବ୍ଦୀର ଆରମ୍ଭ ବେଳକୁ ଗତ ଶତାବ୍ଦୀରେ ଜନ୍ମ ନେଇଥିବା ସେ ଦିନର ଯାଯାବର ଓ ଦରିଦ୍ର ଗର୍କି, କେବଳ ଋଷିଆ ନୁହେଁ, ଋଷିଆ ବାହାରେ ମଧ୍ୟ ନାଟ୍ୟକାର, ଗାଳ୍ପିକ, ସାମ୍ବାଦିକ ଓ ଔପନ୍ୟାସିକ ଭାବରେ ବିଖ୍ୟାତ ହୋଇସାରିଲେଣି । କିନ୍ତୁ ସାଧାରଣ ଋଷ୍ ନାଗରିକର ଶୁଭଦିନକୁ ତ୍ୱରାନ୍ୱିତ କରାଇବାପାଇଁ ଗର୍କି କେବଳ ନିଜର ସାହିତ୍ୟିକ ସୃଷ୍ଟି ଭିତରେ ନିଜକୁ ସୀମିତ ରଖିପାରି ନଥିଲେ । ସେ ଏହି କାରଣରୁ ତତ୍‌କାଳୀନ ଋଷିଆର ସାମାଜିକ ଗଣତାନ୍ତ୍ରିକ ଦଳରେ ଯୋଗଦେଇଥିଲେ । ତେଣେ ''ଋଷିଆର ସଂପଦ'' ନାମକ ବୈପ୍ଳବିକ ଭାବବାଦୀ ମାସିକ ପତ୍ରର ସଂପାଦନା ମଣ୍ଡଳୀରେ ଯୋଗଦେଇଥିଲେ । ତେଣେ ପୁଣି ସାମ୍ୟବାଦୀ ସାହିତ୍ୟ ଛାପି ସେ ସବୁର ବ୍ୟାପକ ପ୍ରଚାର ପାଇଁ 'ଜାନୀ' ନାମକ ଏକ ପ୍ରକାଶନ ସଂସ୍ଥା ମଧ୍ୟ ଠିଆକରାଇଥିଲେ । ଶେଷରେ ସେ ୧୯୦୫ର ଋଷୀୟ ବିପ୍ଳବରେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ କରିଥିଲେ ଏବଂ ସେହି ବିପ୍ଳବ ବିଫଳ ହୁଅନ୍ତେ ଜାର- ଶାସନର ପ୍ରତିହିଂସାରୁ ରକ୍ଷା ପାଇବା ପାଇଁ ଦେଶଛାଡ଼ି ପଳାୟନକଲେ, ଯାହାକି ଅନେକ ଋଷୀୟ ବୁଦ୍ଧିଜୀବୀଙ୍କର ସାଧାରଣ ଭାଗ୍ୟଲିପି ହୋଇଆସିଛି କହିବାକୁ ହେବ । ୧୯୧୩ରେ ଗର୍କି ଜନ୍ମମାଟିକୁ ଫେରି ଆସିବାକୁ ଅନୁମତି ପାଇଥିଲେ; କିନ୍ତୁ ସରକାର ପ୍ରତି ସେଥିପାଇଁ ସାମାନ୍ୟତମ କୃତଜ୍ଞ ନହୋଇ, ସେ ପୁଣି ନିଜର ସ୍ୱାଭାବିକ ବିପ୍ଳବାତ୍ମକ କ୍ରିୟାକଳାପରେ ଲାଗି ଯାଇଥିଲେ । ଫ୍ରାନସ୍‌ରେ ରୋମାରୋଲାଁଙ୍କ ପରି ଋଷିଆରେ, ଗର୍କି ମଧ୍ୟ ପ୍ରଥମ ମହାଯୁଦ୍ଧ ବେଳେ ପ୍ରକାଶ୍ୟରେ ଯୁଦ୍ଧ ବିରୋଧୀ ଓ ଶାନ୍ତି-ସପକ୍ଷ ପ୍ରଚାର କରିଥିଲେ । ଯାହାହେଉ ୧୯୧୭ରେ ଇତିହାସର ଅଶ୍ରୁତପୂର୍ବ ଅକ୍ଟୋବର ବିପ୍ଳବ ଘଟିଥିଲା । ଋଷିଆର ମାଟିରୁ ଜାର୍ ଶାସନ ଓ ସାମନ୍ତବାଦୀ ସମାଜ ଉଭେଇଯାଇ, ମାନବ ଇତିହାସରେ ପ୍ରଥମକରି, ସେହି ସ୍ଥାନରେ ହାତରେ କାମ କରୁଥିବା ଲୋକର ମର୍ଯ୍ୟାଦା ପ୍ରତିଷ୍ଠିତ ହେଲା ।

ଗର୍କି, ନୂତନ ଶାସନରେ ପଦପଦବୀରୁ ନିଜପାଇଁ ଫାଇଦା ଉଠେଇବାର ସାମାନ୍ୟତମ ଚେଷ୍ଟା ତ କରି ନଥିଲେ, ବରଂ ନୂଆ ଶାସନରେ ଯାହା ନୂଆ ନୂଆ ଘଟିଯାଉଥିଲା, ତାହା ସଂପୂର୍ଣ୍ଣ ଭାବରେ ଲେନିନ୍-ଟ୍ରାଟସ୍କି ପ୍ରଭୃତି ରାଜନୈତିକ

ବନ୍ଧୁମାନଙ୍କୁ ଛାଡ଼ିଦେଇ, ସେ ନିଜେ, ସାଂସ୍କୃତିକ କ୍ଷେତ୍ରରେ ଯାହା କରିବାର କଥା ସେହିଥିରେହିଁ ନିଜକୁ ନିୟୋଜିତ କରିରଖିଥିଲେ । ବିପ୍ଳବ ପରେ, ସେ ଋଷୀୟ ସାହିତ୍ୟକୁ ସଂପୂର୍ଣ୍ଣ ଭାବରେ ସମୃଦ୍ଧ କରିବା ପାଇଁ ''ବିଶ୍ୱ-ସାହିତ୍ୟ-ସଂସ୍ଥା'' ଆରମ୍ଭକଲେ, ଯେପରିକି ଅନୁବାଦ ଦେଇ ବିଶ୍ୱର ସବୁଦେଶର ଶ୍ରେଷ୍ଠ ସାହିତ୍ୟ ଋଷ ଭାଷାରେ ପ୍ରବେଶ କରିପାରିବ । ୧୯୧୯ରେ ଋଷୀୟ ଇତିହାସର ନଅଙ୍କ ଦୁର୍ଭିକ୍ଷ ଘଟିଲା । ତେଣେ ବିପ୍ଳବର ଆତିଶଯ୍ୟ ସହ୍ୟ କରି ନପାରି ଅନେକ ଋଷୀୟ ବୁଦ୍ଧିଜୀବୀ ରାଜ୍ୟ ଛାଡ଼ି ପଳାଇଲେ, ଏବଂ ପ୍ରସିଦ୍ଧ କୃଷକ-କବି ସର୍ଜେଇ ଏସେନିନ୍ ଏବଂ ଶ୍ରମିକ-କବି ମାଇକୋଭସ୍କି ସେ ବି ବିପ୍ଳବକୁ ନିଜ ନିଜ ରୁଚି ଅନୁଯାୟୀ ନିଜ ନିଜ ଶୈଳୀରେ ବିପୁଳ ଅଭିନନ୍ଦନ ଦେଇଥିଲେ, ସେ ଦୁହେଁ, ଓ ତାଙ୍କପରି ବହୁ ବୁଦ୍ଧିଜୀବୀ ମଧ୍ୟ ଆତ୍ମହତ୍ୟା କରି ମଲେ । ଅନେକ ଲେଖକ ଓ ବିଜ୍ଞାନୀ ଅନାହାରର ସମ୍ମୁଖୀନ ହେଲେ । ମହାପ୍ରାଣ ଗର୍କି, ଯାହାର କି ନିଜର ଘର ନଥିଲା, କି ପରିବାର ବୋଲି କିଛି ନଥିଲା ଏବଂ ଯିଏ ବଞ୍ଚିରହିଥିଲା ଦୁଇଟା କେବଳ ଯକ୍ଷ୍ମାକୀଟ ଭୁକ୍ତ ଦୁର୍ବଳ ଫୁସ୍‌ଫୁସ୍ ନେଇ, ସେ ଏହି ଦୁଃସ୍ଥ-ଦୁର୍ଗତ କମ୍‌ରେଡ଼ମାନଙ୍କର ଦୁଃଖ ଯଥାସମ୍ଭବ ଲାଘବ କରିବା ପାଇଁ ହିଁ ଲାଗିପଡ଼ିଥିଲେ । ସ୍ୱାଧୀନତା ପରେ ଭାରତବର୍ଷରେ ଯାହା ଏ ଯାଏ ଘଟିଚାଲିଛି, ବିପ୍ଳବୋତ୍ତର ଋଷିଆରେ ମଧ୍ୟ ଅଧିକାଂଶ କ୍ଷେତ୍ରରେ ସେୟା ଘଟଥିଲା– ଅର୍ଥାତ୍ ଅଯୋଗ୍ୟ ଅପଦାର୍ଥମାନଙ୍କର କେବଳ ଦଳଗତ ପ୍ରାଧାନ୍ୟ ଯୋଗୁଁ ରାଷ୍ଟ୍ରୀୟ ଓ ସାମାଜିକ ପଦ-ପଦବୀ ଅଧିକାର ଓ ଜାତୀୟ ଜୀବନରେ ପ୍ରାଧାନ୍ୟ । ପ୍ରକୃତ ଜନବାନ୍ଧବ ଓ ଅଗ୍ନିମୟ ପେଟ୍ରିଏଟ୍ ଗର୍କି, ଏସବୁ ଶାସନିକ ଅନାଚାର ଓ ବ୍ୟଭିଚାରର ପ୍ରକାଶ୍ୟ ପ୍ରତିବାଦ କରିଥିଲେ ଏବଂ ବିରକ୍ତ ହୋଇ ଶେଷରେ ୧୯୨୮ରେ ପୁଣି ଦେଶ ତ୍ୟାଗ କରି ଏକ ଇଟାଲୀୟ ଦ୍ୱୀପରେ ଯାଇ ବାସକଲେ । କିନ୍ତୁ ସେତେବେଳକୁ ଗର୍କି ଏପରି ବିଶ୍ୱ-ବିଖ୍ୟାତ ହୋଇସାରିଲେଣି ଯେ, ସେହି କ୍ଷୁଦ୍ର ଦ୍ୱୀପ ମଧ୍ୟ ବିଶ୍ୱର ବୁଦ୍ଧିଜୀବୀମାନଙ୍କର ତୀର୍ଥସ୍ଥାନ ହୋଇଉଠିଲା । ୧୯୨୮ରେ ସୋଭିଏଟ୍ ସର୍କାର ଗର୍କିଙ୍କୁ ନିଜ ମାଟିକୁ ଫେରାଇ ଆଣିଲେ । ସେତେବେଳକୁ ଗର୍କି ସମଗ୍ର ସୋଭିଏଟ୍ ଋଷିଆର ସାହିତ୍ୟ ଓ ସଂସ୍କୃତିର ଏକତମ ମହାନ୍ ପ୍ରତୀକ ରୂପେ ଦଣ୍ଡାୟମାନ । ଦଳଦଳ ତରୁଣ ବୁଦ୍ଧିଜୀବୀ ବର୍ତ୍ତମାନ ବୃଦ୍ଧ ଗର୍କିଙ୍କ ନିକଟକୁ ଆସିଲେ ଉତ୍ସାହ, ପ୍ରେରଣା ଓ ବିଚାର ପାଇଁ । ଗର୍କି ସାଧାରଣ ସାହିତ୍ୟିକ ବାଦାନୁବାଦରେ ପୂର୍ଣ୍ଣପ୍ରାଣରେ ଯୋଗଦେଲେ ଏବଂ ୧୯୩୪ରେ ନିଜର ବ୍ୟକ୍ତିତ୍ୱ ପ୍ରଭାବରେ ''ସୋସାଲିଷ୍ଟ ରିଅଲିଜମ୍'' ହିଁ ଯେ ସୋଭିଏଟ୍ ସାହିତ୍ୟର ଏକାନ୍ତ ଆଭିମୁଖ୍ୟ ରହିବ, ଏହି ଭାବଧାରାକୁ ପ୍ରତିଷ୍ଠିତ କରାଇନେଲେ । ଆଜି ଆମେ ସମସ୍ତେ ଅନୁଭବ କରୁ ଯେ, ସେ ଆଭିମୁଖ୍ୟ ଆଜି କେବଳ ସୋଭିଏଟ୍ ସାହିତ୍ୟର ନୁହେଁ, ବିଶ୍ୱର

ଅଧିକାଂଶ ଭାଷାର ଲେଖକଲେଖିକାମାନଙ୍କର ଲେଖନୀର ଆଭିମୁଖ୍ୟ ଏବଂ ତାହାହିଁ ଗର୍କିଙ୍କ ପ୍ରତି ବିଶ୍ୱ ବୁଦ୍ଧିଜୀବୀ ମଣ୍ଡଳୀର ସ୍ୱାଭାବିକ୍ ସାଲ୍ୟୁଟ୍ ।

ନିଜ୍ ନିନବଗରଡ଼ରେ ୧୮୬୮ରେ ଜନ୍ମ ନେଇଥିବା ସେଦିନର ଚିରପରିହିତ, ଭ୍ରାମ୍ୟମାଣ, ଲକ୍ଷ୍ୟହୀନ, ପିତୃମାତୃହୀନ, ଗୃହ-ପରିବାର-ହୀନ ଦରିଦ୍ର ବାଳକ ଗର୍କି, ବିଶ୍ୱବରେଣ୍ୟ ସାହିତ୍ୟିକ ଭାବରେ ୧୯୩୬ରେ ଏ ଧରାଧାମରୁ ବିଦାୟ ନେଲେ । ସୋଭିଏଟ୍ ସର୍କାର ବିପ୍ଳବର ଏହି ବରେଣ୍ୟ ବାଣୀବାହକଙ୍କୁ ଶ୍ରେଷ୍ଠ ଜାତୀୟ ବୀରର ସମ୍ମାନ ଦେଲା । ସୁଇଜରଲାଣ୍ଡର ଏକ ଗ୍ରାମ୍ୟ କୁଟୀରରେ ବସି ବୃଦ୍ଧ ରୋମାରୋଲାଁ, ମସ୍କୋ-ରେଡ଼ିଓରେ ସୋଭିଏଟ୍-ଜନତା ଓ ସର୍କାର ଯେଉଁ ଭାବରେ ଏହି ମହାନ୍ ଗଣସାହିତ୍ୟିକଙ୍କୁ ପ୍ରାଣପୂର୍ଣ୍ଣ କୃତଜ୍ଞତା ଜଣାଇଲେ, ତାହା ଶୁଣି ଶୁଣି ଯେପରି ଭାବରେ ରୋମାଞ୍ଚିତ ହୋଇଥିଲେ, ତାହା ସେ କେତେବର୍ଷ ପରେ ସୁଭାଷ ବୋଷଙ୍କୁ କହିଥିଲେ । ଗର୍କିଙ୍କର ଜନ୍ମସ୍ଥାନ ନିଜ୍ ନିନବଗରଡ଼ ଆଜି କେବଳ ଗର୍କି ବୋଲି ହିଁ ପରିଚିତ ଏବଂ ଗର୍କି ପ୍ରତିମା ସୋଭିଏଟ୍ ରୁଷିଆରେ ଶତଶତ ସ୍ଥାନରେ ଦଣ୍ଡାୟମାନ । ଗର୍କି ଜନ୍ମହେଲାବେଳେ ରୁଷିଆର ତିନିଚତୁର୍ଥାଂଶ ଲୋକ କେବଳ ସର୍ଫ ଥିଲେ, ଯେଉଁମାନଙ୍କର ଏହି ବସୁଂଧରାରେ ନିଜନିଜର ଦେହଟିମାନ ଛଡ଼ା ଅନ୍ୟ କୌଣସି ହେଲେ ଅଧିକାର ନଥିଲା । ସର୍ଫର ସ୍ତ୍ରୀ, କନ୍ୟା ଓ ବଧୂର ଦେହ ମଧ୍ୟ ସେମାନଂକର ନିଜର ନଥିଲା କହିଲେ ଚଳେ । ରୁଷିଆର ଏହି ବିରାଟ ଜନତା ସଂପୂର୍ଣ୍ଣ ନିରକ୍ଷର ଥିଲେ ଏବଂ ଥିଲେ ଜମିଦାର ଓ ପୁରୋହିତ ରୂପକ ଦୁଇଟି ସାମାଜିକ ମଲାଙ୍ଗର ଭୋଗଭୂମି ମାତ୍ର । ଗର୍କି ନିଜେ ଏହି ଦଳିତ ସମାଜରେ ଜନ୍ମନେଇଥିଲେ ହେଁ, କୌଣସି ପ୍ରତିକୂଳ ଅବସ୍ଥା ତାଙ୍କର ଦୁଃଖ-ଦାରିଦ୍ର୍ୟ ଛିନ୍ନ-ବସ୍ତ୍ର ତଳେ ଥିବା ପ୍ରତିଭାକୁ ଦବାଇ ପାରିନଥିଲା କେବଳ ନୁହେଁ, ବରଂ ସେହି ଅଦମ୍ୟ ପ୍ରତିଭା ସକଳ ପ୍ରତିକୂଳତା ଭିତରେ ସାରା ଜୀବନ ସ୍ୱପ୍ନ ଦେଖିଲା, ସେହି ପ୍ରତିକୂଳ ଅବସ୍ଥାର ଆମୂଳ ପରିବର୍ତ୍ତନ ଯେପରିକି ସାଧାରଣ ମାନବ ତା'ର ପ୍ରାକୃତିକ ମାହାତ୍ମ୍ୟ ଫେରିପାଇବ । ରୁଷିଆର ଅକ୍ଟୋବର ବିପ୍ଳବ ବିସ୍ମୟକର ଭାବରେ ଗର୍କିଙ୍କ ସ୍ୱପ୍ନକୁ ଯେ ସଫଳତା ଦାନ କରି ପାରିଛି, ଏହା ଶତ୍ରୁ ମଧ୍ୟ ସ୍ୱୀକାର କରିବ । କେନ୍ଦ୍ର ଏସିଆର ଯାଯାବର ମେଷପାଳକ ଯାହାର ଭାଷା ଥିଲା ସତ, କିନ୍ତୁ ଲିପି ନଥିଲା କି ସାହିତ୍ୟ ନଥିଲା, ସେ ଆଜି ତା'ର ପୂର୍ବର ଲିପିହୀନ ଭାଷାରେ ବିରାଟ ଦୈନିକ ଖବରକାଗଜ ଦେଇ ପ୍ରତ୍ୟହ ବିଶ୍ୱର ସମ୍ବାଦ କେବଳ ପାଉନି, ସେ ପ୍ରତ୍ୟହ ସଂଧ୍ୟାରେ ହୁଏତ ସ୍ଥାନୀୟ ଥିଏଟରରେ ଦେଖୁଛି ସେକ୍ସପିଅର ବା ରବୀନ୍ଦ୍ରନାଥଙ୍କ ନାଟକର ଅଭିନୟ । ଦ୍ୱିତୀୟ ମହାଯୁଦ୍ଧ ଶେଷରେ ବିଜୟୀ ଋଷୀୟ ବାହିନୀ ଯେତେବେଳେ ଧ୍ୱସ୍ତ-ବିଧ୍ୱସ୍ତ ବର୍ଲିନରେ ପ୍ରବେଶ କଲେ, ଆମେ କାଗଜରେ ପଢ଼ିଲୁ ଯେ, ବେରିଆଟ ମଙ୍ଗୋଲିଆ ଅଂଚଳର କୃଷକ

କନ୍ୟାମାନେ ସେହି ଦୂର ଓ ଅପରିଚିତ ନଗରର ଛକସ୍ଥାନମାନଙ୍କରେ ଠିଆହୋଇ ନିଜ ବାହିନୀକୁ ପଥ-ନିର୍ଦ୍ଦେଶ କରିଥିଲେ । ପ୍ରତ୍ୟେକ ଜୀବନଧାରା ଓ ଶାସନ-ଧାରା ପରି, ସୋଭିଏଟ ବା କମ୍ୟୁନିଷ୍ଟ ଜୀବନଧାରା ଓ ଶାସନଧାରା ବିରୁଦ୍ଧରେ ମଧ୍ୟ ଅନେକ କଥା କୁହାଯାଇପାରେ । କିନ୍ତୁ ବିରାଟ ସୋଭିଏଟ ରାଜ୍ୟରେ ସେଦିନର ଅଗଣିତ ଦଳିତ ନିପୀଡ଼ିତ ଜନସଂଘ ଆଜି ଯେ ଏକ ଅଶ୍ରୁତପୂର୍ବ, ଅକଳ୍ପିତ, ସଭ୍ୟ ସୁନ୍ଦର ପାର୍ଥିବ ଜୀବନ ଯାପନ କରୁଛନ୍ତି ଏଥିରେ ଦ୍ୱିମତ ନଥାଇପାରେ ।

ଗର୍କି, ତାଙ୍କର ଜାତି ପାଇଁ, ସେ ନିଜେ ଅନୁଭବ କରିଥିବା ଦୁର୍ଗତ, ନିଷ୍ପୀଡ଼ିତ ସମାଜ ପାଇଁ, ଏହି ପ୍ରକାର ମର୍ଯ୍ୟାଦାମୟ ମାନବିକ ଜୀବନର ସ୍ୱପ୍ନ ଦେଖିଥିଲେ । ଏହାହିଁ ସାହିତ୍ୟ ଜଗତରେ ତାଙ୍କ ପ୍ରବର୍ତ୍ତିତ ସୋସାଲିଷ୍ଟ ରିଅଲିଜମ୍‌ର ମର୍ମବାଣୀ, ଅର୍ଥାତ୍ ଆଗାମୀ କାଲିପାଇଁ ଉତ୍ତମତର ଜୀବନର ସ୍ୱପ୍ନ । ଏହି ଆଭିମୁଖ୍ୟରେ ଲିଖିତ ତାଙ୍କର ବିପୁଳ ରଚନା ଭିତରୁ ମା-ଉପନ୍ୟାସ, 'ନିମ୍ନରୁ ନିମ୍ନତର ସ୍ତର'– ନାଟକ, ତାଙ୍କର ଆତ୍ମଚରିତ, ତାଙ୍କର ଉତ୍କୃଷ୍ଟ କ୍ଷୁଦ୍ରଗଳ୍ପ ସବୁ ଆଜି ବିଶ୍ୱ ସାହିତ୍ୟର ଅପରିହାର୍ଯ୍ୟ ଅଙ୍ଗ । ବଂଚିଥିଲେ ଗର୍କି ଆଜି ଶହେ ବର୍ଷ ହୋଇଥାନ୍ତେ ଏବଂ ଯଥାର୍ଥ ଆତ୍ମ ସନ୍ତୋଷ ପାଉଥାନ୍ତେ ଯେ, ତାଙ୍କର ଯୌବନର ସ୍ୱପ୍ନ କେବଳ ନିଜ ଦେଶ ଋଷିଆରେ ନୁହେଁ, ବିଶ୍ୱର ବହୁ ଦେଶରେ ସଫଳୀକୃତ ହୋଇ, କୋଟି କୋଟି ନରନାରୀଙ୍କୁ ଧରାପୃଷ୍ଠରେ ଏକ ନୂତନ ଜୀବନର ଆସ୍ୱାଦ ଦେଇପାରିଛି । କିନ୍ତୁ ଗର୍କିଙ୍କ ପରି ସ୍ୱପ୍ନ-ପୁରୁଷଙ୍କ ପକ୍ଷରେ ବଂଚିବା ଓ ମରିବା ସମାନ ନୁହେଁ କି ? କେବଳ ସୋଭିଏଟ ଦେଶରେ ନୁହେଁ, ପୃଥିବୀର ସର୍ବତ୍ର, ଜୀବିତ ଗର୍କି ସମଗ୍ର ମାନବ ଜାତିଠାରୁ ଆଜି ଯେ ଶ୍ରଦ୍ଧା ଓ ଯେ ପୂଜା ପଇଥାନ୍ତେ, ମୃତ ଗର୍କି ତାଙ୍କର ଏହି ଶତବାର୍ଷିକୀରେ ଠିକ୍ ସେହି ଶ୍ରଦ୍ଧା ଓ ସେହି ପୂଜା ପାଇବେ । ଆମର ସୋଭିଏଟ କମ୍ରେଡ଼ ମାନଙ୍କ ସହିତ ଚିତ୍ତ ଓ କଣ୍ଠ ମିଳାଇ ଦଳିତ, ନିପୀଡ଼ିତ ଓ ଅଧିକାରହୀନ ମାନବ ପାଇଁ ଯେଉଁ ଗର୍କି ଜୀବନବ୍ୟାପୀ ଲେଖନୀ ସଂଗ୍ରାମ କରିଯାଇଥିଲେ, ସାମାଜିକ ବିପ୍ଳବର ସେହି ମହନୀୟ ସ୍ୱପ୍ନଦ୍ରଷ୍ଟା ଓ ବାର୍ତ୍ତାବହଙ୍କ ପ୍ରତି ତାଙ୍କର ଏହି ସାମ୍ବତ୍ସରିକ ଜନ୍ମ ଦିବସରେ, ଆମେ ଆମର ଅକୁଣ୍ଠ ସମ୍ମାନ ନିବେଦନ କରି ଧନ୍ୟହେଉଁ । ଆଫନାସୀ ନିକିଟୀନ ଓ ଜେରାସିସ୍ ଲେବେଡ଼େଫଙ୍କ ପରି ପର୍ଯ୍ୟଟକଙ୍କ ଠାରୁ ଆରମ୍ଭକରି ତୁର୍ଗେନିଭ, ଟଲଷ୍ଟୟ, ଦସ୍ତାୟ-ଭିସ୍କ ଓ ପୁଷ୍କିନ୍ ପ୍ରଭୃତି ସାହିତ୍ୟ ସ୍ରଷ୍ଟାମାନଙ୍କୁ ନେଇ ଯେଉଁ ଋଷିଆ ଭାରତର ଚିତ୍ତ ଓ ଆତ୍ମା ଉପରେ କ୍ରମାଗତ ପ୍ରଭାବ ପକାଇ ଆସିଛି, ଆଜି ବିପ୍ଳବର ବରେଣ୍ୟ ଦୂତ ଗର୍କିଙ୍କର ଏହି ଜନ୍ମଶତବାର୍ଷିକୀରେ ସେହି ମହାନ୍ ସ୍ୱପ୍ନ ଦ୍ରଷ୍ଟା ସ୍ରଷ୍ଟା ଓ ପରମ ମାନବିକ ବ୍ୟକ୍ତିତ୍ୱ ପ୍ରତି ଆମର ଏହି ଅକୁଣ୍ଠ ଶ୍ରଦ୍ଧାନିବେଦନ ଦେଇ ଭାରତ ଓ ଋଷିଆର ପାରଂପରିକ ଆତ୍ମିକ ନୈକଟ୍ୟ, ନୀରନ୍ଧ୍ର ହୋଇ ଉଠୁ ଏହା ହିଁ କାମନା ।

# ଇଙ୍ଗ-ଭାରତୀୟ ସାହିତ୍ୟ

''ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଭାରତରେ ଆଧୁନିକ ଧରଣର ବିଶ୍ୱ-ବିଦ୍ୟାଳୟ ସବୁ ସ୍ଥାପିତ ହୋଇ, ସେ ସବୁରେ ଇଂରାଜୀ ମାଧ୍ୟମରେ ଅଧ୍ୟାପନା ହୁଅନ୍ତେ, ସେ ସବୁ କଳ୍ପନାତୀତ ଅଥଚ ଆକାଂକ୍ଷ୍ୟ ଭାବରେ, ଭାରତୀୟ ଭାଷା-ମାନଙ୍କରେ ଏକ ଜାଗରଣ ସୃଷ୍ଟି କରିଥିଲେ । ବଙ୍କିମଚନ୍ଦ୍ର ଚାଟର୍ଜି ଥିଲେ କଲିକତା ବିଶ୍ୱବିଦ୍ୟାଳୟର ପ୍ରଥମ ଗ୍ରାଜୁଏଟ୍ । ଇଂରେଜୀ ସାହିତ୍ୟ ଦ୍ୱାରା ଉଦ୍‌ବୁଦ୍ଧ ହୋଇ ହିଁ ସେ ବଂଗଳାରେ ପ୍ରଥମ କରି ଉପନ୍ୟାସ ସୃଷ୍ଟି କରନ୍ତି । କଲିକତା ବିଶ୍ୱବିଦ୍ୟାଳୟରୁ ତାଙ୍କ ପରେ ଆସିଲେ ରମେଶଚନ୍ଦ୍ର ଦତ୍ତ, ଯେ ମଧ୍ୟ ବଂଗଭାଷାରେ ଏକ ଔପନ୍ୟାସିକ ଭାବରେ ସୁନାମ ଅର୍ଜନ କରିବା ସାଥେସାଥେ, ଇଂରାଜୀଭାଷାରେ ଐତିହାସିକ, ଅର୍ଥ-ନୈତିକ, ଔପନ୍ୟାସିକ ଓ କବି ଭାବରେ ମଧ୍ୟ ସମ୍ମାନ ଅର୍ଜନ କଲେ। ତାଙ୍କର ଇଂରାଜୀ ଲିଖିତ ଉପନ୍ୟାସାବଳି ଏବଂ ତାଙ୍କର Lays of Ancient India (1894) ଇଂରାଜୀ କବିତା ସବୁରେ, ଆମେ ତାଙ୍କର ଆମ (ଇଂରାଜୀ) ଭାଷା ଉପରେ ବିସ୍ମୟକର ଅଧିକାର ଦେଖିବାକୁ ପାଉ । ମାଇକେଲ ମଧୁସୂଦନ ଦତ୍ତ ୧୮୪୯ରେ ଦିଲ୍ଲୀଶ୍ୱର ପୃଥ୍ୱୀରାଜଙ୍କ କାହାଣୀ Captive Lady ନାମକ ଇଂରାଜୀ କାବ୍ୟ ଭାବରେ ପ୍ରକାଶ କରିଥିଲେ ହେଁ, ସେ ଏଥିପାଇଁ ନବଂଚି, ବଂଚିବେ ତାଙ୍କର ବଂଗଳା ରଚନା ସବୁ ପାଇଁ । ଲାଲବିହାରୀ ଦେଙ୍କ ୧୮୭୪ରେ ପ୍ରକାଶିତ 'ଗୋବିନ୍ଦ ସାମନ୍ତ' ବା 'ହିଷ୍ଟ୍ରି ଅବ୍ ଏ ବେଙ୍ଗଲ ରୟତ' ଏବଂ ୧୮୮୩ରେ ପ୍ରକାଶିତ 'ଫୋକ୍ ଟେଲ୍‌ଜ୍ ଅବ୍ ବେଙ୍ଗଲ', ଯେପରି ଲେଖାଯାଇଛି ସେଥିରେ ଥିବା ଦକ୍ଷତା ସ୍ୱୀକାର କରିବାକୁ ହେଲେ ହେଁ, ସେଥିରେ କୌଣସି ଭାସ୍ୱର ଗୁଣ ଯେ ନାହିଁ, ଏହା ମାନିବାକୁ ହେବ । କିନ୍ତୁ ତରୁ ଦତ୍ତଙ୍କୁ ଭେଟିଲେ ଆମେ ମାନିବାକୁ ବାଧ୍ୟ ହେଉ ଯେ, ଏ କେବଳ ସାଧାରଣ ଭାଷୀୟ ବିଚକ୍ଷଣତା ନୁହେଁ । ତାଙ୍କ ପିତା ଗୋବିନ୍ଦ ଚନ୍ଦ୍ର ଦତ୍ତ ନିଜେ ଗ୍ରହଣୀୟ ଇଂରେଜୀ କବିତା ଲେଖୁଥିଲେ Dutta Family Album (୧୮୭୬)ରେ ତାଙ୍କର କବିତା ସବୁ ସ୍ଥାନପାଇଛି । ତାଙ୍କର ଅଳ୍ପାୟୁ ଜୀବନ ଭିତରେ, ତରୁ ଦତ୍ତ ଇଂଲିଶ୍ ଓ ୟୁରୋପୀୟ, ଉଭୟ ସଂସ୍କୃତିର ଘନିଷ୍ଠ ସଂପର୍କରେ ଆସିଥିଲେ । ତାଙ୍କର Steaf Gleared in French Fields (1876) ଏବଂ Ancient Ballads and Legends of Hindustanରେ, ତାଙ୍କର ଉଷ୍ଣକଟିବନ୍ଧୀୟ ଭାବପ୍ରବଣତା ଏକ ଶୀତକଟିବନ୍ଧୀୟ ବିଦେଶୀ ଭାଷାରେ ପ୍ରକାଶିତ ହୋଇ, ଯେତେଦୂର ଖାଣ୍ଟି ଇଂରେଜୀ-କବିତା ଆଶାକରାଯାଏ, ତାହା ହୋଇପାରିଛି ବୋଲି ସ୍ୱୀକାର କରିବାକୁ ହେବ ।

ତରୁ, ମାତ୍ର ୨୧ ବର୍ଷ ବୟସରେ ୧୮୭୭ରେ ପ୍ରାଣତ୍ୟାଗ କଲେ । ସେତେବେଳକୁ ତାଙ୍କର ପ୍ରତିଭା କେବଳ ପ୍ରଚୁର-ସମ୍ଭାବନାମୟ ଥିଲା କହିଲେ ଚଳେ । ତାଙ୍କର ଚିଠିପତ୍ର ସହ ଏକ ଜୀବନୀ ୧୯୨୧ରେ ପ୍ରକାଶିତ ହୋଇଥିଲା ।

ତରୁ ଦତ୍ତଙ୍କ ଅପେକ୍ଷା ସରୋଜିନୀ ନାଇଡୁ (୧୮୭୦-୧୯୪୯) ଇଂରାଜୀ କବିତାକୁ ଅଧିକ ନିର୍ଦ୍ଦିଷ୍ଟ ଦାନ ଦେଇଗଲେ ବୋଲି କହିବାକୁ ହେବ । ସେ ୧୮୯୫ରେ ଇଂଲଣ୍ଡକୁ ଆସିଲେ ପଢ଼ିବାକୁ । ସେତେବେଳେ ଇଂଲଣ୍ଡର କାବ୍ୟିକ ବାତାବରଣ ବେଶ୍ ବାସନ୍ତିକ ଥିଲା ଏବଂ ସେଥିରେ ଅନୁପ୍ରାଣିତ ସରୋଜିନୀ ଯାହା ଲେଖିଗଲେ ତାହା ପୂରାପୂରି ଥିଲା ଇଂରାଜୀ – ଆଙ୍ଗିକ ଓ ବସ୍ତୁ ଉଭୟରେ । ତାଙ୍କ ଶୁଭକାମନାକାରୀମାନେ ତାଙ୍କୁ ତାଙ୍କ କବିତାର ଅନ୍ତସ୍ଥ ବସ୍ତୁ ପାଇଁ ନିଜ ଜନ୍ମମାଟିକୁ ଯିବାକୁ ଉପଦେଶ ଦେଲେ । ତାଙ୍କର ମୁଖ୍ୟ କବିତାଗ୍ରନ୍ଥ ହେଲା ମାତ୍ର ତିନିଟି– The Golden Threshold (1905) ଏବଂ The Bird of Time, (1912) and The Broken Wing (1917) । ଏ ସବୁରେ ଥିବା ତାଙ୍କର ଛୋଟ ଛୋଟ ଭାବପ୍ରବଣ ଗୀତଗୁଡ଼ିକ ମନେହେବ ଯେପରିକି, କେବଳ– ଶୁଣାଶୁଣିରେ– ପ୍ରାଚ୍ୟ-ଖଣ୍ଡକୁ ଜାଣିଥିବା କୌଣସି ଇଂରେଜ କବିର ଲେଖା । କେତେକ ଅବଶ୍ୟ ଆମ ଆଗରେ ଥୋଇଥାନ୍ତି ଭାରତୀୟ ଜୀବନର ବର୍ଣ୍ଣାଢ଼୍ୟ ଚିତ୍ର ଓ ପ୍ରାଚ୍ୟ ଦେଶମାନଙ୍କର ଭକ୍ତିଭାବ । ମୋଟ ଉପରେ ସରୋଜିନୀଙ୍କ ଇଂରାଜୀ ରଚନାବଳୀରେ ଆମେ ତାଙ୍କର ଇଂରାଜୀ ଭାଷାରେ ଅଧିକାରର ଯେଉଁ ପ୍ରମାଣ ପାଉ, ସେ ପରିମାଣରେ ଜନ୍ମଭୂମି ଭାରତର ଆତ୍ମାକୁ ପାଇ ନଥାଉ ।

ଯେତେ ଇଣ୍ଡିୟାନ୍ କବି ଇଂରାଜୀରେ କବିତା ଲେଖିବାକୁ ଚେଷ୍ଟା କରିଛନ୍ତି, ସେ ଭିତରେ ସତ୍ୟରେ ଅଦ୍ଭୁତ ହେଉଛନ୍ତି ମନମୋହନ ଘୋଷ (୧୮୬୭- ୧୯୨୪) ।

ମନମୋହନ ଘୋଷ, ଅକ୍‌ସଫୋର୍ଡ଼ର ଛାତ୍ର ଏବଂ ସେ ଥିଲେ ଲରେନ୍‌ସ ବିନିୟନ୍, ଷ୍ଟିଫେନ୍ ଫଲିପ୍‌ସ ଇତ୍ୟାଦିଙ୍କର ସହାଧ୍ୟାୟୀ, ଯେଉଁମାନେକି ଜୀବନରେ ଇଂରେଜୀ ସାହିତ୍ୟରେ ଖ୍ୟାତି ଅର୍ଜନ କରିଗଲେ । ଘୋଷ ତାଙ୍କର ଇଂଲଣ୍ଡ ଅଧିବାସର ଯୁଗଧର୍ମକୁ ଏପରି ନିଜର କରି ନେଇପାରିଥିଲେ ଯେ, ତାଙ୍କର Love-songs and Elegies ଏବଂ Songs of Love and Death ପାଠକଲେ ଯେକୌଣସି ପାଠକ ସେଗୁଡ଼ିକୁ ପ୍ରାଚୀନ ୟୁରୋପୀୟ ସଂସ୍କୃତିରେ ଶିକ୍ଷିତ ଓ ଦୀକ୍ଷିତ କୌଣସି ଖାଣ୍ଟି-ଇଂରେଜଭାଷୀ କବିଙ୍କର ରଚନା ବୋଲି ଧରିନେବା ସ୍ୱାଭାବିକହେବ । ଘୋଷଙ୍କ କବି-ଜୀବନ ଆତ୍ମିକ ପ୍ରବାସ-ଯନ୍ତ୍ରଣାରେ କଟିଥିବା ଏକ ବିୟୋଗାନ୍ତ ନାଟକ କହିବାକୁ ହେବ । ଇଂଲଣ୍ଡରୁ ଯାଇ ଘୋଷ ଇଣ୍ଡିଆରେ ସାହିତ୍ୟ-ଅଧ୍ୟାପକ ହେଲେହେଁ, ସେ

ନିଜକୁ ଚାହିଁ ଦେଖିଲେ ଯେ, ସେ ସତ୍ୟରେ ନୁହଁନ୍ତି ପୂରାପୂରି ଭାରତୀୟ । ଅବଶ୍ୟ ଘୋଷଙ୍କ ପରି ତାଙ୍କର ସମସାମୟିକ ଅନ୍ୟ ଅନେକ ତଥାକଥିତ ଭାବରେ ନିପୁଣ କବି ମଧ୍ୟ ଇଂରେଜ ସାହିତ୍ୟରେ ଚିରନ୍ତନ ଚିହ୍ନ କିଛି ଛାଡ଼ିଯାଇ ପାରି ନାହାନ୍ତି ।

ମନମୋହନ ଘୋଷଙ୍କ ଭାଇ ଅରବିନ୍ଦ ଘୋଷ ଅବଶ୍ୟ ଇଂରାଜୀରେ ଲେଖିଛନ୍ତି ଏବଂ ଯଦିଓ ତାଙ୍କର ରଚନାର ବସ୍ତୁମାନଙ୍କ ଭିତରେ ଏକତମ ହେଉଛି, ଆଇରିଶ୍ ନେତା ପାର୍ନେଲଙ୍କ ପ୍ରତି ଆୟର୍ଲାଣ୍ଡର ଅକୃତଜ୍ଞତା । ତେବେ, ସେ ବେଶୀ ଜଣାଶୁଣା କେବଳ ଭାରତୀୟ ଜାତୀୟତାର ପ୍ରଚାରକ ଓ ପ୍ରଖ୍ୟାପକ ଭାବରେ ।

ମନମୋହନ ଓ ଅରବିନ୍ଦ ଉଭୟଙ୍କଠାରୁ ସାଧାରଣରେ ଅଧିକ ସୁବିଦିତ ଅବଶ୍ୟ ରବୀନ୍ଦ୍ରନାଥ ଠାକୁର (୧୮୬୧-୧୯୪୧) । କିନ୍ତୁ ତାଙ୍କର ଇଂରେଜି ସାହିତ୍ୟରେ କୌଣସି ସ୍ଥାୟୀ ଜାଗା ଅଛି ବୋଲି କୁହାଯାଇନପାରେ । ସେ ବସ୍ତୁତଃ ବଙ୍ଗଳା ଭାଷାର କବି, ଯାହାଙ୍କ କବିତା ଇଂରାଜିକୁ ଅନୁବାଦ ହୋଇଛି ମାତ୍ର । ତାଙ୍କ ମାତୃଭାଷାରେ ସେ ଯାହା ଲେଖିଯାଇଛନ୍ତି ତା'ର ମୂଲ୍ୟାୟନ ଆମ ସୀମାର ବାହାରେ । କିନ୍ତୁ ଇଂରେଜି-ଗଦ୍ୟରେ ତାଙ୍କର ଅନୂଦିତ କବିତାବଳି ପ୍ରତି ଆମେ ଏଇ ମତ ଦେଇପାରୁ ଯେ, ଏଗୁଡ଼ିକୁ ଅନନ୍ୟସାଧାରଣ ବୋଲି ପ୍ରଶଂସା କଲେ ତାହା ସହଜରେ ଅତିରଞ୍ଜନ-ଦୋଷ-ଦୂଷିତ ହୋଇଯାଇପାରେ । ବସ୍ତୁତଃ, ତାଙ୍କର 'ଗୀତାଞ୍ଜଳି' (୧୯୧୨), 'ଦ୍ୱିତୀୟା ଜହ୍ନ' (୧୯୧୩) 'ଫଳ-ସଂଗ୍ରହ' (୧୯୧୬), ଏବଂ 'ମାଳୀ' ଓ ଅନ୍ୟାନ୍ୟ କବିତା-ସଂଗ୍ରହ ସବୁରେ ଚିନ୍ତା ଓ ପ୍ରକାଶନ-ରୀତିରେ ଏପରି କୌଣସି ଅଧିକ ଐଶ୍ୱର୍ଯ୍ୟ ନାହିଁ, ଯାହା ଯେ କୌଣସି ଗ୍ରହଣଶୀଳ ପାଠକ ଇଂରାଜୀ ବାଇବଲ୍‌ରୁ ନପାଇପାରେ । ଏକ ପରିଚିତ ପ୍ରାଚ୍ୟ ବାତାବରଣରୁ ଆସିଥିବା ଅଗଭୀର ନୈତିକ ଉତ୍‌ପ୍ରେକ୍ଷା ପାଇଁ ପାଶ୍ଚାତ୍ୟ-ଜନସାଧାରଣଙ୍କ କ୍ଷୁଧାହିଁ, ଟାଗୋରଙ୍କ ଇଂରେଜି ଗଦ୍ୟ-ଅନୁବାଦଗୁଡ଼ିକର ଜନପ୍ରିୟତାର କାରଣ ବୋଲି କୁହାଯାଇପାରେ ।

---

(Concise Cambridge History of English Literature, ପୃଷ୍ଠା– PP 913-915)
ଅନୁବାଦକ : ମାୟାଧର ମାନସିଂହ ।

ନୋଟ୍ : ଏବେ ଅନେକ ଭାରତୀୟ ଇଂରାଜିରେ ଉପନ୍ୟାସ, ଗଳ୍ପ ଓ କବିତା ଲେଖିବା ପରେ ପରେ କବି ଓ ଗାଳ୍ପିକ ଭାବରେ ଏମାନେ ସମ୍ବର୍ଦ୍ଧନା ପାଉଛନ୍ତି– କେବଳ ନିଜ ନିଜ ବନ୍ଧୁ-ଗୋଷ୍ଠୀରୁ । ଅଥଚ ରବୀନ୍ଦ୍ର ନାଥଙ୍କ ସହିତ କୌଣସି ଭାରତୀୟ ଲେଖକ ଏପର୍ଯ୍ୟନ୍ତ ଇଂରାଜୀଭାଷାର ଲେଖକ ବୋଲି ଯେ ଗଣାହେଉନାହାନ୍ତି, ତାହା ଏ ପର୍ଯ୍ୟନ୍ତ ଇଂରାଜି-ଅନ୍ଧ-ଥିବା ବନ୍ଧୁମାନଙ୍କୁ ଚେତାଇ ଦେବାକୁ ହିଁ ଇଂରାଜି ଭାଷାର ଏକ ପ୍ରମାଣିକ ଆଧୁନିକତମ ଇତିହାସରୁ ସଂପୃକ୍ତ ଅଂଶଟି ଏଠାରେ ଉଦ୍ଧାର କରି ଦିଆଗଲା । ଯେଉଁମାନେ ପ୍ରକୃତ କବି ବା ଗାଳ୍ପିକ, ସେମାନେ ତେଣୁ ଆଗେ ନିଜ ମାତୃଭାଷାରେ ହିଁ ଲେଖନ୍ତୁ ଏତିକି ପ୍ରାର୍ଥନା । – [ ନବରବି, ୩ୟ ବର୍ଷ, ୪ର୍ଥ ସଂଖ୍ୟା । ]

# (୩)

## ସାହିତ୍ୟର ସାଧନା

ଏପରି ଏକ ପଣ୍ଡିତ ଓ ଗଣ୍ୟମାନ୍ୟ ସୁଧୀ ସମାଜରେ ମୋ' ପରି ଏକ ଅର୍ବାଚୀନ ସଭାପତିତ୍ୱ କରୁଥିବାରୁ ମୁଁ ଅତ୍ୟନ୍ତ ସଙ୍କୁଚିତ ବୋଧକରୁଛି; କିନ୍ତୁ ଏପରି ଏକ ସଭା ଦରକାର ଥିଲା ଓ ଏଥିର ଆୟୋଜନ କରିଥିବାରୁ ଏହାର କର୍ତ୍ତୃପକ୍ଷଙ୍କୁ ମୁଁ ଅନ୍ତରର ଧନ୍ୟବାଦ ଦେଉଅଛି । ଆମେ କେବଳ ପଲାଦିନେ ପଢ଼ିଥିଲୁଯେ ଓଡ଼ିଶାରେ ବାମଣ୍ଡାର ପୂର୍ବତନ ରାଜା ସାର୍ ସୁଢ଼ଳ ଦେବ ଓ ତାଙ୍କ ପୁତ୍ର ସଚ୍ଚିଦାନନ୍ଦ ଦେବଙ୍କ ଦରବାରରେ ଏ ପ୍ରକାର ସାହିତ୍ୟିକମାନଙ୍କର ମିଳନ ସମୟସମୟରେ ହେଉଥିଲା; କିନ୍ତୁ ଆମ୍ଭମାନଙ୍କ ଅଭିଜ୍ଞତା ଭିତରେ କେବେ ହୋଇନଥିଲା । ମାନ୍ୟବର ମହତାବଙ୍କ ପ୍ରଚେଷ୍ଟାରେ ଏପ୍ରକାର ସାହିତ୍ୟିକମାନଙ୍କର ସାମାଜିକ ମିଳନ ଯେ ଘଟିପାରିଛି ସେଥିପାଇଁ ସେ ସମସ୍ତଙ୍କର ଧନ୍ୟବାଦାର୍ହ । କିନ୍ତୁ ଗୋଟିଏ କଥା ସମସ୍ତଙ୍କର ମନେରଖିବା ଉଚିତ ଯେ, ଏ ପ୍ରକାର ଭୋଜି, ନାଟ୍ୟାଭିନୟ ବା ବାହାରର ଆଡ଼ମ୍ବର ସାହିତ୍ୟ ନୁହେଁ, ସାହିତ୍ୟଟା ଏକାନ୍ତ ଅନ୍ତରର କଥା । ଆମ୍ଭେମାନେ ବାହାରର ଘଟାଟୋପରେ ଯେପରି ଆତ୍ମ-ସନ୍ତୋଷ ନେଇ ନଫେରୁ ଯେ ଆମର ସାହିତ୍ୟ ସେବା ହୋଇଗଲା ।

ଏ ସଭାର ପ୍ରାରମ୍ଭରେ ଶ୍ରୀଯୁକ୍ତ ଭଗବାନ ପତି କହିଥିଲେ, ଏ ଦେଶରେ ସାହିତ୍ୟିକ ସମ୍ମାନ ପାଏନା,। ତା'ର ଲେଖାର ଦାମ୍ ପାଏନା ଓ ତାକୁ କେହି ପଚାରନ୍ତିନାହିଁ । କିନ୍ତୁ ଆମ୍ଭମାନଙ୍କ ଭିତରୁ ଅନେକ ଜାଣନ୍ତି ନାହିଁ ଯେ ପାଶ୍ଚାତ୍ୟ ଦେଶରେ ଅନେକ ବିଶ୍ୱବିଖ୍ୟାତ ସାହିତ୍ୟିକ କି ଦୁଃଖ, କି ଯନ୍ତ୍ରଣା, କି ଅତ୍ୟାଚାର ସହ୍ୟକରି ନିଜର ଅପୂର୍ବ ସାହିତ୍ୟିକ ଦାନ ଜଗତକୁ ଦେଇଯାଇଛନ୍ତି । ସେ ସବୁ ତୁଳନାରେ ଆମ୍ଭମାନଙ୍କର ଦୁଃଖ ଯନ୍ତ୍ରଣା ବା ଆତ୍ମସମ୍ମାନ କିଛି ନୁହେ । ଭାରତବର୍ଷରେ ଅନେକ କବି ଉଚ୍ଚ ରାଜ-ସମ୍ମାନ ଓ ଜୀବନର ସ୍ୱାଚ୍ଛନ୍ଦ୍ୟ ପାଇଅଛନ୍ତି; କିନ୍ତୁ ସେ ତୁଳନାରେ ତାଙ୍କର ସାହିତ୍ୟ ସୃଷ୍ଟିର ସେପରି କିଛି ମୂଲ୍ୟ ନାହିଁ । ଆପଣମାନେ ପ୍ରସିଦ୍ଧ ରୁଷୀୟ ଲେଖକ ଦସ୍ତୋଭଏସ୍କିଙ୍କର ନାମ ଶୁଣିଛନ୍ତି । ଏହି ଦସ୍ତୋଭଏସ୍କି ରୁଷିଆର ସର୍ବଶ୍ରେଷ୍ଠ ଲେଖକ ବୋଲି ବର୍ତ୍ତମାନ ଧରାଯାଉଅଛନ୍ତି । ସେ କେବଳ

୧୯୫୦ ମସିହା ଏପ୍ରିଲମାସରେ ପ୍ରଜାତନ୍ତ୍ର ପରିସରରେ ଅନୁଷ୍ଠିତ ୧ମ ବାର୍ଷିକ ବିଷୁବ ମିଳନର ବାର୍ଷିକ ଅଧିବେଶନରେ ପୌରୋହିତ୍ୟ କରି ଡକ୍ଟର ମାନସିଂହ ଦେଇଥିବା ଅଭିଭାଷଣ (ସାହିତ୍ୟର ସାଧନା)କୁ ଏଠାରେ ଉଦ୍ଧାରକରି ସେହି ସ୍ୱର୍ଗତ ଅମରଆତ୍ମା ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣକରୁଛୁ । (ଝଙ୍କାର ୨।୨)

ଉଚ୍ଚ ଦରର ସାହିତ୍ୟସ୍ରଷ୍ଟା ନୁହନ୍ତି, ସେ ଜଣେ ପ୍ରଫେଟ୍ ବା ଭବିଷ୍ୟତଦ୍ରଷ୍ଟା ଭାବରେ ପାଶ୍ଚାତ୍ୟ ଦେଶରେ ବୁଦ୍ଧିଜୀବୀମାନଙ୍କ ନିକଟରେ ଆଜି ସମ୍ମାନିତ । କାରଣ ୧୯୧୭ ପରେ ରୁଷିଆରେ ଯେଉଁ କମ୍ୟୁନିଷ୍ଟ ବିପ୍ଳବ ଓ ଶାସନ ଚାଲିଛି, ତାହାର ସମସ୍ତ ପ୍ରଣାଳୀ ଯେ ଅଦ୍ଭୁତଭାବରେ ପ୍ରାୟ ୫୦ ବର୍ଷ ପୂର୍ବରୁ ତାଙ୍କର ଏକ ଉପନ୍ୟାସରେ ବିଶଦ ଭାବରେ ବର୍ଣ୍ଣନା କରିଯାଇଛନ୍ତି । ତାଙ୍କର ବର୍ଣ୍ଣନା ଅନୁସାରେ ବିପ୍ଳବର ସମସ୍ତ ସ୍ତର ଓ ସୋଭିଏଟ ଶାସନର ସମସ୍ତ ରୀତି ଠିକେ ଠିକେ ଘଟିଯାଉଅଛି । ଏହି ଦସ୍ତୋଭସ୍କି କିନ୍ତୁ ସମସ୍ତ ଜୀବନ ଦାରିଦ୍ର୍ୟ ଭିତରେ କଟାଇଥିଲେ । ସେ ଫାଶୀକାଠରେ ଝୁଲିବାକୁ ଯାଉଥିଲେ – ଆକସ୍ମିକ ଭାବରେ ପ୍ରାଣଦଣ୍ଡ ପ୍ରତ୍ୟାହାର କରାଯିବାରେ ସାଇବେରିଆର ହିମଶୀତଳ ମରୁଭୂମିରେ ତାଙ୍କୁ ଦୀର୍ଘ ଚାରିବର୍ଷ କାଳ ସଶ୍ରମ କାରାବାସ ବରଣ କରିବାକୁ ହୋଇଥିଲା । ଏପରି ସମୟ ତାଙ୍କ ଜୀବନରେ ଆସିଛି, ଯେତେବେଳେ ତାଙ୍କ ସ୍ତ୍ରୀ ମରିଛି, ପୁଅ ମରିଛି ଓ ଏଣେ ଅନ୍ନକଷ୍ଟ । ଏ ମାନସିକ ଯନ୍ତ୍ରଣା ଓ ସମାଜର ଅତ୍ୟାଚାର ଯାହା ଦସ୍ତୋଭସ୍କି ତାଙ୍କ ଜୀବନରେ ଭୋଗକରିଛନ୍ତି ତାହା ନିକଟରେ ଆମର ଦୁଃଖ ଯନ୍ତ୍ରଣା ଓ ଅପମାନ କେତେ ସାମାନ୍ୟ ? ବରଂ ମନେରଖିବାକୁ ହେବ– ଦୁଃଖ, ଯନ୍ତ୍ରଣା, ସାମାଜିକ ଅତ୍ୟାଚାର, ଶାସକର ଅନ୍ୟାୟ ସାହିତ୍ୟିକ ପ୍ରତିଭାର ବିକାଶପାଇଁ ଅନୁକୂଳତା ଆଣିଦିଏ । ଆମେ ଯେଉଁମାନେ ସାହିତ୍ୟ ଚର୍ଚ୍ଚା କରୁଛୁ ବା ସାହିତ୍ୟିକର ଅଭିମାନ ରଖିଛୁ, ଆମ ସମସ୍ତଙ୍କର ଏପରି ଦୁଃଖ କଷ୍ଟ ଅତ୍ୟାଚାର ପାଇଁ ପ୍ରସ୍ତୁତ ରହିବା ଉଚିତ୍ । ଲେଖାର ଦରଦାମ୍ କରିବା, ସାହିତ୍ୟିକର ସମ୍ମାନ ପାଇଁ ଚିତ୍କାର କରିବା ବା କେହି ନପଚାରିଲେ ବୋଲି ଅଭିମାନ କରିବା ଅପେକ୍ଷା ଏହି ପ୍ରକାର ଦୁଃଖ ବରଣର ମୂଲ୍ୟ ବେଶୀ ।

ଆମ୍ଭମାନଙ୍କ ଭିତରେ ଏକ ଆତ୍ମସନ୍ତୋଷ ଅଛି, ଯାହା ଏକ ଭୟଙ୍କର ବ୍ୟାଧି । ଆମ ଭିତରୁ ଅନେକେ ପ୍ରାଚୀନ ସାହିତ୍ୟର ନାମ ଶୁଣିଲେ ଆନନ୍ଦରେ ବିହ୍ୱଳ ହୋଇ ନାଚିଉଠନ୍ତି – ଆମର ଯାହା କିଛି ପ୍ରାଚୀନ ତାହା ଭଲ – ଆମର ସବୁ ଅଛି, ଅନ୍ୟଠୁ ଗ୍ରହଣ କରିବାର ଆମର ଦରକାର କିଛି ନାହିଁ । ଘରେ ଦ୍ୱାର ଝରକା ସବୁ ବନ୍ଦକରି ଘୋର ଅନ୍ଧକାରରେ ବେଶ୍ ସୁସ୍ଥ ଓ ସ୍ୱାଚ୍ଛନ୍ଦ୍ୟ ଜୀବନଯାପନ କଲୁ ବୋଲି ଏଇ ଯେ ମନୋଭାବ ତାହା ବ୍ୟକ୍ତି ପକ୍ଷରେ ଓ ଜାତି ପକ୍ଷରେ ଘୋର ଅନିଷ୍ଟକାରକ । ପ୍ରାଚୀନବାଦୀମାନଙ୍କ ପରି ନୂତନବାଦୀମାନଙ୍କର ମଧ୍ୟ ଅନିଷ୍ଟକାରୀ ଆତ୍ମସନ୍ତୋଷ ରହିଛି, କିନ୍ତୁ ଏହାକୁ ବରଂ ମନେକରିବାକୁ ହେବ ଯେ ଆମ ସାହିତ୍ୟରେ କିଛି ନାହିଁ, ଆମକୁ ସବୁ ନୂଆ ସୃଷ୍ଟି କରିବାକୁ ହେବ । ଜଣେ ଇଂରେଜ ଲେଖକ ରୁଷୀୟ ସାହିତ୍ୟର ଇତିହାସ ଲେଖିବାକୁ ଯାଇ କହିଛନ୍ତି ଯେ ଏକାଦଶ ଶତାବ୍ଦୀରୁ

ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ସମସ୍ତ ରୁଷୀୟ ସାହିତ୍ୟକୁ ପୋଡ଼ି ନଷ୍ଟ କରିଦେଲେ କାହାର କିଛି ଅନିଷ୍ଟ ହେବ ନାହିଁ – କାରଣ ପ୍ରକୃତ ରୁଷୀୟ ସାହିତ୍ୟ ଊନବିଂଶ ଶତାବ୍ଦୀରେ ଆରମ୍ଭ । ଆମପରି ରୁଷିଆରେ ମଧ୍ୟ ପ୍ରାଚୀନ ସାହିତ୍ୟର ସ୍ତାବକ ଥିବେ; କିନ୍ତୁ ସେମାନେ ଯେପରି ପ୍ରାଚୀନ ସାହିତ୍ୟକୁ ଭୁଲିଯିବାପାଇଁ ପ୍ରସ୍ତୁତ, ସେହି ମନୋଭାବ ଗ୍ରହଣ ନ କଲେ ଆମ୍ଭମାନଙ୍କର ନୂତନ ଓ ଗରିଷ୍ଠ ସୃଷ୍ଟି ହୋଇନପାରେ । ପ୍ରକୃତରେ ଗୋଟିଏ ସାହିତ୍ୟ ପରିପୁଷ୍ଟ କି ନା ତା'ର ପରୀକ୍ଷା ହେଉଛି ଏହି ଯେ ଜଣେ ଲୋକ ନିଜର ଜ୍ଞାନପିପାସାପାଇଁ ସେହି ସାହିତ୍ୟ ଛଡ଼ା ଅନ୍ୟ କିଛି ପଢ଼ିବା ତା'ର ଦରକାର ହେବ ନାହିଁ । ମୁଁ ମୋ' ପିଲାଙ୍କୁ ତାଙ୍କର ଜୀବନ ଗଠନ, ଜ୍ଞାନ ଆହରଣ ଓ ଆଦର୍ଶର ସନ୍ଧାନପାଇଁ ଇଂରେଜୀ, ବଙ୍ଗଳା, ହିନ୍ଦୀ ପୁସ୍ତକ ଦେବାକୁ ବାଧ୍ୟହେଉଛି – ତେବେ କିପରି କହିବା ଓଡ଼ିଆ ସାହିତ୍ୟ ପରିପୁଷ୍ଟ ? ଏହି ପରୀକ୍ଷାରେ ହୁଏତ କୌଣସି ଭାରତୀୟ ସାହିତ୍ୟ ପରିପୁଷ୍ଟ ବୋଲି ଗ୍ରହଣ କରାଯାଇ ନପାରେ । ଆମର ଅଭାବ ଯେତେବେଳେ ଏତେ, ଆତ୍ମସନ୍ତୋଷ ଅର୍ଥାତ୍ ଆମର ସବୁ ଅଛି ଏଇ ଭାବ ଜାତି ଓ ବ୍ୟକ୍ତି ପକ୍ଷରେ କି ଅନିଷ୍ଟକର ତାହା ଆପଣମାନେ କଳ୍ପନା କରିପାରିବେ ।

କୌଣସି ଗୋଟିଏ ଜାତୀୟ ଘଟଣା ବା କୌଣସି ଏକ ବିଶିଷ୍ଟ ବ୍ୟକ୍ତିର ସ୍ପର୍ଶରେ ସାହିତ୍ୟର ହଠାତ୍ ଶ୍ରୀବୃଦ୍ଧି ହୁଏ । ରାଣୀ ଏଲିଜାବେଥଙ୍କ ସମୟରେ ସ୍ପାନିଶ୍ ଆର୍ମେଡାର ଧ୍ୱଂସ ପରେ ସମଗ୍ର ଇଂଲଣ୍ଡରେ ଏକ ନୂତନ ଜାତୀୟ ଚେତନା ସଞ୍ଚାରିତ ହୋଇଥିଲା ଓ ତା'ର ଫଳ ଦେଖାଦେଇଥିଲା ବିସ୍ମୟକର ଏଲିଜାବେଥୀୟ ସାହିତ୍ୟରେ । ସେହିପରି ନେପୋଲିୟନଙ୍କର ପରାଜୟ ପରେ ରୁଷିଆରେ ଯେଉଁ ଜାତୀୟ ପ୍ରେରଣା ଆତ୍ମପ୍ରକାଶ କରିଥିଲା, ତାହାରି ଫଳରେ ହୁଏତ ଊନବିଂଶ ଶତାବ୍ଦୀର ବିଶ୍ୱବିଖ୍ୟାତ ରୁଷୀୟ ସାହିତ୍ୟର ସୃଷ୍ଟି । ଓଡ଼ିଶାରେ ଜାତୀୟ ଉନ୍ମାଦନା ଆଣିବାର ବହୁ ଘଟଣା ଗତ ଚୌଦ-ପନ୍ଦର ବର୍ଷ ଭିତରେ ଘଟିଯାଇଛି । ଖଣ୍ଡବିଖଣ୍ଡିତ ଓଡ଼ିଶା ଏକତ୍ରିତ ହୋଇଛି । ଗଡ଼ଜାତ, ମୋଗଲବନ୍ଦି ମିଶିଯାଇଛି । ଏହି ଅବସରରେ ପ୍ରଧାନମନ୍ତ୍ରୀ ଶ୍ରୀଯୁକ୍ତ ମହତାବଙ୍କର ବ୍ୟକ୍ତିତ୍ୱ ସାହିତ୍ୟିକମାନଙ୍କୁ ଅନୁପ୍ରାଣିତ କରିପାରିଲେ ଆମ୍ଭେମାନେ ଅନେକ କିଛି ପାଇପାରିବାର ଆଶା କରିପାରୁଁ ।

ଆମେ ସାହିତ୍ୟିକମାନଙ୍କୁ ମାନିବାକୁ ହେବ ଯେ, ଗତ କେତେବର୍ଷ ଧରି ଆମ୍ଭେମାନେ ବ୍ୟକ୍ତିକୈନ୍ଦ୍ରିକ ହୋଇପଡ଼ିଛୁ । ଆମ୍ଭେମାନେ ପ୍ରତ୍ୟେକେ ନିଜନିଜର ସୁଖପାଇଁ ଲେଖୁଛୁ । ଆମେ ଲେଖିଲାବେଳେ ଜାତିକୁ ବା ଜନତାକୁ ସ୍ମରଣରେ ଆଣିନାହୁଁ । ଆମର ଲେଖା ଜନତା ନିକଟରେ କିପରି ପ୍ରବେଶ କରିବ ବା ସେ ବୁଝିବ କି ନାହିଁ ସେ ବିଷୟରେ ଚିନ୍ତା ହିଁ କରୁନାହୁଁ । ଆମ୍ଭେମାନେ ପ୍ରତ୍ୟେକେ

ଆତ୍ମସନ୍ତୋଷ ଅପରାଧରେ ଅପରାଧୀ । ରୁଷୀୟ ବା ଏଲିଜାବେଥୀୟ ଯୁଗରେ ସେଇ ସେଇ ଦେଶର ଲେଖକମାନେ ଯେପରି ଜାତି କିପରି ଗୌରବାନ୍ୱିତ ହେବ, ସାଧାରଣ ଦେଶବାସୀର ଜୀବନ କିପରି ପରିପୁଷ୍ଟ ହେବ, ସେହି ଆଦର୍ଶକୁ ଆଗରେ ରଖି ନୂତନ ସାହିତ୍ୟ ସୃଷ୍ଟି କରିଗଲେ, ଆମ ସମସ୍ତଙ୍କୁ ଆଜି ସେହି ବ୍ରତ ଗ୍ରହଣ କରିବାକୁ ହେବ । ଅନ୍ୟ ସାହିତ୍ୟର କଥା ଛାଡ଼ିଦିଅ – ଆମର ପ୍ରାଚୀନ ସାହିତ୍ୟରେ ଜାତିପାଇଁ ବ୍ୟକ୍ତିଗତ ସମ୍ମାନକୁ ପରିତ୍ୟାଗ କରିବାର ଦୃଷ୍ଟାନ୍ତ ଠିଆହୋଇରହିଛି । ଭାଗବତକାର ଜଗନ୍ନାଥ ସଂସ୍କୃତରେ ଅସାଧାରଣ ପଣ୍ଡିତ ଥିଲେ । ସେ ମନ୍ତ୍ରୀପୁତ୍ର ଥିଲେ ଓ ରାଜଦରବାରରେ ତାଙ୍କର ଅବାଧ ଗତି ଥିଲା । ଇଚ୍ଛା କରିଥିଲେ ବିଶ୍ୱନାଥ ମହାପାତ୍ରଙ୍କ ପରି ସଂସ୍କୃତରେ ଗ୍ରନ୍ଥ ଲେଖି ସେ ସର୍ବଭାରତୀୟ ସମ୍ମାନ ପାଇପାରିଥାନ୍ତେ । କିନ୍ତୁ ତରୁଣ ବୟସରୁ ସେ ସଂସ୍କୃତ ଭାଷା ଓ ବନ୍ଧୁବାନ୍ଧବ ଏବଂ ରାଜପରିବାରର ସମ୍ମାନକୁ ପରିତ୍ୟାଗକରି ଜନସାଧାରଣଙ୍କ ଭାଷାରେ, ଜନସାଧାରଣଙ୍କ ନିକଟରେ, ଜ୍ଞାନ ଓ ଭକ୍ତି ପହଞ୍ଚାଇ ଦେବାପାଇଁ ଓଡ଼ିଆ ଭାଗବତ ଲେଖିଥିଲେ । ପ୍ରଥମେ ପ୍ରଥମେ ସଂସ୍କୃତ ଛାଡ଼ି ଓଡ଼ିଆରେ ଲେଖିବା ହେତୁରୁ ତତ୍କାଳୀନ ପଣ୍ଡିତମାନେ ଜଗନ୍ନାଥଙ୍କୁ ଯେ ଥଟ୍ଟା ତାଚ୍ଛଲ୍ୟ କରିଥିବେ ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ଜଗନ୍ନାଥ ସେସବୁକୁ ଖାତିରି କରିନଥିଲେ । ବର୍ତ୍ତମାନ ଲେଖକ-ଲେଖିକାମାନେ ନିଜର ସତ୍ୟପାଇଁ, ନ୍ୟାୟପାଇଁ, ଆଇଡ଼ିଆ (Idea) ପାଇଁ, ଜଗନ୍ନାଥଙ୍କ ପରି ତ୍ୟାଗପାଇଁ ଓ ତୁଚ୍ଛ ତାଚ୍ଛଲ୍ୟର ସମ୍ମୁଖୀନ ହେବକୁ ପ୍ରସ୍ତୁତ ରହିବା ଉଚିତ । କେବଳ ଲେଖାର ମୂଲ୍ୟ ବା ସାହିତ୍ୟିକ ସମ୍ମାନ ଦାବୀ କରିବାରେ ସାହିତ୍ୟର ବା ନିଜର ବିଶେଷ ଉପକାର ହେବ ଆଶା କରାଯାଇ ନପାରେ ।

ସାହିତ୍ୟ-ସୃଷ୍ଟି ସତ୍ୟ ସନ୍ଧାନର ଫଳ । ଯେ କେହି ଶ୍ରେଷ୍ଠ ଲେଖକର ଜୀବନୀ ଓ ଲେଖା ଆଲୋଚନାରୁ ଦେଖିପାରିବା ଯେ ତାଙ୍କର ସମଗ୍ର ରଚନାବଳୀ ତ ଆଧ୍ୟାତ୍ମିକ ଜୀବନରେ ସତ୍ୟାନୁସନ୍ଧାନର ବହିଃପ୍ରକାଶ ମାତ୍ର । ଏହି ସତ୍ୟାନୁସନ୍ଧାନ ଯେଉଁଠି ନାହିଁ, ସେଠି କେବଳ ବିଳାସ – ସେ ସାହିତ୍ୟରୁ ଜାତି ଓ ବ୍ୟକ୍ତି ଲାଭ ପାଇ ନପାରେ । ପ୍ରସିଦ୍ଧ ରୁଷ ଲେଖକ ଟଲଷ୍ଟୟଙ୍କ ତରୁଣ ବୟସର କ୍ରିମିୟା-ଯୁଦ୍ଧର ଚିଠିପତ୍ରଠାରୁ ଆରମ୍ଭକରି ଶେଷ ଉପନ୍ୟାସ ପର୍ଯ୍ୟନ୍ତ ଦେଖାଯିବ ଯେ, ତାଙ୍କର ସାହିତ୍ୟସେବା ଗଭୀର ସତ୍ୟାନୁସନ୍ଧାନ ଧାରାର ଇତିହାସ ମାତ୍ର । ଆମ୍ଭେମାନେ ସତ୍ୟପାଇଁ, ନୀତିପାଇଁ, ଜାତି ସମାଜପାଇଁ ଯେତିକି ଦୁଃଖ କଷ୍ଟ ଅତ୍ୟାଚାର ସହ୍ୟକରିବା, ଆମ୍ଭମାନଙ୍କର ସାହିତ୍ୟ ସୃଷ୍ଟି ସେହି ପରିମାଣରେ ବଢ଼ି ପରିପୁଷ୍ଟ ହେବ । ଆଶାକରେ ଆମର ସାହିତ୍ୟିକ ଏହି ଆଦର୍ଶରେ ଅନୁପ୍ରାଣିତ ହେବେ ।

—

# ଓଡ଼ିଆ ଭାଷାର ସାଂସ୍କୃତିକ ସଂକଟ

ଓଡ଼ିଶାରେ ୧୯୩୬ପୂର୍ବରୁ ଉତ୍କଳ ସାହିତ୍ୟ ସମାଜର ବାର୍ଷିକ ଉତ୍ସବଟି ଏକ ମର୍ଯ୍ୟାଦାବନ୍ତ ସାହିତ୍ୟିକ ଘଟଣା ଥିଲା । ବାହାରୁ ଲୋକ ଆଣିବା ଦରକାର ପଡୁନଥିଲା । ଓଡ଼ିଆ ସାହିତ୍ୟସେବୀଙ୍କ ଦ୍ୱାରାହିଁ କାମ ଚଳୁଥିଲା । କୌଣସି ଦେଶର ସାହିତ୍ୟିକ ଉତ୍ସବ ପାଇଁ ଭିନ୍ନ ଭାଷାଭାଷୀ ଲୋକଙ୍କ ଉଦ୍‌ବୋଧନ ଦର୍କାର ମଧ୍ୟ ପଡ଼େନାହିଁ । ପର୍ତ୍ତୁଗିଜ୍ ସାହିତ୍ୟିକମାନେ ଏକାଠି ହୋଇ ନିଜର ସାହିତ୍ୟର ବିଚାର କରିବାକୁ ବସିଲେ ଜଣେ ଇଂରେଜ ସାହିତ୍ୟିକର ଉଦ୍‌ବୋଧନର ଆବଶ୍ୟକତା ସେମାନେ ଅନୁଭବ କରନ୍ତି ନାହିଁ । ଆମ ଓଡ଼ିଶାରେ ଏବେ ଏହା ଏକ ନବ ସର୍ଜନା । ଉତ୍କଳ ସାହିତ୍ୟ ସମାଜର ବାର୍ଷିକୋତ୍ସବରେ ନିର୍ବାଚିତ ସଭାପତି ଗୋଟିଏ ଲିଖିତ ଭାଷଣ ପଢୁଥିଲେ । କିଛି ପ୍ରସ୍ତାବ ନିଆଯାଉଥିଲା । ଏବପରି ନାଟ ତାମସାର ଆୟୋଜନ ସେତେବେଳେ ନଥିଲା । ସାରଲ୍ୟ ଓ ଗାମ୍ଭୀର୍ଯ୍ୟ ଭିତରେ ସାହିତ୍ୟିକ ଉତ୍ସବ ଯେପରି ହେବାର କଥା ସେହିପରି ହେଉଥିଲା । ସାହିତ୍ୟ ସମାଜର ବାର୍ଷିକୋତ୍ସବର ସଭାପତିମାନଙ୍କର ଅଭିଭାଷଣର ସଂଗ୍ରହ ଆଜି ଏକ ମୂଲ୍ୟବାନ ଗ୍ରନ୍ଥ ।

୧୯୩୬ ପରେ ଉତ୍କଳରେ ପେଶାଦାର ରାଜନୈତିକମାନଙ୍କର ଶାସକ ଭାବରେ ଆବିର୍ଭାବ, ଓଡ଼ିଶାରେ ସାଂସ୍କୃତିକ ଅନୁଷ୍ଠାନମାନଙ୍କର ମହିମାର ସାଂପ୍ରତିକ ଅପଚୟର ଏକ ମୁଖ୍ୟ କାରଣ ବୋଲି ମନେହୁଏ । ଜନତାର ଦୃଷ୍ଟି ରହିଲା ଦଳ, ନିର୍ବାଚନ ଓ ମନ୍ତ୍ରିମଣ୍ଡଳର ଆବିର୍ଭାବ ଓ ବିଳୟ ଉପରେ । ପ୍ରବହମାନ ଘଟଣାବଳି ଯେତେବେଳେ ଏପରି ଉଚ୍ଚାଟକ, ଚିରସ୍ଥାୟୀ ପାଇଁ କିଏ କାହିଁକି ବ୍ୟସ୍ତ ହେବ ? ଫଳରେ, ଆଜି ଚିରନ୍ତନ ଶରଣ ପଶୁଛି କ୍ଷଣିକର ଚରଣ ତଳେ । ସରସ୍ୱତୀଙ୍କୁ ଆଜି ବାଈଜୀର ନାଚ ନାଚିବାକୁ ହେଉଛି । ତାଙ୍କ ବୀଣାରେ ଆଜି ସିନେମା ଗୀତ ନ ବାଜିଲେ ତା'ର ମୂଲ୍ୟ ରହୁନାହିଁ । ସାଂସ୍କୃତିକ ଅନୁଷ୍ଠାନରେ ତାମସା ନ ପୂରାଇଲେ ତା'ର ବଞ୍ଚିବା ସମ୍ଭବ ହେଉନାହିଁ । ପରିଶେଷରେ ଓଡ଼ିଶାର କ୍ଷୁଦ୍ର ସାଂସ୍କୃତିକ ସଂସାରଟିକୁ କଟକ ଓ ଭୁବନେଶ୍ୱର ଭିତରେ ଭାଗ ବାଣ୍ଟିଦେବା ଫଳରେ, ଭାରତୀୟ କୃଷକର କ୍ଷେତ ଜମି ପରି ତାହା ଗୌରବମୟ ଶସ୍ୟରେ ଚିହ୍ନିତ ନହୋଇ, କେବଳ ହିଡ଼-ରେଖାରେ ହିଁ ଚିହ୍ନିତ ହେବାକୁ ଯାଉଛି ।

ଏ ପରିସ୍ଥିତିରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଯେ ପ୍ରତିବର୍ଷ ଏକ ସାହିତ୍ୟିକ

ଉତ୍ସବର ଆୟୋଜନ କରିଆସୁଛନ୍ତି ଏହା ଅତୀବ ସୁଖ୍ୟାତିର କଥା । କିନ୍ତୁ ପ୍ରଜାତନ୍ତ୍ରର କର୍ତ୍ତୃପକ୍ଷ ବା ଆଉ କେହି ଯଦି ଏକ ଖାଣ୍ଟି ସାଂସ୍କୃତିକ ଅନୁଷ୍ଠାନ ଗଢ଼ିବାକୁ ଇଚ୍ଛାକରନ୍ତି, ତେବେ ସେଥିପାଇଁ ସେଠାରେ ଏପର୍ଯ୍ୟନ୍ତ ଆଚରିତ ପନ୍ଥା ଏକାନ୍ତ କାମ୍ୟ ବୋଲି ମନେହେଉନାହିଁ । କେତେଜଣ ଅଧ୍ୟାପକଙ୍କ ମୁଖ ଦେଖି ମୁଁ ପ୍ରଥମେ ବଡ଼ ପ୍ରସନ୍ନତା ଅନୁଭବ କରିଥିଲି । କିନ୍ତୁ ପରେ ଦେଖୁଛି ଯେ ସେମାନେ ହୁଏତ କେବଳ ପୁରସ୍କାର ପାଇଁ ହିଁ ଆସିଥିଲେ, କାରଣ ସେମାନଙ୍କ ଭିତରୁ ଅଧିକାଂଶ ପୁରସ୍କାର ପାଇଲେ । ଦୁଇ-ତିନିଜଣ ଜଣାଶୁଣା ଲୋକ, ଯେଉଁମାନେ ଓଡ଼ିଆଭାଷା ଓ ସାହିତ୍ୟର ସମସ୍ୟା ଆଲୋଚନା ହେଉଥିଲାବେଳେ ନିଶ୍ଚୟ ରହିବା ଉଚିତ, କାରଣ ଯୋଗ୍ୟତା ଦୃଷ୍ଟିରୁ ଯେତେ ନୁହେଁ, ପଦ-ପଦବୀ ଦୃଷ୍ଟିରୁ ଯେଉଁମାନଙ୍କୁ ଓଡ଼ିଆ ଭାଷା ଓ ସାହିତ୍ୟର କର୍ଣ୍ଣଧାର ବୋଲି ଧରାହେଉଛି, ସେମାନେ ଆସିନଥିଲେ । ଶ୍ରୀଯୁକ୍ତ ମହତାବ ଗାଦୀନସିନ ଥିଲେ ସେମାନଙ୍କର ଅନୁପସ୍ଥିତି ଯେ ଅସମ୍ଭବ ହୋଇଥାନ୍ତା, ଏଥିରେ ସଂଦେହ ନାହିଁ । ସେମାନଙ୍କ ଭିତରୁ ହିଁ ରହୁଥିବା ଜଣେ ତଥାକଥିତ ଓଡିଆ ସାହିତ୍ୟିକ ବହୁ ଆଗରୁ ମତେ ଏକଥା ଚେତାଇଦେଇଥିଲେ ଓ ନିଜ କର୍ମଦ୍ୱାରା ସେ ତାହା ପ୍ରମାଣିତ କଲେ ।

ସାଂସ୍କୃତିକ ଅନୁଷ୍ଠାନ କି ଏଇପରି ମୂଳଦୁଆ ଉପରେ ଗଢ଼ାଯାଏ ?

ଏଇଠାରେ ଗୁଜରାଟୀ ସାହିତ୍ୟ ପରିଷଦର ସମ୍ମିଳନୀ ସଂପର୍କରେ ଏ ବର୍ଷର ବିଷୁବ ମିଳନର ମୁଖ୍ୟ ଅତିଥି ଶ୍ରୀ ଉମାଶଙ୍କର ଯୋଶୀ ଯାହା ମତେ କହିଥିଲେ ତାହା କହି-ରଖେ ।

ଶ୍ରୀଯୁକ୍ତ କେ.ଏମ୍. ମୁନସୀଙ୍କ କର୍ତ୍ତୃତ୍ୱରୁ ଛଡ଼ାଇଆଣି ତରୁଣ ଗୁଜରାଟୀ ସାହିତ୍ୟିକମାନେ ଏକ ନୂତନ ସମ୍ବିଧାନ ଉପରେ ଏହି ପରିଷଦକୁ ଗଢ଼ିଛନ୍ତି । ଜାତିର ନାଡ଼ୀ ସହିତ ସାହିତ୍ୟ ଓ ସାହିତ୍ୟିକକୁ ଘନିଷ୍ଠ ଭାବରେ ସଂପୃକ୍ତ ରଖେଇବା ପାଇଁ ସେମାନେ ଚାନ୍ଦା ରଖିଛନ୍ତି ଦି'ବର୍ଷକୁ ତିନିଟଙ୍କା ମାତ୍ର । ଏଇ ତିନିଟଙ୍କାରେ ସଭ୍ୟମାନେ ପୁଣି ଏକ ଛାପା ମୁଖପତ୍ର ପାଇଥାନ୍ତି । ବାହାରୁ କିଛି ସାହାଯ୍ୟ ମିଳେ ବା ମିଳିବାର ଆଶାଥିଲେ ହେଁ, ସାହିତ୍ୟିକମାନେ ସାହିତ୍ୟକୁ ନିଜର ମହିମାରେ ନିଜ ଶକ୍ତିରେ ଠିଆ କରେଇବାରେ ହିଁ ସଚେଷ୍ଟ । ସେମାନଙ୍କର ସମ୍ମିଳନୀକୁ ସେମାନେ ବିଶିଷ୍ଟ ନିମନ୍ତ୍ରଣ କୌଣସି ମନ୍ତ୍ରୀ ବା କୋଟିପତିକୁ ଦିଅନ୍ତି ନାହିଁ । କିନ୍ତୁ ଯୋଶୀ କହୁଥିଲେ, ସଭା ବସିଲା ବେଳେ ବମ୍ବେ-ଅହମଦାବାଦର କୋଟିପତିମାନେ ଆସି ବସିବାର ଦେଖାଯାନ୍ତି । ଏପର୍ଯ୍ୟନ୍ତ କୋଟିପତିର ଦେଶ ଗୁଜରାଟରେ ଗୁଜରାଟୀ ସାହିତ୍ୟ-ପରିଷଦର ନିଜର ବୋଲି ଖଣ୍ଡିଏ ମଧ୍ୟ ଘର ନାହିଁ । ତା' ତୁଳନାରେ ଆମର

ସୁଦୃଶ୍ୟ ଶ୍ରୀରାମଚନ୍ଦ୍ର ଭବନ ଅଛି । କିନ୍ତୁ ଉତ୍କଳ ସାହିତ୍ୟ ସମାଜ ବୋଇଲେ ଯାହା ବୁଝାଇବାର କଥା ତାହା ଅଛି କି ? କିନ୍ତୁ ସାହିତ୍ୟିକ ଓ ସାଂସ୍କୃତିକ ଅନୁଷ୍ଠାନ ମାତ୍ରେ ଗୁଜରାଟୀ ସାହିତ୍ୟ ପରିଷଦ ପରି ମର୍ଯ୍ୟାଦାବନ୍ତ ଭାବରେ ନିଜ ମହିମାରେ ନିଜେ ଗଠିତ ହେବା ଉଚିତ୍ ନୁହେଁକି ?

ଏ ବର୍ଷର ବିଷୁବମିଳନର ଆଲୋଚନାର ବିଷୟ ଥିଲା ''ଆଧୁନିକ ଓଡ଼ିଆ ଭାଷା ଓ ସାହିତ୍ୟର ସମସ୍ୟା ।'' ଆଲୋଚନା ଉଦ୍‌ଘାଟନ କରିଥିଲେ ଅଧ୍ୟାପକ ଗୋଲକବିହାରୀ ଧଳ ।

ବିଷୟଟି ଉତ୍ତମ । କିନ୍ତୁ ଏହା କି ଗୋଟିଏ ବାର୍ଷିକୋତ୍ସବର ମଜଲିସ୍ ମଣ୍ଡପରେ ଆଲୋଚନା ହେବାର କଥା ? କି ବ୍ୟାପକ ଏ ବିଷୟ । ଜଗତରେ ଏପରି କି ଜ୍ଞାନ, କି ବିଚାର ଅଛି, ଯାହାକି ଏଇ ହେଡ଼ିଂ ତଳେ ଆଲୋଚିତ ନ ହୋଇପାରିବ ? ଯଥେଷ୍ଟ ସମୟ ବା ସେଥିପାଇଁ କାହିଁ ? ଯଦିବା ସମୟ ମିଳିଲା, ବିଷୁବମିଳନରେ ତା'ର ଆଲୋଚନା କରି, ଫଳ ବା କ'ଣ ? ଆଲୋଚିତ ସମସ୍ୟାଗୁଡ଼ିକର ସମାଧାନର ରାସ୍ତା ପ୍ରଜାତନ୍ତ୍ରର ସ୍ତମ୍ଭ ଦେଇ ଫିଟିଯିବାର ଆଶା କରିବା କି ?

ପରନ୍ତୁ, ପ୍ରସ୍ତାବକ ଯଦି କେବଳ ଆଲୋଚନାର ବୌଦ୍ଧିକ ଆନନ୍ଦହିଁ ଚାହୁଥିଲେ, ତେବେ ସେ, ଆଲୋଚନାର ଶେଷ ପର୍ଯ୍ୟନ୍ତ ନରହିଲେ କାହିଁକି ? ସେ ତାଙ୍କ ଭାଷଣଟି ଦେଇ ଉଭେଇଗଲେ, ଆଲୋଚନାକୁ ଅପେକ୍ଷା ନକରି । ଯଦିବା ସେ ତାଙ୍କ ଆଲୋଚନାର ନିର୍ଦ୍ଦିଷ୍ଟ ପ୍ରତିକ୍ରିୟା ଚାହୁଥିଲେ, ତେବେ ସେ ତାଙ୍କର ପ୍ରସ୍ତାବ-ଗୁଡ଼ିକୁ ଓ ବିଚାରଗୁଡ଼ିକୁ ଏକ ନର୍ଦ୍ଦିଷ୍ଟ, ଲିପିବଦ୍ଧ ଆକାରରେ ଉପସ୍ଥାପିତ କରିବା ଉଚିତ ନଥିଲା କି ? ଏଥରର ମୁଖ୍ୟ ଅତିଥି ଉମାଶଙ୍କର ଯୋଶୀଙ୍କର ଭାଷଣଟି ସମସ୍ତଙ୍କର ସନ୍ତୋଷଜନକ ହେବାର ମୁଖ୍ୟ କାରଣ ଏଇ ଯେ ତାହା ସୁନ୍ଦର, ସଜ୍ଜିତ ଭାବରେ ଲେଖାହୋଇଥିଲା । ପୂର୍ବେ ଉତ୍କଳ ସାହିତ୍ୟ ସମାଜର ସଭାପତି ଭାଷଣ ଏହିପରି ଲିଖିତ ଆକାରରେ ପରିବେଷିତ ହେଉଥିଲା । ସବୁ ସାହିତ୍ୟ ସମ୍ମିଳନୀରେ ସେୟା ହିଁ ହୁଏ । ସାହିତ୍ୟ ସଭାରେ ଗୁଡ଼ାଏ ଏଣୁ ତେଣୁ ଅନିର୍ଦ୍ଦିଷ୍ଟ ଭାବରେ ବୋଲି ଯିବା ସୁସ୍ଥ ପରମ୍ପରା ଓ ଅଭ୍ୟାସ ନୁହେଁ । ସାହିତ୍ୟ ସଭାକୁ ଦେଖଣାହାରି ଓ ଶ୍ରବଣାହାରିଙ୍କୁ ଟାଣିବା ପାଇଁ ଗୋଟିପୋ-ପାଲା-ଦାସକାଠିଆ ଠିଆକରେଇବା ପରି, ଏପ୍ରକାର ବାଚାଳ ଆଲୋଚନା ମଧ୍ୟ ଏକାନ୍ତ ହେୟ । ଏପରି କ୍ଷେତ୍ରରେ ଘୋର ଅନିଚ୍ଛା ସତ୍ତ୍ୱେ ଧରି ଆଣି ବସେଇଦେଇଥିବା ବିଚାରା ସଭାପତିର ଅବସ୍ଥା ହିଁ ବିଶେଷ ଭାବରେ ସଂକଟଜନକ । କାରଣ ପ୍ରସ୍ତାବ ଯଦି ଅଲିଖିତ, ଅନିର୍ଦ୍ଦିଷ୍ଟ ଓ ଅସଂପୂର୍ଣ୍ଣ, ତା'ଉପରେ ଆଲୋଚନା ଚାଲିବ କେଉଁ ରାସ୍ତାରେ ? ପୁଣି ପ୍ରସ୍ତାବ

ଏପରି ବ୍ୟାପକ ଯେ, ଆଲୋଚକମାନେ କି କଥା ବା ନକହିପାରନ୍ତି ? ଯଦି ପ୍ରତ୍ୟେକ ବକ୍ତା ଯେଝା ଲାଇନ୍‌ରେ କହି ଚାଲିଲେ, ତେବେ ଉଦ୍‌ଘାଟକଙ୍କର ଭାଷଣର ମୂଲ୍ୟ କ'ଣ, ଏଣେ ବିଚାରା ସଭାପତି ତା' ଶେଷ ଭାଷଣରେ କ'ଣ ବା କହି ମୁଣ୍ଡିମାରିବ ?

ଏଥର ବିଷୁବ ମିଳନର ଆଲୋଚନାରେ କିଛି ଅପ୍ରୀତିକର ଯଦି ଘଟିଥାଏ, ତେବେ ସଂପୃକ୍ତ ବଂଧୁଗଣ ସଭାପତିର ଏହି ଅନୈର୍ଷ୍ୟ (ଅନ୍‌ଏନ୍‌ଭିଏବଲ୍) ଦାୟିତ୍ୱକୁ ସହାନୁଭୂତିର ସହିତ ଦେଖିବାକୁ ଚେଷ୍ଟା କରିବେ ବୋଲି ଅନୁରୋଧ କରେଁ ।

ଯାହାହେଉ, ଉଦ୍‌ଘାଟକଙ୍କର ପ୍ରସ୍ତାବନା ଯେପରି ହୋଇଥାଉନା କାହିଁକି, ଆଲୋଚନା ବେଶ୍ ସରଗରମ ହେଲା । ଅବଶ୍ୟ ଅବ୍ୟକ୍ତ ତୁଳନାରେ ବ୍ୟକ୍ତର ପରିମାଣ ଅତି କମ୍ । କିନ୍ତୁ କ'ଣ କରାଯିବ ? ସକଳ ଅବ୍ୟକ୍ତକୁ ବ୍ୟକ୍ତ କରିବା ପାଇଁ ସମୟ ଆସିବ କୁଆଡୁ ? କଲେ ବା ଧୈର୍ଯ୍ୟ କାହାର ଅଛି ଶୁଣିବାକୁ ? ସବୁକଥା ବିଚାର କରିବାକୁ ହେବ । କିନ୍ତୁ ଦେଖାଗଲା ଯେ ଶ୍ରୀଯୁକ୍ତ ଧଳଙ୍କ ଭାଷଣ ଉପରେ ଯାହାସବୁ ଆଲୋଚନା ହେଲା, ଭାବଧାରା ଅନୁଯାୟୀ ସେ ସମସ୍ତକୁ ନିମ୍ନଲିଖିତ ରୀତିରେ ଶ୍ରେଣୀବିଭାଗ କରାଯାଇପାରେ । ଯଥା – ଭାଷାତାତ୍ତ୍ୱିକ, ଗାଠନିକ, ମାନବିକ, ସୃଜନିକ ।

ପ୍ରତ୍ୟେକଟି ଉପରେ ଆଲୋଚନାର ସଂକେତ ଓ ମୋର ସାମାନ୍ୟ ମତାମତ ଏଠାରେ ଚୁମ୍ବକରେ ଲିପିବଦ୍ଧ କରିଯାଉଛି । ହୁଏତ ଏହା ଭବିଷ୍ୟତରେ କାମ ଦେବ ।

**ଭାଷାତାତ୍ତ୍ୱିକ–**

ଯଦିଓ ବିଷୟଟି 'ଓଡ଼ିଆଭାଷା ଓ ସାହିତ୍ୟର ସମସ୍ୟା' ଭାଷାତାତ୍ତ୍ୱିକ ଶ୍ରୀ ଧଳଙ୍କ ଉଦ୍‌ଘାଟନିକ ଭାଷଣ ବସ୍ତୁତଃ କେବଳ ଭାଷାତତ୍ତ୍ୱକୁ କେନ୍ଦ୍ର କରିହିଁ ଗଢ଼ିଉଠିଥିଲା । ଧଳେ ସାହିତ୍ୟକୁ ଆଦୌ ସ୍ପର୍ଶ ନକରି କେବଳ ତାଙ୍କର ନିଜ ଜ୍ଞାନକ୍ଷେତ୍ର ଭାଷାତତ୍ତ୍ୱ ଉପରେ ପୂରା ଭାଷଣ ଦେବା ଅନେକେ ପସନ୍ଦ କଲେ ନାହିଁ – ନକରିବାର କଥା । ସେ କହିଲେ ଯେ, ସେ ଚାହୁଁଛନ୍ତି ଲିଙ୍ଗୁଇଷ୍ଟିକ୍ ସର୍ଭେ, ଗୋଟାଏ କଥାକୁ ଭିନ୍ନ ଭିନ୍ନ ଅଞ୍ଚଳରେ ଲୋକେ କିପରି ଭିନ୍ନ ଭିନ୍ନ ରୀତିରେ କହନ୍ତି । ଲୋକମୁଖରେ, ଇଂରାଜିର୍ ଅନୁକରଣରେ ନୂତନ ନୂତନ ଇଡ଼ିୟମ୍ ଓ ଫ୍ରେଜେଜ୍ କିପରି ପ୍ରତ୍ୟହ ସୃଷ୍ଟି ହୋଇ ଚାଲିଛି । ବିଦେଶୀ ଜଣେ ଏ ଭାଷାକୁ ଶିଖିବାକୁ ଚାହିଁଲେ ଧଳଂକ ଭାଷଣରେ ଯେତେ ନୁହେଁ, ପରବର୍ତ୍ତୀ ବକ୍ତାମାନଙ୍କ ଭାଷଣରେ (ଡକ୍ଟର ମହତାବ, ଶ୍ରୀଯୁକ୍ତ ଗଡ଼ନାୟକ, ଶ୍ରୀଚକ୍ରଧର ମହାପାତ୍ର ପ୍ରଭୃତିଙ୍କ) ଆଲୋଚନା ବେଶ୍ ଉଚ୍ଚସ୍ତରକୁ ଉଠିଥିଲା । କିନ୍ତୁ ମୂଳ ସମସ୍ୟା ଏଇ ହେଲା ଯେ, ହାଟ ଭିତରେ ବ୍ରହ୍ମଜ୍ଞାନ ଭଳି, ସେ ପ୍ରକାର ତାତ୍ତ୍ୱିକ ଆଲୋଚନା ଅସ୍ଥାନ ଓ ଅବେଳରେ ପଡ଼ି ତା'ର ମର୍ଯ୍ୟାଦା ହରାଉଥିଲା । ସଭାର

ସମ୍ମୁଖରେ ଯାତ୍ରା ଓ ପାଲାର ଆୟୋଜନ, ଏକ ପାର୍ଶ୍ୱରେ ସାହିତ୍ୟର ଧାର ମାଡୁନଥିବା ପୁରୁଷମାନଙ୍କର ମେଳା ଓ ଗଣ୍ଡଗୋଳ, ତେଣେ ପଶ୍ଚାତ୍ ଓ ଆରେକ ପାର୍ଶ୍ୱରେ କିଛି ଶୁଣୁନଥିବା ବୁଝୁନଥିବା ଓ ଯାତ୍ରା କେବେ ଆରମ୍ଭହେବ ବୋଲି ଚାହିଁରହିଥିବା କେତେକ ମହିଳା ଓ ତାଙ୍କର ପିଲାପିଚିକାଂକ ଚିତ୍କାର ଭିତରେ ସାହିତ୍ୟାଲୋଚନା କେବଳ ସମ୍ଭବହୋଇପାରେ ବୋଧହୁଏ ଓଡ଼ିଶା ଦେଶରେ ଓ ପ୍ରଜାତନ୍ତ୍ର ପ୍ରାଂଗଣରେ – ଅନ୍ୟ କେଉଁଠି ଏପରି ପରିସ୍ଥିତି କଳ୍ପନା ବି କରାଯାଇ-ନପାରେ । ଜମିଦାରିଆ ଓ ବା ଦରବାରିଆ ପରିବେଶ ଓ ବୁଦ୍ଧିଜୀବୀମାନଙ୍କର ମେଳଣ ଓ ଆଲୋଚନା, ଦୁଇଟା ଯେ ଏକକଥା ନୁହେଁ, ଓଡ଼ିଶାରେ ଯେଉଁମାନେ ସାହିତ୍ୟ ସମ୍ମେଳନ ଇତ୍ୟାଦିର ସାଡମ୍ବର ଆୟୋଜନ କରିଥାନ୍ତି, ତାହା ସେମାନଙ୍କର ମନେରଖିବା ଉଚିତ ।

ସେ ଯାହାହେଉ, ଧଳଂକ ଭାଷାତାତ୍ତ୍ୱିକ ଆଲୋଚନାରେ, ଆଂଚଳିକ ଲୋକ-ଭାଷା ମାନଙ୍କରୁ ମନୋଜ୍ଞ ଭାବରେ ସୂକ୍ଷ୍ମଭାବ ପ୍ରକାଶକ ଦେଶଜ ଶବ୍ଦାବଳିର ସଂଗ୍ରହ (ଯଥା–ଶ୍ରୀ ମହତାବ ଦେଇଥିବା ସୁନ୍ଦର ଉଦାହରଣ, ପୁରୀରେ କଥିତ– 'ଚାହାଣୀ ମଣ୍ଡପ') ଓ ଲେଖକମାନଙ୍କର ସେସବୁ ଆସ୍ତେ ଆସ୍ତେ ନିଜ ନିଜ ରଚନାରେ ଷ୍ଟାଣ୍ଡାର୍ଡ଼ ଓଡ଼ିଆ ଭିତରେ ପ୍ରବର୍ତ୍ତନ ପାଇଁ ଯେଉଁ ଆବେଦନ ଦେଖା-ଦେଇଥିଲା, ତାହା ସର୍ବତୋଭାବରେ ଅନୁମୋଦନୀୟ ଓ ଗ୍ରହଣୀୟ ।

ଏ ହେଲା ଓଡ଼ିଆ ଭାଷାର ସମଗ୍ରତାର ପରିପ୍ରେକ୍ଷିତରେ ଏକ ଉଦାର ଓ ପ୍ରଗତିଶୀଳ ମନୋଭାବର ପରିଚୟ । କିନ୍ତୁ ସେହି ଆଲୋଚନା ଭିତରେ ଭାଷାତାତ୍ତ୍ୱିକ ଅନୁଶୀଳନ ନାମରେ ଆଉ ଏକ ଭାଷଣ-ଭଂଗି କିଂଚିତ୍ ସଂଯମ ଦର୍କାର କରେ ବୋଲି ମନେହୁଏ । ସଭାପତି ଅଭିଭାଷଣରେ ଲେଖକ ଏଇ ଅସ୍ପୃହଣୀୟ ଭଂଗି ଉପରେ ହିଁ ଜୋର ଦେଇ ତା'ର ମତ ପ୍ରକାଶ କରିଥିଲା – ତାହାହିଁ ଏଠାରେ କହିରଖେଁ । କିପରି ତାକୁ ଶିଖାଇବାକୁ ହେବ, ପୁଣି ଆମେ ଅନ୍ୟ ଭାଷା ତୁଳନାରେ ଆମ ଭାଷା କି ଅବସ୍ଥାରେ ଅଛି ତାହା କେଉଁ କେଉଁ ଭାବରେ ଚିନ୍ତା କରିବାକୁ ହେବ ଇତ୍ୟାଦି କଥା । ବାହ୍ୟ ଓ ଆନ୍ତର ଦୃଷ୍ଟିରୁ ସେ ତାଙ୍କ ଆଲୋଚନାକୁ ଏଇପରି ଭାବରେ ଦୁଇଭାଗ କରି ବ୍ୟାଖ୍ୟାନ କରିଥିଲେ ।

ଧଳଙ୍କର ପ୍ରସ୍ତାବ ସବୁ ଉତ୍ତମ – ବିରୋଧ କରିବାର କିଛି ନାହିଁ । ପ୍ରକୃତିରେ ଅନୁପାତ ଓ ସାମଞ୍ଜସ୍ୟହିଁ ପରମ ସାଧାରଣ ଅଥଚ ପରମ ବିସ୍ମୟକର ତତ୍ତ୍ୱ । ଆମର ଏଇ ଶରୀର, ଅବୟବମାନଙ୍କର ସାହଚର୍ଯ୍ୟରେ ଏପରି କୁଶଳୀ ରୀତିରେ କାମ କରି ଚାଲିଛି ଯେ, ତାହା ଆମେ ଅନୁଭବ ହିଁ କରିପାରୁନା । ଅବୟବଗୁଡ଼ିକ ନିଜ ନିଜ ସୀମା ଓ ଅନୁପାତରେ ରହିଛନ୍ତି ବୋଲି ସିନା ଶରୀରର ସାମଗ୍ରିକ ସୌନ୍ଦର୍ଯ୍ୟ ? ଧର

ସେଥିରୁ ଗୋଟାଏ– ମୁଣ୍ଡ ବା ଗୋଡ଼ ବା ହାତ ତା'ର ସୀମା ଓ ଅନୁପାତ ଡେଇଁ ଯଦି ମୋଟା ବା କ୍ଷୀଣ ହେବାକୁ ଆରମ୍ଭ କରିବ, ତେବେ ସମଗ୍ର ଶରୀରର ଅବସ୍ଥା କ'ଣ ହେବ ? ପୁଣି ପ୍ରତ୍ୟେକ ଚିନ୍ତା ବା ଆଲୋଚନା ସମଗ୍ରତାରୁ ବିଚ୍ଛିନ୍ନ ହେଲେ, ସମଗ୍ର ଉପରେ ତାହା କି ବିଷକ୍ରିୟା ପ୍ରବର୍ତ୍ତନ କରିବ ତାହା ମଧ୍ୟ ଆଲୋଚକମାନେ ଦେଖିବା ଉଚିତ । ଭାଷାତତ୍ତ୍ୱର ଦୁହାଇ ଦେଇ ଆମେ ଯଦି ଢେଙ୍କାନାଳକୁ କଟକରୁ ଅଲଗା, ପୁରୀକୁ ବଲାଙ୍ଗିରରୁ ଅଲଗା, ଗଞ୍ଜାମକୁ ବାଲେଶ୍ୱରରୁ ଅଲଗା ବୋଲି ପ୍ରମାଣିତ କରିବାର ଚେଷ୍ଟାକରୁଁ ତେବେ ଏହାର ଶେଷ ପରିଣତି କ'ଣ ତାହା ଦେଖିବା ଉଚିତ ନୁହେଁକି ? ଏପରି ବିଚାରଧାରା ପ୍ରକୃତରେ କେତେ ପରିମାଣ ସତ୍ୟ ଉପରେ ପ୍ରତିଷ୍ଠିତ ତାହା ବିଚାର କରାଯାଉଛି କି ? ଇଂଲଣ୍ଡରେ ମଧ୍ୟ ପ୍ରତି ଦଶ ମାଇଲ୍‌ରେ କଥିତ ଭାଷାର ରୂପ ବଦଳେ । ଛୋଟ ଏକ ଦ୍ୱୀପ-ରାଜ୍ୟ ଗ୍ରେଟ୍-ବ୍ରିଟେନ୍ । ସେଥିରେ ଇଂଲିଶ୍, ସ୍କଚ୍, ଆଇରିଶ୍, ୱେଲସ୍, ମାଁକସ୍ ଇତ୍ୟାଦି କେତେ ଯେ ପ୍ରଧାନ ଅପ୍ରଧାନ ଭାଷା ଖୁନ୍ଦି ହୋଇ ରହିଛନ୍ତି, ଜାଣିଲେ ବିସ୍ମିତ ହେବାକୁ ହୁଏ । ସେଥିରୁ ୱେଲ୍‌ସ୍ ଭାଷା ଏବେବି ଜୀବନ୍ତ । ଏବେବି ସେଥିରେ କାବ୍ୟ-କବିତା ଲେଖାଯାଉଛି । କିନ୍ତୁ ଏ ଯୁଗର ଦୁଇ ଶ୍ରେଷ୍ଠ ୱେଲସ୍‌ମାନ ସ୍ୱର୍ଗତ ଲଏଡ୍ ଜର୍ଜ ଓ ଆନୁଏରିନ୍ ବେଭାନ୍, ସମଗ୍ର ବ୍ରିଟୀଶ୍ ପାର୍ଲାମେଣ୍ଟକୁ ଯେଉଁ ଅଗ୍ନିମୟ ବାଗ୍ମିତାରେ ସ୍ତମ୍ଭିତ କରି ରଖୁଥିଲେ, ତାହା କ'ଣ ୱେଲ୍‌ସ୍ ନା ଷ୍ଟାଣ୍ଡାର୍ଡ଼ ଇଂଲିଶ୍ ମାଧ୍ୟମରେ ? ସ୍କଚ୍ ଡାଏଲେକ୍ଟରେ ରବଟ୍ ବର୍ଣ୍ଣସ୍ ପ୍ରାଣସ୍ପର୍ଶୀ ଅମର କବିତା ଲେଖିଯାଇଛନ୍ତି । କିନ୍ତୁ ସ୍କଚ୍ ଜାତିର ମୁଖପତ୍ର ପ୍ରସିଦ୍ଧ 'ସ୍କଟସ୍‌ମ୍ୟାନ' କାଗଜ ସେହି ସ୍କଚ୍ ଡାଏଲେକ୍ଟ ଦେଇ ନିଜକୁ ପ୍ରଚାର କରେକି ? ଜାତୀୟତା ଓ ଇଂରେଜି-ବିଦ୍ୱେଷରେ ଉଦ୍‌ବୁଦ୍ଧ ହୋଇ ଆଇରିଶ୍ ଜାତୀୟତାର ପୁରୋହିତ ବିଶ୍ୱବିଖ୍ୟାତ କବି ଇଏଟ୍‌ସ୍ କେଉଁ ଭାଷାରେ ତାଙ୍କର ଅମର କାବ୍ୟ ସୃଷ୍ଟି କରି ଯାଇଛନ୍ତି ?

ଦେଖିବାର କଥା ଏହି ଯେ, ମନୁଷ୍ୟ-ମନୁଷ୍ୟ ଭିତରେ ସମାନତା ବାହାର କରିବା ହିଁ ପଣ୍ଡିତ ଜନର ଗୁଣ । ପଣ୍ଡିତାଃ ସମଦର୍ଶିନଃ । ଭେଦ ଉପରେ ଜୋର୍ ଦେଲେ, ସ୍ୱାମୀ-ସ୍ତ୍ରୀ ଓ ପିତା-ପୁତ୍ର ଏକାଠି ରହିପାରିବେନି–ଗୋଟାଏ ଜାତି କ'ଣ ? ସ୍ୱାମୀ-ସ୍ତ୍ରୀ, ପିତା-ପୁତ୍ର, ଭାଇଭାଇ ଭିତରେ ଯେ ଦୁରନ୍ତ ବ୍ୟବଧାନ ରହିଥାଏ ଏହା କେହି ଅସ୍ୱୀକାର କରିପାରିବେ ନାହିଁ । କିନ୍ତୁ ଅସାମ୍ୟ ତୁଳନାରେ ସାମ୍ୟ ଏତେ ବେଶୀ ଯେ, ଅସାମ୍ୟକୁ ବଡ଼କରି ଦେଖେଇବାର ଚେଷ୍ଟା ହିଁ ଦୁରଭିସନ୍ଧି ବୋଲି ଧରିବାକୁ ହେବ । ଗତ ଛ'ଶ ବର୍ଷ ଧରି ଉତ୍କଳର କେଉଁ ପଲ୍ଲୀକୋଣମାନଙ୍କରେ ସାରଳା ଦାସ ଓ ଜଗନ୍ନାଥ ଦାସେ ଭାଗବତ ଓ ମହାଭାରତ ଲେଖିଗଲେ ଯେ, ତାହା

ଗୋଦାବରୀରୁ ଗଙ୍ଗାଯାଏ ବ୍ୟାପ୍ତ ସମଗ୍ର ଓଡ଼ିଆ ଜାତି ବୁଝିପାରୁଥିଲା, ଆଉ ଆଜି ଆମେ ଯୋଗ୍ୟ ପୁତ୍ର ସବୁ ବାହାରି ଯଦି କହିବା ଢେଙ୍କାନାଳର ଭାଷା କୋରାପୁଟର ଲୋକେ ବୁଝନ୍ତିନି ଓ କିମିତି ବୁଝିବେ ସେଥିପାଇଁ ବସାଅ ଭାଷାତାତ୍ତ୍ୱିକ ଲାବରେଟେରୀ, ତେବେ ତାହା ବିଜ୍ଞାନ ହୋଇପାରେ, କିନ୍ତୁ ହୁଏତ ଜ୍ଞାନ ହେବନି । ସୁଦୂର ମଧ୍ୟପ୍ରଦେଶର ଛତିଶଗଡ଼ୀ ସାହିତ୍ୟିକ ମୁକୁଟଧାରୀ ପାଣ୍ଡେଙ୍କ ନିକଟରେ ଜଗନ୍ନାଥ ଦାସଙ୍କ ଭାଗବତ ଜୀବନବେଦ ଥିବାର ମୁଁ ନିଜେ ଜାଣେ । ତାଙ୍କ ଭାଇ ଲୋଚନପ୍ରସାଦ ପାଣ୍ଡେଙ୍କର ପ୍ରିୟତମ କବି ହେଉଛନ୍ତି ଗଙ୍ଗାଧର ମେହେର । ଆଉ ଆମେ ପ୍ରଚାର କରିବା ଯେ, ଜଗନ୍ନାଥ ଓ ମେହେରଙ୍କ ଭାଷା ଜନତା ବୁଝିପାରୁନାହାନ୍ତି । ଏ ଭାଷାର ପ୍ରକାଶନ କ୍ଷମତାର ଅଭାବ, ତେଣୁ ଅଣ-ଆଞ୍ଚଳିକ ଭାଷା ପୂରାଅ, ଆଇବୁଢ଼ୀମାନେ କି ଭାଷା କହୁଛନ୍ତି ତାକୁ ବି ପୂରାଅ । କେତେଜଣ ସାଧାରଣ ଶିକ୍ଷିତ ଇଂରେଜ ବି ସେକ୍ସପିୟରଂକ ନାଟକ ବା ସେଲିଙ୍କ କବିତା ବୁଝିପାରିବେ ? ରେଭେନ୍ସା କଲେଜରେ ଜଣେ ଅକ୍ସଫୋର୍ଡ଼ ପାସ୍ ଇଂରାଜି ଅଧ୍ୟାପକ ଆମକୁ ଇଂରାଜି ପଢ଼ାଉଥିଲେ । ସେକ୍ସପିୟରଙ୍କ ନାଟକ ପଢ଼ାଇଲା ବେଳେ, ସେ ବେଳେ ବେଳେ ଇଣ୍ଡିୟାନ ନୋଟ୍ ଲେଖକଙ୍କ ବହି ଖୋଜନ୍ତି, ସେଇ କ୍ଲାସ୍‌ରୁମ୍‌ରେ । ଆମେ ସବୁ ମନେ ମନେ ହସୁଥାଉ । ଖୋଦ୍ ଲଣ୍ଡନର ନାଗରିକ ଯେଉଁ କକ୍‌ନୀ-ଇଂରେଜୀ କହନ୍ତି, ତାହା ଲଣ୍ଡନର ବାହାରୁ ଆସିଥିବା ସାଧାରଣ ପଣ୍ଡିତ ଇଂରେଜ ମଧ୍ୟ ବୁଝିପାରିବେନି । କିନ୍ତୁ ଯାର ଅର୍ଥ ନୁହେଁ ଯେ, ଏଇ ବିଶିଷ୍ଟ ସ୍ଥାନ-ପାତ୍ର-ଭେଦ-ଜନିତ ଅବୋଧ୍ୟତା ଯୋଗୁଁ ଗୋଟିଏ ବହୁଜନବୋଧ୍ୟ ଭାଷାକୁ ଖଣ୍ଡ ଖଣ୍ଡ କରାଯିବା ବା ସେହି ଦୃଷ୍ଟିରେ ଦେଖାଯିବା ଉଚିତ । ଆମର ଭାଷାତାତ୍ତ୍ୱିକମାନେ ବରଂ ମନେରଖିବା ଉଚିତ୍ ଯେ, ବୋଧ୍ୟ-ଅବୋଧ୍ୟର ମିଶ୍ରଣହିଁ ସାହିତ୍ୟିକ ରସ-ଭୋଗର ଏକ ହେତୁ । ଓଡ଼ିଶାର ନିରକ୍ଷର ଜନସାଧାରଣଙ୍କ ଭିତରେ ଅବୋଧ୍ୟଭାଷୀ ଭଂଜଂକର ଅସାଧାରଣ ଜନପ୍ରିୟତାର ଏକ ମୁଖ୍ୟ କାରଣହିଁ ହେଲା ତାଙ୍କର ଅବୋଧ୍ୟତା । ସେହି ଅବୋଧ୍ୟ କବିକୁ ବୋଧ୍ୟ ଓ ଭୋଗ୍ୟ ରୂପେ ପରିବେଷଣ କରିବା ଯୋଗୁଁ ପାଲାବାଲାର ଆଦର ଏବଂ ବୋଧ୍ୟ ଓ ଭୋଗ୍ୟକୁ ନାରୀର ଅବଗୁଣ୍ଠନ ପରି ଆପାତ ଅବୋଧ୍ୟ ଆବରଣ ଭିତରେ କୌଶଳରେ ଲୁଚାଇ ରଖିପାରିଥିବାରୁ, ଭଂଜଂକ ପ୍ରତି ଜନତାର ସମ୍ମାନ । ଗଂଜାମର ବିଶିଷ୍ଟ କଥନଭଂଗୀ, ବା ସମ୍ବଲପୁରର ଆଂଚଳିକ ଲୌକିକ ଭାଷା, କଟକ-ପୁରୀର କଥନଭଂଗୀ ବା ଭାଷାଠାରୁ ଭିନ୍ନ, କିନ୍ତୁ ପୃଥକ୍ ନୁହେଁ । ଆମ ନିକଟରେ ସେମାନଙ୍କର ମାଧୁର୍ଯ୍ୟ ସେହି ଭିନ୍ନତାରେ । ସେହି ମାଧୁର୍ଯ୍ୟରୁ କେତେକାଂଶ ଷ୍ଟାଣ୍ଡାର୍ଡ଼ ଓଡ଼ିଆରେ ରଖାଯାଇପାରେ ତାହା ଗଭୀର ପ୍ରଣିଧାନର

ବିଷୟ । କିନ୍ତୁ ଗଂଜାମ ବା ସମ୍ବଲପୁରର ଆଂଚଳିକ ମାଧୁର୍ଯ୍ୟକୁ ଦେଖାଇ ପୂରା-ଉତ୍କଳର ସାମଗ୍ରିକ ସୌନ୍ଦର୍ଯ୍ୟକୁ ହୀନ ବା ଅପୂର୍ଣ୍ଣ ବୋଲି ପ୍ରଚାର କରିବାକୁ ଯିବା ବା ଏପରି ଭାବରେ ତାହା ବର୍ଣ୍ଣିବା, ଏ ଦେଶରେ ପଣ୍ଡିତ ଲୋକଙ୍କର ଉଚିତ୍ କର୍ମ ହେବ କି ? ତେଣୁ, ଆମର ସୁପଣ୍ଡିତ ଭାଷାତାତ୍ତ୍ୱିକମାନଙ୍କୁ ଅନୁରୋଧ ଯେ, ଭାଷାତତ୍ତ୍ୱର ଗଭୀର ଓ ବ୍ୟାପକ ଅନୁଶୀଳନ ହେଉ, ଲିଂଗ୍ୟୁଷ୍ଟିକ୍ ସର୍ଭେ ହେଉ, ଧ୍ୱନିବିଜ୍ଞାନ ବୈଜ୍ଞାନିକ ଭାବରେ ପ୍ରତି ସ୍କୁଲ-କଲେଜ୍‌ରେ ଚର୍ଚ୍ଚିତ ହେଉ, କିନ୍ତୁ ସାମାନ୍ୟ ସାମାନ୍ୟ ସ୍ୱାଭାବିକ ଭିନ୍ନତା ବା ଅବୋଧ୍ୟତା ଉପରେ ଜୋର୍‌ଦେଇ ଦୁଇକୋଟି ଲୋକଙ୍କର ଏକ ଷ୍ଟାଣ୍ଡାର୍ଡ଼ ଭାଷାର ସମଗ୍ରତା ଉପରେ କାଳ୍ପନିକ ପ୍ରାଚୀର ସବୁ ଠିଆକରେଇବାକୁ ଚେଷ୍ଟା ସେମାନେ ନକରନ୍ତୁ । ଦୁଇକୋଟି ସଂଖ୍ୟକ ଓଡ଼ିଆ ଜାତି ଦେଶର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଯାଏଁ ଶତ ଶତ ବର୍ଷ ଧରି ଚଷା ଶାରଳା ଦାସର ଭାଷା, ବିଶୁଦ୍ଧ ବ୍ରାହ୍ମଣ ପଣ୍ଡିତ ଜଗନ୍ନାଥ ଦାସର ଭାଷା, ପୁଣି ପଣ୍ଡିତ-ଅଭିଜାତ ଉପେନ୍ଦ୍ରର ଭାଷା ବୁଝି ଆସୁଥିଲେ, କିନ୍ତୁ ଆଜି ଭାଷାତତ୍ତ୍ୱ ଅନୁଶୀଳନ ନାମରେ ଆମେ କେବଳ ଅନୈକ୍ୟ ଓ ବୈଷମ୍ୟର ପ୍ରଚାର କରିବସିବା ? ସାହିତ୍ୟର ସବୁ ଲୋକେ ସବୁକଥା ବୁଝିବାର କୌଣସିଠାରେ ଦେଖାଯାଏନାହିଁ । ଭାଷାବିଜ୍ଞାନର ଆଲୋଚନା ହେଉ । କିନ୍ତୁ ତା'ର ଅର୍ଥ ହେବା ଉଚିତ ନୁହେଁ ଯେ, କ୍ଷୁଦ୍ର କ୍ଷୁଦ୍ର ଅଞ୍ଚଳର ବ୍ୟକ୍ତିତ୍ୱର ଦ୍ୱାହି ଦେଇ, ଓଡ଼ିଆ ଜାତିର ସାମଗ୍ରିକ ବ୍ୟକ୍ତିତ୍ୱର ହତ୍ୟାର ବ୍ୟବସ୍ଥା କରିବା । ପ୍ରତ୍ୟେକ କଥାର ସୀମା-ଓ-ଅନୁପାତ-ବୋଧ ଏକାନ୍ତ ଉଚିତ ।

ଏହି ସଂପର୍କିତ ଆଲୋଚନା ବେଳେ ନିଜନିଜର ଦୁଇ ପ୍ରକାର ଅଭିଜ୍ଞତା ବର୍ଣ୍ଣନା କରି, ଦୁଇଜଣ ଅଧ୍ୟାପକ ଆଞ୍ଚଳିକ ମନୋଭାବର ମୂଳ ଉପରେ ଉତ୍ତମ ରୂପେ କୁଠାରାଘାତ ମଧ୍ୟ କଲେ । ଅଧ୍ୟାପକ ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା କହିଲେ ଯେ, 'ମାଟିର ମଣିଷ'କୁ ପଢ଼ାଇବାକୁ ଯାଇ, ବଲାଙ୍ଗିରରେ ତାଙ୍କୁ ଦୁଇବର୍ଷକାଳ ଶବ୍ଦାର୍ଥ ସଂଗ୍ରହ କରିବାକୁ ପଡ଼ିଥିଲା । ଅଧ୍ୟାପକ ରାଜକିଶୋର ରାୟ କହିଲେ, ସେ କୋରାପୁଟ, ସମ୍ବଲପୁର, ସୁଂଦରଗଡ଼, ବାଲେଶ୍ୱର ସବୁ ଅଞ୍ଚଳରୁ ପରୀକ୍ଷା ଖାତା ପାଆନ୍ତି ଓ ଦେଖନ୍ତି ଯେ ସବୁ ଅଞ୍ଚଳର ପିଲେ ଆମର ପରିଚିତ ଷ୍ଟାଣ୍ଡାର୍ଡ଼ ଓଡ଼ିଆରେ ଲେଖୁଛନ୍ତି । ତେଣୁ ଆଂଶିକ ଓ ଆଂଚଳିକ ଭିନ୍ନତା ଉପରେ ବାରମ୍ବାର ଅଙ୍ଗୁଳି ନ୍ୟସ୍ତ କରିବାର ବା ତା'ର ଗୌରବ ଗାଇବାର କି ଫାଇଦା ?

**ଗାଠନିକ—**

ଭାଷାତାତ୍ତ୍ୱିକ ଆଲୋଚନା ବେଳେ ଅନେକ ବକ୍ତା ଏପ୍ରକାର କାମ ବା ଆଲୋଚନା ବ୍ୟକ୍ତିବିଶେଷର ନୁହେଁ, ଏଥିପାଇଁ ସ୍ୱତନ୍ତ୍ର ଅନୁଷ୍ଠାନ ସ୍ଥାପନର ଆବଶ୍ୟକତା

କଥା ବାରମ୍ବାର କହିଲେ । କିନ୍ତୁ ସେମାନେ ବାରମ୍ବାର କାହିଁକି ଏପରି କହିଲେ ? ଓଡ଼ିଶାରେ ଐତିହାସିକ ଉତ୍କଳ-ସାହିତ୍ୟ ସମାଜ ତ ଠିଆହୋଇଛି, ପୁଣି ରଦ୍ଧିମନ୍ତ ସରକାରୀ ଓଡ଼ିଶା ସାହିତ୍ୟ ଆକାଡ଼େମୀ ତ ଠିଆହୋଇଛି, ଉତ୍କଳ ବିଶ୍ୱବିଦ୍ୟାଳୟ ତ ଅଛି – ଆଉ କେତେ ଅନୁଷ୍ଠାନ ଦରକାର ଓଡ଼ିଆ ଭାଷାର କ୍ଷିପ୍ର ଉନ୍ନତି ପାଇଁ ? ସରକାରୀ ଅର୍ଥରେ ପରିପୁଷ୍ଟ ଓଡ଼ିଶା ସାହିତ୍ୟ ଆକାଡ଼େମୀ ହିଁ ଆଲୋଚନାର ବିଶେଷ ଶରବ୍ୟ ହୋଇଥିଲା । ଅତ୍ୟନ୍ତ ପରିତାପର କଥା ଯେ ସେଥି ଉପରେ ଡକ୍ଟର ମହତାବ ବାଦାନୁବାଦ ମଧ୍ୟ ଆରମ୍ଭ କରିଦେଲେ । କିନ୍ତୁ ତାହାହିଁ ଏ ଅନୁଷ୍ଠାନର ସ୍ୱକୀୟ ଦୁର୍ବଳତା ପ୍ରମାଣିତ କରୁଛି । ଭୀରୁ, ନାରୀ ଓ ଶିଶୁହିଁ ଅନ୍ୟଠାରୁ ରକ୍ଷା ଆବଶ୍ୟକ କରିଥାନ୍ତି । ବୀର ଓ କର୍ମଠ ପୁରୁଷ ବା ଅନୁଷ୍ଠାନ ନିକଟରେ ସେ ପ୍ରଶ୍ନ ଉଠିବ ନାହିଁ । ଓଡ଼ିଶା ସାହିତ୍ୟ ଆକାଡ଼େମୀକୁ ଯେତିକି ସୁସ୍ଥ, ମୁକ୍ତ ଆଲୋଚନାର ବାହାରେ ରଖାଯିବ, ତାହା ଯେ ଜାତି ପକ୍ଷରେ ସେତିକି କ୍ରମଶଃ ଅକାମୀ ହେବ ଏହା ତା'ର କର୍ଣ୍ଣଧାରଗଣ ମନେରଖିବା ଉଚିତ । ଆମେ ଜହରଲାଲ୍ ନେହୁରୁ ଅନୁପସ୍ଥିତ ଥିଲେହେଁ ତାଙ୍କୁ ସମାଲୋଚନା କରୁଛୁ, ବିଶ୍ୱବିଦ୍ୟାଳୟ ବିରୁଦ୍ଧରେ ଦେଶମୟ ଆଲୋଚନା ଚାଲିଛି, ଅଥଚ ସାହିତ୍ୟ ଆକାଡ଼େମୀର ସମ୍ପାଦକ ନଥିଲେ ଓଡ଼ିଆଭାଷାର ଏକ ସ୍ୱାଧୀନ, ସାଧାରଣ ସାହିତ୍ୟିକ ଆଲୋଚନାରେ ସାହିତ୍ୟ-ଆକାଡ଼େମୀ ସମ୍ପର୍କିତ ଆଲୋଚନା କିପରି ଅବାନ୍ତର ହୋଇଯିବ ବୁଝିହେଉନି । କିନ୍ତୁ ଏହି ଯୁକ୍ତିରେ ହିଁ ଡକ୍ଟର ମହତାବ ଓଡ଼ିଶା ସାହିତ୍ୟ ଆକାଡେମୀ ସଂପର୍କିତ ସକଳ ଆଲୋଚନାକୁ ଅବାନ୍ତର କହି ବନ୍ଦକରିବାକୁ ଚେଷ୍ଟା କରିଥିଲେ । ଇଂରାଜିରେ ସାହିତ୍ୟର ଅନ୍ୟ ନାମ ରିପବ୍ଲିକ୍ ଅବ୍ ଲେଟରଜ୍ । ସ୍ୱାଧୀନତାହିଁ ସାହିତ୍ୟର ପ୍ରାଣ । ଏ ସ୍ୱାଧୀନତାକୁ ଅସ୍ୱାଭାବିକ ଅର୍ଗଳ ଦେଇ ବାନ୍ଧିବାରେ କାହାରି ବ୍ୟକ୍ତିଗତ କ୍ଷଣିକ ମଙ୍ଗଳ ଥାଇପାରେ, କିନ୍ତୁ ଏହା ନିଶ୍ଚିତ ଯେ ସେଥିରେ ସାହିତ୍ୟର ମଙ୍ଗଳ ନାହିଁ । ଲେଖକ ଓ ବୁଦ୍ଧିଜୀବୀମାନଙ୍କୁ ଆଲୋଚନା ପାଇଁ ନିମନ୍ତ୍ରଣ କରି ଡାକିଆଣି ସେମାନଙ୍କ ସ୍ୱାଧୀନ ଆଲୋଚନାରେ ବାଧାଦେବା, ସାମାଜିକତା ଦୃଷ୍ଟିରୁ ମଧ୍ୟ କାମ୍ୟ କି ନା ବିଚାରର କଥା । ଶାସକସତ୍ତମ ରାମଚନ୍ଦ୍ର ଜନମତକୁ ସମ୍ମାନ ଦେଇ ପ୍ରାଣପ୍ରିୟା ପତ୍ନୀକୁ ନିର୍ବାସିତ କରିଥିଲେ । ତାହା କରିବା ଦ୍ୱାରାହିଁ କେବଳ, ଉଭୟେ ରାମ ଓ ସୀତା ଆଜି କୋଟିମାନସର ଦେବ ଓ ଦେବୀ ନୁହନ୍ତି କି ? କିନ୍ତୁ ଏବର ଶାସକର, ଗୋଟିଏ ସାମାନ୍ୟ ଅନୁଷ୍ଠାନର ସତ୍ୟକୁ ପ୍ରତିଷ୍ଠାପିତ କରିବାପାଇଁ ଇଏ କି ଅତାତ୍ତ୍ୱିକ ପନ୍ଥା ଅବଲମ୍ବନ ? ଏପରି କରିବା ଦ୍ୱାରା ଉଭୟେ ଶାସକ ଓ ଅନୁଷ୍ଠାନ ଭବିଷ୍ୟତ ଜାତି ଆଖିରେ କିପରି ଦିଶିବେ, ସେତକ ବିଚାରକୁ ନିଆଯାଉ ।

ସେ ଯାହାହେଉ, ଓଡ଼ିଶାରେ ଉତ୍କଳ-ସାହିତ୍ୟ ସମାଜ ହେଲା ବା ଓଡ଼ିଶା ସାହିତ୍ୟ ଏକାଡ଼େମୀ ହେଲା, ଏପରିକି ବିଶ୍ୱବିଦ୍ୟାଳୟ ହେଲା, କୌଣସି ଅନୁଷ୍ଠାନ ସ୍ୱକୀୟ ପରମ୍ପରା, ତପସ୍ୟା ବା ସାଧନାରେ ମର୍ଯ୍ୟାଦାବନ୍ତ ଭାବରେ ଦେଶ ଆଗରେ ଆଜି ଠିଆ ନୁହନ୍ତି । ପ୍ରତିବେଶୀ ବଙ୍ଗ ସାହିତ୍ୟ-ପରିଷଦର ମହିମା ଓଡ଼ିଶାର ପଣ୍ଡିତମାନେ ସ୍ମରଣ କରନ୍ତୁ । କଲିକତା ବିଶ୍ୱବିଦ୍ୟାଳୟରେ ସର୍ ଆଶୁତୋଷ ମୁଖର୍ଜୀ ଯେଉଁ ପରମ୍ପରା ଛାଡ଼ିଗଲେ ତାହା ସ୍ମରଣ କରାଯାଉ । ଏସବୁ ଜ୍ଞାନ-ବିଦ୍ୟାୟତନ ମାନଙ୍କରେ ଅର୍ଥର ବା ନିୟମ କାନୁନ୍‌ର କାଇଦା-ଦୋରସ୍ତ ଦୈନନ୍ଦିନ କାମ ଏକାବେଳକେ ଗୌଣ । ଏ ପ୍ରକାର ଅନୁଷ୍ଠାନମାନଙ୍କର ଆତ୍ମା ହେଉଛି ଗୋଟିଏ ଗୋଟିଏ ବା କେତୋଟି ନ୍ୟସ୍ତପ୍ରାଣ ଜ୍ଞାନତପସ୍ୱୀଙ୍କର ସାଧନା । ଗୋଟିଏ ଜ୍ଞାନତପସ୍ୱୀ ଦରିଦ୍ର ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ସେତେବେଳର ବିଚ୍ଛିନ୍ନ ଓଡ଼ିଶାରେ ଥାଇ, ଓଡ଼ିଆ ସାହିତ୍ୟକୁ ଯାହା ଦେଇଯାଇଛନ୍ତି, ଓଡ଼ିଶା ସରକାର ତାଙ୍କର ବହୁବର୍ଷର ଆୟ ଏବର ଓଡ଼ିଶା ଆକାଡ଼େମୀ ଜରିଆରେ ବ୍ୟୟ କରାଇଦେଲେ ମଧ୍ୟ ତାହା ସିଦ୍ଧ ହେବାର ସମ୍ଭବ ଦିଶୁନାହିଁ ।

ଆଡ଼ମ୍ବର ଓ ସିଦ୍ଧି ଏକାକଥା ନୁହେଁ । ଅନ୍ତତଃ ଯେଉଁମାନେ ଏ ଭିନ୍ନତା ଅନୁଭବକୁ ଆଣିପାରିନାହାନ୍ତି ସେମାନେ କୌଣସି ଦୃଢ଼ ସାଂସ୍କୃତିକ ଅନୁଷ୍ଠାନ ଗଢ଼ିବା ସମ୍ଭବ ନୁହେଁ । ସିଦ୍ଧି ନୀରବ, ଆତ୍ମସ୍ଥ, ବିନୀତ ଓ ସ୍ଥିତଧୀ । କଳା ଓ ସାହିତ୍ୟରେ ଆଡ଼ମ୍ବରଯେ ଏକ ମାରାତ୍ମକ ବ୍ୟାଧି ଏହା ସ୍ମରଣ ରହିବା ଉଚିତ । ପ୍ରତି ସଭ୍ୟଦେଶରେ ଜ୍ଞାନାନୁଷ୍ଠାନ ସବୁ ଧୀର, ବିନୀତ, ନିରାଡ଼ମ୍ବର ଭାବରେ ହିଁ କର୍ମ କରିଥାଏ । ଗୋଟିଏ ଛୋଟବହି ଅକ୍ସଫୋର୍ଡ଼ ଇଂରାଜି ଅଭିଧାନଟି ସଂପୂର୍ଣ୍ଣ କରିବାକୁ ଇଂରେଜ ପଣ୍ଡିତମାନଙ୍କୁ ସତୁରି ବର୍ଷ ଲାଗିଯାଇଥିଲା । ତା'ର ପ୍ରାଥମିକ ଉଦ୍ୟମ କରୁ କରୁ ଲାଗିଯାଇଥିଲା କୋଡ଼ିଏ ବର୍ଷ । ଆଦ୍ୟ ପରୀକ୍ଷାମୂଳକ ସଂସ୍କରଣ ଉପହାର ରୂପେ ଦିଆଯାଇଥିଲା ମହାରାଣୀ ଭିକ୍ଟୋରିଆଙ୍କୁ । ଶେଷ ସଂପୂର୍ଣ୍ଣ ସଂସ୍କରଣ ଉପହାର ଦିଆଗଲା ତାଙ୍କ ନାତି ସମ୍ରାଟ୍ ପଞ୍ଚମ ଜର୍ଜ୍‌ଙ୍କୁ । ଏଇ ଅଭିଧାନର ସଂପାଦକ ମଣ୍ଡଳିରୁ ପ୍ରତ୍ୟେକେ ଇଂଲାଣ୍ଡରେ ବିଦ୍ୱତା ପାଇଁ ବିଖ୍ୟାତ ଓ ପ୍ରତ୍ୟେକର ଅକ୍ସଫୋର୍ଡ଼ ଅଭିଧାନରେ ଅଂଶ ଛଡ଼ା ନିଜନିଜର ବିଶେଷ ଅନୁଶୀଳନ କ୍ଷେତ୍ରରେ ଅର୍ଜିଥିବା କୀର୍ତ୍ତି ଯୋଗୁଁ ପ୍ରତ୍ୟେକେ ରାଜ୍ୟର ସର୍କାରଙ୍କ ଦ୍ୱାରା ସମ୍ମାନିତ । ଏ ଦେଶରେ ଏ ପରମ୍ପରା, ଏ ସାଧନା, ଏ ନୀରବ ତପସ୍ୟା, ଏହି ପରମ ଯୋଗ୍ୟତାର ଐତିହ୍ୟ କାହିଁ ? କଟକର ଏକ ପ୍ରାଇଭେଟ୍ ପବ୍ଲିଶର ଗୋପୀନାଥ ନନ୍ଦଙ୍କ ବିରାଟ ଭାଷାତତ୍ତ୍ୱ ଗ୍ରନ୍ଥ ପ୍ରକାଶ କରୁଥିଲା ବେଳେ, ଏ ଦେଶର ସରକାରୀ ସାହିତ୍ୟ ଆକାଡ଼େମୀ ଏପରି ବହି ସବୁ

ପ୍ରକାଶ କରି ପବ୍‌ଲିକ୍ ଫଣ୍ଡର ଅପବ୍ୟୟ କରିଚାଲିଛି ଯାହାକୁ କୌଣସି ଛୋଟ ପ୍ରକାଶକ ମଧ୍ୟ ଚିମୁଟାରେ ସ୍ପର୍ଶ କରିବାକୁ ଯିବେନି, ଓ ଯାହା ଛପା ନ ହୋଇଥିଲେ ଓଡ଼ିଆ ସାହିତ୍ୟର କୌଣସି ହେଲେ କ୍ଷତି ହୋଇନଥାନ୍ତା, କି ହେବାଦ୍ୱାରା କୌଣସି ହେଲେ ଗୌରବ ବଢ଼ିଯାଇନାହିଁ । ଏ ଦେଶରେ ଷ୍ଟାଣ୍ଡାର୍ଡ଼ର ବା ଏକ୍‌ସଲେନ୍‌ସର ଧାରଣା ଏପରି ସ୍ଥୂଳ ଯେ, ପଦସ୍ଥ ଲୋକଙ୍କୁ ମଧ୍ୟ ବୁଝାଇବାକୁ ପଡ଼ିବ ଯେ, କୌଣସି ବସ୍ତୁ, ଯାହାକୁ ନେଇ ସେ ଗର୍ବକରୁଛନ୍ତି, ବିଶ୍ୱଜ୍ଞାନର ପରିପ୍ରେକ୍ଷିତରେ ତାହା ଆଦୌ ବିଚାରକୁ ଆଣିବାର ଯୋଗ୍ୟ ନୁହେଁ । କର୍ତ୍ତୃପକ୍ଷ ତେଣୁ କ୍ୱାଲିଟିକୁ, ଯୋଗ୍ୟତାକୁ, ମର୍ଯ୍ୟାଦାକୁ ଓ ଚିରସ୍ଥାୟୀ ଗୁଣକୁ ଦୃଷ୍ଟି ଦିଅନ୍ତୁ । ଟଙ୍କାପଇସାର ଖେଳ ଦେଖାଇ କୌଣସିଠାରେ ସାହିତ୍ୟ ଗଢ଼ି ହୁଏ ନାହିଁ । ପୁଣି ମନେରଖିବାର କଥା ଉତ୍କଳ-ସାହିତ୍ୟ ସମାଜ ବା ଓଡ଼ିଶା ସାହିତ୍ୟ ଆକାଡ଼େମୀ ଯଦି ଓଡ଼ିଆ ସାହିତ୍ୟ ପାଇଁ ଠିକ୍ କାମକରିଚାଲିଛନ୍ତି, ତେବେ ଆଉ ଆଉ ଅନୁଷ୍ଠାନ ପାଇଁ ବକ୍ତାମାନେ ଦାବୀ କଲେ କାହିଁକି ? ବା କାହିଁକି ପ୍ରତିଷ୍ଠିତ ଅନୁଷ୍ଠାନମାନଙ୍କ ବିରୁଦ୍ଧରେ ବକ୍ତାମାନେ ବିକ୍ଷୋଦ୍ଗାର କଲେ ? ପାଟି ବନ୍ଦ କରାଇଦେବା ଦ୍ୱାରା ଏ ନିଆଁ ଲିଭିଯିବ କି ?

**ମାନବିକ–**

ଆଧୁନିକ ଓଡ଼ିଆ ସାହିତ୍ୟରେ ମାନବିକ ସମସ୍ୟା ଉପରେ ଶ୍ରୀଯୁକ୍ତ ଶରତ୍‌ଚନ୍ଦ୍ର ମୁଖାର୍ଜି ଯେପରି ଭାବପ୍ରବଣତାର ସହିତ ବଳିଷ୍ଠ ଭାବରେ ଆବେଦନ ଜ୍ଞାପନ କଲେ, ତାହା ଠିକ୍ ସାହିତ୍ୟିକ ଆଲୋଚନା ନ ହେଲେ ହେଁ, ଏକାବେଳକେ ଅପ୍ରାସଂଗିକ ନୁହେଁ; ଏବଂ ଅପ୍ରାସଙ୍ଗିକ ହେଲେ ମଧ୍ୟ, ତାକୁ ତାଚ୍ଛଲ୍ୟର ସହିତ ଦୂରକୁ ଅଟକାଇ ରଖିବା ଦ୍ୱାରା ଏ ସମସ୍ୟା ଉଭେଇଯିବ ନାହିଁ । ସାହିତ୍ୟିକ ମାନଙ୍କର ହତ୍ୟାର ବ୍ୟବସ୍ଥା କରି ସାହିତ୍ୟର ଉନ୍ନତି କରୁଛୁ ବୋଲି ଭାବିବା ନୈତିକ ପ୍ରତାରଣା ଛଡ଼ା ଅନ୍ୟ କିଛି ହୋଇନପାରେ । ଆଶାକରେ ସଂପୃକ୍ତ ସମସ୍ତେ ଏହା ବିଚାରକୁ ଆଣିବେ । କିନ୍ତୁ ଏଇ ସମସ୍ୟାର ଆଉରି ଏକ ପାଖ ମଧ୍ୟ ଗଭୀର ଭାବରେ ବିଚାର୍ଯ୍ୟ । ଶ୍ରୀଯୁକ୍ତ ଶରତ୍ ମୁଖାର୍ଜି ଗୋଟିଏ ପାଖର କଥା କହିଲେ । ଆର ପାଖଟିର ଚିତ୍ର ଦେଲେ ତରୁଣ ସାହିତ୍ୟିକ ରବିନାରାୟଣ ମହାପାତ୍ର । ସଭାରେ ଅଧିକାଂଶ ଭାବରେ ନାନା ଅବାଞ୍ଛିତମାନଙ୍କର ସମାବେଶ ଯୋଗୁଁ ଶେଷ ଆଡ଼କୁ ଯେଉଁ ଅଶୋଭନୀୟ ଗଣ୍ଡଗୋଳ ହେଉଥାଏ ସେଥିରେ ଅନେକେ ତାଙ୍କ କଥା ଶୁଣିପାରିନଥିବେ । କିନ୍ତୁ ସେ କହିଲେ ଯେ, ସର୍କାରଙ୍କ ଭତ୍ତାପାଇ ଆମ୍ଭେମାନେ ସାହିତ୍ୟିକ ହେବାକୁ ପ୍ରସ୍ତୁତ ନୋହୁଁ । ତା'ହେଲେ ଆମେ ଶାସକଦଳର ଚାଟୁକାରହିଁ ହେବୁ କେବଳ । ନା, ଆମେ ଦାରିଦ୍ର୍ୟରେ ମରିବୁ ପଛେ, କାହାର ଅନୁଗ୍ରହ ଭାଜନ

ହେବୁ ନାହିଁ କି କାହାର ମୁଖପାତ୍ର ମାତ୍ର ହେବୁ ନାହିଁ ।''

ମୋ' ମତରେ ଏହାହିଁ ସାହିତ୍ୟିକର ଉଜ୍ଜ୍ୱଳ ଆଦର୍ଶ ରହିବା ଉଚିତ । ତା'ହେଲେ ଧରିନେବାକୁ ହେବ ଯେ, ପଦ୍ମଚରଣ-ବୈଷ୍ଣବପାଣି-ପ୍ରାଣକୃଷ୍ଣ-ବିଚ୍ଛନ୍ଦ-ବି:ବର୍ମାର ପ୍ରେତାତ୍ମାମାନଙ୍କର ଦୀର୍ଘନିଶ୍ୱାସ ଅଯଥାର୍ଥ ହୋଇନି । ଯେତେବେଳେ କବି ଓ ଲେଖକର ଦଳ ଭତ୍ତାପାଇ ଶାସକ ଗୋଷ୍ଠୀର କେବଳ ଆଜ୍ଞାବହ ଓ ଚାଟୁକାର ହେବେ, ସେତେବେଳେ ସାହିତ୍ୟର ହିଁ ସମାଧି ଘଟିଯିବ, ସାହିତ୍ୟିକ ଆଉ ଥିବେ କାହିଁ ? ଅବଶ୍ୟ ସାହିତ୍ୟିକ ଭତ୍ତା ଓ ଦୁର୍ଦ୍ଦଶାପନ୍ନ ସାହିତ୍ୟିକକୁ ସାହାଯ୍ୟ ଦୁଇଟା ଭିନ୍ନ ପ୍ରସଂଗ ବୋଲି ଧରିବାକୁହେବ ।

ଆଜି ଓଡ଼ିଶାରେ ଲେଖକର ପ୍ରକୃତ ସମସ୍ୟା ହେଉଛି କାହାର ଅନୁଗ୍ରହ ପାଇବା ନୁହେଁ; ତାହା ହେଉଛି ଲେଖକର ବହିର ବିକ୍ରୟ ସମସ୍ୟା । ଆମର ଲୋକକଲ୍ୟାଣ-କାରକ ସର୍କାର ଏ ଦେଶରେ କେବଳ ପୁଞ୍ଜିପତି ପାଠ୍ୟପୁସ୍ତକ ଲେଖକ ଓ ପ୍ରକାଶକଙ୍କ ପାଇଁ ସୁନ୍ଦର ବ୍ୟବସ୍ଥା କରିଦେଇଛନ୍ତି । ସଂପୃକ୍ତ ସମସ୍ତେ ବେଶ୍ ଦି'ପଇସା ପାଉଛନ୍ତି ବୋଲି ଲୋକରେ ପ୍ରଚାର । ଲୋକ-କଲ୍ୟାଣକ ସର୍କାର ''ପାଠ୍ୟ'' ସାହିତ୍ୟର ଏପରି ସୁବ୍ୟବସ୍ଥା କରି ସାରିଲାପରେ, ଅ-ପାଠ୍ୟ କାବ୍ୟ-କବିତା-ନାଟକ-ଉପନ୍ୟାସ ପାଇଁ କାହିଁକି କ'ଣ କରିବାକୁ ଯିବେ ? ଅପାଂକ୍ତେୟ ସେ ପ୍ରକାର ସାହିତ୍ୟକୁ କିଏ ବା କାହିଁକି ପଚାରିଯିବ ? ସର୍କାରଙ୍କ ବି.ଡ଼ି.ଓ ଦଳ ଗାଁଗଣ୍ଡାରେ କାହିଁକି କି ପୋଚା ସାହିତ୍ୟ ନେଇ ଭର୍ତ୍ତିକରୁଛନ୍ତି, ତାହାର ମଧ୍ୟ ବିଚାର କରିବା କି ଦର୍କାର ? ତେଣୁ ଏ ଦେଶର ବ୍ୟବସ୍ଥାନୁସାରେ ଭଲ ସାହିତ୍ୟ ଯେଉଁମାନେ ସୃଷ୍ଟିକରିବେ ସେମାନେ ଅର୍ଦ୍ଧଭୁକ୍ତ ହୋଇ ବଞ୍ଚିରହିବେ, ପ୍ରକାଶକ ପାଖକୁ ପ୍ରତ୍ୟହ ଟଙ୍କେ ଦି'ଟଙ୍କା ଦୈନିକ ମଜୁରୀ ପାଇଁ ଦୌଡ଼ିବେ, ଆଉ ବର୍ଷକେ ଥରେ ବିଷୁବ-ମିଳନକୁ ନିମନ୍ତ୍ରଣପତ୍ରଟିଏ ପାଇ ସଭାମଣ୍ଡନ କରି ନିଜ ନିଜ ଜନ୍ମକୁ ଧନ୍ୟ ମନେ-କରିବେ । ଆଉ ବାକୀ କୌଣସି କଥାରେ ପାଟିଫିଟେଇବା ଅବାନ୍ତର ବୋଲି ଧରିନେବାକୁହେବ ।

**ସୃଜନିକ—**

ଯେଉଁ ସମସ୍ୟା ସାହିତ୍ୟ ବିଚାରରେ ମୂଳ ଓ ପ୍ରଧାନ ତତ୍ତ୍ୱ ହେବାର କଥା, ଦୁଃଖର ସହିତ କହୁଛି ଯେ, ଏତେ ଓଡ଼ିଆ ବକ୍ତା କହିଗଲେ, କିନ୍ତୁ କେହିହେଲେ ସେ ସଂପର୍କରେ ପାଟିଫିଟେଇନଥିଲେ । ରେଭେନ୍ସା କଲେଜର ବେଙ୍ଗଲି ଅଧ୍ୟାପକ ବିବେକାନନ୍ଦ ମୁଖୋପାଧ୍ୟାୟ ଏକମାତ୍ର ଲୋକ ଯେକି ସାହିତ୍ୟ ସୃଷ୍ଟିର ଏଇ ପ୍ରଧାନ ଓ ପରମତତ୍ତ୍ୱଟି ଉପରେହିଁ ଭାଷଣ ଦେଇଥିଲେ ଓ ଉତ୍ତମ ଭାଷଣ ଦେଇଥିଲେ । ମୁଖୋପାଧ୍ୟାୟ ସେହି ଜାତିର ଲୋକ ଯେ ଖାଣ୍ଟି ସାହିତ୍ୟ ସୃଷ୍ଟି କ'ଣ ଓ ପ୍ରକୃତ

ବିଦ୍ୟା କ'ଣ ଜାଣେ ଓ ତାକୁ ସମ୍ମାନ କରି ଜାଣେ । ଆମର ଏଇ ରାଜ୍ୟରେ ଯେଉଁ ଲୋକ ଓଡ଼ିଆ ସାହିତ୍ୟକୁ କୌଣସି ଭାବରେ ହେଲେ ଋଦ୍ଧିମନ୍ତ କରିନାହାନ୍ତି ବା କରିବାରେ ସ୍ୱାଭାବିକ ଭାବରେ ଅକ୍ଷମ, ସେ ମଧ୍ୟ ବିଦେଶୀ ଡ଼ିଗ୍ରୀର ମାର୍କା ଯୋଗୁଁ ଓଡ଼ିଆଭାଷାର ପୋଷ୍ଟଗ୍ରାଜୁଏଟ୍-ପ୍ରଫେସର୍ ଗାଦିରେ ବସିଯାଇପାରନ୍ତି । କିନ୍ତୁ କୌଣସି ସଭ୍ୟ ଦେଶରେ ତ ଏଭଳି ଅବ୍ୟାପାର ଘଟନ୍ତା ନାହିଁ ଓ ଘଟେ ନାହିଁ, ବଙ୍ଗ ଦେଶରେ ମଧ୍ୟ ତାହା ହୁଏନା । ଗୋଟିଏ ବିଷୟରେ ଅନ୍ତତଃ ଏକ ପ୍ରାମାଣିକ ପୁସ୍ତକ ନ ଲେଖିବା ଲୋକକୁ ପ୍ରଫେସର୍ ଗାଦିରେ ବସିବା, ଅନ୍ତତଃ ସଭ୍ୟ ପାଶ୍ଚାତ୍ୟ ଦେଶମାନଙ୍କରେ ଦେଖାଯାଏନାହିଁ । ବଙ୍ଗଳାର ଲେଖକ ମୋହିତଲାଲ ମଜୁମଦାର ମାତ୍ର ବି.ଏ. ହେଲେ ମଧ୍ୟ ତାଙ୍କୁ ଢ଼ାକା ବିଶ୍ୱବିଦ୍ୟାଳୟ ବଙ୍ଗଳା ପୋଷ୍ଟ ଗ୍ରାଜୁଏଟ୍ ଡ଼ିପାର୍ଟମେଣ୍ଟର ହେଡ୍ କରି ଥୁଏ । କାରଣ ମୋହିତଲାଲ ମଜୁମଦାରଙ୍କର ଡ଼ିଗ୍ରୀର ଚିତା ନଥାଉ ପଛେ; ସେ ଏକ ପକ୍ଷରେ ସୃଜନଶୀଳ କବି ଓ ତାଙ୍କର ସମାଲୋଚନା ବଂଗଳାରେ ସାହିତ୍ୟ-ବୋଧ ସଂପର୍କରେ ନୂତନ ଆଲୋକପାତ କରିଯାଇଛି । ତାଙ୍କ ତୁଳନାରେ ଉକ୍ରଦେଶର ପୋଷ୍ଟଗ୍ରାଜୁଏଟ୍ ଓଡ଼ିଆ ବିଭାଗର ପ୍ରଫେସର କିପ୍ରକାର କବି ଓ କିପ୍ରକାର ଆଲୋଚନା ଓ କି ପ୍ରକାର ବା ସାଧାରଣତମ ଓଡ଼ିଆ ସାହିତ୍ୟିକ ?

ଅଧ୍ୟାପକ ବିବେକାନନ୍ଦଙ୍କ ଭାଷଣରେ ତାଙ୍କ ଜାତିର ରକ୍ତଗତ ଜ୍ଞାନସାଧନା ଓ ବିଦ୍ୟା–ପୂଜାର ଉଦାର ବାଣୀହିଁ ଫୁଟି ଉଠିଥିଲା । ସେ କହିଥିଲେ ଯେ ସ୍ରଷ୍ଟାର ପ୍ରଥମ ଓ ପରମ ଆନନ୍ଦ ତା'ର ସୃଷ୍ଟିରେ । କିନ୍ତୁ ତାଙ୍କ ଚିତ୍ତକୁ ବାରମ୍ବାର ଏୟା ଆଘାତ ଦେଇଛି ଯେ, ଓଡ଼ିଶାରେ ସାହିତ୍ୟିକମାନେ ସୃଷ୍ଟିର ଆନନ୍ଦ ଓ ତପସ୍ୟା ଉପରେ ସେତେ ଦୃଷ୍ଟିଦିଅନ୍ତିନାହିଁ ଯେତେ ଦିଅନ୍ତି ଆର୍ଥିକ ଲାଭାଲାଭ, ଟେକ୍ସ୍‌ବୁକ୍, ଆକାଡ଼େମୀପୁରସ୍କାର ଆଦି ଗୌଣ ବିଷୟରେ । ବସ୍ତୁତଃ ଅଧିକାଂଶ ଓଡ଼ିଆ ବକ୍ତାମାନଙ୍କ ଆଲୋଚନା ଏଇ ସବୁ ଗୌଣ ବିଷୟ ଉପରେ ହିଁ ହୋଇଥିଲା । କିନ୍ତୁ ଓଡ଼ିଶାର ସାହିତ୍ୟିକମାନେ ବିବେକାନନ୍ଦ ବାବୁଙ୍କର ବ୍ୟଞ୍ଜନାକୁ ଅବଧାନକୁ ନେବେ ବୋଲି ଆଶା ।

**ଭବିଷ୍ୟତ–**

ଉତ୍କଳ ସାହିତ୍ୟ ସମାଜର ପୂର୍ବାଚରିତ ବାର୍ଷିକୋତ୍ସବ କଥା ମୂଳରୁ କହିଛି– ସେ ଆଉ ହେଉନାହିଁ । କିନ୍ତୁ ଦେଶର କବି, ଲେଖକ, ସାହିତ୍ୟିକଗଣ ବର୍ଷରେ ଥରେ ମିଳିତ ହେବା ଜାତି ପକ୍ଷରେ ମଙ୍ଗଳକର । କିଂତୁ ଅଫଳପ୍ରସୂ ଭାବରେ ଶତବର୍ଷ ଧରି ମିଳିତ ହେଲେ ଲାଭ କ'ଣ ? ତାହା କେବଳ ତମାସା ହୋଇହିଁ ରହିବ । ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା ଏଇ ପଏଣ୍ଟଟି ଭଲକରି ଉଠାଇଥିଲେ । ସେ କହିଥିଲେ ଯେ, ଏଠାରେ ଏ ବିଷୁବମିଳନରେ ଏ ପ୍ରକାର ଆଲୋଚନାର

ପରିଣତି କ'ଣ ? କାହିଁକି ଏଥିରୁ ଗୁଡ଼ିଏ ଘଣ୍ଟା ଘଣ୍ଟା ଧରି ଆଲୋଚନା କରିବା ? ଆଲୋଚନା ଯଦି କାର୍ଯ୍ୟରେ ପରିଣତ ନହୁଏ ତେବେ ତାହା ଶ୍ରମର ଅପବ୍ୟୟ ଛଡ଼ା ଆଉ କ'ଣ ? ଆସ, ଏ ସଂପର୍କରେ ରିଜୋଲ୍ୟୁଶନ୍ ପାଶ୍ କରିବା ଓ ସେହି ଅନୁସାରେ କର୍ମ ଯୋଜନା ଗଢ଼ିବା ।

କିନ୍ତୁ ତାଙ୍କ କଥାରେ କେହି କର୍ଣ୍ଣପାତ କଲେନାହିଁ । ଯେବେ କଲେ ନାହିଁ, ତେବେ ତାଙ୍କ କଥାର ଜବାବ ହେଲେ କେହି ଦେଉ । ଯଦି ବିଷୁବମିଳନ କେବଳ ଏକ 'ବନ୍ଧୁ ମିଳନ' ତେବେ ସ୍ପଷ୍ଟ କୁହାଯାଉ ଯେ ତାହା କେଉଁ ପ୍ରକାର ବନ୍ଧୁଙ୍କର ମିଳନ । ଶିଶୁସଭା, ନାରୀସଭା, ଅଭିନେତା-ଅଭିନେତ୍ରୀ-ସିନେମାଷ୍ଟାର ସଭା, ଶିଳ୍ପୀସଭା, କମ୍ପୋଜିଟରମାନଙ୍କ ସଭା ଇତ୍ୟାଦି ନାନା ପ୍ରକାର ମେଳା କରି ତାରି ଭିତରେ ଗୁଞ୍ଜି ହୋଇ ଓଡ଼ିଆ ସାହିତ୍ୟର ସମସ୍ୟାମାନଙ୍କର ମଧ୍ୟ ଆଲୋଚନା ହୋଇନପାରେ । ଏହାର କ୍ଷେତ୍ର ସ୍ୱତନ୍ତ୍ର, ଏହାର ପରିବେଶ ସ୍ୱତନ୍ତ୍ର, ଏହାର ସଂଗଠନ ସ୍ୱତନ୍ତ୍ର । ଉଚ୍ଚକୋଟୀର ଅନୁଶୀଳନ ପାଇଁ କି ସଂଗଠନ, କି ପରମ୍ପରା, କି ଐତିହ୍ୟ, କି ପରିବେଶ ଦର୍କାର ତାହାର ସୂଚନା ଏଇ ପ୍ରବନ୍ଧରେ ଦିଆଯାଇଛି । ପୁଣି ବିଷୁବମିଳନ ଯଦି ଏକ ବ୍ୟକ୍ତି ବିଶେଷଙ୍କର ବାର୍ଷିକ ବନ୍ଧୁମିଳନ ମାତ୍ର ବୋଲି ଧରାଯାଏ, ତେବେ ଚିତ୍ର ଏକାବେଳେ ବଦଳିଯିବ । ବିଷୁବମିଳନ ପରି ଏକ ବାର୍ଷିକ ମେଳଣ ସକଳର କାମ୍ୟ । କିନ୍ତୁ ତାହା ସମ୍ମାନନୀୟ ଓ ମର୍ଯ୍ୟାଦାବନ୍ତ ନହେଲେ, ଘୁଷୁରିର ପଙ୍କ ଯେପରି କାମ୍ୟ ସେହି ଶ୍ରେଣୀର କାମ୍ୟ ହୋଇରହିବ । *

— —

* ଚଳିତବର୍ଷ ବିଷୁବ ମିଳନରେ ଉମାଶଙ୍କର ଯୋଶୀ ମୁଖ୍ୟ ଅତିଥି ହୋଇଥିଲେ । ମତେ କରାଯାଇଥିଲା ସଭାପତି । ସମସ୍ତ ଆଲୋଚନାକୁ ମୋର ମତାମତ ସହିତ ଏକତ୍ର କରି ଓ ଯୋଶୀଂକ ସଂବଂଧରେ କିଛି କହି, ମୁଁ 'ଯୋଶୀ ଓ ବିଷୁବ' ନାମରେ ଏକ ଲେଖା ଲେଖି ଝଂକାରରେ ପ୍ରକାଶ ପାଇଁ ପଠାଇଥିଲି । ଝଂକାରର କର୍ତ୍ତୃପକ୍ଷ ଯୋଶୀ ଅଂଶତକ ଝଂକାରର ଏକ ସଂଖ୍ୟାରେ ଛାପି 'ବିଷୁବ' ଅଂଶତକ ପ୍ରତ୍ୟାଖ୍ୟାନ କରି ଫେରାଇଦେଇଛନ୍ତି । କିନ୍ତୁ ଅଧ୍ୟାପକ ଗୋଲୋକ ବିହାରୀ ଧଳଂକ ଉଦ୍‌ଘାଟନିକ ଭାଷଣ ଉପରେ ଯେଉଁ ସବୁ ଆଲୋଚନା ହେଲା ତାହା ମୂଲ୍ୟବାନ୍ ଥିବା ଦୃଷ୍ଟିରେ ଝଂକାର-ପ୍ରତ୍ୟାଖ୍ୟାନ 'ବିଷୁବ'-ଅଂଶକୁ ପ୍ରକାଶିତ କରି ରଖୁଛି । ଏ ବର୍ଷର ବିଷୁବମିଳନର ସଭାପତି ଭାବରେ ଓ ଏକ ଓଡ଼ିଆ ସାହିତ୍ୟସେବୀ ଭାବରେ ଏହା ମୋର ଏକାନ୍ତ କର୍ତ୍ତବ୍ୟ ବୋଲି ଅନୁଭବ ହେଲା । ପ୍ରକାଶ ଥାଉକି ଏଇ ଲେଖକ ଝଂକାରର ସଂପାଦକ ମଣ୍ଡଳିରେ ଏକତମ ସଦସ୍ୟ । ସେ ସଂପର୍କରେ ଏକ ବିବୃତି ଅନ୍ୟତ୍ର ପ୍ରକାଶିତ ହେଉଛି । — ମାୟାଧର ମାନସିଂହ

# ଓଡ଼ିଆ ସାହିତ୍ୟର ନବଯୁଗ

ସାହିତ୍ୟରେ ସନ ତାରିଖର କୌଣସି ମୂଲ୍ୟ ନାହିଁ । ତେଣୁ ସାହିତ୍ୟ-ଜଗତର ଇତିହାସରେ କେଉଁ ଯୁଗ ନିର୍ଦ୍ଦିଷ୍ଟ ଭାବରେ କେବେ ଆରମ୍ଭ ହେଲା ଓ କେବେ ଶେଷ ହେଲା, ଏହା କହି ହେବ ନାହିଁ । ପୁଣି ଏକକାଳରେ ପ୍ରାଚୀନ ଓ ନବୀନ ଭାବ-ଧାରା ସମଶକ୍ତିରେ ପ୍ରବାହିତ ହେବାର ମଧ୍ୟ ଦେଖାଯାଏ । ଆମ ଓଡ଼ିଆସାହିତ୍ୟର କଥାହିଁ ଦେଖାଯାଉ । ମୋଟ ଉପରେ ଆମେ ଧରିନେଉଁ ଯେ ଇଂରେଜ ରାଜତ୍ୱ ପରେ ଓ ତା'ରି ଫଳରେ ଯେଉଁ ଯୁଗ ଆସିଛି, ତାହାହିଁ ଆମ ସାହିତ୍ୟର ନବଯୁଗ ।

ଇଂରେଜମାନେ ୧୮୦୩ରେ ଓଡ଼ିଶା ଅଧିକାର କଲେ । ୧୮୦୩ ଠାରୁ ୧୮୯୫ ଭିତରେ ଅର୍ଥାତ୍ ମୋଟ ଉପରେ ଉନବିଂଶ ଶତାବ୍ଦୀରେ ଯେଉଁ କାଳରେ କି ଆମର ନବଯୁଗ ଆସିଛି ବୋଲି ଆମେ ବରାବର ଭାବିଆସିଛୁଁ, ସେହି କାଳ ଭିତରେ ହିଁ ଆମର ପ୍ରାଚୀନ ପନ୍ଥୀ ପ୍ରସିଦ୍ଧ କବିବୃନ୍ଦ– ଗୋପାଳକୃଷ୍ଣ, କବିସୂର୍ଯ୍ୟ, ଯଦୁମଣି ଓ ଭୀମଭୋଇ– ଆମ ଭାଷାରେ ତାଙ୍କର ଶ୍ରେଷ୍ଠ ଦାନ ଥୋଇଯାଇଛନ୍ତି । ରାଧାନାଥ ଓ ମଧୁସୂଦନଙ୍କ ମିଳିତ କବିତା ଗ୍ରନ୍ଥ 'କବିତାବଳୀ' ୧୮୮୦ରେ ପ୍ରଥମେ ପ୍ରକାଶିତ ହୋଇଥିଲା । ସେତେବେଳକୁ ଗଡ଼ଜାତର ସହସ୍ର ପଲ୍ଲୀ ଅନ୍ଧ ଓ କନ୍ଧ କବି ଭୀମଭୋଇଙ୍କ ରହସ୍ୟବାଦୀ ଭଜନମାଳାର ପୁଣ୍ୟ ଧ୍ୱନିରେ ଝଙ୍କୃତ ହେଉଥିଲା । ଖୁବ୍ ସମ୍ଭବତଃ ରାଧାନାଥଙ୍କ 'ମହାଯାତ୍ରା' ପ୍ରକାଶିତ ହେଲାବେଳକୁ ଭୀମଭୋଇ ପ୍ରାଣତ୍ୟାଗ କରିଥିଲେ । ଏବେ ବି ଉତ୍କଳ ଦେଶରେ ଭୀମଭୋଇ, ଗୋପାଳକୃଷ୍ଣ, ବଳଦେବ ରଥଙ୍କୁ ଜାତି ଯେପରି ଭାବରେ ଜାଣେ, ରାଧାନାଥ ମଧୁସୂଦନଙ୍କୁ ସେପରି ଭାବରେ ଜାଣିନାହିଁ ଏବଂ ଏବେ ବି ଆମ ଭାଷାରେ ଯୁଗପତ୍ କଥା-ଛନ୍ଦ ଓ ଭଂଜୀୟ ଛନ୍ଦରେ ସାହିତ୍ୟ ସୃଷ୍ଟି ଚାଲିଛି ।

କିନ୍ତୁ ଉନବିଂଶ ଶତାବ୍ଦୀରେ ପ୍ରାଚୀନ ଓ ନବୀନ-ପନ୍ଥୀ କବିମାନଙ୍କର ସମ-କାଳୀନତା ସତ୍ତ୍ୱେ ଓ ଆଧୁନିକମାନଙ୍କଠାରୁ ପ୍ରାଚୀନ-ପନ୍ଥୀ କବିମାନଙ୍କର ଦେଶରେ ଅଧିକତର ପ୍ରଚାର ସତ୍ତ୍ୱେ, ଆମକୁ ମାନିବାକୁ ହେବଯେ ୧୮୮୦ରେ– ଯେଉଁ ସାଲରେ କି ରାଧାନାଥ ଓ ମଧୁସୂଦନଙ୍କ ମିଳିତ କବିତା ଗ୍ରନ୍ଥ ପ୍ରକାଶିତ ହେଲା– ସେହି ବର୍ଷ ଓଡ଼ିଆ ସାହିତ୍ୟର ଏକ ନବଯୁଗ ଆରମ୍ଭ ହୋଇଗଲା ଏବଂ ସେହି ଯୁଗର କ୍ରମବର୍ଦ୍ଧମାନ ଆଲୋକରେ ହିଁ ବର୍ତ୍ତମାନ ଆମ୍ଭେମାନେ ନିଶ୍ୱାସ ପ୍ରଶ୍ୱାସ ନେଉଛେଁ ।

ରାଧାନାଥ ଓ ମଧୁସୂଦନଙ୍କ ମିଳିତ କବିତାଗ୍ରନ୍ଥ 'କବିତାବଳୀ'ରେ ନିମ୍ନଲିଖିତ ଏଇ କବିତାଗୁଡ଼ିକ ସ୍ଥାନ ପାଇଥିଲା– ରାଧାନାଥଙ୍କ ଲେଖନୀରୁ 'ଶିବାଜୀଙ୍କ ଉତ୍ସାହ ବାକ୍ୟ', 'ବେଣୀ ସଂହାର', 'ଭାରତେଶ୍ୱରୀ ଭିକ୍ଟୋରିଆ', ମଧୁସୂଦନଙ୍କ ଲେଖନୀରୁ 'ଆକାଶ ପ୍ରତି', 'ଶରତ୍ ପ୍ରଭାତ', 'ନିର୍ବାସିତର ବିଳାପ', 'ସ୍ତୋତ୍ର', 'ରାମଙ୍କ ଅଯୋଧ୍ୟା ପ୍ରତ୍ୟାଗମନ', ଓ 'ସୀତା ବନବାସ' । ଏଥିରୁ ଅନେକ କବିତାର ବିଷୟ ପ୍ରାଚୀନପନ୍ଥୀ ହେଲେହେଁ, ପ୍ରକାଶଭଙ୍ଗୀ ସମ୍ପୂର୍ଣ୍ଣ ନୂତନ ଏବଂ ଅନେକ କବିତାର ପ୍ରକାଶଭଙ୍ଗୀ ଓ ବିଷୟବସ୍ତୁ ଉଭୟ ସମ୍ପୂର୍ଣ୍ଣ ନୂତନ । ମନୁଷ୍ୟ, ମନୁଷ୍ୟକୁ ନେଇହିଁ ସାହିତ୍ୟ ଓ କଳା ସୃଷ୍ଟି କରିଆସିଛି ।

ମନୁଷ୍ୟ ହିଁ ହେଲା ସାହିତ୍ୟର ବୀଜମନ୍ତ୍ର । ପୃଥିବୀର ଶ୍ରେଷ୍ଠ କବିତା ମନୁଷ୍ୟର ଅନ୍ତରତମ ସୁଖଦୁଃଖର ନିବିଡ଼, ନିଗୂଢ଼ ଅନୁଭୂତିକୁ ନେଇ । ଈଶ୍ୱର, ସମାଜ, ପ୍ରକୃତି ପ୍ରଭୃତି ସାହିତ୍ୟର ଅଙ୍ଗୀଭୂତ; କାରଣ ମନୁଷ୍ୟର ଜୀବନ ସଙ୍ଗେ ଏଗୁଡ଼ିକ ଓତପ୍ରୋତ ଭାବରେ ସଂପୃକ୍ତ । ଆମ୍ଭେମାନେ ଚିନ୍ତାକଲେ ବୁଝିପାରିବା ଯେ ମନୁଷ୍ୟ କେବେ-ହେଲେ ନିଃସଙ୍ଗ ନୁହେ । ସେ ଈଶ୍ୱର, ପ୍ରକୃତି ଓ ସମାଜଦ୍ୱାରା ନିବିଡ଼ ଭାବରେ ନିରନ୍ତର ପରିବୃତ । ପ୍ରତି ମୁହୂର୍ତ୍ତରେ ମନୁଷ୍ୟର ଏମାନଙ୍କ ଉପରେ ଓ ଏମାନଙ୍କର ମନୁଷ୍ୟ ଉପରେ ମାନସିକ କ୍ରିୟାପ୍ରତିକ୍ରିୟା ଚାଲିଛି, ଜ୍ଞାତସାର ବା ଅଜ୍ଞାତସାରରେ । ମନୁଷ୍ୟର ବର୍ଣ୍ଣନା କେବେହେଲେ ସତ୍ୟ-ପ୍ରତିଷ୍ଠିତ ଓ ସମ୍ପୂର୍ଣ୍ଣ ହେବ ନାହିଁ, ଯଦି ତା'ର ଏହି ପାରିପାର୍ଶ୍ୱିକର କ୍ରିୟା-ପ୍ରତିକ୍ରିୟାର ଛାୟାଲୋକର କ୍ରୀଡ଼ା ତା' ସଙ୍ଗେ ବର୍ଣ୍ଣିତ ନହୋଇଛି । ସେହି ସାହିତ୍ୟ ସଂପୂର୍ଣ୍ଣ ଓ ବିକଚ, ଯେଉଁଠାରେ ଆମେ ଦେଖିବାକୁ ପାଉଁ ମନୁଷ୍ୟ ଓ ତା'ର ପାରିପାର୍ଶ୍ୱିକତାକୁ ଅଖଣ୍ଡିତ ସମଗ୍ର ଭାବରେ, ଏବଂ ଯେଉଁଠି ପ୍ରକାଶରୀତି ହୋଇଛି ସାଧାରଣ ମନୁଷ୍ୟର ସହଜଗମ୍ୟ ଅଥଚ ସୁଷମା-ମଣ୍ଡିତ । ଏଇ ସତ୍ୟର ଧାରାରେ ୧୮୮୦ରେ ପ୍ରକାଶିତ କବିତାବଳି ଓ ତତ୍‌ପରର ଓଡ଼ିଆ ସାହିତ୍ୟ ଏବଂ ତା' ପୂର୍ବର ଓଡ଼ିଆ ସାହିତ୍ୟକୁ ପରୀକ୍ଷା କରାଯାଉ ।

ଚତୁର୍ଦ୍ଦଶ ଶତାବ୍ଦୀ; ଅର୍ଥାତ୍ ଶାରଳାଦାସଙ୍କ କାଳଠାରୁ ଊନବିଂଶ ଶତାବ୍ଦୀର ଶେଷ-ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ପ୍ରଧାନତଃ ତିନୋଟି ଉପାଖ୍ୟାନରହିଁ କେବଳ ଚର୍ବିତଚର୍ବଣ ଚାଲିଥିଲା । ସେ ତିନୋଟି ହେଉଛି– ରାମ-ରାବଣ ଯୁଦ୍ଧ, କୁରୁପାଣ୍ଡବ ଯୁଦ୍ଧ ଏବଂ ଶ୍ରୀକୃଷ୍ଣଙ୍କର ଗୋପ, ମଥୁରା ଓ ଦ୍ୱାରକାଲୀଳା । ଏ ତିନୋଟି ଉପାଖ୍ୟାନ ଯେ ଏ ପର୍ଯ୍ୟନ୍ତ ମଧ୍ୟ ଜନତାର ଚିତ୍ତ ଅଧିକାର କରି ରହିଛି, ଏଥିରେ ସନ୍ଦେହର ଅବକାଶ ନାହିଁ । କିନ୍ତୁ ଏ ଜନପ୍ରିୟତାର ପ୍ରଧାନ କାରଣ ହେଉଛି, ଏଗୁଡ଼ିକର ଅବାସ୍ତବତା ଓ ଅତିମାନୁଷିକତା – ଯେଉଁ କାରଣରୁ ଶିଶୁ-ମନ ରୂପକଥାର ଅସମ୍ଭବ ଜଗତରେ

ପଶିଲେ କ୍ଷୁଧା ତୃଷା ଭୁଲେ, ଆମ ଦେଶର ଜନତାର ମନ ଠିକ୍ ସେଇ କାରଣରୁ ଏ ଗୁଡ଼ିକରେ ମୁଗ୍ଧ । ରୂପକଥା ମଧ୍ୟ ଉତ୍କୃଷ୍ଟ ସାହିତ୍ୟ । ପୁଣି ଏହି ରୂପକଥାର ଭିତର ବାଟେ ଧର୍ମର ଜୟ ଓ ଅଧର୍ମର ବିନାଶ ଅତ୍ୟନ୍ତ କୌଶଳ ସହକାରେ ଦେଖାଇ ଦିଆ-ଯାଇଥିବାରୁ ଏ ସବୁ ଅନାୟାସରେ ଜାତିର ଧର୍ମ-ସାହିତ୍ୟରେ ପରିଣତ ହୋଇଯାଇ-ଅଛନ୍ତି ।

ତା'ପରେ ଆସିଛି ଅଳଂକାରର ଅତ୍ୟାଚାର । ଯେଉଁ ମନୋରମ ରାମ-ଗାଥା ବଳରାମଦାସଙ୍କ ପ୍ରାଞ୍ଜଳ ଭାଷାରେ ଉତ୍କଳର ପ୍ରତି ପଲ୍ଲୀରେ ପ୍ରଚାରିତ ହୋଇଥିଲା ଓ ଏବେ ବି ହେଉଛି, ତାକୁ ଉପେନ୍ଦ୍ର ଲେଖିଲେ 'ବ' ନିୟମର, କି ଉଦ୍ଦେଶ୍ୟରେ ତାହା କେବଳ ତାଙ୍କୁ ହିଁ ଜଣା । କିନ୍ତୁ ଏତିକି ଆମେ ଦେଖୁଛୁଁ, ଯଦି ଆମର ପୌରାଣିକ କବିମାନେ ଭାବିଥିଲେ ଯେ ଅତି-ମାନୁଷହିଁ ମନୁଷ୍ୟର ଆଦର୍ଶ, ଆମର ଆଳଂକାରିକ କବିମାନେ ଭାବିଥିଲେ ଯେ ଭାଷାର ପବିତ୍ୱ ହିଁ କବିତ୍ୱ, ଅର୍ଥାତ୍ ଭାଷା ଯେତେ ଦୁର୍ବୋଧ୍ୟ ଓ ଜଟିଳ ହେବ, କବିତା ଭାବରେ ତା'ର ମର୍ଯ୍ୟାଦା ସେତେ ବେଶି । ମନୁଷ୍ୟର ସହଜ ଦୈନନ୍ଦିନ ସାମାଜିକ ଜୀବନହିଁ ଯେ ସାହିତ୍ୟର ଉତ୍କୃଷ୍ଟ ଉପାଦାନ ଏବଂ ସହଜ, ସୁବୋଧ୍ୟ, ସୁଷମାମଣ୍ଡିତ ଭାଷାହିଁ ଯେ ସାହିତ୍ୟର ଉତ୍କୃଷ୍ଟ ବାହନ, ଏକଥା ଏ ପର୍ଯ୍ୟନ୍ତ ବି ଆମ ଭିତରୁ ଅନେକେ ହୃଦୟଙ୍ଗମ କରୁନାହାନ୍ତି ।

ରାଧାନାଥ ଓ ମଧୁସୂଦନଙ୍କ ସମ୍ମିଳିତ କବିତାଗ୍ରନ୍ଥ 'କବିତାବଳୀ' ଉତ୍କଳରେ ଦାବାଗ୍ନିପରି ପ୍ରସାରିତ ହୋଇଗଲା। ଏହି କବିତାଗୁଡ଼ିକର ପଦାବଳି ସେ କାଳର ପାଠୁଆ ଲୋକଙ୍କ ମୁହେଁ ମୁହେଁ ଶୁଣାଯିବାକୁ ଲାଗିଲା । ଏହାର ଏକମାତ୍ର କାରଣ ହେଉଛି ଏହି ଯେ, ଏ ଗୁଡ଼ିକର ବିଷୟବସ୍ତୁ ଦେଶବାସୀଙ୍କର ସାମାଜିକ ଓ ରାଜନୈତିକ ଜୀବନରୁ ଗୃହୀତ ଓ ଏଗୁଡ଼ିକର ଭାଷା ପୂର୍ବବର୍ତ୍ତୀ ସାହିତ୍ୟର ଆଳଂକାରିକ ଦୁର୍ବୋଧ୍ୟତାରୁ ମୁକ୍ତ ହୋଇ, ଦେଶର ଦୈନନ୍ଦିନ ଭାଷାର ନିକଟତର ରୂପେ ଦେଖା ଦେଇଥିଲା ।

"ଉଠ ଉଠ ଆହେ ସମ ଯୋଧଗଣ
ଧର କରବାଳ ପଶ ସମରେ",

ଶିବାଜୀଙ୍କର ଏହି ଉନ୍ମାଦକାରୀ ସାମରିକ ଆହ୍ୱାନ ଆଧୁନିକର ରକ୍ତକୁ ଯେପରି ସ୍ପର୍ଶ କରିବ, କୃଷ୍ଣ-ଚାଣୁରଙ୍କ ମୁଷ୍ଟିଯୁଦ୍ଧର ବର୍ଣ୍ଣନା ସେପରି କରିବ ନାହିଁ ।

"ଛାଡ଼ି ବନ୍ଧୁ ନଗର ଚହଳ
ଯିବା ଚାଲ ଯେଉଁ ସ୍ଥାନେ  ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ, ମୁଖେନ୍ଦୁ ବିମଳ
ଯାହାଙ୍କର ଚିତ୍ତାକାଶେ ସର୍ବଦା ଉଜ୍ଜ୍ୱଳ ।"

ଏହି ପଦ ସଙ୍ଗେ ମିଳାଇ ଦେଖ–

''କୁସୁମ ସମୟ ହୋଇଲା ଉଦୟ ଦକ୍ଷିଣା ପବନ ବୋହିଲା
କାମଦେବଦୂତ ହୋଇ ମହାମତ୍ତ ପଞ୍ଚମ ସ୍ୱରରେ କହିଲା –
କନ୍ଦର୍ପ, ଦର୍ପ ହୋଇଲା ଅତିଶୟ
କୁସୁମ ବିଶିଖ କରିବାକୁ ଲାଖ କାମ କାମିନୀ କଲେ ଭୟ ।''

ଏବେ ବିଚାରକର କେଉଁ ବର୍ଣ୍ଣନା ଆମ୍ଭମାନଙ୍କୁ ସ୍ପଷ୍ଟତର ଭାବରେ ପ୍ରକୃତିର ପ୍ରତିବେଶୀତା ଦାନ କରିବାରେ ସମର୍ଥ । ରାଧାନାଥଙ୍କ 'ଶିବାଜୀଙ୍କ ଉତ୍ସାହ ବାକ୍ୟ' ଓ ମଧୁସୂଦନଙ୍କ 'ଶରତ ପ୍ରଭାତ'ରୁ ଆଗରେ ଯେଉଁ ଦୁଇଗୋଟି ପଦ ଉଦ୍ଧାର କରାଗଲା, ସେ ସବୁର ବିଷୟବସ୍ତୁ ଆମର ସାମାଜିକ ଓ ରାଜନୈତିକ ଜୀବନ ସଙ୍ଗେ ଘନିଷ୍ଠ ଭାବରେ ସଂପୃକ୍ତ ଥିବାରୁ ଆମ୍ଭମାନଙ୍କ ଚିତ୍ତକୁ ସ୍ପର୍ଶ କରିବା ସ୍ୱାଭାବିକ । କିନ୍ତୁ ରାଧାନାଥଙ୍କ 'ଭାରତଈଶ୍ୱରୀ' କବିତାଟି ନିଆଯାଉ । ଆଜି ସ୍ୱାଧୀନ ଭାରତରେ ସେ ଦିନର ଭାରତ-ସାମ୍ରାଜ୍ଞୀ ଭିକ୍ଟୋରିଆଙ୍କ ନାମ ପ୍ରିୟ ବା ସମ୍ମାନିତ ହେବାର ନୁହେଁ । ତଥାପି ରାଧାନାଥଙ୍କ କବିତାର ମାଧୁରୀ ଉପଭୋଗ୍ୟ –

ସୁନୀଳ ସାଗରେ ରାଜେ ଶ୍ୱେତଦ୍ୱୀପ / ଅଜେୟ ଜଗତେ ନାମ ବ୍ରିଟାନୀୟା
ପ୍ରାକାର ଯାହାର ନୀଳ ପାରାବାର / ଅଖିଳ ଅବନୀ ମଧ୍ୟେ ମାନନୀୟା
ଅଖିଳ ଅବନୀପତି ପୂଜନୀୟା ।

ଏ କବିତାର ମାଧୁରୀ ବିଷୟ-ନିରପେକ୍ଷ। ଏହାର ସୁଷମା, ଏହାର ସରଳ, ନିରାଡ଼ମ୍ବର, ଅଥଚ ଯାଥାର୍ଥ୍ୟ ଯୁକ୍ତ ପ୍ରକାଶଭଙ୍ଗୀରେ। ଏହି ଭାବରେ ସାହିତ୍ୟକୁ ଜୀବନର ନିକଟତର କରି ଓ ରଚନାରୀତିକୁ ଅଳଂକାରର ଦୁରଧିଗମ୍ୟତାରୁ ମୁକ୍ତିଦେଇ, ମନୁଷ୍ୟର ଚିରନ୍ତନ ଆନୁଷଙ୍ଗିକ ଯେଉଁ ପ୍ରକୃତି, ଦେଶ ଓ ସମାଜ– ସେ ସବୁକୁ ସାହିତ୍ୟରେ ମନୁଷ୍ୟର ପଟ୍ଟଭୂମିରୂପେ ଓ ସ୍ୱତନ୍ତ୍ର ଭାବରେ ଯଥାଯୋଗ୍ୟ ସ୍ଥାନ ଦେଇ ରାଧାନାଥ ଓ ମଧୁସୂଦନ ପ୍ରକୃତରେ ଓଡ଼ିଆ ସାହିତ୍ୟରେ ଏକ ନବଯୁଗ ଆରମ୍ଭକଲେ । ଅବଶ୍ୟ ଏଥିପାଇଁ ମୌଳିକ ପ୍ରତିଭା କେବଳ ଦାୟୀ ନୁହେଁ । ଏ ଦୁହେଁ ଇଂରାଜି ଭାଷାରେ ପଣ୍ଡିତ ଥିଲେ, ସଂସ୍କୃତ ବଙ୍ଗଳା ତ ଜାଣିବାରଇ କଥା । ଏମାନଙ୍କର ସୃଷ୍ଟି ଯେ ବିଶେଷ ଭାବରେ ଇଂରାଜୀ ଓ ବଙ୍ଗଳା ଦ୍ୱାରା ପ୍ରଭାବିତ ହୋଇଛି, ତାହା ଧରିନେବାରେ କିଛି ବିପଦ ନାହିଁ ।

ପରେ ଏମାନଙ୍କ ସଙ୍ଗେ ଯୋଗଦେଲେ ଫକୀରମୋହନ ସେନାପତି । ସେନାପତିଙ୍କ ସମ୍ବନ୍ଧରେ ଏଭଳି କହିଲେ ଯଥେଷ୍ଟ ହେବ ଯେ, ରାଧାନାଥ, ମଧୁସୂଦନ ଯଦି ଓଡ଼ିଆ ଭାଷାରେ ଆଦୌ ଲେଖିନଥାନ୍ତେ, ତେବେ ବେଶି କିଛି କ୍ଷତି ହୋଇ-

ନଥାନ୍ତା; କିନ୍ତୁ ଫକୀରମୋହନ ଅବତୀର୍ଣ୍ଣ ନ ହୋଇଥିଲେ, ଓଡ଼ିଆ ଭାଷା ଆଜି ଯେପରି ଭାବରେ ଠିଆ ହୋଇଛି, ସେପରି ଭାବରେ ନଥାନ୍ତା । ସେନାପତି କେବଳ ଯେ ଓଡ଼ିଆ ଭାଷାକୁ ମରଣମୁହଁରୁ ବଞ୍ଚାଇଲେ ସେତିକି ନୁହେଁ; ଲୋକ-କଥିତ ଅପାଂକ୍ତେୟ ଉପହସିତ ଭାଷାରେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟିକରି ଏ ଭାଷାର ଆତ୍ମ-ମର୍ଯ୍ୟାଦା ସେ ପ୍ରତିଷ୍ଠା କରିଅଛନ୍ତି । ରାଧାନାଥ ଓ ମଧୁସୂଦନଙ୍କ ସୃଷ୍ଟିର ବସ୍ତୁ ଓ ରଚନା-ରୀତି ଆମର ରାଷ୍ଟ୍ରୀୟ ଓ ସାମାଜିକ ଜୀବନକୁ ସ୍ପର୍ଶ କରୁଛି ସତ, କିନ୍ତୁ ସେମାନେ ଆମର ନିତ୍ୟ-ପରିଚିତ ଦୈନନ୍ଦିନ ଜୀବନଠାରୁ ତଥାପି ଦୂରରେ । କିନ୍ତୁ ସେନାପତିଙ୍କ ସୃଷ୍ଟିରେ ସମାଜ ଓ ସାହିତ୍ୟ ଏକ ହୋଇଯାଇଛନ୍ତି । ତାଙ୍କ ଉପନ୍ୟାସରେ ନାୟକ-ନାୟିକା ଆମେଇ ଓ ଆମରି ଭାଷାହିଁ ସେମାନେ ବ୍ୟବହାର କରୁଛନ୍ତି । ଓଡ଼ିଆ-ସାହିତ୍ୟରେ ଯାହା କେବେ ନଥିଲା, ସେନାପତି ତାହାହିଁ ଆମକୁ ଦେଇଗଲେ । ସେନାପତିଙ୍କ ଦାନ ଅପୂର୍ବ ।

୧୮୮୦ରେ ଯେଉଁ ସ୍ରୋତ ବହିବାକୁ ଆରମ୍ଭ କଲା, ପ୍ରାୟ ୩୦ବର୍ଷକାଳ ଓଡ଼ିଆ ସାହିତ୍ୟକୁ ଯାହା ଦେବାର ଦେଇ, ସେ ସ୍ରୋତ ୧୯୧୨ ଆଡ଼କୁ ଶୁଖିବାକୁ ଆରମ୍ଭ କଲା । ବର୍ତ୍ତମାନ ଆଉ ଏକ ସ୍ରୋତ ପ୍ରବାହିତ ହେଲା, ଗୋପବନ୍ଧୁ ପ୍ରତିଷ୍ଠିତ ସତ୍ୟବାଦୀ ବିହାରରୁ । ଗୋପବନ୍ଧୁ ନିଜେ କବି ଥିଲେ ଏବଂ ତାଙ୍କର ପୁଣ୍ୟ ସରସ ପ୍ରାଣର ଚୁମ୍ବକ ସ୍ପର୍ଶରେ ଅନେକଙ୍କ ପ୍ରାଣରେ ଅପୂର୍ବ କାବ୍ୟରସର ଉତ୍ସ ଫୁଟିଉଠିଲା; ଗୋପବନ୍ଧୁଙ୍କଠାରୁ ବିଚ୍ଛିନ୍ନ ହେଲା ସଙ୍ଗେ ସଙ୍ଗେ ସେହି ଉତ୍ସ ସବୁ ମଧ୍ୟ ବନ୍ଦ ହୋଇ-ପଡ଼ିଲା । ମାତ୍ର ୫।୬ବର୍ଷ ତିଷ୍ଠିବା ପରେ ଅସହଯୋଗର ବିପୁଳ ବନ୍ୟାରେ ଗୋପବନ୍ଧୁଙ୍କ ବକୁଳାଶ୍ରମ ଭାଙ୍ଗିଗଲା ଓ ସେଥି ସଙ୍ଗେ ସଙ୍ଗେ ଏହି ଦଳର ସାହିତ୍ୟ-ସାଧନା ବି ଉଭେଇଗଲା । ଏମାନେ ଲେଖିଛନ୍ତି ଅତ୍ୟଳ୍ପ, କିନ୍ତୁ ସେହି ଅତ୍ୟଳ୍ପ ଭିତରେ ଫୁଟିଛି ଏମାନଙ୍କର ମୌଳିକତା । ରଚନା-ରୀତିରେ ଏମାନେ ସ୍ପଷ୍ଟତଃ ରାଧାନାଥଙ୍କର ବିରୋଧୀ । ରାଧାନାଥଙ୍କ ପ୍ରଚଳିତ ଉପଧା-ମିଳନକୁ ଏମାନେ ଓଡ଼ିଶାର ସାହିତ୍ୟିକ ସଂସ୍କୃତିରେ ବୈଦେଶିକତା ବୋଲି ପ୍ରଚାର କରି ଆସିଅଛନ୍ତି । କିନ୍ତୁ ଏ ବିବାଦଟା ବଡ଼ କଥା ବୋଲି ମନେ ହୁଏନାହିଁ । ଗୋପବନ୍ଧୁ ରାଧାନାଥୀ ରୀତିରେହିଁ କବିତା-ଲେଖିଛନ୍ତି । କିନ୍ତୁ ସତ୍ୟବାଦୀ ସାହିତ୍ୟକୁ ସମ୍ମାନ ଦେବାକୁ ହୁଏ ଏହି କାରଣରୁ ଯେ, ଏମାନଙ୍କ କାବ୍ୟ କବିତା ଓ ନାଟକରେ ପ୍ରାଚୀନ ଐତିହାସିକ ଓଡ଼ିଆ ଜାତିର ଅନ୍ତରାତ୍ମା ପ୍ରଥମ କରି ପ୍ରକାଶ ଲାଭକଲା । ରାଧାନାଥ ବୈଦେଶିକ ଗଳ୍ପ ପାଇଁ ଓଡ଼ିଶାରେ ଇତିହାସ ଓ ପ୍ରକୃତିକୁ ମାତ୍ର ପୀଠିକା ରୂପେ ଗ୍ରହଣ କରିଛନ୍ତି ।

ସତ୍ୟବାଦୀ-ସାହିତ୍ୟରେ ଅସହଯୋଗ ଆନ୍ଦୋଳନ ଜାତିର ଭାବପ୍ରବଣତାକୁ

କର୍ମପ୍ରବଣତାରେ ପରିଣତ କରିବାକୁ ଚେଷ୍ଟା ଆଣିଲା । ଓଡ଼ିଶାର ସାହିତ୍ୟିକ ଅଭିବୃଦ୍ଧିରେ ଘୋର ବାଧା ଆସିଲା । ସତ୍ୟବାଦୀର କବି-ପଣ୍ଡିତଗଣ ସୂତାକାଟିବାରେ ଲାଗିଲେ । ଓଡ଼ିଆ ସାହିତ୍ୟରେ ଏକ ଅରାଜକତା ଆସିଲା । ଏଇ ଅବସରରେ ୧୯୨୨-୨୩ସାଲ ଆଡ଼ିକି ସାହିତ୍ୟକ୍ଷେତ୍ରରେ ଦେଖାଦେଲେ କେଇଜଣ, ସେମାନେ ରବୀନ୍ଦ୍ରିକ ଛନ୍ଦକୁ ଓଡ଼ିଆରେ ପ୍ରବିଷ୍ଟ କରାଇ କବି ଓ ଶିଳ୍ପୀ ନିଜର ଅନୁଭୂତିକୁ ନିଜସ୍ୱ ଭାଷାରେ ଅକୁତୋଭୟ ଭାବରେ ପ୍ରକାଶ କରିବାର ଯେଉଁ ଜନ୍ମଗତ ଅଧିକାର ଅଛି, ତାହା ପ୍ରତିଷ୍ଠିତ କଲେ । ଏମାନଙ୍କ ଭିତରୁ କୌଣସି କୌଣସି କବିଙ୍କର ରଚନା ଗୁଡ଼ିକ ଏକେ ଏକେ ଗୋଟିଏ ଗୋଟିଏ ରତ୍ନ । ସଂଯତ, ସୁଷମ, ଯଥାର୍ଥ, ପରିଚିତ ପଦାବଳିର ପ୍ରୟୋଗ ଭିତରେ 'ଅ. ରାୟ' ଅପୂର୍ବ କଳ୍ପନା, ଗଭୀର ଅନୁଭୂତି ଓ ପ୍ରଖର ଭାବୋଲ୍ଲାସ ଯେପରି ସୌଷ୍ଠବ ସହକାରେ ପ୍ରକାଶ କରିଛନ୍ତି, ତାହା ଉପଭୋଗ୍ୟ ଓ ପ୍ରଶଂସନୀୟ ।

ଏହା ପରେ ଆସିଛି ସାମ୍ୟବାଦର ଯୁଗ । ପୂର୍ବରେ କହିଛି ଯେ, ମନୁଷ୍ୟ ସର୍ବଦା ଈଶ୍ୱର, ପ୍ରକୃତି, ଦେଶ ଓ ସମାଜଦ୍ୱାରା ଘନିଷ୍ଠଭାବରେ ପରିବୃତ । ମନୁଷ୍ୟ ଏମାନଙ୍କ ଠାରୁ ଭିନ୍ନ ରହିନପାରେ । ମନୁଷ୍ୟକୁ ସମଗ୍ର ଭାବରେ ଦେଖିବାକୁ ଗଲେ, ମନୁଷ୍ୟ ସଙ୍ଗେ ଆମକୁ ଏମାନଙ୍କର ସଂପର୍କ ମଧ୍ୟ ବର୍ଣ୍ଣନା କରିବାକୁ ହେବ । ମନୁଷ୍ୟ ହେଲା ସାହିତ୍ୟର ସନାତନ ଉପାଦାନ । କୌଣସି କୌଣସି ଯୁଗ ବା କୌଣସି କୌଣସି କବିଙ୍କ ସାହିତ୍ୟରେ ମନୁଷ୍ୟ ସଙ୍ଗେ ଏହି ଆନୁଷଙ୍ଗିକ ଭିତରୁ ଗୋଟିଗୋଟିକର ହିଁ ପ୍ରାଧାନ୍ୟ ଦେଖାଯାଏ । ରାଧାନାଥଙ୍କ ସାହିତ୍ୟରେ ପ୍ରକୃତିର, ମଧୁସୂଦନଙ୍କ ସାହିତ୍ୟରେ ଈଶ୍ୱର ଏହିପରି ଭାବରେ ପ୍ରାଧାନ୍ୟ ଲାଭ କରିଛନ୍ତି । ସବୁଜ-କବିଙ୍କ ଭିତରେ କବିର ନିଜର ବ୍ୟକ୍ତିତ୍ୱହିଁ ପ୍ରାଧାନ୍ୟ ଲାଭ କରିଛି । ଏବକୁ କିଛି କାଳ ଧରି ସାହିତ୍ୟରେ ବଡ଼ ପ୍ରାଧାନ୍ୟ ଲାଭ କରିଛି 'ସମାଜ' । ବିଶ୍ୱଧ୍ୱଂସକାରୀ ଦୁଇଦୁଇଟି ମହାଯୁଦ୍ଧ ଗତ ୪୦ବର୍ଷ ଭିତରେ ଘଟିଯାଇଛି । ମନୁଷ୍ୟର କୌଣସି ଆଶା ରଖିବାର ଅଧିକାର ଯେପରି ଚାଲିଯାଇଛି । ଏହି ବିକଟ ପରିସ୍ଥିତିରେ କବିତା ହୋଇଛି ଛନ୍ଦହୀନ, ଅସଂଲଗ୍ନ ଓ ବିକଟ । ସେଥିରେ ମଧ୍ୟ ଫୁଟୁଛି ହିଂସାର ରକ୍ତବୁଭୁକ୍ଷୁ ଦଶନାବଳି । ପ୍ରଥମ ମହାଯୁଦ୍ଧ ପରେ ପରେ ଇଂରେଜ ସାହିତ୍ୟରେ ଏଇ ଛନ୍ଦହୀନ, ଅବୋଧ୍ୟ କବିତା ଦେଖାଦେଲା ବିଧ୍ୱସ୍ତ ବିକଳ ଇଂଲଣ୍ଡର ପ୍ରତୀକରୂପେ । ଏଇ ସମୟରେ ଫ୍ରୟେଡ୍‌ଙ୍କର ଅବଚେତନତତ୍ତ୍ୱ ପ୍ରଚାରିତ ହୋଇ ଲେଖକମାନଙ୍କୁ ଅଧିକାର ଦେଲା ସେମାନଙ୍କର ଚିତ୍ତ-ଉପବନର ପୁଷ୍ପ ସମ୍ଭାର ସଙ୍ଗେ କଂପୋଷ୍ଟ ପିଡ଼ିଆ ଓ କୀଟପତଙ୍ଗର ଜୀବନସଂଗ୍ରାମ ମଧ୍ୟ ପାଠକ ଆଗରେ ପରିବେଷଣ କରିବାକୁ । ଏଇ ପ୍ରବାହର ଗତି ଏ ପର୍ଯ୍ୟନ୍ତ ମନ୍ଦୀଭୂତ ହୋଇ-

ନାହିଁ । ରବୀନ୍ଦ୍ରୋତ୍ତର ବଙ୍ଗଳା ସାହିତ୍ୟ ଏଇ ପ୍ରକାର କବିତା ଓ ସାହିତ୍ୟରେ ଭର୍ତ୍ତି । ସେହିମାନଙ୍କ ଅନୁଭୂତିରେ ଓଡ଼ିଆରେ ଏଇ ଧରଣର କବିତା ଅନେକେ ଲେଖିଛନ୍ତି ।

ଗତ ୬୦ବର୍ଷ ଭିତରେ ଓଡ଼ିଆ ସାହିତ୍ୟରେ ଯେଉଁ ଭିନ୍ନ ଭିନ୍ନ ସ୍ରୋତ ପ୍ରବାହିତ ହୋଇ ଭାଷାକୁ ନୂତନ ଉର୍ବରତା ଦେଇଛନ୍ତି, ତାହାହିଁ ଠିକେ ଠିକେ କହିଗଲି । ଏଇ ସମୟ ଭିତରେ ଉତ୍କଳ-ସରସ୍ୱତୀଙ୍କର ରୂପ ପରିବର୍ତ୍ତନ ହୋଇଯାଇଛି ଏବଂ ହୋଇ ଭଲହୋଇଛି । ନୂତନତାର ନିନ୍ଦାବାଦୀ ଯେ ଏକ ଦଳ ଅଛନ୍ତି, ସେମାନଙ୍କର ଚିତ୍କାର ବେଳେ ବେଳେ ଶୁଣାଯାଏ । କିନ୍ତୁ ସାହିତ୍ୟକୁ ଯଦି ଆମେ ପ୍ରବାହମାନ ସମାଜର ଦର୍ପଣ ବୋଲି ଧରୁଁ, ତେବେ ଓଡ଼ିଆ ସାହିତ୍ୟଟା ଅଷ୍ଟାଦଶ ଶତାବ୍ଦୀରେ ଯାହା ଥିଲା, ବର୍ତ୍ତମାନ ବି ସେହିପରି କିପରି ରହିବ, କଳ୍ପନା କରିହେଉନି । ମୋର ମନେହୁଏ, ନୂତନ ଯୁଗ ଯେ ପର୍ଯ୍ୟନ୍ତ ଅତୀତର ଛାପା ନମାରିଛି, ସେ ପର୍ଯ୍ୟନ୍ତ ଏହାର ନିନ୍ଦୁକ ଥିବେଇ ଥିବେ । ମୃତ ଓ ଅତୀତର ଦୋଷ ଓ ଜୀବିତ ଓ ନୂତନର ଗୁଣ ଲୋକଙ୍କ ଆଖିକି ସହଜରେ ଦେଖାଯାଏନାହିଁ ।

--

---

ଆକାଶବାଣୀ ପ୍ରସାରିକା, ଜୁଲାଇ, ୧୯୫୭ ।

# ଓଡ଼ିଆ ସାହିତ୍ୟ ପରିଚୟ

(ସମାଲୋଚନାର ପ୍ରତିବାଦ)

ଆକସ୍ମିକ ଭାବରେ 'ଧରିତ୍ରୀ' ପତ୍ରିକାର ଏକ ସଂଖ୍ୟା (୧ମ ବର୍ଷ ୩ୟ-୪ର୍ଥ) ପାଇ ମଲାଟ ଓଲଟାଇ ଦିଏତ, ଦେଖେଁ ଯେ ମୋ' ପ୍ରତି ଏକ ଦୀର୍ଘ ଆକ୍ରମଣକୁ ପ୍ରଥମପୃଷ୍ଠାରେ ସ୍ଥାନ ଦେଇ ପତ୍ରିକାର ସମ୍ପାଦିକା ମତେ ଗୌରବାନ୍ୱିତ କରିଛନ୍ତି । ଜାତୀୟ ସାହିତ୍ୟ ଏକାଡ଼େମୀ ପକ୍ଷରୁ ପ୍ରକାଶିତ 'ସମସାମୟିକ ଭାରତୀୟ ସାହିତ୍ୟ' ନାମକ ପୁସ୍ତକରେ ମୋର ଓଡ଼ିଆ ସାହିତ୍ୟ ଉପରେ ପ୍ରକାଶିତ ପ୍ରବନ୍ଧଟି ଆକ୍ରମଣର ଶରବ୍ୟ । ଶରକ୍ଷେପକ ହେଉଛନ୍ତି ମୋର କଲ୍ୟାଣଭାଜନ କମ୍ରେଡ୍ ଗୁରୁଚରଣ ପଟ୍ଟନାୟକ । ପତ୍ରିକାର ସମ୍ପାଦିକା ତ ମୋର ଜାଣି ସ୍ନେହଭାଜନ । ତେଣୁ ଏ ବାଣ ମତେ ଯେତେ ବାଧିବାର କଥା ସେତେ ବାଧିନି, ବରଂ କିଛିଟା ଉପଭୋଗ୍ୟ ବୋଧ ହୋଇଛି– ଏହା କହିଲେ ଆକ୍ରମଣକାରୀମାନଙ୍କ ମନରେ ଦୁଃଖ ହେବ କି ?

ମୋ' ପ୍ରବନ୍ଧର ଏପରି ଯେ ଗୋଟିଏ 'ସମାଲୋଚନା' ହେଲା ଏତେଦିନେ, ଏଥିରେ ମୁଁ ବାସ୍ତବିକ୍ ଖୁସି । କିନ୍ତୁ ଏ ତ ସମାଲୋଚନା ନୁହେ ପ୍ରକୃତରେ; ଇଏ କେବଳ ଆକ୍ରମଣ । ସୁଧାରିବାର ଚେଷ୍ଟା ଏଥିରେ ନାହିଁ, ଅଛି କେବଳ କ୍ଷତିକରିବାର, ହାଡ଼ ଭାଙ୍ଗିବାର । ଶ୍ରୀଯୁକ୍ତ ପଟ୍ଟନାୟକ ମନେରଖିଲେ ଭଲହେବ ଯେ ଅନ୍ତତଃ ସାହିତ୍ୟରେ ଏ ପ୍ରକାର ଆଲୋଚନାର କୌଣସି ମୂଲ୍ୟ ନ ଥାଏ । ଅବଶ୍ୟ ରାଜନୀତି କ୍ଷେତ୍ରରେ ଏ ପ୍ରକାର ଜାନୁଭଙ୍ଗ ପ୍ରକ୍ରିୟା ସର୍ବସମ୍ମତ ଉପାୟ । କିନ୍ତୁ ରାଜନୀତି ଓ ସାହିତ୍ୟ ଭିତରେ ଆମେ ଆଉ କ'ଣ କିଛି ପାର୍ଥକ୍ୟ ରଖିବାନି ? ଏକାକାର କରିବାକୁ ଯାଇ ଆମେ ଦେଶର କଲ୍ୟାଣ କରିବା କି ?

ଯାହାହେଉ, ଆକ୍ରମଣମୂଳକ ହେଉପଛେ, ଗୁରୁଚରଣ ବାବୁଙ୍କ ଆଲୋଚନାକୁ ମୁଁ ସ୍ୱାଗତ କରୁଛି । କାରଣ ଏହା ମତେ ଏକ ସୁଯୋଗ ଦେଲା ମୋର ଦୃଷ୍ଟିକୋଣକୁ ଓଡ଼ିଶାର ପାଠକଙ୍କ ନିକଟରେ ବୁଝେଇଦେବାପାଇଁ । ପୁଣି ମୋର ସେଇ ପ୍ରବନ୍ଧଟି ବର୍ତ୍ତମାନ ଦ୍ୱିତୀୟ ସଂସ୍କରଣ ପାଇଁ ପ୍ରସ୍ତୁତ କରାଯାଉଛି । ସଂଶୋଧିତ କରି ପଠାଇ ଥିଲେ ମଧ୍ୟ, ବର୍ତ୍ତମାନ ବୋଧହୁଏ ସମୟ ଅଛି, ଯଦି କିଛି ପରିବର୍ତ୍ତନ ଦରକାର ତାହା ମିଶାଇ ଦେଇପାରେ । ଦୁଃଖର ବିଷୟ ଏହି ଯେ, ଶ୍ରୀଯୁକ୍ତ ପଟ୍ଟନାୟକଙ୍କ ଲେଖାରୁ ମୁଁ ମୋ' ପିଠିରେ ଥୋଡ଼ାଏ ଲାଠି ପ୍ରହାର ଛଡ଼ା ଅଧିକ କିଛି ପାଇଲିନାହିଁ ।

ପ୍ରଥମରୁ କହିରଖେ ଯେ, ସ୍ତୁତି କରିବା ମୋର ଅଭ୍ୟାସ ନୁହେଁ ବା ନିନ୍ଦା କରିବା ମୋର ଲକ୍ଷ୍ୟ ନୁହେଁ । ସାହିତ୍ୟ କ୍ଷେତ୍ରରେ ଏ ସବୁର ସ୍ଥାୟିତ୍ୱ ଯେ ନିତାନ୍ତ କ୍ଷଣିକ, ସେ ସଚେତନତା କମ୍ରେଡ଼ଙ୍କର ନ ଥାଇପାରେ, ମୋର ଅଛି । ମୁଁ କାହିଁକି କ'ଣ ଲେଖିବାକୁ ଯିବି, ଯାହା ଦଶବର୍ଷ ବା କୋଡ଼ିଏ ବର୍ଷ କଥା ଛାଡ଼, ପଚାଶ କି ଶହେ ବର୍ଷ ପରେ ମଧ୍ୟ ମିଥ୍ୟା ପ୍ରମାଣିତ ହେବ ? ଅନ୍ତତଃ ମୁଁ ଜାଣିଶୁଣି ତା' କାହିଁକି କରିବାକୁ ଯିବି, କେବଳ ସାମୟିକ ଉତ୍ତେଜନା ଓ ଜୟମନୋଭାବ ପାଇଁ ? ମୋର ଏହି ଦୃଢ଼ ବିଶ୍ୱାସ ଯେ ମୋର ପ୍ରବନ୍ଧ କାହାର ନିନ୍ଦା ବା ସ୍ତୁତି ଗାଇବାକୁ ଯାଇନି – ତାହା ସମସାମୟିକ ଓଡ଼ିଆ ସାହିତ୍ୟର ଏକ ଯଥାର୍ଥ ଅବଧାରଣାର ଚେଷ୍ଟା । ଏହା ଜଣେ ସମାଲୋଚକର ନିକିତିରେ କେବଳ ଖାଣ୍ଟି ସାହିତ୍ୟର ତଉଲ । ଦଳ, ଗୋଷ୍ଠୀ, ରାଜନୈତିକ ଆନ୍ଦୋଳନ ବା ମତବାଦ ଏଥିରେ ସମ୍ମାନାସ୍ପଦ ଆସନ ପାଇନାହାନ୍ତି ବୋଲି କେହି ଦୁଃଖିତ ହେଲେ ସେଥିକି ମୁଁ ନାଚାର । ମୁଁ ମନେକରେ ସେମାନଙ୍କର ସ୍ଥାନ ଅନ୍ୟତ୍ର । କମ୍ରେଡ଼ ପଟ୍ଟନାୟକ ସାହିତ୍ୟ ଓ ରାଜନୀତିକୁ ଅଲଗା ଅଲଗା କରି ଦେଖିପାରୁନଥିବାରୁ ମୋ' ପ୍ରତି ଅକାରଣ ଆକ୍ରମଣ କରିଛନ୍ତି ବୋଲି ମୋର ଆଶଂକା ।

ମୋଟ ଉପରେ ତାଙ୍କ ଆଲୋଚନାରେ ଶ୍ରୀ ପଟ୍ଟନାୟକ ପ୍ରମାଣ କରେଇବାକୁ ଯାଇଛନ୍ତି ଯେ ମୁଁ ମୋ' ପ୍ରବନ୍ଧରେ ସତ୍ୟବାଦୀ ଯୁଗ ସାହିତ୍ୟର, ସବୁଜ ଦଳ ସାହିତ୍ୟର ଓ ବାମପନ୍ଥୀ ସାହିତ୍ୟର ନିନ୍ଦା କରିଛି । ଯା ଛଡ଼ା ଗୋଟାଏ ଗୋଟାଏ ଶବ୍ଦ ନେଇ ମଧ୍ୟ ସେ ଗୁଡ଼ାଏ ବକିଛନ୍ତି ମତେ । ସେଗୁଡ଼ିକ ହେଉଛି, 'ଭାଣ୍ଡାଲିଜମ୍', 'ଅଣ୍ଡର ଗ୍ରାଜୁଏଟ୍', 'ଟେକ୍ସବୁକ୍' ଇତ୍ୟାଦି । ମୁଁ ବର୍ତ୍ତମାନ ସେଗୁଡ଼ିକର ଉତ୍ତର ଦେବାକୁ ଚେଷ୍ଟାକରିବି । କମ୍ରେଡ଼ଙ୍କ ପ୍ରାଣକୁ ଯାହା ବେଶି ବାଧି ଥିବା ସ୍ୱାଭାବିକ, ସେହି ବାମପନ୍ଥୀ ସାହିତ୍ୟର କଥା ପ୍ରଥମେ ଆରମ୍ଭ କଲେ ଭଲ ହେବ ନାହିଁ କି ?

ମୋ' ପ୍ରବନ୍ଧରେ ବାମପନ୍ଥୀ ସାହିତ୍ୟିକମାନଙ୍କୁ 'ପିପ୍‌ଲ୍‌ସ୍ ପୋଏଟ୍' ଓ 'ପ୍ରଗ୍ରେସିଭ୍' ବୋଲି ସେମାନେ ନିଜେ ନିଜକୁ ପରିଚିତ କରାନ୍ତି ବୋଲି କହିଛି । ଏହା କ'ଣ ମୁଁ ମିଥ୍ୟା କହିଛି ? ଏ ଅଭିଧା କ'ଣ ମୋ–କୃତ ? ମୁଁ ଯାକୁ ବାମପନ୍ଥୀ ସାହିତ୍ୟିକମାନଙ୍କର ଆଲୋଚନାରୁହିଁ ଗ୍ରହଣ କରିଛି । ଆଉ, ସାହିତ୍ୟ-ଐତିହାସିକ ଏମାନଙ୍କର ଏହି ସ୍ୱ-ପ୍ରତିଷ୍ଠିତ ଦାବିକୁ ବିନା ବିଚାରରେ ଗ୍ରହଣ କରିନେବ, ଏଇ କ'ଣ କମ୍ରେଡ଼ଙ୍କର ମତ ?

ଜୀବନପରି ସାହିତ୍ୟ ଓତପ୍ରୋତ ଓ ବିଶ୍ୱବ୍ୟାପ୍ତ । ସାହିତ୍ୟରେ ବାମପନ୍ଥା କ'ଣ, ଦକ୍ଷିଣ ପନ୍ଥା କ'ଣ, ଅଗ୍ର କ'ଣ, ପଶ୍ଚାତ କ'ଣ, ମୁଁ ଏପର୍ଯ୍ୟନ୍ତ ବୁଝିପାରୁନାହିଁ ।

ଶ୍ରୀଯୁକ୍ତ 'କ' ଏବେ ନିଜକୁ 'ପ୍ରଗତିବାଦୀ' କବି ବୋଲି ଜାହିର କରୁଛନ୍ତି ଏବଂ ସେ ଓ ତାଙ୍କର ବନ୍ଧୁମାନେ ତାହା ଦାବୀ କରୁଛନ୍ତି, ପ୍ରଚାର କରୁଛନ୍ତି; କ-କବିଙ୍କର ସେହି ଦାବି ଗ୍ରହଣ କରିବାକୁ । ଧର, ଆମେ ତାହା ଗ୍ରହଣକଲୁ ବାଧ୍ୟ ହୋଇ, ତେବେ ପ୍ରଶ୍ନ ତ ହୋଇପାରେ ଯେ 'କ' ଯଦି 'ପ୍ରଗତିବାଦୀ' କବି ହେଲେ, 'କାଳିଦାସ' କ'ଣ 'ପଶ୍ଚାତ୍‌ଗତି କବି' ? କବି 'କ'ଙ୍କ ପ୍ରଗତିଟା କେଉଁଠି ? ସେହିପରି 'ପିପ୍‌ଲସ୍ ପୋଏଟ୍' ବା 'ଗଣକବି'ର କଥା । କବି 'ଖ' 'ପିପ୍‌ଲସ୍ ପୋଏଟ୍' ବା 'ଗଣକବି' ବୋଲି ନିଜକୁ ପ୍ରଚାର କରୁଛନ୍ତି । ଭଲ କଥା । ତେବେ କଥାଟାର ପ୍ରକୃତ ତାତ୍‌ପର୍ଯ୍ୟ ଧରାଯାଉ । କେବଳ 'ଖ' ତ 'ପିପ୍‌ଲସ୍ ପୋଏଟ୍' ହୋଇନପାରନ୍ତି । ଜାତୀୟକବି ମାତ୍ରେଇ ଜନତାର କବି । କେବଳ 'ଖ' କ'ଣ 'ପିପଲ୍' ବା ଲୋକଙ୍କ ପାଇଁ ଲେଖନ୍ତି, ଆଉ ସାରଳାଦାସଠୁ ନୀଳକଣ୍ଠ ଦାସ ପର୍ଯ୍ୟନ୍ତ ଅନ୍ୟ କବିମାନେ କ'ଣ ପଶୁପକ୍ଷୀ ପାଇଁ ଲେଖିଆସିଛନ୍ତି ? ଡ଼ାୟାଲେକ୍‌ଟିକାଲ୍ ମେଟେରିୟାଲିଜିମ୍‌ର ଉପାସକମାନେ ଡାୟାଲେକ୍‌ଟିକସ୍ ବା ତର୍କଶାସ୍ତ୍ରଟାକୁ ନିଜ କର୍ମ ଓ ବାକ୍ୟ ପ୍ରତି ପ୍ରୟୋଗ କରନ୍ତୁ, ଦୟାକରି । ଷାଠିଏ ବର୍ଷ ତଳେ ଫକୀରମୋହନ ଓଡ଼ିଆ ଚଷାର ଦୁର୍ଦ୍ଦଶା ଯେପରି ବର୍ଣ୍ଣନା କରିଯାଇଛନ୍ତି, ଯେପରି ପ୍ରାଣପୂର୍ଣ୍ଣ ସମ-ବେଦନାରେ ସେ କବିତା ଭରା, କୌଣସି ସାମ୍ୟବାଦୀ କବି ତା'ଠୁ ଅଧିକା କରିପାରିନାହାନ୍ତି । ତେଣୁ 'ପ୍ରଗତି' ଦାବିର ଯଥାର୍ଥତା କେଉଁଠି ? କେବଳ ହାଣ, ମାର, ଧ୍ୱଂସକର– ଏଇପରି ଗୁଡ଼ାଏ ଜାର୍ଗନ୍ ବ୍ୟବହାର କଲେଇ କି ସାହିତ୍ୟକୁ ହୋଇଗଲା 'ନୂତନ' ଦାନ ?

ଭାରତବର୍ଷରେ ପଦପଦବୀର ମୋହ ରକ୍ତଗତ । ଏଠି ଆମେ କେବଳ 'କବି' ଶବ୍ଦରେ ସନ୍ତୁଷ୍ଟ ନୋହି, 'କବିବର', 'କବିଚନ୍ଦ୍ର', 'କବିସୂର୍ଯ୍ୟ' ସବୁ ସୃଷ୍ଟି କରୁ । 'ପ୍ରଗତିବାଦୀ କବି' ବା 'ପିପ୍‌ଲସ୍ ପୋଏଟ୍' ଏହି ଜାତୀୟ ଦୁର୍ବଳତାର ପ୍ରତୀକ ବୋଲି ମୋର ଆଶଙ୍କା । ପାଶ୍ଚାତ୍ୟ ଦେଶମାନଙ୍କରେ କିନ୍ତୁ ହୋମର, ଦାନ୍ତେ ଓ ସେକ୍‌ସପିୟର୍ ମଧ୍ୟ କେବଳ ସାମାନ୍ୟ 'ପୋଏଟ୍' ବା 'କବି' । ପ୍ରକୃତ ଲୋକ-କବି ସ୍କଟ୍‌ଲାଣ୍ଡର ରବର୍ଟ୍ ବର୍ଣ୍ଣସ୍‌ଙ୍କୁ ମଧ୍ୟ କେହି 'ପିପ୍‌ଲସ୍ ପୋଏଟ୍' ବୋଲି ବର୍ଣ୍ଣନା କରେନା । କିନ୍ତୁ ଆମ ଦେଶରେ ଏ ମନୋବୃତ୍ତି କାହିଁକି ? ଏବଂ ଏ ଦାବିର ଯାଥାର୍ଥ୍ୟ ବା କେଉଁଠି ? ଏ ଦେଶରେ 'କବି' ଶବ୍ଦର ଅନ୍ତର୍ନିହିତ ଗୌରବ ନେଇ ଆମେ ସଚେତନ ନୋହୁ ବୋଲି ବୋଧହୁଏ ଏ ଗୋଳମାଳ । କୌଣସି ବ୍ୟକ୍ତିକୁ 'କବି' କହିଲେଇ ସେଠି କଥା ଶେଷ ହେବାର କଥା । 'କବି' ବୋଲି ଗଣ୍ୟ ହେବାହିଁ ଶ୍ରେଷ୍ଠ ଗୌରବ ହେବା ଉଚିତ । ଏଠି ତେଣୁ ବାମ, ଦକ୍ଷିଣ, ପ୍ରଗତି,

ପଶ୍ଚାତ୍-ଗତିର ପ୍ରଶ୍ନ ଉଠୁଛି କାହିଁକି ?

ତେଣୁ ମୁଁ ପନ୍ଥା ବା ଦାବିକୁ ଗ୍ରହଣ କରିବାରେ ପ୍ରୟାସ କରିନି – କିନ୍ତୁ ପ୍ରତିଭାକୁ ସମ୍ମାନ ଦେଇଛି । ସଚ୍ଚି ରାଉତରାୟ ଓ ଅନନ୍ତ ପଟ୍ଟନାୟକ କବି । ଏମାନେ ବାମପନ୍ଥୀ କି ଦକ୍ଷିଣପନ୍ଥୀ ତାହା ସାହିତ୍ୟ-ଐତିହାସିକର ବିଚାରର କଥା ନୁହେଁ । ଏମାନେ ଯେଉଁ ପରିମାଣରେ 'କବି', ସେହି ପରିମାଣରେ ହେବେ ସେମାନେ ମୋର, ଜାତିର ଓ ଦେଶର ନମସ୍ୟ । କିନ୍ତୁ ତାଙ୍କୁ ସମ୍ମାନ କରିବାର ଅର୍ଥ ତାଙ୍କ ଦଳ ବା ଗୋଷ୍ଠୀର ସମ୍ମାନ ନୁହେଁ । ବାମ, ଦକ୍ଷିଣର ବିଚାର କେବଳ ରାଜନୀତିରେ ।

ଶ୍ରୀ ପଟ୍ଟନାୟକ ଲେଖିଛନ୍ତି "ମୋଟ ଉପରେ ଯେତେବେଳେ କୌଣସି ଏକ ନୂଆ ପ୍ରଗତିଶୀଳ ଭାବ, ଆଦର୍ଶ ଆସିଛି, ଲେଖକ (ମୁଁ) ତାକୁ ସ୍ୱାଗତ କରିପାରି ନାହାନ୍ତି ।'' କମ୍ରେଡ଼ ମନେକରିବେ କି ତଥାକଥିତ ବାମପନ୍ଥୀ କବି ସଚି ରାଉତରାୟଙ୍କ ଅନେକ ବିଖ୍ୟାତ କବିତା ଓ ଗଳ୍ପ ମୋ'-ସଂପାଦିତ 'ଆରତି' ଓ 'ଶଂଖ'ରେ ପ୍ରଥମଥର ପାଇଁ ଆତ୍ମପ୍ରକାଶ କରିଛି ଓ କେତେକକୁ ମୁଁ ପତ୍ରିକାର ପ୍ରଥମପୃଷ୍ଠାରେ ଛାପିଛି । ତେଣୁ କମ୍ୟୁନିଷ୍ଟ୍ ଲେଖା ଛଡ଼ା ଆଉ ଯାହା କିଛି ସାହିତ୍ୟ-ଜଗତରେ ଅଛି ତାକୁ 'ବୁର୍ଜୁଆ' କହି ତାଚ୍ଛଲ୍ୟ କରୁଥିବା କମ୍ରେଡ଼୍ ନିଜ ମାନଦଣ୍ଡରେ ଅନ୍ୟକୁ ମାପିବାକୁ ଚେଷ୍ଟା କରନ୍ତୁ ନାହିଁ ।

ତା'ପରେ ଏଇ 'ପ୍ରଗତିଶୀଳ' ଭାବଧାରା ବା କ'ଣ ? ପୃଥିବୀରେ କଳା ଓ କବିତାର ଅନୁପମ ସୃଷ୍ଟି ହୋଇଛି ମନୁଷ୍ୟର ଚକ୍ଷୁ, କର୍ଣ୍ଣ, ଚିତ୍ତ, ବୁଦ୍ଧି ଓ ଆତ୍ମାର କ୍ଷୁଧାରୁ । କିନ୍ତୁ ଆଜି କେବଳ ଜଠର-କ୍ଷୁଧା ଉପରେ ଜୋର୍ ଦେଇ ଏଇ ତଥାକଥିତ ସାମ୍ୟ-ବାଦ ଓ ହିଂସାତ୍ମକ ପନ୍ଥାର ଯେଉଁ ପ୍ରଚାର ଚାଲିଛି, ଏଇ କି ଏକ 'ପ୍ରଗତିଶୀଳ' ଭାବଧାରା ଆଉ ଯାକୁ ନମାନିଯିବା ଅପରାଧ ? ଦେଶର ଚିନ୍ତାଶୀଳ ଲୋକଙ୍କର ଏଥିରେ କିଛି କହିବାର ନାହିଁ କି ? କମ୍ରେଡ଼ମାନେ ଦୟା କରି ଏତକ ନିରପେକ୍ଷ ଭାବରେ ବିଚାରକୁ ଆଣନ୍ତୁ ।

ବାମପନ୍ଥୀ 'ସାହିତ୍ୟ' ଓ ବାମପନ୍ଥୀ 'ଦଳର' ଅଙ୍ଗାଙ୍ଗୀ ସମ୍ବନ୍ଧର କଥା ମଧ୍ୟ ମୁଁ ଉଲ୍ଲେଖ କରିଛି – ଯାହା ଶ୍ରୀ ପଟ୍ଟନାୟକ ପ୍ରତିବାଦ କରିଛନ୍ତି । କିନ୍ତୁ କମ୍ରେଡ଼ ପଟ୍ଟନାୟକହିଁ ଯେ ମୋ' ପ୍ରବଂଧର ପ୍ରତିବାଦ କରିଛନ୍ତି, ସେଇତ ମୋ' ଅଭିମତର ପ୍ରକୃଷ୍ଟ ସମର୍ଥନ । ଶ୍ରୀ ପଟ୍ଟନାୟକ କ'ଣ 'ସାହିତ୍ୟିକ' ? ତାଙ୍କୁ ଆମେ ସମସ୍ତେ ରାଜନୀତି କ୍ଷେତ୍ରର ଏକ ବିଶିଷ୍ଟକର୍ମୀ ବୋଲି ଜାଣୁ, ଏବଂ ତାଙ୍କର ମତ ଓ ପନ୍ଥା ଯାହା ହେଉନା କାହିଁକି, ତାଙ୍କର ତ୍ୟାଗ ଓ ନିଷ୍ଠା ପାଇଁ ଆମେ ତାଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁଁ– ଅନ୍ତତଃ ମୁଁ କରେ । କିନ୍ତୁ ଏଇ ରାଜନୈତିକ ଦଳ-ନେତା ମୋ' ପ୍ରବଂଧର

ପ୍ରତିବାଦ କରିବାକୁ ଧାଇଁ ଆସିଲେ କାହିଁକି ? କିଛି ମାସ ତଳେ ନିଖିଳ ଏସିଆ ଲେଖକ ସମ୍ମିଳନୀ ନେଇ କଟକରେ ବେଶ୍ ଛୋଟକାଟ ସଂଗ୍ରାମ ଚାଲିଥିଲା । ଦିନେ ମୋ'-ଅଫିସକୁ ଏଇ ସଂପର୍କରେ ଶ୍ରୀଯୁକ୍ତ ହରମୋହନ ପଟ୍ଟନାୟକ, ଶ୍ରୀଯୁକ୍ତ ଦେବେନ୍ଦ୍ର ଶତପଥୀ ଓ ଜଣେ ଇନ୍‌ସୁରାନ୍‌ସ କର୍ମୀ ଆସି ପହଞ୍ଚିଲେ । ଏମାନେ ମୋଠୁ ଗୋଟାଏ ଦସ୍ତଖତ ଚାହୁଥିଲେ କୌଣସି ମିଟିଙ୍ଗ୍ ପାଇଁ, ମୁଁ ସାଙ୍ଗେ ସାଙ୍ଗେ ଦେଇ ଦେଲି । ମୋଠୁ ସେମାନେ ଗଲେ କବି ଶ୍ରୀ ରାଧାମୋହନ ଗଡ଼ନାୟକଙ୍କ ନିକଟକୁ । ସେଠି ସେମାନଙ୍କର ବାଦାନୁବାଦ ଚାଲିଲା । ଗଡ଼ନାୟକ ସେମାନଙ୍କୁ ସ୍ପଷ୍ଟ ପଚାରିଲେ– 'ଏସିଆର ଲେଖକ ସମ୍ମିଳନୀର ଆୟୋଜନ କରିବାକୁ ତମେ କିଏ ? ତମେ କେବେ କେଉଁଭାବରେ ସାହିତ୍ୟର ସେବା କରି ସାହିତ୍ୟିକ ହେଲ ? ତମେ ତ ରାଜନୈତିକ କର୍ମୀ, ଏ ସାହିତ୍ୟ କ୍ଷେତ୍ରରେ ତମର ପ୍ରବେଶର ଉଦ୍ଦେଶ୍ୟ କ'ଣ ?' ଆଜି କମ୍ରେଡ଼ ପଟ୍ଟନାୟକଙ୍କ ପ୍ରତିବାଦ ମଧ୍ୟ ସୂଚାଇଦେଉଛି ଯେ ତଥାକଥିତ ବାମପନ୍ଥୀ ସାହିତ୍ୟ ବାମପନ୍ଥୀ ରାଜନୈତିକ ଦଳରହିଁ ପବ୍‌ଲିଶିଟି ବିଭାଗ । ସାହିତ୍ୟର ନିରପେକ୍ଷ ଐତିହାସିକ ଯଦି ଏସବୁ ତା'ର ବିଚାରକୁ ନ ଆଣେ, ତେବେ ତା'ର ବିଶ୍ଳେଷଣର କିଛି ମୂଲ୍ୟ ରହିବକି ? ଏବଂ ଯିଏ ସତ୍ୟକୁ ଆଖି ରଖି କାମ କରିବାକୁ ଯିବ, ସେ ଦଳନିର୍ବିଶେଷରେ ଓ୍ୟାଜିବ୍ କଥା ନ କହିବ କାହିଁକି ? ଅବଶ୍ୟ ମାନୁଛି କମ୍ରେଡ଼ମାନଙ୍କ ଦେଶରେ ଏହା ହୁଏନା– ହେଲେ, ପରିଣତି କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପ୍ ବା ଗୁଳି ।

ପ୍ରାୟ ପାଞ୍ଚ ଛଅ ବର୍ଷ ତଳେ ଓଡ଼ିଆ ପତ୍ରିକାମାନଙ୍କରେ ଏପରି କୌଣସି ଗଳ୍ପ ପ୍ରକାଶିତ ହେଉନଥିଲା, ଯାହାର ନାୟକ ନ ଥିଲା କଟକର ରିକ୍‌ସାବାଲା । ଏବେ ଆଉ ସେ ସମବେଦନା କାହିଁକି ଆଖିରେ ପଡୁନି । କିନ୍ତୁ ମୁଁ ଜାଣିବାକୁ ଚାହେ, କଟକର କେତୋଟି ରିକ୍‌ସାବାଲା ତାଙ୍କୁ ନେଇ ଲେଖାହୋଇଥିବା ଏଇ ସାହିତ୍ୟ ପଢ଼ି ଉପଭୋଗ କଲେ ବା ଉଦ୍‌ବୁଦ୍ଧ ହେଲେ ? କେତେଜଣ ନିଷ୍ପେଷିତ ଶ୍ରମିକ ତଥାକଥିତ ସାମ୍ୟବାଦୀ କବିତା ପଢ଼ି ବୁଝିଛନ୍ତି ?– ସେଥିରୁ ଅନେକତ ପ୍ରଫେସରବି ବୁଝିବା କାଠିକର ପାଠ । ତେଣୁ ନିଜକୁ 'ଜନତାର କବି' ବୋଲି ଏଇ ଆତ୍ମ-ପ୍ରଚାରିତ ଦାବିର ତାତ୍‌ପର୍ଯ୍ୟ କ'ଣ– ଅନ୍ୟ ସମଗ୍ର ସାହିତ୍ୟକୁ ବୁର୍ଜୁଆ ବୋଲି ତାଚ୍ଛଲ୍ୟ କରି ?

ସାହିତ୍ୟର ନିରପେକ୍ଷ ସମାଲୋଚକ ବା ଐତିହାସିକ ତେଣୁ ସବୁ ବ୍ୟକ୍ତି ବା ଦଳର ଦାବି ବା ସିଦ୍ଧିକୁ ବିଚାରର ନିକିତିରେ ତଉଲି, ପ୍ରତ୍ୟେକକୁ ତା'ର ଯଥାର୍ଥ ମୂଲ୍ୟ ଦେବାକୁ ଚେଷ୍ଟାକରିବ । କେବଳ ଖାଣ୍ଟି ସାହିତ୍ୟିକ ମୂଲ୍ୟ ଛଡ଼ା ଏଠି ଅନ୍ୟ

କୌଣସି ବିଚାରର ସ୍ଥାନ ରହିବା ଉଚିତ୍ ନୁହେଁ । ମୁଁ ସାମାନ୍ୟଭାବରେ, ମୋର ଜ୍ଞାନ ଓ ବୁଦ୍ଧି ଓ ଦୃଷ୍ଟି ଅନୁଯାୟୀ ସେତିକି କରିବାକୁ ଚେଷ୍ଟା କରିଛି ମାତ୍ର । ତେଣୁ କମ୍ରେଡ଼୍ ପଟ୍ଟନାୟକ ମୋ' ପ୍ରତି ଅଯଥା ଦୋଷାରୋପ କରନ୍ତୁ ନାହିଁ ।

ବର୍ତ୍ତମାନ ସବୁଜ ସାହିତ୍ୟର କଥା କହେଁ ।

ଏଠି ମଧ୍ୟ ଅନ୍ନଦାଶଙ୍କର, କାଳିନ୍ଦୀ ବାବୁ ଓ ବୈକୁଣ୍ଠବାବୁଙ୍କର ବ୍ୟକ୍ତିଗତ ଦାନକୁ ମୁଁ ଯଥାଯଥ ସମ୍ମାନ ଦେଖାଇଛି । ଶ୍ରୀପଟ୍ଟନାୟକ ମୋ' ଲେଖାରୁ ଗୋଟାଏ ଗୋଟାଏ ଶବ୍ଦ ଓ ବାକ୍ୟକୁ ଛିଣ୍ଡାଇ ଆଣି ପୂର୍ବାପର ସଂଗତିହୀନ ଭାବରେ ଆଲୋଚନା କରି ବା ପଦର ପ୍ରକୃତ ବ୍ୟଞ୍ଜନା ବୁଝି ନ ପାରି ମୋ' ପ୍ରତି ଅନ୍ୟାୟ କରିଛନ୍ତି । ଏଇପରି ଦୁଇଟି ପଦ ହେଉଛି 'ଅଣ୍ଡର-ଗ୍ରାଜୁଏଟ୍' ଓ 'ପାଠ୍ୟପୁସ୍ତକ' । ଦୁଇଟିଯାକ ପଦ ଆଦୌ ତାଚ୍ଛଲ୍ୟବ୍ୟଞ୍ଜକ ନୁହେଁ । ସବୁଜ ଦଳ ଆରମ୍ଭ ହେଲା ଯେତେବେଳେ, ସେତେବେଳେ ତା'ର ସଭ୍ୟମାନେ ଅଣ୍ଡର ଗ୍ରାଜୁଏଟ୍ ଥିଲେ । ଏହା ଏକ ଗୌରବର କଥା । କମ୍ରେଡ଼୍ ପଟ୍ଟନାୟକ ଯେ କାହିଁକି ଏଥିରୁ ବିକୃତ ଅର୍ଥ ବାହାରକରିଛନ୍ତି ମୁଁ ବୁଝିପାରୁନି । ମୁଁ ଇଂରେଜୀ-ଅନଭିଜ୍ଞ, ସ୍ୱଳ୍ପ-ଶିକ୍ଷିତ ଗଙ୍ଗାଧର ମେହେରଙ୍କ ପ୍ରତିଭାକୁ ଦରିଦ୍ର ପ୍ରଜା  ମହାମହିମ ସମ୍ରାଟଙ୍କୁ ସାଲ୍ୟୁଟ୍ କଲା ପରି କରିଆସିଛି– ମୁଁ ପୁଣି ଯାଆନ୍ତି ନା କାଳିନ୍ଦୀଚରଣ ପାଣିଗ୍ରାହୀ ବି.ଏ., ବୈକୁଣ୍ଠ ପଟ୍ଟନାୟକ ଏମ୍.ଏ. ଓ ଅନ୍ନଦାଶଙ୍କର ରାୟ ଆଇ.ସି.ଏସ୍.ଙ୍କ 'ଅଣ୍ଡର ଗ୍ରାଜୁଏଟ୍' ବୋଲି ଥଟ୍ଟା କରିବାକୁ ? ହୁଏତ ମୁଁ କମନ୍‌ସେନ୍‌ସ ହରାଇଥାଏ ବା କମ୍ରେଡ଼୍ ପଟ୍ଟନାୟକ ।

ପୁଣି ଧର, ମୁଁ କହିଲି ''ଶ୍ରୀଯୁକ୍ତ ମହାପାତ୍ର ଉତ୍ତମ କବିତା ଓ ଉପନ୍ୟାସ ଦିନେ ଲେଖୁଥିଲେ । କିନ୍ତୁ ଏବେ ଦଶବର୍ଷ ହେଲା ସେ କାଠ ବ୍ୟବସାୟ କରୁଛନ୍ତି ବା ପ୍ରେସ୍ ଚଳାଉଛନ୍ତି ।'' ଏପରି କହିବାରେ ଅପରାଧଟା ହେଲା କେଉଁଠି ? କେଉଁଠୁ କମ୍ରେଡ଼୍ ପଟ୍ଟନାୟକ ପାଇଲେ ଯେ ଟେକ୍‌ଷ୍ଟ-ବୁକ୍ ଲେଖିବା ଏକ ହୀନ କର୍ମ ? ମୁଁ ନିଜେ ଟେକ୍‌ଷ୍ଟ-ବୁକ୍ ଲେଖିଛି, ରବି ଠାକୁର ଲେଖିଛନ୍ତି, ଆଉ ମଧୁସୂଦନ ରାଓ ଓ ବିଦ୍ୟାସାଗର ଟେକ୍‌ଷ୍ଟବୁକ୍ ଲେଖିହିଁ ସମ୍ପତ୍ତି କରିଥିଲେ । ଅଥଚ ଏଇ କଥା ଆଉ ଜଣକ ସମ୍ପର୍କରେ କହିଲେ, କମ୍ରେଡ଼ ଉତ୍ତେଜିତ ହୋଇଉଠିଛନ୍ତି କିପରି ମୁଁ ବୁଝି-ପାରୁନାହିଁ । ଏ ଯେ କେବଳ ଷ୍ଟେଟ୍‌ମେଣ୍ଟ ଅବ୍ ଫାକ୍‌ଟସ, ପୁଣି ମୁଁ ଯେତେବେଳେ ମୋ' ପ୍ରବନ୍ଧଟି ଲେଖୁଥିଲି, ସେତେବେଳେ ଇଲଷ୍ଟ୍ରେଟେଡ଼୍ ଉଇକ୍‌ଲିରେ ପ୍ରକାଶିତ କାଳିନ୍ଦୀବାବୁଙ୍କ ପ୍ରବନ୍ଧନେଇ ପତ୍ରପତ୍ରିକାରେ ଭୀଷଣ ପ୍ରତିବାଦ ଚାଲିଥାଏ ଓ ସେଥିରେ ଏଇକଥା ବାରମ୍ବାର ଉଲ୍ଲେଖପାଉଥାଏ– ଦୁଃଖରେ, ରାଗରେ ନୁହେଁ, କାଳିନ୍ଦୀ ବାବୁଙ୍କଠାରୁ ଅଧିକା ଆଶା କରିହିଁ ତାହା କୁହାଯାଉଥାଏ ବୋଲି ମୋର ଦୃଢ଼ ବିଶ୍ୱାସ ।

ମୋ' ପ୍ରବନ୍ଧରେ ସେହି ସାଧାରଣ ଆଲୋଚନା ହିଁ କ୍ଷୀଣଭାବରେ ଧ୍ୱନିତ ହୋଇଛି ।

ବର୍ତ୍ତମାନ 'ବେଙ୍ଗଲ୍ ଟ୍ରେଡ୍ ମାର୍କ'ର କଥା କହେଁ । ସମଗ୍ରଭାବରେ ସବୁଜ-ଦଳର ସାହିତ୍ୟ ଯେ ଓଡ଼ିଶାର ଐତିହ୍ୟ ସଙ୍ଗେ ସମ୍ପର୍କହୀନ, ଓଡ଼ିଶା ମାଟି ପ୍ରତି ଅନପେକ୍ଷ ଓ ଅଧିକାଂଶ ଭାବରେ ବଙ୍ଗଳାର ଅନୁକରଣ ଏହା ମୁଁ ଆଜି ନୁହେଁ, ପଚିଶି ବର୍ଷ ତଳେ ପ୍ରକାଶ୍ୟଭାବରେ 'ସହକାର'ରେ ପ୍ରକାଶିତ 'ପରଧର୍ମ' ପ୍ରବନ୍ଧରେ କହିଥିଲି । ଏ ଭିତରେ ମୋର ମତ ପରିବର୍ତ୍ତନ କରିବାର କୌଣସି କାରଣ ମୁଁ ପାଇନାହିଁ । ଆଜି ବି ପ୍ରକାଶ୍ୟ ଭାବରେ ସେୟା କହୁଛି । ମୋର ପଚିଶ ବର୍ଷ ତଳ ଲେଖାର କୌଣସି ଯୁକ୍ତିଯୁକ୍ତ ସାହିତ୍ୟିକ ପ୍ରତିବାଦ ଏପର୍ଯ୍ୟନ୍ତ ହୋଇନାହିଁ । ବରଂ ମୋ' ମତକୁ ସମର୍ଥନ କରି ଏ ଭିତରେ ପୁସ୍ତକ ଓ ପ୍ରବନ୍ଧ ସବୁ ପ୍ରକାଶିତ ହେବା ମୋ' ଆଖିରେ ପଡ଼ିଛି । ବର୍ତ୍ତମାନ ବି ମୁଁ କମ୍ରେଡ୍ ପଟ୍ଟନାୟକଙ୍କୁ ଗୋଟାଏ ପରୀକ୍ଷା କରିବାକୁ ଅନୁରୋଧ କରେଁ । ସେ ଅ-ସବୁଜ ଯେକୌଣସି ଓଡ଼ିଆ କାବ୍ୟ କବିତାକୁ ବଙ୍ଗଳାକୁ ଅନୁବାଦ କରନ୍ତୁ, ପୁଣି ସବୁଜ ଓ ତଥାକଥିତ ସାମ୍ୟବାଦୀ କବିତାକୁ ମଧ୍ୟ ବଙ୍ଗଳାକୁ ଅନୁବାଦ କରନ୍ତୁ; ତା'ହେଲେ ଏମାନଙ୍କର ପାରିବାରିକ ସମ୍ପର୍କ ସେ ବୋଧହୁଏ ସହଜରେ ଧରିପାରିବେ । ମୋର ମନେହୁଏ ଦ୍ୱିତୀୟ ଶ୍ରେଣୀର ଅଧିକାଂଶ କବିତାରେ କେବଳ ଅକ୍ଷର ବଦଳେଇଲେହିଁ କର୍ମ ସମ୍ପନ୍ନ ହେବ । ତାହାହିଁ ପ୍ରମାଣ କରିବ ମୋର ଅଭିମତ ଓ ଏମାନଙ୍କର ଓଡ଼ିଶା ମାଟି ଓ ଜନତାର ନାଡ଼ୀ ସଙ୍ଗେ ସମ୍ପର୍କ କେତେ ଟାଣ ଓ ଗଭୀର ।

ବର୍ତ୍ତମାନ ସତ୍ୟବାଦୀ ଯୁଗର କଥା କହେ ।

ମୁଁ ପଣ୍ଡିତ ଗୋପବନ୍ଧୁଙ୍କ ଉପରେ ପ୍ରଥମ ଇଂରାଜି ପ୍ରବନ୍ଧ ରେଭେନ୍‌ସେଭିଆନ୍‌ରେ ପ୍ରକାଶକରେ, କଲେଜରେ ଛାତ୍ର ଥିଲାବେଳେ । ସେତେବେଳେ ଇଂରାଜି ରାଜାର ଏ ଦେଶରେ ଅଖଣ୍ଡ ପ୍ରତାପ ଓ ରେଭେନ୍‌ସା କଲେଜ୍‌ରେ ସାହେବ-ପ୍ରିନ୍‌ସପଲ୍ । ଏଇଲେଖା ମୋର ଦିନେ ଦୁର୍ଭାଗ୍ୟର କାରଣ ହୋଇଥିଲେ ହେଁ, ପରେ ପରେ ଇଂରେଜି, ଓଡ଼ିଆ ପ୍ରବନ୍ଧ ଓ ଏକାଧିକ କବିତାରେ ମୁଁ ପୂଣ୍ୟଶ୍ଳୋକ ଗୋପବନ୍ଧୁଙ୍କ ସ୍ତୁତିଗାନ କରି ଆତ୍ମସନ୍ତୋଷ ଲାଭକରିଛି । ପଣ୍ଡିତ ନୀଳକଣ୍ଠଙ୍କ ଶ୍ରେଷ୍ଠ ଗ୍ରନ୍ଥର ଭୂମିକା ଲେଖିବାର ଆନନ୍ଦ ଓ ଗୌରବ ମୋର । ଗୋଦାବରୀଶଙ୍କ ଉପରେ ମଧ୍ୟ ମୁଁ ଉଚ୍ଛ୍ୱସିତ ପ୍ରବନ୍ଧ ଓ କବିତା ଲେଖିଛି । ୧୯୩୬ରେ ମାଡ୍ରାସର ପ୍ରସିଦ୍ଧ ଇଂରାଜୀ ମାସିକ ପତ୍ର ଇଣ୍ଡିୟାନ୍ ରିଭ୍ୟୁରେ ଓଡ଼ିଆ ସାହିତ୍ୟ ଉପରେ ମୋର ଯେଉଁ ପ୍ରବନ୍ଧ ପ୍ରକାଶିତ ହୁଏ, ସେଥିରେ ବୋଧହୁଏ ପ୍ରଥମ ଥର ପାଇଁ ସତ୍ୟବାଦୀ ସାହିତ୍ୟକୁ ବିଶିଷ୍ଟ ସ୍ଥାନର ସ୍ୱୀକୃତି ଦିଆଯାଏ । ତେଣୁ ସତ୍ୟବାଦୀ ସାହିତ୍ୟକୁ ମୁଁ ନିନ୍ଦା କରିଛି

ଏହା ଏକ ଜଘନ୍ୟ ଅପପ୍ରଚାର ଛଡ଼ା ଆଉ କ'ଣ ହୋଇପାରେ ? ମୋର ଏଇ ଆଲୋଚ୍ୟ ପ୍ରବନ୍ଧ ମଧ୍ୟ ଯିଏ ପଢ଼ିବ, ସେ ଯଦି କାମଳ ରୋଗଗ୍ରସ୍ତ ନ ହୋଇଥିବେ ସେ ବି କ'ଣ ଦେଖିପାରିବେନି ମୁଁ ସତ୍ୟବାଦୀ ସାହିତ୍ୟର ନିନ୍ଦା ନା ସ୍ତୁତି କରିଛି ? କମ୍ରେଡ୍ ପଟ୍ଟନାୟକ ଅବଶ୍ୟ ମତେ ପିଟିବା ପାଇଁ ତାଙ୍କ ଠେଙ୍ଗାକୁ ମୋଟା କରିବା ଉଦ୍ଦେଶ୍ୟରେ, ଘାସ, କୁଟାକୁ ମଧ୍ୟ ଉପେକ୍ଷା କରିନାହାନ୍ତି । ତେଣୁ ମୁଁ ଯାହା ସତ୍ୟବାଦୀ ସାହିତ୍ୟିକମାନଙ୍କୁ ମୋର ସମ୍ମାନ ଯୋଗୁ ବ୍ୟଞ୍ଜନାରେ କହିଛି, ତାକୁ ବିକୃତ କରି ଦେଖାଇଛନ୍ତି ମୋ' ପକ୍ଷରୁ ସତ୍ୟବାଦୀ ଦଳର ନିନ୍ଦା ବୋଲି ।

ଗୋପବନ୍ଧୁ-ନୀଳକଣ୍ଠ-ଗୋଦାବରୀଶଙ୍କୁ ସାହିତ୍ୟିକ ଭାବରେ ମୁଁ କେବେ କଉଣସିଠାରେ ନିନ୍ଦା କରିନାହିଁ, କରିବି ମଧ୍ୟ ନାହିଁ । ମୋର ନିନ୍ଦା ଓ ସ୍ତୁତି ଖାଣ୍ଟି ମୂଲ୍ୟ ଉପରେ ପ୍ରତିଷ୍ଠିତ, ତେଣୁ ଘଟଣାର ପରିବର୍ତ୍ତନରେ ତା'ର ପରିବର୍ତ୍ତନ ନାହିଁ । ଦିନେ ସ୍ୱର୍ଗତ ଗୋଦାବରୀଶଙ୍କୁ ଭର୍ତ୍ସନା କରି ତାଙ୍କ ଆଗରେ ଇସ୍ତଫାପତ୍ର ଫିଙ୍ଗି ଦେଇ ଆସିଥିଲି । କିନ୍ତୁ ତା' ବୋଲି ତାଙ୍କ କବିତାର ଅସମ୍ମାନ ମୁଁ କେବେ ହେଲେ କରିନାହିଁ । ମୁଁ କିନ୍ତୁ ନିନ୍ଦା କରିଛି, ଯେପରି ଭାବରେ ଓଡ଼ିଶାର ଶାନ୍ତିନିକେତନ ସତ୍ୟବାଦୀ ବିହାରକୁ ଜାତୀୟତାର ବାହାନାରେ ଭାଙ୍ଗି ଦିଆଗଲା । ଏହାକୁହିଁ ମୁଁ ଏକ ସାଂସ୍କୃତିକ Vandalism ବୋଲି ବର୍ଣ୍ଣନା କରିଛି । ଶ୍ରୀଯୁକ୍ତ ପଟ୍ଟନାୟକ ଏହାକୁ 'ବର୍ବରୋଚିତ କର୍ମ' ବୋଲି ଅନୁବାଦ କରିଛନ୍ତି । ଏହାର ପ୍ରକୃତ ଅର୍ଥ ହେଉଛି ସାଂସ୍କୃତିକ ଅନୁଷ୍ଠାନମାନଙ୍କର ଧ୍ୱଂସ । ଶ୍ରୀଯୁକ୍ତ ପଟ୍ଟନାୟକ ଦୟାକରି ଅଭିଧାନ ଦେଖନ୍ତୁ । ଅସହଯୋଗ ଆନ୍ଦୋଳନ ସତ୍ତ୍ୱେ ରବିଠାକୁରଙ୍କ ଶାନ୍ତିନିକେତନ, ମାଲବ୍ୟଙ୍କ ହିନ୍ଦୁ ବିଶ୍ୱବିଦ୍ୟାଳୟ, ପୁନାର ଫର୍ଗୁସନ୍ କଲେଜ– ଯାହାସବୁ ଭାରତୀୟ ଜାତୀୟତାର ପ୍ରଧାନ ପୀଠ ଥିଲା– ସେସବୁ ବେଶ୍ ଉନ୍ନତମସ୍ତକ ହୋଇ ରହିଲେ, କିନ୍ତୁ ଆମର ଏଇ କ୍ଷୁଦ୍ର ସତ୍ୟବାଦୀ ବିହାରଟିକୁ ସଇତାନୀ ଇଂରେଜି ପାଠ ପଢ଼ାର ଅପରାଧରୁ ମୁକ୍ତ କରିବା ପାଇଁ କାହିଁକି ଭାଙ୍ଗିଦିଆଗଲା, ତା'ର ଯାଥାର୍ଥ୍ୟ କି ଆଜି ବିଚାର କରିବାର ନୁହେଁ ? ଏବଂ ସତ୍ୟବାଦୀ ସ୍କୁଲ ଭାଙ୍ଗିଦେବା ଫଳରେ ଓଡ଼ିଶାର କି ପ୍ରକାର ସାଂସ୍କୃତିକ କ୍ଷତି ହୋଇଛି ତାହାକି ଆମର ଭାବିବାର କଥା ନୁହେଁ ?

ସତ୍ୟବାଦୀ ସ୍କୁଲର ଛାତ୍ର ନଥିଲେ ମଧ୍ୟ, ଓ ତା'ର ଶିକ୍ଷକମାନଙ୍କ ସହିତ କେବେହେଲେ ଘନିଷ୍ଠ ସମ୍ପର୍କରେ ଆସି ନ ଥିଲେ ମଧ୍ୟ, ସେହି ଅନୁଷ୍ଠାନର ମହିମା ଏଇ ଲେଖକର ପ୍ରାଣରେ ଏକ ପ୍ରିୟ ସମ୍ପଦ ହୋଇରହିଛି । କାରଣ ଓଡ଼ିଆ ଜାତିର ଇତିହାସରେ କେବେ ହୋଇ ନଥିଲା– ହେବାର ସମ୍ଭାବନା ମଧ୍ୟ ଦେଖାଯାଉନି – ଏ ଲେଖକର ଜୀବନରେ କେବେ ଯଦି କୌଣସି ସ୍ୱପ୍ନ ଥିଲା, ତାହା ହେଉଛି ଏଇ

ସ୍କୁଲରେ ଶିକ୍ଷକ ହେବାର ସ୍ୱପ୍ନ । ହାଇସ୍କୁଲରେ ଛାତ୍ର ଥିଲାବେଳେ ମଧ୍ୟ ଏ ଲେଖକ ଭାବୁଥିଲା ତା' ଜୀବନର ପୂର୍ଣ୍ଣତା ସେ ସେଇ ବକୁଳ ବନରେ ପାଇବ । ସେ ସ୍କୁଲ ସମ୍ବନ୍ଧରେ ଯାହା କିଛି ଲେଖା ପ୍ରକାଶିତ ହୋଇଛି, ତାହା ମୁଁ ଆଗ୍ରହର ସହିତ ପାଠ କରିଛି । ସ୍ୱର୍ଗତ ଚନ୍ଦ୍ରଶେଖର ମିଶ୍ରଙ୍କର ସତ୍ୟବାଦୀର ସାତବର୍ଷ ପୁସ୍ତକ ମୁଁ ପୁଙ୍ଖାନୁପୁଙ୍ଖ ରୂପେ ପଢ଼ିଛି । ଯଦି ମୋର କ୍ଷମତା ଥାଆନ୍ତା ତେବେ ଏ ଦେଶର ପ୍ରତ୍ୟେକ ଶିକ୍ଷକ, ଅନ୍ତତଃ ପ୍ରତ୍ୟେକ ହେଡ୍‌ମାଷ୍ଟର ସେ ବହିଖଣ୍ଡି ନିଶ୍ଚୟ ପଢ଼ିବାକୁ ଓ ଦେଶର ପ୍ରତି ଟ୍ରେନିଂ ସ୍କୁଲରେ ତାହା ଅବଶ୍ୟ ପାଠ୍ୟ କରିବା ପାଇଁ ମୁଁ ସର୍କୁଲାର ଦେଇଥାନ୍ତି । ମୋ' ପ୍ରାଣର ଏତେ ପ୍ରିୟ ଯେ ସତ୍ୟବାଦୀ ବିହାର, ମୁଁ ତାକୁ ନିନ୍ଦା କରିଛି ବୋଲି ପୁଣି ମିଥ୍ୟା ପ୍ରଚାର ହେଉଛି ? ଏ ଦେଶରେ ଆଜି ସାହିତ୍ୟ ଚର୍ଚ୍ଚା ହେଉଛି ନା ଖାଲି ବ୍ୟକ୍ତିଗତ କୁତ୍ସାର ଘାତ ପ୍ରତିଘାତ ? ସତ୍ୟବାଦୀ ସ୍କୁଲ ଭାଙ୍ଗି- ଯିବାକୁ ନିନ୍ଦା କଲି, ସତ୍ୟବାଦୀ ସ୍କୁଲକୁ ଓ ସତ୍ୟବାଦୀର ଶିକ୍ଷକମାନଙ୍କୁ ନିନ୍ଦା କଲି ବୋଲି ପ୍ରଚାର ହେଉଛି – ଏ'ତ ଗ୍ରାମ୍ୟ ସ୍ତ୍ରୀମାନଙ୍କର କଳିଠୁ ବଳିଗଲା । ସ୍ନେହମୟୀ ମା' ଅବିନୀତ, ଅବୁଝା ପିଲାକୁ ଯେପରି 'ହତଭାଗ୍ୟ' କହେ, ସତ୍ୟବାଦୀ ସ୍କୁଲର ଅବସାନ ଉପରେ ମୋର ତିକ୍ତ ଉକ୍ତି ଯେ ସେହିପରି ଶ୍ରଦ୍ଧାମୟ, ଏତକ ବ୍ୟଞ୍ଜନା ବୁଝିବାକୁ ଯେଉଁମାନେ ଅସମର୍ଥ ବା ପରାଙ୍‌ମୁଖ, ସେମାନଙ୍କୁ କ'ଣ କହି ଆଉ ବୁଝେଇବି ?

ସେ ଯାହାହେଉ, ସତ୍ୟବାଦୀ ଦଳ ଦେଶର ଭାଷାକୁ ଯାହା ଦେଇଯାଇଛନ୍ତି, ତା'ର ଉତ୍ସ ହେଉଛି ମଧ୍ୟ ଉତ୍ତପ୍ତ ଜାତୀୟତା । କିନ୍ତୁ ସେ ଜାତୀୟତା ଗାନ୍ଧି ଜାତୀୟତା ନୁହେଁ । ଗୋପବନ୍ଧୁ-ନୀଳକଣ୍ଠଙ୍କ ଜାତୀୟତାର ଭିତ୍ତି ପଡ଼ିଥିଲା ତିଳକ-ବିପିନ ପାଲ-ଅରବିନ୍ଦ ପ୍ରଭୃତିଙ୍କ ବ୍ୟକ୍ତିତ୍ୱ ଓ ରଚନାରୁ । ବଙ୍ଗଳାରେ ରବୀନ୍ଦ୍ରନାଥ ଓ ଡ଼ି.ଏଲ୍. ରାୟଙ୍କ ଜାତୀୟତାର ଉତ୍ସ ମଧ୍ୟ ସେଇଠି । କେବଳ ବଙ୍ଗଳା ବା ଓଡ଼ିଶା ନୁହେଁ, ସମସାମୟିକ ସମସ୍ତ ଭାରତୀୟ ସାହିତ୍ୟରେ ସେଇ କାଳରେ ଅତ୍ୟୁତ୍କୃଷ୍ଟ ଜାତୀୟ ସାହିତ୍ୟ, କାବ୍ୟ, ନାଟକ ଓ ଗୀତିକବିତାର ପ୍ରକାଶ ଲାଭ କରିଛି । ଗାନ୍ଧି ଆନ୍ଦୋଳନ କୌଣସି ବିଶିଷ୍ଟ ସାହିତ୍ୟ ସୃଷ୍ଟି କରିବାର ଅବକାଶହିଁ ନଥିଲା, କାରଣ ସେ ଆନ୍ଦୋଳନ ଏକାନ୍ତରେ କର୍ମର ଆନ୍ଦୋଳନ। ବରଂ ସେ ଆନ୍ଦୋଳନ ପାଇଁ ଉପଯୁକ୍ତ କ୍ଷେତ୍ର ଆଗରୁ ପ୍ରସ୍ତୁତ କରି ରଖିଥିଲା ପୂର୍ବର ଜାତୀୟ ସାହିତ୍ୟ । ମହାତ୍ମାଜୀଙ୍କର ବିରାଟ ନାରାୟଣୀ ସେନା ଆଗରୁ ଅପେକ୍ଷା କରି ରହିଥିଲେ, ସେନାପତିର ଆହ୍ୱାନ ପାଇଲା ମାତ୍ରେ ଜାତୀୟ ସଂଗ୍ରାମ ପାଇଁ ଏମାନେ ଡେଇଁପଡ଼ିଲେ । ସାହିତ୍ୟ ପ୍ରସ୍ତୁତ କରି ରଖିଥିଲା ସୈନିକଙ୍କୁ । ବାପୁଜି ତାଙ୍କୁଇ କାମରେ ଲଗାଇବାକୁ ଜନ୍ମ ହୋଇଥିଲେ । ସେ ଆସି ନ ଥିଲେ ସାହିତ୍ୟ ସୃଷ୍ଟି କରିବାକୁ । ସେ ଆସିଥିଲେ ବନ୍ଦୀ ଭାରତକୁ

ମୁକ୍ତ କରିବାକୁ, ଓ ହିଂସା ମିଥ୍ୟା କଳୁଷିତ ପୃଥିବୀକୁ ସତ୍ୟ ଓ ପ୍ରେମର ପନ୍ଥା ଦେଖାଇବାକୁ ।

ବୁଦ୍ଧ ଓ ଖ୍ରୀଷ୍ଟ ମଧ୍ୟ ଜଗତକୁ ସାହିତ୍ୟ ସୃଷ୍ଟି କରିବାକୁ ଆସି ନଥିଲେ । କିନ୍ତୁ ପୃଥିବୀର ଏକ ଅର୍ଦ୍ଧରେ ବୁଦ୍ଧ ଓ ଅନ୍ୟ ଅର୍ଦ୍ଧରେ ଯୀଶୁଖ୍ରୀଷ୍ଟଙ୍କୁ ନେଇ କଳା, ଶିଳ୍ପ ଓ ସାହିତ୍ୟର, ଶତ ଶତ ବର୍ଷ ଭିତର ଦେଇ ଚରମ ପ୍ରକାଶ ଘଟିଆସିଛି । ସର୍ବତ୍ୟାଗୀ ସନ୍ନ୍ୟାସୀ ଗୌତମଙ୍କୁ କେନ୍ଦ୍ର କରି ଅଜନ୍ତା ଓ ବରବୁଦ୍‌ରରେ ଇହ ଜୀବନର ସ୍ୱପ୍ନମୟ ସୁଷମାମୟ ଲୀଳା ବିକଚ କଳାରେ ବିକଶିତ ହୋଇଉଠିଛି । ଗାନ୍ଧି ଯେ ବୁଦ୍ଧ ଓ ଖ୍ରୀଷ୍ଟ ପରି ଜଣେ ମହାମାନବ ଏଥିରେ ପ୍ରାଚ୍ୟ ପାଶ୍ଚାତ୍ୟ କୌଣସିଠାରେ ଦ୍ୱିମତ ନାହିଁ । ରାଜନୀତି କ୍ଷେତ୍ରରେ ଯାହା ସେ କରିଯାଇଛନ୍ତି, ତାହା ଯାଦୁକ୍ରିୟାଠାରୁ ଅଧିକ ବିସ୍ମୟକର । କିନ୍ତୁ ଅନେକ ବୁଦ୍ଧିଜୀବୀ ଗାନ୍ଧି ଓ ଗାନ୍ଧି ଆନ୍ଦୋଳନ, ବୌଦ୍ଧ ଓ ଖ୍ରୀଷ୍ଟଧର୍ମ, କଳା, ସାହିତ୍ୟ, ଶିଳ୍ପକୁ ଯେପରି ଭାବରେ ଉଦ୍‌ବୁଦ୍ଧ ଓ ଉଜ୍ଜୀବିତ କରିପାରିଲେ, ଏପର୍ଯ୍ୟନ୍ତ ସେପରି କରି ପାରିନାହିଁ ବୋଲି, ନିରାଶ ଓ ଅସନ୍ତୁଷ୍ଟ । ପୂର୍ବରୁ ତ କହିଛି ବଂଗଳାରେ ରବିଠାକୁର, ଡିଏଲ୍ ରାୟ, ଏବଂ ଶରତ୍ ଚାଟର୍ଜି ମଧ୍ୟ, ପ୍ରାକ୍-ଗାନ୍ଧି ଜାତିୟତାର ଫଳ । ଏମାନଙ୍କ ପରେ ପରେ ଆମେ ଦେଖୁ 'ନୂତନ ସାହିତ୍ୟିକଙ୍କୁ– ମାର୍କସିଷ୍ଟ, ବାମପନ୍ଥୀ, ଇମେଜିଷ୍ଟ ବା ଅନ୍ୟ ଯାହା କିଛି, କିନ୍ତୁ କେହି ଏକାନ୍ତ ଗାନ୍ଧିବାଦୀ କବି ବା ଔପନ୍ୟାସିକଙ୍କୁ ଆମେ ଦେଖୁନା । ଓଡ଼ିଶାରେ ସେୟା ଘଟିଛି । ସତ୍ୟବାଦୀର ଜାତୀୟତା ପଣ୍ଡିତ ଗୋପବନ୍ଧୁ-ନୀଳକଣ୍ଠଙ୍କ ନିଜସ୍ୱ ନୁହେଁ, ଏହା ତତ୍‌କାଳୀନ ସର୍ବଭାରତୀୟ ବାତାବରଣର ଅଂଶ ମାତ୍ର । ଗାନ୍ଧି ଆନ୍ଦୋଳନର ସଦ୍ୟ ପ୍ରତିକ୍ରିୟାରେ ଏମାନେ ହଠାତ୍ ସାହିତ୍ୟଚର୍ଚ୍ଚା ବନ୍ଦକରି 'କର୍ମ'ରେ ମାତିଲେ । ତା'ପରେ ଆସିଲେ ସବୁଜଦଳ ଯେଉଁମାନେ ରବୀନ୍ଦ୍ରନାଥ, ସତ୍ୟେନ୍ଦ୍ରନାଥଙ୍କ ଛାୟା ମାତ୍ର । ଏମାନଙ୍କ ଲେଖାରେ ଅନ୍ୟ ଉପାଦାନ ଯାହା ଥାଉ, ଭାରତୀୟ ଜାତୀୟତା ବା ଓଡ଼ିଶା ଜାତୀୟତା ମଧ୍ୟ ଖୋଜି ବାହାର କରିବାକୁ ହେବ– ଯଦି ଥାଏ । ଇଂରେଜଶାସନ ଥିଲା ଯାଏଁ ଏମାନଙ୍କ ଭିତରୁ କେହି ହେଲେ ଗାନ୍ଧି ବା ଏପରିକି ଗୋପବନ୍ଧୁଙ୍କ ପାଇଁ ମଧ୍ୟ କବିତା ବା ପ୍ରବନ୍ଧ ଲେଖିନାହାନ୍ତି, ଯଦି ଲେଖିଥିବେ ତେବେ ଛଦ୍ମଭାବରେ । ଆଉ, ଯାଙ୍କ ପରେ ପରେ ଆସିଛନ୍ତି ଓଡ଼ିଶାରେ ବଙ୍ଗଳା ପରି ବାମପନ୍ଥୀ ସାହିତ୍ୟିକ ସବୁ ।

ତେଣୁ ଆମର ବିଚାର କରିବା କଥା ଓଡ଼ିଆରେ ଗାନ୍ଧି ବା ଗାନ୍ଧିଆନ୍ଦୋଳନ ବା କଂଗ୍ରେସ ନେତୃତ୍ୱରେ ଘଟିଥିବା ଜାତୀୟ ସଂଗ୍ରାମ ଫଳରେ କି ସାହିତ୍ୟ ସୃଷ୍ଟି-ହୋଇଛି । ଶ୍ରୀଯୁକ୍ତ ପଟ୍ଟନାୟକ ବା ଅନ୍ୟ କେହି ବନ୍ଧୁ କିନ୍ତୁ ଯଦି କହନ୍ତି ଯେ

କଂଗ୍ରେସ ଆନ୍ଦୋଳନ ବେଳେ ବ୍ରିଟିଶ୍‌କୁ ଗାଳିଦେଇ ବା ଲୋକଙ୍କୁ ଉତ୍ତେଜିତ କରି ଯେଉଁ ସବୁ ସଂଗୀତ ଲେଖା ହେଉଥିଲା, ତାକୁଇ ଆମେ 'ସାହିତ୍ୟ' ବୋଲି ଗ୍ରହଣ-କରିବା, ମୁଁ ସେଥିରେ ଏକମତ ହୋଇନପାରେ । ଏଗୁଡ଼ିକ ଆଧୁନିକ ପ୍ରୟୋଜନର ବହୁଦୂରରେ । ସାହିତ୍ୟର ପୁଣି ସ୍ଥାୟୀତ୍ୱ ଚାହିତ ? ମୁଁ ଗୋଟାଏ ଦୃଷ୍ଟାନ୍ତ ଦେଇ କଥାଟା ବୁଝାଇଦିଏ ଆଉରି ପରିଷ୍କାର କରି । ଦୁଇଶ ବର୍ଷ ପୂର୍ବେ ଏ ଦେଶରେ ମରହଟ୍ଟା ମାନଙ୍କର ଅତ୍ୟାଚାର ଚାଲିଥିଲା । ସମସାମୟିକ ଓଡ଼ିଶାରେ ତା'ର ପ୍ରତିକ୍ରିୟା ଓ ପ୍ରତିବାଦ ଘଟିଥିଲା, ତାହା ଆମେ ଜାଣୁନା କାରଣ ସମସାମୟିକ ଓଡ଼ିଆ ସାହିତ୍ୟରେ ସେ ସବୁର ବର୍ଣ୍ଣନା ପ୍ରାୟଇ ନାହିଁ । କିନ୍ତୁ ରାମଶଂକରଙ୍କ ବିବାସିନୀ ଓ ସେନାପତିଙ୍କ ଲଛମାରେ ମରହଟ୍ଟା ଅତ୍ୟାଚାର ଓ ତତ୍‌କାଳୀନ ଓଡ଼ିଶା ଜୀବନ୍ତ ହୋଇଉଠିଛି । ବିବାସିନୀର 'ଦାସ ଖାଡ଼ଙ୍ଗା' ଓ ଲଛମାର 'ଜଗାଫତେ ସିଂ– ମା' ଅତ୍ୟାଚାରିତ ଜନତାର ଅପୂର୍ବ ପ୍ରତୀକରୂପେ ଆଜି ଆମ ଆଗରେ ଦଣ୍ଡାୟମାନ । ଦୁଇଶବର୍ଷତଳର ଘଟଣା ଆଜି 'ବ୍ୟକ୍ତିତ୍ୱ' ପାଇ ହୋଇଉଠିଛି ବିସ୍ମୟକର ଭାଷା-ଶିଳ୍ପ ବା ସାହିତ୍ୟ ।

ଶ୍ରୀ ପଟ୍ଟନାୟକ ଦୟାକରି ମତେ ଦେଖାଇଦିଅନ୍ତୁ, ଏଇପରି ଭାବରେ ଆମର ଜାତୀୟ ସଂଗ୍ରାମ ଆମ ଭାଷାରେ କେଉଁଠି କିପରି ଜୀବନ୍ତ ବ୍ୟକ୍ତିତ୍ୱରେ ବ୍ୟକ୍ତ-ହୋଇଉଠିଛି । ବହୁତ ଘଣ୍ଟାଘଣ୍ଟି କରି କାଣି ଆଖିରେ କଜ୍ଜଳଗାରେ ଭାବରେ ମୁଁ ବାଧ୍ୟ ହୋଇ ଦୁଇ ଚାରିଖଣ୍ଡ ପୁସ୍ତକର ସୂଚନା ଦେଇଛି । ସେଥିପାଇଁ ଏତେ ଉଷ୍ମା ଓ ଉପହାସ କାହିଁକି ? କେଉଁ ଦିବ୍ୟ-ଦୃଷ୍ଟି ଫଳରେ ଯେ ଶ୍ରୀ ପଟ୍ଟନାୟକ ଏହାକୁ ''ମିଥ୍ୟା, କପଟତା, ସ୍ତୁତିଗାନ ଓ ଆତ୍ମବଡ଼ିମା'' ବୋଲି କହିବାକୁ ଯାଇଛନ୍ତି ମୁଁ ଭାବି ଭାବି ଅବାକ୍ । 'ମିଥ୍ୟା' 'କପଟତା' 'ଆତ୍ମ-ବଡ଼ିମା'– ଏ ସମସ୍ତ ଦୁର୍ବଳତା ଯେ ମୋଠି ଅଛି ବା ଥାଇପାରେ, ତାହା ମୁଁ ସ୍ୱୀକାର କରୁଛି । କିନ୍ତୁ ମୁଁ କେବେ କାହାର 'ସ୍ତୁତିଗାନ' କରିଛି ଶ୍ରୀ ପଟ୍ଟନାୟକ କହିବେ କି ? ମୁଁ ସ୍ତୁତି କରିଛି ଗୋପାଳକୃଷ୍ଣ, ମେହେର, ପଣ୍ଡିତ ନୀଳକଣ୍ଠଙ୍କ ସାହିତ୍ୟିକ ପ୍ରତିଭାର, ଓ ଗାନ୍ଧି ଓ ଗୋପବନ୍ଧୁଙ୍କ ପୁଣ୍ୟଶ୍ଳୋକ ବ୍ୟକ୍ତିତ୍ୱର । ଅନ୍ୟମାନେ ମୋ' ଚାଟୁବାଣୀର କି ପୁରସ୍କାର ଦେଇଥାନ୍ତେ ମୁଁ ଜାଣେନା, ତେବେ ପଣ୍ଡିତ ନୀଳକଣ୍ଠଙ୍କ ସ୍ତୁତି ଯେ ମୁଁ କରିଛି, ଶ୍ରୀ ପଟ୍ଟନାୟକ ପଣ୍ଡିତଜୀଙ୍କଠାରୁ ପଚାରି ବୁଝିପାରନ୍ତି ସେ ମୋ' ମୁଣ୍ଡରେ କି ସୁନା କଳସ ଢ଼ାଳିଛନ୍ତି ବା ଢ଼ାଳିବା ପାଇଁ ମୁଁ ଅନୁରୋଧ କରିଛି ତାଙ୍କୁ । ଆଉ ସେ ମଧ୍ୟ ବୁଝି ନେଇପାରନ୍ତି ଉତ୍କଳର ମୁଖ୍ୟମନ୍ତ୍ରୀ ମହତାବ ବି ମୋ' ମୁଣ୍ଡରେ କି ସୁନା କଳସ ଢ଼ାଳିଛନ୍ତି, ଯାହାପାଇଁ ମୁଁ ତାଙ୍କୁ 'ସ୍ତୁତି' କରିବାକୁ ଯାଇଛି । କ୍ରୋଧ ଓ ଅଭିମାନରେ ଶ୍ରୀ ପଟ୍ଟନାୟକ ଭୁଲିଯିବା ଉଚିତ ନୁହେଁ ଯେ, ଏଇ ଲେଖକ ସ୍ପଷ୍ଟ କଥା କହି,

ଅନ୍ୟାୟ ବିରୁଦ୍ଧରେ ପଦସ୍ଥ ବ୍ୟକ୍ତିଙ୍କୁ ମଧ୍ୟ ପ୍ରତିବାଦ କରିବାକୁ ଯାଇ, ବାରମ୍ବାର ବିପଦଗ୍ରସ୍ତ ହୋଇଛି । ଜୀବନରେ ବହୁ ପ୍ରମାଦ ଘଟିଥାଇପାରେ, କିନ୍ତୁ ମୁଁ ମନେକରୁନି 'ଚାଟୁକ୍ତି' ତା' ଭିତରେ ଗଣାଯିବ ।

ମୁଁ ସ୍ପଷ୍ଟ ବାକ୍ୟରେ କହିପାରେ ଯେ ଶ୍ରୀଯୁକ୍ତ ମହତାବଙ୍କ ଉପନ୍ୟାସଗୁଡ଼ିକର ସାହିତ୍ୟିକ ମୂଲ୍ୟ ବେଶୀ ନୁହେ । ତେବେ ମୋ' ପ୍ରବନ୍ଧରେ ଏହା କହିବାର ଦରକାର ତ ନଥିଲା । କିନ୍ତୁ ବ୍ୟୋମଯାନର ଇତିହାସ ଯେ କେହି ଲୋକ ଲେଖିବାକୁ ବସିବ ସେ ନିଶ୍ଚେ ଆରମ୍ଭ କରିବ ଗ୍ରୀକ୍ ଡେ଼ଡ଼ାଲସ୍‌ଠାରୁ ଯିଏ କି ପ୍ରଥମେ ଯୋଡ଼ାଏ କୃତ୍ରିମ ଡେଣା ଲଗାଇ ଉଡ଼ିବାକୁ ଚେଷ୍ଟାକରି ସମୁଦ୍ରରେ ପଡ଼ି ମରିଥିଲା । ସାହିତ୍ୟରେ ମଧ୍ୟ ଅନ୍ତର୍ନିହିତ ମୂଲ୍ୟ ସଙ୍ଗେ ସଙ୍ଗେ ଗୋଟାଏ ଗୋଟାଏ ବହିର 'ସାମୟିକ' ମୂଲ୍ୟ ରହିଯାଏ । ପାୟୋନିଓର୍ ସମ୍ମାନ ପାଇବାର କଥା, ଅଗ୍ରଗାମୀ ଭାବରେ । ଏଇ ଭାବରେହିଁ ମହତାବଙ୍କ ଉପନ୍ୟାସ ବରାବର ଉଲ୍ଲେଖ ପାଇପାରେ ଓଡ଼ିଆ ସାହିତ୍ୟ ଇତିହାସରେ– କେବଳ ଗାନ୍ଧି ଆନ୍ଦୋଳନ ସମ୍ପର୍କରେ । କାରଣ ମୁଁ ଯେତେଦୂର ଖୋଜି ପାଇଲି, ଦେଖିଲି ଏଗୁଡ଼ିକ ହେଉଛନ୍ତି ଏକମାତ୍ର ଉପନ୍ୟାସ ଓଡ଼ିଆରେ, ଯେଉଁଠି ଗାନ୍ଧି ଆନ୍ଦୋଳନହିଁ ଏକାନ୍ତ ଉପଜୀବ୍ୟ । ଯେପରି ମରହଟା ଅତ୍ୟାଚାର ନାୟକ ହୋଇ ଉଠିଛି ବିବାସିନୀ ଓ ଲଛମାରେ । ତେଣୁ ମୋର ଅପରାଧ ରହିଲା କେଉଁଠି, ମୁଁ ବା ଅକାରଣ ସ୍ତୁତି କଲି କାହାକୁ ?

ଏ ସମ୍ପର୍କରେ ଅନ୍ୟ ବହିଟିର କଥା କିଛି ନ କହିଲେ ଇ ଭଲ । ତେବେ ଗୋଟିଏ କଥା ପଚାରେ – ଶ୍ରୀ ପଟ୍ଟନାୟକ ମୋ' ପ୍ରବଂଧଦ୍ୱାରା ଓଡ଼ିଆ ସାହିତ୍ୟର ଓଡ଼ିଶା ବାହାରେ କିପରି ପ୍ରତିକ୍ରିୟା ଘଟିବ, ସେ ସମ୍ବନ୍ଧରେ ଅତ୍ୟନ୍ତ ସଚେତନ ଜଣାଯାଉଛନ୍ତି । ସମସ୍ତ ପ୍ରତିବାଦର ମୂଳ ଯେପରି ସେଇ ଉଦାର ଉତ୍କଳ-ପ୍ରାଣତାରୁ । ଉତ୍ତମ କଥା, ବିଶେଷତଃ ମସ୍କୋ–ମତ୍ତ କମ୍ରେଡ଼୍‌ଙ୍କଠାରୁ । କିନ୍ତୁ ଏ ବହିଟିର ଉଲ୍ଲେଖ-ଦ୍ୱାରା ଓଡ଼ିଆ ସାହିତ୍ୟର ଅପମାନ ହେବାର ଆଶଂକା ଅଛି କି ? ଶ୍ରୀଯୁକ୍ତ ଅନ୍ନଦାଶଙ୍କର ରାୟ ଥରେ ଲେଖିଥିଲେ ଯେ ଏପ୍ରକାର ଚେଷ୍ଟା ବଂଗଳାରେ ବି ହୋଇନାହିଁ । 'ଚେଷ୍ଟା', ପାଠକଗଣ, 'ସିଦ୍ଧି', ନୁହେଁ । ପୁଣି କଥକୁ ଯେପରି ବିକୃତ କରାନଯାଏ । ଏହା ଗାନ୍ଧିଆନ୍ଦୋଳନକୁ କାବ୍ୟାକାରରେ ରୂପ ଦେବା ପାଇଁହିଁ ପରୀକ୍ଷା ସ୍ୱରୂପ ଆରମ୍ଭ କରାଯାଇଥିଲା, ପରେ ଯଦିଓ ପ୍ଲଟ୍ ଅନ୍ୟ ଆକାର ଧରିଛି । ସେଇଥିପାଇଁ ଗାନ୍ଧିଆନ୍ଦୋଳନର କାବ୍ୟଫଳ ଓଡ଼ିଆରେ ଅନ୍ତତଃ କିଛି ହେଲେ ଅଛି ଏହା ଜଣାଇବା ପାଇଁହିଁ ଏ ପୁସ୍ତକର ଉଲ୍ଲେଖ କରାଯାଇଛି । କିନ୍ତୁ ଏଠି ବା ପ୍ରବଂଧର କୌଣସି ସ୍ଥାନରେ ଏ ଲେଖକର ନାମୋଲ୍ଲେଖ ନାହିଁ । ଓଡ଼ିଶା ବାହାରେ ଲେଖକର ନାମ

ଦିଆ ନ ହୋଇଥିବା ସ୍ଥଳେ, କମଳାୟନର ଲେଖକ କିଏ ବୋଲି କିଏ କିପରି ଜାଣିବ ଯେ ସମ୍ମାନଗୁଡ଼ା ଆସି ମୋ' ମୁଣ୍ଡରେ ଢ଼ାଳିହୋଇପଡ଼ିବ ? ଆଉ ମାତ୍ର ଓଡ଼ିଶାରେ ଜଣେଇ ହେବାପାଇଁକି କ'ଣ, ମୁଁ ସେ ପ୍ରବଂଧରେ ଏପରି ଚେଷ୍ଟା କରିଛି ?

ଏ ସ୍ଥଳରେ କେବଳ ଆଉ ଗୋଟାଏ ବହିର ଉଲ୍ଲେଖ ହେବା ଉଚିତ ଥିଲା– ଗୋପବଂଧୁଙ୍କ 'ବନ୍ଦୀର ଆତ୍ମ-କଥା' ଯାହାକି ଗାନ୍ଧିଆନ୍ଦୋଳନର ହିଁ ଫଳ ବୋଲି ଧରାଯିବ । କିନ୍ତୁ ଗୋପବନ୍ଧୁଙ୍କ ସଂପର୍କରେ ଏ ପୁସ୍ତକର ପ୍ରଶଂସିତ ଉଲ୍ଲେଖ ଆଲୋଚନା ହୋଇଯାଇଥିବାରୁ ଏଠାରେ ବୋଧହୁଏ ପୁନରୁଲ୍ଲେଖ ହୋଇନାହିଁ । କିନ୍ତୁ ବର୍ତ୍ତମାନ ବୁଝୁଛି ଏଠିବି ସେ ବହିର ପୁଣି ଉଲ୍ଲେଖ ହେବା ଉଚିତ । ଦ୍ୱିତୀୟ ସଂସ୍କରଣରେ ତାହା ଯେପରି ହୁଏ, ତାହା ଦେଖିବି ।

ଶ୍ରୀ ପଟ୍ଟନାୟକ ଓଡ଼ିଶା ବାହାରେ ଏ ପ୍ରବଂଧର ପ୍ରତିକ୍ରିୟାକୁ ଆଳ କରି ମତେ ଆକ୍ରମଣ କରିଛନ୍ତି । କିନ୍ତୁ ମୋ' ପ୍ରବଂଧ ପଢ଼ି ଜାତୀୟ ସାହିତ୍ୟ ଆକାଡ଼େମୀର ସ୍ୱୟଂ ସଂପାଦକ ଏଇପରି ଲେଖିଥିଲେ ''ତମର ପ୍ରବଂଧଟି ପଢ଼ି ଭାରି ଆନନ୍ଦପାଇଛି ଓ ଏଥିରୁ ଅନେକ କଥା ଶିଖିଲି ।''

ସେତିକିରେ ବର୍ତ୍ତମାନ ବିଦାୟ ନିଏ କମ୍ରେଡ଼ ପଟ୍ଟନାୟକଙ୍କଠାରୁ ।

ଏ ଭିତରେ ଓଡ଼ିଶା ବିଧାନ ସଭାରେ ମୋର ଏଇ ପ୍ରବଂଧକୁ ଆକ୍ରମଣ କରି ପ୍ରଜାସାମ୍ୟବାଦୀ ନେତା ଶ୍ରୀଯୁକ୍ତ ବାଂକବିହାରୀ ଦାସ ମଧ୍ୟ ଏଇ ଲେଖକକୁ ଯଥେଷ୍ଟ ଗୌରବ ଦାନ କରିଛନ୍ତି । ସେ ମଧ୍ୟ କହିଛନ୍ତି (ଯାହା ପ୍ରଜାତନ୍ତ୍ରରେ ପ୍ରକାଶିତ ହୋଇଥିଲା, ତା'ରି ଉପରେ ମୁଁ କହୁଛି) ଯେ, ମୁଁ ସତ୍ୟବାଦୀ ଓ ସବୁଜ ସାହିତ୍ୟକୁ ନିନ୍ଦା କରିଛି, ପରନ୍ତୁ ନିଜ ସାହିତ୍ୟକୁ ପ୍ରଶଂସା କରିଛି । ମୁଁ ସବୁର ଉତ୍ତର ତ ଆଗରୁ ଦେଇଛି । 'ସତ୍ୟବାଦୀ ସାହିତ୍ୟ'କୁ ନିନ୍ଦା କରିଛି ବୋଲି ଯେ ଜଘନ୍ୟ ମିଥ୍ୟା ପ୍ରଚାର ଯାକୁ ଏକ ଅଭିସନ୍ଧିମୂଳକ ଷଡ଼ଯନ୍ତ୍ର ଛଡ଼ା କ'ଣ କୁହାଯାଇପାରେ, ମୁଁ ଭାବି ପାରୁନାହିଁ । ମୁଁ ଦୃଢ଼ ଭାବରେ ଜାଣେ ବାଙ୍କବିହାରୀବାବୁ ବା ଗୁରୁଚରଣବାବୁ ମୋ'ପରି ଜଣେ ଅପ୍ରଧାନ, ଅକ୍ଷମତାପନ୍ନ, ଅଦଳୀୟ ସାମାନ୍ୟ ଲୋକ ବିରୁଦ୍ଧରେ ଷଡ଼ଯନ୍ତ୍ର କରିବାକୁ କଳ୍ପନା ବି କରିବେ ନାହିଁ । ପ୍ରତ୍ୟକ୍ଷଭାବରେ ପରିଚୟ ନଥିଲେହେଁ ଏମାନଙ୍କର ହୃଦୟବତ୍ତା ଓ ପ୍ରାଣର ସରସତା ମୋର ଜ୍ଞାତସାରକୁ ଆସିଛି ଏବଂ ସେଥିପାଇଁ ଏମାନଙ୍କୁ ଦୂରରୁ ଲୋକସେବକ ଭାବରେ ମୁଁ ଶ୍ରଦ୍ଧା କରିଆସିଛି । ଦେଶର ଓ ଭାଷାର କଲ୍ୟାଣ ଦୃଷ୍ଟିରୁ ଏମାନେ ମତେ ନିନ୍ଦା କଲେ ମୋର କିଛି କହିବାର ନାହିଁ । କିନ୍ତୁ ସମଗ୍ର ପ୍ରବନ୍ଧରେ ମୁଁ 'ସତ୍ୟବାଦୀ ସାହିତ୍ୟ'ର କେଉଁଠି ନିନ୍ଦା କରିଛି ବାଙ୍କବିହାରୀବାବୁ ଦେଖାଇ ଦେବେ କି ? ଆଉ, ସବୁଜ ଦଳର ନିନ୍ଦା-

କରିଛି କହିଲା ବେଳେ, ସବୁଜ ଦଳର ପ୍ରଶଂସା ବିଷୟରେ ନୀରବ ରହିବା ଉଚିତ କି ? ପୁଣି ସମଗ୍ର ପ୍ରବନ୍ଧରେ କୌଣସିଠାରେ ମୋର ନାମୋଲ୍ଲେଖ ନଥିଲାବେଳେ ମୁଁ ମୋ' ଲେଖାର ପ୍ରଶଂସା କରିଛି ବୋଲି ବାଙ୍କବିହାରୀ ବାବୁ ପ୍ରଚାର କରିବା ଅନ୍ୟାୟ ନୁହେଁ କି ? ପୁଣି ଓଡ଼ିଶା ସାହିତ୍ୟ ଆକାଡ଼େମୀର ମୂଳୋତ୍ପାଟନ କରିବାକୁ ଯାଇ ଭାରତୀୟ ସାହିତ୍ୟ ଆକାଡ଼େମୀର ପ୍ରବନ୍ଧକୁ ବ୍ୟବହାର କରିବାରେ ଯେଉଁ ଉତ୍କ୍ଷିପ୍ତ ମନୋଭାବ ସୂଚିତ ହେଉଛି, ତାହା ବାଙ୍କବିହାରୀ ବାବୁଙ୍କ ପରି ଲୋକପ୍ରତିନିଧି ପକ୍ଷରେ ଶୋଭା ପାଉଛି କି ? ତେଣୁ ମୋ' ଦେଶର ଦୁଇଜଣ ମୁଖ୍ୟମନ୍ତ୍ରୀ ପରେ ପରେ ଏଇ ଦୀନ ଲେଖକକୁ ବ୍ୟକ୍ତିଗତ ଓ ପ୍ରକାଶ୍ୟଭାବରେ କବିର ସମ୍ବର୍ଦ୍ଧନା ଦେଇସାରିଛନ୍ତି । ମୋର ନିଜର ପ୍ରଶଂସା ନିଜେ କରିବାର କୌଣସି ଆବଶ୍ୟକତା ମୁଁ ଦେଖୁନି କି ଏ ପ୍ରବନ୍ଧରେ ମୁଁ ତା'ର ଚେଷ୍ଟା କରିନି । ଅନ୍ୟର ନିନ୍ଦା କରି ଯେ ମୁଁ ବଡ଼ଦେଖାଯିବି, ଏ ଦୁରାଶା ମଧ୍ୟ ମୋର ନାହିଁ । ବାଙ୍କବିହାରୀ ବାବୁ ଓ ଗୁରୁଚରଣ ବାବୁଙ୍କୁ ମୋର ବିନୀତ ଅନୁରୋଧ ସେମାନେ ପ୍ରବନ୍ଧଟିକୁ ଧୀରସ୍ଥିର ଭାବରେ ପଢ଼ନ୍ତୁ । ମୋର ଆଶା ତା'ହେଲେ ସେମାନେ ଦେଖିପାରିବେ ମୋର ପ୍ରବନ୍ଧଟି ଓଡ଼ିଆ ସାହିତ୍ୟର ଏକ ଯଥାର୍ଥ ଏଷ୍ଟିମେଟ୍, ବା ସେହି ଲକ୍ଷ୍ୟରେ ଏକ ଅକପଟ ଚେଷ୍ଟା ।

ଯାହାହେଉ ଶ୍ରୀଯୁକ୍ତ ପଟ୍ଟନାୟକ ତାଙ୍କ ଆକ୍ରମଣ ଶେଷରେ ''ଶ୍ରୀଯୁକ୍ତ ମାନସିଂହଙ୍କର ଲେଖାର ଶୈଳୀ, ବିଷୟ ଆଦି ଉଚ୍ଚ ଧରଣର ଓ ଖୁବ୍ ସୁନ୍ଦର ହୋଇଛି'' ବୋଲି ଯାହା ସାଧୁବାଦ କରିଛନ୍ତି ମୁଁ ସେଥିପାଇଁ ତାଙ୍କୁ ଅନ୍ତରର କୃତଜ୍ଞତା ଜଣାଉଛି । ଏଇ ଦୋଷୈକଦର୍ଶୀ ଦେଶରେ ଏତକ ସୌଜନ୍ୟ ଓ ଉଦାରତା ବି ତ ଦୁର୍ଲଭ । ତେଣୁ କମ୍ରେଡ଼ ପଟ୍ଟନାୟକ ତାଙ୍କର ସମସ୍ତ ଲାଠିମାଡ଼ ସତ୍ତ୍ୱେ, ମୋର ଶ୍ରଦ୍ଧା ଆକର୍ଷଣ କରୁଛନ୍ତି । ମୋର ସେହି ନିଷ୍ପାପର ଲୋକସେବକଙ୍କୁ ଅନୁରୋଧ, ସେ ଆଦୌ ଉତ୍କ୍ଷିପ୍ତ ହୁଅନ୍ତୁ ନାହଁ; ମୋର ଲେଖାଟିକୁ ମୋର ଏଇ ଆଲୋଚନା ଦୃଷ୍ଟିରେ ଆଉ ଥରେ ନିରପେକ୍ଷ ଦୃଷ୍ଟିରେ ପଢ଼ନ୍ତୁ । ତେବେ ମୋର ଆଶା ସେ ଦେଖିବେ ଯେ ମୁଁ ଦଳମତ ନିର୍ବିଶେଷରେ, ଯାହାର ଯାହା ଓଡ଼ିଆ ସାହିତ୍ୟକୁ ଖାଣ୍ଟି ଦାନ ତାହା ଅକୁଣ୍ଠିତ ଚିତ୍ତରେ ସ୍ୱୀକାର କରିଛି ।

--

ଝଙ୍କାର, ୯ / ୧୧

# କବି ଓ ଅଭିଜାତ

ଦରିଦ୍ର କବି । ସଂସାର ଭିତରେ ସେ ପ୍ରାଣ ସମା ଭଗିନୀଟିକୁ, ସ୍ନେହମୟୀ ପତ୍ନୀଟିକୁ ପ୍ରଥମତମ ଓ ନିକଟତମ ଆତ୍ମା ମନେକରି, ସେହି ଦୁଇଟି ପାତ୍ରରେ ପ୍ରାଣର ବିମଳ ପ୍ରେମଧାରା ନିଃଶେଷ ଭାବରେ ଅଜାଡ଼ିଦେଇ କବିତାର ସ୍ୱପ୍ନ ରାଜ୍ୟରେ ବୁଲୁଥାନ୍ତି । ଦରିଦ୍ର ସଂସାର କଷ୍ଟେମଷ୍ଟେ ଚାଲେ । ଭଗିନୀ କହେ 'ବାପ, ମୋର ଏଇ କୁଡ଼ିଆରେ ନଖାଇ ମରିବା ପଛେ, ତୁ ଆମକୁ ଛାଡ଼ି ଯାଅନା' । ପତ୍ନୀ କହେ– 'ପ୍ରିୟ ମୋର, ତୁମକୁ ଛାଡ଼ି ରହିବା ଅସହ୍ୟ । ଦୁଃଖେ ସୁଖେ ତ ସଂସାର ଚାଲିଛି, ଦରକାର କ'ଣ ଘର ଛାଡ଼ିବା ? କୋମଳ ପ୍ରାଣ କବି ଏକଥା ଶୁଣି ନିରବରେ ଦୁଇବିନ୍ଦୁ ଅଶ୍ରୁ ଢାଳିଦେଇ, ନିଜକୁ ଭାଗ୍ୟବାନ୍ ମନେକରେ ଓ ସତ୍ୟ ଶିବ ଭଗବାନଂକୁ ପତ୍ନୀ ଭଗିନୀ ରୂପ ଅନୁପମ ଦାନ ପାଇଁ ଧନ୍ୟବାଦ ଦିଏ ।

କବିଂକର ବଂଧୁ ଯେ ଥିଲେ ସେମାନେ ମଧ୍ୟ ଦରିଦ୍ର । କବି ବଡ଼ ଲଜ୍ଜାଶୀଳ; ଅପରିଚିତଂକୁ ଲାଜକରନ୍ତି, ଧନୀ ଅଭିଜାତଂକୁ ଭୟକରନ୍ତି । ଅଭିଜାତମାନଂକର ଧନର ବର୍ବରତାରେ ସେ ବଡ଼ ସଂକୁଚିତ ଅନୁଭବ କରନ୍ତି । ତାଂକ ପ୍ରାଣ ମୁକ୍ତ ହୁଏ କେବଳ ମୁଷ୍ଟିମେୟ ପୁଣ୍ୟପ୍ରାଣ ଦରିଦ୍ର ବଂଧୁଂକ ମେଳରେ । ସେମାନେ ଯେ କବିଂକି ବୁଝନ୍ତି, କବି ମନେକରନ୍ତି ଏଇ ତାଂକର ଶ୍ରେଷ୍ଠ ପୁରସ୍କାର । କବିଂକର ଭଗିନୀ, ତାଂକର ସମସ୍ତ ବଂଧୁମାନଂକର ଭଗିନୀ, କବିଂକର ପତ୍ନୀ ସମସ୍ତଂକର ମାନ୍ୟା । ଏଇ ପରମ ସୌହାର୍ଦ୍ଦ୍ୟ ମଧ୍ୟରେ ବଢ଼ି, କବି କେବେ ଧନର ଅଭାବ ଅନୁଭବ କରିନଥିଲେ, ଅଭିଜାତର ଦ୍ୱାର ମାଡ଼ି ନଥିଲେ । କବିଂକର ପଲ୍ଲୀରେ ଗୃହ । ପଲ୍ଲୀର ଅନାବୃତ ପ୍ରକୃତି ଓ ସରଳ ମାନବ ଜୀବନ, ତାଂକର ପ୍ରାଣକୁ ସରସ ରଖିଥାଏ । ତାଳ ନାରୀକେଳ ସହକାର ସମନ୍ୱିତ ଶ୍ୟାମଳ କ୍ଷୁଦ୍ର ପଲ୍ଲୀଟିଏ । କବିଂକର ଗ୍ରାମ ବୃକ୍ଷଶାୟୀ ଅରଣ୍ୟ ବିହଂଗ କଂଠରେ ସେହି ଗ୍ରାମର ନିଦ୍ରାଭଂଗ ହୁଏ । ଛାୟା ଅଂଧାରିତ ଗ୍ରାମ ପଥଦେଇ ଗ୍ରାମର ସୀମନ୍ତିନୀବୃଂଦ କାଖରେ ଓ ହାତରେ କଳସୀ ଧରି ପ୍ରାତଃସ୍ନାନ ଲାଗି ବାହାରିପଡ଼ନ୍ତି । ସେମାନଂକର ଗାର୍ହସ୍ଥ୍ୟ ଆଳାପରେ ପଥ ମୁଖରିତ ହୋଇଉଠେ । ଗ୍ରାମରୁ ଟିକିଏ ଦୂରରେ ପଦ୍ମପୋଖରୀ, ସେଠାରେ ପ୍ରସ୍ଫୁଟିତ ସରୋଜସମ୍ଭାର ମଧ୍ୟରେ ଗ୍ରାମର କିଶୋରୀ ଓ ବଂଧୁମାନଂକର ବଦନ ସରୋଜ

[ ରମ୍ଭାଚକ୍ର– ୧ମ ଭାଗ, ୩ୟ ସଂଖ୍ୟା – ବୈଶାଖ ୧୩୪୦ ସାଲ । ]

ସୁଷମାର ପ୍ରତିଯୋଗିତା କରନ୍ତି । ସେହି ପୋଖରୀର ବନ୍ଧଦେଇ ଗୋଟିଏ ସରୁପଥ ଦୂରଦୂରାନ୍ତକୁ ଚାଲିଯାଇଛି । ସେହି ପଥଦେଇ ଗୋଧୂଳି ବେଳରେ ଗ୍ରାମର ଧେନୁ-ବୃନ୍ଦ ହମ୍ବାରାବରେ ଦିଗନ୍ତ ମୁଖରିତ କରି ଓ ଖୁରାଘାତରେ ସମସ୍ତ ପଥ ଧୂଳିମୟ କରି ଗ୍ରାମକୁ ଫେରନ୍ତି । ସେହି ପଥଦେଇ ପ୍ରତ୍ୟୁଷରୁ ଗ୍ରାମସ୍ୱାମୀମାନେ ଗାର୍ହସ୍ଥ୍ୟର ଆୟୋଜନ ଲାଗି ଗ୍ରାମରୁ ବାହାରିପଡ଼ନ୍ତି । ସେହି ପଥଦେଇ କବି ସକାଳେ ଓ ସଂଧ୍ୟାରେ, ବେଳରେ ଅବେଳରେ, ନିରୁଦ୍ଦେଶ୍ୟ ଓ ଉଦ୍ଦେଶ୍ୟ ଘେନି ଯାଉଥିବାର ଓ ଆସୁଥିବାର ଅନେକ ଦେଖୁଛନ୍ତି ।

ସେହି କବିଂକର କାବ୍ୟରେ ଏହି ମଧୁମୟ ପଲ୍ଲୀପ୍ରକୃତି, ରମଣୀୟ ଭାବରେ ବିକଶିତ ହୋଇ ଉଠୁଥିଲା । ତେଣୁ ଦୂରସ୍ଥ ନଗରମାନଂକରେ ବୈଚିତ୍ର୍ୟହୀନ ନାଗରିକମାନଂକ ନିକଟରେ ତାଂକର କବିତା ବିଶେଷ ଆଦର ଲାଭକଲା । ପଲ୍ଲୀର ଶୋଭା ସୌଂଦର୍ଯ୍ୟ, ସୁଖ ଦୁଃଖ, ପ୍ରେମ ସ୍ନେହ ଏପରି ନିପୁଣ ଭାବରେ କୌଣସି କବି ପୂର୍ବେ ଆଂକି ପାରିନଥାନ୍ତେ । ଦେଖୁ ଦେଖୁ କବିଂକର ଯଶ ଦେଶମୟ ପରିବ୍ୟାପ୍ତ ହୋଇଉଠିଲା । ଦେଶର ତରୁଣ ତରୁଣୀ ତାଂକର କବିତାକୁ ପ୍ରମତ୍ତ ଭାବରେ ଆଦର କରିବାକୁ ଲାଗିଲେ । ସାତ-ପାଂଚ ମିଳି ଅପରିଚିତ କବିଂକର ଚାରିଆଡ଼େ ଆଲୋଚନା ଲାଗିଲା । ପ୍ରେମିକ ପ୍ରେମିକା ପଲ୍ଲୀକବିଂକର ରଚନାରୁ ପ୍ରେମ ଉପଭୋଗ ଲାଗି ଉପାଦାନ ପାଇଲେ । ଦେଶର ଶ୍ରେଷ୍ଠ ନଗରର ପଥେ ପଥେ ତରୁଣମାନେ ମିଳି କବିଂକର ଯଶ ଗାନକରିବାକୁ ଲାଗିଲେ ।

ଏ ଯଶ କେତେକଂକର ଅସହ୍ୟ ହେଲା । ଏମାନଂକ ମଧ୍ୟରୁ କେତେକ ପ୍ରକାଶ୍ୟ ଭାବରେ କବିଂକର ନିଂଦା କରିବାକୁ ଲାଗିଲେ, କେତେକ କବିଂକି ବିଚାରର ଅଯୋଗ୍ୟ ମନେକରି ତାଚ୍ଛଲ୍ୟ କଲେ, କେତେକ ଗୋପନଭାବରେ କବିଂକ ପ୍ରଶଂସାର ଗତିରୋଧ କରିବାକୁ ଲାଗିଲେ । କିନ୍ତୁ ଏ ସମସ୍ତ ଘାତ-ପ୍ରତିଘାତ ମଧ୍ୟରେ କବିଂକର ଯଶ ଧୀରେ ଧୀରେ ବିସ୍ତାରିତ ହେବାକୁ ଲାଗିଲା ।

ଏହି କବିଯଶ ଦୂର ପଲ୍ଲୀରେ ଦରିଦ୍ର କବିଂକି ସମ୍ୟକ୍ ଆନଂଦ ଦେବାକୁ ଲାଗିଲା । କବିଂକ ଠାରୁ ଅଧିକ ଆନଂଦ ଲାଭକଲେ ତାଂକର ପ୍ରେୟସୀ । କିନ୍ତୁ ଏହି ଦୁଇଟି ଆତ୍ମା ଛଡ଼ା ସେ ଗ୍ରାମରେ କବିଂକର ମହତ୍ତ୍ୱ ବୁଝିବାକୁ ତୃତୀୟ କେହି ନଥିଲେ । କବିଂକର ବଂଧୁମାନେ ଦୂର ଦୂର ଗ୍ରାମରେ ଥାଆନ୍ତି, ବେଳେବେଳେ ଆସନ୍ତି । ଗ୍ରାମରେ ଲୋକେ କହନ୍ତି ''ସେ ଖ୍ୱାବ୍ କବି କରି ପାରୁଛି''– ଏବଂ ସେମାନଂକର ରସ ଗ୍ରହଣ ସେ ପର୍ଯ୍ୟନ୍ତ । ତାହା ବ୍ୟତୀତ ଅନ୍ୟ ଗ୍ରାମବାସୀମାନଂକ ପରି କବି ମଧ୍ୟ ଜଣେ ବୋଲି ଧରାହୁଅନ୍ତି । ବିଶେଷ ଦୃଷ୍ଟି ଦେଇ ଦେଖିବାକୁ

ସେମାନେ ଶିଖିନଥିଲେ ।

ଦାରିଦ୍ର୍ୟର ତାଡ଼ନାରେ ଥରେ କବି ଗ୍ରାମ୍ୟ ଧନିକର କବଳରେ ପଡ଼ିଥିଲେ । ଧନିକର ମୁଦ୍ରା ଗରିବର ମୁଦ୍ରାପରି ହୀନ-ବୀର୍ଯ୍ୟ ନୁହନ୍ତି; ସେଗୁଡ଼ାକ ରକ୍ତବୀର୍ଯ୍ୟ ପରି ବଢ଼ନ୍ତି । କବିଂକ ଉଧାର ଧନ ତେଣୁ ଅଳ୍ପକାଳ ମଧ୍ୟରେ ଏପରି ବୃଦ୍ଧି ଲାଭ କଲା ଯେ, ଯେଉଁଦିନ ଧନିକ ତାଂକଦ୍ୱାର ମାଡ଼ି ନିର୍ମ୍ମମଭାବରେ ଡାକିବାକୁ ଲାଗିଲା, ସେଦିନ କବି ଖାଦ୍ୟାହାର ତ୍ୟାଗ କଲେ । ଗଭୀର ଅଂଧକାରରେ ସେଦିନ କବିପତ୍ନୀ ସ୍ୱାମୀଂକ ଶଯ୍ୟାରେ ଏକପାର୍ଶ୍ୱରେ ଉପବେଶନକରି, ସ୍ୱାମୀଂକୁ ଧୀରେ ଧୀରେ ଉଠାଇ କହିଲେ, 'ଏ, ଶୁଣ, ଏମିତି କାହିଁକି ହେଉଛ ? ନଗରରେ ତୁମର ଯଶତ ତୁମକୁ ପରିଚିତ କରାଇ ଦେଇଛି । ସେଠାରେ ପରିଚୟ ଦେଲେତ ତୁମର ସବୁ ଦୁଃଖ ମେଣ୍ଟିଯିବ। କିଛିଦିନ ପାଇଁ ଯାଅ—ଆମେପଛେ କଷ୍ଟେମଷ୍ଟେ ଏଠିରହିଯିବୁ କିଛିଦିନ।

ପତ୍ନୀଂକର ଉପଦେଶ କବି ଗ୍ରହଣକରି ତହିଁ ଆରଦିନ ପ୍ରତ୍ୟୁଷରୁ ଗ୍ରାମର ସେଇ ପରିଚିତ ପଥରେ ନଗର ଯାତ୍ରା କଲେ । ତାଂକର ମସ୍ତକରେ ପ୍ରିୟତମାଂକର ଲକ୍ଷ ଲକ୍ଷ ରାଣ— ଶପଥ ବ୍ୟତୀତ ଅନ୍ୟ କିଛି ଭାର ନଥିଲା । ପଛରେ ଦୁଇଟି ନିରାଶ୍ରିତା ବାଳିକାର ଛବି ତାଂକ ଚିତ୍ତକୁ ସମସ୍ତ ପଥ ବ୍ୟାକୁଳ କରି ରଖିଲା ।

(୨)

କବି ଯେତେବେଳେ ନଗରରେ ପହଂଚନ୍ତି, ସେତେବେଳେ ନଗରରେ ଏକ ଉତ୍ସବ । ପଲ୍ଲୀର କବି ନଗରର ପଥେ ପଥେ ଘୁରି ଘୁରି ନାଗରିକ ମାନଂକର ଉଦ୍ଦାମ ଉତ୍ସବ ଦେଖିବାକୁ ଲାଗିଲେ । ନଗରର ଅଶାନ୍ତ କୋଳାହଳ, ଘର୍ଘର ନାଦ, ଯାନ-ମାଳା, ଅଗଣିତ ଜନତା, ଧନର ପ୍ରଚୁରତା, ବିଳାସର ବାହୁଲ୍ୟ ମଧ୍ୟରେ ତାଂକର କବିପ୍ରାଣ ନିତାନ୍ତ ସଂକୁଚିତ ହୋଇଉଠିଲା । ଏଇ ବିରାଟ ଜନସଂଘ ମଧ୍ୟରେ ସେ କେବଳ ଦୂର ପଲ୍ଲୀର ସେଇ ପରିଚିତ କୁଟୀରବାସିନୀ କଳିକା ଦୁଇଟିର ଆତ୍ମୀୟତା ଖୋଜିବୁଲିଲେ । ସେ ଦେଖିଲେ ଅଗଣିତ ଜନସମୁଦ୍ର ମଧ୍ୟରେ ସେ ନିତାନ୍ତ ଏକାକୀ । ତାଂକର ପାଖଦେଇ ଯେଉଁ ଜନ-ପ୍ରବାହ ବହିଯାଉଥିଲା । ତା'ର ଗୋଟିଏ ବିଂଦୁକୁ ମଧ୍ୟ ସେ ଆପଣାର କରି ଜାଣିପାରିଥିଲେ ଶାନ୍ତି ଅନୁଭବ କରିଥାନ୍ତେ । ନଗରର ନିର୍ମମ ନିଃସଂଗତା ମଧ୍ୟରେ ସେ ପଲ୍ଲୀର ପରିଚିତ ବୃକ୍ଷଲତା, ପଥଘାଟ ଆଦିକୁ ଝୁରିହେବାକୁ ଲାଗିଲେ । ଅର୍ଥର ଜ୍ୱାଳାରେ ତାଂକୁ କ୍ରମେ ଅଭିଜାତମାନଂକର ଦ୍ୱାରସ୍ଥ ହେବାକୁ ହେଲା । ପ୍ରଥମ ପରିଚୟରେ ଲୋକେ ଆଗ୍ରହ ପ୍ରକାଶ କଲେ । କିନ୍ତୁ ଯେତେବେଳେ ଦେଖିଲେ ଯେ ସରସ କବିତା ସହିତ

କବିଂକ ଗ୍ରାମ୍ୟରୂପ ଓ ବେଶବାସର ମେଳ ନାହିଁ; ସେଥିରେ ଅନେକଂକର ଉତ୍ସାହ କମି ଆସିଲା । କବି ବଡ଼ ବ୍ୟଥିତ ହେଲେ । କାହିଁକି ଯେ ସେ ପଲ୍ଲୀ ଛାଡ଼ି ଆସିଲେ ତାହାହିଁ ସେ ଭାବିବାକୁ ଲାଗିଲେ ।

ନଗରର ଗୋଟିଏ ଅଭିଜାତ ବଂଶର ସାହିତ୍ୟିକ ଅହଂକାର ଥାଏ । କେତେକଂକର ପ୍ରରୋଚନାରେ କବି ଦିନେ ସେହି ବଂଶର ଦ୍ୱାରସ୍ଥ ହେଲେ । ବଡ଼ ସଂକୁଚିତ, ବଡ଼ ସନ୍ତ୍ରସ୍ତ ଭାବରେ ଦ୍ୱାର ପର୍ଯ୍ୟନ୍ତ ଯାଇ ପ୍ରଥମ ଦିନ ସାହସ ଅଭାବରୁ ଫେରି ଆସିବାକୁ ହେଲା । କବି ବୋଧକଲେ ଯେ ସେହି ବଂଶ ତାଂକୁ ନିଶ୍ଚୟ କବି ଭାବରେ ଜାଣିଥିବ। ଦରିଦ୍ର ଓ ପ୍ରେମିକ ଅଜ୍ଞାତବାସ ଖୋଜନ୍ତି। ଏ ଦରିଦ୍ରତାର ପରିଚୟ ଦେଇ ପୂର୍ବର କଳ୍ପିତ ସମ୍ମାନକୁ ନଷ୍ଟ କରିବାକୁ କବି ନିତାନ୍ତ କୁଂଠିତ ବୋଧକରୁଥିଲେ।

ବହୁ ଆୟାସରେ ଦ୍ୱିତୀୟ ଦିନ ଯେତେବେଳେ ସେ ସେହି ବଂଶର ପ୍ରାସାଦର ସମ୍ମୁଖୀନ ହୁଅନ୍ତି ସେତେବେଳେ ଅଭିଜାତ ପୁତ୍ରମାନଂକର ବଂଧୁବାଂଧବ ଘେନି ଆଳାପ ଚାଲିଥିଲା । କବି ଆଳାପର ଶେଷକୁ ଅପେକ୍ଷା କରି ରହିଲେ – କିନ୍ତୁ ସେ ତ ଶେଷ ହେବାର ନୁହେଁ । କର୍ମୀ ଲୋକର ଆଳାପ ପାଇଁ ସମୟ ନଥାଏ, କିନ୍ତୁ କର୍ମହୀନ ବିଳାସୀର ଆଳାପର ଶେଷ ହୁଏନାହିଁ । ବହୁ ସମୟ ଅପେକ୍ଷା ପରେ, ଜଣେ କେହି କୌଣସି ଉଦ୍ଦେଶ୍ୟରେ ବାହାରକୁ ଆସି ହଠାତ୍ କବିଂକର ଦର୍ଶନ ପାଇଲେ । କୌଣସି କ୍ରମେ ସେ ପୂର୍ବରୁ କବିଂକର ପରିଚୟ ପାଇଥିଲେ । ସେ ପଚାରିଲେ– 'ଆପଣ ଏଠାରେ ?' କବି ତାଂକର ଭିକ୍ଷା ଜ୍ଞାପନ କଲେ । ତହୁଁ ସେ 'ଆସନ୍ତୁ' କହି କବିଂକି ଭିତରକୁ ଯିବାକୁ ଇଂଗିତ ଦେବାରୁ କବି ସଂକୁଚିତ ଭାବରେ ଅନୁଗମନ କଲେ ।

ଭିତରର ଆଡ଼ମ୍ବର ମଧ୍ୟରେ କବିଂକର ସଂକୋଚ ଆହୁରି ବଢ଼ିଗଲା । ସେ ମୁହଁ ପୋତି କୌଣସିମତେ ଗୋଟିଏ ଆସନ ଗ୍ରହଣ କରି ବସିରହିଲେ । ସେହି ପରିଚିତ ଭଦ୍ରଜନ କବିଂକର ପରିଚୟ କରାନ୍ତେ, ଅଭିଜାତମାନଂକର ଆଳାପ କ୍ଷଣକ ପାଇଁ ସ୍ଥଗିତ ରହିଲା । କିନ୍ତୁ କ୍ଷଣକ ପାଇଁ ସମସ୍ତେ ଥରେ ମାତ୍ର ନବାଗତଂକ ପ୍ରତି ଦୃଷ୍ଟିପାତ କରି ପୁଣି ଆଳାପ ଆରମ୍ଭ କରିଦେଲେ । କବି ନିରବରେ ବସିରହିଲେ ।

କେତେ ସମୟ ପରେ ଅଭିଜାତମାନେ ବୁଝିଲେ ଆଳାପଟା ଭଲ ଜମୁନି । ଆଗନ୍ତୁକଟି ଯେ ତାହାର କାରଣ ତା' ସମସ୍ତେ ବୁଝିନେବାରୁ, ତାଂକ ମଧ୍ୟରୁ ସହସା ଜଣେ କହିଦେଲେ, 'ଆପଣ ପରେ ଆସିବେ, ଦେଖିବା' । କବି ନିରବରେ ସମସ୍ତଂକୁ ନମସ୍କାର କରି ବିଦାୟ ନେଲେ । ତାଂକର ପ୍ରସ୍ଥାନ ପରେ ଜଣେ କହିଲା, 'ଏଇ କବିତା ଲେଖେ ?'

କବିଂକି ଏଇପରି ବହୁଥର ଆସି ବହୁଥର ଫେରିବାକୁ ହେଲା । ଶେଷରେ ତାଂକୁ ଶୁଣାଇଦିଆଗଲା– ତାଂକ ହାତରେ କାମ ହେବନି, ସେ ଅନ୍ୟ ଉପଯୁକ୍ତ ଲୋକ ରଖିବେ । କବି ସେଦିନ ଯେତେବେଳେ ରାଜପଥକୁ ବାହାରିପଡ଼ିଲେ, ନିକଟର ଗୋଟିଏ ବସ୍ତୁକୁ ଧରି ପକାଇ ନଥିଲେ, ସେହିଠାରେ ତାଂକର ପତନ ଅବଶ୍ୟମ୍ଭାବୀ ହୋଇଥାନ୍ତି । କାରଣ ସେତେବେଳେ ତାଂକର ଦୁଇଚକ୍ଷୁ ଲୋତକପୂର୍ଣ୍ଣ ।

ତହିଁଆରଦିନ କବିଂକି ପଲ୍ଲୀପଥରେ ଫେରିବାର ଦେଖାଗଲା । କେତେବର୍ଷ ପରେ ଦୁରନ୍ତ ଦାରିଦ୍ର୍ୟ ମଧ୍ୟରେ ସେ ପ୍ରାଣତ୍ୟାଗ କରିବାର ନଗରରେ ପ୍ରଚାର ହେଲା । ତାଂକ ପୂର୍ବରୁ ତାଂକର ପତ୍ନୀ ପ୍ରାଣତ୍ୟାଗ କରିଥିଲେ । କେବଳ ଭଗିନୀ ତାଂକ ବିୟୋଗରେ ବିଳାପ କରିବାକୁ ରହିଲେ । ମଲାବେଳକୁ ଦେଶର ପ୍ରତ୍ୟେକ ଚିନ୍ତାଶୀଳ ଲୋକ ତାଂକ ଦେଶର ଶ୍ରେଷ୍ଠ କବି ବୋଲି ମାନିଥିଲେ ।

(୩)

ପଚାଶ ବର୍ଷ ପରେ, ସେହି ନଗରରେ ସେହି ଅଭିଜାତ ବଂଶ ଆଉ ନଥିଲେ । ଧନରୁ ବ୍ୟସନ ଓ ବ୍ୟସନରୁ ମୃତ୍ୟୁ ଆସେ– ଏହି ନିୟମରେ ସେହି ବିଳାସୀ ବଂଶ କ୍ରମେ ଲୋପ ପାଇବାକୁ ଲାଗିଲେ । ନଗରର ପ୍ରାସାଦ ଜରାଜୀର୍ଣ୍ଣ ହୋଇପଡ଼ିଲା । କୁଳର ପ୍ରଦୀପ ସ୍ୱରୂପ ଦ୍ୱାଦଶବର୍ଷୀୟା ଗୋଟିଏ ବାଳିକା ବର୍ତ୍ତମାନ ଜୀବିତା ।

ପଚାଶ ବର୍ଷ ଭିତରେ ସେହି ଦରିଦ୍ର କବିଂକର ଯଶ ଦେଶମୟ ବ୍ୟାପିଯିବାର ଦେଖି, ତରୁଣକୁଳ ଦେଶର ଶ୍ରେଷ୍ଠ କବି ଦାରିଦ୍ର୍ୟ ମଧ୍ୟରେ ମରିଥିବାରୁ, ପ୍ରାୟଶ୍ଚିତ୍ତ କରିବାକୁ ଦେଶକୁ ଆହ୍ୱାନ କରିଛି । ତା'ର ଫଳରେ ସେହି ନଗରରେ କବିଂକ ସ୍ମୃତି ରକ୍ଷାଲାଗି ନୂତନ ଉଦ୍ୟମ ଲାଗିଛି । କବି ଯେଉଁଦିନ ସେହି ନଗରୀରେ ପଦାର୍ପଣ କରିଥିଲେ, ସମସ୍ତ ନଗର ତା'ର ସ୍ମୃତି ପାଳନ କରିଛି । ଆଜି ସେହି ଦିନ । ତରୁଣମାନଂକର ମିଳିତ ଚେଷ୍ଟାରେ ଆଜି କବିଂକର ମର୍ମର ପ୍ରସ୍ତରର ମୂର୍ତ୍ତି ନଗରରେ ସ୍ଥାପନ କରିବାର ଉଦ୍‌ଯୋଗ ଲାଗିଛି ।

କବିଂକର ମୂର୍ତ୍ତି ଉଦ୍‌ଘାଟିତ ହେଲା । ନଗରର ଶ୍ରେଷ୍ଠ ବ୍ୟକ୍ତି କବିଂକର ପ୍ରଶଂସା-କରି ବକ୍ତୃତା କଲେ । କବିଂକର କାବ୍ୟ ଓ ନାଟକର ଆବୃତ୍ତି ହେଲା, ଶେଷରେ କବିଂକି ଶେଷ ସମ୍ବର୍ଦ୍ଧନା କରାଗଲା ଗୋଟିଏ ସୁଂଦରୀ ବାଳିକାର କଳକଂଠ ସଂଗୀତରେ ଓ ମାଲ୍ୟାର୍ପଣରେ । ଏହି ବାଳିକା, ଯେଉଁ ନିର୍ବାପିତ ଅଭିଜାତ ବଂଶ ଦିନେ କବିଂକି ତାଚ୍ଛଲ୍ୟ କରିଥିଲା, ସେହି ବଂଶର ଶେଷ ପ୍ରଦୀପ ।

ଧନ ଓ ପ୍ରତିଭାର ଏଇପରି ବ୍ୟତିକ୍ରମ ଯୁଗେଯୁଗେ ଘଟିଆସୁଛି ।

——

# ସମାଲୋଚନାର ଧାରା

ଶ୍ରୀ ନିତ୍ୟାନନ୍ଦ ଶତପଥୀ, କଲ୍ୟାଣୀୟେଷୁ –

ଏବେ ଓଡ଼ିଆ ମାସିକପତ୍ର ସବୁ ଧାରାବାହିକ ଭାବରେ ପଢ଼ିବା ମୋ ପକ୍ଷରେ ସମ୍ଭବ ହେଉ ନାହିଁ । ବେଳେବେଳେ ଆଖି ଆଗରେ ପଡ଼ିଲେ ପୃଷ୍ଠା ମେଲାଇ କେବଳ ଚାହିଁ ଚାହିଁ ଯାଏ ।

ଝଙ୍କାରର ଧନୁମାସ (ବିଂଶବର୍ଷ, ନବମସଂଖ୍ୟା) ସଂଖ୍ୟାଟିରେ ଆଖି ବୁଲାଉ ବୁଲାଉ ଦେଖିଲି ଯେ ''ଗୀତିନାଟ୍ୟର କେତୋଟି ଚରିତ୍ର'' ନାମକ ଏକ ରଚନାରେ ତମେ ମୋର ଦୁଇଟି ଏପର୍ଯ୍ୟନ୍ତ– ପ୍ରାୟ-ଅନାଲୋଚିତ ପୁସ୍ତକର ଆଲୋଚନା କରିଛ । ତମର ନିଜର ମୂଲ୍ୟାୟନରେ ମୋର, ଲେଖକ ଭାବରେ, ହାତ ଦେବାର କୌଣସି ଅଧିକାର ନାହିଁ । ତେବେ କେତୋଟା ଫ୍ୟାକ୍ଟ୍ ଜାଣିରଖିଲେ, ଏତତ୍-ସଂପୃକ୍ତ ଆଲୋଚନା ପରେ ଅଧିକ ସମଭାର ହେବବୋଲି ଆଶାକରି ଜଣାଇରଖୁଛି ।

''ରାଜକବି'' ମୋର ପ୍ରଥମ ପ୍ରକାଶିତ ପୁସ୍ତକ । ରେଭେନ୍ସାରେ ସେକାଳର ଆଇ.ଏ ପ୍ରଥମବର୍ଷରେ ପଢ଼ିଲାବେଳେ ଏହା ଲିଖିତ ଓ ବୋଧହୁଏ ଦ୍ୱିତୀୟ ବର୍ଷରେ ପ୍ରକାଶିତ ହୋଇଥିଲା – ଅର୍ଥାତ୍ ୧୯୨୭-୨୮ ସାଲ ହେବ । କିନ୍ତୁ ଏ ପୁସ୍ତକର ଯଥାର୍ଥ ଆଲୋଚନା ପ୍ରଥମକରି ମୁଁ ଦେଖିବାକୁ ପାଇଲି, ସ୍ୱର୍ଗତ ଅଧ୍ୟାପକ ଗିରିଜାଶଙ୍କର ରାୟଙ୍କର ଓଡ଼ିଶୀ ରଙ୍ଗମଞ୍ଚର ଇତିହାସ ଗ୍ରନ୍ଥରେ, ପ୍ରାୟ ତିରିଶିବର୍ଷ ପରେ, ଇଂରେଜିରେ ଓଡ଼ିଆ ସାହିତ୍ୟର ଇତିହାସ ଲେଖିବା ପାଇଁ ମୁଁ ଯେତେବେଳେ ସମ୍ବଲପୁରରେ ସେ ଉପାଦାନ ସଂଗ୍ରହ ଆରମ୍ଭ କଲି । ତମର ଆଲୋଚନାଟି ବୋଧହୁଏ ଦ୍ୱିତୀୟ ।

ତୁମେ 'ରାଜକବି'କୁ ରବୀନ୍ଦ୍ରନାଥଙ୍କର ''ବାଲ୍ମୀକି ପ୍ରତିଭା''ର ପ୍ରଭାବାନ୍ୱିତ ବୋଲି ଧରିନେଇଛ । 'ରାଜକବି' ପ୍ରକାଶିତ ହେଲାବେଳେ, କୌଣସି ଅସ୍ଥାୟୀ ଓଡ଼ିଆ ସାପ୍ତାହିକ ପତ୍ରିକା (ମୋର ନାମ ମନେପଡୁନାହିଁ) ବହିଟିର ନିନ୍ଦା ଭାବରେ ସେତିକି ମାତ୍ର ଦର୍ଶାଇ, ତାଙ୍କର ଉଚ୍ଚକୋଟୀର ସାହିତ୍ୟିକ ସମାଲୋଚନା ଶେଷ କରିଥିବାର ମନେପଡୁଛି । ପ୍ରାୟ ୪୦ ବର୍ଷ ପରେ ତମଠୁ ବି ସେୟା ଶୁଣିଲି ।

କିନ୍ତୁ କହିରଖେ ଯେ, ରବୀନ୍ଦ୍ରନାଥଙ୍କ 'ବାଲ୍ମୀକିପ୍ରତିଭା' ମୁଁ ଏପର୍ଯ୍ୟନ୍ତ ବି ପଢ଼ିନାହିଁ। ଏଥିରେ ତମେ ଓ ଅନେକ ବିସ୍ମିତ ହୋଇପାର ବା ପାରନ୍ତି । ତେଣୁ କିଞ୍ଚିତ୍ ''ଫ୍ୟାକ୍ଟର୍'' ବର୍ଣ୍ଣନା ଆବଶ୍ୟକ ପଡୁଛି ।

ଆମେମାନେ ଛାତ୍ର ଥିଲାବେଳେ, ଇଂରାଜି ଭାଷାକୁ ଆୟତ୍ତ କରିବା ଉଦ୍ଦମ-

ବନଫୁଲ -୨ୟ ବର୍ଷ - ୫ମ ସଂଖ୍ୟା । ଡିସେମ୍ବର, ୧୯୬୮ 'ଝଂକାର'ରେ ଅ. ଶତପଥୀଙ୍କ ଲିଖିତ 'ଗୀତିନାଟ୍ୟର କେତୋଟି ଚରିତ୍ର' ପଢ଼ି ଡକ୍ଟର ମାନସିଂହ ଏ ପତ୍ର ଲେଖିଛନ୍ତି । ସଂପାଦକ

ପୌରୁଷ ସହିତ ସମାନ ଥିଲା କହିଲେ ଚଳେ । କିନ୍ତୁ ଭାରତୀୟ-ପରିବେଶରେ ବଢ଼ି-ଥିବା କିଶୋର-କିଶୋରୀଙ୍କ ଚିତ୍ତ, ଖାଣ୍ଟି ଇଂରେଜଙ୍କ ନିଛକ ଇଂରେଜ ରଚନାକୁ ସହଜରେ ଗ୍ରହଣ ନକରିବା ହିଁ ସ୍ୱାଭାବିକ । କାରଣ ପରିବେଶ ଓ ପ୍ରକାଶଭଙ୍ଗୀ ଓ ବର୍ଣ୍ଣନୀୟମାନ ସାମାଜିକ ଜୀବନ ବ୍ୟବହାର, ସମସ୍ତ ହିଁ ଭିନ୍ନ । ଭାରତୀୟ ତରୁଣମାନଙ୍କ ପକ୍ଷରେ ଉତ୍ତମ ଇଂରେଜି ସହିତ ପରିଚିତ ହେବାର ଏକ ସହଜ ଉପାୟ ବୋଲି ସେତେବେଳେ ଧରାଯାଉଥିଲା, ଆଗରୁ ଜଣାଥିବା ଭାରତୀୟ ବିଷୟ ସବୁକୁ ହିଁ ଇଂରେଜ-ବାକ୍-ଚାତୁରୀ ନେଇ ଜାଣିବାକୁ ଯିବା ।

ଠିକ୍ ଏହି କାରଣରୁ ହିଁ, ରେଭେନ୍‌ସାରେ ରବୀନ୍ଦ୍ରନାଥଙ୍କୁ ମୁଁ ପଢ଼ିଚାଲିଲି, ମୌଳିକ ବଙ୍ଗଳାରେ ନୁହେଁ, ସେ ସବୁର ଇଂରେଜୀ ଅନୁବାଦ ନେଇ । ତାଙ୍କର ''ଗୋରା'' ଓ ''ଘରେ-ବାହାରେ'' ପ୍ରଭୃତି ପ୍ରସିଦ୍ଧ ଉପନ୍ୟାସ ମୁଁ ଇଂରେଜିରେ ହିଁ ପଢ଼ିଛି । ରବୀନ୍ଦ୍ରନାଥଙ୍କର ମୌଳିକ ଲେଖା ସହିତ ମୋର ପରିଚୟ, କେବଳ ତତ୍‌କାଳୀନ ''ପ୍ରବାସୀ'' ମାସିକ ପତ୍ରର ପୃଷ୍ଠା ନେଇ । ସୁସମ୍ପାଦକ ରାମାନନ୍ଦ ଚାଟର୍ଜିଙ୍କ ବିଚକ୍ଷଣ ମାସିକ ଆଲୋଚନା ଓ ଅସାଧାରଣ ବିଷୟ-ନିର୍ବାଚନ-ପଟୁତା ଯୋଗୁଁ, 'ପ୍ରବାସୀ' ଓ 'ମଡ଼ର୍ଣ୍ଣ ରିଭିଉ' ସେତେବେଳେ ଆମର ଅତ୍ୟାବଶ୍ୟକ ବୌଦ୍ଧିକ ଟନିକ୍ ପରି ହୋଇପଡ଼ିଥିଲେ, କହିଲେ ଅତ୍ୟୁକ୍ତି ହେବନାହିଁ ।

ପ୍ରବାସୀ ବା ମଡ଼ର୍ଣ୍ଣ ରିଭିୟୁରେ ରବୀନ୍ଦ୍ରନାଥଙ୍କ ସଂପର୍କରେ ପ୍ରକାଶିତ ପ୍ରବନ୍ଧାଦିରେ ମୁଁ ''ବାଲ୍ମୀକି ପ୍ରତିଭା''ର ଉଲ୍ଲେଖ ଦେଖିଛି ସତ, କିନ୍ତୁ ସେ ବହିଟି କବିଙ୍କର ଅତି ବାଲ୍ୟବୟସର ରଚନା ବୋଲି ଜାଣି ଏବଂ ତା'ର ଇଂରାଜି ଅନୁବାଦ ଆଖିରେ ନ ପଡ଼ିଥିବା ଯୋଗୁଁ, ସେ ବହି ମୁଁ ପଢ଼ିପାରିନି, କି ପଢ଼ିବାର ଆଗ୍ରହ ମଧ୍ୟ ମୋ'ଠି କେବେ ଦେଖାଯାଇନି । ଓଡ଼ିଶାର ଅଧିକାଂଶ ବୁଦ୍ଧିଜୀବୀ ଓ କବି-ଲେଖକ ଯେପରି ଧାରାବାହିକ ଭାବରେ ବଙ୍ଗଳା କାବ୍ୟ-ଉପନ୍ୟାସ ଅଧ୍ୟୟନ କରିଥିବାର ତାଙ୍କ ଲେଖା ଓ କଥାଭାଷାରୁ ଜଣାପଡ଼େ, ପ୍ରକୃତରେ ମୋର ସେପରି ଅଭିଜ୍ଞତା ଘଟିନାହିଁ । ଉଦାହରଣ ସ୍ୱରୂପ ପ୍ରସିଦ୍ଧ ବଙ୍ଗୀୟ ଔପନ୍ୟାସିକ ବଙ୍କିମଚନ୍ଦ୍ରଙ୍କର ବିଖ୍ୟାତ ଗ୍ରନ୍ଥ 'ବିଷବୃକ୍ଷ' ବା 'ଆନନ୍ଦମଠ' ବା ମାଇକେଲ୍‌ଙ୍କ ପ୍ରସିଦ୍ଧ କାବ୍ୟ 'ମେଘନାଦବଧ' ମୁଁ ଏପର୍ଯ୍ୟନ୍ତ ପଢ଼ିନି । କେବଳ ବହିଟିମାନ ଦେଖିଛି ବୋଧହୁଏ, ଅବା ପୃଷ୍ଠା ଲେଉଟାଇଛି । ଅଥଚ ସେସବୁର ଆଲୋଚନା ମୁଁ ପଢ଼ିଛି ସାମୟିକ ପତ୍ରପତ୍ରିକାମାନଙ୍କରେ । ସେତିକି ହିଁ ମୋର ଜ୍ଞାନ ।

'ବାଲ୍ମିକୀ ପ୍ରତିଭା'ରେ ଲକ୍ଷ୍ମୀ-ସରସ୍ୱତୀଙ୍କ ବିବାଦରୁ 'ରାଜକବି'ର ଲକ୍ଷ୍ମୀ-ସରସ୍ୱତୀଙ୍କ ଆବିର୍ଭାବ କଥା ଯାହା କହିଛ, ତାର କିଞ୍ଚିତ୍ ବିଚାର ପୁଣି କରାଯାଉ ।

ତମରି ଲେଖାରୁ ହିଁ ଜାଣୁଛି ଯେ, ବାଲ୍ମିକୀ ପ୍ରତିଭାରେ ଏ ବିବାଦ ବର୍ଣ୍ଣିତ । କିନ୍ତୁ

ଦସ୍ୟୁ ରତ୍ନାକରଙ୍କୁ କ'ଣ ଲକ୍ଷ୍ମୀଦେବୀଙ୍କର ଗେହ୍ଲାପୁଅ ବୋଲି ଧରାଯିବ ? କୁମୁଟୀ ବା ମାରବାରୀ ବ୍ୟବସାୟୀମାନେ ସିନା ଲକ୍ଷ୍ମୀ-ଅନୁଗୃହୀତ ବୋଲି ସ୍ୱାଭାବିକ ଭାବରେ ଧରାଯାନ୍ତି, କୌଣସି ଦେଶରେ ଡକାଇତେ ସେ ଆଶୀର୍ବାଦର ଅଧିକାରୀ ବୋଲି ଧରାଯିବାର ଜଣାଯାଇନାହିଁ । ତେଣୁ ''ବାଲ୍ମିକୀ-ପ୍ରତିଭା''ରେ ତରୁଣ ରବୀନ୍ଦ୍ରନାଥ ଏ ପ୍ରକାର Conflict ଆଣି ଠିଆ ଯଦିବା କରାଇଥାନ୍ତି, ତେବେ ସ୍ୱୀକାର କରିବାକୁ ହେବ ଯେ ତରୁଣ କବିଙ୍କର ତାହା ଏକ କଷ୍ଟ-କଳ୍ପିତ ଭାବନା ।

ସେହିପରି ମଧ୍ୟ କାଳିଦାସଙ୍କ କଥା । ଇତିହାସ ଓ ଗାଳଗଳ୍ପ ଉଭୟରୁ ଅନୁମାନ ଯେ, କାଳିଦାସ ଭୋଗ-ପ୍ରାଚୁର୍ଯ୍ୟରେ ହିଁ କାଳକାଟିଥିଲେ । ଲୋକମୁଖରେ ସେ ଏକ ସ୍ତ୍ରୈଣ ପୁରୁଷ ଭାବରେ ବର୍ଣ୍ଣିତ, ଯାହା ଧନାଭାବ ସୂଚନା କରେନାହିଁ । ପୁଣି ବିକ୍ରମାଦିତ୍ୟଙ୍କ ନବରତ୍ନଙ୍କ ଭିତରୁ ଯେ ଶ୍ରେଷ୍ଠ ରତ୍ନ, ତା ଜୀବନରେ ଲକ୍ଷ୍ମୀ-ସରସ୍ୱତୀଙ୍କର ଅକଳ୍ପନୀୟ ମିଳନ ଦେଖି ଆମେ ଅବାକ୍ ହେବା ସିନା (ଯେପରି ଘଟିଥିଲା ଗୋଏଟେ ଓ ରବୀନ୍ଦ୍ରଙ୍କ ଭାଗ୍ୟରେ) – ସେ ଜୀବନରେ ଦାରିଦ୍ର୍ୟ ଦୁଃଖର ଭୟାବହ ମାରାତ୍ମକତା ଆମେ କଳ୍ପନା କରିବାକୁ ଯିବା କିପରି ? ତେଣୁ ଏ କ୍ଷେତ୍ରରେ ମଧ୍ୟ, ଲକ୍ଷ୍ମୀ-ସରସ୍ୱତୀ ବିବାଦ ବର୍ଣ୍ଣନା ଅସ୍ୱାଭାବିକ ହେବବୋଲି ଆଶଙ୍କା ।

କିନ୍ତୁ ଏ ବିବାଦ, ଆମର ପ୍ରିୟ କବି ଉପେନ୍ଦ୍ରଙ୍କ ଜୀବନରେ ହିଁ ଅତ୍ୟନ୍ତ ସ୍ୱାଭାବିକ । ମୋର ଜନ୍ମସ୍ଥାନ ଗଞ୍ଜାମଜିଲ୍ଲାର ପାଖାପାଖି ଥିବାରୁ ଏବଂ ପାରିକୁଦଗଡ଼ର ସାଆନ୍ତ ମାନଙ୍କର ଗଞ୍ଜାମ-ଜମିଦାରମାନଙ୍କ ବଂଶ ସହିତ ବୈବାହିକ ସମ୍ବନ୍ଧ ଥିବାରୁ ସେଠି ପିଲାଦିନରୁ ହିଁ ଘୁମୁସର ରାଜବଂଶର ବ୍ୟଭିଚାର-ପରାୟଣ ତା'ର ଗଳ୍ପସବୁ ଶୁଣି ଆସୁଥିଲି । ପରେ ତାରିଣୀଚରଣ ରଥଙ୍କର ( ? ) ଘୁମୁସର ଇତିହାସ ପଢ଼ି ଦେଖିଲି ଯେ, ଅନାଚାର ଅପଚାର ବ୍ୟଭିଚାର ହତ୍ୟା ଷଡ଼ଯନ୍ତ୍ର-କଳୁଷିତ ଘୁମୁସର ରାଜବଂଶର କାହାଣୀ ମୁସଲମାନ ରାଜପ୍ରାସାଦମାନଙ୍କର ବୀଭତ୍ସତାକୁ ମଧ୍ୟ ବଳିଯାଇଛି । କିନ୍ତୁ ଏ ସବୁକୁ ଘୋଡ଼େଇପକାଉଛି କେବଳ ଗୋଟିଏ ଲୋକର (ଉପେନ୍ଦ୍ର ଭଞ୍ଜ)ର ପ୍ରତିଭା ।

ପିଲାଦିନୁ ରାଧାନାଥଙ୍କ ସହିତ ଉପେନ୍ଦ୍ରଙ୍କ କାବ୍ୟ କବିତା ପଢ଼ିଆସିଥିଲି । ଦୁଇ 'ଜାତୀୟ କବିଙ୍କ'' ରଚନାରେ ମୁଁ ମୋ ଜାତିର ଚିତ୍ତ-ଭୂମିର ବର୍ଣ୍ଣ-ସୌରଭମୟ ସ୍ୱପ୍ନ ସବୁହିଁ ଦେଖିଆସୁଥିଲି ।

କଲେଜରେ ରବୀନ୍ଦ୍ରନାଥଙ୍କୁ ଇଂରେଜୀ ନେଇ ପଢ଼ିବା ସାଥେ ସାଥେ, ଆଇରିଶ୍ କବି ଇୟେଟସ୍‌ଙ୍କ ନେତୃତ୍ୱରେ ଆୟର୍ଲାଣ୍ଡର ଖାଣ୍ଟି ଆତ୍ମା ''କେଲ୍‌ଟିକ୍ ମୁଭ୍‌ମେଣ୍ଟ'' ନେଇ କିପରି ବର୍ଣ୍ଣାଢ଼୍ୟ ପ୍ରକାଶ ଲାଭ କରିଥିଲା ତା' ମଧ୍ୟ ପଢ଼ିଲି । ଇୟେଟ୍‌ସଙ୍କ ଅନେକ କାବ୍ୟ-କବିତା ପଢ଼ିଲି । 'ରାଜକବି', 'ପୁଷ୍ପିତା' ଓ ''ପୂଜାରିଣୀ'' ପ୍ରଭୃତି

ସେକାଳର ରଚନାଗୁଡ଼ିକ ଏଇ କେଲଟିକ୍ ମୁଭମେଣ୍ଟର ଏକ ପ୍ରତିକ୍ରିୟା ବୋଲି ଜାଣିବ । ଅର୍ଥାତ୍ ଛୋଟ ଆୟର୍ଲାଣ୍ଡ ତା'ର ନିଜର ଲୋକ କାହାଣୀକି ଆଶ୍ରୟକରି ଯଦି ବିଶ୍ୱସାହିତ୍ୟ ସୃଷ୍ଟି କରିପାରିଛି, ଓଡ଼ିଶା ସେପରି ନ କରିବ କାହିଁକି ? ଓଡ଼ିଶା ବଙ୍ଗଳାକୁ ଅନୁକରଣ କରିବାକୁ ଯିବ କାହିଁକି ?

ବୀଭତ୍ସ ଘୁମସର-ଇତିହାସ ଭିତରେ ରାଜପୁତ୍ର ଉପେନ୍ଦ୍ରଙ୍କର ଜୀବନବ୍ୟାପି ସାରସ୍ୱତ ସାଧନାକୁ କେନ୍ଦ୍ରକରି, ସେହି ପ୍ରତିକ୍ରିୟାରେହିଁ ବାହାରିଥିଲା 'ରାଜକବି' । 'ପ୍ରବାସୀ'ରେ ସେତେବେଳେ ରବୀନ୍ଦ୍ରନାଥଙ୍କ ଉପରେ ବିସ୍ତର ଆଲୋଚନା ଚାଲିଥାଏ । ମୁଁ ସେସବୁ ବରାବର ପଢୁଥାଏ । ତେଣୁ 'ରାଜକବି'ର ରଚନା-ଶୈଳୀରେ ତା'ର କିଛି ଛାପ ପଡ଼ିଥିବା ସ୍ୱାଭାବିକ ମଧ୍ୟ । କିନ୍ତୁ ସମଗ୍ର ଭାବରେ ମୋର ସେ କାଳର ରଚନାବଳି ଉପରେ କେଲ୍‌ଟିକ୍ ପ୍ରତିକ୍ରିୟାକୁ ଧରିନେଇପାର ।

ରବୀନ୍ଦ୍ରନାଥଙ୍କ 'ଚିତ୍ରାଂଗଦା'ମଧ୍ୟ ମୁଁ ପ୍ରଥମେ ଇଂରେଜୀ ଅନୁବାଦରେହିଁ ପଢ଼ିଥିବାର ମନେଅଛି । ବହୁ ପରେ ରବୀନ୍ଦ୍ର ଶତବାର୍ଷିକୀ ଉତ୍ସବ ବେଳେ ଏହି କାବ୍ୟର ଓଡ଼ିଆ-ଅନୁବାଦର ପରୀକ୍ଷକ ଭାବରେ ମତେ ମୂଳ ବଙ୍ଗଳା କାବ୍ୟଟି ପଢ଼ିବାକୁ ହେଲା । କିନ୍ତୁ ପଢ଼ି, ବଙ୍ଗାଳୀ ସମାଲୋଚକମାନେ ଏ ବହିର ଯେପରି ଉଚ୍ଛ୍ୱସିତ ପ୍ରଶଂସା କରିଥାନ୍ତି, ତାହା ସହିତ ଏକମତ ହୋଇ ପାରିଲି ନାହିଁ । ସେ ଯାହାହେଉ, 'ଚିତ୍ରାଂଗଦା' ସହିତ 'ପୁଷ୍ପିତା'ର ଯେ କୌଣସି ସମ୍ବନ୍ଧ କାହିଁ ବୋଲି କହିଛ, ତାହା ଏକାନ୍ତ ଠିକ୍ । 'ପୁଷ୍ପିତା' ମୋର ପିଲାବେଳର ନିଷ୍ପାପ ଭାବନାର ହିଁ ଏକ ପୁଷ୍ପ । ଗାଁରେ ଆମେ ପୁଅ-ଝିଏ ବିଲ-ତୋଟା-ବାଡ଼ିଆଡ଼େ ଏକାଠି ଖେଳୁଥିଲୁ । ସେତେବେଳେ ଆମର ଅବସ୍ଥା ଥିଲା ପ୍ରକୃତରେ ''ଅରଣ୍ୟକ'' । ବହୁତ ବୟସ ଯାଏଁ, ପୁଅ ଓ ଝିଅ ସଂପୂର୍ଣ୍ଣ ଉଲଗ୍ନ ରହି ଖେଳୁଥାଉଁ, ଯାହାକି ଏବେ କଳ୍ପନା କରାଯାଇ ନ ପାରେ । ଏବେ ପିଲା ୬ ମାସ ହେବା ବେଳୁ ଯୋତା-ମୋଜା-ଟୋପି-ପିନ୍ଧା ଆରମ୍ଭ ହୋଇଯାଉଛି । ଯେତେଦୂର ମନେପଡୁଛି – ଦଳେଇଘର 'ଜେମା', ୯-୧୦ ବର୍ଷ ବୟସ ଯାଏ ସଂପୂର୍ଣ୍ଣ ପ୍ରାକୃତିକ ଅବସ୍ଥାରେ ହିଁ ଆମ ସାଥିରେ ଖେଳୁଥାଏ । ଅଥଚ ଆମେ ବୋଧହୁଏ ସେ ପର୍ଯ୍ୟନ୍ତ, ସେ ଇଡ଼େନ୍-ଉଦ୍ୟାନର ଜ୍ଞାନ-ଫଳ ଖାଇବା-ପୂର୍ବର ଆଦାମ ଓ ଇଭ୍ ଥିଲୁ । ଆମ ମନରେ ସାମାନ୍ୟତମ ବିକାର ନ ଥିଲା ।

ତା'ପରେ ମୁଁ ଗାଁ ଛାଡ଼ିଲି ପାଠ ପଢ଼ିବା ପାଇଁ । ମଝିରେ ମଝିରେ ଛୁଟିରେ ଆସି ଶୁଣେ ଯେ ପୂର୍ବର ଖେଳ-ସାଥୀ ''ଜେମା''ବା 'ନେତ' ଆଉ ଗାଁରେ ନାହାନ୍ତି । ସେମାନେ ''ବିଭା'' ହୋଇ ଅନ୍ୟ ଗାଁକୁ ଚାଲିଗଲେଣି ।

ବ୍ୟାପାର କ'ଣ ? ପୁଣି, ଯେଉଁ ପୂର୍ବ ଖେଳ-ସାଥୀ ଝିଏ ବା ଗାଁରେ ସେ ପର୍ଯ୍ୟନ୍ତ

ରହିଯାଇଥିଲେ, ଦେଖିଲି ଯେ ସେମାନେ ଆଉ ଆମ ସାଥିକି ପୂର୍ବପରି ସ୍ୱଚ୍ଛନ୍ଦରେ ଆସି ପାରୁ ନାହାନ୍ତି । ତେବେ କେବେ କେବେ ପୋଖରୀକୂଳେ ବା କୂଅମୂଳେ ଦେଖାହେଲେ, ଦେଖେ ଯେ, ଅଳ୍ପକାଳ ଭିତରେ ସେମାନଙ୍କର ଅକଳ୍ପନୀୟ ପରିବର୍ତ୍ତନ ଘଟିଯାଇଛି ।

କୁମାରୀର ସରଳତାରୁ ନାରୀର ଏହି ଆଭରଣମୟ ଆବିର୍ଭାବ, ମୋର ଅକଳୁଷ କିଶୋର ଚିତ୍ତରେ ବହୁକାଳ ଧରି କି ଆଲୋଡ଼ନ ସୃଷ୍ଟିକରିଥିଲା, ତାହା ଅନେକେ ବିଶ୍ୱାସ କରିପାରିବେ ନାହିଁ । ନାରୀ ଓ ପୁରୁଷର ଭେଦ ନେଇ ପ୍ରକୃତିର ଜୈବିକ ବ୍ୟଞ୍ଜନା ମତେ ଅନେକ ବର୍ଷ ପର୍ଯ୍ୟନ୍ତ ଅଜ୍ଞାତ ଥିଲା । ବସ୍ତୁତଃ ବି.ଏ ଶ୍ରେଣୀରେ ଯେତେବେଳେ କାଳିଦାସଙ୍କ 'ଶକୁନ୍ତଳା' ପଢ଼ିଲି, ସେ ନାଟକର ଶେଷ ଅଙ୍କରେ ନାୟିକା ଶକୁନ୍ତଳାର ପୁଅଟାଏ କିପରି କୁଆଡୁ ଆସିଲା, ତାହା ମତେ ବହୁବର୍ଷ ଅବୁଝା ରହିଥିଲା, ଅଥଚ ଲାଜରେ କାହାକୁ ପଚାରି ମଧ୍ୟ ପାରୁ ନ ଥାଏ । 'ପୁଷ୍ପିତା' ଶକୁନ୍ତଳାର ମନୋରମତା ମହାକବି ନାଟକର ପ୍ରଥମ ଅଙ୍କରେ ହିଁ ପରମ ମଞ୍ଜୁଳ ରୀତିରେ ଆଙ୍କି ଯାଇଛନ୍ତି । କିନ୍ତୁ ଶେଷ ଅଙ୍କରେ ସେ ଯେ 'ଫଳବତୀ' ଲତା ହୋଇ ଦେଖାଦେଇଛି, ତାହା କିପରି ହେଲା, ତାହାର ରହସ୍ୟ ମୁଁ ନିଜେ ପିତା ନ ହେଲା ଯାଏଁ ତତ୍ତ୍ୱତଃ ଜାଣିନଥିଲି ।

ସେ ଅଜ୍ଞତା ବରଂ ଭଲଥିଲା, ହୋ ଶତପଥୀ ! ପର ଜୀବନରେ ମୁଁ ବିଧାତାକୁ ବାରମ୍ବାର ପ୍ରାର୍ଥନା କରିଛି– ମୋତେ ମୋର ସେହି Innocence ଫେରାଇଦେବାକୁ । ସେ ଯାହାହେଉ ସେହି 'ଅତୀତର' ସ୍ୱପ୍ନ ଓ କଳ୍ପନାରୁ ହିଁ 'ପୁଷ୍ପିତା'ର ଜନ୍ମ ।

ଏ ସବୁ ଲେଖିବାର ଏକ କାରଣ ଏହିକି, ଏବେ ଓଡ଼ିଆରେ 'ସମାଲୋଚନା' ବୋଇଲେ କେବଳ କିଏ କେଉଁଠୁ କ'ଣ ଆଣିଛି ତାରି ଆଲୋଚନା ହିଁ ହେଉଛି । ଏପର୍ଯ୍ୟନ୍ତ ମଧ୍ୟ ରାଧାନାଥ କା'ଠୁ କ'ଣ ଆଣିଛନ୍ତି, ସେହି ଆବିଷ୍କାର-ପ୍ରଯତ୍ନ ହିଁ ହୋଇ ରହିଛି ରାଧାନାଥ ଆଲୋଚନା । ତମେ ବି ସେଇ ବାଟ ଧରିବାର ଦେଖି ପଦେ କହିରଖିବାକୁ ଇଚ୍ଛା ହେଲା । ତମେ ଜାଣ ଯେ, ମୁଁ ସାହିତ୍ୟରେ ''ପରଧର୍ମ''କୁ ବିଶେଷକରି ''ପ୍ରତିବେଶୀ-ଧର୍ମ''କୁ ନାସପନ୍ଦ କରିଆସିଛି । ମନେହେଉଛି ଯେ, ମୁଁ ସାମାନ୍ୟ ଭାବରେ 'ସ୍ୱ-ଧର୍ମ'କୁ ରକ୍ଷାକରି ଆସିଛି ଏବଂ ତାହାହିଁ ମୋର ନିଜସ୍ୱ 'ସାହିତ୍ୟ''। ମୁଁ ଚଷା ପିଲା, ଚଷାର ଚାଳରେ ମାଡ଼ିଥିବା ଲାଉ-କଖାରୁ ଲଟା ମାତ୍ର ମୁଁ, ବା ତା' ମାଟିକାନ୍ଥର ଚିତା ମାତ୍ର । ସେଇ ନୁହେଁ କି ଚଷାର 'ସାହିତ୍ୟ' ? ତେଣୁ ଆମପରି ସାମାନ୍ୟ ଚଷାଲୋକଙ୍କୁ ନେଇ କାହିଁକି ବୃଥାରେ ବଡ଼ ବଡ଼ ଲୋକଙ୍କ ସାଥିରେ ଠିଆକରାଉଛ ? ତାଙ୍କ ସୌଧାବାସର ଶଙ୍ଖମଲମଲ ପଥରରୁ ଖଣ୍ଡେ ଚୋରେଇଆଣି, ଆମ କୁଡ଼ିଆର ପାହାଚ କରି ଗର୍ବ ଅନୁଭବ କରିବାର ଅଭିଳାଷ ହିଁ ଆମର ଚଷା ମନରେ ଉଠିନି – କାହିଁକି ସେ ତୁଳନାର ବିଡ଼ମ୍ବନା ?

—

# 'ପୁଷ୍ପିତା' ଲେଖକର କୈଫିୟତ୍

ଲେଖକକୁ ଯଦି ତା ନିଜ ଲେଖାର ମହତ୍ତ୍ୱ ପ୍ରମାଣ କରିବାକୁ ପଡ଼େ, ତେବେ ସେ ନିତାନ୍ତ ହଟହଟାରେ ପଡ଼େ । ଗତ ସଂଖ୍ୟା 'ସହକାର'ରେ ଶ୍ରୀଯୁକ୍ତ ହରିଶ୍ଚନ୍ଦ୍ର ବଡ଼ାଳ B.Sc ଙ୍କର 'ପୁଷ୍ପିତା' ସଂବନ୍ଧରେ ଦୀର୍ଘ ସମାଲୋଚନାଟା ପଢ଼ି ମତେ ଠିକ୍ ଏହିପରି ଏକ ଅବସ୍ଥାରେ ପହଞ୍ଚିବାକୁ ହୋଇଛି । କିନ୍ତୁ ସମାଲୋଚକଙ୍କ ଲେଖାର ଗୁଣରୁ ମୋର ନିଜକୁ ବିଜ୍ଞାପିତ କରିବାରେ ଯେ ସରମ, ତା' ଅନେକ ପରିମାଣରେ କଟିଯାଇଛି । ତାଙ୍କ ଲେଖାରେ ମୋ ନାଟିକାର ସାହିତ୍ୟିକ ମୂଲ୍ୟ (ଥାଉ ବା ନଥାଉ) ସଂବନ୍ଧରେ, ସେ ବିଶେଷ କିଛି କହି ନାହାନ୍ତି ବା କହିବାକୁ କୁଣ୍ଠା ବୋଧକରିଅଛନ୍ତି; କିନ୍ତୁ ତାଙ୍କର ଏହି ଅବହେଳା ମତେ ଭେଳା ସ୍ୱରୂପ ହୋଇଛି । ତା' କରିଥିଲେ ମୋର ବିଶେଷ କିଛି କହିବାର ନ ଥିଲା; କିନ୍ତୁ ସେ 'ନୀତି' ଉପରେ ତାଙ୍କର 'ଭିତ୍ତି' ସ୍ଥାପନ କରି, ସମସ୍ତ ତରୁଣ ଜଗତକୁ 'ଅତି-ପ୍ରୀତି'ର ଭୀତି ଦେଖାଇଛନ୍ତି । ସମାଲୋଚନାର ଏ ଅଂଶଟାରେ ଅପର ସାଧାରଣଙ୍କର କହିବାର ଯେ ଅଧିକାର ଅଛି, ଲେଖକର ମଧ ସେହି ଅଧିକାର, ବରଂ ଲେଖକର ବେଶୀ ଅଧିକାର, କାରଣ ଲେଖକ ତା'ର ନିଜର ସୃଷ୍ଟିର ନୀତିକୁ ଅପର ସାଧାରଣଙ୍କଠାରୁ ଅଧିକ ଗଭୀରଭାବରେ ବୁଝିଥିବାର ଆଶାକରାଯାଏ । ପାଠକ ସାଧାରଣଙ୍କର ସେହି ଆଶାକୁ ମେଣ୍ଟନ କରିବାପାଇଁ ମୁଁ ଏହି କୈଫିୟତ୍ ଲେଖିବାକୁ ବସିଲି ।

ସମାଲୋଚକ ତାଙ୍କ ସମାଲୋଚନାର ନାଁ ଦେଇଛନ୍ତି 'ପୁଷ୍ପିତା ନାଟିକାର ସାର୍ଥକତା', ମାତ୍ର ପ୍ରମାଣ କରିବାକୁ ଯାଇଛନ୍ତି ତା'ର ବ୍ୟର୍ଥତା । ତାଙ୍କର ପ୍ରଥମେ ଜାଣିବା ଉଚିତ ଥିଲା ଯେ, କବି କାବ୍ୟ-କବିତା ଲେଖିଲାବେଳେ କୌଣସି 'ସାର୍ଥକତା'କୁ ଲକ୍ଷ୍ୟ କରି ଲେଖନ୍ତି ନାହିଁ; 'ପୁଷ୍ପିତା' ମଧ୍ୟ ସେ ଉଦ୍ଦେଶ୍ୟରେ ଲେଖାହୋଇନଥିଲା । କାବ୍ୟ କବିତାର ଏକମାତ୍ର ସାର୍ଥକତା ଆନନ୍ଦଦାନ ଏବଂ କାବ୍ୟ-କବିତାର ବିଚାର ସେହି ଆଦର୍ଶରେ ହୁଏ । କାବ୍ୟ ଜଗତରେ ନୈତିକତାର ପ୍ରାଣହୀନ ସଂଯମ ନାହିଁ । କଳ୍ପନାର ଯାଦୁସ୍ପର୍ଶରେ, ଯେ କବି ଆମ୍ଭମାନଙ୍କୁ, ଆମ୍ଭମାନଙ୍କର ଏହି କଠିନ, କୁତ୍ସିତ ଜଞ୍ଜାଳମୟ ସଂସାରର ରୁଦ୍ଧ ପରିସର ମଧ୍ୟରେ ଯେତେଦୂର ସ୍ୱପ୍ନାବିଷ୍ଟ ରଖିପାରନ୍ତି, ତାଙ୍କର ଲେଖା ସେତିକି ମଧୁର । କବି ଯେ ସୁନ୍ଦର ଅନୁଭବ ଆମ୍ଭମାନଙ୍କର

'ସହକାର', ୧୧ଶ ଭାଗ, ୬ଷ୍ଠ ସଂଖ୍ୟା ।

ମନଶ୍ଚକ୍ଷୁ ଆଗରେ ଥୋଇଯାଆନ୍ତି, ସେ ତ ନୀତିନିଷ୍ଠୁର କୃପଣ ଜୀବନରେ ସମ୍ଭବ ନୁହେଁ । ସେଥିପାଇଁ କବିକୁ ଏ ସଂଯମ କ୍ଷେତ୍ରରେ, ତା'ର ପ୍ରାଣର ଶତଦ୍ୱାର ଦେଇ ଆହରଣ କରିବାକୁ ହୁଏ– ମାନବ ଜୀବନର ଅନୁଭୂତିକୁ ମହୁମାଛିର ମଧୁବିନ୍ଦୁ ସମ ତାର ପ୍ରାଣଚକ୍ରରେ ସାଇତିବାକୁ ପଡ଼େ । ପାଠକ ଯଦି କବିର ଲେଖା ଦେଇ ତା'ର ବିଚିତ୍ର ଅନୁଭୂତି ସମୂହକୁ ନିଜ ପ୍ରାଣରେ ସଂକ୍ରମିତ କରିବାକୁ ଚେଷ୍ଟାକରେ, ସେତେବେଳେ ତାକୁ ତା'ର ଅନୁଭବର ଶତ ବାତାୟନ ଖୋଲିଦେବାକୁ ହେବ; ତା' ନହେଲେ ପ୍ରକୃତ ରସ ଗ୍ରହଣ ହୁଏ ନାହିଁ । କବି ଓ ପାଠକ ମଧ୍ୟରେ ଏହି ଦାନ ଓ ଗ୍ରହଣ ସମସ୍ୟାରେ ଏକମାତ୍ର ସର୍ତ୍ତ ଏହିଯେ, କବି ଯା' ଦେଇଛନ୍ତି ତା' 'ସୁନ୍ଦର' କି ନା ! ତା'ର ଉତ୍ତର ଯଦି ଅସ୍ତିସୂଚକ, ତେବେ ନୀତି ଭିତ୍ତିରେ ତା' ଫେରାଇଦେବା ମୂର୍ଖତା ଓ ତା'ର ଉତ୍ତର ଯଦି ଅସ୍ତିସୂଚକହୁଏ, ତେବେ କେବଳ 'ସାର୍ଥକତା' ଭିତ୍ତିରେ ଗ୍ରହଣ କଲେ ପାଠକ ସଦ୍ୟ-ମଥିତ ଇକ୍ଷୁରସ ନ ପାଇ ପାଏ ବୈଦ୍ୟ-କଥିତ ମିଶ୍ରି !

ରୂପର ପୂଜାରେ ମନୁଷ୍ୟ ସଂଯମ ମାନେନାହିଁ; ତେଣୁ ହିଁ ତ ମଣି ଆଣିବାକୁ ସେ ପାତାଳ ଫୁଟାଏ ଓ ମୁକ୍ତା ଆଣିବାକୁ ସମୁଦ୍ରକୁ ଡେଇଁପଡ଼େ ଏବଂ ଗୋଟିଏ ଗୋଟିଏ ସୁନ୍ଦର ମୁଖରେ ପ୍ରସନ୍ନତା ଆଣିବା ପାଇଁ ସେ ଯୁଗେ ଯୁଗେ ଏହି ଧରିତ୍ରିକି ରକ୍ତାକ୍ତ କରି ଆସିଛି । ସୌନ୍ଦର୍ଯ୍ୟର ଆକର୍ଷଣ ମନୁଷ୍ୟର ଗୋଟିଏ instinct ଏବଂ instinct ତ ଅହରହ ସକଳ ନିୟମର ଅର୍ଗଳ ଭାଙ୍ଗି ତା'ର ନିଜ ବାଟରେ ଚାଲେ । ଦାର୍ଶନିକ କହିବ, ଏ ଜଗତ୍‌ଟା ମାୟା– ମନୁଷ୍ୟ ତା' ସ୍ୱୀକାରକରେ; କିନ୍ତୁ ତା' ସତ୍ତ୍ୱେ ମନୁଷ୍ୟ ମନୁଷ୍ୟ ଭିତରେ ଯେ ପ୍ରାଣପୂର୍ଣ୍ଣ ସଂବନ୍ଧ ତା'ର କାର୍ଯ୍ୟ ତ ଅବାଧରେ ଚାଲିଛି । ରୂପର ଆକର୍ଷଣ ନୀତି-ନିଷ୍ଠର ଅସହ୍ୟ ହୋଇପାରେ; କିନ୍ତୁ ସେ ଅସହିଷ୍ଣୁତା ମୂର୍ଖତା; କାରଣ କ୍ଷୁଧା, ତୃଷା ପରି ଏହି ଆକର୍ଷଣ ମଧ୍ୟ ମାନବଚିତ୍ତର ଏକ ଗୁଣ । ଏ ଆକର୍ଷଣ ପ୍ରତ୍ୟେକ ମନୁଷ୍ୟର ଅନୁଭବରେ ଆସେ ଏବଂ ସେ ଅନୁଭବ ବେଳେ ନୀତିର ଅର୍ଗଳ ମନୁଷ୍ୟର ଆଖିରେ ପଡ଼େନାହିଁ । ଆମ୍ଭମାନଙ୍କର ପ୍ରିୟ ଓ ପ୍ରିୟା ମଧ୍ୟରେ ଯଦି କେହି ରୂପବାନ୍ ବା ରୂପବତୀ ଥାଆନ୍ତି ଓ ଆମ୍ଭେମାନେ ଯଦି ନିଜକୁ ପଚାରୁଁ ଯେ, ସେହି ପ୍ରିୟ ବା ପ୍ରିୟାଙ୍କର ରୂପର 'ସାର୍ଥକତା' କ'ଣ, ତେବେ ଆମ୍ଭେମାନେ କି ଉତ୍ତର ଦେବା ? ହୁଏତ ଆମ୍ଭେମାନେ ଉତ୍ତର ପାଇ ପାରିବା ନାହିଁ, ଅଥବା ଏହି ଉତ୍ତର ପାଇବା ଯେ, ତାଙ୍କ ରୂପର ଯାଦୁ-ସଙ୍ଗ ଦ୍ୱାରା ଆମ୍ଭମାନଙ୍କୁ ମୁଗ୍ଧ କରି ରଖିବା ଛଡ଼ା, ସେହି ପ୍ରିୟ ବା ପ୍ରିୟାଙ୍କର ରୂପର ଅନ୍ୟ ସାର୍ଥତା କିଛି ନାହିଁ । ସୁନ୍ଦର ହେବାରେ ଅନ୍ୟ କିଛି ସାର୍ଥକତା ପାଠକ ପାଇଛନ୍ତି ?

କାବ୍ୟ-କବିତା ସମ୍ବନ୍ଧରେ ମଧ୍ୟ ଠିକ୍ ଏହି କଥା ଖଟେ । କବିର ଅନୁଭୂତି ଯଦି

ଛନ୍ଦ ଓ ଭାଷା ଦେଇ, ଆମ୍ଭମାନଙ୍କର କାନ, ମନ ଓ ଜ୍ଞାନର ତର୍ପଣ କରିପାରିଲା, ତେବେ କାବ୍ୟ-କବିତାରେ ଆଉ କି ଅଧିକ 'ସାର୍ଥକତା' ଆମ୍ଭେମାନେ ଦରକାର କରୁଁ ? ଯେଉଁ ଲେଖାରେ ତିନୋଟିଯାକ ଗୁଣ ରହିଛି, ସେ ତ ଶ୍ରେଷ୍ଠ ସାହିତ୍ୟ । ଯେପରି ବାଇବଲ୍, ଉପନିଷଦ୍, ଜଗନ୍ନାଥ ଦାସଙ୍କ ଭାଗବତ, ମିଲ୍‌ଟନ୍‌ଙ୍କ Paradise Lost, ରବୀନ୍ଦ୍ରଙ୍କ ଗୀତାଞ୍ଜଳି । କିନ୍ତୁ ଶ୍ରେୟ ଓ ପ୍ରେୟ ବୋଲି ଦୁଇଟା କଥା ଅଛି । ମନୁଷ୍ୟର ଅନୁଭୂତି ଦୁଇଟିଯାକୁ ଭିନ୍ନ କରି ରଖିଛି; ତେଣୁ ଶ୍ରେଷ୍ଠ ସାହିତ୍ୟ ସବୁବେଳେ ପ୍ରିୟ ସାହିତ୍ୟ ନୁହେଁ । କେତେକ ଗ୍ରାହକ ପ୍ରିୟ ସାହିତ୍ୟକୁ ହିଁ ପ୍ରକୃତ ସାହିତ୍ୟ ବୋଲି କହନ୍ତି । ଏହି ପ୍ରିୟ ସାହିତ୍ୟ କ'ଣ ? ପ୍ରିୟ ସାହିତ୍ୟ ସେହି, ଯାହା ପାଠକର ବୁଦ୍ଧିକୁ ଜୀବନର ଜଟିଳ ସମସ୍ୟା ଦେଇ କ୍ଷୁବ୍ଧ କରିଦିଏ ନାହିଁ, ଅଥଚ ଭାଷା ଓ ଭାବର ଯାଦୁ-ବିଦ୍ୟାରେ କଳ୍ପନାକୁ ଉଦ୍‌ବୁଦ୍ଧ ଓ ଚିତ୍ତକୁ ଉନ୍ମାଦିତ କରି ରଖେ । ଏ ଶ୍ରେଣୀର ଲେଖା କାଳିଦାସଙ୍କ ମେଘଦୂତ, ଶେକ୍‌ସପିଅର୍‌ଙ୍କ Romeo and Juliet, ଜୟଦେବଙ୍କ ଗୀତଗୋବିନ୍ଦ, ରାଧାନାଥଙ୍କ ଚିଲିକା । ଆମ୍ଭମାନଙ୍କ ରୂପବାନ୍ ବନ୍ଧୁଙ୍କ ରୂପର ଯେପରି, ଏହି ଶ୍ରେଣୀର କାବ୍ୟ-କବିତାର୍ ମଧ୍ୟ ସେହିପରି ଆନନ୍ଦଦାନହିଁ ଏକମାତ୍ର ସାର୍ଥକତା । ସମାଲୋଚକ 'ପୁଷ୍ପିତା'ର ସ୍ୱାର୍ଥକତା' ଖୋଜି ଯେପରି ହତାଶ ଓ କ୍ରୁଦ୍ଧ ହୋଇ ଉଠିଛନ୍ତି, ଏହି ଶ୍ରେଣୀୟ ପ୍ରତ୍ୟେକ ଲେଖାରେ ତାଙ୍କୁ ସେହିପରି ହେବାକୁ ପଡ଼ିବ । ଧରନ୍ତୁ କାଳିଦାସଙ୍କ 'ମେଘଦୂତ' । 'ମେଘଦୂତ' ଲେଖି କାଳିଦାସ ମାନବର ଜ୍ଞାନର ପରିଧି ଏକ ବିନ୍ଦୁ ମାତ୍ର ବଢ଼ାଇ ଯାଇ ନାହାନ୍ତି । ସେଥିରେ ମାନବ ଜୀବନର ଶତ ଶତ ସମସ୍ୟାରୁ ଗୋଟାଏ ହେଲେ ସମସ୍ୟାର ସମାଧାନ ହୋଇନାହିଁ । ଗୋଟାଏ ବିଷୟ ନେଇ ଏଡ଼େବଡ଼ ବହି ଲେଖା ହୋଇଛି, ଯାର ନାମ ଶୁଣିଲେ ସମାଲୋଚକ ଆତଙ୍କରେ ଥରି ଉଠୁଛନ୍ତି । (କାରଣ କାଳିଦାସ ତାଙ୍କ ବିରହୀ ଯକ୍ଷ ଦେଇ କ'ଣ ଏଇଆ ଦେଖେଇ ଦେଇ ଯାଇ ନାହାନ୍ତି ଯେ, ବିରହଟା ବଡ଼ କଷ୍ଟ, ଏଣୁ ପ୍ରତ୍ୟେକ ପୁରୁଷ ପ୍ରେୟସୀର ପଣନ୍ତ ଧରି ମରିଯିବେ ପଛେ, ଘରୁ ବାହାରିବେ ନାହିଁ ! 'ପୁଷ୍ପିତା'ରୁ ଯଦି ଅର୍ଥ ବାହାରିଲା ଯେ, ଲେଖକ ଏ ଦେଶର– ଏ ପବିତ୍ର ଉତ୍କଳ ଦେଶର ପବିତ୍ରତା ଓ ସରଳତାର ବିଗ୍ରହରୂପା ବାଳିକାମାନଙ୍କୁ ଅଭିସାର କରିବାକୁ ବାଟ ଦେଖାଇ ଦେଉଛି, ତେବେ ମେଘଦୂତରୁ ସେପରି ଅର୍ଥ ନ ବାହାରିବ କାହିଁକି ?) ଏପରି ସ୍ଥଳରେ ମେଘଦୂତର ସାର୍ଥକତା କାହିଁ ? କିନ୍ତୁ କାଳିଦାସଙ୍କ ସୌଭାଗ୍ୟରୁ ବା ବିଶ୍ୱ-ସାହିତ୍ୟର ସୌଭାଗ୍ୟରୁ ସମାଲୋଚକଙ୍କ ପରି ଖୁବ୍ କ୍ୱଚିତ୍ ପାଠକ କାବ୍ୟ-କବିତାରେ 'ସାର୍ଥକତା' ଖୋଜିବୁଲନ୍ତି ଏବଂ ସେହି କାରଣରୁ ମେଘଦୂତ ସମସ୍ତଙ୍କ ନିକଟରେ ଏତେ ଲୋଭନୀୟ ।

ପୂର୍ବରେ କହିଛି, ସମାଲୋଚକ ନୀତି ଉପରେ ଭିତ୍ତି ସ୍ଥାପନ କରି ତାଙ୍କର ସମାଲୋଚନା-ଦୁର୍ଗକୁ ଠିଆକରାଇଛନ୍ତି । ବର୍ତ୍ତମାନ ଦେଖାଯାଉ ଜଗତର ସାହିତ୍ୟରେ ନୀତିର କି ପରିମାଣରେ ଅଧିକାର ଅଛି ।

ମୋର ମନେ ହୁଏ, ସମାଲୋଚକ କେତେକ ମାସ ପୂର୍ବେ 'ଉତ୍କଳ-ସାହିତ୍ୟ' ପତ୍ରିକାରେ 'ଗୀତ-ଗୋବିନ୍ଦ' ନାମରେ ଗୋଟିଏ କବିତା ଲେଖିଥିଲେ । ବାଲ୍ମୀକି ବ୍ୟାଧ-ଶରାହତ କ୍ରୌଞ୍ଚକୁ ଦେଖି ଯେପରି ଅନୁଷ୍ଟୁପ୍-ଛନ୍ଦରେ ଅଭିଶାପ ଦେବାକୁ ବସିଥିଲେ, ସମାଲୋଚକ ସେଥର ସେହିପରି ଗୀତଗୋବିନ୍ଦ ପଢୁ ପଢୁ ହଠାତ୍ ତାଙ୍କ ଉଚ୍ଛ୍ୱାସଗୁଡ଼ାକୁ କବିତା ଆକାରରେ ବାହାର କରି ପକାଇଥିଲେ । ମୁଁ ବର୍ତ୍ତମାନ ପଚାରେ, ଯେଉଁ କବିଙ୍କ ଲେଖା ପଢ଼ି ସମାଲୋଚକଙ୍କର ଏପରି କବିତା ଫୁଟିଉଠିଲା, ଏଇ କବି ନୀତିର କିଛି ଧାର ଧାରନ୍ତି କି ? ଜୟଦେବ କବି କାହାର ବରଣୀୟ ନୁହନ୍ତି ? କିନ୍ତୁ ଯା' ବୋଲି ସାହିତ୍ୟିକ ଆଦର୍ଶ ତ ଭିନ୍ନ ଭିନ୍ନ ଲୋକଠାରେ ଭିନ୍ନ ଭିନ୍ନ ହେବ ନାହିଁ ? ଜୟଦେବଙ୍କ ସଂଗୀତର ତୁଳନା ନାହିଁ ଏବଂ ତାଙ୍କ ଭାଷାର, ପାଠକର ଇନ୍ଦ୍ରିୟ-ଚେତନା ଉପରେ ଯେ ଉନ୍ମାଦନା ତାର ମଧ୍ୟ ତୁଳନା ନାହିଁ । ରସଗ୍ରାହକମାନେ ଶେଷର ଅପରିହାର୍ଯ୍ୟ ଓ ନଗଣ୍ୟ 'ଦୋଷ'କୁ ପରିହାର କରି ପ୍ରଥମୋକ୍ତ 'ରସ' ଟିକିହିଁ ଗ୍ରହଣ କରିଥାନ୍ତି; କିନ୍ତୁ ସମାଲୋଚକ ଯେପରି 'ସାର୍ଥକତା' ଖୋଜିବୁଲିଛନ୍ତି, ତା' ଖୋଜିଲେ 'ଗୀତଗୋବିନ୍ଦ'ର ସ୍ଥାନ କାହିଁ ? ଜୟଦେବ କବି ସଂସ୍କୃତ ସାହିତ୍ୟରେ ବିପରୀତ ରତିର ବହୁଳ ପ୍ରଚାରପାଇଁ ବିଶେଷ ଭାବରେ ଦାୟୀ । ତା'ପରେ ସେ ତାଙ୍କ ନାୟକ-ନାୟିକାଙ୍କର ଯେ ପ୍ରେମ ବର୍ଣ୍ଣନା କରିଛନ୍ତି, ତାହା ଏକାବେଳେ ଇନ୍ଦ୍ରିୟପରତନ୍ତ୍ର; ଆତ୍ମାର ତ କିଛି ହେଲେ ସଂବନ୍ଧ ନାହିଁ । ସେ ତ କାବ୍ୟ ଆରମ୍ଭ କରିଛନ୍ତି ଏହା କହି –

'ଶ୍ରୀ ବାସୁଦେବରତିକେଳିକଥା ସମେତ ମେତଂ କରୋତି ଜୟଦେବ କବିଃ ପ୍ରବନ୍ଧ' ଏବଂ ସମସ୍ତ କାବ୍ୟ ମଧରେ 'ବାସୁଦେବରତିକେଳି କଥା'ଟା ଏପରି ଭାବରେ ବର୍ଣ୍ଣିତ ହୋଇଛି ଯେ ଭାଇଭଉଣୀ, ପିତାପୁତ୍ର ଏକାଠି ବସି ପଢ଼ିବା ଅସମ୍ଭବ ହୋଇଉଠିଛି । ତାଙ୍କର ନାୟକ ଶ୍ରୀକୃଷ୍ଣ 'ବିପୁଳପୁଲକ ଭୁଜପଲ୍ଲବବଳୟିତ-ବଲ୍ଲବ ଯୁବତୀ ସହସ୍ରସା' ଓ ତାଙ୍କର ନାୟିକା 'ସ୍ମରସମରୋଚିତ ବିରଚିତ ବେଶା' । ତାଙ୍କର ରାଧା ଭାବୁଛନ୍ତି, ଏହିପରି ଭାବରେ ହେଲେ ମୋର ପ୍ରିୟ ସଙ୍ଗରେ ମିଳନ ହୁଅନ୍ତା–

'ପ୍ରଥମ ସମାଗମ ଲଜ୍ଜିତୟା
ପଟୁ ଚାଟୁ ଶତୈରନୁକୂଳଂ
ମୃଦୁ ମଧୁରସ୍ମିତ ଭାଷିତୟା
ଶିଥିଳୀକୃତ ଜଘାନଦୁକୂଳଂ ।

ଚରଣରଣିତମଣି ନୂପୁରୟା
ପରିପୂରିତ ସୁରତ ବିତାନଂ
ମୁଖର ବିଶୃଙ୍ଖଳ ମେଖଳୟା
ସକଚଗ୍ରହ ଚୁମ୍ବନ ଦାନଂ ।
ରତି ସୁଖସମୟରସାଳସୟା
ଦରମୁକୁଳିତ ନୟନ ସରୋଜଂ
ନିଃସହ ନିପତିତ ତନୁଲତୟା
ମଧୁସୂଦନ ମୁଦିତମନୋଜଂ ।'

ପୁଣି ତାଙ୍କ ନାୟିକାଙ୍କ ସଖୀ ପ୍ରିୟସହୀଙ୍କୁ ଅଭିସାର କରିବା ପାଇଁ ଉଚ୍ଛନ୍ନ କରି ଉପଦେଶ ଛଳରେ କହୁଛନ୍ତି –

'ମୁଖର ମଧୀରଂ, ତ୍ୟଜ ମଞ୍ଜୀରଂ
ରିପୁମିବ କେଳିଷୁ ଲୋଳଂ
ଚଳ ସଖି ! କୁଞ୍ଜଂ ସତିମିର ପୁଞ୍ଜଂ
ଶୀଳୟ ନୀଳନିଚୋଳଂ ।
ଉରସି ମୁରାରେ ରୁପହିତ ହାରେ
ଘନଇବ ତରଳ ବଳାକେ
ତଡ଼ିଦିନ ପୀତେ ରତି ବିପରୀତେ
ରାଜସି ସୁକୃତି ବିପାକେ ।
ବିଗଳିତ ବସନଂ ପରିହୃତ ରସନଂ
ଘଟୟ ଜଘନ ମପିଧାନଂ
କିଶଳୟ ଶୟନେ ପଙ୍କଜ ନୟନେ
ନିଧିମିବ ହର୍ଷ ନିଧାନଂ ।'

ସମାଲୋଚକ କାହିଁ ଜୟଦେବଙ୍କୁ ତ ଦୋଷ ଦେଲେ ନାହିଁ ଯେ, ତାଙ୍କ ଲେଖାଦ୍ୱାରା କୁଳବଧୂଙ୍କୁ ଅଭିସାରିକା ହେବାକୁ ଉପଦେଶ ଦିଆ ହୋଇଛି ବୋଲି ! 'ପୁଷ୍ପିତା' ନାଟିକାର ଲେଖକ ବିଚରା କି ଅପରାଧ କଲା କେଜାଣି, ନା ତା'ର ଏଇ ଅପରାଧ ହେଲା ଯେ, ସବୁ ଅଳିଆଯାକ 'ରାଧାଗୋବିନ୍ଦ'ଙ୍କ ମୁଣ୍ଡରେ ଲଦି ନ ଦେଇ, ବେହିଆ ଭାବରେ ଯୋଡ଼ିଏ ସାଧାରଣ ଯୁବକ ଯୁବତୀଙ୍କୁ ପ୍ରେମିକ-ପ୍ରେମିକା କରିବାକୁ ଚେଷ୍ଟା କରିଛି । ଦେବତାଙ୍କ ନାଁରେ ମାତୃହରଣ ମଧ୍ୟ ସହାଯାଉଛି, ଅଥଚ ମନୁଷ୍ୟ ନାଁରେ ପ୍ରେମ ପରି ପ୍ରାକୃତିକ ସଂବନ୍ଧଟା ଚକ୍ଷୁଶୂଳ ହୋଇ ଉଠୁଛି– ଏହି କେବଳ ଏ

ଜାତିର ବିଶେଷତ୍ୱ ।

ମୁଁ ଗୀତଗୋବିନ୍ଦକୁ ଏ ଗୋଳମାଳ ଭିତରକୁ ଟାଣିଆଣିଲି, ତା'ର କାରଣ ଏହି ଯେ, ସମାଲୋଚକଙ୍କୁ ସାକ୍ଷାତ୍ କରିବା ପାଇଁ ସେଥିରେ ମତେ ସାଧାରଣ କ୍ଷେତ୍ର ମିଳିଲା । ସମସ୍ତ କାବ୍ୟରେ 'ପୀନପୟୋଧର ପରିସର-ମର୍ଦ୍ଦନ-ଚଞ୍ଚଳ-କରଯୁଗଶାଳୀ' ନାୟକ ଏକାବେଳେ କାମୁକ ଭାବରେ ବର୍ଣ୍ଣିତ ହୋଇଛନ୍ତି ଓ ରାଧା ମଧ୍ୟ ଦୈହିକ ସମ୍ଭୋଗ ଛଡ଼ା ଆଉ କିଛି ଇଚ୍ଛା କରିନାହାନ୍ତି । ଏ ଲେଖାର ନାନା 'ଦର୍ଶନ-ତତ୍ତ୍ୱ' ବାହାରିପାରେ, କିନ୍ତୁ ସାହିତ୍ୟ କ୍ଷେତ୍ରରେ ସେ ସବୁ ଶୁଣେ କିଏ ?

ଜୟଦେବଙ୍କୁ ବିଦାୟ ଦେଇ ବର୍ତ୍ତମାନ ବିଶ୍ୱସାହିତ୍ୟର ଅନ୍ୟାନ୍ୟ ନାମଯାଦା କବିମାନଙ୍କୁ ଟିକିଏ ଟିକିଏ ଦେଖିନିଆହେଉ– ଦେଖିବା ସେମାନଙ୍କ ଲେଖାରେ ନୀତିର ସ୍ଥାନ କେତେ ଦୂର ! ଏଠାରେ ବିସ୍ତୃତ ବିବରଣ ସମ୍ଭବ ନୁହେଁ– ମୁଁ ଖାଲି ସୂଚନା ଦେଇଯିବି ।

ହୋମର୍ ପାଶ୍ଚାତ୍ୟ ଜଗତର ବାଲ୍ମୀକି । ତାଙ୍କର ମହାକାବ୍ୟ Illiad ର ନାୟିକା 'ହେଲେନା' ବେଶ୍ ଅସତୀ। କାଳିଦାସଙ୍କ ନାୟିକା ଶକୁନ୍ତଳା ସ୍ୱୈରିଣୀ ଓ ଦୁଷ୍ମନ୍ତ ବହୁପତ୍ନୀକ କାମୁକ ନାୟକ। ଋଷିଆର ଋଷି ଟଲ୍‌ଷ୍ଟୟଙ୍କ ଶ୍ରେଷ୍ଠ ସୃଷ୍ଟି 'ଆନା କାରେନିନା'ରେ ନାୟିକା 'ଆନା' ନିଜର ସ୍ୱାମୀ ଓ ପୁତ୍ରକୁ ପରିତ୍ୟାଗ କରି ପରପୁରୁଷର ଅନୁଗାମିନୀ ହୋଇଛି ।

ଏ ଯୁଗର ମହାମନୀଷୀ ରମ୍ୟା ରଲାଁଙ୍କ ଅମର ଗ୍ରନ୍ଥ 'ଜନ୍ କ୍ରିଷ୍ଟଫର୍'ରେ ନାୟକ କ୍ରିଷ୍ଟଫର୍‌ଙ୍କ ପ୍ରେମିକାମାନଙ୍କର ଅନ୍ତ ନାହିଁ ଓ ତାଙ୍କ ପ୍ରେମ-ପ୍ରବାହର ଶେଷ ପରିଣତି ହୋଇଛି ତାଙ୍କର ଜଣେ ବନ୍ଧୁଙ୍କ ସ୍ତ୍ରୀଠାରେ !

ଆଉ ଦୃଷ୍ଟାନ୍ତର ଆବଶ୍ୟକତା ଅଛି ? ଉପରେ ଯେଉଁ କବିମାନଙ୍କ ନାମ ଦିଆଗଲା, ସେମାନେ ସମାଲୋଚକଙ୍କ ବାଣର ବହୁ ଉପରେ । ସେମାନେ ବିରାଟ ପୁରୁଷ ଓ ତାଙ୍କ ସୃଷ୍ଟି ମାନବଜାତିର ଶ୍ରେଷ୍ଠ ସମ୍ପଦ । ଆଚ୍ଛା, କହ ଦେଖି, ଏମାନେ ଏମାନଙ୍କର ଲେଖା ଦେଇ ଯେ ସବୁ ଭୀଷଣ ଅନାଚାରର ଚିତ୍ର ଦେଖାଇଦେଇଗଲେ, ତା' ପାଇଁ ବିଶ୍ୱ-ସାହିତ୍ୟରେ କେହି କେତେବେଳେ ଅନୁଶୋଚନା ଶୁଣିଛି ? ଆଉ 'ପୁଷ୍ପିତା' ନାଟିକାର କି ବା ଦୁର୍ଭାଗ୍ୟ ଯେ, ସମାଲୋଚକ ଖଣ୍ଡାଧରି ଡେଇଁପଡ଼ିଲେ ?

ଏ ଦେଶରେ ସତୀତ୍ୱ ଓ ଯତିତ୍ୱ ନାମରେ ନାନା ପ୍ରବଞ୍ଚନା ଓ ଭଣ୍ଡତାର ପ୍ରସାର ବଢ଼ିଛି । ଲୋକେ ବୁଝିନାହାନ୍ତି ଯେ, ସତୀତ୍ୱ କହିଲେ ସବୁଠାରେ ପ୍ରେମ ବୁଝାଏ ନାହିଁ ଏବଂ ଏହା ମଧ୍ୟ ବୁଝିବା ଉଚିତ ଯେ, ଶୁଷ୍କ-ପ୍ରାଣା ସତୀଠାରୁ ପୂର୍ଣ୍ଣ-ପ୍ରାଣା କୁଳଟା ଭଲ ଓ ଭଣ୍ଡ ସନ୍ନ୍ୟାସୀଠାରୁ ରସିକ ସଂସାରୀ ଭଲ । କେବଳ ପରମ୍ପରା ପ୍ରତି

ସମ୍ମାନ ଦେଖାଇବାକୁ ବସିଲେ ଆମ୍ଭମାନଙ୍କୁ ଅନେକ ସ୍ଥଳରେ ମିଥ୍ୟାକୁ ପ୍ରଶ୍ରୟ ଦେବାକୁ ପଡ଼ିବ ଏବଂ ଏହି ମିଥ୍ୟାର ଆବରଣକୁ ଯତ୍ନ କରୁ କରୁ, ତେଣେ ସମାଜର ମଜ୍ଜାକୁ କୀଟ କାଟି ଯିବ । ସମାଲୋଚକ ଯୌବନ କଥା ପ୍ରସଙ୍ଗରେ ଏ ଦେଶ ଓ ପାଶ୍ଚାତ୍ୟ ଦେଶ ଭିତରେ ବ୍ୟବଧାନର ରେଖାପାତ କରିଛନ୍ତି । ସେ ଏ ଦେଶର ଆଦର୍ଶକୁ ପ୍ରଶଂସା କରିବାକୁ ଶତଜିହ୍ୱ ହୋଇ କହିଛନ୍ତି ଯେ, ଏଭଳି ଆଦର୍ଶ ଯେଉଁ ଦେଶରେ, ସେ ଦେଶରେ 'ପୁଷ୍ପିତା' ପରି ଲେଖା ଆଦୌ ଲେଖାହେବା ଉଚିତ ନୁହେଁ । କିନ୍ତୁ ସମାଲୋଚକଙ୍କର ମନେରଖିବା ଉଚିତ୍, ମନୁଷ୍ୟର ପ୍ରବୃତ୍ତି ସବୁଠାରେ ସମାନ, ମନୁଷ୍ୟର ନୈତିକ ଆଦର୍ଶ ମଧ୍ୟ ସବୁଠି ସମାନ । ଏ ଦେଶରେ କେବଳ ଯେ ସୀତା-ସାବିତ୍ରୀ ଜନ୍ମ ହୋଇଛନ୍ତି ତା' ନୁହେଁ, ସେ ଦେଶରେ ମଧ୍ୟ ସତୀରାଣୀମାନଙ୍କର ଅପ୍ରାଚୁର୍ଯ୍ୟ ନାହିଁ । ଆଉ ସେ ଦେଶରେ ଯଦି ବ୍ୟଭିଚାରିଣୀ ଅଛନ୍ତି, ଏ ଦେଶରେ ମଧ୍ୟ ସେମାନଙ୍କ ସଂଖ୍ୟା ଅଳ୍ପ ନୁହେଁ । କେବଳ ପ୍ରଭେଦ ଏତିକି ଯେ, ସେ ଦେଶର ଲୋକେ ମାନବଚରିତ୍ରର ବୈଚିତ୍ର୍ୟକୁ ସ୍ୱୀକାର କରି ତା'ର ଅପରାଧକୁ ମଧ୍ୟ ସାହିତ୍ୟରେ ଆଦରଣୀୟ କରିନେଇଛନ୍ତି, ଆଉ ଏ ଦେଶର ଲୋକେ ସତ୍‌ସାହସର ଅଭାବରୁ କୁଳଟା ରାଧାଙ୍କୁ ଦେବୀ ବୋଲି ଗ୍ରହଣ କରିବେ, ଅଥଚ ଏଣେ କିଶୋରୀମାନଙ୍କୁ ବିଧବା ରଖି, ସମାଜର କଠୋର ଆଘାତରେ ହୃଦୟର କୋମଳତମ ବୃତ୍ତିକୁ ବିନଷ୍ଟ କରି, ସତୀତ୍ୱର ପ୍ରେତାତ୍ମା ଗଢ଼ିବାକୁ ଚେଷ୍ଟା କରିବେ । ସମାଲୋଚକ କ'ଣ ଏ ଦେଶର କିଶୋରୀମାନଙ୍କୁ ଏହିପରି ସତୀ ହୋଇ 'କଲ୍ୟାଣୀ' ହେବାକୁ ଅଭିଳାଷ କରନ୍ତି ? ଲେଖକ ମଧ୍ୟ ମାନେ ଯେ, ନାରୀର ପୂର୍ଣ୍ଣତମ ବିକାଶ ଗୃହ-ଲକ୍ଷ୍ମୀତ୍ୱରେ; କିନ୍ତୁ ଗୃହଲକ୍ଷ୍ମୀ କ'ଣ ସମାଜର କଳରେ ଗଢ଼ାହେବେ, ନା ନାରୀତ୍ୱର ପୂର୍ଣ୍ଣତମ ବିକାଶ ଦେଇ ସେମାନଙ୍କର 'କଲ୍ୟାଣୀତ୍ୱ' ଫୁଟାଇବାକୁ ଚେଷ୍ଟା କରାଯିବ ? ସମାଲୋଚକ କ'ଣ ଭାବନ୍ତି ଯେ, ପ୍ରେମକୁ ବାଦ୍ ଦେଇ ମଧ୍ୟ ନାରୀତ୍ୱର ପୂର୍ଣ୍ଣ ବିକାଶ ସମ୍ଭବ ହେବ ? ସେ ଯଦି ତା' ଭାବିଥାନ୍ତି, ତା'ହେଲେ ସେ ଭୁଲ୍ ବୁଝିଛନ୍ତି । ୟୁରୋପରେ ମାଷ୍ଟ୍ରାଣୀମାନେ ଅବିବାହିତା ରହନ୍ତି– ପ୍ରାୟ । ଏବେ ସେ ଦେଶରେ ଏକ ଭାବ-ଧାରା ଉଠୁଛି ଯେ, ଅବିବାହିତା ସ୍ତ୍ରୀ ଛୋଟ ଶିଶୁଙ୍କୁ ପଢ଼ାଇବା ପାଇଁ ଉପଯୁକ୍ତ ନୁହନ୍ତି– କାରଣ ଦାମ୍ପତ୍ୟ ଜୀବନର ଅନୁଭୂତି ଯାର ନାହିଁ ତା'ର ବାତ୍ସଲ୍ୟ ସ୍ନେହ ସହଜରେ ଆସିପାରେ ନାହିଁ । ତେଣୁ ବିବାହିତା ସ୍ତ୍ରୀ ହିଁ ଛୋଟ ଶିଶୁଙ୍କୁ ପଢ଼ାଇବା ପାଇଁ ସବୁଠାରୁ ବେଶୀ ଉପଯୁକ୍ତ । ଏଥିରୁ ବୁଝାଯିବ, ନାରୀଜୀବନରେ ପ୍ରେମ କି ପରିମାଣରେ ସ୍ୱାଭାବିକ ଆବଶ୍ୟକ । ଆମ୍ଭମାନଙ୍କ ସମାଜରେ ଅନେକ ସ୍ଥଳରେ ଦେଖାଯାଏ, କେତେକ ବିଧବା ନିତାନ୍ତ ରୁକ୍ଷ ଓ କଠୋରସ୍ୱଭାବର । ତା'ର ପ୍ରଧାନ କାରଣ ଏହି ଯେ, ପ୍ରେମର ଅମୃତ-

ସଂପର୍କରୁ ଚିରକାଳ ଲାଗି ବଞ୍ଚିତ କରି ସମାଜ ସେମାନଙ୍କ ହୃଦୟର ସମସ୍ତ କୋମଳ ବୃତ୍ତିଗୁଡ଼ିକର ମସ୍ତକ ଚର୍ବଣ କରିଅଛି । ମୁଁ ପୁଷ୍ପିତା ନାଟିକାରେ ଏହାହିଁ ଦେଖାଇବାକୁ ଚେଷ୍ଟା କରିଛି ଯେ, ଜୀବନରେ ଯୌବନର ବିକାଶ ସଙ୍ଗେ ପ୍ରେମର ବିକାଶ ନିତାନ୍ତ ସ୍ୱାଭାବିକ । ହୃଦୟର ଏହି ସ୍ୱାଭାବିକ କ୍ରିୟାକୁ ଅବରୋଧ କଲେ ଜୀବନରେ tragedy ଘଟେ; ସମାଜ ତା' କରିବା ଉଚିତ ନୁହେଁ । ପୁଷ୍ପିତାର ନାୟିକା କିଶୋରୀ ଯୌବନ ପାଇବା ପରେ ନିଜ ଗ୍ରାମରେ ତ ବହୁତ ଯୁବକଙ୍କୁ ଦେଖିଥିବ; କିନ୍ତୁ ଆଉ ଏକ ଗ୍ରାମର 'ଅପରିଚିତ' ଯୁବକ ପ୍ରତି ମନ ଢାଳିଲା କାହିଁକି ? ସମାଲୋଚକଙ୍କର ବୁଝିବା ଉଚିତ, ଏଇଟା ବ୍ୟଭିଚାରର ଚିହ୍ନ ନୁହେଁ– ପ୍ରେମର ଚିହ୍ନ । ବ୍ୟଭିଚାର କରିବାକୁ ବସିଲେ ତ ବାଛ-ବିଚାରର ପ୍ରୟୋଜନ ହୁଏ ନାହିଁ; କିନ୍ତୁ ପ୍ରେମ ପାଇଁ ବହୁ ମଧ୍ୟରୁ ଏକକୁ ବାଛିବାକୁ ହୁଏ ଓ ତା' ପାଇଁ ଆଖିରୁ ଲୁହ ଗଡ଼ାଇବାକୁ ହୁଏ; କିଶୋରୀ ସେଇୟା କରିଛି । ସମାଲୋଚକ ତେବେ ତା' ଉପରେ ରକ୍ତ-ଚକ୍ଷୁ ଦେଖାଇଛନ୍ତି କାହିଁକି, ମୁଁ ବୁଝିପାରିଲି ନାହିଁ । ଯେ ହୃଦୟ ଅଧିକାର କରି ବସିଲା, ତା'ପାଇଁ ତ ନାରୀ ଯୁଗେ ଯୁଗେ 'ଅଭିସାର' କରିଛି – କିଶୋରୀର ଦୋଷ କ'ଣ ? ରାଧା ତ ନିଜ ସ୍ୱାମୀଙ୍କି ପରିତ୍ୟାଗ କରି ଧାଉଁଥିଲେ; ଏ ତ ଅବିବାହିତା । ସମାଲୋଚକଙ୍କର ରାଧା କାହିଁକି ପ୍ରିୟ ହେଲେ, ଆଉ କିଶୋରୀ କାହିଁକି ବିରାଗଭାଜନ ହେଲା, ମୁଁ ବୁଝିପାରିଲି ନାହିଁ ।

ସମାଲୋଚକ ତାଙ୍କ ଲେଖାରେ ଏପରି ଏକ ସ୍ୱର ଧରିଛନ୍ତି, ଯେଉଁଥିରୁ ଏତକ ବୁଝିବାକୁ ହେବ, ଯେପରି ପୁଷ୍ପିତାର ଲେଖକହିଁ ପ୍ରଥମେ କିଶୋରୀମାନଙ୍କୁ 'ଅଭିସାର' କରିବାକୁ ଶିଖାଉଛନ୍ତି । ଏ ଅନ୍ଧତାର ମୁଁ କି ଉତ୍ତର ଦେବି ? ଆଶାକରେ, ଏପର୍ଯ୍ୟନ୍ତ ମତେ ଯେଉଁ ପାଠକମାନେ ଧୈର୍ଯ୍ୟ ଧରି ଶୁଣିଆସିଥିବେ, ସେମାନେ ବୁଝିବେ ଯେ, ଏ କଥା ସାହିତ୍ୟ-ରାଜ୍ୟରେ ନୂଆକଥା ନୁହେଁ । 'ଶକୁନ୍ତଳା'ରେ ପ୍ରେମିକ ଦୁଷ୍ମନ୍ତ ଶକୁନ୍ତଳାଙ୍କ ଆଖିରୁ ପୁଷ୍ପରାଗ କାଢ଼ି ଆଣିବା ବାହାନାରେ ଚୁମ୍ବନ-ଚେଷ୍ଟା କରିଛନ୍ତି । ସମାଲୋଚକ କହିବେ ଯେ, କାଳିଦାସ ତ ଏଇମିତି ଭାବରେ ଚୁମ୍ବନ-ଚେଷ୍ଟା କରିବାକୁ ଲୋକଙ୍କୁ ବତେଇ ଦେଇଗଲେ ! ଏମିତି ସାହିତ୍ୟ-ରସିକ ତ ଆଉ କେଉଁଠି ଦେଖାନଥିଲା ! ତାଙ୍କର ଦେଖିବା ଉଚିତ୍, କିଏ କାହାକୁ ଶିଖାଏ । କାବ୍ୟ କବିତାରେ ସମାଜରହିଁ ପ୍ରତିବିମ୍ବ ପଡ଼େ । ସମାଜରେ ପ୍ରେମର କାରବାର ନଥିଲେ କବି ପ୍ରେମର କଳ୍ପନା ମଧ୍ୟ କରି ପାରନ୍ତେ ନାହିଁ । କବିର ବ୍ୟବସାୟ ମାନବର କର୍ମକୁ ଭାଷାରେ ଜୀବନଦାନ କରିବା । ଦୁଷ୍ମନ୍ତ ଶକୁନ୍ତଳାଙ୍କଠାରେ ଯେପରି ଭାବରେ ଚୁମ୍ବନ-ଚେଷ୍ଟା କଲେ, ତା' ପ୍ରତ୍ୟେକ ପ୍ରେମିକ ପ୍ରେମିକା ଆପେ ଆପେ ଶିଖିଥାନ୍ତି । 'ଶକୁନ୍ତଳା' ଯେ

ନପଡ଼ିଛି, ସେ କ'ଣ ଚୁମ୍ବନ ସମ୍ବନ୍ଧରେ ଏକାନ୍ତ ଅନଭିଜ୍ଞ ? ସମାଲୋଚକଙ୍କର ଏପରି ଭାବନା ଭୁଲ । ଭୂମିଷ୍ଠ ଶିଶୁ ଯେପରି ମାତୃସ୍ତନରେ ମୁଖ ଦେଲେ ଆପେ ଆପେ ଦୁଗ୍ଧପାନ କରିଯାଏ, ସେହିପରି ଯୌବନ ଆସିଲେ ଯୁବକ ଓ ଯୁବତୀ ପରସ୍ପର ସଙ୍ଗେ କିପରି ମିଶିଯିବାକୁ ହୁଏ, ସେ କଳା ଆପେ ଆପେ ଜାଣିଥାନ୍ତି । ଏ ତ ହେଲା ସୃଷ୍ଟିର ଧର୍ମ । ଏଥିରେ ଘୃଣାର କଥା ବା କ'ଣ ? ସୃଷ୍ଟି-ରକ୍ଷା ପାଇଁ ଆମର ସ୍ରଷ୍ଟା ଆମମାନଙ୍କ ମଧ୍ୟରେ କ୍ଷୁଧା ତୃଷା ପରି ଏ ଆକର୍ଷଣଟା ମଧ୍ୟ ରୋପଣ କରିଦେଇଛନ୍ତି । ତାକୁ ଏକାବେଳକେ ଅବହେଳା କରିବା ମୂର୍ଖତା । ସାଧାରଣ ମନୁଷ୍ୟ କିନ୍ତୁ ପ୍ରକୃତିର ପ୍ରେରଣା ଘେନି ଚଳେ ଏବଂ ପ୍ରାଣ-ହୀନ ସତୀ ଓ ଯତି ହେବାକୁ ଚେଷ୍ଟା ନକରି, ତା'ର 'ଅଭିସାର' ଓ ରସିକତାରେ ଜୀବନକୁ ବୈଚିତ୍ର୍ୟମୟ କରିରଖେ । କବି ବୈଚିତ୍ର୍ୟରେ ମୁଗ୍ଧ ହୋଇ କୁଳଟାକୁ ନମସ୍କାର କରେ ଓ ତା'ର ଯଶ ଗାନକରେ ଏବଂ ପ୍ରାଣଶୂନ୍ୟା ସତୀ-ଶିରୋମଣିମାନଙ୍କ ସଂବନ୍ଧରେ ନୀରବ ରହେ । ଏଥିଯୋଗୁଁ ଜଗତ-ସାହିତ୍ୟର କ୍ଷତି ହୋଇଛି କି ଲାଭ ହୋଇଛି, 'କ୍ରିଷ୍ଟୋଫର୍', 'ଆନା କାରେନିନା' ଓ 'ଗୀତଗୋବିନ୍ଦ' ପାଠ କଲେ ପାଠକ ବୁଝିପାରିବେ ।

ତା' ପରେ 'ପୁଷ୍ପିତା'ରେ ଲେଖକ ଏପରି କିଛି ଅସଂଯତ ହୋଇପଡ଼ିନାହିଁ, ଯା କି ସମାଲୋଚକଙ୍କୁ ଅପ୍ରକୃତିସ୍ଥ କରିପକାଇଲା । ଯୌନ-କ୍ରିୟାର ଉଦ୍‌ବୋଧନ ପାଇଁ ସେଥିରେ ସେପରି ବା କ'ଣ ଅଛି ? 'ଗୀତଗୋବିନ୍ଦ' ଓ ଭଞ୍ଜ କବିତା ସଙ୍ଗେ ଏ ବିଷୟରେ କ'ଣ ତା'ର ତୁଳନା ହୋଇପାରେ ? କିଶୋର ଦେହରେ ଯୌବନର ସମାଗମ ହେବାରୁ ଭଞ୍ଜ ଗାଇଲେ –

ଏ ସମୟେ ଆସି ବାଳାପ୍ରିୟଦାସୀ
ହସି ଭାଷିଲା କୁମରକୁ
ଅତନୁ ଆଜ ଅନୁକୂଳ ଥୋଇଲା
ତରୁଣ କୁଳ ଆକୁଳକୁ;
ରଙ୍ଗକେତନ, ନିକେତନେ କଲା ବନ୍ଧନ; ଇତ୍ୟାଦି. . .

ଏପ୍ରକାର ଗ୍ରାମ୍ୟ ବର୍ଣ୍ଣନା କ'ଣ ପୁଷ୍ପିତାରେ ଅଛି ? ନା ଜୟଦେବଙ୍କର ବିପରୀତରତିର ମନୋମୁଗ୍ଧକର ଚିତ୍ରଣ ସେଥିରେ ଅଛି ? ତେବେ ସମାଲୋଚକଙ୍କର ଏ ଲେଖକ ବିଚରା ଉପରେ ଏତେ ରାଗ କାହିଁକି ? କେଉଁ ଦୋଷରେ ବା ଲେଖାଟା ନୈତିକ ସଂସାରରେ ଏକ ଭୌତିକ ବ୍ୟାଧି ଭଳି ଲେଖକଙ୍କୁ ଦେଖାଗଲା ?

ମୁଁ ମୋର ଯା କହିବାର, ତା' କହିଛି । ସମାଲୋଚକ ନାନା ଛୋଟ ଛୋଟ କଥା ନେଇ ମତେ ବାଣ ମାରିବାକୁ ଚେଷ୍ଟା କରିଛନ୍ତି– ମୁଁ ସେଥିପ୍ରତି ଦୃଷ୍ଟି ଦେବି

ନାହିଁ । ମୁଁ ପୁଷ୍ପିତାର ନୀତି ଓ ରୀତି ବିଷୟରେ କହିବାକୁ ବାହାରିଥିଲି, ତା' କହିଲି । 'ପୁଷ୍ପିତା'ର ସାହିତ୍ୟିକ ମୂଲ୍ୟ ସଂବନ୍ଧରେ ସେ ଏକପ୍ରକାର ନୀରବ । ସେ 'ସାର୍ଥକତା' ଖୋଜି ବିଫଳ ମନୋରଥ ହୋଇଛନ୍ତି; ତେଣୁ ତାଙ୍କ ମତରେ ଏହାର ମୂଲ୍ୟ ନଥାଇ ପାରେ । ସେ ସଂବନ୍ଧରେ ଅନୁକୂଳ ବା ପ୍ରତିକୂଳ ମନ୍ତବ୍ୟ ଯାହା ଦେଇଥାନ୍ତେ, ସେଥିରେ ମୋର କିଛି ହେଲେ କହିବାର ନ ଥିଲା; କିନ୍ତୁ ସେ ସେଥିରେ 'ସାର୍ଥକତା' ଖୋଜିବାବେଳେ ମୋର ଅନ୍ତତଃ ଏତିକି କହିଦେବା ଉଚିତ ଯେ, 'ପୁଷ୍ପିତା'ରେ ତ କୌଣସି 'ସାର୍ଥକତା' ନାହିଁ, ସେ ଖୋଜୁଛନ୍ତି କାହିଁକି ? ଆଶାକରେ, ମୁଁ ସେତକ କହିପାରିଛି ।

କିଶୋରୀର ବୟସ, 'ଅପରିଚିତ ଯୁବକ'ର University ମାର୍କା ଓ Service, ନାସିକାରେ ବୀଣା ବାଜିବା ପ୍ରଭୃତି କଥାକୁ ସମାଲୋଚକ ଖୁବ୍ ବଡ଼ କରି ଥୋଇଛନ୍ତି । ସେ ସବୁ ଅତି ସାମାନ୍ୟ କଥା । ବାରବର୍ଷରେ ପ୍ରେମର ଉଦ୍ରେକ ସମାଲୋଚକଙ୍କୁ ହାସ୍ୟକର ବୋଧ ହୋଇଛି; କିନ୍ତୁ ଏ ଦେଶରେ ୧୨ ବର୍ଷରେ ମା' ହୋଇଯାଉଛନ୍ତି, ତା' ସେ ଜାଣନ୍ତି ? କିଶୋରୀର ପ୍ରେମିକ 'ଅପରିଚିତ' ରହିବାରେ କି କ୍ଷତି ହୋଇଛି ? ତା'ର ପରିଚୟ ଦେଇ ଲାଭ ବା କ'ଣ ହୋଇଥାନ୍ତା ? ସେ ରଙ୍ଗସ୍ଥଳକୁ ନ ଆସିଲେ ମଧ୍ୟ କ'ଣ ରସ ଗ୍ରହଣରେ ବାଧା ପଡୁଛି ? ତା'ପରେ ଏ ତ 'ନାଟକ' ନୁହେଁ ଯେ, ସବୁ ଚରିତ୍ରର ପୂର୍ଣ୍ଣ ରେଖାପାତ ପାଇଁ ଲେଖକ ଚେଷ୍ଟାକରିବ, ଏଟା 'ନାଟିକା'– ଫଟୋ ନୁହେଁ – snapshot ।

ଶେଷରେ ଗୋଟିଏ କଥା କହି ମୋର ବକ୍ତବ୍ୟ ଶେଷକରିବି । ଏ ଲେଖାରେ ମୁଁ ମୋର ଆତ୍ମରକ୍ଷା ପାଇଁ ବିଶ୍ୱସାହିତ୍ୟର ବିରାଟପୁରୁଷମାନଙ୍କୁ ଟାଣି ଆଣିଛି । କେହି ପାଠକ ଯେପରି ନ ଭାବନ୍ତି ଯେ, ମୁଁ ଏହି ମହାରଥୀମାନଙ୍କ ସଙ୍ଗେ ଆସନ ପକାଇବାକୁ ସ୍ପର୍ଦ୍ଧା କରୁଛି– ସେ କଳ୍ପନା ମଧ୍ୟ ମୋର ନାହିଁ । ମୁଁ ତ ପଥର ଧୂଳି– ନଗଣ୍ୟମାନଙ୍କ ମଧ୍ୟରେ ନଗଣ୍ୟ; କିନ୍ତୁ ପାଠକମାନେ ଜାଣନ୍ତି ଗୀତାର ସେହି ବାକ୍ୟ– ''ଯଦ୍ ଯଦାଚରତି ଶ୍ରେଷ୍ଠ'' . . .ମହାଜନମାନେ ଯାହା କରନ୍ତି, ଇତର ଲୋକମାନେ ତାହାହିଁ ଅନୁକରଣ କରନ୍ତି । 'ପୁଷ୍ପିତା' ଲେଖି ମୁଁ ଅବଶ୍ୟ କାହାର ଅନୁକରଣ କରିନାହିଁ; ତେବେ ମୁଁ କହିବାକୁ ଚାହେଁ ଯେ, ମୁଁ ଏପରି କିଛି କରିନାହିଁ, ଯାହା ମହାଜନମାନେ କରିବାକୁ କୁଣ୍ଠା ବୋଧ କରିଛନ୍ତି ।

––

# ସାହିତ୍ୟରେ ନୂତନ ଭାବଧାରା

ନିକଟରେ ମୁଁ ଇଂରେଜି କବିତାର ସମାଲୋଚନାମୂଳକ ଏକ ନୂତନ ଇତିହାସ ପଢୁଥିଲି । ଲେଖକ ତାଙ୍କ ପୁସ୍ତକର ଶେଷରେ କହିଛନ୍ତି, ''ଦୁଇ ହଜାର ଖ୍ରୀଷ୍ଟାବ୍ଦରେ ଇଂରେଜି କବିତାର ଯେଉଁ ସଂଗ୍ରହ ପ୍ରକାଶ ପାଇବ, ସେଥିରେ ଆମେ ଏବର ଅନେକ ପରିଚିତ ନାମ ଯେ ପାଇବାନି, ଏହା ନିଶ୍ଚିତ । ଅନେକ ପରିଚିତ ନାମ ସ୍ଥାନରେ ଆମେ ହୁଏତ ବହୁ ନୂତନ ବ୍ୟକ୍ତିତ୍ୱର ଆବିର୍ଭାବ ଦେଖିବା ।''– ଏହା ଯେ ଯେକୌଣସି ସାହିତ୍ୟ ସଂପର୍କରେ ମଧ୍ୟ କୁହାଯାଇପାରେ, ତା' ଉପରେ ଯୁକ୍ତିତର୍କର ଅବକାଶ ନାହିଁ । ତେବେ ସାଧାରଣ କୌତୂହଳ ତ ହେବ ଯେ, ରହିବ କିଏ, ଲୁପ୍ତ ହେବ କିଏ; ପୁଣି ରହିବାର ଯୋଗ୍ୟତା କ'ଣ; ବିସ୍ମୃତିର ହେତୁ ବା କ'ଣ ? କାରଣ ସେହି ଇଂରେଜ ପଣ୍ଡିତଙ୍କ ଲେଖାରୁ ଆମେ ମଧ୍ୟ ପାଉଁ ଯେ, ଗତ ପଚାଶ ବର୍ଷ ଧରି ଇଂଲଣ୍ଡ ବା ପାଶ୍ଚାତ୍ୟ ଜଗତରେ ପାଠକମାନଙ୍କର ଓ ସମାଲୋଚକମାନଙ୍କର ରୁଚିର ଅଚିନ୍ତନୀୟ ଉତ୍‌ଥାନ ପତନ ଘଟିଥିଲେ ମଧ୍ୟ ଊନବିଂଶ ଶତାବ୍ଦୀର ରୋମାଣ୍ଟିକ୍ କବିମାନଙ୍କୁ ସିଂହାସନଚ୍ୟୁତ କରାଯାଇ ତାଙ୍କ ଜାଗାରେ ଅଷ୍ଟାଦଶ ଶତାବ୍ଦୀର ମେଟାଫିଜିକାଲ୍ ବା ଦାର୍ଶନିକ କବିମାନଙ୍କୁ ଅଭିଷିକ୍ତ କରାଯାଇଥିଲେ ମଧ୍ୟ; ଦାନ୍ତେ, ସେକ୍‌ସପିୟର ଓ କୀଟସ୍ ପ୍ରଭୃତି କେତେକ ଖାଣ୍ଟି ଶିଳ୍ପୀଙ୍କର କେଶାଗ୍ର ସୁଦ୍ଧା ସ୍ପର୍ଶ କରିବାକୁ କେହି ସାହସ କରିନାହାନ୍ତି । ଗତ କେତେକ ବର୍ଷ ତଳେ ପାଶ୍ଚାତ୍ୟ ସମାଲୋଚନା ଜଗତରେ ରୋମାଣ୍ଟିସିଜମ୍ ହୋଇପଡ଼ିଥିଲା ଅସ୍ପୃଶ୍ୟତା ପରି ଏକ ପରିତ୍ୟାଜ୍ୟ ଓ ଘୃଣ୍ୟ ଦୋଷ । କିନ୍ତୁ ସେକ୍‌ସପିୟର୍ ଓ କୀଟସ୍‌ଙ୍କ ପରି ରୋମାଣ୍ଟିକ୍ କବି ଆଉ ଦ୍ୱିତୀୟ କିଏ ଅଛି ? କିନ୍ତୁ କେଉଁ କାରଣରୁ ଅରୋମାଣ୍ଟିକ୍, ରୁକ୍ଷ ସମାଲୋଚକମାନଙ୍କର 'ରୂଢ଼ ହସ୍ତାବଲେପ', ଯାହାର ଅତ୍ୟାଚାର କାଳିଦାସଙ୍କୁ ମଧ୍ୟ ଦିନେ ବିବ୍ରତ କରିପକାଇଥିଲା, କୀଟସ୍ ଓ ସେକ୍‌ସପିୟରଙ୍କୁ ଆଘାତ କରିବାକୁ ସାହସ କଲା ନାହିଁ ? ରୁଚି ଓ ସମାଲୋଚନାର ଘନ ଘନ ବିପ୍ଳବ ଭିତରେ, ବହୁ ପ୍ରତିଷ୍ଠିତ ବ୍ୟକ୍ତିତ୍ୱର ସ୍ଥାନଚ୍ୟୁତି ଓ ବହିଷ୍କରଣ ଭିତରେ, ଏମାନଙ୍କର ସ୍ଥିର, ଅବିଚଳ ପ୍ରତିଷ୍ଠାର ହେତୁ କ'ଣ ?

ଗତ ଦେଢ଼ଶ ବର୍ଷ ଭିତରେ ପୃଥିବୀରେ ଯାହା ପରିବର୍ତ୍ତନ ଘଟିଯାଇଛି, ତାହା ମନୁଷ୍ୟ ଇତିହାସରେ ହଜାର ହଜାର ବର୍ଷ ଧରି ଘଟି ନଥିଲା । ଏ ପରିବର୍ତ୍ତନ

କେବଳ ବାହ୍ୟ ନୁହେଁ, ମନୁଷ୍ୟର ଭିତର ଓ ବାହାର ଏଇ କେତୋଟି ବର୍ଷ ଭିତରେ ଏକାବେଳକେ ଓଲଟପାଲଟ ହୋଇଯାଇଛି । ଶିଳ୍ପବିପ୍ଳବ ଫଳରେ ମନୁଷ୍ୟର ଦୈନନ୍ଦିନ ଜୀବନ ଯାପନର ନକ୍‌ସା ଯେପରି ଯାଇଛି ଏକାବେଳକେ ବଦଳି, ଫ୍ରୟେଡ୍, କାର୍ଲମାର୍କସ, ଡାର୍‌ଉଇନ୍ ଓ ହାଭେଲକ୍ ଏଲିସ୍ ପ୍ରଭୃତିଙ୍କ ରଚନା ଯୋଗେ, ମନୁଷ୍ୟର ଚିନ୍ତାଧାରା ସେହିପରି ହୋଇଉଠିଛି ଉଗ୍ର, କ୍ଷିପ୍ର, ବିଶୃଙ୍ଖଳ ଓ ଲକ୍ଷ୍ୟହୀନ । ଡାରଉଇନ୍‌ଙ୍କ ଲେଖା ଯୋଗେ ଚାରିଆଡ଼େ ଏଇଭାବ ପ୍ରଚାରିତ ହୋଇଗଲା ଯେ, ସଂଗ୍ରାମହିଁ ଜୀବନର ଧର୍ମ, ଆଉ ଏ ଜଗତଟା ତାରି କେବଳ ଯେ ଅନ୍ୟ ସମସ୍ତଙ୍କୁ ଯେନତେନ ପ୍ରକାରେଣ ଦଳି ମକଚି ଉଠିପାରିଲା । ତାଙ୍କର ମତ ହେଲା ଯେ ଏଇ ହେଉଛି ପ୍ରକୃତିର ମର୍ମବାଣୀ । ଦୁଇଦୁଇଟି ବିଶ୍ୱଯୁଦ୍ଧ ପରେ ମଧ୍ୟ ଆଜି ଯେ ପାଶ୍ଚାତ୍ୟ ଜଗତ ତୃତୀୟ ବିଶ୍ୱଯୁଦ୍ଧ ପାଇଁ ପ୍ରସ୍ତୁତ ହେଉଛି, ତା'ର ମୂଳରେ ଅଛି ଏଇ ଡାର୍‌ଉଇନ୍‌ବାଦରେ ବିଶ୍ୱାସ । ପରେ ପରେ କାର୍ଲ୍‌ମାକ୍‌ସ, ପ୍ରକୃତିର ଜୀବନ-ସଂଗ୍ରାମକୁ ଆଣି ପୂରାଇଲେ ମନୁଷ୍ୟର ସମାଜ-ଜୀବନରେ; ପୂର୍ବେ ଜାତି ଜାତି ବା ଦେଶ ଦେଶ ଭିତରେ ଯାହା ସଂଘର୍ଷ ଥିଲା, ତାହା ବ୍ୟାପିଲା ପ୍ରତି ଦେଶ ଓ ପ୍ରତି ଜାତିକୁ । ପ୍ରତ୍ୟେକଟି ଦେଶ ଓ ସମାଜ ହୋଇଉଠିଲା ଏକ ଏକ ରଣକ୍ଷେତ୍ର । ଏଥିକି ସମଧର୍ମୀ ମତବାଦ ଆଣି ଜୁଟାଇଲେ ଫ୍ରୟେଡ୍ ଯେ କି ମନୁଷ୍ୟର କାମ ପ୍ରବୃତ୍ତିକୁ କେବଳ ଯେ ବୈଜ୍ଞାନିକ ପ୍ରତିଷ୍ଠା ଦେଇଗଲେ ତାହା ନୁହେଁ, ପ୍ରଚାର ମଧ୍ୟ କଲେ ଯେ ଏ ପ୍ରବୃତ୍ତିର ନିରୋଧ ମନୁଷ୍ୟର ସକଳ ମାନସିକ ରୋଗ ଓ ଦୁଃଖର କାରଣ ଓ ମନୁଷ୍ୟର ସହଜାତ ପ୍ରବୃତ୍ତିମାନଙ୍କର ପରିସ୍ଫୁରଣ ପାଇଁ, ପ୍ରତ୍ୟେକ ବ୍ୟକ୍ତିର ପ୍ରାକୃତିକ ଅଧିକାର ଅଛି । ଯା' ଫଳରେ ପ୍ରତ୍ୟେକ ବ୍ୟକ୍ତିର ଜୀବନ ଏକ ଏକ ରଣକ୍ଷେତ୍ର ହୋଇଉଠିଲା ।

ଗତ ଦେଢ଼ଶ-ଦୁଇଶ ବର୍ଷ ଧରି ମନୁଷ୍ୟ ଏକ ଆର୍ଥିକ, ବୈଜ୍ଞାନିକ, ସାମାଜିକ ଓ ବ୍ୟକ୍ତିଗତ ସଂଗ୍ରାମ ବା ଦ୍ୱନ୍ଦ୍ୱ ସବୁର ଅଚିନ୍ତନୀୟ ଦୁଃଖ, ଜଞ୍ଜାଳ ଓ ତିକ୍ତତା ଭିତର ଦେଇ ଗତି କରି ଆସୁଛି । ଏଇ ସଂଗ୍ରାମଜାଳ ଏପରି ବ୍ୟାପକ ଭାବରେ ବିସ୍ତୃତ ଯେ, ଏପରି ଓତପ୍ରୋତ ଭାବରେ ଆମର ଦୈନନ୍ଦିନ ଜୀବନ ସଂଗେ ଆଜି ଜଡ଼ିତ ଯେ, ଏ ସବୁର ବା ଏଗୁଡ଼ିକର ପରିଣାମରୁ କାହାରି ମୁକ୍ତି ପାଇବାର ସମ୍ଭାବନା ନାହିଁ । ସାଧାରଣ ଶ୍ରମଜୀବୀ ଅପେକ୍ଷା ସୂକ୍ଷ୍ମାନୁଭୂତି ସଂପନ୍ନ ବୁଦ୍ଧିଜୀବୀକୁ ଜଗତର ଦୁଃଖ, ଅନ୍ୟାୟ, ବିଶୃଙ୍ଖଳତା, ବେଶୀ ବାଧେ । ସବୁଠୁ ବେଶୀ ବାଧେ ବା ବାଧିବାର କଥା ସ୍ୱପ୍ନାତୁର, ଭାବପ୍ରବଣ ସୁଷମାବିଳାସୀ କବି ଓ ଶିଳ୍ପୀର ଚିତ୍ତକୁ ।

ସମଗ୍ର ଉନବିଂଶ ଶତାବ୍ଦୀରେ ଅଧିକାଂଶ ବିଖ୍ୟାତ ଇଂରେଜ କବି ଓ ଲେଖକଙ୍କ

ରଚନାରେ ଆମେ ପ୍ରଥମେ ବିଜ୍ଞାନ ଓ ରାଜନୀତିର ମନୁଷ୍ୟ ଆତ୍ମା ପ୍ରତି ଯେଉଁ ଅତ୍ୟାଚାର ତାହାର ତୀବ୍ର ପ୍ରତିବାଦ ଶୁଣିବାକୁ ପାଉ । ଶେଲୀ, ରସ୍କିନ, କାର୍ଲାଇଲ୍, ଟେନିସନଙ୍କ ରଚନା, ତଥାକଥିତ ନବସଭ୍ୟତାର ନିର୍ମମ ଅଭିଯାନ ବିରୁଦ୍ଧରେ ବିଦ୍ରୋହ-ଜନିତ କ୍ରୋଧ ଓ ଆତ୍ମ-ସମୀକ୍ଷାରେ ମନୋଜ୍ଞ ଭାବରେ ରଞ୍ଜିତ । ତଥାପି ସକଳ ଭିକ୍ଟୋରୀୟ ଯୁଗର ଲେଖକଙ୍କ ରଚନାରେ ଶେଷ ବାଣୀଟି ଥିଲା ଆଶାର । ୧୮୫୨ର ଗ୍ରେଟ୍ ଏଗ୍‌ଜିବ୍‌ଶନ ନିଖିଳ ବିଶ୍ୱରେ ଏକ ପ୍ରେରଣା ଆଣିଥିଲା ଯେ ମନୁଷ୍ୟ ବୋଧହୁଏ ବାଇବ୍‌ଲ୍ ବର୍ଣ୍ଣିତ ସ୍ୱର୍ଗ ରାଜ୍ୟର ସୀମାରେ ଆସି ପହଞ୍ଚିଲା । ଟେନିସନ୍ ତେଣୁ ଉଦାତ୍ତ ବାଣୀରେ ନିଖିଳ ମାନବ ଜାତିର ପାର୍ଲିଆମେଣ୍ଟ ଓ ସମଗ୍ର ପୃଥିବୀର ମିଳିତ ଫେଡ଼ରେଶନ୍-ଶାସନର ସମ୍ଭାବନା ଉଚ୍ଚାରଣ କରିଥିଲେ ।

କିନ୍ତୁ ବିଂଶଶତାବ୍ଦୀରେ ମନୁଷ୍ୟର ସବୁ ଆଶା ମଉଳିଯାଇଛି । ପରେ ପରେ ଦୁଇଟି ପ୍ରଳୟଙ୍କରୀ ମହାଯୁଦ୍ଧ ଘଟିଯାଇଛି । ଦେଶେ ଦେଶେ ଫାସିଷ୍ଟ ଓ କମ୍ୟୁନିଷ୍ଟମାନଙ୍କର ଏକଚ୍ଛତ୍ର ଶାସନତଳେ ମାନବିକତାର ଯେଉଁ ହତ୍ୟା, ଅତ୍ୟାଚାର ଓ ଅପମାନର ବିଭୀଷିକାମୟ ଲୀଳା ଦେଖାଦେଇଛି, ତାହ ମାନବର ଦୀର୍ଘ ଇତିହାସରେ କେବେହେଲେ ଦେଖାଯାଇନଥିଲା । ଯନ୍ତ୍ର, ବିଜ୍ଞାନ, ଓ ମାର୍କିସିଜିମ୍ ତିନିହେଁ ମିଶି ସ୍ୱୟଂ ଭଗବାନ ବା ଯୁଗେ ଯୁଗେ ଭଗବାନ, ଯେଉଁ ସବୁ ମହତ୍ ମାନବିକ ଗୁଣର ଉତ୍ସ ବୋଲି ଧରା-ହୋଇ ଆସୁଥିଲେ, ସେ ସମସ୍ତଙ୍କୁ ମାନବିକ ସକଳ ବ୍ୟବହାରରୁ ବହିଷ୍କୃତ କରିଦେଇଅଛନ୍ତି । ଆମର ମହାକବି କାଳିଦାସ ଆଦର୍ଶ ଶାସକରୂପେ ରଘୁବଂଶର ରାଜାମାନଙ୍କର ଗୁଣ ବର୍ଣ୍ଣନା କରି ଦିନେ କହିଥିଲେ ଯେ ରଘୁ ରାଜାମାନଙ୍କର ବଚନହିଁ ସତ୍ୟ, ଅର୍ଥାତ୍ ସେମାନେ କେବେହେଲେ ମିଥ୍ୟା କହୁନଥିଲେ । କିନ୍ତୁ ଆଜି ରାଷ୍ଟ୍ରଶାସକମାନଙ୍କ ପକ୍ଷରେ ଆମେ ହୁଏତ ଓଲଟା କଥା କହିଲେ ସତ୍ୟର ଅପଳାପ ହେବ ନାହିଁ । ନୈତିକତାର ଏଇ ଅଧଃପତନ, ପୁଣି ତେଣେ ଆଣବିକ ବୋମାର ଦେଶେ ଦେଶେ ଜେଷ୍ଟାପୋ ପୋଲିସ୍, କନ୍‌ସେଣ୍ଟ୍ରେସନ୍ କ୍ୟାମ୍ପ, ଜୀବନ ସଂଗ୍ରାମର କ୍ରମତୀବ୍ରାୟମାନ କଠୋରତା, ପୁଣି ଈଶ୍ୱର-ବିଶ୍ୱାସ-ହତ, ଆଶାହୀନ, ଲକ୍ଷ୍ୟହୀନ ଜୀବନ । ଏଇପରି ଯେ ସାଂପ୍ରତିକ ସମାଜ ଓ ଜଗତ, ଏ କ୍ଷେତ୍ରରେ, ଶିଳ୍ପୀ ଓ କବିର କର୍ତ୍ତବ୍ୟ କ'ଣ ? ତା'ର ମାନସିକ ପ୍ରତିକ୍ରିୟା କ'ଣ ହେବ ଆମେ ଆଶା କରିବା ? ମାନବିକତାର ଏଇ ଶ୍ମଶାନ ଭୂଇଁରେ ଠିଆହୋଇ ଟି.ଏସ୍. ଏଲିୟଟ୍ ଯେ 'ଫମ୍ପା ମଣିଷଙ୍କ' ପାଇଁ 'ଉଷର ଜମି'ର କଥା ଲେଖିବେ ସେଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ? ଆଉ ଶ୍ୟାମଳିମାହୀନ, ଛାୟାହୀନ ଉଷର ଭୂମିର କାବ୍ୟ ଯେ ଛନ୍ଦହୀନ, ଅଶ୍ରୁହୀନ, ଶ୍ରୁତିକଠୋର, ଓ ବନ୍ଧୁର ହେବ, ତାହା ମଧ୍ୟ ସ୍ୱାଭାବିକ ।

କିନ୍ତୁ କବି, ଶିଳ୍ପୀର କର୍ତ୍ତବ୍ୟ ନୁହେଁ କେବଳ ବର୍ତ୍ତମାନକୁ ପ୍ରତିବିମ୍ବିତ କରିବା । କେବଳ ଆଜି ଉପରେ ଠିଆହୋଇ ଫାଇଦା ଉଠେଇପାରନ୍ତି ବ୍ୟୁରୋକ୍ରାଟ୍ ଓ ପଲିଟିସିୟାନ୍ । କବି ଓ ଶିଳ୍ପୀର ପାଦ, ଆଜି ଉପରେ ଥିଲେହେଁ, ତାଙ୍କର ଏକ ଚକ୍ଷୁ ରହିବ ନିଜ ଅନ୍ତର୍ଦେଶରେ ଆଉ ଏକ ରହିବା ଉଚିତ ଭଗବାନ ବା ଶାଶ୍ୱତ ଉପରେ । କେବଳ ଅଧୁନାର ସେବା କରିବା ସାହିତ୍ୟିକର ଧର୍ମ ନୁହେଁ । ଆମେ କବି ଓ ସାହିତ୍ୟିକଠାରୁ ଆଶାକରୁ ଅଧୁନା ଭିତର ଦେଇ ସନାତନର ସ୍ପର୍ଶ । କେବଳ ଆଜି ଓ ସାଂପ୍ରତିକ ଭିତରେ ଯେଉଁ ଲେଖା ଆମକୁ ବୁଡ଼ାଇରଖେ; ସେ ହେବ ଦୈନିକ ସମ୍ବାଦପତ୍ର ଶ୍ରେଣୀର ମାତ୍ର । ସେ ପ୍ରକାର କବି ଓ ସାହିତ୍ୟିକ ହୋଇପାରନ୍ତି ସମ୍ପାଦିକ ବା ଜର୍ଣ୍ଣାଲିଷ୍ଟ ଗୋଷ୍ଠୀର ଉତ୍ତମ ସଭ୍ୟ । ତାଙ୍କୁ ଆମେ ବା ଆମର ଭବିଷ୍ୟ କାଳ ନମସ୍କାର କରିବନି ସ୍ରଷ୍ଟା ଭାବରେ, ସେ ପାଉଥାନ୍ତୁ ପଛେ ଯଥେଷ୍ଟ ସଦ୍ୟ ବାହାବା ।

ପ୍ରଥମରୁ ଯାହା କହିଥିଲି ଯେ, ଗତ ଦେଢ଼ଶ ଦୁଇଶ ବର୍ଷର ଇଂରେଜ କବିମାନଙ୍କର ଉତ୍‌ଥାନ ପତନ ଭିତରେ, ରୋମାଣ୍ଟିସିଜ୍‌ମ୍ ବିରୁଦ୍ଧରେ ବ୍ୟାପକ ବିଦ୍ରୋହ ଭିତରେ ସେକ୍‌ସପିୟର, କୀଟସ୍ ପରିପୂର୍ଣ୍ଣ ରୋମାଣ୍ଟିକ୍ ହେଲେହେଁ, ଆଜି ଅବିଚଳ ଭାବରେ ଦଣ୍ଡାୟମାନ । ଦିନେ ଯେଉଁ ଶେଲୀ ବିପ୍ଲବୀ କବି ପ୍ରତିଭାର ପ୍ରତୀକ ଥିଲେ, ତାଙ୍କ ଉପରେ ଏବେ ଅଜସ୍ର ଚାବୁକ ପ୍ରହାର । ବିଲାତରେ ମୋର ଶିକ୍ଷକ ପ୍ରଫେସର ରେନିକ୍‌ଙ୍କଠାରୁ ତୀବ୍ର ଶେଲୀ-ନିନ୍ଦା ଓ ଶେଲୀ-ତାଚ୍ଛଲ୍ୟ ପ୍ରଥମେ ଶୁଣି ମୁଁ ଅବାକ୍ ହେଲି । ପରେ ଦେଖୁଛି ଏ ତାଚ୍ଛଲ୍ୟ ବ୍ୟାପକ । କିନ୍ତୁ କୀଟସ୍ ସେକ୍‌ସପିୟରଙ୍କ ପ୍ରତିଭା ଓ ସୃଷ୍ଟି ପ୍ରତି, ନାନା ଦୋଷ ଦେଖାଇଲେ ମଧ୍ୟ, କେହି ତାଚ୍ଛଲ୍ୟ କରି ପାରୁନାହାନ୍ତି, କାରଣ ସେମାନଙ୍କ ବାଣୀରେ ଆମେ ଶାଶ୍ୱତର, ସନାତନର ସ୍ପର୍ଶ ପାଉ । କୀଟସ୍ ବା ସେକ୍‌ସପିୟରଙ୍କ ଲେଖାରେ ସମସାମୟିକ ସମାଜର ପ୍ରତିବିମ୍ବ ଯଥେଷ୍ଟ । ଜୀବନକାଳରେ ସେ ଯାହା ଦେଖିଥିଲେ ବା ପଢ଼ୁଥିଲେ, ତାରି ଉପରେ ହିଁ ଯେ କୀଟସ୍‌ଙ୍କର ଅଧିକାଂଶ ବିଖ୍ୟାତ କବିତା ଗଢ଼ିଉଠିଥିଲା; ସେ ସବୁର ପୁଂଖାନପୁଂଖ ବର୍ଣ୍ଣନା ଆଜି ଆମେ ପାଉଁ । କିନ୍ତୁ ପ୍ରତିଭାର ଅଦ୍ଭୁତ ସୃଜନ ଶକ୍ତି ବଳରେ କୀଟସ୍ ଲେଖନୀ ଭାସମାନ, ପଳାୟନମାନ ଘଟଣାବଳିରୁ କରିଯାଇଛି ଶାଶ୍ୱତ ସୃଷ୍ଟି । ସମସାମୟିକ ସମାଜ ଓ ଘଟଣାବଳି ଯୋଗୁଁ ଉଭୟ କୀଟସ୍ ଓ ସେକ୍‌ସପିଅରଙ୍କ ଆତ୍ମାରେ କମ୍ ଅନ୍ତର୍ବିପ୍ଳବ ଜାତ ହୋଇନଥିଲା । ବସ୍ତୁତଃ କଳ୍ପନା ବା ସ୍ୱପ୍ନ ନୁହେଁ, କିନ୍ତୁ ଏଇ ଅନ୍ତର୍ବିପ୍ଳବ— ଜୀବନର ତତ୍ତ୍ୱ ନେଇ, ଜୀବନର ପନ୍ଥା ଓ ଲକ୍ଷ୍ୟ ନେଇ, ମନୁଷ୍ୟ ଯେଉଁ ପରିଚିତ ଦ୍ୱନ୍ଦ୍ୱ ସକଳ— ତାହାହିଁ ଏମାନଙ୍କର ରଚନାକୁ ନିଖିଳ ମାନବର ହୃଦୟର ଏତେ ନିକଟକୁ ଆଣିପାରିଛି । କାରଣ ଏଇ ଦ୍ୱନ୍ଦ୍ୱ, ଏଇ ଆତ୍ମିକ ବିପ୍ଳବହିଁ ପ୍ରକୃତ

ବଞ୍ଚିବା । ଆମେ କୀଟସ୍ ଓ ସେକ୍‌ସପିଅରଙ୍କ ପୃଷ୍ଠାରେ ଆମକୁ ହିଁ ଦେଖୁଁ, ତେଣୁ ହିଁ ସେମାନେ ଆମର ବରେଣ୍ୟ । ଆର୍ଥିକ ଓ ରାଜନୈତିକ ନାନା ପ୍ରଲୋଭନ ଯୋଗୁଁ ଅନେକ ଶିଳ୍ପୀ ଓ କବି ଆଜି ପଥଚ୍ୟୁତ ଓ ଲକ୍ଷ୍ୟଭ୍ରଷ୍ଟ । ଫଳରେ ଅଧିକାଂଶ ଲେଖା ହୋଇପଡୁଛି ମର୍ମହୀନ ଓ ଅକିଞ୍ଚନ । ପ୍ରାଣର ରକ୍ତ ଦେଇ ଯେଉଁ ବୀର ଦେଶସେବା କରେ, ଜାତି ତାକୁଇ କରେ ପୂଜା; ପ୍ରାଣର ରକ୍ତ ଦେଇ ଯାହା ଲେଖାଯାଏ, ଜାତି ତା'ର ହୃଦୟ ଫରୁଆରେ ତାକୁଇ ରଖେ ସାଇତି । ଆଜିର କବି ଓ ସାହିତ୍ୟିକ ଆଜି ନେଇ କେବଳ ଉତ୍‌କ୍ଷିପ୍ତ ହେଲାବେଳେ ଏଇକଥା ଥରେ ସ୍ମରଣ କରିବା ଉଚିତ୍ ।

——

# ଓଡ଼ିଶା ଓ ଜଗନ୍ନାଥ*

ଯେ ଦେବତା ସମଗ୍ର ଜଗତର ନାଥ ଏବଂ ଯେ ଓଡ଼ିଶା ଭୂମିକୁ ନିଜର ବାସସ୍ଥାନ ରୂପେ ଗ୍ରହଣକରି ତାକୁ ଅନୁଗୃହୀତ କରିଛନ୍ତି, ସେ ଯେ ଓଡ଼ିଶାର ନୁହନ୍ତି, ଏକଥା କୁହାଯାଇପାରିବନାହିଁ ।

ଓଡ଼ିଶାର ମହାମହିମ ଗଜପତିମାନେ ସେମାନଙ୍କର ସୁଦୂରପ୍ରସାରୀ ସାମ୍ରାଜ୍ୟକୁ ଜଗନ୍ନାଥଙ୍କଠାରୁ ମିଳିଥିବା ନ୍ୟାସ (ଟ୍ରଷ୍ଟ) ବୋଲି ମନେକରୁଥିଲେ ଓ ତହିଁର ଉଚିତ ରକ୍ଷଣାବେକ୍ଷଣ ପାଇଁ ସେମାନେ ନିଜକୁ ଜଗନ୍ନାଥଙ୍କ ସେବକ ବୋଲି ମନେକରିବା ନିହାତି ସ୍ୱାଭାବିକ । ସେମାନେ ଯୁଦ୍ଧରେ ଜୟଲାଭ କରି ଫେରିବା ପରେ ସଙ୍ଗରେ ଆଣିଥିବା ବହୁ ମୂଲ୍ୟ ଧନ-ରତ୍ନ ଜଗନ୍ନାଥଙ୍କୁହିଁ ସମର୍ପଣ କରିଥିଲେ, କାରଣ ସେମାନେ ମନେକରୁଥିଲେ ଯେ ସେସବୁ ଜଗନ୍ନାଥଙ୍କର ପ୍ରାପ୍ୟ । ଏ ଦେଶରେ ସାମ୍ରାଜ୍ୟର ଅଗଣିତ କରଦ ସାମନ୍ତବର୍ଗ କେନ୍ଦ୍ରଶାସନ ବିରୁଦ୍ଧରେ ଷଡ଼ଯନ୍ତ୍ର ବା ବିଦ୍ରୋହ କରୁ-ନଥିଲେ ବା ସେ ପ୍ରକାର ଚିନ୍ତାକୁ ମନରେ ସ୍ଥାନ ମଧ୍ୟ ଦେଉନଥିଲେ, କାରଣ ସେମାନଙ୍କର ବିଚାର ଥିଲା ଯେ ସେପରି କଲେ ସର୍ବଶକ୍ତିମାନ ଜଗତର 'ନାଥ' ସେମାନଙ୍କ ପ୍ରତି କଠୋର ଦୈବୀଦଣ୍ଡର ବିଧାନ କରିବେ । ଜଗନ୍ନାଥ ହିଁ ଥିଲେ ଏ ଜାତିର ରାଜନୈତିକ ଶାନ୍ତିର ମେରୁଦଣ୍ଡ । ଆଧ୍ୟାତ୍ମିକ ଜଗତର ପ୍ରଭୁ ଏହିଭଳି ଭାବରେ ପୃଥିବୀର ଅଧିପତି (ଗଜପତି)ଙ୍କୁ ଯେ କେବଳ ଦୈନନ୍ଦିନ ଶାସନ କାର୍ଯ୍ୟରେ ସାହାଯ୍ୟ କରୁଥିଲେ ତାହା ନୁହେଁ, ଓଡ଼ିଶା ତା'ର ପଡ଼ୋଶୀ ରାଜ୍ୟମାନଙ୍କ ବିରୁଦ୍ଧରେ ବାରମ୍ବାର ଯେଉଁ ଅଭିଯାନ କରୁଥିଲା ସେଥିରୁ ମଧ୍ୟ ସେ (ଜଗନ୍ନାଥ ମହାପ୍ରଭୁ) ଦୂରେଇ ରହିପାରୁନଥିଲେ ଓ ଓଡ଼ିଆମାନେ ଧାରାବାହିକ ଭାବରେ ବିଂଶଶତାବ୍ଦୀ ଯାବତ୍ ସେମାନଙ୍କର ଜାତିର ଶତ୍ରୁମାନଙ୍କ ଉପରେ ଗୌରବମୟ ବିଜୟ ହାସଲ କରିଥିଲେ ମଧ୍ୟ ଓଡ଼ିଶାର ରାଜା ଓ ସେନାପତିମାନେ ନିଜର ବାହୁବଳ, ଅସ୍ତ୍ରଶସ୍ତ୍ର, ସାହସ ବା ସମରସଜ୍ଜା ଜନିତ କୌଶଳଯୋଗୁଁ ବିଜୟ ହାସଲ ସମ୍ଭବ ହେଲା ବୋଲି ଭାବୁନଥିଲେ – ସେମାନେ କହୁଥିଲେ ଯେ ଜଗନ୍ନାଥଙ୍କ ପଦ୍ମ-ପାଦରୁ ପ୍ରବାହିତ କରୁଣା-ବାରି ଯୋଗୁହିଁ ଏହା କେବଳ ସମ୍ଭବ ହେଲା । ଓଡ଼ିଶାର ରାଜା ପୁରୁଷୋତ୍ତମଙ୍କ ସୈନ୍ୟବାହିନୀ ଆଗରେ ଜଗନ୍ନାଥ ଓ ତାଙ୍କର ଅଗ୍ରଜ ବଳଭଦ୍ର କଳା ଓ ଧଳା

---

* ଉତ୍କଳପ୍ରସଙ୍ଗ ୨୫/୧୨- ଜୁଲାଇ ୧୯୬୯ ।

ଘୋଡ଼ା ଚଢ଼ି କାଞ୍ଚିର ଉଦ୍ଧତ ରାଜାଙ୍କ ଔଦ୍ଧତ୍ୟର ପ୍ରତିଶୋଧ ନେବା ମାନସରେ ତାଙ୍କ ବିରୁଦ୍ଧରେ ଅଭିଯାନ ଆରମ୍ଭ କରିଥିଲେ ବୋଲି ଯେଉଁ ଜନଶ୍ରୁତି କିଂବଦନ୍ତୀରେ ପ୍ରଚଳିତ ଅଛି ଓ ଯେଉଁ କାହାଣୀକୁ ଚିତ୍ରକଳା ଓ ଭାସ୍କର୍ଯ୍ୟ ଦ୍ୱାରା ଅମର କରାଯାଇଛି, ତାହା ଓଡ଼ିଶାର ଜନସାଧାରଣଙ୍କ ମନୋଭାବର ଏକ ପ୍ରତୀକ ଅଭିବ୍ୟକ୍ତି ମାତ୍ର । ଓଡ଼ିଶାର ଜନସାଧାରଣଙ୍କର ବିଶ୍ୱାସ ଥିଲା ଯେ ଜଗନ୍ନାଥ ମହାପ୍ରଭୁ ସେମାନଙ୍କର ଜାତୀୟ ତଥା ବ୍ୟକ୍ତିଗତ ବ୍ୟାପାରରେ ସକ୍ରିୟ ଭାବେ ସଂପୃକ୍ତ ଏବଂ ଗୋଟିଏ ଜାତି ତଥା ବ୍ୟକ୍ତି ହିସାବରେ ସେମାନଙ୍କର ଯାହା କିଛି ସମୃଦ୍ଧି ଘଟୁଥିଲା ସେସବୁ କେବଳ ଜଗନ୍ନାଥଙ୍କର କୃପା ଯୋଗୁଁହିଁ ସମ୍ଭବ ହେଉଥିଲା ।

**କରୁଣାର ପ୍ରଭୁ ଓ ଗଣଦେବତା–**

ଅହମିକା ବିବର୍ଜିତ ଯେଉଁ ଭାବଗତ ଅନାସକ୍ତ ମନୋବୃତ୍ତି ଶ୍ରୀମତ୍ ଭଗବତ୍ ଗୀତାରେ ବଜ୍ରଗମ୍ଭୀର ନାଦରେ ଉଦ୍‌ଘୋଷିତ ହୋଇଛି ତାହା ଯେ କେବଳ ପୁରୁଣା ଇତିହାସର ନିଦର୍ଶନ ତାହା ନୁହେଁ, ପରନ୍ତୁ ନିରୀଶ୍ୱର ଓ ଯାନ୍ତ୍ରିକ ସଭ୍ୟତାରେ ବିଶ୍ୱାସକରୁଥିବା ଆଧୁନିକ ସମାଜରେ ମଧ ଏହି ଭାବ ଜଗନ୍ନାଥଙ୍କ ବିଶ୍ୱବିଖ୍ୟାତ ରଥଯାତ୍ରା ସମୟରେ ପ୍ରତିବର୍ଷ ଅଭିନୀତ ହେଉଛି । ଜଗନ୍ନାଥ ରଥରେ ବସି ଲକ୍ଷ ଲକ୍ଷ ଲୋକଙ୍କ ପ୍ରତି ଅନୁକମ୍ପା ପ୍ରଦର୍ଶନ କରିବାକୁ ଯିବା ପୂର୍ବରୁ ବର୍ତ୍ତମାନ ମଧ ଗଜପତି ବୋଲାଉଥିବା ପୁରୀ ରାଜା ହାତରେ ସୁନାମୁଠି ଖଚିତ ଖଡ଼ିକା ଝାଡ଼ୁ ଧରି ମେହେନ୍ତର ଭଳି ରଥ ଉପରେ ଛେରାପହଁରା କରନ୍ତି । ଏହି କାର୍ଯ୍ୟ ଦ୍ୱାରା ଗଜପତି ସମଗ୍ର ବିଶ୍ୱକୁ ଜଣାଇଦିଅନ୍ତି ଯେ ଯେଉଁ ମହାପ୍ରଭୁଙ୍କଠାରୁ ମନୁଷ୍ୟର ପାର୍ଥିବ ପଦ-ମର୍ଯ୍ୟାଦା ଓ ସମୃଦ୍ଧି ସମ୍ଭବ ତଥା ଉଲ୍ଲେଖନୀୟ ସକଳ ସଫଳତା ସମ୍ଭୂତ, ତାଙ୍କ ଆଗରେ ସେ ନିଜେ ନିଜର ଜଣେ ସାଧାରଣ ପ୍ରଜାଠାରୁ ମଧ ବଡ଼ ନୁହନ୍ତି ।

ହିନ୍ଦୁ ଧର୍ମର ସକଳ ଦେବଦେବୀଙ୍କ ମଧରେ ଜଗନ୍ନାଥ ହେଉଛନ୍ତି ପ୍ରକୃତ ଗଣ-ଦେବତା । ଏହି ବିରାଟ ଉପ ମହାଦେଶର ସକଳ ଦେବଦେବୀଙ୍କ ଭିତରେ ଜଗନ୍ନାଥ ହେଉଛନ୍ତି ଏକମାତ୍ର ଦେବତା ଯେ କି ସାଧାରଣ ଲୋକଙ୍କ ଆଧ୍ୟାତ୍ମିକ ଅଭିଳାଷରୁହିଁ ଉଦ୍ଭୂତ । ସୁଦୂର ଅତୀତରେ ଯେତେବେଳେ କି ଋକ୍‌ବେଦର ପ୍ରାଚୀନତମ ମନ୍ତ୍ରାବଳୀ ଅଶ୍ରୁତ ଓ ଅପରିଜ୍ଞାତ ଥିଲା, ସେତେବେଳେ ଓଡ଼ିଶାର ନିରକ୍ଷର ଓ ସରଳ ଶବର ସଂପ୍ରଦାୟମାନଙ୍କ ମଧରେ ସେ ଆବିର୍ଭୂତ ହୋଇଥିଲେ । ଜଙ୍ଗଲର ଗୋଟିଏ ଗଛମୂଳେ ତାଙ୍କୁ ପ୍ରତିଷ୍ଠା କରି ତାଙ୍କର ସରଳ ଉପାସକମାନେ ନିଜେ ଯେଉଁ ଖାଦ୍ୟ ଭୋଜନ କରୁଥିଲେ ତାହାହିଁ ତାଙ୍କୁ ନୈବେଦ୍ୟ ରୂପେ ଅର୍ପଣ କରୁଥିଲେ । ପରବର୍ତ୍ତୀ ବହୁ

ଶତାବ୍ଦୀ ଧରି ରାଜକୀୟ ଭୋଗ ବିଳାସରେ ରହି ମଧ୍ୟ ଜଗନ୍ନାଥ ତାଙ୍କର ଜ୍ଞାତି ବୋଲାଉଥିବା ସେହି ଶବର ସାଧାରଣଙ୍କ ସହିତ ଏପର୍ଯ୍ୟନ୍ତ ଘନିଷ୍ଠ ସଂପର୍କ ଜୀବିତ ରଖିଛନ୍ତି ।

ଜଗନ୍ନାଥଙ୍କ ରଥଯାତ୍ରା ଜରିଆରେ ମହାଯାନ ବୌଦ୍ଧଧର୍ମାବଲମ୍ବୀମାନଙ୍କଦ୍ୱାରା ପୃଥିବୀରେ ସର୍ବ ପ୍ରଥମେ ପ୍ରବର୍ତ୍ତିତ ହୋଇଥିବା ପତିତ ଉଦ୍ଧାର ରୂପକ ବୋଧିସତ୍ତ୍ୱ ଆଦର୍ଶହିଁ ପ୍ରକଟିତ ହୋଇଥାଏ । ଏହି ଆଦର୍ଶକୁ ମୁଖ୍ୟ ଅବଲମ୍ବନ ରୂପେ ଗ୍ରହଣକରି ଖ୍ରୀଷ୍ଟଧର୍ମ ପ୍ରତିଷ୍ଠିତ । ରଥଯାତ୍ରାରେ ପବିତ୍ର ପୁରୀ ଧାମର ବଡ଼ଦାଣ୍ଡରେ ଝୁଲି ଝୁଲି ଯିଏ ଯା'ନ୍ତି ଓ ଆସନ୍ତି ସେ ସର୍ବଶକ୍ତିମାନ 'ଜଗତର ନାଥ' ଜଗନ୍ନାଥ ନୁହନ୍ତି; ସେ ହେଉଛନ୍ତି ପତିତଜନର ପରିତ୍ରାତା ପରମ କାରୁଣିକ 'ପତିତପାବନ' । କ୍ରମାଗତ ଭାବେ ଆସିଥିବା ଓଡ଼ିଶାର ରାଜବଂଶମାନେ ଜଗନ୍ନାଥଙ୍କୁ ଯେଉଁ ରାଜକୀୟ ଜାକ-ଜମକରେ ମନ୍ଦିରର ଗମ୍ଭୀରା ଭିତରେ ରଖିଛନ୍ତି, ସେଥିରୁ ବାହାରକୁ ଆସିବା ଦ୍ୱାରା ଜଙ୍ଗଲରେ ଥିବା ସମୟରେ ସେ ଯେପରି ଭାବରେ ସାଧାରଣ ଲୋକଙ୍କ ସଂସ୍ପର୍ଶରେ ଆସୁଥିଲେ, ସେ ପୁନର୍ବାର ସେହି ଅବସ୍ଥାକୁ ଫେରିଯାଇଥାନ୍ତି । ପୁସ୍ତକଜ୍ଞାନହୀନ ଲକ୍ଷ ଲକ୍ଷ ସାଧାରଣ ପୁରୁଷ ଓ ସ୍ତ୍ରୀଲୋକ ଯେଉଁମାନେ କି ମହାପ୍ରଭୁଙ୍କୁ ନିଜ ହୃଦୟର ଭକ୍ତି ଓ ପ୍ରେମ ବ୍ୟତୀତ ଅନ୍ୟ କିଛି ଦେଇ ପାରିବେ ନାହିଁ, ସେମାନଙ୍କ ଉପରେ ଆଶୀର୍ବାଦ ବର୍ଷଣ କରିବା ଅଭିପ୍ରାୟରେ ହିଁ ଜଗନ୍ନାଥ ସାଧାରଣ ଲୋକ ଯାତାୟାତ କରୁଥିବା ଧୂଳିମାଟିପୂର୍ଣ୍ଣ ରାସ୍ତା ଉପରେ ଏହି ରଥଯାତ୍ରାର କଷ୍ଟ ସ୍ୱୀକାର କରିଥାନ୍ତି । ଏହି ଯାତ୍ରା ତାଙ୍କ କରୁଣାର ଏକ ପ୍ରତୀକ ଅଭିବ୍ୟକ୍ତି ମାତ୍ର ।

**ଜାତୀୟ ସଂହିତର ପ୍ରତୀକ–**

ଜଗନ୍ନାଥ ଗଣଦେବତା । ତାଙ୍କ ନିକଟରେ ହିନ୍ଦୁ ଜଗତର ଜାତିଭେଦ ଭାବ ଆପେ ଆପେ ଉଭେଇଯାଏ । ସେ ଦରିଦ୍ର ଜନସାଧାରଣଙ୍କ ପାଇଁ ତାଙ୍କ ରୋଷେଇ-ଘରେ ସ୍ୱଳ୍ପ ମୂଲ୍ୟରେ ସୁଷମ ଓ ସୁସ୍ୱାଦୁ ଖାଦ୍ୟର ବ୍ୟବସ୍ଥା କରିନେଇଛନ୍ତି । ସେ ମଧ୍ୟ ସ୍ୱାଧୀନ ଭାରତରେ ଜ୍ୱଳନ୍ତ ସମସ୍ୟା ରୂପେ ଦେଖାଦେଇଥିବା ଜାତୀୟ ସଂହତିର ଏକ ଦୃଶ୍ୟମାନ ପ୍ରତୀକ । ଶବରମାନେ ଯେଉଁ ନୀଳ ପଥରଟି ପାଇଥିଲେ, ତାହା ସମୁଦ୍ରକୁ ଫିଙ୍ଗିଦିଆଯାଇଥିବା ଶ୍ରୀକୃଷ୍ଣଙ୍କର ହୃତ୍‌ପିଣ୍ଡ ମାତ୍ର, ଯାହାକି ଅଗ୍ନିରେ ଦଗ୍ଧ ନ ହେବାରୁ ସମୁଦ୍ରକୁ ଫୋପାଡ଼ି ଦିଆଯାଇଥିଲା । ଏହା ଭାସିଆସି ଓଡ଼ିଶା ଭୂମିରେ ଲାଗିଥିଲା ଓ କାଳକ୍ରମେ ପ୍ରସ୍ତର ଖଣ୍ଡରେ ପରିଣତ ହୋଇଥିଲା । ମହାସାଗରର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ପର୍ଯ୍ୟନ୍ତ ଏହି ଭାରତୀୟ ଉପ-ମହାଦେଶକୁ ଆଧ୍ୟାତ୍ମିକତାର ସୂତ୍ରରେ ଗୁନ୍ଥି ରଖିବା ପାଇଁ ଯେ ଏକ ଉଦ୍ୟମ ମାତ୍ର ତାହା ଏହି କୌତୂହଳ

ଉଦ୍ଦୀପକ ପୌରାଣିକ ଗଳ୍ପରେ ଆମେ ସ୍ପଷ୍ଟଭାବେ ଦେଖିପାରୁ ।

ଜଗନ୍ନାଥ କେବଳ କୃଷ୍ଣ ବା ରାମ ନୁହନ୍ତି, ସେ ମଧ୍ୟ ବିଷ୍ଣୁଙ୍କ ନବମ ଅବତାର, ବୁଦ୍ଧ । ଜଗନ୍ନାଥଙ୍କର ଦୈନନ୍ଦିନ ପୂଜା କାର୍ଯ୍ୟରେ ଗୌରବର୍ଣ୍ଣ ବ୍ରାହ୍ମଣମାନଙ୍କ ସହିତ କୃଷ୍ଣବର୍ଣ୍ଣ ଆଦିମ ଅଧିବାସୀ ଯୋଗଦେଇଥାନ୍ତି । ଅଶୋକଙ୍କର ପ୍ରସିଦ୍ଧ କଳିଙ୍ଗ ଶିଳା-ଲେଖରେ ଉଲ୍ଲେଖ ଥିବା 'ସବ୍ ମନିଷୋ ମେ ପଜା', ଅର୍ଥାତ୍ ସବୁ ଲୋକ ମୋର ପ୍ରିୟ ସନ୍ତାନ– ଏହି ଉକ୍ତି ଜଗନ୍ନାଥଙ୍କ ଦୈନନ୍ଦିନ ଉପାସନାରେ ରୂପାୟିତ ହୋଇଥାଏ । ଛଳନାଭରା ଉଚ୍ଚ କଣ୍ଠରେ ଆଜି ଜାତୀୟ ସଂହତି ବିଷୟ ଦିଲ୍ଲୀ ବା କଲିକତାଠାରେ ବିଶେଷଭାବେ ଆଲୋଚିତ ହେଉଛି ସତ, କିନ୍ତୁ ଏହା ଶହ ଶହ ବର୍ଷ ହେଲା ଜଗନ୍ନାଥଙ୍କ ନିକଟରେ ମନୋରମ ବାସ୍ତବତାରେ ପରିଣତ ହୋଇସାରିଛି ।

**ଓଡ଼ିଶାର ଶ୍ରଦ୍ଧାଞ୍ଜଳି–**

ଉପରୋକ୍ତ ଉଚ୍ଚ ଭାବଧାରାମାନ ଜଗନ୍ନାଥଙ୍କ ନୈସର୍ଗିକ ବ୍ୟକ୍ତିତ୍ୱ ଚାରିପଟେ ନିତ୍ୟନୈମିତ୍ତିକ ବାସ୍ତବ ରୂପ ଗ୍ରହଣକରି ଚାଲିଛନ୍ତି; ସେଗୁଡ଼ିକ ଓଡ଼ିଶାର ସାମାଜିକ ଜୀବନ ଉପରେ ଗଭୀର ପ୍ରଭାବ ପକାଇ ଆସିଛନ୍ତି । ସମଗ୍ର ଭାରତର ଅନ୍ୟାନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାରେ ଯଦି ଜାତିଆଣ ଭେଦଭାବ ସବୁଠାରୁ କମ୍‌ଥାଏ, ତେବେ ସେ ଗୌରବ ସିଧାସଳଖ ଜଗନ୍ନାଥଙ୍କର । ଓଡ଼ିଶାର ଜନସାଧାରଣ ଯଦି ସମୂହଭାବେ ସେମାନଙ୍କର ଦେଶପ୍ରେମୀ ରାଜା ମହାରାଜାମାନଙ୍କଦ୍ୱାରା ବିଶେଷ ଭାବେ ଉପକୃତ ହୋଇଥାଆନ୍ତି, ତେବେ ତାହା ମୂଳରେ ଥିଲା ଜଗନ୍ନାଥଙ୍କ ଆଦର୍ଶ । ସେ ହିଁ ବିରାଟ ଗଜପତି ସାମ୍ରାଜ୍ୟର ପ୍ରକୃତ ମାଲିକ ଥିଲେ । ଅର୍ଥାତ୍, ରାଜା ମହାରାଜାମାନେ ସେମାନଙ୍କ ରାଜ୍ୟର ରାଜସ୍ୱକୁ ନିଜ ମର୍ଜି ଉପରେ ଖର୍ଚ୍ଚ କରାଯିବା ବ୍ୟକ୍ତିଗତ ସମ୍ପତ୍ତି ନଭାବି ଜଗନ୍ନାଥ ମହାପ୍ରଭୁଙ୍କ ନିକଟରୁ ମିଳିଥିବା ନ୍ୟାସ (ଟ୍ରଷ୍ଟ) ବୋଲି ବିଚାରୁଥିଲେ । ଜଗନ୍ନାଥ ମହାପ୍ରଭୁ ଏହିପରି ଭାବରେ ନିଜକୁ ସଂପୂର୍ଣ୍ଣରୂପେ ଓଡ଼ିଶାର ଅଧିବାସୀ ବା ଓଡ଼ିଆମାନଙ୍କ ସହିତ ସାମିଲ କରିଦେଇଥିବା ଯୋଗୁଁ ଓଡ଼ିଆମାନେ ମଧ୍ୟ ନିଜ ସଂସ୍କୃତିର ସବୁ କିଛି ଉତ୍କୃଷ୍ଟ ଜିନିଷ, ଯଥା– ଗୀତ, ନୃତ୍ୟ ଓ କାବ୍ୟ କବିତା, ରନ୍ଧନ ପ୍ରଣାଳୀ ଓ ବିଳାସବ୍ୟସନ ମନେକରାଯାଉଥିବା ଅନ୍ୟାନ୍ୟ ଦ୍ରବ୍ୟ ଜଗନ୍ନାଥଙ୍କ ସେବାରେ ନିୟୋଗ କରି ଦେଇଛନ୍ତି । ପ୍ରକୃତପକ୍ଷେ ଦେଖିବାକୁ ଗଲେ ବାହାରର ପ୍ରଭାବରେ ପ୍ରଭାବିତ ହୋଇନଥିବା ଓଡ଼ିଶାର ଜୀବନଯାପନ ପ୍ରଣାଳୀରେ ଯାହା କିଛି ସର୍ବୋତ୍‌କୃଷ୍ଟ ସେ ସବୁର ରକ୍ଷକ ହେଲେ ଜଗନ୍ନାଥ । ନିଜର ରୋଷଘରେ କଳତିଆରି ଚିନି, ଗୋଲଆଳୁ ବା ବନ୍ଧାକୋବି ଓ ବିଲାତି

ବାଇଗଣଆଦି ନୂଆ ପ୍ରକାର ଖାଦ୍ୟ-ଉପାଦାନ ସବୁର ବ୍ୟବହାର କଡ଼ାକଡ଼ିଭାବେ ନିଷେଧ କରିବା ଦ୍ୱାରା ଜଗନ୍ନାଥ ଭାରତବର୍ଷର ହିନ୍ଦୁ ଦେବଦେବୀଙ୍କ ମଧ୍ୟରେ ସର୍ବାପେକ୍ଷା ଅଧିକ ସ୍ୱଦେଶୀ ଓ ଦେଶପ୍ରେମୀରୂପେ ନିଜକୁ ପରିଚିତ କରାଇପାରିଛନ୍ତି ।

ପ୍ରାଚୀନ ତଥା ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ଉପରେ ଜଗନ୍ନାଥ ଧର୍ମର ଗଭୀର ପ୍ରଭାବ ପଡ଼ିଛି । ଓଡ଼ିଶାର ସମ୍ରାଟମାନେ ଜଗନ୍ନାଥଙ୍କୁ ଉପହାର ଦେଇଥିବା ଅନେକ ମୂଲ୍ୟବାନ୍ ମଣିମୁକ୍ତା 'ଟାଙ୍କର' ଗନ୍ତାଘରୁ ଉଭେଇଯାଇଛି । କିନ୍ତୁ ହୃଦୟର ଗଭୀର ଅନୁରକ୍ତି ସହିତ ଓ ଓଡ଼ିଶାର କବିମାନେ ନିଜ ରଚନାବଳୀରେ ଜଗନ୍ନାଥଙ୍କ ପ୍ରତି ଯେଉଁ ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି ତାହା ଶାଶ୍ୱତ ଆଲୋକରେ ଚିର ଉଦ୍ଭାସିତ । ମଧ୍ୟଯୁଗୀୟ ଓଡ଼ିଶାର ସର୍ବଶ୍ରେଷ୍ଠ କବି ଉପେନ୍ଦ୍ରଭଞ୍ଜ, ଯେ କି ଓଡ଼ିଆ ସାହିତ୍ୟରେ ବରେଣ୍ୟ ରୋମାଣ୍ଟିକ୍ କବିରୂପେ ସମ୍ମାନିତ, ସେ ନିଜର 'କୋଟିବ୍ରହ୍ମାଣ୍ଡସୁନ୍ଦରୀ' ଗ୍ରନ୍ଥରେ ଜଗନ୍ନାଥଙ୍କ ମହନୀୟ ବ୍ୟକ୍ତିତ୍ୱ ସଂପର୍କରେ ଯାହା କହିଛନ୍ତି ତାହା ଏଠାରେ ଉଲ୍ଲେଖକରି ପ୍ରବନ୍ଧଟିର ସମାପ୍ତି ଘଟାଇବାଠାରୁ ଏହି ଦୀନ ଲେଖକ ପକ୍ଷରେ ଅଧିକତର ସମୀଚୀନ ପ୍ରସ୍ତାବ ନଥାଇପାରେ ।

ଉପେନ୍ଦ୍ରଭଞ୍ଜ ଲେଖିଛନ୍ତି –

ଶୁଣ କୋବିଦେ ଭାରତଖଣ୍ଡେ ପୁଣ୍ୟଧାମ
　　ଯେଣୁ ନାରାୟଣଦେହୀ, ତେଣୁ ସେହି ନାମ।
ଯେ ବ୍ରହ୍ମହତ୍ୟା-ପାତକ-ନିପାତକ ମହୀ,
　　କପାଳ-ମୋଚନ ତ୍ରିଲୋଚନ ସାକ୍ଷୀ ସେହି।
ଆସି କାଶୀଶ୍ୱର ବାସ କଲେ ଏହା ଜାଣି,
　　ଅନ୍ୟ କ୍ଷେତ୍ର ସମସ୍ତଙ୍କ ଏ ମସ୍ତକମଣି ।
ଶ୍ରୀମହାପ୍ରସାଦ ଗଦଗଦ ଘଣ୍ଟଘୋଷ,
　　ଭକ୍ଷଣେ, ଶ୍ରବଣେ ଯେ କଳବିଷ୍-ବିଷ ନାଶ ।
ଉନ୍ନତ ପ୍ରାସାଦ ରାଜପତାକା ଉଡ଼ାଇ,
　　ଏ ପ୍ରଦେଶେ ସମବର୍ତ୍ତୀ ପଶେ ନାହିଁ ନାହିଁ ।
ସେ ଦୁର୍ଗ-ପରିକା ତୀର୍ଥରାଜ, ଗର୍ଜନରେ,
　　କହେ, ଅବଗାହେ ପାପବ୍ୟୂହ ଦହନରେ ।
ଦହି ସବୁ ବାଡ଼ବରେ ଦେବ ଏ ପକାଇ,
　　ଏ ଦରବଶରୁ ଦୂରୁ ଦୂରିତ ପଳାଇ ।
ସେ କମ୍ବୁକଟକ ନାମ ରାଜା ଜଗନ୍ନାଥ,

ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ।
ପାଦେ ବନ୍ଦେ ସାର୍ବଭୌମ ବୋଲିବା କି ଯଶ,
ବୃଷାସନଂକର ଶିର ଲାଗିବାକୁ ଆଶ ହେ ।
ଯାହା କଟାକ୍ଷ-କୁଠାର ପତନ ମାତରେ,
ଅନେକ ଦୁଃଖ-ଅନୋକହକୁ ଛେଦି ପାରେ;
ଭରସା କରି ଆସନ୍ତି ଦୂରଦେଶୁଁ ପ୍ରାଣୀ,
ଆରତ ଭଞ୍ଜନ ଦୀନବଂଧୁ ନାମ ଶୁଣି ।
କରଯୋଡ଼ି ଛାମୁରେ ଜଣାଇ ପକ୍ଷୀଧବ,
ଆର୍ତ୍ତଜନ ଗୁହାରିକି ସାବଧାନ ହେବ ।
ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳା ଯାର,
ପତିତ ପାବନ ଅର୍ଥେ ପ୍ରାସାଦୁଁ ବାହାର ।
ଭାଗ୍ୟରୁ ଏ ବର୍ଣ୍ଣନାକାରକ ମୁଁ ଯେ ହେଲି,
ପୁଲକିତ ଶରୀରେ ହରିରେ ସ୍ତୁତି କଲି ।
ଅରି-ଦର-କର ବିଭୋ, ଅରି-ଦର କର,
ଯୁଗେ ଯୁଗେ ଧର ନାନାବିଧ ଅବତାର ।
ଭବ ବିରଞ୍ଚି ପୂଜିତ, ହେ ଭବ-ବିରଞ୍ଚି,
ଶୁଚି କବଳକ ସଦାନନ୍ଦ ସଦା ଶୁଚି ହେ ।
କବି ଉପଇନ୍ଦ୍ର ତବ କୃପାରେ ହୋଇଛି,
ଏତେ ମନୋରଥ ସାର୍ଥେ କି ସଂଶୟ ଅଛି ?

––

# ରଥଯାତ୍ରା

ରଥସ୍ଥ ବାମନ ଦର୍ଶନ କରି ଜୀବନର ପାପକ୍ଷାଳନ କରିବାର ଉତ୍ସାହ ମୋର କେବେହେଲେ ନଥିଲା । ସେଥିପାଇଁ ଏତେ ନିକଟରେ ଥାଇ ମଧ୍ୟ ପୁରୀର ବିଶ୍ୱ-ବିଖ୍ୟାତ ବା ବିଶ୍ୱ-ଅଖ୍ୟାତ ରଥଯାତ୍ରା ଏ ପର୍ଯ୍ୟନ୍ତ ଦେଖିନଥିଲି । ଏଇ ବର୍ଷ କିନ୍ତୁ ଭୁଲ୍‌ରେ ସେହି ଉତ୍ସବ ଦେଖିବାକୁ ପାଇଲି । ସରକାରୀ କର୍ମରେ ପୁରୀ ଯାଉଁ ଯାଉଁ ଶୁଣିଲି ଯେ ସେଦିନ ରଥାଯାତ୍ରାର ଦ୍ୱିତୀୟ ଅଧ୍ୟାୟ– ବାହୁଡ଼ା ।

ସାକ୍ଷୀଗୋପାଳଠାରୁ ସମଗ୍ର ପଥ ଭରି ଜନତାର ସ୍ରୋତ ପ୍ରବହମାନ ଥିବାର ଦେଖିଲି । ଆବାଳବୃଦ୍ଧବନିତା– ବନିତାଙ୍କ ସଂଖ୍ୟା କମ୍ ନୁହେଁ । ଅଧିକାଂଶ ପୁରୁଷଙ୍କ ହାତରେ, କାନ୍ଧରେ, ମୁଣ୍ଡରେ ଛୋଟ, ବଡ଼, ମଧ୍ୟମ ଆକାରର ଚତୁଷ୍କୋଣ ବେତପେଡ଼ି ବୁହାହେବାର ଦେଖିଲି । ପରେ ଦେଖିଲି ସେଥିରେ 'ଭୋଗ' ନିଆଯାଉଛି– ଲୌକିକ ନାମ ତା'ର 'ପେଡ଼ି ଭୋଗ' । ରଥସ୍ଥ ତ୍ରିମୂର୍ତ୍ତିଙ୍କୁ ଉତ୍ସୃଷ୍ଟ ହେଲା ପରେ ମଠ, ଦେଉଳ ବା ତୋଟାରେ ଯେଉଁଠି ସୁବିଧା, ପ୍ରତି ଗାଁର ପେଡ଼ିଭୋଗ ଜାତିନିର୍ବିଶେଷରେ ଏକତ୍ର ବିତରିତ ଓ ଭୁକ୍ତ ହୁଏ ଓ ଯାହା ବଳେ ତାହାହିଁ ଘରକୁ ନେଇ ଲୋକେ ଫେରନ୍ତି । କେତୋଟି ଶାସନର ପେଡ଼ିଭୋଗ ଏପରି ଗଣତାନ୍ତ୍ରିକ ରୀତିରେ ଭୁକ୍ତ ହେଉଥିବାର ମୁଁ ଜଗନ୍ନାଥବଲ୍ଲଭ ମଠର ତୋଟାରେ ଦେଖିଲି । ଶୁଣିଲି, ଏହି ଦେବ-ମାନବର ସନ୍ତୋଷ-ପବିତ୍ର ସୁନ୍ଦର, ସାମାଜିକ ମିଳନ ଓ ଉପଭୋଗ ପାଇଁ ନିକଟବର୍ତ୍ତୀ ପ୍ରତି ଶାସନରେ ଧନୀ ଦରିଦ୍ର ନିର୍ବିଶେଷରେ ପ୍ରତି ପରିବାର ସମଭାବରେ ସାମାନ୍ୟ କିଛି ଗ୍ରାମ ପାଣ୍ଠିକି ଚାନ୍ଦା ଦେଇଥାନ୍ତି । ଏପରି ଏକ ସୁନ୍ଦର, ସୁଚିନ୍ତିତ ସାମାଜିକ ଚିତ୍ତ ବିନିମୟ ଓ ଚିତ୍ତବିନୋଦର ବ୍ୟବସ୍ଥା ଯେଉଁମାନେ କରିଯାଇଛନ୍ତି ସେମାନେ ଆମର ଚିର-ନମସ୍ୟ । ଯେଉଁ ଦେବତା ଧନୀ, ଦରିଦ୍ର ଓ ବିଭିନ୍ନ ଶ୍ରେଣୀକୁ ସମାସନରେ ବସି ଉପଭୋଗ କରାଇବାରେ ଶିଖାଏ, ସେ କେବଳ ଦେବାଳୟର ଦେବତା ନୁହନ୍ତି– ତାଙ୍କର ଜଗନ୍ନାଥ ପଦ ଅତ୍ୟନ୍ତ ସାର୍ଥକ ।

କେବଳ ଏତିକି ନୁହେ, ଜଗନ୍ନାଥବଲ୍ଲଭମଠର ବାରଣ୍ଡାରୁ ବଡ଼ଦାଣ୍ଡର ବିରାଟ

' ରଚନାକାଳ ୨୨.୭.୫୭ ।

ଜନତା ଭିତରେ ରଥ-ତ୍ରୟର ଧୀର ମନ୍ଥର ଅଭିଯାନ ଓ ସମବେତ ଜନସଂଘର ପ୍ରାଣର ଉତ୍ସାହ ଦେଖି ଦେଖି ଗୋଟାଏ ଭାବନାରେ ମୁଁ ମୁଗ୍ଧ ଓ ମଗ୍ନ ହେବାକୁ ଲାଗିଲି ଯେ, ଏହି ସମଗ୍ର ବ୍ୟବସ୍ଥା ଗଣତାନ୍ତ୍ରିକ ରୀତିରେ ଦେବ ଓ ମାନବକୁ ମିଳିତ କରାଇବାର ଏକ ବିରାଟ ଓ ମହତ୍ ଯୋଜନା, ଯାର ସୂକ୍ଷ୍ମ ବିଚାରଧାରା ନିଃଶେଷିତଧାର ଶରଧା ନଦୀ ପରି ସେହି ବଡ଼ଦାଣ୍ଡର ଧୂଳିରେ ଲୁପ୍ତ ଓ ବିଲୀନ ହୋଇଯାଇଥିଲେ ହେଁ, ତା'ର ଶୁଷ୍କ ନକ୍ସାଟାହିଁ ଏ ପର୍ଯ୍ୟନ୍ତ କୋଟି କୋଟି ପ୍ରାଣକୁ ଅନୁପ୍ରାଣିତ କରିଛି ଓ ସମାଜରେ ଏଯାକେ ସକ୍ରିୟ ଶକ୍ତି ହୋଇ ରହିଛି ।

ବେଦର ପ୍ରକୃତି ଉପାସନାରୁ ଆରମ୍ଭ ହୋଇ ଭାରତବର୍ଷରେ ମନୁଷ୍ୟର ଈଶ୍ୱରାନ୍ୱେଷଣ ଅଗଣିତ ଧାରାରେ ବିକାଶ ଲାଭ କରିଛି । ଶେଷରେ ତା'ର ନିଷ୍ପତ୍ତି ଦୁଇଟି ଉଦାର ପନ୍ଥାରେ ରୂପ ଲାଭ କରିଛି ବୋଲି ମନେହୁଏ । ଗୋଟିଏ ହେଉଛି ଔପନିଷଦିକ ପନ୍ଥା "ଆତ୍ମାନଂ ବିଦ୍ଧି"– ଅର୍ଥାତ୍ ଈଶ୍ୱର ବା ଦେବତା ବାହାରେ ଖୋଜି ବୁଲୁଛ କିଆଁ, ସେ ଯେ ତମରି ଅନ୍ତରରେ ଅବସ୍ଥିତ । ସେହି ଆତ୍ମାରାମକୁ ଜାଣିପାରିଲେ ବ୍ରହ୍ମକୁ ଜାଣିଲ । ଦ୍ୱିତୀୟ ପନ୍ଥା ହେଲା ବୈଷ୍ଣବମାନଙ୍କର । ଅତିମାନବିକ ଅତି ମନୋରମ ଏ ପନ୍ଥା । ଏଠି ଦେବତା କେବଳ ଏକ ସୂକ୍ଷ୍ମ ଅନୁଭୂତି ମାତ୍ର ନୁହନ୍ତି, ଏଠି ସେ ନରରୂପଧାରୀ ନାରାୟଣ– ସୁନ୍ଦର, ପ୍ରେମିକ, କ୍ଷମାମୟ, କରୁଣାମୟ, ରସିକ ପୁରୁଷ । ଏଠି ଦେବତାକୁ ପାଇବା ପାଇଁ ଆଖିବୁଜି ଅନ୍ଧକାରମୟ ଅନ୍ତର୍ଦେଶରେ ଅଦୃଶ୍ୟ ବ୍ରହ୍ମଜ୍ୟୋତିକୁ ଖୋଜିବାକୁ ହେବ ନାହିଁ । ଏ ମାର୍ଗରେ ପ୍ରେମିକ ଦେବତାକୁ ହେବାକୁ ହେବ ଆମର ଐକାନ୍ତିକ । ଅଜ୍ଞ ମନୁଷ୍ୟ ସଂସାରର କ୍ଷୟଶୀଳ ବସ୍ତୁ ନେଇ ଉନ୍ମତ୍ତ । ଯେଉଁ ଅମୃତର ଭାଣ୍ଡ ଧରି ଦେବତା ଅଦୃଶ୍ୟ ଭାବରେ ଆମ ପଛପଟେ ଠିଆରହିଛନ୍ତି ଆମକୁ ସୁଧାସ୍ନାତ କରାଇବା ପାଇଁ, ଆମେ ସେ ଅମୃତ ମାଗିବାକୁ ଜାଣୁନା – ଆମେ ବସ୍ତୁତଃ ତାହାପ୍ରତି ବୀତସ୍ପୃହ ।

ଜଗନ୍ନାଥ ଏହି ହୃଦୟସ୍ପର୍ଶୀ ବୈଷ୍ଣବବାଦର ସର୍ବଶ୍ରେଷ୍ଠ ପ୍ରତୀକ । ଏଇ ରଥଯାତ୍ରା ଦେବତାର ମନୁଷ୍ୟ ପ୍ରତି ସ୍ୱତଃସ୍ଫୂର୍ତ୍ତ ଅନୁକଂପାର ଏକ ସୁକଳ୍ପିତ ଯୋଜନା । ଦେବତା ଏଠି କୌଣସି ଅଦୃଶ୍ୟ ସ୍ୱର୍ଗ ବା ଗୋପନୀୟ ଗୁହା ବା ଅପ୍ରବେଶ୍ୟ ଦେବାଳୟରେ ନାହାନ୍ତି – ସେ ଯେ ଏଇ ଅଗଣିତ ଜନସଂଘ ମଧ୍ୟରେ ଆମ ପ୍ରତ୍ୟେକ ସାଧାରଣ ପରି ଧୂଳିମଳିନ ଜନପଥରେ ଯାତ୍ରୀ । ସେ ତ ଆମର ତପସ୍ୟା ବା ଆରାଧନାକୁ ଅପେକ୍ଷା କରିନାହାନ୍ତି । ସେ ଆପେଇ ଜନତାର ସ୍ତରକୁ ଆସି ପ୍ରତ୍ୟେକ ପୁରବାସୀର ଦ୍ୱାରଦେଶରେ ଯେପରି ଆଘାତ କରି ମୃଦୁ ହାସ୍ୟରେ

ଧୀରେ ଧୀରେ କହୁଛନ୍ତି– ମୁଁ ଯେ ଏଇ ଆସିଲି ! ତମ ଘରେ ମତେ ଟିକିଏ ଆତିଥ୍ୟ ଦେବନି କି ?''

ବଡ଼ଦାଣ୍ଡରେ ବିପୁଳ ଜନତା ଭେଦକରି ତିନିରଥର ଧୀର ମନ୍ଥର ଅଭିଯାନ ଦେଖି ଦେଖି ରଥଯାତ୍ରାର ଏଇ ବିରାଟ-ମଧୁର ବ୍ୟଞ୍ଜନାହିଁ ପ୍ରାଣରେ ଧ୍ୱନିତ ହେବାକୁ ଲାଗିଲା । କିନ୍ତୁ ମୋର ଚକ୍ଷୁ ଦୁଃଖରେ ବାଷ୍ପାକୁଳ ହୋଇଉଠିଲା – ଏହା ଭାବି ଯେ, ଆମେ ସେଇ ସୁନ୍ଦର ଆଧ୍ୟାତ୍ମିକ ଓ ସାମାଜିକ ଯୋଜନାକୁ କରିଛୁ କ'ଣ ! ଜଗନ୍ନାଥ ଓ ରଥଯାତ୍ରା ତ ଆଜି ବାଣିଜ୍ୟର ପଣ୍ୟ ମାତ୍ର ! ଜଗନ୍ନାଥଙ୍କ ବିରାଟ ଚକ୍ଷୁ ସମ୍ମୁଖରେ ଦେଶର ରାଜାର ହାତରୁ ଟଙ୍କା ଛଡ଼େଇନେବା ପାଇଁ ପୂଜାରୀମାନଙ୍କର ପ୍ରତିଯୋଗିତା। ଦେବତାକୁ ଆଗୁଠି ଦେଖାଇ ଚାରିଆଡ଼େ ଖାଲି ଅର୍ଥାର୍ଜନର ବ୍ୟବସ୍ଥା ! କାହିଁ ଭାବ, କାହିଁ ଭକ୍ତି, କାହିଁ ଦେବ ମାନବର ଅବାଧ ମିଶ୍ରଣର ମନୋହର ବ୍ୟଞ୍ଜନା ? ଏ କେବଳ ଗୋଟିଏ ଧର୍ମର ଅବମାନନା ନୁହେଁ, ଏହା ମନୁଷ୍ୟର ଆଧ୍ୟାତ୍ମିକତା ପ୍ରତି, ଦେବ-ମାନବର ସଂବଂଧ ପ୍ରତି ଏକ ଘୋର ଅପମାନ । ଦିନେ ଇହୁଦୀମାନଙ୍କ ମନ୍ଦିରରେ ଏଇ ପ୍ରକାର ବ୍ୟବସାୟିକ ବାୟୁମଣ୍ଡଳର ପ୍ରତିବାଦ କରି ମନ୍ଦିରରେ ପଶି ପ୍ରତିମାମାନଙ୍କୁ, ଜମାହୋଇଥିବା ମୁଦ୍ରାସ୍ତୂପକୁ କ୍ରୋଧରେ ଫିଙ୍ଗି-ଫୋପାଡ଼ି ନାରଖାର କରିଥିଲେ । ଦିନେ ତରୁଣ କୃଷ୍ଣ ଇନ୍ଦ୍ର ଦେବତାର ଏଇ ପ୍ରକାର ଆନୁଷ୍ଠାନିକ ପୂଜା ବିରୁଦ୍ଧରେ ପ୍ରତିବାଦ କରିଥିଲେ । ଭାରତବର୍ଷ ବା ଉତ୍କଳରେ କ'ଣ ସେପରି ପୁଅ ନାହିଁ, ଯେ କି ଜଗନ୍ନାଥ ମନ୍ଦିରରୁ ଏହି କଳଙ୍କ ପୋଛିନେଇ ପ୍ରାଚୀନ ନିର୍ମଳ ଆଧ୍ୟାତ୍ମିକ ଧାରାର ପୁନଃପ୍ରବର୍ତ୍ତନ କରିପାରିବ ?

ଆଜି ଆନୁଷ୍ଠାନିକ ରୀତିରେ ମାତ୍ର ପୁରୀରେ ରାଜ୍ୟହୀନ ରାଜା ସ୍ୱର୍ଣ୍ଣ-ମାର୍ଜନୀକୁ ରଥରେ ହଲାଇଦେଇ ଛେରାପହଁରାର ବିଧି ରକ୍ଷା କରୁଛନ୍ତି । କିନ୍ତୁ ଦିନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ବିରାଟ ସାମ୍ରାଜ୍ୟର ଅଧୀଶ୍ୱର ଗଜପତି, ସିଂହଦ୍ୱାରଠାରୁ ଗୁଣ୍ଡିଚା ମନ୍ଦିର ଯାଏ ଦୀର୍ଘ ପଥକୁ ରଥର ଆଗେ ଆଗେ ଆନ୍ତରିକ ଉପାସନାରେ ନିଜ ହାତରେ ସଫା କରି କରି ଯାଉଥିଲେ । ଏପରି ଏକ ଦୃଶ୍ୟ ତ ପୃଥିବୀରେ କାହିଁ ଘଟେ ନାହିଁ । କିନ୍ତୁ ଦେବତା ଆଗରେ ରାଜା ଓ ପ୍ରଜା ସମସ୍ତେ ସମାନ, ଆଉ ତ୍ରିଭୁବନେଶ୍ୱରଙ୍କ ସମ୍ମୁଖରେ, ଅପ୍ରତିମ ପ୍ରତାପଶାଳୀ ସମ୍ରାଟ ମଧ୍ୟ ସାମାନ୍ୟ ନର ଛଡା ଆଉ କିଛି ନୁହେଁ । ଏହି ମହାଭାବ ଏପରି ଚାକ୍ଷୁଷ ପ୍ରତ୍ୟକ୍ଷ ଭାବରେ ସେଦିନ ଏଇ ବଡ଼ଦାଣ୍ଡରେ ଅଭିନୀତି ହେଉଥିଲା ଯେ ତାହାରି ଫଳରେ ହିଁ ନିମ୍ବକାଠର ପ୍ରତିମା ଓ ବଡ଼ଦାଣ୍ଡର ଧୂଳି ସମଗ୍ର ଦେଶର ଚକ୍ଷୁରେ ମହାନ୍ ହୋଇ ଉଠିଥିଲା । ଯାହାର ଚଲାବାଟ ନିର୍ମଳ ରଖିବା ପାଇଁ ରାଜାଧିରାଜ ସମ୍ରାଟ ମେହେନ୍ତର

ସାଜିବାକୁ ଦାବି ରଖିଯାଇଛି, ସେ ଦେବତା କି ମହାନ୍ ! ଯେଉଁ ଦେବତା ନିଜ ଉପସ୍ଥିତିରେ ସମାଜର ଉଚ୍ଚତମ ଓ ନୀଚତମ ଭିତରେ କୌଣସି ଭେଦ ରଖିବାକୁ ଦେଇନାହିଁ, ସେ କି ସତ୍ୟରେ ଜଗନ୍ନାଥ ଅଭିଧାର ଯଥାର୍ଥ ଯୋଗ୍ୟ ନୁହେଁ ।

ସେଇ ଜନତା ଭିତରେ ଚିତ୍ରିତ ଗଣ୍ଡ-ମସ୍ତକ ଦୁଇ ତିନୋଟି ହାତୀ ବୁଲୁଥିବାର ଦେଖିଲି – ଶୁଣିଲି ସେ ସବୁ ରାଜାଙ୍କ ହାତୀ । ମୋର ମନେହେଲା, ସେଦିନ, ଯେବେ ଉତ୍କଳ ସ୍ୱାଧୀନ ସାମ୍ରାଜ୍ୟ ଥିଲା, ଏବଂ ଗଜପତିଙ୍କ ଗଜ-ସମ୍ପଦ ସମଗ୍ର ଭାରତରେ ଅସୂୟାର କାରଣ ଥିଲା, ସେତେବେଳେ ତ ଐରାବତଶ୍ରେଣୀର ମନ୍ଥର ଶୋଭାଯାତ୍ରାରେ ଏହି ବଡ଼ଦାଣ୍ଡ ନିଶ୍ଚୟ ଶବଳିତ ହୋଇଉଠୁଥିବ । ସେମାନଙ୍କ ବୃଂହିତ ନିନାଦରେ ପୁରୁଷୋତ୍ତମ ପୁରୀର ଗଗନ ମନ୍ଦ୍ରିତ ହୋଇଉଠୁଥିବ । ରୂପ ଲାଗି ବିଖ୍ୟାତ ଏହି ନଗରୀର ସୀମନ୍ତିନୀଗଣଙ୍କର କୃଷ୍ଣନେତ୍ରରାଜି ଦେବରଥ ଓ ହସ୍ତୀଶ୍ରେଣୀ ଉଭୟର ଶୋଭା ଉପଲବ୍ଧି କରିବା ପାଇଁ ଅସ୍ଥିର ହୋଇଉଠିଥିବ ।

ଭାବିଲି, ଗଜପତିଙ୍କର ସେହି ବିଖ୍ୟାତ ହସ୍ତୀମାନଙ୍କରୁ ଗୋଟାଗୋଟାକୁ ଲଗାଇ ଦେଇଥିଲେ ତ ଏ ରଥର ଗତାଗତ ନିର୍ବିଘ୍ନରେ ସମ୍ପାଦିତ ହୋଇପାରିଥାନ୍ତା । କିମ୍ବା ନିକଟର କୌଣସି ଜାଗିରିଖିଆ ଖଣ୍ଡାୟତ ପଲ୍ଲୀ ଉପରେ ଏ ଭାର ମଧ୍ୟ ଛାଡ଼ି ଦିଆ-ଯାଇ ପାରିଥାନ୍ତା । ଏହି ସହଜ ବ୍ୟବସ୍ଥା କରାନଯାଇଛି କାହିଁକି ? ମୋର କ୍ରମେ ହୃଦ୍‌ବୋଧ ହେଲା ଯେ, ଏହି ନକରିବା ପଛରେ ମଧ୍ୟ ମହତ୍ ପ୍ରଜ୍ଞା ଲୁଚି ରହିଛି ।

ଧରଣୀ ପୃଷ୍ଠରେ ଦେବତାର ସଂଚାର କିପରି ହୁଏ ? ଦେବତା କି ଏବକାଳର ବଡ଼ସାହେବଙ୍କ ପରି ଷ୍ଟେଟ୍‌କାର୍‌ରେ ବସି ରାସ୍ତାରେ ରାସ୍ତାରେ ଆମର ସଲାମ୍ ନେଇ ଚାଲିବେ ? ନା, ସେ ଓ ଆମେ ଯେ ଅଭିନ୍ନ । ଆମର ହୃଦୟ ହିଁ ତାଙ୍କର ଆବାସ । ଆମରି ଆଖିହିଁ ତାଙ୍କରି ଆଖି । ଆମର ଅୟୁତ ହସ୍ତପଦହିଁ ତାଙ୍କର ହାତ ଗୋଡ଼ । ସେଇଥି ପାଇଁ ତ ଜଗନ୍ନାଥଙ୍କୁ ହାତଗୋଡ଼ ଦିଆଯାଇନାହିଁ । ଏବଂ ତାଙ୍କର ରଥ ପାଇଁ ଗଜପତି ହାତୀ ବା ପାଇକ ଖଂଜିଯାଇନାହାଚି । ତାଙ୍କର ଗତି ଆମର ନିୟୁତ ହସ୍ତର ଶ୍ରମ ଦେଇ । ଲକ୍ଷ ଲୋକର କି ସୁନ୍ଦର ଏହି ଭାବନା ଓ ଯୋଜନା, କି ବିଜ୍ଞତାମୟ ସାମାଜିକ ପରିକଳ୍ପନା । ଏପରି ମହନୀୟ ଭାବଧାରା କି କେବଳ ଗୋଟାଏ ଦିନର ଯାତ୍ରାରେ ଉଡ଼ିଯିବାକୁ ଦେବା ? ଏ ଯେ ଗୋଟାଏ ବିରାଟ ଜାତିକୁ ଉଦ୍‌ବୁଦ୍ଧ କରିବା ପାଇଁ ଯଥେଷ୍ଟ– ସେଥିପାଇଁ ଯେ ଏ ସବୁର ପ୍ରବର୍ତ୍ତନ ! ଓଡ଼ିଆ ଜାତି ଏଇ ମହାନ୍ ଭାବ-ସଂପଦକୁ ଏପରି ଉପେକ୍ଷିତ ଭାବରେ ପଡ଼ିରହିବାକୁ ଦେବ କି ?

ଆମେ ଆଜି ଭାଗଚାଷ ଆଇନ୍, ହିନ୍ଦୁ ବିବାହ ଆଇନ୍, ଭୂଦାନ, ସମାଜବାଦ

ପ୍ରଭୃତି ନାନା ଉପାୟରେ ସାମାଜିକ ସାମ୍ୟ ଆଣିବାକୁ ଯାଉଛୁ । କିନ୍ତୁ ଏ ସମସ୍ତ କେବଳ ରାଷ୍ଟ୍ରିକ ଚାପ, ବାହାରୁ ଆସୁଛି । ସେଥିପାଇଁ ଚାରିଆଡ଼େ ଲୋକେ ପ୍ରତିରୋଧ କରୁଛନ୍ତି । କିନ୍ତୁ ଦେବତାକୁ କେନ୍ଦ୍ରକରି ଓଡ଼ିଶାର ଗଜପତି ରାଜା ଆତ୍ମିକସାମ୍ୟ ଆଣିବାକୁ ଚେଷ୍ଟାକରିଥିଲା, ତାହାର ପୂର୍ଣ୍ଣପ୍ରାଣତା ଆମର ଏଇ ସମସ୍ତ ବିଧିବିଧାନରେ କାହିଁ ? ଅନ୍ତତଃ ଭାରତବର୍ଷରେ ଦେବତାର ସ୍ପର୍ଶ ନ ଥିଲେ କୌଣସି ବିଧିବିଧାନ ଜାତିର ଆତ୍ମାକୁ ସ୍ପର୍ଶ କରିବ ନାହିଁ । ଭାରତୀୟ ଜନତା ଉପରେ ମହାତ୍ମାଙ୍କ ଯାଦୁକ୍ରିୟାର ରହସ୍ୟ ଏଇଠି । ଆମ ଜାତିର ପ୍ରାଣପ୍ରତିଷ୍ଠ ଏଇ ପ୍ରଶଂସନୀୟ ଗୁଣକୁ ଆମେ କ'ଣ କାମରେ ନ ଲଗାଇ ପ୍ରତ୍ୟାଖ୍ୟାନ କରି ଉଡ଼େଇଦେବା ! ଯୁଗେ ଯୁଗେ ଏଇ ଜଗନ୍ନାଥ ରାଜା ଓ ପ୍ରଜାର ବହୁମତରେ ନାନା ବେଶ ପରିଧାନ କରିଛନ୍ତି । ଏଇ ଦେଉଳରେ ଆର୍ଯ୍ୟ, ଅନାର୍ଯ୍ୟ, ଜୈନ, ବୌଦ୍ଧ, ବୈଷ୍ଣବ, ତାନ୍ତ୍ରିକ-ସର୍ବମତର ଛାପ ସୁସ୍ପଷ୍ଟ । ଆମ୍ଭମାନଙ୍କର ଆଜିକାର ଚାହିଦା ଅନୁସାରେ ଏହି ପୁରାଣ, ପବିତ୍ର, ମହାନ୍ ଅନୁଷ୍ଠାନର ସଂସ୍କାର କରି ୟାକୁ ପୁଣି ଜାତିର ଉନ୍ନୟନ ଲାଗି କାହିଁକି ବ୍ୟବହାର ନ କରାଯିବ, ତା'ର ତ କୌଣସି ଯୁକ୍ତି ମୁଁ ଦେଖୁନାହିଁ । ଇଂରେଜ ଜାତି ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଓ ସ୍ୱାଧୀନ ଚିନ୍ତାର ଜନକ କହିଲେ ଚଳେ । କିନ୍ତୁ ସେମାନେ ତାଙ୍କର ସମଗ୍ର ଜାତୀୟ ଜୀବନର କେନ୍ଦ୍ର ରୂପେ ଏବେ ବି ରଖିଛନ୍ତି ବକିଂହାମ୍ ପାଲେସ୍ ଓ ୱେଷ୍ଟମିନିଷ୍ଟର୍ ଆବୀ (ଧର୍ମାଳୟ)କୁ । ଶେଷୋକ୍ତ ସ୍ଥାନରେ ସମଗ୍ର ଜାତି ପ୍ରାର୍ଥନାକରେ ଏବଂ ସେଇଠି ଦେଖିବାକୁ ମିଳିବ ସକଳ ଜାତୀୟ ବୀରମାନଙ୍କର ସମାଧି ଓ ମୂର୍ତ୍ତି । ୱେଷ୍ଟମିନିଷ୍ଟର୍ ଆବୀ ହେଉଛି ଏକାଧାରରେ ଧର୍ମମନ୍ଦିର ପୁଣି ବ୍ରିଟୀଶ୍ ଜାତିର ପୁଂଜୀଭୂତ ଇତିହାସ ।

ଓଡ଼ିଶାର ଜଗନ୍ନାଥ ମନ୍ଦିର ଦିନେ ଜାତିର ଇତିହାସରେ ସେଇ ସ୍ଥାନ ପ୍ରାୟ ଅଧିକାର କରିଥିଲା । ଆଜି ତାହା କୁତ୍ସିତ, ବିକାରଗ୍ରସ୍ତ, କଳୁଷିତ । ଦେଶରେ କି କେହି ପୁଅ ନାହିଁ ଯେ ଏହାକୁ ପୁନର୍ଗଠିତ କରି ପୁଣି ଜାତୀୟ ଆତ୍ମାରେ କେନ୍ଦ୍ରସ୍ଥ କରି ଠିଆ କରି ପାରିବ !

--

# ଆଦିବାସୀ ଓ ଓଡ଼ିଆ ସଂସ୍କୃତି

ଏହା ଖୁବ୍ କମ୍ ଲୋକଙ୍କୁ ଜଣାଥିବ ଯେ, ମାତ୍ର ଦେଢ଼ଶ' ବର୍ଷ ତଳେ, ୟୁରୋପୀୟ ପଣ୍ଡିତମାନେ, ୟୁରୋପ-ମହାଦେଶଠାରୁ-ସଂପୂର୍ଣ୍ଣ ବିଚ୍ଛିନ୍ନ ଓ ସହସ୍ର ସହସ୍ର କ୍ରୋଶ ଦୂରରେ ଅବସ୍ଥିତ ଏବଂ ଅସଭ୍ୟ ଅନୁନ୍ନତ ବୋଲି ଧରାଯାଉଥିବା ଭାରତ-ବର୍ଷରେ, ୟୁରୋପର ଆଦର୍ଶ ଭାଷା ଗ୍ରୀକ୍ ଲାଟିନ୍ ସହିତ ଅସମ୍ଭବ ସାଦୃଶ୍ୟ ରଖିଥିବା ଓ ଅସାଧାରଣ ଭାବରେ ସମୃଦ୍ଧ, ସଂସ୍କୃତ ଭାଷା ଓ ସାହିତ୍ୟକୁ ଯେତେବେଳେ ଆବିଷ୍କାର କଲେ, ସେତେବେଳେହିଁ ଏକ ସ୍ୱତନ୍ତ୍ର ବିଦ୍ୟା ଭାବରେ 'ନୃ-ତତ୍ତ୍ୱବିଜ୍ଞାନ'ର ସୂତ୍ରପାତ ହେଲା । ଅଡ଼ଲଫ୍ ହିଟ୍‌ଲର ନିଜକୁ ଓ ଜର୍ମାନ୍ ଜାତିକୁ 'ଆର୍ଯ୍ୟ' ମନେକରି ଏବଂ କେବଳ 'ଆର୍ଯ୍ୟ' ଜାତିର ହିଁ ପୃଥିବୀକୁ ଶାସନ ଓ ଭୋଗକରିବାର ବିଧାତୃ-ଦତ୍ତ ଅଧିକାର ଅଛି ବୋଲି ପ୍ରଚାରକରାଇ, ଷାଠିଏ ଲକ୍ଷ ତଥାକଥିତ 'ଅନାର୍ଯ୍ୟ' ଇହୁଦୀଙ୍କୁ ହତ୍ୟାକରାଇଲେ ଏବଂ ଆର୍ଯ୍ୟ ଜାତିକୁ ସମଗ୍ର ଧରଣୀର ଶାସନ କରାଇବାର ଉତ୍ସାହରେ, ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭକଲେ । ଅଥଚ ଏହା ନିଶ୍ଚୟ କଥା ଯେ, ହିଟ୍‌ଲର୍‌ର ଗୋସେଇଁ ବାପ ହୁଏତ 'ଆର୍ଯ୍ୟ' ଶବ୍ଦ ଶୁଣି ନଥିବେ, କି 'ସ୍ୱସ୍ତିକ' ଚିହ୍ନ କ'ଣ ଜାଣି ନ ଥିବେ । କାଳିଦାସଙ୍କ ନାଟକାବଳୀର ପ୍ରତି ପୃଷ୍ଠାରେ ତ ଆମେ 'ଆର୍ଯ୍ୟ' ବା 'ଆର୍ଯ୍ୟ ପୁତ୍ର' ଶବ୍ଦକୁ ଭେଟିବା, କିନ୍ତୁ ସେକ୍ସପିଅରଙ୍କ ବିସ୍ତାରମୟ କାବ୍ୟ-ନାଟକ-ଜଗତରେ 'ଆର୍ଯ୍ୟ' ଶବ୍ଦଟାହିଁ କାହିଁ ଦେଖାଦେଇନି । ସେକ୍ସପିଅର ନିଜେ ଜାଣିନଥିଲେ ଯେ, ବ୍ୟାସ, ବାଲ୍ମିକୀ, କାଳିଦାସଙ୍କ ପରି ସେ ମଧ୍ୟ ଥିଲେ ପ୍ରକୃତରେ 'ଆର୍ଯ୍ୟ' ।

ଆମେ ଭାରତୀୟମାନେ 'ଆର୍ଯ୍ୟ' ସଭ୍ୟତା ନେଇ ଯେପରି ଗର୍ବକରୁ, ସେ ଗର୍ବ ହିଟ୍‌ଲରଙ୍କ ଆର୍ଯ୍ୟ ଦାମ୍ଭିକତାଠାରୁ କିଛି ଊଣା ନୁହେଁ । ଗୋରା ଚମଡ଼ା ହେଲା ଆର୍ଯ୍ୟର ବଡ଼ ଅହଙ୍କାର । ଆମର ଧର୍ମ-ଶାସ୍ତ୍ର ଋକ୍‌ବେଦ ମଧ୍ୟ ସାଧାରଣ ଆର୍ଯ୍ୟ ଜନର କଳାଚମ ପ୍ରତି ଘୃଣା ଓ ତାଚ୍ଛଲ୍ୟରେ ପରିପୂର୍ଣ୍ଣ । କେବଳ ଚମଡ଼ାର ରଙ୍ଗର ତଫାତ୍ ଯୋଗୁହିଁ, ଯେଉଁ ଭାରତୀୟମାନେ ହରପ୍ପା ଓ ମହେଞ୍ଜୋଦାରର ସମୁନ୍ନତ ପୌରସଭ୍ୟତାକୁ ଏ ମାଟିରେ ଠିଆ କରାଇ ସାରିଥିଲେ, ଋକ୍‌ବେଦୀୟ ଆର୍ଯ୍ୟମାନେ ସେମାନଙ୍କୁ ମଧ୍ୟ 'ଦସ୍ୟୁ', 'ଦାସ' ଓ 'କୃଷ୍ଣ' ଇତ୍ୟାଦି ତାଚ୍ଛଲ୍ୟବ୍ୟଞ୍ଜକ ଶବ୍ଦରେ

* ବନଫୁଲ, ୧୯୭୦ ।

ବର୍ଣ୍ଣନା କରିଛନ୍ତି । ଆର୍ଯ୍ୟମାନଙ୍କର ନଗର ସଭ୍ୟତା ନଥିଲା । ସେମାନେ ବସ୍ତୁତଃ ଥିଲେ କୃଷକ, ଶିକାରୀ ଓ ଗୋପାଳକ । ଏ ମାଟିରେ ପୂର୍ବରୁ ଗଢ଼ିଉଠିଥିବା ହରପ୍ପା, ମହେଞ୍ଜୋଦାର ପ୍ରଭୃତି ସମୃଦ୍ଧ ନଗର ବା 'ପୁର'କୁ ଧ୍ୱଂସ ଓ ଲୁଣ୍ଠନ କରିବାରେ ସେମାନେ ଗର୍ବ ଓ ଆନନ୍ଦ ପାଉଥିଲେ । ସେଥିପାଇଁ ତାଙ୍କ ଦଳପତିର ଗୌରବାବହ ନାମ ଥିଲା 'ପୁରନ୍ଦର', ଯାହାକି ପରେ ଦେବ-ଦଳପତି ଇନ୍ଦ୍ରଙ୍କୁ ମଧ୍ୟ ବୁଝାଇଲା । ନୃତତ୍ତ୍ୱବିତ୍‌ମାନଙ୍କ ମତରେ, ବିଶ୍ୱ-ସଭ୍ୟତା ଓ ସଂସ୍କୃତିକୁ ଆର୍ଯ୍ୟ-ଗୋଷ୍ଠୀର ଦାନ ଅନ୍ୟ ସକଳ ଗୋଷ୍ଠୀ ମଧ୍ୟରେ ସର୍ବୋତ୍ତମ ହେଲେ ହେଁ, ସେମାନଙ୍କର କଳା-ଗୋରା-ବିଦ୍ୱେଷ ମଧ୍ୟ ଯେ ସମଗ୍ର ମାନବିକ ଚିନ୍ତାକୁ କଳୁଷିତ କରିଆସିଛି, ଏଥିରେ ମଧ୍ୟ ସନ୍ଦେହ ନାହିଁ । ଏ ଘୃଣା ଏପରି ସୁପ୍ରତିଷ୍ଠିତ ଯେ, ଶ୍ରୀମଦ୍‌ଭଗବଦ୍ ଗୀତା ପରି ଗ୍ରନ୍ଥରେ ମଧ୍ୟ ଧର୍ମ ସଂସ୍ଥାପନା କରିବାକୁ ପୃଥିବୀରେ ଅବତୀର୍ଣ୍ଣ ହୋଇଛନ୍ତି ବୋଲି ପ୍ରଚାର କରୁଥିବା ସ୍ୱୟଂ ଈଶ୍ୱର-ରୂପୀ ଶ୍ରୀକୃଷ୍ଣ, ଭକ୍ତ-ଭାଇ-ଓ-ସଖା ଅର୍ଜୁନଙ୍କପ୍ରତି ଭର୍ତ୍ସନା କରିବାକୁ ଯାଇ ପ୍ରଥମେ 'ଅନାର୍ଯ୍ୟ' ଶବ୍ଦ ବ୍ୟବହାର କରିଛନ୍ତି । ଈଶ୍ୱର ବୋଲାଉଥିବା କୌଣସି ଲୋକ ଆଖିରେ ଆର୍ଯ୍ୟ-ଅନାର୍ଯ୍ୟ ଭେଦ ଆସିବ କିପରି ?

ଯାହା ହେଉ, ଶହେବର୍ଷର ନୃତତ୍ତ୍ୱ-ଗବେଷଣା ଫଳରେ ଏବେ ସଫା-କୁହାଯାଇଛି ଯେ, ହଜାର ବର୍ଷର ମାନବିକ ମିଶ୍ରଣ ଫଳରେ ପୃଥିବୀରେ କାହାରି ରକ୍ତ ବିଶୁଦ୍ଧ ରହି ଯାଇଛି କହିବା ଘୋର ମିଥ୍ୟା ପ୍ରଚାର ମାତ୍ର । ସମଗ୍ର 'ଆର୍ଯ୍ୟା-ବର୍ତ୍ତ'ରେ ମଧ୍ୟ ଆଜି ଜଣେହେଲେ ଲୋକ ପାଇବାନି, ଯେ କି କହିପାରିବ ଯେ, ସେ ବିଶୁଦ୍ଧ 'ଆର୍ଯ୍ୟ' । ସାତ ହଜାର ବର୍ଷର ମିଶାମିଶି ଫଳରେ, ଆର୍ଯ୍ୟ-ରକ୍ତରେ ବହୁ ପ୍ରକାର ଅନାର୍ଯ୍ୟ ରକ୍ତ ମିଶି ସାରିଛି । ଏପରିକି, ଏବର ହିନ୍ଦୁ-ସଂସ୍କୃତିର ପ୍ରଧାନ ସ୍ତମ୍ଭ, କୃଷ୍ଣ ଦ୍ୱୈପାୟନ ବ୍ୟାସ, କେଉଟୁଣୀର ପୁଅ ଭାବରେ ଏକ ପ୍ରକାର 'ଅନାର୍ଯ୍ୟ' ଥିଲେ ବୋଲି କହିବାକୁ ହେବ ।

କିନ୍ତୁ ସୁଖର କଥା, ଓଡ଼ିଶାର ସଂସ୍କୃତିରେ ଆର୍ଯ୍ୟ-ଅନାର୍ଯ୍ୟ ଭାବ ଏକପ୍ରକାର ନ ଥିଲା କହିଲେ ଚଳେ । ଧର୍ମ ଓ ରାଜନୀତି ଉଭୟ କ୍ଷେତ୍ରରେ, ଏ ରାଜ୍ୟର ପ୍ରାଚୀନ ଚିନ୍ତା-ନାୟକମାନେ, ଆର୍ଯ୍ୟ ଓ ଅନାର୍ଯ୍ୟ ଉଭୟ ସଂସ୍କୃତିର ଏକ ମନୋଜ୍ଞ ସମ୍ମିଶ୍ରଣ ଆଣିବାକୁ ଚେଷ୍ଟା କରିଥିଲେ ଏବଂ ଅଦ୍ଭୁତ ଭାବରେ ସଫଳତା ହାସଲ କରିଥିଲେ । ସେମାନେ ଅନାର୍ଯ୍ୟ-ଦେବତାକୁ ଜାତୀୟ ଦେବତା ଭାବରେ ଗ୍ରହଣକରି, ତାକୁ ନାମ ଦେଇଦେଲେ 'ଜଗନ୍ନାଥ' ଏବଂ ସେଠି ଗୌରଚର୍ମା ବ୍ରାହ୍ମଣ ଆଲିଙ୍ଗନ କଲା କୃଷ୍ଣଚର୍ମା ଶବରକୁ, ସେହି ଜଗନ୍ନାଥର ସମସେବକ ଭାବରେ । ତେଣେ, ଆମେ ପୁଣି ପ୍ରାୟ ପ୍ରତ୍ୟେକ ଗଡ଼ଜାତରେ ଦେଖିବା ଯେ, କେବଳ ବ୍ରାହ୍ମଣ-

ପୁରୋହିତର ସଂସ୍କୃତ ମନ୍ତ୍ର, କୌଣସି ନୂଆ ରାଜାକୁ ଚରମ ସ୍ୱୀକୃତି ଦେବାରେ ସମର୍ଥ ହେଉନଥିଲା – ସେ ଚରମ ସ୍ୱୀକୃତି ନୂତନ ରାଜା ପାଉଥିଲେ, ତଥାକଥିତ 'ଅନାର୍ଯ୍ୟ' ବନବାସୀମାନଙ୍କର ଦଳପତିର 'ହଁ'ରୁ । ଘୁମୁସର ଓ ଦଶପଲ୍ଲା ପ୍ରଭୃତି ରାଜ୍ୟରେ କନ୍ଧ-ପ୍ରଜାମାନଙ୍କର, ସେମାନଙ୍କର ରାଜା ପାଇଁ ଅକାତର ରକ୍ତ-ଦାନ ଓ ଜୀବନ-ଦାନ, ଏକ ମହନୀୟ ଓ ଅବିସ୍ମରଣୀୟ କାହାଣୀ । କୌଣସି ଭାରତୀୟ ଭାଷା, ଭୀମଭୋଇଙ୍କ ପରି ଏକ ନିରକ୍ଷର ବନବାସୀର ଉଚ୍ଚକୋଟିର ଭଜନ ଦ୍ୱାରା ଋଦ୍ଧିମନ୍ତ ହୋଇ ଉଠିନାହିଁ ଯେପରି ହୋଇଛି, ଓଡ଼ିଆ ଭାଷା । ସାରଳାଦାସ ବଳରାମଦାସଙ୍କଠାରୁ ଆରମ୍ଭକରି, ରାଧାନାଥ ରାୟ ଓ ଗୋପୀନାଥ ମହାନ୍ତିଙ୍କ ପର୍ଯ୍ୟନ୍ତ, ବନବାସୀଙ୍କ ସାମାଜିକ ଜୀବନ ଯେପରି ଉଷ୍ଣ ସହାନୁଭୂତି ଓ ମର୍ଯ୍ୟାଦାର ସହିତ, ଓଡ଼ିଆ ସାହିତ୍ୟରେ କ୍ରମାଗତ ବର୍ଣ୍ଣିତ ହୋଇଆସିଛି, ସେପରି ଅନ୍ୟ କୌଣସି ଆଧୁନିକ ଭାରତୀୟ ଭାଷାରେ ଘଟିଛି ବୋଲି ଜଣାନାହିଁ । ସାଧାରଣ ଓଡ଼ିଆର ନାଗରିକତା ବନବାସୀ-ଜୀବନ ସହିତ ଏପରି ଘନିଷ୍ଠ-ସଂପୃକ୍ତ ହୋଇଯାଇଛି ଯେ, ଖ୍ରୀ.ପୂ. ତୃତୀୟ ଶତାବ୍ଦୀର ଅଶୋକଙ୍କର ସ୍ପେସାଲ୍ କଳିଙ୍ଗ ଅନୁଶାସନରେ, 'ଆଟବିକ' ବା ବନବାସୀ ଉପ-ଜାତିମାନଙ୍କୁ ଲକ୍ଷ୍ୟ କରି ସ୍ୱତନ୍ତ୍ର ନିର୍ଦ୍ଦେଶ ଦିଆଯାଇଛି । ଅଶୋକଙ୍କ ଦ୍ୱାରା ବିଜିତ ହେଲା ପରେ ମଧ, ଓଡ଼ିଶାର ବନବାସୀମାନେ ଯେ ତାଙ୍କର ଏହି ଜନ୍ମମାଟିର ସମ୍ମାନ ପାଇଁ ଗରିଲା-ଯୁଦ୍ଧ ଚଳାଇଥିଲେ, ଅଶୋକ-ଅନୁଶାସନରୁ ଏହା ସ୍ପଷ୍ଟ ସୂଚିତ ।

ଆର୍ଯ୍ୟ-ଅନାର୍ଯ୍ୟ ବା ପୁରବାସୀ ଓ ବନବାସୀମାନଙ୍କ ଭିତରେ ଏ ପ୍ରକାର ଅପୂର୍ବ ମନୋହର ମିଶ୍ରଣ-ମିଳନର ଐତିହ୍ୟ, ଓଡ଼ିଶା ମାଟିରେ ସମଗ୍ର ଇତିହାସ ଧରି ପ୍ରବହମାନ ଥିଲାବେଳେ, ସ୍ୱାଧୀନତା ପରେ ମଧ, ଆଜି ଅନ୍ତତଃ ଓଡ଼ିଶା ମାଟିରେ, 'ଆଦିବାସୀ' ବୋଲି ଏକ ସମସ୍ୟା ଦେଖାଯିବା ବା ଆଲୋଚିତ ହେବା, ଉଚିତ କି ? ପୁରୀ, ଭୁବନେଶ୍ୱରର ପଣ୍ଡାମାନଙ୍କୁ ଦେଖିଲେ, ସେମାନଙ୍କ ଭିତରୁ ଅଧିକାଂଶ ଯେ 'ଆଦି', ଏଥିପାଇଁ ପ୍ରମାଣ ଖୋଜି ଯିବାକୁ ହେବନାହିଁ । ଅନ୍ୟପକ୍ଷରେ, ମୁଁ ଇନ୍‌ସ୍ପେକ୍ଟର ଥିଲାବେଳେ, ଫୁଲବାଣୀ ଜିଲ୍ଲାରେ ଗୋଟିଏ ମାଇନର୍ ସ୍କୁଲ୍ ଦେଖି ଆସିବା ଭିତରେ ତତ୍ରତ୍ୟ ଓ ତତ୍‌କାଳୀନ କୀ-ମଲ୍ଲିକ-ନାମଧାରୀ କନ୍ଧ ଏମ୍.ଏଲ୍.ଏ.ଙ୍କୁ ଯେତେବେଳେ ମୁଁ ପ୍ରଥମେ ଭେଟିଲି, ସେତେବେଳେ ମନେ ମନେ ବିସ୍ମୟାଭିଭୂତ ହୋଇପଡ଼ିଥିଲି । କାରଣ ସେ ଭଦ୍ରଲୋକ ଏପରି ସୌମ୍ୟଦର୍ଶନ ଓ ସୁବେଶବିନ୍ୟସ୍ତ ଥିଲେ ଯେ, ତାଙ୍କଠାରେ ମୁଁ ମୋର ଅନାର୍ଯ୍ୟ 'କନ୍ଧ' ଧାରଣା କୌଣସିମତେ ଆରୋପ କରି ପାରିଲି ନାହିଁ ।

ତେଣୁ ଏହି ଐତିହାସିକ ମାଟିରେ କାହାର ରକ୍ତ 'ଆଦି' ବା 'ମଧ' ବା 'ଅନ୍ତ'

ସେପରି ବିଚାର ଏକାନ୍ତ ଅଯୌକ୍ତିକ ଓ ଅନାବଶ୍ୟକ ମନେହେଉଛି । ଓଡ଼ିଆ, ବରାବର ଗୋଟାଏ ଜାତି ହୋଇ ରହିବାର ଶିଖି ଆସିଛି । ଖାରବେଳ-କପିଳେନ୍ଦ୍ର-ନରସିଂହଙ୍କ ସାମ୍ରାଜ୍ୟ ଓ ବିଜୟଗୌରବ ପାଇଁ ଏ ମାଟିର ପାଇକ-ଖଣ୍ଡେଇତେ ଯେତିକି ରକ୍ତ ଢାଳିଛନ୍ତି, ତାଠୁଁ କମ୍ ରକ୍ତ ଢାଳିନାହାନ୍ତି ଏ ମାଟିର କନ୍ଧ-ଭୂୟାଁ-ଜୁଆଙ୍ଗ-ସାନ୍ତାଳମାନେ । ଗଜପତିଙ୍କର ସାମନ୍ତ-ରାଜାମାନଙ୍କର 'ସୈନ୍ୟ' କହିଲେ ଯେ ମୁଖ୍ୟତଃ ବୁଝାଉଥିଲେ, ବନବାସୀ ଉପଜାତି-ଗୋଷ୍ଠୀ, ତାହା ରାଧାନାଥଙ୍କ 'ପାର୍ବତୀ କାବ୍ୟର ଉପସଂହାର'ରେ ବର୍ଣ୍ଣ-ମଞ୍ଜୁଳ ହୋଇ ବର୍ଣ୍ଣିତ ହୋଇଛି । ଜନ୍ମମାଟିରୁ ବହୁ ଦୂର ଦୂର ଦେଶମାନଙ୍କରେ, ରଣକ୍ଷେତ୍ରରୁ ବିଶ୍ରାମ ନେବା କାଳରେ, ଉତ୍କଳୀୟ ସମର-ଛାଉଣୀମାନଙ୍କରେ କନ୍ଧ-ଭୂୟାଁ-ସାନ୍ତାଳମାନଙ୍କର ଚାଙ୍ଗୁଢ଼ୋଲକ ସହିତ ଉପଜାତି ନୃତ୍ୟରୁ, ଖୁବ୍ ସମ୍ଭବତଃ, ଓଡ଼ିଶାର ସୁପ୍ରସିଦ୍ଧ ବୀର-ରସାତ୍ମକ ଛଉ-ନୃତ୍ୟର ଉଦ୍ଭବ ହୋଇଛି । ମା' ଓଡ଼ିଶାପାଇଁ ଧଳା-କଳା, ବ୍ରାହ୍ମଣ-ଚଷା, ପୁରବାସୀ ଓ ବନବାସୀ, ଏ ଦେଶର ସକଳ-ଶ୍ରେଣୀର ପ୍ରଜା, ଶତ ଶତ ବର୍ଷ ଧରି ଏକାଠି ମୁଣ୍ଡ ଦେଇଛନ୍ତି, ଜାତି-ବର୍ଣ୍ଣ-ବିଶ୍ୱାସ ଭୁଲି; ଏକାଠି ଖାଇଛନ୍ତି, ଶୋଇଛନ୍ତି ଓ ନୃତ୍ୟ-କରିଛନ୍ତି । ଗଜପତିର ଆହ୍ୱାନ ଓ ସମ୍ମାନ ଏହି ବିରାଟ ଐତିହାସିକ ଜାତିକୁ ଅପୂର୍ବ ମନୋଜ୍ଞ ଏକପ୍ରାଣତା ଆଣିଦେଇପାରିଥିଲା ।

ଆମେ ଆଜି ସେହି ମନୋଜ୍ଞ ଐକ୍ୟକୁ ଫେରାଇ ଆଣିପାରିବାନି କି ? ଏ ବ୍ୟାପାର ଓଡ଼ିଶା ମାଟିରେ ଯେତେ ସହଜସାଧ୍ୟ ହେବ, ଭାରତର ଅନ୍ୟ ପ୍ରାନ୍ତରେ ତାହା ସମ୍ଭବ ହେବନାହିଁ । କାରଣ, ଏକପ୍ରାଣତାର ଏ ଐତିହ୍ୟ, ଭାରତର ଅନ୍ୟ-କୌଣସି ରାଜ୍ୟରେ ନାହିଁ । ଅନ୍ତତଃ ଓଡ଼ିଶା ମାଟିରେ 'ଆଦିବାସୀ' ଓ 'ପୁରବାସୀ' ବୋଲି ଦୁଇଟା କଥା ଶୁଣା ନ ଯାଉ ଏବଂ ଶୁଣା ମଧ୍ୟ ନ ଯାଉ ଯେ, ଓଡ଼ିଶା ସରକାରଙ୍କ ତଳେ କୌଣସି ଆଦିବାସୀ ଗୋଷ୍ଠୀ ନିଜକୁ ଅସନ୍ତୁଷ୍ଟ ବା ଅବହେଳିତ ମନେକରୁଛନ୍ତି । ଆସ ଆଜି ଆମେ ଅକୁଣ୍ଠ ଉତ୍ସାହରେ, ସେହିମାନଙ୍କ ଦେବତା 'ଜଗନ୍ନାଥ'ଙ୍କର ଚତୁର୍ଦ୍ୱାର ସେମାନଙ୍କ ପାଇଁ ମେଲା କରିଦେବା । ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଆଖି ତଳେ, ଦିନେ ବ୍ରାହ୍ମଣ ଓ ଶବର ଦିହେଁ ମିଶି ଦାରୁ-ବ୍ରହ୍ମଙ୍କୁ ଯେପରି ସମୁଦ୍ରରୁ ଟେକି ଆଣିଥିଲେ, ଆଜି ସେହିପରି, ଓଡ଼ିଆ ଜାତିକୁ ଉପରକୁ ଟେକିବା ପାଇଁ, ଦିହେଁ ଏକାଠି, ଏକା ଉତ୍ସାହରେ କାନ୍ଧ ଲଗେଇ ଦିଅନ୍ତୁ । ଆମେ ସମସ୍ତେ ମିଶି ଯେମିତି ପୂର୍ବେ ଗଜପତି-ଶାସନ-ତଳେ ଏକ ମନୁଷ୍ୟ ହୋଇ ଜାତି ପାଇଁ ବଞ୍ଚୁଥିଲେ ଓ ମରୁଥିଲେ, ଆଜି ମଧ୍ୟ ସେହି ଉତ୍ସାହରେ ମାତିଉଠୁ । ସମଗ୍ର ଏହି ଉପ-ମହାଦେଶରେ ଓଡ଼ିଶାହିଁ ଏହି ପ୍ରକାର ଜାତୀୟ ସଂହତିର ଅପୂର୍ବ ଆଦର୍ଶ ଦେଖାଉ ।

# କୋଣାର୍କ

ଦୂର ଦିଗ୍‌ବଳୟ ଉପରେ ତ୍ରିକୋଣାକାର ମୁକୁଟ ପରି କୋଣାର୍କର ଭଗ୍ନମନ୍ଦିର ବହୁଦୂରରୁ ପଥିକର ଦୃଷ୍ଟିରେ ପଡ଼େ । ବର୍ତ୍ତମାନ ଯାହା ଦୃଷ୍ଟିରେ ପଡେ, ତାହା କୋଣାର୍କର ଶୀର୍ଷତ୍ରୟ ମଧ୍ୟରେ ନୀଚତର ବା ନୀଚତମ । ପରିପୂର୍ଣ୍ଣ ଅବସ୍ଥାରେ କୋଣାର୍କର ଉଚ୍ଚତର ଚୂଡ଼ାଦ୍ୱୟ ଅନ୍ତରୀକ୍ଷ ଭେଦ କରି କେତେଦୂରରୁ ଦୃଷ୍ଟିଗୋଚର ହେଉଥିବ, ତାହା କଳ୍ପନାର ବିଷୟ । ଗଠନର ପରବର୍ତ୍ତୀ ବହୁକାଳଯାଏ, କୋଣାର୍କ ମନ୍ଦିର ସିନ୍ଧୁବାହୀ ନାବିକମାନଙ୍କର ଦୀପସ୍ତମ୍ଭ ସ୍ୱରୂପ ଥିଲା । ପରେ ଚନ୍ଦ୍ରଭାଗା ନଦୀର ଗର୍ଭ ପୋତିହୋଇପଡ଼ିବାରୁ ସାଗରବାହୀ ନାବିକମାନେ ଏହାରି ଲକ୍ଷ୍ୟରେ କୂଳକୁ ଜାହାଜ ଆଣି, ବିପନ୍ନ ହେବାକୁ ଲାଗିଲେ ଏବଂ ପର୍ତ୍ତୁଗୀଜ୍ ଜଳଦସ୍ୟୁ ଓ ନାବିକମାନଙ୍କର ଏହି ଦେବାଳୟ କ୍ରୋଧର କାରଣ ହୋଇଥିଲା । ହୁଏତ, ସେମାନେ ଏହାର ବିନାଶରେ ସାହାଯ୍ୟ କରିଥିବେ ଏବଂ ସେହିଯୋଗୁଁ କୋଣାର୍କର ଚୁମ୍ବକ ପଥର ସମ୍ବନ୍ଧୀୟ କାହାଣୀର ସୃଷ୍ଟି ।

ଦୀର୍ଘପଥ ଅତିକ୍ରମ କରି ଦେବାଳୟର ପ୍ରାଙ୍ଗଣରେ ପ୍ରବେଶ କଲା ମାତ୍ରେ, ଭଗ୍ନଜୀର୍ଣ୍ଣ ଅବସ୍ଥାରେ ମଧ୍ୟ ମନ୍ଦିରର ବିରାଟତା ଦର୍ଶକକୁ ସ୍ତବ୍ଧ କରେ । ହୃଦୟରେ ପ୍ରଶ୍ନ ଉଠେ– ଏ ତ ଭଗ୍ନମନ୍ଦିର; ନାଟମଣ୍ଡପ ଓ ବଡ଼ଦେଉଳ ପରିପୂର୍ଣ୍ଣ ବିଭବରେ ଠିଆ ରହିଥିଲା ବେଳେ ଏହାର ତୁଙ୍ଗ-ଦର୍ଶନ ଭକ୍ତ ଓ ଯାତ୍ରୀମାନଙ୍କର ଚିତ୍ତବୃତ୍ତିକୁ କି ପ୍ରକାରେ ସ୍ତମ୍ଭୀଭୂତ କରୁନଥିବ ! ସେତେବେଳେ ମନୁଷ୍ୟ ହସ୍ତର ଏହି ବିରାଟ ଶିଳାଲୀଳା ଘନୀଭୂତ ପ୍ରାର୍ଥନା ପରି ଆକାଶକୁ ଉଠି, ଭକ୍ତପ୍ରାଣରେ ଏକାଧାରରେ ଭୟ, ଭକ୍ତି ଓ ବିନୟ ପ୍ରଚାର କରୁଥିବ । ବର୍ତ୍ତମାନ ଯେଉଁ ଭଗ୍ନାବଶେଷ ଅଛି, ସେଥିରେ ତ ସେକାଳ ଅପେକ୍ଷା, ପଥିକ ପ୍ରାଣରେ କମ୍ ବିସ୍ମୟ ଜାତ ହୁଏନାହିଁ । ଇତସ୍ତତଃ ବିକ୍ଷିପ୍ତ କ୍ଷୁଦ୍ରଶୈଳୋପମ ପ୍ରକାଣ୍ଡ ପ୍ରସ୍ତରମାଳା ଦେଖିଲେ ମନରେ ସ୍ୱତଃ ପ୍ରଶ୍ନ ଉଠେ– ଏ କ'ଣ ମନୁଷ୍ୟ ନା ଦୈତ୍ୟମାନଙ୍କର କର୍ମ୍ମ ? ବହୁଯୋଜନ-ବିସ୍ତୃତ ପରିଧି ମଧ୍ୟରେ କୋଣାର୍କର ଉପାଦାନ ଦେଖାଯାଏ ନାହିଁ । ଏହି ପ୍ରକାଣ୍ଡ ଶିଳାଖଣ୍ଡ ରାଶି ଏଠାକୁ ଆସିଲା କିପରି ? ବହୁ ଊର୍ଦ୍ଧ୍ୱର ମନ୍ଦିର ଗାତ୍ରକୁ ଉଠିଲା ବା କିପରି ? କୋଣାର୍କର ପଥ ପାଖେ ପାଖେ ଯେଉଁ ରୁଗ୍‌ଣ, ଅଙ୍ଗ ନରନାରୀ ଦେଖାଯାନ୍ତି,

* ସହକାର – ଚତୁର୍ଥସଂଖ୍ୟା ।

ଏଇମାନେ କ'ଣ ସେହି ଅଦ୍ଭୁତକର୍ମାଙ୍କର ବଂଶଧର ? ନା ଯେଉଁ ଦୈତ୍ୟଜାତି, ସାଗର ମନ୍ଥନ କରି ଦୂର ଦ୍ୱୀପମାଳାରେ ବାଣିଜ୍ୟ କରିଥିଲା, ଦେଶ ମନ୍ଥନ କରି ସାମ୍ରାଜ୍ୟ ସ୍ଥାପନ କରିଥିଲା, ପର୍ବତ ମନ୍ଥନ କରି ଏହିପରି ବିରାଟ ମନ୍ଦିରମାନ ତୋଳିପାରିଥିଲା, ସେ ଜାତି ଧରାପୃଷ୍ଠରୁ ଏକାବେଳକେ ଲୁପ୍ତ ହୋଇ ଯାଇଛି । ଏ କାଳର ଏ ଲୋକଙ୍କ ସହିତ ସେହି ବିରାଟ ପୁରୁଷମାନଙ୍କର କୌଣସି ସମ୍ପର୍କ ସମ୍ଭବ ନୁହେଁ । ଏ ପ୍ରକାର ସମ୍ଭାବନା ସତ୍ୟ ହୋଇ ନ ପାରେ; କିନ୍ତୁ ବିଶ୍ୱାସ ତା' ସହଜରେ ଗ୍ରହଣ କରିବ । କାରଣ ଯେଉଁ ଜାତି ଇଜିପ୍ଟରେ ପୀରାମିଡ଼ ଗଢ଼ିଥିଲେ, ସେ ଜାତି ଆଉ ନାହିଁ । ଯେଉଁମାନେ ବର୍ତ୍ତମାନ ନୀଳ ନଦୀର ଉର୍ବର ଉପତ୍ୟକା ମାଡ଼ିବସିଛନ୍ତି, ସେମାନେ ଭିନ୍ନଧର୍ମା ଓ ଭିନ୍ନରକ୍ତା । ଯେଉଁମାନେ କୋଣାର୍କ ନିକଟରେ ବସବାସ କରନ୍ତି, ସେମାନେ କୋଣାର୍କର ମହିମା ବୁଝନ୍ତି ନାହିଁ । ଯେଉଁ ସହସ୍ର ସହସ୍ର ଯାତ୍ରୀ ମାଘସପ୍ତମୀକୁ ଏଠାରେ ସମାଗତ ହୁଅନ୍ତି, ସେମାନେ ଚନ୍ଦ୍ରଭାଗାରେ ସ୍ନାନ କରି ପୁଣ୍ୟାର୍ଜନ କରିବାକୁ ଆସନ୍ତି, କୋଣାର୍କ ଦେଖିବାକୁ ଆସନ୍ତି ନାହିଁ । ଆଉ, ଏ କାଳର ଓଡ଼ିଆ ଜାତିରେ ଏପରି ଶକ୍ତି ଲକ୍ଷ୍ୟ କରିହୁଏନି, ଯାହା ଦେଖିଲେ ସେମାନଙ୍କ ଭିତରେ କୋଣାର୍କ-ନିର୍ମାତାମାନଙ୍କର ରକ୍ତ ଅଛି ବୋଲି ମନେହେବ । ଐତିହାସିକ ଓଡ଼ିଆ ଜାତିର ଯୁଗଯୁଗର ପୁଞ୍ଜୀଭୂତ ଶକ୍ତି, ଯେପରି ଏହିଠାରେ ଆସନ୍ନ-ନିର୍ବାଣ ଦୀପଶିଖା ପରି ଶେଷବାର ଲାଗି ଅଭୂତପୂର୍ବ ଜ୍ୟୋତିରେ ବିକଶିତ ହୋଇ ଚିରକାଳ ଲାଗି ଅନ୍ତର୍ହିତ ହୋଇଛି । ତାରି ଅନ୍ତର୍ଦ୍ଧାନରେ କୋଣାର୍କ ସ୍ୱୟଂ ଜୀର୍ଣ୍ଣ ଓ ଭଗ୍ନ ଏବଂ ଓଡ଼ିଆ ଜାତି ନିର୍ଜୀବ ଓ ମ୍ରିୟମାଣ ।

କୋଣାର୍କର ବିରାଟତା-ଜନିତ ବାକ୍ୟହୀନ ବିସ୍ମୟ କ୍ରମେ କ୍ରମେ ଅପସାରିତ ହେଲେ, ଆଉ ଏକ ଅଧିକତର ବିସ୍ମୟରେ ଅଭିଭୂତ ହେବାକୁ ହୁଏ । ମନ୍ଦିରର ପୀଠେ ପୀଠେ, ଦେହେ ଦେହେ, ମୂଳରୁ ଚୂଳଯାଏ ପ୍ରତ୍ୟେକ ଶିଳାଖଣ୍ଡରେ ଇଏ କି ଅପରୂପ ଲୀଳା ! ଚୈତ୍ରବନର ବିବିକ୍ତ ସ୍ଥଳରେ ସ୍ୱଚ୍ଛନ୍ଦ-କ୍ରୀଡ଼ାରତା ସ୍ୱୈରିଣୀ-ଯକ୍ଷ ରୂପସୀମାନଙ୍କୁ କିଏ ଯେପରି ଯାଦୁମନ୍ତ୍ରରେ ପାଷାଣ କରି ଏହି ମନ୍ଦିରଗାତ୍ରରେ ବନ୍ଦୀ କରି ରଖିଛି । ଅତି ପରିଚିତ, ନିତ୍ୟ-ପ୍ରତ୍ୟକ୍ଷୀଭୂତ ପୃଥିବୀର ଦୈନନ୍ଦିନ ସଂସାର ପାରହୋଇ ଆମ୍ଭେମାନେ ଯେପରି ଏକ ନୂତନ ସୃଷ୍ଟିରେ ଉପସ୍ଥିତ ହେଲୁଁ, ଯେଉଁଠି କୁଞ୍ଜେ କୁଞ୍ଜେ ସୁନ୍ଦରୀମାନଙ୍କର ନୃତ୍ୟଗୀତ, ବୀଣା-ମୁରଜ-କାହାଳୀ-ବାଦନ ଓ ନାନା ଭଙ୍ଗୀରେ ନାନା ଛନ୍ଦରେ ଅପରୂପ ଅବୟବମାନଙ୍କର ଅନିନ୍ଦ୍ୟ ରୂପଲୀଳା । ସ୍ଥୂଳ ଜଗତର ନିରାନନ୍ଦ, ଶୋକ ବା ଶୋଚନାର ସ୍ଥାନ ଏଠି ନାହିଁ । ଏଠି ପ୍ରତ୍ୟେକ ଶିଳା ଦେହରେ ଗୋଟିଏ ଇନ୍ଦ୍ରିୟଗ୍ରାହ୍ୟ ଓ ଅତୀନ୍ଦ୍ରିୟ ଆନନ୍ଦର ସ୍ପର୍ଶ ଯେପରି

ଆମ୍ଭେମାନେ ପାଉଁ । ଏପରି ନାରୀ-ମୁଖ ନାହିଁ, ଯାର ଅଧରରେ ସ୍ମିତ ନାହିଁ । ଏପରି ଯୁବତୀ ନାହିଁ, ଯେ କି ଆପଣାର ପରିପୁଷ୍ଟ ଅବୟବ ଦେଖାଇ ଦର୍ଶକ ଆଖିରେ ଆନନ୍ଦ ଦେବାକୁ ଟିକିଏ ହେଲେ ଲଜ୍ଜା କରିବ । ପାଷାଣର ବିଗ୍ରହ ସିନା, ମନେହୁଏ ଯେପରି ଏ ଶିଳା ଦେହରେ କେବଳ ରୂପ ନାହିଁ, ରସ ଓ ଗନ୍ଧ ମଧ୍ୟ ଅଛି । ପୁଣି ଏହି ରୂପସାଗରର ସୀମା ବା କାହିଁ ? ଯେଉଁଆଡ଼େ ଅନାଅ, ଶିଳ୍ପୀ ସୂଚ୍ୟଗ୍ର ପରିମିତ ଭୂମି ମଧ୍ୟ ଶୂନ୍ୟ ରଖିନାହାନ୍ତି; ଚାରିଆଡ଼ ରୂପସୃଷ୍ଟିରେ ଭର୍ତ୍ତି ହୋଇ ରହିଛି – ଦେଖିବ କା'କୁ, ଛାଡ଼ିବ ବା କା'କୁ ? ଯେଉଁ ବିଗ୍ରହକୁ ମନୋଜ୍ଞ ଭାବି ଘଡ଼ିଏ କାଳ ନିର୍ନିମେଷ ନୟନରେ ଅନାଇ ରହିଲି, କିଛି ଦୂର ଗଲା ପରେ ଆଉ ଏକ ମୂର୍ତ୍ତି ତତୋଽଧିକ ମନୋଜ୍ଞ ବୋଧ ହୁଏ । ଯେଉଁ ଆଡ଼କୁ ଦୃଷ୍ଟି ପକାଅ– ଭାବିବ, ଯେପରି ମୁଁ ନୂତନ ସୌନ୍ଦର୍ଯ୍ୟ ଉପଲବ୍ଧି କରିଛି । ଭଙ୍ଗୀର ଅନ୍ତ ନାହିଁ, ଲୀଳାର ସୀମା ନାହିଁ; ନୂତନତ୍ୱର ଶେଷ ନାହିଁ । ଭକ୍ତ ଉପାସନା କରୁଛି, ଗୁରୁ ଅଧ୍ୟାପନା କରୁଛନ୍ତି, ବୀର ଜୟଯାତ୍ରା କରୁଛି, ସନ୍ନ୍ୟାସିନୀ ମାଳାଜପୁଛି, ରାଜା ଶୋଭାଯାତ୍ରାରେ ଚାଲିଛନ୍ତି– ବିବାହ, ବ୍ରତ, ଯାତ୍ରା ଇତ୍ୟାଦି ଚାଲିଛି । କେଉଁ ସୁନ୍ଦରୀ ପ୍ରସାଧନରତ, କିଏ ପ୍ରିୟଜନର ବାହୁବନ୍ଧନରେ ଯୁଗଯୁଗ ଲାଗି ଆବଦ୍ଧ, କିଏ ମୁରଜ ବାଦ୍ୟରେ ଉନ୍ମତ୍ତ ହୋଇ ହାତ ଉଞ୍ଚେଇ ତାଳ ଧରିଛି ତ ଧରିଛି । କିଏ ବୀଣା ବଜାଏ, କିଏ କାହାଳି ବଜାଏ, କିଏ ବା ପରିପୁଷ୍ଟ ଦେହର ଲୋଭନୀୟ ଅବୟବମାନଙ୍କୁ ଦେଖାଇ-ଦେଇ ଅନୁପମ କଟାକ୍ଷରେ, ପ୍ରିୟଜନର ପ୍ରତୀକ୍ଷାରେ ସଙ୍କେତ ସ୍ଥାନରେ ଅଭିସାରିକା ପରି ଦଣ୍ଡାୟମାନା !

କୋଣାର୍କ ମନ୍ଦିର ଗୋଟିଏ ଛୋଟ ସଂସାର । ଦୃଶ୍ୟମାନ ଜଗତରେ ଶିଳ୍ପୀ ଯାହା କିଛି ଦେଖିପାରିଥିଲେ ବା ଶୁଣିପାରିଥିଲେ, ତାହା ସେ କୋଣାର୍କର ଶିଳାଦେହରେ ଖୋଳିଯିବାକୁ ଛାଡ଼ିନାହାନ୍ତି । ମନୁଷ୍ୟ ଜୀବର ସକଳ ଅବସ୍ଥାର ଚିତ୍ର ତ ଅଛି; ତା' ଛଡ଼ା ପଶୁପକ୍ଷୀ, ବୃକ୍ଷଲତାର ସୂକ୍ଷ୍ମଖୋଦନକଳା ମଧ୍ୟ କୋଣାର୍କରେ ଅନ୍ୟତମ ଦର୍ଶନୀୟ ବସ୍ତୁ । ଏହି କ୍ଷୁଦ୍ର ବିଶ୍ୱଟିରେ ଯେତେବେଳେ ସୃଷ୍ଟିର ସକଳ ପ୍ରକାର ଜୀବ, ଜନ୍ତୁ ଓ ଘଟଣାମାନଙ୍କର ପ୍ରତିକୃତି ଖୋଳିଦିଆଗଲା, ଶିଳ୍ପୀ ବୋଧହୁଏ ଯୌନକ୍ରିୟାକୁ ବାଦ୍ ଦେବା ଅସଙ୍ଗତ ବୋଧକଲେ । ତେଣୁହିଁ ବୋଧହୁଏ ଅଶ୍ଳୀଳ ମୂର୍ତ୍ତିମାନଙ୍କର ଉଦ୍ଭବ । ଆଜିର ଲୋକଚକ୍ଷୁରେ ତାହା ଦୃଷ୍ଟିକଟୁ ବୋଧହୋଇପାରେ; କିନ୍ତୁ ଶିଳ୍ପୀର ମହତ୍ତର କଳ୍ପନାରୁ ସେସବୁ ଦେଖିଲେ ଆଦୌ ଅସଙ୍ଗତ ବୋଧ ହେବ ନାହିଁ । ତା'ପରେ ମଧ୍ୟ ମନେରଖିବାକୁ ହେବ ଯେ, କୋଣାର୍କ ସୂର୍ଯ୍ୟ ଦେବତାଙ୍କ ମନ୍ଦିର । ସୂର୍ଯ୍ୟ ସୃଷ୍ଟିର ମୂଳରେ । ଯେଉଁ ବୀଜ ଆମ୍ଭେମାନେ ମୃତ୍ତିକାରେ ପୋତି ଦେଉଁ,

ସୂର୍ଯ୍ୟକର ବିନା ସେଥିରେ ଅଙ୍କୁର ହେବାର ସମ୍ଭାବନା ନାହିଁ । ସୂର୍ଯ୍ୟଙ୍କର ଜୀବନବାହୀ କିରଣଜାଳ ମୃତ୍ତିକା ଭିତରେ ପ୍ରବେଶ କରି ମାଟିକି ଉର୍ବରା କରେ ଓ ଶସ୍ୟବୀଜରୁ ନୂତନ ଜୀବନ ସୃଷ୍ଟି କରି ଉପରକୁ ଉଠାଏ । ସୂର୍ଯ୍ୟକୁ ଆମ୍ଭେମାନେ ପ୍ରଖର ଉତ୍ତାପର ଜନକ ବୋଲି ଜାଣି ବିରକ୍ତ ହେଉଁ । କିନ୍ତୁ ସୂର୍ଯ୍ୟ ଯେ ଶାନ୍ତିଦାୟନୀ ଓ ଜୀବ-ଦାୟନୀ ମେଘମାଳାର ଜନକ, ତାହା ଆମେ ଭୁଲିଯାଉଁ । ବିଜ୍ଞାନ ମଧ୍ୟ କହେ ଯେ, ସୂର୍ଯ୍ୟ ପୃଥିବୀକୁ ଧରି ସକଳ ଗ୍ରହ ଓ ଉପଗ୍ରହର ପିତାମହ । ତେଣୁ ସବୁ ଦିଗରୁ ଦେଖିଲେ ସୂର୍ଯ୍ୟହିଁ ସୃଷ୍ଟିର ମୂଳ ବୋଲି ବୁଝିବାକୁ ହେବ । ମନ୍ଦିର ମଧ୍ୟରେ ସୂର୍ଯ୍ୟଦେବତାଙ୍କୁ ରଖି, ଯଦି ଶିଳ୍ପୀ ମନ୍ଦିରର ଉପରିଭାଗରେ ସୃଷ୍ଟିର ଏ ପ୍ରକାର ଚିତ୍ର ଦେଇନଥାନ୍ତେ ଓ ସୃଷ୍ଟିର ଚିତ୍ର ଦେବାର ଚେଷ୍ଟା କରି ଯଦି ଯୌନକ୍ରିୟାଗୁଡ଼ିକ ବାଦ୍-ଦେଇଥାନ୍ତେ, ତେବେ କୌଣାର୍କର ପରିକଳ୍ପନା ଅପୂର୍ଣ୍ଣ ରହିଯାଇଥାନ୍ତା ପରା !

କିନ୍ତୁ ଆଜି ଯେଉଁ ଶିଳ୍ପୀ ଓ କଳାଭକ୍ତମାନେ କୋଣାର୍କକୁ ଆସନ୍ତି, ସେମାନେ ସୂର୍ଯ୍ୟ ଦେବତାଙ୍କୁ ମନେରଖନ୍ତିନାହିଁ; ସେମାନେ କୋଣାର୍କର ରୂପଲୀଳାରେ ମୁଗ୍ଧ ହୋଇ ଫେରିଥାନ୍ତି । କିନ୍ତୁ ମନେରଖିବାକୁ ହେବ, ଏହି ବିଶ୍ୱ-ବିଶ୍ରୁତ ମନ୍ଦିର ଏବର ଏବଂ କୋଣାର୍କରେ ସୂର୍ଯ୍ୟଦେବତାଙ୍କ ଆସନ ଓ ପୂଜା ବହୁକାଳର । ସେ କାଳର ସୀମା ଇତିହାସକୁ ପାର ହୋଇ ପୁରାଣରେ ପ୍ରବେଶ କରିଛି । କୋଣାର୍କର ଏହି ବିରାଟ ମନ୍ଦିର ଅନ୍ତରୀକ୍ଷ ଭେଦକରି ଠିଆହେବାର ବହୁଯୁଗ ପୂର୍ବରୁ ଏହି ପୀଠରେ ସୂର୍ଯ୍ୟଦେବଙ୍କ ଆରାଧନା ଲାଗି ମନ୍ତ୍ର ଉଚ୍ଚାରିତ ଓ ଘଣ୍ଟିଘଣ୍ଟା ଧ୍ୱନିତ ହୋଇଆସିଛି । ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ କୁଷ୍ଠରୋଗରୁ ମୁକ୍ତି ପାଇବା ଲାଗି ଚନ୍ଦ୍ରଭାଗା କୂଳର ମୈତ୍ର-ବନରେ ସୂର୍ଯ୍ୟଙ୍କୁ ଉପାସନା କରିବା ଲାଗି ଆସିଥିଲେ । ସେ ସମୟରେ ମଧ୍ୟ ଏହି ପୀଠ ପୁଣ୍ୟକ୍ଷେତ୍ର ବୋଲି ପ୍ରସିଦ୍ଧ ଥିଲା– ନ ହେଲେ ଶାମ୍ବ ଏହାର ନାମ ଜାଣନ୍ତେ କିପରି ? ତେବେ ସତେ ଏ ପୀଠ କି ପ୍ରାଚୀନ !

ପୂର୍ବେ ପ୍ରସିଦ୍ଧ ଥିଲେ ମଧ୍ୟ ଶାମ୍ବଙ୍କ କୁଷ୍ଠରୋଗର ନିରାକୃତି ପରେ ଏହି ସ୍ଥାନ ସୁପ୍ରସିଦ୍ଧ ହୋଇଉଠିଲା ଏବଂ ସୂର୍ଯ୍ୟ ଉପାସନାର ଏକ ପ୍ରଧାନ ପୀଠ ହୋଇଗଲା । ଶାମ୍ବ ଯେଉଁ ଦିନ ରୋଗରୁ ମୁକ୍ତହୋଇ ଚନ୍ଦ୍ରଭାଗାର ପବିତ୍ର ଜଳରେ ସ୍ନାନକରିଥିଲେ, ସେହିଦିନ ମାଘମାସର ଶୁକ୍ଳ ସପ୍ତମୀ । ଚନ୍ଦ୍ରଭାଗା ନଦୀ ଆଉ ନାହିଁ; ମୈତ୍ରେୟ ବନ ମଧ୍ୟ ଭୂଗର୍ଭରେ ଓ କାଳଗର୍ଭରେ ଏକାବେଳେକେ ଲୁପ୍ତ । କିନ୍ତୁ ଶାମ୍ବଙ୍କ ସୂର୍ଯ୍ୟ ଉପାସନାର ସ୍ମୃତି ଆଜିଯାଏଁ ରହିଛି । ମାଘ ସପ୍ତମୀ ଦିନ ପଲ୍ୱଳାବିଶିଷ୍ଟ ଚନ୍ଦ୍ରଭାଗାରେ ସ୍ନାନକରି ବେଳାଭୂମିରେ ଉଦୀୟମାନ ସୂର୍ଯ୍ୟଦେବଙ୍କୁ ନମସ୍କାର କରିବା ପାଇଁ ଏବେ ମଧ୍ୟ ପ୍ରତିବର୍ଷ ସହସ୍ର ସହସ୍ର ନରନାରୀ ବହୁପଥ ଅତିକ୍ରମ କରି, ଶ୍ରାନ୍ତ-କ୍ଳାନ୍ତ ହୋଇ

ଏଠାରେ ସମବେତ ହୁଅନ୍ତି । ସମାଗତ ନରନାରୀଙ୍କ ମନରେ କୋଣାର୍କର ସ୍ଥାନ ଆଦୌ ନଥାଏ । କୋଣାର୍କର ବହୁପୂର୍ବରୁ ସେମାନେ ଆସୁଥିଲେ ଏବଂ କୋଣାର୍କକୁ ବର୍ତ୍ତମାନ ଧ୍ୱଂସ କରିଦେଲା ପରେ ମଧ୍ୟ ସେମାନେ ଆସିବେ ଓ ଚୂର୍ଣ୍ଣୀଭୂତ ମନ୍ଦିର ଲାଗି ଏକବିନ୍ଦୁ ଅଶ୍ରୁପାତ କରିବେ ନାହିଁ ? ତେଣୁ ମନେହୁଏ, ଅର୍କକ୍ଷେତ୍ରର ଅର୍କ-ଉପାସନାର ଯୁଗଯୁଗବ୍ୟାପୀ ଇତିହାସ ମଧ୍ୟରେ କୋଣାର୍କ ମନ୍ଦିରଟି ସ୍ୱପ୍ନର ପିତୁଳା-ପରି କେତେବେଳେ ଉଠି ଫାଟିଯାଇଛି ମାତ୍ର । ତା'ର ଉତ୍‌ଥାନ ପତନରେ ଭକ୍ତଯାତ୍ରୀ-ମାନଙ୍କର କିଛି ମାତ୍ର ଚିତ୍ତ-ବିକ୍ଷୋଭ ଘଟି ନାହିଁ ଓ ତା'ର ଇତିହାସ ଅର୍କପୂଜାର ଅନାଦି ଇତିହାସ ମଧ୍ୟରେ ଗୋଟିଏ କ୍ଷୁଦ୍ର ପୃଷ୍ଠା ଅଧିକାର କରିଛି କି ନାହିଁ ।

ତେବେ ଏ ବିରାଟ ବ୍ୟାପାର ଘଟିଲା କାହିଁକି ? କାହିଁକି ଏ ଜନହୀନ ମରୁ-ପ୍ରାନ୍ତରରେ ଲୋକ-ବସତିର ଶେଷ ସୀମାରେ, ଓଡ଼ିଶାର ବାରବର୍ଷର ସମସ୍ତ ଆୟ, ଓ ବାରଶତ ଶିଳ୍ପୀ ଓ ସହସ୍ର ସହସ୍ର ଶ୍ରମିକମାନଙ୍କର ଶ୍ରମଝାଳ ଏଥିରେ ବ୍ୟୟିତ ହେଲା ? ଅନେକେ କହି ପାରନ୍ତି, ଗଜପତି ନରସିଂହ ଦେବଙ୍କର ପ୍ରବଳ ଧର୍ମପ୍ରାଣତା ଯୋଗୁହିଁ ଏହା ସମ୍ଭବ ହେଲା । କିନ୍ତୁ ଆମ୍ଭମାନଙ୍କର ସେ ବିଶ୍ୱାସ ହେଉନି । ଯଶୋଲିପ୍‌ସୁ ନରପତିଙ୍କର ଯଶ-ଲାଲସାହିଁ ଏହି ବିରାଟ ମନ୍ଦିରର ଉତ୍‌ଥାନ ଓ ପତନର ମୂଳରେ ।

ପ୍ରାଚୀନ ହିନ୍ଦୁ ନିକଟରେ ମନ୍ଦିର ନିର୍ମାଣ ଧର୍ମ ଓ ଯଶ ଉଭୟର ପ୍ରତୀକ ଥିଲା । ଯେଉଁ ଧନିକ ବା ରାଜା ଧର୍ମପ୍ରାଣ ହୋଇପଡୁଥିଲେ, ସେ କେବଳ ଯେ ଦେବ ବ୍ରାହ୍ମଣ ସେବା କରୁଥିଲେ ତାହା ନୁହେଁ; ବରଂ ଧର୍ମାର୍ଜନ ସଙ୍ଗେ ସଙ୍ଗେ ନିଜ ନାମକୁ ମୃତ୍ୟୁ ପରେ ଚିରସ୍ଥାୟୀ କରିଯିବା ପାଇଁ ଗୋଟିଏ ଗୋଟିଏ ମନ୍ଦିର ବା ପୁଷ୍କରିଣୀ ସୃଷ୍ଟି କରି ଯାଉଥିଲେ । ଏ ଦେଶର ମନ୍ଦିରମାଳାରେ ଧର୍ମ ଓ ଯଶର ଇତିହାସ ରହିଛି । ପୁରୀ, ଭୁବନେଶ୍ୱର ଓ ଯାଜପୁର ପ୍ରଭୃତି ତିନି ପ୍ରଧାନ ଧର୍ମପୀଠରେ, ନରସିଂହ ଦେବଙ୍କ ଆଗରୁ ମନ୍ଦିର ନିର୍ମିତ ହୋଇଯାଇ ନିର୍ମାତାମାନଙ୍କର ଯଶ ଘୋଷଣା କରୁଥିଲା । ସେ ସବୁ ସ୍ଥାନମାନଙ୍କରେ ନୂତନ ମନ୍ଦିର ନିର୍ମାଣ କରିବାପାଇଁ ନରସିଂହ, ଦେବ ସମୀଚୀନ ବୋଧ କଲେ ନାହିଁ; ଆଉ ସ୍ଥାନ ମଧ୍ୟ ନଥିଲା । ବାକୀ ଚନ୍ଦ୍ରଭାଗା କୂଳରେ ଏହି ପ୍ରସିଦ୍ଧ ଅର୍କପୀଠ, ଯେଉଁଠାରେ ମାତ୍ର ପୂର୍ବୋକ୍ତ ତିନି ସ୍ଥାନକୁ ଛାଡ଼ିଦେଲେ ସହସ୍ର ସହସ୍ର ଯାତ୍ରୀଙ୍କର ସମାଗମ ହୁଏ । ନରସିଂହ ଦେବ ବହୁଦେଶାଗତ ସହସ୍ର ସହସ୍ର ନରନାରୀଙ୍କ ସମ୍ମୁଖରେ ନିଜର ଯଶକୁ ଚିରସ୍ଥାୟୀ କରିବା ଲାଗି ଏହି ସ୍ଥାନକୁ ବାଛିନେଲେ । ହୁଏତ ପ୍ରଥମେ ପାତ୍ରମନ୍ତ୍ରୀମାନେ ନିର୍ଜନ, ଶିଳାଦୁର୍ଲ୍ଲଭ, ଦୁର୍ଗମ ବାଲୁକା ପ୍ରାନ୍ତରରେ ଗୋଟିଏ ବିରାଟ ମନ୍ଦିର ନିର୍ମାଣ କରିବାରୁ ନିବୃତ୍ତ

ହେବାକୁ ଗଜପତିଙ୍କୁ କହିଥିବେ। କିନ୍ତୁ ଯଶୋଲିପ୍ସୁ ନରସିଂହ ସେ ସବୁରେ କର୍ଣ୍ଣପାତ କରିନଥିବେ ଏବଂ ବୀର ନରସିଂହ ସକଳ ବାଧାବିଘ୍ନକୁ ହସି ଉଡ଼ାଇଦେଇଥିବେ । ଶେଷରେ ଏଠାରେ କେବଳ ମନ୍ଦିର ତିଆରି ହେବାର ନୁହେଁ, ପୁରୀ ମନ୍ଦିରଠାରୁ ଉଚ୍ଚତର ଓ ଭୁବନେଶ୍ୱର ମନ୍ଦିରଠାରୁ ସୁନ୍ଦରତର ମନ୍ଦିର ଗଢ଼ା ହେବାର ସ୍ଥିରହେଲା । କିନ୍ତୁ ଗଜପତିଙ୍କର ସେହି ଦୁର୍ଦ୍ଦାନ୍ତ ନାମ-ଲୋଭରେହିଁ ଓଡ଼ିଆ ଜାତିର ଏହି ବିରାଟ କୀର୍ତ୍ତିର ଉତ୍‌ଥାନ ସହିତ ପତନର ବୀଜ ମଧ୍ୟ ନିହିତି ଥିଲା ।

ଭୁବନେଶ୍ୱର ମନ୍ଦିର ଶିଳାସୁଲଭ ସ୍ଥାନରେ ଅବସ୍ଥିତ । ଭୁବନେଶ୍ୱର ନଗର ମଧ୍ୟ ଶିଳ୍ପୀମାନଙ୍କର ବାସଭୂମି । କିନ୍ତୁ ତା' ସତ୍ତ୍ୱେ ଏହି ମନ୍ଦିର ସମ୍ପୂର୍ଣ୍ଣ ହେବାକୁ ଚାରି ପୁରୁଷ କଟିଯାଇଥିଲା । ସେଇଯୋଗୁ ବୋଧହୁଏ ଏହା ପ୍ରାଚୀନତମ ମନ୍ଦିର ହେଲେହେଁ ଏଯାବତ୍ ସୁଦୃଢ଼ ଅଛି । କିନ୍ତୁ ନରସିଂହ ଦେବଙ୍କର ମନ୍ଦିର-ନିର୍ମାତା ଭାବରେ ଆଉ କିଏ ଯଶ ନେଇଯିବ, ଏକଥା ବୋଧହୁଏ ଅସହ୍ୟ ଥିଲା । ସେ ମନେକଲେ, କୋଣାର୍କର ବିରାଟ ମନ୍ଦିର ତାଙ୍କର ଜୀବନ କାଳରେ ଆରମ୍ଭ ଓ ଶେଷ ହେବ ଏବଂ ମନ୍ଦିର ନିର୍ମାଣର ଲୋଭନୀୟ ଗୌରବ, ସେ ମୃତ୍ୟୁ ପୂର୍ବରୁ ଉପଭୋଗ କରିଯିବେ । ସେଥିଲାଗି ସାମାନ୍ୟ ବାରବର୍ଷ ଭିତରେ ସୁଦୂର ପର୍ବତ-ଗହ୍ୱର ମନ୍ଥନ କରି ବିରାଟ ଶିଳାଖଣ୍ଡମାନ ବହୁ ଆୟାସରେ ବହୁପଥ ଅତିକ୍ରମ କରାଇ ଓ ସେ ସବୁ ଦ୍ୱାରା ଜଳାର୍ଦ୍ର, କୋମଳ, ବାଲୁକାମୟ ନଦୀଗର୍ଭକୁ ପୋତି ଓ ତା' ଉପରେ ପତନ ପକାଇ, ବିରାଟ ମନ୍ଦିରମାନ ଠିଆକରାଇବାର ଚେଷ୍ଟା କରାଗଲା । ଶିବେଇ ସାନ୍ତରା ତତଲା ଯାଉ ଖାଇବାର ଗଳ୍ପ ଓ ବାରଶ' ବଢ଼େଇ ଓ ପୁଅର ଗଳ୍ପରୁ ଏହା ବେଶ୍ ଅନୁମାନ କରାଯାଇପାରେ ଯେ, ଶିଳ୍ପୀ ଓ ସ୍ଥପତିମାନଙ୍କୁ ଏହି ବାଲୁକା ପ୍ରାନ୍ତରରେ ଓ ଏତେ ଅଳ୍ପକାଳ ମଧ୍ୟରେ ଏପରି ପ୍ରକାଣ୍ଡ ପ୍ରକାଣ୍ଡ ଶିଳା ଓ ଲୌହ ସ୍ତମ୍ଭମାନଙ୍କୁ ଘେନି ବିରାଟ ମନ୍ଦିରମାନ ଗଢ଼ିବାରେ ଅସମ୍ଭବକୁ ସମ୍ଭବ କରିବାକୁ ପଡ଼ିଥିଲା । କଲୋନ୍‌ର ସୁପ୍ରସିଦ୍ଧ ଗୀର୍ଜାଘର ପୂର୍ଣ୍ଣ ହେବାକୁ ଚାରିଶତ ବର୍ଷ ଲାଗିଥିଲା । ଆଗ୍ରାର ତାଜମହଲ ପୂର୍ଣ୍ଣ ହେବାକୁ ଦୀର୍ଘ ବାଇଶି ବର୍ଷକାଳ କଟିଯାଇଥିଲା । ତାଜମହଲ ପୁଣି କୋଣାର୍କ ତୁଳନାରେ କି କ୍ଷୁଦ୍ର । କଳା-ସରସ୍ୱତୀ ଅତ୍ୟନ୍ତ ମନ୍ଥରଗାମିନୀ ଓ ଧୀରା । ଲକ୍ଷ୍ମୀର ଉପାସକ ନରସିଂହ ଦେବ, ତ୍ୱରିତ ଯଶ ଲାଗି, କୋଣାର୍କର ଶିଳ୍ପୀମାନଙ୍କୁ ତରବାରିର ଭୟ ଦେଖାଇ କଳା-ଦେବୀଙ୍କୁ ଦ୍ରୁତଗାମିନୀ କରିବାକୁ ଚେଷ୍ଟାକରିବାରୁ, ବେଗ ସହି ନ ପାରି ଦେବୀ ଭଗ୍ନଜାନୁ ହୋଇ କୋଣାର୍କର ଭଗ୍ନଶିଳାସ୍ତୂପରୂପରେ ଭୂତଳରେ ପଡ଼ିଯାଇଛନ୍ତି । କୋଣାର୍କର ପ୍ରକୃତ ପତନ ବୋଧହୁଏ ଏହିଠାରେ । ଚୁମ୍ବକ ପ୍ରସ୍ତରର କିମ୍ବଦନ୍ତୀ ଓ ପଣ୍ଡିତ କୃପାସିନ୍ଧୁଙ୍କ ପ୍ରତିପାଦିତ କଳାପାହାଡ଼

ମତକୁ ବିଶ୍ୱାସ ସହଜରେ ଗ୍ରହଣ କରିପାରୁନାହିଁ । ନରସିଂହ ଦେବଙ୍କ ଯଶୋଦ୍ଦେଶ ଓ ଅ-ସ୍ଥାନରେ ମନ୍ଦିରର ପ୍ରତିଷ୍ଠାହିଁ ବୋଧହୁଏ ଏହି ବିପର୍ଯ୍ୟୟର ମୂଳ କାରଣ ।

ନରସିଂହ ଦେବ ଓ ଶିବେଇ ସାନ୍ତରାଙ୍କୁ ଲୋକେ ମନେରଖିଥିଲେ ମଧ୍ୟ ସେମାନଙ୍କର ବିରାଟ ଆକାଂକ୍ଷା ଧୂଳିରେ ମିଶିଯାଇଛି । ମନ୍ଦିରଗୁଡ଼ିକ ପରିପୂର୍ଣ୍ଣ ବିରାଟତାରେ ଆଜି ପର୍ଯ୍ୟନ୍ତ ଠିଆ ରହିଥିଲେ, ନରସିଂହ ଓ ଶିବେଇ ସାନ୍ତରାଙ୍କ ଯଶ ଆଜି ଜନମୁଖରେ ଘୋଷିତ ହେଉଥାନ୍ତା ଓ ଯେଉଁ ଶତଶତ ଶିଳ୍ପୀମାନଙ୍କର ବାରବର୍ଷର ଜୀବନ ଓ ସ୍ୱପ୍ନରେ ଏହି ମନ୍ଦିର ରୂପାୟିତ, ସେମାନେ ଲୋକ-ମନରେ ଲଘୁତର ଆସନ ପାଇଥାନ୍ତେ; କିନ୍ତୁ ତା' ହେବାର ନୁହେଁ । ନରସିଂହଙ୍କର ମିଥ୍ୟା ଯଶ ଲୁପ୍ତ ହୋଇ, ଦରିଦ୍ର ଶିଳ୍ପୀର ଜୀବନ-ସମ୍ପଦ ଆଜି ଭଗ୍ନ କୋଣାର୍କରେ ଫୁଟି ବାହାରିଛି । ବାରଶତ ଶିଳ୍ପୀ ଘରଦ୍ୱାର, ପ୍ରିୟଜନମାନଙ୍କୁ ବାରବର୍ଷ କାଳ ଛାଡ଼ି, ରାଜାର ଆଦେଶ ପାଳନ କରିବାକୁ ଏହି ନିର୍ଜନ ବେଳାରେ ପ୍ରାଣ ଉତ୍ସର୍ଗ କରିଦେଇଥିଲେ । ସେମାନେ ଦୀନଦରିଦ୍ର ଥିବେ ସତ; ରାଜାଙ୍କର ଅନ୍ନାପେକ୍ଷୀ ସେମାନେ ସତ; କିନ୍ତୁ ସେମାନଙ୍କ ପ୍ରାଣରେ ରୂପଲୋକର ଏପରି ବିକାଶ ଘଟିଥିଲା, ଯାହାହିଁ ଏହି ମନ୍ଦିରକୁ ଏପରି ରୂପମୟ କରି ପକାଇ ଅଛି । ସୂର୍ଯ୍ୟଙ୍କୁ ମଝିରେ ରଖି ମନ୍ଦିରଗାତ୍ରରେ ବିଶ୍ୱର ଚିତ୍ର ଦେବା, ମନ୍ଦିରକୁ ରଥର ଆକୃତି ଦେବା ଓ ମୂଳରୁ ଚୂଳଯାଏଁ ସମଗ୍ର ଶିଳାରେ ରୂପର ଅନିନ୍ଦ୍ୟ ଲୀଳା ଫୁଟାଇବାର କଳ୍ପନା ସେହି ଦରିଦ୍ର ଶିଳ୍ପୀମାନଙ୍କ ଠାରୁ ଆସିଥିବ । ସେଥିରେ ନରସିଂହ ଦେବଙ୍କର ଅଂଶ ବୋଧହୁଏ କିଛି ନାହିଁ; କିନ୍ତୁ ଇତିହାସ ସେହି ବାରଶତ ଶିଳ୍ପୀଙ୍କୁ ଭୁଲିଯାଇଛି; ତାଙ୍କର ନାମଧାମ, ଦେଶକାଳ ଆଜି ସବୁ ଲୁପ୍ତ । କିନ୍ତୁ ଆମ୍ଭେମାନେ ଯେତେବେଳେ କୋଣାର୍କକୁ ନମସ୍କାର କରୁଁ, ତାହା ସେହି ଦରିଦ୍ର ଶିଳ୍ପୀ ଓ ଶ୍ରମିକମାନଙ୍କ ପଦତଳେ ପହଞ୍ଚେ । ସେହିମାନଙ୍କ ରକ୍ତରେ ଏ ପାଷାଣରାଶି ଜୀବନ୍ତ ହୋଇଉଠିଛି । ଆମର ସେ ଭକ୍ତି ଓ ଶ୍ରଦ୍ଧାରେ ନରସିଂହ ଦେବଙ୍କର ଅଂଶ ନିଶ୍ଚୟ ନ୍ୟୂନ । କୋଣାର୍କରେ ଯେପରି କି ପାର୍ଥିବ ଯଶର ଅପମାନ ଓ ଚିରଲାଞ୍ଛିତ କଳାର ବିଜୟ ଘୋଷିତ ହୋଇଅଛି ।

––

# ସନ୍ନ୍ୟାସ ଓ ସଂସାର

ଭାରତୀୟ ଧର୍ମ ଓ ସଂସ୍କୃତିର ପୃଥିବୀମୟ ଓ ଆମ ନିଜ ମାଟିରେ-ମଧ୍ୟ ଏକ ବ୍ୟାପକ କୁତ୍ସା ଅଛି ଯେ, ଏହା ଜୀବନ ଓ ସଂସାର ପ୍ରତି ବୀତରାଗ, ଏହା ପଳାୟନ-ପନ୍ଥୀ, ଏହା ଯେତେ ଐହିକ ନୁହେଁ ଯେତେ ପାରତ୍ରିକ ।

ଭାରତୀୟ ସଂସ୍କୃତିର ଏ ନିନ୍ଦା ଖ୍ରୀଷ୍ଟୀୟ ମିସନାରୀମାନଙ୍କଦ୍ୱାରା ହିଁ ବିଶେଷ ପ୍ରଚାରିତ ହୋଇଥିଲା । ଗତ ଦୁଇଶତ ବର୍ଷ ଧରି ସାହେବ ଲୋକ ଯାହା କହିଲେ, ତାହା ଆମ ନିକଟରେ ବେଦବାକ୍ୟଠାରୁ ଅଧିକ ମାନ୍ୟ ହୋଇଆସିଛି । ତେଣୁ ଆମ ଦେଶର ଅଧିକାଂଶ ତଥାକଥିତ ଶିକ୍ଷିତ ଲୋକେ ମଧ୍ୟ ଆମ ନିଜ ସଂସ୍କୃତିକୁ ଏହି ଚଷମାରେ ଦେଖି, ପାଶ୍ଚାତ୍ୟର ଅନୁକରଣକୁ ମାନବଜୀବନର ପରମ ସାର୍ଥକତା ମନେକରିବାର ଦେଖାଯାଉଛି ।

କିନ୍ତୁ ସାମାନ୍ୟ ଚିନ୍ତା କଲେ ଏ ଧାରଣା ପୂରାପୂରି ମିଥ୍ୟା ନ ହେଲେହେଁ ଅନ୍ତତଃ ଅର୍ଦ୍ଧସତ୍ୟ ବୋଲି ତୁରନ୍ତ ପ୍ରମାଣିତ ହେବ । ପୁଣି ଅର୍ଦ୍ଧସତ୍ୟ ସତ୍ୟର ସମ୍ମାନ ପାଇ ନ ପାରେ – ତାହା ମିଥ୍ୟାଠାରୁ ଅଧିକ ମାରାତ୍ମକ ଓ ସର୍ବଥା ପରିତ୍ୟାଜ୍ୟ ।

ହିନ୍ଦୁ ପୌରାଣିକ ସାହିତ୍ୟର ମୁଖ୍ୟନାୟକ ରାମ ଓ କୃଷ୍ଣଙ୍କୁ ହିନ୍ଦୁ ସଂସ୍କୃତିର ସର୍ବୋତ୍ତମ ପ୍ରତୀକ ବୋଲି ଗ୍ରହଣ କରିନେବାରେ କାହାରି ହେଲେ ଆପତ୍ତି ଥାଇନପାରେ । ଅନ୍ୟ ଆଲୋଚନା ନକରି କେବଳ ଏହି ଗୋଟିଏ ପ୍ରଶ୍ନର ଉତ୍ତର ମିଳୁ ଯେ– ଏ ଦୁହେଁ ସନ୍ନ୍ୟାସ ଗ୍ରହଣ କରିଥିଲେ କି ? ଏମାନେ ସଂସାର ଛାଡ଼ି ପଳାଇ-ଥିଲେ କି ? ଏମାନେ ଜୀବନପ୍ରତି ବୀତଶ୍ରଦ୍ଧ ଥିବାର କେଉଁଠି କିଛି ବଳବତ୍ ପ୍ରମାଣ ଅଛି କି ? ତେବେ ଏମାନଙ୍କ ପ୍ରଚାରିତ ଧର୍ମଟା କିପରି ଓ କାହିଁକି ସଂସାର-ବିରାଗୀ ହେବ ?

ଭଗବତ୍ ଗୀତାକୁ ଶ୍ରୀକୃଷ୍ଣଙ୍କର 'ମେସେଜ୍' ବା ମାନବଜାତି ପ୍ରତି ବାଣୀ କୁହା-ଯାଇପାରେ । ଏହି ଶ୍ରୀକୃଷ୍ଣ ନିଜେ ଏକ ସମୃଦ୍ଧ, ଦିଗ୍‌ବିଜୟୀ ଓ ବିଳାସମୟ ସମ୍ରାଟର ଜୀବନ ଯାପନ କରୁଥିଲେ । ଅନ୍ତତଃ ଭଗବତ୍ ଗୀତାରେ ଏପରି ଜୀବନଯାପନ ନକରିବାକୁ କୌଣସିଠାରେ ସେ କହିନାହାନ୍ତି । ସମଗ୍ର ଗୀତାରେ ତାଙ୍କର ମୁଖ୍ୟ-

* ସମାଜ ।

ଉପଦେଶ ହେଉଛି, ଅନାସକ୍ତ ଓ ନିରହଂକାରଭାବ ପୋଷଣ କରିବା । ଏହି ଦୁଇଟି ଭାବକୁ ଅନ୍ତରରେ ବଞ୍ଚାଇ ଯିଏ ଯେପରି ଜୀବନଯାପନ କରିପାରେ, ସେଥିରେ କିଛି ହିଁ ଯାଏଆସେ ନାହିଁ । ନିରାସକ୍ତ ଥାଇ ପ୍ରତ୍ୟହ କ୍ରୁରକର୍ମ କରୁଥିବା ବ୍ୟାଧ ମଧ୍ୟ ଗୁରୁସ୍ଥାନୀୟ ଲୋକ କିପରି ହୋଇପାରେ, ତାହା ମହାଭାରତର ଏକ ସୁପରିଚିତ ଗଳ୍ପ ଆମକୁ ଶିକ୍ଷାଦେଉଛି । ଗୀତାର ଉପଦେଶ ମଧ୍ୟ ସେୟା । ଗୀତା ପୁଣି ଆଦର୍ଶ ମାନବର ଏକ ଚିତ୍ର ଆମ ଆଗରେ ଥୋଇଯାଇଛି । ଗୀତାର ଆଦର୍ଶ ମାନବର ନାମ ହେଉଛି 'ସ୍ଥିତପ୍ରଜ୍ଞ' । କିନ୍ତୁ ଗୀତାରେ 'ସ୍ଥିତପ୍ରଜ୍ଞ' ଲୋକ ସଂସାରତ୍ୟାଗୀ ସନ୍ନ୍ୟାସୀ ହେଇଯିବାର ଦୃଢ଼ ସଙ୍କେତ କୌଣସିଠାରେ ନାହିଁ । ସଂସାର ଭିତରେ ରହି ପ୍ରତ୍ୟେକ ଗୃହସ୍ଥ 'ସ୍ଥିତପ୍ରଜ୍ଞ'ର ଜୀବନ ଯାପନ କରୁ, ଏହା ହିଁ ଗୀତାର ପ୍ରଧାନ ପ୍ରତିପାଦ୍ୟ ବିଷୟ ।

ଆମ ଦେଖିବା ଭିତରେ ବାପୁଜୀ ଗୀତାର ସ୍ଥିତପ୍ରଜ୍ଞର ଯେ ଏକ ମହାନ୍ ଆଦର୍ଶ ଥିଲେ, ଏଥିରେ ଦ୍ୱି-ମତ ନଥାଇପାରେ । କିନ୍ତୁ କେଉଁ ଯୁକ୍ତିରେ କୁହାଯାଇପାରେ ଯେ, ଗାନ୍ଧିଜୀ ଜଣେ ସନ୍ନ୍ୟାସୀ ବା ଜୀବନ-ପ୍ରତି ବିରାଗୀ ଲୋକ ଥିଲେ ? ସେହି ମହାନ୍ ମହାତ୍ମା ଯେପରି ପରିପୂର୍ଣ୍ଣ ସରସ ଓ ସୌରଭମୟ ଭାବରେ ବଞ୍ଚିଥିଲେ ଓ ବଞ୍ଚିବାକୁ ଜାଣିଥିଲେ, ତାହା ଯେକୌଣସି କବିଜନର ସ୍ୱପ୍ନ । ଆମ ପରିବାରମାନଙ୍କର ସଂଖ୍ୟା ପାଞ୍ଚ, ଦଶ ଅବା ବାର; କିନ୍ତୁ ମହାତ୍ମାଙ୍କ ପରିବାର ସଂଖ୍ୟା ଥିଲା ଚାଳିଶ କୋଟି । ପୁଣି ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ, ଚାଳିଶ କୋଟି ସଂଖ୍ୟକ ପରିବାର ବନ୍ଧନ ମଧ୍ୟ ତାଙ୍କୁ ବାନ୍ଧିପାରି ନଥିଲା ଏବଂ ସେହିଯୋଗୁ ହିଁ ସେ ଥିଲେ ମହାତ୍ମା ଓ ଆମ ସକଳର ନମସ୍ୟ ।

ହିନ୍ଦୁଧର୍ମ ପରି ମହାମାନବ ବୁଦ୍ଧ ଓ ତାଙ୍କ ବାଣୀ ସମ୍ପର୍କରେ ମଧ୍ୟ ବୈରାଗ୍ୟ ଓ ନୈରାଶ୍ୟର କୁତ୍ସା ପ୍ରଚାରିତ ହୋଇଆସିଛି । କିନ୍ତୁ ଏହା କେବଳ କୁତ୍ସା, ମିଥ୍ୟା ଓ ବୁଝିବାର ଭୁଲ ମାତ୍ର । ରାଜକୁମାର ସିଦ୍ଧାର୍ଥ ଜୀବନରୁ ପଳାୟନ ପାଇଁ ରାଜପ୍ରାସାଦ, ସୁନ୍ଦରୀ ସ୍ତ୍ରୀ ଓ ନବଜାତ ପୁତ୍ରକୁ ପରିତ୍ୟାଗ କରି ଯାଇ ନ ଥିଲେ, ସେ ବାହାରିଥିଲେ ସତ୍ୟର ସନ୍ଧାନରେ । ସେ ଏକ ଉପାୟ ଖୋଜୁଥିଲେ ଯାହାଦ୍ୱାରା ପାର୍ଥିବ ଜୀବନ ଅଧିକ ଭୋଗ୍ୟ, ଅଧିକ ସୁନ୍ଦର ଓ ଅଧିକ ଭଦ୍ର ହୋଇପାରିବ । ସେହି ସତ୍ୟ ପାଇଲା ପରେ ସେ ପୁଣି ଘରକୁ ଫେରିଥିଲେ ଓ ସମଗ୍ର ଜଗତକୁ ଯେପରି, ସ୍ୱଲବ୍ଧ ସତ୍ୟକୁ ନିଜର ପିତା, ମାତା, ପତ୍ନୀ ଓ ପୁତ୍ରକୁ ମଧ୍ୟ ନିର୍ବିକାର ଭାବରେ ବିତରଣ କରିଥିଲେ । ପୁଣି ବୁଦ୍ଧ କୌଣସି ସମୟରେ ହେଲେ ଯେ ସତ୍ୟକୁ ଗ୍ରହଣ କରିବା ପାଇଁ କାହାକୁ ବାଧ୍ୟ କରିନଥିଲେ । ସାଧାରଣ ଗୃହସ୍ଥମାନଙ୍କୁ ସେ ଯେଉଁ ଉପଦେଶ ଦେଇଥିଲେ, ତାହା ପାଞ୍ଚଟି ଅଭ୍ୟାସ ମାତ୍ର – ଯାହାର ନାମ ପଞ୍ଚଶୀଳ; ଅର୍ଥାତ୍

ହିଂସା କର ନାହିଁ, ଚୋରି କର ନାହିଁ, ଯୌନ ଅନାଚାର କର ନାହିଁ, ମିଥ୍ୟା କୁହ ନାହିଁ ଓ ନିଶାଦ୍ରବ୍ୟ ସେବନ କର ନାହିଁ । ଯାଗଯଜ୍ଞ ନାହିଁ, ତୀର୍ଥଯାତ୍ରା ନାହିଁ, ପୌରୋହିତ୍ୟ ନାହିଁ, ଦାନ ଧର୍ମ ନାହିଁ, ପ୍ରାର୍ଥନା ନାହିଁ– ଏଗୁଡ଼ିକ କେବଳ କେତେଗୁଡ଼ିଏ ଅଭ୍ୟାସ ମାତ୍ର । ଏହି ଉପଦେଶ ତଳେ ଜୀବନ ପ୍ରତି ବିରାଗ କି ସରାଗ ଅଛି, ତାହା ଆମେ ଦେଖିପାରୁନାହେଁ କି ? ବୁଦ୍ଧଙ୍କ ପଞ୍ଚଶୀଳର ବିପରୀତଟି ଆମେ ପ୍ରତ୍ୟହ ଜୀବନରେ ଅଭ୍ୟାସ କରୁଛୁ ଓ ସେଥିପାଇଁ ହିଁ ଆଜିର ଏ ସଭ୍ୟତମ କାଳରେ ମଧ ରାଜନୈତିକ, ସାମାଜିକ ଓ ବ୍ୟକ୍ତିଗତ ଜୀବନରୁ ଚତୁର୍ଦ୍ଦିଗରେ ହାହାକାର ଉଠୁଛି – ହିଂସା କର, ମିଥ୍ୟା କହ, ଚୋରି କର, ଯୌନ-ଅନାଚାର କର, ମଦ୍ୟପାନ କର ଓ ଧ୍ୱଂସ ହୁଅ ବା ପ୍ରଧାନମନ୍ତ୍ରୀଙ୍କଠାରୁ ଦାବି କର ଯେ, ପ୍ରତ୍ୟେକ ଗ୍ରାମରେ ମାନସିକ ଚିକିତ୍ସାଳୟ ସ୍ଥାପିତ ହେଉ ।

ଅଢ଼େଇ ହଜାର ବର୍ଷ ପୂର୍ବେ ମନୁଷ୍ୟର ଜୀବନକୁ ସୁସ୍ଥ, ଭଦ୍ର, ସୁନ୍ଦର, ସୁଢ଼ଳ କରିବା ପାଇଁ ବୁଦ୍ଧ ମନୁଷ୍ୟର ଉପରବର୍ଣ୍ଣିତ କେତେଗୁଡ଼ିଏ ମାରାତ୍ମକ ଜାନ୍ତବ ପ୍ରକୃତି ଉପରେ ଲଗାମ୍ ଦେବାକୁ ବତାଇଥିଲେ । ସେ ଜୀବନକୁ ଘୃଣା କରୁଥିଲେ ଓ ତାଙ୍କ ବାଣୀ ନୈରାଶ୍ୟ ଓ ପଳାୟନର ବାଣୀ କହିବା ଘୋର ଅଜ୍ଞତା ପରିଚାୟକ ମାତ୍ର । ଗୌତମ ବୁଦ୍ଧ 'ମାୟା' ଶବ୍ଦ ଉଚ୍ଚାରଣ କରି ନ ଥିଲେ । ଏବେ 'ମାୟା'ବାଦ ହିଁ ଭାରତୀୟ ସଂସ୍କୃତିର ପ୍ରତୀକ ବୋଲି କୁହାଯାଇଥାଏ । ମାୟାବାଦ ଭାରତର ଦୀର୍ଘ ସାତହଜାର ବର୍ଷ ବ୍ୟାପୀ ସଂସ୍କୃତିର ଗୋଟାଏ ଯୁଗରେ ମାତ୍ର ଦେଖାଦେଇଥିଲା ଓ ପ୍ରଭାବ ପକାଇଥିଲା । ଅନ୍ତତଃ ବୁଦ୍ଧ ଜଗତକୁ 'ମାୟା' ବୋଲି ପ୍ରଚାର କରିନାହାନ୍ତି । ସାଗରର ଲବଣତ୍ୱ, ଶର୍କରାର ମିଷ୍ଟତ୍ୱ ବା ତିନ୍ତୁଳିର ଅମ୍ଳତ୍ୱ ପରି ବୁଦ୍ଧ ଆବିଷ୍କାର କଲେ ସେ ଜୀବନର ନିଗୂଢ଼ତମ, ଅପରିହାର୍ଯ୍ୟ ଧର୍ମ ହେଉଛି 'ଦୁଃଖ' ଏବଂ ସେ ଦୁଃଖ ପରିହାର କରି ଜୀବନକୁ କିପରି ସୁଖମୟ କରିବାକୁ ହେବ, ତାର ପନ୍ଥା ମଧ ସେ ବାହାର କରିଥିଲେ । ତାହା ଆମେ ମାନିପାରୁ ବା ନମାନିପାରୁ । କିନ୍ତୁ ଆମର ଏହା କହିବାର କୌଣସି ଯୁକ୍ତି ନାହିଁ ଯେ, ବୁଦ୍ଧ ଜୀବନ ଓ ଜଗତକୁ ଘୃଣା-କରୁଥିଲେ । ଆମେ ଯଦି ଭାବିବା ଯେ, ଆମ ଜୀବନ ସୁଖମୟ, ତେବେ ବୁଦ୍ଧଙ୍କ ନାମୋଚ୍ଚାରଣର ମଧ କୌଣସି ଆବଶ୍ୟକତା ଆମ ପାଖରେ ନାହିଁ ଏବଂ ସେଥିରେ ବୁଦ୍ଧଙ୍କର ବିଚଳିତ ହେବା କୌଣସି କାରଣ ନାହିଁ ।

ଅଢ଼େଇ ହଜାର ବର୍ଷ ପରେ ଶ୍ରୀ ଅରବିନ୍ଦ ଠିକ୍ ବୁଦ୍ଧଙ୍କ ପରି ଜୀବନକୁ ସୁନ୍ଦର, ମଧୁର, ଐଶ୍ୱର୍ଯ୍ୟମୟ ଓ ଶାନ୍ତି ସୁଖମୟ କରିବା ପାଇଁ ହିଁ ଉପଦେଶ ଦେଇଗଲେ । ଶ୍ରୀ ଅରବିନ୍ଦ ସ୍ପଷ୍ଟ ବାଣୀରେ 'ମାୟାବାଦ'ର ଧ୍ୱଂସସାଧନ କରି ବେଦ, ଗୀତା ଓ

ବୁଦ୍ଧବାଣୀରେ ଥିବା ଶୁଦ୍ଧ, ସୁନ୍ଦର, ସୁମହତ୍ ଜୀବନର ଆଦର୍ଶ ଏହି ପୁରାଣଭୂମିରେ ପୁଣି ଠିଆକରାଇଛନ୍ତି । ଏହା କେବଳ ଭାରତ ପାଇଁ ନୁହେଁ, ସମଗ୍ର ମାନବଜାତି ପାଇଁ । କାରଣ ଏହି ବିଜ୍ଞାନପ୍ରଭାବିତ, ଯନ୍ତ୍ରପୂଜକ ଯୁଗରେ ପୃଥିବୀର ସକଳ ଦେଶର ଜନସାଧାରଣ ବର୍ତ୍ତମାନ ଏକଇ ପ୍ରକାର ଦୁଃଖ ଓ ସଙ୍କଟର ସମ୍ମୁଖୀନ– ଯାହାର ଚିକିତ୍ସା କୌଣସି ଯନ୍ତ୍ର ବା ବିଜ୍ଞାନ ବା କୌଣସି ଭେଷଜ ଗବେଷଣାଳୟ ଯୋଗାଇପାରୁନାହିଁ । ଏ ରୋଗ ଲେଡ଼ି ମାକ୍‌ବେଥର ରୋଗ– ଯାହାର ନାମ ବା ଚିକିତ୍ସା ବୈଦ୍ୟଶାସ୍ତ୍ରରେ ନଥାଏ । ଏହାର ପ୍ରତିକାର କେବଳ ହୁଏତ ବୁଦ୍ଧଙ୍କର ପଞ୍ଚଶୀଳ ପାଳନରେ ଅଥବା ଶ୍ରୀ ଅରବିନ୍ଦଙ୍କ ସର୍ବସମର୍ପିତ ପୂର୍ଣ୍ଣଯୋଗରେ । ଭିନ୍ନ ଭିନ୍ନ ଧର୍ମରେ ଠିକ୍ ଏହି ବ୍ୟବସ୍ଥାର ଭିନ୍ନ ଭିନ୍ନ ନାମ ଥାଇପାରେ; କିନ୍ତୁ ତତ୍ତ୍ୱ ଏକ ଓ ଅଭିନ୍ନ ।

ବୁଦ୍ଧ ତତ୍ତ୍ୱତର୍କକୁ ବେଶୀ ପସନ୍ଦ ନ କରି ଅଭ୍ୟାସ ଉପରେ ବେଶୀ ଜୋର୍ ଦେଉଥିଲେ । ଶ୍ରୀ ଅରବିନ୍ଦଙ୍କ ଯୋଗମାର୍ଗ ମଧ୍ୟ ବୁଦ୍ଧବାଣୀ ପରି ସରଳ, ବାହ୍ୟାଚାରଶୂନ୍ୟ ଓ ଏକାନ୍ତ ଭାବରେ ମନନ-ଅଭ୍ୟାସରେ ପର୍ଯ୍ୟବସିତ ।

ଭାରତୀୟ ଧର୍ମ ଓ ସଂସ୍କୃତି ଯେ ସନ୍ନ୍ୟାସ ନୁହେଁ, ବୈରାଗ୍ୟ ନୁହେଁ, ନୈରାଶ୍ୟ ନୁହେଁ, ବରଂ ଜୀବନକୁ ସୁନ୍ଦରତର ଓ ମଧୁରତର କରିବା– ତାହା ଏହି ଉଭୟ ଭାରତୀୟ ମହାପୁରୁଷଙ୍କ ବାଣୀରେ ଯେ ସ୍ପଷ୍ଟ ଭାବରେ ଉଚ୍ଚାରିତ ହୋଇଛି, ତାହା ଆମ୍ଭେମାନେ ଯେପରି ସ୍ମରଣ ରଖୁ । ଉଭୟ ବୁଦ୍ଧ ଓ ଶ୍ରୀ ଅରବିନ୍ଦ ଜୀବନର ପଳାୟନ ପାଇଁ କୌଣସିଠାରେ ତ ନିର୍ଦ୍ଦେଶ ଦେଇନାହାନ୍ତି; ବରଂ ଜୀବନକୁ ଉପଭୋଗ୍ୟ, ସୁନ୍ଦର ମଧୁର କରିବା ପାଇଁ ଉଭୟେ କିପରି ସ୍ପଷ୍ଟ ନିର୍ଦ୍ଦେଶ ଦେଇ-ଯାଇଛନ୍ତି, ତାହାର ଦୁଇଟି ମାତ୍ର ଦୃଷ୍ଟାନ୍ତ ଦେଇରଖେଁ ।

ଥରେ ଆନନ୍ଦ ତଥାଗତଙ୍କୁ ଜିଜ୍ଞାସା କଲେ, ''ମହାଭାଗ, ଯାହା କମନୀୟ, ଯାହା ସୁନ୍ଦର, ତାହାର ସାହଚର୍ଯ୍ୟ, ଘନିଷ୍ଠତା ବା ବନ୍ଧୁତା ଧର୍ମଜୀବନର ଅର୍ଦ୍ଧେକ କି ?''

ତଥାଗତ ଉତ୍ତର କଲେ, ''ତାହା ନୁହେ ଆନନ୍ଦ । ଯାହା କମନୀୟ ଓ ଯାହା ସୁନ୍ଦର, ତାହାର ସାହଚର୍ଯ୍ୟ ଘନିଷ୍ଠତା ବା ବନ୍ଧୁତା, ଧର୍ମଜୀବନର ଅର୍ଦ୍ଧେକ ନୁହେଁ ଆନନ୍ଦ, ତାହା ହିଁ ପୂରାପୂରି ଧର୍ମଜୀବନ ।' କମନୀୟ ଓ ସୁନ୍ଦର ସହିତ ଯାହାର ସାହଚର୍ଯ୍ୟ, ଘନିଷ୍ଠତା ବା ବନ୍ଧୁତା, ସେ ସ୍ୱାଭାବିକ ଭାବରେ ଆର୍ଯ୍ୟ ଅଷ୍ଟାଙ୍ଗମାର୍ଗରେ ନିଜକୁ ପରିଚାଳିତ କରିପାରିବ ।''

ଶ୍ରୀ ଅରବିନ୍ଦଙ୍କ ବାଣୀରେ –

''ଜ୍ଞାନ, ଶକ୍ତି ଓ ଆନନ୍ଦ ପରି ସୌନ୍ଦର୍ଯ୍ୟ ମଧ୍ୟ ଦୈବୀ ଚେତନାର ପ୍ରକାଶର

ଏକମାତ୍ର ପନ୍ଥା । ଏକ ମନୋହର ଶାଢ଼ୀ ବା ସୁନ୍ଦର ପ୍ରାସାଦ, ଉଭୟେ ବସ୍ତୁ ଭିତରେ ଥିବା ସୌନ୍ଦର୍ଯ୍ୟ-ତତ୍ତ୍ୱର ହିଁ ବହିଃପ୍ରକାଶ ଓ ତାହାହିଁ ସେମାନଙ୍କ ପରମ ମୂଲ୍ୟ ।''

ଶ୍ରୀ ମା'ଙ୍କ ବାଣୀରେ –

''ତୁମକୁ ଯଦି ସୌନ୍ଦର୍ଯ୍ୟକୁ ଘୃଣା କରିବାକୁ କେବେ ବା କେଉଁଠି କୁହାଯାଏ, ତେବେ ଧରିନେବ ଯେ ତାହା ଅସୁର ଶକ୍ତିର ତମପ୍ରତି ଶ୍ରେଷ୍ଠ ମାରଣାସ୍ତ୍ର । ସୌନ୍ଦର୍ଯ୍ୟକୁ ସମ୍ମାନ ନଦେବା ଦ୍ୱାରା ଭାରତର ସଂସ୍କୃତି ଧ୍ୱଂସପ୍ରାପ୍ତ ହୋଇସାରିଛି । ଦୈବୀଶକ୍ତି ଆତ୍ମାରେ ପ୍ରେମ ରୂପେ, ମନରେ ଜ୍ଞାନ ରୂପେ, ପ୍ରାଣରେ ଶକ୍ତି ରୂପେ ଓ ଜଡ଼ରେ ସୌନ୍ଦର୍ଯ୍ୟ ରୂପେ ପ୍ରକଟିତ ହୁଏ । ସୌନ୍ଦର୍ଯ୍ୟକୁ ଅସମ୍ମାନ ବା ପରିହାର କରିବାର ଅର୍ଥ, ତମେ ବସ୍ତୁଜଗତରେ ଦୈବୀଶକ୍ତିକୁ ପ୍ରକାଶିତ ହେବାକୁ ଦେଲ'ନାହିଁ ଓ ସେହି ଅଂଶକୁ ସମର୍ପି ଦେଲ ଅସୁରଶକ୍ତି ହାତରେ ।''

ରାଷ୍ଟ୍ରୀୟ ସ୍ତରରେ ସ୍ୱାଧୀନୋତ୍ତର ଭାରତର ପଞ୍ଚବାର୍ଷିକ ଯୋଜନା ଭାରତର ଜନସାଧାରଣଙ୍କୁ ଏକ ସଭ୍ୟ, ଭଦ୍ର, ସୁନ୍ଦର ଜୀବନ ଓ ସମାଜର ଗଠନ ପାଇଁ ନେଇ ଚାଲିଛି । ସେହି ଆଧୁନିକ ଯୋଜନାରେ ଆମର ପୁରାଣ ସାଂସ୍କୃତିକ ପ୍ରେରଣା- ମିଶିଯାଉ । ଆମର ଆଦର୍ଶ ଯେ ସନ୍ନ୍ୟାସ ନୁହେଁ, ପଳାୟନ ନୁହେଁ, ତାହା ହିଁ ଆଜି ଆମ ଲୋକେ ଗଭୀର ଭାବରେ ଅନୁଭବ କରିବା ଉଚିତ୍ । ଆମର ଆଦର୍ଶ ହେବା ଉଚିତ୍, ଶକ୍ତି, ଜ୍ଞାନ ଓ ସୌନ୍ଦର୍ଯ୍ୟ ଦେଇ ଆମ ନିଜ ଜୀବନ, ନିଜ ସମାଜ; ନିଜ ପରିବେଶ, ନିଜ ଦେଶ ଓ ରାଷ୍ଟ୍ରକୁ ସୁନ୍ଦରତର ଓ ସଭ୍ୟତର କରି ଗଢ଼ିବା ।

——

# ଯୌନ ଓ ଯବନିକା*

## (ପ୍ରତିବାଦ)

'ନବଭାରତ'ର ଗତ ପୂଜା ସଂଖ୍ୟାରେ ପଣ୍ଡିତ ନୀଳକଣ୍ଠ ଦାସ 'ଭାରତୀ ସାହିତ୍ୟ ଓ ସାହିତ୍ୟରେ ଜୀବଧର୍ମ' ନାମକ ଏକ ପ୍ରବନ୍ଧରେ ଏକାଧିକ ଭ୍ରାନ୍ତ ମତ ପ୍ରଚାର କରିଛନ୍ତି । ଏଇ ଲେଖାରେ ମୁଁ ତା'ର ପ୍ରତିବାଦ କରୁଛି ।

ପଣ୍ଡିତ ନୀଳକଣ୍ଠ ଦାସ 'ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା, ବନିତା, ଲତା' – ଏହି ସଂସ୍କୃତ-ପ୍ରବାଦଟିରୁ ପ୍ରବନ୍ଧ ଆରମ୍ଭକରି ସେଥିର ପ୍ରକୃତ ଅର୍ଥ ଉପରେ ତିନୋଟି ଅସତ୍ୟ ମତ ଠିଆ କରାଇ ଅଛନ୍ତି । ତାହା ଏହି – (୧) ଉପରଲିଖିତ ସଂସ୍କୃତ ପ୍ରବାଦଟି କବିଙ୍କ ଭିଖ-ମଗା ଗୀତ । (୨) ଏହା ସୂଚନା କରେ ଯେ କବିତା କେବଳ ଯୌନ ସମ୍ଭୋଗର ବର୍ଣ୍ଣନା, (୩) ଏହି ପ୍ରଭାବ ଭାରତବର୍ଷକୁ ବିଦେଶରୁ ଅର୍ଥାତ୍ ଗ୍ରୀସ୍ ବା ପର୍ସିଆ ପ୍ରଭୃତି ଦେଶରୁ ଆସିଛି ।

ମୋ ମତରେ ଏଥିରୁ କୌଣସି ଟି ହିଁ ସତ୍ୟ ନୁହେଁ; କୌଣସିଟି ପକ୍ଷରେ ଯୁକ୍ତି, ଐତିହାସିକ ବା ସାମାଜିକ ସମର୍ଥନ ନାହିଁ ।

ପଣ୍ଡିତ ନୀଳକଣ୍ଠ 'ବିନାଶ୍ରୟେ ନ ବର୍ତ୍ତନ୍ତେ କବିତା ବନିତା ଲତା'କୁ କବିଙ୍କ ଭିଖ-ମଗା ଗୀତ ବୋଲି କହିଛନ୍ତି, ଅର୍ଥାତ୍ କବିଗୋଷ୍ଠୀ ପ୍ରତି ସେ ତାଚ୍ଛଲ୍ୟ ପ୍ରକାଶ କରିଛନ୍ତି । କିନ୍ତୁ ପଣ୍ଡିତେ ମନେ କରିବା ଉଚିତ୍ ଯେ ଜଗତରେ ବହୁ ଶ୍ରେଷ୍ଠ ବ୍ୟକ୍ତି ଭିକ୍ଷାନ୍ନରେହିଁ ବଞ୍ଚିଛନ୍ତି, କେବଳ କବି ନୁହେଁ । ହୋମର୍ ଭିଖ ମାଗୁଥିଲେ, ବୁଦ୍ଧ ମଧ୍ୟ ଭିକ୍ଷାନ୍ନରେହିଁ ଚଳୁଥିଲେ । କିନ୍ତୁ ସେମାନଙ୍କର ଭିକ୍ଷା ପ୍ରତି ତାଚ୍ଛଲ୍ୟ କରିବା ପୂର୍ବରୁ ସ୍ମରଣ କରିବା ଉଚିତ ଏହି ଭିକ୍ଷୁକମାନେ କି ଅମୂଲ୍ୟ ସଂପଦ ସମଗ୍ର ମାନବ ସଭ୍ୟତାକୁ ଦେଇଯାଇଛନ୍ତି । ସାଧାରଣ ଗୃହସ୍ଥର ସଂକୀର୍ଣ୍ଣ, ଆଶଂକାକୁଳ ଆର୍ଥିକ ସ୍ୱାଚ୍ଛନ୍ଦ୍ୟ ଅପେକ୍ଷା ବୁଦ୍ଧ, ଗାନ୍ଧୀ, ହୋମରଙ୍କ ଭିକ୍ଷାବଲମ୍ବନ ଯେ ଯଥେଷ୍ଟ ଗୌରବର ବସ୍ତୁ, ଏଥିରେ ମତଦ୍ୱୈଧ ନଥାଇପାରେ । ମାନବ ସଭ୍ୟତାକୁ ଗରୀୟାନ୍ କରିଯାଇଛନ୍ତି ଏହି ଦରିଦ୍ର ଭିକ୍ଷାଶୀର ଦଳ । ଉଦରାନ୍ନ ପରିବର୍ତ୍ତେ ସେମାନେ ଦେଇଯାଇଛନ୍ତି ସେମାନଙ୍କର ବିରାଟ ପ୍ରତିଭାର ବା ଅତିମାନବ ଜୀବନର ପରମ ସଂପଦ ।

---

* ଝଙ୍କାର, ୨ୟ ବର୍ଷ, ଅଷ୍ଟମ ସଂଖ୍ୟା ।

ଉକ୍ତ ସଂସ୍କୃତ ବାକ୍ୟରେ ତା'ର ଅଜ୍ଞାତନାମା କବି ଭିଖ ମାଗି ନାହାନ୍ତି, ସେ କେବଳ ଗୋଟିଏ ବାସ୍ତବ ଅଭିଜ୍ଞତାକୁ ରୂପ ଦେଇଛନ୍ତି ମାତ୍ର । ସେଥିରେ 'ଆଶ୍ରୟ' ବୋଲି ଯାହା କୁହାଯାଇଛି ତାହା ଏବକାଳର ଭାଷାରେ 'ଇକନମିକ୍ ସେକ୍ୟୁରିଟି' ମାତ୍ର । କେବଳ କବି ବା ଶିଳ୍ପୀ ନୁହେଁ, ଏବେ ରାଷ୍ଟ୍ରର ପ୍ରତ୍ୟେକ ବ୍ୟକ୍ତି ଏଇ 'ଇକନ୍‌ମିକ୍ ସେକ୍ୟୁରିଟି' ଦାବି କରୁଛନ୍ତି । ଆର୍ଥିକ ନିଶ୍ଚିନ୍ତତା ନଥିଲେ ବଞ୍ଚିବା ଏକ ଭୟାବହ ବିଭୀଷିକା, କାବ୍ୟ ବା ଶିଳ୍ପ ସୃଷ୍ଟି ତ ଅସମ୍ଭବ କଥା । ମାତ୍ର ପଚାଶବର୍ଷ ତଳ ପର୍ଯ୍ୟନ୍ତ ଇଂଲଣ୍ଡର କବି ଓ ଶିଳ୍ପୀମାନେ ଗୋଟିଏ ଗୋଟିଏ ଧନୀ ସାମନ୍ତର ପେଟ୍ରୋନେଜ୍ ବା ପୃଷ୍ଠପୋଷାକତା ବା ପେଟପୋଷକତାରେହିଁ ବଞ୍ଚୁଥିଲେ । ଏବେ ବି ଯେ ଅବସ୍ଥା ବିଶେଷ ଭଲ ଆଡ଼କୁ ଆସିଛି କହିହେବନି । ଅନେକେ ବର୍ଣ୍ଣାଡ୍‌ଶ'ଙ୍କର ସ୍ୱାଚ୍ଛନ୍ଦ୍ୟ-ମୟଜୀବନକୁ ଏ ଯୁଗରେ ଲେଖକର ଆର୍ଥିକ ସମ୍ଭାବନାର ଆଦର୍ଶ ରୂପେ ଧରିଥାନ୍ତି । ସେମାନେ ଭୁଲିଯାନ୍ତି ଯେ ବିବାହ ହୋଇ ସ୍ତ୍ରୀ-ଧନ ନପାଇଲା ଯାଏଁ ଶ-ସାହେବଙ୍କର ସାହିତ୍ୟିକ ଖ୍ୟାତି ଓ ଆର୍ଥିକ ଅବସ୍ଥା ମର-ମର ହେଉଥିଲା । ଶ-ସାହେବ ଏବେ ବହୁ ଟଙ୍କା ପାନ୍ତି ବହିରୁ ଓ ବଡ଼ ବଡ଼ କଥା ଭଡ଼୍‌ଭଡ଼୍ କରି କହନ୍ତି, କିନ୍ତୁ ମା ଓ ସ୍ତ୍ରୀର ଆଶ୍ରୟ ବିନା ଶ' ଏତେ ଦୂରକୁ ଉଠିପାରିଥାନ୍ତେ କି ନାହିଁ ସନ୍ଦେହ । ଉଦରପୋଷଣର ଦୌରାତ୍ମ୍ୟରୁ ମୁକ୍ତି ନ ପାଇଲେ ମନିଷ କିଛିହିଁ କରି ନ ପାରେ । ଉକ୍ତ ସଂସ୍କୃତ ବାକ୍ୟରେ 'ଆଶ୍ରୟ'ର ଅର୍ଥ ଭିଖମଗା ନୁହେଁ, ଏହି ଉଦରପୋଷଣର ଦୌରାତ୍ମ୍ୟରୁ ମୁକ୍ତି ମାତ୍ର । ରବିଠାକୁରଙ୍କ ବିସ୍ତୀର୍ଣ୍ଣ ପୈତୃକ ଜମିଦାରୀ, କାଳିଦାସଙ୍କ ପାଇଁ ରାଜା ବିକ୍ରମାଦିତ୍ୟଙ୍କ ଦରବାର, ସେକ୍‌ସପିୟଙ୍କ ପାଇଁ ଆର୍ଲ୍ ଅବ୍ ସଦାମ୍ପଟନ୍‌ଙ୍କ ଅର୍ଥାନୁଗ୍ରହ, ଗେଟେଙ୍କ ୱୋଇମାର ରାଜ୍ୟର ଦେବାନୀ—ଏ ସବୁ 'ଆଶ୍ରୟ' ନଥିଲେ ବିଶ୍ୱ ସଂସ୍କୃତି ଯେ ଆଜି ଅତ୍ୟନ୍ତ ଦରିଦ୍ର ହୋଇଥାନ୍ତା, ଏକଥା ପଣ୍ଡିତ୍‌ଜୀ ମାନିବେକି ? ପଣ୍ଡିତ୍‌ଜୀ ନିଜର 'ଆଶ୍ରୟ'ଟିର କଥା ଭୁଲିଯାଉଛନ୍ତି କାହିଁକି ?

ତା'ପରେ ଉକ୍ତ ବାକ୍ୟରେ ବନିତା ଶବ୍ଦରୁ ପଣ୍ଡିତେ ଯାହା ଅର୍ଥ କରିଛନ୍ତି ଯେ କବିତା କେବଳ 'ବନିତା'କୁ ନେଇ ଅର୍ଥାତ୍ କେବଳ ଯୌନ-ଭୋଗ ଉପରେହିଁ ପ୍ରତିଷ୍ଠିତ, ତାହା ଯେପରି ଭ୍ରମାତ୍ମକ ସେହିପରି ଅନର୍ଥକ । ''ଅନୁପାନ ବିଭେଦେଣ କରୋତି ବିବିଧାନ୍ ଗୁଣାନ୍''— ଏହି ଆୟୁର୍ବେଦୀୟ ବାକ୍ୟକୁ 'ଛ'ମାଣ ଆଠଗୁଣ୍ଠ'ର ମଫସଲି ସଂସ୍କୃତାନଭିଜ୍ଞ ଗୋପୀ ସାହୁ ବୈଦ୍ୟ ଯେପରି ଅର୍ଥ କରିଥିଲା ଯେ ଅନୁପାନ ଦେଇ ଖାଇଲେ ଓଷଦ ବିଧା ମାଇଲା ପରି କାମ କରିବ — ଉଚ୍ଚକୋଟୀର ସଂସ୍କୃତଜ୍ଞ ପଣ୍ଡିତ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଏ ଅର୍ଥ ସେଇପରି ହାସ୍ୟୋଦ୍ଦୀପକ । କବିତାର ଆଶ୍ରୟ ଅନ୍ୱେଷଣର ପ୍ରୟୋଜନୀୟତା ଉପରେ କୁହାଯାଇଛି । ଲତାର ଆଶ୍ରୟ

ଖୋଜିବାରେ ପଣ୍ଡିତଙ୍କର କିଛି ବୋଧହୁଏ କହିବାର ନାହିଁ । କିନ୍ତୁ ବନିତାର ଆଶ୍ରୟ ଖୋଜିବା ମାନେ ଯୌନ-ସମ୍ଭୋଗ ଓ ସେହି ଯୌନ-ଭୋଗରୁ ହିଁ ବାହାରେ କବିତା । ପଣ୍ଡିତେ କିପରି ଏ ଅର୍ଥ କେଉଁଠୁ ପାଉଛନ୍ତି ବୁଝିବା ମୁସ୍କିଲ ! ଯୌନ-ସଂଭୋଗରୁ କବିତା ବାହାରେ ନା, ତାହାହେଲେ ପଣ୍ଡିତଜୀଙ୍କ ଗାଁରେ ଖାଲି ନୀଳକଣ୍ଠ ଦାସେ କବି ହୋଇନଥାନ୍ତେ – ସାରା ଗାଁର ଲୋକେ ପ୍ରତ୍ୟେକେ ବିବାହ ପରେ ଗୋଟିଏ ଗୋଟିଏ କବି ହୋଇଉଠିଥାନ୍ତେ ! ଯୌନ-ଭୋଗରୁ ଜନ୍ମେ ଜୀବସଂସାର, ଜନ୍ମନ୍ତି ମଧ ହୋମର, ଗାନ୍ଧୀ, ବୁଦ୍ଧ, ମହମ୍ମଦ ଓ ନିଜେ ପଣ୍ଡିତ ନୀଳକଣ୍ଠ – କବିତା, କେବଳ ପ୍ରତିଭାରୁ ଜନ୍ମ ନିଏ ।

ପ୍ରାଣର ଅନୁଭୂତିକୁ ସୁନ୍ଦର ଛନ୍ଦମୟୀ ଭାଷାରେ ପ୍ରକାଶକରିବାହିଁ କବିତା । ଯୌନ-ଅନୁଭୂତି ମନୁଷ୍ୟର ବହୁ ଅନୁଭୂତିରୁ ଏକତମ, ତେଣୁ ତାହା ମଧ କବିତାରେ ପ୍ରକାଶ ପାଏ ଏବଂ ଏହି ଅନୁଭୂତିଟି ସାର୍ବଜନୀନ ଓ ସର୍ବବ୍ୟକ୍ତିକ ଥିବାରୁ କବିତାରେ ଏହାର ପ୍ରକାଶ ଅନ୍ୟ ଅନୁଭୂତିଠାରୁ ଅଧିକ । ଜଗତରେ କେବଳ କେତେକ ଲୋକ ପେଟ୍ରିୟଟ୍, କେତେକ ମାତ୍ର ଧନୀ, କେତେକ ମାତ୍ର ଧର୍ମ-ପିପାସୀ, କେତେକ ମାତ୍ର ଦାର୍ଶନିକ ହୋଇପାରନ୍ତି – କିନ୍ତୁ ପ୍ରେମିକ ହେବାର ସୁଯୋଗ ଓ ଅଧିକାର ପ୍ରତ୍ୟେକ ନର ଓ ପ୍ରତ୍ୟେକ ନାରୀର । ଏ ଅଧିକାର କେବଳ ଜାନ୍ତବ ଯୌନ-ସଙ୍ଗମ ଲାଳସା ନୁହେଁ । ଏଇ ଅଧିକାର ଓ ପିପାସାର ପଛରେ ରହିଛି ଇହଜୀବନର ସକଳ ସାର୍ଥକତା । ଏଇ ଅଧିକାରର ଭୋଗ ହିଁ ଜୀବନଯୌବନର ତୁଳିକା ପ୍ରୟୋଗରେ ଜଗତର ଦରିଦ୍ରତମ କିଶୋର ଓ କିଶୋରୀକୁ ରୂପକଥାର ରାଜପୁତ୍ର ଓ ରାଜକନ୍ୟାରେ ପରିଣତ କରେ । ଏଇ ବୟସରେ ଶରୀରର ସୂକ୍ଷ୍ମ ଓ ସ୍ଥୂଳ ସକଳ ଇନ୍ଦ୍ରିୟ, ପାର୍ଥିବ ଜୀବନକୁ ପରିପୂର୍ଣ୍ଣରୂପେ ଉପଭୋଗ କରିବା ପାଇଁ ଜାଗ୍ରତ ଓ ସମର୍ଥ ହୋଇଉଠେ । କ୍ଷଣିକ ସମ୍ଭୋଗରୁ ଉଠେ ଚିରନ୍ତନ କଲ୍ୟାଣମୟ ଗୃହ । ପ୍ରଣୟିନୀର ମନୋହର ଅଙ୍ଗଲତାରେ ହୁଏ ଭବିଷ୍ୟତ ମାନବର ଖାଦ୍ୟର ସୃଷ୍ଟି । କ୍ରମେ ତରୁଣ ଓ ତରୁଣୀ ହୋଇ ଉଠନ୍ତି ଶୁକ୍ଳକେଶ ଜନକ-ଜନନୀ– ନବବଂଶର ପଥପ୍ରଦର୍ଶକ ଓ ପାଳକ । ତେଣୁ ଯୌନମିଳନକୁ ତାଚ୍ଛଲ୍ୟ କରି ଉଡ଼ାଇଦେବା ପଛରେ କି ଯୁକ୍ତି ଅଛି ମୁଁ ଦେଖିପାରୁନି ।

ପୁଣି କବିତା ମାତ୍ରହିଁ ଯେ ଯୌନ-ମିଳନମୂଳକ ଏ କଥା ପଣ୍ଡିତ ମହାଶୟଙ୍କର କେବଳ ମନଗଢ଼ା, ନା ପଣ୍ଡିତେ ବିଶ୍ୱସାହିତ୍ୟ ଉପରେ ଆଖି ବୁଲେଇ କହୁଛନ୍ତି ?

ବିଶ୍ୱର ଅନେକ ଶ୍ରେଷ୍ଠ କବିତା ବା ସାହିତ୍ୟରେ ଯୌନ-ମିଳନର କୌଣସି ସମ୍ପର୍କହିଁ ନାହିଁ । ଋଗ୍‌ବେଦ ସୃଜନସୂକ୍ତ ଓ ଉଷା ସ୍ତୁତିରେ, ଉପନିଷଦରେ, ରବୀନ୍ଦ୍ରଙ୍କ ଗୀତାଞ୍ଜଳିରେ, ଭଗବଦ୍‌ଗୀତାରେ, ବାଇବଲର ଅନେକାଂଶରେ ଯୌନ-ମିଳନର

ପ୍ରଶ୍ନହିଁ ନାହିଁ – ଅଥଚ ଏ ଗୁଡ଼ିକ ପୃଥିବୀର ଶ୍ରେଷ୍ଠତମ କବିତା । ଯେଉଁଠି ପ୍ରେମ ତ୍ୟାଗ ଓ ସାଧନା ନେଇ ପରମ ପବିତ୍ର ହୋଇଉଠିଛି ତାହା ମଧ୍ୟ ସୃଷ୍ଟିକରିଚି ଶ୍ରେଷ୍ଠ-କବିତା । ତାହାହିଁ ରାମାୟଣ, ତାହାହିଁ ମେଘଦୂତ ଓ ଶକୁନ୍ତଳା ।

ପଣ୍ଡିତେ କହିବେ କି ଭକ୍ତଚରଣଙ୍କ 'ମନବୋଧ ଚଉତିଶା' କବିତା କି ନୁହେଁ ?

''କେତେ ଦିନକୁ ମନ ବାନ୍ଧିଛୁ ଆଣ୍ଟ,
କି ଘେନି ଯିବୁ ତୋର ଛୁଟିଲେ ଘଟ !
ଖଣ୍ଡି କି ଖଣ୍ଡି ତୋର ପିଞ୍ଜରା କାଠି
ଖାଉ ଯେ ଥିବେ ଶ୍ୱାନ ଶୃଗାଳ ବାଣ୍ଟି ।''

ଏ କବିତା କ'ଣ ଯୌନାନୁଭୂତି ନେଇ ଏତେ ପ୍ରାଣସ୍ପର୍ଶୀ ? ଏହା ସଙ୍ଗେ ତୁଳନା କରନ୍ତୁ –

''ରକ୍ଷା କେମନ୍ତେ ପରି, କରିବା ମତ୍ତ କରୀ
ଗତିକି ଏମନ୍ତ ବିଚାରି ଯେ, ସହଚରି''

ବା

–''ଅତନୁ ଆଜ ଅନୁକୂଳ ଥୋଇଲା, ତରୁଣକୂଳ ଆକୁଳକୁ'' ।

ଏଥିଭିତରୁ କେଉଁ ପଦ ପ୍ରାଣର ଗଭୀରତମ ପ୍ରଦେଶକୁ ସ୍ପର୍ଶକରୁଛି ଏବଂ ତାହା ପଛରେ ଅଛି କି ଯୌନ-ମିଳନର ସମ୍ବାଦ ? ଯାହା ପ୍ରାଣର ଗଭୀର ଅନୁଭୂତିକୁ ସୁନ୍ଦରରୂପେ ପ୍ରକାଶ କରେ ତାହାହିଁ କବିତା । ତାହା ପ୍ରେମ ହୋଇପାରେ ଏବଂ ବୈରାଗ୍ୟ ମଧ୍ୟ ହୋଇପାରେ । କାରଣ ମନୁଷ୍ୟ ଅନ୍ତରରେ ବହୁ ବିପରୀତାତ୍ମକ ଭାବର ବୀଜ ଆଗରୁ ପୋତାରହିଛି । କବିତାର କୃତାର୍ଥତା ନିର୍ଭରକରେ ପ୍ରକାଶଶୈଳୀ ଉପରେ । କେବଳ ଯୌନ-ମିଳନ ବର୍ଣ୍ଣନା କରିଗଲେ ହୁଏ ନାହିଁ କବିତା ବା ଯୌନାନୁଭୂତିକୁ ନାକ ଟେକିଲେ ହିଁ ହେବ ନାହିଁ ଶୁଚିତା ବା ଉତ୍ତମ-ସାହିତ୍ୟ ।

ବର୍ତ୍ତମାନ ପଣ୍ଡିତ ମହାଶୟଙ୍କର ଶେଷତମ ତଥ୍ୟର ଆଲୋଚନା କରାଯାଉ । ପଣ୍ଡିତେ କହିଛନ୍ତି ଯେ ଭାରତୀୟ ସାହିତ୍ୟରେ ଯୌନପ୍ରଭାବ ଆସିଛି ବିଦେଶରୁ ଏବଂ ତା'ର ସମର୍ଥନ ପାଇଁ ସେ ଅକାଟ୍ୟ ପ୍ରମାଣରୂପେ ଥୋଇଛନ୍ତି ''ଯବନିକା'' ଶବ୍ଦଟିକୁ । ଏଇଥିରୁ ସେ ପ୍ରମାଣ କରିଛନ୍ତି ଯେ, ଭାସ-କାଳିଦାସ ପ୍ରଭୃତି ଗ୍ରୀକ୍-ପ୍ରଭାବିତ ହୋଇସାରିଥିଲେ – ନ ହେଲେ ସେମାନଙ୍କ ନାଟକରେ ଏ ''ଯବନିକା'' ଶବ୍ଦ ଆସିଲା କୁଆଡୁ ? ପଣ୍ଡିତଜୀଙ୍କର ଏ ଯୁକ୍ତି ଦେଖି ମୁଁ ଘୋର ବିସ୍ମିତ ହୋଇଛି । ପଣ୍ଡିତ ମହାଶୟଙ୍କର ଗ୍ରୀକ୍ ନାଟକ ଓ ରଙ୍ଗମଞ୍ଚ ସମ୍ପର୍କରେ କିଛି ପଢ଼ାପଢ଼ି ଅଛି ତ ? – ଥିଲେ ଏପରି ସେ ନ କହିବାର ହିଁ କଥା । ଆମର ମନେରଖିବା ଉଚିତ ଯେ

ଗ୍ରୀକ୍ ନାଟକରେ 'ଯବନିକା' ବୋଲି କୌଣସି ବ୍ୟବସ୍ଥାହିଁ ନଥିଲା – ଆଉ ଭାସ-କାଳିଦାସ ସେଠୁ ଯବନିକା ଅନୁକରଣ କଲେ କିପରି ? ଗ୍ରୀକ୍ ନାଟକଗୁଡ଼ିକ ମୁକ୍ତ-ଆକାଶ ତଳେ ଅଭିନୀତ ହେଉଥିଲା । ଗ୍ରୀକ୍ ଥିଏଟର୍ ସବୁ ଏବେ ବି ରହିଛି ଐତିହାସିକ ପଦାର୍ଥ ରୂପେ । ଗ୍ରୀକ୍ ନାଟକ ସବୁ ଟ୍ରାଜେଡ଼ି । ସଂସ୍କୃତରେ ଟ୍ରାଜେଡ଼ି ନିଷିଦ୍ଧ । ଗ୍ରୀକ୍ ନାଟକ ସଙ୍ଗେ ସଂସ୍କୃତ ନାଟକର ଆତ୍ମିକ ବା ଶାରୀରିକ କୌଣସି ହେଲେ ସାମ୍ୟ ନାହିଁ । ଏପରି ସ୍ଥଳେ ପଣ୍ଡିତେ କେଉଁ ଐତିହାସିକ ପ୍ରମାଣବଳରେ ଭାସ-କାଳିଦାସଙ୍କୁ ବା ନାଟକାବଳୀକୁ ଗ୍ରୀକ୍‌ଭାବାପନ୍ନ ବୋଲି କହିଛନ୍ତି ମୁଁ ବୁଝି-ପାରୁନାହିଁ ।

'ଯବନିକା'ଶବ୍ଦଟି ଏ ପର୍ଯ୍ୟନ୍ତ ଭାରତୀୟ ସାହିତ୍ୟରେ ଏକ ରହସ୍ୟ ହୋଇ-ରହିଛି । କିନ୍ତୁ ଏହି ଶବ୍ଦଟି ମାତ୍ରରୁ ସଂସ୍କୃତରେ ଗ୍ରୀକ୍ ପ୍ରଭାବ ପ୍ରମାଣ କରାଇବା ସାନ୍ୟାଟ୍‌ସେନ୍‌ଙ୍କୁ ବଙ୍ଗାଳୀ କହିବା ସେୟା, ଯେହେତୁ ତାଙ୍କ ନାଁରେ 'ସେନ୍' ଶବ୍ଦଟା ଅଛି !

ପଣ୍ଡିତ ନୀଳକଣ୍ଠ ପଣ୍ଡିତ ଭାବରେ ଦେଶରେ ସର୍ବତ୍ର ସମ୍ମାନିତ । ତାଙ୍କ କଥାର ମୂଲ୍ୟ ଅଛି । ତାଙ୍କ କଥାର ପ୍ରତିବାଦ କରିବାକୁ ଯାଉଥିବାରେ ମୁଁ ଦୁଃଖିତ । କିନ୍ତୁ ତାଙ୍କ ଲେଖା ପଢ଼ି ତାହା ମିଥ୍ୟା ଓ ଭ୍ରାନ୍ତ ବୋଲି ବୋଧହେବାରୁ ମୁଁ ପ୍ରତିବାଦ କରିବାକୁ ବାଧ୍ୟ ହେଲି ।

——

# କାଷ୍ଟ ଓ କୃଷ୍ଟି *

କିଛିଦିନ ତଳେ ବାରିପଦା ଜଣେ ତରୁଣ ଅଧ୍ୟାପକଙ୍କ ସହିତ ଏଇ ଲେଖକର ଅନେକ କାଳ ପରେ ଦେଖାହୋଇଥିଲା । ଇଂରାଜୀ, ସଂସ୍କୃତ ଓ ଓଡ଼ିଆରେ ଏଇ ତରୁଣ ଅଧ୍ୟାପକଙ୍କ ଜ୍ଞାନ ଉଚ୍ଚଦରର । ସେ ଜ୍ଞାନ ମଧ୍ୟ କେବଳ କିତାବୀ ଖବର ମାତ୍ର ନୁହେଁ – ସେ ଅଧ୍ୟାପକ, ପ୍ରକୃତ ପଣ୍ଡିତପରି ସାହିତ୍ୟର ଉପଭୋକ୍ତା । ସାହିତ୍ୟ ତାଙ୍କର ସହିତରେହିଁ ବରାବର ଥାଏ । ତେଣୁ ତାଙ୍କ ମୁଖରୁ ରାଶି ରାଶି ଓଡ଼ିଆ, ଇଂରାଜୀ ଓ ସଂସ୍କୃତ କବିତାଂଶ ବରାବର ଆନନ୍ଦମୟ ଆବୃତ୍ତିରେ ବାହାରିପଡ଼େ । ଏ ସବୁ ନିମନ୍ତେ ଲେଖକ ତାଙ୍କୁ ପ୍ରକୃତରେ ଆଦର ଓ ସମ୍ମାନ କରେ । ପୂର୍ବେ ସେ ଓଡ଼ିଆରେ ଲେଖାଲେଖି କରୁଥିଲେ – ଏବେ ଅନେକ ବର୍ଷ ଧରି ଆଉ କିଛି ଲେଖୁନାହାନ୍ତି । ତେଣୁ ପୂର୍ବେ ତାଙ୍କୁ ଦେଖିଲାମାତ୍ରେ ବହୁ ଥର କହିଲା ପରି ଏଇ ଶେଷଥର ଦେଖା ହେଲାବେଳେ ମଧ୍ୟ ସେ ପଚାରିଲା, ଅଧ୍ୟାପକ କାହିଁକି ଲେଖାଲେଖି କରୁନାହାନ୍ତି ? ଓଡ଼ିଶାରେ ତ ଲେଖକ ସଂଖ୍ୟା ମୁଷ୍ଟିମେୟ । ସମସ୍ତେ, ବିଶେଷତଃ ଅଧ୍ୟାପକ, ପୁଣି ବିଶେଷକରି ଇଂରେଜୀ ଅଧ୍ୟାପକ ଯଦି ହାତ ନ ଦିଅନ୍ତି, ତେବେ ସବା ପଛରେ ପଡ଼ିଥିବା ଓଡ଼ିଆ ଭାଷା କାହା ବଳରେ ଆଗକୁ ଗତିକରିବ ?

ଉତ୍ତରରେ ସେ ଯାହା କହିଲେ, ସେଥିରେ ଏଇ ଲେଖକ ବିସ୍ମୟରେ ଅବାକ୍ ହୋଇ ପଡ଼ିଲା । ଅଧ୍ୟାପକ କହିଲେ, "ଆଉ, କି ସାହିତ୍ୟଚର୍ଚ୍ଚା କରିବ, ସାର୍ ! ସାହିତ୍ୟରେ ବି ତ ଆସି କାଷ୍ଟ (ଜାତି) ପଶିଲାଣି । କାହା ଉପରେ ଲେଖିବାକୁ ଗଲେ, ସମାଲୋଚନା ହେଉଛି କି ସେ ତ ଅମୁକଜାତିର ଲୋକ, ତମେ ତାଙ୍କୁ ପ୍ରଶଂସା କରିବାକୁ ଯାଉଛ କାହିଁକି ? ଏପରି ବାତାବରଣରେ ଚୁପ୍‌ରହିବାହିଁ ଶ୍ରେୟସ୍କର ଓ ନିରାପଦ ।"

ଏହି ଘୃଣ୍ୟ ସଙ୍କେତର ଭିତରକୁ ଯାଇ ସାକ୍ଷ୍ୟପ୍ରମାଣ ସଂଗ୍ରହ କରିବାର ଇଚ୍ଛାଇ ହେଲାନି । ଏଇ ଲେଖକ ତରୁଣ ବନ୍ଧୁଙ୍କ କଥାରେ କେବଳ ବିସ୍ମୟ ପ୍ରକାଶ କରି ଚୁପ୍ ରହିଲା ଓ ମନେମନେ ବନ୍ଧୁଙ୍କର କୈଫିୟତ୍‌କୁ ଏକ ଅତିରଞ୍ଜିତ 'ଫାଙ୍କିବୋଲି' ହିଁ ଧରି ନେଲା । ଏଇ ଅଧ୍ୟାପକ ସାମାଜିକ ଭାବରେ ଉଚ୍ଚତମ ଗୋଷ୍ଠୀର ଯଦିଓ, ଆତ୍ମିକ ଭାବରେ ଏଇ ଲେଖକ ତାଙ୍କୁ ତା'ର ନିକଟତମ ଜ୍ଞାତି ବୋଲି ମନେକରେ–

* ଝଙ୍କାର, ୧୦ମ ବର୍ଷ ୩ୟ ସଂଖ୍ୟା ।

ଅନ୍ତତଃ ସେ କରେ ।

କିନ୍ତୁ ସେଦିନ ସେ ବନ୍ଧୁଙ୍କର ଯେଉଁ ଅଭିଯୋଗକୁ ଲେଖକ ଅବିଶ୍ୱାସରେ, ଆଳସ୍ୟରେ ଏକ ଚତୁର କୈଫିୟତ୍ ମାତ୍ର ବୋଲି ଉଡ଼େଇଦେଇଥିଲା, ଏବେ ତା'ର ଶାରଳାଦାସଙ୍କ ଉପରେ ଲେଖାହୋଇଥିବା ଏକ ପ୍ରବନ୍ଧରେ ତାଙ୍କୁ ଜୋର୍‌ଦେଇ ଚଷା ବା କୃଷକ ବା କୃଷିକାରୀ ବୋଲି କହିଥିବାରୁ ଯେଉଁ ବିରୋଧାତ୍ମକ ପ୍ରତିକ୍ରିୟା ଦେଖାଦେଇଛି, ତାହା ଦେଖି ସେ ଆଜି ମର୍ମଦଗ୍ଧ ହୋଇ ବୁଝିପାରୁଛି ଯେ, ଏଇ କାଷ୍ଟ୍-ବିଷ ଏ ଦେଶରେ କିପରି ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ମଧ୍ୟ ଓତପ୍ରୋତ ହେବାକୁ ବସିଲାଣି । ସେ ଏଥିପାଇଁ କେବଳ ଦୁଃଖିତ ବା ଲଜ୍ଜିତ ନୁହେଁ, ତା'ର ସମଗ୍ର ପ୍ରାଣ ଆଜି ଏଥିଲାଗି ବିକ୍ଷୋଭିତ । ତା'ର ତିରିଶବର୍ଷର ଲିଖନ-ସାଧନାକୁ ସେ ଧିକ୍‌କାର କରେ, ଯଦି ତା'ର ଲେଖା ଏପରି ଅପଗଠିତ ଯେ ସେଥିରେ ଏଇ ବୀଭତ୍ସ କୁତ୍ସିତତା ଆଶଙ୍କା ମଧ୍ୟ କରାଯାଇପାରିଲା ।

ଶାରଳାଦାସଙ୍କ ସମ୍ବନ୍ଧରେ କାହିଁକି ଜୋର୍ ଦେଇ ଲେଖକ 'ଚାଷୀତ୍ୱ' କଥା କହିବାକୁ ଯାଇଚି, ତାହା କ୍ରମେ କୁହାଯାଉଛି । କିନ୍ତୁ ସେ ଗୋଟାଏ କଥା ଆଦୌ-ବୁଝିପାରୁନି ଏ ପର୍ଯ୍ୟନ୍ତ । ଜଗନ୍ନାଥ ଦାସଙ୍କୁ 'ବ୍ରାହ୍ମଣ' କହିଲେ ସାଂପ୍ରଦାୟିକତା ହେବନି, କିନ୍ତୁ ଶାରଳା ଦାସଙ୍କୁ ଚଷା କହିଲେ କେଉଁ ଯୁକ୍ତିରେ ସାଂପ୍ରଦାୟିକତା ଆସିଯାଉଛି ? ବ୍ରାହ୍ମଣ ସମିତି ସହିତ ସଂପୃକ୍ତ ରହି ବା କେବଳ 'ବ୍ରାହ୍ମଣ' ଛାତ୍ରଙ୍କୁ ଲକ୍ଷ୍ୟ କରି କବିତା ଲେଖି ମଧ୍ୟ ଗୋପବନ୍ଧୁ ଆମର ପୂଜ୍ୟ, ଉଦାର ନେତା; କିନ୍ତୁ କୁଶୁପୁରରେ ନନ୍ଦକିଶୋର ବଳ ମହାନାୟକ ସମିତି ଗଢ଼ିଲେ, ସେ କାହିଁକି ହେବ ସଂକୀର୍ଣ୍ଣ ସାଂପ୍ରଦାୟିକ ? ବିଚିତ୍ର ଏ ଯୁକ୍ତି ଓ ବ୍ୟବହାର, ଅଦ୍ଭୁତ ପୁଣି ଏ ଦେଶରେ କେତେକଙ୍କର ଉଦାର ଅସାଂପ୍ରଦାୟିକତା ।

ପୁଣି ଅନ୍ୟ ପକ୍ଷରେ ଗୋପବନ୍ଧୁଙ୍କ ବିରୁଦ୍ଧରେ ଯିଏ ଯାହା କହୁ ପଛେ ଏଇ ଲେଖକ ଆଖିରେ ଚିରକାଳ ସେ ପୂଜ୍ୟ, କାରଣ ସେ ବ୍ରାହ୍ମଣ । ସେ ତାଙ୍କୁ ପ୍ରକାଶ୍ୟରେ ସହସ୍ରବାର 'ବ୍ରାହ୍ମଣ' କହିବ, ପୁଣି ଅକୁଣ୍ଠିତ ଧ୍ୱନିରେ ପ୍ରକାଶକରିବ ଯେ, ସେ ତାଙ୍କୁ ତା' ହୃଦୟରେ ପୂଜା ଓ ସମ୍ମାନ ଦେଇଆସିଛି, କେବଳ ସେ ପ୍ରକୃତ 'ବ୍ରାହ୍ମଣ' ବୋଲି । ତା' ଆଖିରେ ସେ ପଇତାପକା ବ୍ରାହ୍ମଣ କି ନୁହନ୍ତି, ତାର ବିଚାର ଆଦୌ ନାହିଁ । ସେ ତା ଆଖିରେ ଆତ୍ମିକ, ଚାରିତ୍ରିକ, ସାଂସ୍କୃତିକ ବ୍ରାହ୍ମଣ– ଯେଉଁ ବ୍ରାହ୍ମଣ ମାନବର କଲ୍ୟାଣ ପାଇଁ ବା ସତ୍ୟର ସନ୍ଧାନରେ, ଆପଣାକୁ ତପସ୍ୟାର ଅଗ୍ନିରେ ବତିକରି ଜାଳିଯାଏ । କିନ୍ତୁ ଠିକ୍ ଏଇ ମାପକାଠିରେ କନ୍ଧ ଭୀମଭୋଇ, ଚଷା ଶାରଳା ଦାସ, ମ୍ଳେଚ୍ଛ ମାକ୍‌ସମ୍ୟୁଲାର୍ ମଧ୍ୟ ତା' ନିକଟରେ ବ୍ରାହ୍ମଣ । ପୁଣି ଏଇ

ସାଂସ୍କୃତିକ ମାପକାଠିରେ ସାରଳାଦାସଙ୍କ ପରି ପଣ୍ଡିତ ଗୋପବନ୍ଧୁ ମଧ୍ୟ ତା' ଆଖିରେ 'ଚଷା' । ତେଣୁ ବର୍ତ୍ତମାନ ମୁଁ ମୋ ମାପକାଠିଟି ବୁଝାଇ ଦିଏ ।

ମାନବର ଯେଉଁ ସଂସ୍କୃତି ସହସ୍ର ସହସ୍ର ବର୍ଷ ଧରି ଏ ପୃଥିବୀ ପୃଷ୍ଠରେ ପୁଞ୍ଜୀଭୂତ ହୋଇ ପଡ଼ିଛି, ତାକୁ ମୋଟରେ ଦୁଇ ଅଂଶରେ ବିଭକ୍ତ କରିଦେବାକୁ ହେବ । ଗୋଟିଏ ସଂସ୍କୃତି ହେଉଛି ବୁଦ୍ଧିଜୀବୀର ସଂସ୍କୃତି । କେବଳ ଏ ଦେଶରେ ନୁହେଁ – ପୃଥିବୀର ସକଳ ଦେଶରେ, ଦୁଇଶ' ବର୍ଷ ତଳ ପର୍ଯ୍ୟନ୍ତ ଶ୍ରମଜୀବୀ ଆଉ ମନୁଷ୍ୟ ବୋଲି ଗଣା ହେଉନଥିଲା । ସଂସ୍କୃତ ମହାଭାରତରେ ତ ପରିଷ୍କାର ଲେଖାଅଛି ଯେ ଶୂଦ୍ର କୌଣସି ସମ୍ପତ୍ତିର ଅଧିକାରୀ ହେବେନାହିଁ, ଉଚ୍ଚ ତିନି ବର୍ଣ୍ଣଙ୍କର ଯାହା ଜୀର୍ଣ୍ଣ ଓ ପରିତ୍ୟକ୍ତ ସେଇଥିରେ ସେମାନେ ବଞ୍ଚିବେ । ଦୁଇଶବର୍ଷତଳେ ଯୁଗ ଯୁଗ ଗୃହୀତ ଏଇ ବୀଭତ୍ସ ମନୋଭାବର ପ୍ରତିକ୍ରିୟା ଦେଖାଗଲା ୟୁରୋପରେ । ସାହିତ୍ୟ, କଳା, ରାଜନୀତି, ସମାଜ, ସବୁକ୍ଷେତ୍ରରେ 'ସାଧାରଣ ମାନବର' ବା 'ନରତ୍ୱ'ର ମାନ ଓ ଅଧିକାରର ଦାବି ଶୁଣାଗଲା । ରାଜନୀତିରେ ଏହା ପ୍ରକାଶପାଇଲା ଫରାସୀ ରାଷ୍ଟ୍ରବିପ୍ଳବରେ; ସାହିତ୍ୟରେ ଏହି ବିପ୍ଳବର ନାମ ହେଲା ରୋମାଣ୍ଟିକ୍ ରିଭାଇଭାଲ୍ । ୟା'ରି ଫଳରେ ୟୁରୋପର କବିମାନେ ପ୍ରଥମ କରି ସୌନ୍ଦର୍ଯ୍ୟ ଦେଖିପାରିଲେ ଚଷା, ଗଉଡ଼ ଓ ଅନ୍ୟାନ୍ୟ ଶ୍ରମଜୀବୀ ଓ ଗ୍ରାମବାସୀଙ୍କ ସରଳ ଜୀବନ ଯାପନ ଭିତରେ । ଲୋକଗୀତି ଓ ରୂପକଥାର ସଂଗ୍ରହ ଓ ଚର୍ଚ୍ଚା ଚାଲିଲା । ସହରରୁ ଦୃଷ୍ଟି ଯାଇ ପଡ଼ିଲା ଗ୍ରାମ ଓ ପ୍ରକୃତି ଉପରେ, –ସଭ୍ୟତା ଓ ସଂସ୍କୃତିର ପ୍ରକୃତ ଉତ୍ସରୂପେ । ଏବେ ଆମେରିକା ଓ ୟୁରୋପରୁ ଧନୀଲୋକ ଦୌଡ଼ି ଆସି ବଙ୍ଗଳା ଓ ଓଡ଼ିଶାର ପଟ୍ଟଚିତ୍ର ଓ ପୁରୀର ପଥୁରିଆ ଓ ଚିତ୍ରକାରମାନଙ୍କର ଆଦିମରୀତିରେ ଗଠିତ କାଠ, ପଥରର ପ୍ରତିମା ସବୁ ଆଗ୍ରହରେ ଯାହା କିଣୁଛନ୍ତି, ତାହା ସେଇ ଦୁଇଶବର୍ଷ ତଳର ରୋମାଣ୍ଟିକ୍ ରିଭାଇଭାଲ୍‌ରୁ ଯେଉଁ ନୂତନ ଭାବଧାରା ପ୍ରବାହିତ ହୋଇଥିଲା, ତାହାରହିଁ ପ୍ରକାଶ ବୋଲି ଧରିବାକୁ ହେବ ।

ରାଜା, ସାମନ୍ତ, ବୁଦ୍ଧିଜୀବୀମାନଙ୍କର ସଂସ୍କୃତି କ'ଣ, ଏହା ବୁଝାଇ କହିବା ଦରକାର ନାହିଁ । ସବୁ ଦେଶର ସଂସ୍କୃତି କହିଲେ ଏଇମାନଙ୍କର ସଂସ୍କୃତିହିଁ ବୁଝାଉଥିଲା । କିନ୍ତୁ ରୋମାଣ୍ଟିକ୍ ରିଭାଇଭାଲ୍ ଅଷ୍ଟାଦଶ ଶତାବ୍ଦୀର (ଶେଷଭାଗ) ପରେ ଶ୍ରମଜୀବୀର ଅନାବିଳ, ଅକିତାବୀ, ଅଲିଖିତ, ଅପଣ୍ଡିତ, ସ୍ୱତଃସ୍ଫୂର୍ତ୍ତ ସଂସ୍କୃତି ଆବିଷ୍କୃତ ହେଲା । ଏବେ ମାର୍କସିଷ୍ଟ ଦର୍ଶନ ଅନୁସାରେ ଶ୍ରମଜୀବୀ କହିଲେ କଳକାରଖାନାର ମଜ୍‌ଦୁର ଶ୍ରେଣୀକୁହିଁ ବିଶେଷ କରି ବୁଝାଏ । ଏ ଦର୍ଶନରେ ମଜଦୁର ଓ କୃଷକ ଦୁଇଟା ସ୍ୱତନ୍ତ୍ର ଶ୍ରେଣୀ । କିନ୍ତୁ ଏଇ ସେଦିନ ପର୍ଯ୍ୟନ୍ତ, ସହସ୍ର-

ସହସ୍ର ବର୍ଷଧରି ସବୁ ଦେଶରେ କୃଷକହିଁ ଥିଲା ଶ୍ରମଜୀବୀର ପ୍ରତିନିଧି । ପଲ୍ଲୀର ସ୍ୱତଃସ୍ଫୂର୍ତ୍ତ ସଂସ୍କୃତି, ଧାନବିଲ, ଗୋଚାରଣଭୂମି ଓ କୃଷକକୁହିଁ ଆବୃତ କରି ଗଢ଼ି-ଉଠିଛି । ସେଇଠି ହୋଇଛି ଲୋକ-କଥା, ଲୋକ୍-କବିତାର ଜନ୍ମ, ଶସ୍ୟ-କ୍ଷେତ୍ରର ଅନିଶ୍ଚିତ ଜୀବନ ପାଇଁ ଅସଂଖ୍ୟ ଦେବଦେବୀର ଆବିର୍ଭାବ, ପୁଣି ମଧ୍ୟ ନିରକ୍ଷରତା ଫଳରେ ଅଗଣିତ ଅନ୍ଧବିଶ୍ୱାସର ରାଜତ୍ୱ ।

ଯେକୌଣସି ଜାତିର ସମଗ୍ର ସଭ୍ୟତା ଓ ସଂସ୍କୃତି ଭିତରେ ଆମେ ଏଇ ଦୁଇ ପ୍ରଧାନ ଅଙ୍ଗ ସ୍ପଷ୍ଟ ଦେଖିପାରିବା – ଗୋଟିଏ ବୁଦ୍ଧୀଜୀବୀ, ପଣ୍ଡିତ ଓ ବିଳାସୀମାନଙ୍କର ବା ସେଇମାନଙ୍କ ପାଇଁ, ଆଉ ଗୋଟିଏ ଗାଁ ଓ ଶସ୍ୟକ୍ଷେତ୍ରକୁ ନେଇ, ଯେଉଁଥିରେ ଆମେ ମାଟିର ସ୍ୱକୀୟ ଗନ୍ଧ ପାଉଁ, ଯାହା ପଲ୍ଲୀଜୀବନର ଛୋଟ ଛୋଟ ଦୁଃଖସୁଖ, ତା'ର ଅନ୍ଧବିଶ୍ୱାସ, ତା' ଦେବଦେବୀ, ପର୍ବପର୍ବାଣି ନେଇ ହିଁ ଗଢ଼ା । ଭାରତବର୍ଷରେ ବୁଦ୍ଧିଜୀବୀର ସଭ୍ୟତା ପ୍ରକୃତରେ କୃଷକ ବା ଚଷାର ସଭ୍ୟତା । କୌଣସି ଦେଶରେ କିରାନୀର ବା କୁମ୍ଭାରର ବା ପୋଲିସ୍ ଅଫିସର୍‌ର ଅଲଗା ସଂସ୍କୃତି ଆମେ ଦେଖିବାନି । ସାଂସ୍କୃତିକ ଦୃଷ୍ଟିକୋଣରୁ ଆମେ କେବଳ ଦୁଇଟି ପ୍ରତୀକକୁ ସ୍ୱୀକାର କରିବା– ବୁଦ୍ଧିଜୀବୀ ଓ ଶ୍ରମଜୀବୀ, ଅର୍ଥାତ୍ ଭାରତୀୟ ସାମାଜିକ ଭାଷାରେ ବ୍ରାହ୍ମଣ ବା କୃଷକ ।

ମୁଁ ପୂରାପୂରି ଏଇ ଦୃଷ୍ଟିକୋଣରୁହିଁ ସାରଳାଦାସଙ୍କୁ ଚଷା ବା କୃଷିକାରୀ ବୋଲି ଜୋର୍ ଦେଇ କହିଛି । କାରଣ ଏବେ ଶାରଳାଦାସଙ୍କ ମହାଭାରତ ପଢ଼ି ମୋର ଏଇ ହୃଦ୍‌ବୋଧ ହେଉଛି ଯେ, ଏ ଗ୍ରନ୍ଥ ଗୋଟିଏ କୃଷକ କବିର ଲେଖା, ଆଉ କୃଷକ ବା ପଲ୍ଲୀବାସୀମାନଙ୍କ ପାଇଁହିଁ ଲେଖା । ଏହାର ଭାଷା ଗୋଟିଏ ବୁଦ୍ଧିମାନ୍, କଳ୍ପନାବନ୍ତ କୃଷକର ଭାଷା, ଏହାର ଚରିତ୍ରଚିତ୍ରଣ, ଘଟଣା ବର୍ଣ୍ଣନା, ଉପାଖ୍ୟାନ ସମସ୍ତହିଁ ଗୋଟିଏ କୃଷକର ଦୃଷ୍ଟିକୋଣରୁ ଲେଖା ଓ ଏହା ସର୍ବତ୍ର ଗ୍ରାମ୍ୟ ପରିବେଶକୁହିଁ ସ୍ମରଣ କରାଇଦିଏ । ପଟଚିତ୍ର ବା ନିଗ୍ରୋମାନଙ୍କର ଆଦିମ ଭାସ୍କର୍ଯ୍ୟ ପରି, ଆଜି ଏଇ ସବୁ ଗ୍ରାମ୍ୟ ଜିନିଷର ମୂଲ୍ୟ ବହୁତ ବଢ଼ିଉଠିଛି । ସେଇ ମାନଦଣ୍ଡରେହିଁ ସାରଳା ମହାଭାରତକୁ ବିଚାର କଲେ ଏ ଗ୍ରନ୍ଥ ଅତି ମୂଲ୍ୟବାନ୍ । ବୁଦ୍ଧିଜୀବୀ-ସଂସ୍କୃତିରେ କଳଙ୍କ 'ନାନାବାୟାଗୀତ' ଯେପରି ମୂଲ୍ୟବାନ୍ ସୃଷ୍ଟି, ଗ୍ରାମ୍ୟସ୍ତରରେ ସାରଳା ମହାଭାରତ ସେହିପରି ଏକ ବିରାଟ ବୌଦ୍ଧିକ ସିଦ୍ଧି । ସାରଳା ମହାଭାରତ କୃଷ୍ଣସିଂହ ମହାଭାରତ ହୋଇଥିଲେ ବିସ୍ମୟର କାରଣ ନ ଥାନ୍ତା । ଏ ମହାଗ୍ରନ୍ଥ ଯେପରି ସଂପୂର୍ଣ୍ଣ ଲୌକିକ ବ୍ୟକ୍ତିତ୍ୱ ଦେଇ ଗଢ଼ିଉଠିଛି; ଲୋକଗୀତ ଓ ରୂପକଥା ଭିତରୁ, ଖାଣ୍ଟି ଲୋକଭାଷାରେ ଯେପରି ଭାବରେ ଏପରି ଏକ ପ୍ରତିଭାବନ୍ତ ମହାଗ୍ରନ୍ଥର ଉଦ୍ଭବ ହୋଇଛି ତାହାହିଁ ଆଜି ପରମ ବିସ୍ମୟର କଥା । ମୁଁ ଏ ସବୁକୁ ଆଲୋଚନା

କରି ସେଥିପାଇଁ କହିଛି ଯେ,ଠିକ୍ ଏଇ ଧରଣର ଗ୍ରନ୍ଥ ଛଅଶବର୍ଷ ତଳେ ଲୋକଭାଷାରେ ସମ୍ଭବ ହୋଇ ନଥାନ୍ତା, ଯଦି ଏହାର କବି ଗାଁ ମାଟି ସହିତ ଘନିଷ୍ଠ ଭାବରେ ସଂପୃକ୍ତ ନଥାନ୍ତେ ।

ଏତିକି କହିବା ଦ୍ୱାରା ପ୍ରଚାର କରାଯାଏ ଯେ ଏଇ ଲେଖକ ସାଂପ୍ରଦାୟିକତା ବିଷ ପ୍ରଚାର କରୁଛି, ତା'ହେଲେ ଦୁଃଖର ସହିତ ମୁଁ ଧରିନେବାକୁ ବାଧ ହେଉଛି ଯେ ଏ ବିଷର କାମଳରୋଗ ବୋଧହୁଏ ତା'ର ସେହି ପ୍ରଚାରକ ବଂଧୁମାନଙ୍କୁହିଁ ଧରିଛି, ତାକୁ ନୁହେଁ । ସେ ଏ ରୋଗର ପରିଧିର ବହୁ ବାହାରେ । ପ୍ରଚାରକମାନଙ୍କର ଜାଣିରଖିବା ଉଚିତ୍ ଯେ, ଏଇ ଲେଖକ ବସ୍ତୁତଃ ତଥାକଥିତ ହିନ୍ଦୁ ନୁହେଁ । ଗତ ସେନ୍ସସ୍‌ରେ ସେ ନିଜକୁ ସ୍ପଷ୍ଟଭାବରେ ବୌଦ୍ଧ ବୋଲି ଲେଖେଇଛି । ଆଉ ସେ ଯେ ଗତ କେତେବର୍ଷ ଧରି ଜାତି-ପ୍ରତିମା ପ୍ରତିଷ୍ଠିତ ହିନ୍ଦୁଧର୍ମ ବିରୁଦ୍ଧରେ ପ୍ରକାଶ୍ୟଭାବରେ ଲେଖିଆସୁଛି ଏହା ଏହି କଲ୍ୟାଣକାମୀ ବନ୍ଧୁମାନଙ୍କୁ ବୋଧହୁଏ ଅଜଣାନଥିବ । ମନୁଷ୍ୟ ଭିତରର ଛଅଟି ରିପୁପରି ଏଇ ଲେଖକ ତା' ଦେଶର ମଧ ଛଅଟି ରିପୁ ଠଉରେଇଛି । ସେଗୁଡ଼ିକ ହେଉଛନ୍ତି– ଜାତିପ୍ରଥା, ପେସାଦାରୀ ପୁରୋହିତ ସଂପ୍ରଦାୟ, ପ୍ରତିମା ପୂଜା, ତୀର୍ଥ ଯାତ୍ରା, ପିଣ୍ଡଦାନ ଓ ସଂପତ୍ତି ବା ପିଣ୍ଡ ଆଶାରେ ପୋଷ୍ୟପୁତ୍ର ବ୍ୟବସ୍ଥା । ଏ ସବୁର ବିରୁଦ୍ଧରେ ସେ କେବେ ନା କେବେ ଲେଖିଛି, ପୁଣି ଯେତେବେଳେ ଦରକାର ହେବ ଲେଖିବ। କାରଣ ତା'ର ଦୃଢ଼ ବିଶ୍ୱାସ ଏସବୁ ଦେଶରୁ ନିଶ୍ଚିହ୍ନ ନହେଲା ପର୍ଯ୍ୟନ୍ତ ପ୍ରକୃତ ବଳିଷ୍ଠ ମାନବିକତା ଓ ପ୍ରକୃତ ଗଣତନ୍ତ୍ରର ବିକାଶ ଏ ଦେଶରେ ସମ୍ଭବ ହେବନାହିଁ । ଏଇ ଲେଖକ ଏ ଥରକୁ ମିଶାଇ ସାରଳାଦାସଙ୍କ ସିଦ୍ଧଭୂମି ସାରଳାପୀଠକୁ ଦୁଇଥର ଗଲାଣି । କିନ୍ତୁ ସେହି ପ୍ରସିଦ୍ଧ 'ଉତ୍କଳ-ଭାରତୀ'ଙ୍କର ଚେହେରା କିପରି ସେ କହିପାରିବ ନାହିଁ, କି ସେ ପ୍ରତିମା ଖଣ୍ଡ ନିକଟରେ ପ୍ରଣିପାତ କରି ଆଶିଷ ଭିକ୍ଷା କରିବାର କୌଣସି ଆବଶ୍ୟକତା ସେ ବୋଧ କରିନାହିଁ ।

ଏଠାରେ ଆଉ, ଏକ ବ୍ୟକ୍ତିଗତ ଅଭିଜ୍ଞତାର କଥା କହିଲେ ବୋଧହୁଏ ଅପ୍ରାସଙ୍ଗିକ ହେବ ନାହିଁ ।

ସେ ଯାହାହେଉ, ଯେଉଁ ବ୍ୟକ୍ତି ତା'ର ସାବକ ସମାଜର ଧର୍ମ ଓ ଦେବଦେବୀଙ୍କୁ ପରିହାର କରିଛି, ଅଯୌକ୍ତିକ ବୋଧହେବାରୁ, ସେ ତା'ର ଏଇ ଜୀର୍ଣ୍ଣ ବିକାରଗ୍ରସ୍ତ କଳୁଷିତ କାଷ୍ଠ-ସଂସ୍କାର ଲୋଭ ଛାଡ଼ିପାରିନାହିଁ କି ? ଯାହା ଦେବଦେବୀ ବି ଦେଇ ନ ପାରିଲେ ତାକୁ, ଗୋଟାଏ କାଷ୍ଠ (ଯାହାର ଅୟୁତାଂଶର ଏକାଂଶକୁ ମଧ ସେ ଜାଣେ କି ନାହିଁ ସଂଦେହ) ଦେଇପାରିବ, ଏଇ ଭ୍ରାନ୍ତ ବିଶ୍ୱାସକୁ ସେ ବଞ୍ଚାଇ ରଖିବ, ସେ କ'ଣ ଏପରି ନିର୍ବୋଧ ? ଏଇ ଲେଖକ ତା'ର ନିଜ ଲୁହ, ନିଜ

ହାତରେ ପୋଛି ପୋଛି ଚାଲିଛି ତା'ର ଜୀବନପଥର ସଂଗହୀନ ଯାତ୍ରାରେ, କେଉଁ କାଷ୍ଟ, କେଉଁ ଗୋଷ୍ଠୀ, କେଉଁ ବ୍ୟକ୍ତି ସେ ତୁଳୀତଳ୍ପରେ ଶୋଇବାର ବ୍ୟବସ୍ଥା କରି ଦେଇଛନ୍ତି ଯେ ସେ ସେମାନଙ୍କର ନାମୋଚ୍ଚାରଣ କରି କୃତକୃତ୍ୟତା ଅନୁଭବ କରିବ ? ଏବଂ ତାହା ପୁଣି ଜଣେ ଲୋକର, ଯିଏ ମଲାଣି ଛ'ଶ ବର୍ଷ ହେଲା । କୌଣସି ବଞ୍ଚିଥିବା ପଦସ୍ଥ ଲୋକର ସ୍ତୁତି କଲେ ସିନା ଲାଭର ଆଶା ଥା'ନ୍ତା, ଏଇ ଛଅଶ ବର୍ଷ ତଳେ ବଞ୍ଚିଥିବା ସାରଳାଦାସ କି 'ଜାତି'ର ଥିଲା, ବା ହେଲା ବା ଯଦି ଲେଖକର ଲାଭ ବା କ'ଣ, କ୍ଷତି ବା କ'ଣ ? ଏଇ ଲେଖକ ଏଇ ଦେଶର ଜଣେ ସାମାନ୍ୟ କବି ବୋଲି ଗୃହୀତ । କବି ସମଗ୍ର ଦେଶର ଶ୍ରଦ୍ଧା ଓ ଆଦର ଚାହେ ନା ଗୋଟାଏ କ୍ଷୁଦ୍ର ଗୋଷ୍ଠୀର ? ସେ ସମଗ୍ର ଦେଶ ଓ ଜାତିକି ନେଇ ଗର୍ବ କରିବ ନା ଗୋଟିଏ 'କାଷ୍ଟ୍'ର ? କବି ତା'ର ଲେଖନୀ ପାଇଁ ଯେଉଁ ଉପାଦାନ ଚାହେଁ, ତାକୁ କିଏ ଯୋଗାଇ ପାରିବ– ଗୋଟାଏ ସମଗ୍ର ଦେଶ ନା ଗୋଟାଏ କ୍ଷୁଦ୍ର କାଷ୍ଟ୍ ? ଅଥବା, ଏ ଦେଶରେ ରାଜନୈତିକ ଅଧ୍ୟାପକମାନେ ବା ଏପରିକି ସେକ୍ରେଟାରୀ ପ୍ରଭୃତି ସମସ୍ତେ ଉଦାର ଥିଲାବେଳେ, ଦେଖାଯାଉଛି ଯେ ଦେଶର କବିହିଁ ଅତ୍ୟନ୍ତ ସଂକୀର୍ଣ୍ଣମନା । ପୁଣି ସବୁ କବି ନୁହନ୍ତି ତ, କେବଳ ଜଣେ । ଏଇକି ଏ ଚିତ୍‌କାରର ଶେଷ ତାତ୍ପର୍ଯ୍ୟ ବୋଲି ଧରିନେବାକୁ ହେବ ?

କିନ୍ତୁ ଏ ସମଗ୍ର ଅଭିଯୋଗ ଏଇ ଜଣେ ଲେଖକ ପ୍ରତି ଆରୋପିତ ହେଲେ ମଧ୍ୟ, ସେ ଅକୁଣ୍ଠିତ ଚିତ୍ତରେ କହିବ ଯେ ସାରଳା ମହାଭାରତ ଓ ତା'ର ଲେଖକ କୃଷକ ସଂସ୍କୃତିର ହିଁ ଉତ୍ତମ ଫଳ ବ୍ୟତୀତ ଆଉ କିଛି ନୁହନ୍ତି । ତା' ନହୋଇଥିଲେ, ଏ ଲେଖା ଅନ୍ୟ ଆକାର ଧାରଣ କରିଥାନ୍ତା । ଏଥିରେ ଲେଖକର ସୁଖୀ ବା ଦୁଃଖୀ ହେବାର କୌଣସି କାରଣ ତ ନାହିଁ – ତା' ଦୃଷ୍ଟିରେ ଏ କେବଳ ଷ୍ଟେଟ୍‌ମେଣ୍ଟ୍ ଅବ୍ ଫାକ୍‌ଟସ୍ ।

ତା' ଦେଶର କବି, ଶିଳ୍ପୀ ବା ଗୁଣିଜନମାନଙ୍କ ବିଚାର କଲାବେଳେ ଏଇ ଲେଖକ ବରାବର ଗୀତାର ବଚନ ହିଁ ମନେରଖିଥାଏ –

ଯଦ୍ ଯଦ୍ ବିଭୂତିମତ୍ ସତ୍ତ୍ୱଂ, ଶ୍ରୀମଦୂର୍ଜିତମେବବା
ତତ୍ ତତ୍ ଏବଗଚ୍ଛତ୍ୱଂ ମମ ତେଜୋଂଽଶ ସମ୍ଭବମ୍ ।

''ଯାହା ଯାହା ଐଶ୍ୱର୍ଯ୍ୟଯୁକ୍ତ, ଶ୍ରୀଯୁକ୍ତ, କିମ୍ବା ପ୍ରଭାବଶାଳୀ ତାହା ମୋର ଶକ୍ତିର ଅଂଶରୁ ଉତ୍ପନ୍ନ ବୋଲି ଜାଣ ।''

ପ୍ରତିଭାର ବିଚାର କଲାବେଳେ ଅନ୍ୟ ଅବାନ୍ତର ବିଚାରଦ୍ୱାରା ତାକୁ କଳୁଷିତ କରିବା ଘୋର ଅସତ୍ୟ ଓ ଅଧର୍ମ ନିଶ୍ଚୟ । ଏଇ ଲେଖକର ଘୋର ବିଶ୍ୱାସ, ପ୍ରତିଭାର ପୂଜା ଈଶ୍ୱରଙ୍କରହିଁ ସ୍ତୁତି ଓ ଭଗବତ୍ ମହିମାର ସ୍ୱୀକାର । କେଉଁ କାଷ୍ଟ-

ପ୍ରୀତିଦ୍ୱାରା ଉଦ୍‌ବୁଦ୍ଧ ହୋଇ ଏଇ ଲେଖକ ଗୋପାଳକୃଷ୍ଣ ପଟ୍ଟନାୟକ, ଗଙ୍ଗାଧର ମେହେର, ନୀଳକଣ୍ଠ, ଗୋପବନ୍ଧୁ-ଗୋଦାବରୀଶଙ୍କ କାବ୍ୟକୃତିର ଉଚ୍ଛ୍ୱସିତ ପ୍ରଶଂସା କରିଛି, ତାହା ଏହି ଉଦାରଧର୍ମା ବନ୍ଧୁଗଣ କହିବେ କି ? ପ୍ରାୟ କୋଡ଼ିଏ ବର୍ଷ ତଳେ ନିମାପଡ଼ାରେ ଶିକ୍ଷକ ଥିଲାବେଳେ, ଆମ ଦେଶର ତରୁଣମାନେ, କିପରି ଅସାଂପ୍ରଦାୟିକ ଭାବରେ ବଢ଼ିବେ, ସେଥିପାଇଁ ଗୋଟିଏ ପାଠ୍ୟପୁସ୍ତକରେ (ସାହିତ୍ୟ-ପ୍ରଭା) ଶ୍ରୀକୃଷ୍ଣ, ବୁଦ୍ଧ, ଯୀଶୁଖ୍ରୀଷ୍ଟ, ମହମ୍ମଦ– ପୃଥିବୀର ଏଇ ଚାରି ପ୍ରଧାନ ଧର୍ମର ଧର୍ମପ୍ରଚାରକଙ୍କ ଜୀବନୀ ଏଇ ଲେଖକ ସନ୍ନିବେଶିତ କରିଥିଲା – ଏଥିପାଇଁ ସିଲାବସ୍‌ର ନିର୍ଦ୍ଦେଶ ନଥିଲା । ଏ ପ୍ରକାର ଚେଷ୍ଟା ବୋଧହୁଏ ଅନ୍ୟ କୌଣସି ଓଡ଼ିଆ ପୁସ୍ତକରେ ଆଗରୁ ହୋଇନଥିଲା – ଅନ୍ତତଃ ଲେଖକ ଦେଖିନଥିଲା ସେ ଯାଏଁ । ସେତେବେଳକୁ ଭାରତବର୍ଷ ତ ସ୍ୱାଧୀନ ହୋଇନଥାଏ, ସ୍ୱାଧୀନତା ପରେ ତାହା ଯେ ଧର୍ମ ନିରପେକ୍ଷ ରାଷ୍ଟ୍ର ବୋଲି ଘୋଷିତ ହେବ, ତାହା କାହାରି କଳ୍ପନାକୁ ବି ଆସିନଥିବ । ଯେଉଁ ଲୋକ କୋଡ଼ିଏ ବର୍ଷ ତଳେ ଯେଉଁ ଧର୍ମରେ ସେ ଜନ୍ମହୋଇଥିଲା ତା'ର ସଂକୀର୍ଣ୍ଣତା ପାରହୋଇ ପୃଥିବୀର ଅନ୍ୟ ସକଳ ଧର୍ମ ପ୍ରତି ଶ୍ରଦ୍ଧା ଓ ସମ୍ମାନ ଦେଖାଇବାକୁ ଯାଉଥିଲା, ସେ ଆଜି ନିଜ ଧର୍ମ ତ୍ୟାଗକରି ମଧ ତା' ସମାଜର କୁତ୍ସିତ ଜାତିପ୍ରଥା ପ୍ରତି ଲୋଭ ଛାଡ଼ିପାରିନି, ଏହା ଜଘନ୍ୟ ଅପପ୍ରଚାର ଓ ମାନସିକ ବିକୃତିର ପ୍ରତିଫଳନ ଛଡ଼ା ଆଉ କ'ଣ ହୋଇପାରେ ?

ବିଷୟଟାକୁ ପୁଣି ଅନ୍ୟ ଦୃଷ୍ଟିକୋଣରୁ ଦେଖାଯାଉ । ଇଂରାଜୀରେ 'ଆକାଡ଼େମିକ୍ ଡ଼ିସ୍‌କସନ୍' ବୋଲି ଗୋଟିଏ ସୁନ୍ଦର କଥା ଓ ପ୍ରସିଦ୍ଧି ଅଛି । ଏହା ହେଉଛି ଗୋଟିଏ ବିଷୟକୁ ବୁଦ୍ଧିଜୀବୀମାନଙ୍କର ମମତାହୀନ ଭାବରେ, ପରିପୂର୍ଣ୍ଣ ନିରପେକ୍ଷ ଭାବରେ, କେବଳ ସତ୍ୟ ପ୍ରତି ଆଖିରଖି ବିଚାରକରିବା । ଏଇ ପ୍ରକାର ଖଡ୍‌ଗଧାର ରୀତିରେ ଚାଲି ଫ୍ରୟେଡ୍ ବାପର ଝିଅପ୍ରତି ପୁଅଠାରୁ ଅଧିକ ଅନୁରାଗକୁ ଯୌନ-ସଂପର୍କର ଆଭାସ ବୋଲି କହିବାକୁ କୁଣ୍ଠାବୋଧ କରିନାହାନ୍ତି । ୟୁରୋପରେ ସତ୍ୟ-ପ୍ରତି ଏତେ ସମ୍ମାନ ଯେ ସେଠାରେ ପଣ୍ଡିତମାନଙ୍କୁ "ଆକାଡ଼େମିକ୍ ଡିସ୍‌କସନ୍' ପାଇଁ ସଂପୂର୍ଣ୍ଣ ସ୍ୱାଧୀନତା ଦିଆହୋଇଥାଏ – ବ୍ୟତିକ୍ରମ କେବଳ କମ୍ୟୁନିଷ୍ଟ ଶାସିତ ଦେଶ-ଗୁଡ଼ିକରେ । ଆକାଡ଼େମିକ୍ ଡିସକ୍‌ସନ୍‌ରେ ସତ୍ୟରେ ପହଞ୍ଚିବାପାଇଁ ସବୁକଥା କୁହା-ଯାଇପାରେ– ରାଷ୍ଟ୍ର ବିରୁଦ୍ଧରେ, ରାଜା ବିରୁଦ୍ଧରେ, ଈଶ୍ୱର ବିରୁଦ୍ଧରେ । ଆମେ ଭାରତ-ବର୍ଷରେ, କ'ଣ ସତ୍ୟର ଖାତିର୍‌ରେ, ଆକାଡ଼େମିକ୍ ଡିସ୍‌କସନ୍‌ରେ, ସାହିତ୍ୟା-ଲୋଚନାରେ ମଧ 'କାଷ୍ଟ୍'ର ନାମୋଚ୍ଚାରଣ କରିପାରିବାନି ? କାହିଁକି ଏ ଭୀରୁତା ? କାହିଁକି ଏ ଆତଙ୍କ ଓ ଅପପ୍ରଚାର ? ଯଥାସ୍ଥାନରେ ତା'ର ଆତ୍ମ-ପରୀକ୍ଷା ହେଉ ।

କିନ୍ତୁ ଏ ଲେଖକର ଧାରଣା ଯେ, କାଷ୍ଟ-କଳୁଷ ଯେ ଏ ଦେଶରେ ବଞ୍ଚିରହିଛି ସେଥିପାଇଁ କେତେକ ଉଚ୍ଚପଦସ୍ଥ ସ୍ୱାର୍ଥପର ଓ ମତାନ୍ଧ ଲୋକହିଁ ଦାୟୀ । ନଚେତ୍ ସାଧାରଣ ଜୀବନରୁ ଏହା ବହୁଦିନରୁ ଆପେ ଆପେ ଉଭେଇଯାଆନ୍ତାଣି । ଏ ଦେଶରେ କାଷ୍ଟର ଦୁଇଟି ମାତ୍ର ଆଶ୍ରୟ– ଗୋଟିଏ ଭୋଜନ, ଆଉ ଗୋଟିଏ ବିବାହ । ଭୋଜନ-ସଂକୀର୍ଣ୍ଣତା ପ୍ରାୟ ଗଲାଣି କହିଲେ ଚଳେ । ତାହା ରହିଛି ଯଦି ଲୁଚିକରି ଅଛି ବା ଅଛି ଯାଇ ମଫସଲରେ । କାଷ୍ଟ୍ କିନ୍ତୁ ଏ ପର୍ଯ୍ୟନ୍ତ ବାନ୍ଧି ହୋଇ ରହିଛି ବିବାହ ଫାଶରେ । ଏହାର ଏକମାତ୍ର ଉପାୟ ଏବଂ ସୁସାଧ ଉପାୟ ହେଉଛି ଗୋଟିଏ ଆକ୍ଟ କରିଦେବ ଯେ ଏ ଦେଶରେ କେହି ନିଜ କାଷ୍ଟ ବା ନିଜ ଧର୍ମରେ ବିବାହ କରିପାରିବେ ନାହିଁ – ଯେପରି ସଗୋତ୍ର ବିବାହ ହିନ୍ଦୁ ବିଧିରେ ମନା । ଏହା କାହିଁକି ହେଉନି, ମୁଁ ବିସ୍ମିତ ହେଉଛି । ମୋର ବିଶ୍ୱାସ ଏହା ଦିନେ ହୁଏତ ହେବ ଏବଂ ସେଇଦିନଇ ହେବ ଏକ ଭାରତୀୟ ମହାଜାତିର ନବଜନ୍ମ । ଯା' ବ୍ୟତୀତ ଦେଶରୁ କାଷ୍ଟ୍-କଳୁଷର ଅପସାରଣ ବା ଧର୍ମ ଧର୍ମର ବିଦ୍ୱେଷ ଦୂରୀଭୂତ ହୋଇ ଏକ ମହାଜାତିର ଉଦ୍ଭବ ସଂପୂର୍ଣ୍ଣ ଅସମ୍ଭବ । ଲେଖକର କିନ୍ତୁ ବିଶ୍ୱାସ ସେ ଦିନ ସୁଦୂର ନୁହେଁ । ଏବର ୟୁରୋପୀୟମାନେ ଦିନେ ଆମପରି ପୌତ୍ତଳିକ ଥିଲେ । ପରେ ସେମାନେ ଖ୍ରୀଷ୍ଟାନ୍ ହୋଇପଡ଼ିଛନ୍ତି । କିନ୍ତୁ ସେମାନେ ଏବେ ମଧ୍ୟ ତାଙ୍କ ପୂର୍ବ ଦେବତା 'ଆପଲ୍ଲୋ' 'ଜିଉସ୍' 'ମାର୍ସ୍', 'ଭିନସ୍'ଙ୍କ ଚର୍ଚ୍ଚା କରନ୍ତି, ଓ ଖ୍ରୀଷ୍ଟୀୟ କବିମାନେ ଏଇ ଅଖ୍ରୀଷ୍ଟୀୟ ଦେବତାମାନଙ୍କୁ ନେଇ ବରାବର କାବ୍ୟକବିତା ଲେଖନ୍ତି । ସେମାନଙ୍କ ବର୍ଣ୍ଣନାରେ ଏଥିଲାଗି କୌଣସି ମାନସିକ ବିକାର ଆସେନା ବା ସେ ଯୋଗୁ ଏମାନଙ୍କୁ କେହି ଅଖ୍ରୀଷ୍ଟୀୟ, ଅଧର୍ମୀ ବୋଲି ପ୍ରଚାର କରେନା । ଦିନ ଆସିବ ଆମେ ବି ସେହିପରି ବ୍ରାହ୍ମଣ, ଚଷା, ବାଉରି, ପାଣ ପ୍ରଭୃତି ଶବ୍ଦଗୁଡ଼ିକୁ ଆକାଡ଼େମିକ୍ ଭାବରେ, ବିନା ବିକାରରେ ଉଚ୍ଚାରଣ କରିବା, ଆଲୋଚନା କରିବା । ବିବେକାନନ୍ଦ କହିଛନ୍ତି, ''ଆମେ ଦିନେ ସମସ୍ତେ ହୁଏତ ବ୍ରାହ୍ମଣ ହେବା, ନଚେତ୍ ସମସ୍ତେ ହେବାକୁ ହେବ ଶୂଦ୍ର ।'' ଏଇ ଲେଖକର ବିଶ୍ୱାସ ଗାନ୍ଧି-ଗଢ଼ା ଭାରତରେ ସେହି ମହାପୁରୁଷଙ୍କ ପରି ପ୍ରତ୍ୟେକ ଭାରତୀୟ ହେବେ ବ୍ରାହ୍ମଣ ଓ ଶୂଦ୍ରର ମିଳନ କ୍ଷେତ୍ର । ପ୍ରତ୍ୟେକ ଭାରତୀୟ ଶିକ୍ଷିତ ହୋଇ ହେବ ବୁଦ୍ଧିଜୀବୀ ଏବଂ ପ୍ରତ୍ୟେକ ମଧ୍ୟ ହସ୍ତଶ୍ରମ କରି ହେବ ଚଷା ବା ଶ୍ରମିକ। ୟୁରୋପର ସାମାଜିକ ସଂସ୍କୃତିହିଁ ଏୟା । ସେ ଦିନ କେବଳ ସାରଳା ଦାସଙ୍କୁ ନୁହେଁ, ଉତ୍କଳ କୃଷକର ପରମବଂଧୁ ବ୍ରାହ୍ମଣଶ୍ରେଷ୍ଠ ଗୋପବନ୍ଧୁଙ୍କୁ ମଧ୍ୟ 'ଚଷା' କହିଲେ କେହି 'ସଂକୀର୍ଣ୍ଣ' ସାଂପ୍ରଦାୟିକତାରେ ଆତଙ୍କିତ ହୋଇଉଠିବେନାହିଁ। ତାହା ଏହା ଲେଖକର ଦେଶ ଓ ଜାତି ସଂପର୍କରେ ପ୍ରିୟ ସ୍ୱପ୍ନ ।

# ସହଯୋଗ ଅଭ୍ୟାସ

'ଆଗାମୀ'ର ସଂପାଦକ ମତେ ଛାତ୍ରମାନଙ୍କ ଭିତରେ ସହଯୋଗ ସମ୍ଭାବନା ବିଷୟରେ କିଛି ଲେଖିବାକୁ ଅନୁରୋଧ କରିଛନ୍ତି । ଏ ଖୁବ୍ ଉତ୍ତମ ବିଷୟ । ଛାତ୍ରମାନଙ୍କ ଭିତରେ ଏହାର ତତ୍ତ୍ୱ, ମହତ୍ତ୍ୱ ଓ ସୁଫଳ ବହୁଳ ଭାବରେ ପ୍ରଚାରିତ ହେବା ଉଚିତ୍ । କିନ୍ତୁ ତରୁଣ ସମ୍ପାଦକ ମତେ ଏ ବିଷୟ ଉପରେ ଏକ ଧୁରନ୍ଧର ବୋଲି କାହିଁକି ଭାବିଲେ, ମୁଁ ବିସ୍ମିତ ହେଉଛି ଭାବି । କାରଣ ବ୍ରିଟିଶ୍ ଅମଳରୁ ଏଇ ବିଦ୍ୟାର ପ୍ରୟୋଗ ପାଇଁ ଏ ଦେଶରେ ଏକ ବିରାଟ ଡିପାର୍ଟମେଣ୍ଟ ଠିଆକରାଯାଇଛି । ଆମ ପରି 'ଲୋମାନ' ବା 'ବାଜେ' ଲୋକଙ୍କୁ ନ ଲୋଡ଼ି ଯଥାର୍ଥ ଡିପାର୍ଟମେଣ୍ଟର ଧୁରନ୍ଧରମାନଙ୍କଠାରୁ ହିଁ ଏ ବିଦ୍ୟାର ଚର୍ଚ୍ଚା କରିବା ଉଚିତ୍ ।

କିନ୍ତୁ ଗୋଟିଏ ଗପ ଅଛି ଯେ, ବ୍ରିଟିଶ୍ ଅମଳରେ ଜଣେ ମାର୍କିନ୍ ଭ୍ରମଣକାରୀ ଭାରତବର୍ଷରେ ବୁଲି ବୁଲି ଯାହା ଦେଖିଲେ, ସେ ଭିତରେ ତାଙ୍କୁ ଦୁଇଟି କଥା ଅତି ବିସ୍ମୟକର ବୋଧହେଲା – ଗୋଟିଏ ହେଉଛି ଏଇ ଯେ ଭାରତବର୍ଷରେ ଲୋକେ ଲୁଗା ସାହାଯ୍ୟରେ ପଥର ଫଟେଇବାକୁ ଚେଷ୍ଟା କରିବାର ଦେଖାଯାଏ, ଆଉ ଗୋଟିଏ ହେଉଛି ଯେ, ଶହେ ବର୍ଷ ଧରି ଇଂରେଜ-ସ୍ଥାପିତ କୃଷି ଫାର୍ମମାନଙ୍କରେ ବୈଜ୍ଞାନିକ ପ୍ରଣାଳୀରେ ଚାଷ ହୋଇ ଆସୁଥିଲେ ହେଁ ଫାର୍ମର ବାଡ଼ ଆରପଟେ, ଭାରତୀୟ କୃଷକ ପାଞ୍ଚହଜାର ବର୍ଷ ତଳର ଆଦିମ ରୀତିରେ ସେଇପରି ଚାଷ କରି ଆସୁଛି । ପ୍ରଥମ ଆଶ୍ଚର୍ଯ୍ୟଟି ବୋଧହୁଏ ମାର୍କିନ୍ ଭଦ୍ରଲୋକ ଆମ ଦେଶର ଧୋବାଙ୍କୁ ଦେଖି ଅନୁମାନକଲେ– ଏ ପ୍ରକାର ବସନ-ଧୌତି କେବଳ ଆମେରିକା କାହିଁକି, ପୃଥିବୀର ଅନ୍ୟ କୌଣସି ଦେଶରେ ବୋଧହୁଏ ନାହିଁ । ଦ୍ୱିତୀୟ ବିସ୍ମୟଟି ବର୍ତ୍ତମାନ ବି ତ ସ୍ୱକୀୟ ମହିମାରେ ବିରାଜିତ ।

ବୈଜ୍ଞାନିକ ପ୍ରଣାଳୀରେ କୃଷି ଯେପରି ଫାର୍ମ ବାଡ଼ ଡେଇଁ ଆରପଟ ବିଲକୁ ଯାଇପାରୁନି, ସେଇପରି ଅନେକ କଥା ଏ ଦେଶରେ ଘଟୁଛି । ଏ ଦେଶରେ ସେହିପରି ସହଯୋଗ-ନୀତି । କିଛି ଦିନ ତଳେ ଖବରକାଗଜରେ ପଢ଼ିଲି, ଆମ ଷ୍ଟେଟର ମୁଖ୍ୟମନ୍ତ୍ରୀ କହିବାର ଲେଖାହୋଇଛି ଯେ, ଏ ଦେଶରେ ସହଯୋଗ ସଫଳ

* ଆଗାମୀ, ୩ୟ ବର୍ଷ, ୨ୟ ସଂଖ୍ୟା ।

ତ ଏ ପର୍ଯ୍ୟନ୍ତ ହୋଇନାହିଁ, ହେବ ବି ନାହିଁ, ଯେପରି ରୀତିରେ ତା'ର କାମ ଚାଲିଛି । ଦେଶର ପ୍ରଧାନ ପୁରୁଷଙ୍କ ମୁଖରେ ଯେତେବେଳେ ଏ ପ୍ରକାର ନିରାଶାର ବାଣୀ, ଆମର ଏ ପୋଥିବାଇଗଣ ଚର୍ଚ୍ଚା କରି କି ଲାଭ ତେବେ ?

କିନ୍ତୁ ମୋର ଦୃଢ଼ ବିଶ୍ୱାସ ଏଇ ଯେ, ଏ ଦେଶର ଦାରିଦ୍ର୍ୟ ଘୁଞ୍ଚିବାର ଏବଂ ଗ୍ରାମ୍ୟ ଓ ନଗର ଜୀବନରେ ଶ୍ରୀ-ସମୃଦ୍ଧି ଫେରିଆସିବାର ଯଦି ଏକମାତ୍ର ଉପାୟ ଥାଏ, ତାହା ହେଉଛି ସହଯୋଗ । ଭୋଟ୍ ଦେଇ ଲୋକପ୍ରତିନିଧି ବାଛିଦେଲେ, ବା ଗଣ୍ଡା ଗଣ୍ଡା ମୋଟା ଦରମାର ଅଫିସର ସୃଷ୍ଟି କରିବାରେ, ବା ଲୋକଙ୍କ ଉପରେ ସ୍କୁଲ କଲେଜ ଲଦିଦେଲେ, ଦେଶ ଉନ୍ନତ ହୋଇଗଲା ବୋଲି ଭାବିବା ଏକ ମାରାତ୍ମକ ଆତ୍ମପ୍ରତାରଣା ଛଡ଼ା ଆଉ କିଛି ନୁହେଁ । ଉନ୍ନତିର ଏକମାତ୍ର ଚିହ୍ନ ହେଉଛି ଲୋକମାନଙ୍କ ଅନ୍ତରରୁ ଉପରକୁ ଉଠିବାର ସ୍ୱାଭାବିକ ଉତ୍ସାହ ଓ ତାହା ପରସ୍ପରକୁ ବିଶ୍ୱାସ କରି, ସାହାଯ୍ୟ କରି, ଓ ସମୂହ-ଉନ୍ନତି ପାଇଁ ବ୍ୟକ୍ତିଗତ ସ୍ୱାର୍ଥକୁ ପଛକୁ ପକେଇବା ଅଭ୍ୟାସ କରିବାରେ ।

ସହଯୋଗ, ତେଣୁ ଗୋଟିଏ ଡିପାର୍ଟମେଣ୍ଟ କେବଳ ହୋଇନପାରେ – ଏହା ହେବା ଉଚିତ ଏକ ମାନସିକ ଓ ଚାରିତ୍ରିକ ଅଭ୍ୟାସ । ଆମକୁ ମାନିବାକୁ ହେବ ଯେ ଏ ଅଭ୍ୟାସ ଓ ଏ ମାନସିକତା ଆମ ଜାତିରେ ନାହିଁ । ତେଣୁ ଯଦି ଏହା ଆମେ ଶିକ୍ଷଣୀୟ ଓ ଦୈନନ୍ଦିନ ଜୀବନରେ ଆଚରଣୀୟ ବୋଲି ଠିକ୍‌କରିବା, ତେବେ ଏକମାତ୍ର ଉପାୟ ହେଉଛି, ଆମ ପିଲାଙ୍କୁ ଅକ୍ଷର ଶିଖେଇବା ସାଙ୍ଗେ ସାଙ୍ଗେ, ବା ତା' ପୂର୍ବରୁ ମଧ୍ୟ, ଏଇ ସହଯୋଗର ଅଭ୍ୟାସ ସେମାନଙ୍କୁ ଶିଖେଇବା ଉଚିତ୍ । ଆମେ ତ ଘରେ ଓ ସ୍କୁଲରେ ଓ ଦେଶର ଶାସନ ପରିଚାଳନାରେ, ଆମ ପିଲାଙ୍କୁ ଏପରି ବଢ଼େଇ ଆଣୁଛୁ, ଏପରି ଗଢୁଛୁ ଯେ, ଆମେ ବ୍ରାହ୍ମଣ, କରଣ, ଚଷା, ଧୋବା ଭାବରେ ପରସ୍ପରକୁ ଅଲଗା କରି, ଅନ୍ୟୋନ୍ୟକୁ ବେଶ୍ ଘୃଣା କରିପାରିଛୁ ? ଯଦି ଚେଷ୍ଟା କରାଯାଏ, ଆଉ ଆନ୍ତରିକତା ଥାଏ ସେ ଚେଷ୍ଟାରେ, ତେବେ ଏ ଘୃଣା ପରିବର୍ତ୍ତରେ ଆମେ ପରସ୍ପର ପ୍ରତି ବିଶ୍ୱାସ, ସ୍ନେହ, ସମବୋଧ ଓ ସହଯୋଗ ଆମର ଏଇ ଭଙ୍ଗା-ଦଦରା ଜାତୀୟ ଚରିତ୍ରକୁ ଏକାଠି ବାନ୍ଧି ରଖିବାର ଉତ୍କୃଷ୍ଟ ସିମେଣ୍ଟ ରୂପେ ପାଇପାରିବାନି କି ? ରାଜଗାଙ୍ଗପୁର ସିମେଣ୍ଟ ଅପେକ୍ଷା ଏ ସିମେଣ୍ଟ୍ ଆମର ଆଜି ବେଶୀ ଦରକାର ନାହିଁ କି ?

ଛାତ୍ରମାନଙ୍କ ଭିତରେ ଏଇ ସହଯୋଗ ଭାବ କିପରି ପ୍ରଚାରିତ ହେବ, ତାହା ସାମାନ୍ୟ ଭାବରେ ହେଲେ ହେଁ, ମୁଁ ଇନ୍‌ସପେକ୍‌ଟର ବା ପ୍ରିନ୍‌ସିପାଲ ଭାବରେ ଯେତେଦିନ କାମ କରିଛି, ତା'ର ଚେଷ୍ଟାରେ ଅଭାବ କରି ନାହିଁ । ସମ୍ବଲପୁର

କଲେଜରେ ସହଯୋଗମୂଳକ କେତୋଟି ଅନୁଷ୍ଠାନ ତ ଏଯାଏ ଠିଆରହିଛନ୍ତି, ଓଡ଼ିଶାର ଅନେକ ହାଇସ୍କୁଲ ଓ ମାଇନର ସ୍କୁଲରେ ମୋର ଏ ସଂପର୍କିତ ସର୍କୁଲାର ସବୁ ଏ ପର୍ଯ୍ୟନ୍ତ ଥାଇପାରେ । ମୋର ଯେତେଦୂର ମନେହେଉଛି, ମୁଁ ସ୍କୁଲ-ହଷ୍ଟେଲ ପରିଚାଳନା ନେଇ ଯେଉଁ ସର୍କୁଲାର ଦେଇଥିଲି, ସେଥିରେ ଲେଖିଥିଲି ଯେ, କୌଣସି ହଷ୍ଟେଲରେ ଧନୀ ମେସ୍, ଗରିବ ମେସ୍ ଯେପରି ନ ରହେ, ଧନୀ ଦରିଦ୍ର, ନିର୍ବିଶେଷରେ ସମସ୍ତେ ସମାନ ଖାଦ୍ୟ ଖାଇବେ । ଯେତେଦୂର ସମ୍ଭବ କୌଣସି ଲୋକକୁ 'ଚାକର' ଭାବରେ ରଖାଯିବନାହିଁ, ପିଲାମାନେ ନିଜ ହାତରେ ହଷ୍ଟେଲ ସଫାସୁତୁରା ରଖିବେ, ପୁଣି କେହି ଧନୀ-ପିଲା ଜୋତା ଓ ସିଲ୍କ ପୋଷାକ ପିନ୍ଧି ପାରିବେନି– ଯଦି ତାହାର ବ୍ୟବହାର ଅଧିକାଂଶ ପିଲାଙ୍କ ପକ୍ଷରେ ସମ୍ଭବ ନ ଥାଏ । ଇତ୍ୟାଦି ଇତ୍ୟାଦି ଅନେକ କଥା । ଏ ସବୁର ଲକ୍ଷ୍ୟ ହେଲା ଏଇ ଯେ, ଆମ ପିଲେ ମୂଳରୁ ଯେପରି ଏକ ଗୋଷ୍ଠୀ ଜୀବନଯାପନ କରିବାରେ ଅଭ୍ୟସ୍ତ ହେବେ, ଯାହା ଧର୍ମ-ଧନ-ଜାତି-ଭେଦ-ଶୂନ୍ୟ, ଏବଂ ଯାହାର ସୁଖ-ସମୃଦ୍ଧି ପରସ୍ପର ପ୍ରତି ସହଯୋଗରେ ହିଁ ସମ୍ଭବ ।

ଆମର ଏକ ଧାରଣା ଯେ ସହଯୋଗ କହିଲେ 'ଅଂଶ' ଏକାଠି କରି କେବଳ ବ୍ୟବସାୟ ଠିଆକରେଇବା । ଏହା ଯେ ଏକ ସୁନ୍ଦର ଆର୍ଥିକ ସହଯୋଗର ନମୁନା ଏଥିରେ କୌଣସି ସନ୍ଦେହ ନାହିଁ । ଏ ଦେଶରେ, ଅନ୍ତତଃ ଓଡ଼ିଶାରେ, ଏହାର ବହୁ ପରୀକ୍ଷା ହୋଇଯାଇଛି, କିନ୍ତୁ ଫଳ ହୋଇଛି ନୈରାଶ୍ୟ । କାରଣ ଯେଉଁ ମାନସିକ ଓ ସାମାଜିକ ସହଯୋଗ ଜାତୀୟ ଜୀବନର ମୂଳଭିତ୍ତି ତାହାର ଅସ୍ତିତ୍ୱ ନଥିବାରୁ, ଆର୍ଥିକ ଯୌଥ ଚେଷ୍ଟା ଠିଆହେଇପାରୁନାହିଁ । ସେ ସହଯୋଗ ମନୋବୃତ୍ତି, ତେଣୁ ଆମ ପିଲାଙ୍କ ଭିତରେ ସେଇ ଛାତ୍ର ଜୀବନରୁ ହିଁ ନ ଗଢ଼ିଲେ, ଆମର ଅନ୍ୟ ଗତି ନାହିଁ ।

କିନ୍ତୁ ଆମର ବର୍ତ୍ତମାନ ଅବସ୍ଥା ଯାହା, ସେଥିରେ ସାମାଜିକ ଓ ମାନସିକ ସହଯୋଗଭାବ ନୂଆ ପୁରୁଷଙ୍କ ଭିତରେ ଗଢ଼େଇ ଠିଆ କଲା ପର୍ଯ୍ୟନ୍ତ ଅପେକ୍ଷା କରିପାରିବାନାହିଁ । ଆର୍ଥିକ, ସାମାଜିକ ଓ ଚାରିତ୍ରିକ ସହଯୋଗର ଅଭ୍ୟାସ ଏକାବେଳକେ କରେଇବାକୁ ହେବ ଓ ବର୍ତ୍ତମାନ ହିଁ କରେଇବାକୁ ହେବ । ଯଦି ଦେଶର ଶତ ଶତ ସ୍କୁଲର ହେଡ୍‌ମାଷ୍ଟରଗଣ ଏଥିକି ଦୃଷ୍ଟି ଦେବେ ଜାତିର ସାମାଜିକ ଓ ଆର୍ଥିକ ବିପ୍ଳବ କି କେବଳ ଚିନ୍ତାରର ବିଷୟ ହୋଇ ରହିବ ? ମୋର ବିଶ୍ୱାସ, ହଷ୍ଟେଲର ରୋଷେଇଘରଠୁ ଆରମ୍ଭକରି ପାଠ୍ୟପୁସ୍ତକ କିଣା ପର୍ଯ୍ୟନ୍ତ, ଗୋଟିଏ ସ୍କୁଲର ସକଳ ବିଭାବ ସହଯୋଗ ରୀତିରେ ସୁନ୍ଦର ପରିଚାଳିତ ହୋଇପାରିବ – ଏପରିକି କ୍ଳାସ୍ ପ୍ରମୋଶନ ପର୍ଯ୍ୟନ୍ତ – କେବଳ ଦରକାର ଶିକ୍ଷକମାନଙ୍କର ସହୃଦୟ ନେତୃତ୍ୱ ।

ଆମ ଦେଶରେ ଏ ପର୍ଯ୍ୟନ୍ତ ଏଇ ଭାବଟା କଟିପାରିଲାନି ଯେ ମାଷ୍ଟ୍ରେ ଓ ଛାତ୍ରମାନେ ଗୋଟାଏ କାମରେ ନିଯୁକ୍ତ– ସେମାନେ ପରସ୍ପରର ବିରୋଧୀ ନୁହନ୍ତି, ପରସ୍ପରର ପରିପୂରକ ମାତ୍ର । ସମ୍ବଲପୁର କଲେଜରେ ଏଇ ଭାବଟା କଟେଇବାକୁ ମତେ ଦୀର୍ଘ ତିନିବର୍ଷ ଲାଗିଥିଲା । ପିଲେ ପୂର୍ବର ଐତିହ୍ୟ ଅନୁସାରେ ମୋର ପ୍ରତି କଥାର ପ୍ରତିରୋଧ କରିଥିଲେ । ମୁଁ ଯାହା କରିବାକୁ ଯାଉଛି ତାହା ଯେ ତାଙ୍କରି ମଙ୍ଗଳ ପାଇଁ, ଏହା ପିଲେ ପ୍ରଥମେ ବିଶ୍ୱାସ କଲେନାହିଁ । କିପରି ବା କରିବେ ? କିନ୍ତୁ ଆସ୍ତେ ଆସ୍ତେ ପରେ ବୁଝିଲେ । ପ୍ରଥମେ ପ୍ରତି ଶିକ୍ଷାନୁଷ୍ଠାନରେ ଏଇ ଭାବଟାର ଅବସାନ ଘଟୁ । ତା' ପରେ ବରାବର ଚେଷ୍ଟା ହେଉ ପିଲା ଓ ଶିକ୍ଷକଙ୍କ ମିଳିତ ଚେଷ୍ଟାରେ ବିଦ୍ୟାନୁଷ୍ଠାନର, ଅନ୍ତତଃ ପ୍ରତି ହଷ୍ଟେଲର, କେତେଟା 'କାମ ସୁନ୍ଦର ନିର୍ବାହିତ ହୋଇପାରେ । ପ୍ରତି ହଷ୍ଟେଲ୍‌ରେ ବା ପ୍ରତି ସ୍କୁଲରେ ପ୍ରତି ପିଲା ପ୍ରତି ମାସରେ କିଛି ନା କିଛି ସଂଚୟ ପାଣ୍ଠିକି ଦେବେ– ବାଧ୍ୟ ରୀତିରେ– ତାହା ଟଙ୍କାଏ ହେଉ ବା ଅଣାଏ ହେଉ । ଆଉ ପ୍ରତ୍ୟେକେ ଦେବେ ଶ୍ରମ କିଛି ପ୍ରତ୍ୟହ । ଏତିକି ପୁଞ୍ଜିରେ ଅସମ୍ଭବ କାମ କରିହେବ । ଯଦି ଏ ଦେଶରେ ଶିକ୍ଷକଙ୍କଠାରୁ ଏ ଦିଗରେ ନେତୃତ୍ୱ ନ ମିଳୁଛି, ନେତୃତ୍ୱ ଆସୁ 'ପ୍ରଗତିବାଦୀ' ଛାତ୍ରଙ୍କଠାରୁ । ସେ ତ ହେବ ଦେଶ ପକ୍ଷରେ ଅଧିକ ଗୌରବ ଓ ଆଶାର କଥା ।

——

# ଭାରତରେ କର୍ତ୍ତବ୍ୟ-ବୋଧ*

ଭାରତର ପ୍ରାଚୀନ ସାହିତ୍ୟରେ, ଏବପରିକା, ସଂସ୍କୃତି (କଲଚର୍) ଶବ୍ଦଟା ସେତେ ଦେଖାଯାଏନାହିଁ । କିନ୍ତୁ ତା'ର କ'ଣ ଏହି ବ୍ୟଞ୍ଜନା ଯେ, ପ୍ରାଚୀନ ଭାରତୀୟ ମାନେ ଅନ୍-କଲଚର୍ଡ଼ ବା ସଂସ୍କୃତି-ବିହୀନ ଜାତି ଥିଲେ ? ଅଥବା ଆମେ, ଏବର ଭାରତୀୟମାନେ, ଦିନ ନାହିଁ, ରାତି ନାହିଁ, 'ସଂସ୍କୃତି' ଶବ୍ଦଟାକୁ ଘୋଷିହେଉଥିଲେ ମଧ୍ୟ ଏବଂ ରାଜ୍ୟେ ରାଜ୍ୟେ ଏକ ଏକ ସରକାରୀ 'ସାଂସ୍କୃତିକ' ବିଭାଗ ଖୋଲି-ଦେଇ ନାଟତାମସା ଇତ୍ୟାଦିରେ କୋଟିକୋଟି ଟଙ୍କାର (ଅପ) ବ୍ୟୟ କରି ଚାଲି-ଥିଲେହେଁ, ଆମେ ସତ୍ସାହସର ସହିତ କହିପାରିବାକି ଯେ, ଆମେ ଆଜି ସତ୍ୟରେ – ଏକ ଉଚ୍ଚ-ସଂସ୍କୃତି-ସଂପନ୍ନ ଜାତି ବୋଲି ଦାବି କରିପାରିବା ?

ଭାରତୀୟ ଚିନ୍ତାଧାରାରେ, ସମଗ୍ର ପାର୍ଥିବ ଜୀବନ ସତ୍ତା ଏକ ଅଖଣ୍ଡ ସତ୍ତା । ଏହାହିଁ ଭାରତୀୟ ସଭ୍ୟତା ସଂସ୍କୃତିର ପରମ ବୈଶିଷ୍ଟ୍ୟ ଏବଂ ଗାନ୍ଧିଜୀଙ୍କ ଜୀବନହିଁ ଏହି ଭାରତୀୟ ବୈଶିଷ୍ଟ୍ୟର ପରମ ଆଧୁନିକ ପ୍ରତୀକ । ସାରା ପୃଥିବୀରେ ଏବଂ ମନୁଷ୍ୟର ଦୀର୍ଘ ଇତିହାସ ଧରି, ଧର୍ମ ଓ ରାଜନୀତିକୁ ଦି'ଟା ସଂପୂର୍ଣ୍ଣ ଅଲଗା ଅଲଗା ବସ୍ତୁ କରି ଧରାଯାଇଥିଲା । ଅର୍ଥାତ୍ ଧରିନିଆଯାଉଥିଲା ଯେ ହିଂସା ବା ମିଥ୍ୟା, ମନ୍ଦିରରେ ପାପ ହୋଇପାରେ, କିନ୍ତୁ ରାଜ୍ୟ-ଶାସନ କ୍ଷେତ୍ରରେ ନୁହେଁ । କିନ୍ତୁ ମାନ-ବେତିହାସରେ ଗାନ୍ଧିଜୀ ଧର୍ମ ଓ ରାଜନୀତିକୁ ନିଜ ଜୀବନରେ ଏକାକାର କରି, ଏହି ଭ୍ରାନ୍ତ ଧାରଣାକୁ, ଏହି ଈଶ୍ୱରହୀନ, ଯନ୍ତ୍ରଦାନବର ଯୁଗରେ ସମୂଳେ ଅପ୍ରମାଣିତ କଲେ । ଏବଂ ସମଗ୍ର ଆଧୁନିକ ବିଶ୍ୱ, କେବଳ ସେହି କାରଣରୁହିଁ, ଲଣ୍ଡନର ଇନର୍ ଟେମ୍ପଲ୍‌ର ସାଧାରଣ ପାସ୍‌କରା ଏକ ବାରିଷ୍ଟର୍‌କୁ ସଶ୍ରଦ୍ଧ ଅଭିବାଦନ ଜଣାଇଲା ମହାମାନବ 'ମହାତ୍ମା' ବୋଲି । ଏହା ଗାନ୍ଧିଙ୍କର ଏବଂ ଭାରତୀୟ ସଂସ୍କୃତି, ଉଭୟର ପରମ ବିଜୟ । ଠିକ୍ ଏହି କାରଣରୁହିଁ ଗାନ୍ଧିଜୀଙ୍କ ମୃତ୍ୟୁବେଳେ ବିଶ୍ୱ-ବିଖ୍ୟାତ 'ଲଣ୍ଡନ ଟାଇମ୍‌ସ' ପତ୍ରିକା ଅକୁଣ୍ଠିତ ଭାବରେ ଘୋଷଣା କରିଥିଲେ- 'ଏପରି ଜଣେ ମହାତ୍ମାକୁ କେବଳ ଭାରତବର୍ଷ ଓ କେବଳ ହିନ୍ଦୁ ଧର୍ମହିଁ ପ୍ରସବ କରିପାରେ ।'

ପ୍ରାଚୀନ ଭାରତବର୍ଷ ଏହି ପାର୍ଥିବ ଜୀବନରେ ମନୁଷ୍ୟକୁ ଯାହା କିଛି ସଭ୍ୟ-ସୁନ୍ଦର-ସମ୍ମାନନୀୟ କରିବାରେ ସାହାଯ୍ୟ କରିଥାଏ, ସେ ସମସ୍ତଙ୍କୁ ଯେଉଁ ଗୋଟିଏ

---

* ନବରବି, ମେ ୧୯୭୨, ୨ୟ ବର୍ଷ, ୧୧ଶ ସଂଖ୍ୟା ।

ମାତ୍ର ଶବ୍ଦରେ ପ୍ରକାଶ କରିପାରିଥିଲା, ସେହି ଶବ୍ଦଟି ହେଲା, 'ଧର୍ମ' । ବୁଦ୍ଧ ଓ ଗାନ୍ଧି ମହାମାନବ ହେଲେ, କାରଣ ଏକ କଥାରେ ସେମାନେ ପରିପୂର୍ଣ୍ଣ ଭାବରେ 'ଧର୍ମ'ର ଆଶ୍ରୟ ନେଇଥିଲେ ।

ଧର୍ମ ହେଲା ଏକ ଶାସ୍ତ୍ରୀୟ ଶବ୍ଦ । ତା'ର ସାଧାରଣ ସାମାଜିକ ପ୍ରତିପଦ ହେଲା 'କର୍ତ୍ତବ୍ୟ' । ଧର୍ମ ଓ କର୍ତ୍ତବ୍ୟ ଏକା କଥା । ଯେଉଁ ଲୋକ ତା'ର 'କର୍ତ୍ତବ୍ୟ' କରୁନି, ସେ ଯେତେ ମାଳି ଗଡ଼ାଉନା କାହିଁକି ସେ ଧାର୍ମିକ ହୋଇନପାରେ । ତେଣୁ ଆମର ସକଳ ସ୍ମୃତିଶାସ୍ତ୍ର ଲେଖାହୋଇଥିଲା, ସମାଜରେ ଥିବା ଆମ ପ୍ରତ୍ୟେକଙ୍କୁ ଆମ ନିଜ ନିଜର 'କର୍ତ୍ତବ୍ୟ' ଶିଖେଇବା ପାଇଁ । ଶ୍ରୀମଦ୍‌ଭଗବଦ୍‌ଗୀତା ଆମକୁ ଆମର ଏଇ 'କର୍ତ୍ତବ୍ୟ' ଶିଖେଇବାର ଏକ ଗ୍ରନ୍ଥ ମାତ୍ର ଯାହାର ଅନ୍ୟ ନାମ ହେଲା 'କର୍ମଯୋଗ' । ସେହିପରି ମଧ୍ୟ ରାମାୟଣ, ମହାଭାରତ ପରି ଆମର ବହୁ ଜନପ୍ରିୟ କାବ୍ୟ ନାଟକ ବହୁ ଭାବରେ ଆମରି 'କର୍ତ୍ତବ୍ୟ' ନିର୍ଦ୍ଦେଶ କରିଥାନ୍ତି, ତାହାହିଁ ଧର୍ମ । ଗାନ୍ଧିଜୀଙ୍କର 'ଧର୍ମ-ଚେତନା' କେବଳ ହିନ୍ଦୁ ସଂସ୍କୃତି ବା ସାହିତ୍ୟରେ ସୀମାବଦ୍ଧ ନଥିଲା । ବୌଦ୍ଧ, ଖ୍ରୀଷ୍ଟିୟାନ, ମୁସଲମାନ– ସବୁ ସଂସ୍କୃତିରୁ ସେ ତାଙ୍କ ବୁଦ୍ଧି ଓ ଆତ୍ମା ପାଇଁ ଖାଦ୍ୟ ସେହି ସଂଗ୍ରହ କରିଥିଲେ । ବାହାରେ ସେସବୁ ପ୍ରକାଶ ପାଉଥିଲା, ତାଙ୍କର ବିସ୍ମୟକର 'କର୍ତ୍ତବ୍ୟ-ବୋଧ'ରେ, ଯାହା ଦେଖାଇଦେଉଥିଲା ଯେ, ତାଙ୍କ ଚିନ୍ତା ଓ କର୍ମ ଭିତରେ ଥିଲା ଏକ ମହନୀୟ ଅଭିନ୍ନତା, ଯାହାକି ଏକାନ୍ତରେ ଭାରତୀୟ ସଂସ୍କୃତି ।

ଭାରତୀୟ ମାନଦଣ୍ଡରେ ଏକମାତ୍ର କଠୋର ଭାବରେ କର୍ତ୍ତବ୍ୟ-ବୋଧ-ଥିବା ଲୋକକୁହିଁ ସତ୍ୟରେ 'କଲ୍‌ଚର୍ଡ଼' ବା ସଂସ୍କୃତିସଂପନ୍ନ କୁହାଯିବ, ଅନ୍ୟଥା ନୁହେଁ । ମନ୍ତ୍ରୀ, ପ୍ରେଫେସର ବା ଭାଇସ୍-ଚାନ୍‌ସେଲର ଆଦି, ତଥାକଥିତ ବଡ଼ଲୋକେ ଆଜି ତ ସାରା ଦେଶରେ ସାଲୁରୁ-ବାଲୁରୁ ହେଉଛନ୍ତି – କିନ୍ତୁ ଏ ଜାତି ସଂସ୍କୃତିରେ ତଳକୁ ତଳକୁ ଖସୁଛି କାହିଁକି ? କାରଣ ଆମେ ଆଜି ସମସ୍ତେ ସ୍ୱାର୍ଥ-ମୁଖ୍ୟ ଲୋକ । ଆମର 'ଧର୍ମ-ବୋଧ', ଅର୍ଥାତ୍ 'କର୍ତ୍ତବ୍ୟ-ବୋଧ' ଆଜି ଦୁର୍ବଳ ବା ଅବହେଳିତ । ନଚେତ୍, ଆଜିର ଏ ଦେଶର ତଥାକଥିତ ପ୍ରଫେସର, କାଷ୍ଟ-ବା-ପ୍ରିୟାପ୍ରିୟ ବିଚାରରେ ପାସ୍-ବାଣ୍ଟିବାର ଶୁଣା ଯାଉ ନଥାନ୍ତା । ସେହିପରି ଏବର ମନ୍ତ୍ରୀ– ସେହିପରି ଏବର ଭାଇସ୍-ଚାନ୍‌ସେଲର – ସେହିପରି ଆମେ ସମସ୍ତେ ।

କିନ୍ତୁ ଏଇ ସେଦିନ ପର୍ଯ୍ୟନ୍ତ, ଏହି ଐତିହାସିକ ରାଷ୍ଟ୍ରରେ ଏହି 'କର୍ତ୍ତବ୍ୟ-ବୋଧ' ଆମର ନିରକ୍ଷର ଜନତାର ଚେତନାରେ ମଧ୍ୟ କି ଗଭୀର ଭାବରେ ପ୍ରତିଷ୍ଠିତ ଥିଲା, ତା'ର ଜ୍ୱଳନ୍ତ ଉଦାହରଣ ଶ୍ରୀରାମକୃଷ୍ଣ ଓ ଶାରଦାମଣି । ଏ ଦୁହେଁ ଥିଲେ

ସଂପୂର୍ଣ୍ଣ ନିରକ୍ଷର – ସାଧାରଣ ଦୃଷ୍ଟିରେ ଏକାନ୍ତ ଭାବରେ 'ମୂର୍ଖ' । ଅଥଚ ନିରକ୍ଷର ଗଦାଧର ଭଟ୍ଟାଚାର୍ଯ୍ୟ, ଏ ଦେଶର ଆଜିର ସହସ୍ର ସହସ୍ର ପ୍ରଫେସର, ଭାଇସ୍-ଚାନସେଲରଙ୍କଠାରୁ ମଧ୍ୟ ଅନ୍ତରରେ ଥିଲେ ଅଧିକ କଲ୍‌ଚର୍ଡ଼ ଓ ଅଧିକ ଜ୍ଞାନ-ଚକ୍ଷୁବାନ୍ । ସେଥିପାଇଁ ସେ ନାହିଁକରିଦେଲେ ଚାଟଶାଳୀର ପାଠପଢ଼ିବାକୁ । ସେ କହିଥିଲେ – "ଯେଉଁ ପାଠ ପଢ଼ିଲେ ଖାଲି ଚାଉଳ-କଦଳୀ ମିଳିବ, ସେ ପାଠ ମୋର କ'ଣ ହେବ ?" ସେ ଖୋଜିଥିଲେ ଈଶ୍ୱରଙ୍କୁ । ଏବଂ ଅଜ୍ଞାତନାମା ଇନର୍-ଟେମ୍ପଲ୍ ବାରିଷ୍ଟର ମୋହନ ଦାସ ଗାନ୍ଧି ଦିନେ ବିଶ୍ୱ-ବନ୍ଦ୍ୟ ମହାତ୍ମା ହେଲା ପରି, ମୂର୍ଖ ପଣ୍ଡା-ପିଲା ଗଦାଇ ଭଟ୍ଟାଚାର୍ଯ୍ୟ ମଧ୍ୟ ହୋଇଉଠିଲେ ବିଶ୍ୱ-ବନ୍ଦ୍ୟ 'ଓ୍ୱାର୍ଲଡ଼-ଟିଚର୍' ବା ଲୋକ-ଗୁରୁ, ଠିକ୍ ସେହି କାରଣରୁ ।

ଗଦାଧର ଭଟ୍ଟାଚାର୍ଯ୍ୟ ପିଲାଦିନରୁ ବିବାହ କରିପକେଇଥିଲେ । ଯା'କୁ ବିବାହ କଲେ, ସେ ତାଙ୍କରି ପରି ଥିଲେ ଦରିଦ୍ର ଓ ନିରକ୍ଷରା । ଅପରିଣତବୟସ୍କା ଶାରଦାମଣି ବାପଘରେ ରହିଲେ । ବର ଗଦାଧର ତେଣେ ଶାରଦାମଣିଙ୍କ କଥା ସଂପୂର୍ଣ୍ଣ ଭୁଲିଯାଇ ଦକ୍ଷିଣେଶ୍ୱର କାଳୀ-ମନ୍ଦିରରେ 'ମା'-ଙ୍କୁ ପାଇବା ପାଇଁ ପାଗଳ-ହେଲେ ।

ଦିନେ, ଉଭିନ୍ନ-ଯୌବନା ଶାରଦାମଣିଙ୍କ କାନରେ ପଡ଼ିଲା ଯେ, ତାଙ୍କର ସ୍ୱାମୀ କଲିକତାସ୍ଥ ଏକ ଦେଉଳରେ 'ପାଗଳ' ।

ଏକ ପାଗଳ ସ୍ୱାମୀଠାରୁ ସେହି କିଶୋରୀ ବାଳିକା କ'ଣ ଆଶା କରିପାରନ୍ତେ ? କିନ୍ତୁ ଏ ଦେଶର ପ୍ରାଚୀନ ଐତିହ୍ୟ ନିରକ୍ଷର ଜନତାକୁ ମଧ୍ୟ ଶିଖାଇରଖିଛି, ବିବାହିତା ସ୍ତ୍ରୀର 'ଧର୍ମ' ବା 'କର୍ତ୍ତବ୍ୟ କ'ଣ । ନିରକ୍ଷରା ଶାରଦାମଣିଙ୍କର ପ୍ରତି ସ୍ନାୟୁରେ ତାହା ପୂରି ରହିଥିଲା । ସେ ଏକା ଏକା ଚାଲି ଚାଲି ନିଜ ଗାଁରୁ ଅଶୀ ମାଇଲ ଦୂରର ସଂପୂର୍ଣ୍ଣ-ଅପରିଚିତ ଦକ୍ଷିଣେଶ୍ୱରର ସେହି ମନ୍ଦିରରେ ପାଗଳ ସ୍ୱାମୀର ସେବା ପାଇଁ ଦିନେ ଉପସ୍ଥିତ ହୋଇଗଲେ । ଯେ ଆସିଲେ, ସେ ଆଉ ଫେରିନାହାନ୍ତି– ପାଗଳ ସ୍ୱାମୀକୁ ଛାଡ଼ି, ଦିନେ ହେଲେ କୁଆଡ଼େ ଆଉ ଯାଇନାହାନ୍ତି ।

ସେବେଳର ମୂର୍ଖ ଜନତା ଯାହା କହୁ ପଛେ, ନିରକ୍ଷରା ଶାରଦାମଣି କିନ୍ତୁ ସାଙ୍ଗେ ସାଙ୍ଗେ ଉତ୍ତମ ଭାବରେ ବୁଝିପାରିଥିଲେ ଯେ, ତାଙ୍କ ସ୍ୱାମୀ ତ ପାଗଳ ଆଦୌ ନୁହନ୍ତି – ବରଂ ସେ ଏକ ପରମ ପୁରୁଷ ।

ସେ ଯେ ସତ୍ୟରେ ପରମ ପୁରୁଷ, ଦିନେ ତା'ର ପରୀକ୍ଷା ଦେଲେ ଗଦାଧର – ବିଶ୍ୱ ଆଗରେ ନୁହେଁ– ନିଜକକ୍ଷର ନିର୍ଜ୍ଜନତାରେ, ଅନୁଗତା ଯୁବତୀ ସ୍ତ୍ରୀ ଶାରଦାମଣିଙ୍କ ଆଗରେ ।

ଦିନେ ତରୁଣ ଅଥଚ ବ୍ରହ୍ମଜ୍ଞ ଗଦାଧର ଭଟ୍ଟାଚାର୍ଯ୍ୟ ପୂର୍ଣ୍ଣଯୌବନା ପତ୍ନୀଙ୍କୁ ଡାକି କହିଲେ– ''ଦେଖ, ତମେ ମୋର ବିବାହିତା ପତ୍ନୀ । ତମ ପ୍ରତି ମୋର ସ୍ୱାମୀ-ଜନୋଚିତ 'କର୍ତ୍ତବ୍ୟ' ଅଛି – ନଚେତ୍ ତମକୁ ମୁଁ ବିବାହ କଲି କାହିଁକି ? ତମେ ଯଦି ଚାହ, ମୁଁ ତମକୁ ନେଇ ସଂସାରୀ ହେବାକୁ ପ୍ରସ୍ତୁତ ଅଛି ।''

ନିରକ୍ଷରା, ଅଳ୍ପବୟସ୍କା ଶାରଦାମଣି ଉତ୍ତର ଦେଲେ– ''ତମେ ବର୍ତ୍ତମାନ ଦେବଯାନୀ । ତମକୁ ସେ ପଥରୁ ଟାଣି ଆଣି ମୁଁ ସଂସାରର ନର୍କରେ ଘାଣ୍ଟିବି ? ନା ନା – ତମେ ତମର ମହତ୍ ପଥରେ ଚାଲ – ବରଂ ମତେ ତମର ସହାୟକ କରି ଗଢ଼ ।''

ବେଶ୍ – ଦୁଇଟି ନିରକ୍ଷର ଭାରତୀୟର ସେଦିନର ସେହି କଠୋର 'କର୍ତ୍ତବ୍ୟ-ବୋଧ' ବା 'ଧର୍ମ-ବୋଧ' ଉପରେ ହିଁ, ପରେ ବିବେକାନନ୍ଦ ଓ ବିଶ୍ୱ-ବ୍ୟାପ୍ତ ରାମକୃଷ୍ଣ ମିସନ୍ ଠିଆ ହେଲେ ।

ଗାନ୍ଧି-ରାମକୃଷ୍ଣ -ଶାରଦାମଣି ଆମ ଭାରତୀୟ ସଂସ୍କୃତି ଓ ଜାତୀୟତାର ପ୍ରତୀକ । ଏବର ଦରମା, କ୍ଷମତାଦି-ସ୍ୱାର୍ଥ-ପୂରଣ-ସର୍ବସ୍ୱ ପଙ୍ଗପାଳ ପରି ସର୍ବବ୍ୟାପ୍ତ ଇତର ଶ୍ରେଣୀର ମନ୍ତ୍ରୀ-ନେତା-ଏମ.ଏଲ.ଏ-ଭାଇସ-ଚାନ୍ସେଲର-ପ୍ରଫେସର ଆମ ସଂସ୍କୃତି ଓ ସଭ୍ୟତାର ପ୍ରତୀକ ବା ପ୍ରତିନିଧି ନୋହିପାରନ୍ତି । ଏମାନେ ବହୁସଂଖ୍ୟକ ହେଲେ ମଧ ଏବଂ ଏମାନଙ୍କ ପିଛା ଦେଶ ଓ ଜାତି କୋଟି କୋଟି ମୁଦ୍ରା ଅପବ୍ୟୟ କରି ଚାଲିଥିଲେ ମଧ, ଏମାନେ ଜାତିର ଆତ୍ମା ଉପରେ କୌଣସି ରେଖାପାତ କରିପାରୁ ନାହାନ୍ତି । କାରଣ, ଏମାନେ ଭାରତୀୟ ଦୃଷ୍ଟିକୋଣରୁ 'ଧର୍ମବୋଧ' ବା 'କର୍ତ୍ତବ୍ୟ-ବୋଧ' ବା 'ସଂସ୍କୃତି ବୋଧ' ହରାଇବସିଛନ୍ତି ଏବଂ ଗୋଟେଇଚାଲିଛନ୍ତି ଏକାନ୍ତ ଅନିତ୍ୟ ଓ ପ୍ରଚୁର ଅନିଷ୍ଟକାରୀ କ୍ଷମତା ଓ ଧନର ବାଲିଗରଡ଼ା ସବୁକୁ, ଠିକ୍ ଛୋଟ ପିଲାଙ୍କ ପରି, ପାଶ୍ଚାତ୍ୟ ସଂସ୍କୃତିର ଅନୁକରଣରେ ।

ସ୍ୱାଧୀନତାର ମାତ୍ର ଦୁଇ ଦଶକ ପରେ ଏହି ଆମର ସମଗ୍ର ରାଷ୍ଟ୍ର ଓ ଜାତି ଆଜି ଭ୍ରଷ୍ଟ ଓ ବିଶୃଙ୍ଖଳ – କାରଣ ଆମେ ପ୍ରକୃତରେ ସ୍ୱାଧୀନତା 'ଅର୍ଜି' ନଥିଲୁ । ଅତ୍ୟନ୍ତ ଭଦ୍ରଲୋକ ଥିବାରୁ, ଇଂରେଜ ଜାତି ଆମକୁ ସ୍ୱାଧୀନତା ନାମକ ଏକ ମହାକାଳ ଫଳ ଫୋପାଡ଼ିଦେଇ, ନିଜ ଘରକୁ ଚାଲିଗଲା । ଆମ ଭିତରେ କେବଳ ଜଣେ ଥିଲା ସତ୍ୟରେ ସ୍ୱାଧୀନ – ବାକୀ ସମସ୍ତେ ଥିଲେ କେବଳ କ୍ଷମତାର ମଦ୍ୟପାନ ପାଇଁ ବ୍ୟାକୁଳ । ସେଥିପାଇଁ ଦେଶଟାକୁ ତିନିଭାଗ କରିବାରେ ମଧ ସେମାନେ ରାଜି ହୋଇଗଲେ ଏବଂ ଅଙ୍କେ ବହୁତେ ସେହି ମଦ ପିଇହିଁ ଆଜି ଆମେ ସମସ୍ତେ ମାତାଲ । ଆଜି ଆମେ ହୁଏତ କ'ଣ କରୁଛୁ, କ'ଣ କହୁଛୁ, କିଛି ଜାଣିପାରୁନାହୁଁ ।

ଆମେ ଅଗ୍ର-ପଶ୍ଚାତ୍ ଭାବନା ସମୂଳେ ହରେଇବସିଛୁ– ଏପରିକି, ପ୍ରତିବେଶୀମାନଙ୍କର ଗୋଇଠା ଓ ବିଶ୍ୱର ତାଚ୍ଛଲ୍ୟ ମଧ୍ୟ ଆମକୁ ବାଧୁନି । ଆମେ ଏକ ଲଜ୍ଜାକର ଓ ମାରାତ୍ମକ ପ୍ରମତ୍ତ ଅବସ୍ଥାରେ ପଡ଼ି, ସମସ୍ତେ ଖାଲି ନିଜର ଓ ନିଜ ନିଜ ଦଳ-ଶ୍ରେଣୀ-ଗୋଷ୍ଠୀର 'ଦାବି' କରିବାରେ ଲାଗିଛୁ ଏବଂ ସେହି ଦାବି ପୂରଣ ପାଇଁ ସକଳ ଯୁକ୍ତିବାଦୀତା, ସକଳ ଶୋଭ'ନୀୟତା, ସକଳ ସଭ୍ୟତା ହରାଇ, ନିଜେ ଗୁଣ୍ଡା ସାଜୁଛୁ ଏବଂ ବିନା ଦ୍ୱିଧାରେ, ଅପରିପକ୍ୱ-ବୁଦ୍ଧି ଆଗାମୀ ପୁରୁଷକୁ ମଧ୍ୟ ନାନା ଘୋର-ଅନିଷ୍ଟକାରୀ ପ୍ରଲୋଭନରେ ମତେଇ କେବଳ ଆମର ଅନୁଗାମୀ ହେବାର ଶିଖେଇଚାଲିଛୁ । ଜଣେ ହେଲେ ତଥାକଥିତ 'ନେତା', ଆଗାମୀ ପୁରୁଷ ବା ସମଗ୍ର ଜାତିକୁ ସେମାନଙ୍କର ଧର୍ମ-ବୋଧ ବା କର୍ତ୍ତବ୍ୟ-ବୋଧ ବିଷୟରେ ପଦେ ଶୁଣାଇ-ପାରୁନାହାନ୍ତି, କାରଣ ହୁଏତ ତାହା ହେବ ନିଜ ପ୍ରମତ୍ତତାର ବିରୋଧୀ ।

ଆମେ ଯଦି ଜାତି ଭାବରେ ସ୍ଥିର-ସୁସ୍ଥ ଭାବରେ ଚିନ୍ତା କରି, ନିଜର ଐତିହାସିକ ଐତିହ୍ୟ ଅନୁଯାୟୀ କର୍ତ୍ତବ୍ୟ କରିବାର ଅବସ୍ଥାରେ ଥାଆନ୍ତୁ, ତେବେ, ଜଣେ ଶିକ୍ଷକର ବଦଳି ଉପରେ ଏ ଦେଶର ବିଦ୍ୟାନୁଷ୍ଠାନ ସବୁ ମାସ ମାସ ବନ୍ଦ କରି ଆମର ମାନ୍ୟ-ଗଣ୍ୟ ନେତାଏ, କାଲି-ଯେଉଁମାନେ-ଦେଶର ଦାୟିତ୍ୱ ନେବେ, ତାଙ୍କୁ କ୍ଲାସ୍‌କୁ ଯିବାକୁ ନଦେଇ, ରାସ୍ତାରେ ରାସ୍ତାରେ ସ୍ଲୋଗାନ୍ ଗାଇ ଗାଇ ବୁଲିବାକୁ ମତାଉନଥାନ୍ତେ । ଏହିକି କ'ଣ ଏକ ସ୍ୱାଧୀନ ଜାତିର ଆଗାମୀ ପୁରୁଷର କାଲିର-ଦାୟିତ୍ୱ ମୁଣ୍ଡେଇବା ପାଇଁ ଯଥାର୍ଥ 'ଶିକ୍ଷା' ? 'ଜଣ'-ଶାସନ ବୋଲି, ଏକା ରାତିକେ ଐତିହାସିକ ରାଜବଂଶମାନଙ୍କଠାରୁ ଆରମ୍ଭକରି ଗାଁ-ଚଉକିଦାର ପର୍ଯ୍ୟନ୍ତ ସମସ୍ତଙ୍କୁ ତ ଆମେ ନିକାଲି ଦେଲେ । ଏମାନଙ୍କ ସ୍ଥାନରେ ଆମରି 'ସଂବିଧାନ' ହିଁ ଆମକୁ ଶାସନ କରିବ ବୋଲି କୁହାଗଲା । ଭଲକଥା । ଏ ସଂବିଧାନର ମହତ୍ତ୍ୱ ଓ ସୌନ୍ଦର୍ଯ୍ୟ ଏହି ଯେ, ଏଥିରେ ନିର୍ବାଚନ ସୂତ୍ରରେ ଲୋକମତ ହିଁ ଶାସକ ବାଛିବ । ପୁଣି ସେ ନିର୍ବାଚିତ ଶାସକେ ଚିରଦିନ ଶାସକ ରହିବେ ନାହିଁ – ତାଙ୍କୁ ପାଞ୍ଚବର୍ଷ ମାତ୍ର ସୁଯୋଗ ଦିଆଯିବ । ସେ ପାଞ୍ଚ ବର୍ଷରେ ସେ ନିଜର ପାରଙ୍ଗମତା ଦେଖାଇ ନ ପାରିଲେ, ପରବର୍ତ୍ତୀ ନିର୍ବାଚନରେ ଜାତି ଆଉ କା'କୁ ବାଛିବେ । ଗାଦିକୁ ଆସିଲା ମାତ୍ରେ ପାଞ୍ଚସାଲିଆ-ଶାସକ ଦଳ ଯଦି ଅନ୍ୟାୟ କାମ ସବୁ କରିବାର ଦେଖାଗଲା, ସେଥିପାଇଁ 'ଅବିଶ୍ୱାସ'-ପ୍ରସ୍ତାବର ବ୍ୟବସ୍ଥା ମଧ୍ୟ ରଖା-ଯାଇଛି । ଅର୍ଥାତ୍, ଆମର ସମ୍ବିଧାନ, ଶୋଭନୀୟ ଓ ମର୍ଯ୍ୟାଦାବନ୍ତ ଭାବରେ ଅବାଞ୍ଛିତ ଶାସକକୁ ତା'-କାଳ-ନ ପୂରିବା ପୂର୍ବରୁ ମଧ୍ୟ କିପରି ତାକୁ ତଡ଼ିହେବ, ସେଥିପାଇଁ ପ୍ରତିପକ୍ଷ ଏକ ହାତରେ ଶକ୍ତିଶାଳୀ ଅସ୍ତ୍ର ଖଞ୍ଜି ରଖିଛି ।

କିନ୍ତୁ ଆଜି ଆମର ତଥାକଥିତ ଲୋକ-ପ୍ରତିନିଧି ସବୁ ଗଣ, ସମାଜ ବା ଜାତି ଆଗରେ କି ଆଦର୍ଶ ଦେଖାଉଛନ୍ତି ? ଶାସ୍ତ୍ରୀୟ ଧର୍ମ-ବୋଧ କଥା ଛାଡ଼ିଦିଅ – ସେମାନେ କିପ୍ରକାର ''ସାଂବିଧାନିକ ଧର୍ମ-ବୋଧ ବା କର୍ତ୍ତବ୍ୟ-ବୋଧ'' ଦେଖାଉଛନ୍ତି ? ଦେଶର ପ୍ରତିନିଧି ସ୍ଥାନୀୟ ପୁରୁଖାଲୋକେ ବିଧାନସଭାରେ ପ୍ରତିବାଦ ନାମରେ ଉଦ୍ଦଣ୍ଡ ପ୍ରମତ୍ତତା ଆଚରଣ କରିବେ ବୋଲି କ'ଣ ସମ୍ବିଧାନରେ ନିର୍ଦ୍ଦେଶ ଅଛି ? ତାହା ବଢ଼ି ବଢ଼ି ଏବେ ଲୋକସଭାରେ ମୁଷ୍ଟିଯୁଦ୍ଧ ପର୍ଯ୍ୟନ୍ତ କଥା ଗଲାଣି । ଭୁଲିଯିବା ଉଚିତ ନୁହେଁ ଯେ, ସେମାନେ ହେଲେ ଜାତିର ସର୍ବମାନ୍ୟ ଗୁରୁଜନ । କିନ୍ତୁ ସେମାନଙ୍କ ଭିତରୁ କେହି ହେଲେ, ନିଜ ପରିବାର ବା ନିଜ ଗାଁରେ ଏପରି ବ୍ୟବହାର କରିବେ କି ? ତେବେ ଜାତୀୟ ଜୀବନରେ ଓ ଜାତୀୟ ପୀଠରେ ତାହା ଆଚରଣୀୟ ହେବ କିପରି ? ଏବଂ ସମଗ୍ର ଜାତି ଉପରେ ଏପ୍ରକାର ଇତର ବ୍ୟବହାରର କି ପ୍ରତିକ୍ରିୟା ହେବ, ସେମାନେ କ'ଣ ଟିକିଏ ହେଲେ ଭାବିବେ ନାହିଁ ? ଯେଉଁ ଶିକ୍ଷକମାନଙ୍କୁ କେବଳ ଛାତ୍ର ସମାଜ ନୁହେଁ, ସମଗ୍ର ଜାତି ସମ୍ମାନ କରିବା କଥା, ସେମାନେ ଯୁକ୍ତି-ତର୍କ-ବିଚାରର ମାନ୍ୟ ପନ୍ଥା ଛାଡ଼ି, ଜଣକ ଘର ଦୁଆରେ ବା ସେକ୍ରେଟରିୟାଟ୍ ଫାଟକ ଆଗରେ ଲମ୍ବ ହୋଇ ଶୋଇବେ ଏବଂ ପିଲେ ପାଠ ପଢ଼ିବାକୁ ଆସିଲେ ତାଙ୍କୁ ମନା କରିବେ ପଢ଼େଇବାକୁ, ଏସବୁ ଦେଖିଲେ, କ'ଣ ମନେହେବ ଯେ, ଏ ଜାତି ଭିତରେ ସୁସ୍ଥ ଚିନ୍ତା ପାଇଁ ଆଉ କିଛି ସାମର୍ଥ୍ୟ ଅବଶେଷ ଅଛି ? ଦି'ଦିଟା କେନେଡ଼ି ଓ ମାର୍ଟିନ୍ ଲୁଥର କିଙ୍ଗ୍ ଆତତାୟୀ-ଗୁଳିରେ ମରିବା ଫଳରେ, ଯୁକ୍ତରାଷ୍ଟ୍ର ଆମେରିକା ସାଧାରଣ ନାଗରିକଙ୍କୁ ଅସ୍ତ୍ର-ଲାଇସେନ୍‌ସ ଦେବାରେ ଭାରତୀୟ ବିଧି-ନିଷେଧ ସବୁକୁ ଅନୁକରଣ କରିବାକୁ ଯାଉଥିଲା ବେଳେ, ଏଠାରେ ଜଣେ ତଥାକଥିତ ଗାନ୍ଧିବାଦୀ ପୂର୍ବତନ ମୁଖ୍ୟମନ୍ତ୍ରୀ, ଲୋକଙ୍କ ହାତରେ ଅବାଧ ଅସ୍ତ୍ର-ଯୋଗାଣ ପାଇଁ ପ୍ରକାଶ୍ୟ ପ୍ରଚାର କରିଚାଲିବାରେ ନିଶ୍ଚୟ ଉଦ୍ଭଟ ମାନସିକ ଉର୍ବରତା ପ୍ରକାଶ ପାଉଛି କହିବାକୁ ହେବ ।

ତେଣୁ ଆମେ ଯେ ଧନରେ ବାଂକ୍-ରପ୍‌ଟ (ଦେଉଳିଆ) ତା'ତ ଜଣାଥିଲା – ଆମେ ଚିନ୍ତାଶକ୍ତିରେ ମଧ୍ୟ ଯେ ଆଜି ପୂରାପୂରି ବାଂକ୍‌ରପ୍‌ଟ ତାହା ସ୍ପଷ୍ଟ ପ୍ରମାଣିତ ହେଉଛି, ଯେପରି ଭାବରେ କ୍ଷମତା-ହାତରେ-ନଥିବା ହେତୁରୁ ହିଁ ଆମେ ଉତ୍‌କ୍ଷିପ୍ତ ବ୍ୟବହାର କରି ଚାଲିଛୁ ଅଥଚ ସେ କ୍ଷମତା ନଥାଇ ମଧ୍ୟ ମର୍ଯ୍ୟାଦାବନ୍ତ ବ୍ୟବହାର ଜାତି ପ୍ରତି ପରମ ଶିକ୍ଷା ହୁଅନ୍ତା ନାହିଁ କି ?

ଆମେ ଆଜି ସମସ୍ତେ 'ଦାବି-ସଚେତନ', ଅର୍ଥାତ୍ କ୍ଷମତା-ସଚେତନ । କିନ୍ତୁ, ଭାରତବର୍ଷ ଚିରକାଳ ସମ୍ମାନ କରି ଆସିଛି ଧର୍ମ-ସଚେତନତା ବା କର୍ତ୍ତବ୍ୟ-

ସଚେତନତାକୁ । ଏ ଜାତି କେବଳ ସେହି କାରଣରୁ ହିଁ, ନିରକ୍ଷର ଗଦାଧର ଭଟ୍ଟାଚାର୍ଯ୍ୟ ଓ ତାଙ୍କର ନିରକ୍ଷରା ସ୍ତ୍ରୀ ଶାରଦାମଣିଙ୍କୁ ଦେବ-ଦେବୀର ସମ୍ମାନ-ଦେଇଛି । ବାରିଷ୍ଟର ଗାନ୍ଧି, କେବଳ ସେହି କାରଣରୁ ହିଁ 'ମହାତ୍ମା' । ଏ ଜାତି ସ୍ୱାମୀ, ପତ୍ନୀ, ପିତା, ମାତା, ପୁତ୍ର-କନ୍ୟା, ଗୁରୁ, ଛାତ୍ର, ଶାସକ, ଶାସିତ ଓ କର୍ମଚାରୀ ଇତ୍ୟାଦି ସମସ୍ତଙ୍କ ପାଇଁ ନିଜ ନିଜର 'କର୍ତ୍ତବ୍ୟ' ଠିକ୍ କରି ଲେଖିଯାଇଛି । ଏ ଜାତିର ଐତିହ୍ୟରେ କର୍ମ ଓ ଧର୍ମ ଭିତରେ ପ୍ରଭେଦ ନଥିଲା । ପ୍ରଭେଦ ନଥିଲା ମଧ୍ୟ ଧର୍ମ ଓ ରାଜନୀତି ଓ ଶାସନ ଭିତରେ । ଗୀତା ଧର୍ମ-ଶାସ୍ତ୍ର ନୁହେଁ – ଗୀତା ବସ୍ତୁତଃ ଏକ କର୍ମଶାସ୍ତ୍ର ବା ଲୋକଙ୍କୁ କର୍ତ୍ତବ୍ୟ ଶିଖେଇବାର ଏକ କ୍ଷୁଦ୍ର ଅର୍ଥ ମହାନ୍ ଗ୍ରନ୍ଥ ମାତ୍ର । ସ୍ୱାଧୀନତାର ଭ୍ରାନ୍ତ ଧାରଣାରେ ବା କ୍ଷମତା-ମୋହରେ କ୍ଷିପ୍ତ-ପ୍ରମତ୍ତ ହୋଇ ଆମେ ଯଦି ଆମ ନିଜନିଜର ଜାତି ପ୍ରତି, ଦେଶ ପ୍ରତି, ଆଗାମୀ ପୁରୁଷ ପ୍ରତି କର୍ତ୍ତବ୍ୟବୋଧ ଭୁଲିଯାଇ, ଖାଲି 'ଦାବି'ର ଚିତ୍କାର କରିଚାଲିବା ଏବଂ ସେଥିପାଇଁ ଅଶୋଭନୀୟ ଓ ଅହିତକର କର୍ମ ସବୁ ମଧ୍ୟ କରିବସିବା, ତେବେ ଆମର ସମୂହ ଧ୍ୱଂସ ଅନିବାର୍ଯ୍ୟ ଓ ନିକଟ ବୋଲି ଜାଣିବାକୁ ହେବ ।

ଭାବିବାର କଥା ମଧ୍ୟ ଏହି ଯେ, କମ୍ୟୁନିଷ୍ଟ ଦେଶଗୁଡ଼ିକ ଯେ 'ଈଶ୍ୱର-ହୀନ' ଓ ଧର୍ମ-ହୀନ, ଏହା ଜଣାକଥା । କିନ୍ତୁ ସେମାନେ 'କର୍ତ୍ତବ୍ୟ-ହୀନ' ନୁହନ୍ତି । ସେଠି କେହି ଛାତ୍ର, ଶିକ୍ଷକ, ଶ୍ରମିକ ବା କୃଷକମାନଙ୍କୁ ବିଶୃଙ୍ଖଳତାରେ ମତାଇ ନେତାଗିରି କରିବାର କଳ୍ପନା ହିଁ କରିବେ ନାହିଁ । ସେଠି ରାଷ୍ଟ୍ର ଓ ଜାତି ଚାହେ ଯେ ପ୍ରତ୍ୟେକେ ପ୍ରତ୍ୟେକର 'କର୍ତ୍ତବ୍ୟ' କରି ଚାଲନ୍ତୁ, ତାହାହିଁ ସେମାନଙ୍କର ଧର୍ମ, ରାଷ୍ଟ୍ରହିଁ ସେମାନଙ୍କର ଈଶ୍ୱର । ବ୍ୟକ୍ତିଗତ ସ୍ୱାଧୀନତା ନଥାଉ ପଛେ, ସେ ଦେଶମାନଙ୍କର କ୍ଷିପ୍ର ଆର୍ଥିକ ଓ ଶୈକ୍ଷିକ ଅଗ୍ରଗତିର କାରଣ ଏହିଠାରେ ।

ନାଗରିକବୃନ୍ଦ ପ୍ରତ୍ୟେକର ରାଷ୍ଟ୍ର-ସମାଜ ପ୍ରତି ଆଜୀବନ୍ ଦାୟିତ୍ୱ ଭୁଲିଯାଇ ସମସ୍ତେ କେବଳ ଦାବି ସଚେତନ ହେଲେ, ସମାଜରେ ବିଶୃଙ୍ଖଳା ଅନିବାର୍ଯ୍ୟ । ଶାସନ ଓ ସମାଜରୁ ଡ଼ିସିପ୍ଲିନ୍ ଚାଲିଯାଇ ବିଶୃଙ୍ଖଳତା ପ୍ରାଧାନ୍ୟ ଲାଭ କଲେ ବିପଦ ସମସ୍ତଙ୍କର । ରାଷ୍ଟ୍ର ଓ ସମାଜରେ କଠୋର ଡିସିପ୍ଲିନ୍‌ର ଆବଶ୍ୟକତା ନେଇ ତିନିହଜାର-ବର୍ଷ ତଳେ ମହାଭାରତ ଯାହା ଘୋଷଣା କରିଯାଇଛି, ତାହାର ହିଁ କେତେକ ପଂକ୍ତି ଏଠାରେ ଉଦ୍ଧାର କରି, ଏ ପ୍ରବନ୍ଧ ଶେଷକରୁଛି –

ଅର୍ଜୁନ ଯୁଧିଷ୍ଠିରଙ୍କୁ କହିଲେ– ''ମହାରାଜ, ଦଣ୍ଡହିଁ ରାଷ୍ଟ୍ର ଓ ସମାଜରେ ମନୁଷ୍ୟମାନଙ୍କୁ ଉତ୍ତମ ଭାବରେ ରକ୍ଷଣା ବେକ୍ଷଣ କରିଥାଏ । ସମାଜ ନିଦ୍ରା ଯାଏ, କାରଣ ଦଣ୍ଡ ଜାଗ୍ରତ ଥାଏ । ତେଣୁ ପଣ୍ଡିତମାନେ ଏ ସଂସାରରେ ଦଣ୍ଡକୁହିଁ ପ୍ରଧାନ-

ଧର୍ମ ବୋଲି ନିର୍ଦ୍ଦେଶ କରିଥାନ୍ତି । ଦଣ୍ଡ ହିଁ ସମାଜର ଧର୍ମ । ଅର୍ଥ ଆମକୁ ରକ୍ଷା-କରିଥାଏ । ଦଣ୍ଡ ପ୍ରଭାବରେ ହିଁ ରାଜ୍ୟରେ ଧନ-ଧାନ୍ୟ ରକ୍ଷିତ ହୋଇଥାଏ । ସମାଜରେ ଯେ ଅନେକେ ପରସ୍ପରକୁ ଗ୍ରାସ କରୁନାହାନ୍ତି, ତାହା କେବଳ ଦଣ୍ଡ-ଭୟରୁ । ଦଣ୍ଡ ସଂସାର ରକ୍ଷା ନକଲେ ସମସ୍ତହିଁ ଗାଢ଼ାନ୍ଧକାରରେ ନିମଗ୍ନ ହେବ । ଦୁର୍ଦ୍ଧାନ୍ତ ଜନମାନଙ୍କୁ ଦମନ ଓ ଦୁର୍ବିନୀତ ଜନମାନଙ୍କୁ ଏହିପରି ଶାସନ କରେ ବୋଲି ଏହାର ନାମ 'ଦଣ୍ଡ' । ସାଧାରଣ ମନୁଷ୍ୟର ମୋହାନ୍ଧକାର-ଦୂରୀକରଣ ଏବଂ ସମାଜରେ ସଂପଦର ନିରାପତ୍ତା ପାଇଁ ହିଁ ଲୋକଙ୍କ ଭିତରେ ଦଣ୍ଡ ପ୍ରବର୍ତ୍ତିତ ହୋଇଛି ବୋଲି ଜାଣିବ ।'' (ଶାନ୍ତିପର୍ବ)

ମନେରଖିବା ଉଚିତ୍ ଯେ, ନଈ-ବନ୍ଧ ନଈର ଶତ୍ରୁ ନୁହେଁ – ସେହି ବନ୍ଧ ଯୋଗୁ ହିଁ ନଦୀ-ସ୍ରୋତ ମହାସମୁଦ୍ରରେ ମିଶିବାର ସୁଯୋଗ ପାଏ – ନଚେତ୍ ତାହାର ବାହାରିବା ଜାଗାରେହିଁ ବିଲୀନ ହୋଇଯାନ୍ତା । ଆମର ଦୈନନ୍ଦିନ ଓ ଜାତୀୟ ଜୀବନ ସହିତ ଡିସିପ୍ଲିନର ସେହି ସମ୍ବନ୍ଧ । ତଥାକଥିତ ସ୍ୱାଧୀନତାର ୨୫ ବର୍ଷ ଆମକୁ ଏ କ୍ଷେତ୍ରରେ କ'ଣ ଦେଇଛି ତାହା ସର୍ବଜନମାନ୍ୟ ଆଚାର୍ଯ୍ୟ ବିନୋବା ବାଭେଙ୍କ ମୁଖରୁ ହିଁ ଶୁଣାଯାଉ –

ଜବଲପୁର, ନଭେମ୍ବର, ୨ – ''ଏଠାରେ ଆଚାର୍ଯ୍ୟ ବିନୋବା ବାଭେ କହିଲେ ଯେ କୋଡ଼ିଏ ବର୍ଷର ସ୍ୱାଧୀନତା ଭାରତକୁ ସ୍ୱାଧୀନତା-ପୂର୍ବ ଅପେକ୍ଷା କଠିନ ସମସ୍ୟା-ମାନଙ୍କର ସମ୍ମୁଖୀନ କରାଇଛି । ଶ୍ରୀ ବାଭେ ଏଠାରେ ସର୍ବଦଳୀୟ କର୍ମୀ ଓ ଚିନ୍ତକ-ମାନଙ୍କର ଏକ ସମ୍ମିଳନୀରେ ଭାଷଣ ଦେଉଥିଲେ । ସେ ପୁଣି କହିଲେ, ଦେଶରେ ଖାଦ୍ୟ-ଶସ୍ୟ ଓ ଅନ୍ୟାନ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟର ପରିମାଣ ବଢ଼ିଥାଇପାରେ, କିନ୍ତୁ ନିଶ୍ଚିତ ଭାବରେ ଆମର ନୈତିକ ମାନଦଣ୍ଡ ବହୁ ତଳକୁ ଖସିଯାଇଛି । ଆମର ସକଳ ଦୁର୍ଦ୍ଦଶା ପାଇଁ ଆମେଇ କେବଳ ଦାୟୀ ।''

– ଷ୍ଟେଟ୍ସ୍‌ମାନ, ୩।୧୧।୧୯୬୯

— —

# ପ୍ରଚଳିତ ଶିକ୍ଷା-ବ୍ୟବସ୍ଥା କି ସତ୍ୟରେ ତ୍ରୁଟିପୂର୍ଣ୍ଣ ?

**ଆଲୋଚନା ଓ ପ୍ରତିକାର ପ୍ରସ୍ତାବ –**

ଭାରତରେ ପ୍ରଚଳିତ ଶିକ୍ଷା-ବ୍ୟବସ୍ଥାକୁ 'ତ୍ରୁଟିପୂର୍ଣ୍ଣ' 'ତ୍ରୁଟିପୂର୍ଣ୍ଣ' ବୋଲି ବେଳ-ଅବେଳ, ସ୍ଥାନ-ଅସ୍ଥାନ ସର୍ବତ୍ର ଓ ସର୍ବଦା ଚିତ୍କାର କରି ନିନ୍ଦା କରିବା ଏବେ ଏ ଦେଶରେ ଏକ ଧରାବନ୍ଧା ଗତ ହୋଇଗଲା ପରି ଲାଗୁଛି । ପୂର୍ବେ ଖଦଡ଼ପରିଧାୟୀ ରାଜନୈତିକମାନେ ତ ଏ ବ୍ୟବସ୍ଥାକୁ ଶୋଷକ ଇଂରେଜମାନଙ୍କର ଅପକୀର୍ତ୍ତି ରୂପେ, ଇତିହାସର ସମସ୍ତ ସତ୍ୟକୁ ପଦଦଳିତ କରି, ଏପରି ସବୁ ବର୍ଣ୍ଣନା କରି ଜନତାଠୁ ଶସ୍ତା ବାହାବା ପାଉଥିଲେ । କିନ୍ତୁ ଲେଖକ ଘୋର ପରିତାପର ସହିତ ଲକ୍ଷ୍ୟ କରୁଛି ଯେ, ଏବେ ଶିକ୍ଷାବିଭାଗୀୟ ତଥାକଥିତ କେତେକ ଶିକ୍ଷାବିଦ୍ ମଧ୍ୟ ସେହି ଗଡ୍‌ଡ଼ଳିକା ପ୍ରବାହରେ ଯୋଗ ଦେଲେଣି । ଏମାନେ ମଧ୍ୟ ପ୍ରକାଶ୍ୟରେ କହୁଛନ୍ତି ଯେ ଏ ଶିକ୍ଷା ବ୍ୟବସ୍ଥା 'ତ୍ରୁଟିପୂର୍ଣ୍ଣ' । ଯଦି ଏହା ଏପରି ତ୍ରୁଟିପୂର୍ଣ୍ଣ, ତେବେ କେଉଁ ପ୍ରତିଭା ବଳରେ ତମେ ନିଜେ ଏ ପଦ-ପଦବୀକୁ ଆସିପାରିଛ, ସେ ପ୍ରଶ୍ନ ନିଜକୁ ପଚାରୁନା କାହିଁକି ? ତମେ ଯେମିତି ଜ୍ଞାନ ଓ ଅଭ୍ୟୁଦୟର ଏପରି ଉନ୍ନତ ପର୍ବତ-ଶିଖରକୁ ଉଠିପାରିଲ, ପ୍ରଚଳିତ ଶିକ୍ଷା-ବ୍ୟବସ୍ଥାରେ ସେ ପଥ ଓ ସେ ଊର୍ଦ୍ଧ୍ୱଗମନ କ'ଣ ସମସ୍ତଙ୍କ ପାଇଁ ଉନ୍ମୁକ୍ତ ରହିନି ? ତେବେ 'ତ୍ରୁଟିପୂର୍ଣ୍ଣ' ବୋଲି ଏହି ସମଗ୍ର ବ୍ୟବସ୍ଥାକୁ କେଉଁ କାରଣରୁ ବଖାଣୁଛ ? ପାଠକେ ମନେରଖିବେ ଯେ, ଏହି ଶିକ୍ଷା-ଫଳରେ ହିଁ ଘୃଣ୍ୟ, ଅସ୍ପୃଶ୍ୟ ମେହେନ୍ତରର ପିଲା ଅମ୍ବେଦକର ଏବର ମନୁଯାଜ୍ଞବଲ୍‌କ୍ୟର ଆସନକୁ ଆସି ଆମକୁ ଆମର ସଂବିଧାନ ଗଢ଼ି ଦେଇ ପାରିଲା । ଏ ତ ଗଲା ଏହି ଶିକ୍ଷା ବ୍ୟବସ୍ଥା ଯୋଗୁଁ ଏକ ମେହେନ୍ତରର ରୂପାନ୍ତରର କାହାଣୀ । ବିଚାର କରାଯାଉ ଯେ, ଏ ଶିକ୍ଷା ପାଇନଥିଲେ, ବ୍ରାହ୍ମଣବଂଶଜ ଜହରଲାଲ ନେହୁରୁ ମଧ୍ୟ କ'ଣ ହୋଇଥାନ୍ତେ ଜୀବନରେ ? ଏହି ପ୍ରଚଳିତ ଶିକ୍ଷା-ବ୍ୟବସ୍ଥାରେ ଶିକ୍ଷିତ ଓ ଦୀକ୍ଷିତ ହେବା ଫଳରେ ହିଁ, ଯେ ଭାରତବର୍ଷ ଜହରଲାଲ ବା ସୁଭାଷ ବୋଷଙ୍କୁ ପାଇଲା, ଏଥିରେ କି ଦ୍ୱିମତ ଥାଇପାରେ ?

* 'ନବରବି' ।

ଅବଶ୍ୟ ବଡ଼ ବ୍ୟତିରେକ ରୂପେ ଧରାଯାଇପାରେ ଆମର ପଠାଣିସାଆନ୍ତଙ୍କୁ । ସେ ଯେ ଅସାଧାରଣ ପ୍ରତିଭାସଂପନ୍ନ ବ୍ୟକ୍ତି ଥିଲେ ଏଥିରେ ସନ୍ଦେହ ନାହିଁ । ଇଂରେଜ ବା ପାଶ୍ଚାତ୍ୟଜ୍ଞାନ ବା ସଭ୍ୟତା ସଂପର୍କରେ ଆଦୌ ନ ଆସି, ତାଙ୍କର ଜ୍ଞାନିକ ସାଧନା ଯେ ଠିକ୍ ଜଣେ ୟୁରୋପୀୟ ପଣ୍ଡିତଜନର ପରି ଥିଲା, ଏହା ମଧ୍ୟ ଅତୀବ ବିସ୍ମୟକର । କିନ୍ତୁ ଗୁଣଗ୍ରାହୀ ରାଧାନାଥଙ୍କ ସହିତ ଆମକୁ ମାନିବାକୁ ହେବ ଯେ, ସେ ପ୍ରକାର 'ଜ୍ଞାନତରୁ' ସତ୍ୟରେ ଏ ଦେଶରେ ମଉଳିଗଲା । ତାଙ୍କର ପ୍ରତିଭା ଓ ବିଦ୍‌ବତ୍ତା ଅନୁସାରେ ସେ ବିଶେଷ ନୂତନ ସତ୍ୟ କିଛି ଦେଇ ଯାଇ ପାରିଲେ ନାହିଁ । ପରେ କଟକରେ ଯୋଗେଶଚନ୍ଦ୍ର ରାୟଙ୍କ ସାନ୍ନିଧ୍ୟରେ ଯେତେବେଳେ ଜୀବନରେ ପ୍ରଥମକରି ସେ ଟେଲିସ୍କୋପ ବ୍ୟବହାରକଲେ, ସେତେବେଳେ ସେହି ବିରାଟ ପ୍ରତିଭାର ଗଭୀର କ୍ଷୋଭ ବାହାରିଆସିଥିଲା ଏହା କହି ଯେ, ''ଆହା, ମୁଁ ଏଇପରି ଏକ ଯନ୍ତ୍ର ପୂର୍ବେ ପାଇଥାନ୍ତି କି !''

ପଠାଣିସାନ୍ତେ ଯେଉଁ 'ଯନ୍ତ୍ର' (ଟେଲିସ୍କୋପ୍) ନେଇ ଏ ପ୍ରକାର ଗଭୀର କ୍ଷୋଭ ପ୍ରକାଶ କରିଥିଲେ, ପାଠକେ ଧରିନେବେ ଯେ, ତାହା ଆମର ଏଇ ପ୍ରଚଳିତ ଶିକ୍ଷା-ବ୍ୟବସ୍ଥାର ଏକ ପ୍ରତୀକ ମାତ୍ର । ପଠାଣିସାମନ୍ତ ଏ ଶିକ୍ଷା ବ୍ୟବସ୍ଥାରେ ଶିକ୍ଷିତ ହୋଇଥିଲେ, ବିଶ୍ୱକୁ ଯେ କ'ଣ ଅଧିକ ଦେଇ ନ ପାରିଥାନ୍ତେ, ତାହା ଆମ କଳ୍ପନାରେ ଅତୀତ ।

**ଅଭୂତପୂର୍ବ ବିବିଧ ଉପକାର–**

ତେଣୁ କେଉଁ ଯୁକ୍ତି, କେଉଁ ବିଚାର-ସିଦ୍ଧାନ୍ତ ବଳରେ ଯେ ପ୍ରଚଳିତ ଶିକ୍ଷା ବ୍ୟବସ୍ଥା 'ତ୍ରୁଟିପୂର୍ଣ୍ଣ' ବୋଲି ଅହରହ ଚିତ୍କାର ହେଉଛି, ଲେଖକ ନିକଟରେ ତାହା ରହିଯାଉଛି, ସଂପୂର୍ଣ୍ଣ ରହସ୍ୟମୟ । ପାଠକେ ସ୍ୱୀକାର କରିବେ କାହିଁକି ଯେ ଏହି ଶିକ୍ଷା ହିଁ ଆଣିଦେଇ ପାରିଛି, ଭାରତବର୍ଷର ସାତହଜାର ବର୍ଷର ଇତିହାସରେ ପ୍ରଥମକରି ସମଗ୍ର ଏହି ଉପମହାଦେଶରେ ଏକ ଉଗ୍ର ଜାତୀୟ ଚେତନା ଓ ଅସମ୍ଭବ ଏକତା ଓ ସଂହତି, ଯାହାକି ଅଶୋକ ଆକବରଙ୍କ ସମୟରେ ମଧ୍ୟ ସମ୍ଭବ ହୋଇନଥିଲା । ଏହି ପୂର୍ବେ-ଜଣା-ନଥିବା ସମଚେତନାହିଁ ଆଜି ଜିନ୍ନାଙ୍କ ଧର୍ମ-ଭିତ୍ତିକ ଦ୍ୱି-ଜାତି-ବାଦକୁ ପଦଦଳିତ କରି, ସମ୍ଭବ କଲା ପାକିସ୍ତାନର ଅକ୍ଟୋପାଶ୍‌କୁ ଟିକି ଟିକି କରି, ଧର୍ମ-ନିପେକ୍ଷ ରାଷ୍ଟ୍ର ବାଂଲାଦେଶର ଅଭ୍ୟୁତ୍‌ଥାନ । ଏହି ଶିକ୍ଷା-ବ୍ୟବସ୍ଥାହିଁ ଆମ ସ୍ୱାଧୀନତା ଆନ୍ଦୋଳନର ମୂଳ ଭିତ୍ତି । ଏହାହିଁ ଆମକୁ ରମଣ, ବୋଷ ଓ ସାହା ଆଦି ବିଶ୍ୱ-ବିଖ୍ୟାତ ବୈଜ୍ଞାନିକମାନଙ୍କୁ ଦେବା ସାଥେ ସାଥେ, ଦେଇଛି ମଧ୍ୟ ତିଳକ,

ଗୋଖ୍‌ଲେ, ଲାଲାଜି, ଚିତ୍ତରଞ୍ଜନ, ମାଳବ୍ୟଜୀ, ମୋତିଲାଲ, ଜହରଲାଲ ଓ ଏପରିକି ଗାନ୍ଧିଜୀଙ୍କ ପରି ସର୍ବମାନ୍ୟ ବରେଣ୍ୟ ଜନ-ନାୟକମାନଙ୍କୁ । ପୁଣି ଏହି ଶିକ୍ଷା ବ୍ୟବସ୍ଥା ଫଳରେ ହିଁ ଆକୁମାରୀ-ହିମାଚଳ ସକଳ ଆଧୁନିକ ଭାରତୀୟ ଭାଷାମାନଙ୍କର ଏକ ଅସମ୍ଭାବିତ ରେନେସାଁ ବା ନବଜନ୍ମ ଓ ନବଜୀବନ ଆରମ୍ଭ ହୋଇଛି ।

ତେଣୁ ଏ ଶିକ୍ଷା-ବ୍ୟବସ୍ଥା 'ତ୍ରୁଟିପୂର୍ଣ୍ଣ' 'ତ୍ରୁଟିପୂର୍ଣ୍ଣ' ବୋଲି ପ୍ରଚାରିତ ହେବା କେବଳ ଅନ୍ଧ ବା ଅଦୂରଦୃଷ୍ଟି ସଂପନ୍ନ ବିଚାରରେ ସମ୍ଭବ ସିନା, କୌଣସି ବିଚାରବନ୍ତ ଭୂୟୋଦର୍ଶନ ଯାକୁ ମାନିଯିବା ସମ୍ଭବ ନୁହେଁ ।

**ଶସ୍ତା ବିପ୍ଳବ–**

ଏବେ କଥାକଥାକେ ଆମେ ବରାବର 'ବିପ୍ଳବ' ଶବ୍ଦଟି ଉଚ୍ଚାରଣ କରୁ । ସବୁକ୍ଷେତ୍ର ପରି ଶିକ୍ଷାରେ 'ବିପ୍ଳବ' ମଧ୍ୟ ହେଉ ବୋଲି ତୁହାଇ ତୁହାଇ କୁହାଯାଉଛି । କିନ୍ତୁ ଏ ପର୍ଯ୍ୟନ୍ତ ପ୍ରଚଳିତ-ଶିକ୍ଷା-ବ୍ୟବସ୍ଥାକୁ 'ତ୍ରୁଟିପୂର୍ଣ୍ଣ' 'ତ୍ରୁଟିପୂର୍ଣ୍ଣ' ବୋଲି ଓ ଏଥିରେ ତୁରନ୍ତ 'ବିପ୍ଳବ' ଅଣାଯାଉ ବୋଲି ଚିତ୍କାର କରୁଥିବା କେହି ଜଣେହେଲେ, ଏକ ବୈପ୍ଳବିକ ବିକଳ୍ପ ବ୍ୟବସ୍ଥାର ସାମାନ୍ୟତମ ସୂଚନା ମଧ୍ୟ ଦେଇ ପାରିନାହାନ୍ତି । ସ୍ୱାଧୀନତା ପରେ ଆମ ଶିକ୍ଷାରେ 'ବିପ୍ଳବ' ଭାବରେ ପ୍ରଥମେ ବେସିକ୍ ଓ ପରେ ତିନିବର୍ଷିଆ ଡିଗ୍ରୀ କୋର୍ସ ପ୍ରବର୍ତ୍ତିତ କରାଗଲା । କିନ୍ତୁ ଶତ ଶତ କୋଟି ମୁଦ୍ରାର ଅପବ୍ୟୟ ସତ୍ତ୍ୱେ ଦୁଇଟିଯାକ 'ବିପ୍ଳବ' ଏବେ ବ୍ୟର୍ଥକାମ ପ୍ରମାଣିତ ହେଲା । ବହୁ ବିଶ୍ୱବିଦ୍ୟାଳୟ ପୁଣି ପୂର୍ବର ଆଇ.ଏ + ବି.ଏ.କୁ ଫେରିଲେଣି । ଅଥଚ ଏ ପ୍ରକାର ବିପ୍ଳବ-ପ୍ରଚେଷ୍ଟାର ମହାର୍ଘ ବ୍ୟର୍ଥତା ସତ୍ତ୍ୱେ, ପ୍ରଚଳିତ ଶିକ୍ଷା-ବ୍ୟବସ୍ଥାକୁ ସେହି ପୂର୍ବପରି 'ତ୍ରୁଟିପୂର୍ଣ୍ଣ' କୁହାଚାଲିଛି । ପ୍ରଚଳିତ ଶିକ୍ଷା-ବ୍ୟବସ୍ଥାର ଏଥିପାଇଁ ଯେଉଁ ତିନୋଟି ଅପରାଧ ବିଶେଷ ଭାବରେ ପରିବେଷିତ କରାଯାଇଥାଏ, ସେଗୁଡ଼ିକ ହେଲେ –

୧ । ସାମ୍ରାଜ୍ୟବାଦୀ ବିଦେଶୀ ଇଂରେଜ ଶାସକେ ଆମକୁ ଏକ କିରାଣିର ଜାତି ରୂପେ ଗଢ଼ିବା ପାଇଁ ଏ ଶିକ୍ଷା ବ୍ୟବସ୍ଥା ପ୍ରବର୍ତ୍ତିତ କରିଯାଇଥିଲେ । ତେଣୁ ସ୍ୱାଧୀନ ଭାରତ ତାକୁ ଫିଙ୍ଗି ତା'ର ନିଜସ୍ୱ-ଶିକ୍ଷା-ବ୍ୟବସ୍ଥା ପ୍ରବର୍ତ୍ତିତ କରିବା ଉଚିତ୍ ।

୨ । କଲେଜ ସ୍ତରରେ ଇଂରାଜୀ ମାଧ୍ୟମକୁ ଚାଲୁରଖିବା ଅସହ୍ୟ ବ୍ୟାପାର । ଆଞ୍ଚଳିକ ଭାଷାମାନଙ୍କୁ ମାଧ୍ୟମ କରି ନୂତନ ବ୍ୟବସ୍ଥା ହେଉ ।

୩ । ଏ ଶିକ୍ଷା-ବ୍ୟବସ୍ଥା ଦେଶରେ ଗୁରୁତର ଶିକ୍ଷିତ-ବେକାର ସମସ୍ୟା ସୃଷ୍ଟିକରୁଛି ।

ଭଲକଥା – ଆସନ୍ତୁ ବର୍ତ୍ତମାନ ଏହି ଅଭିଯୋଗଗୁଡ଼ିକ ଗୋଟି ଗୋଟି କରି ବିଚାର କରିବା ।

**୧। ଏହା ଆଦୌ ଇଂରାଜ-ପ୍ରବର୍ତ୍ତିତ ନୁହେଁ –**

ଏହି ଶିକ୍ଷା-ବ୍ୟବସ୍ଥାକୁ ଇଂରେଜ ଶାସକେ ଆମ ଉପରେ ଜବରଦସ୍ତି ଲଦି-ଦେଇଛନ୍ତି ବୋଲି ପ୍ରଚାର କରିବା ଏକ ଐତିହାସିକ ସତ୍ୟର ପରମ ଅପଳାପ । ଏବେ ଅନେକ ଅଧ୍ୟାପକ ଶ୍ରେଣୀର ପଢୁଆଲୋକ ମଧ୍ୟ ଗଡ୍‌ଡ଼ଳିକା ପ୍ରବାହରେ ଭାସିଯାଇ ଶସ୍ତା ତାଳି ଲୋଭରେ ଅବାଧରେ ଏପରି କହିଯିବା ଦେଖି ଲେଖକ ପରମ ବିସ୍ମିତ । କିନ୍ତୁ ଅନ୍ୟମାନଙ୍କ କଥା ବାଦ୍‌ଦେଇ ଏଠାରେ ଖୋଦ୍ ଜହରଲାଲ ନେହ୍ରୁରଙ୍କ ମତହିଁ ପାଠକେ ଜାଣିରଖନ୍ତୁ –

''ରାମମୋହନ ରାୟ ଓ ତାଙ୍କର ସମସାମୟିକ ଅନ୍ୟମାନେ ନିଜ ନିଜ ଚେଷ୍ଟାରେହିଁ ଇଂଲିଶ୍-ଶିକ୍ଷା କରିଥିଲେ । କଲିକତା ବାହାରେ ସମଗ୍ର ଭାରତବର୍ଷରେ କାହିଁ ଗୋଟିଏ ହେଲେ ଇଂରାଜୀ ସ୍କୁଲ ବା କଲେଜ ନଥିଲା ଏବଂ (ଇଷ୍ଟ୍ ଇଣ୍ଡିଆ-କମ୍ପାନୀ) ସରକାର ନିଃସନ୍ଦେହ ଭାବରେ ଇଣ୍ଡିଆନ୍‌ମାନଙ୍କୁ ଇଂରାଜୀ ଶିଖାଇବା ବିରୁଦ୍ଧରେ ଥିଲେ ।'' (ଡିସ୍‌କଭରି ଅବ୍-ଇଣ୍ଡିଆ, ପୃ. ୩୩୫)

ବସ୍ତୁତଃ ଭାରତବର୍ଷରେ ଇଂରେଜୀଭାଷା ଓ ଇଂରେଜୀ-ଭାଷା-ଭିତ୍ତିକ ସ୍କୁଲ କଲେଜମାନଙ୍କର ପରିବ୍ୟାପ୍ତ ପ୍ରସାର ଆମରି ଲୋକଙ୍କ ଦ୍ୱାରାହିଁ ଘଟିଛି ଏବଂ ତ୍ରୁଟିପୂର୍ଣ୍ଣ ତ୍ରୁଟିପୂର୍ଣ୍ଣ, ଚିତ୍‌କାର ସତ୍ତ୍ୱେ, ସ୍ୱାଧୀନତା ପରେ ଅକଳ୍ପିତ ଦ୍ରୁତ ଗତିରେ, ସକଳ ଶୈକ୍ଷିକ ଆନ୍ତର୍ଜାତିକ ମାନଦଣ୍ଡ ଓ ବୌଦ୍ଧିକ ମୂଲ୍ୟାୟନକୁ ପଦଦଳିତ କରି, ଆମରି ଲୋକଙ୍କଦ୍ୱାରାହିଁ ଏହା ବଢ଼ିଚାଲିଛି । ୧୮୨୩ ରେ ନବ-ଭାରତର ଜନ୍ମଦାତା ରାମମୋହନ ରାୟ କଲିକତାରେ ଏକ ସଂସ୍କୃତ କଲେଜ ସ୍ଥାପନର ବିରୁଦ୍ଧରେ ତତ୍‌କାଳୀନ ଇଂରାଜୀ ଗର୍ଭର୍ଣ୍ଣର-ଜେନେରାଲଙ୍କୁ ଏକ ପ୍ରତିବାଦମୂଳକ ଦରଖାସ୍ତ ଦେଇଥିଲେ । ଲର୍ଡ଼ ବେଣ୍ଟିକ୍‌ଙ୍କ ସମୟରେ ଇଷ୍ଟ ଇଣ୍ଡିଆ କମ୍ପାନୀ ନେଟିଭ୍‌ମାନଙ୍କର ଶିକ୍ଷାବାବଦକୁ ପ୍ରଥମକରି ତାଙ୍କ ବାର୍ଷିକ ବଜେଟରେ ଏକଲକ୍ଷ ଟଙ୍କାର ବରାଦ ରଖିଲା ପରେ ଏହା ଇଂରାଜୀ-ଭିତ୍ତିକ ୟୁରୋପୀୟ ବିଜ୍ଞାନ-ସାହିତ୍ୟ ନା ଆରବୀ-ପାର୍ସି-ବା-ସଂସ୍କୃତ-ଭିତ୍ତିକ ପ୍ରାଚ୍ୟ ଜ୍ଞାନ-ସାହିତ୍ୟର ପରିବେଷଣ ପାଇଁ ବ୍ୟୟିତ ହେବ, ଏଥିପାଇଁ ତୁମୁଳ ବିବାଦ ଉଠିଲା । ଆରବୀ-ପାର୍ସି-ସଂସ୍କୃତରେ ପରମ ପଣ୍ଡିତ ରାମମୋହନ ଦୃଢ଼ କଣ୍ଠରେ ଇଂରାଜୀ ଭାଷା ଓ ପାଶ୍ଚାତ୍ୟ-ବିଜ୍ଞାନ-ଦର୍ଶନ ସାହିତ୍ୟର ପରିବେଷଣରେହିଁ ଏହି ଅର୍ଥ ବ୍ୟୟିତ ହେଉ ବୋଲି ପ୍ରଚାର କରିଥିଲେ ଓ କମ୍ପାନୀ କର୍ତ୍ତୃପକ୍ଷଙ୍କୁ ନିଜର ଏହି ମତ ଜଣାଇଦେଇଥିଲେ । ପାଠକେ ପୁଣି ଏହା ମଧ୍ୟ ଜାଣି ବିସ୍ମିତ ହେବେ ଯେ, କେବଳ ସଂସ୍କାରକ ରାମମୋହନ ନୁହନ୍ତି, ପ୍ରାଚ୍ୟବିଦ୍ୟାର ପ୍ରକୃତ ସାଗର ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ଯେ କି ନିଜେ କଲିକତା ସଂସ୍କୃତ

କଲେଜର ପ୍ରଥମ ଭାରତୀୟ ପ୍ରିନ୍‌ସପଲ୍ ଥିଲେ, ସେ ହେଉଛନ୍ତି ସମଗ୍ର ଭାରତବର୍ଷରେ ପ୍ରଥମ ଲୋକ ଯେ ମଧ୍ୟ, 'ମ୍ଲେଚ୍ଛ' ବିଦେଶୀ ଇଂରାଜୀ-ଭାଷା ଭିତ୍ତିକ ଭାରତବର୍ଷର ପ୍ରଥମ ପ୍ରାଇଭେଟ-କଲେଜ ସ୍ଥାପନ କରନ୍ତି । ସେହି କଲେଜ ଏବେ ତାଙ୍କ ନାମରେ ନାମିତ । ପରେ ଏହି ପ୍ରଚଳିତ ଶିକ୍ଷା ପଦ୍ଧତି ଅନୁସାରେ ଶିକ୍ଷିତ ଗୋଖ୍‌ଲେ, ମାଲବ୍ୟଜୀ ଓ ସର୍ ଆଶୁତୋଷଙ୍କ ପରି ଆମର ମହା ମହା ମନୀଷୀ ବୃନ୍ଦ ମଧ୍ୟ ସେହି ଇଂରାଜି-ଭିତ୍ତିକ ସ୍କୁଲ-କଲେଜ-ବିଶ୍ୱବିଦ୍ୟାଳୟ ଆଦିରେ ନିଜନିଜର ଶ୍ରମ ଓ ପ୍ରତିଭା ଢ଼ାଳି ସେଗୁଡ଼ିକୁ ଦେଶରେ ପରମ ମର୍ଯ୍ୟାଦାବନ୍ତ କରି ଥୋଇଲେ ।

ତେଣୁ ବିଦେଶୀ ଇଂରାଜୀ ଶାସକେ ଏକ ଶିକ୍ଷା ବ୍ୟବସ୍ଥାକୁ ଆମ ଉପରେ ଜବରଦସ୍ତି ଲଦି ଦେଇ ଯାଇଛନ୍ତି ବୋଲି କହିବାକୁ ଯିବା, ସତ୍ୟରେ ଏକ ଐତିହାସିକ ସତ୍ୟର ଅକାରଣ ହତ୍ୟା ଛଡ଼ା ଆଉ କିଛି ନୋହିପାରେ । ଅବଶ୍ୟ ବେଣ୍ଟିକଙ୍କ ସମୟରେ ଯେଉଁ ପ୍ରାଚ୍ୟ-ପାଶ୍ଚାତ୍ୟ ବିବାଦ ଉଠିଥିଲା ସେଥିରେ ପ୍ରସିଦ୍ଧ ଇଂରେଜ କବି, ଐତିହାସିକ ଓ ବାଗ୍ମୀ, ମାକଲେଂଙ୍କର ଇଂରାଜୀ ଭାଷା ଓ ପାଶ୍ଚାତ୍ୟ-ଜ୍ଞାନ ସପକ୍ଷରେ ପ୍ରବଳ ଯୁକ୍ତି, କମ୍ପାନୀ-ସର୍କାରଙ୍କୁ ନିଃସନ୍ଦେହରେ ଅନେକ ପରିମାଣରେ ପ୍ରଭାବିତ କରିଥିଲା । କିନ୍ତୁ ଏ ସଂପର୍କରେ ବି ସେ ମହାନ୍ ଭବିଷ୍ୟଦ୍‌ବାଣୀ ମାକ୍‌ଲେ କରିଯାଇଥିଲେ ଏବଂ ତାହା କିପରି ଅକ୍ଷରେ ଅକ୍ଷରେ ଆଜି ସତ୍ୟ ହୋଇଛି, ତାହା ଅକୁଣ୍ଠଭାବରେ ସତ୍ୟାପଳାପୀ ପ୍ରପାଗାଣ୍ଡିଷ୍ଟମାନେ ଆଦୌ ଆମ ଦେଶର ଜନତାର ଦୃଷ୍ଟିକୁ ଆଣିନଥାନ୍ତି । ମାକ୍‌ଲେ ବ୍ରିଟିଶ୍ ପାର୍ଲିଆମେଣ୍ଟ ଆଗରେ ଆଜିକି ଦେଢ଼ଶ' ବର୍ଷ ତଳେ କହିଥିଲେ –

''ଖୁବ ସମ୍ଭବତଃ ଆମର ସଭ୍ୟଜନୋଚିତ ଶାସନ ବ୍ୟବସ୍ଥାରେ ଶାସିତ ହୋଇ, ଭାରତବର୍ଷ ଜନଚେତନା ଦିନେ ତାହାଠାରୁ ମଧ୍ୟ ଆଗକୁ ଯାଇ, ତା'ଠୁ ଉତ୍ତମତର କିଛି ଉଦ୍ଭାବନ କରିପାରେ । ଆମର ସୁଶାସନ, କ୍ରମେ ଭାରତୀୟମାନଙ୍କୁ ଚିନ୍ତାକରିବାକୁ ଦେଇପାରେ ଆହୁରି ଉତ୍ତମତର ଶାସନ । ଏପରି ମଧ୍ୟ ହୋଇପାରେ ଯେ, ୟୁରୋପୀୟ ଜ୍ଞାନରେ ଶିକ୍ଷିତ ଦୀକ୍ଷିତ ହେଲା ପରେ, ଭାରତୀୟମାନେ ଦିନେ ୟୁରୋପୀୟ ରାଜନୈତିକ-ସାମାଜିକ ବ୍ୟବସ୍ଥା ସବୁ ପାଇଁ ମଧ୍ୟ ଦାବି କରିବେ । × × ଏପରି ଏକ ଦାବିର କାଳ ଆସିବାରେ ମୁଁ ସାମାନ୍ୟତମ ବାଧା ଉପସ୍ଥାପିତ କରିବି ନାହିଁ । କାରଣ, ଯେବେ ସେପରି ଦିନ ଆସିବ, ତେବେ ତାହାହିଁ ହେବ ଇଂଲଣ୍ଡର ସମଗ୍ର ଇତିହାସରେ ସବୁଠାରୁ ଅଧିକ ଗର୍ବର ଦିନ ।''

ତେଣୁ କେବଳ ନିଜ ସୁବିଧା ପାଇଁ ଆମକୁ ଏକ କିରାଣିର ଜାତି କରି ଗଢ଼ିବା ପାଇଁହିଁ, ଇଂରେଜ ଶାସକେ ଆମ ଭିତରେ ଏବର ଶିକ୍ଷା-ବ୍ୟବସ୍ଥା ଜବରଦସ୍ତି

ଲଦିଦେଲେ ବୋଲି ପ୍ରଚାରକରିବାରେ ଐତିହାସିକ ଯଥାର୍ଥତା କେଉଁଠୁ ଆସୁଛି ଲେଖକ ବୁଝିପାରୁନାହିଁ ।

ତା' ଯଦି ଲକ୍ଷ୍ୟଥିଲା, ତେବେ ଗୋଖଲେ, ମାଳବ୍ୟ, ମୋତିଲାଲ, ଚିତ୍ତରଂଜନ, ଅରବିନ୍ଦ, ସୁଭାଷ, ଲଜ୍‌ପତ୍‌, ତିଳକ ଓ ରମଣ-ଜଗଦୀଶ ଆଦି ବିରାଟ ଧୁରନ୍ଧର ସବୁ କିପରି ବାହାରିଲେ ଏହି ଶିକ୍ଷା-ପଦ୍ଧତିରୁ ?

ଆଉ, ଆମେ ଯେଉଁ ଶୈକ୍ଷିକ 'ବିପ୍ଳବ' ଆଣିବା ସେ ଶିକ୍ଷା-ପଦ୍ଧତିରୁ କ'ଣ ଆଦୌ କିରାଣି ବାହାରିବେନି– ଖାଲି ବିରାଟ-ପ୍ରତିଭାବାନ୍‌ ଲୋକ ବାହାରିଆସିବେ ପଣ ପଣ ହୋଇ, ପ୍ରତିବର୍ଷ ? ଯେଉଁ ଶିକ୍ଷା-ପଦ୍ଧତି ପ୍ରଚଳିତ ହେଉ, ସେଥିରୁ ଆମର ବିରାଟ ପ୍ରଶାସନ ଚଳାଇବା ପାଇଁ ଯଦି କିରାଣି-ଶ୍ରେଣୀର ଲୋକ ନବାହାରନ୍ତି, ତେବେ ଏ ଦେଶର ଶାସନ ଦିନେ ଚଳିପାରିବ କି ? ଉତ୍ତମ କିରାଣି ମଧ ତିଆରିକରିବା, କୌଣସି ହେଲେ ଶିକ୍ଷା-ପଦ୍ଧତି ପାଇଁ ନିନ୍ଦନୀୟ କର୍ମ ନୋହିପାରେ ।

**୨ । କଲେଜ ସ୍ତରରେ ଇଂରାଜୀକୁ ତଡ଼ି ଆଞ୍ଚଳିକ ଭାଷା-ମାଧ୍ୟମ ପ୍ରଚଳନ–**

ନିଜନିଜର ମାତୃଭାଷାରେହିଁ ସର୍ବଜ୍ଞାନ ଆହରଣ କରିବା ଏକାନ୍ତ ଯୁକ୍ତିଯୁକ୍ତ କଥା । ଏଥିରେ ଦ୍ୱିମତି ନଥାଇ ପାରେ । କିନ୍ତୁ ଅଭାବଗ୍ରସ୍ତ ଆଧୁନିକ ଭାରତୀୟ ଆଞ୍ଚଳିକ ଭାଷାମାନଙ୍କ କଥା ଛାଡ଼ିଦିଅ, ରାଜା ରାମମୋହନ ଓ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ସଂସ୍କୃତ, ଆରବୀ ଓ ପର୍ସିଆନ୍‌ ପରି ·ପ୍ରାଚ୍ୟର କ୍ଲାସିକ୍‌ ଭାଷାମାନଙ୍କୁ ମଧ ଏ ଦେଶରେ ଶିକ୍ଷାର ମାଧ୍ୟମ କରିବାକୁ ରାଜି ହୋଇନଥିଲେ କାହିଁକି ? ଏବଂ ତାହା ନହୋଇ ଇଂରାଜୀ ମାଧ୍ୟମ ପ୍ରବର୍ତ୍ତିତ ହେବାଫଳରେହିଁ ଆମେ ଯେ କିପରି ପ୍ରଭୂତ ଭାବରେ ଓ ସବୁମନ୍ତେ ଉପକୃତ ହୋଇଛୁଁ, ତାହା ଉପରେ କୁହାଯାଇସାରିଛି । ଏ ସଂପର୍କରେ ମାକ୍‌ଲେ ତାଙ୍କର ୧୮୩୫ର ପ୍ରସିଦ୍ଧ ''ମିନିଟ୍‌ସ ଅବ୍‌ ଏଡୁ-କେଶନ୍‌''ରେ ଯେପରି ବର୍ଣ୍ଣନା କରିଥିଲେ ଆମ ଭାରତୀୟ ଭାଷାମାନଙ୍କରେ ସେ ଅବସ୍ଥା ଯେ ଏଭିତରେ ଏପର୍ଯ୍ୟନ୍ତ ଅପରିବର୍ତ୍ତିତ ରହିଛି, ଏହା ମଧ ନିଃସନ୍ଦେହ । ସେ କହିଥିଲେ –

''ଏହା ନିର୍ବିବାଦ୍ୟ ଯେ ପ୍ରାଚ୍ୟ ଦେଶୀୟ ଲେଖକମାନେ ସାହିତ୍ୟରେ କେବଳ ଗୋଟିଏ କ୍ଷେତ୍ର-କାବ୍ୟ-କବିତା ରଚନାରେହିଁ ବେଶ୍‌ ଉତ୍କର୍ଷ ଦେଖାଇଛନ୍ତି । ତଥାପି, ମୁଁ ଏପର୍ଯ୍ୟନ୍ତ ଏପରି କୌଣସି ୟୁରୋପୀୟ ପ୍ରାଚ୍ୟ ବିଦ୍ୟା-ଧୁରନ୍ଧରଙ୍କୁ ଭେଟି ନାହିଁ, ଯେ କି ସାହସର ସହିତ କହିପାରିବେ ଯେ, ଅଗ୍ରଗାମୀ ୟୁରୋପୀୟ ଜାତିମାନଙ୍କର କବିତା ସହିତ ସଂସ୍କୃତ ବା ଆରବୀ ଭାଷାର କବିତା ତୁଳିତ ହେଇପାରେ । ଏବଂ

ଆମେ ଯେତେବେଳେ କଳ୍ପନାର ଜଗତରୁ ବାସ୍ତବ ଜଗତକୁ ଯିବା ଯେଉଁଠି ଭିନ୍ନ ଭିନ୍ନ ଘଟଣାମାନଙ୍କରୁ ବିଶ୍ୱ-ଜନୀନ ବୈଜ୍ଞାନିକ ନିୟମ ସବୁ ଆବିଷ୍କୃତ ହେଉଛନ୍ତି, ସେଠି ଆମେ ଭେଟିବା ପ୍ରାଚ୍ୟଭାଷାମାନଙ୍କଠାରୁ ୟୁରୋପୀୟ ଭାଷାମାନଙ୍କର ମହାନତା କିପରି ଅମାପ୍ୟ । ମୁଁ ଯଦି କହେ ସମଗ୍ର ସଂସ୍କୃତ ଭାଷା ଓ ସାହିତ୍ୟରୁ ଯେତେ ଐତିହାସିକ ତଥ୍ୟ ସଂଗ୍ରହ କରାଯାଇଚି ସେ ସମସ୍ତହିଁ ଇଂଲଣ୍ଡର ପ୍ରାଇମେରୀ ସ୍କୁଲମାନଙ୍କରେ ପ୍ରଚଳିତ ସଂକ୍ଷିପ୍ତ ଇତିହାସ ପୁସ୍ତକଠାରୁ କମ୍ ମୂଲ୍ୟବାନ୍, ଏହା ଏକାବେଳକେ ଅତିରଞ୍ଜିତ ବୋଲି କେହି ଯେପରି ଗ୍ରହଣ ନ କରନ୍ତି । ଇତିହାସ ପରି ପଦାର୍ଥ ଓ ନୈତିକ ବିଜ୍ଞାନର ସବୁ ଶାଖାରେ ମଧ୍ୟ ଆମ ଦୁଇଦେଶର ତାରତମ୍ୟ ପ୍ରାୟ ସେହିପରି ବୋଲି ଧରିନେବାକୁ ହେବ ।''

ପାଠକେ ମଧ୍ୟ ଏଠାରେ ମନେରଖନ୍ତୁ, ରାଜା ରାମମୋହନ ସେତେବେଳେ କହିଥିଲେ ଯେ, ଭାରତ ଯଦି ପୁଣି ସପ୍ତଦଶ ଶତାବ୍ଦୀର ଘୋର ଅଜ୍ଞାନ-ଅନ୍ଧକାର ଭିତରେ ବୁଡ଼ି ରହିବାକୁ ଚାହେ, ତେବେ ହିଁ ସେ ସଂସ୍କୃତ ବା ଆରବୀ ଗ୍ରହଣ-କରୁ । କିନ୍ତୁ ଭାରତ ଯଦି ସଭ୍ୟ ଅଗ୍ରଗାମୀ ହେବାକୁ ଚାହେ, ତେବେ ଗ୍ରହଣ କରୁ ଇଂରାଜୀ ଭାଷା ଓ ୟୁରୋପୀୟ ଜ୍ଞାନ-ବିଜ୍ଞାନ ।

ଆମେ ବି ସତରେ ଆଜି ଏପରି ଅବସ୍ଥାକୁ ଆସିଛୁ, ଯେତେବେଳେ ଆମେ ପୂରା-ପୂରି ୟୁରୋପୀୟ ଜ୍ଞାନବିଜ୍ଞାନ-ସାହିତ୍ୟ ଓ ୟୁରୋପୀୟ ଭାଷାମାନଙ୍କୁ ସଂପୂର୍ଣ୍ଣ ପରିତ୍ୟାଗ କରି, ଆମର କେବଳ ଭାରତୀୟ ଭାଷାମାନଙ୍କ ଉପରେ ନିର୍ଭର କରି ପାରିବା ?

**ତାମିଲ ପିଲେ କ'ଣ କଲେ –**

ଉତ୍ତରଭାରତରେ କମ୍ ଲୋକ ଜାଣନ୍ତି ଯେ ଭାରତର ପ୍ରାଚୀନତମ ଭାଷା-ହେଉଛି ତାମିଲ – ନୁହେଁ ସଂସ୍କୃତ । ଏହା ମଧ୍ୟ ଭାରତରେ ସବୁଠାରୁ ସମୃଦ୍ଧତମ ଭାଷା । ସେମାନଙ୍କର ସେହି ଐତିହାସିକ ଗୌରବକୁ କେନ୍ଦ୍ରକରି ସମଗ୍ର ତାମିଲନାଡୁରେ ଯେଉଁ ଉଗ୍ର ଆଞ୍ଚଳିକ ଭାବ ଏବେ ଦେଖାଦେଇଛି, ତାହାର ପ୍ରତୀକ ହିଁ ହେଉଛି ବର୍ତ୍ତମାନର ଶାସକଦଳ ଡ଼ି.ଏମ୍.କେ । ତାମିଲ ଜନମତକୁ ଆହୁରି ଅଧିକ ଖୁସୀ କରିବା ଲକ୍ଷ୍ୟରେ ଏବର ଡ଼ି.ଏମ୍.କେ. ମୁଖ୍ୟମନ୍ତ୍ରୀ କବିସମ୍ରାଟ କରୁଣାନିଧି, କଲେଜ ସ୍ତରରେ ପୂରାପୂରି ଇଂରାଜୀକୁ ତଡ଼ି, ତା' ସ୍ଥାନରେ ତାମିଲ ମାଧ୍ୟମ ପ୍ରବର୍ତ୍ତିତ କରି-ବସିଥିଲେ । ଚାକିରିବାକିରିରେ ତାମିଲ-ମାଧ୍ୟମ-ପାସ୍ ପିଲାଙ୍କୁ ଅଧିକ ସୁଯୋଗ ଦିଆଯିବାର ପ୍ରଲୋଭନ ମଧ୍ୟ ଦେଖାଇଥିଲେ ଶ୍ରୀ କରୁଣାନିଧି । କିନ୍ତୁ ସମଗ୍ର ତାମିଲନାଡୁର ଛାତ୍ରସଂପ୍ରଦାୟ, ଗୁରୁସଂପ୍ରଦାୟ ଓ ଅଭିଭାବକ ସଂପ୍ରଦାୟ ସାରା-ରାଜ୍ୟରେ କରୁଣାନିଧିଙ୍କର ଏ ପ୍ରକାର ଅଯାଚିତ କରୁଣା ଗ୍ରହଣ ନ କରି, ରାଜ୍ୟର

ଚାରିଆଡ଼େ ବିଦ୍ରୋହର ନିଆଁ ଜାଳିଦେଲେ । ସାଙ୍ଗେ ସାଙ୍ଗେ ମୁଦାଲିୟର କମିଟି ବସି ତାମିଲକୁ ଇଚ୍ଛାଧୀନ କରିବାକୁ ପରାମର୍ଶ ଦିଅନ୍ତେ, କରୁଣାନିଧି ତାହାହିଁ ଗ୍ରହଣ କରିବାକୁ ବାଧହେଲେ । ଏବଂ ତାମିଲ-ମାଧ୍ୟମ-ଛାତ୍ରମାନଙ୍କୁ ଷ୍ଟାଇପେଣ୍ଡ ଓ ମାଗଣା ପୁସ୍ତକାଦିର ବ୍ୟବସ୍ଥା କରି ମଧ୍ୟ ଏବେ ଦେଖାଯାଉଛି ଯେ, ତାମିଲନାଡୁର କଲେଜମାନଙ୍କରେ ଅଧିକାଂଶ ପିଲେ ଇଂରାଜୀ ମାଧ୍ୟମହିଁ ଗ୍ରହଣ କରୁଛନ୍ତି । ଏବେ ସମଗ୍ର ଆନ୍ଧ୍ର ଦେଶରେ ପିଲେ ଓ ଅଭିଭାବକମାନେ ତାମିଲନାଡୁ ପରି ଇଂରେଜୀ ସପକ୍ଷରେ ତୀବ୍ର ଆନ୍ଦୋଳନ ଚଳାଇଛନ୍ତି ।

ବାଣୀବିହାରର ପୋଷ୍ଟ-ଗ୍ରାଜୁଏଟ୍ ପିଲାଏ ବଦ୍ଧମୁଷ୍ଟି ଉତ୍ତୋଳନ କରି ଓଡ଼ିଆ-ମାଧ୍ୟମ ପାଇଁ ଚିତ୍କାରପୂର୍ଣ୍ଣ ଶୋଭାଯାତ୍ରା କରିବାର ଏ ଲେଖକ ଦେଖିଛି । କିନ୍ତୁ ପ୍ରକୃତ ଦେଶ କଲ୍ୟାଣକାମୀ ପ୍ରତ୍ୟେକ ନାଗରିକ ଓ ଛାତ୍ର ଭାବିବା ଉଚିତ ଯେ ଏହା ବଦ୍ଧମୁଷ୍ଟି ବା ଚିତ୍କାରର ବ୍ୟାପାର ଆଦୌ ନୁହେଁ– ଏହା ଏକାନ୍ତରେ ଏକ ଶୈକ୍ଷିକ ଓ ବୌଦ୍ଧିକ ବିଚାର। ଏହା ଦେଶର ପଣ୍ଡିତ ଶିକ୍ଷାବିଦ୍‌ମାନେହିଁ ଧୀରସ୍ଥିର ଚିତ୍ତରେ ବ୍ୟାପାରକୁ ସବୁ ଦିଗରୁ ଆଲୋଚନା କରି ସିଦ୍ଧାନ୍ତ କରିବାର କଥା । ଶିକ୍ଷା ଓ ଜ୍ଞାନ ଜଗତରେ ମଧ୍ୟ ବଦ୍ଧ-ମୁଷ୍ଟି, ଚିତ୍କାର ଓ ଘେରାଉ ଇତ୍ୟାଦି ଦେଇହିଁ ସିଦ୍ଧାନ୍ତକୁ ଆସିବା, ଆଜି ଏହି ଐତିହାସିକ ଜାତିପକ୍ଷରେ ଚରମତମ ଦୁର୍ଗତିର ଚିହ୍ନ କହିବାକୁହେବ। ବିଶେଷକରି ଓଡ଼ିଶାର ଛାତ୍ର-ସମାଜ, ଇଂରେଜୀକୁ ତଡ଼ିବା ଦ୍ୱାରା ନିଜର କି ପ୍ରକାର ବୌଦ୍ଧିକ ଆତ୍ମହତ୍ୟା କରିବେ, ସେମାନେ ହୁଏତ ଜାଣୁନାହାନ୍ତି । ଗତ ଦଶ-ପନ୍ଦର ବର୍ଷ ହେଲା ଓଡିଆ ପିଲାଏ ପ୍ରାୟ ସମସ୍ତ ସର୍ବଭାରତୀୟ ବୌଦ୍ଧିକ ପ୍ରତିଯୋଗିତାରେ ଯେ ଅସାଧାରଣ କୃତିତ୍ୱ ଦେଖାଇ ଆସୁଛନ୍ତି, ଏହା କେବଳ ଏ ରାଜ୍ୟର ବିଶ୍ୱବିଦ୍ୟାଳୟ ସ୍ତରରେ ଇଂରାଜୀମାଧ୍ୟମ ଯୋଗୁଁ ସମ୍ଭବ ହେଉଥିଲା । କଲେଜ ସ୍ତରରେ ଇଂରାଜୀକି ତଡ଼ି ଓଡ଼ିଆ ପୂରେଇଲେ ଓଡ଼ିଆଙ୍କର ସେ ସୌଭାଗ୍ୟତକ ଅଚିରେ ଉଭେଇଯିବ । ଆମର ଛାତ୍ରସମାଜ ଚିନ୍ତା କରନ୍ତୁ, ଅଗ୍ରଗାମୀ ଓ ଅତ୍ୟନ୍ତ-ଆଞ୍ଚଳିକ-ଭାବ-ସଚେତନ ତାମିଲନାଡୁର ଛାତ୍ର ଓ ଜନତା କାହିଁକି ତାମିଲ-ମାଧ୍ୟମକୁ ଏକାବେଳକେ ପ୍ରତ୍ୟାଖାନ କରି ଇଂରାଜୀ-ମାଧ୍ୟମକୁହିଁ ଗ୍ରହଣକଲେ । ଆମ ବିଶ୍ୱବିଦ୍ୟାଳୟମାନଙ୍କରେ ସେନେଟର ଓ ଭାଇସ୍-ଚାନ୍‌ସେଲରମାନେ ମଧ୍ୟ ''ମାଧିଆ ଭାଇ, ସବୁ କଥାକୁ ହଇ ହଇ'' ମନୋବୃତ୍ତି ଛାଡ଼ି ଜାତିର ପ୍ରକୃତ କଲ୍ୟାଣ ଲକ୍ଷ୍ୟରେ ହିଁ ସିଦ୍ଧାନ୍ତ ନିଅନ୍ତୁ । ସଂଖ୍ୟାଗରିଷ୍ଠ ପିଲାଙ୍କର ବଦ୍ଧମୁଷ୍ଟି, ଚିତ୍କାର ଓ ଘେରାଉକୁ ଡରି ସେମାନଙ୍କର ତରବରରେ ଆତ୍ମଘାତୀ ସିଦ୍ଧାନ୍ତ ସବୁ ଗ୍ରହଣ କରି ଚାଲିବା ଏକାନ୍ତ ଅନୁଚିତ । ଭାବବିହ୍ୱଳତାରେ ଭାସି ଆମେ କ'ଣ ଜାଣି ଜାଣି ଆମର ନୂତନ ପୁରୁଷର ଅନିଷ୍ଟ ଆୟୋଜନ କରି ରଖିବା, ଅର୍ଥ ଶ୍ରାଦ୍ଧ କରି ?

**ଭାଷାଧିକାର ହିଁ ଶିକ୍ଷା–**

ପୁଣି, ଆମ ପିଲେ ମଧ୍ୟ ଜାଣିବା ଉଚିତ୍ ଯେ ୟୁରୋପରେ ସାଧାରଣ ଗ୍ରାଜୁଏଟ୍ ଅନ୍ତତଃ ଚାରିଟା ଭାଷା ଆୟତ୍ତ କରିଥାନ୍ତି । ତଥାକଥିତ 'ଶିକ୍ଷିତ' ଲୋକର ପ୍ରଥମ ଓ ଚରମ ଚିହ୍ନ ହେଉଛି ଏକାଧିକ ଭାଷା ଉପରେ ଦଖଲ– କହିବା, ଲେଖିବା ଓ ପଢ଼ିବାରେ । କୌପୀନବନ୍ତ ବାପୁଜୀ ବିଶୁଦ୍ଧ ମାଧୁର୍ଯ୍ୟପୂର୍ଣ୍ଣ ଇଂରାଜୀ କହିବା ପାଇଁ ବିଶ୍ୱବିଖ୍ୟାତ ଥିଲେ । ଇଂଲଣ୍ଡରେ ଶିକ୍ଷକ-ଅଧ୍ୟାପକଙ୍କ କଥା ଛାଡ଼ିଦିଅ, ସାଧାରଣ ଲୋକମାନଙ୍କ ଭିତରେ ମଧ୍ୟ ଭିନ୍ନ ଭିନ୍ନ ଭାଷା ଶିକ୍ଷା ଓ ଜ୍ଞାନ ଆହରଣ କରିବାର ଆଗ୍ରହ ଏ ଦେଶରେ କଳ୍ପନା କରି ହେବ ନାହିଁ । ଲେଖକ ଜଣେ ଜୋତା-ବ୍ୟବସାୟୀ ଇଂରେଜ ବନ୍ଧୁଙ୍କୁ ନିଜ ଚେଷ୍ଟାରେ ସଂସ୍କୃତ ଭାଷା ଆୟତ୍ତ କରୁଥିବାର ଦେଖିଛି । ଲେଖକର ଚାକରାଣୀ-ସ୍ତରର ଲାଣ୍ଡଲେଡ଼ି ଥିଓସଫିକାଲ୍ ସୋସାଇଟିରେ ଲେକ୍‌ଚର ଯାଇ ଶୁଣିବାର ସେ ଦେଖିଛି । ଆମେ କଠିନ ହେଲା ବୋଲି ସଂସ୍କୃତ ପଢ଼ିବାନି, ଇଂରାଜୀ ବି ପଢ଼ିବାନି । ଚାରିଆଡ଼ର ଝରକା-କବାଟ ସବୁ ବନ୍ଦକରିଦେଇ ଯଦି ଘର ଭିତରେ ଖାଲି କମଳଲୋଚନ ଚଉତିଶା ଘୋଷିବା, ତେବେ ତାକୁ ବି କି 'ଉଚ୍ଚଶିକ୍ଷା' କୁହାଯିବ ? ଗୋଟିଏ ଜାତି କ'ଣ ଏଇଭଳି ତାଲିମ ପାଇ ଦୁର୍ଦ୍ଧର୍ଷ ପୌରୁଷ ନେଇ ଗଢ଼ିଉଠିବାର ଆଶା କରିପାରେ ?

ତେଣୁ ଶୈକ୍ଷିକ, ବୌଦ୍ଧିକ, ସାଂସ୍କୃତିକ ସବୁ ଦିଗରୁ ଆଲୋଚନା କଲେ, ଇଂରେଜି ତାଡ଼ନ ଏକ ଚରମ ଆତ୍ମଘାତୀ ଯୋଜନା ବୋଲି ମନେ କରିବାକୁ ହେବ । ଏ ଅତ୍ୟାଚାର ଏ ଦେଶକୁ ପୁନର୍ବାର ଅଜ୍ଞାନ-ଅନ୍ଧକାରରେ ବୁଡ଼େଇ ମାରିବ । ମାନବିକ ଜ୍ଞାନର ଭିନ୍ନ ଭିନ୍ନ ବିଭାଗ ଉପରେ ସରକାରୀ ସାହାଯ୍ୟରେ ବହି ଲେଖା ଯେପରି ଆରମ୍ଭ ହୋଇଛି, ସେ ଚାଲୁରହୁ । ପିଲାଙ୍କ ହାତକୁ ସେ ସବୁ ବହି ଆସ୍ତେ ଆସ୍ତେ ଦିଆଯାଉ । ଗୋଟିଏ ଗୋଟିଏ ବିଷୟ ପ୍ରାଞ୍ଜଳ ଭାବରେ ବୁଝିବାରେ ସେ ସବୁ କିପରି ସହାୟକ ହେଉଛନ୍ତି, ତା'ର ବିଚାର ହେଉ । ସ୍ୱାଭାବିକ ଭାବରେ କର୍ମ-ବିଧାନ ଚାଲୁ ରହୁ । କିନ୍ତୁ ଏକ ଶତ୍ରୁ ପରି ଇଂରେଜୀକୁ ବହିଷ୍କାର କରିବାର ଭାବନା ପିଲାଙ୍କ ମୁଣ୍ଡରେ ପୂରେଇବା ମାରାତ୍ମକ ଭାବରେ କ୍ଷତିକାରକ । କାରଣ ଇଂରାଜୀ ଆଜି ପୃଥିବୀର ସ୍ୱାଭାବିକ ବିଶ୍ୱଭାଷା, ପୁଣି ସବୁଠାରୁ ଅଧିକ ଋଦ୍ଧିମନ୍ତ ଭାଷା ଏବଂ ଏହା ବିଶେଷ କରି ଭାରତର ଅଶେଷ ଉପକାର କରିଛି ଓ କରିବ । ଏବଂ ଯେହେତୁ ଓଡ଼ିଆ-ବଙ୍ଗଳା-ହିନ୍ଦୀ ପରି ଏହା ମଧ୍ୟ ଆମରି ଇଣ୍ଡୋ-ୟୁରୋପୀୟାନ୍ ଭାଷା-ପରିବାରର ଅନ୍ୟ ଏକ ଶାଖା ମାତ୍ର, ଏହାକୁ 'ବିଦେଶୀ' କହି ଏକାବେଳକେ ଉଡ଼େଇ ଦେବାରେ ମଧ୍ୟ କୌଣସି ବିଶେଷ ଯୁକ୍ତିଯୁକ୍ତତା ଅଛି ବୋଲି ମନେହେଉନି ।

ଏ ପ୍ରକାର ବିତଣ୍ଡାର ଆଶ୍ରୟ ନେଲେ ସଂସ୍କୃତକୁ ମଧ୍ୟ 'ବିଦେଶୀ' କୁହାଯିବ – କାରଣ ତାହା ଭାରତୀୟ ଉପ-ମହାଦେଶକୁ ଆସିଛି ଆର୍ଯ୍ୟ-ଆକ୍ରମଣକାରୀମାନଙ୍କ ସହିତ । ସର୍ବୋପରି ଏହା ମଧ୍ୟ ମନେରଖିବାକୁ ହେବ ଯେ, ଜଣେ ଭାରତୀୟ ପକ୍ଷରେ ସମସ୍ତ ବିଶ୍ୱ-ଭାଷାମାନଙ୍କ ଭିତରେ ଇଂରେଜୀକୁ ଆୟତ୍ତ କରିବାହିଁ ସବୁଠାରୁ ସହଜ – ହୁଏତ ସଂସ୍କୃତ ଶିକ୍ଷାଠାରୁ ମଧ୍ୟ ସହଜତର । ଚକ୍ଷୁଷ୍ମାନ୍ ଭାରତୀୟମାନେ ତେଣୁ ଇଂରାଜୀକୁ ଦୂରକୁ ଠେଲିବା ପରିବର୍ତ୍ତରେ ଆମ ପିଲେ ଇଂରେଜୀ କିପରି ଆଗଠାରୁ ଅଳ୍ପକାଳ ଭିତରେ ହିଁ ଉତ୍ତମତର ଭାବରେ ତାହା ଆୟତ୍ତ କରିପାରିବେ, ତା'ର ବ୍ୟବସ୍ଥା ବରଂ କରିବା ଉଚିତ୍ । ନଳୀ ପ୍ୟାଣ୍ଟ୍, ନଳୀ ଯୋତା, ହୁଇସ୍କି ପାନ ଓ ଇଂରେଜୀ ଫିଲ୍ମ-ଦର୍ଶନ ଇତ୍ୟାଦି ଯେତେବେଳେ ଏ ଦେଶର ତରୁଣମାନଙ୍କଠାରୁ ପରମ ଆଗ୍ରହରେ କ୍ରମବର୍ଦ୍ଧମାନ ପୃଷ୍ଠପୋଷକତା ଲାଭ କରି ଚାଲିଛନ୍ତି, ତେବେ ଖାଲି ଇଂରାଜୀ ଭାଷାଟାହିଁ କିପରି 'ବିଦେଶୀ' ହୋଇ ଘୃଣ୍ୟ ହୋଇଯିବ ? ଏବଂ ଯେଉଁମାନେ ଏପରି ସ୍ୱଦେଶୀ ଭାବାପନ୍ନ ଯେ, ଇଂରେଜୀର 'ବିଦେଶୀତ୍ୱ' ତାଙ୍କପ୍ରତି ଅସହ୍ୟ ହୋଇଉଠୁଛି, ଅନ୍ତତଃ ସେହି ଓଡ଼ିଆ ବନ୍ଧୁମାନେ ଜାଣିରଖନ୍ତୁ ଯେ, ଚୋଟା, କଲମ, ଗିନା, କୋର୍ଟ, କଚେରି, ବହି, କିତାପ, ଖାତା, ପେନ୍‌ସିଲ, ଓକିଲ, ତାଟିଆ, ତୋରାଣି, ବେକୁବ୍, ପାଜି, ବଦ୍‌ମାସ, ଡକାଏତ୍, ଏତଲା, ବନ୍ଦୋବସ୍ତ ଆଦି ସେମାନେ ଦୈନନ୍ଦିନ ପ୍ରତି ମୁହୂର୍ତ୍ତରେ ବ୍ୟବହାର କରୁଥିବା ଶତ ଶତ ଶବ୍ଦ ପୂରା 'ବିଦେଶୀ' କି ନୁହେଁ । ଲଙ୍କାମରିଚ, ଚୀନାବାଦାମ, ମକ୍‌କା, ବିଲାତି ଆଳୁ ଆଦି ଆଜି ଆମର ଅପରିହାର୍ଯ୍ୟ ଦୈନନ୍ଦିନ ଭୋଜନର ଅଙ୍ଗ – କିନ୍ତୁ ଏଥିରୁ କେଉଁଟା ଖାଣ୍ଟି 'ସ୍ୱଦେଶୀ' ? ତେଣୁ 'ବୈଦେଶିକତା'ର କଲ୍ୟାଣଦାୟୀ ଜଳଧାରାରେ ପ୍ରତି ମୁହୂର୍ତ୍ତରେ ପରିସ୍ନାତ ହୋଇ ଚାଲିଥିଲା ବେଳେ, ଆମର ଅଭୂତପୂର୍ବ-କଲ୍ୟାଣ-ସାଧନ କରିଥିବା କେବଳ ଇଂରେଜୀ-ଭାଷାଟାକୁହିଁ 'ବିଦେଶୀ' ବୋଲି ଗୋଇଠା ମାରି ତଡ଼ିବା କୌଣସି ସୁବିଚାରିତ କର୍ମ ବୋଲି କୁହାଯାଇ ନ ପାରେ । ପୁଣି ଯଦି ଓଡ଼ିଆ ମାଧ୍ୟମ ହେଲେ ପିଲେ ଆହୁରି ଅଧିକ ସହଜରେ 'ଶିକ୍ଷିତ'ର ଟୀକା ସଂଗ୍ରହ କରିବା ଏକମାତ୍ର ମତଲବ ଥାଏ, ତେବେ ତାହା ଏକ ସମଗ୍ର ଐତିହାସିକ ଜାତିର ପରମ ଶୋଚନୀୟ ବୌଦ୍ଧିକ ଆତ୍ମହତ୍ୟା ଛଡ଼ା ଆଉ ଯେ କିଛି ନୋହିପାରେ, ଏହା ପାଠକେ ବୈଦିକ ବାକ୍ୟ ବୋଲି ଧରିନିଅନ୍ତୁ ।

**୩ । ଶିକ୍ଷିତ ବେକାର ସମସ୍ୟା–**

ଶିଳ୍ପ-ବିପ୍ଳବ ପରଠାରୁହିଁ ମନୁଷ୍ୟ ବେକାର ହେବା ଏକ ପୃଥିବୀମୟ ସମସ୍ୟା ହୋଇ ଉଠିଛି । ଏଥିରେ ଶିକ୍ଷିତ ବା ଅଶିକ୍ଷିତର ବାଛ-ବିଚାର ଏକାନ୍ତ ଅବାନ୍ତର । ଜାପାନ, ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ପ୍ରଭୃତି ଦେଶମାନଙ୍କରେ ତ ସମସ୍ତେ ଶିକ୍ଷିତ । ସେ ସବୁ

ଦେଶରେ ତେଣୁ ବେକାର ସମସ୍ୟାହିଁ ବେକାର ସମସ୍ୟା । ଏ ଦେଶରେ ଲକ୍ଷଲକ୍ଷ ଅଶିକ୍ଷିତ ବେକାର ମଧ୍ୟ ଅଛନ୍ତି । କିନ୍ତୁ ସେମାନଙ୍କ ଦୁର୍ଦ୍ଦଶା ଖବରକାଗଜରେ ସ୍ତମ୍ଭ ଗଢ଼େନା, କାରଣ ସେମାନେ ସ୍ଲୋଗାନ୍ ଦେଇ ଶୋଭାଯାତ୍ରା କରିପାରୁନାହାନ୍ତି ବା ବିଶ୍ୱବିଦ୍ୟାଳୟ ଅଫିସ୍‌ରେ ନିଆଁ ଲଗାଇ ପାରୁନାହାନ୍ତି । ନଚେତ୍ ''ଶିକ୍ଷତ ବେକାର ସମସ୍ୟା'' ଏପରି ଏକ ଭିନ୍ନ ଓ ଗୁରୁତମ ସମସ୍ୟା ବୋଲି ବିଚାରିତ ହେବାର କୌଣସି ଯୁକ୍ତି ଏ ଲେଖକ ଦେଖିପାରୁନି । ଦେଶର ସହସ୍ର ସହସ୍ର ଚାଷୀ, କେଉଟ, ତନ୍ତୀ ଓ କୁମ୍ଭାର ଉତ୍‌ପାଦନଶୀଳ ଶ୍ରମ କରି ଆମକୁ ଓ ସରକାରକୁ ବଞ୍ଚାଇରଖିଥିଲେ, ହେଁ, ସରକାର ସେମାନଙ୍କ ପାଇଁ କୌଣସି ପୌଞ୍ଜିକ ବ୍ୟୟ କରନ୍ତିନାହିଁ । ଅଥଚ ଜଣେ ପିଲା ଡାକ୍ତର ବା ଇଂଜିନିୟର ହେବା ଦୂରେ ଥାଉ, ସାମାନ୍ୟ ଏକ ଗ୍ରାଜୁଏଟ୍ ହୋଇ ବାହାରିବା ପାଇଁ ସରକାର ମୁଣ୍ଡ ପିଛା କେତେ ହଜାର ଟଙ୍କା ଖର୍ଚ୍ଚ କରୁଛନ୍ତି ତାହା ବିଚାରକୁ ନିଆଯାଉନାହିଁ କିପରି ? କେବଳ ଗୋଟିଏ ଡାକ୍ତର ତିଆରି କରିବା ପାଇଁ ସରକାର ପ୍ରତି ପିଲାର ମୁଣ୍ଡ-ପିଛା (ସେ ପାସ୍ କରନ୍ତୁ କି ଫେଲ୍ ହୁଅନ୍ତୁ) ପ୍ରାୟ ଏକ ଲକ୍ଷ ଟଙ୍କା ଖର୍ଚ୍ଚ କରିଥାନ୍ତି । ଅଥଚ ସେ ଟଙ୍କା ଆସୁଛି ଆମରି ଚାଷୀ, କେଉଟ, ତନ୍ତୀ ଓ ବଢ଼େଇର ଛିଣ୍ଡା-ଲୁଗା-ପିନ୍ଧା ଅଣ୍ଟାରୁ । ସରକାର ମୁଣ୍ଡପିଛା ଏତେ ଖର୍ଚ୍ଚ କରି ପାଠ ପଢ଼େଇବେ, ପୁଣି କପିକରି ପାସ୍ ପରେ ଚାକିରି ବି ଦେବାକୁ ବି ବାଧ୍ୟହେବେ – ଏ ଏକ ବିଚିତ୍ର ଆବଦାର ପରି ମନେହୁଏ ।

ଅବଶ୍ୟ ରାଜ୍ୟରେ ଶିକ୍ଷିତ ବା ଅଶିକ୍ଷିତ କେହି ପୂରା ବା ଏପରିକି ଆଂଶିକ ଭାବରେ ମଧ୍ୟ ବେକାର ରହିବା ଆଦୌ ଉଚିତ୍ ନୁହେଁ । ପ୍ରତ୍ୟେକେ କୌଣସି ନା କୌଣସି ଉତ୍‌ପାଦନଶୀଳ ବା ସମାଜୋପକାରକ କର୍ମରେ ଲାଗିରହିବା ଉଚିତ । ସେହି ଅନୁସାରେ ଆମର ସବୁ ଯୋଜନା ମଧ୍ୟ ହେବା ଉଚିତ୍ । କିନ୍ତୁ ସ୍ୱାଧୀନତା ପରେ ଆମେ ଅନ୍ଧ ଭାବରେ ଓ ସଂପୂର୍ଣ୍ଣ ଅଞ୍ଚଳିକ ଭାବ-ପ୍ରଣୋଦିତ ହୋଇହିଁ ଗୋଟାକ ପରେ ଗୋଟାଏ ମେଡ଼ିକାଲ୍ କଲେଜ ଓ ଇଂଜିନିୟରିଂ କଲେଜ ସହିତ ଗ୍ରାମେ ଗ୍ରାମେ ସାଧାରଣ କଲେଜ ଓ ହାଇସ୍କୁଲ ଯେ ବସେଇ ଚାଲିଲେ ଏବଂ ଶିକ୍ଷାର ସକଳ ମର୍ଯ୍ୟାଦା ଓ ମାନଦଣ୍ଡକୁ ଧୂଳିସାତ୍ କରି ଆମେ ଯେପରି ଭାବରେ ବିଦ୍ୟା-ବା-କୌଣସି କର୍ମ ପାଇଁ-ଯୋଗ୍ୟତା-ଶୂନ୍ୟ ଅଥଚ କେବେଳ-କପି-ଧରାଧରି-ଗୁଣ୍ଡାମି-ନିପୁଣ କାହାଣ କାହାଣ ତଥାକଥିତ 'ଶିକ୍ଷିତ' ଯୁବକ ବାହାରକରି ଚାଲିଛେ । ସେଥିରେ କେଉଁ ରାଷ୍ଟ୍ର ଏପ୍ରକାର ତଥାକଥିତ 'ଶିକ୍ଷିତ' ଜନତାକୁ ଧଳା-କଳାର ଚାକିରି ଯୋଗାଇପାରିବ – ଭାବି ହେଉନି । ଏବେ କାଗଜରେ ପଢ଼ିଲି ଯେ, ଏଥିପାଇଁ ଆସାମ ସରକାର ସେ ରାଜ୍ୟର ଇଂଜିନିୟରିଂ ଓ ମେଡ଼ିକାଲ୍ କଲେଜ

ମାନଙ୍କରେ ସିଟ୍ ସବୁକୁ ଅକୁଣ୍ଠିତ ଭାବରେ କାଟିପକାଇଲେଣି । ଟ୍ରେଣ୍ଡ୍ ଶିକ୍ଷକଙ୍କ ସଂଖ୍ୟା ବେଶୀ ହୋଇଯିବାରୁ ଗତ ଶତାବ୍ଦୀରେ ଜର୍ମାନୀରେ ଟ୍ରେନିଂ ଅନୁଷ୍ଠାନଗୁଡ଼ିକୁ କିଛି ବର୍ଷ କାଳ ବନ୍ଦ କରି ଦିଆଯାଇଥିଲା । ଶିକ୍ଷିତ-ବେକାର-ସମସ୍ୟାର ସାମାଧାନ ଭାବରେ ଆମକୁ ସେଇମିତି କରିବାକୁ ହେବଇ ହେବ ।

ତା’ ଛଡ଼ା କର୍ତ୍ତୃପକ୍ଷଙ୍କର ପାସ୍‌ର ମାନଦଣ୍ଡ ସବୁକୁ କୋହଳ କରିବା ଏବଂ ପିଲାଙ୍କର ପାଠ-ନପଢ଼ି-କପି-ଧରାଧରି ଦେଇ ସାର୍ଟିଫିକେଟ୍ ଯୋଗାଡ କରିବା, ‘ଶିକ୍ଷିତ’ ବେକାର ସମସ୍ୟାର ଏକ ପ୍ରଧାନ କାରଣ । ମାନଦଣ୍ଡ ଠିକ୍ ରଖିଥିଲେ ଏତେ ତଥାକଥିତ ‘ଶିକ୍ଷିତ’ ଆସନ୍ତେ ବା କୁଆଡୁ ? ଶିକ୍ଷାନୁଷ୍ଠାନମାନଙ୍କରେ ଶୈକ୍ଷିକ ଓ ବୌଦ୍ଧିକ ଓ ଚାରିତ୍ରକ ମାନଦଣ୍ଡ ଓ ମୂଲ୍ୟବୋଧର ହତ୍ୟାରୂପକ ପରମ ସାରସ୍ୱତ ଅପରାଧର ଏ ନିଶ୍ଚିତ ପ୍ରାୟଶ୍ଚିତ୍ତ ଯେ ‘‘ଶିକ୍ଷିତ ବେକାର ସମସ୍ୟା’’ ଏହା ନିଃସନ୍ଦେହ ।

ପୁଣି ସର୍ବମୋଟ ଭାବରେ ଜାତିର ଦ୍ରୁତଜନସଂଖ୍ୟା ବୃଦ୍ଧି ମଧ୍ୟ ବେକାର ସମସ୍ୟାର ଆଉ ଏକ ବଳବତ୍ କାରଣ । ଯେଉଁଠି ଦୁଇଟି ପେଟ ଥିଲା, ଦଶ ବର୍ଷ ଭିତରେ ସେଠି ଦଶଟି ପେଟ । କିନ୍ତୁ କୋଡ଼ିଏଟି ହାତ କୌଣସି ଉତ୍ପାଦନଶୀଳ ଶ୍ରମ କରିବାକୁ ଆଜି ନାରାଜ । ସେମାନେ ଚାହାନ୍ତି କେବଳ ଚୌକିରେ ବସି ଓ ଟେବୁଲ୍ ଉପରେ ଗୋଡ଼ ଥୋଇ କୌଣସିମତେ ମାସ ଶେଷରେ ଦରମା ଗଣ୍ଡାକ ପାଇଲେ ନାଇଲନ୍ ପୋଷାକ ପିନ୍ଧି ସ୍କୁଟର୍ ବା ସାଇକେଲ୍‌ରେ କେବଳ ଫୂର୍ତ୍ତିରେ ଚକ୍‌କର ଦେବେ । ଅଥଚ ତେଣେ ବାରମ୍ବାର ସରକାର ରିପୋର୍ଟହିଁ କହୁଛି ଯେ, ଆମର କେନ୍ଦ୍ରସରକାର ଓ ରାଜ୍ୟ-ସରକାରମାନଙ୍କର ଅଫିସ୍‌ମାନଙ୍କରେ ପ୍ରାୟ ଅଧାଅଧି କର୍ମଚାରୀ ଏକାନ୍ତ ଅନାବଶ୍ୟକ । ରାଜ୍ୟମାନଙ୍କର ଆୟ ଅଧିକାଂଶରେ ଚାକିରିଆ କର୍ମଚାରୀଙ୍କ ଦରମାରେହିଁ ଚାଲି-ଯାଉଛି । ଜଣେ ଇଂଜିନିୟର ବନ୍ଧୁ କହୁଥିଲେ ଯେ, ବ୍ରିଟିଶ୍ ଅମଳରେ ଯେଉଁଠି ଯେଉଁ କାମକୁ ଜଣେ ମାତ୍ର ଓଭରସିଅର୍ କରୁଥିଲା, ସେଠି ସେହି କାମ ପାଇଁ ଏବେ ଛ’ଛଟା ଇଂଜିନିୟର୍ । ସେମାନଙ୍କ ପାଇଁ ଯଥେଷ୍ଟ କାମ ନାହିଁ । ସେଥିରୁ କେତେକଙ୍କର କାମ ନକରି ଦରମା ନେଉଥିବାରୁ ବିବେକ ଦଂଶନ ମଧ୍ୟ କରୁଛି ।

ଏପରି ଯେତେବେଳେ ଦେଶର ପରିସ୍ଥିତି, ସେତେବେଳେ ଭାରତବର୍ଷର ଏହି ତଥାକଥିତ ‘ଶିକ୍ଷିତ ବେକାର’ ସମସ୍ୟାର ବାସ୍ତବ ରୂପ-ରେଖ ଓ ଚରିତ୍ର ଅନୁଶୀଳନ କଲେ, କେଉଁ ରାଷ୍ଟ୍ର ଏହାର ତୁରନ୍ତ ସମାଧାନ କରିପାରିବ, ଚିନ୍ତା କରିହେଉନି । ପୁଣି ଆମେ ଜାଣି ଜାଣି ଯଦି ଶିକ୍ଷାର ଆନ୍ତର୍ଜାତୀୟ ମାନଦଣ୍ଡକୁ ଚୂରମାର କରି କାହାଣ କାହାଣ ସକଳ-ଯୋଗ୍ୟତା-ହୀନ ‘ଶିକ୍ଷିତ’ ବାହାରକଲୁ ଏବଂ ସେ ଯଦି ଆମରି-କୃତ ଏପ୍ରକାର ଅସ୍ୱାଭାବିକ ସଂଖ୍ୟାଗରିଷ୍ଠତା ଯୋଗୁଁ ବେକାର ରହିଲେ,

ସେଥିଲାଗି ଏ ଶିକ୍ଷାବ୍ୟବସ୍ଥାଟାକୁ 'ତ୍ରୁଟିପୂର୍ଣ୍ଣ' ବୋଲି କୁହାଯିବ କାହିଁକି ? ବଡ଼ ତ୍ରୁଟି ତ ଆମର ଖଣ୍ଡେ ଖଣ୍ଡେ କାଗଜକୁହିଁ 'ଉଚ୍ଚଶିକ୍ଷା' ବୋଲି ଧରିନେବାର ଅନ୍ଧ ଓ ଅଜ୍ଞ ଉତ୍ସାହ ଓ ଉତ୍ତେଜନା । ଅନ୍ୟପକ୍ଷରେ ସଭ୍ୟ, ଅଗ୍ରଗାମୀ ଦେଶମାନଙ୍କ ପରି ଏହି ପ୍ରଚଳିତ ଶିକ୍ଷାବ୍ୟବସ୍ଥାକୁ ଉତ୍ପାଦନ-ମୁଖୀ ଓ ଶ୍ରମ-ଭିତ୍ତିକ କରିବା ପାଇଁ ତ କୌଣସି ଶାସ୍ତ୍ରୀୟ ବିଧି-ନିଷେଧ ନାହିଁ । ଅଥଚ ଯେଉଁମାନେ ସୁଯୋଗ ମିଳିଲା ମାତ୍ରେ ଏ ବ୍ୟବସ୍ଥାକୁ 'ତ୍ରୁଟିପୂର୍ଣ୍ଣ' ବୋଲି ଚିତ୍କାର କରୁଛନ୍ତି, ସେଇ ନେତାମାନେହିଁ ନିଜ ନିଜ ବାରିପଟେ ଠିକ୍ ଏହି ବ୍ୟବସ୍ଥାର ବିକଳୀକୃତ ନମୁନା, ସାର୍ଟିଫିକେଟ୍ ସର୍ବସ୍ୱ, ଉତ୍ପାଦନହୀନ ଏବଂ ହାତ-ଓ-ମସ୍ତିଷ୍କ-ଉଭୟର-ଶ୍ରମ-ଶୂନ୍ୟ, ଅଥଚ ରାଜନୀତି-ଜର୍ଜର ଅନୁଷ୍ଠାନହିଁ ଗୋଟାକ ପରେ ଗୋଟେ ଥାପି ଚାଲିଛନ୍ତି । ''ଶିକ୍ଷିତ ବେକାର'' ଏ ରାଜ୍ୟରେ ଏକ ଗୁରୁ ସମସ୍ୟା ହୋଇ ଦେଖାଗଲା ବେଳେ ତାହାର ଉତ୍ସ ଏପ୍ରକାର ଗୋଟାକ ପରେ ଗୋଟେ କଲେଜ ଓ ହାଇସ୍କୁଲ ବା ବସାଚାଲୁଛି କିପରି ? ଅଧିକନ୍ତୁ ଦେଶରେ ଗ୍ରାଜୁଏଟ୍-ନଅଣ୍ଟିଥିଲା ଭଳି, ସେମାନଙ୍କର ବହୁଳ ଉତ୍ପାଦନ ପାଇଁ 'ଇଭିନିଂ କଲେଜ' ସବୁର ସ୍ଥାପନର ଆତ୍ମଦର୍ଶନଟା ବା କ'ଣ ?

ଅଗ୍ରଗାମୀ ଦେଶମାନଙ୍କରେ ତଥାକଥିତ ''ସାଂଧ କଲେଜ'' ସବୁ ଆମ-ଦେଶପରି ଦିବା-କଲେଜର ଆଦୌ ରବର-ଷ୍ଟାମ୍ପ୍ ନୁହନ୍ତି – ସେଗୁଡ଼ିକ ନିଜର ବୈଶିଷ୍ଟ୍ୟ ନେଇ ଦଣ୍ଡାୟମାନ । ସାଧାରଣତଃ ଘଟଣାଚକ୍ରରେ ସ୍କୁଲ୍‌ରୁ ପଢ଼ା ଛାଡ଼ି-ଚାଲିଯାଇଥିବା ଶ୍ରମିକମାନଙ୍କୁ ଉଚ୍ଚତର ଜ୍ଞାନ ବା ନିଜ ନିଜ ଲାଇନରେ ଅଧିକତର ଯୋଗ୍ୟତା ଅର୍ଜନର ସୁଯୋଗହିଁ ଏହି ଇଭନିଂ କଲେଜରୁ ମିଳିଥାଏ । ମେକାନିକ୍-ଶ୍ରମିକ ଇଭିନିଂ କଲେଜ ଲେକ୍‌ଚର ଆଟେଣ୍ଡ କରି କରି ଓ ଅନ୍ୟମାନଙ୍କ ପରି ସୁକଠିନ ଇଂଜିନିୟରିଂ ପରୀକ୍ଷା ସମ୍ମୁଖୀନ ହୋଇ ଶେଷରେ ଇଂଜିନିୟର୍ ହୋଇ-ବାହାରିଥାନ୍ତି । ଇଂଲଣ୍ଡର ପୂର୍ବତନ ଶ୍ରମିକ-ପ୍ରଧାନମନ୍ତ୍ରୀ ରାମ୍‌ସେ ମାକ୍‌ଡ଼ୋନାଲଡ଼୍ ତାଙ୍କର ସମସ୍ତ ଶିକ୍ଷା ସେ ପାଇଥିଲେ ଏହି ଇଭିନିଂ କଲେଜରୁ । ଭାରତରେ କିନ୍ତୁ ଇଭିନିଂ କଲେଜଗୁଡ଼ିକ ତେଲିଆମୁଣ୍ଡରେ ତେଲ– କେବଳ କିରାଣିମାନଙ୍କର ପାହ୍ୟା-ବର୍ଦ୍ଧନ ହିଁ ଏସବୁର ପ୍ରଚଣ୍ଡ ସିଦ୍ଧି । ଦେଶରେ ଏସବୁ 'ଉଚ୍ଚଶିକ୍ଷା' ପ୍ରସାର କରୁଛନ୍ତି କହି ବୁଲିବା ସ୍ଲୋଗାନ-ଆବୃତ୍ତି ଛଡ଼ା ଆଉ କିଛି ନୋହିପାରେ । ଆମର ଅଧିକାଂଶ ହାଇସ୍କୁଲ ପରି, ଇଭିନିଂ କଲେଜଗୁଡ଼ିକୁ ମଧ୍ୟ ମୁଖ୍ୟତଃ କାରିଗରି ଭିତ୍ତିକ କରିପାରିଲେ ଦେଶର ବହୁ ସମସ୍ୟାର ସମାଧାନ ହୋଇପାରନ୍ତା ବୋଲି ଲେଖକର ଦୃଢ଼ ବିଶ୍ୱାସ ।

ଏହିପରି ସ୍ୱାଧୀନତା ପରେ ଆମର ବହୁ ଯୋଜନା ଏବଂ ବିଶେଷ କରି ଶିକ୍ଷା ଯୋଜନା ଯେ କେବଳ ଅନ୍ଧ, ସାମୟିକ ଉତ୍ସାହ ଫଳରେ ତତ୍କାଳିକ ଆଡ଼ମ୍ବର

ଦେଖେଇ ହେବା ଲକ୍ଷ୍ୟରେହିଁ ବହୁ ଭୁଲ୍ ବାଟରେ ଚାଲିଛି, ଏଥିରେ ତିଳେ ସଂଦେହ ନାହିଁ । ଚାରିଆଡ଼େ ଅପବ୍ୟୟ ତ ଚାଲିଛି । କିନ୍ତୁ ସ୍ୱାଧୀନୋତ୍ତର ଭାରତବର୍ଷରେ ଶିକ୍ଷାବିଭାଗରେ ଯେଉଁ ଅପବ୍ୟୟ ସବୁ ଗଣ୍ଡା ଗଣ୍ଡା ଦରଦର ଖଣ୍ଡିଆ ବିଶ୍ୱବିଦ୍ୟାଳୟ ଓ କଲେଜ ସ୍ଥାପନ, ବେସିକ ଓ ତିନିବର୍ଷିଆ-ଡିଗ୍ରୀ କୋର୍ସ ପ୍ରଚଳନ ଏବଂ ସର୍ବୋପରି ଏକ ଦିଗରେ ଶିକ୍ଷାର ମାନଦଣ୍ଡକୁ ତଳକୁ ଓଟାରି ଅନ୍ୟଦିଗରେ ଶିକ୍ଷକ ଅଧ୍ୟାପକ-ମାନଙ୍କର ସେମାନଙ୍କର ଜାତି-ଓ-ରାଷ୍ଟ୍ରକୁ ବୌଦ୍ଧିକ-ଦାନ ସହିତ ସଂପୂର୍ଣ୍ଣ-ସଂପର୍କ-ହୀନ ଭାବରେ ଅକଳ୍ପନୀୟ ଦରମା-ବୃଦ୍ଧି ଏବଂ ପାଠ-ନଥାଉ-ପଛେ କୋଠାବାଡ଼ି ଉପରେ ଖର୍ଚ୍ଚ ଇତ୍ୟାଦି ହେଉଚାଲିଛି, ତା'ର ଅନ୍ୟ ଦେଶରେ ତୁଳନା ହିଁ ନାହିଁ । ଅନ୍ୟ କଥା କି ବୋଲିବା, ରବୀନ୍ଦ୍ରନାଥଙ୍କ ସ୍ୱପ୍ନର ଶାନ୍ତିନିକେତନ ଆଜି ରାଜନୀତି ଫଳରେ ଧ୍ୱସ୍ତବିଧ୍ୱସ୍ତ । ରବୀନ୍ଦ୍ରନାଥଙ୍କ ସ୍ୱପ୍ନ ଥିଲା ବିଶ୍ୱ-ଭାରତୀ ଏକ ବିଶ୍ୱ-କଳା-କେନ୍ଦ୍ର ରୂପେ ଠିଆହେବ । ଅଥଚ ସେଠି ଯେଉଁ ନୂତନ କର୍ମକର୍ତ୍ତା ସବୁ ଅନଧିକାର ପ୍ରବେଶ କରିଛନ୍ତି, ସେମାନେ ରବୀନ୍ଦ୍ରନାଥଙ୍କ କଳ୍ପନାକୁ ପାଦରେ ଠେଲିଦେଇ, ବାରଣ ସତ୍ତ୍ୱେ ସେଠି ପଦାର୍ଥବିଜ୍ଞାନ ପାଇଁ ଏକ ବିରାଟ କୋଠା ଠିଆକରେଇଛନ୍ତି; ଯେଉଁଠି କି ପିଲା ନାହାନ୍ତି ପଢ଼ିବାପାଇଁ ।

**ଏହାହିଁ ପୃଥିବୀ ବ୍ୟାପ୍ତ ବ୍ୟବସ୍ଥା–**

ପାଠକେ ଜାଣିରଖିବା ମଧ୍ୟ ଉଚିତ୍ ଯେ ଏହି ଯେଉଁ ଭାରତର ପ୍ରଚଳିତ ଶିକ୍ଷା-ବ୍ୟବସ୍ଥା, ଯାହାକୁ ସାମ୍ରାଜ୍ୟବାଦୀ ଇଂରେଜ-ଶାସକେ ତାଙ୍କ ସୁବିଧା ପାଇଁ ସେମାନେ ଆମ ଉପରେ ଲଦିଗଲେ ବୋଲି ଓ ଅନ୍ୟାନ୍ୟ ଆପାତ ଅପରାଧ ପାଇଁ, (ଯେଉଁସବୁ ଯୁକ୍ତିକୁ ଉପରେ ଗୋଟି ଗୋଟି କରି ଖଣ୍ଡିତ କରାଗଲା) ଯାକୁ 'ତ୍ରୁଟିପୂର୍ଣ୍ଣ' କୁହାଯାଉଛି– ଏହାହିଁ ପୃଥିବୀ ବ୍ୟାପୀ ବ୍ୟବସ୍ଥା । ଏବେ ସବୁ ଦେଶରେ ହିଁ ଶିକ୍ଷାବ୍ୟବସ୍ଥା ଏଇମିତି ପ୍ରାଇମେରୀ, ସେକେଣ୍ଡାରୀ ଓ କଲେଜରେ ବିଭକ୍ତ । ସେସବୁ ଦେଶରେ ମଧ୍ୟ ଏଇ ସାହିତ୍ୟ, ଗଣିତ, ଇତିହାସ, ଭୂଗୋଳ, ଇତ୍ୟାଦି ହିଁ ପାଠ୍ୟ ବିଷୟ । ପ୍ରଭେଦ ଏତିକି ଯେ, ଅଗ୍ରଗାମୀ ଦେଶମାନଙ୍କରେ ଛାତ୍ରମାନଙ୍କର ଜ୍ଞାନ-ଆହରଣ ଓ ଶିକ୍ଷକମାନଙ୍କର ଜ୍ଞାନ-ପରିବେଷଣ ଏବଂ ଛାତ୍ରମାନଙ୍କର ଆହୃତ ଜ୍ଞାନର ମୂଲ୍ୟାୟନର ମାନଦଣ୍ଡ ଆମ ଦେଶ ଅପେକ୍ଷା ଢ଼େର୍ ଉଚ୍ଚରେ । ଜଣେ ଇଂରାଜ ବା ଜାପାନୀ ବା ଜର୍ମାନ ଗ୍ରାଜୁଏଟ୍ ସହିତ ଜଣେ ସାଧାରଣ ଇଣ୍ଡିଆନ୍ ଗ୍ରାଜୁଏଟ୍‌ର ତୁଳନା ହିଁ ହୋଇନପାରେ । ଏକ ହିଁ ବ୍ୟବସ୍ଥାଟିକୁ, ସଭ୍ୟ, ଅଗ୍ରଗାମୀ ଦେଶମାନେ ଜ୍ଞାନ-କେନ୍ଦ୍ରିକ ଓ ତାଲିମ-କେନ୍ଦ୍ରିକ କରି ରଖିଲା ବେଳେ, ଆମେ ଠିକ୍ ସେହି ବ୍ୟବସ୍ଥାକୁ ନିନ୍ଦନୀୟ, ମାନଦଣ୍ଡ-

ଓ ସାର୍ଟିଫିକେଟ୍-କେନ୍ଦ୍ରିକ କରି ହିଁ ରଖିଛୁ । ଆମେ କେବଳ ପଣ ପଣ ସାର୍ଟିଫିକେଟ୍-ଧାରୀ ବାହାରକରୁଛୁ ସିନା, ପ୍ରକୃତ ବିଦ୍ୟାବନ୍ତ, ବିଚକ୍ଷଣ ବା ବିଶେଷ ବିଶେଷ ବ୍ୟବସାୟ ପାଇଁ ତାଲିମପ୍ରାପ୍ତ ଲୋକ ତିଆରି କରୁନାହିଁ । ଆମର କପି-କରି-ପାସ୍-କରା ଫାଷ୍ଟକ୍ଲାସ୍ ଗୋଲଡ଼ମେଡ଼ାଲିଷ୍ଟ୍ ମଧ୍ୟ କୌଣସି ଏକ ବିଶେଷ କାମ ପାଇଁ ବିଶେଷ ଯୋଗ୍ୟତା ଦେଖାଇ ପାରିବା ଅବସ୍ଥାରେ ନାହାନ୍ତି । ଏଠାରେ ଏ ସଂପର୍କରେ ଏକ ଘଟଣା ଉଲ୍ଲେଖନୀୟ ମନେକରେ । ଲେଖକର ଜନୈକ ବନ୍ଧୁ ଓଡ଼ିଶାର ଏକ ଜଣାଶୁଣା ପ୍ରାଇଭେଟ୍ କଲେଜର ସେକ୍ରେଟାରୀ । ତାଙ୍କର ଓଡ଼ିଆ ଅଧ୍ୟାପକ ଦରକାର ହେଲେ । ପ୍ରାୟ କୋଡ଼ିଏ ଜଣ ଖଣ୍ଡେ ଓଡ଼ିଆ-ଏମ୍.ଏ-ପାସ୍ କାଣ୍ଡିଡ଼େଟ୍ ବଛା ହେବାପାଇଁ ଆସିଲେ । ଜଣଜଣକୁ ଦେଖାକଲେ ବହୁ ସମୟ ନଷ୍ଟ ହେବ ଭାବି, ବନ୍ଧୁ ବାଛିବାର ଏକ ଚତୁର ନୂତନ ଉପାୟ ପ୍ରୟୋଗ କଲେ । ସେ ଉପସ୍ଥିତ ସବୁ କାଣ୍ଡିଡ଼େଟ୍‌ମାନଙ୍କୁ କାଗଜ-ପେନ୍‌ସିଲ୍ ଦେଇ, ନିକଟରେ ସ୍ୱର୍ଗତ ହୋଇଯାଇଥିବା ପଣ୍ଡିତ ଜହରଲାଲ୍ ନେହେରୁଙ୍କ ସ୍ମୃତି ଉଦ୍ଦେଶ୍ୟରେ ଓଡ଼ିଆରେ ଏକ ଶୋକ-ପ୍ରସ୍ତାବ ଲେଖି ଦେବାକୁ କହିଲେ । ପାଠକେ ଶୁଣି ଚରମ ବିସ୍ମିତ ହେବେ ଯେ ଆମ ବିଶ୍ୱବିଦ୍ୟାଳୟ ସବୁ, ଯେଉଁମାନଙ୍କୁ ତଥାକଥିତ ମାଷ୍ଟର୍-ଅବ୍-ଆର୍ଟସ୍ (ଏମ୍.ଏ) ରୂପକ ବିଦ୍ୱତ୍ତାର ସର୍ବୋଚ୍ଚ ଟୀକା ଦେଇ ଛାଡୁଛନ୍ତି, ବନ୍ଧୁଙ୍କ କହିବା ଅନୁସାରେ, ସେମାନଙ୍କ ଭିତରୁ କେହି ଜଣେହେଲେ ଧୁରନ୍ଧର ପଣ୍ଡିତ ଓଡ଼ିଆରେ ମଧ୍ୟ ଯଥୋଚିତ ଏକ ଶୋକପ୍ରସ୍ତାବ ଲେଖିପାରିନଥିଲେ ।

କିନ୍ତୁ ଏ ଦେଶରେ ଗଙ୍ଗାଧର ମେହେର ବା ବି. ବର୍ମା ପରି ଅସାଧାରଣ ପ୍ରତିଭା କଠୋର ଦାରିଦ୍ର୍ୟ ଦେଇ ବଞ୍ଚନ୍ତୁ ଓ ମରନ୍ତୁ ପଛେ, ଆମେ ଦେଖିବା ଯେ, ଉପର-ବର୍ଣ୍ଣିତ ଭଦ୍ରଜନମାନଙ୍କ ମଧ୍ୟରୁ ଅନେକେ ପାଞ୍ଚଟା ବର୍ଷ ଭିତରେ କାହିଁ ରୀଡ଼ର୍-ପ୍ରଫେସର୍ ହୋଇ ହଜାର ହଜାର ଟଙ୍କା ଦରମା ପାଉଥିବେ । ଜାତି ଓ ରାଷ୍ଟ୍ରକୁ ସେମାନଙ୍କ ଦାନର ପରିମାଣ ଓ ପ୍ରକୃତି ଉପରେ ଆମର କର୍ମଚାରୀମାନଙ୍କର ଦରମା ବା ଅର୍ଜନର ହାର ନିର୍ଦ୍ଦିଷ୍ଟ ହେବା ଉଚିତ ଓ ଯୁକ୍ତିଯୁକ୍ତ ବ୍ୟବସ୍ଥା ନୁହେଁ କି ? ଏବଂ ସେ ଦୃଷ୍ଟିରୁ ଆମର ସାଂପ୍ରତିକ ସମଗ୍ର ସାମାଜିକ ଓ ରାଷ୍ଟ୍ରିକ ଦୃଷ୍ଟିକୋଣ ଓ ବ୍ୟବସ୍ଥା ଏକାନ୍ତ ତ୍ରୁଟିପୂର୍ଣ୍ଣ ବୋଲି ମନେହୁଏ ନାହିଁକି ? ତେଣୁ କେବଳ ପ୍ରଚଳିତ ଶିକ୍ଷା ବ୍ୟବସ୍ଥାଟି ଆପେଇ 'ତ୍ରୁଟିପୂର୍ଣ୍ଣ' କହିବାର ଆଦୌ କୌଣସି ଯୁକ୍ତି ନାହିଁ । ଆମେଇ ଆମର ବିଚାରହୀନ, ଅଜ୍ଞ ଓ ସ୍ୱାର୍ଥକେନ୍ଦ୍ରିକ ଦୃଷ୍ଟିକୋଣରୁ ଏକ ପୃଥିବୀବ୍ୟାପ୍ତ ସୁଫଳପ୍ରଦ ବ୍ୟବସ୍ଥାକୁ ଲଜ୍ଜାଜନକ ଭାବରେ 'ତ୍ରୁଟିପୂର୍ଣ୍ଣ' କରି ଠିଆକରେଇଛେ ।

**ରାଜନୈତିକ ଅନଧିକାର ପ୍ରବେଶ–**

ଅଥଚ ଯେଉଁମାନେ ଏହି ଶିକ୍ଷା ବ୍ୟବସ୍ଥାକୁ ତ୍ରୁଟିପୂର୍ଣ୍ଣ ବୋଲି ବେଶୀ ଚିତ୍କାର କରୁଛନ୍ତି, ସେହି ରାଜନୈତିକମାନେହିଁ ବ୍ରିଟୀଶ୍-ଅମଳରେ ପ୍ରବର୍ତ୍ତିତ ଏହି ପ୍ରକୃତ ଜନକଲ୍ୟାଣକାରୀ ଶିକ୍ଷା ବ୍ୟବସ୍ଥାଟି 'ତ୍ରୁଟିପୂର୍ଣ୍ଣ' ହେବାରେ ସେମାନେ କିପରି ଏକ ପ୍ରମାଦପୂର୍ଣ୍ଣ ଗୁରୁତର କାରଣ ଓ ଉତ୍ସ, ଶେଷରେ ତାହାହିଁ ପାଠକମାନଙ୍କୁ ଜଣାଇ ଦେବାକୁ ଚାହେଁ । ଯଦି ଓଡ଼ିଶାର ଶ୍ରେଷ୍ଠ ବିଦ୍ୟାନୁଷ୍ଠାନ ରେଭେନ୍‌ସା କଲେଜରେ ଆଜି କିଛି ଗଣ୍ଡଗୋଳ ହୁଏ ତେବେ ରେଭେନ୍‌ସାର ବିଦ୍ୱାନ୍ ପ୍ରିନ୍‌ସପାଲ୍ ଓ ଷ୍ଟାଫ୍ ନିଜେ ନିଜେ ତା'ର ସମାଧାନ କରିନେବାହିଁ ଆମେ ଆଶା କରିବା । କିନ୍ତୁ ତା' ପରିବର୍ତ୍ତରେ ଆମେ ଦେଖିବା ଯେ ପ୍ରିନ୍‌ସପଲ ଓ ଷ୍ଟାଫ୍ ଓ ଏଡୁକେଶନ କୋଡ୍‌କୁ ପଛକୁ ନିଃସଂକୋଚ ଭାବରେ ଠେଲିଦେଇ, ଏକ ଆଡୁ ସେଠି ପହଞ୍ଚିବାର ଦେଖିବା ଆମେ ଡକ୍ଟର ହରେକୃଷ୍ଣ ମହତାବଙ୍କୁ, ଅନ୍ୟ ଆଡୁ ରାମକୃଷ୍ଣ ପତିଙ୍କୁ ଏବଂ ଅନ୍ୟ ଆଡୁ ବା ସୁରେନ୍ଦ୍ର ଦ୍ୱିବେଦୀଙ୍କୁ । କହନ୍ତୁ ପାଠକେ, ରେଭେନ୍‌ସା ପରି ମହାନ୍ ଐତିହାସିକ ଜ୍ଞାନପୀଠ ସହିତ ଏମାନଙ୍କର ସଂପର୍କ କ'ଣ ? ଏମାନେ କ'ଣ ରେଭେନ୍‌ସାର ପ୍ରିନ୍‌ସପାଲ ଓ ଷ୍ଟାଫ୍ ଠାରୁ ଜ୍ଞାନ-ବିଦ୍ୟାରେ ଗରିଷ୍ଠ । ଅକ୍ସଫୋର୍ଡ଼ ବା କେମ୍ବ୍ରିଜ ବା ଲଣ୍ଡନ ବିଶ୍ୱବିଦ୍ୟାଳୟରେ କିଛି ଛାତ୍ର ଗଣ୍ଡଗୋଳ ଘଟିଲେ ସେଠି କ'ଣ ରାଜନୈତିକମାନେ ଦୌଡ଼ିଯାଇ ସମସ୍ୟା ସମାଧାନ କରି ଆସୁଛନ୍ତି ? ଏଠି କିନ୍ତୁ ବାଣୀବିହାରରେ ଛାତ୍ର ଗଣ୍ଡଗୋଳ ହେଲେ, ବଂଧୁ ଗଙ୍ଗାଧର ପାଇକରାୟଙ୍କୁ ଆମେ ମାତବ୍ବର୍ ମାମଲତ୍‌କାର ରୂପେ ସେଠି ଦେଖୁ । ଏହା କ'ଣ ହେବା ଉଚିତ୍ ?

ରାଜନୈତିକମାନଙ୍କର, ଆମର ଶିକ୍ଷାବିଭାଗ ଓ ଶିକ୍ଷାନୁଷ୍ଠାନମାନଙ୍କରେ ଏହି ପ୍ରକାର ସଂପୂର୍ଣ୍ଣ ଅନୁଚିତ ବାହୁପ୍ରବେଶହିଁ ଆଜି ଶିକ୍ଷାବିଭାଗର ସକଳ ତ୍ରୁଟି ଓ ଅବ୍ୟବସ୍ଥା ପାଇଁ ଦାୟୀ । ପିଲେ ଯେତେବେଳେ ଜାଣିଲେଣି ଯେ, ଏ ରାଜ୍ୟରେ ହେଡ୍‌ମାଷ୍ଟର୍ ପ୍ରିନ୍‌ସପାଲ କେବଳ ଏକ ଏକ ପଙ୍ଗୁ ଜଗନ୍ନାଥ, ଆଉ ଅସଲ ମା-ବାପ ହେଉଛନ୍ତି ଶିକ୍ଷାମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ, ସେତେବେଳେ ସ୍କୁଲ-କଲେଜମାନଙ୍କରେ ହେଡ଼ମାଷ୍ଟର ପ୍ରିନ୍‌ସପାଲମାନେ ଆନୁଷ୍ଠାନିକ ଡ଼ିସିପ୍ଲିନ୍ ପାଇଁ ଦାୟୀ ହେବେ କିପରି ? ଶୁଣାଯାଏ ଯେ ରାଜନୈତିକ ଟାଉଟ୍ ମାନଙ୍କ ଆଦର୍ଶ ବା ଉପଦେଶ ବା ପ୍ରରୋଚନା ଯୋଗୁହିଁ ଏବେ ବାର୍ଷିକ କଲେଜ-ଇଉନିୟନ୍-ନିର୍ବାଚନ ମଧ୍ୟ ଏକ ବହୁବ୍ୟୟଶୀଳ ଆତଙ୍କରେ ପରିଣତ ହେଲାଣି । ଦକ୍ଷିଣ ଓଡ଼ିଶାର ଏକ କଲେଜରେ ଏଥିପାଇଁ ଦୁଇ ଛାତ୍ରଦଳ ଭିତରେ ବୋମା-ଭିତ୍ତିକ ସଂଘର୍ଷ ମଧ୍ୟ ହେବାର କାଗଜରେ ପଢ଼ିଲୁ । ୟୁନିୟନ୍ ସବୁ ଦେଇ, ତେଣୁ ଆମର ଶିକ୍ଷାନୁଷ୍ଠାନଗୁଡ଼ିକର କି

ଗଣତାନ୍ତ୍ରିକ ଉନ୍ନତି ନ ହେଉଛି । କହିବାକୁ ଗଲେ ଦେଶର ପ୍ରାଇମେରୀ ଠାରୁ ଆରମ୍ଭ-କରି କଲେଜ ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକଟି ଶିକ୍ଷାନୁଷ୍ଠାନ ଏବେ ଏକ ଏକ ରାଜନୈତିକ ପାଶାପଲିରେ ପରିଣତ ହୋଇଥିବାର ଶୁଣାଯାଏ ।

**ପ୍ରତିକାର : ଶୈକ୍ଷିକ ପଞ୍ଚଶୀଳ–**

ଏ ଅବସ୍ଥାର ତୁରନ୍ତ ଓ ନିରଙ୍କୁଶ ପ୍ରତିକାର ଏକାନ୍ତ ବିଧେୟ । କାରଣ ଏପରି ଚାଲିଲେ, ମାତ୍ର ଦଶବର୍ଷ ପରେ ଆମେ ଦେଖିବା ଯେ ଏହି ବିରାଟ ଐତିହାସିକ ରାଜ୍ୟ କେବଳ ମୂର୍ଖଙ୍କ ଦ୍ୱାରା ଭର୍ତ୍ତି । ଏପର୍ଯ୍ୟନ୍ତ ଏହି ସ୍ୱାଧୀନ ରାଜ୍ୟକୁ ବ୍ରିଟୀଶ୍-ଐତିହ୍ୟ-ପରିବର୍ଦ୍ଧିତ ଲୋକମାନେହିଁ ଚଳାଇ ଆସିଛନ୍ତି । ଆମର ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧୀ ଓ ତାଙ୍କ ମନ୍ତ୍ରିମଣ୍ଡଳର ଅଧିକାଂଶ ସେହି ବ୍ରିଟୀଶ୍ ଐତିହ୍ୟକୁ ବଞ୍ଚାଇରଖିଥିବାରୁହିଁ, ଆଜି ଜୟଗୌରବ ମଣ୍ଡିତ । କିନ୍ତୁ ବୋଧହୁଏ ଆଉ ଦଶ-କୋଡ଼ିଏଟା ବର୍ଷ ପରେ ଯେତେବେଳେ ଏବର କପି-କରି-ପାସ୍-କରା ପୁରୁଷ, ଏ ରାଷ୍ଟ୍ରର ରାଜନୀତି ସହିତ, ଅନ୍ୟ ସକଳ କ୍ଷେତ୍ରରେ ଦାୟିତ୍ୱ ନେବେ, ସେତେବେଳେ ଆମ ଦଶା ଯେ କ'ଣ ହେବ ତାହା ଭାବି ମଧ ହେଉନି । କାରଣ କୌଣସି ଜାତି ଉଚ୍ଚ ଶିକ୍ଷା ନାମରେ କପି-ପାସ୍ ଉପରେହିଁ ଟାଣ ହୋଇ ଠିଆ ହୋଇ ନ ପାରେ । ଆଞ୍ଚଳିକ ଭାଷା ମାଧମ ଦେଇ ଓ ତା' ପୁଣି କପି-କରି-ପାସ୍ କରୁଥିବା କାଣ୍ଡିଡ଼େଟ୍‌ମାନଙ୍କର ସେନାବାହିନୀର ପ୍ରବେଶିକା-ପରୀକ୍ଷାରେ ଅଶ୍ରୁତପୂର୍ବ ନିମ୍ନ ମାନଦଣ୍ଡ, ପରେ ପରେ ଗତ କେତେବର୍ଷ ହେଲା ଲକ୍ଷ୍ୟ କରି, ଆମର ସେନାବାହିନୀର କର୍ତ୍ତୃପକ୍ଷ ଭାରତ ସରକାରଙ୍କୁ ଏକ ଗଭୀରନୈରାଶ୍ୟମୂଳକ ରିପୋର୍ଟ ଏ ଭିତରେ ଦେଇସାରିଲେଣି । ଏ ପ୍ରକାର ନିମ୍ନମାନଦଣ୍ଡର ମାଟ୍ରିକ୍ ଓ ଗ୍ରାଜୁଏଟ୍‌ମାନଙ୍କୁ ନେଇ କୌଣସି ସୁଦୃଢ଼ ସେନାବାହିନୀ ମଧ ଗଠିତ ହୋଇ ନ ପାରେ । କାରଣ ଆଜି କୃଷି ଓ ମାଛଚାଷଠାରୁ ଆରମ୍ଭ କରି ସେନାବାହିନୀ ପର୍ଯ୍ୟନ୍ତ ସର୍ବତ୍ର ଏକାନ୍ତ ଭାବରେ ଉଚ୍ଚସ୍ତରର ତାଲିମପ୍ରାପ୍ତ ମସ୍ତିଷ୍କହିଁ ଦରକାର । ଜାତୀୟ ସମୃଦ୍ଧି ବର୍ଦ୍ଧନ ଓ ରକ୍ଷଣ ପାଇଁ ଖଣ୍ଡେ ଖଣ୍ଡେ ଡିପ୍ଲୋମା-କାଗଜ ଯେ ଏକାନ୍ତ ଅନାବଶ୍ୟକ ଓ ଅର୍ଥହୀନ ଏ କଥା ଆମେ ସମସ୍ତେ ଆଜି ଗଭୀର ଭାବରେ ହୃଦୟଙ୍ଗମ କରିବା ଉଚିତ ଏବଂ ସେହି ଲକ୍ଷ୍ୟରେ ତଥାକଥିତ ତ୍ରୁଟି-ପୂର୍ଣ୍ଣ-ଶିକ୍ଷା-ବ୍ୟବସ୍ଥାରେ ନିମ୍ନଲିଖିତ ପାଞ୍ଚଟି ସଂସ୍କାର ତୁରନ୍ତ ପ୍ରବର୍ତ୍ତିତ କରିବା ଏକାନ୍ତ ବିଧେୟ ବୋଲି ଏହି ଲେଖକର ଦୃଢ଼ ଅଭିମତ ।

**୧ । ଶିକ୍ଷାବିଭାଗର ସଂପୂର୍ଣ୍ଣ ସ୍ୱାଧିକାର–**

ଶିକ୍ଷାବିଭାଗ ସରକାରୀ-ଅର୍ଥ ପୋଷିତ ହେଲେ ମଧ, ହାଇକୋର୍ଟ ଓ ଜୁଡ଼ିସିଆରି ପରି, ସେଥିରେ କୌଣସି ହେଲେ ବାହାର ଲୋକର ଅନୁପ୍ରବେଶକୁ ତୁରନ୍ତ ନିଷିଦ୍ଧ

କରାଯାଉ । ଡି.ପି.ଆଇ ଓ ଭାଇସ୍-ଚାନ୍‌ସେଲରଙ୍କୁ ଛାଡ଼ିଦିଅ, କୌଣସି ପ୍ରିନ୍‌ସିପାଲ୍ ବା ହେଡ୍‌ମାଷ୍ଟରଙ୍କ ନିଷ୍ପତ୍ତି ଉପରେ ଶିକ୍ଷା-ସେକ୍ରେଟାରୀ ବା ଶିକ୍ଷାମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ମଧ୍ୟ ଯେପରି ନାସିକା-ପ୍ରବେଶ ନ କରନ୍ତି । କେବଳ ଏଇତକ ଯଦି ହୋଇପାରନ୍ତା ତେବେ ଏ ଦେଶରେ ଶିକ୍ଷକ ଓ ଶିକ୍ଷାବିଭାଗ ତା'ର ପୂର୍ବ ମର୍ଯ୍ୟାଦା ରାତାରାତି ଫେରିପାଆନ୍ତେ ଏବଂ ପିଲାଏ ଯେତେବେଳେ ଜାଣିବେ ଯେ ଏଡୁକେଶନ୍ କୋଡ୍ ଅନୁସାରେ ହେଡ୍-ମାଷ୍ଟର-ପ୍ରିନ୍‌ସପାଲଙ୍କ ଦଣ୍ଡାଦେଶ ଅପରିବର୍ତ୍ତନୀୟ ସେତେବେଳେ ଶିକ୍ଷାନୁଷ୍ଠାନ-ମାନଙ୍କରେ ଡିସିପ୍ଲିନ୍ ଆପେ ଆପେ ଆସିଯାନ୍ତା । ଶିକ୍ଷା-ବିଭାଗର ପାସ୍-ଫେଲ୍ ବା ଦୈନନ୍ଦିନ ପରିଚାଳନା ରାଜନୈତିକମାନଙ୍କର ମୁକ୍ତ କ୍ରୀଡ଼ାପ୍ରାନ୍ତର ହୋଇପଡ଼ିବା ଏକ ଜାତି ପକ୍ଷରେ ଚରମ ଅଭିଶାପ ଓ ଘୋରତମ ଲଜ୍ଜାକର ଓ ମାରାତ୍ମକ ବ୍ୟାପାର ।

**୨ । ଡିଗ୍ରୀ ଡିପ୍ଲୋମା ଉଠେଇ ଦିଆଯାଉ–**

ଆମ ଶିକ୍ଷା ବ୍ୟବସ୍ଥାକୁ ଆମେ ସଂପୂର୍ଣ୍ଣ ରୂପେ 'ମାଟ୍ରିକ୍', 'ବି.ଏ' ଇତ୍ୟାଦି ଭାବରେ କେବଳ ସାର୍ଟିଫିକେଟ୍-କେନ୍ଦ୍ରିକ କରି ରଖିବାରୁ ଧରିନେବାକୁ ହେବ ଯେ ଆମେ ଆମ ପିଲାଙ୍କୁ କପିକରେଇବାକୁ ପରୋକ୍ଷରେ ପ୍ରେରଣା ଦେଉଛୁ । ବରଂ, ଏହି ପ୍ରକାର କାଗଜ-ଖଣ୍ଡ-କେନ୍ଦ୍ରିକ ପାସ୍-ଫେଲ୍‌ର ସମସ୍ତ ଅଯୌକ୍ତିକତା ଉଠାଇ-ଦେଇ, ଆମେ ଯଦି ପ୍ରତ୍ୟେକ ବିଦ୍ୟାର୍ଥୀଙ୍କୁ ସେ କେଉଁ କେଉଁ ବିଷୟ କେଉଁ ଅନୁଷ୍ଠାନରେ କେତେବର୍ଷ ଅଧ୍ୟୟନ କଲେ ଓ ସେ ସବୁରେ କି ପ୍ରକାର ପାରଙ୍ଗମତା ସେ ଲାଭକରିଛନ୍ତି ସେସବୁର ଦ୍ୟୋତକ କେବଳ ଏକ ଏକ କାର୍ଡ଼ ଦେଇ ଛାଡ଼ିଦିଅନ୍ତେ ତେବେ ବ୍ୟବସ୍ଥାଟା ଅଧିକ ଯୁକ୍ତିଯୁକ୍ତ ଓ ବିଚାର ପ୍ରତିଷ୍ଠା ହୁଅନ୍ତା ବୋଲି ବିଶ୍ୱାସ । ଧରନ୍ତୁ ଜଣେ ପିଲାଠି ମାଟ୍ରିକ୍-ଫାଟ୍ରିକ ବୋଲି ସାର୍ଟିଫିକେଟ୍ କିଛି ନାହିଁ – କିନ୍ତୁ ଖୋର୍ଦ୍ଧା ହାଇସ୍କୁଲ୍‌ର ହେଡ୍‌ମାଷ୍ଟର ତାକୁ ଦେଇଥିବା କାର୍ଡ଼ରୁ ଜଣାପଡୁଛି ଯେ ସେ ପିଲା ଅଙ୍କରେ ଖୁବ୍ କମ୍ ନମ୍ବର ବରାବର ରଖି ଆସିଥିଲେ ହେଁ, ଭାଷା ଓ ଇତିହାସ ଓ ସାଧାରଣଜ୍ଞାନରେ ତା'ର କରାମତି ସର୍ବଦା ପ୍ରଥମ ଶ୍ରେଣୀରେ ଅଛି । ତେଣୁ ମାଟ୍ରିକ୍ ପାସ୍ ବୋଲି କୌଣସି ଚିଟା ତା'ଠି ନଥିଲେ ମଧ୍ୟ, ସରକାରୀ ବା ପ୍ରାଇଭେଟ୍ ଚାକିରିରେ ଯେଉଁଠି ଭାଷା-ଜ୍ଞାନ ଓ ସାଧାରଣ-ଜ୍ଞାନ ହିଁ ଦରକାର ସେମାନେ ସେ ପିଲାକୁ ଆଗ୍ରହର ସହିତ ନେଇନେବେ । କ୍ରମ-ଅଭିଜ୍ଞତାରେ ତା'ର ଦକ୍ଷତା ମଧ୍ୟ ବଢ଼ିବ । ପରେ ଇଚ୍ଛାକଲେ, ସେ ଆସି କଲେଜରେ ନିଶ୍ଚିନ୍ତରେ ଭାଷା-ସାହିତ୍ୟ-ଶ୍ରେଣୀରେ ମଧ୍ୟ ଯୋଗ ଦେଇପାରିବ । କେବଳ ଅଙ୍କର ସହଜାତ ଦୁର୍ବଳତା ଯୋଗୁଁ ସେ ପିଲା ମାଟ୍ରିକ୍ 'ଫେଲ୍' ହେବ କାହିଁକି ବା ତୃତୀୟ ଶ୍ରେଣୀଗତ ପାସ୍ ପାଇବ କାହିଁକି ? କର୍ମ-ନିଯୁକ୍ତିରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ପାସ୍ ବା ଏକାବେଳକେ

ଫେଲ୍ ଅବାନ୍ତର ଓ ଅର୍ଥହୀନ । ତେଣୁ ଲେଖକ ଯେଉଁ ପ୍ରସ୍ତାବ ଦେଉଛି ସେଥିରେ ପାସ୍-ଫେଲ୍ ବା ପ୍ରଥମ-ତୃତୀୟ ଶ୍ରେଣୀର ଅବାନ୍ତର ପ୍ରଶ୍ନ ହିଁ ନାହିଁ । କୌଣସି ପିଲା ଅନ୍ୟ ସବୁ ବିଷୟରେ ଫେଲ୍ ହୋଇ ଅଙ୍କରେ ଦକ୍ଷ ଯଦି ଥାଏ, ତେବେ ଯେଉଁଠି ଅଙ୍କ ଜ୍ଞାନ ହିଁ ଦରକାର, ସେଠି ତାକୁ ବିନା ସଂକୋଚରେ ଲୋକ ନେଇଯାଇପାରନ୍ତି । ତେଣୁ ଏତେ ଅର୍ଥ ବ୍ୟୟ କରି ପ୍ରଥମ, ଦ୍ୱିତୀୟ, ତୃତୀୟ ଶ୍ରେଣୀ ପାସ୍ ବା ଏକାବେଳକେ ସହସ୍ର ସହସ୍ର ପିଲାଙ୍କୁ ଫେଲ ଘୋଷଣା କରିବାର ଏ ଫାର୍ସ କାହିଁକି ଚାଲିଛି ? ବରଂ ଲେଖକ ପ୍ରସ୍ତାବ ଗୃହୀତ ହେଲେ ବିଦ୍ୟାର ସାଧନା ଶିକ୍ଷକ ଓ ପରୀକ୍ଷକମାନଙ୍କ ହାତରୁ ଯାଇ, ଏକାବେଳକେ ପଡ଼ନ୍ତା ଛାତ୍ରମାନଙ୍କ ଉପରେ । ସେତେବେଳେ ବ୍ୟୟବହୁଳ ସାମୂହିକ ପରୀକ୍ଷାର ବିଭୀଷିକା ନ ଥିବ ଏବଂ ନଥିବ ପାସ୍ ସାର୍ଟିଫିକେଟ୍ ବା ଫେଲ୍ ମଧ୍ୟ । ସେତେବେଳେ ଥିବ କେବଳ ଏକ ବା ଏକାଧିକ ବିଷୟରେ ପିଲାଙ୍କର ଦକ୍ଷତାର ବିଚାର । ପିଲେ ସେତେବେଳେ ଜାଣିବେ ଦକ୍ଷତାର ବିଚାର । ପିଲେ ଯେତେବେଳେ ଜାଣିବେ ଯେ ଏହି ଅର୍ଜିତ ଦକ୍ଷତା ଉପରେହିଁ ସେମାନଙ୍କର ଭାଗ୍ୟ ନିର୍ଭର କରୁଛି, ତେବେ ସେମାନେ ସ୍ଳୋଗାନ୍ ଗାଇ ରାସ୍ତାରେ ରାସ୍ତାରେ ବୁଲିବା ଓ ଶେଷରେ କପି କରି ସାର୍ଟିଫିକେଟ୍ ଆଦାୟ କରିବାର ଯୋଜନା ଛାଡ଼ି, ଅଧିକରୁ ଅଧିକ ବିଦ୍ୟାସାଧନାରେ ମନ ଦିଅନ୍ତେ ।

**୩ । ଆନ୍ତର୍ଜାତିକ ମାନଦଣ୍ଡ –**

ଡିଗ୍ରୀ-ଡିପ୍ଲୋମା ରଖ ବା ନରଖ, ଜ୍ଞାନର ମୂଲ୍ୟାୟନ ଯେପରି ଆନ୍ତର୍ଜାତିକ ମାନଦଣ୍ଡରେହିଁ ମପାହେବାର ବ୍ୟବସ୍ଥା ହେଉ । ବର୍ତ୍ତମାନ ଇଣ୍ଡିଆନ୍ ଡିଗ୍ରୀର କୌଣସି ମୂଲ୍ୟହିଁ ନାହିଁ । ଶତକଡ଼ା ୨୫ ବା ୩୦ ଯେଉଁଠି ପରମ ମସ୍ତିଷ୍କବତ୍ତା ଓ କଠୋର ବିଦ୍ୟାସାଧନାର ଚିହ୍ନ ଏବଂ ସେଥିପାଇଁ ପୁଣି ଗ୍ରେସ୍‌ମାର୍କ, କପି ଓ ଧରାଧରି– ଏଥିରେ ଆମ ପାଠ ଓ ଡିଗ୍ରୀ-ଡିପ୍ଲୋମାର ମୂଲ୍ୟ କ'ଣ, ଆମେ ନିଜକୁ ପଚାରି-ନଯାଇ ସେଇ ହେୟ ଯତ୍‌କିଞ୍ଚିତତାରେ ସନ୍ତୁଷ୍ଟ ରହିବାଟା, ସମଗ୍ର ଜାତିର ବିଚାରଶକ୍ତି ଏବଂ ବିଶେଷକରି ଏ ଦେଶର ଶିକ୍ଷାବିଭାଗ, ଶିକ୍ଷକ-ଅଧ୍ୟାପକ ଓ ବିଶ୍ୱବିଦ୍ୟାଳୟ ସବୁକୁ ମାଡ଼ିବସିଥିବା ଶିକ୍ଷାବିଦ୍ ବୃନ୍ଦଙ୍କ ପ୍ରତି ଏକ ଘୋର ଅପମାନ ଛଡ଼ା ଆଉ କିଛି ନୋହିପାରେ । ଥରେ ଲେଖକ ଟ୍ରେନ୍‌ରେ ଏକାଠି ଜନୈକା ଡେନ୍‌ମାର୍କଦେଶୀୟା ଶିକ୍ଷୟିତ୍ରୀଙ୍କ ସହିତ ଯାତ୍ରା କରିବା ଭିତରେ ତାଙ୍କ ସହିତ ଶିକ୍ଷା ସମ୍ପର୍କରେ କିଛି ଆଲୋଚନା ହୋଇଥିଲା । ସେ କିଛି ସମୟ ଭାରତବର୍ଷରେ ମଧ୍ୟ ଏକ ମିସନାରୀ ସ୍କୁଲରେ କାମକରିଥିଲେ । ଭାରତବର୍ଷରେ ଏତେ ପିଲା ଶେଷ ପରୀକ୍ଷାରେ ଫେଲ୍ ବା ତୃତୀୟ ଶ୍ରେଣୀରେହିଁ ପାସ୍ କରୁଥିବା ଦେଖି ସେ ଅତ୍ୟନ୍ତ ବିସ୍ମୟ ପ୍ରକାଶକଲେ ।

ସେ କହିଲେ ଯେ, ଡେନ୍‌ମାର୍କର କୌଣସି ସ୍କୁଲର ପିଲେ ଶେଷ ପରୀକ୍ଷାରେ ସମସ୍ତେ ପ୍ରଥମ ଶ୍ରେଣୀରେ ପାସ୍ ନକଲେ, ସେଠାର ଉଭୟ ଅଭିଭାବକ-ସଂଘ ଓ ଶିକ୍ଷକ-ଗୋଷ୍ଠୀ ଆନ୍ଦୋଳିତ ହେଉଉଠନ୍ତି ଏବଂ ଏହା ଯେପରି ପରେ ନ ଘଟେ, ସଙ୍ଗେ ସଙ୍ଗେ ତା'ର ପ୍ରତିକାର ବିଧାନ କରିବସନ୍ତି । ସେ କହିଥିଲେ, ଭାରତବର୍ଷର ତୃତୀୟ ଶ୍ରେଣୀ ପରି କୌଣସି ପାସ୍ ତାଙ୍କ ଦେଶରେ କଳ୍ପନା କରାଯାଇ ନ ପାରେ ।

**ସୋଭିଏଟ୍-ଅନୁସରଣ–**

ମୌଳିକ ଚିନ୍ତା ଓ କର୍ମରେ ନିଷ୍ଠାପରତା ଆଜି ଭାରତବର୍ଷରେ ଅତ୍ୟନ୍ତ ବିରଳ–ଅଥଚ ଚତୁର୍ଦ୍ଦିଗରେ ଖାଲି ଶସ୍ତା 'ବିପ୍ଳବ'ର ଧ୍ୱନି । ଯଦି ଆମେ ଭାବୁଛେ ଯେ ସାମ୍ରାଜ୍ୟବାଦୀ-ଇଂରେଜ-ପ୍ରବର୍ତ୍ତିତ-ଏହି-ଶିକ୍ଷା ବ୍ୟବସ୍ଥା ଆମ ପ୍ରତି ଆଉ କାମିକା ନୁହେଁ, ଅଥଚ ଆମେ କୌଣସି ବିକଳ୍ପ ବ୍ୟବସ୍ଥା ମଧ୍ୟ ଚିନ୍ତା କରିପାରୁନାହେଁ, ତେବେ ଜାପାନ, ଜର୍ମାନୀ ପରି ଅଗ୍ରଗାମୀ ଦେଶର ବା 'ବିପ୍ଳବ'ର-ସାଂପ୍ରତିକ-ପୁଣ୍ୟଭୂମି ଓ ସର୍ବାଗ୍ରଗାମୀ ସୋଭିଏଟ୍ ଋଷିଆର ଶିକ୍ଷା-ବ୍ୟବସ୍ଥାକୁ ହେଲେ 'ପୂରାପୂରି' ଗ୍ରହଣ କରିନିଆଯାଉ । 'ପୂରାପୂରି' କହିବାର ହେତୁ ଏହି ଯେ, ଆମେ କୌଣସି ବୈଦେଶିକ ଶିକ୍ଷା-ବ୍ୟବସ୍ଥାର ଖାଲି ଛାଁଚଟାକୁ ଗ୍ରହଣକରିନେଇ ବାକୀସବୁ, ଯେଉଁଥିରେକି ଶିକ୍ଷକ ଓ ଛାତ୍ରଙ୍କଠାରୁ କଠିନ ମାନସିକ ଶ୍ରମ ଆଶା କରାଯିବା କଥା, ସେତକ ବାଦ୍‌ଦେଇ, ସେ-ବ୍ୟବସ୍ଥାରେ-କଳ୍ପନାତୀତ ଶସ୍ତା-ଡ଼ିପ୍ଲୋମା ବାଣ୍ଟିବସିବା ପ୍ରକୃତ 'ଅନୁସରଣ' ହେବ ନାହିଁ । ଆମକୁ 'ପୂରାପୂରି' ସେମାନଙ୍କ ସିଲାବସ୍ ପାଠ୍ୟପୁସ୍ତକର ପ୍ରକାର, ଅଧ୍ୟାପନା ଓ ମୂଲ୍ୟାୟନର ରୀତି, –ସମସ୍ତକୁ ହିଁ ତାଙ୍କରି ଷ୍ଟାଣ୍ଡାର୍ଡ଼ରେ ଥୋଇ ଆମ ଶିକ୍ଷାବିଭାଗକୁ ପୁନର୍ଗଠିତ କରିବାକୁ ହେବ । ଲେଖକର କହିବାର କଥା ଏହି ଯେ ଆମର ଆଜିର ଶିକ୍ଷା-ବ୍ୟବସ୍ଥା ଏକ ଘୋର ଅପବ୍ୟୟ-ଶୀଳ ପ୍ରହସନ ଓ ଟ୍ରାଜେଡ଼ୀ ମାତ୍ର । ଏଥିରେ ଜ୍ଞାନ ସାଧନା ଓ ତାଲିମର ଗନ୍ଧ ଆଉ ନାହିଁ – ଅଛି କେବଳ ଠକାମି, ଧପ୍‌ପାବାଜି, ଅନ୍ୟାୟ ଓ ଦୁର୍ନୀତି ଅଥବା କେବଳ କୋଠାବାଡ଼ି ଓ ଚାକିରିତତ୍ତ୍ୱ । ଗୋଟାଏ ନୂତନ ଜାତିକି ସବୁ କ୍ଷେତ୍ରରେ ଦୁର୍ଦ୍ଧର୍ଷ କରି ଠିଆକରାଇବାକୁ ଏ ଶିକ୍ଷା ବ୍ୟବସ୍ଥାରେ କିଛିହିଁ ଅଛି ବୋଲି ମନେହେଉନି । ଜାତୀୟଜୀବନ ଓ ସଂସ୍କୃତି ସହିତ ମଧ୍ୟ ଏହା ସଂପର୍କ-ଲେଶ-ଶୂନ୍ୟ । ଆମର ସଂସ୍କାର ଚାହି । ଗୋଟିଏ କଥା ଧରାଯାଉ । ବିପ୍ଳବର ବିହାରଭୂମି ସୋଭିଏତ୍ ଋଷିଆର ସ୍କୁଲ-କଲେଜମାନଙ୍କରେ ଆମ ଭାରତ ପରି, ଆମେ ଅନ୍ତତଃ ଏତେ ଛୁଟି ଦେଖିବାନି । ଯେଉଁ ଜାତିର ପିଲେ ମୂଳରୁ 'ଛୁଟି'କି ଅନେଇରହନ୍ତି ଓ ତଜ୍ଜନିତ ନିଷ୍ଫଳ କର୍ମ-

ହୀନତାରେ ସନ୍ତୁଷ୍ଟ ରହନ୍ତି, ସେ ଜାତି କେବେହେଲେ ଅନ୍ୟମାନଙ୍କ ସହିତ ପ୍ରତିଯୋଗିତାରେ ପାରିଉଠିବନି । ଏହି ଛୁଟି ସଚେତନତା ନଥାଇ, କେବଳ-କର୍ମ-ସଚେତନତା ଯୋଗୁଁ ହିଁ ସୋଭିଏଟ୍ ରୁଷିଆର ହାଇସ୍କୁଲ ସିଲାବସ୍ ଆମ ଦେଶର ବି.ଏ ଅନର୍ସ ସିଲାବସ୍‌ର ସମକକ୍ଷ ହେଲେହେଁ, ସେଠି କେହି ବିଦ୍ୟାର୍ଥୀ ତାକୁ 'କଠିନ' କହି କ୍ଲାସ୍ ଛାଡ଼ି ପଳାଇବାର ବା ହେଡ୍‌ମାଷ୍ଟର ବା ପ୍ରିନ୍‌ସପାଲଙ୍କ ଅଫିସ୍ ଧସ୍ତାଧସ୍ତି କରିବାର ଆମେ କଳ୍ପନା କରିପାରିବାନି । ଆମ ପାଠଟା ଯଦି ତାଙ୍କ ପାଠର ସମାନ ନହୁଏ, ତେବେ ସେ ଜାତି ସଙ୍ଗେ ଏ ଜାତି ସମାନ ହେବ କିପରି ?

**୪ । ଦାୟିତ୍ୱହୀନ ନିରାପତ୍ତାକୁ ପ୍ରଶ୍ରୟ ଦିଆନଯାଉ–**

ଯେହେତୁ ଏ ଦେଶର ଶିକ୍ଷକମାନେ ଏଦେଶର ସୁପ୍ରାଚୀନ ଗୌରବମୟ ଐତିହ୍ୟକୁ ଭୁଲି,ଶ୍ରମିକମାନଙ୍କ ପରି ଟ୍ରେଡ୍-ଇୟୁନିଅନ୍ କରି ଓ ଷ୍ଟ୍ରାଇକ୍ ଇତ୍ୟାଦି ଚଳାଇ ଇତିମଧ୍ୟରେ ନିଜନିଜର ଦରମା ଓ ନିରାପତ୍ତାଦିର ଅକଳ୍ପନୀୟ ଯୋଗାଡ଼ କରିପାରିଛନ୍ତି, ଦେଶ ବର୍ତ୍ତମାନ ସେମାନଙ୍କଠାରୁ ଦାୟିତ୍ୱ ଆଦାୟ କରିବା କଥା । ପିଲେ ତ ଶତକଡ଼ା ୨୫ ମାର୍କ ରଖିଲେଇ ପାସ୍, ସେଥିରେ ପୁଣି ଅର୍ଦ୍ଧାଧିକ ଫେଲ୍, ପୁଣି ପାସୀମାନଙ୍କ ଭିତରୁ ଶତକଡ଼ା ୮୦ ତୃତୀୟ ଶ୍ରେଣୀରେ, ତେବେ ଶିକ୍ଷକ-ଅଧ୍ୟାପକ କଣ କରୁଛନ୍ତି ବୋଲି ପଚାରିବା ଏକ ଯୁକ୍ତିଯୁକ୍ତ ପ୍ରଶ୍ନ ହେବ। କୌଣସି କ୍ଷେତ୍ରରେ ହିଁ ଦାୟିତ୍ୱହୀନ ସ୍ୱାଛନ୍ଦ୍ୟ ଓ ନିରାପତ୍ତାକୁ ପ୍ରଶ୍ରୟ ଦେବା ଉଚିତ୍‌ନୁହେଁ । ଯୁକ୍ତରାଷ୍ଟ୍ରରେ ଶିକ୍ଷକ-ଅଧ୍ୟାପକମାନଙ୍କର ଏଥିପାଇଁ ପ୍ରତିବର୍ଷହିଁ ଏକ ଯାଁଚ ହୋଇଥାଏ— ଏବଂ ପାଠକେ ଶୁଣି ବିସ୍ମିତ ହେବେଯେ, ତାହା କରାଯାଇଥାଏ ପିଲାଙ୍କ ସାହାଯ୍ୟରେ । ବାର୍ଷିକ ସେସନ୍‌ର ଶେଷରେ ଅନୁଷ୍ଠାନର ପ୍ରତ୍ୟେକଟି ଶିକ୍ଷକ-ଅଧ୍ୟାପକ ସମ୍ପର୍କରେ ପିଲାଙ୍କୁ ଗୋପନୀୟ ଭୋଟ ଦେବାକୁ କାର୍ଡ଼-ବାଣ୍ଟି ଦିଆଯାଏ । ଛାତ୍ର-ଛାତ୍ରୀଙ୍କର ସେହି ମତାମତ ଉପରେ ପରବର୍ତ୍ତୀ ସେସନ୍‌ରେ କୌଣସି ଶିକ୍ଷକଙ୍କୁ ସେ ଅନୁଷ୍ଠାନରେ ରଖାଯିବ କି ନାହିଁ, ମାନେଜ୍‌ମେଣ୍ଟ ତାହା ସ୍ଥିର-କରନ୍ତି । ଲେଖକର ଦୃଢ଼ ମତ ଯେ, ଭାରତବର୍ଷରେ ମଧ୍ୟ ଏହି ସୁଫଳଦାୟୀ ପ୍ରଥା ପ୍ରବର୍ତ୍ତିତ ହେବା ଉଚିତ୍ । ବର୍ତ୍ତମାନ ସରକାରୀ କଲେଜମାନଙ୍କରେ ମଧ୍ୟ ବହୁ ଲେକ୍‌ଚରର ଆଦୌ କ୍ଲାସ୍‌କୁ ଆସୁନାହାନ୍ତି ଓ ସେମାନଙ୍କ ବିରୁଦ୍ଧରେ କୌଣସି କ୍ରିୟା-ବିଧାନ ମଧ୍ୟ ହେଉନଥିବାର ଶୁଣାଯାଏ । ପ୍ରତିହିଂସା ଭୟରେ ପିଲାଏ ପ୍ରକାଶ୍ୟରେ ପ୍ରତିବାଦ ପାଇଁ ମଧ୍ୟ ପଶ୍ଚାଦ୍‌ପଦ। ତେଣୁ ଛାତ୍ରମାନଙ୍କର ଗୋପନୀୟ ଭୋଟାଧିକାରହିଁ ଏହାର ଯଥୋପ-ଯୁକ୍ତ ଓ ଏକମାତ୍ର ପ୍ରତିକାର ବ୍ୟବସ୍ଥା ବୋଲି ଲେଖକ ମନେକରେ । ଏବଂ ଆମ ଶିକ୍ଷା-ନୁଷ୍ଠାନମାନଙ୍କରୁ କେବଳ ଧରାଧରି ନିପୁଣ ଅଧମ ଓ ଚତୁର 'ଟିଚର୍-ପଲିଟିସିୟାନ୍' ମାନଙ୍କୁ ଉତ୍‌ପାଟିତ ନକଲେ, କୌଣସି ହେଲେ ସଂସ୍କାର କାମ ଦେଖାଇବା ନାହିଁ ।

**୫ । ତଥାକଥିତ ଉଚ୍ଚଶିକ୍ଷାରେ ବନ୍ଧପକାଅ–**

ବର୍ତ୍ତମାନ ଆମ କଲେଜମାନଙ୍କରେ ଯେତେ ପିଲା ଆସି ଭର୍ତ୍ତି ହୋଇ-ଯାଉଛନ୍ତି, ସେଥିରୁ ଅର୍ଦ୍ଧାଧିକ 'ଉଚ୍ଚଶିକ୍ଷା' ପାଇଁ ଏକାନ୍ତ ଅଯୋଗ୍ୟ । ସେମାନଙ୍କର ବିଦ୍ୟା-ସାଧନାରେ ଆଗ୍ରହ ନାହିଁ, ପୁଣି ଲେକ୍‌ଚରର୍‌ମାନଙ୍କର ଲେକ୍‌ଚର ବୁଝିବାର କ୍ଷମତା ମଧ୍ୟ ସେମାନଙ୍କର ନାହିଁ । ଅଥଚ 'ଉଚ୍ଚଶିକ୍ଷା'ର ପ୍ରତାରଣାପୂର୍ଣ୍ଣ ବା ଅଜ୍ଞତାମୟ ସ୍ଲୋଗାନ ଚିତ୍‌କାର କରି ନିଛକ ରାଜନୈତିକ କାରଣରୁ ହିଁ ଆମେ ଗ୍ରାମେ ଗ୍ରାମେ ହାଇସ୍କୁଲ ଓ କଲେଜ ବସେଇ ଚାଲିଲେ । ପିଲେ ତ ପାଠପଢ଼ିବାକୁ ନାରାଜ । ସେମାନେ ମାଷ୍ଟ୍ର-ଅଧ୍ୟାପକଙ୍କୁ ଛୁରା ଦେଖାଇ ମାସ୍‌-କପି କରି ହିଁ ଡିପ୍ଲୋମା-କାଗଜଖଣ୍ଡମାନ ଯେକୌଣସି-ମତେ ପାଇବାର ଯୋଗାଡ଼ରେ ଲାଗିଲେ । କେତେକ ଅଧମ ଶିକ୍ଷକ-ଅଧ୍ୟାପକ ମଧ୍ୟ ନିଜ ସ୍ୱାର୍ଥ ଦୃଷ୍ଟିରୁ ପିଲାଙ୍କୁ ଏ ପ୍ରକାର ଘୋର ଅପକର୍ମରେ ସହାୟତା କରିବାର ଦେଖା-ଯାଉଛି । ତେଣୁ 'ଉଚ୍ଚଶିକ୍ଷା' ନାମରେ ଏ ବୀଭତ୍ସ ଓ ବ୍ୟୟବହୁଳ ପ୍ରତାରଣାକୁ ପ୍ରଶ୍ରୟ ଦେଇ କି ଲାଭ ? ଏ ସଂପର୍କରେ ଲେଖକ ଦୁଇଟି ପ୍ରସ୍ତାବ ଦେଉଛି –

(୧) ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ 'ସମସ୍ତେ' ପଢ଼ିବେ । ତାହାହିଁ ହେବ 'ସାଧାରଣ ଶିକ୍ଷା' । କିନ୍ତୁ ତା' ପରଠାରୁ ଉଚ୍ଚତର ଶିକ୍ଷାପାଇଁ ପ୍ରତ୍ୟେକଟି ପ୍ରାର୍ଥୀଠାରୁ ଜ୍ଞାନର ଓ ବିଦ୍ୟାପ୍ରତି ଆଗ୍ରହର ଉଚ୍ଚ ମାନଦଣ୍ଡ ଆଶାକରାଯାଉ । ଅନ୍ତତଃ ମୋଟାମୋଟି ଶତକଡ଼ା ୫୦ରୁ ୬୦ ଯେଉଁମାନେ ସପ୍ତମ ଶ୍ରେଣୀରେ ନ ରଖିବେ ସେମାନଙ୍କୁ ହାଇସ୍କୁଲ୍‌କୁ ଛାଡ଼ିବା ଉଚିତ୍ ନୁହେଁ, କି ଏହି ଶ୍ରେଣୀର ପିଲା ହାଇସ୍କୁଲ୍‌ରୁ କଲେଜକୁ ଆସିବା ମଧ୍ୟ ଉଚିତ୍ ନୁହେଁ । ସେମାନଙ୍କୁ କୃଷି ଓ ଶିଳ୍ପ ଆଦିକୁ ଟାଣିନେବା ଉଚିତ୍ । ପୁସ୍ତକଗତ ବିଦ୍ୟା, ଯେଉଁଥିପାଇଁ କି ସେମାନଙ୍କର ସହଜାତ ଯୋଗ୍ୟତା ନାହିଁ, ସେମାନେ ସେଠି ଆସି ଅନଧିକାର ପ୍ରବେଶ କରି ମୂଲ୍ୟବାନ୍ ଅର୍ଥ ଓ ସମୟ କାହିଁକି ନଷ୍ଟ କରିବେ ? ପରିଶେଷରେ ତ ପୁଣି ବେକାର ସମସ୍ୟା ! ଅଥଚ ଆଜି ଚାକିରିଠାରୁ କୃଷି ଓ ଶିଳ୍ପ ଓ ବ୍ୟବସାୟ ଯେ ଅଧିକ ଅର୍ଥଦାୟକ ତାହା ଏ ଦେଶର ଅଭିଭାବକମାନେ ବୁଝି ସେହି ଅନୁସାରେ ପିଲାଙ୍କୁ ତାଲିମ ଦେବା ଉଚିତ୍ ଏବଂ ଆମ ଶିକ୍ଷା-ବ୍ୟବସ୍ଥା ସେହି ଅନୁଯାୟୀ ପୁନର୍ଗଠିତ ହେବା ଉଚିତ୍ । ସାଧାରଣ ଶିକ୍ଷା ପରେ କେବଳ ଶତକଡା ୨୦ ଜଣ ଛାତ୍ରଙ୍କୁ ଉପରକୁ ଆସିବାକୁ ଦିଆଗଲେ ସେମାନେ ଆମର ସକଳ ରାଷ୍ଟ୍ରୀୟ ଗୁଜରାଣ ମେଣ୍ଟାଇବେ ଏବଂ ଶିକ୍ଷିତ ବେକାର ସମସ୍ୟା ଏପରି ଗୁରୁତର ହୁଅନ୍ତା ନାହିଁ । ଭାରତର ପଲ୍ଲୀରେ ଭାରତୀୟ ଜନତାର ୭୦-୮୦ ଭାଗ ଏବେବି ଅଛନ୍ତି । ସାଧାରଣ-ଶିକ୍ଷା ପରେ ତେଣୁ ୭୦-୮୦ ଭାଗ ପିଲା ସେଇଠି ରହି ପଲ୍ଲୀ ଭାରତକୁ ସମୃଦ୍ଧିମନ୍ତ କରିବାର ବ୍ୟବସ୍ଥା ହେଉ । ବାକୀ ୨୦ ଭାଗ,

ଶିକ୍ଷା ଓ ପ୍ରଶାସନିକ ବିଭାଗ ସବୁର ଦାୟିତ୍ୱ ପାଇଁ ତାଲିମ ପ୍ରାପ୍ତ ହେବେ ସେମାନଙ୍କର ଉଚ୍ଚତର ଧୀଶକ୍ତି ଯୋଗୁଁ । ପଲ୍ଲୀ-ଭାରତକୁ ଉଚ୍ଚ-ଶିକ୍ଷା ନାମରେ ଶସ୍ତା ସାର୍ଟିଫିକେଟ୍ ବାଣ୍ଟି ଅକାରଣ ନଗରମାନଙ୍କୁ ଟାଣିଆଣି, ସେଠି 'ଶିକ୍ଷିତ-ବେକାର' ସମସ୍ୟା ସୃଷ୍ଟିକରିବା ଆଦୌ ସୁବ୍ୟବସ୍ଥାର ବା ସୁଯୋଜନାର ଲକ୍ଷଣ ନୁହେଁ ।

(୨) ଆମେ ତ ତିନିବର୍ଷିଆ ଡିଗ୍ରୀ-କୋର୍ସର ପ୍ରହସନକୁ ଛାଡ଼ି ପୁଣି ଆଇ.ଏ + ବି.ଏକୁ ଆସିଲେ – କିନ୍ତୁ ଗାଏଁ ଗାଏଁ ଯେଉଁସବୁ ବି.ଏ. କଲେଜ ସବୁ ବସାଯାଇଥିଲା ସେଥିରୁ କ୍ୱଚିତ୍ କେହି ସ୍ୱଚ୍ଛଳ । ମାସ ମାସ ଦରମା ନପାଇ ଷ୍ଟାଫ୍ ଠାଏ ଠାଏ ପ୍ରିନ୍‌ସପାଲଙ୍କୁ ମାଡ଼ ଦେବାର ଖବର ବି ପ୍ରକାଶ ପାଇଲାଣି । ଅଧମ ତୃତୀୟ ଶ୍ରେଣୀର ଛାତ୍ର ଓ ଅଧମ ଅଧ୍ୟାପକ ଓ ଲାଇବ୍ରେରୀ-ଲାବରେଟରୀ-ହୀନତା ଓ ଏପରିକି ଉପଯୁକ୍ତ ବାସଗୃହହୀନତାକୁ ଧରି ଦଣ୍ଡାୟମାନ ଏହି ଛତୁଫୁଟା କଲେଜ ସବୁ ଦେଶକୁ 'ଉଚ୍ଚଶିକ୍ଷିତ' କରାଉଛନ୍ତି କହିବା କେବଳ ପାଗଳ ପକ୍ଷରେ ସାଜେ । ଆମେ ଯେତେବେଳେ ଆଇ.ଏ.କୁ ଆସିଲୁଣି, ତେଣୁ ସେଗୁଡ଼ିକୁ ବରଂ 'ଜୁନିଅର କଲେଜ' ନାମ ଦେଇ, ସେତିକିରେ ଅନ୍ତତଃ ସେ ଅବ୍ୟବସ୍ଥାକୁ ବନ୍ଦକରାଯାଉ । ଗୋଟିଏ ଗୋଟିଏ ଜିଲ୍ଲାରେ ଉତ୍ତମ ଅଧ୍ୟାପକ ଓ ଆଗ୍ରହୀ ଯୋଗ୍ୟତା ସଂପନ୍ନ ଛାତ୍ରଙ୍କୁ ନେଇ ଗୋଟିଏ ଗୋଟିଏ ଭଲ ଡିଗ୍ରୀ କଲେଜ ରଖିଲେଇ ଆମ ପାଇଁ ଯଥେଷ୍ଟ ହୁଅନ୍ତା । ବାକୀ ସବୁ 'ଜୁନିଅର କଲେଜ' ରହିଲେ ଆମର କିଛି ହେଲେ କ୍ଷତି ହେବନାହିଁ । ଯୁକ୍ତରାଷ୍ଟ୍ରରେ ହାଇସ୍କୁଲ ପିଲାଙ୍କୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପାଇଁ ଯୋଗ୍ୟ କରାଇବା ଲକ୍ଷ୍ୟରେ ବହୁ ଜୁନିଆର କଲେଜ ଏବେ ସ୍ଥାପିତ ହେଉଛି । ଆମେ ଏହି ଯୁକ୍ତିଯୁକ୍ତ ପନ୍ଥାଟି ଗ୍ରହଣ କଲେ 'ଶିକ୍ଷିତ ବେକାର ସମସ୍ୟା' ମଧ୍ୟ ଅନେକ ପରିମାଣରେ କମିଆସନ୍ତା ବୋଲି ଲେଖକର ବିଶ୍ୱାସ ।

**ପ୍ରସ୍ତାବକର ପରିଚୟ–**

ପ୍ରିୟ ପାଠକେ, ଏହି ପ୍ରବନ୍ଧରେ ଲେଖକ ବର୍ତ୍ତମାନ ଜୀବନର ଶେଷ ପାଦରେ । କୌଣସି ସାଂସାରିକ ଆଶା-ଆକାଂକ୍ଷା ତା'ର ବାକୀ ନାହିଁ । କିନ୍ତୁ ଯେତେବେଳେ ଆଶା-ଆକାଂକ୍ଷା-ପୂରଣ ଆଶା କରିବାର ବେଳ ଥିଲା, ସେତେବେଳେ ମଧ୍ୟ ସେ ମୂର୍ଖ 'ମାଧିଆ ଭାଇ, ସବୁ କଥାକୁ ହଇ ହଇ' କରି ସୁନାପିଲା ନହୋଇ, ତିନିବର୍ଷିଆ-ଡିଗ୍ରୀ-କୋର୍ସ ବା ବେସିକ୍‌ର ସରକାରୀ ତୋପ-ସଂରକ୍ଷିତ ଆସ୍ଫାଳନମୟୀ ଆତ୍ମ-ପ୍ରଚାର ବିରୁଦ୍ଧରେ ଏ ରାଜ୍ୟରେ ପ୍ରତିରୋଧର ନିଃସଂଗ ଏକକ ସ୍ୱର ଉତ୍ତୋଳନ କରିଥିଲା । କିନ୍ତୁ ବିଳମ୍ବରେ ହେଲେହେଁ ଲେଖକର ସେହି ପ୍ରତିବାଦ ସବୁ ଯେ ଏବେ ସତ୍ୟ ହୋଇଛି, ତାହାହିଁ ତା'ର ଏକମାତ୍ର ସାନ୍ତ୍ୱନା । କିନ୍ତୁ ଯେଉଁମାନେ

ଅନ୍ତତଃ ଶିକ୍ଷାବିଭାଗରେ କାମ କରିବେ, ସେମାନଙ୍କଠାରୁ ଜାତି ସ୍ୱାର୍ଥଜଡ଼ିତ ଆତ୍ମ-ପ୍ରତାରଣା ବା ଚୈତ୍ତିକ ମିଥ୍ୟାଚାର ଆଶା ନକରି, ନିଶ୍ଚୟ କରିବ ସ୍ପଷ୍ଟ ମତ-ପ୍ରକାଶ । ବାଙ୍ଗଲାଦେଶର ଅଶିକ୍ଷିତ ଜନତା ଓ ଛାତ୍ର ଛାତ୍ରୀମାନେ ସତ୍ୟ ପାଇଁ ଆମ ଆଖି ଆଗରେ ଯେପ୍ରକାର କଷ୍ଟ ବରଣ କଲେ, ସ୍ୱାଧୀନତା ପରେ ଏ ଦେଶର ପ୍ରିନ୍‌ସପାଲ୍, ପ୍ରଫେସର୍, ଡିପିଆଇ ଓ ଭାଇସଚାନ୍‌ସେଲର୍‌ମାନେ ସେ ସତ୍‌ସାହସର ସାମାନ୍ୟତମ ପରିଚୟ ନ ଦେଇଥିବା ନିଶ୍ଚୟ ଅତ୍ୟନ୍ତ ଲଜ୍ଜା ଓ ପରିତାପର ବିଷୟ । ସେ ଯାହାହେଉ, ପୂର୍ବେ, ଏହି ଲେଖକ ବେସିକ୍ ବା ତିନିବର୍ଷିଆ-ଡିଗ୍ରୀ କୋର୍ସ ସଂପର୍କରେ ଯେପରି, ଏ ପ୍ରବନ୍ଧର ଆଲୋଚନା ଓ ପ୍ରସ୍ତାବଗୁଡ଼ିକ ମଧ୍ୟ ସେହିପରି ନିଛକ ଶୈକ୍ଷିକ ଗୁଣାତ୍ମକ ବିଚାର ଓ ଜାତିର ସାମୂହିକ କଲ୍ୟାଣ ଦୃଷ୍ଟିରୁହିଁ ସେ ବାଢ଼ିବସିଛି । ଆଶାକରେ ଦେଶବାସୀ ଓ ସହୃଦୟ ଶିକ୍ଷାବିଦ୍ ଗଣ ସେହି ଦୃଷ୍ଟିରୁ ହିଁ ଏହି ଶୈକ୍ଷିକ ପଞ୍ଚଶୀଳକୁ ଓ ତା'ର ପୂର୍ବରୁ ଆଲୋଚନାକୁ ଗ୍ରହଣକରିବେ ।

**ପ୍ରିୟ ଛାତ୍ରସମାଜ ପ୍ରତି–**

ଶେଷରେ, ମୋ ଦେଶର ପ୍ରିୟ ତରୁଣ-ସମାଜକୁ ଏତିକି କହି ଏ ଲେଖକ ବିଦାୟ ନେବ ଯେ, ''ବାବୁ ହେ, କଠୋର ଶାରୀରିକ ଓ ମାନସିକ ଶ୍ରମ ବିନା କୌଣସି ଜାତି କଥା ଛାଡ଼, କୌଣସି ବ୍ୟକ୍ତିର ମଧ୍ୟ ଜୀବନରେ କିଛି ହେଲେ ସମୃଦ୍ଧି ସାଧିତ ହୋଇ ନପାରେ । କୈଶୋର ଓ ଯୌବନ, ଦୀର୍ଘ ଆଗାମୀ ଜୀବନ ପାଇଁ ଯେ ଏକାନ୍ତରେ କେବଳ 'ପ୍ରସ୍ତୁତିର' ସମୟ, ଏହା ପ୍ରକୃତି ନିର୍ଦ୍ଦିଷ୍ଟ । ଏହାକୁ ତେଣୁ ସଫଳ ପ୍ରସ୍ତୁତିରେହିଁ ଲଗାଅ; କ୍ଷିପ୍ର ପଳାୟମାନ ତତ୍‌କାଳୀନ ଉତ୍ତେଜନା ସବୁରେ ନଷ୍ଟ କରିଦିଅ ନାହିଁ । ଅନ୍ୟ ଦେଶର ଲୋକ ଗ୍ରହ ଉପଗ୍ରହରେ ବସତି ପାଇଁ ଗଲାବେଳେ, ତମେ ଭାରତର ତରୁଣ ଦଳ, କପି କରି ମଣିଷ ହେବାର ଚେଷ୍ଟା-କରିବାଟା କିପରି ଲଜ୍ଜାକର ବ୍ୟାପାର, ଭାବ ତ ଥରେ ! ସ୍ୱାଧୀନଭାରତର ନାଗରିକ ରୂପେ ତମେ ଆଜି ବିଶ୍ୱର ସକଳ ଜ୍ଞାନ ନିଜ ହାତ ମୁଠାରେ ରଖିବାର କଥା । କୌଣସି ମୂର୍ଖ ଏକ ରାଜ୍ୟର ଦାୟିତ୍ୱ ଛାଡ– ନିଜ ଦାୟିତ୍ୱ ମଧ୍ୟ ତୁଲାଇ ପାରିବ ନାହିଁ । ଶସ୍ତା-ପାସ୍ ଲୋଭରେ ଓଡ଼ିଆ ଓଡ଼ିଆ ହୁଅନାହିଁ ।

ଆଜି ସ୍ୱାଧୀନ ଭାରତର ଓଡ଼ିଆ, ବଙ୍ଗାଳୀ, ପଞ୍ଜାବୀ, ଆନ୍ଧ୍ର ପ୍ରତ୍ୟେକେ ଏକ ଏକ ଆନ୍ତର୍ଜାତିକ ନାଗରିକ । ତୁମକୁ ସେହି ଲକ୍ଷ୍ୟରେ ସେହି ଆଦର୍ଶରେ, ନିଜନିଜକୁ ଆଜି ପ୍ରସ୍ତୁତ ହେବାକୁ ପଡ଼ିବ । ଉତ୍ତମ ରୂପେ ଅନ୍ତତଃ ଆଉ ଦୁଇଟି ଭାଷା, ଇଂରାଜୀ ଓ ସଂସ୍କୃତ ଶିଖ, ଯେଉଁଥିରେ ପ୍ରକୃତ 'ମନୁଷ୍ୟ' ହେବା ପାଇଁ ଢେର୍ ଢେର୍ ଉପାଦାନ ଗଚ୍ଛିତ ରହିଛି, ଯାହା କି ଓଡ଼ିଆରେ ଆଦୌ ନାହିଁ କହିଲେ ଚଳେ ।''

**ଅପରୋକ୍ଷ ଇୟୁନିୟନ୍-ନିର୍ବାଚନ–**

ରାଜନୈତିକ ଟାଉଟରମାନଙ୍କ ଅନୁକରଣରେ ଇୟୁନିଅନ୍-ନିର୍ବାଚନ ଏବେ ପ୍ରତ୍ୟେକଟି ଶିକ୍ଷାନୁଷ୍ଠାନ ପ୍ରତି ଯେ କିପରି ଆତଙ୍କରେ ପରିଣତ ହେଲାଣି ତାହା ତମେ ହିଁ ଗଭୀର ଭାବରେ ଚିନ୍ତା କରିବା କଥା । ଏଥିପାଇଁ ଶତ-ଶତ ଓ ସହସ୍ର-ସହସ୍ର ମୁଦ୍ରା ବ୍ୟୟ, ପୁଣି ଜବରଦସ୍ତି ଓ ଧସ୍ତାଧସ୍ତି ଏବଂ ସାଧାରଣ କାନ୍ଥ, ବାଡ଼, ରାସ୍ତା ଇତ୍ୟାଦିକୁ ସ୍ଲୋଗାନ୍-ଅଙ୍କନରେ ବିକୃତ-ବୀଭତ୍ସ କରି ଥୋଇବା ନିରତିଶୟ ଅସାମାଜିକ ବ୍ୟାପାର ଓ ଦୁରାଭ୍ୟାସ । କ'ଣ, କଲେଜକୁ ବାପା ମା'ଙ୍କ ଟଙ୍କାରେ ଆସିଥିଲେ, ଏହି ସବୁ ସୁମହତ୍ କର୍ମର ଅଭ୍ୟାସ କରିବା ପାଇଁ ? ଛାତ୍ର-ପ୍ରତିନିଧି-ଅନୁଷ୍ଠାନ, ଛାତ୍ର-ସମାଜର କେବଳ ନୁହେଁ, ଦେଶ-ଜାତିର କଲ୍ୟାଣ ପାଇଁ ମଧ୍ୟ ରହିବା ଏକାନ୍ତ ଉଚିତ୍ ଓ ଆବଶ୍ୟକ । କିନ୍ତୁ ପ୍ରତିନିଧି ବାଛିବାର କି ଅନ୍ୟ ଭଦ୍ରତର ଉପାୟ ନାହିଁ ? ଜୟପ୍ରକାଶଜୀ ସମଗ୍ର ଦେଶ ପାଇଁ ଯେଉଁ ଅପ୍ରତ୍ୟକ୍ଷ୍ୟ-ନିର୍ବାଚନ-ପ୍ରଣାଳୀ ଗ୍ରହଣ କରିବା ପାଇଁ କହିଆସୁଛନ୍ତି, ତାହା କଲେଜମାନଙ୍କରେ ଅଭ୍ୟାସିତ ହେଲେ, ୟୁନିଅନ୍-ନିର୍ବାଚନର ବୀଭତ୍ସତା ଓ ମାରାତ୍ମକତା ତ ଲୋପପାଆନ୍ତା, ବରଂ ସମଗ୍ର ଦେଶ ମଧ୍ୟ ସେଥିରୁ ଶିକ୍ଷା କରନ୍ତା ବୋଲି ଲେଖକର ବିଶ୍ୱାସ । ଭଲ ଖାଅ, ଖେଳ-କସରତ୍ କରି ଦେହକୁ ଭଲ ଓ ସୁନ୍ଦର ରଖ, ଭଲ ପଢ଼, ଭଲ ଚିନ୍ତାକର ଓ ଭଲ କାମ କର—ମୋ ଦେଶର ପ୍ରିୟ ଛାତ୍ରସମାଜର ଏହାହିଁ ହେଉ ଜୀବନ ପାଇଁ-ପ୍ରସ୍ତୁତିର ବ୍ୟକ୍ତିଗତ 'ପଞ୍ଚଶୀଳ' । ଫୁଟବଲ୍ ମ୍ୟାଚ୍ ବା ନିର୍ବାଚନ ନେଇ ଧସ୍ତାଧସ୍ତି ବା ସେ ସବୁରେ ମାତି ରହିବାର ସରଗରମ ଭାବ କଲେଜ ଛାଡ଼ିବା ପରଦିନଠାରୁ ଜୀବନରୁ ସଂପୂର୍ଣ୍ଣ ଧୋଇ ହୋଇଯିବ । ସ୍କୁଲ୍-କଲେଜ ସବୁ ପରଜୀବନର ଦୀର୍ଘ, ନିଷ୍ଠୁର ଯାତ୍ରା ପାଇଁ ପ୍ରତ୍ୟେକ ବିଦ୍ୟାର୍ଥୀକୁ କିଛି କିଛି ଚିରନ୍ତନୀ ପାଥେୟ ଯୋଗାଇଦେବାର କଥା, କାରଣ ତାହାହିଁ ପ୍ରକୃତ 'ଏଡୁକେଶନ୍' ବା ଶିକ୍ଷା । ତାହାହିଁ ସଂଗ୍ରହକର ବାବୁମାନେ । ତାହା ଦ୍ୱାରାହିଁ ନିଜେ ଓ ଦେଶ ଧନ୍ୟ ହେବ । ଅନ୍ୟ କୌଣସି ସହଜତର ପନ୍ଥା ନାହିଁ ଯେ, ସେଥିପାଇଁ ଏହା ନିଶ୍ଚିତ ସତ୍ୟ-ବୋଲି ଜାଣିରଖ । ଧାନଗଛ ବା ଫୁଲଗଛଟିଏ ଉତ୍ତମ ଭାବରେ ବଢ଼େଇବାରେ କି ଚିନ୍ତା ଓ ଶ୍ରମ ଦରକାର ପଡ଼େ, ପ୍ରିୟ ବାବୁମାନଙ୍କୁ ତାହା ଅଜଣା ନଥିବ । ସେ ସ୍ଥଳେ, 'ମନୁଷ୍ୟ'-ହେବାଟା କେମିତି କପି-ପାସ୍-ପରି ବା ୨୫-ପରସେଣ୍ଟ-ପାସ୍ ପରି ସହଜ କର୍ମ ହୋଇଯିବ ବୋଲି ଧରିନେଇଛ ?

——

# ଜୀବନର ଚରମ ପ୍ରଶଂସନୀୟତା କେଉଁଠି ?

ହିନ୍ଦୁମାନେ ଅର୍ଥ, କାମ, ଧର୍ମ, ମୋକ୍ଷ—ଜୀବନରେ ଏହିପରି ଚାରିଟି ମୁଖ୍ୟ-ଲକ୍ଷ୍ୟ ଉପରେ ଆଖି ରଖିବାକୁ ଉପଦେଶ ଓ ବ୍ୟବସ୍ଥା କରିଯାଇଛନ୍ତି । ଜୀବନ ପରି, ହିନ୍ଦୁମାନଙ୍କର କାବ୍ୟ-କବିତା ଓ କଳା ଶିଳ୍ପର ମଧ୍ୟ ଏହି ଲକ୍ଷ୍ୟ ଓ ଆଦର୍ଶ ।

କିନ୍ତୁ ସ୍ୱାଧୀନ ହୋଇ ମଧ, ପାଶ୍ଚାତ୍ୟ-ପ୍ରଭାବିତ ଭାରତ, ଆଜି ଧର୍ମ ଓ ମୋକ୍ଷକୁ ତା'ର ଚିନ୍ତାରୁ ଏକାବେଳେକେ ବାଦ୍ ଦେଲା ପରି ଯେପରି ମନେହେଉଛି । ସ୍ୱାଧୀନ ଭାରତ ଆଜି ଏକ ଧର୍ମ-ହୀନ ରାଷ୍ଟ୍ର । ଭାରତୀୟ ଜାତୀୟ ଜୀବନ ମଧ ଆଜି ସେହିପରି ଧର୍ମ-ହୀନ । ଭାରତୀୟମାନଙ୍କର ବ୍ୟକ୍ତିଗତ ଚିନ୍ତାରୁ 'ମୋକ୍ଷ' ଭାବନା ଆଜି ବହୁ ଦୂରଗତ ।

ଏହା ଏକ 'ଅଯୁଗୀୟ' ଅଯୌକ୍ତିକ ଭାବନା ବୋଲିହିଁ ଏକାନ୍ତ ପରିତ୍ୟାଜ୍ୟ । ବୁଦ୍ଧ, ଶଙ୍କର, ରାମକୃଷ୍ଣ, ବିବେକାନନ୍ଦ, ଗାନ୍ଧିର ଭାରତରେ, ଆଜି ଜୀବନର ସର୍ବାଂଶକୁ ଯେପରି ମାଡ଼ିବସିଲାଣି କେବଳ ଅର୍ଥ ଓ କାମର ଦୁରପନେୟ କ୍ଷୁଧା । ସେହି ଆଜି ଆମର ରାଜନୀତି, ଶିକ୍ଷା, ସାହିତ୍ୟ ସଂସ୍କୃତି ଓ ସଭ୍ୟତା । ଯେପରି ମନେହେଉଛି, ସମଗ୍ର ଏହି ଐତିହାସିକ ଜାତି ଆଜି କେବଳ କାମ-ଅର୍ଥ-କ୍ଷମତା ପାଇଁ ହିଁ ଉତ୍‌କ୍ଷିପ୍ତ ଭାବରେ ଧାବମାନ ।

ଏଇ ପରିପ୍ରେକ୍ଷିତରେ, 'ଇଲ୍‌ଷ୍ଟ୍ରେଟେଡ୍ ଲଣ୍ଡନ ନିଉଜ୍' (ନଭେମ୍ବର ୮, ୧୯୬୯) ପତ୍ରିକାରେ, ପ୍ରସିଦ୍ଧ ଇଂରେଜ ଚିନ୍ତା-ନାୟକ ଓ ପ୍ରାବଂଧିକ ସର୍ ଆର୍ଥର ବ୍ରାୟାଁଙ୍କର ଏକ ରଚନା ଆମର ପାଠକ ପାଠିକାଙ୍କର ଜାଣିରଖିବା ପାଇଁ ହିଁ ଏଠାରେ ତା'ର ଏକ ସାରାନୁବାଦ ଉପସ୍ଥାପିତ କରିରଖୁଛି । ମୂଳ ଇଂରାଜୀ ଲେଖାଟିର ଟାଇଟଲ୍ ହେଲା – A Kind of Loving ଅର୍ଥାତ୍ 'ପ୍ରେମର ଏକ ପ୍ରକାର' । ଏଥିରେ ସର୍ ବ୍ରାୟାଁ ଏକ ବୃଦ୍ଧା ଇଂରେଜ ମହିଳାଙ୍କର ପ୍ରେମର ଏକ ଅପୂର୍ବ ଦୃଷ୍ଟାନ୍ତ ବର୍ଣ୍ଣନା କରି, ଏହିପରି କହିଛନ୍ତି –

''ଏ ଜଗତ ଓ ଜୀବନରେ କେଉଁ କର୍ମକୁ ଆମେ ପ୍ରକୃତ ଉଚ୍ଚ ମୂଲ୍ୟ ଦେବା ? ଅର୍ଥାତ୍ ମନୁଷ୍ୟର କି ପ୍ରକାର ସିଦ୍ଧିକୁ, ଆମେ ପ୍ରକୃତରେ ଶ୍ଳାଘ୍ୟ ଓ ସ୍ପୃହଣୀୟ ମନେ-କରିବା ? ମୋ ମତରେ ଏହି ଜଗତ ଓ ଜୀବନରେ କେବଳ ଦୁଇଟି କଥାହିଁ

* ବନରବି, ୩ୟ ବର୍ଷ, ପଞ୍ଚମ ସଂଖ୍ୟା, ନଭେମ୍ବର ୧୯୭୨ ।

ଯଥାର୍ଥରେ ପ୍ରଶଂସନୀୟ ଓ ସ୍ପୃହଣୀୟ । ସେ ଦୁଇଟି ହେଲେ– ପ୍ରେମ ଓ ସାହସ । ଆମେ ଯେତିକି ଯେତିକି ବୟସରେ ଆଗେଇ ଚାଲିବା, ସେତିକି ସେତିକି ଦେଖିବା ଯେ, ଜଗତରେ ଆଉ ସବୁ କଥାକଥିତ ସିଦ୍ଧି ବା ଭୋଗ କେବଳ ମାୟା, ଅନିତ୍ୟ ଓ ଅସ୍ଥାୟୀ । କିନ୍ତୁ ଏକମାତ୍ର ସାହସ-ସହିତ-ସଂଯୁକ୍ତ ପ୍ରେମ ହିଁ ଏ ଜୀବନ ଓ ଜଗତରେ ଶାଶ୍ୱତିକ ସତ୍ତା ଲାଭକରିଥାଏ । ଆମେ ନାନା ବାସନା-କାମନା ଦ୍ୱାରା ଅନୁପ୍ରାଣିତ ହୋଇ ଏଇ ଜଗତରେ ନାନା ସଂଘର୍ଷରେ ମାତି ଜୀବନ ଯାପନ କରୁ । କିନ୍ତୁ ଶେଷରେ ଦେଖୁଁ ଯେ, ''ଏ ସବୁ କାହିଁକି, କାହାପାଇଁ ବା କିପାଇଁ କଲି ?'' – ଏ ପ୍ରଶ୍ନର ସିଧା, ସହଜ ଉତ୍ତର ଆମକୁ ମିଳେ ନାହିଁ । ଏହି କ୍ଷୟ-ମରଣ-ଶୀଳ ଅବୋଧ ଜୀବନରେ ଏକମାତ୍ର ସାର୍ଥକତା, ଯାହାକି ଅମୃତତ୍ୱର ଆସ୍ୱାଦ ଆମକୁ ଦେବ, ତାହା ହୁଏତ କେବଳ ତ୍ୟାଗସାହସ-ମୂଳକ ପ୍ରେମ । କବି ବ୍ଲେକ୍ ହୁଏତ ଯଥାର୍ଥରେ କହିଛନ୍ତି ଯେ, ''ଆମକୁ ଏହି ପୃଥିବୀରେ କିଛି କାଳ ପାଇଁ ଛାଡ଼ିଦିଆଯାଉଛି– ଏହି କାରଣରୁ ଯେ, ଆମେ ଯେପରି ଏଠି ସମଗ୍ର ଭାର ବହନ କରିବାକୁ ଶିଖିବା ।'' ସର୍ ଫ୍ରାନିସ୍ ଡ୍ରେକ୍‌ଙ୍କର ପ୍ରସିଦ୍ଧ ପ୍ରାର୍ଥନା ତେଣୁ ଏହିପରି ଥିଲା– ''ହେ ପ୍ରଭୋ, ତୁମେ ତୁମର ଦାସକୁ କୌଣସି ଗୁରୁ କର୍ତ୍ତବ୍ୟର ଦାୟିତ୍ୱ ଯଦି ଦିଅ, ତେବେ ତା' ସାଥିରେ ଏହି ଜ୍ଞାନ ମଧ୍ୟ ଦିଅ ଯେ, ଦାୟିତ୍ୱର ଆରମ୍ଭ ବଡ଼ କଥା ନୁହେଁ, ତାହାକୁ ଆଗେଇନେଇ ଶେଷ ଲକ୍ଷ୍ୟସ୍ଥଳରେ ପହଁଚେଇବା ହିଁ ଯଥାର୍ଥ ଗୌରବ ।''

''ଆଜି କାଗଜରେ କେମ୍ବର୍ଲି ଜିଲାର ୭୫ବର୍ଷ ବୟସ୍କା ଏକ ଦରିଦ୍ର ବୃଦ୍ଧାଙ୍କର ବିଷୟ ପାଠକରିହିଁ ମୁଁ ଏ ସବୁ ଲେଖୁଛି । ଦରିଦ୍ର ହେଲେହେଁ ଏହି ଏକାକିନୀ ବୃଦ୍ଧା ମହତ୍-ଚିତ୍ତ-ଶାଳିନୀ ଏବଂ ଅସାଧାରଣ ଭାବରେ ସାହସିନୀ । ବହୁବର୍ଷ ଧରି, ଏହି ମହିଳା ନିଜକୁ କେବଳ ରାସ୍ତାର ବୁଲା କୁକୁରମାନଙ୍କର ସେବାରେହିଁ ଆତ୍ମୋତ୍ସର୍ଗ କରିଚାଲିଛନ୍ତି । ମୁଁ ଏହି ମହୀୟସୀ ମହିଳାଙ୍କ ସମ୍ପର୍କରେ ହିଁ ଛଅବର୍ଷତଳେ ଏହି ପତ୍ରିକାରେ ଲେଖିଥିଲି –

''କୁକୁରମାନଙ୍କ ବିଶ୍ୱାସ ଓ ସ୍ନେହ ଅର୍ଜନ କରି ସେମାନଙ୍କର ସେବାରେ ଯେତେ ଲୋକ ଆତ୍ମନିୟୋଗ କରିବାର ଜଣାଅଛି, ସେ ସମସ୍ତଙ୍କ ମଧ୍ୟରେ ଶ୍ରେଷ୍ଠ-ସ୍ଥାନ ପାଇବେ ସରେ ଜିଲ୍ଲାର କେମ୍ବର୍ଲି ନାମକ ଛୋଟ ସହରରେ ବାସକରୁଥିବା ଜଣେ ବୃଦ୍ଧା । ଯଦି କେହି ପାଠକ କେବେ ସେହି ସହରକୁ ଯିବେ, ତେବେ ସେ ତା'ର ପ୍ରଧାନ ରାସ୍ତାଟିକୁ ସଦାବେଳେ ଅତ୍ୟନ୍ତ ଜନଗହଳ ଥିବାର ଦେଖିବେ । ସେ ରାସ୍ତାରେ ନିରବଚ୍ଛିନ୍ନ ଭାବରେ ମୋଟର୍ କାର୍ ସବୁ ଏପଟ ସେପଟ ଦଉଡ଼ିବାର ମଧ୍ୟ ସେ ଦେଖିବେ । କିନ୍ତୁ ସେହି ଗହଳି ଭିତରେହିଁ ସେ ଏକ ବିସ୍ମୟକର ଦୃଶ୍ୟ-

ମଧ୍ୟ ଦେଖିବାକୁ ପାଇବେ । ସେ ଦେଖିବେ ଯେ ଜଣେ ବୃଦ୍ଧା ସେହି ସହର ବଡ଼-ରାସ୍ତାର ପଦ-ପଥରେ ଧୀରେ ଧୀରେ ଗହଳି କାଟି ଚାଲିଛନ୍ତି ଏବଂ ତାଙ୍କର ଆଗ, ପଛ ଓ ଚାରିଆଡ଼େ ଘେରି ଚାଲିଛନ୍ତି ନାନା ପ୍ରକାରର କୁକୁର । ବୃଦ୍ଧା, କିରାସିନି-ପଟା-ତିଆରି ଏକ ଠେଲାଗାଡ଼ି ନିଜେ ପେଲୁଥିବେ । କୁକୁରମାନଙ୍କ ଭିତରୁ ଯେଉଁ ଗୁଡ଼ିକ ଅଧିକ ଆଦର ଯତ୍ନ ଦରକାର କରନ୍ତି, ସେଗୁଡ଼ିକ ସେହି ଗାଡ଼ି ଭିତରେ ବସିଥିବେ ଏବଂ ଆଉ ସବୁ ଗୁଡ଼ିକ ସେହି ଗାଡ଼ି ସହିତ ଚକରେ ବନ୍ଧାଥିବେ । ବୁଢ଼ୀ ଏହି ପ୍ରକାରେ, ତା'ର କୁକୁରମାନଙ୍କୁ ପ୍ରତ୍ୟହ ଦୁଇ ଘଣ୍ଟା ବାହାରେ ବୁଲାଇଆଣିଥାଏ । କୁକୁରମାନେ ଏହି ଦୁଇଘଣ୍ଟାର ଭ୍ରମଣକୁ ଅତ୍ୟନ୍ତ ଉପଭୋଗ କରିଥାନ୍ତି । ବୁଢ଼ୀର ଚାରିପାଖେ କୁକୁରମାନେ ଯେପରି ଲାଂଜ ଓ ପଛ ହଲାଇ ଚାଲିଥାନ୍ତି, ସେହିଥିରୁ ସେମାନଙ୍କର ଆନନ୍ଦ ବାରି ହୋଇଯାଉଥିବା ଏବଂ ବୁଢ଼ୀ ପ୍ରତି ସେମାନେ କି ପରିମାଣରେ କୃତଜ୍ଞ ତାହା ଯେଉଁମାନେ କୁକୁରମାନଙ୍କ ସମ୍ବନ୍ଧରେ କିଛି ହେଲେ ଜାଣନ୍ତି, ତାହା ସେମାନେ ସହଜରେ ଜାଣିପାରୁଥିବେ ।

ପରିତ୍ୟକ୍ତ ବୁଲାକୁକୁରଗୁଡ଼ିକର ଏହି ପରମ କଲ୍ୟାଣକର୍ତ୍ତ୍ରୀ ବୃଦ୍ଧା ଏକ ଅତ୍ୟନ୍ତ ଦରିଦ୍ର ନାଗରିକ । ସେ ସରକାରଙ୍କଠାରୁ ଯେଉଁ ସାମାନ୍ୟ ବାର୍ଦ୍ଧକ୍ୟ ପେନ୍‌ସନ୍ ପାଏ, ସେଥିରେ ହିଁ ଚଳିଥାଏ । ସେ ପୁଣି ଥାଏ ଏକା ଏକା ଏବଂ ତା'ର ବୟସ ହେଲାଣି ସତୁରି । ଅଥଚ, ସେହି ସାମାନ୍ୟ ପେନ୍‌ସନ୍ ଉପରେ ନିର୍ଭର କରି ହିଁ, ସେ ଗତ କୋଡ଼ିଏ ବର୍ଷଧରି, ସେ ଅଞ୍ଚଳର ଯେତେ ଦୁଃସ୍ଥ, ଉପେକ୍ଷିତ ସାରମେୟ, ସେମାନଙ୍କର ମାନବୋଚିତ ଆତିଥ୍ୟ ପାଇଁ, ସେ ତା'ର କୁଟୀର ଦ୍ୱାର ଦିବାରାତ୍ରି ଉନ୍ମୁକ୍ତ ରଖିଛି । ଏହି ପ୍ରେମମୟୀ ସାହସିନୀ ମହିଳା, ଯୀଶୁଖ୍ରୀଷ୍ଟଙ୍କ ମହତ୍ ବାଣୀକୁ– "କାଲି କ'ଣ ଖାଇବି-ପିଇବି, ଏକଥା ଭାବି ତମେ ଜୀବନରେ ଆଦୌ ଦୁଶ୍ଚିନ୍ତା-ଗ୍ରସ୍ତ ହେବ ନାହିଁ" – ଯେପରି କି ଅକ୍ଷରେ ଅକ୍ଷରେ ପାଳନ କରିଆସୁଛି । କାରଣ ବାର୍ଦ୍ଧକ୍ୟ-ପେନ୍‌ସନ୍, ଜଣେ ଲୋକର ଚଳାଚଳ ପାଇଁ ଯଥେଷ୍ଟ ନଥିଲାବେଳେ ଏହି ମହିଳା, ବରାବର ଦଳେ କୁକୁରଙ୍କୁ ଉତ୍ତମ ଖାଦ୍ୟ ଓ ବସବାସ ଦେଇ କେବଳ ପାଳନ କରିଥାଏ ନୁହେଁ, ତା' ଦ୍ୱାରରେ ଠିଆହେଲେ, କେବେ କୌଣସି ଦୁଃସ୍ଥ କୁକୁରକୁ ସେ ଫେରାଇ ଦେବାର ମଧ୍ୟ ଜଣାନାହିଁ । କେତେବର୍ଷ ତଳେ ମୁଁ ଏହି ବୃଦ୍ଧାଙ୍କ ନିକଟକୁ ତାଙ୍କର ଏହି ପଶୁ-ସେବାରେ ମୁଗ୍‌ଧ ହୋଇ କିଛି ସାମାନ୍ୟ ଦାନ ପଠାଇଦେଇଥିଲି । ତାହା ସେ କୃତଜ୍ଞତାର ସହିତ ଗ୍ରହଣକରି ଲେଖିଥିଲେ, "ବେଳେ ବେଳେ ମୁଁ ଦେଖିଛି ଯେ ମୋ କୁକୁରମାନଙ୍କର କାଲିର ଖର୍ଚ୍ଚ ପାଇଁ ମୋ ପାଖରେ ଆଉ ଏକ ପେନି ମଧ୍ୟ ନାହିଁ । ଏପରି ସଂକଟମାନଙ୍କରେ ମୁଁ ରାତି

ଦୁଇଟାରୁ ଉଠିପଡ଼ି ପ୍ରଭୁଙ୍କଠାରେ ଜାନୁପାତ କରି କେବଳ ପ୍ରାର୍ଥନା କରେ ଏବଂ ବରାବର ସକାଳକୁ ତମରି ଦାନ ପରି, କୌଣସି ନା କୌଣସି ଠାରୁ ସାହାଯ୍ୟ ଆସି ପହଞ୍ଚିଯାଏ । ମୁଁ ବରାବର ମନେକରିଥାଏ ଯେ, ଏହି ଦୁଃସ୍ଥ, ଦୁର୍ଗତ, ମୂକ ପ୍ରାଣୀ-ଗୁଡ଼ିକ ସେହି ପ୍ରଭୁଙ୍କର ହିଁ ପିଲାପିଲି – ମୁଁ କେବଳ ସେମାନଙ୍କର ଦେଖାଦେଖି କରୁଛି । ପ୍ରଭୁ ଯୀଶୁଙ୍କ ଜନ୍ମ ପାଇଁ ଯାହାର ଘୋଡ଼ାଶାଳ ସଜା ହୋଇ ରହିଥିଲା, ତା'ର ନାମ କେହି ଜାଣନ୍ତି ନାହିଁ । ମୁଁ ମନେକରି ଆସିଛି ଯେ, ମୁଁ ଯେପରିକି ତାଙ୍କରି ପୁନରାଗମନ ପାଇଁ, ଅଚିହ୍ନା ରହି, ଅଶ୍ୱଶାଳାଟିଏ ସଜାଇ ରଖିଛି ମାତ୍ର ।''

ଯୀଶୁ କହିଥିଲେ– ''ହେ ଭାଇମାନେ, ତମେ ଯେଉଁ ସେବା-ଚର୍ଚ୍ଚା ଅବହେଳିତ ଓ ଦୀନତମଙ୍କୁ ଦେବ, ତାହାହିଁ ମୋର ସେବା-ଚର୍ଚ୍ଚା ବୋଲି ଜାଣିବ ।'' ଏହି ମହୀୟସୀ ବୃଦ୍ଧା କେଟୀ ୱାର୍ଡ଼, ଯୀଶୁଙ୍କର ଏହି ଉଦାର ବାଣୀକୁ ଅକ୍ଷରେ ଅକ୍ଷରେ ପାଳନ କରି ଆସୁଛନ୍ତି । ତାଙ୍କର ସେହି ଅସାଧାରଣ ସାହସିକ ହୃଦୟ ଅଛି, ଯାହାକି ସଂସାରର ଅବହେଳିତ ଓ ଅନାକାଂକ୍ଷିତକୁ ପ୍ରେମ ଦେବାକୁ ଅକୁଣ୍ଠିତ ଭାବରେ ବାହାରିପଡ଼େ । ସାମାନ୍ୟ ବାର୍ଦ୍ଧକ୍ୟ-ଭତ୍ତା ଉପରେ ନିର୍ଭର କରି କେଟୀ ୱାର୍ଡ଼ ଏବ ସରିକି ୩୦୦ଟି କୁକୁରକୁ ଦାଣ୍ଡରୁ ଆଣି ଓ ସେମାନଙ୍କର ଉତ୍ତମ ହେପାଜୀତ କରି, ସେମାନଙ୍କୁ ପୁଣି ଭିନ୍ନ ଭିନ୍ନ ଭଦ୍ରଜନମାନଙ୍କ ଘରେ ରଖାଇସାରିଛନ୍ତି । ବର୍ତ୍ତମାନ ମଧ୍ୟ ତାଙ୍କ ଆଶ୍ରୟରେ ରହିଛନ୍ତି ୨୯ଟି ନିରାଶ୍ରୟ ପ୍ରାଣୀ । ୭୦ ବର୍ଷ ବୟସରେ ଲୋକ ବିଶ୍ରାମ ଲୋଡ଼େ । କିନ୍ତୁ ଜଣା-ଶୁଣା ଦାରିଦ୍ର୍ୟ ଭିତରେ ହିଁ, ଏହି ୭୦ ବର୍ଷ ବୟସରେ ବୃଦ୍ଧା ଏହି ଯେ ୨୯ଟି ପ୍ରାଣୀର ସକଳ ଦାୟିତ୍ୱ ନିଜ ମୁଣ୍ଡକୁ ନେଇ, ଖରା, ବର୍ଷା ଓ ଶୀତରେ ଦିନ ନାହିଁ କି ରାତି ନାହିଁ, ଅନବରତ କଠୋର ପରିଶ୍ରମ କରିଚାଲିଛନ୍ତି ଏବଂ ସେଥିପାଇଁ ମଧ୍ୟ ପ୍ରତିବେଶୀମାନଙ୍କର ବରାବର ଶତ୍ରୁତା ଅର୍ଜନ କରୁଛନ୍ତି, ସେ ପ୍ରେମ ଓ ସାହସର ତୁଳନା କାହିଁ ?

ପ୍ରିୟ ପାଠକେ, ଏହିପରି ସେବା-ଓ-ପ୍ରେମର ଗୋଟିଏ ହେଲେ ଉଦାହରଣ ସମଗ୍ର ଏହି ଭାରତ ଉପମହାଦେଶରେ ପାଇପାରିବେ କି ? ତେବେ ଏହାକୁ ପୁଣ୍ୟ-ଭୂମି କହି ବା ନିଜ ଧର୍ମକୁ 'ସନାତନ' ଧର୍ମ କହି, କାହିଁକି ଆତ୍ମ-ପ୍ରତାରଣା ବା ଫମ୍ପା କଥାଗୁଡ଼ାକ କହି ଚାଲିଛେ । ଯେଉଁ ଧର୍ମ ବା ସମାଜରେ ପ୍ରେମ-ସେବା-ସାହସ ନାହିଁ, ଧରିନେବାକୁ ହେବ ଯେ ସେଠି 'ଜୀବନ' ହିଁ ନାହିଁ । ଏ ସମାଜରେ ତେଣୁ ଧର୍ମ ଓ ମୋକ୍ଷ କଥା ଛାଡ଼ିଦିଅ, ଏଠି କାମ ଓ ଅର୍ଥର ବା କି ପ୍ରକାର ମହନୀୟ ପ୍ରକାଶ ସମ୍ଭବ ହୋଇପାରେ ? ଏଠି ଆଜି ପ୍ରକୃତ ଜୀବନ ନ ଥିବାରୁ ହିଁ ଅର୍ଥାର୍ଜନ ବୋଇଲେ ବୁଝାଉଛି କେବଳ କଳାବଜାର, ଦୁର୍ନୀତି, ପାରସ୍ପରିକ ଠକାମି ବା

ରାଜନୈତିକ ଟାଉଟରି । ଏଡ଼ିସନ୍ ବା ହେନ୍‌ରିଫୋର୍ଡ଼ ବା ରକ୍‌ଫେଲର୍ ପରି, ଏଠି କେହି ରାସ୍ତାର ଶ୍ରମିକ ଉପରକୁ ଉଠି ନିଜ ନୈପୁଣ୍ୟରେ କୋଟିପତି ହେବାର ଗୋଟିଏ ହେଲେ ଦୃଷ୍ଟାନ୍ତ କାହିଁକି ନାହିଁ ? କାରଣ ଏ ଦେଶରେ ପ୍ରକୃତ ଜୀବନ ବା ସାହସ ନାହିଁ । ପରିବ୍ୟାପ୍ତ କେବଳ ଆଳସ୍ୟ, ଅଯୌକ୍ତିକ ବ୍ୟୟ ଓ ଅସାଧୁ-ମାର୍ଗ-ପ୍ରବଣତା । ପ୍ରକୃତ ଜୀବନ ନଥିବାରୁ ହିଁ ଏଦେଶରେ କେବଳ ପ୍ରଚୁର ଉତ୍ପାଦନଶୀଳ ଯୌନମିଳନ ଅଛି ବିବାହ ନାମରେ, କିନ୍ତୁ ନାହିଁ ପ୍ରେମ । ଏବଂ ଖ୍ରୀଷ୍ଟୀୟ ମୂଲ୍ୟର 'ତ୍ୟାଗ' ଏ ଦେଶରେ କେବଳ ଏକ ବିରାଟ ପ୍ରତାରଣା । ଏଠି ତଥାକଥିତ 'ତ୍ୟାଗ' ବଦଳରେ ଲୋକେ ପଦ-ପଦବୀ-ପେନସନ୍ ଦାବୀ ସହିତ ଜାତୀୟ ବୀରର ସମ୍ମାନ ମଧ୍ୟ ପାଉଛନ୍ତି । କି ଚମତ୍‌କାର ଓ ଶସ୍ତା ଆମ 'ତ୍ୟାଗ'ର ଆଦର୍ଶ । ସତୁରିବର୍ଷିଆ ଇଂରେଜ ବୃଦ୍ଧା, ଦରିଦ୍ର କେଟୀ ଓ୍ୱାର୍ଡ଼ର ପ୍ରେମ-ସେବା-ସାହସ-ତ୍ୟାଗର ସମାନ୍ତରାଳରେ ଗୋଟିଏ ହେଲେ ଦୃଷ୍ଟାନ୍ତ ତେଣୁ ଏ ଦେଶରେ ଖୋଜି ଯିବା ଆମେ କାହିଁକି ? ପାଠକେ ଧରିନେବେ ଯେ, ଆମ ସମାଜରେ ସେହି ପ୍ରକାର ତ୍ୟାଗ-ପ୍ରେମ-ସାହସର ଅଭାବରୁ ହିଁ, ଆମର ସାଂପ୍ରତିକ ବୀଭତ୍ସ ନୈତିକ ଅଧଃପତନ ଘଟିଚାଲିଛି ।

——

# ଓଡିଆମାନେ ପଛୁଆ ଓ ଦରିଦ୍ର କାହିଁକି*

ଉତ୍କଳର ମୃତ୍ତିକା ଯେ ସୁଜଳାସୁଫଳା ଓ ଶସ୍ୟଶ୍ୟାମଳା ଏଥିରେ ଦ୍ୱିମତ ନଥାଇ ପାରେ । କୁହଯାଏ ଯେ ଓଡ଼ିଶା, ଭାରତବର୍ଷରେ ଯେଉଁ କେତୋଟି ରାଜ୍ୟ-ଖାଦ୍ୟ-ଶସ୍ୟରେ ବଳକା, ସେମାନଙ୍କ ମଧ୍ୟରୁ ଏକତମ । ଏଇ କେତେବର୍ଷ ବାରମ୍ବାର ବାତ୍ୟା ବନ୍ୟା ଫଳରେ ଓଡିଶାରେ ଖାଦ୍ୟ ସଂକଟ ଏବେ ଦେଖାଦେଇଥିଲେହେଁ, ବହୁ ବର୍ଷ ଧରି ଓଡ଼ିଶା ବଙ୍ଗଳା, ବିହାର, ଆନ୍ଧ୍ରପ୍ରଦେଶ ଓ ସୁଦୂର କେରଳାଦି ରାଜ୍ୟ-ମାନଙ୍କୁ ଚାଉଳ ଯୋଗାଇଆସୁଥିଲା ଏବଂ ମାତ୍ର ଥରେହିଁ ମଉସୁମୀ-ବର୍ଷା ଓଡ଼ିଆ-ଚାଷୀକୁ ଅନୁକୂଳ ହୋଇଗଲେ, ପୁଣି ଓଡ଼ିଶା ଦାତାର ଆସନରେ ବସିବ ।

କିନ୍ତୁ ଏପ୍ରକାର ସ୍ୱର୍ଣ୍ଣପ୍ରସୂ ମାଟି ଥାଇ ମଧ୍ୟ, ମାତ୍ର ଥରେ ମୌସୁମୀ ବର୍ଷା ପ୍ରତିକୂଳ ହୋଇପଡ଼ିଲେ ଏ ରାଜ୍ୟରେ ହାହାକାର ପଡିଯାଉଛି କାହିଁକି ? ଲୋକେ ଓ ସରକାର ଏଥିପ୍ରତି ସଚେତନ ହୋଇ ରହିବା ଉଚିତ୍ ନୁହେଁ କି ? ସେହି ଅନୁସାରେ ଶସ୍ୟ-ଯୋଜନା ଓ ଶସ୍ୟ ସଂଗ୍ରହ କରିବା ମଧ୍ୟ ଏକାନ୍ତ ଉଚିତ୍ । କାରଣ ଏକ ଐତିହାସିକ ଜାତି ପକ୍ଷରେ ସବୁବେଳେ ଅଭାବଗ୍ରସ୍ତ, ବୁଭୁକ୍ଷୁ ବା ଦୟନୀୟ ବୋଲି ପେଟ ଦେଖେଇ ''ଖାଇବାକୁ ଦିଅ'' ''ଘର କରି ଦିଅ'' ''ଔଷଧ ଦିଅ'' ଚିତ୍କାର କରିବା ଏକ ଏକାନ୍ତ ଲଜ୍ଜାକର ଓ ଦୁଃଖଦ୍ୱାୟକ ମନୋବୃତ୍ତି, ଅଭ୍ୟାସ ଓ ପରିସ୍ଥିତି । ଏ ରାଜ୍ୟରେ ତ ଖାଲି ମନ୍ତ୍ରିମଣ୍ଡଳର ଉତ୍ଥାନ-ପତନ-ଲୀଳା ଚାଲିଛି । ଏହି ଐତିହାସିକ ଗୌରବମୟ ଜାତିଟା ଆଜି କିପରି ବିଶ୍ୱ-ଦୃଷ୍ଟିରେ ସମ୍ମାନିତ ଜୀବନ ଯାପନ କରୁ– ଏ ଚିନ୍ତା ତେବେ କିଏ କରିବ ?

ଆମର ଏହି ଦୃଢ଼ ଉତ୍ତର ଯେ– ଲୋକେହିଁ କରିବେ । ଅର୍ଥାତ୍, ତମେ, ମୁଁ ଓ ସେ, ଏହି ପ୍ରତ୍ୟେକ କରିବେ । ଧର୍ମୁ ନାୟକ, ଯଦୁ ମଲ୍ଲ, ରାମ ରଥେ, ବିଶି ମହାନ୍ତିଏ– ଏପରି ପ୍ରତ୍ୟେକ ଓଡ଼ିଆ ଆଜିଠାରୁ ପ୍ରତିଜ୍ଞାବଦ୍ଧ ହେବା ଉଚିତ୍ ଯେ, ଆମେ ଆଉ କାହାକୁ ହାତପତେଇବାନି, କାହାକୁ ପେଟଦେଖେଇବାନି, କାହାକୁ ମାଗି, ଆମର ନିଜର ଓ ବିଶେଷ କରି ଆମ ଜାତିର ଇଜ୍ଜତ ନଷ୍ଟ କରିବାନି ।

ଫସଲ ହେଲେ, ଓଡ଼ିଆ ଚାଷୀ କଞ୍ଚା ଟଙ୍କା ପାଇବା ପାଇଁ ତା' କୁଟୀରକୁ ପୂରାପୂରି ଖାଲି କରିଦେଇ ତା'ର ସୁନାର ଫସଲକୁ ଅନ୍ୟ ହାତକୁ ଟେକିଦେଉଛି ।

* ବନରବି, ୩ୟ ବର୍ଷ, ଷଷ୍ଠ ସଂଖ୍ୟା, ଡିସେମ୍ବର ୧୯୬୨ ।

ଶସ୍ୟ-ସଂଗ୍ରହକାରୀ ସରକାର ଓଡ଼ିଆ ଚାଷୀ ଏପରି କରିବାକୁ ଉତ୍ସାହିତ ନ କରନ୍ତୁ । **ଅନ୍ତତଃ** ପୂରା ଅଧିକ ଆଉ ଗୋଟିଏ ଆଗାମୀ ବର୍ଷ ପାଇଁ ଓଡ଼ିଆ ଚାଷୀ ଧାନ-ଚାଉଳ-ମାଣ୍ଡିଆ-ସୁଆଁ ରଖି, ସେଥିରୁ ବଳିଲେହିଁ ତାକୁ ବିକିବାକୁ ଦିଆଯାଉ । ମୌସୁମୀ ମାତ୍ର ବର୍ଷେ ବେନିୟମ ହୋଇଗଲେହିଁ, ଏହି ସ୍ୱର୍ଣ୍ଣପ୍ରସୂ ରାଜ୍ୟରେ ସ୍ୱାଧୀନତାର ପଚିଶି ବର୍ଷ ପରେ ମଧ ଯେ, 'ହା-ଅନ୍ନ'-ଚିତ୍‌କାର ଶୁଣାଯାଉଛି, ସେ ପ୍ରକାର କରୁଣ, ଦୟନୀୟ ପରିସ୍ଥିତି ତୁରନ୍ତ ବନ୍ଦ ହେଉ ।

ସାଧାରଣ ଓଡ଼ିଆ ଚାଷୀର ଘର ଖାଲି କରିଦେଇ ସରକାର ଏତେ ଲକ୍ଷ ଟନ୍ ଚାଉଳ ସାଇତିରଖି ଗର୍ବକରିବା ଏବଂ ଏଥିଯୋଗୁ ସ୍ୱାଭାବିକ ଅନାଟନ ଘଟିଲେ, ସରକାର ଫେର୍ ସେହି ଚାଷୀଙ୍କୁ ଦୟାବତାର ରୂପେ ଭିଖ ବାଣ୍ଟିବାରେ କି ଅପୂର୍ବ ଅର୍ଥନୀତି ବା ସମାଜନୀତି ନିହିତ ବୁଝାପଡୁନି । ଅବଶ୍ୟ ଦେଣ-ନେଣ ସଭ୍ୟ ସମାଜୋଚିତ ଏବଂ ବିଶ୍ୱଜନୀନ ଆର୍ଥିକ ବ୍ୟବସ୍ଥା । ଆତିଥ୍ୟବତ୍ସଳ ଓଡ଼ିଆ ଚିରକାଳ ଅନ୍ୟମାନଙ୍କୁ ଅକୁଣ୍ଠିତ ଚିତ୍ତରେ ଗ୍ରାସ-ବାସ ଦେଇଆସିଛି । ସେହି ମହନୀୟ ପରମ୍ପରା ଭାଙ୍ଗିପଡ଼ିବା ଏକାନ୍ତ ଅନୁଚିତ ହେବ ।

କିନ୍ତୁ କି ରହସ୍ୟମୟ କାରଣ ଯୋଗୁ ଏ ମାଟିରେ ବହିରାଗତ ଲୋକେ ସଭ୍ୟ-ଭବ୍ୟ ସ୍ୱଚ୍ଛଳ ଜୀବନ ଯାପନ କରୁଥିଲାବେଳେ, ଏଇ ମାଟିର ଲକ୍ଷ ଲକ୍ଷ ସନ୍ତାନ ଏବଂ ସାଧାରଣ ଓଡ଼ିଆ ନାଗରିକ ଦୀନ-ଦୟନୀୟ ଜୀବନ ଯାପନ କରିବାର ଆମେ ଚାରିଆଡ଼େ ଦେଖୁ ? ଆଜି, ଓଡ଼ିଶା ରାଜ୍ୟରେ ଗଣ୍ଡା ଗଣ୍ଡା କଲେଜରେ ଗଣ୍ଡା ଗଣ୍ଡା ଅର୍ଥନୀତିବିଦ୍ ଅଧ୍ୟାପକ । ସେମାନେ ନିଜ ରାଜ୍ୟରେ ଘଟିଚାଲିଥିବା ଏପ୍ରକାର ଆର୍ଥିକ ବିରୋଧାଭାସ ସଂପର୍କରେ ସ୍ୱକୀୟ ଅନୁଶୀଳନ କରି, ନିଜ ଦେଶବାସୀଙ୍କି ବାଟ ଦେଖାଇବା ଉଚିତ ନୁହେଁ କି ? କେବଳ ସୁଜଳାସୁଫଳା ସ୍ୱର୍ଣ୍ଣପ୍ରସୂ ମୃତ୍ତିକା ନୁହେଁ, ଖନିଜ, ବନଜ, ଜନଜ ଏହି ତ୍ରିବିଧ ଜାତୀୟ ସଂପଦରେ ମଧ ଓଡ଼ିଆ ଭାରତବର୍ଷର ଅନ୍ୟ ପ୍ରଦେଶ-ବାସୀଙ୍କଠାରୁ ଏକ ଉଚ୍ଚକୋଟୀର ମାଲିକ । କିନ୍ତୁ ଏ ସବୁ ପ୍ରକାର ପ୍ରାକୃତିକ ଅନୁକୂଳତା ଥାଇ ମଧ, ଓଡ଼ିଆ କେବଳ ଲୋକ-ଚକ୍ଷୁ ଓ ଲୋକ-ଚିନ୍ତାରେ ନୁହେଁ, ସରକାରୀ ଗଣନାରେ ମଧ, ଭାରତବର୍ଷର ଦରିଦ୍ରତମ ଜାତି । ତା'ର ବାର୍ଷିକ ସାଧାରଣ ଆୟ ସକଳ ଭାରତବାସୀଙ୍କ ଭିତରେ ସବୁଠାରୁ କମ୍ । ୧୯୭୨ ଅକ୍ଟୋବର ୧୮ ତାରିଖରେ ସୁପ୍ରସିଦ୍ଧ ଇଂରାଜୀ ଦୈନିକ 'ଇଣ୍ଡିୟାନ୍ ଏକ୍‌ସପ୍ରେସ୍'ରେ ଏହା ପ୍ରକାଶିତ ।

ଏଇ ଲେଖକ ଗଙ୍ଗାଧର ମେହେର କଲେଜର ପ୍ରିନ୍‌ସପାଲ୍ ଥିଲାବେଳେ ସମଗ୍ର ଓଡ଼ିଶାରେ କେବଳ ସେହି କଲେଜରେ କମର୍ସ ବା ବ୍ୟବସାୟ-ଶାସ୍ତ୍ର

ଅଧ୍ୟାପିତ ହେଉଥିଲା । ବି. କମ୍. ପରୀକ୍ଷା ନେଇ ଭବିଷ୍ୟତର ଗ୍ରାଜୁଏଟ୍‌ମାନେ ଯେତେବେଳେ କଲେଜ ଛାଡ଼ିବା ଉପରେ, ପ୍ରିନ୍‌ସପାଲ ଭାବରେ ଲେଖକ ସେମାନଙ୍କୁ ଏକତ୍ର ଭେଟି, ପ୍ରତିବର୍ଷ ବିଦାୟବାଣୀ ଶୁଣାଉଥିଲା । ପ୍ରତିବର୍ଷ ସେକାଳ-ଓଡ଼ିଶାର ଏକମାତ୍ର ଏହି ବିଦାୟୀ ଭବିଷ୍ୟତ-କମର୍ସ-ଗ୍ରାଜୁଏଟ୍‌ମାନଙ୍କୁ ଏହି ଲେଖକ ବରାବର କହିରଖୁଥିଲା– ''ବାପାମାନେ, ତମେମାନେ କମର୍ସ ପାସ୍‌କରି, କ'ଣ ଖାଲି ଚାକିରି କରିବ ? ସାହସର ସହିତ ବାଣିଜ୍ୟ ବ୍ୟବସାୟର ରହସ୍ୟମୟ ଗର୍ଭକୁ ଝାଁପଦେଇ, ତା' ଭିତରୁ ଉଠିବନିକି ଲକ୍ଷପତି ବା କୋଟିପତି ହୋଇ ? ମୁଁ ଏକ ଦରିଦ୍ର ଓଡ଼ିଆ । ମୁଁ କେବେ ଧନୀ ହେବାର ସ୍ୱପ୍ନ ଦେଖିନି, କି ମୋ ପିଲେ କେବଳ କୌଣସିମତେ ଧନୀ ହେବେ, ୟା ମଧ୍ୟ ଚାହିଁନାହିଁ । କିନ୍ତୁ ମୁଁ ସୁଖରେ ମରିବି, ଯଦି ମୋ-କଲେଜରୁ-କମର୍ସ-ବିଦ୍ୟା-ହାସଲ-କରିଥିବା କେତେକ ମୋର ଛାତ୍ରଙ୍କୁ, ମୁଁ, ଦେଖି ଯିବି ଲକ୍ଷପତି ବା କୋଟିପତି ହୋଇ ଠିଆହେବାର ସ୍ୱାଧୀନ ବ୍ୟବସାୟ କରି । ଦୀନଦରିଦ୍ର ବୋଲି ମୋ ଜାତି ସମଗ୍ର ଭାରତବର୍ଷରେ ନିନ୍ଦିତ ଓ ଘୃଣିତ – ମୁଁ ଏହା ରୂପାନ୍ତରିତ ହେବା ଚାହେ । ମୁଁ ଦରିଦ୍ର ଥାଏ ପଛେ, ମୋ' ରାଜ୍ୟରେ ଅନ୍ତତଃ ଏକ ଡଜନ୍ କୋଟିପତି ଠିଆହେବା ଦେଖି ମୁଁ ଯେପରି ମରେ, ମୋର ଜାତିର ଦାରିଦ୍ର୍ୟ-ଅପମାନ ସଂପୂର୍ଣ୍ଣ ପୋଛିହୋଇଯାଇଥିବାର ଦେଖି ମୁଁ ଯେପରି ମରେ ।''

ସେ ଦିନର ସେହି ଭାବ-ପ୍ରବଣ ପ୍ରିନ୍‌ସପାଲ ଆଜି ମୃତ୍ୟୁ-ରୂପକ-ମାଇଲଖୁଣ୍ଟରେ ବେଶୀ ଦୂରରେ ନାହିଁ । ସେ ଭାବୁଥିଲା ଯେ, ସ୍ୱାଧୀନତାର ପଚିଶିବର୍ଷ ଭିତରେ ଡଜନ-ଡଜନ ମନ୍ତ୍ରିମଣ୍ଡଳର-ଶାସନ-ଗୁଣରେ ଓଡ଼ିଶା ରାଜ୍ୟଟା, ଧୀରେ ଧୀରେ ହେଲେ ହେଁ ତା'ର ସ୍ୱପ୍ନ ଆଡ଼କୁ ନିଶ୍ଚିତ ଭାବରେ ହୁଏତ ଆଗେଇ ଚାଲିଛି । କିନ୍ତୁ ଏବର୍ଷର ବ୍ୟାପକ ହା-ଅନ୍ନ-ଚିତ୍କାର-ଓ ଅନାହାର-ମୃତ୍ୟୁ, ପୁଣି ଦୈନନ୍ଦିନ-ଖାଦ୍ୟ-ଓ-ଅନ୍ୟାନ୍ୟ-ନିତ୍ୟ-ବ୍ୟବହାର୍ଯ୍ୟ ଦ୍ରବ୍ୟର ଅକଳ୍ପନୀୟ ମହାର୍ଘତା, ସର୍ବୋପରି ଇଣ୍ଡିଆନ୍-ଏକ୍‌ସପ୍ରେସ୍‌ର ଊର୍ଦ୍ଧ୍ୱ-ଦତ୍ତ ଗଣନା-ଚିତ୍ର ଦେଖି, ଲେଖକ ଏକ ଉଦ୍‌ଭ୍ରାନ୍ତ ପରିହିଁ ଏହି ପ୍ରବନ୍ଧ ଲେଖିବସିଛି ।

ସ୍ୱର୍ଣ୍ଣପ୍ରସୂ ମୃତ୍ତିକା ଓ ବନଜ-ଖନିଜ-ଜଳଜ ସକଳ ପ୍ରକାର ପ୍ରାକୃତିକ ସମ୍ପଦର ଅଧିକାରୀ ହୋଇ ମଧ୍ୟ, ମୋର ଜାତି ଧରାରେ ଦ୍‌ରିଦ୍ରତମ ବୋଲି ଗଣିତ ହେବ କାହିଁକି ? କି ଲଜ୍ଜା, କି ଅପମାନ ଏହା ପ୍ରତ୍ୟେକ ଓଡ଼ିଆ ପ୍ରତି । କେହି ନେତା, କେହି ମନ୍ତ୍ରୀ ଏହି ସର୍ବାଧିକ-ଅଗ୍ରବିଚାରଣୀୟ ପ୍ରସଙ୍ଗ ପ୍ରତି ଧ୍ୟାନ ନ ଦେଇ, କେବଳ ବର୍ଷ-ପରେ-ବର୍ଷ ପିଲାଏ ମିଉଜିକାଲ୍-ଚେଆର୍ ଖେଳର ପ୍ରତିଯୋଗିତା କଲାପରି

କେବଳ ଶାସନ-ଚଉକୀ ପାଇଁ ପକା-ଉଠା-ଖେଳରେ ଲାଗିଥିବେ ? –ଯାହା-ଫଳରେ କି ଏ ରାଜ୍ୟ ସ୍ୱାଧୀନତାର ପଚିଶି ବର୍ଷ ପରେ ମଧ୍ୟ, ସବୁଥାଇ, ଏ ଉପମହାଦେଶରେ ସବୁଠାରୁ ଦୀନତମ ଓ ଅଧମତମ ଜାତି ହୋଇ ରହିଛି ?

ଆମ ଆଖିଆଗରେ ଗୋଟିଏ ବଙ୍ଗଳା ରାଜ୍ୟ ଦି' ଫାଳ ହୋଇଗଲା । ଲକ୍ଷ-ଲକ୍ଷ ଶରଣାର୍ଥୀ ପୂର୍ବବଙ୍ଗରୁ ଆସି କଲିକତାରେ ପଶିଲେ । ବଙ୍ଗଳାର ସର୍ବବିଧ ବ୍ୟବସାୟ-ବାଣିଜ୍ୟ ପକ୍ଷାଘାତଗ୍ରସ୍ତ ହୋଇପଡ଼ିଲା । ଅଥଚ, ପାଠକେ, ବଙ୍ଗାଳୀ-ଭାଇମାନଙ୍କର ସମଗ୍ର ଭାରତବର୍ଷରେ ଥିବା ପୂର୍ବର ପ୍ରତିପତ୍ତି ବା ସେମାନଙ୍କ ଜୀବନ ଧାରଣର ମାନରେ କିଛି ମାତ୍ର ଘାଟତି ଦେଖି ପାରିଲେ କି ? ଦିନେ ଓଡ଼ିଶାର ଚାଉଳ କଲିକତାରେ କିଲୋ ୩।୪ ଟଙ୍କାରେ ବିକ୍ରି ହେଉଥିଲା । କିନ୍ତୁ କଟକରେ ଚାଉଳ କିଲୋ ଏକଟଙ୍କା ବାରଣା ହୋଇଯିବାରେ ଯେଉଁ ପ୍ରକାର ଅସମ୍ଭାଳ ଅବସ୍ଥା ଦେଖାଯାଉଛି କଲିକତାରେ କେବେ ସେପରି ଦେଖାଯାଇଥିଲା କି ?

କାରଣ, ସାଧାରଣ ବଙ୍ଗାଳୀର ସାଧାରଣ ଓଡ଼ିଆଠାରୁ ବଜାରରେ କ୍ରୟ-ଶକ୍ତି ବହୁଗୁଣ ଅଧିକ । ଜଣେ ସାଧାରଣ ଓଡିଆର ଅଣ୍ଟାରେ ଦଶ-ପଇସିଟିଏ ଥିବା ଜାଗାରେ, ଜଣେ ସାଧାରଣ ବଙ୍ଗାଳୀର ପକେଟ୍‌ରେ ଆମେ ଦେଖିବାକୁ ପାଇବା ଅନ୍ତତଃ ଟଙ୍କାଏ ଏବଂ ସାଧାରଣ ତାମିଲ୍-ତେଲୁଗୁ-ବା-ପଞ୍ଜାବୀ ପାଖରେ ପାଇବା ଅନ୍ତତଃ ପାଞ୍ଚଟଙ୍କା ।

ସେମାନଙ୍କ ପକେଟ୍‌ରେ ଏତେ ଟଙ୍କା-ପଇସା ଥିଲାବେଳେ, ସ୍ୱର୍ଣ୍ଣପ୍ରସୂ-ଓ-ରତ୍ନଗର୍ଭା ମାଆର ସନ୍ତାନ ହୋଇ ସାଧାରଣ ଓଡ଼ିଆର ଅଣ୍ଟା ଖାଲି କାହିଁକି ? ବର୍ଷେ-ମାତ୍ର ମୌସୁମୀ ଦୟା ନ କଲେ ଏପ୍ରକାର ଲକ୍ଷ୍ମୀମନ୍ତ ରାଜ୍ୟରେ, ଦୁର୍ଭିକ୍ଷର ହାହାକାର ଉଠୁଛି କାହିଁକି ? କାହିଁକି ଓଡ଼ିଆ ଏପରି ରିକ୍ତ ଓ ଦୟନୀୟ, ସମଗ୍ର ଭାରତବର୍ଷ ଓ ସମଗ୍ର ବିଶ୍ୱରେ ?

କାରଣ, କଲିକତା ନେଇ ବଙ୍ଗ ଦେଶକୁ ବା ଗହମ ନେଇ ପଞ୍ଜାବ-ହରିୟାନାକୁ ସମଗ୍ର ଭାରତବର୍ଷର ଟଙ୍କା ପଇସା ସେହି ସେହି ରାଜ୍ୟମାନଙ୍କରେ ପୁଞ୍ଜୀଭୂତ ହେଲା ବେଳକୁ ଦରିଦ୍ର ଓଡ଼ିଆର କଷ୍ଟାର୍ଜିତ ଦଶପଇସିଗୁଡ଼ାକ ମଧ୍ୟ, ତା' ଅଣ୍ଟାରୁ ଅଜସ୍ର ଅନ୍ୟରାଜ୍ୟକୁ ବୋହିଚାଲିଛି, ଅଥଚ ବାହାରଆଡ଼ୁ ଓଡ଼ିଆର ଗାଂଜିଆରେ ଟଙ୍କା ଭର୍ତ୍ତି ହେବାର ବ୍ୟବସ୍ଥା ନାହିଁ ବା ଓଡ଼ିଆଏ ସେ ସମ୍ପର୍କରେ ସଚେତନ ମଧ୍ୟ ନୁହନ୍ତି । ଅନ୍ୟ ସକଳ ଜାତୀୟ କ୍ଷେତ୍ର ପରି ବାଣିଜ୍ୟ-ବ୍ୟବସାୟ-କ୍ଷେତ୍ରରେ ମଧ୍ୟ ଓଡ଼ିଆ ଚଷା ଥାଳିର ଭାତ ଅନ୍ୟକୁ ବିକିଦେଇ କିଛି ପଇସା ଅବଶ୍ୟ ବାହାରୁ ପାଉଛି । କିନ୍ତୁ ସେ ତା'ର ଓ ତା' ପିଲାପିଲିଙ୍କର ପେଟର କ୍ଷୁଧାକୁ ହତ୍ୟା କରିହିଁ

ଯେ, ସେ କାଲିର ଭାତକୁ ଆଜି ଦେଉଛି, ଏହି ସାମାନ୍ୟ-ଜୀବନ-ତଥ୍ୟଟା ଆମର ଏତେ ଏତେ ନେତା କେହି କିପରି ବୁଝିପାରୁନାହାନ୍ତି – ଭାବିଲେ ବିସ୍ମିତ ହେବାକୁ ପଡୁଛି । ଓଡ଼ିଆ ଚଷା ତା'ର କଂସାର ଭାତ ବିକିବାକୁ ବାଧ୍ୟ ହେଉଛି, କାରଣ, ସେହି ଭାତ ବିକିଲେ ଯାଇ ସେ ତା'ର, ତା'ର ସ୍ତ୍ରୀର ଓ ତା' ପିଲାପିଲିଙ୍କ ଲଜ୍ଜା-ଛାଦନ ପାଇଁ ସାମାନ୍ୟତମ ବସ୍ତ୍ରର ଯୋଗାଡ଼ କରିପାରିବ । ତେଲ, ଲୁଣ, ଲଙ୍କା, ସୋରିଷ– ଦୈନନ୍ଦିନ ଏ ସମସ୍ତ ବ୍ୟବହାର୍ଯ୍ୟ ଦ୍ରବ୍ୟ ପାଇଁ ଯେଉଁ ପଇସା ଦରକାର, ଓଡ଼ିଆ ଚଷା ତାହା କେବଳ ପାଇପାରେ ତାର ପେଟର ଭାତ ବିକିଲେ । ପୁଣି ସେହି ଭାତ ବିକିଲେ ଯାଇ ସେ ତା' ଝିଅକୁ ବିଭା ଦେଇପାରିବ ବା ତା' ପୁଅକୁ ଦି'ପତ୍ର ଭାଗବତ ପଢ଼େଇପାରିବ । ଏସବୁପାଇଁ, ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ, ସମଗ୍ର ଓଡ଼ିଆ ଜାତିର ଅଣ୍ଟାରୁ ପ୍ରତ୍ୟହ ଅଜସ୍ର ଭାବରେ ଅନ୍ୟ ରାଜ୍ୟମାନଙ୍କୁ ଟଙ୍କା-ଚାଲିଯାଉଛି । ଅନ୍ୟ ରାଜ୍ୟମାନଙ୍କରୁ ଓଡ଼ିଆ ପକେଟ୍‌କୁ ଟଙ୍କା ଆସି ଉଷୁମ କରିବାର କୌଣସି ବାଟ ନାହିଁ ।

ଏହି କାରଣରୁହିଁ ଓଡ଼ିଆ ଚିର-ଦରିଦ୍ର ଓ କ୍ରୟ-ଶକ୍ତିହୀନ ହୋଇ ପଡ଼ିରହିଛି ଭାରତର ଦରିଦ୍ରତମ ଜାତି ଭାବରେ । ବର୍ତ୍ତମାନ ପ୍ରତ୍ୟେକ ଓଡ଼ିଆ ସଚେତନ ରହିବା ଉଚିତ ଯେ, ତା' ରିକ୍ତ ଅଣ୍ଟାର ଦଶପଇସିଟି ମଧ୍ୟ ଯେପରି ଅନ୍ୟ ରାଜ୍ୟକୁ ଚାଲିନଯାଇ, କିପରି ହେଲେ ଅନ୍ୟ ରାଜ୍ୟରୁ କେତୋଟି ଦଶପଇସି ଆସି ତା' ମୁଣାରେ ପଶିବ । ଓଡ଼ିଆମାନେ ଏ ପ୍ରକାରେ ଜାଗ୍ରତ ନହେଲେ ବରାବର ଏକ ଦୀନ ଓ ହେୟ ଜାତି ହୋଇ ଯେ ରହିଥିବେ – ଏଥିରେ କୌଣସି ସନ୍ଦେହ ନାହିଁ ।

୨୫।୧୦।୧୯୭୨ର 'ସମାଜ' ତାର ଅଗ୍ରଲେଖା 'ଶିଳ୍ପ ସୂତ୍ରରେ ଓଡ଼ିଶାର ଶୋଷଣ''ରେ ଯାହା କହିଛନ୍ତି, ପ୍ରତ୍ୟେକ ଓଡ଼ିଆ ଓ ଓଡ଼ିଆ ଗୃହିଣୀ ତାଙ୍କ ଦୈନନ୍ଦିନ ଜୀବନରେ ସର୍ବଦା ସ୍ମରଣ ରଖନ୍ତୁ ଓ ସେହି ଅନୁସାରେ ଓଡ଼ିଆର କଷ୍ଟାର୍ଜିତ ଦଶ-ପଇସା ଅକୁଣ୍ଠିତ ଚିତ୍ତରେ ବାହାରକୁ ଫୋପାଡ଼ିଦେବା ପରିବର୍ତ୍ତରେ, ବାହାରୁ ଦଶ-ପଇସା କିପରି ଓଡ଼ିଆ ଘରେ ପଶିବ, ସେ ଦିଗରେ ଚେଷ୍ଟିତ ହୁଅନ୍ତୁ । କଟକ ନଗରରେ ତେଲଙ୍ଗା ସ୍ତ୍ରୀଲୋକେ କିପରି ଦିବାରାତ୍ରି ଲକ୍ଷ୍ମୀ ଅର୍ଜ୍ଜନରେ ଲାଗିଛନ୍ତି, ସେଥିରେ କି ଓଡ଼ିଆ କୁଳ ଲକ୍ଷ୍ମୀମାନଙ୍କର ଆଖି ଫିଟିବନି ? କିଛି ନହେଲେ ମଧ୍ୟ, ଏ ରାଜ୍ୟର ପୁରଲକ୍ଷ୍ମୀମାନେ ଘରେ ଘରେ ବଡ଼ି ଓ ଆଚାର କରି ତ ଦି'ପଇସା ଲାଭକରିପାରନ୍ତେ ? ଓଡ଼ିଶା କ'ଣ ବଡ଼ି ଓ ଆଚାର ମଧ୍ୟ ବାହାରୁ କିଣି ଖାଇବ ? ସେଥିପାଇଁ 'ସମାଜ' ଲେଖିଛନ୍ତି –

''ଏକା ସୂତା, ଲୁଗା ଓ ଚିନି ବାବଦରେ ଓଡ଼ିଶାରୁ ବର୍ଷକୁ ୫୦ କୋଟି ଟଙ୍କା

ବାହାରକୁ ଚାଲିଯାଉଛି । ୨୫ କୋଟି ଟଙ୍କାର ଚାଉଳ ଓଡ଼ିଶା ବାହାରକୁ ପଠାଇ, ଯଦି ୫୦ କୋଟି ଟଙ୍କାର ଚିନି ଓ ଲୁଗାକପଡ଼ା ଓଡ଼ିଶାକୁ ଆସିଲା, ତେବେ ୨୫ କୋଟି ଟଙ୍କା ଓଡ଼ିଶାରୁ ଶୋଷିହୋଇ, ବାହାରକୁ ଚାଲିଯାଉଛି କହିବାକୁ ହେବ । ଏପରିକି ଶୋରିଷ ତେଲ, ବାଦାମ ତେଲ, ବିଭିନ୍ନ ପ୍ରକାରର ଡାଲି, ପରିବା, କଦଳୀ, ଲଙ୍କାମରିଚ ସୁଦ୍ଧା ଓଡ଼ିଶା ବାହାରୁ ଆମଦାନୀ କରୁଛି । ଯଦି ଓଡ଼ିଶାରେ କୃଷିର ଉନ୍ନତି କରି ଆବଶ୍ୟକ ପରିମାଣ ଖାଇବା ଓ ପିନ୍ଧିବା ଉତ୍ପାଦନ କରାଯାଇ ନ ପାରିଲା, ତେବେ ଓଡ଼ିଶାର ଦାରିଦ୍ର୍ୟ ଦୂର ହେବ କିପରି ଓ ଓଡ଼ିଶାର ବେକାର ଲୋକଙ୍କୁ କାମ ମିଳିବ କିପରି ?''

ପ୍ରାୟ ୩୦ ବର୍ଷ ତଳେ ଏହି ଲେଖକ ଓଡ଼ିଶାର କୌଣସି ଏକ ରେଳ-ଷ୍ଟେସନ୍‌ରେ, ଗାଡ଼ିକି ଅପେକ୍ଷା କରିବା ଭିତରେ, ଜଣେ ଅଣ-ଓଡ଼ିଆ ସହଯାତ୍ରୀଙ୍କ ସହିତ କଥା ହୋଇ ଜାଣିଲା ଯେ, ତାଙ୍କର କଟକ ମାଲଗୋଦାମରେ ଗଦି ଅଛି ଏବଂ ସେ ବାହାରୁ କେବଳ ଲଙ୍କାମରିଚ ଆଣି ଓଡ଼ିଶାକୁ ଯୋଗାନ୍ତି ଏବଂ ତିରିଶବର୍ଷ ତଳେ ମଧ୍ୟ ତାଙ୍କର ବାର୍ଷିକ ବ୍ୟବସାୟ ଥିଲା ୧୭ ଲକ୍ଷ ଟଙ୍କା । ଏହି ଲେଖକ, କେବଳ ଲଙ୍କାମରିଚ ଯୋଗାଇ ଜଣେ ଲୋକ ଏତେ ଟଙ୍କା ଅର୍ଜନ କରିପାରେ, ଏହା ଭାବି ସେତେବେଳେ ସ୍ତବ୍ଧ ହୋଇ ଯାଇଥିଲା । ଓଡ଼ିଶାରେ କି ଲଙ୍କାମରିଚ ବିକିବାକୁ ଲୋକ ନାହାନ୍ତି ବା ଓଡ଼ିଶା ମାଟି କ'ଣ ଓଡ଼ିଆମାନଙ୍କୁ ଲଙ୍କାମରିଚ ମଧ୍ୟ ଯୋଗାଇ ପାରନ୍ତା ନାହିଁ ? ହୁଏତ ଏବକୁ ୩୦ ବର୍ଷ ତଳର ସତର ଲକ୍ଷ ଟଙ୍କା ହୁଏତ କୋଟି ସଂଖ୍ୟାକୁ ଆସିଯିବଣି । ଅର୍ଥାତ୍ ୩୦ ବର୍ଷ ଭିତରେ ଓଡ଼ିଆର ପକେଟ୍ କେବଳ ଲଙ୍କାମରିଚ ବାବଦରେ ହିଁ ସେହି ପରିମାଣରେ ଖାଲି ହୋଇ-ଚାଲିଛି । ଏ ପ୍ରକାର ଲଜ୍ଜାକର ଶୋଷଣ କି ଅଚିରେ ବନ୍ଦ ହେବା ଉଚିତ୍ ନୁହେଁ ?

ଏ'ତ ଗଲା ଲେଖକର ତିରିଶି ବର୍ଷ ତଳର ଅଭିଜ୍ଞତା । ତା' ସାଂପ୍ରତିକ ଅଭିଜ୍ଞତା ଓଡ଼ିଆମାନଙ୍କ ପ୍ରତି ଆହୁରି ଲଜ୍ଜାକର ବୋଲି ସେ ମନେକରେ ।

ଓଡ଼ିଆମାନେ ଏକ ଐତିହାସିକ ଜାତି । ସେମାନେ ସେମାନଙ୍କର କଳା, ଶିଳ୍ପ, ସାହିତ୍ୟ, ସ୍ଥାପତ୍ୟ, ନୃତ୍ୟ ଓ ଏପରିକି ଭୋଜନ ପ୍ରଣାଳୀରେ ମଧ୍ୟ ନିଜର ଏକ ସ୍ୱତନ୍ତ୍ର ବୈଶିଷ୍ଟ୍ୟ ପ୍ରତିଷ୍ଠା କରିପାରିଥିଲେ । କିନ୍ତୁ ସ୍ୱକୀୟ-ବିଶିଷ୍ଟତା-ସଂପନ୍ନ ଏହି ଐତିହାସିକ ଜାତି, କ'ଣ 'ଜଳଖିଆ' ଖାଇ ଜାଣିନଥିଲା ? କଟକ-ଭୁବନେଶ୍ୱରରେ ଆଜି କଲିକତାରୁ ଲୋକ ଆସି ଓଡ଼ିଶାର ଜଳଖିଆ-ବ୍ୟବସାୟକୁ ଏକଚାଟିଆ ଅଧିକାର କରିବସିଲେଣି । ଐତିହାସିକ ଓଡ଼ିଆଙ୍କୁ କଲିକତୀଏ ଜଳଖିଆ-ରୂପକ ଅଫିମ ଖୁଆଇ ପାରିବା ଫଳରେ, ଆମ ଆଖି ଆଗରେ ଓଡ଼ିଆ ଅଣ୍ଟାର କଷ୍ଟାର୍ଜିତ ଦଶ-

ପଇସି ଗୁଡ଼ିକ ସହସ୍ର ସହସ୍ର ଟଙ୍କା ଆକାରରେ ପ୍ରତ୍ୟହ ବୋହି ଚାଲିଛି କଲିକତାକୁ । ସନ୍ଦେଶ ଖାଇ ସଭ୍ୟ ହେବା ଆଶାରେ ଓଡ଼ିଆ ତା'ର ନିଜର କ୍ରୟ-ଶକ୍ତି ଅନ୍ୟ-ହାତକୁ ବଢ଼ାଇଦେଉଛି – ନିଜ ମାଟିରେ ସେ ନିଜେ ରହୁଛି ଦରିଦ୍ର । ଅଥଚ, ଓଡ଼ିଆଏ ନିଜର ଚକୁଳି-ଚିତୋଉ-ଏଣ୍ଡୁରି-ଛୁଞ୍ଚିପତ୍ର-କାକରା-ମଣ୍ଡା-ଆରିସା-ପାରିଜାତ-ଜଗନ୍ନାଥବଲ୍ଲଭ ଇତ୍ୟାଦି ବହୁବିଧ ଅପୂର୍ବ-ସ୍ୱତନ୍ତ୍ରତା-ମଣ୍ଡିତ ପିଠାପଣାଦିକୁ ନବୀକୃତ କରି ବିକିପାରିଲେ ଓଡ଼ିଆଙ୍କ ଟଙ୍କା ଓଡ଼ିଆଙ୍କ ହାତରେ ରହିବା ସାଥେ ସାଥେ, ବାହାର ଲୋକେ ତ ଜାଣନ୍ତେ ଅନ୍ତତଃ ଯେ, ଓଡ଼ିଆମାନଙ୍କର ନିଜର ଏକ ଜାତୀୟ ଆପ୍ୟାୟନ-ଓ-ଭୋଜନ ପ୍ରଣାଳୀ ଅଛି ? ଆମେ ଟଙ୍କା ଓ ଜାତୀୟତା ଉଭୟକୁ ଅକୁଣ୍ଠ ଚିତ୍ତରେ ପ୍ରତ୍ୟହ ଜଳାଞ୍ଜଳି ଦେଇଚାଲିଛେ । ଫଳରେ ଓଡ଼ିଆ ସମଗ୍ର ଭାରତବର୍ଷ ବା ପୃଥିବୀରେ, ଦରିଦ୍ରତମ ଜାତି ବୋଲି ବିବେଚିତ ହେବା ଓ ସେହିପରି ଦୀନ ଅବସ୍ଥାରେ ରହିବା ବିଚିତ୍ର କ'ଣ ? ଆମେ ବିତ୍ତରେ ଦରିଦ୍ର, କାରଣ ଆମେ ଦରିଦ୍ର ମଧ ଚିତ୍ତରେ । ଓଡ଼ିଆର ଚିତ୍ତ ଯଦି ପ୍ରକୃତରେ ଜାତୀୟତାବୋଧ ଦ୍ୱାରା ଅଭିଷିକ୍ତ ଥାଆନ୍ତା, ଲୁଗାଠୁ ଲଙ୍କାମରିଚ ଓ ଜିରାଠୁ ଜଳଖିଆ ପର୍ଯ୍ୟନ୍ତ ଓଡ଼ିଶାର ସକଳ ବ୍ୟବସାୟ ସେ ଅନ୍ୟମାନଙ୍କ ହାତରେ ଟେକି ଦେଇ, ଚିରକାଳ ଏକ କିଣିଖିଆ ଜାତି ହେଇ ବଞ୍ଚିରହିବାକୁ ଏତେ ସହଜରେ ମଙ୍ଗି ରହନ୍ତା ନାହିଁ । ପଞ୍ଜାବ ଓ ହରିୟାନା ଭାରତରେ ସବୁଠାରୁ ସମୃଦ୍ଧିମନ୍ତ ରାଜ୍ୟ – କାରଣ, ସେମାନେ ଖେତରେ ସୁନାର ଗହମ ଫଳାଇ କେବଳ ନୁହେଁ, ଘରେ ଘରେ ଛୋଟ-କାରଖାନା କରି ବହୁବିଧ ଶିଳ୍ପଜାତ ଦ୍ରବ୍ୟ ଉତ୍‌ପାଦନ କରି ମଧ ସମଗ୍ର ପୃଥିବୀରୁ ସେ ରାଜ୍ୟମାନଙ୍କୁ ଟଙ୍କା ପଇସା ଟାଣି ଆଣୁଛନ୍ତି । ହେ ମୋର ଓଡ଼ିଆ ଭାଇ ଓ ଭଉଣୀମାନେ, ତମେମାନେ ଅନ୍ତତଃ ଏହି ପଞ୍ଜାବୀମାନଙ୍କୁ ଅନୁକରଣ କର । ନାରୀ ଓ ପୁରୁଷ, ସେହିମାନଙ୍କ ପରି କର୍ମଠ ହୁଅ, ବିତ୍ତବାନ୍ ହୁଅ ଓ ସେମାନଙ୍କ ପରି ଖାଅ ଓ ବଞ୍ଚ । ଆଳସ୍ୟ ଓ ଅଜ୍ଞତା ଯୋଗୁଁ ଦରିଦ୍ର ହୋଇ ରହିବାଠାରୁ ଅଧିକ ଲଜ୍ଜାକର ଅପମାନ ନଥାଇପାରେ ।

– –

# ଆମ ଗଣତନ୍ତ୍ରର ଭବିଷ୍ୟତ (୧)*

ଚୀନ୍, ଭାରତ, ଜାପାନ ମିଶର ଇତ୍ୟାଦି ପୃଥିବୀର ଭିନ୍ନ ଭିନ୍ନ ଦେଶର ଭିନ୍ନ ଭିନ୍ନ 'ସଭ୍ୟତା'ର ବହୁ ବର୍ଣ୍ଣନା ହେଉଥିଲେହେଁ, ଏବେ 'ସଭ୍ୟତା' କହିଲେ ବସ୍ତୁତଃ ୟୁରୋପୀୟ ସଭ୍ୟତାକୁହିଁ ବୁଝାଏ ।

ବସନ-ଭୂଷଣ, ଭୋଜନ-ଆପ୍ୟାୟନ, କ୍ରୀଡ଼ା-କୌତୁକ, ବିଳାସ-ବ୍ୟସନ, ବଂଚିବାର ଧରଣ ଓ ଜ୍ଞାନାହରଣ—ଏ ପ୍ରତ୍ୟେକଟି ସଂପର୍କରେ, ଆମର ଓ ପୃଥିବୀର ସର୍ବତ୍ର, ସବୁଜାତିର ଆଦର୍ଶ ହେଲା 'ୟୁରୋପୀୟ' । ସଭ୍ୟ-ଜାପାନୀ ବା ସଭ୍ୟ-ଆଫ୍ରିକାନ୍ ବା ସଭ୍ୟ-ଇଣ୍ଡିୟାନ୍‌ର ତାତ୍ପର୍ଯ୍ୟ ହେଲା ଏ ପ୍ରତ୍ୟେକେ 'ୟୁରୋପୀୟତା'ର କେତେ ନିକଟ । ତେଣୁ ବର୍ତ୍ତମାନ ସଭ୍ୟତା ଅର୍ଥ 'ୟୁରୋପୀୟତା' ବା ତା'ର ଅତ୍ୟାଧୁନିକ ପ୍ରକାର, 'ଆମେରିକତା' ।

ଦେଶ ଶାସନରେ ସମଗ୍ର ପୃଥିବୀ ଆଜି ଦୁଇଟି ପରସ୍ପର-ବିରୋଧୀ କାମ୍ପରେ ବିଭକ୍ତ – ଡିମୋକ୍ରାସୀ ଓ କମ୍ୟୁନିଜମ୍ । ଏବଂ ଦୁଇଟିଯାକର ଜନ୍ମପୀଠ ଓ ଲୀଳାଭୂମିହିଁ ହେଲା, ସେହି ୟୁରୋପ । ଲଣ୍ଡନ ବା ପାରିସ୍, ନିୟମତାନ୍ତ୍ରିକ ଡିମୋକ୍ରାସିର ମକ୍‌କା ହେଲେ, ହିଂସ୍ର-ତନ୍ତ୍ର କମ୍ୟୁନିଜିମ୍‌ର ମକ୍‌କା ହେଲା ମସ୍କୋ ।

**ଗ୍ରୀସ ଓ ଭାରତବର୍ଷ –**

ପୁଣି ଏହି ସମସ୍ତର ମିଶ୍ରଣରେ ଗଠିତ ଯେଉଁ ବ୍ୟାପକ ୟୁରୋପୀୟ ସଭ୍ୟତା, ତାର ମକ୍‌କା-ତୀର୍ଥ ହେଲା ଛୋଟ ଐତିହାସିକ ଗ୍ରୀସ୍ ରାଜ୍ୟଟି ।

ଆମେ ଭାରତୀୟମାନେ ଯେପରି କହିଥାଉ ଯେ, ହିନ୍ଦୁଧର୍ମ୍ମ ବା ସଂସ୍କୃତି ବୋଇଲେ ଯାହା କିଛି ବୁଝାଏ ସେ ସମସ୍ତର ବୀଜ ନିହିତ ବେଦରେ, ଠିକ୍ ସେହିପରି, ଏବର ୟୁରୋପୀୟ ସଭ୍ୟତାରେ ଯାହା କିଛି ଆମର ଦୃଷ୍ଟି ଓ ଧ୍ୟାନ ଆକର୍ଷଣ କରିଥାଏ, ତା'ର ମୂଳ ଆମେ ଅକ୍ଳେଶରେ ଖୋଜି ପାଇବା ଗ୍ରୀସ୍‌ରେ । ଡିମୋକ୍ରାସିର ମୁକ୍ତ-ମାନସିକ ଆଚାର-ବିଚାରର ମୂଳ-ପ୍ରତିମା ଆମେ ଏଥେନ୍‌ସରେ ପାଇଲେ, କମ୍ୟୁନିଷ୍ଟ ପୋଲିସ୍-ଷ୍ଟେଟ୍‌ର ପ୍ରତିମା ଆମେ ପାଉ ସ୍ପାର୍ଟାରେ । ଦୁଇଟିଯାକ ଗ୍ରୀସ୍ ରାଜ୍ୟର ପ୍ରାଚୀନ ନଗର-ରାଷ୍ଟ୍ର ।

ସ୍ୱାଧୀନତା ପରେ ନବଭାରତର ପିତୃ-ପୁରୁଷମାନେ ଏ ଦେଶ ପାଇଁ ଯେଉଁ

---

* ନବରବି, ୩ୟ ବର୍ଷ, ସପ୍ତମ ସଂଖ୍ୟା, ଜାନୁଆରି ୧୯୬୩ ।

ସମ୍ବିଧାନ ଗଢ଼ିଗଲେ ତାହାର ଆଦର୍ଶ, ମୋଟାମୋଟି ଭାବରେ, ସେହି ତିନିହଜାର ବର୍ଷ ତଳର ଏଥେନୀୟ ଡିମୋକ୍ରାସି ବା ଗଣତନ୍ତ୍ର-ଶାସନ, ଯାହା ବ୍ୟାପକ ଭାବରେ ଆମେ ଏବେ ଆଚରିତ ହେବାର ଦେଖୁଁ, ବିଶେଷ କରି ଇଂଲଣ୍ଡରେ ।

ଇଂଲଣ୍ଡରେ ରାଜା-ରାଣୀ ଅଛନ୍ତି । କିନ୍ତୁ ଇଂରେଜ ଜାତିଟା ଶାସିତ ହୁଏ ପ୍ରକୃତରେ ଏକ ''ଆଲୋଚନା-ସଭା'' ଦ୍ୱାରା, ଯାହାର ଅନ୍ୟ ନାମ ହେଲା ପାର୍ଲିମେଣ୍ଟ ।

ପାର୍ଲିମେଣ୍ଟରେ ଇଂଲଣ୍ଡର ଲୋକ-ପ୍ରତିନିଧିମାନେ ଆସି ଛୋଟ ବଡ଼ ସମସ୍ତ ଜାତୀୟ ବିଷୟ ଆଲୋଚନା କରନ୍ତି । ଯେଉଁ ପ୍ରତିନିଧିମାନେ ସଂଖ୍ୟାରେ ବେଶୀ ଦେଖାଯାନ୍ତି, ସେହିମାନେ ଶାସନ ଭାର ନିଅନ୍ତି, କିନ୍ତୁ କେବଳ କେତୋଟି ନିର୍ଦ୍ଦିଷ୍ଟ ବର୍ଷ ପାଇଁ । ସେହି କାଳ ଶେଷରେ ପୁଣି ଦେଶମୟ ନିର୍ବାଚନ ହେବାର କଥା । ନୂତନ ନିର୍ବାଚନରେ ଯିଏ ସଂଖ୍ୟାଧିକ ହେଲେ, ସେମାନେ ବର୍ତ୍ତମାନ ଶାସନ-ଦାୟିତ୍ୱ ନେବେ । ଅ-ଶାସନ ପ୍ରତିନିଧିମାନେ ସାଧାରଣରେ ଜଣାହୁଅନ୍ତି 'ବିରୋଧୀ' ଗୋଷ୍ଠୀ ବୋଲି, ଯାହାକି 'ଶାସକ'ମାନଙ୍କ ଅପେକ୍ଷା କମ୍ ଗୌରବର ଭୂମିକା ନୁହେଁ । ସେଠି ବିରୋଧୀ ଓ ଶାସକ ଚକ୍ରବତ୍ ପରିବର୍ତ୍ତନ୍ତେ । ତେଣୁ, ପ୍ରତ୍ୟେକ ପ୍ରତ୍ୟେକଙ୍କୁ ସମ୍ମାନ କରନ୍ତି ।

କୁହାଯାଏ ଯେ ଭାରତବର୍ଷରେ ମଧ ଦିନେ ମୌଳିକ ଗଣତନ୍ତ୍ର-ରାଷ୍ଟ୍ର ସବୁ ଥିଲା । କିନ୍ତୁ ଗ୍ରୀସ୍‌ର ଏଥେନ୍‌ସ ପରି କୌଣସି ପ୍ରକୃତ ଗଣତାନ୍ତିକ ନଗର-ରାଷ୍ଟ୍ର, ନିର୍ବାଚନ ଓ ଆଲୋଚନା ଦେଇ ପରିଚାଳିତ ହେଉଥିବାର ରେକର୍ଡ଼ ଭାରତବର୍ଷର ଇତିହାସରେ ନାହିଁ । ବରଂ ବୁଦ୍ଧ ଗୌତମ, ତାଙ୍କର ବିପୁଳ-ବିସ୍ତୃତ ସଂଘ-ପରିଚାଳନାକୁ ଯେପରି ପ୍ରାୟ-ଆଧୁନିକ ନିର୍ବାଚନ-ପ୍ରଣାଳୀ ଉପରେ ଠିଆ କରାଇ ଯାଇଛନ୍ତି, ତାହା ଦେଖିଲେ ପ୍ରକୃତରେ ବିସ୍ମିତ ହେବାକୁ ହୁଏ । ବୁଦ୍ଧ ନିଜର କୌଣସି ଉତ୍ତରାଧିକାରୀ ନିର୍ଦ୍ଦେଶ କରିଯାଇନଥିଲେ । ତାଙ୍କର ରୋରୁଦ୍ୟମାନ ଶିଷ୍ୟବର୍ଗଙ୍କୁ ତାଙ୍କର ଶେଷ ଉପଦେଶ ଥିଲା- ''ତମେମାନେ ନିଜେଇ ନିଜର ପ୍ରଦୀପ ହେବାକୁ ଚେଷ୍ଟାକରିବ ।'' ଏବଂ ଏ ପର୍ଯ୍ୟନ୍ତ ସମଗ୍ର ଏସିଆ ମହାଦେଶରେ ପ୍ରତ୍ୟେକଟି ବୌଦ୍ଧ-ସଂସ୍ଥା, ସଂପୂର୍ଣ୍ଣ ହେତୁ-ସମ୍ମତ ଗଣତାନ୍ତିକ ପନ୍ଥାରେହିଁ ଚଳିଆସୁଛନ୍ତି ।

**ଇଡ଼ିୟଟ୍-**

ରାଜନୈତିକ ଗଣତନ୍ତ୍ରର ପ୍ରକୃତ ମାତୃଭୂମି ଏଥେନ୍‌ସରେ ଏହି ଐତିହ୍ୟ ଥିଲା ଯେ, ଏଥେନ୍‌ସର ରାଜନୈତିକ ଜୀବନ ସହିତ ତା'ର ପ୍ରତ୍ୟେକଟି ନାଗରିକ

ସକ୍ରିୟ ଭାବରେ ସଂପୃକ୍ତ ରହିବେ ।

କେହି ନିରାପଦରେ ଓ ଅସଂପୃକ୍ତ ଭାବରେ କାନ୍ଥ ଉପରେ ବସି, ନିର୍ବାଚନ-ଲଢ଼େଇ ଉପଭୋଗ କରି ପାରିବେ ନାହିଁ – ତୁମକୁ ଏପଟ ବା ସେପଟରେ ତମର ଯେଉଁ ପଟେ ଇଚ୍ଛା ଯୋଗଦେବାକୁହିଁ ହେବ । ଏଥେନ୍‌ସର ବାହାର-ଜୀବନ ସହିତ ଅସଂଶ୍ଲିଷ୍ଟ ରହି, କେହି ଏଥେନ୍‌ସ-ନାଗରିକର ସହଜାତ ଗୌରବ ଭୋଗ କରି-ପାରିବେ ନାହିଁ । ଯେଉଁମାନେ ନିର୍ବାଚନାଦି ନାଗରିକ ଜଂଜାଳରୁ ଦୂରରେ ରହିବାକୁ ଚେଷ୍ଟା କରୁଥିଲେ, ସେମାନଙ୍କୁ କୁହାଯାଉଥିଲା, ମସ୍ତିଷ୍କହୀନ 'ଇଡ଼ିୟଟ୍' ।

ନାନା ସଂସ୍କାର ଓ ଅଭିଜ୍ଞତା ଦେଇ ଇଂଲଣ୍ଡରୁ ଯେଉଁ ''ଆଧୁନିକ'' ଡ଼ିମୋକ୍ରାସିର ଆର୍ବିଭାବ ହୋଇଛି, ସେଥିରେ କିନ୍ତୁ ଏଥେନ୍‌ସ ପରି କୌଣସି ବାଧ୍ୟ-ବାଧକତା ନାହିଁ । ନାଗରିକର ମତ-ଦାନ ବା ଭୋଟକୁ ଅକଳୁଷିତ ରଖାଯିବା ପାଇଁ, ତାକୁ ଦିଆଯାଉଛି ପୁଣି ଏକାନ୍ତ ଗୋପନୀୟତା । ପୁଣି ଯେଉଁମାନେ ନିର୍ବାଚିତ ହେଲେ, 'ଶାସକୀ' ଓ 'ବିପକ୍ଷୀ' ଉଭୟ ଭାବରେ, ସେମାନଙ୍କର ଭୂମିକା ମର୍ଯ୍ୟାଦାବନ୍ତ ଓ ଗୌରବାବହ ରଖାଯାଇଛି ।

ଇଂଲଣ୍ଡ, ଯୁକ୍ତରାଷ୍ଟ୍ର ଓ ଇଂଲଣ୍ଡର ପୂର୍ବତନ ଉପନିବେଶମାନଙ୍କରେ, ଡିମୋକ୍ରାସି ଏପର୍ଯ୍ୟନ୍ତ ସମ୍ମାନିତ ଅବସ୍ଥାରେ ହିଁ ଅଛି । ମୋଟ ଉପରେ, ଗଣତାନ୍ତ୍ରିକ ପରମ୍ପରା ଓ ବ୍ୟକ୍ତି-ସ୍ୱାଧୀନତା, ଏହି ଆଂଲୋ-ସାକ୍‌ସ୍‌ନ ଗୋଷ୍ଠୀମାନଙ୍କର ଯେପରି ସହଜାତ, ସେପରି ଅନ୍ୟଠି ଦେଖାଯାଉନି । ଇଂଲଣ୍ଡ, କେବଳ ସାଧୁନିର୍ବାଚନ ଦେଇ କ୍ଷମତାକୁ ଆସୁଥିବା, ''ଶ୍ରମିକ'' ମାନଙ୍କ ଦ୍ୱାରା ବିନା ଦ୍ୱିଧାରେ ଶାସିତ ହୋଇ ଚାଲିଥିଲେହେଁ, ବ୍ୟକ୍ତି-ସ୍ୱାଧୀନତା-ଧ୍ୱଂସକାରୀ ଓ ହିଂସାଶ୍ରୟୀ କମ୍ୟୁନିଜମ୍‌କୁ ପ୍ରଶ୍ରୟ ଦେବାକୁ ନାରାଜ । ସେହିପରି ଯୁକ୍ତରାଷ୍ଟ୍ର ଆମେରିକା । ଏହି ଡିମୋକ୍ରାଟିକ୍ ରାଜ୍ୟ ସବୁ, ସାଂବିଧାନିକ ଉପାୟରେ, ଯେ ପ୍ରକାର ସମୂହ ଜନ-କଲ୍ୟାଣ ଓ ବିଶେଷକରି ଶ୍ରମିକ-କଲ୍ୟାଣ ଘଟାଇ ପାରିଛନ୍ତି, ପଚାଶ ବର୍ଷର କମ୍ୟୁନିଷ୍ଟ ଶାସନ ସୋଭିଏଟ୍ ଋଷିଆରେ ତାହା ସମ୍ଭବ କରାଇପାରିନାହିଁ ।

**ଭାରତର ନୂତନ ଅଭିଜ୍ଞତା–**

ଭାରତବର୍ଷରେ ଲୋକେ ଚିରକାଳ ରାଜା-ଶାସିତ ହୋଇ ଆସିଛନ୍ତି । ଏଠି ବ୍ରିଟିଶ୍ ହିଁ ଦେଇଗଲେ ଡିମୋକ୍ରାସିର ସ୍ୱପ୍ନ । ଇଂଲଣ୍ଡ ଓ ଅଷ୍ଟ୍ରେଲିଆଦିର ଅନୁକରଣରେ ଆମର ଗଣତାନ୍ତ୍ରିକ ସମ୍ବିଧାନ ଗଢ଼ାଯାଇଛି– ସେହି ଅନୁସାରେ ନିର୍ବାଚନ ହୋଇ-ଚାଲିଛି ।

ଲୋକପ୍ରତିନିଧିଙ୍କୁ ବାଛିବାକୁ, ଯେଉଁମାନେ ରାଜା-ଜମିଦାର-ଗଭର୍ଣ୍ଣରଙ୍କ ପରିବର୍ତ୍ତରେ ଦେଶ ଶାସନ କରିବେ, ଆମ ପ୍ରତିନିଧିଏହିଁ ଆମକୁ ଶାସନ କରିବେ । ଅନ୍ୟ କାହାର ଶାସନ ଅର୍ଥ ଦାସତ୍ୱ– ଆମେ କଦାପି ତାହା ମାନିଯିବୁ ନାହିଁ ।

କିନ୍ତୁ ଗତ ମାତ୍ର ପଚିଶି ବର୍ଷର ଅଭିଜ୍ଞତାରୁ ଆଶଙ୍କା ହେଉଛି ଯେ, ଡିମୋକ୍ରାସିର ଅନ୍ୟାନୁକୃତ, ବାହ୍ୟ ଆଚାର ସବୁ ଠିକଠାକ ଥିଲେହେଁ, ଡିମୋକ୍ରାସିର ଯଥାର୍ଥ ଧର୍ମବୋଧ ବା ମର୍ମ-ବୋଧର ଅଭାବରୁ, ଆମ ଦେଶରେ ଡିମୋକ୍ରାସି ପରି ସୂକ୍ଷ୍ମ-ପବିତ୍ର ପଦାର୍ଥ ଆଉ ବେଶୀ କାଳ ହୁଏତ ତିଷ୍ଠି ପାରିବ ନାହିଁ, ଯଦି ଏବଠାରୁ ଆମେ ସାବଧାନ ନ ହେବା ।

ଏ ଦେଶ ସ୍ୱାଧୀନ ହେଲା ମାନେ ଏହା ନୁହେଁ ଯେ, ଏ ଦେଶର ଲୋକଙ୍କ ଲଢ଼େଇ ଫଳରେ ହିଁ ତାହା ଘଟିଲା । ଏପରି କହିବା କେବଳ ଅର୍ଦ୍ଧ ସତ୍ୟ-ହୋଇପାରେ । ଆପେ ଆପେ ବ୍ରିଟୀଶ ଏ ମାଟି ଛାଡ଼ି ଚାଲିଗଲେ କହିବା ହିଁ ପୂରା-ସତ୍ୟ ହେବ । କ୍ଷୁଦ୍ର ବାଂଲାଦେଶ ଆମ ଆଖି ଆଗରେ ମାଟିର ମୁକ୍ତି-ସମ୍ମାନ ପାଇଁ ନିଜର ଦଶ ଲକ୍ଷ ନର-ନାରୀ-ବାଳକ-ବାଳିକାଙ୍କୁ ଅକାତରେ ବଳି ଦେଇଦେଲା । ତା' ତୁଳନାରେ ଆମର ''ସ୍ୱାଧୀନତା-ସଂଗ୍ରାମ''ର ପ୍ରକୃତ ତାତ୍ପର୍ଯ୍ୟଟା କ'ଣ ? ବର୍ଷେ-ଛ'ମାସ ''ଶଶୁରାଳୟ''ରେ ରହି ଆସିବା କି ଏକ ''ସଂଗ୍ରାମ'' ? ଏଥିପାଇଁ ପୁଣି ପଦ ପଦବୀ, ସୁବିଧା ମାନପତ୍ର ଓ ପେନ୍‌ସନ୍ । ଏ ସବୁ ଦେଖିଲେ ଏ ଜାତିଟା ଚିନ୍ତାହୀନ ଭାବରେ ନିର୍ଲଜ୍ଜ ହୋଇଯାଇଛି ବୋଲି ମନେ ହେଉନି କି ? ଯେପରି ମୁକ୍ତି-ସଂଗ୍ରାମ, ସେହିପରି ଗଣତାନ୍ତ୍ରିକ ଶାସନ– ଦେଖାଯାଉଛି ଯେ ଏଠି କେହି ବ୍ୟକ୍ତି ବା ଦଳ 'ବିରୋଧୀ'ର ଗୌରବମୟ ଭୂମିକା ପାଇଁ ଆଦୌ ପ୍ରସ୍ତୁତ ନୁହନ୍ତି । ପ୍ରତ୍ୟେକଙ୍କ ଆଖି କେବଳ ଶାସକର ଧନ-କ୍ଷମତାପ୍ରଦ ଚୌକି ଉପରେ । ସେଥିପ୍ରତି କାହାର କି ଯୋଗ୍ୟତା ଅଛି, ତା'ର ମଧ ବିଚାର ବି ନାହିଁ । ଯେକୌଣସି ଲୋକ-ପ୍ରତିନିଧି ଜୀବନରେ କୌଣସି ପ୍ରକାର ସଂପୃକ୍ତ ଅଭିଜ୍ଞତା ନଥାଇ ମଧ, ଶିକ୍ଷା-ବିଭାଗ, ଜଙ୍ଗଲ-ବିଭାଗ, ରେଭେନିଉ ବା ପୋଲିସ୍ ବିଭାଗର ସମ୍ରାଟ୍ ଗାଦିରେ ବସିପାରୁଛନ୍ତି – ଏବଂ ବସି, ପ୍ରତ୍ୟେକ ବିଭାଗରେ ଉଚ୍ଚ-ଶିକ୍ଷିତ ଧୁରନ୍ଧର ସବୁ ଥିବା ସତ୍ତ୍ୱେ, ନିଜର ସୁବିଧା-ସୁଯୋଗ ଅନୁଯାୟୀ ଅହରହ ହସ୍ତକ୍ଷେପ କରି, ପ୍ରଶାସନିକ କ୍ଷେତ୍ରରେ ଚରମ ବିଭ୍ରାଟ ଘଟାଇସାରିଲେଣି ଏସଂ କଳୁଷିତ କରିସାରିଲେଣି ସମଗ୍ର ଶାସନ-ଯନ୍ତ୍ରକୁ ।

**ନିର୍ବାଚନ ଓ ସୁଶାସନ–**

ତେଣୁ ବର୍ତ୍ତମାନ ଚାରିଆଡୁ ଜିଜ୍ଞାସା ଉଠିବା ଉଚିତ୍ ଯେ, ଗଣତାନ୍ତ୍ରିକ ବା

ଲୋକ-ପ୍ରତିନିଧି-ଶାସନର ଯଥାର୍ଥ ତାତ୍ପର୍ଯ୍ୟ କ'ଣ ? ଯେଉଁମାନଙ୍କର ଜାତୀୟ ଜୀବନକୁ କୌଣସି ହେଲେ ସ୍ଥାୟୀ ଦାନ ନାହିଁ ବା ଦେବାର ଶକ୍ତି ମଧ ନାହିଁ, କେବଳ ଏହିପରି ଗୁଡ଼ିଏ ଲୋକଙ୍କୁ ଆମେ ଏକ ଐତିହାସିକ ଜାତି ପ୍ରତିନିଧି ବୋଲି ବାଛିବା, ଯେଉଁମାନେ କି ବଛା ହୋଇସାରିଲା ପରେ, ସମୂହ ଜାତୀୟ କଲ୍ୟାଣ ପ୍ରତି ଆଦୌ ଦୃଷ୍ଟି ନଦେଇ, ନିଜର ସଦ୍ୟ ସଦ୍ୟ ଲାଭ ପାଇଁ ପ୍ରତିଷ୍ଠିତ-ଓ-ଧୁରନ୍ଧରମାନଙ୍କ ଦ୍ୱାରା-ପରିଚାଳିତ ଶାସନ ସଂସ୍ଥାକୁ ମୋଡ଼ି ବିକୃତ କରି ଛାଡ଼ିଯିବେ ?

ଜଣେ ସୁତ୍ରଳଦେବ ବା ଜଣେ ଶ୍ରୀରାମଚନ୍ଦ୍ର ଭଞ୍ଜ କୌଣସି ଏମ୍‌ଏଲ୍‌ଏ ପରି ନିର୍ବାଚିତ ନହୋଇଥିଲେ ମଧ, ସେମାନେ ନିଜ ନିଜ ରାଜ୍ୟମାନଙ୍କୁ ଲୋକ-କଲ୍ୟାଣ-ରାଷ୍ଟ୍ରରୂପେ ଗଢ଼ି, ଯେପରି ଏକା ଏକା ପଚାଶବର୍ଷ ଆଗକୁ ନେଇଯାଇ-ପାରିଥିଲେ, କୌଣସି ସଂଖ୍ୟାଗରିଷ୍ଠ ଦଳ ବା ମନ୍ତ୍ରିମଣ୍ଡଳ, ଅନ୍ତତଃ ଓଡ଼ିଶାରେ ସେ ପ୍ରକାର ମହତ୍ ଆଦର୍ଶ ଏପର୍ଯ୍ୟନ୍ତ ଦେଖାଇପାରିନାହାନ୍ତି ।

ତେଣୁ ଲୋକ-ପ୍ରତିନିଧି-ନିର୍ବାଚନ ସହିତ ରାଜ୍ୟର ସୁଶାସନର ଅଙ୍ଗାଙ୍ଗୀ ସମ୍ବନ୍ଧ ଅଛି ବୋଲି କହି ହେବ କି ? ଯଦିବା ଥାଏ, ତେବେ ଗତ ପଚିଶ ବର୍ଷର ସ୍ୱାଧୀନତୋତ୍ତର ଓଡ଼ିଶା ବା ଏପରି କି ଭାରତବର୍ଷରେ ତାହା ସୁପ୍ରମାଣିତ ହୋଇଚି ବୋଲି କହିହେଉନି । ସ୍ୱାଧୀନତାର ପଚିଶବର୍ଷ ପରେ ଅନ୍ତତଃ ଓଡ଼ିଶା ଆଜି ଦରିଦ୍ରତର, ଦୁର୍ଭିକ୍ଷଗ୍ରସ୍ତ, ବେକାର ସମସ୍ୟାକୁଳ ଏବଂ ସମଗ୍ର ଭାରତବର୍ଷ ବିଶୃଙ୍ଖଳ ।

ନିର୍ବାଚିତମାନଙ୍କର ଶାସନଜନିତ ବିଶୃଙ୍ଖଳା ଓ ଅରାଜକତାର ଔଷଧ ରୂପେ ସମ୍ବିଧାନ ଯୋଗାଇଦେଇଥିବା ଏକଛତ୍ର ପ୍ରେସିଡେଣ୍ଟ-ଶାସନକୁ ସବୁ ରାଜ୍ୟର ଲୋକେ ଆଶୀର୍ବାଦ ରୂପେ ମଣନ୍ତେ ବା କିପରି ? କାରଣ ଲୋକ-ଚେତନାରେ ପ୍ରେସିଡେଣ୍ଟ ଶାସନ ହିଁ ହେଲା, ସୁତ୍ରଳ-ରାମଚନ୍ଦ୍ରଙ୍କ ଶାସନ, ନ୍ୟାୟର ଶାସନ, ନିୟମର ଶାସନ – ବହୁନାୟକ ଲୋକ-ପ୍ରତିନିଧି ଶାସନର ପରିଣତି, ଅରାଜକତା ।

ତେବେ ଗଣତନ୍ତ୍ର ଶାସନର ଅଯଥାର୍ଥ ମାହାତ୍ମ୍ୟ ନାମରେ, ନିର୍ବାଚନର ଓ ନିର୍ବାଚିତାମାନଙ୍କର ଏ ଦେଶରେ ଏ ପ୍ରକାର ବ୍ୟୟବହୁଳ ମାରାତ୍ମକ ଆତ୍ମଘାତୀ ତାମସା କାହିଁକି ଚାଲିଛି ? ଏ ସବୁର ଶେଷ ପରିଣତ କ'ଣ ?

ସତ୍ୟଟାକୁ ସ୍ୱୀକାର କରିବାରେ ଲଜ୍ଜାବୋଧ ଅନୁଚିତ । ଆମର ଲୋକେ ଖାଇବାକୁ ନପାଇ ଆମ ଆଖି ଆଗରେ ମରୁଛନ୍ତି । ଆମ ଗାଁ ଓ ସହରର ରାସ୍ତା ଘାଟ ବିକଳାଙ୍ଗ ଭିକାରୀମାନଙ୍କଦ୍ୱରା ବିକଳ, ବିକୃତ । ଆମ ଡାକ୍ତରଖାନାମାନଙ୍କରେ ରୋଗୀଙ୍କ ପାଇଁ ଓଷଧ ନାହିଁ । ଆମେ ଯେ ଲଜ୍ଜାକର ଭାବରେ ଏକ ଗରିବ ଜାତି, ଏଥିରେ ଦ୍ୱିମତ ନଥାଇ ପାରେ ।

**ବିପୁଳ ବ୍ୟୟସାଧ ନିର୍ବାଚନ–**

ଏ ପରିପ୍ରେକ୍ଷୀରେ, ଗରିବ ଜନତାର ପ୍ରତିନିଧି ବାଛିବାରେ ଆଖି-ବୁଜି-ହୋଇଯିବା-ଭଳି ଅପବ୍ୟୟଶୀଳ ନିର୍ବାଚନୀ-ତାମସାର ନ୍ୟାଯ୍ୟତା ଓ ଶାଳୀନତା ଆସୁଛି କୁଆଡୁ ? ଏ ବ୍ୟାପାର ପଛରେ ଯୁକ୍ତି ଓ ବିଚାର କ'ଣ ?

ନିକଟରେ ଘଟିଯାଇଥିବା କଟକ-ଉପନିର୍ବାଚନରେ କିଏ ହାରିଲା, କିଏ ଜିଣିଲା ସେ ପ୍ରସଙ୍ଗକୁ ଆଦୌ ବିଚାରକୁ ନନେଇ, ଯେପରି ଭାବରେ ଉଭୟ ପଟରୁ ନିର୍ବାଚନ-ସଂଗ୍ରାମ ପରିଚାଳିତ ହେଲା, କେବଳ ତାକୁ ହିଁ ବିଚାରକଲେ, ଆମ ଦେଶରେ ଗଣତନ୍ତ୍ରର ଭବିଷ୍ୟତ ଯେ ଆଲୋକମୟ ଆଦୌ ନୁହେଁ, ଏହା ସ୍ପଷ୍ଟ ପ୍ରତିପନ୍ନ ହେବ ।

ଯେଉଁଠି ଜାତିର ଅର୍ଦ୍ଧାଧିକ ଲୋକର ମାସିକ ଆୟ ମାତ୍ର କୋଡ଼ିଏଟି ଟଙ୍କା, ସେପ୍ରକାର ଏକ ଗରିବ ଦେଶର, ଗରିବ ଜନତାର ମତ-ସଂଗ୍ରହ ଆଜି ଯଜୁର୍ବେଦୀୟ ଯଜ୍ଞ ପରି କେବଳ ଧନ-କ୍ଷମତାବନ୍ତ ଲୋକଙ୍କ ଦ୍ୱାରା ସମ୍ଭବ ବୋଲି ମନେହେଉଛି । ସାଧୁ, ବିଜ୍ଞ, ସ୍ୱଚ୍ଚରିତ୍ର ଭାବରେ ଲୋକ-ପ୍ରତିନିଧି ହେବାର ସର୍ବୋଚ୍ଚ ଯୋଗ୍ୟତା ଥିଲେହେଁ, କୌଣସି ନାଗରିକ, ଧନ-କ୍ଷମତା ଓ ଧୂର୍ତ୍ତତା ନଥାଉଁ, ଲୋକ-ପ୍ରତିନିଧି ହେବାର କଳ୍ପନା ହିଁ କରି ପାରିବେ ନାହିଁ । ଅର୍ଥାତ୍ ଆମ ଦେଶରେ ଡିମୋକ୍ରାସି ଆମକୁ କେବଳ ମାରପେଞ୍ଚ ଜାଣିଥିବା, ବିସ୍ତର-ଟଙ୍କା-ଯୋଗାଡ଼-କରିପାରୁଥିବା ଏବଂ ନିମ୍ନଶ୍ରେଣୀର ଜନତାକୁ ନାନା ଉଦ୍ଭଟ କଥାରେ ଭୁଲାଇପାରୁଥିବା କେତେକ ଧୂର୍ତ୍ତ-ବ୍ୟକ୍ତିଙ୍କର ଶାସନ ଦେବାକୁହିଁ ସମର୍ଥ । ଗତ ଅଭିଜ୍ଞତା ଆମକୁ ଏହି ସାର-କଥାଟାହିଁ ଶୁଣାଉଛି ।

ସହସ୍ର ସହସ୍ର ଓ ଲକ୍ଷ ଲକ୍ଷ ମୁଦ୍ରା ନିର୍ବାଚନରେ ସହଜରେ ଉଡ଼ିଯାଉଛି । ଅଥଚ, ଦେଶରେ ପ୍ରାଇଭେଟ୍ କଲେଜ ଓ ହାଇସ୍କୁଲ୍ କଥା ଛାଡ଼, ପ୍ରାଇଭେଟ୍ ମିଡ଼ଲ୍ ସ୍କୁଲଟିଏ ମଧ୍ୟ ଚଳିନପାରି, ଚିତ୍କାର ହେଉଛି "ସରକାର ନେଇଯାନ୍ତୁ" । ସେତେବେଳେକୁ ଟଙ୍କା ନାହିଁ । ଲୋକେ ନଖାଇ ମଲାବେଳକୁ ଟଙ୍କା ନାହିଁ । ତାଙ୍କୁ ଡାକ୍ତର ଓ ଔଷଧ ଦେବାକୁ ଟଙ୍କା ନାହିଁ । ତେବେ, ନିର୍ବାଚନ ପାଇଁ ଲକ୍ଷ ଲକ୍ଷ ମୁଦ୍ରା ଅଲ୍ଲାଦ୍ଦିନ୍ ପ୍ରଦୀପରୁ ବାହାରିଲା ପରି, କୁଆଡୁ ଏତେ ସହଜରେ ବାହାରିଆସୁଛି ? ଏହି କ'ଣ ଆମର ଡିମୋକ୍ରାଟିକ୍ ଆଦର୍ଶ ?

ପୁଣି ଯିଏ ନିର୍ବାଚନ ପାଇଁ ବହୁ ସହସ୍ର ବା ବହୁ ଲକ୍ଷ ମୁଦ୍ରା ବ୍ୟୟକଲେ, ଶାସନ-ପରିସରକୁ ଆସନ୍ତେ, ସେ ତା'ର ବହୁଗୁଣ ସଂପଦ ସେହି ମାଟିରୁ ଖୋଳି ବାହାରକରିବେ ନାହିଁକି ? ସେପରି କରିବା ସ୍ୱାଭାବିକ ମାନବିକ ଆଚରଣ । କିନ୍ତୁ

ସେପରି କରିବା ଅର୍ଥ, ପ୍ରଶାସନ କ୍ଷେତ୍ରରେ ଆରମ୍ଭ କରିବା କରପ୍‌ଶନ୍ ବା ଅସଦାଚରଣ, ଯାହାର ବିଷାକ୍ତ ଫଳ ଖାଇବାକୁ ବାଧ ହେଉଛି, ଏହି ସମଗ୍ର ଜାତି ।

ତେଣୁ ଯେପର୍ଯ୍ୟନ୍ତ ଦେଶର ଦରିଦ୍ରତମ ନାଗରିକ ମଧ, ବିନା ଏକ ପଇସା ଖର୍ଚ୍ଚରେ, ଲୋକପ୍ରତିନିଧି (ସେହିପରି ଯୋଗ୍ୟତା ଥିଲେ) ନିର୍ବାଚିତ ହେବାର ସୁଦୃଢ଼ ସମ୍ଭାବନା ପ୍ରତିଷ୍ଠିତ କରା ନ ଯାଇଛି, ସେ ପର୍ଯ୍ୟନ୍ତ ଏ ଦେଶରେ ଡିମୋକ୍ରାସି ପ୍ରଚଳିତ ଅଛି ବୋଲି କୁହାଯାଇ ନପାରେ ।

ଡିମୋକ୍ରାସି-ଶିକ୍ଷା ନାମରେ ଦଳୀୟ ନିର୍ବାଚନ ଆଜି ଦେଶର ସମଗ୍ର ଶିକ୍ଷା-ବ୍ୟବସ୍ଥାକୁ କୁଷ୍ଠରୋଗାକ୍ରାନ୍ତ କରିସାରିଲାଣି । ଯେପର୍ଯ୍ୟନ୍ତ ନେତାମାନଙ୍କ ଅନୁକରଣରେ, ବିଦ୍ୟାନୁଷ୍ଠାନମାନଙ୍କରେ ମଧ ବ୍ୟୟବହୁଳ, ବୀଭତ୍ସ ପ୍ରତ୍ୟକ୍ଷ ୟୁନିଅନ ନିର୍ବାଚନ ପ୍ରଥା ବନ୍ଦ ନ ହୋଇଛି, ଏ ଦେଶରେ ଶିକ୍ଷାର ଭବିଷ୍ୟତ ନିଶ୍ଚିତରେ ଅନ୍ଧକାରମୟ ।

**ଡିମୋକ୍ରାସିକୁ ମର୍ଯ୍ୟାଦାବନ୍ତ କର–**

ସରକାର ନିଜେ ସୁରୁଖୁରୁରେ ଚାଲିବା ପାଇଁ ଟିକସ ଆଦାୟ କଲାପରି, 'ଲୋକମତ'ର ଆଦାୟ ମଧ ଯଦି ତାଙ୍କ ସ୍ଥିତି ପାଇଁ ଅପରିହାର୍ଯ୍ୟ ବୋଲି ଧରାଯାଉଛି; ତେବେ ସରକାର ଟିକସ ପରି ଲୋକମତ-ସଂଗ୍ରହର ମଧ୍ୟ ଏକ ନିରପେକ୍ଷ ବ୍ୟବସ୍ଥା କାହିଁକି ଠିଆ ନକରାଇ ପାରିବେ ବୁଝାପଡୁନାହିଁ । ଜାତି ଓ ଦେଶ ତେବେ ନିର୍ବାଚନର ବୀଭତ୍ସ ତାଣ୍ଡବଲୀଳା ଦେଖନ୍ତା ନାହିଁ ।

ତେଣୁ, ଗଣତନ୍ତ୍ର ନାମରେ ବା ଲୋକପ୍ରତିନିଧି ନିର୍ବାଚନ ନାମରେ ଏ ଯେଉଁ ଦଳ ଦଳ ବା ବ୍ୟକ୍ତି ବ୍ୟକ୍ତି ଭିତରେ ମେଣ୍ଢା-ଲଢ଼େଇର ବ୍ୟବସ୍ଥା, ଏହାକୁ ତୁରନ୍ତ ବନ୍ଦକରିବା ବିଧେୟ ମନେହେଉଛି । ମନେହେଉଛି ଯେ ଲୋକମତ-ସଂଗ୍ରହ ନାମରେ ଘଟୁଥିବା ଏଇ 'ଇଲେକ୍‌ସନ'ହିଁ ଗଣତନ୍ତ୍ରଶାସନକୁ ଏ ଦେଶରେ, ମାତ୍ର ପଚିଶଟା ବର୍ଷ ଭିତରେ, ବିକଳ, ବ୍ୟାଧିଗ୍ରସ୍ତ ଓ କଳୁଷିତ କରିସାରିଲାଣି । ଆଜି ଯଦି ସମଗ୍ର ଏହି ଉପ-ମହାଦେଶର ତଳରୁ ତାଳୁ ଯାଏଁ ସକଳ ସ୍ତର କଳୁଷିତ, ତେବେ ତା'ର ମୁଖ୍ୟ ଉତ୍ସ ଧରିବାକୁ ହେବ ଏହି ତଥାକଥିତ ନିର୍ବାଚନ ବା ଲୋକମତ ସଂଗ୍ରହ । ତେଣୁ, ଦେଶର ଚିନ୍ତାଶୀଳ ବ୍ୟକ୍ତିମାନେ, ନିରପେକ୍ଷ, ଦେଶପ୍ରାଣ ଇଣ୍ଟେଲିଜେନ୍‌ସିଆ, ଦେଶର ଲେଖକ ଓ ଅଧ୍ୟାପକ ବର୍ଗ, ଆମ 'ଜାତି'ର ସର୍ବାଙ୍ଗକୁ ବିଷାକ୍ତ କରିଚାଲିଥିବା ଏହି ସର୍ବମୟ ବ୍ୟାଧିର ନିରାକରଣ ଦିଗରେ ଗଭୀର ଅନୁଧାନ ଦେବା ଉଚିତ ।

ତା' ଯଦି ନହୁଏ, ଏବଂ ଘଟଣାପ୍ରବାହ ଯେପରି ଚାଲିଛି ଯଦି ସେହିପରି ଚାଲିବାକୁ ଦିଆଯାଏ, ତେବେ ଆଶଙ୍କା ଏହି ଯେ, ସମଗ୍ର ଏହି ଉପମହାଦେଶ ଶୀଘ୍ର

ଘୋର ଅରାଜକତାର ଅନ୍ଧକାର ଭିତରେ ପଶିବ ଏବଂ ଅଦୂର ଭବିଷ୍ୟତରେ ଆମର ସାମାଜିକ ଜୀବନର ନିୟନ୍ତା ହେବେ କେବଳ ନୂଆ-ଧରଣର ଠଗ ଓ ବର୍ଗିର ଦଳ ।

ଯଦି ଆମ ଭାଗ୍ୟ ଭଲ, ତେବେ ଆମକୁ ଶୀଘ୍ର ମନ୍ତ୍ରୀ-ବା-ଦଳ-ଶାସନ ଓ ପ୍ରେସିଡେଣ୍ଟ-ଶାସନ ଭିତରେ କୌଣସି ଏକ ଆପୋସ-ମୀମାଂସା ଆଣିବାକୁ ହେବ; ଟିକସ-ସଂଗ୍ରହ ପରି ମତ-ସଂଗ୍ରହ ବା ନିର୍ବାଚନକୁ ମଧ୍ୟ, ହାଇକୋର୍ଟ-ଓ-ନିର୍ବାଚନ-ସଂସ୍ଥା ଦେଇ ଏକ ସ୍ୱତଃଘଟିତ ଅପ୍ରତ୍ୟକ୍ଷ ବ୍ୟାପାର କରିବାକୁ ହେବ, ଏବଂ ଛ-ଛ-ମାସରେ ମାଡ଼ି ଆସୁଥିବା ନୂଆ ନୂଆ ତଥାକଥିତ ଲୋକ-ପ୍ରତିନିଧି ପ୍ରଭୁମାନଙ୍କର ସ୍ୱାର୍ଥସାଧିନୀ ବିଷାକ୍ତ ହସ୍ତକ୍ଷେପରୁ ପ୍ରଶାସନିକ ବିଭାଗମାନଙ୍କୁ ସୁରକ୍ଷିତ କରିବା ପାଇଁ, ଏକ ମହାରାଜାଧିରାଜ ଆଡ଼୍‌ଡ଼ାରେ ଖାଲି-ଦାରୁଭୂତୋମୁରାରୀ-ପରି ବସିରହିଥିବା ରାଜ୍ୟପାଳମାନଙ୍କୁ ଅପ୍ରତିହତ କ୍ଷମତା ଦେବାକୁ ହେବ ।

ପୁଣି ମନେରଖିବାକୁ ହେବ ଯେ, ଡ଼ିମୋକ୍ରାସି କେବଳ ଏକ ପ୍ରଶାସନିକ ବ୍ୟବସ୍ଥା ନୁହେଁ, ଏହା ଏକ ରାଜନୈତିକ-ସାମାଜିକ ଧର୍ମ । ଯେଉଁଠି ଲୋକଙ୍କ ଚରିତ୍ର ବା ଐତିହ୍ୟରେ ଏ ଧର୍ମ ନାହିଁ, ସେଠି ଡିମୋକ୍ରାସି ମର୍ଯ୍ୟାଦାବନ୍ତ ଭାବରେ ପ୍ରତିଷ୍ଠିତ ରହିନପାରେ । ଭାରତବର୍ଷର ଲୋକଙ୍କ ରକ୍ତରେ ଏ ଐତିହ୍ୟ ନାହିଁ । ଏ ମାଟି ଓ ଲୋକେ କେବଳ ଜାଣି ଆସିଛନ୍ତି ଦଳପତି ଓ ନରପତିର ଶାସନ । ଏଠି ପରସ୍ପର-ବିଦ୍ୱେଷୀ ବହୁ ଜାତି, ବହୁ ଭାଷା ଓ ବହୁ ଧର୍ମ । ଏଥେନ୍‌ସ ବା ଇଂଲଣ୍ଡ ପରି ଏଠି ଧର୍ମ, ଭାଷା, ବା ରକ୍ତ ବା ଐତିହ୍ୟର ଏକତା ନାହିଁ । ଦେଶାତ୍ମବୋଧ ଏଠି ଏକ ବ୍ରିଟୀଶ-ରୋପିତ ବୀଜ । ବ୍ରିଟିଶ ଗଲା ପରେ ଏହି ସୂକ୍ଷ୍ମ ଲତାଟି ମଉଳିଗଲାଣି । ବର୍ତ୍ତମାନ ମୂଳୁ ଚୂଳ ଯାଏଁ ପ୍ରତ୍ୟେକଟି ଭାରତୀୟ, ବାହାରେ ଜାତୀୟତା ଓ ଗଣତନ୍ତ୍ର ଓ ମାନବିକତାର ବଡ଼ ବଡ଼ ସ୍ଲୋଗାନ ଚିତ୍କାର କରୁଥିଲେହେଁ, ଭିତରେ ସଚେତନ କେବଳ ନିଜର ପକେଟ ନେଇ । ଏପ୍ରକାର ପଶ୍ଚାତ୍‌ଭୂମିରେ, ଇଂଲଣ୍ଡ ବା ଯୁକ୍ତରାଷ୍ଟ୍ରର ଡିମୋକ୍ରାସି ଏଠି ଠିକ୍ କାମ କରିନପାରେ । ଏଠି ଆମକୁ ଆମ ମାଟିକି ଅନାଇ ଡିମୋକ୍ରାସିକୁ ତଦନୁଯାୟୀ ବ୍ୟବସ୍ଥିତ କରିବାକୁ ହେବ । ବହୁଛତ୍ର ଆସିବେ, କିନ୍ତୁ ସେମାନେ ଯେମିତି ବିଭ୍ରାଟ ନ ଉପୁଜାନ୍ତି, ସେଥିପାଇଁ କିଛି ଏକଛତ୍ର-ବ୍ୟବସ୍ଥା ମଧ କରିବାକୁ ହେବ । ନିର୍ବାଚନକୁ ମର୍ଯ୍ୟାଦାବନ୍ତ ଭାବରେ ଅପ୍ରତ୍ୟକ୍ଷ କରାଇନେଲେ, ସମଗ୍ର ଜାତି ପକ୍ଷରେ ତାହା ଏକ ପରମ ଆଶୀର୍ବାଦ ହୋଇଉଠନ୍ତା ।

ଆଶାକରେ ମୋ ଦେଶର ବୁଦ୍ଧିଜୀବୀମାନେ ଏ ଦିଗରେ ଚିନ୍ତା କରିବେ । ଏଥେନିୟାନ୍ ଗଣତନ୍ତ୍ର ତତ୍ତ୍ୱ ଅନୁସାରେ ଆମକୁ ଯେପରି କେହି ପରେ କେବଳ ଏକ 'ଇଡ଼ିୟଟ'ର ଦଳ ନ କହନ୍ତି ।

# ଆମ ଗଣତନ୍ତ୍ରର ଭବିଷ୍ୟତ (୨)*

ସ୍ୱାଧୀନତା ପରେ ଗତ ୨୫ ବର୍ଷ କାଳ ଏହି ସମଗ୍ର ଭାରତୀୟ ଉପମହାଦେଶକୁ କେବଳ ତଥାକଥିତ ଗାନ୍ଧିବାଦୀ କଂଗ୍ରେସୀଏହିଁ ଶାସନ ଓ ଭୋଗ କରିଆସିଛନ୍ତି । କେରଳ ଓ ପଶ୍ଚିମବଙ୍ଗରେ କମ୍ୟୁନିଷ୍ଟ-କମ୍ରେଡ଼ମାନେ ଅଳ୍ପ କାଳ ପାଇଁ ଯେଉଁ ଶାସନ ଠିଆକଲେ, ତାହା ବୀଭତ୍ସ ଅରାଜକତା ଛଡ଼ା ଆଉ କିଛି ନଥିଲା । ଫଳରେ ସେହି ସେହି ରାଜ୍ୟର ଲୋକହିଁ ଭୋଟବାକ୍‌ସ ମାଧ୍ୟମରେ ସେମାନଙ୍କୁ ଗାଦିଚ୍ୟୁତ କରିଦେଲେ । ପାଠକେ ତେଣୁ ସ୍ମରଣ ରଖିବେ ଯେ ଭୋଟ-ବାକ୍‌ସଟିହିଁ ଗଣଶାସନର ପ୍ରଥମ ପ୍ରତୀକ । ଭୋଟ-ବକ୍‌ସଟି ନ ଥିଲେ, କେରଳ ଓ ପଶ୍ଚିମ ବଙ୍ଗରେ, କୁଶାସନୀ କମ୍ୟୁନିଷ୍ଟମାନଙ୍କୁ ଗାଦିଚ୍ୟୁତ କରିବାର କୌଣସି ସମ୍ଭାବନା ନ ଥିଲା । କମ୍ୟୁନିଜିମ୍‌ରେ ଜନମତହିଁ ପ୍ରଥମ ହତ୍ୟା । ମାଓ, ଷ୍ଟାଲିନ୍ ଇତ୍ୟାଦି କୌଣସି କମ୍ରେଡ଼ କେବେହେଲେ ଜନମତର ସମ୍ମୁଖୀନ ହୋଇନାହାନ୍ତି । ଭାରତର ଜହରଲାଲ ବା ଇନ୍ଦିରା, ଶାସନ ଗାଦିରେ ବସିବା ପାଇଁ କିନ୍ତୁ ଯାଇଛନ୍ତି ଦରିଦ୍ରତମ କୃଷକର କୁଟୀର ଦ୍ୱାରକୁ, ଭୋଟ-ଭିକ୍ଷା କରି । ଏହାହିଁ ଗଣତନ୍ତ୍ରର ଅପଟାନ୍ତର ସୌନ୍ଦର୍ଯ୍ୟ ଓ ମର୍ଯ୍ୟାଦା, ଯାହା ଅନ୍ୟ କୌଣସି ପ୍ରକାର ଶାସନ-ପଦ୍ଧତିରେ ନାହିଁ । ଏଇ ପଚିଶ ବର୍ଷ ଭିତରେ ଗଣତାନ୍ତ୍ରିକ କ୍ଷମତାକୁ ଭାରତର ନିରକ୍ଷର ଜନସାଧାରଣ ଯେପରି ସୂକ୍ଷ୍ମ ବିଚାର ଦେଇ ବ୍ୟବହାର କରିଆସିଛନ୍ତି, ତାହା ସମସ୍ତଙ୍କୁ ଅଭିଭୂତ କରିଛି । ପ୍ରଥମେ ଗାନ୍ଧିଜୀଙ୍କ ପୂଣ୍ୟଶ୍ଳୋକ ବ୍ୟକ୍ତିତ୍ୱକୁ ସ୍ମରଣକରି ଭାରତୀୟ ପ୍ରଜାଏ ଆଖିବୁଜା କଂଗ୍ରେସୀଙ୍କୁ ଭୋଟଦେଲେ । କିନ୍ତୁ ଯେତେବେଳେ ଖଦଡ଼-ଧାରୀମାନଙ୍କ ଭିତରେ ଦେଖାଗଲା ଦୁର୍ଗନ୍ଧ, କାମ-କାଞ୍ଚନ-ଲାଳସା ଓ ପ୍ରବଳ ମିଥ୍ୟପ୍ରଚାର, ଭାରତର ନିରକ୍ଷର ପ୍ରଜା ଏପ୍ରକାର କଳୁଷିତ କଂଗ୍ରେସକୁ ମଧ୍ୟ ଗାଦିଚ୍ୟୁତ କରିବାକୁ ପଛେଇଲା ନାହିଁ । ଇନ୍ଦିରାଙ୍କର ବଳିଷ୍ଠ-ନେତୃତ୍ୱର ଆହ୍ୱାନରେ ସେ ପ୍ରଜା ପୁଣି କଂଗ୍ରେସରେ ଆଶାରଖି ପୁଣି କଂଗ୍ରେସକୁ ଗାଦିରେ ବସାଇଛି । ପରିଣତିକୁ ସମଗ୍ର ଉପମହାଦେଶ ଓ ବିଶ୍ୱ ଅପେକ୍ଷା କରି ରହିଛି ।

ତେଣୁ, ଗତ ପଚିଶି ବର୍ଷର ଶାସନକୁ ମୋଟା ମୋଟି ଆମେ କଂଗ୍ରେସୀ ଶାସନହିଁ ବୋଲି ଯଦି ଧରିନେବା ଓ ସେଥିରେ ଆମର ନିରାଶ, କ୍ଷୁବ୍‌ଧ ଓ ଧୈର୍ଯ୍ୟଚ୍ୟୁତି

* ନବରବି, ୩ୟ ବର୍ଷ, ନବମ ସଂଖ୍ୟା, ମାର୍ଚ୍ଚ ୧୯୭୩ ।

ହେବାର ବହୁ କାରଣ ଆମେ ଦେଖି ପାରିଲେ ହେଁ, ଦେଶବାସୀ ଯେପରି ମନେ ନ କରନ୍ତି କମ୍ୟୁନିଜମ୍ ଆମକୁ ରାତି ପାହିଲା ବେଳକୁ ନେଇ ସ୍ୱର୍ଗରେ ଥୋଇଦେବ । କେରଳ ଓ ବଙ୍ଗରେ କମ୍ୟୁନିଜମ୍-ଶାସନର ସ୍ୱାଦ ପାଇ ମଧ୍ୟ ଏ ଧାରଣାକୁ ଅନେକ ଜାବୁଡ଼ି ଧରିବା ବିସ୍ମୟର ହେତୁ ନୁହଁ କି ? ଗଣତନ୍ତ୍ର-ଶାସନ ପରି ସଭ୍ୟ, ସୁନ୍ଦର, ମାନବିକ-ମର୍ଯ୍ୟାଦାପୂର୍ଣ୍ଣ ଶାସନ-ପଦ୍ଧତି ଆଉ ଦ୍ୱିତୀୟ ନାହିଁ । ଇନ୍ଦିରା ଗାନ୍ଧି ଜୀବନଯାକ ବନ୍ଧୁକ ଦେଖାଇ ଗାଦିରେ ବସିବା ଓ ଭଗିନୀ ଇନ୍ଦିରା ପ୍ରତି ୫ ବର୍ଷ ଶେଷରେ ଗାଦିରେ ରହିବା ପାଇଁ ଦରିଦ୍ରତମ ଭାରତୀୟ କୃଷକର କୁଟୀର ଦ୍ୱାରକୁ ଯାଇ ଭୋଟ ଭିକ୍ଷା କରିବା ଭିତରେ ଥିବା ପ୍ରଭେଦହିଁ ଡିମୋକ୍ରାସି ଓ କମ୍ୟୁନିଜମ୍‌ର ପ୍ରଭେଦ । ସେହି ପ୍ରଭେଦଟାକୁ ପାଠକେ କେବେହେଲେ ଭୁଲିଯିବେ ନାହିଁ । କାରଣ ସେହି ପ୍ରଭେଦ ଟିକକରେ ନିହିତ ଅଛି ଆମ ଶାସନ-ପ୍ରଥାର ଦୋଷ ଦୁର୍ବଳତାକୁ ବଦଳାଇବା ପାଇଁ ଆମ ପ୍ରତ୍ୟେକଙ୍କଠାରେ ସାମ୍ବିଧାନିକ ପବିତ୍ର ଦାୟିତ୍ୱ ଓ କ୍ଷମତା । ଗଣତନ୍ତ୍ରକୁ ହରାଇଲେ ଆମେ ଏହି ଦୈବତ ଅଧିକାରଟିକୁ ହିଁ ଚିରଦିନ ଲାଗି ହରାଇ ବସିବୁ ।

ମୋଟ ଉପରେ କୁହାଯାଇପାରେ ଯେ ଗତ ପଚିଶିବର୍ଷ ଭିତରେ କଂଗ୍ରେସୀଏ ଆମକୁ ସୁଶାସନ ତ ଦେଇପାରିନାହାନ୍ତି, ବରଂ କୁଶାସନ ଦେଇଛନ୍ତି । ତେବେ ସୁଶାସନ କ'ଣ ? ଗଣ୍ଡା ଗଣ୍ଡା ମନ୍ତ୍ରୀ ସେକ୍ରେଟାରିଏଟ୍‌ରେ ବସିଗଲେ, 'ସୁଶାସନ' ଆପେ ଆପେ ଆସିଯିବନି । ତାହାକୁ ମଧ୍ୟ କୁହାଯାଇ ପାରିବ ନାହିଁ, ''ଲୋକ-ପ୍ରତିନିଧି-ଶାସନ'' । କାରଣ ଆମେ ଗତ ପଚିଶି ବର୍ଷ ଧରି କଂଗ୍ରେସୀଙ୍କ ଭିତରେ କେବଳ ଜଣେ ଲାଲ୍‌ବାହାଦୂର ଶାସ୍ତ୍ରୀଙ୍କୁ ଛାଡ଼ିଦେଲେ, କୌଣସି କଂଗ୍ରେସୀ ମନ୍ତ୍ରୀକୁ ''ଲୋକ-ପ୍ରତିନିଧି'' ପରି ଶାସନ କରିବାର ଦେଖିଲୁ ନାହିଁ । ଗାଦିରେ ବସିଲା ପରେ, ଖଦଡ଼ଧାରୀ କଂଗ୍ରେସୀଟି ମଧ୍ୟ ହେଉଛନ୍ତି କେବଳ ସ୍ୱ-କୁଟମ୍ବ ବା କାଷ୍ଟ-ପ୍ରତିନିଧି – ସେ ଆଉ ଜାତି ପ୍ରତିନିଧି ହୋଇ ରହିପାରୁନାହାନ୍ତି । ଏବଂ ସକଳ କୁଶାସନର ସ୍ରୋତ ବହିଆସୁଛି ଏହିଠାରୁ ।

ଅଥଚ ଭାରତବର୍ଷରେ ''ସୁଶାସନ''ର ଆଦର୍ଶ ଆଦୌ ଅଜ୍ଞାତ ନଥିଲା । ପାଞ୍ଚ ହଜାର ବର୍ଷ ତଳେ ମହାଭାରତରେ ରଖାଯାଇଥିବା ସୁଶାସନର ଆଦର୍ଶ ତେଣୁ ଏଠାରେ ପରିବେଷିତ କରୁଛି ।

ମହର୍ଷି ନାରଦ ଥରେ ଯୁଧିଷ୍ଠିରଙ୍କୁ ରାଜ୍ୟଶାସନ ସଂପର୍କରେ ଏହିସବୁ ପ୍ରଶ୍ନ-କରିଥିଲେ –

''ମହାରାଜ, ସକଳ ଶାସକ କର୍ମ ଭିତରେ ତମେ ତମର ଚିତ୍ତକୁ ଧର୍ମରେ ସ୍ଥିର ରଖୁଛ କି ନାହିଁ ? ପୁଣି ବିଚାରି ଦେଖିଛ କି ନାହିଁ ? ଯେ ତମ ରାଷ୍ଟ୍ରର ସର୍ବବିଧ

ପ୍ରୟୋଜନକୁ ଚାହିଁ ତମର ରାଷ୍ଟ୍ରୀୟ ଆୟ ଯଥେଷ୍ଟ କି ନା ? କେବଳ ସଦ୍‌ବଂଶଜାତ ଏବଂ ଉଭୟ ତମ ପ୍ରତି ଓ କର୍ତ୍ତବ୍ୟପ୍ରତି ପ୍ରକୃତ ଶ୍ରଦ୍ଧାବାନ୍ ଲୋକମାନଙ୍କୁ ତମେ ମନ୍ତ୍ରୀ ପଦରେ ନିଯୁକ୍ତ କରୁଛ ତ ? ତମ ରାଜ୍ୟର ଦୁର୍ଗ ସକଳ ଧନ ଧାନ୍ୟ, ଅସ୍ତ୍ରଶସ୍ତ୍ର, ଜଳ, ଯନ୍ତ୍ର, କାରିଗର ଓ ଧନୁର୍ଦ୍ଧରମାନଙ୍କ ଦ୍ୱାରା ସୁପ୍ରତିଷ୍ଠିତ ଓ ସୁରକ୍ଷିତ ତ ? ତମ ରାଜ୍ୟରେ ଯେଉଁମାନେ ବିଦ୍ୟାବନ୍ତ ଓ ଜ୍ଞାନୀ ସେମାନଙ୍କୁ ତମେ ସେମାନଙ୍କର ବିଦ୍ୟା ଓ ଗୁଣାନୁଯାୟୀ ସାହାଯ୍ୟ କରୁଛ ତ ? ଯେଉଁ ଲୋକେ ତମ ପାଇଁ ରଣାଙ୍ଗନରେ ପ୍ରାଣଦାନ କରୁଛନ୍ତି, ସେମାନଙ୍କର ସ୍ତ୍ରୀ-ପରିବାରଙ୍କର ଯଥୋଚିତ ଭରଣ-ପୋଷଣର ବ୍ୟବସ୍ଥା କରିଛ ତ ? ଏବଂ ଏ ସବୁ ସତ୍ତ୍ୱେ ତମର ବ୍ୟୟ, ତମ ଆୟର ଏକ ଚତୁର୍ଥ, ଅର୍ଦ୍ଧ ବା ତୃତୀୟାଂଶ ମାତ୍ରରେ ହିଁ ରହୁଛି ତ ? ପୁଣି, ବେଳେବେଳେ ତମ ରାଜ୍ୟର ଗୁରୁଜନ, ବୃଦ୍ଧଜନ, ବଣିକ, ଶିଳ୍ପୀ ଓ ଜ୍ଞାତିଜନମାନେ ବିପନ୍ନ ହୋଇପଡ଼ିଲେ, ସେମାନଙ୍କୁ ଯଥାଶକ୍ତି ଧନଦାନଦ୍ୱରା ସାହାଯ୍ୟ କରୁଛ ତ ? କେବଳ କୌଣସି ପୂର୍ବ-ପ୍ରମାଦକୁ ଆଖିରେ ରଖି ତମର କୌଣସି ନିପୁଣକର୍ମା କର୍ମଚାରୀକୁ କର୍ମରୁ ବାହାର କରିଦେଉ ନାହଁ ତ ? ତମ ରାଜ୍ୟରେ କୃଷି ଏକାନ୍ତ ଭାବରେ ଦେବମାତୃକା ହୋଇ ରହିନାହିଁ ତ ? ଅର୍ଥାତ୍, ମରୁଡ଼ି-ବିପତ୍ତିକୁ ହଟାଇବା ପାଇଁ ତମର ସମଗ୍ର ରାଜ୍ୟରେ ବଡ଼ ବଡ଼ ଜଳପୂର୍ଣ୍ଣ ପୋଖରୀ ସବୁ ନାନା ସ୍ଥାନରେ ପ୍ରତିଷ୍ଠା କରି ରଖିଛ ତ ? ତମ ରାଜ୍ୟର କୃଷି, ବାଣିଜ୍ୟ, ପଶୁସଂପଦ ଏବଂ ଆୟ-ବ୍ୟୟ-ବ୍ୟବସ୍ଥା, ତମେ ନିପୁଣ ଲୋକମାନଙ୍କ ହାତରେ ରଖାଇଛ ତ ? ହେ ବତ୍ସ, ସର୍ବଦା ମନେରଖିଥିବ ଯେ, ଏ ସଂସାରର ଚକ୍ର କେବଳ ଆର୍ଥିକ-ସ୍ୱାଛନ୍ଦ୍ୟ ଦେଇ ହିଁ ଅନାୟାସରେ ଗଡ଼ିଚାଲେ; ଅନ୍ୟଥା ନୁହେଁ । ଅଥଚ ତମର ରାଜ୍ୟରେ ଆଖିରେ ପଡୁଥିବା ଦକ୍ଷତା ଓ ସତ୍‌କର୍ମକୁ ତମେ ସର୍ବଜନ ସମକ୍ଷରେ ପ୍ରଶଂସିତ ଓ ପୁରସ୍କୃତ କରୁଛ ତ ? ତମେ ତମର ସମଗ୍ର ରାଜ୍ୟକୁ ଅଗ୍ନି, ସରୀସୃପ ଓ ସଂକ୍ରାମକ ରୋଗାଦିରୁ ରକ୍ଷା କରିବାର ବ୍ୟବସ୍ଥା କରିଛ ତ ? କେବଳ ତାହା ନୁହେଁ, ତମ ରାଜ୍ୟରେ ଥିବା ଅନ୍ଧ, ପଙ୍ଗୁ ବା ଯେ କୌଣସି ବିକୃତାଙ୍ଗ ଲୋକ ଓ ପରିବ୍ରାଜକମାନଙ୍କୁ ତମେ ପିତୃଜନ ପରି ପାଳୁଛ ତ ? ହେ ମହାରାଜ, ସର୍ବୋପରି ତମେ ନିଜେ ନିଦ୍ରା, ଆଳସ୍ୟ, ଭୟ, କ୍ରୋଧ, କୋମଳତା ଓ ଦୀର୍ଘସୂତ୍ରତା –ଏହି ଛଅଟି ଦୋଷଠାରୁ ନିଜକୁ ଦୂରେଇ ରଖିପାରିଛ ତ ?''

ଆଶାକରେ କି, ପାଠକେ ବର୍ତ୍ତମାନ ସହଜରେ ଅବବୋଧ କରିପାରିବେ ଯେ ପାଞ୍ଚ ହଜାର ବର୍ଷ ତଳେ ମଧ୍ୟ, ଏ ରାଜ୍ୟରେ, ଏବର ଅତ୍ୟାଧୁନିକ ରାଷ୍ଟ୍ର-ଶାସନର, ଶିକ୍ଷା, ଚିକିତ୍ସା, ପଶୁ-ସଂରକ୍ଷଣ, କୃଷି ଓ ଜଳସେଚନ, ରେଭେନ୍ୟୁ, ଫାଇନାନ୍‌ସ,

ଓ ଡ଼ିଫେନ୍‌ସ ଆଦି, ସାଂସ୍କୃତିକ-ବିଭାଗ ସମେତ, କୌଣସି ବିଭାଗହିଁ ଅଜ୍ଞାତ ନଥିଲା । ବରଂ କଂଗ୍ରେସୀଙ୍କ ଶାସନରେ ଜନ-କଲ୍ୟାଣ ନାମରେ ବର୍ତ୍ତମାନ ସମଗ୍ର ଭାରତୀୟ ରାଷ୍ଟ୍ର ଓ ପ୍ରତ୍ୟେକଟି ଭାରତୀୟ ରାଜ୍ୟ, ''ଡେଫିସିଟ୍-ଫାଇନାନ୍‌ସ'' ନାମକ ମରୀଚିକା ପଛରେ ଦଉଡ଼ି, ଗଭୀର ଭାବରେ ଋଣଗ୍ରସ୍ତ । ପୁଣି ଏମାନଙ୍କ ଶାସନରେ ବିଜ୍ଞତା, ସାଧୁତା ଓ ନିପୁଣତା କିପରି ସମ୍ମାନିତ ଓ ପୁରସ୍କୃତ ତାହା ପାଠକମାନଙ୍କୁ ଅବିଦିତ ନୁହେଁ । ସର୍ବୋପରି ଏମାନଙ୍କର ଆର୍ଥିକ ସହାୟତାରେ ଏବଂ ସେହିମାନଙ୍କର ଆଦର୍ଶରେହିଁ ଭୁଲିଯାଇ ସମଗ୍ର ଏହି ଉପମହାଦେଶର ଯୁବଜନମାନେ ଆଜି ଯେ ବିଦ୍ୟା, ସାଧୁତା, ଓ ନିପୁଣତାକୁ ଏବଂ ଏ ଜାତିର ସାତହଜାରବର୍ଷର ପବିତ୍ର ଗୁରୁ-ଶିଷ୍ୟ-ପରମ୍ପରାକୁ ପଦାଘାତ କରି, ଦେଶକୁ ମୂର୍ଖତାର ଅନ୍ଧ-ତମକୁ ଟାଣିନେଇ ଚାଲିଛନ୍ତି, ତାହାହିଁ ସବୁଠାରୁ ଦୁଶ୍ଚିନ୍ତାରେ ମୁହ୍ୟମାନ ହେବାର ପରିସ୍ଥିତି ।

ସୁସ୍ଥ ସାମାଜିକ ପୂର୍ବାବସ୍ଥା ବା ଭାରତର ସ୍ୱକୀୟ ସଂସ୍କୃତିକୁ ଫେରାଇଆଣିବାର ପ୍ରକୃତ ଆନ୍ତରିକ ଅଭୀପ୍ସା ଏ ଦେଶରେ ଯଦି ଥାଏ, ତେବେ କେତୋଟି ବ୍ୟବସ୍ଥା ବର୍ତ୍ତମାନ ଏକାନ୍ତ ଅପରିହାର୍ଯ୍ୟ ଓ ଜରୁରୀ ବୋଲି ଧରିବାକୁ ହେବ ।

ପ୍ରଥମ– ତୁରନ୍ତ ବ୍ୟବସ୍ଥା-ଲୋକ-ପ୍ରତିନିଧିମାନଙ୍କର ଗୁଣାତ୍ମକ ବିଚାର ।

ବର୍ତ୍ତମାନ ଏକୋଇଶି ବର୍ଷୀୟ ଯେକୌଣସି ଲୋକ, କେବଳ ଟଙ୍କାପଇସା ବଳରେ, ଜଣେ ''ଲୋକ-ପ୍ରତିନିଧି'' ହୋଇ ଠିଆ ହୋଇ ପାରିବ ଓ ହେଉଛନ୍ତି ।

କିନ୍ତୁ, ଆମେ ଯଦି ଏ ମାଟିରେ ଏକ ଅକଳୁଷ ସମାଜ ଠିଆକରେଇବାକୁ ପ୍ରକୃତରେ ଚାହୁଁ, ତେବେ ପୂର୍ବେ କହିଛୁ ଏବଂ ବର୍ତ୍ତମାନ ମଧ୍ୟ କହୁଛୁ ଯେ, ନିର୍ବାଚନକୁ ସଂପୂର୍ଣ୍ଣ ରୂପେ ଏକ ବ୍ୟୟ-ମୁକ୍ତ ବ୍ୟବସ୍ଥା କରିବାକୁ ହେବ । ଅର୍ଥ ପରିବର୍ତ୍ତରେ, କେବଳ ଗୁଣର ବିଚାରରେହିଁ ଲୋକ-ପ୍ରତିନିଧି ବଛାହେବା ଉଚିତ । ଏପର୍ଯ୍ୟନ୍ତ ଶ୍ୱଶୁର-ଗୃହ-ବାସ ଏକ ମହତ୍ ଗୁଣ ବୋଲି ଧରାଯାଉଥିଲା ଲୋକ-ପ୍ରତିନିଧି ବଛାହେବାରେ; ଆଉ ଗୋଟାଏ ଦି'ଟା ସାଧାରଣ ନିର୍ବାଚନ ପରେ, ଦେଶ ପାଇଁ କାରାବାସୀ ହୋଇଥିବା ଲୋକ ହୁଏତ ଜଣେ ହେଲେ ଆଉ ନଥିବେ । ସେ ଅବସ୍ଥାରେ କେଉଁ କେଉଁ ଗୁଣ ଦେଖି ଯଥାଯୋଗ୍ୟ ଲୋକଙ୍କୁ ବିଧାନସଭା, ଲୋକସଭା ଓ ରାଜ୍ୟସଭାକୁ ପଠାଯିବ ? ସେତେବେଳେ, ଆର୍ଥିକ-କ୍ଷମତାକୁ ଆଦୌ ବିଚାରକୁ ନନେଇ, କେବଳ କେତେଗୁଡ଼ିଏ ଗୁଣକୁ ନେଇହିଁ ବିଚାର କରିବାକୁ ଆମେ ବାଧ୍ୟ ହେବା ।

ରାଜ୍ୟସଭାକୁ ଦେଶର ବୁଦ୍ଧିଜୀବୀ ଓ ବୟୋଜ୍ୟେଷ୍ଠ ରାଜନୀତିବିଶାରଦ ମାନେ

ଯେଉଁମାନେ ନିର୍ବାଚନର ଧୂଳି-ଝଡ଼ରେ ପଶିବା ଆଦୌ ଚାହାନ୍ତି ନାହିଁ, ସେହିମାନଙ୍କୁ ପଠାଇବା କଥା । କିନ୍ତୁ କଂଗ୍ରେସୀଏ ରାଜ୍ୟରେ କୌଣସି ବୁଦ୍ଧିଜୀବୀଙ୍କୁ ତ ପଠାଇ ନାହାନ୍ତି, ସେମାନେ ବରଂ ପଠାଇଛନ୍ତି ଏପରି ଲୋକଙ୍କୁ ଯେଉଁମାନେ କୌଣସି ଶିକ୍ଷିତ ଗୋଷ୍ଠୀରେ ନାମୋଚ୍ଚାରିତ ବି ହେବେ ନାହିଁ ।

ଯେଉଁ ଶାସକଗୋଷ୍ଠୀ ନିଜର ସୁବିଧା ପାଇଁ ସମ୍ବିଧାନ ଆଖିରେ ଏପରି ଧୂଳି ପକାଇବାକୁ ଦ୍ୱିଧା କରନ୍ତି ନାହିଁ, ସେ ଆଉ 'ସୁଶାସନ' ଦେବେ କିପରି ? ନାରଦ କ'ଣ ପାଞ୍ଚହଜାର ବର୍ଷ ତଳେ ମଧ ଯୁଧିଷ୍ଠିରଙ୍କ ପରି ରାଜାକୁ ମିଛରେ ପଚାରିଥିଲେ, ଯେ କେବଳ ସଦ୍‌ବଂଶଜାତ ଓ କର୍ତ୍ତବ୍ୟ ପ୍ରତି ଶ୍ରଦ୍ଧାବାନ୍ ଲୋକଙ୍କୁ ମନ୍ତ୍ରୀ ପଦରେ ନିଯୁକ୍ତ କରିଛନ୍ତି କି ନାହିଁ ? ବା ତାଙ୍କ ରାଜ୍ୟରେ ତାଙ୍କ ଆଖିରେ ପଡୁଥିବା ଦକ୍ଷତା ଓ ସତ୍‌କର୍ମଶୀଳତାକୁ ସେ ସର୍ବଜନସମକ୍ଷରେ ପ୍ରଶଂସିତ ଓ ପୁରସ୍କୃତ କରୁଛନ୍ତି କି ନାହିଁ ?

ତେଣୁ ସମ୍ବିଧାନରୁ ଆମର ପୁଣ୍ୟଶ୍ଲୋକ ସାମ୍ବିଧାନିକ ପିତୃପୁରୁଷଗଣ ଆମର ମର୍ଯ୍ୟାଦା ପାଇଁ ରଖିଯାଇଥିବା ମୌଳିକ ନାଗରିକ ଅଧିକାରସବୁକୁ କାଢ଼ିନେବା ପାଇଁ ବ୍ୟବସ୍ଥା ହେବା ଆଗରୁ, ବହୁ ପୂର୍ବରୁ ହେବା ଉଚିତ ଥିଲା ଏବଂ ବର୍ତ୍ତମାନ ମଧ ଏକାନ୍ତ ହେବା ଉଚିତ, ଲୋକପ୍ରତିନିଧିମାନଙ୍କର ଗୁଣାତ୍ମକ ନିର୍ବାଚନର ବ୍ୟବସ୍ଥା ।

ପୁଣି ଗୁଣର ଅର୍ଥ ଯେପରି କେହି ନବୁଝନ୍ତୁ କେବଳ ଡିଗ୍ରୀ-ଡିପ୍ଲୋମାର ତିଳକ । ଏଦେଶ ଓ ବିଦେଶରୁ ଡକ୍‌ଟରେଟ୍ ମଧ ଅନାୟାସରେ ସଂଗ୍ରହ କରି, ବହୁ ମୂର୍ଖଙ୍କୁ ଆମେ ଏବେ ଭେଟୁଛୁ କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ । ଲୋକ-ପ୍ରତିନିଧି-ଠାରେ ଆମେ ଏ ପ୍ରକାର ବିରୋଧାଭାସୀ ଚିତା-ଚଇତନ ଦେଖିବାକୁ ଚାହୁଁନା । ପ୍ରଥମରେ ଆମର ପ୍ରତ୍ୟେକ ଲୋକ ପ୍ରତିନିଧିଙ୍କର ଅନ୍ତତଃ ନିଜ ନିଜ ଅଞ୍ଚଳରେ ସାଧୁତା ଓ ସତ୍ୟବାଦୀତାର ଲୋକ-ଖ୍ୟାତି ଥିବା ସର୍ବାଦ୍ୟ ଯୋଗ୍ୟତା ଭାବରେ ଲୋକ-ସଂଗ୍ରହ ବା ସାମାଜିକ ସେବା ପାଇଁ ତାଙ୍କର ସହଜାତ ପ୍ରବୃତ୍ତି ଥିବାଟା ପରୀକ୍ଷା କରି ଦେଖିବା ଉଚିତ । ତୃତୀୟରେ ସେ ଥିବାର କଥା, ଜୀବିକା ବା କୁଟୁମ୍ବୀ-ପରିପୋଷଣ ପାଇଁ ଆତ୍ମ-ନିର୍ଭର ।

ଗତ ପଚିଶି ବର୍ଷ ଭିତରେ, ଆମର ଜାତୀୟ ଅଧଃପତନର ବଡ଼ କାରଣ ହେଲା ଏହି ଯେ, ଗୁଡ଼ାଏ ଲୋକ, ବୌଦ୍ଧିକ, ଚାରିତ୍ରିକ ଓ ନାଗରିକ ସଦ୍‌ଗୁଣାବଳୀକୁ ଭ୍ରୂକ୍ଷେପ ନ କରି, କେବଳ ଜେଲ-ଯିବାର ଫୁଲମାଳ ଦେଖାଇ, ରାଜନୀତିକୁ ଏକମାତ୍ର ପେସା କରି ବସିଲେ ଏବଂ ସେଥିରେ ଥିବା ''ଲୋକ-ସଂଗ୍ରହ''ର ସୁବର୍ଣ୍ଣ ସୁଯୋଗକୁ ଖାତିର ନ କରି, ସେମାନେ କେବଳ ନିଜ ନିଜ ପାଇଁ ଧନ-

କ୍ଷମତା-ସଂଗ୍ରହ କରିଲାଗିଲେ । କ୍ଷମତାରୁ ଟଳିପଡ଼ିଲେ, ଏମାନଙ୍କର ଅନ୍ୟ କୌଣସି ହେଲେ ଗୁଣ ନାହିଁ ଯାହା ପାଇଁକି ସମାଜ ଏମାନଙ୍କୁ ଖାତିର କରିବ । ତେଣୁ ଏମାନଙ୍କର ପ୍ରାଣପଣ ଚେଷ୍ଟା ହେଲା କୌଣସି ମତେ କ୍ଷମତାକୁ ଜାବୁଡ଼ି ଧରିବା । ଏଥିପାଇଁ ଏକାନ୍ତ ଦରକାର ଏକ ଏକ ମେଣ୍ଟ । ସେଥିପାଇଁ ଏମାନେ ପଶିଲେ ଅଜ୍ଞ ଶ୍ରମିକ, କୃଷକ ଓ ଅପକ୍ୱ ଛାତ୍ରମାନଙ୍କ ଭିତରେ ଏବଂ ସେମାନଙ୍କୁ ନାନା ମିଥ୍ୟା, ଅବାସ୍ତବ ଓ ରଙ୍ଗୀନ ଜୀବନର ସ୍ୱପ୍ନ ଶୁଣାଇ, ମାତ୍ର ପଚିଶିଟା ବର୍ଷ ଭିତରେ ଦେଶକୁ କରିପାରିଛନ୍ତି ଛାରଖାର ।

ତେଣୁହିଁ ବ୍ୟବସ୍ଥା ରହିବା ଏକାନ୍ତ ଉଚିତ ଯେ, ଯିଏ ଲୋକ ପ୍ରତିନିଧି ହେବେ, ତାଙ୍କର ନିଜର ଜୀବିକା ଓ କୁଟୁମ୍ବ ପରିପୋଷଣ ପାଇଁ ସ୍ୱତନ୍ତ୍ର ସାମର୍ଥ୍ୟ ଥିବ ।

ଜଣେ ଓକିଲ-ବନ୍ଧୁ ଛାତ୍ର ଅବସ୍ଥାରୁ ଥିଲେ ଜାତୀୟବାଦୀ । ଓକିଲ ଭାବରେ ସେ ଯଥେଷ୍ଟ ରୋଜଗାର କରନ୍ତି । ସାଙ୍ଗମାନଙ୍କ ଅନୁରୋଧରେ ସେ ଥରେ ଦି'ଥର ରାଜନୀତିରେ ପ୍ରତ୍ୟକ୍ଷ ଭାବରେ ଯୋଗଦେଲେ । ମନ୍ତ୍ରୀ ମଧ ହେଲେ । କିନ୍ତୁ ଅନ୍ୟମାନଙ୍କ ପରି, ବିଶେଷ କରି ଜେଲ-ଯାଇଥିବା ଦରପାଠୁଆ, ଅନ୍ୟ ବହୁ ଖଦଡ଼ଧାରୀ କଂଗ୍ରେସୀଙ୍କ ପରି ତାଙ୍କଠି ମନ୍ତ୍ରୀ-ଚୌକୀ ପାଇଁ ଅଦମନୀୟ ଲାଳସା ଦେଖାଗଲା ନାହିଁ, ବରଂ ମନ୍ତ୍ରୀ ଭାବରେ ତାଂକର ଆୟ କମିଗଲା । ଅଥଚ ସେ ମନ୍ତ୍ରୀ ଥାଇ ଏକ ପଇସା ଲାଞ୍ଚନେବାର କେହି କହିପାରିବନି । ଏବେ ମନ୍ତ୍ରୀ ବା ଏମ.ଏଲ.ଏ ନଥାଇ ମଧ, ସେ ବନ୍ଧୁ ବେଶ୍ ସାମାଜିକ ମର୍ଯ୍ୟାଦା ଓ ସୁଖ-ସ୍ୱାଚ୍ଛନ୍ଦ୍ୟରେ ଅଛନ୍ତି ।

ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ର ପ୍ରଭୃତିରେ କାହାରିହେଲେ ରାଜନୀତି ଏକମାତ୍ର ଜୀବିକା ହୋଇ ରହିନପାରେ । କୌଣସି ଗଣତାନ୍ତ୍ରିକ ରାଷ୍ଟ୍ରରେ ଏହା ସମ୍ଭବ ହୋଇନପାରେ । ଏହା ସମ୍ଭବ କେବଳ କମ୍ୟୁନିଷ୍ଟ ରାଜ୍ୟରେ, କାରଣ ସେଠି ନିର୍ବାଚନ ବା ଲୋକମତ ନାହିଁ । ଯେ ଥରେ କ୍ଷମତାକୁ ଆସିଗଲା ସେ ଷ୍ଟାଲୀନ୍ ବା ମାଓ ପରି ରହିଲା ସେଠି ମୃତ୍ୟୁଯାଏଁ ଲୋକଙ୍କୁ ବନ୍ଧୁକ ଦେଖାଇ ବା କନ୍‌ସେଣ୍ଟ୍ରେସନ୍-କ୍ୟାମ୍ପ୍ ବା ପାଗଲା ଗାର୍ଦିରେ ଭର୍ତ୍ତି କରି ।

ଅନ୍ୟ ପକ୍ଷରେ, ଇଂଲଣ୍ଡର ପୂର୍ବତନ ପ୍ରଧାନମନ୍ତ୍ରୀ ଉଇଲ୍‌ସନ୍ ଥିଲେ ଓ ଅଛନ୍ତି ମଧ ଇଂଲଣ୍ଡର ପ୍ରତିଭାଧର ଓକିଲମାନଙ୍କ ଭିତରୁ ଏକତମ । ଆବ୍ରାହାମ୍ ଲିଙ୍କନ ଥିଲେ ଓକିଲ । କେନେଡ଼ି ଥିଲେ ଧନୀ ଘରର ପିଲା । ପ୍ରେସିଡେଣ୍ଟ ଜନ୍‌ସନଙ୍କର ବ୍ୟବସାୟ ହେଲା ପଶୁ-ପାଳନ । ଇଂଲଣ୍ଡର ପ୍ରଧାନମନ୍ତ୍ରୀମାନଙ୍କ ଭିତରେ, ରାମସେ ମାକ୍‌ଡ଼ୋନାଲଡ଼ ବୋଧହୁଏ ଥିଲେ ଦରିଦ୍ରତମ ବ୍ୟକ୍ତି । ସେ ଥିଲେ ଏକ ମୋଚିର ପୁତୁରା । କିନ୍ତୁ ପିଲାଦିନୁ ଏକ ଶ୍ରମିକ ଭାବରେ ନୈଶବିଦ୍ୟାଳୟମାନଙ୍କରେ ପାଠ-

ପଢ଼ି, ସେ ଶେଷରେ ସାମ୍ବାଦିକ ଓ ଲେଖକ ଭାବରେ ଜୀବିକାର୍ଜନ କଲେ । ଏଥିରେ ବା କେତେ ମିଳିବ ? ତେଣୁ ପ୍ରଧାମନ୍ତ୍ରୀ ହେଲା ବେଳକୁ ମଧ୍ୟ ତାଙ୍କର ନିଜର ଗୋଟିଏ ମୋଟର୍‌କାର ନଥିବା ଯୋଗୁଁ, ଜଣେ ବନ୍ଧୁ ତାଙ୍କୁ ନିଜର ମୋଟର୍‌କାରଟି ଧାରଦେଇଥିଲେ । ଡାଉନିଂ-ଷ୍ଟ୍ରୀଟ୍‌ର ଦଶ ନମ୍ବର ଘର ଛାଡ଼ିଲା ପରେ, ତାଙ୍କ ଝିଅ, ଗୋଟିଏ ଚା'ଦୋକାନୀକୁ ବିବାହ କରିଥିଲା । ଅଥଚ ଆମର ତଥାକଥିତ ଗାନ୍ଧିବାଦୀ ମନ୍ତ୍ରୀମାନଙ୍କ ପୁଅ-ଝିଅ ବିଭାଘରେ କି ଆଡ଼ମ୍ବର ଆମେ ନ ଦେଖିଲୁ !

ଇଂଲଣ୍ଡ ଓ ଯୁକ୍ତରାଷ୍ଟ୍ର ପ୍ରଭୃତିରେ ପ୍ରତ୍ୟେକ ନାଗରିକର ବ୍ୟକ୍ତିତ୍ୱରେ ସାଧୁତା ଓ ଆତ୍ମନିର୍ଭରତା, ଏହି ଦୁଇଟି ଗୁଣକୁ ଯେଉଁ ଉଚ୍ଚ ସମ୍ମାନ ଦିଆଯାଏ, ତାହା ଭାରତବର୍ଷରେ ଅକଳ୍ପନୀୟ । ଯେଉଁଠି ଭାଇସ୍‌ଚାନ୍‌ସେଲର ଶ୍ରେଣୀର ଲୋକେ ଅନ୍ୟାୟରେ ନମ୍ବର ବଢ଼ାଇ, ନିଜ ପୁଅମାନଙ୍କୁ ଫାଷ୍ଟକ୍ଲାସ୍ ଡ଼ିଗ୍ରୀ ଦେଇପାରନ୍ତି, ସେ ସମାଜର ରାଜନୀତିକମାନେ କ୍ଷମତାର ଆସନକୁ ଆସିଲାମାତ୍ରେ ଦୁର୍ନୀତିଗ୍ରସ୍ତ ହେବାଟା ଆଶ୍ଚର୍ଯ୍ୟର ବିଷୟ ହେବ କିପରି ? ଯେଉଁ ଜାତି ଯେପରି, ସେହି ଜାତି ସେପରି ଶାସନ ହିଁ ଆଶା କରିପାରେ ।

କିନ୍ତୁ ଏ ପ୍ରକାର ଜାତୀୟ ଦୁର୍ବଳତାକୁ ନରୋକିଲେ ଆମେ ଅଚିରେ ଆମ ସ୍ୱାଧୀନତାହିଁ ହରାଇବସିପାରୁ । ଏବଂ ଲୋକପ୍ରତିନିଧିଏ ଯଦି ଦୁର୍ନୀତିଗ୍ରସ୍ତ ରହିବେ, ତେବେ ଦେଶର ଦୁର୍ନୀତିକୁ ରୋକିବ କିଏ – କାରଣ ସମଗ୍ର ଶାସନକଳ ବର୍ତ୍ତମାନ ତାଙ୍କ ହାତରେ । ତେଣୁ ଯାହାର ନିଜର ସ୍ୱଚ୍ଛଳ ଜୀବନ ଯାପନ ପାଇଁ ବ୍ୟକ୍ତିଗତ କୌଣସି ଉତ୍ତମ ଧନ୍ଦା ନାହିଁ, ସେପରି ଲୋକ "ଲୋକପ୍ରତିନିଧି" ହୋଇ ପାରିବ ନାହିଁ ଜାଣିଲେ, ରାଜନୀତିରେ ନୈତିକ ସଚେତନତା ଆପେ ଆପେ ଅନେକ ପରିମାଣରେ ଆସିଯିବ ବୋଲି, ଆମେ ଆଶା କରି ପାରିବା । ବର୍ତ୍ତମାନ କିନ୍ତୁ ସଂପୂର୍ଣ୍ଣ ନିରଙ୍କୁଶ ଅବସ୍ଥା– ବର୍ତ୍ତମାନ ନିର୍ବାଚନ କେବଳ ପୁଞ୍ଜି ଖଟାଇ ପରେ କେବଳ ପ୍ରଚୁର ମୁନାଫା ଉଠାଇବାର ବ୍ୟବସ୍ଥା ।

ଚତୁର୍ଥରେ ନିର୍ବାଚିତ ହୋଇସାରିଲାପରେ, ସରକାରଙ୍କ ଆଡୁ ଏହି ବ୍ୟବସ୍ଥା ରହିବା ଉଚିତ୍ ଯେ, ଆମର ପ୍ରତିନିଧିମାନେ, ରାଜନୀତି, ଅର୍ଥନୀତି, ପ୍ରଶାସନନୀତି, ଇତିହାସ, ସମ୍ବିଧାନ ଓ ଜାତୀୟ ସାହିତ୍ୟ—ଏ ସମସ୍ତକୁ ଏକତ୍ରିତ କରି ସେମାନଙ୍କୁ ଗୋଟାଏ ମିଳିତ କୋର୍ସ ଉପରେ ଅବଗତ କରାଇ, ସେମାନଙ୍କୁ ରୀତିମତ ପରୀକ୍ଷା କରିବାକୁ ଓ ସେହି ଅନୁସାରେ ସାର୍ଟିଫିକେଟ୍ ଦେବାର ବ୍ୟବସ୍ଥା କରିବାକୁ ହେବ । କାରଣ ମୂର୍ଖ ବା ଦରପାଠୁଆ ଲୋକ କୌଣସି ଏକ ଜାତିର ପ୍ରତିନିଧିତ୍ୱ କରିବା

ଯେପରି ଲଜ୍ଜାଜନକ ସେହିପରି ବିପଜ୍ଜନକ । ଆମେ ସେହି ପ୍ରକାର ଲଜ୍ଜା ଓ ବିପଦ ଦେଇ ଯେ ଏହି ପଚିଶିବର୍ଷଧରି କ୍ରମେ ତଳକୁ ତଳକୁ ଖସୁଛି, ଆଶାକରେ ପାଠକେ ମାନିବେ ।

ପଞ୍ଚମରେ ନିର୍ବାଚନ ବ୍ୟୟଶୂନ୍ୟ ହେବା ସାଥେ ସାଥେ ଏକାନ୍ତ ହେବା ଉଚିତ୍ ଅପ୍ରତ୍ୟକ୍ଷ । ଜାତିର ମନକଥା ଜାଣିବା ପାଇଁ ନିର୍ବାଚନ ନାମରେ ଯେପରି ବ୍ୟୟବହୁଳ ଓ ଏକାନ୍ତ ଇତର, ତାମସିକ ପଦ୍ଧତିରେ କୁକ୍‌କୁଟ-ଲଢ଼େଇର ବ୍ୟବସ୍ଥା ଚାଲିଛି, ଏହା ସମଗ୍ର ଜାତି ଆଗରେ ଏକ ବୀଭତ୍ସ ଦୃଶ୍ୟ । ଏହାର ପ୍ରଭାବହିଁ ସମଗ୍ର ଭାବରେ ଆମର ଯୁବଜଗତର ଚିନ୍ତାଧାରାକୁ ଅବାଟକୁ ନେବାରେ ଲାଗିଛି । ଏହାହିଁ ଦେଶର ସକଳ ଦୁର୍ନୀତିର ଓ ଆଜିର ବହୁ ବ୍ୟୟସାପେକ୍ଷ କୃଚ୍ଛ୍ର ଜୀବନର ଜନନୀ । ସମ୍ବିଧାନ-ସଂଶୋଧନ ଦେଇ ଏହାର ତୁରନ୍ତ ପ୍ରତିକାର ହେବା ଉଚିତ୍, ଏବଂ ବ୍ୟବସ୍ଥା ହେବା ଉଚିତ୍ ଯେ ନାଗରିକମାନଙ୍କଠାରୁ ନୀରବରେ ଟିକସ୍ ଆଦାୟ କଲାପରି ସେମାନଙ୍କର ମତ ବା ଭୋଟକୁ ମଧ୍ୟ ସରକାର ଜୁଡ଼ିସିଆରୀ ବା ସ୍ୱୟଂ ନିର୍ବାଚନ-ସଂସ୍ଥା ଦେଇ, ନୀରବରେ ଆଦାୟ କରିନେବେ । ମତପ୍ରଦାନ ବ୍ଲକ୍‌ରୁ ପାର୍ଲିଆମେଣ୍ଟ ଯାଏଁ ସ୍ତରକୁ ସ୍ତର ଅପ୍ରତ୍ୟକ୍ଷ ଭାବରେ ହିଁ ହୋଇ ଚାଲିବା ଉଚିତ୍ । ଆମର ସ୍ୱୟଂ ପ୍ରେସିଡ଼େଣ୍ଟ୍ ଅପ୍ରତ୍ୟକ୍ଷ ପଦ୍ଧତିରେ ନିର୍ବାଚିତ ହେବା ସ୍ଥଳେ, ପଞ୍ଚାୟତ-ନିର୍ବାଚନଟା ମଧ୍ୟ ଅପ୍ରତ୍ୟକ୍ଷ ପଦ୍ଧତିରେ ହେଲେ କାହିଁକି ଅଶାସ୍ତ୍ରୀୟ ବା ଅକଲ୍ୟାଣକର ହୋଇଉଠିବ, ବୁଝି ହେଉ ନାହିଁ । ବରଂ ପ୍ରତ୍ୟକ୍ଷ-ନିର୍ବାଚନର କୁକ୍‌କୁଟ ଲଢ଼େଇ ଫଳରେ, ଜଣେ ଜଣେ ପଲ୍ଲୀବାସୀ ଏବେ ସାମାନ୍ୟ ଓ୍ୱାର୍ଡ଼ମେମ୍ବରଟିଏ ହେବା ପାଇଁ, ଜମିବାଡ଼ି ବିକିବାର ଏହି ଲେଖକ ନିଜର ଗ୍ରାମାଞ୍ଚଳରେ ଘଟିବାର ଦେଖି ସ୍ତମ୍ଭୀଭୂତ । ପ୍ରତ୍ୟକ୍ଷ ନିର୍ବାଚନ ଉଠାଇ ନେଲେ ଯାଇ ପଲ୍ଲୀ ଭାରତ ବା ପଲ୍ଲୀ ଓଡ଼ିଶା ଅନେକ ପରିମାଣର ତା'ର ପ୍ରାକ୍ତନ ଶାନ୍ତିମୟ ବାତାବରଣ ଫେରି ପାଇବାର ଆଶା ।

କଲେଜ ଓ ବିଶ୍ୱବିଦ୍ୟାଳୟମାନଙ୍କରେ ୟୁନିଅନ୍‌ମାନଙ୍କର ପ୍ରତ୍ୟକ୍ଷ ନିର୍ବାଚନ ଯେ ସେଠାର ବାତାବରଣ ଦୂଷିତ ହେବାର ଏକ ମୁଖ୍ୟ କାରଣ, ଏଥିରେ ମତ-ଦ୍ୱୈଧ ନଥାଇପାରେ । ଏହି ପ୍ରତ୍ୟକ୍ଷ ନିର୍ବାଚନ ଦେଇହିଁ ରାଜନୈତିକ ଟାଉଟରମାନେ ଆମର ବିଦ୍ୟାୟତନମାନଙ୍କରେ ଢୁକି, ସେମାନଙ୍କର ମର୍ଯ୍ୟାଦାକୁ ଧୂଳିସାତ୍ କରିବାରେ ସହଜରେ ସକ୍ଷମ ହୋଇପାଇଛନ୍ତି । ପ୍ରତ୍ୟକ୍ଷ ଛାତ୍ର ନିର୍ବାଚନ ଯୋଗୁହିଁ କୌଣସି ବିଦ୍ୟାନୁଷ୍ଠାନର କାନ୍ଥବାଡ଼, ରାସ୍ତା ଓ ନାଗରିକମାନଙ୍କର ପାଚେରି ଅକଳଙ୍କ ରହି-ପାରୁନାହିଁ । ଏହା ଏକ ଘୋର ଅସାମାଜିକ ବ୍ୟବହାର । କିନ୍ତୁ ଆମର ଆଗାମୀପୁରୁଷ ରାଜନୈତିକ ଟାଉଟରମାନଙ୍କ ଆଦର୍ଶରେ ଏପ୍ରକାର ମହିମାମୟ ଭାଣ୍ଡାଲିଜ୍‌ମ ଛାତ୍ରତ୍ୱର

ଏକ ଗୁଣ ଭାବରେ ପିଲାବେଳୁ ଶିଖୁଛନ୍ତି ।

କିନ୍ତୁ ଏପ୍ରକାର ପ୍ରତିଷେଧକ ବ୍ୟବସ୍ଥା ସବୁ କରିନେଲେ, ଆମେ ଯେ ରାମ-ରାଜ୍ୟ ସାଙ୍ଗେ ସାଙ୍ଗେ ପାଇଯିବା, ଏ ବିଶ୍ୱାସ ଏହି ଲେଖକର ନାହିଁ । ଯଦି କେହି ପାଠକେ ବିଶ୍ୱାସ କରନ୍ତି ଯେ ଗତ ପଚିଶ ବର୍ଷ ହେଲା ଆମେ ରାମରାଜ୍ୟ ଶାସନ ପାଇଆସୁଛୁ, ତେବେ ଆଉ କିଛି ବା ସଂସ୍କାର ଦରକାର କ'ଣ ? କିନ୍ତୁ ଏହା ଅକାଟ୍ୟ ଯେ, ଯୁଦ୍ଧ-ଧ୍ୱସ୍ତ-ବିଧ୍ୱସ୍ତ, ଜର୍ମାନୀ, ଜାପାନ, ରୁଷିଆ ଓ ଚୀନ ଏଇ ସମୟ ଭିତରେ ନିଜନିଜକୁ ଯେପରି ଅକଳ୍ପନୀୟ ଭାବରେ ଶକ୍ତିଶାଳୀ ଓ ସମୃଦ୍ଧ କରିପାରିଛନ୍ତି, ଭାରତବର୍ଷ ତା'ର ସୀମା ସ୍ପର୍ଶ କରିପାରୁନାହିଁ । କ୍ଷୁଦ୍ରାତିକ୍ଷୁଦ୍ର ଜାପାନର ବହିର୍ବାଣିଜ୍ୟ ସହିତ ଏହି ବିରାଟ ଦେଶର ବହିର୍ବାଣିଜ୍ୟ ତୁଳନାର ସ୍ପର୍ଦ୍ଧାହିଁ କରିନପାରେ ।

ସରକାରୀ ତହବିଲରୁ ସହସ୍ର-ସହସ୍ର କୋଟି ମୁଦ୍ରା ବ୍ୟୟକରି ଆମେ ଯେତେ ଯେତେ ପବ୍‌ଲିକ୍-ସେକ୍ଟର୍-ସଂସ୍ଥା ଠିଆକରାଇଥିଲୁ, ସେଗୁଡ଼ିକ ଲାଭ ଦେବା ଓ ବେକାର ସମସ୍ୟା ସମାଧାନ କରିବା ଦୂରେଥାଉ, ଆମର ନିଷ୍ଠା ଓ ନୈପୁଣ୍ୟ ଫଳରେ, ସେମାନଙ୍କର ମିଳିତ-କ୍ଷତି ସେମାନଙ୍କୁ ଠିଆକରାଇଥିବା ମୂଳ ପୁଞ୍ଜିରୁ ମଧ ବଳିପଡ଼ିଲାଣି । ଏବଂ ଏହି ବିରାଟ କ୍ଷତି ଓ ବୈଦେଶିକ ଋଣ ବାବଦକୁ, ମୂଳ ଓ ସୁଧ ବାବଦକୁ ସହସ୍ର କୋଟି ଟଙ୍କା ଏଇ ଗରିବ ଜାତି ହିଁ ଶୁଝିବ । ଏଥିରେ ଗରିବୀ ହଟିବ ନା ମାଡ଼ିଆସିବ ? ଯେତେ ବକ୍ତୃତା ଶୁଣାଇଲେ ମଧ, ଗରିବୀ ଯେ ମାଡ଼ିଆସୁଛି ଏହା କ'ଣ ଆମେ ସମସ୍ତେ ଜାଣୁନାହେଁ ? ତେଣେ, ଗୋଟାକ ପରେ ଗୋଟାଏ କଲେଜ ଓ ବିଶ୍ୱବିଦ୍ୟାଳୟ ବନ୍ଦ ହେବାରେ ଲାଗିଛନ୍ତି । ସେଠି ଆଗାମୀ ଜାତି ହେବେ କ'ଣ, ସେସବୁ ରାଜନୈତିକ ପଶାପାଲିରେ ପରିଣତ ହେଲାଣି । ଏବଂ କପି କରି ଡିଗ୍ରି-କାଗଜ ଖଣ୍ଡମାନ ଆଦାୟ କରିବା ହେଲା ଆମର ତରୁଣସମାଜର ବୈପ୍ଲବିକ ଅଭିଯାନ ଓ ଭବିଷ୍ୟତ ଦାୟିତ୍ୱ ପାଇଁ ବିରାଟ ପ୍ରସ୍ତୁତି । ତେବେ ଏ ପର୍ଯ୍ୟନ୍ତ ଆମେ ନିଜର ଖାଦ୍ୟ ଗଣ୍ଡାକ ବି ଯୋଗାଡ଼ କରିପାରୁନୁ । ଚାରିଆଡ଼େ ପରିବ୍ୟାପ୍ତ ଦୁର୍ନୀତି ।

ଏଥିରେ ଯଦି କେହି ଭାବେ ଯେ ଆମେ ସୁଶାସିତ ହୋଇଚାଲିଛୁ, ଭଲକଥା ।

କିନ୍ତୁ ଯିଏ ଅନ୍ୟଥା ଭାବନ୍ତି, ସେମାନଙ୍କ ଭିତରେ ଏ ଲେଖକ ଜଣେ । ରାଜନୀତି ତା'ର ବ୍ୟବସାୟ ନ ହେଲେ ହେଁ, ଦେଶର ନାଗରିକ ଭାବରେ ଦେଶର ସମସାମୟିକ ସମସ୍ୟା ଉପରେ ଚିନ୍ତାକରିବାର ଓ କହିବାର ତା'ର ଯେଉଁ ସହଜାତ ଅଧିକାର ଅଛି ବୋଲି ସେ ଧରିନେଇଛି, ସେହି ପ୍ରେରଣାରେ ତା'ର କିଛି ଚିନ୍ତା ସେ ଏଠାରେ କହିରଖୁଛି ।

ସୁଶାସନର ଆଦର୍ଶ ଭାବରେ ମହାଭାରତରୁ କିଛି ଶୁଣାଇ ଦିଆଯାଇଛି । ବର୍ତ୍ତମାନ ପ୍ରବନ୍ଧଟି ଶେଷକରିବୁ ପାଠକମାନଙ୍କ ସମ୍ମୁଖରେ ରଖି, ପ୍ଲେଟୋଙ୍କର ଆଦର୍ଶ 'ଶାସକ'ର ଚିତ୍ର, ଯେଉଁଥିରୁ ମଧ୍ୟ ଆମର ଲୋକପ୍ରତିନିଧିମାନେ ସମୁଚିତ କର୍ମବ୍ୟବହାରର ସଭ୍ୟ, ସମ୍ମାନନୀୟ ପନ୍ଥା ଅକ୍ଲେଶରେ ଦେଖିପାରିବେ ।

ପ୍ଲେଟୋ ତାଙ୍କର ବିଶ୍ୱପ୍ରସିଦ୍ଧ ଗ୍ରନ୍ଥ 'ରିପବ୍‌ଲିକ୍'ରେ ଶାସକ ଏହିପରି ହେବା ଉଚିତ୍ ବୋଲି କହିଛନ୍ତି –

''ପ୍ରଥମତଃ, ନିତାନ୍ତ ଯାହା ଆବଶ୍ୟକ ତାହା ବ୍ୟତୀତ ଭବିଷ୍ୟତର ଶାସକଙ୍କର ନିଜସ୍ୱ ସଂପତ୍ତି ବୋଲି କିଛି ରହିବ ନାହିଁ ।''

'ନିଜର' ବୋଲି ସ୍ୱତନ୍ତ୍ର ଏକ ଘର ମଧ୍ୟ ସେମାନଙ୍କର ନଥିବ । ଶାସକର ଗୃହକୁ ଯେକୌଣସି ନାଗରିକ ନିଜର ବୋଲି ବିଚାରି ସେଠାକୁ ଯାଇପାରିବେ ।

ମିତାଚାରୀ ଏକ ନାଗରିକ ବା ଏକ କୃଚ୍ଛ୍ର ଜୀବନ ସୈନିକର ଯେତିକି ଓ ଯେପରି ଖାଦ୍ୟାୟୋଜନ, ଶାସକଙ୍କର ମଧ୍ୟ ସେଥିରୁ ଅଧିକ କିଛି ରହିବ ନାହିଁ ।

ଶାସକମାନେ ନାଗରିକମାନଙ୍କଠାରୁ ନିଜର ଚଳାଚଳ ପାଇଁ ଯେଉଁ ବାର୍ଷିକ-ଭତ୍ତା ପାଇବେ, ତା'ଠାରୁ ଅଧିକ କିଛି ସେମାନେ ଯେପରି ଆଶା ନକରନ୍ତି ।

ବରଂ ଏହି ଭବିଷ୍ୟତ ଶାସକମାନେ, ସୈନିକମାନଙ୍କପରି ଏକାଠି ରହିବେ ଓ ଖାଇବେ ।

ସେମାନେ ସୁନା ଓ ରୁପା ସହିତ ଯେପରି କୌଣସି ପ୍ରକାରେ ସଂପୃକ୍ତ ନ ହୁଅନ୍ତି – କାରଣ ଏହି ଧାତୁ-ଦ୍ୱୟ ପୃଥିବୀର ବହୁ ସଂଘର୍ଷର କାରଣ ହୋଇଆସିଛନ୍ତି ।

ଶାସକମାନଙ୍କର ବୁଦ୍ଧି, ଚରିତ୍ର ଓ ବିଚକ୍ଷଣତାହିଁ ହେବ ସେମାନଙ୍କର ସହଜାତ ସ୍ୱର୍ଣ୍ଣରୌପ୍ୟ । ସେମାନେ ସୁନା-ରୁପା-ନାମକ ଧାତୁ ଦ୍ୱୟର ପ୍ରଲୋଭନରୁ ନିଜନିଜକୁ ଦୂରେଇ ରଖିପାରିଲେ, ତାହାହିଁ ହେବ ତାଙ୍କ ନିଜର ଓ ରାଷ୍ଟ୍ରର ପରମ ମଙ୍ଗଳ ଓ ଦୁର୍ଦ୍ଦଶାରୁ ମୁକ୍ତି ।

ନିଜର ଘର-ଜମି ବା ସମ୍ପତ୍ତି ରଖିଲେ ସେମାନେ ସାଧାରଣ ନାଗରିକର ନିମ୍ନସ୍ତରକୁ ହିଁ ଖସିଆସିବେ ଏବଂ ସେମାନଙ୍କ ସହିତ ପ୍ରତ୍ୟକ୍ଷ ସଂଘର୍ଷରେ ବୁଡ଼ିବେ । ଫଳରେ ସେମାନେ ସାଧାରଣ ନାଗରିକର ଘୃଣା ଓ ବିଦ୍ୱେଷହିଁ ଅର୍ଜନ କରିବେ ଏବଂ ସାଧାରଣ ନାଗରିକକୁ ସେହି ଦୃଷ୍ଟିରେ ଦେଖିବାକୁ ବାଧହେବେ । ସେମାନଙ୍କର ଏହି ଆଭ୍ୟନ୍ତରୀଣ ଚାରିତ୍ରିକ ବିଭୀଷିକା, ରାଷ୍ଟ୍ର ବାହାରର ଯେକୌଣସି ବିପଦଠାରୁ ବଳିଯିବ । ''ଏବଂ ଏହା ରାଷ୍ଟ୍ର ଓ ସେମାନଙ୍କର ଉଭୟର ଶେଷ-ମୁହୂର୍ତ୍ତକୁହିଁ ଡାକି ଆଣିବ ।''

# ସେ ଦେଶର ନାରୀ ଓ ଏ ଦେଶର ପୁରୁଷ*

ମସ୍କୋରୁ ପ୍ରକାଶିତ ହୁଏ ''ସୋଭିଏଟ ସାହିତ୍ୟ''— ସୋଭିଏଟ୍ ଋଷିଆର ବହୁ ଭାଷା ଓ ସାହିତ୍ୟର ମନୋଜ୍ଞ ମାସିକ ପ୍ରତିବିମ୍ବ । ସେହି ଦୃଷ୍ଟି ଓ ସେହି କାରଣରୁ, ସମଗ୍ର ବିଶ୍ୱ-ସାହିତ୍ୟରେ ଏହି ମାସିକ ସାହିତ୍ୟପତ୍ରିକାଟିର ସ୍ଥାନ ଓ ସମ୍ମାନ ଅନନ୍ୟ ବୋଲି ମନେ ହୁଏ । ପଚାଶ ବର୍ଷ ତଳେ ଉତ୍ତର ଓ କେନ୍ଦ୍ର ଏସିଆ ଥିଲା କେବଳ ପରସ୍ପର ଅବୋଧ-ଭାଷାଭାଷୀ ବହୁ ଯାଯାବର ଉପଜାତିମାନଙ୍କର ରାଜ୍ୟ, ଯେଉଁମାନଙ୍କର କେବଳ ଯେ ଲଖିତ ସାହିତ୍ୟ କିଛି ନଥିଲା ନୁହେଁ, ସେ ଭାଷାମାନଙ୍କର କୌଣସି ଲିପିମାଳା ମଧ୍ୟ ନଥିଲା । ସୋଭିଏଟ୍ କମ୍ୟୁନିଷ୍ଟମାନେ ଏ କ୍ଷେତ୍ରରେ ଏପରି ଯୁଗାନ୍ତକାରୀ ବିପ୍ଳବ ଆଣି ପାରିଛନ୍ତି, ଯାହାକୁ କି ସାଲ୍ୟୁଟ୍ ନକରି ରହିହେବନି । କାରଣ, ସେଦିନ ଯେଉଁମାନଙ୍କର ଲିପିହିଁ ନଥିଲା, ଆଜି ସେହି ସେହି ଭାଷାରେ ଆମେ ବିଶ୍ୱର ଶ୍ରେଷ୍ଠ ସାହିତ୍ୟ କେବଳ ପାଇବାନି, ଆମେ ମଧ୍ୟ ସେଦିନର ସେହି ସେହି ଅଲିଖିତ ଭାଷାମାନଙ୍କରେ ଏବେ ପ୍ରଥମଶ୍ରେଣୀର ଗଳ୍ପ, ଉପନ୍ୟାସ ଓ ନାଟକ ପ୍ରକାଶିତ ହେବାର ଦେଖିବା । ତେଣୁ ଏହି ଲେଖକ ପ୍ରତି 'ସୋଭିଏଟ ସାହିତ୍ୟ' ମାସିକ-ପତ୍ରଟିର ପ୍ରଚଣ୍ଡ ଆକର୍ଷଣ ଏହି ଯେ, ଏ ପତ୍ରିକାରେ ମାସ ପରେ ମାସ, ସେ ସୋଭିଏଟ୍ ଜୀବନ ଓ ଚିନ୍ତାଧାରା ସହିତ ପରିଚିତ ହେବା ସାଥେ ସାଥେ, ବିରାଟ-ବିସ୍ତୃତ ଏସିଆ-ମହାଦେଶର ଦୂର ଦୂର, ଉପାନ୍ତ ଅଞ୍ଚଳ କାମସ୍କଟକା ଓ ସାଇବେରିଆ ଇତ୍ୟାଦି ଅଜ୍ଞାତକୁଳଶୀଳ ଅଞ୍ଚଳର ମନୋଜ୍ଞ ସାମାଜିକ ଚିତ୍ର ମଧ୍ୟ ଦେଖିବାକୁ ପାଏ । ଏ ଚିତ୍ର, ବିଶ୍ୱମାନବର ଇନ୍ଦ୍ରଧାନୁକ ସପ୍ତରଙ୍ଗର ଚିର-ରହସ୍ୟମୟ ଚିତ୍ର । ଏ ଚିତ୍ର ସୋଭିଏଟ୍ ଋଷିଆର ରାଜନୀତିର ସଂକୀର୍ଣ୍ଣ-ହିଡ଼-ପାଚେରୀ ସବୁ ଡେଇଁ ଉଚ୍ଛ୍ୱସିତ ହୋଇ ମିଶିଯାଉଛି ବିଶ୍ୱମାନବର ଜୀବନସମୁଦ୍ରରେ, ଯାହାର ଦିଗନ୍ତ-ବିସ୍ତୃତ ଜଳରାଶି କେବଳ ମାନବ ପ୍ରେମ । ମାନବାତ୍ମାର ଅଶ୍ରୁସିକ୍ତ ଆସଂଗଲିପ୍ସା ଓ ମାନ-ଅଭିମାନରେ ଏହା ବିସ୍ମୟକର ଭାବରେ ଜର୍ଜରିତ ।

ଏ ସମସ୍ତ କେବଳ 'ପ୍ରପାଗାଣ୍ଡା' ହୋଇନପାରେ । ଦ୍ୱିତୀୟ ବିଶ୍ୱ-ଯୁଦ୍ଧର ପ୍ରଥମାର୍ଦ୍ଧ, ମିତ୍ରପକ୍ଷ ପ୍ରତି ନିରବଚ୍ଛିନ୍ନ ଭାବରେ କ୍ଷତି-ଓ-ଅପମାନଜନକ ରୀତିରେହିଁ ଚାଲିଥିଲା । ସେ ସ୍ରୋତ, ଅକ୍ଷ-ଶକ୍ତିମାନଙ୍କ ପ୍ରତି ପ୍ରଚଣ୍ଡ ପ୍ରତିଶୋଧ ଭାବରେ

* ନବରବି, ଜୁନ୍ ୧୯୭୩ ରେ ପ୍ରକାଶିତ । (୩ୟ ବର୍ଷ, ୧୨ମ ସଂଖ୍ୟା) ।

ଓଲଟା ବୋହିବାକୁ ଆରମ୍ଭ କଲା, ଯେତେବେଳେ ଋଷୀୟମାନେ ଲେନିନ୍‌ଗ୍ରାଡ଼୍ ଓ ଷ୍ଟାଲିନ୍‌ଗ୍ରାଡ଼୍‌କୁ ଅଭୂତପୂର୍ବ ବୀରତ୍ୱ ଓ ଜାତିପ୍ରାଣତା ସହିତ ରକ୍ଷା କଲେ । କୁହାଯାଇଥାଏ ଯେ, ବିଶ୍ୱ-ଇତିହାସର ସ୍ରୋତ ବଦଳାଇ ଦେଇଛନ୍ତି ଏକ ଏକ ନଗର । ଗତ ବିଶ୍ୱ-ଯୁଦ୍ଧରେ ବିଶ୍ୱଗୌରବର ଏକପ୍ରକାର ହୀରକ ମୁକୁଟ ଦାବି କରିପାରନ୍ତି କେବଳ ତିନୋଟି ସହର– ଲଣ୍ଡନ, ଲେନିନ୍‌ଗ୍ରାଡ଼ ଓ ଷ୍ଟାଲିନଗ୍ରାଡ଼୍ । ଗତ ମହାଯୁଦ୍ଧରେ ଲେନିନ୍‌ଗ୍ରାଡ଼୍ ଓ ଷ୍ଟାଲିନ୍‌ଗ୍ରାଡ଼୍‌ର ଶୌର୍ଯ୍ୟ ଓ ଦେଶପ୍ରାଣତାର ଅପୂର୍ବ କାହାଣୀ ଇଂରେଜ ଓ ଆମେରିକାନ୍‌ମାନଙ୍କ ଲେଖନୀରେ ମହାକାବ୍ୟ ଭାବରେ ପ୍ରକାଶିତ ହେଇସାରିଛି । ଏପ୍ରକାର ଅପୂର୍ବ ମାନବିକ ଗାଥା ତେଣୁ କେବଳ କମ୍ୟୁନିଷ୍ଟ ପ୍ରପାଗାଣ୍ଡା ନୋହିପାରେ ।

ଏବଂ ସେ ସବୁ ଗାଥା ପଢ଼ିଲେ ବା ମାସ ପରେ ମାସ ''ସୋଭିଏଟ୍ ସାହିତ୍ୟ''ର ପୃଷ୍ଠାମାନଙ୍କରେ, ସେଦିନ-ପର୍ଯ୍ୟନ୍ତ ଲିପି-ନଥିବା ଯାଯାବରଗୋଷ୍ଠୀ ସବୁର ଭାଷା-ମାନଙ୍କରୁ ଉତ୍‌କୃଷ୍ଟ ସାହିତ୍ୟର ନିଦର୍ଶନ ଦେଖୁଥିଲାବେଳେ, ଋଷିଆର ଅସହିଷ୍ଣୁ ବ୍ୟକ୍ତି-ସ୍ୱାଧୀନତା-ସଂହାରକ ଓ ହିଂସ୍ର-ମାର୍ଗରେ-ବିଶ୍ୱାସୀ ରାଜନୀତି ଓ ଏବଂ ଏପ୍ରକାର ଅନନ୍ୟ ଭାବରେ ମନୋଜ୍ଞ ସାହିତ୍ୟ-ସୃଷ୍ଟି ଭିତରେ ଯେଉଁ ବିରାଟ ଫାଙ୍କ ଆମେ ଥିବାର ଅନୁଭବକରୁ, ତାହା ସେହି ଲୌହ-ପର୍ଦ୍ଦା-ଘେରା ରହସ୍ୟମୟ ସୋଭିଏତ୍ ଋଷିଆକୁ ଅନ୍ତତଃ ଲେଖକ ନିକଟରେ ଆହୁରି ଅଧିକ ରହସ୍ୟମୟ କରିପକାଏ । କିନ୍ତୁ ମୋଟ ଉପରେ, ସାହିତ୍ୟ ପରାଭୂତ କରେ ରାଜନୀତିକୁ । ସମଗ୍ର ଜାତିଟା ଯଦି ଯନ୍ତ୍ର-ଚାଳିତ ପପେଟ୍ ମାତ୍ର ହୋଇଥାନ୍ତା ତେବେ ଯୁଦ୍ଧର ଭୀଷଣ ହୃଦୟହୀନତା ଭିତରେ ମଧ୍ୟ ଏପରି ମହାର୍ଘ, ସମ୍ମାନନୀୟ ପ୍ରାଣପୂର୍ଣ୍ଣ ମାନବିକତା ଫୁଟିଉଠନ୍ତା କିପରି ?

ଜଣେ ବିଦେଶିନୀଙ୍କର ଋଷ-ରଣ-କ୍ଷେତ୍ରରେ ପ୍ରତ୍ୟକ୍ଷ ଅଭିଜ୍ଞତା ଘଟିଥିଲା । ପରେ ସେ ସବୁକୁ ଏକ ଆତ୍ମ-କାହାଣୀ ଭାବରେ ପ୍ରକାଶ କରିଛନ୍ତି । ସେଥିରେ ଲେଖକ ପଢ଼ିଥିବା ଏକ ଘଟଣାର ଏଠାରେ ବର୍ଣ୍ଣନା ହୁଏତ ଅପ୍ରାସଙ୍ଗିକ ହେବନାହିଁ ।

ଋଷୀୟ ସୈନ୍ୟମାନେ ଦିନେ ଆହତ ଓ ବନ୍ଦୀଭୂତ ଜର୍ମାନ ସୈନ୍ୟମାନଙ୍କ ଭିତରେ ହଠାତ୍ ଆବିଷ୍କାର କଲେ ଜଣେ ମେଜର୍ ବା ବ୍ରିଗେଡ଼ିୟର୍ ଶ୍ରେଣୀର ତରୁଣ ଓ ଉଚ୍ଚପଦସ୍ଥ ଜର୍ମାନ୍‌କୁ । ଋଷୀୟ ସମର ବିଭାଗୀୟ କର୍ମଚାରୀମାନେ ଶତ୍ରୁ ହୋଇଥିବା ସତ୍ତ୍ୱେ, ତାଙ୍କୁ ସକଳ ପ୍ରକାର ଯଥୋଚିତ ସମ୍ମାନ ଓ ଶ୍ରଦ୍ଧା ପ୍ରଦର୍ଶନ କଲେ ଏବଂ ତାଙ୍କର ତୁରନ୍ତ ଚିକିତ୍ସାର ମଧ୍ୟ ବ୍ୟବସ୍ଥା କରିବସିଲେ । ସେ ତଳି-ପେଟରେ ଗୁଳିବିଦ୍ଧ ହୋଇଥିବାରୁ ତାଙ୍କର ପ୍ରଚୁର ରକ୍ତସ୍ରାବ ହେଉଥିଲା । ତେଣୁ ସେମାନେ ଅସ୍ତ୍ରୋପଚାରକରି ଗୁଳି ବାହାର କରିବା ପୂର୍ବରୁ, ତାଙ୍କୁ ରକ୍ତଦାନ ଦେବାର ତୁରନ୍ତ ବ୍ୟବସ୍ଥା କଲେ । କିନ୍ତୁ ମୁମୂର୍ଷୁ ହେଲେହେଁ, ସେ ଯେ ହିଟଲର୍‌ର

''ଆର୍ଯ୍ୟ'' ବୀର । ହିଟଲରଙ୍କର ପ୍ରଚଣ୍ଡ ଓ ନିରବଚ୍ଛିନ୍ନ ପ୍ରପାଗାଣ୍ଡା ଫଳରେ ସେହି ଜର୍ମାନ ସେନାନୀର ଦୃଢ଼ ବିଶ୍ୱାସ ଜନ୍ମିଥିଲା ଯେ, ସେ ଧରାପୃଷ୍ଠରେ ଶ୍ରେଷ୍ଠ ଜାତିର ଲୋକ – ବାକୀ ସକଳ ଜାତି– ବର୍ବର । ସେ ତେଣୁ ତା'ର ଶତ୍ରୁ ଋଷୀୟମାନଙ୍କୁ ଧନ୍ୟବାଦ ଦେଇ ଜଣାଇଲା ଯେ ''ମୁଁ ନିଜେ ଜାଣେ ଯେ, ମୁଁ ଶୀଘ୍ର ମରିବି । ତେଣୁ ଆପଣମାନେ ବର୍ବର ରକ୍ତ ଦେଇ ମୋର ପବିତ୍ର ଆର୍ଯ୍ୟ-ରକ୍ତକୁ କଳୁଷିତ କରିବାର କୌଣସି ଆବଶ୍ୟକତା ନାହିଁ ।''

ଋଷୀୟ ସମର-କର୍ମଚାରୀବୃନ୍ଦ ଅନାସକ୍ତ ଭାବରେ ଏସବୁ ଶୁଣିଲେ ଏବଂ ଶତ୍ରୁ ସେନାନୀର ମୁମୂର୍ଷୁ-ବାଣୀ ପ୍ରତି ଗଭୀର ଶ୍ରଦ୍ଧା ଜଣାଇ, ତାଙ୍କର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ କେବଳ ମାନବିକ ସେବାଶୁଶ୍ରୂଷା ଦେଇଚାଲିଲେ ।

ଏ ଉଭୟେ ଆମର ସାଲ୍ୟୁଟ୍ ଦାବୀ କରନ୍ତି ନାହିଁ କି ?

୧୯୭୩ ମସିହା ଦ୍ୱିତୀୟ ସଂଖ୍ୟା ''ସୋଭିଏଟ୍ ସାହିତ୍ୟ''ରେ ଦ୍ୱିତୀୟ ବିଶ୍ୱ-ଯୁଦ୍ଧ କାଳୀନ ଜଣେ ପ୍ରସିଦ୍ଧ ସମର-ସାଂବାଦିକଙ୍କର 'ବିଶ୍ୱଯୁଦ୍ଧର ଶେଷାଂଶର ଏକ ସୁନ୍ଦର ବର୍ଣ୍ଣନା ପ୍ରକାଶିତ ହୋଇଛି । ଏହି ସମର ସାମ୍ବାଦିକ ବୋରିସ୍ ପଲିଭେୟ, ନିଜ ରଚନାର ଗୁଣ ଯୋଗୁଁ, ସମର-ରେଖାମାନଙ୍କରୁ ଋଷୀୟ ଦୈନିକ କାଗଜଗୁଡ଼ିକୁ ପଠାଉଥିବା ଯୁଦ୍ଧ-ବିବରଣୀମାନ ଦେଇ, ସମଗ୍ର ଋଷିଆରେ ଏବେ ଏକ ସାହିତ୍ୟିକର ସମ୍ମାନ ପାଇଛନ୍ତି । ୧୯୭୩ର ''ସୋଭିଏତ୍-ସାହିତ୍ୟ''ର ଦ୍ୱିତୀୟ ବିଶ୍ୱଯୁଦ୍ଧର ଶେଷ ତୋପଚାଳନା ପରେ, ବହୁ ଦିନର ଅନୁପସ୍ଥିତି ପରେ, ସେ ନିଜ ସ୍ତ୍ରୀ-ପିଲାଙ୍କୁ ଦେଖିବାର ଉତ୍ସାହରେ ମସ୍କୋକୁ ଫେରିଆସିବା ବର୍ଣ୍ଣନା କରିଛନ୍ତି । ସେ ବାଟରେ ଦେଖି ଯାଇଛନ୍ତି ଯୁଦ୍ଧ-ବିଧ୍ୱସ୍ତ ଋଷିଆର ବିସ୍ତୃତ ଅଞ୍ଚଳ । ସେହି ପଟ୍ଟଭୂମିରେ ଋଷୀୟ ନାରୀମାନଙ୍କର ଅଭୂତପୂର୍ବ ବରେଣ୍ୟ ଭୂମିକା ସେ ତାଙ୍କର ପ୍ରତ୍ୟକ୍ଷ ଦର୍ଶନ ଦେଇ ଯେପରି ବର୍ଣ୍ଣନା କରିଛନ୍ତି, ସେହି ଚରମ ପ୍ରେରଣାଦାୟୀ ଘଟଣାବଳିକୁ ପାଠକମାନଙ୍କ ଆଗରେ ଥୋଇବା ହିଁ ଏହି ପ୍ରବନ୍ଧର ଲକ୍ଷ୍ୟ । ତେବେ ଏହା ମୁଁ କରିବି କିଞ୍ଚିତ୍-ପରେ । ଆଜି ବିଷୁବ ସଂକ୍ରାନ୍ତି ୧୩ । ୪ । ୧୯୭୩ । ମଧ୍ୟାହ୍ନ-ଭୋଜନ ପରେ ଆଜିର ଦୈନିକ 'ଷ୍ଟେଟ୍ସ୍‌ମାନ' ଉପରେ ଶୋଇ ଶୋଇ ଆଖି ବୁଲାଉ ବୁଲାଉ, ଯେଉଁ କେତୋଟି ସଂବାଦ ଓ ଆଲୋଚନା ଚିତ୍ତକୁ ଚରମ ଆଘାତ ଦେଲା ସେ ସବୁ ସହିତ ଭାସିଉଠିଲା ''ସୋଭିଏଟ-ସାହିତ୍ୟ''ରେ ପଢ଼ିଥିବା ପଲିଏୟଭଙ୍କ-ଲିଖିତ, ବିଶ୍ୱଯୁଦ୍ଧରେ ସୋଭିଏଟ୍-ନାରୀମାନଙ୍କର ମହନୀୟ ଚିତ୍ରାବଳୀ । ଏହି ତୁଳନାଟାକୁହିଁ ପାଠକେ ଅନୁଭବକୁ ନିଅନ୍ତୁ ବୋଲି ଲେଖକର ଅନୁରୋଧ ।

ଆମେ ସାଧାରଣରେ ଗର୍ବ କରିଚାଲିଛୁ ଯେ, ଆମେ ଇଂରେଜର ସାମ୍ରାଜ୍ୟ-

ଧ୍ୱଂସ କରି, ତାକୁ ଏଠୁ ଗୋଇଠା ମାରି ବାହାର କରିଦେଲୁ । କିନ୍ତୁ ଏହା ଏକ ଘୋର ମିଥ୍ୟା ଭାଷଣ ଓ ଅପପ୍ରଚାର । ଭାରତ ସ୍ୱାଧୀନ ହେଲା ମାନେ ଇଂରେଜ ନାନା-କାରଣରୁ ଏଠି ଆଉ ରହିବା ଉଚିତ୍ ମନେକଲେନାହିଁ । କେବଳ ଭାରତବର୍ଷ ନୁହେଁ, ସେମାନେ ବର୍ମା ଓ ସିଂହଳରୁ ମଧ୍ୟ ପରେ ପରେ ଚାଲିଗଲେ, ଯଦିଓ ସେସବୁ ଦେଶରେ କୌଣସି ଗାନ୍ଧି-ଜବାହାରଲାଲ-ପଟେଲ ଦେଖାଦେଇନଥିଲେ । ପରେ ସେମାନେ ଆଫ୍ରିକା-ମହାଦେଶରୁ ମଧ୍ୟ ଏକ ପରେ ଏକ ଇଂରେଜ-ଶାସିତ ଅଞ୍ଚଳକୁ ସ୍ୱାୟତ୍ତ ଶାସନ ଦେଇ ଶାନ୍ତିରେ ଚାଲି ଯାଇଛନ୍ତି । ସମଗ୍ର ପୃଥିବୀ-ଇତିହାସରେ ଏପରି ଦୃଶ୍ୟ କେବେ ଦେଖାନଥିଲା । ଇଣ୍ଡୋଚାଇନା (ସୋଭିଏତ୍-ନାମ)ରେ ଫରାସୀ ସାମ୍ରାଜ୍ୟବାଦୀଏ ଏବଂ ଇଣ୍ଡୋନେସିଆରେ ଡଚ୍ ସାମ୍ରାଜ୍ୟବାଦୀଏ ସ୍ଥାନୀୟ ପ୍ରଜାସଂଘଠାରୁ ଯୁଦ୍ଧରେ ପରାଜୟ ଲଭିହିଁ ସେ ସବୁ ରାଜ୍ୟ ଛାଡ଼ିବାକୁ ବାଧ୍ୟ ହେଲେ ।

କିନ୍ତୁ ୟୁରୋପୀୟ ଶାସକମାନେ ଏପରି ଛାଡ଼ିଯାଇଥିବା କୌଣସି ହେଲେ ଏସୀୟ ବା ଆଫ୍ରିକୀୟ ରାଜ୍ୟରେ, ସେକାଳର ''ବିଦେଶୀ'' ଶାସନ ଅପେକ୍ଷା ଏବେ ଉତ୍ତମତର ଶାସନ ଚାଲିଛି ବୋଲି ଦୃଢ଼ କଣ୍ଠରେ କୁହାଯାଇନପାରେ । ଏଇ ୧୩।୪। ୧୯୭୩ର ଷ୍ଟେଟ୍ସମାନ୍‌ରେ ବର୍ମା ସଂପର୍କରେ ଏହିପରି କୁହାଯାଇଛି –

''ଇତିମଧ୍ୟରେ ବର୍ମାର ଆର୍ଥିକ ଅଧୋଗତି ଏପରି ଦ୍ରୁତଗତିରେ ଚାଲିଛି ଯେ, ଏବର୍ଷ ବର୍ମା ସାମାନ୍ୟତମ ପରିମାଣର ଚାଉଳ ମଧ୍ୟ ବାହାରକୁ ପଠାଇ ପାରିବ-ନାହିଁ । ବର୍ମାର ବୈଦେଶିକ-ବିନିମୟ-ପାଣ୍ଠି ପହଁଚି ସାରିଲାଣି ନିମ୍ନତମ ବିନ୍ଦୁରେ ଏବଂ ଦେଶମୟ ଦେଖାଦେଇଛି ସର୍ବବିଧ ଦୈନନ୍ଦିନ ବ୍ୟବହାର୍ଯ୍ୟ ଓ ଶୈଳ୍ପିକ କଞ୍ଚାମାଲର ଦୁଷ୍ପ୍ରାପ୍ୟତା । ଏ ପ୍ରକାର ଦୁର୍ଭାଗ୍ୟର ମୂଳ କାରଣ ହେଲା, ସମାଜବାଦ ନାମରେ ଚିନ୍ତାହୀନ ଭାବରେ ସର୍ବମୟ ରାଷ୍ଟ୍ରୀକରଣ ଏବଂ ରାଷ୍ଟ୍ରୀକୃତ ଶିଳ୍ପ ଓ ସଂସ୍ଥାଗୁଡ଼ିକୁ ନେଇ ଆଣି ଥୋଇପାରିବାର ଦକ୍ଷତାର ଅଭାବ । ଜାତୀୟ ଜୀବନର ସର୍ବାଂଶରେ ରାଷ୍ଟ୍ର ନିଜର ନିୟନ୍ତ୍ରଣ ଚଳାଇବା ଫଳରେ ସମଗ୍ର ଦେଶ, ବହୁ ଭାବରେ ଏକ ଦୁର୍ଭିକ୍ଷ ଓ ଦୁଷ୍ପ୍ରାପ୍ୟ କାଳ ଭିତର ଦେଇହିଁ ଗତିକରୁଛି, ଏବଂ ଜନସାଧାରଣ ଅଭୂତପୂର୍ବ କ୍ଳେଶମୟ ଦୈନନ୍ଦିନ ଜୀବନ ଯାପନ କରୁଛନ୍ତି – ଯାହାହିଁ ପୁଣି ସୃଷ୍ଟି-କରିଚାଲିଛି ସମାଜର ସବୁ ସ୍ତରରେ ଦୁର୍ନୀତି ଏବଂ ରାଷ୍ଟ୍ରଶାସନ ପ୍ରତି ଜନସାଧାରଣର ସମୂହ ବିତୃଷ୍ଣା ।'' (ସଂପାଦକୀୟ)

ଇଂରେଜ-ଶାସନ ଭାରତରେ ବଙ୍ଗାଳୀକୁ ଏହି ଉପମହାଦେଶର ସବୁଠାରୁ ଅଧିକ ଶିକ୍ଷିତ, ବୁଦ୍ଧିମାନ୍ ଓ ସଂସ୍କୃତିବନ୍ତ ଜାତି ବୋଲି ଧରାଯାଉଥିଲା । ସେମାନେ

ମଧ୍ୟ ନିଃସନ୍ଦେହ ଭାବରେ, ସାହିତ୍ୟ ପ୍ରଗତିମୂଳକ ଚିନ୍ତାଧାରାରେ ଏବଂ ସ୍ୱାଧୀନତା ସଂଗ୍ରାମରେ ଆମ ସମସ୍ତଙ୍କର ଅଗ୍ରଣୀ ଥିଲେ । କଲିକତା ଥିଲା ଭାରତର ବୃହତ୍ତମ, ସମୃଦ୍ଧିତମ ଓ ସୁନ୍ଦରତମ ସହର । ଦେଶବନ୍ଧୁ ଚିତ୍ତରଞ୍ଜନ ଯେତେବେଳେ କଲିକତା କରପୋରେଶନ୍‌ର ପ୍ରଥମ ଦେଶୀ ମେୟର ହେଲେ, ସେ ସେତେବେଳେ କହିଥିଲେ, ‘‘ଆମେ କଲିକତାକୁ ଠିଆକରିବୁ ଆଗାମୀ ସ୍ୱରାଜର ଦର୍ପଣ ରୂପେ ।’’

କିନ୍ତୁ ଆଜି ସେହି ଗତକାଲିର କଲିକତା ଅଛି; ନା ଅଛି କେବଳ ଏକ କୁତ୍ସିତ ଭୂତ, ଯାହାକି ଆମ ଦେଶୀ-ଶାସନର ପ୍ରକୃଷ୍ଟ ନମୁନା ? ଏଇ ସେଦିନ, ଦିନ ଦି’ପହରରେ କଲିକତାର ରାସ୍ତାମାନଙ୍କରେ ହଣା-ମରା ଚାଲିଥିଲା । ଆଜି ସେ ସବୁ ଅନେକ ପରିମାଣରେ ବନ୍ଦହୋଇଛି ସତ; କିନ୍ତୁ ଏ ସହରର ଭିକାରି-ସଂଖ୍ୟା, ଅପରିଚ୍ଛନ୍ନତା ଓ ଆକସ୍ମିକ ଗଣ୍ଡଗୋଳ ଇତ୍ୟାଦି ଏ ସହରକୁ ଏପରି ବଦ୍‌ନାମ କରି-ସାରିଲାଣି ଯେ, ଆନ୍ତର୍ଜାତୀୟ ଯାତ୍ରୀବାହୀ ଉଡ଼ାଜାହାଜ ସବୁ କଲିକତାରେ ଆଉ ଓହ୍ଲାଉନାହାନ୍ତି । ପୁଣି, ୧୩।୪।୭୩ ଷ୍ଟେଟସ୍‌ମାନ କଲିକତାର ସାଂପ୍ରତିକ ସ୍ୱାସ୍ଥ୍ୟିକ ଓ ନାଗରିକ ପରିସ୍ଥିତ ନେଇ ଏହିପରି ଲେଖିଛନ୍ତି –

‘‘ଏସ୍‌ପ୍ଲାନେଡ୍‌ରେ ଠିଆକରାଯାଇଥିବା ବିଧାନରାୟ ମାର୍କେଟର ଧାରେ ଧାରେ ଯାଇଥିବା ନର୍ଦ୍ଦମାଟି କଲିକତାର ଅସ୍ୱାସ୍ଥ୍ୟକର ପରିସ୍ଥିତିର ଏକ ଚୂଡ଼ାନ୍ତ ପ୍ରତୀକ । ଟ୍ରାମରେ ଯାଉଥିବା ଯାତ୍ରୀମାନଙ୍କୁ ମଧ୍ୟ ଏହି ନର୍ଦ୍ଦମାର ଦୁର୍ଗନ୍ଧ ଅସହ୍ୟ ହୋଇଉଠୁଛି । ଯଦି ବୁଲାବିକାମାନଙ୍କୁ ଏକାଠି ବସେଇବା ପାଇଁ ଏ ମାର୍କେଟକୁ ଠିଆକରାଯାଇଥିଲା, ତେବେ ତାହା ସଂପୂର୍ଣ୍ଣ ବ୍ୟର୍ଥ ହୋଇଛି । କାରଣ ବୁଲିବିକାଏ ମାର୍କେଟକୁ ନଯାଇ, ବର୍ତ୍ତମାନ ସମଗ୍ର ଏସ୍‌ପ୍ଲାନେଡ୍‌ର ବିସ୍ତୃତ ଅଞ୍ଚଳକୁ ସଂପୂର୍ଣ୍ଣ ରୂପେ ନିଜର କରି-ନେଇଛନ୍ତି । × × ରାସ୍ତାର ଦୁଇପଟେ ଥିବା ମନିଷଚଲା-ବାଟ (ପେଭ୍‌ମେଣ୍ଟ) ବର୍ତ୍ତମାନ ସେମାନଙ୍କର ରୀତିମତ ଘରଦ୍ୱାର ହୋଇସାରିଲାଣି । ସେମାନଙ୍କର ଚୁଲି ସବୁ ରାସ୍ତା ଉପରେ ଦିବାରାତ୍ର ଜଳିଚାଲିଛନ୍ତି । ଏବଂ ଅଧିକ ପରିତାପର ବିଷୟ ଯେ, ଆଖପାଖରେ ସମସ୍ତ ମନିଷ-ଚଲା-ବାଟ, ପିଲା, ପ୍ରୌଢ଼ ଓ ବୃଦ୍ଧ ସମସ୍ତଙ୍କର ମୁକ୍ତାକାଶ ପାଇଖାନା ରୂପେ ବ୍ୟବହୃତ ହେଉଛି । ଏହି ବୀଭତ୍ସ ଦୃଶ୍ୟର ଉତ୍ତମ ଭୋଗ-କରିବାର ବେଳା ହେଉଛି ପ୍ରତ୍ୟୁଷ । × × × କୋଡ଼ିଏ ବର୍ଷ ତଳେ ଦେଶପ୍ରିୟ ପାର୍କରେ ନାଗରିକମାନଙ୍କର ବସାଉଠା ପାଇଁ ତିରିଶିଟି କାଠବେଞ୍ଚ ଥିଲା – ଏବେ ସେଠି ଅଛି ମାତ୍ର ଦଶଟି । ଯେହେତୁ କାଠପଟାର ଦାମ୍ ଆଜି ବଜାରରେ ଚଢ଼ା, ତେଣୁ ପାର୍କ ମାଳୀର ଆଖି-ମିଟିକାରେ ପାର୍କର ବେଞ୍ଚ ସବୁ କଳାବଜାରକୁ ଚାଲି-ଯାଉଛି ।’’

ବଂଧୁଗଣ, ଷ୍ଟେଟସ୍‌ମାନ ଆଜିର ସ୍ୱାଧୀନତୋତ୍ତର କଲିକତାର ଯେଉଁ ଦୁଃଖଦ ଚିତ୍ର ଦେଇଛନ୍ତି, ତାହା କଟକ, ରାଁଚି, ଦାର୍ଜିଲିଂ ପ୍ରଭୃତି ଏହି ଉପମହାଦେଶର ଯେତେ ଯେତେ ସହର ଇଂରାଜୀ-ଶାସନରେ ସ୍ୱାସ୍ଥ୍ୟସୌନ୍ଦର୍ଯ୍ୟ-ମୟ ଓ ଶାନ୍ତି-ଶୃଙ୍ଖଳିତ ଜୀବନ ପାଇଁ ପ୍ରସିଦ୍ଧ ଥିଲେ, ସେ ସବୁଠି ଆଜି ସେହି ଏକ ଦୁର୍ଦ୍ଦଶା । ଆଜି ଖବରକାଗଜ ମେଲେଇଲା ମାତ୍ରେ ଆମେ ପଢ଼ିବାକୁ ବାଧ୍ୟ, କେବଳ ଶିକ୍ଷକମାନଙ୍କର ଦାବି, ଛାତ୍ରମାନଙ୍କ ଦାବିର କଥା । ଆମେ ପଢୁ ଅଗଣତାନ୍ତ୍ରିକ ହିଂସ୍ର ଅଭିଯାନ, ଠେଲାଠେଲି, ହାତାହାତି ଓ ଜାତୀୟ ସଂପତ୍ତି ସବୁର ଅକୁଣ୍ଠ ଧ୍ୱଂସର ବର୍ଣ୍ଣନା । କିନ୍ତୁ କୌଣସିଠାରେ ଆମେ ଲକ୍ଷ୍ୟ କରିବାନି ଯେ, ଜାତି, ରାଷ୍ଟ୍ର ଓ ଦେଶର ଅଗ୍ରଗତି ପାଇଁ କାହାରି ହେଲେ ଆନ୍ତରିକ ଭାବରେ ଦାୟିତ୍ୱ ପାଳନର ବର୍ଣ୍ଣନା । ଏହା ଜଣା କଥା ଯେ ଭୁବନେଶ୍ୱର ସେକ୍ରେଟାରିଏଟରେ ଜଣକ ଜାଗାରେ ଚାରିଜଣ କିରାଣି ଅଛନ୍ତି ଏବଂ ସେ ଚାରିଜଣ, ଛ'ଘଣ୍ଟାରୁ ଖାଣ୍ଟି ଦୁଇଘଣ୍ଟାର ଶ୍ରମ ମଧ୍ୟ ସରକାରକୁ ଦିଅନ୍ତି କି ନାହିଁ ସନ୍ଦେହ – ଅଥଚ ଚାଲିଛି ଦାବି ଉପରେ ଦାବି । ସେହିପରି ପ୍ରାଇମେରୀ ଓ ସେକେଣ୍ଡାରୀ ଶିକ୍ଷକ ସବୁ । ଆମ ପିଲାଦିନେ ଯେଉଁ ପ୍ରାଇମେରୀ ଶିକ୍ଷକଙ୍କର ଦରମା ଥିଲା ମାତ୍ର ଦୁଇଟି ଟଙ୍କା, ସେଠି ସେ ପାଉଛନ୍ତି ଆଜି ପ୍ରାୟ ଦୁଇଶ ଟଙ୍କା– ଅଥଚ ପ୍ରାଚୀନ ଗୁରୁମାନଙ୍କ ତୁଳନାରେ ଏମାନଙ୍କର ପୁଣି ପାଠ ନାହିଁ କି କର୍ତ୍ତବ୍ୟନିଷ୍ଠା ନାହିଁ । ସମଗ୍ର ଜାତି ଉଚ୍ଚ ଦରଦାମର ଦାଉ ଭୋଗ କରୁଥିଲା ବେଳେ, ଜନସଂଖ୍ୟାର ମାତ୍ର ଦୁଇ ପରସେଣ୍ଟ ଏଇ ଚାକିରିଆଏ କି ଯୁକ୍ତିରେ ଜାତିକି ଯଥୋଚିତ ଶ୍ରମ ନଦେଇ, ସଂଘବଦ୍ଧ ଭାବରେ ଦାବି ପାଇଁ ବିଭ୍ରାଟ ସୃଷ୍ଟି କରିଚାଲିଛନ୍ତି ?

କେବଳ ଏ ଦେଶର ଶିକ୍ଷକ ଓ କିରାଣିହିଁ ଯେ, ଦେଶ ଓ ଜାତିକି ଠକି, ଦେଶ ଓ ଜାତିର ସମୂହ କଲ୍ୟାଣ କଥା ଆଦୌ ନଭାବି କେବଳ ଅନ୍ଧ, ମୂଢ଼, ସ୍ୱାର୍ଥକେନ୍ଦ୍ରିକ ରୀତିରେ ନିଜନିଜର ଫାଇଦା ଉଠାଇବା ପାଇଁହିଁ ସଦାଜାଗ୍ରତ, ତାହା ନୁହେଁ; କହିବାକୁ ଗଲେ, ଆଜି ସ୍ୱାଧୀନତୋତ୍ତର ସମଗ୍ର ଭାରତୀୟ ଜାତିଟା, ଜାତୀୟଜୀବନର ପ୍ରତ୍ୟେକ କ୍ଷେତ୍ରରେ ଦ୍ରୁତ ଅଧୋଗମନଶୀଳ ହୋଇ ଯେ ଚାଲିଛି, ତା'ର କାରଣ ଆମେ ନେତା, ମନ୍ତ୍ରୀ, ଏମ.ଏଲ.ଏ, ଏମ୍.ପି, ଅଧ୍ୟାପକ, ଶିକ୍ଷକ, କର୍ମଚାରୀ, ବ୍ୟବସାୟୀ ଓ ଦେଶର ପ୍ରତ୍ୟେକଟି ସାଧାରଣ ନାଗରିକ କଠୋର ଶ୍ରମ, ସାଧୁତା ଓ ଜାତୀୟତାରେ ବିଶ୍ୱାସ ନକରି, କରିଚାଲିଛୁଁ, କେବଳ ଠକାମିରେ ।

ଗାନ୍ଧିଜୀଙ୍କ ପରେ କେବଳ ଜଣେ ଲାଲ୍‌ବାହାଦୁର ଶାସ୍ତ୍ରୀଂକି ଛାଡ଼ିଦେଲେ କୌଣସି ହେଲେ ଜଣେ ନେତାଠାରେ ଆମେ ଅକଳୁଷ ସାଧୁତା ଓ ଜାତିପ୍ରାଣତା 'ଏପର୍ଯ୍ୟନ୍ତ

ଦେଖିବାକୁ ପାଇଲୁ ନାହିଁ । ଯେ ଯେମିତି ପାରିଲେ ନିଜ ପକେଟ୍ ଗରମ କରିବା ଓ ନିଜ ସୁବିଧାଟି ଆଗ କରିନେବାହିଁ ଜୀବନର ପରମ ସାର୍ଥକତା ବୋଲି ହିଁ ଭାବି-ଚାଲିଛନ୍ତି । କେହି ଭାବୁନି ଯେ, ଯତ୍‌ସାମାନ୍ୟ ହେଉ ପଛେ, ଜାତିକି ତା'ର ସେ ଦେଇଯିବ କ'ଣ ? ଏ ଭାବ ଜାଗ୍ରତ ଥିଲେ, କୌଣସି ଭାରତୀୟ ସାଧାରଣ ଗତାଗତ ସ୍ଥାନ ବା ଦ୍ରବ୍ୟକୁ ସର୍ବସମକ୍ଷରେ କଳୁଷିତ କରନ୍ତେ ନାହିଁ । ମାନବିକ ସଂସ୍କୃତିର ଆଦ୍ୟ ମନ୍ତ୍ର ହେଲା "ଅନ୍ୟ ପ୍ରତି ବିଚାର ।" ଯେଉଁଠି ଆମ ଜାତି ଗଢ଼ା ହେବା କଥା, ଆମର ସେହି ସ୍କୁଲ-କଲେଜଗୁଡ଼ିକ ଆଜି ସକଳ ଅସାମାଜିକ କର୍ମରେ ଦୁର୍ଗନ୍ଧମୟ । ଛାତ୍ର ଓ ମାଷ୍ଟ୍ରମାନେ ସରସ୍ୱତୀ-ପୂଜା ନାଁରେ ପ୍ରତ୍ୟୁଷରୁ ମଧ୍ୟରାତ୍ରି ପର୍ଯ୍ୟନ୍ତ ଲାଉଡ୍‌ସ୍ପିକର୍ ଛାଡ଼ିଦିଅନ୍ତି, ଅଥଚ କ୍ଷଣେ ହେଲେ ନିଜକୁ ପଚାରନ୍ତି ନାହିଁ ସ୍କୁଲ-କମ୍ପାଉଣ୍ଡ ଆର-ପଟେ କେହି ରୋଗୀ ପ୍ରତି ଏହି ଅତ୍ୟୁଗ୍ର ଧାତବ ଧ୍ୱନି ମାରାତ୍ମକ ହୋଇପାରେ କି ନା, ଏବଂ ବିପଜ୍ଜନକ ମଧ୍ୟ ହୋଇପାରେ ନିକଟରେ ବାସକରୁଥିବା ଶତଶତ ଲେଖକ-ପାଠକ ଆରାଧକମାନଙ୍କ ପ୍ରତି । "ଅନ୍ୟ ପ୍ରତି ବିଚାର" ଥିଲେ ଆମେ କେହି ଘରର ଆବର୍ଜନା ମଧ୍ୟ ବାହାରେ ପକାନ୍ତୁନି, କି ଭଗବାନ ଦେଇଥିବା ଆମର ସୁନ୍ଦର ପ୍ରକୃତିକୁ ଆମେ କୁତ୍ସିତ କରନ୍ତୁନି । ଆମେ ଭାରତର ସ୍ୱାଧୀନ ନାଗରିକମାନେ ପ୍ରତ୍ୟେକେ ପ୍ରତ୍ୟହ ପ୍ରାତଃକାଳରୁ ନିଜନିଜକୁ ନିଶ୍ଚୟ ପଚାରନ୍ତେ–"ମୁଁ ଆଜି ମୋ ଜାତି ଓ ରାଷ୍ଟ୍ରପାଇଁ କ'ଣ ଦେଇପାରେ ?"

ଏଇଠି ବର୍ତ୍ତମାନ ପ୍ରସିଦ୍ଧ ରୁଷୀୟ ସମର ସାମ୍ବାଦିକ ପଲିୟେଭଙ୍କର ଗତ ବିଶ୍ୱଯୁଦ୍ଧର ସ୍ମୃତିକଥାରୁ ଏକ ଶିକ୍ଷଣୀୟ ଯଥୋପଯୁକ୍ତ ବିପରୀତ ଦୃଷ୍ଟାନ୍ତ ପାଠକ-ପାଠିକାମାନଙ୍କ ଆଗରେ ପରିବେଷଣ କରେ ।

ସମଗ୍ର ଋଷିଆର ଯବାନ୍‌ମାନେ ତ ସେତେବେଳେ ରଣକ୍ଷେତ୍ରରେ । କିନ୍ତୁ ସମଗ୍ର ଜାତି ଓ ଯବାନ୍‌ମାନଙ୍କର ଉଦର ପୂର୍ତ୍ତିପାଇଁ କ୍ଷେତ୍ରରେ ଶସ୍ୟୋତ୍‌ପାଦନ ତ ଏକାନ୍ତ ଆବଶ୍ୟକ – ସେ କାମ ପୁଣି କିଏ କରିବ ? ଚେକୋସ୍ଲୋଭାକିଆ ଓ ଜର୍ମାନୀର ରଣରେଖାମାନଙ୍କରୁ ବହୁକାଳ ପରେ ପଲିୟେଭ ମାତୃଭୂମି ଋଷିଆ ଓ ମାତୃନଗର ମସ୍କୋକୁ ଫେରିଛନ୍ତି – ନିଜ ଦେଶର ଅନେକ ଘଟଣା ତେଣୁ ତାଙ୍କୁ ଜଣାନଥିଲା । ସେ ତେଣୁ ଲେଖିଛନ୍ତି –

ବ୍ରେଷ୍ଟ ସହର ଛାଡ଼ି ଆସିଲାପରେ ଆମର ମୋଟର୍‌କାର୍‌ର ଗତି ସ୍ୱାଭାବିକ ଭାବରେ ବଢ଼ିଚାଲିଲା । ବଡ଼ ରାସ୍ତାର ଦୁଇପଟେ ଏଣେ-ତେଣେ-ବିକ୍ଷିପ୍ତ ଆମର ଓ ଜର୍ମାନମାନଙ୍କର କେତୋଟି କଳଂକି ଲାଗି ଆସୁଥିବା ଟ୍ୟାଁକ୍ ଛଡ଼ା, ଏ ଅଞ୍ଚଳ ଉପରେ ବିଶ୍ୱଯୁଦ୍ଧ ଯେ ଦୁଇଥର ମାଡ଼ିଯାଇଛି ତାହାର କୌଣସି ଚିହ୍ନହିଁ ଆଉନଥିଲା ।

ଚାରିଆଡ଼େ ବର୍ତ୍ତମାନ ଶାନ୍ତି । ଶସ୍ୟକ୍ଷେତ୍ର ସବୁ ପୁଣି ଜୀବନ୍ତ ହୋଇଉଠିଲେଣି । ଯେଉଁ ଗାଁଗୁଡ଼ିକ ଏପରି ଯୁଦ୍ଧବିଧ୍ୱସ୍ତ ହୋଇଥିଲେ ଯେ, ସେଗୁଡ଼ିକରେ କେବଳ କେତୋଟି ଘରର ଧୂମ-ନଳୀ ମାତ୍ର ଦଣ୍ଡାୟମାନ ଥିଲା । ସେମାନଙ୍କର ଚାରିପାଖର କେଦାରମାଳା ମଧ୍ୟ ଶସ୍ୟଶ୍ୟାମଳ ହୋଇଉଠିଥିବାର ଆମେ ଦେଖିଲୁ । ବସନ୍ତକାଳୀନ ଗୋଧୂମ ଶସ୍ୟରେ ମାଟି ହସି ଉଠୁଛି । କିନ୍ତୁ ଗୋଟିଏ ଦୃଶ୍ୟ ଅନ୍ତରକୁ କରୁଣ-ଭାବରେ ମଥିତ ନକରି ଛାଡି ନଥିଲା । ଆମେ ଦେଖିଲୁ ଯେ ଏଠି ସେଠି ସ୍ତ୍ରୀଲୋକମାନେ ଶସ୍ୟ ବୁଣିବା ପାଇଁ ଏକା ଏକା କୋଡ଼ିକୋଦାଳରେ ମାଟି ହାଣୁ-ଥିଲେ ବା ଯୁଆଳିରେ ଗାଈଙ୍କି ଯୋଚି ମାଟିରେ ଓଡ଼ ବି ଦେଉଥିଲେ । କିନ୍ତୁ ପ୍ରକୃତ ହୃଦୟ-ମନ୍ଥନକାରୀ ଦୃଶ୍ୟଟି ହେଲା ଏହି ଯେ, ଠାଏ ଠାଏ ଗାଈ ଅଭାବରୁ, ଦୁଇଟି ସ୍ତ୍ରୀଲୋକ ଯୁଆଳିରେ କାନ୍ଧ ଲଗାଇ ଗାଈ କାମ କରୁଥିଲେ ଏବଂ ଆଉ ଜଣେ ସ୍ତ୍ରୀଲୋକ ପଛରେ ରହି ଲଙ୍ଗଳ-କଣ୍ଟିରେ ହାତ ଦେଇ ଜମି ଚାଷକରୁଥାନ୍ତି । ଆମେ ବାଟଯାକ ବହୁ ସ୍ଥାନରେ ସ୍ତ୍ରୀଲୋକମାନେ ଏପ୍ରକାର ଚାଷ କାମ କରୁଥିବାର ଦେଖିଲୁ । ବ୍ରେଷ୍ଟ ଠାରେ ଜଣେ ସହକାରୀ ଟ୍ରାଫିକ୍ କଣ୍ଟ୍ରୋଲର୍‌ଙ୍କର ଅନୁରୋଧ କ୍ରମେ, ଆମେ ଆମ କାର୍‌ରେ ଜଣେ ଖଞ୍ଜୀ ରୁଷୀୟ ସୈନିକକୁ ଜାଗାଦେଇଥିଲୁ । ସେ ବର୍ତ୍ତମାନ ତା'ର ସିଗାର କାଗଜ ବଲୁ ବଲୁ କହିଲାଗିଲା– ''ଆମର. . . ଏଇ ରୁଷିଆର ସ୍ତ୍ରୀଲୋକମାନେ. . . ଆଜି କି ଜାତୀୟ ଭାର ଯେ ବିନା ଅଭିଯୋଗରେ ବୋହି-ଚାଲିଛନ୍ତି ଭାବିଲେ ସ୍ତବ୍ଧ ହେବାକୁ ହୁଏ । ବସ୍ତୁତଃ ସମରରେଖାର ପଛପଟର ସକଳ ପ୍ରକାର ରାଷ୍ଟ୍ରୀୟ ଦାୟିତ୍ୱ ସେହିମାନେହିଁ ଦକ୍ଷତାର ସହିତ ବହନ କରିଚାଲିଛନ୍ତି । ମୁଁ ଯଦି କମ୍‌ରେଡ଼ ଷ୍ଟାଲିନ୍‌ଙ୍କ ଆସନରେ ଥାଆନ୍ତି, ତେବେ ରୁଷିଆର ଏହି ଅଗଣିତ ମହିଳାମାନଙ୍କୁ ରେଡ୍-ସ୍କୋୟାର୍‌ରେ ଆସି ଜମାହେବାକୁ କହି, ସେହି ସମବେତ ମହିଳାମାନଙ୍କର ପାଦତଳେ ଲୋଟିଯାଇ କହନ୍ତି– ''ହେ ଋଷିଆର ବରେଣ୍ୟ ନାରୀ ବୃନ୍ଦ, ଏହି କୃଷିକ୍ଷେତ୍ରର ଭାର ପରି, ଏକ ବିଶ୍ୱଯୁଦ୍ଧାକ୍ରାନ୍ତ ମୋ ଜାତିର ବହୁ ଗୁରୁଭାର ହିଁ ତମେମାନେ ଅକୁଣ୍ଠିତ ଭାବରେ ବୋହି ନେଇଛ । ତେଣୁ ମୋ ନିଜ ପକ୍ଷରୁ, କମ୍ୟୁନିଷ୍ଟ ଦଳ ପକ୍ଷରୁ ଓ ସୋଭିଏଟ୍ ରାଷ୍ଟ୍ର ପକ୍ଷରୁ ମୁଁ ଆପଣମାନଙ୍କୁ ପ୍ରାଣର ଅକୃତ୍ରିମ କୃତଜ୍ଞତା ଜଣାଉଛି ।''

ସେ ବର୍ତ୍ତମାନ ସିଗାରେଟ୍‌ଟିରେ ଅଗ୍ନି ସଂଯୋଗ କରି ପ୍ରଥମ ଧୂମପାନ କଲେ, କିଛିକ୍ଷଣ ନୀରବ ରହି କାର୍‌ର ଝରକା ବାଟେ ଧୂଆଁ ଛାଡ଼ିଲେ, ତା'ପରେ ସେ ପୁଣି କହିଲେ– ''ଋଷିଆର ଏହି ପ୍ରତ୍ୟେକଟି ନାରୀ ଏକ ଏକ ମହାତ୍ମା । ଖ୍ରୀଷ୍ଟୀୟ ପୁରୋହିତମାନେ ବହୁ ଧର୍ମୀୟ ମହାତ୍ମାମାନଙ୍କର ଗପ ଆମକୁ ଶୁଣାଇଥାନ୍ତି । କିନ୍ତୁ

ସେ ସକଳ ମହାତ୍ମାମାନଙ୍କ ଅପେକ୍ଷା ଏହି ଋଷୀୟ ନାରୀ-ମହାତ୍ମାମାନେ ନିଶ୍ଚିତ ଭାବରେ ମହତ୍ତର ।''

ଆହତ ଋଷୀୟ ସୈନିକର ଏହି ଉଚ୍ଛ୍ୱସିତ ବକ୍ତୃତା ମୋ ଅନ୍ତରରେ ବହୁବେଳ ଯାଏ ଧ୍ୱନିତ ହୋଇଚାଲିଥାଏ ଯାତ୍ରାର ବହୁଦୂର ଯାଏଁ । ଯୁଦ୍ଧରେ ବିଶେଷ-ଭାବରେ-କ୍ଷତିଗ୍ରସ୍ତ ସ୍ମୋଲେୟସ୍କ ସହର ମଧ ତା'ର ସ୍ୱାଭାବିକ ଜୀବନ ଇତିମଧ୍ୟରେ ଫେରାଇ ଆଣିଥିବାର ଆମେ ଦେଖିଲୁ । ଏହି ସ୍ମୋଲେୟସ୍କ ପରି ସହର ସହିତ ବାଟରେ ଯେତେ ଯେତେ ଗ୍ରାମ ଓ ନଗର ଦେଇ ଆମେ ଆସିଥିଲୁ, ସର୍ବତ୍ର ଆମେ ଦେଖିଲୁ ଯେ ଜାତୀୟ ଜୀବନର ଅଧିକାଂଶ ଦାୟିତ୍ୱ ସତ୍ୟରେ ଦକ୍ଷତାର ସହିତ ତୁଲେଇଚାଲିଛନ୍ତି ସ୍ତ୍ରୀଲୋକମାନେ । ସ୍ତ୍ରୀଲୋକମାନେ କାର, ଟ୍ରକ୍ ଓ ଟ୍ରାମ୍‌ଗାଡ଼ି ଚଳାଉଥିଲେ କେବଳ ନୁହେଁ, ସେଇମାନେ ସାଜିଥିଲେ ସ୍ଥାନୀୟ ମିଲିସିଆ ବା ଜନ-ସୈନ୍ୟ । ଏକ ଏକ ସିଫ୍‌ଟ ଶେଷ କରି, ଫାକ୍‌ଟ୍ରିମାନଙ୍କରୁ ଅଗଣିତ ସଂଖ୍ୟାରେ ବାହାରିପଡୁଥିଲେ ନାରୀ ଶ୍ରମିକମାନେ । ତାଙ୍କ ଭିତରେ ବୟସ୍କ ଓ ଟୋକା ମଧ କେତେକ ଥିଲେ; କିନ୍ତୁ ନାରୀ ଶ୍ରମିକମାନଙ୍କ ଗହଳରେ ସେମାନେ ଚିହ୍ନାଇ-ଯାଉନଥିଲେ ।''

ଏହି ମହନୀୟ ଜାତିପ୍ରାଣ ଚିତ୍ରର ଆମ ଦେଶରେ ବିପରୀତ ବୀଭତ୍ସ ଓ ସର୍ବଥା ନିନ୍ଦନୀୟ ଚିତ୍ର ହେଲା– ''ସର୍କାର ସବୁ କରିଦିଅନ୍ତୁ !'' ଲୋକେ ମିଳିମିଶି ଜାତି, ସମାଜ ବା ରାଷ୍ଟ୍ରର ସାମୂହିକ କଲ୍ୟାଣ ବା ମର୍ଯ୍ୟାଦାକୁ ଆଖିରେ ରଖି କୌଣସି ଗୋଟିଏ ହେଲେ ସଂସ୍ଥା ଠିଆକରେଇବାର ଦୃଷ୍ଟାନ୍ତ ଏ ଦେଶରେ ଆଜି ନାହିଁ । ସମଗ୍ର ଜାତି ଏକ ଠଗ-ସଂଘରେ ପରିଣତ ହୋଇସାରିଲଣି । ନାନା ପେଖନାରେ ସରକାରଙ୍କଠାରୁ ଅର୍ଥ ସଂଗ୍ରହ କରି, ସେଥିରେ ପକେଟ୍ ଗରମ ରଖିବାହିଁ ଆଜି ଏ ଜାତିର ଶ୍ରେଷ୍ଠ ପୌରୁଷ, ଯାହାକି କମ୍ୟୁନିଷ୍ଟ୍ ଋଷିୟାର ସାଧାରଣ ନାରୀତ୍ୱ ଆଗରେ ଏକାନ୍ତ ଘୃଣ୍ୟ ।

––